ପୀତାମ୍ବର ଦାଶ ବିରଚିତ

# ନୃସିଂହ ପୁରାଣ



ପ୍ରକାଶକ: ଧର୍ମଗ୍ରନ୍ଥ ଷ୍ଟୋର ଅଲିଶା ବଜାର, କଟକ-୨

ବିପ୍ର ପୀତାମ୍ବର ଦାଶଙ୍କ ବିରଚିତ

# ନୃସିଂହ ପୁରାଣ

## ଚତୁର୍ଥ ସାଗର

(ନୂତନ ମୁଦ୍ରଣ)






ପ୍ରକାଶକ ଓ ପ୍ରାପ୍ତିସ୍ଥାନ :

**ଧର୍ମଗ୍ରନ୍ଥ ଷ୍ଟୋର**

ପ୍ରତିଷ୍ଠାତା- ଶ୍ରୀ ବିଦ୍ୟାଧର ସାହୁ
ପରିଚାଳକ- ଶ୍ରୀ ମହିମା ପ୍ରସାଦ ସାହୁ
ଅଲିଶା ବଜାର, କଟକ-୨,
ଫୋନ୍ : ୦୬୭୧-୨୫୦୮୨୯୬

ମୂଲ୍ୟ : ସତୁରୀ ଟଙ୍କା ମାତ୍ର

# ନୃସିଂହ ପୁରାଣ ଚତୁର୍ଥ ସାଗର

## ସୂଚୀପତ୍ର



ନୃସିଂହ ପୁରାଣ ଚତୁର୍ଥସାଗରର ସୂଚିପତ୍ର ସମାପ୍ତ

# ନୃସିଂହ ପୁରାଣ

## ଚତୁର୍ଥ ସାଗର

ଆସନଂ କମଳାସନେ କମଳାୟ ବକ୍ଷସ୍ଥଳାସୀନୟା,
ବିଦ୍ୟୁଦ୍‌ଭେ୍ୟାତସାଟାସମୁହବିଳସଦ୍ ସୌମ୍ୟନାମ୍ଭୋରୁହମ୍ ।
ଜାନ୍ୱୋରର୍ପିତଯୋଗପଟ୍ଟମୁଭୟୋର୍ବାହୁ ଦୃଢ଼ା ବାୟତୌ,
ହସ୍ତୋଭ୍ୟାଂ ଧୃତଶଙ୍ଖଚକ୍ରମନିଶଂ ଲକ୍ଷ୍ମୀନୃସିଂହ ଭଜେ ।୧।
ନାରାୟଣଂ ନମସ୍କୃତ୍ୟଂ ନରଂ ଚୈବ ନରୋତ୍ତମଂ ।
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋଜୟ ମୁଦୀରୟେତ୍ ।୨।
ବେଦେ ରାମାୟଣେ ଚୈବ ପୁରାୟେ ଭାରତେ ତଥା ।
ଆଦ୍ୟେ ପ୍ରାନ୍ତେ ଚ ମଧ୍ୟେ ଚ ହରିଃ ସର୍ବତ୍ର ଗୀୟତେ ।୩।
ତଂ ବେଦଶାସ୍ତ୍ର ପରିନିଷ୍ଠିତ ଶୁଦ୍ଧବୁଦ୍ଧିଂ, ଚର୍ମାମ୍ବର ସୁରମୁନୀନ୍ଦ୍ରନୁତଂ କବୀନ୍ଦ୍ରଂ ।
କୃଷ୍ଣତ୍ୱିଷଂ କନକପିଙ୍ଗଳଜଟାକଳାପଂଳ, ବ୍ୟାସଂ ନମାମି ଶିରସା ତିଳକଂମୁନିନାଂ ।୪।
ନାହଂ ତିଷ୍ଠାମି ବୈକୁଣ୍ଠେ ଯୋଗିନାଂ ହୃଦୟେ ନ ଚ ।
ମଦ୍ଭକ୍ତା ଯତ୍ର ଗାୟନ୍ତି ତତ୍ର ତିଷ୍ଠାମି ନାରଦ ।୫।

### ବନ୍ଦନା

ଜୟ ଜୟ ଶ୍ରୀ ନୃସିଂହ ଜୟ ମତ୍ସ୍ୟରୂପୀ
ଜୟ ଜୟ ଶ୍ରୀ ନୃସିଂହ କୂର୍ମ ବ୍ରହ୍ମବ୍ୟାପୀ
ଜୟ ଜୟ ଶ୍ରୀ ନୃସିଂହ ବରାହାବତାର
ଜୟ ଜୟ ଶ୍ରୀ ନୃସିଂହ ନର କଳେବର ।
ଜୟ ଶ୍ରୀ ନୃସିଂହ ବାମନ ଜୟ ଚତୁର୍ଭୁଜ
ଜୟ ଜୟ ଶ୍ରୀ ନୃସିଂହ ପର୍ଶୁରାମ ଦ୍ୱିଜ ।
ଜୟ ଜୟ ଶ୍ରୀ ନୃସିଂହ ରାମ ଅବତାର
ଜୟ ଜୟ ଶ୍ରୀ ନୃସିଂହ କୃଷ୍ଣ କଳେବର ।
ଜୟ ଜୟ ଶ୍ରୀ ନୃସିଂହ ବଉଦ୍ଧ ମୂରତି
ଜୟ ଜୟ ଶ୍ରୀ ନୃସିଂହ କଳକି ରୂପଜ୍ୟୋତି ।
ଶ୍ରୀକୃଷ୍ଣ ଯେ ଏକା ରୁଦ୍ର ନୃସିଂହ ଯେ ବ୍ରହ୍ମ
ଶ୍ରୀ ନୃସିଂହ ଏକା ବିଷ୍ଣୁ ପୁରୁଷ ଉତ୍ତମ ।
ନୃସିଂହ ପ୍ରଭୁ ଅଟନ୍ତି ଏକା ପଞ୍ଚଭୂତ
ନୃସିଂହ ଅଟନ୍ତି ଏକା ଆତ୍ମାରୂପେ ତତ୍ତ୍ୱ ।
ଅଟନ୍ତି ନୃସିଂହ ସ୍ୱାମୀ ଏକା ସର୍ବ ଦେହୀ
ନୃସିଂହ ଉପରେ ବଡ଼ ସଂସାରରେ ନାହିଁ ।
ଜୟ ନୃସିଂହ ସର୍ବଜ୍ଞ ଜୟ ଚିନ୍ତାମଣି
ମହାଲକ୍ଷ୍ମୀ ଶାରଦା ଯେ ତୋର ପାଟରାଣୀ ।
ତୋ ଆଜ୍ଞାରେ ଚନ୍ଦ୍ର ସୂର୍ଯ୍ୟ ହୋନ୍ତି ଆତଯାତ
ତୋ ଆଜ୍ଞାରେ ବସୁମତୀ ପାଳନ୍ତି ଜଗତ ।
ଶ୍ରୀନୃସିଂହ ସ୍ୱାମୀ ସର୍ବଲୋକ ମାତାପିତା
ଶ୍ରୀନୃସିଂହ ସ୍ୱାମୀ ଚତୁର୍ବର୍ଗ ମୋକ୍ଷଦାତା ।
ଶ୍ରୀ ନୃସିଂହ ପ୍ରଭୁ ବିନୁ ନାହିଁ ଅନ୍ୟଗତି
ଶ୍ରୀଲକ୍ଷ୍ମୀ ନୃସିଂହ ସର୍ବ ଅବତାର ମୂର୍ତ୍ତି ।
ଶ୍ରୀମହାଲକ୍ଷ୍ମୀ ନୃସିଂହ ଚରଣେ ମୋ ସେବା
ବିପ୍ର ପୀତାମ୍ବରକୁ ଯେ ଗତି ମୁକ୍ତି ଦେବା ।



### ଅଲକ୍ଷ୍ମୀ ବିଭା

ଏଥୁଅନନ୍ତରେ ପୁଣ ନାରଦ ଗୋସାଇଁ
ବିଧାତାଙ୍କ ପାଦେ ନମି ପାଦ୍ୟ ଅର୍ଘ୍ୟ ଦେଇ
ବୋଇଲେ ମୁଁ କଥା ଏକା ପୁଚ୍ଛିବି ଛାମୁରେ
କମଳା ଇଳାକୁ ବିଭା କଲେ ରତ୍ନାକରେ ।
ଜ୍ୟେଷ୍ଠାକନ୍ୟା ଗୋଟିକିଯେ କେହିନବରିଲେ
ଏଡ଼େ ଅନୀତି କିମ୍ପାଇ ବରୁଣ ଯେ କଲେ ।

ଏକଥା ଆଗ କହିବା ମୋତେ ପିତାମହ
ଅଲକ୍ଷ୍ମୀ କନ୍ୟାକୁ ବିଭା ହୋଇଲାକେ କହ
ଶୁଣି ତାହା ବେଦବର ଆନନ୍ଦିତ ହେଲେ
ନୃସିଂହ ପୁରାଣ ଅର୍ଥ ଶୁଣ ତୁହି ଭଲେ ।
ଶ୍ରୀନୃସିଂହ ବିଭାହେଲେ ଦେବୀ କମଳିନୀ
ଇଳା କନ୍ୟାକୁ ଯେ ଶେଷହେଲେ ବିଭାପୁଣି
ଅଲକ୍ଷ୍ମୀ କନ୍ୟା ନିମନ୍ତେ ସର୍ବଜନେ ଆସି
କନ୍ୟାଗୁଣ ଦେଖି ସର୍ବେ ପଳାନ୍ତି ଯେ ଖସି ।
ରତ୍ନାକର ଉପ୍ରୋଧରେ ନକହନ୍ତି କିଛି
ବୋଧ ଦେଇଣ ମାତ୍ରକ ଯାନ୍ତି ସର୍ବେ ଘୁଞ୍ଚି ।
ସେହି ସକାଶେ ଲଜ୍ଜାରେ ରଖିଲେ ବରୁଣ
ସେ କନ୍ୟା ବିବାହ କଥା କହୁଥାଇ ଶୁଣ ।
ବରୁଣ ପାଶେ କହନ୍ତି ବସି ନୀରବତୀ
ଅଲକ୍ଷ୍ମୀକି ବିଭା କିମ୍ପା ନକଲ ଜଳପତି ।
ପିତାଘରେ କନ୍ୟା ଯେବେ ହୁଏ ରଜୋବତୀ
ସପତ ପୁରୁଷଯାଏ ପାଣି ନ ପାବନ୍ତି ।
ପୁରାଣରେ ଏହି କଥା ତୁମ୍ଭେ ଅଛ ଶୁଣି
କି ବିଚାରି ବିଭା ତୁମ୍ଭେ ନ କଲ ଦୁଲଣୀ ।
ଅରିତି ଠାକୁରାଣୀ ଯେ ତୁମ୍ଭର ସେ ମାତା
କନ୍ୟାବିଭା କିମ୍ପା ତାଙ୍କୁ ନୋହିଲାକ ଚିନ୍ତା ।
ନାତୁଣୀକି ବରଖଞ୍ଜା କାହିଁକି ନ କଲେ
କୁଳବୃଦ୍ଧାହୋଇ ସେହୁ ତୁନିତ ହୋଇଲେ ।
ଏ କଥା ତ ବଡ଼ ନିନ୍ଦା ଅଟେ ସଂସାରକୁ
ଆବର କଥାଏ ତହିଁ କହୁଛି ତୁମ୍ଭଙ୍କୁ ।
ଲକ୍ଷ୍ମୀର ପାଶକୁ ସ୍ୱାମୀ ଲେଖିବା ପ୍ରମାଣ
ଜଣାଇବା ଶ୍ରୀନୃସିଂହ ପ୍ରଭୁ ଛାମୁରେଣ ।
ଆମ୍ଭର ଆତଙ୍କ ଏ ଫେଡ଼ିବ ଅଚ୍ୟୁତ
ଏକଥାରେ ଆଉ ଚିନ୍ତା ନକରହେ କାନ୍ତ ।
କମଳାଛାମୁରେ ବେଗେ ଦେଖିବାଯେଲେଖ
ନିଶ୍ଚେ ନୃସିଂହ ଫେଡ଼ିବେ ଆମ୍ଭ ମନଦୁଃଖ
ନୀରବତୀ କଥା ଶୁଣି ବୋଲନ୍ତି ବରୁଣ
ଏକଥା ଗୋଟି ସଖିରେ ଅଟଇ ପ୍ରମାଣ ।
ଲକ୍ଷ୍ମୀର ଛାମୁକୁ ତେବେ ଲେଖିବା ଚିଟାଉ
ସବୁରି ମନର କଥା ଜ୍ଞାତ ମହାବାହୁ ।
ଅଲକ୍ଷ୍ମୀର କଥାଜ୍ଞାନ କମଳିନୀ ଜାଣେ
ରଜୋବତୀ କନ୍ୟାରଖି ନଯୋଗାଇ କ୍ଷଣେ ।
ସାନ କିୟା ବଡ଼ହେଉ ବୋଲି ପ୍ରତିପାଳି
ଏକଥା ପୁରାଣେ କହିଛନ୍ତି ତପଶାଳୀ ।
ପ୍ରଭୁଙ୍କ ଛାମୁକୁ ଲେଖ ସମସ୍ତେ ଶୁଣିବେ
ଲକ୍ଷ୍ମୀ ଛାମୁକୁ ଲେଖିଲେ କେହି ନ ଜାଣିବେ

କମଳ ନୃସିଂହ ହେବେ ଗୁପତେ ଏକଥା
ବର ଖଞ୍ଜା କରିବେ ସେ ଜଗନ୍ନାଥ ଯଥା ।
ପତ୍ନୀକି ପାଶେ ଏମନ୍ତ କହି ରତ୍ନାକର
ତାଳପତ୍ର ଲେଖନୀକୁ ଧରି ନିଜ କର ।
ଶ୍ରୀକମଳାମାତା ଜଗତର ଠାକୁରଣୀ
ଆମ୍ଭର ଦୁଃଖ ଜଣାଉ ତୁ ଗୋ ଚକ୍ରପାଣି ।
ଅଲକ୍ଷ୍ମୀ ପାଇଁ ଖଞ୍ଜିବେ ବର ଚକ୍ରଧର
ଶ୍ରୀହରି ପାଶେ ଜଣାଇ ଶୀଘ୍ର ଏହା କର ।
ଏସଂସାର ନିନ୍ଦାରୁ ଗୋ ହେବି ମୁହିଁ ପାରି
ମୋ କଥା ଲାଗିଲା ଜାଣି ତୁମ୍ଭଙ୍କୁ ଗୋ ଶିରୀ ।
ଏ ଘୋର ଆତଙ୍କୁ ମୋତେ ବହନଗୋରଖ
ଏରୂପେ ବରୁଣ ରାଜା ଲେଖିଲେ ଶ୍ରୀମୁଖ ।
କରୁଣା ମୃଦୁସୁଲୀକି ପାଶେ ବେଗେ ରାଇ
ବଦରିକା ପୁରେ ଚଳିଯିବୁ ବେଗେତୁହି ।
ଏ ଶ୍ରୀମୁଖ ଗୋଟି ଘେନି ବହନ ତୁ ଯିବୁ
ହଂସିନୀ ମୃଦୁସୁଲୀର ହସ୍ତେ ନେଇ ଦେବୁ ।
ହଂସିନୀ ନେଇଣ ଜଣାଇବେ କମଳିନୀ
କମଳା କହିବେ ନୃସିଂହଙ୍କ ଆଗେ ପୁଣି ।
ତେବେ ସେ ଆମ୍ଭରି କଥା ଜାଣିବେ ଅଚ୍ୟୁତ
ଶ୍ରୀମୁଖ ଗୋଟିକ ଦେଲେ ମୃଦୁସୁଲୀ ହସ୍ତ ।
ଶ୍ରୀମୁଖ ଧରି କରୁଣା ମୃଦୁସୁଲୀ ଗଲା
ବଦ୍ରିକାପୁରେ ହଂସିନୀ ହସ୍ତେନେଇ ଦେଲା ।
ବେନି ମୃଦୁସୁଲୀ ମିଶି ଲକ୍ଷ୍ମୀପାଶେ ଗଲେ
ପିତାଙ୍କ କଥା ଛାମୁରେ ଯାଇଁ ଜଣାଇଲେ ।
ଶୁଣ ମା କମଳା ଜଗତର ଠାକୁରାଣୀ
ଶ୍ରୀମୁଖ ଲେଖି ଅଛନ୍ତି ତୁମ୍ଭ ପିତା ପୁଣି ।
ଏସନ ବୋଲି ହଂସିନୀ ଦେଲା ନେଇଲେଖ
ମୁଦ ଭାଙ୍ଗି ମହାଲକ୍ଷ୍ମୀ ପଢ଼ନ୍ତି ଶ୍ରୀମୁଖ ।
ଏସନକ ସମୟରେ ଆସି ଭଗବାନ
କମଳାର ପୁରେ ବିଜେ କରିଲେ ବହନ ।
ଦେଖିଲେକ ମାତାକଲେ ଆସନକୁ ତେଜ୍ୟା
ଥୋଇଣ ଶ୍ରୀମୁଖ ତଳେ ପାଦକଲେ ପୂଜା ।
ପାଦେପଡ଼ି ଶୋଇଲେ ସେ ଶ୍ରୀଚରଣ ତଳେ
ଟୋଳି ମହାପ୍ରଭୁ ଧଇଲେକ ଆଣି କୋଳେ
ଲକ୍ଷ୍ମୀ ବୋଲନ୍ତି ଶୁଣିମା ହେଉ ଦୀନବନ୍ଧୁ
ଆପଣଙ୍କ ନାମଗୋଟି ଅଟେ କୃପାସିନ୍ଧୁ ।
ବରୁଣ ରାଜାର ଆମ୍ଭେ ଅଟୁ ତିନି ଜେମା
କମଳା ଇଳା ଆବର ଅଟେ ଅଲକ୍ଷମା ।
କନିଷ୍ଠା ଯେ ବେନି ଭଗ୍ନି ବିଭାହେଲୁ ଆମ୍ଭେ
ଜ୍ୟେଷ୍ଠାକନ୍ୟା ବିଭା ନୋହିଲାକ ବାସୁଦେବେ

ବିରୂପା ବଦନ ତାର ଦିଶନ୍ତେ ଅଶୋଭା
ତେଣୁ ସଂସାରେ ନୋହିଲେ ତାକୁ କେହିବିଭା
ତିନି ଭଗ୍ନୀ ଜନମିଲୁ ଧରି ତିନିଅଂଶ
ମୋହର ଜନ୍ମସ୍ଥାନେ ସେ ଥାଆନ୍ତି ଅବଶ୍ୟ ।
ତୁମ୍ଭର ଶ୍ରୀଅଙ୍ଗ ମୁଁ ଅର୍ଦ୍ଧେକ ଯେ ଧରି
ଭୃଗୁ ଋଷିଙ୍କର ଧ୍ୟାନୁ ମୁହିଁ ଅବତରି ।
ଯେଣୁ ଭାର୍ଗବୀ ନାମଟି ଅଟଇ ମୋହର
ଲକ୍ଷ୍ମୀବୋଲି ଡାକିଲେକ ବରୁଣର ପୁର ।
କ୍ଷୀର ସାଗରର ମଧ୍ୟେ ମୁହିଁ ଯେ ରହିଲି
କ୍ଷୀରାବଧି ସୁତାବୋଲିଣ ନାମ ବୋଲାଇଲି ।
ତେଣୁକରି ପ୍ରଭୁ ମୁହିଁ ଅଟେ ତୁମ୍ଭ ଅଙ୍ଗ
ତୁମ୍ଭର ଭୋଗ ଯାକଟି ମୋର ଅଟେ ଭୋଗ
ଈଳା କନ୍ୟା ଜନମିଲେ ଈଶ ଅଂଶ ଧରି
ବ୍ରହ୍ମାଅଂଶେ ଜନମିଲେ ଅଲକ୍ଷ୍ମୀ କୁମାରୀ ।
ବେନି ଭଗିନୀକି ବେନିଭାଇ ହେଲେ ବିଭା
ଅଲକ୍ଷ୍ମୀର ରୂପଦେଖି ନୋହିଲେକ ଲୋଭା ।
ବରୁଣ ରାଜାର ତୁମ୍ଭେ ହେଲ ଯେଣୁ ବନ୍ଧୁ
ତେଣୁ ଜ୍ୟେଷ୍ଠା କନ୍ୟା ବିଭାକର କୃପାସିନ୍ଧୁ
ରତ୍ନାକର ରାଜାକଥା ତୁମ୍ଭଙ୍କୁ ଲାଗଇ
ଏସନ କହି କମଳା ପାଦେ ପଡ଼ି ଶୋଇ ।
ମୋହର ପିତା ତୁମ୍ଭଙ୍କୁ ଲେଖିଲେ ଶ୍ରୀମୁଖ
ଶରଣ ପଶିଲେ ତାଙ୍କୁ ବେଗେ ପ୍ରଭୁ ରଖ ।
ତୁମ୍ଭ ବନ୍ଧୁ ହେଲେ ପରା ମୋ ବରୁଣ ରାଜା
ଜ୍ୟେଷ୍ଠାକନ୍ୟା ସକାଶୁଁ ସେ ପାଇଲେକ ଲଜ୍ଜା
କନିଷ୍ଠାକୁ ବିଭାକଲେ ଥାଉ ଜ୍ୟେଷ୍ଠ ସୁତା
ଅଯୋଗ୍ୟପଣରେ ତାହା ନକଲେ ମୋ ପିତା
ଜ୍ୟେଷ୍ଠା କନ୍ୟାକୁ ଆଗସେ କରିଥାନ୍ତେ ବିଭା
ତେବେ ଏହି ସଂସାରକୁ ଦିଶନ୍ତାଟି ଶୋଭା ।
ଏସନକ ବୋଲି ଲକ୍ଷ୍ମୀ ଜଣାନ୍ତି ଛାମୁରେ
ଆବର କଥାଏ କହୁଅଛି ଚକ୍ରଧରେ ।
ଜ୍ୟେଷ୍ଠା ହୋଇ କନ୍ୟାଥିବା ଜାଣଯାହାପୁର
କନିଷ୍ଠାକୁ ବିଭାକଲେ ବଡ଼ ଅସୁନ୍ଦର ।
ଦୂଷଣଟି ଏ ସଂସାରେ ତାକୁ ଉପୁଜଇ
ଋଷିମାନେ ପୁରାଣେ ଏକଥା ଛନ୍ତି କହି ।
ଏଣୁ ଜ୍ୟେଷ୍ଠାକନ୍ୟା ଆଗ ପ୍ରଦାନ କରିବ
ପଛେ ଯାଇ କନିଷ୍ଠାକୁ ବିଭାକରି ଦେବ ।
ଏସନ ବିଧାନ ଏକା ଜାଣନ୍ତି ପଣ୍ଡିତେ
ବୁଝିଲେ ଆପଣ ବିଭାହୋଇଲେ କେମନ୍ତେ ।
ଜ୍ୟେଷ୍ଠାଥାଉଁ କନିଷ୍ଠାକୁ ପିତା ବିଭାଦେଲେ
ତେଣୁ ଜ୍ୟେଷ୍ଠାକନ୍ୟାକୁ ଯେ କେହିନବରିଲେ
ଖୁଣ ଥିବ ବୋଲିକରି ଯାନ୍ତି ଅପସରି
ପିତାଙ୍କର ଚିନ୍ତା ମୋତେ ଲାଗିଲା ଶ୍ରୀହରି ।
ତେଣୁ ମୁହିଁ ଜଣାଉଛି ତବ ପଦ୍ମପାଦେ
ରହିଛ ସଚରାଚର ବ୍ୟାପି ସର୍ବ ହୃଦେ ।
କୋଟି କୋଟି ବ୍ରହ୍ମାଣ୍ଡର ତୁମ୍ଭେ ଅଧିପତି
ତୁମ୍ଭ ଆଶ୍ରିତେ ଅଛନ୍ତି ସପ୍ତଦ୍ୱୀପ ପୃଥ୍ୱୀ ।
ଚନ୍ଦ୍ର ସୂର୍ଯ୍ୟ ନୟନ ଯେ ପବନ ନିଃଶ୍ୱାସ
ଶରୀରର ଲୋମଯାକ ଅଟନ୍ତି ତ୍ରିଦଶ ।
ଆତ୍ମା ସ୍ୱରୂପ ସମସ୍ତ ଜୀବେ ତୁମ୍ଭ ବାସ
ଷଡ଼ରସ ଭୋଗ ଘେନି ହୋଇଣ ପ୍ରକାଶ ।
ଏଣୁ ସମସ୍ତ ଜୀବର ଅଟ ହେ ଠାକୁର
ତେଣୁ ସର୍ବଜନ ଚିନ୍ତାଲାଗେ ଚକ୍ରଧର ।
ଅଜପା ଜପ ମନ୍ତ୍ରରେ ଅଟ ତୁମ୍ଭେ ଗ୍ରାହୀ
ଏକମୂର୍ତ୍ତି ରୂପେ ସତ୍ତ୍ୱ ରଜତମ ହୋଇ ।
ବୁଦ୍ଧିଙ୍କ ଉପରେ ତୁମ୍ଭେ ଶ୍ରୀଚୈତନ୍ୟ ଅଟ
ପ୍ରାକଟ ଉଦ୍‌ଯୋଗୀଅଟ ତୁମ୍ଭେ ଯେ ବଳିଷ୍ଠ
ପ୍ରକୃତିଙ୍କର ଈଶ୍ୱର ଅଟ ଆତ୍ମାତତ୍ତ୍ୱ
ପରମବ୍ରହ୍ମ ସ୍ୱରୂପ ପରମାର୍ଥ ହେତୁ ।
ଯାବତ ପୁରାଣେ ମଧ୍ୟେ ତୁମ୍ଭ ଅର୍ଥ ଏକା
ପ୍ରାଣୀଙ୍କପାଇଁ ଅନନ୍ତରୂପ ତବ ଶାଖା ।
ପ୍ରଳୟ ଜଳର ମଧ୍ୟେ ମଧୁ ଦୈତ୍ୟ ମାରି
ମଧୁସୂଦନ ନାମଟି ଧର ଗଦାଧାରୀ ।
ଦଶଅବତାର ହୋଇ ଅସୁରଙ୍କୁ ମାରି
ମୁରକୁ ମାରିଣ ନାମ ବହିଛ ମୁରାରି ।
ଯାବତ ଶ୍ରଦ୍ଧାରେ ତୁମ୍ଭ ନାମ ଅଟେ ଶ୍ରଦ୍ଧା
ଆଉ ଯେ ଶ୍ରଦ୍ଧାରେ ନଉପୁଜେ କାଳବାଧା ।
ହସନ୍ତି ଶୁଣିଣ ପ୍ରିୟା ବାକ୍ୟ ଭାବଗ୍ରାହୀ
ବୋଇଲେ ବିଭା କରିବି ନିଶ୍ଚେ ସଖୀମୁହିଁ ।
ପିତାଙ୍କ ପାଶେ ପେଷିବା ଏବେ ଏକ ଚାର
ବିଭାର ଯୋଗାଡ଼ ଏବେ କରନ୍ତୁ ଶ୍ୱଶୁର ।
ଶୁଣି ଦେବୀ କମଳିନୀ ମନେ ଶ୍ରଦ୍ଧାବହି
କରୁଣା ମୃଦୁସୁଲୀକି ପାଖକୁ ଡକାଇ ।
ବୋଇଲେ ପିତାଙ୍କ ଆଗେ କହଯାଇ ସବୁ
ବର ଗୋଟିଏକ ଖଞ୍ଜିଦେବେ ମହାପ୍ରଭୁ ।
ବିଭାର ଯୋଗାଡ଼ମାନ ବେଗେ ସେ କରନ୍ତୁ
ତିନିଦିନପରେ ବିଭା ହେବ ଜାଣ ତତ୍ତ୍ୱ ।
ଶୁଣିଣ ସେ ମୃଦୁସୁଲୀ ବେଗେ ଗଲା ଚଳି
କହିଲା ସବୁ ବରୁଣ ରାଜା ଆଗେ ମିଳି ।
ବିଭାର ଯୋଗାଡ଼ ପ୍ରଭୁ ଶୀଘ୍ର ନିର୍ଭାକର
ନୃସିଂହ ଛାମୁରେ ଲକ୍ଷ୍ମୀ କହିଲେ ଅପାର ।

ତେଣୁ କରି ମହାପ୍ରଭୁ ଯିବେ ବର ଖଞ୍ଜି
କାଲିଆସି ତୁମ୍ଭଆଗେ ହେବେ ସର୍ବେ ରୁଜି ।
ଶୁଣିଣ ବରୁଣ ରାଜା ହୋଇଲେ ଆନନ୍ଦ
ଏଥୁଅନନ୍ତରେ ବାଣୀ ଶୁଣ ହେ ନାରଦ ।
କମଳା ବଚନ ପାଳି ଚଳିଲେ ନୃସିଂହ
ଉଦ୍ଦାଳକ ଋଷି ପୁରେ ମିଳିଲେକ ବେଗ ।
ଋଷି ମଧରେ ଶ୍ରେଷ୍ଠ ସେ ଅଟନ୍ତି ବିଶେଷ
ତାହାଙ୍କ ଆଶ୍ରମେ ବିଜେକଲେ ହୃଷୀକେଶ ।
ପ୍ରଭୁଙ୍କୁ ଦେଖି ସେ କଲେ ଆସନକୁ ତେଜ୍ୟା
ଷୋଳ ଉପଚାରେ କଲେ ହରିଙ୍କର ପୂଜା ।
ପୂଜା ପାଇଣ ସନ୍ତୋଷ ହେଲେ ଜନାର୍ଦ୍ଦନ
ବୋଲନ୍ତି ଯେ ସାବଧାନେ ଶୁଣ ତପୋଧନ ।
ତୁମ୍ଭର ସାଙ୍ଗରେ ବନ୍ଧୁ ହୋଇବା କାରଣ
ଆସିଲୁ ଗରୁଡ଼ ଚଢ଼ି ଏହି ତପୋବନ ।
ଆମ୍ଭର ପ୍ରିୟା ଅଟନ୍ତି ଜାଣ କମଳିନୀ
ତାହାଙ୍କର ଜ୍ୟେଷ୍ଠାଭଗ୍ନୀ ବରୁଣ ଦୁଲଣୀ ।
ତାହାଙ୍କ ନିମନ୍ତେ ଆଜ ବର ହେବ ତୁମ୍ଭେ ।
ତୁମ୍ଭଙ୍କୁ ଏ ଅନୁରୋଧ କରୁଅଛୁଁ ଆମ୍ଭେ ।
ପ୍ରଭୁଙ୍କ କୋମଳବାଣୀ ଶୁଣି ମହାଋଷି
ସେ ଅମୃତ ବଚନକୁ ଘେନିଲେ ବିଶେଷି ।
ନୃସିଂହଙ୍କ ଶ୍ରୀମୁଖରୁ ଶୁଣି ବିଭାକାର୍ଯ୍ୟ
ଆନନ୍ଦ ମନେ କହନ୍ତି ହସି ଉଦ୍ଦାଳକ ।
ବୋଲନ୍ତି ଯେ ସାବଧାନେ ଶୁଣ ଭାବଗ୍ରାହୀ
ତୁମ୍ଭ ଆଜ୍ଞାକୁ ଭାଙ୍ଗିବ କେହି ଦେହବହି ।
ତୁମ୍ଭର ଆଜ୍ଞାରେ ବିଭାହେବା ନିଶ୍ଚେ ଜାଣ
ହେଲେହେଁ ଋଷିଙ୍କ ଏହି କଥା ଅଭୂଷଣ ।
ଶୁଣିକରି ମହାପ୍ରଭୁ ବୋଲୁଛନ୍ତି ବସି
କହିବା ତେବେ ଶୁଣ ହେ ଉଦ୍ଦାଳକ ଋଷି ।
ଏ ସଚରାଚରଯାକ ଛନ୍ତି ଯେତେ ଲୋକ
ପତ୍ନୀ ନଥିବାରୁ ବିପ୍ରେ ହୁଅନ୍ତି ଅପୂଜକ ।
ତାହାଙ୍କୁଟି ନମସ୍କାର କରି ନ ଯୋଗାଇ
ନୃପତିମାନେ ସଭାରେ ବସାଇ ନଦେଇ ।
ପତ୍ନୀ ନଥିବା ଲୋକର ମୁଖକୁ ଚାହିଁଲେ
ପୂର୍ବଜନ୍ମ ସୁକୃତଟି ନାଶଯାଇ ଭଲେ ।
ଯେତେସେ ଯୋଗୀନ୍ଦ୍ର ହେଲେକାମନାହିଁ ଛାଡ଼ି
ସ୍ୱପ୍ନେ ବୀର୍ଯ୍ୟ ଖସିଯାଏ ପଦାରେ ଯେପଡ଼ି ।
ମାତୃହରଣ ଦୋଷଟି ତାହାକୁ ଲାଗଇ
ତେଣୁ ବିଧାତା ପୃଥ୍ୱୀକି ମାତବୋଲି କହି ।
ଆହୁରି ଦୋଷକେ ଜାଣ ଅଛି ତପଶୀଳ
ପୁତ୍ର ନଥିଲେ ନରକେ ପଡ଼ଇ କେବଳ ।

ଅଗ୍ନିକା ମହର୍ଷି ଯମପୁରୁ ବାହୁଡ଼ିଲେ
ପୁତ୍ର ନଥିବାରୁ ସେହୁ ମୃଗପତ୍ନୀ କଲେ ।
କୁମାରେକ ଉପୁଜାଇ ଗଲେ ସ୍ୱର୍ଗପୁର
ବ୍ରହ୍ମା ବିଷ୍ଣୁ ହରରୂପେ ଅଟେ ଯୋଗାରୂଢ଼
ସେହିମାନେ ହୋଇଛନ୍ତି ପତ୍ନୀ ପୁଣି ବିଭା
ସମସ୍ତଙ୍କ ଋଷି ପତ୍ନୀ ସଂସାରେ ଦେଖିବା ।
ବଶିଷ୍ଠ ଅଙ୍ଗିରା ଅତ୍ରି ବ୍ୟାସ ଋଷିଯାକ
କାହାର ବା ପତ୍ନୀ ନାହିଁ ଦେଖ ଉଦ୍ଦାଳକ ।
ଏ କାୟାଗୋଟି ବହିଲେ ସ୍ତିରୀ କାହିଁ ଛାଡ଼ି
ମାୟାଟି ଏ ସ୍ତିରୀଭୋଗ ମୈଥୁନରେ ଜଡ଼ି ।
ସଂସାର ଭିତରୁ ତୁମ୍ଭେ ବାହାର ହେଲକି
ଅଭୂଷଣ ପତ୍ନୀ ବୋଲି ବୋଇଲ କାହିଁକି ।
ଉଦ୍ଦାଳକ ବୋଇଲେ ଏ କଥା ଅଟେ ସତ
ଯାଚିଲା କନ୍ୟାକୁ ବିଭା ନୋହେ ଅପଣ୍ଡିତ ।
ମନେ ମନେ ଏହା ପାଞ୍ଚି ଉଦ୍ଦାଳକ ଋଷି
ଆଜ୍ଞା ଭାଙ୍ଗିଲେ ପ୍ରଭୁର ହେବି ମୁହିଁ ଦୋଷୀ ।
ଏତେ ପାଞ୍ଚି ଶ୍ରୀନୃସିଂହ ପାଦେ କଲେ ସେବା
ବୋଇଲେ ନିଶ୍ଚେ ମୁହିଁ ସେ କନ୍ୟାହେବିବିଭା
ଶୁଣିଣ ସାନନ୍ଦ ଚିତ୍ତ ହେଲେ ମହାପ୍ରଭୁ
ସେ କନ୍ୟା କଥା ତୁମ୍ଭଙ୍କୁ ଲାଗେ ଜାଣ ସବୁ ।
ଋଷିଗଣ ସଙ୍ଗେ ଘେନି ଚଳି ତୁମ୍ଭେ ଯାଅ
ତୁମ୍ଭେ ବିଭା ହେଲେ ମୋର ଫିଟିବ ସନ୍ଦେହ
ଋଷିଙ୍କୁ ବୋଧି ଗରୁଡ଼େ ବିଜେ କରି ହରି
ଲକ୍ଷ୍ମୀର ପାଶେ ମିଳିଲେ ବଦରିକାପୁରୀ ।
କମଳା ପାଶେ କହନ୍ତି ବସି ପୁଣ୍ୟଶ୍ଳୋକ
କାଲି ଯାଇ ବିଭା ହେବେ ମୁନି ଉଦ୍ଦାଳକ ।
ଏହା ଶୁଣି ମହାଲକ୍ଷ୍ମୀ ହୋଇଲେ ଆନନ୍ଦ
ଏଥୁ ଅନନ୍ଦରେ ବାଣୀ ଶୁଣ ହେ ନାରଦ ।
ଉଦ୍ଦାଳକ ମହାଋଷି ଆସନରେ ବସି
ତତକ୍ଷଣେ ସୁମରିଲେ ସକଳ ମହର୍ଷି ।
ସ୍ୱ ଆସନ ଟଳିଗଲା ଜାଣି ଋଷିଯାକ
ବିଭାହେବା ନିମନ୍ତେ ଯେ ସ୍ମରେ ଉଦ୍ଦାଳକ ।
ଉଦ୍ଦାଳକ ପୁରେ ମିଳି ସର୍ବ ମହାଋଷି
ନାରଦଙ୍କୁ ଦୂତପଣେ ଜଳାଧିପେ ପେଷି ।
ଚଳିଲେ ନାରଦ ଋଷି ରତ୍ନାକର ପୀଶ
ବରୁଣର ପାଶେ ଯାଇ ହୋଇଲେ ପ୍ରବେଶ ।
ବିଭାର ବିଧାନଯାକ କହିଲେ ରାଜାଙ୍କୁ
ସିନ୍ଧୁତୀରକୁ ଆସ ଯେ ଘେନିଣ କନ୍ୟାକୁ ।
ଉଦ୍ଦାଳକ ଋଷିଙ୍କି ଶ୍ରୀହରି ଛନ୍ତି ବରି
ବହନ ହୋଇ ଚଳିବା କନ୍ୟା ଗୋଟି ଧରି

ଶୁଣିଣ ବରୁଣ ରାଜା ଆନନ୍ଦିତ ହେଲେ
ନୀରବତୀର ପାଶରେ ସମସ୍ତ କହିଲେ ।
ବୋଇଲେକ ସିନ୍ଧୁତୀରେ କରିବା ଯେ ବିଭା
ଯୋଗାଡ଼ମାନ କରିବା ତହିଁ ନେଇ ନିର୍ଭା ।
କହି ବରୁଣ ଯୋଗାଡ଼ମାନ ହସ୍ତେ ଧରି
ନୀରବତୀ ମାତା କନ୍ୟାକୁ ଯେ ବେଶକରି ।
ଚଳିଗଲେ ତତକ୍ଷଣେ ସମୁଦ୍ରର ତୀର
ବିଶ୍ୱକର୍ମାକୁ କହିଲେ ଡାକି ରତ୍ନାକର ।
ଛାୟା ମଣ୍ଡପ ତକ୍ଷଣେ କର ଯାଇ ନିର୍ଭା
ଏ ସ୍ଥାନେ କନ୍ୟାଗୋଟିକି ପ୍ରଦାନ କରିବା ।
ତତକ୍ଷଣେ ବିଶ୍ୱକର୍ମା ନିର୍ମାଣିଲା ପୁରୀ
ରତ୍ନମାଳା ଲମ୍ବାଇଲା ତହିଁ କେରି କେରି ।
ଏଥୁଅନ୍ତେ ମିଳିଲେକ ଆସି ଋଷିଯାକ
ବରବେଶ କରାଇଲେ ଋଷି ଉଦ୍ଦାଳକ ।
ଦେବକନ୍ୟାମାନେ ଆସି ବହୁ ତହିଁ ମିଳି
ମଙ୍ଗଳ ମନାସି ତହିଁ ଦେଲେ ହୁଳହୁଳି ।
ବାଜଇ ଶଙ୍ଖ ମହୁରୀ ବଂଶୀ ଅଳାବେଣୀ
ମଙ୍ଗଳନାଦରେ ଗୀତ ଗାବନ୍ତି କାମିନୀ ।
ବାଟରେ ବରଣ କଲେ ରତ୍ନାକର ଆସି
ବରହସ୍ତ ଧରି ବେଦୀପରେ ଯାଇ ବସି ।
ଆଶିଷମନ୍ତ୍ର କାଣ୍ଡିକ ବଶିଷ୍ଠ ଯେ ପଢ଼ି
ବେଦୀ ଉପରେ ବସିଲେ ଋଷିମାନେ ବେଢ଼ି ।
ବରୁଣ ପୂଜା ସାରିଣ ସଙ୍କଳପ କଲେ
ଗନ୍ଧାଧିବାସ କରିଣ ବୈଶାଳା ପୋତିଲେ ।
ବିଭାର ବିଧି ଯେତେକ ସବୁ ହେଲେ କରି
ମଧୁପର୍କ ଆଚମନ ଲବଣ ଚଉଁରୀ ।
ବରର ପାଲଟା ଶାଢ଼ୀ କନ୍ୟା ପିନ୍ଧାଇଲେ
ଅସରଳ ସୂତା ବାନ୍ଧି ବସୁଧାରା ଦେଲେ ।
ଯଜ୍ଞୋପବୀତ ପିନ୍ଧିଣ ଋଷି ଉଦ୍ଦାଳକ
ମୁକୁଟ ଶିରେ ବାନ୍ଧିଣ ହେଲେ ଅଭିଷିକ୍ତ ।
ଛାୟାମଣ୍ଡପର ବେଦୀପରେ ଯାଇଁ ବସି ।
ମହାବାକ୍ୟ ପଢ଼ନ୍ତି ଯେ ବଶିଷ୍ଠ ମହର୍ଷି ।
ଶ୍ରୀ ବରୁଣ ମହାରାଜା କନ୍ୟା କୋଳେ ଧରି
ହସ୍ତଗ୍ରନ୍ଥି ବାନ୍ଧିଲେକ ବଶିଷ୍ଠ ଆଚାରୀ ।
ବେନିଗୋତ୍ର ଉଚ୍ଚାରିଣ ଶଙ୍ଖେ ଦେଲେ ଜଳ
ହସ୍ତଗ୍ରନ୍ଥି ଫେଡ଼ିଲେକ ବଶିଷ୍ଠ ସୁଶୀଳ ।
କଟମସିଣା ଉପରୁ କନ୍ୟା ଉଠାଇଲେ
ବରର ବାମଭାଗରେ କନ୍ୟା ବସାଇଲେ ।
ତହିଁ ଉତ୍ତାରୁ ଯେ ପୁଣ କରାଇଲେ ହୋମ
କୁଶାଣ୍ଡି ବିଧି କରିଣ ଜାଳି ହୁତାଶନ ।

ଲାଜାହୋମ ସାରି ପୁଣି ଜୁଆ ଖେଳାଇଲେ
ବରୁଣ ରାଜା ଅନେକ ଯଉତୁକ ଦେଲେ ।
ବରକନ୍ୟାକୁ ବନ୍ଦାଇ ନୀରବତୀ ରାଣୀ
ଠାଆ ସଜରେ ଅମୃତ ପରଷିଲେ ଆଣି ।
ଭୁଞ୍ଜିଣ ଯେ ବରକନ୍ୟା ହୋଇଲେ ସନ୍ତୋଷ
କରନ୍ତି ସମସ୍ତ ଋଷିଗଣେ ବସି ଗ୍ରାସ ।
ବ୍ରହ୍ମା ପରଷନ୍ତି ଭାଣ୍ଡ ଅମୃତ ଯେ ଆଣି
ଭୁଞ୍ଜିଣ ସନ୍ତୋଷ ହେଲେ ସର୍ବ ଋଷି ପୁଣି ।
ଏଥୁଅନନ୍ତରେ ରାତ୍ର ହୋନ୍ତେ ଆସି ତହିଁ
ମଧୁ ଶଯ୍ୟାରେ ଶୋଇଲେ ବର କନ୍ୟା ଯାଇ
ଚଉଠି ଆଦି ସପତ ମଙ୍ଗଳା ଯେ କଲେ
ସମସ୍ତ ଋଷି ଯେ ଯାହା ପୁରେ ଚଳିଗଲେ ।
ବ୍ରହ୍ମାଏ ବୋଇଲେ ଶୁଣ ଆହେ ରତ୍ନାକର
ସର୍ବଦିନେ ଜାଣ ଥିବ ତୋର ଏହି ପୁର ।
ତ୍ରେତାଯୁଗରେ ଶ୍ରୀରାମ ହେବେ ଅବତାର
ସୀତାକୁ ହରଣ କରି ନେବ ଦଶଶିର ।
ମରୁତ ରାଜାର ଶାପେ ବାଳୁତ ଶ୍ରୀରାମ
କୁଶଶଯ୍ୟା କରି ବସିବେକ ପରଂବ୍ରହ୍ମ ।
ସେତୁବନ୍ଧ ପକାଇଣ ସର୍ବେ ହେବେ ପାରି
ସୁବଳ ପର୍ବତେ ରହିବେ ସବୁ ରକ୍ଷ ହରି ।
ରାବଣକୁ ମାରି ରାମ ସୀତାଙ୍କୁ ଆଣିବେ
ଅଯୋଧ୍ୟାପୁରକୁ ଯାଇ ଅଭିଷିକ୍ତ ହେବେ ।
ଏ ସ୍ଥାନେ ବାଳୁତ ଭାବ ଶ୍ରୀରାମର ଯିବ
ରାମେଶ୍ୱର ଏ ସ୍ଥାନରେ ପୂଜିବେ ରାଘବ ।
ଏତେ କହି ବ୍ରହ୍ମା ଚଳିଗଲେ ନିଜ ଦେଶ
ଉଦ୍ଦାଳକ ଗଲେ ପୁଣ ବରୁଣର ପାଶ ।
ବୋଇଲେ ଆମ୍ଭେ ତ ଏବେ ଯାଉଅଛୁ ଚଳି
ରତ୍ନାକର ବୋଇଲେକ ଶୁଣ ତପଶାଳୀ ।
ଦୁହିତାର ଦଶଦୋଷ କରିବାକ କ୍ଷମା
ବ୍ରାହ୍ମଣ ପଦକୁ ତୁମ୍ଭେ ଅଟ ଦ୍ୱିତୀବ୍ରହ୍ମା ।
ଉଦ୍ଦାଳକ ବୋଇଲେ ଯେ ଶୁଣ ରତ୍ନାକର
ମଧୁଶଯ୍ୟାରେ ଚିହ୍ନିଲି ସବୁ ଦୁହିତାର ।
ନୃସିଂହ ଆଜ୍ଞା ଅମୃତ ପ୍ରାୟ ମୁହିଁ ମଣି
ବିଭା ହୋଇଲି ନ ଦେଖି ତୁମ୍ଭର ଦୁଲଣୀ ।
ସେ ଯାହା ଅଦୃଷ୍ଟ ନିଶ୍ଚେ କରିବ ସେ ଭୋଗ
ପତ୍ନୀଠାରେ ଗୃହସ୍ଥର ନ ଥାଏ କି ସ୍ୱାର୍ଥ ।
ତୁମ୍ଭ ଦୁହିତା ଗୁଣ କି ନାହିଁ ତୁମ୍ଭେ ଜାଣି
ଅଧିକ କଥା କହିବି ଆଉ କିସ ପୁଣି ।
ଏତେ କହି ଉଦ୍ଦାଳକ ମେଲାଣି ହୋଇଲେ
କନ୍ୟାକୁ ଘେନି ଆପଣା ପୂରରେ ମିଳିଲେ ।

ଉଦ୍ଦାଳକ ଗଲାରୁ ସେ ବରୁଣ ଯେ ଗଲେ
ଜଳାଶୟ ପୁରେ ଯାଇ ପ୍ରବେଶ ହୋଇଲେ
ଏଥୁଅନନ୍ତରେ ବାଣୀ ଶୁଣ ହେ ନାରଦ
ଉଦ୍ଦାଳକ ପତ୍ନୀଙ୍କର ଯେବଣ ସମ୍ବାଦ ।
ନିଜ ଆଶ୍ରମେ କରନ୍ତି ଘେନି ଗୃହବାସ
ଅଲକ୍ଷ୍ମୀଙ୍କି ସେହିକଥା ଲାଗେ ଜାଣ ବିଷ ।
ପ୍ରାତଃକାଳରୁ ଆହ୍ନିକେ ଯାନ୍ତି ମହାମୁନି
ଘୃତ ହୋମ କରି ନିତି ପୂଜନ୍ତି ଯେ ଅଗ୍ନି ।
ସେ କଥାମାନ ଦେଖିଣ ଉଦ୍ଦାଳକ ନାରୀ
ଶରୀର ଘାଣ୍ଟି ଦେଇଣ ହୁଅଇ ବିଦାରି ।
ଏସନକ ରୀତିରେ ଯେ ଗଲା କେତେ ଦିନ
ପୁତ୍ର ଦୁହିତା ଯେ ବେନି ହେଲେ ତହୁଁ ଜନ୍ମ
ଦେଖିଣ ଅପୂର୍ବ ଗୁଣ ସେହି ଦୁହିଁଙ୍କର
ପୁତ୍ରନାମ ବାଇଧର ଦେଲେ ମୁନିବର ।
ଦୁହିତାର ନାମ ଦେଲେ ଅଲିଅଳ ପଦ୍ମା
ଶୁଣ ହେ ନାରଦ ଯେ କହନ୍ତି ବେଦବ୍ରହ୍ମା ।
ଦକ୍ଷ ପ୍ରଜାପତିଙ୍କ ଷାଠିଏ ଦୁହିତାରୁ
ତେର କନ୍ୟା ବିଭାହେଲେ କଶ୍ୟପ ଆଦ୍ୟରୁ
ବାଳମୁଖୀ ବୋଲି କନ୍ୟା ଥିଲାକ ପ୍ରସିଦ୍ଧି
ସେ ତେର କନ୍ୟାଙ୍କମଧ୍ୟେବାର କନ୍ୟାଦେବୀ
ବାଇଧରକୁ ଯେ ବିଭାକଲେ ସେ କନ୍ୟାକୁ
ଅପଶିଖକୁ ଯେ ଦେଲେ ଅଲ୍ୟଳ ପଦ୍ମାକୁ ।
ପୁତ୍ର ଦୁହିତାକୁ ବିଭା କଲେ ଉଦ୍ଦାଳକ
ଶ୍ରୀବିଷ୍ଣୁଙ୍କ ପୂଜା ସେହୁ କରନ୍ତି ଅନେକ ।
ଷୋଡ଼ଶୋପଚାରେ ସେହି ପୂଜାବିଧି କରି
ନିତି ଦାନ ଆହୁତି ଯେ ଦ୍ୟନ୍ତି ତପଚାରୀ ।
ହୋମ ଯଜ୍ଞ ପୂଜା ଦେଖି ସାଗରର ସୂତା
ବାନ୍ତି ଓଛାଳ କରିଣ ମଣେ ବିଷ ପିତା ।
ଋଷିଙ୍କ ମନ୍ଦିରେ ଶୁଣନ୍ତେ ସେ ବେଦଧ୍ୱନି
ଅନୁବ୍ରତେ ବସିକରି କାନ୍ଦଇ କାମିନୀ ।
ଦୋହରା ଅଗ୍ନିଙ୍କର ଯେ ଘୃତ ଗନ୍ଧବାସେ
ବାନ୍ତି ଓଛାଳ କରିଣ ଗୃହରେ ନ ପାଶେ ।
ଋଷିଙ୍କ ମନ୍ଦିରଯାକ ଅସଂସ୍କାର କରେ
ଘରୁ ବାହାର ହୋଇଣ ବୁଲଇ ଦାଣ୍ଡରେ ।
ଘର ହାନିଲାଭ ଲୋକଙ୍କର ଆଗେ କହି
ବାଇଙ୍କର ପ୍ରାୟେ ହୋଇ ଛିଡ଼ା ହୋଇଥାଏ ।
ନୀଚ ଲୋକଙ୍କର ସଙ୍ଗେ ହେଉଥାଇ କଥା
ଭଲଲୋକ ଦେଖିଲେ ଯେ ନ ପାତଇ ମଥା ।
ଅଲାବୁକ ପଣରେ ଯେ ହସେ କରକର
କାକପକ୍ଷୀ ପ୍ରାୟ ସେହୁ ଚାହେଁ ନିରନ୍ତର ।
କେତେ କାଳର ସେ ଅବା ଅଟେ ବୃଦ୍ଧାସ୍ତିରୀ
କେନ୍ଦୁ କାଠ ପ୍ରାୟ ଦିଶେ ଶରୀର ତାହାରି ।
ମାଙ୍କଡ଼ା ପଥର ପ୍ରାୟ ତାର ଦେହ ଭାବ
ଦେହକୁ ଆଉଁସି ଦେଲେ ହସ୍ତ ଛିଡ଼ିଯିବ ।
ଲୌହ ପ୍ରତିମା ପରାୟେ ଦିଶେ ସେହୁ ଶୋଭା
ଦେହ ଅନୁରୂପ ତାର ଶ୍ରୀମୁଖର ପ୍ରଭା ।
ପିଙ୍ଗଳ ବରନ କେଶ ଅଟେ ଲମ୍ବକର୍ଣ୍ଣ
ରକ୍ତବର୍ଣ୍ଣ ପ୍ରାୟେ ଦିଶେ ତା ବେନି ନୟନ ।
ଦୋପଖା ଚୂଲିର ପ୍ରାୟ ଦିଏ ନାସାପୁଡ଼ା
ଅଧର ବର୍ଣ୍ଣ ଦିଶଇ ଯେହ୍ନେ ଦରପୋଡ଼ା ।
ହରିଦ୍ରା ବର୍ଣ୍ଣ ପରାୟ ଦିଶେ ଦନ୍ତପନ୍ତି
ଲଙ୍ଗଳ ଲୁହା ପ୍ରାୟେକ ଜିହ୍ୱାର ଆକୃତି ।
ବଚନ କହୁଥିଲେ ସେ ବ୍ୟାଘ୍ର ପ୍ରାୟ ବୋବି
ଡରିକରି ପାଶେ କେହି ନ ରହନ୍ତି ଭୁବି ।
ଅଳଙ୍କାର ପିନ୍ଧିଲେ ସେ ଦିଶେ ଅସୁନ୍ଦର
ଚରଣ ବେନି ତା ଲମ୍ବକ୍ଷୁଦ୍ର ଅଟେ କର ।
ଖଚର ପ୍ରାୟ ତା ବୋବି ଓଟପ୍ରାୟ ଚାଲି
ମନକଲେ ଚଉଦିଗ କ୍ଷଣେ ପାରେ ବୁଲି ।
ମଶାଣି ଭୂମିଯାକ ସେ ବୁଲେ ଶ୍ରଦ୍ଧାକରି
କାଠ ଗୋଟିଆଇ ନେଇ ଚୂଲିରେ ସେ ଭରି ।
ଅନ୍ନ ବ୍ୟଞ୍ଜନଯାକ ସେ କାଠେ ଦିଏ ରାନ୍ଧି
ଋଷି ଆସି ତିଆରିଲେ ଦାଣ୍ଡେ ବସି କାନ୍ଦି ।
ଘରର ହାନିଲାଭ ସେ କିଛି ହିଁ ନ ଜାଣି
କ୍ରୋଧ ହୋଇଣ ସେ କଥା କହେ କୋପେ ପୁଣି ।
ପତ୍ନୀର ଏ ଅବିବେକ ଦେଖି ଉଦ୍‌ଦାଳକ
ପାଶେ ବସାଇ ତିଆରି କହନ୍ତି ଅନେକ ।
ବୋଲନ୍ତି ଘର ମହତ୍ତ୍ୱ ଅଟଇ ଯେ ନାରୀ
ଦାଣ୍ଡରେ ତୁ ବୁଲୁଅଛୁ ଲଜ୍ଜା ତ୍ୟାଗକରି ।
ଦୋହରା ଘରେ ପକାଉ ମଶାଣିର କାଠ
ତିଆରି କହିଲେ ପୁଣି ବସି ହେଉ ରୁଷ୍ଟ ।
କେଶ ମୁକୁଳା କରିଣ ଦାଣ୍ଡେ ବୁଲୁଥାଉ
ମେଷ ବୋଦା ହାଣିବାର ସ୍ଥାନେ ଛିଡ଼ା ହେଉ ।
ବାହାରର ହାଣ୍ଡି ଆଣି ଭିତରେ ପୁରାଉ
ନୀଚ ଲୋକଙ୍କୁ ଛୁଇଁଣ ବସନ ନ ଧୋଉ ।
କି କି ଅବିଗୁଣ ତୁହି ଦେଖିଲୁ ମୋ ଗୃହେ
ସଂସାରରେ ମୋତେ ନିନ୍ଦାକଲେ ଅପ୍ରମେୟେ ।
ପତି ମୁଖରୁ ଏସନ ବାକ୍ୟ ଦେବୀ ଶୁଣି
ବୋଇଲେ ହେ ଋଷି ଶୁଣ କହିବି ଯେ ପୁଣି ।
ତୁମ୍ଭର ଗୃହରେ ହୋମ ଘୃତଧୂମ ବାସେ
ସେହି ବାସନା ଆସିଣ ଲାଗିଲେ ମୋ ନାସେ ।

ଶରୀରରେ ଲାଗି ମୋର ହୁଅଇ ବିକଳି
ବେଦଧ୍ୱନି ଶୁଣିକରି ମରୁଥାଇ ଭାଳି ।
ଯେବଣ କଥା ମୋହର ଅଟେ ପ୍ରାଣପ୍ରିୟ
ସେ କଥାମାନ କହୁଛି ମୁନି ଶୁଣିଥାଅ ।
ଯେବଣ ଗୃହେ ଉପୁଜେ ନିତ୍ୟ ଜାଣ କଳି
ଝୁଙ୍କାଝୁଙ୍କି ହୋଇ ଲାଗିଥାନ୍ତି ବାରୁଆଳି ।
ମନ୍ଦିରଟି ଅସଂସ୍କାର ଦେଖେ ଯାର ଘର
ସେ ସ୍ଥାନଟି ମୋତେ ସୁଖ ଲାଗେ ମୁନିବର ।
ପତି ପୁତ୍ର ଭାରିଯା ଯେ ଦାସଦାସୀ ବହୁ
କଳି ଦ୍ୱନ୍ଦ ଲାଗୁଥିଲେ ମୋତେ ସୁଖ ସେହୁ ।
ଶକଟା ପଶା ଜୁଆ ଯେ ମିଥ୍ୟା କଥା ଯହିଁ
ସେ ସ୍ଥାନ ଅମୃତପ୍ରାୟ ମୋତେ ଯେ ଲାଗଇ ।
ସୁଜନ ସାଧୁଙ୍କୁ ସେହୁ ଅନୁକ୍ଷଣେ ନିନ୍ଦେ
ଆପେ ଆପେ ପ୍ରଂଶସିଣ ଆପେ ଆପେ ବନ୍ଦେ
ସମସ୍ତ ଜୀବଙ୍କୁ ପୁଣି କରଇ ଯେ ହିଂସା
ଏମନ୍ତ ସ୍ଥାନମାନଙ୍କେ ଅଟଇ ମୋ ବସା ।
ଆମିଷ ଦୁର୍ଗନ୍ଧମାନ ଯେଉଁ ସ୍ଥାନେ ପୋଡ଼ା
ମେଷ ଗୋ ମହିଷ ହଣାସ୍ଥାନ ଯହିଁ ଲୋଡ଼ା ।
ସେହି ସ୍ଥାନମାନଙ୍କରେ ମୋର ଥାଇ ମନ
ଯହିଁରେ ମନ ନଥାଇ ଶୁଣ ତପୋଧନ ।
ବେଦର ବଚନ ଯହିଁ ହୁଏ ନୃତ୍ୟ ଗୀତ
ସେ ସ୍ଥାନମାନଙ୍କେ ମୋର ନ ବଳଇ ଚିତ୍ତ ।
ସୁମଙ୍ଗଳ ସୁବିଧାନ ବାଜେ ବାଦ୍ୟ ଯହିଁ
ତାହା ଶୁଣିଲେଟି ଜାଣ କମ୍ପେ ମୋର ଦେହୀ ।
ସୁଜନ ସୁପୁରୁଷ ସୁବିଜ୍ଞବନ୍ତ ନାରୀ
ଅପୂର୍ବ ସୌନ୍ଦର୍ଯ୍ୟ ରୂପବତୀ ମନୋହାରୀ ।
ଯେବଣ ସ୍ଥାନରେ ମୁହିଁ ଦେଖଇ ପବିତ୍ର
ସୁବଶେ ବେଶ ଯେ ନିତ୍ୟ କରୁଥାଇ ଗାତ୍ର ।
ସୁବେଶ ସ୍ୱଗୃହବାସ ଦେଖେ ମୁହିଁ ଯହିଁ
ହବିଷ୍ୟ ଅନ୍ନମାନ ଯେ ଦେବଗୃହେ ହୋଇ ।
ଯେହୁ ତୀର୍ଥ ବୁଲି ଦେବ କରଇ ଦର୍ଶନ
ଜାତିପୁଷ୍ପ ମଣ୍ଡିହୋଇ ଯେ ଘେନେ ଚନ୍ଦନ ।
ଯାହାର ଗୃହରେ ଘୃତ ବାସନା ଯେ ରସ
ଏମାନ ଲାଗିଲେ ମୁହିଁ ମଣଇ ତା ବିଷ ।
ସେ ରସନା ଲାଗି ମୋର ବାନ୍ତି ହୁଏ ଦେହ
ବେଦଧ୍ୱନିକୁ ଶୁଣିଲେ ଲାଗେ ମୋତେ କୋହ ।
ଗରୁଡ଼ ଦେଖି ପଳାନ୍ତି ଯେହ୍ନେ କାଳସର୍ପ
ସେହିରୂପେ ଭାଜିଲାଣି ଏବେ ମୋର ଦର୍ପ ।
କୁ ସ୍ଥାନେ ବାସ କରିବ ଯାଇ ଯେବେ ତୁମ୍ଭେ
ଦୁହେଁ ମିଶିଣ ରହିବା ଜାଣ ଚାଲ ଆମ୍ଭେ ।

ଏରୂପେ ସ୍ୱାମୀର ଆଗେ କହଇ ତରୁଣୀ
ମନରେ ଚିନ୍ତା କଲେକ ଋଷି ତାହା ଶୁଣି ।
ବୋଇଲେ ଏ ସ୍ତିରୀପ୍ରାୟ ପତ୍ନୀ ଯେବେ ଥିବ
କୁଳକୁ କଳଙ୍କ ହୋଇ ଭସ୍ମ କରିଦେବ ।
ସୁତ ବିତ୍ତ ଧର୍ମ ପୁଣ୍ୟ କରି ସବୁ କ୍ଷୟ
ଏ ସ୍ତିରୀ ଥିଲେ ଗୃହରେ ନୁହେ ମୋର ଜୟ ।
ବାର ବାତୁଳୀଙ୍କଠାରୁ ଅଟେ ଏ ନିର୍ଲ୍ଲଜ
ଏହାର ସଙ୍ଗରେ ମୋର ନାହିଁ ଆଉ କାର୍ଯ୍ୟ ।
ଏସନକ ମନ ମଧ୍ୟେ ପାଞ୍ଚି ମହାମୁନି
ବୋଇଲେ କହିବା ଏବେ ଶୁଣରେ କାମିନୀ ।
ଏ ସ୍ଥାନ ସୁଖ ନୋହିଲା ଜାଣଯେବେ ତୋତେ
କୁ ସ୍ଥାନରେ ବାସ ଯାଇ କରିବା ନିଶ୍ଚିନ୍ତେ ।
ଅଗମ୍ୟ ସ୍ଥାନକୁ ଯାଇ ରହିବା ବନରେ
ଶୁଣିଣ ବରୁଣ ଜେମା ଉଠିଲେ ତପୃରେ ।
ପୁତ୍ରବଧୂ ବେନିଙ୍କୁ ଯେ ସଙ୍ଗତରେ ଘେନି
ଅଗମ୍ୟ ବନେ ମିଳିଲେ ଯାଇ ପତି ପତ୍ନୀ ।
ସେ ଦିନ ହୋଇଅଛି ଯେ ଶନିଶ୍ଚର ବାର
ମିଳିଲେ ଅଶ୍ୱତ୍ଥ ବୃକ୍ଷମୂଳେ ମୁନିବର ।
ବୋଇଲେ ଏଠାରେ ବାସ କରରେ କାମିନୀ
ଯାଉଛୁ ତୁମ୍ଭର ପାଇଁ ଭକ୍ଷ୍ୟ ଆମ୍ଭେ ଆଣି ।
ଏ ରୂପେ କହିଣ ଋଷି ଚଳିଲେ ବହନ
ନିଜ ଆଶ୍ରମେ ମିଳିଲେ ଯାଇ ତପୋଧନ ।
ବୃକ୍ଷମୂଳେ ଯାଇ ବସି ବରୁଣ ଦୁଲଣୀ
ସ୍ୱାମୀଙ୍କୁ ସେ ଅନୁସରି ବିଚାରିଣ ପୁଣି ।
ବାଳ ଆଦିତ୍ୟ ପରାୟେ ବୁଲାଇ ନୟନ
କୋପଦୃଷ୍ଟି କରିଣ ସେ ହୁଏ ଛନ୍ନ ଛନ୍ନ ।
ଦଶ ଦିଗକୁ ଚାହିଁଣ କରେ ଏକ ଦୃଷ୍ଟି
ସ୍ୱାମୀକି ନ ଦେଖି ମନେ ହୁଏ ମନ କଷ୍ଟି ।
ବସିଲା ଅଷ୍ଟମ ଦିନ ଯାଏ ଅନୁସରି
ଲେଉଟି ଯେ ଶନିବାର ହେଲା ଆସିକରି ।
ତୃଷା କ୍ଷୁଧାଭରେ ସେହି ଦିଏ ଘୋର ରଡ଼ି
କାନ୍ଦେ ଉଚ୍ଚସ୍ୱରେ ଭୂମିପରେ ଗଡ଼ି ଗଡ଼ି ।
ବ୍ୟାଘ୍ର ଭଲ୍ଲୁକର ପ୍ରାୟ ଘୋର ଶବ୍ଦ କରେ
ପତିକୁ ନ ଦେଖି ସେହୁ କାନ୍ଦେ ଉଚ୍ଚସ୍ୱରେ ।
ଚଉଦ ଭୁବନଯାକ କମ୍ପିଲେ ତା ଶୁଣି
ଚମକି ରୋଦନ ଘାତେ ପଡ଼ିଲେ ଧରଣୀ ।
ବଦରିକା ପୁରକୁ ସେ ଶବ୍ଦ ଗଲା ଶୁଭି
ଭଗ୍ନି ଯେ କାନ୍ଦିଲେ ବୋଲି ଜାଣିଲେ ଭାର୍ଗବୀ ।
ପ୍ରତ୍ୟକ୍ଷେ ଅଟନ୍ତି ଦେବୀ ଜଗତର ମାତା
ଗଭିନୀ କାନ୍ଦଣା ବୋଲି ଜାଣି ଭୃଗୁସୁତା ।

ଶ୍ରୀନୃସିଂହ ପ୍ରଭୁଙ୍କୁ ଯେ କହନ୍ତି ସେ ଯାଇ
ବୋଇଲେକ ସାବଧାନେ ଶୁଣ ଭାବଗ୍ରାହୀ ।
ପାଇଲା ମୋହର ଜ୍ୟେଷ୍ଠଭଗ୍ନୀ ବଡ଼ କଷ୍ଟ
ସମ୍ଭାଳି ନପାରି ମୁନି ହେଲେ ମହାରୁଷ୍ଟ ।
ବନସ୍ତ ଭିତରେ ଆଣି ଛାଡ଼ିଦେଇ ଗଲେ
ମରିବ ସେହୁ ବ୍ୟର୍ଥରେ ତୁମ୍ଭେ ତ ନ ଗଲେ ।
ମୋହର ସମାନ ତାକୁ ଅଧିକାର ଦେଇ
ରଖ ଯେଣୁ ଜ୍ୟେଷ୍ଠଭଗ୍ନୀ ଅଟେ ମୋର ସେହି ।
ଏହା ଶୁଣି ମହାପ୍ରଭୁ ହୋଇ ହସ ହସ
ଗରୁଡ କନ୍ଧେ ବିଜୟ କଲେ ହୃଷୀକେଶ ।
ଜ୍ୟେଷ୍ଠା କନ୍ୟା ପାଶେ ଯାଇ ମିଳି ଦେବରାଜ
ଦେଖି ଉଦ୍ଦାଳକ ନାରୀ ପାଇ ମନେ ଲାଜ ।
ବୃକ୍ଷର ଉହାଡ଼େ ଯାଇ କାନ୍ଦିଣ ବସିଲେ
କାନି ପଣତକୁ ଦେଇ ମୁଖ ଘୋଡ଼ାଇଲେ ।
ଲପନ ବକ୍ର କରିଣ ବଚନ କହଇ
ବୋଲେ କେତେ କଷ୍ଟ ମୁଁ ପାଇଲି ଭାବଗ୍ରାହୀ
ତୁମ୍ଭପରା ବନ୍ଧୁ ଥାଉଁ ହେଲି ହୀନମାନ
ଗୁରସ୍ତ ତେଜ୍ୟା କରିଣ ଗଲେ ଘୋରବନ ।
ଏସନ ପୁରୁଷର ମୁଁ ଥିଲି ହସ୍ତ ଧରି
କେତେ ଚମ୍ପା ଚଢ଼ାଇ ମୁଁ ଥିଲି ତ୍ରିପୁରାରି ।
ତେଣୁକରି ବନବାସ ହୋଇଲା ମୋହର
ଛାମୁରେ କହିବି ଆଉ କେତେ ଚକ୍ରଧର ।
ମହାପ୍ରଭୁ ବୋଇଲେ ହେ କହିବା ଗୋ ଶୁଣ
ଆମ୍ଭ ବାନାଗୋଟି ଉଡ଼େ ଏ ସଂସାରେ ପୁଣ ।
ଚଉଦପୁର ଯାକରେ ମୋର ଅଧିକାର
ଛପନ କୋଟି ଜୀବରେ ମୋହର ବେଭାର ।
ତୁମ୍ଭର କନିଷ୍ଠା ଭଗ୍ନି ଅଟେ କମଳିନୀ
ମୋର ଅଧିକାରେ ସେହୁ ଅଟନ୍ତି କାରେଣୀ ।
ତାହାଙ୍କ ଆଜ୍ଞାରେ ତୁମ୍ଭଙ୍କୁ ମୁଁ ଘେନିଯିବି
ବଇକୁଣ୍ଠ ଭୁବନରେ ନେଇ ବାସ ଦେବି ।
ସେ ସ୍ଥାନରେ କେତେ ପୂରିଛନ୍ତି ତପୋଧନ
ହୋମ ଯଜ୍ଞ କରି ପୂଜୁଛନ୍ତି ଜନାର୍ଦ୍ଦନ ।
ଅଛନ୍ତି ତେତିଶକୋଟି ଦେବ ସନକାଦି
ଗନ୍ଧଚନ୍ଦନ ପୁଷ୍ପରେ ହୁଅନ୍ତି ଆମୋଦି ।
ପୂଜନ୍ତି ଅଗ୍ନିକି ଘୃତ ଦେଇ ବିପ୍ରଗଣ
ପ୍ରାଣୀକି ଦୟା କରନ୍ତି ପ୍ରଭୁ ନାରାୟଣ ।
ତୁମ୍ଭର କନିଷ୍ଠା ଭଗ୍ନୀ ତହିଁ ଠାକୁରାଣୀ
ତାହାଙ୍କ ସଙ୍ଗରେ ଦାସୀ ଛନ୍ତି କେତେ ପୁଣି ।
ବୈକୁଣ୍ଠପୁରର ପୁଣ୍ୟ ବ୍ରହ୍ମା ଲେଖୁଥିଲେ
ଲକ୍ଷେଯୁଗ ଲେଖି ତାହା ଅନ୍ତ ନ ପାଇଲେ ।
ଏସନ ମହିମା ସେହୁ ବୈକୁଣ୍ଠର ଜାଣ
ଅଠାଶୀ ସହସ୍ର ଯାଏ ଛନ୍ତି ଋଷିଗଣ ।
ସେହି ବୈକୁଣ୍ଠକୁ ଚାଲ ବେଗ ହୋଇ ଯିବା
ହରି ପଦ୍ମ ପାଦେ ଯାଇ କରିବାକ ସେବା ।
ଶୁଣିଣ ସେ ଜ୍ୟେଷ୍ଠାନାରୀ ବୋଲେ ନାହିଁ ନାହିଁ
ସେ କଥା ଶୁଣିଲାମାତ୍ରେ ଥରେ ମୋର ଦେହୀ ।
ତୁମ୍ଭ ମୁଖୁଁ ଶୁଣି ମୋର ପେଟ ଫୁଲାଇଲା
ବରଷକ ଆୟୁ ଛମାସରେ କ୍ଷୟ ଗଲା ।
ଯେବେଣ କାଳରେ ସ୍ୱାମୀ ହେଲା ସୃଷ୍ଟିପାଳେ
ସବୁ ଆତ୍ମା ଏକହୋଇ ମିଶି ଆଦିମୂଳେ ।
ଏ ସଂସାରର ସୁକୃତ ତୁମ୍ଭ ସଙ୍ଗେ ଗଲା
ଦୁଷ୍କୃତଯାକ ଯେ ପଙ୍କରୂପରେ ରହିଲା ।
ଏହିରୂପେ ଜାଣ ବହିଗଲା କେତେ କାଳ
ପାଞ୍ଚିଲେ ଜଗତ ସର୍ଜିବାକୁ ଆଦିମୂଳ ।
ଆପଣଙ୍କ ଯୋଗୁଁ ରୁଦ୍ର ବ୍ରହ୍ମା ହେଲେ ଜାତ
ଚଉଦପୁର କରିଣ ସୃଜିଲେ ଜଗତ ।
ଏ ସଚରାଚରଯାକେ ଯେତେ ଥିବେ ଜୀବ
ସବୁଙ୍କୁ ସର୍ଜନା ନରି ରଖିଲେ ଦଇବ ।
ସେଠାରୁ ସୁକୃତ ଉଦେ ଏ ସଂସାରେ ହେଲା
ଦୁଷ୍କୃତ ସମସ୍ତ ପଙ୍କରୂପରେ ରହିଲା ।
ସେହି ପଙ୍କର ଭିତରେ ଆସିଲି ମୁଁ ଜନ୍ମି
ତେଣୁ ଧାତା ମୋରନାମ ଦେଲେକ ଅଲକ୍ଷ୍ମୀ
ଧର୍ମ ପୁରୁଷର ଅଂଶୁ ଜାତ ହରିପ୍ରିୟା
ଅଧର୍ମର ଅଂଶ ଘେନି ଜାତ ଚଉବାହା ।
ଅଲକ୍ଷ୍ମୀ ଅଧିକାରେ ଲାଗିଲା ମୋତେ ବିଷ
ମନ ଜାଣି ସ୍ଥାନ ମୋତେ ଦେବ ଜଗଦୀଶ ।
ବୈକୁଣ୍ଠ ପୁରରେ ମୁହିଁ ନ ପାରଇ ରହି
ଆପଣଙ୍କ ଛାମୁରେ ବା କି କହିବି ମୁହିଁ ।
କନିଷ୍ଠା ଭଗ୍ନୀର ଶିରୀ ଦେଖିବି କେମନ୍ତେ
ଏଣୁକରି ବୈକୁଣ୍ଠ ଯେ ନ ରୁଚଇ ମୋତେ ।
ସଂସାରରେ ଯେତେ କଥା ବୋଲୁଥାନ୍ତି ଭଲ
ସେହି କଥାଯାକ ମୋତେ ଲାଗୁଥାଏ ଶଲ ।
ତୁମ୍ଭେ ଯେ ଏ ବ୍ରହ୍ମାଣ୍ଡର କର୍ତ୍ତା ଅଟ ସ୍ୱାମୀ
ସବୁରି ମନର ଚିନ୍ତା ଜାଣ ଅନ୍ତର୍ଯ୍ୟାମୀ ।
ମୋ ମନଗୋଟି ଆପଣ ଏବେ ଜାଣିକରି
ସେହିସ୍ଥାନେ ନେଇ ମୋତେ ରଖିଆସ ହରି ।
ଯେବେଣ ସ୍ଥାନରେ ମୋତେ ଦେବ ଅଧିକାର
ସେ କଥା ଗୋଟି ପାଳି ମୁଁ ଥିବି ନିରନ୍ତର ।
ତୁମ୍ଭର ବଚନ ମୁହିଁ ଆନ ନ କରିବି
ସ୍ୱାମୀ ସଙ୍ଗେ କାର୍ଯ୍ୟ ନାହିଁ ବନସ୍ତରେ ଥିବି ।

ଏସନ ବଚନ ତାର ଶୁଣି ଅନ୍ତର୍ଯ୍ୟାମୀ
ଉତ୍ତମ ସ୍ଥାନ ଦେବାକୁ ହୁଅନ୍ତି ବିଭ୍ରମି ।
କମଳାଇ ଜ୍ୟେଷ୍ଠ ଭଗ୍ନୀ ଅଟଇ ଯୁକତେ
ଉତ୍ତମ ସ୍ଥାନ ଦେବାର ହୁଏ ଏ ଜଗତେ ।
ଏ ରୂପେ ପାଞ୍ଚିଣ ଚାହିଁ ତାଙ୍କୁ ନରହରି
ବୋଇଲେ ସୁସ୍ଥାନ ଦେବା ଉଦ୍ଦାଳକ ନାରୀ ।
ନୟନେ ନ ଦେଖ ତୁମ୍ଭେ ଲକ୍ଷ୍ମୀ ଅଧିକାର
ଆମ୍ଭେତ ଏ ଜଗତରେ ଅଟୁ ଗୋ ଠାକୁର ।
ଆମ୍ଭର ତୁମ୍ଭେ ଗୋ ଅଟ ଯେଣୁ ଜ୍ୟେଷ୍ଠାନାରୀ
ଦ୍ୱିତୀ ଠାକୁରାଣୀ ରୂପେ ସଂସାରେ ବିହରି ।
ବସନ୍ତ କାଳ ଯେ ଏକା ଅଟେ ମଧୁମାସ
ଏଥିରେ ପ୍ରଭା ତୁମ୍ଭର ଟେକିବ ଅବଶ୍ୟ ।
ସମସ୍ତ ଜୀବରେ ତୁମ୍ଭେ ବେଳେକେ ବସିବ
ତେଣୁକରି ବସନ୍ତାଇ ନାମ ବୋଲାଇବ ।
ଦ୍ୱାଦଶ ଆଦିତ୍ୟରେ ବିହରିବ ମହୀ
ତୁମ୍ଭର ଏ ନାମଗୋଟି ଅଟେ ଶୀତଳାଇ ।
ଶୀତଳାଇ ଅଷ୍ଟକକୁ ପଢ଼ିବ ଯେ ନର
ତାଙ୍କୁ ସୁଦୟା କରିବ ତୁମ୍ଭେ ନିରନ୍ତର ।
ଦ୍ୱାଦଶ ଆଦିତ୍ୟ ହେବ ଦ୍ୱାଦଶ ନୟନ
ବୁଲିବ ଶୀତଳ ନୟନରେ ସର୍ବସ୍ଥାନ ।
ସର୍ବ ଜୀବରେ କରିବ ବେଳେ ଅଧିକାର
ଆଉ ବେଳେ ବସିଲେ ଯେ ନ ମାନିବେ ନର ।
ଅଣବସନ୍ତ ବୋଲିଣ ତୁମ୍ଭଙ୍କୁ ବୋଲିବେ
ସେଠାବରେ ଅନାଦର ତୁମ୍ଭଙ୍କୁ କରିବେ ।
ବସନ୍ତ ବୋଲି ସେ ବେଦନାର ନାମ ହେବ
ତିନିଦିନେ ପାଣି ପାଇ ଉଶ୍ୱାସ କରିବ ।
ଯାବତ ବିହନେ ତାର ହେବ ଅଧିକାର
ଧାନ୍ୟରେ ପଣ ତ ଜାଣ ନୋହିବ ତୁମ୍ଭର ।
ଅଟଇ କମଳାଙ୍କର ସେହୁ ଶ୍ରଦ୍ଧା ଦ୍ରବ୍ୟ
ତହିଁ ଅଧିକାର କଲେ ମୁର୍ଦ୍ଧା ଫାଟିଯିବ ।
ପୁତ୍ର ବଧୂ ଦୁହିତାଙ୍କୁ ସଙ୍ଗତରେ ଘେନି
ଆବର ସଙ୍ଗତେ ଥିବେ ଚୌଷଠି ଯୋଗିନୀ ।
ଭୂତ ପ୍ରେତ ପିଶାଚ ପାଶେ ବାସ କର
ପିପଳ ବୃକ୍ଷେ ରହିବ ରାତ୍ରେ ନିରନ୍ତର ।
ଚୌଷଠି ଯୋଗିନୀ ଖାଇବେକ ପୋଡ଼ବଳି
ସେହି ବାସନା ନାସାରେ ଖାଇଥିବେ ବାରି ।
ତୁମ୍ଭ ନାମେ ମେଷ ମହିଷଙ୍କୁ ବୋଦାଦେବେ
ଭୂତ ପ୍ରେତ ପିଶାଚେ ତା ଭୋଗାଦି କରିବେ ।
ତୁମ୍ଭର ଆଜ୍ଞାରେ ସେହୁ ପାଳିବେ ମେଦିନୀ
ପିଶାଚ କଣ୍ଠା ଖାଇବେ ଚାମଣ୍ଡା ଯୋଗିନୀ ।
କାଳମୁଖୀ ବାଇଧର ଥିବେ ସଙ୍ଗତରେ
ତାହାଙ୍କୁ ତିଆରି ଜଗିଥିବ ନିରନ୍ତରେ ।
ଯେବଣ ଗୃହେ ବସନ୍ତ ଜାଣ ବାହାରିବ
ସେ ଜନ ତୁମ୍ଭଙ୍କୁ ସେବି ପଣାପାଣି ଦେବ ।
ଆମିଷ ବାସନା ଦ୍ରବ୍ୟ ଘେନୁଥିବ ବାସେ
ଝାଟପାଟ ଉଆଳି ଯେ ଥିବ ତୁମ୍ଭ ପାଶେ ।
ଭଣ୍ଡାର ବସାଇ ତୁମ୍ଭଙ୍କୁ ଯେ ପ୍ରତିପାଳି
ତୁମ୍ଭଙ୍କୁ ଯେ ପୂଜା କରୁଥିବେ ପୋଡ଼ାବଳି ।
ଘୃତ ଗନ୍ଧ ବାସନା ସେ ପୁରେ ନ କରିବେ
ଆମିଷ ଦ୍ରବ୍ୟମାନ ସେ ପୁରେ ନିୟୋଜିବେ ।
ଭଣ୍ଡାର ଉଠାଇ ଦେବ ହୋଇବେ ସେ ଲଣ୍ଡା
ତୁମ୍ଭଙ୍କୁ ପୂଜା କରିଣ ଦେବେ ଛେନାମୁଣ୍ଡା ।
ଗ୍ରାମର ବାହାରେ ତୁମ୍ଭ ଭଣ୍ଡାର ଥୋଇବେ
ପିପ୍‌ପଳ ବୃକ୍ଷ ପାଖରେ ଛାଡ଼ିଣ ଆସିବେ ।
ସେ ବୃକ୍ଷମୂଳେ ରହିବ ରାତ୍ରେ ସବୁଦିନେ
କରିବେ ମଙ୍ଗଳବାରେ ପୂଜା ଲୋକମାନେ ।
ତୁମ୍ଭଙ୍କୁ ଏ ସଂସାରରେ ଉପନ ଯେ ଦେବ
ମଙ୍ଗଳବାରରେ ମେଷ ବୋଦାକୁ ମାରିବ ।
ଯୋଗୀଗଣମାନେ ତୁମ୍ଭ ସଙ୍ଗତରେ ରହି
ସେହି ଉପନମାନଙ୍କୁ ଭକ୍ଷିବେ ସେ ଯାଇ ।
ତୁମ୍ଭେ କ୍ଷୀର ପଣା ମଣ୍ଡା କାକରା ଭୁଞ୍ଜିବ
ଚନ୍ଦ୍ର ସୂର୍ଯ୍ୟ ଥିବାଯାଏ ନିଶ୍ଚିନ୍ତେ ରହିବ ।
ମଙ୍ଗଳବାରେ ମାଜଣା କରିବେ ତୁରନ୍ତ
ନୀଚ ଲୋକଠାରେ ପ୍ରୀତ ହେବ ଅନୁବ୍ରତ ।
ନିତିନିତି କନ୍ଦଳଟି ଲାଗିବ ଯେ ଘରେ
ମିଥ୍ୟାଭାଷୀ ପୁରୁଷ ଯେ ଥିବେ ଯେଉଁଠାରେ ।
ନୀଚଜନ ସଙ୍ଗତରେ କରୁଥିବେ ପ୍ରୀତି
ପରଦାରା କରିଣ ଯେ ସାଧୁଙ୍କୁ ନିନ୍ଦନ୍ତି ।
ବଣଜନ୍ତୁଙ୍କ ଜଞ୍ଜାଳ ହେଉଥିବ ଯହିଁ
ଲିଆ ଖାଇ ପଡ଼ିଥିବ କୁଡ଼ କୁଡ଼ ହୋଇ ।
ବେଲ ବଟ ନିମ୍ବଧାତ୍ରୀ ଅଶ୍ୱତ୍ଥ ତୁଳସୀ
ଏହାକୁ କୁଠାର ଧରି ପକାଇବେ ନାଶି ।
ତୀର୍ଥ ବ୍ରତ ଉପବାସେ ନାହିଁ ଯାର ମତି
ସେ ଲୋକମାନଙ୍କ ସଙ୍ଗେ ବସେ ଯାଇ ନିତି ।
ପରଦ୍ରବ୍ୟ ଚୋରାଇଣ ନିଅନ୍ତି ଯେ ଜାଣ
ଜୀବନ ଜନ୍ତୁ ଛେଦନ କରେ ଯେହୁ ପୁଣ ।
ମାନିତା ସ୍ତିରୀକି ରତି କରେ ବଳାତ୍କାର
ଗାଈ ହଜିଲେ ଗର୍ବେ ନ ଲୋଡ଼ନ୍ତି ଯେ ନର ।
ବିଷ୍ଣୁଙ୍କ ଭକ୍ତ ନୁହନ୍ତି ଜାଣ ଯେତେ ପ୍ରାଣୀ
ସୁଜନଙ୍କୁ ନିନ୍ଦନ୍ତି ଯେ ଅଦୋଷରେ ପୁଣି ।

ତୁମ୍ଭେ ବିଶ୍ରାମିବ ଯାଇ ତାହାଙ୍କ ପାଶରେ
ଆବର କିଛି କହିବା ତୁମ୍ଭର ଆଗରେ ।
ଗର୍ଭିଣୀ ସ୍ତିରୀଙ୍କର ସେ କଲେ ଲିଙ୍ଗଭଗ୍ନ
ତୀର୍ଥକରି ଚଳେ ଚୋରାଇଣ ପରଧନ ।
ପତିବ୍ରତା ସ୍ତିରୀକୁଟି କରଇ ଯେ ହାସ୍ୟ
ଆଦିତ୍ୟବାରେ ଆମିଷ କରେ ଯେହୁ ଗ୍ରାସ ।
ରାତ୍ରକାଳରେ କପିଚଥ ଭକ୍ଷଇ ଯେ ପ୍ରାଣୀ
ଅକାରଣେ ପ୍ରାଣୀକି ଯେ ପକାଏଟି ହାଣି ।
ଦୁର୍ଭିକ୍ଷ କାଳରେ ଯେହୁ ନ ବିକଇ ଧାନ
ଜଳରେ ଉଲଗ୍ନ ହୋଇ ପଶନ୍ତି ଯେ ଜନ ।
ପଥରେ ଥିବା ବୃକ୍ଷକୁ ପକାନ୍ତି ଯେ ହାଣି
ପାଷାଣ ପଣରେ ଯେହୁ ପୁରାଣ ନ ଶୁଣି ।
ମିତ୍ରର ଯେଉଁ ଜନ ନ କରେ ସନମାନ
ଶ୍ରେଷ୍ଠଜାତି ହୋଇଣ ଯେ କରେ ସୁରାପାନ ।
ବିଷ୍ଣୁ ପ୍ରତିମାର ପୂଜା ଯେଉଁ ସ୍ଥାନେ ନାହିଁ
ସେହି ସ୍ଥାନରେଟି ତୁମ୍ଭେ ବାସକର ଯାଇ ।
ଗୁରୁଜନମାନଙ୍କୁ ଯେ ନିନ୍ଦେ ଅନୁବ୍ରତ
ଦେବ ବା ବ୍ରାହ୍ମଣଙ୍କର ହରଇ ଯେ ବିତ୍ତ ।
ପିଠି ଦେଲା କ୍ଷତ୍ରୀକି ତ ଯେ ମାରନ୍ତି ରଣେ
ପକ୍ଷକରି ସଭା ମଧ୍ୟେ କହନ୍ତି ଯେ ଜନେ ।
ପରର ସିରୀକି ଦେଖି ହୁଏ ଯେହୁ ଦୁଃଖୀ
ଭଣକରି ନ ଶୁଝଇ ଯେବଣ ପାତକୀ ।
ସୁଜନ ଜନମାନଙ୍କୁ ବୈରଭାବ କରେ
ବିଧବା ବ୍ରାହ୍ମଣୀକି ଯେ ମୂର୍ଖ ପଣେ ହରେ ।
ଅଶୁଦ୍ଧବନ୍ତ ସ୍ତିରୀଙ୍କି କରେ ଯେ ରମଣ
ଦୋଷ ଅର୍ଜଣ ନିୟମ କରେ ଯେହୁ ପୁଣ ।
ପିତା ମାତା ଗୁରୁଙ୍କୁ ନ ମାନେ ଯେଉଁ ଜନ
ସ୍ନାନ ସାରି ଦେବତା ଯେ ନକରେ ଅର୍ଚ୍ଚନ ।
ବିଶୁଦ୍ଧ ବସନ ପିନ୍ଧି ଦେବାଳୟେ ଯାଇ
ଦକ୍ଷିଣକୁ ମୁଖକରି ଭୁଞ୍ଜି ଯେ ବସଇ ।
ଏହାଙ୍କର ପାଶେ ଥିବ ତୁମ୍ଭେ ଯାଇ ନିତି
ଭୂତ ପ୍ରେତ ପିଶାଚ ଯେ ଥିବେ ତୁମ୍ଭ କତି ।
ରହିବ ରାତ୍ରେ ଅଶ୍ୱତ୍ଥ ବୃକ୍ଷର ଯେ ତଳେ
ଏଥେ ଆଣି ତୁମ୍ଭ ସ୍ୱାମୀ ବସାଇଣ ଗଲେ ।
ସେ ବୃକ୍ଷ ତଳେ ବସିବ ଯେହୁ ରାତ୍ରକାଳେ
ସିରୀ ଉଣା ତାର କଷ୍ଟ ହୋଇବ ତତ୍କାଳେ ।
ବୁଢ଼ୀ ଠାକୁରାଣୀ ହୋଇ ସଂସାରେ ବୁଲିବ
ମୋହର ଭକତ ଜନେ ହିଂସା ନ କରିବ ।
ଏସନକ ଆଜ୍ଞା ଦେଇ ଗଲେ ପ୍ରଭୁ ବେଗ
ତକ୍ଷଣେ ମିଳିଲେ ଯାଇ ବଦରିକା ସ୍ୱର୍ଗ ।

ଶ୍ରୀମହାଲକ୍ଷ୍ମୀଙ୍କ ପାଶେ ମିଳି ଭାବଗ୍ରାହୀ
କହିଲେ ସକଳ କଥା ତାହାଙ୍କୁ ବୁଝାଇ ।
ଶୁଣିଣ ଆନନ୍ଦ ହେଲେ ରତ୍ନାକର ସୁତା
ଲଜ୍ଜାରୁ ତ ପାରିଏବେ ହୋଇଲେ ମୋ ପିତା ।
ଏତେକ ପାଞ୍ଚି କମଳା ପାଦପଦ୍ମେ ସେବି
ବିପ୍ର ପୀତାମ୍ବରକୁ ଯେ ରଖିବେ ଭାର୍ଗବୀ ।
ବନ୍ଦଇ ଶ୍ରୀ ଲକ୍ଷ୍ମୀକାନ୍ତ କୃପାକର ମୋତେ
ଶ୍ରୀ ପାଦପଦ୍ମ ଚିନ୍ତି ନ ପାରେ କଦାଚିତେ ।
ନୃସିଂହ ଗ୍ରନ୍ଥ ବାଣୀ ଏ ଅଟେ ଅଗୋଚର
ଲେଖିଣ ପାରିଲେ ମୁହିଁ ହେବି ଭବୁ ପାର ।
ଏଥକୁ ଦୟା କରିବେ ମୋତେ ଜଗନ୍ନାଥ
ଲେଖିବି ସପ୍ତସାଗର ଯାଏ ପୂର୍ଣ୍ଣଗ୍ରନ୍ଥ ।
ଏ ଯେ ଚତୁର୍ଥ ସାଗର ଅଟେ ହରିବାଣୀ
ଯେ ରୂପେ ମାଇଲେ ମୁରବଂଶ ଚକ୍ରପାଣି ।
ସଂସାର ଲୋକେ ଆନନ୍ଦ ହେବେ ଗ୍ରନ୍ଥ ଶୁଣି
ନାରଦଙ୍କ ଆଗେ ଯାହା ବିଧାତା ବଖାଣି ।
ବିପ୍ର ପୀତାମ୍ବର ଶ୍ରୀହରିଙ୍କ ନିଜ ଦାସ
ଜନ୍ମେ ଜନ୍ମେ ସେବା ମୋର କମଳା ବିଳାସ ।



## ବଦରିକାଶ୍ରମେ ନାରଦଙ୍କ ପ୍ରବେଶ

ଶ୍ରୀ ବ୍ରହ୍ମା ନାରଦଙ୍କ ସମ୍ବାଦ ପୁରାଣ
ପଢ଼ନ୍ତି ଶ୍ରୀ ଶୁକଦେବ ପରୀକ୍ଷ ଆଗେଣ ।
ଏଥୁଅନ୍ତେ ଶେଷ ନୃସିଂହ ଯେ ବେନିଭ୍ରାତ
ବଢ଼ନ୍ତି ବଦ୍ରିକା ଦେଶେ ପୂର୍ଣ୍ଣ ମନୋରଥ ।
ଲକ୍ଷ୍ମୀକି ଘେନି ବିହାର କରନ୍ତି ବନରେ
କେଳିକଉତୁକ ରାସକ୍ରୀଡ଼ା ବିନୋଦରେ ।
ଶକଟା ପଶା ଜୁଆ ଯେ ସାରେଣୀ ଡାବଲ
ହରଷ ବିନୋଦେ ଖେଳନ୍ତି ଯେ ଆଦିମୂଳ ।
ବେଦବିଦ୍ୟା ଗଦାବିଦ୍ୟା ଧନୁର୍ବିଦ୍ୟାମାନ
ପଢନ୍ତି ଶୁଣନ୍ତି ନୃସିଂହ ଯେ ପ୍ରତିଦିନ ।
ନିତି ସଭା କରି ବସନ୍ତି ସେ ନିଜ ରାଜ୍ୟେ
ମନେ ବିଚାର କରନ୍ତି ପୁଣି ଦେବକାର୍ଯ୍ୟେ ।
ପାଞ୍ଚନ୍ତି ଆମ୍ଭେ ତ ଜନ୍ମ ହେଲୁ ମଞ୍ଚଭୂଇଁ
ସଂସାର ଜନଙ୍କ ଦୁଃଖ ନିବାରିବା ପାଇଁ ।
ବ୍ରହ୍ମାଙ୍କୁ ଯେ ଆଦିକରି ସର୍ବ ଦଇବତେ
କ୍ଷୀରସାଗରେ ଗୁହାରି କଲେ ଯାଇଁ ମୋତେ ।
ତାହା ଶୁଣି ଜନ୍ମିଲି ମୁଁ ବଦରିକା ପୁରେ
ସପ୍ତଦଶ ବର୍ଷ ଏବେ ହେଲାଣି ଲେଖାରେ ।
ଅସୁରକୁଳ କରିବା ଏବେଟି ନିଃଶେଷ
ଚଉଦପୁରର ଭାରା ହୋଇବ ଉଶ୍ୱାସ ।

ଏମନ୍ତ ବୋଲି ମନରେ ପାଞ୍ଚି ନାରାୟଣ
କହନ୍ତି ଶ୍ରୀ ଶୁକଦେବ ପରୀକ୍ଷ ଆଗେଣ ।
ଶ୍ରୀନୃସିଂହ ପୁରାଣ ଏ ଗ୍ରନ୍ଥ ମଧ୍ୟେ ସାର
ବୈଶାଖ ଶୁକଳ ଚତୁର୍ଦ୍ଦଶୀ ସୋମବାର ।
ସେହିଦିନ ମଧ୍ୟେ ଜନ୍ମ ହେଲେ ବ୍ରହ୍ମରାଶି
ବ୍ରତ ଯେ ପାଳିବ ଶ୍ରୀନୃସିଂହ ଚତୁର୍ଦ୍ଦଶୀ ।
ଶ୍ରୀନୃସିଂହ ପାଦଧ୍ୟାୟି ଭକ୍ତ ଜନମାନେ
ଷଡ଼ଜୟନ୍ତୀ କରନ୍ତି ଉତ୍ସବ ବିଧାନେ ।
ନୃସିଂହ କବଚ ସ୍ତୁତି ପୁଣି ସହସ୍ରନାମ
ପଢୁଥାନ୍ତି ଋଷିବିପ୍ରେ କରି ପରିଶ୍ରମ ।
ପରମଗତି ପାଇଲେ ଭାବେ ବିଷ୍ଣୁ ପୁରୀ
ଏମନ୍ତ ପୁଣ୍ୟ ଲଭନ୍ତି ହୋଇ ବ୍ରତାଚାରୀ ।
ତୁହି ସୋମବଂଶେ ଜନ୍ମିଅଛୁ ଭାବ୍ୟବନ୍ତ
ଯେଣୁ ପୁରାଣ ଶୁଣିଲୁ ତୁ ମହାପଣ୍ଡିତ ।
ବୈକୁଣ୍ଠ ପୁରେ ବସିବୁ କାଟି ଋଷିଶାପ
ଲଭିବୁଁ ତୁ ମହାପୁଣ୍ୟ ନାଶି ସର୍ବ ପାପ ।
ଶୁଣିଣ ଉସତ ହେଲେ ପରୀକ୍ଷ ନୃପମଣି
ବୋଇଲେ ଲଭିବି ଗତି ତୁମ୍ଭ ମୁଖୁ ଶୁଣି ।
ଅନ୍ତଃକାଳକୁ ହେ ମୁନି ହେଲେ ମୋତେ ସାହା
ଏଥି ଉତ୍ତାରେ କହନ୍ତୁ ପୁଣି ହେଲା ଯାହା ।
କି ରୂପେ ହେ ମୁରବଂଶ ନାଶି ଭଗବାନ
ପୃଥିବୀ ଭାରା ଉଶ୍ୱାସ କଲେ କେମନ୍ତେଣ ।
ତରିବି ଋଷି ଶାପୁଁ ସେ କଥା ମୋତେ କହ
ପୁଣି ଆନନ୍ଦିତ ହେଲେ ବ୍ୟାସଋଷି ପୁଅ ।
ବୋଇଲେ ଶୁଣ ହେ ରାଜା କହିବା ଯେ ତୋତେ
ତୁହି ତହୁଁ ଶ୍ରଦ୍ଧା କରି ପଚାରିଲୁ ମୋତେ ।
ଅଶେଷ ମହିମା ଏ ଯେ ନୃସିଂହ ପୁରାଣ
କେ ଗଙ୍ଗା ବାଲିକୁ ଗଣି କରିବ ପ୍ରମାଣ ।
ତହୁଁ ମଧ୍ୟୁ ଯାହା କିଛି କହିଦେବା ତୋତେ
ବ୍ରହ୍ମା ନାରଦ ସମ୍ବାଦ ହୋଇଥିଲା ଯେତେ ।
ନାରଦ ପୁଚ୍ଛନ୍ତି କହନ୍ତି ଯେ ବେଦବ୍ରହ୍ମା
ବୋଲନ୍ତି ହୋ ସାବଧାନେ ଶୁଣ ମହାତମା ।
ଯେତେବେଳେ ଶ୍ରୀନୃସିଂହ ପଢ଼ିଲେକ ବେଦ
ପୂର୍ବେ ତୋତେ ତାହା କରିଅଛୁଁ ଯେ ପ୍ରସିଦ୍ଧ ।
କୃଷ୍ଣ ବଲ୍ଲଭ ରାଜା ଯେ ବଦ୍ରିକା ନୃପତି
ଅଟେ ନିମ୍ନସତା ତାଙ୍କ ଭାର୍ଯ୍ୟା ଭାଗ୍ୟବତୀ ।
ତାଙ୍କ କୋଳେ ଜନ୍ମି ବଢ଼ିଅଛି ଚକ୍ରଧର
ସପତ ଦଶ ବରଷ ହୋଇଛି ତାଙ୍କର ।
ଏକଦିନେ ନାରଦ ଯେ ବିଚାରନ୍ତି ବସି
ଯଶୋବନ୍ତୀ ଭୁବନରେ ବିଜେ ବ୍ରହ୍ମରାଶି ।
ବାଇଶ ଦିନେ ଯାବତ ବିଦ୍ୟାଯାକ ସାଧି
ମଞ୍ଚକୁ ଘେନି ଚଳିଲେ ତାହା ଦୟାନିଧି ।
ବଦରିକା ଦେଶେ ସାଧୁଛନ୍ତି ଅନୁକ୍ଷଣେ
ସେ କଥା ବୁଝିବା ଯାଇ ଦେଖି ବେହରଣେ ।
କେମନ୍ତ ପ୍ରକାରେ ତହିଁ ଛନ୍ତି ଦୀନବନ୍ଧୁ
ସମସ୍ତ ଜନଙ୍କ ସେହୁ କୃପାମୟ ସିନ୍ଧୁ ।
ପାଶକୁ ଯାଇଣ ଏବେ କରିବା ଦର୍ଶନ
ଶୁଣିଣ ଶ୍ରୀମୁଖୁଁ ବାଣୀ ଅମୃତ ବଚନ ।
ଏମନ୍ତ ମନରେ ପାଞ୍ଚି ବ୍ରହ୍ମାଙ୍କର ଶିଷ୍ୟ
ବିଜୟ କଲେ ନାରଦ ବଦରିକା ଦେଶ ।
ସ୍ୱର୍ଗ ଭୁବନ ପରାୟେ ଦିଶେ ସେହୁ ପୁରୀ
ତହିଁରେ ଯେ ନାରାୟଣ ଛନ୍ତି ଅବତରି ।
ସୁବର୍ଣ୍ଣ କଳସମାନ ବସେ ଘରେ ଘରେ
ଶୋଭେ ନେତପଟନୀ ଯେ ଚିରାଳ ତା ପରେ ।
ରସାଣିଲା ସୁବର୍ଣ୍ଣର ପ୍ରାୟ ପୀଢ଼ମାନ
ସ୍ଫଟିକ କାନ୍ଥେ ବିରାଜେ ଅଙ୍ଗ ଘନ ଘନ ।
ସିଂହଦ୍ୱାରେ ବିରାଜଇ ଉଚ୍ଚ ଦାଣ୍ଡ ପିଣ୍ଡା
ସ୍ୱର୍ଣ୍ଣ ସୂତାରେ ମୁକୁତାଗୁନ୍ଥା ପେଣ୍ଡା ପେଣ୍ଡା
କେବଣ ଘରେ ପଡ଼ିଛି ମୁଗୁନିର ପାଟ
ବିରାଜଇ କେଉଁ ଘରେ କାଚ ଝଟ ଝଟ ।
କେବଣ ଘରେ ଦର୍ପଣ ବାଡ଼ ଚାରିପାଖ
କେଉଁ ଗୃହରେ ପ୍ରତିମା ରାଜେ ଲକ୍ଷ ଲକ୍ଷ ।
ତୋରଣ ସ୍ତମ୍ଭ ଚାମର କାହିଁ ମାଳା ମାଳା
ବିରାଜେ ସୁବର୍ଣ୍ଣ ପାଟ ସ୍ତମ୍ଭ ମଣିଶିଳା ।
କେବଣ ଘର ଗୋଟିକ ହରିତାଳେ ଘଷା
କେବଣ ଘରେ ମାରାଗ ରଙ୍ଗ ଅଛି ମିଶା ।
କେବଣ ଘର କୁଙ୍କୁମବର୍ଣ୍ଣ ପ୍ରାୟ ଦିଶେ
କେବଣ ଗୃହରେ ଶଙ୍ଖ ଗୋକ୍ଷୀର ପ୍ରକାଶେ ।
ବିରାଜଇ ମଣିଶିଳା କେବଣ ଗୃହରେ
ଚିତ୍ର ବିଚିତ୍ର କାମରେ ଶୋଭା କେଉଁ ପୁରେ ।
କାହିଁ ଯେ ଶକଟା ପଣା ଗୃହ ମାଳ ମାଳ
କାହିଁ ସାରେଣି ଲଙ୍କଟ ନାଟ କୁଆଶାଳ ।
କସ୍ତୁରୀ କର୍ପୂରଗୁଣ୍ଡି କେଉଁ ପୁରେ ଥୁଆ
କାହିଁ ଚନ୍ଦନ କୁଙ୍କୁମ ପନିଅର ଚୁଆ ।
ଦେବାଙ୍ଗ ବାସ ପଟନୀ ପାଟ କାହିଁ ସାଜେ
କେଉଁପୁରେ ହୀରା ନୀଳା ମାଣିକ୍ୟ ବିରାଜେ
କେ ଦୋମୁହିଁ ଲଙ୍କମୁହିଁ ବାଘମୁହିଁ ଛାନ୍ଦ
ବିଶ୍ୱକର୍ମାର ଭିଆଣ ଆଗ ଦ୍ୱାରବନ୍ଧ ।
ରକ୍ତ ଚନ୍ଦନର ସ୍ତମ୍ଭ ପଦ୍ମକାଠି ଭାର
ପାରିଜାତକ ଶ୍ରେଣୀକି ସୁବର୍ଣ୍ଣର ତାର ।

କାହିଁ ହେନ୍ତାଳର ବେତା ଗିନିମିଶା ଲଇ
ଟେଙ୍କପଟର ଚୂନର ବୁଅ କାହିଁ ଛାଇ ।
ଝୀନବସନ ବହୁତ କରି ତହିଁ ପାଡ଼ି
ଶ୍ରୀ ବିଶ୍ୱନାଥ ନିମିତ୍ତେ ବିଶ୍ୱକର୍ମା ଗଢ଼ି ।
ସେ ପୁରକୁ ବର୍ଣ୍ଣିବାକୁ ଭରସା ବା କାର
ଶ୍ରୀନୃସିଂହ ଶେଷଦେବ ଯହିଁ ଅବତାର ।
ବଦରିକା ନଗ୍ରଲୋକେ ସର୍ବେ ପୁଣ୍ୟବନ୍ତ
ଦର୍ଶନ କରନ୍ତି ସଦା ଯେଣୁ ବିଶ୍ୱନାଥ ।
ନାରଦ ମୁନି ପ୍ରବେଶ ହେଲେ ତହିଁ ଆସି
ଘରକୁ ଦେଖି ପ୍ରଶଂସା କରନ୍ତି ଯେ ଋଷି ।
ଶ୍ରୀ ବିଷ୍ଣୁର ନଗ୍ରେ ଋଷି ପ୍ରବେଶିଲେ ଯାଇ
କନ୍ଧରେ ଯେ ବୀଣାଦଣ୍ଡ ମୁଖେ ନାମ ଗାଇ ।
ମନପବନ ଦଣ୍ଡରେ ଚଢ଼ି ମହାଜ୍ଞାତା
ଧୋତି ଯେ ଉତ୍ତରୀ ଦେଣ୍ଡ ମୁଣି କୁଶ ଚିତା ।
ଶ୍ରୀ ନୃସିଂହନାଥପୁରେ ହୋଇଲେ ପ୍ରବେଶ
ଯହିଁ ବିଜେ କରିଛନ୍ତି ପ୍ରଭୁ ଜଗଦୀଶ ।
ନାରଦ ଆସିବା କଥା ଜାଣି ଭଗବାନ
କଲେକ ନୃସିଂହ ଶେଷ ଅନନ୍ତ ଶୟନ ।
ରତ୍ନପଲ୍ୟଙ୍କ ମଣ୍ଡିଣ ଖଟଦୋଳି ଶଯ୍ୟା
ଆନନ୍ଦେ ପହୁଡ଼ିଛନ୍ତି ତହିଁ ଦେବରାଜା ।
ସେବାକାରୀ ଜନେ ସେବୁଛନ୍ତି ଲାଗି ଖଞ୍ଜେ
ଚାମର ଧରି କରେ କେ ହୃଦୟରେ ବିଞ୍ଚେ ।
ପିକଦାନୀ ଧୂପକାଠି ଘେନିକରି ଉଭା
କେବା ଚତୁଃସମ ଗୁଛିଅଛି ପଞ୍ଚଗଭା ।
କେ ପନୀର ସିଞ୍ଚଇ କେ ମଞ୍ଚାଳଇ ପାଦ
ଏମନ୍ତ ସମୟେ ଯାଇ ମିଳିଲେ ନାରଦ ।
ମନପବନ ଦଣ୍ଡରୁ ଓହ୍ଲାଇଲେ ମୁନି
ଯୋଗ ଆସନେ ବସିଲେ ବୀଣାଦଣ୍ଡ ଘେନି ।
ଦେଖିଲେ ଶ୍ରୀ ନାରାୟଣ ଛନ୍ତି ନିଦ୍ରାଯାଇ
ସ୍ୱପନ ଦାରା ସମ୍ପଦ ତିନି ଏକ ହୋଇ ।
ଯୋଗବଳେ ନିଦ୍ରା ଯେ ପରମାନନ୍ଦ ସ୍ୱାମୀ
ଜଳା କମଳଗଞ୍ଜନ ନାମ ଅନ୍ତର୍ଯ୍ୟାମୀ ।
କୋଟି କୋଟି ବ୍ରହ୍ମାଣ୍ଡର ବିଚାରଟି ଯେତେ
ଜାଣନ୍ତି ଧାରଣା ଯୋଗ ଭୟେ ଅନ୍ତର୍ଗତେ ।
ଏସନକ ରୂପ ତହିଁ ଦେଖି ମହାଋଷି
ବୋଇଲେ ନିଦ୍ରା ତେଜିବେ କେହ୍ନେ ବ୍ରହ୍ମରାଶି ।
ଏତେ ବିଚାରି ବାଇଲେ ମୁନି ବୀଣାଦଣ୍ଡ
ଭେଦିଲା ସପତ ସ୍ୱର ସପତ ବ୍ରହ୍ମାଣ୍ଡ ।
ନୃସିଂହ ଦୟାଳୁ କର୍ଣ୍ଣେ ସମ୍ଭାଇଲା ଯାଇ
ସର୍ପ ଯେସନେ ବିବରେ ପ୍ରବେଶ ହୁଅଇ ।

ସେହିରୂପେ ଶବଦ ଯେ ବ୍ରହ୍ମରନ୍ଧ୍ରେ ବାଜି
ଚୈତନ୍ୟ ପୂରନ୍ତେ ସେ ଉଠିଲେ ନିଦ୍ରାତେଜି ।
ଦେଖିଲେ ନାରଦ ମୁନି ବସିଛନ୍ତି ପାଶେ
ଚାଳନ୍ତି ସପତ ସ୍ୱର ବୀଣା ରଙ୍ଗ ଆଶେ ।
ଚକ୍ଷୁବେନି ମଳି ଉଠିଲେକ ଚକ୍ରଧର
ଦେଖିଲେ ବସିଅଛନ୍ତି ପାଶେ ମୁନିବର ।
ହସିଲେ ମୁନିଙ୍କ ମୁଖ ଚାହିଁ ବେନି ଭାଇ
ନମସ୍କାର କଲେ ଧରି ମୁନି ପାଦ ଦୁଇ ।
ଦେଖି ନାରଦ ଆସନୁ ବେଗେ ଗଲେ ଉଠି
କୃତାଞ୍ଜଳି ହୋଇ କଲେ କଲ୍ୟାଣ ଯେ କୋଟି
କାଖରେ ହସ୍ତ ଦେଇଣ ହୋଇଲେ କାର୍ପୁଣ୍ୟ
ବୋଇଲେ ଭୋ ନାଥତୁମ୍ଭେ ଅଟ ନାରାୟଣ ।
ତୁମ୍ଭର ଦର୍ଶନେ ଥାଏ ଆମ୍ଭ ବଡ଼ ଇଚ୍ଛା
ତୁମ୍ଭେ ସିନା ଦେଇପାର ଯାହାର ଯେ ବାଞ୍ଛା ।
ତୁମ୍ଭର ଅହ୍ଲାଦ କାମଧେନୁର ଯେ ପ୍ରାୟେ
ନରସଇ ଦୁହିଁଲେ ସେ ଯେହ୍ନେ ସର୍ବଦାଏ ।
ତୁମ୍ଭେ ସେହିରୂପେ ସବୁଙ୍କର ଦୁଃଖ ଘେନ
କରୁଣାକର ହେ କୃପାନିଧି ଭଗବାନ ।
ତୁମ୍ଭଙ୍କୁ ବା ଅଗୋଚର ଅଟେ କେଉଁ କଥା
ତୁମ୍ଭେ ଯେ ବୋଲାଅ ପ୍ରଭୁ କର୍ମାକର୍ମଦାତା ।
ତୁମ୍ଭେ ପିତା ସର୍ଜିଅଛ ସଂସାର ଯାବତ
ତୁମ୍ଭ ନକଲାର ହୋଇନାହିଁ କେଉଁକୃତ୍ୟ ।
ତୁମ୍ଭର ରଚନା ସ୍ୱର୍ଗ ମର୍ତ୍ତ୍ୟ ଯେ ପାତାଳ
ବିପ୍ର କ୍ଷତ୍ରୀ ବୈଶ୍ୟେ ଶୂଦ୍ର ପତିତ ଚଣ୍ଡାଳ ।
ନାଗଲୋକ ନରଲୋକ ଦେବଲୋକ ଆଦି
କନ୍ଦର ପର୍ବତ ସିନ୍ଧୁ ପୃଥ୍ୱୀ ନଦନଦୀ ।
ଏଥି ମଧ୍ୟରେ ଅସୁର ଦୁଷ୍ଟ ହେଲେ ଜାତ
ତୁମ୍ଭର ରଚନା ପୃଥ୍ୱୀ ଭାଙ୍ଗିଲେ ଜଗତ ।
ଭୃତ୍ୟଜନ ତୁମ୍ଭର ଯେ ହୋଇଲେ ନିରେଖ
କି ରୂପେ ତାକୁ ସ୍ଥାପତ କର ପଦ୍ମମୁଖ ।
ଏଣୁ ମୁଁ ଅଇଲି ନାଥ ତୁମ୍ଭର ଦର୍ଶନେ
ତୁମ୍ଭ ବିଦ୍ୟାପଢ଼ା ଦିନ ଥାଏ ମୋର ମନେ ।
କି ରୂପେ କହିବି ବୋଲି ପାଞ୍ଚୁଥାଇ ବସି
ତୁମ୍ଭର କରୁଣା ହେଲା ଏତେ ଦିନେ ଆସି ।
ଏସେନ ବାକ୍ୟ ନାରଦ ମୁଖରୁ ଯେ ଶୁଣି
ଆସନ ଦେଇ ମୁନିଙ୍କି ବସାଇଲେ ପୁଣି ।
ହସ ହସ ହୋଇ ପଚାରନ୍ତି ଭଗବାନ
ନାରଦ ମୁଖକୁ ଚାହିଁ କହନ୍ତି ବଚନ ।
ତୁମ୍ଭେ ମହାମୁନି ଅଟ ସର୍ବ ଉପକାରୀ
ଯାହାକୁ କହିବ ଯାହା ନୋହେ ଆନକରି ।

ଆମ୍ଭଙ୍କୁ ଗରବ କରିବ ଯେ ରୋଷ ବହି
କୃପଣ ବିମୁଖ ହେଲେ ରଖିବ ସେ କାହିଁ ।
ବ୍ରହ୍ମାର ନନ୍ଦନ ତୁମ୍ଭେ ଦ୍ୱିତୀ ବ୍ରହ୍ମା ଅଟ
କ୍ଷଣକରେ ଆନକରି ଲେଖ ଭାଲ ପଟ ।
ବ୍ରହ୍ମାଏ ଯେ ଆପଣଙ୍କୁ କଲେ ଉତପତ୍ତି
ଜଗତେ ସୃଜିବ ବୋଲି ପେଶିଲେ ତଡ଼ତି ।
ତୁମ୍ଭେ ସିନା ତାହା ହେୟଜ୍ଞାନ କଲ ମୁନି
ଦକ୍ଷବ୍ରହ୍ମା ସର୍ଜିଲ ଯେ ପିତା ଆଜ୍ଞା ଘେନି ।
ସେ ଦକ୍ଷର ସଙ୍ଗେ ତୁମ୍ଭେ ହୋଇଲ ବିବାଦୀ
ଶାପ ପାଇ ବ୍ରହ୍ମଜ୍ଞାନ ସାଧି ତପୋନିଧି ।
ଏଣୁ କରି ତୁମ୍ଭେ ମୁନି ହେଲ ମହାଜ୍ଞାତା
ସତ୍ୟ କହିଣ ସଂସାରେ ଭ୍ରମ ଅପ୍ରମିତା ।
ତୁମ୍ଭର ବଚନ ସତ୍ୟଲୋକ ହିତକାରୀ
ଅସତ୍ୟ ଲୋକମାନେ ଅଳ୍ପକେ ଯାନ୍ତି ମରି ।
ଅସତ୍ୟ କହିଲେ କଲମଷ ହୋଏ ଜାତ
ଅସତ୍ୟ ଛଳ ବହିଣ ମରନ୍ତି ବହୁତ ।
ଛଳରୁ ଜନମ ପୁଣି ହୁଅଇ କନ୍ଦଳ
କନ୍ଦଳରୁ କ୍ରୋଧ ଜନ୍ମ ହୁଏ ତତକାଳ ।
କ୍ରୋଧ ହେଲାରୁ ତାହାକୁ କାଳଆସି ଘୋଟେ
କାଳର ପାଖେ ମରଣ ଥାଇ ତା ନିକଟେ ।
ମରଣ ହୋଇଲେ ତାର ବଂଶ ହୋନ୍ତି ନାଶ
ବଂଶଗଲେ କୁଳ କ୍ଷୟ ହୁଅଇ ଅବଶ୍ୟ ।
ଏହିରୂପେ ମହିମା ଯେ ଅଟଇ ତୁମ୍ଭର
ଯାହାକୁ ଦୟାକର ସେ ଅକ୍ଷୟ ଅମର ।
ସଂସାର ଲୋକଙ୍କ ଚେଷ୍ଟା ତୁମ୍ଭେ ସର୍ବ ଜାଣ
ଯାହାକୁ ଯାହା ଲିହି ଯେ ଅଟଇ ପ୍ରମାଣ ।
କି ନିମନ୍ତେ ଆପଣ ଏଠାକୁ କଲ ବିଜେ
ତୁମ୍ଭ ହିତେ ଆସିଛକି ଅବା ଦେବକାର୍ଯ୍ୟେ ।
ନାରଦ ବୋଇଲେ ପ୍ରଭୁ ସଂସାରର ହିତେ
ମୁରାସୁର ଉପଦ୍ରବ କହିବା ନିମନ୍ତେ ।
ମଘବା ଯେ ସ୍ୱର୍ଗ ତେଜି ପଳାଇଲା ଛାଡ଼ି
ବାସ ଭଗ୍ନପକ୍ଷୀ ପ୍ରାୟେ ଅନ୍ତରୀକ୍ଷେ ଉଡ଼ି ।
ଆପଣତ ଅନ୍ତର୍ଯ୍ୟାମୀ ଜାଣ ସର୍ବ ଦୁଃଖ
ଏବେ ସେହୁ କଥା କେହ୍ନେ ହେବ ପଦ୍ମମୁଖ ।
ଶ୍ରୀହରି ବୋଇଲେ ମୁନି କହିଲ ଯା ସତ
ଜନ୍ମିଛି ମାନବ ହୋଇ ତହିଁର ନିମିତ୍ତ ।
ତୁମ୍ଭେ ତ ଜାଣ ଆମ୍ଭର ଜନ୍ମ ଅଛି କାହିଁ
ଭକତଗଣ ପରିତ୍ରାଣେ ପ୍ରକାଶିଛି ମହୀ ।
ଏବେତ ଆସି ନୃସିଂହ ଅବତାର ହେଲୁ
ମୁର ଅସୁର ନିମନ୍ତେ ମହୀରେ ଜନ୍ମିଲୁ ।
ପୁରାଣେ ତ ଶୁଣୁଥିବ ମଧୁ କଇଟଭ
ତହିଁରୁ କି ବଡ଼ ଏହୁ ଦାନବ ହୋଇବ ।
ମହାପ୍ରଳୟର ଜଳେ ତାକୁ ଅଛୁ ମାରି
ବର ମାଗିଲାରୁ ତାକୁ କଲୁ ବସୁନ୍ଧରୀ ।
ସେ ସ୍ଥାପନା ଯେବେ ନାଶୁଅଛି ମୁରଦୈତ୍ୟ
ଧ୍ୱଂସିକି ଦେଖିବା ତାକୁ କରେ କେତେକୃତ୍ୟ
ଏତେ ବୋଲି ନରସିଂହ ହେଲେ କେତେ ରୂପ
ପୃଥିବୀଯାକ ଦିଶିଲେ ନୃସିଂହ ସ୍ୱରୂପ ।
ଦେଖିଣ ନାରଦ ମୁନି ବିଚାରନ୍ତି ମନେ
ମାନବ ବୋଲି ଏହାକୁ ବୋଲିବା କେସନେ
ଏବେ ଜାଣିଲଇଁ ସମସ୍ତେ ହେଁ ହେବା ସୁସ୍ଥ
ଏତେ ବିଚାରି ନାରଦ ହେଲେ କୃତ୍ୟକୃତ୍ୟ ।
ନୃସିଂହ ବୋଇଲେ ମୁନି ଦେଖୁଥିବେ ସ୍ୱର୍ଗେ
ବିକଶିତ ଯେତେ ରୂପ ଅସୁରର ଆଗେ ।
ନାରଦ ବୋଇଲେ ତୁମ୍ଭେ ନିଶ୍ଚେ ବିଷ୍ଣୁ ରୂପ
ତୁମ୍ଭର ଆଗେ କିସ ସେ ଛାର କଉଣପ ।
ଅଶେଷ କୋଟି ବ୍ରହ୍ମାଣ୍ଡ ଯାର ଲୋମମୂଳେ
ଦିଶୁଥାଏ ତିଳଚୋପା ପ୍ରାୟେ ତାହା ଠୁଳେ ।
ବ୍ରହ୍ମାଙ୍କ ସଭାରେ ପ୍ରଦକ୍ଷିଣ କରି ନାମ
ତୁମ୍ଭେ ଅନାଦି ପୁରୁଷ ଯେ ପରମବ୍ରହ୍ମ ।
ଫାଟିଲା ତିମିର ଉଦେ ହେଲା ଦିବାକର
ଯେତେବେଳେ ଦେଖିଲୁ ଏ ରୂପ ନୃସିଂହର ।
ଯଶୋବନ୍ତୀପୁରେ ଯିବି ଆଜ୍ଞା ମୋତେ ହେଉ
ଏ ପୃଥ୍ୱୀ ସ୍ୱାମୀ ତୁମ୍ଭର ତାପ ଘେନିଯାଉ ।
ନାରଦଙ୍କୁ ବିଷ୍ଣୁରୂପ ଦେଖାଇଣ ହରି
ଧଇଲେ ନିଜ ତନୁ ସେ ରୂପ ତ୍ୟାଗକରି ।
ନୃସିଂହ ଶେଷକୁ ପ୍ରଦକ୍ଷିଣ କରି ଋଷି
ଚଳିଗଲେ ଦଣ୍ଡେ ଚଢ଼ି ବୀଣାନାଦ ଘୋଷି ।
ମନେ ବିଚାରନ୍ତି ମୋର ଫିଟିଲା ସଙ୍କଟ
ମୁର ଦାରୁଣ ଅସୁରେ ମରିବେ ନିକଟ ।
ଯହୁଁ ଦେଖିବେ ନୃସିଂହ ରୂପ ଅକଳିତ
ସମସ୍ତ ଦୁଃଖ ହୋଇବ ନିଶ୍ଚେ ହେବ ହତ
ଏହି କଥା କହିବା ଯେ ମୁରାସୁର ଆଗେ
ପୋଡ଼ିଲେ ବିଷ୍ଣୁଙ୍କୁ ବୋଲି କହୁଥିଲା ସ୍ୱର୍ଗେ ।
ଏମନ୍ତ ପାଞ୍ଚି କନକାବତୀରେ ପ୍ରବେଶ
ଶ୍ରୀ ନୃସିଂହ ଶରଣ ମୁଁ ପୀତାମ୍ବର ଦାସ ।

ଢଢଢ

## ନାରଦଙ୍କ ମୁରନିକଟେ ନୃସିଂହ ଜନ୍ମ ବୃତ୍ତାନ୍ତ କଥନ

ଶୁଣ ହେ ପରୀକ୍ଷ ରାଜା କହେ ଶୁକମୁନି
ବ୍ରହ୍ମା ନାରଦ ସମ୍ବାଦ ଏହୁ ପୁଣ୍ୟଧ୍ୱନି ।

ବଦ୍ରିକାଦେଶୁ ନାରଦ ଗଲେ ବେଗେ ଚଳି
ଶ୍ରୀନୃସିଂହ ମହିମା ମନେ ମନେ ଭାଳି ।
ଦେବେ ଡ଼ଗର ଅଟନ୍ତି ସେ ନାରଦ ମୁନି
ମୁର ଦୈତ୍ୟ ନଗ୍ରକୁ ସେ ଗଲେ ବାର୍ତ୍ତାଘେନି ।
ଶ୍ରୀନୃସିଂହ ଜନ୍ମଲୀଳା କହିବାର ପାଇଁ
ମନ ପବନ ଦଣ୍ଡକୁ ଚଳିଲେ ଆରୋହି ।
କାଖରେ କଳି ଧୋକଡ଼ି ହସ୍ତେ ବୀଣାଘେନି
କର୍ଣ୍ଣେ କୁଣ୍ଡଳ କଟିରେ କଷା କଉପିନି ।
କପାଳେ ହରି ମନ୍ଦିର ତିଳକ ବିରାଜେ
ଚଳନ୍ତି ସେ ମହାମୁନି କନକାବତୀ ଯେ ।
କହିବା ଯାଏ ମୁନିଙ୍କ ଫୁଲାଉଛି ପେଟ
ସତ କହିଲେ ଲାଗିବ କଥା କଳିହାଟ ।
ନୃସିଂହ ଜନ୍ମ କହିବେ ମୁରଦୈତ୍ୟ ଆଗେ
ସତ କହିଲେଣି କଳି ଉପୁଜିବ ବେଗେ ।
ଏମନ୍ତ ମହିମାବନ୍ତ ପଦ୍ମଯୋନି ଶିଷ୍ୟ
ଅସୁର ସଭାରେ ଯାଇ ହୋଇଲେ ପ୍ରବେଶ ।
ଝାଳେଣି ତ୍ରିପିଣ୍ଡ ହୋଇଗଲେ ମୁନିକାୟେ
କଷା ବାସ ଧରି ହସ୍ତେ ବିଞ୍ଚୁଛନ୍ତି କାୟେ ।
ମଣୋହି ସାରିଣ ରାଜା ବିଜେ ସିଂହାସନେ
ଭେଟନ୍ତି ସଭାରେ ଆସି ସେନାପତିମାନେ ।
ଏସନ ସମୟେ ମିଳିଗଲେ ମୁନିବର
ଋଷିଙ୍କୁ ଦେଖିଣ ରାଜା ଉଠି ଧାଡିକାର ।
ଆସନ ଦେଇଣ ରାୟେ ପାଦ ପଖାଳିଲା
ପାରୁଶେ ବସାଇ ସେହୁ ନମସ୍କାର କଲା ।
ସେବକ ବିଞ୍ଚଣୀ ବିଞ୍ଚଣୀକି ଘେନି ଭୁଜେ
ମୁରପଚାରେ ମୁନି କି ଅର୍ଥେ କଲ ବିଜେ ।
ଦେହଯାକରୁ ତୁମ୍ଭର ଗଳେ ଶ୍ରବଝାଳ
ବଦନ ଶୁଖିଣ ଚକ୍ଷୁ ଦିଶେ ଢଳ ଢଳ ।
ପୁଚ୍ଛନ୍ତେ ରାଜନ ସଭାଲୋକେ ନିଶବଦେ
ଠକାରେ କହନ୍ତି ମୁନି ହୋଇ ଗଦ ଗଦ ।
କ୍ରୋଧ କଲା ପ୍ରାୟେ ସେହୁ ନ ପାରନ୍ତ କହି
ଝର ଝର ଚକ୍ଷୁ ମଧୁ ପଡ଼େ ଲୁହ ବହି ।
ଦେଖି ମୁନିଙ୍କୁ ସାଷ୍ଟାମ କଲେ ମୁରାସୁର
ବୋଇଲେ ଅଧୈର୍ଯ୍ୟ କିମ୍ପା ହୁଅ ମୁନିବର ।
ନ ଥିଲେ ଅନ୍ନ ବସନ ମାଗିନିଅ ମୋତେ
ଲକ୍ଷକ ସୁବର୍ଣ୍ଣ ହୀରା ଦେବି ଆଜି ତୋତେ ।
ମାଗିଲେ ଅର୍ଦ୍ଧେକ ରାଜ୍ୟ ତୋତେ ଦେବିପୁଣ
ସ୍ୱର୍ଗେ ବସିବି ବୋଇଲେ ଦେବି ଇନ୍ଦ୍ରପଣ ।
ନାରଦ ବୋଇଲେ ଶୁଣ ଅସୁର ଭୂପାଳ
ଏ କଥାରେ ମୁହିଁ କିମ୍ପା ହୋଇବି ବିକଳ ।
ଭୁଞ୍ଜିବୁ ଯେତେ ତୁ ଶିରୀ ଆମ୍ଭର ଯେ ସୁଖ
ଗୋଟିଏ କଥାକୁ ମୋତେ ଲାଗୁଅଛି ଦୁଃଖ ।
ନୋହିଲେ କି କରନ୍ତି ମୁଁ ଏଡ଼େବଡ଼ କ୍ରୋଧ
ଶୁଣି ଦୈତ୍ୟ ଧଇଲା ଯାଇ ମୁନି ପାଦ ।
ବୋଇଲା ଯେ ତାହା ଆଗ କହ ମୋତେ କିସ
ନାରଦ ବୋଇଲେ ରାଜା ସ୍ଥିର ହୋଇ ବସ ।
ଋଷିର ବଚନେ ରାଜା ବସିଲା ନିଃଶବ୍ଦେ
ନାରଦ ମୁଖୁଁ ଫିଟିଲା କଥା ପଦେ ପଦେ ।
ବୋଲନ୍ତି ସାବଧାନେ ହୋ ଶୁଣ ଦୈତ୍ୟନାଥ
ତୋହର ଶତ୍ରୁ ଆସିଣ ମର୍ତ୍ତ୍ୟେ ହେଲା ଜାତ ।
ଜମ୍ବୁଦ୍ୱୀପ ମଧ୍ୟରେ ଯେ ବଦରିକା ଦେଶ
ତହିଁରେ ଅଟନ୍ତି ବିପ୍ର ରାଜା ସୂର୍ଯ୍ୟବଂଶ ।
କୃଷ୍ଣବଲ୍ଲବ ବୋଲିଣ ଅଟେ ତାର ନାମ
ତାର ଘରେ ପୁତ୍ର ବେନି ହେଲେ ଆସି ଜନ୍ମ ।
ତୋହର ଭାରା ପୃଥିବୀ ନ ପାରିଲା ସହି
ଜନମିଲେ ବିଷ୍ଣୁ ଆସି ନରଦେହ ବହି ।
ଜ୍ୟେଷ୍ଠ ତନୟର ନାମ ନୃସିଂହଟି ଜାଣ
କନିଷ୍ଠ ପୁତ୍ରର ନାମ ଶେଷ ଦେବ ପୁଣ ।
ଜନମ ହେଲା ଦିନରୁ ବହୁ ଲୀଳା କଲେ
ନୃସିଂହ ରାହାସ କରି ବ୍ରତବିଧି ହେଲେ ।
ବହୁ ବିଦ୍ୟା ଶିଖି ସାଧି କଲେ କ୍ଷତ୍ରୀବୃତ୍ତ
ରାଜ୍ୟରେ ରାଜା ହୋଇଣ ପାଳନ୍ତି ଜଗତ ।
ବରୁଣପୁରକୁ ଯାଇ ଲାଖକୁ ବିନ୍ଧିଲେ
ସେ ଲାଖେ ସବୁଙ୍କୁ ଜିଣି କନ୍ୟାକୁ ଆଣିଲେ
ଶ୍ରୀମହାଲକ୍ଷ୍ମୀଙ୍କୁ ବିଭାହେଲେ ଜଗନ୍ନାଥେ
ବରୁଣପୁରୁ ଆସି ଗରୁଡ଼ଧ୍ୱଜ ରଥେ ।
ବଦ୍ରିକାପୁରେ ରହିଲେ ଯାଇଁ ଗଡ଼ବାନ୍ଧି
ଆନନ୍ଦକଞ୍ଜ ରୋପିଲେ ତହିଁ ଦୟାନିଧି ।
ତହିଁ ମଧ୍ୟେ ଯଜ୍ଞବେଦୀ ଅତି ଶୋଭାବନ
ଚୋରିସସ୍ର ଯୁଣ ତୋଟା ଅତି ବିଡପନ ।
ତହିଁ ପାରୁଶେ ଅଛନ୍ତି ପ୍ରଭୁ ନିଜେ ରହି
କରନ୍ତି ତୋହର ମୃତ୍ୟୁ ଚିନ୍ତା ଭାବଗ୍ରାହୀ ।
ଯେବେଣ କଳାରେ ତୁହି ଦିଗବିଜେ କଲୁ
ବିଷ୍ଣୁଙ୍କୁ ପୋଡ଼ିଲୁ ବୋଲି ମୋତେ କହିଥିଲୁ ।
ତୋର ମୁଖୁ ଶୁଣି ମୁହିଁ କରିଥିଲି ଶ୍ରଦ୍ଧା
ଏବେ ବିଷ୍ଣୁ ଜନ୍ମଦେଖି ଲାଗେ ମୋତେ ବାଧା ।
ମୁଁ ପାଞ୍ଚୁ ଥାଇ ମୁରର ବୈରୀ ସିନା ହରି
ହରି ପୋଡ଼ିମଲା ଆଉ କେହୁ ଅଛି ସରି ।
ତିନିପୁରେ ରାଜା ହେଲୁ ବୋଲି ଜାଣିଥିଲି
ତୋହ ଶତ୍ରୁକୁ ଦେଖିଲି ଏବେ ଯାଇ କାଲି ।

ସପ୍ତଦଶ ବର୍ଷ ହୋଇଅଛି ସମସରି
ବଦରିକାପୁରେ ପ୍ରଭୁ ଛନ୍ତି ବିଜେକରି ।
ଅତିଅନ୍ତ ସୁନ୍ଦର ଯେ ଦିଶେ ବଳବନ୍ତ।
କ୍ଷତ୍ରୀପଣେ ଯୋଗ୍ୟ ତାକୁକେ ହେବ ଶକତା
ତାହା ଦେଖିକରି ମୋତେ ଲାଗେ ବଡ଼ଭୟେ
ବିକାଶୁଛି ତେଜମାନ ଧ୍ରୁବଲୋକ ଯାଏ ।
ଏହା ଦେଖିବାରୁ ତହିଁ ଅଇଲି ପକାଇ
ପାଞ୍ଚିଲି ରାଜାକୁ ଆଗ କହିବି ଯେ ଯାଇ ।
ଶ୍ରୀବିଷ୍ଣୁଙ୍କୁ ଦିଗବିଜେ କାଳେ ଥିଲୁ ପୋଡ଼ି
ସେହି ବିଷ୍ଣୁ ଏଥେ ଆସି ଜନ୍ମିଲା ବାହୁଡ଼ି ।
ବିଷ୍ଣୁଙ୍କ ପୋଡ଼ିଲୁ ବୋଲି ତୁହି ଅଛୁ ଜାଣି
ଏବେ ବଦ୍ରିକାରେ ଜନମିଲେ ଚକ୍ରପାଣି ।
ଶୁଣିଲଇଁ ସେ ପୁତ୍ରଙ୍କ ମୁଖୁଁ ଯେଉଁ ଆଣ୍ଟ
ତାହା ଶୁଣିଲେ କରିବୁ ରାୟେ ପରା ରୁଷ୍ଟ ।
ବୋଇଲେ ବଢିବୁ ଯେତେ ବେଳେ ଆମେ ଦୁହେଁ
ମୁରକୁ ମାରିଣ ସୃଷ୍ଟି ପାଳିବୁ ଏ ଦେହେଁ ।
ଦେବତାମାନଙ୍କୁ ଆଣି ବସାଇବୁ ସ୍ୱର୍ଗେ
ମଞ୍ଚପୁରେ ନରେ ଥିବେ ପାତାଳରେ ନାଗେ
ଏମନ୍ତ ବୋଲି କହନ୍ତେ ଦୁହେଁ ହୋଇ ମତ୍ତ
ତାହା ଶୁଣି ଚିନ୍ତା ମୋତେ ଲାଗେ ଅପ୍ରମିତ ।
ତେଣୁ କରି ଚିନ୍ତାରେ ମୁଁ ନ ପାରଇ ଉଠି
ତୋରପରା ଭାଇକି ସେ ମାରିବେ ଯେବେଟି ।
କୁଶଳରେ ଥିଲେ ତୁହି ମୋର ବଡ଼ କାର୍ଯ୍ୟ
ମୁହିଁ କହିବାରୁ ଜଣା ହେଲା ତୋତେ ଆଜ ।
ଉପାୟ କରିଣ ତୁହି ମରାଇଲୁ ଭଲେ
ହୃଦୟରେ ରଖ ଶତ୍ରୁ ମଞ୍ଚରେ ଜନ୍ମିଲେ ।
ଆଜିଠାରୁ ରହି ତୁହି କରିଣ ସତର୍କ
ନାନା ଉପାୟ କରିଣ ମରା ପୁଣ୍ୟ ଶ୍ଳୋକ ।
ନାରଦଙ୍କ କଥା ଶୁଣି ପାଞ୍ଚେ ଦୈତ୍ୟ ଆସି
ବୋଲେ ସତ୍ୟକଥା ଆସି କହିଲ ହେ ଋଷି ।
ବରୁଣ ପୁରକୁ ଯାଇ ବିନ୍ଧିଲେ ସେ ଲାଖ
ସତକଥା ସେହୁ ଅଟେ ଜାଣ ପଦ୍ମମୁଖ ।
ତେଡ଼େ ଲାଖ ବିନ୍ଧି ଯେବେ କନ୍ୟାକୁ ଆଣିଛି
ନିଶ୍ଚେ ବଦରିକା ଦେଶେ ଜନ୍ମିଲେ ଶ୍ରୀବତ୍ସି ।
ଈଶ୍ୱରଙ୍କ କଥା ଏବେ ହେଲା ଆସି ସତ
ବର ଦେଲା ବେଳେ କହିଥିଲେ ବିଶ୍ୱନାଥ ।
ବୋଇଲେ ବଦରିଦେଶେ ଜନ୍ମିବେ ଗୋବିନ୍ଦ
ହେୟଜ୍ଞାନ କଲେ ତୋତେ ହୋଇବଟି ମନ୍ଦ ।
ଏବେ ତ ଶୁଣିଲେ ସେହି କଥା ମୁନି ମୁଖୁଁ
ପ୍ରତ୍ୟକ୍ଷେ ଆସି ଫଳିବ ଏବେ ଦେଖୁ ଦେଖୁ ।
ମୁନିଙ୍କ ଦୟା ଥିବାରୁ କହିଲେଟି ଆସି
ଉପାୟ କରି ଆଣିବ ଏବେ ବ୍ରହ୍ମରାଶି ।
ମନୁଷ୍ୟ ଦେହେ ଜନ୍ମିଛି ସିନା ଜଗନ୍ନାଥ
ହସ୍ତରେ ପଡ଼ିଲେ ପ୍ରାଣ ନେବି ମାରି ମୁଥ ।
ଏସନ ପାଞ୍ଚିଣ ମୁର ମୁନି ପାଦତଳେ
ଶତେବାର ପ୍ରଣାମ ଯେ କରି ସେହୁ ଭୋଳେ ।
ବହୁ ପୁରୁଷାର୍ଥ କରି କହଇ ଅସୁର
ବୋଇଲେ ବିଷ୍ଣୁକୁ ମୋର ତିଳେନାହିଁ ଡର ।
ଜନ୍ମିଛନ୍ତି ଜମ୍ବୁ ଦ୍ୱୀପେ ଜାଣିଲେ ଶ୍ରୀହରି
କାଲି ଦୂତ ପେଷିଣ ଯେ ଅଣାଇବି ଧରି ।
ବୁଝିଲେ ସଚରାଚର ଭୂମି ମୋର ଏକା
ଏହା ନ ପାଞ୍ଚିଲା କେହ୍ନେ ଜନ୍ମିଲା ବଦ୍ରିକା ।
ଭୋ ମୁନି ଦୂତ ପେଷିଣ ଅଣାଇବି କାଲି
ନ ଆସିଲେ ବଂଶଯାକ ମାରିବି ମୁଁ ବୁଲି ।
ଏତେ ବୋଲି ମୁରାସୁର ଝଲକାଇ ମୁଷ୍ଟି
କୁରାଳଚକ୍ର ପ୍ରାୟେକ ବୁଲାଇଲା ଦୃଷ୍ଟି ।
ବେଳକୁ ବେଳ ଉଠିଲା ରାଜା କୋପକରି
ନିଶବ୍ଦ ହୋଇଣ ଲୋକେଛନ୍ତି ସଭା ପୂରି ।
ଦୈତ୍ୟ କୋପ ଦେଖି ମୁନି ହୁଅନ୍ତି ଆନନ୍ଦ
ପାଞ୍ଚନ୍ତି ନିଶ୍ଚେ ଏହାକୁ ମାରିବେ ଗୋବିନ୍ଦ ।
ଅସୁର ଛାର ବଳେ କେ ପାରିବ କି କରି
ଯେଉଁ ନାରାୟଣ ପ୍ରଭୁ ଯେଉଁ ରୂପ ଧରି ।
କୋଟି କୋଟି ସୃଷ୍ଟିଯାକ ଯାର ଲୋମମୂଳେ
ଏହି ଦୈତ୍ୟ ତାର କିସ କରିପାରେ ବଳେ ।
ଏହାର ବିନାଶ ପାଇଁ ଜନ୍ମିଛନ୍ତି ସେହୁ
କି ହେବ କରିଲେ କୋପ ନାଶଯିବ ଏହୁ ।
ବକ କୋପ କରିଲେ କି ଡରଇ ସଞ୍ଚାଣ
ସିଂହ ଆଗରେ ମୃଗର ରହଇ କି ଟାଣ ।
ସର୍ପର ଗର୍ଜନ ଶୁଣି ଗରୁଡ଼ କି ଡରେ
ମୂଷିକକୁ ମାର୍ଜାର କି କେବେ ଭୟକରେ ।
ବ୍ୟାଘ୍ର ଆଗେ ଛାଗଳ କି ରହେ ଆଣ୍ଟକରି
ମୁରର ଧମକ ଯାକ ଅଟେ ସେହିପରି ।
ଏତେ ପାଞ୍ଚି ଋଷି ପୁଣି କହନ୍ତି ରାଜାଙ୍କୁ
ବୋଲନ୍ତି ବିଚାରି କାର୍ଯ୍ୟ କର ବାବୁ ତାଙ୍କୁ ।
ଆପେ ଜୀଇଥିଲେ ସିନା ସବୁ ଯଶ ମିଳି
ଆମ୍ଭେ କି କରିବୁଁ ତୁହି ଅଟୁ ମହାବଳୀ ।
ପୀରତି ଅଥବା କର ଯୁଦ୍ଧ ଅବା କର
ନାନା ପରକାରେ ତୋର ବଇରୀ ସଂହାର ।
ଆସନୁ ଉଠିଲେ ଏତେ କହି ମହାଯତି
ମନ ପବନ ଆରୋହି ଗଲେ ଯଶୋବନ୍ତୀ ।

## ବିଷ୍ଣୁ ଜନ୍ମ ଶୁଣି ମୁରାସୁରର ଚିନ୍ତା ଓ ଅଶୀଳକୁ ବଦରିକାଶ୍ରମେ ପ୍ରେରଣ

କହନ୍ତି ବେଦବ୍ରହ୍ମା ଶୁଣ ହେ ନାରଦ
ଶ୍ରୀହରି ଜନମ ଶୁଣି ମୁର କଲା ଖେଦ ।
କି କରିବି ବୋଲି ସେହୁ ହୁଅଇ ବ୍ୟାକୁଳ
ଅସମ୍ଭାଳେ ଶରୀରରୁ ବହେ ଶ୍ରମଝାଳ ।
ଯହିଁ ଚାହେଁ ତାହା ତାକୁ ନ ଲାଗଇ ସୁଖ
କେ ଆସି କହିଲେ କଥା ହୁଅଇ ବିମୁଖ ।
ବୁକୁ ଥରୁଥାଇ ଖରେ ନିଶ୍ୱାସ ଛାଡ଼ଇ
ହାଇ ଫର ଫର ଲୁହ ଝର ଝର ବହି ।
ଭୁଞ୍ଜିବା ତାମ୍ବୁଳ ତାକୁ ବିଷ ପ୍ରାୟ ଲାଗେ
କୁରାଳଚକ୍ର ପରାୟ ବୁଲେ ମନ ବେଗେ ।
କ୍ଷଣ କ୍ଷଣକରେ ଚିତ୍ତ ହୁଏ ଆନ ଆନ
ସଭା ମଉଳି ଚଳିଲା ଆପଣା ଭୁବନ ।
ଦିବସ ଟା ନ ସରଇ ରାତ୍ରେ ନିଦ୍ରାନୋହେ
ଅମୃତ ଯୋଗାଡ଼କୁ ସେ ମଣେ ବିଷପ୍ରାୟେ ।
ମନମଧ୍ୟେ ବିଚାରଇ କଲି ବହୁ ଭୋଗ
ଲେଖନ୍ତେ ପୂର୍ଣ୍ଣ ହୋଇବ କୋଟି ଗଣ୍ଡା ଯୁଗ ।
ତେତିଶ କୋଟି ମୋହର ନଗ୍ରେ ଛନ୍ତି ରାଣୀ
ମଦନାବତୀ ରାଣୀ ଯେ ସର୍ବ ଶିରୋମଣି ।
ସତର ଲକ୍ଷ ପୁତ୍ର ଯେ ନାତି ନବଲକ୍ଷ
ଏ ରୂପେ କୁଟୁମ୍ବ ମୋର ଅଛନ୍ତି ଅସଂଖ୍ୟ ।
ସେନାପତିମାନେ ମୋର ଏକୁ ଏକ ରଥ
ମନ କଲେ କ୍ଷଣେ ପୃଥ୍ୱୀ ଜିଣି ଯେ ପାରନ୍ତି ।
ରଥୀ ମହାରଥୀ ବୀର ମହାବୀର ଯେତେ
ଗଣାଯାଇ ନ ପାରେ ମୋ ବଳେଛନ୍ତି କେତେ
ଚଉରାଶି ଲକ୍ଷ ପଦ୍ମ ସୈନ୍ୟ ମୋର ଛନ୍ତି
ସ୍ୱର୍ଗ ମର୍ତ୍ତ୍ୟ ପାତାଳେ ମୁଁ ଏକା ଚକ୍ରବର୍ତ୍ତୀ ।
ଭାଇ ମୋହର ସମାନ ଅଟେ ମହାବୀର
ପାଇଛୁ ଆମ୍ଭେ ଅକ୍ଷୟ ଅକ୍ରାମର ବର ।
ପୃଥିବୀ ଥିବାଯାକ ମୁଁ ଅଛି ଦେହ ଧରି
ଯାହା ମନାସିବ ତାହା ନିଶ୍ଚେ ଯିବି କରି ।
ତେତିଶକୋଟି ଦେବ ଯେ ଖଟିଛନ୍ତି ମୋତେ
ମୃତ୍ୟୁ ନ ଲଭନ୍ତି ମୋର ନଗ୍ରେ ଛନ୍ତି ଯେତେ ।
କାଳଦଣ୍ଡ ଘେନି ଯମ ଜଗିଥାନ୍ତି କତି
ଅଗ୍ନି ଦେବତା ସମ୍ଭାଳୁଥାନ୍ତି ପାକ ନିତି ।
ଚନ୍ଦ୍ର ସୂର୍ଯ୍ୟ ବେନି ଦ୍ୱାରୀ ଥାନ୍ତି ସର୍ବଦାଏ
କୁବେର ଯୋଗାଏ ଅଳଙ୍କାରେ ରତ୍ନମୟେ ।
ମରୁତ ଦିଅଇ ଫୁଲ ଚନ୍ଦନ କୁସୁମ
ବରୁଣ ପାଳଇ ମୋର ଏ ତିନି ଭୁବନ ।
ପବନ ବିଞ୍ଚଣି ଧରି ବିଞ୍ଚେ ମୋତେ ନିତ୍ୟେ
ନିଦ୍ରାବତୀ ନିଦ୍ରା ଆସି ଘାରେ ନିଶି ହୋନ୍ତେ ।
ଆଉ ଯେତେ ଅଛନ୍ତି ତେତିଶକୋଟି ଦେବା
ମୋତେ ନିରନ୍ତରେ ଆସି କରୁଥାନ୍ତି ସେବା ।
ସମସ୍ତ ବିଚାରି ମୋତେ ଦେଲେ ଯେ ଟିକିଏ
ତାଙ୍କୁ ବିଳସିବି ମୁହିଁ ପୃଥ୍ୱୀ ଥିବାଯାଏ ।
ପ୍ରତ୍ୟକ୍ଷରେ ଧାତା ମୋର ଅଟଇ ପିଅର
ବରଦେଇ ହର ମୋରେ କଲେ ଅକ୍ରାମର ।
କିପରି ରସିକ କୃଷ୍ଣବଲ୍ଲଭର ପୋଏ
କାଲି ଅଣାଇ କରିବି ତାଙ୍କୁ ମୁହିଁ କ୍ଷୟ ।
ଦେଖିଲେ ଜାଣିବି ବିଷ୍ଣୁ ଅଟେ ଅବା କେଡ଼େ
ସ୍ୱର୍ଗ ମର୍ତ୍ତ୍ୟ ପାତାଳ କି ଘୋଟେ ସବୁଆଡ଼େ ।
ତଥାପି ବୁଝିଲେ ଜଳ ସ୍ଥଳ ସବୁ ମୋର
ମୋର ତହୁଁ ବଡ଼ କିସ ଅଟେ ଦାମୋଦର ।
କେବଳ ମାତ୍ରକ ଋଷି ଜଣାଇଲେ ଯାହା
ଭାଳି ମୋର ମନ ଛନ୍ନ ହେଉଅଛି ତାହା ।
ବିଜୟ ରଥରେ ମୁହିଁ ବସିଥାଏ ଯେବେ
ଦିଶନ୍ତି କିଞ୍ଚିତେ ମୋତେ ତିନିପୁର ଜୀବେ ।
ଏସନ ବୋଲି ରଜନୀଯାକ ରାଜା ଭାଳି
ପାହାନ୍ତି ପହରେ ଶୋଇଲା ସେ ଲଟକାଳି ।
ସେହି ପ୍ରହରକ ମାତ୍ର ଶୋଇଗଲା ନିଦେ
ଅରୁଣ ଅନ୍ତେ ଆଦିତ୍ୟ ହେଲେ ଆସି ଉଦେ ।
କାକ ଶୁକ ପିକ ରାବନ୍ତି ଯେ ଘନ ଘନ
ମାଗଧେ କରନ୍ତି ଶିବଆଳେ ଶଙ୍ଖସ୍ୱନ ।
ଆସନ୍ନୁ ଉଠିଲେ ଶଯ୍ୟା ତେଜିଣ ସର୍ବଲୋକେ
ରାଜାହିଁ ଉଠିଲା ମଧ ହୋଇଣ ଉସ୍ତୁକେ ।
ରାଜନୀତି କର୍ମବିଧି ସାରିଣ ତ୍ୱରିତ
ବଦରିକା ପେଷିବାକୁ ଅଣାଇଲା ଦୂତ ।
ରତ୍ନ କଠାଉ ମାଡ଼ିଣ ସଭାକୁ ଅଇଲା
ଶିବ ଶିବ ସୁମରିଣ ଆସନେ ବସିଲା ।
ଏକାନ୍ତ କରିଣ ଡାକି ଆଣିଲା ଅଶୀଳ
ଗୌରବ କରି କହିଲା ତାକୁ ମହୀପାଳ ।
ବୋଇଲା ବାବୁରେ ତୁହି ଏହିକ୍ଷଣି ଯିବୁ
ବଦରିକା ଦେଶେ ଯାଇ ବାର୍ତ୍ତା ଆଣିଦେବୁ ।
କୃଷ୍ଣବଲ୍ଲଭର ପୁଣି ଛନ୍ତି ବେନି ସୁତ
ରଥରେ ବସାଇ ତାକୁ ଆଣିବୁ ତ୍ୱରିତ ।
ଆମ୍ଭ ଆଜ୍ଞା ବୋଲି ତାଙ୍କୁ କହିବୁ ବତାଇ
ବୋଲିବୁ ପୁଅକୁ ଘେନି ଆସ ଶୀଘ୍ରହୋଇ ।
ନୋହିଲେ ତୁହି ଯେବେ କି ଆସି ନ ପାରିବୁ
ପୁଅଙ୍କୁ ଦିଅ ତୋହର ସଙ୍ଗେ ଆମ୍ଭେ ନେବୁ ।

ଅପାର ବିଦ୍ୟା ଯେ ଅଛନ୍ତି ସେ ଶିଖି
ଧନୁ ଶସ୍ତ୍ର ସାଧି ରହୁଛନ୍ତି ମନେ ରଖି ।
ସଭାରେ ପଡ଼ିଛି ତାଙ୍କ ଯଶ କାଲିଠାରୁ
ରାଜା ବୋଇଲେ କରିବା ତାଙ୍କୁ ବିଦ୍ୟାଗୁରୁ ।
ଯେତେକ ପୁତ୍ର ଆମ୍ଭର ଅଛନ୍ତି ନବରେ
ସମସ୍ତେ ବିଦ୍ୟା ପଢ଼ିବେ ଯାଇ ତାଙ୍କଠାରେ
ବିଦ୍ୟାଗୁରୁ ହୋଇଣ ସେ ଘେନିବେ ତୋ ପୂଜା
ଏମନ୍ତ କହି ପେଷିଲେ ମୋତେ ଆମ୍ଭରାଜା ।
ଏହିରୂପେ ଅଶୀଳ ହେ କହ ତାକୁ ଯାଇ
ନ ଆସିଲେ ଉପାୟ ଯେ କରିବି ନା ମୁହିଁ ।
ନାରଦ କହିବାରୁ ଯେ ଲାଗିଲାକ ଭୟ
ବିଷ୍ଣୁ ଯେ ଅଟନ୍ତି କୃଷ୍ଣବଲ୍ଲଭର ପୋଏ ।
ମୋହ ମରଣ ନିଶ୍ଚେ ବିଷ୍ଣୁ ହାତେ ହେବ
ବର ଦେବାବେଳେ କହିଛନ୍ତି ସଦାଶିବେ ।
ତେଣୁକରି ଲାଗୁଅଛି ତାଙ୍କୁ ବଡ଼ ଭୟେ
ସାନଦିନୁ ମାଇଲେ ଯେ ଯାନ୍ତା କୁଳକ୍ଷୟେ ।
ସେ ଦୁହେଁ ମଲେ କରିବି ମୁହିଁ କେତେ ଭାଗ
ବୁଲିବି ତୁମ୍ଭଙ୍କୁ ଘେନି ଦମ୍ଭେ ଚତୁର୍ଦ୍ଦିଗ ।
ମୃତ୍ୟୁ ଦେବତା ମୋହର ଅଟେ ସେବାକାରୀ
ବ୍ୟାଧି ଛାର ଆମ୍ଭଙ୍କୁ ଯେ କିସ କରିପାରି ।
ଏଣୁକରି ଅଶୀଳ ହୋ ଯାଅ ତୁହି ବେଗେ
କୃଷ୍ଣବଲ୍ଲଭ ପୁତ୍ରଙ୍କୁ ଘେନି ଆସ ବେଗେ ।
ଶୁଣିକରି ଅଶୀଳ ଯେ ହେଲା ଶୀଘ୍ର ସଜ
ମେଲାଣି ମାଗି ବାହାର ହୋଇଲା ଦନୁଜ ।



## ଅଶୀଳର ବଦରିକାଶ୍ରମେ ପ୍ରବେଶ ଓ ମୁରର ବୃତ୍ତାନ୍ତ ବର୍ଣ୍ଣନ

ପ୍ରବେଶ ହୋଇଲେ ଯାଇ ବଦରିକାରାଜ୍ୟେ
ତହିଁରେ କୃଷ୍ଣବଲ୍ଲଭ କରିଛନ୍ତି ବିଜେ ।
ଅସୁର ଯେ କାମରୂପୀ ସୁଖେ ଉଡ଼ିଆସି
ସଭା ମଧ୍ୟେ ମୂର୍ଖଦୈତ୍ୟ ପଡ଼ିଲାକ ଖସି ।
ଜଗତୀରେ କୃଷ୍ଣବଲ୍ଲଭ ଯେ ବସିଥିଲେ
ଅସୁରକୁ ଦେଖିଣ ସେ ଚମତ୍କାର ହେଲେ ।
ରାଜାର ପାଶେ ନୃସିଂହ ଅଛନ୍ତି ଯେ ବସି
ଶଙ୍ଖ ଚକ୍ର ଗଦା ପଦ୍ମ ଅସୁରକୁ ଦିଶି ।
ଧାତାର ବାମେ ଦକ୍ଷିଣେ ଯେହ୍ନେ ହରିହର
ସେହିରୂପେ ଦିଶନ୍ତି ସେ ରାଜା ଶୋଭାକର ।
ଛାମୁରେ ଅଛନ୍ତି ପାତ୍ରମନ୍ତ୍ରୀ ସଭା କରି
ରାଜ୍ୟର ନିଘା ନିଷ୍ଠ ଯେ ବୁଝନ୍ତି ଗୁହାରି ।

ଏମନ୍ତ ସମୟେ ଯାଇ ମିଳିଲା ଅସୁର
ବୋଇଲା ରାଜାର ଆଜ୍ଞା ଉଠ ନୃପବର ।
କୃଷ୍ଣବଲ୍ଲଭ ବୋଲନ୍ତି କେଉଁଦେଶ ଦୂତ
ଅଶୀଳବୋଲେ ପେଷିଛି ମୋତେ ମୁରଦୈତ୍ୟ
ଶୁଣିଣ ନୃସିଂହ ପିତା କଲେ ଗଉରବ
ପୁଚ୍ଛନ୍ତି ଆସନ ଦେଇ କରି ସଦଭାବ ।
କୃଷ୍ଣବଲ୍ଲଭ ବୋଲନ୍ତି କହ ଦୂତପଣେ
କେବଣ ଚରିତ କହିଛନ୍ତି ନୃପରାଣେ ।
ଆମ୍ଭ ଭାଗ୍ୟକୁ ଅଇଲ ତୁମ୍ଭେ ଦୂତ ହୋଇ
ଏହା ଶୁଣିଣ ଅଶୀଳ ଛାମୁରେ କହଇ ।
ଆମ୍ଭର ରାଜ ସଭାରେ ପଡ଼ିଛି ବିଷୟ
କୃଷ୍ଣବଲ୍ଲଭଙ୍କଠାରୁ ଆଣ ବେନିପୁଅ ।
ତାହା ଶୁଣି ଆମ୍ଭ ରାଜା ଶ୍ରଦ୍ଧାଛନ୍ତି କରି
ଗଲେ ବିଦ୍ୟାଗୁରୁ କରିବେକ ଦଣ୍ଡଧାରୀ ।
ସତରଲକ୍ଷ ଅଛନ୍ତି ପୁତ୍ର ଯେ ତାଙ୍କର
ତାଙ୍କୁ ବିଦ୍ୟା ପଢ଼ାଇବେ ତୁମର କୁମର ।
ଅନେକ ଧନ ରତନ ଆଣିବେ ଦକ୍ଷିଣା
ପୁରୁଷାର୍ଥ କରି ରାଜା କରିବେ କରୁଣା ।
ତୁମ୍ଭେ ତ ଜାଣ ମୁରର ମହିମାଟି ଯେତେ
ନ ଗଲେ ତୁମ୍ଭଙ୍କୁ କୋପ କରିବେ ନିରତେ ।
ଏମନ୍ତ ବୋଲି କହନ୍ତେ ଦୈତ୍ୟ କୂଟ କରି
ଅନ୍ତର୍ଗତ କଥା ତାର ଜାଣିଲେ ମୁରାରି ।
କୃଷ୍ଣବଲ୍ଲଭ ନୃପତି ଦୈତ୍ୟ ବାକ୍ୟ ଶୁଣି
ରହିଲେ ଚକିତ ହୋଇ ଦଣ୍ଡେଯାଏ ପୁଣି ।
ମନେ ପାଞ୍ଚିଲେ ବିଷମ କଥା ହେଲା ଆସି
ପୁତ୍ରଦେଇ କେହ୍ନେ ମୂର୍ଚ୍ଛି ରହିବି ମୁଁ ବସି ।
ନାହିଁ ବୋଇଲେତ କୋପ କରିବ ଯେ ମୁର
ଯାଆନ୍ତୁ ବୋଇଲେ ଶିରୀ ତୁଟିବ ମୋହର ।
କେବଣ ଉପାୟ ଏବେ କରିବି କି ବୁଦ୍ଧି
କି ରୂପେ ଯିବ ଏ ଦୈତ୍ୟ କି କହିବି ବୋଧି ।
କେତେ ପୁଣ୍ୟେ ଅର୍ଜିଥିଲି ସେହି ବେନି ପୁତ୍ର
ପୁତ୍ରେ ଯେ ତାର ଥାଆନ୍ତେ ମୋର କୁଳଗୋତ୍ର ।
ଏ କଥାକୁ ଚଣ୍ଡାଳ ତ ନ ଜାଣିଲା କିଛି
ମାଗିଲେ ପୁତ୍ରକୁ ତାର ଦେବ କି ସେ ମୂର୍ଚ୍ଛି ।
ଏ ରୂପେ ମନରେ ପାଞ୍ଚି ସେ ବଲ୍ଲଭ ରାଜା
ବୋଇଲେ ଏଠାରୁ ତୁହି ବେଗେ ଚଳି ଯାଆ ।
ପୁତ୍ରକୁ ଦେଇ ରଖିବି କେହ୍ନେ ମୋର ଦେହ
ଯାଅ ଆ ଅଶୀଳ ଏବେ ରାଜାଙ୍କୁ ତୋ କହ ।
ଦୁଇ ତିନି ନାହାନ୍ତି ତ ମୋର ଆଉ ଜାଣ
କେମନ୍ତେ ପୁତ୍ରକୁ ଦେଇ ରଖିବି ପରାଣ ।

ଏରୂପେ କହି ହୁଅନ୍ତି ରାଜା ଶୋକଭର
ପିତାର ସେ ମନ କଥା ଜାଣି ଚକ୍ରଧର ।
ହୃଦରେ ପାଞ୍ଚନ୍ତି କଥା ବସି ଭଗବାନ
ବୋଲନ୍ତି ଆମ୍ଭେ ହୋଇଛୁ ଦୈତ୍ୟପାଇଁ ଜନ୍ମ ।
ନ ଯିବା ବୋଇଲେ ପୁଣ ହେବ ଅସୁନ୍ଦର
ପିତା ମନ ମୋହିଯିବ ଦୈତ୍ୟଙ୍କର ପୁର ।
ଅସୁରମାନେ ଲଭିଲେ ନିଶ୍ଚେ ମୃତ୍ୟୁ ଏବେ
ବିଧାତା ଲେଖି ଅଛନ୍ତି ଜାଣି ଯାହା ପୂର୍ବେ ।
ତଥାପି କହିଲେ ନ ଯିବାକୁ ଦୂତ ଆଗେ
ଅସୁର ଶୁଣିଣ ଥାଟ ବାହିବ ଏ ଲାଗେ ।
ନାରଦ ଯେ କହିବାରୁ ଜାଣିଲା ସେ ମୋତେ
ବିଷ୍ଣୁ ଜନମିଲେ ବୋଲି ପାଞ୍ଚି ହୃଦଗତେ ।
କପଟ ମନରେ ପାଞ୍ଚି ପେଷିଲା ଯେ ଦୂତ
ମୁଁ ଯେବେ କପଟେ ଯାଇ ମାରିବି ତାହାନ୍ତ ।
କପଟେ ଆମ୍ଭଙ୍କୁ ନେଇ ରଖି ଘରେ ତାର
ବୋଲିବ ପୁତ୍ରକୁ ପାଠ ପଢ଼ାଅ ମୋହର ।
କପଟେ ପଢ଼ିବେ ସିନା ପୁତ୍ରେ ଆସି ପାଠ
ସେଠାରେ ଧର୍ମ ଫେଡ଼ିବ ଆମ୍ଭର ସଙ୍ଗତ ।
ପାପ ପାଞ୍ଚିଥିଲେ ପାପୁଁ ହେବ ଅଳ୍ପାୟୁଷ
ନାତି ପୁଅଆଡୁ ଛିଡ଼ିଯିବ ତାର ବଂଶ ।
ଆମ୍ଭର ମହିମା ତାକୁ ଜଣାନାହିଁ କିଛି
ଆଖୁ ଖସିଲେ ତାହାର କନ୍ଧୁ କମଳାକ୍ଷୀ ।
ଏ ରୂପେ ପାଞ୍ଚି କହନ୍ତି ପ୍ରଭୁ ଅଶୀଳକୁ
ବୋଲନ୍ତି ଯେ ଚାଲ କାଲି ଯିବା ରାଜାଠାକୁ ।
ବାପାଙ୍କୁ ମଧ ଆମ୍ଭର ସଙ୍ଗେ ଘେନିଯିବା
ରାଜର ଛାମୁରେ ଭେଟି ସର୍ବ ଜଣାଇବା ।
ସେ ଯେଉଁ ଆଜ୍ଞାଦେବେ ସେ ମାର୍ଗେ ଥିବା ରହି
ଏଥକୁ ମନେ କିଛି ନ ଭାବ ଦୂତ ତୁହି ।
ତୋ ସଙ୍ଗେ ମିଶିଣ ଗଲେ ସୁଖେ ହେବଭେଟ
ରାଜା ଛାମୁକୁ କଢ଼ାଇ ନେବୁ ତୁହି ବାଟ ।
ଆମ୍ଭ ବିଦ୍ୟା ପଢ଼ା ଯେବେ ଜାଣିବେ ସେ ରାଜା
ଶ୍ରୀବିଦ୍ୟା ଗୁରୁ କରିବେ କରି ପାଦପୂଜା ।
ଗଲା ଉତ୍ତାରୁ କରିବା ପୁଣି ରାଜା ବୋଲ
ରାଜା ବୋଲ ନ କଲେ କି କଥା ହେବ ତୁଲ୍ୟ
ପିତାଙ୍କୁ ବୋଧି ଆମ୍ଭର ସଙ୍ଗେ ଘେନିଯିବା
ଏଥକୁ ମନରେ କିଛି ନ ଧର ଦାନବା ।
ଗଲେଣି ଆମ୍ଭେହେ କେତେବିଦ୍ୟା ପଢ଼ାଇବୁ
ଭଲ ମନ୍ଦ ଦୁଇ କଥା ଜାଣି ଦିନନେବୁ ।
ମନ୍ଦରେ ଯେ ମନ୍ଦ ହେବି ଭଲେ ହେବି ଭଲ
ଏ କଥା ଅଶୀଳ ତୋତେ କହିଲି କେବଳ ।

ଗଲେତ ଯାବତ ବିଦ୍ୟା କରାଇବା ଶିକ୍ଷା
ଯେ ଯାହା ପାଞ୍ଚିବ ତାକୁ ଦେବା ସେହି ଶିକ୍ଷା ।
ନଗ୍ରକୁ ତୁମ୍ଭର ଘର ଯୁଣେ ହେବ ଛଡ଼ା
ସେହିଠାରେ ସାଧାରଣ କରିବା ଆଖଡ଼ା ।
ଆଖଡ଼ାଶାଳ ତ ହୋଇଥିଲେ ଟି ବିସ୍ତାର
କେ ସାଧିବ ଜ୍ଞାନ କେ ସାଧିବ ଧନୁଶର ।
ଖଡ଼ଗ ସାଧିବ କେହୁ ସାଧେ ଛୁରୀ ଖଣ୍ଡା
କେହୁ ମାଲବିନ୍ଧାଣ କେ ହେବ ପରଚଣ୍ଡା ।
ନାନାଦି ପ୍ରକାର ବିଦ୍ୟା ଏ ସଂସାରେ ଯେତେ
ରାଜାର ପୁତ୍ର ନିର୍ବାଣ ହେବ ଆମ୍ଭହସ୍ତେ ।
ସୁବିଦ୍ୟା ଛାଡ଼ି ଲୋଡ଼ିବେ ଯେତେ ମୃତ୍ୟୁବିଦ୍ୟା
ଅପମୃତ୍ୟୁରେ ମରିଣ ଯିବେ ଯମପଦା ।
ଏତେ ବୋଲି ବିଶ୍ୱରୂପ ଧରି ଦେବରାୟେ
ଦୈତ୍ୟକୁ ଦିଶିଲେ ପ୍ରଭୁ କାଳ ମୃତ୍ୟୁ ପ୍ରାୟେ
ଦେଖିଣ ଅଶୀଳ ଦୈତ୍ୟ ମନେ କଲା ଶଙ୍କା
ବୋଇଲା ଗଲେ ଏ ନିଶ୍ଚେ ବିନାଶିବେ ଏକା ।
ବାହୁଡ଼ିଗଲେ ବୋଲଣା ସିନା ମୋତେ ଅଛି
ତାହା ତ ହେବ ବିଧାତା ଯାହା ନିକେ ଗଛି ।
ବିଷ୍ଣୁଙ୍କୁ ଶତ୍ରୁତାପଣେ ଦେଖି ଡକାଇଲା
କୋଦଣ୍ଡ ବୁଝାମଣା ତ ନିଶ୍ଚେ ଜଣାଗଲା ।
ମରଣ କାଳକୁ କଲା ବିପରୀତ ବୁଦ୍ଧି
ବନ୍ଦିରେ ରଖିବ ଘରେ ନେଇ ଦୟାନିଧି ।
ଯାହାଇଚ୍ଛା ତାହା ହେଉ ମୋର କିସ ଗଲା
ବିଷ୍ଣୁଙ୍କୁ ଆଗ ନେବି ସେ କଥା ମୂଳ କଲା ।
ଏତେକ ପାଞ୍ଚି ଅଶୀଳ କଲା ମନବୋଧ
ଏଥୁ ଅନନ୍ତରେ ବାଣୀ ଶୁଣ ହେ ନାରଦ ।



## ମୁରର ଚିଟାଉ ପଢ଼ି
## କୃଷ୍ଣବଲ୍ଲଭର ଚିନ୍ତା

ନୃସିଂହ ବିଜେ ହୁଅନ୍ତେ ସଭା ମଉଳିଲା
ତହିଁ ଉତ୍ତାରୁ କହିବା କଥା ଶୁଣ ଭଲା ।
ପୁତ୍ରକୁ କୃଷ୍ଣବଲ୍ଲଭ ରାଜା ସଙ୍ଗେ ଘେନି
ବିମନେ ଗୃହେ ବସିଲେ ଯାଇ ହୋଇ ତୁନି ।
ପିତାର ବିସ୍ମୟ ମନ ଦେଖି ଦୟାନିଧି
ଆନନ୍ଦେ ହସି କହନ୍ତି ପିତା ଚିତ୍ତବୋଧି ।
ବୋଲନ୍ତି ତୁମ୍ଭଙ୍କୁ ଅଛି ଆମ୍ଭ ମାର୍ଗ ଜଣା
ଏ କଥା ଛାରକୁ ପିତା କର କିମ୍ପା ଘୃଣା ।
କାଲି ଘଉଡ଼ି ଦେବଇଁ ଜାଣ ଅସୁରକୁ
ଏଥକୁ ଚିନ୍ତା ଯେ ତୁମ୍ଭେ ନକର ଆମ୍ଭଙ୍କୁ ।

ସେ ଦୈତ୍ୟ କଥା ଲାଗିଲା ମୋତେ ଜାଣ ପିତା
ଆମ୍ଭେ ଥାନ୍ତେ ତୁମ୍ଭଙ୍କୁ ତ କିମ୍ପା ଏଡ଼େଚିନ୍ତା ।
ପିତାଆଗେ ପୁତ୍ର ଯେବେ ହୋଏ ସଭାଯୋଗ୍ୟ
ପିତାଙ୍କୁ ସଂସାରେ ତେବେ ହୁଏ କେଡ଼େଭାଗ୍ୟ ।
ଶାଶୁଙ୍କ ଆଗେ ପ୍ରଶଂସା ଯେବେ ବଧୂପାଏ
ସେ ବଧୂକୁ ବଂଶଯାକ ମାନି ଲକ୍ଷ୍ମୀ ପ୍ରାୟେ ।
ଯେ ପ୍ରାଣୀ କରନ୍ତି ଧନଅର୍ଜି ଦାନ ପୁଣ୍ୟ
ମନୁଷ୍ୟଯାକେ ପବିତ୍ର ଅଟେ ସେହୁ ଜନ ।
ଦେହ ବହିଣ ଯେ ଜନ କରେ ନାନା ତୀର୍ଥ
ତାହାର ଜୀବନ ଗୋଟି ଅଟଇ କୃତାର୍ଥ ।
ସେ ଯେଉଁ ଦେଶକୁ ଯାଏ ପବିତ୍ର ସେ ମହୀ
ତାହାଙ୍କୁ ସେବିଲା ଲୋକ ବିଷ୍ଣୁଙ୍କୁ ଯେ ପାଇ ।
ପିତା ମାତଙ୍କର ସେବା କରନ୍ତି ଯେ ପୁତ୍ର
ସେ ପୁତ୍ରକୁ କୁଳଦୀପ ବୋଲନ୍ତି ଜଗତ ।
ତୁମ୍ଭର କି ଭୟ ପିତା ଆମ୍ଭେ ବେନି ଥିଲେ
ସାକ୍ଷାତେ ବିଷ୍ଣୁ ଜନ୍ମିଛୁ ଆସି ତୁମ୍ଭ ଘରେ ।
ଯାହାର ପୁତ୍ର ଅନନ୍ତ ବାସୁଦେବ ବେନି
ବ୍ରହ୍ମାଣ୍ଡ କର୍ତ୍ତା ବୋଇଲା ମୋତେ ସର୍ବପ୍ରାଣୀ ।
ମୁରକୁ ମାରିବା ପାଇଁ ଆମ୍ଭେ ଏଥେ ଜାତ
ବ୍ୟର୍ଥେ ଡରୁଅଛ ରଖି ଘରେ ପରଂବ୍ରହ୍ମ ।
କ୍ଷୀର ସିନ୍ଧୁରେ କହିଲେ ଦେବେ ଯାହା ମୋତେ
ନିର୍ମଳ କରିଣ ଶୁଣ କହୁଛି ତା ଗୁପ୍ତେ ।
ମୁରକୁ ମାରିବା ପାଇଁ ଆମ୍ଭେ ଏଥେ ଜାତ
ଷୋଳବର୍ଷ ସେ ଗଲାଣି ଆମ୍ଭର ବାଳୁତ ।
ଦେଖିଲ ପରା ବରୁଣ କଲା କେଡ଼େ ଲାଖ
ସେ ଲାଖ ବିନ୍ଧି ଲକ୍ଷ୍ମୀଙ୍କି ନେଲେ ପଦ୍ମମୁଖ ।
ଏମନ୍ତେ ସେ ପଦ୍ମମୁଖ ତୁମ୍ଭ ଗୃହେ ଥାଉଁ
ଦୈତ୍ୟ ଛାରକୁ ଡ଼ରିଣ ଅଧୈର୍ଯ୍ୟ ଯେ ହେଉ ।
ତହିଁକି ଉପାୟ ଏବେ କହୁଛି ତା ଶୁଣ
ମାୟାମୂର୍ତ୍ତି ସଙ୍ଗେ ତାର ପେଷିବଟି ବାଣ ।
ଆମ୍ଭେ ଆଉ ନ ଯିବୁ ନ କର ତୁମ୍ଭେ ଚିନ୍ତା
ଶୁଣି ମନେ ହର୍ଷ ହେଲେ ନୃସିଂହର ପିତା ।
ନୃସିଂହ ବୋଧି କହନ୍ତେ ଭୟ ଗଲା ଛାଡ଼ି
ଉଠିଲେ କୃଷ୍ଣବଲ୍ଲଭ ହସ୍ତେ ନିଶ ମୋଡ଼ି ।
ବୋଇଲେ ଏଡ଼େକ ପ୍ରଭୁ ଅଟେ ମୋର ପୁତ୍ର
ତରିବୁ ଭବୁ ଉଦ୍ଧାରି ମୋର କୁଳ ଗୋତ୍ର ।
ଦୁଃଖୀର ସଙ୍ଗାଳି ମୋର ଅଟ ଭକ୍ତ ବନ୍ଧୁ
ଦରିଦ୍ର ଲୋକର ଧନ କୃପାଜଳ ସିନ୍ଧୁ ।
ତୁମ୍ଭଙ୍କୁ ଦେଖିଥିଲେ ଯେ ଭୟ ହୁଏ ପାରି
ମୁରକୁ ମାରିଣ ଏବେ ରଖ ବସୁନ୍ଧରୀ ।
ମୁହିଁ ଜାଣିଥିଲି ତୁମ୍ଭେ ମୋର ପୁତ୍ର ବୋଲି
ସାକ୍ଷାତରେ ବିଷ୍ଣୁ ବୋଲି ଏବେ ଯେ ଚିହ୍ନିଲି ।
ଶୁଣିଣ ନୃସିଂହ ସ୍ୱାମୀ ଆନନ୍ଦ ହୃଦୟ
ପିତାଙ୍କ ମନ ଘେନିଣ କଲେ ମାୟାମୋହ ।
ଜୟ ନୃସିଂହ ମହିମା ଅତି ଅଗୋଚର
ପିତାଙ୍କୁ ଘେନି ମନ୍ଦିରେ ମିଳି ଚକ୍ରଧର ।
ସ୍ନାନ ସନ୍ଧ୍ୟା ତରପଣ ଦେବାର୍ଚ୍ଚନ ସାରି
ମଣୋହି ଘରେ ବସିଲେ ଯାଇ ନରହରି ।
ବେନି ପୁତ୍ର ଘେନି କୃଷ୍ଣବଲ୍ଲଭ ଯେ ରାଜା
ବସିଲେ ଗ୍ରାସକରିଣ ବିଷ୍ଣୁ କରି ପୂଜା ।
ଷଡ଼ରସେ ମହାଲକ୍ଷ୍ମୀ ସମ୍ପାଦନ୍ତି ଯୋଗ
ନିତ୍ୟେ ଷାଠିଏ ପଉଟି ଶ୍ରୀ ନୃସିଂହ ଭୋଗ ।
ଶ୍ରୀ ନୃସିଂହ ଭୋଗ ଅନ୍ତେ ଯେତେକ ବଳଇ
ଭୁଞ୍ଜନ୍ତି ଚୌଷଠିସସ୍ର କନ୍ୟା ତୋଷ ହୋଇ ।
ଏହି ରୂପେ ନୃସିଂହର ଚାରି ଅବତାରେ
ଷାଠିଏ ପଉଟି ରନ୍ଧା ହେବଟି ରୋଷରେ ।
ନୃସିଂହ ଶ୍ରୀ ରଘୁନାଥ କୃଷ୍ଣ ଜଗନ୍ନାଥ
ଏହି ଚାରି ଅବତାରେ ପ୍ରସାଦ କୃତାର୍ଥ ।
ଶ୍ରୀବିଷ୍ଣୁ ମଣୋହି ଅନ୍ତେ ଶ୍ରୀମୁଖ ପ୍ରସାଦ
ଯେ ସେବାକରଇ ତାକୁ ତାରନ୍ତି ଗୋବିନ୍ଦ ।
ତଥାପି ଉଦର ପୂରାହୋଇ ନ ମିଳିଲେ
ନିତ୍ୟେହେଁ ନିର୍ମାଲ୍ୟ ସେବା କରିବଟି ହେଲେ ।
ଶ୍ରୀନୃସିଂହ ପ୍ରସାଦର ଏ ରୂପ ମହିମା
ଶୁଣ ବାବୁରେ ନାରଦ କହନ୍ତି ଯେ ବ୍ରହ୍ମା ।
ବସାଇ ପତି ପୁତ୍ରଙ୍କୁ ଭଗବତୀ ମାଏ
ଲକ୍ଷ୍ମୀ ସମ୍ପାଦିବା ପାକ ପରଷିଣ ଦିଏ ।
ପରମଲକ୍ଷ୍ମୀ ସମ୍ପାଦିଛନ୍ତି ଯହିଁ ପାଗ
ତହିଁକି ଅପୂର୍ବ ନରସିଂହ ଖଞ୍ଜାଭୋଗ ।
ମଣୋହି ସାରିଣ ପ୍ରଭୁ ମୁଖ ପଖାଳିଲେ
ସଭାକୁ ରତ୍ନ ପାଦୁକା ଚଢ଼ି ବିଜେ କଲେ ।
ଚାମର ଆଲଟ ପିଞ୍ଛ ପଡ଼େ ଚଉକତି
ସିଂହାସନେ ବସିଲେକ ଯାଇ ଜଗଜ୍ୟୋତି ।
ଶେଷଦେବ ସହିତେଣ ବସିଲେ ସେ ସଭା
ନୀଳଗିରି ଜଗନ୍ନାଥ ପ୍ରାୟ ଦିଶେ ଶୋଭା ।
ଦେଖିଲା ଲୋକଙ୍କ ଦେହ ହୋଇଯାଏ ମୋକ୍ଷ
ପରମ ଦୟାଳୁ ସେହି ପ୍ରଭୁ ପଙ୍କଜାକ୍ଷ ।
ପାତ୍ର ମନ୍ତ୍ରୀ ଅମାତ୍ୟହିଁ ଯେତେ ବସିଛନ୍ତି
ସମସ୍ତଙ୍କୁ ସ୍ୱାମାନ୍ୟେ ଶ୍ରୀଆଜ୍ଞା ପ୍ରକାଶନ୍ତି ।
ରାଜ୍ୟର ଗୁହାରି ଭଲମନ୍ଦ ଯେତେ ପଡ଼େ
ବୁଝନ୍ତି ପ୍ରଚ୍ଛିନ୍ନ କରି ତାହା ଯୋଗାରୁଢ଼େ ।

ଯାହାର ପୂର୍ବରୁ ଯେଉଁ ସେବା ଲେଖା ଥାଇ
ତାହାକୁ ଛଡ଼ାଇ ଆନେ ଦ୍ୟନ୍ତି ଭାବଗ୍ରାହୀ ।
ଅଛନ୍ତି ଛପନକୋଟି ବର୍ଣ୍ଣେ ଯେତେ ଜୀବ
ସବୁଙ୍କ ଯୋଗାଡ଼ମାନ ଦ୍ୟନ୍ତି ବାସୁଦେବ ।
ପଞ୍ଚାଶକୋଟି ପୃଥ୍ବକୁ ବାହ୍ୟ ଯେତେ ପୁର
ସମସ୍ତଙ୍କୁ ଖଞ୍ଜାଦେଇଅଛନ୍ତି ଠାକୁର ।
ଶ୍ରୀଆଜ୍ଞା ପ୍ରମାଣରେ ଯେ ମନ୍ତ୍ରୀ ଚୂଡ଼ାମଣି
ଯେ ଯେତେ ଯୋଗ୍ୟବର୍ତ୍ତନ ଖଞ୍ଜେ ତାକୁ ଆଣି ।
ସେବକମାନଙ୍କର ଯେ ସେବା ଚର୍ଚ୍ଚା ବୁଝି
ପଢ଼ି ଖଞ୍ଜି ଆଦି ଅନ୍ତ ସେହୁ ମନ ରଞ୍ଜି ।
କରନ୍ତି ଋଷିମାନଙ୍କ ପାଦପଦ୍ମ ପୂଜା
ବ୍ରାହ୍ମଣଙ୍କୁ ନିତ୍ୟେ ଦାନ ଦ୍ୟନ୍ତି ଦେବରାଜା ।
ଦେବଆଳମାନଙ୍କରେ ମଣୋହି କରାନ୍ତି
ପଣ୍ଡିତଜନ ଆଜ୍ଞାରେ ଜ୍ଞାନ ପ୍ରକାଶନ୍ତି ।
ପରଜାକୁଳମାନଙ୍କୁ ମିଷ୍ଟ ବାକ୍ୟ କହି
କୃଷିକ ରାବନ୍ତି ପ୍ରଭୁ ସରିଭାଗ ଦେଇ ।
କରଦାନେ ଲଣ୍ଡ ଭଣ୍ଡ ନ କରି ଲୋକଙ୍କୁ
ପାଳନ୍ତି ପୁତ୍ର ପରାୟ ଦୟାକରି ତାଙ୍କୁ ।
ଆବର ବୁଝନ୍ତି ତୁମ୍ଭେ ଧର୍ମେ ମତି ଦିଅ
ଘଡ଼ଂଘଡ଼ି ପରିଯନ୍ତେ ବଳଦ ବୁହାଅ ।
ଆଉ ଅଧିକ ବାହିଲେ ଧର୍ମ ତହିଁ ନାହିଁ
ଯେତେ ଅର୍ଜୁଥିଲେ ତାକୁ ଅନ୍ନ ନ ଅଣ୍ଟଇ ।
ବଣିଜ କରିଲା ଲୋକ ସତ୍ୟ ବିକୁଥିଲେ
ଜୀଇଥିବାଯାକ ଲକ୍ଷ୍ମୀ ନ ଛାଡ଼ିବ ଭଲେ ।
ମୂର୍ଖଙ୍କୁ କହନ୍ତି ପୁଣି ମଧୁର ବଚନ
ମହାଶାନ୍ତି ଦୟାଳୁ ନୃସିଂହ ଭଗବାନ ।
ଏଥୁଅନ୍ତେ ଯାହା ହେଲା ଶୁଣ ତପୋବନ୍ତେ
ସୁଜାଣ ମନ୍ତ୍ରୀକି ରାଇ କହିଲେକ ଗୁପ୍ତେ ।
ଗୋଟିଏ ଯେ ମୁରାସୁର ପେଷିଅଛି ଦୂତ
ବୋଲେ ପିତାଙ୍କୁ ଆମ୍ଭର ଦିଅ ବେନିସୁତ ।
ଆମ୍ଭଙ୍କୁ ସେ ନେବାପାଇଁ ବିଚାର କରନ୍ତି
ଏଥକୁ ଯେ ତାତପର୍ଯ୍ୟ ବେଗେ କହ ପାଞ୍ଚି ।
କଥା ବୁଝି ତାହାକୁ କି ପଠିଆଇ ଦେବା
ତୁମ୍ଭ ମନକୁ ପାଇଲେ ଏ କଥା କରିବା ।
କେତେବେଳେ କି ରୂପେ ବା ହେବ ଉପଦ୍ରବ
ଦୂତ ମୁଖୁ ଶୁଣି କ୍ରୋଧେ କୌଣପ ବାହିବ ।
ନୃସିଂହ କହନ୍ତେ ଏହିରୂପେ ମନ ବିଡ଼ି
ଶୁଣିଣ ଯେ ମନ୍ତ୍ରୀବର ମନେ ପାଦେ ପଡ଼ି ।
ଉଠିଣ ସେ ଉଭା ହୋଇ ଶିରେ ଦେଇ କର
ବୋଲଇ ନୃସିଂହ ଥାନ୍ତେ ଆମ୍ଭର କି ଡର ।

ଭଗବତୀ ମାତା ଗର୍ଭେ ଜନ୍ମ ହେଲାଠାରୁ
ସେହିଦିନୁ ଚିହ୍ନିଛି ମୁଁ ନୃସିଂହାବତାରୁ ।
ତୁମ୍ଭର ପୃଥ୍ୱୀକି ତୁମ୍ଭେ ରଖିବ ନୃସିଂହ
ଆମ୍ଭେ ତ ତୁମ୍ଭ କିଙ୍କର ସେବାକାରୀ ଅଙ୍ଗ ।
ନୃସିଂହ ଏକା ବଦ୍ରିକା ଆଶ୍ରମକୁ ପ୍ରଭୁ
ତୁମ୍ଭର ଯେ ପରିଚାର ଆମ୍ଭେ ଅଟୁ ସବୁ ।
ଶ୍ରୀମୁଖେ ଦେବଙ୍କ ଆଜ୍ଞା ଗୋଟି ପ୍ରକାଶିବ
ସେ ଆଜ୍ଞା ନିର୍ମଳ କରି ଆପଣ କହିବ ।
ନୃସିଂହ ବୋଲନ୍ତି ତୁହି ନିଶ୍ଚେ ଅଟୁ ସଖା
ଅବତାର ଗୋଟିକେ ତୁ ମନ୍ତ୍ରୀମୋର ଏକା ।
ଏ ଅବତାରରେ ସୁଜାଣ ମନ୍ତ୍ରୀ ତୁ ଆମର
ତ୍ରେତୟାଯୁଗେ ସୁମନ୍ତ୍ର ନାମେ ମନ୍ତ୍ରୀବର ।
ଦ୍ୱାପର ଯୁଗେ ସୁରଥ ନାମେ ହେବୁ ମନ୍ତ୍ରୀ
କୃଷ୍ଣାବତାରେ କହିବୁ କଥାମାନ ଯନ୍ତୀ ।
ଆମ ଅବତାର ଅନ୍ତେ ଆସିବୁ ବୈକୁଣ୍ଠ
କେ ଆନ କରିବ ଆମ ଆଜ୍ଞା ଏତେ ଆଣ୍ଟ ।
ଶୁଣିଣ ସୁଜାଣ ମନ୍ତ୍ରୀ ଶୋଏ ଗଡ଼ଘାଲି
ବୋଲେ ଶ୍ରୀମୁଖରେ କେଡ଼େଆଜ୍ଞା ମୁଁ ଶୁଣିଲି ।
ଆପଣ କରିବେ ଗତି ମୋତେ ସର୍ବକାଳେ
ସେବୁଥିବି ମୁହିଁ ପ୍ରଭୁ ପଦ୍ମପାଦେ ତଳେ ।
ନୃସିଂହ ଆଜ୍ଞା କରିଲେ ସୁଖେ ଥାଅ ରହି
ଦୈତ୍ୟର ସଙ୍ଗେ ଯାଉଛୁ ଆମ୍ଭେ ବେନିଭାଇ ।
ଆମ୍ଭଗଲା ଗୁପ୍ତ କଥା କେହି ନ ଜାଣିବେ
ଏକାକେ ଜାଣିଥା ତୋତେ କହିଲୁଟି ଆମ୍ଭେ
ଆମ୍ଭେ ଆସିବା ପର୍ଯ୍ୟନ୍ତ ଲାଗେ ତୋତେ ଦେଶ
ଏକଥା କାହାକୁ ଏକା ନକର ପ୍ରକାଶ ।
ଆମ୍ଭର ମହିମା ତୋତେ ସବୁ ଜଣାଅଛି
ମୁରାସୁର କାହିଁପାଇଁ ଆମ୍ଭଙ୍କୁ ଡାକିଛି ।
ବିଦ୍ୟାଗୁରୁ ହେବାକୁ ଯେ ଚିଟାଉ ଲେଖିଛି
ସେ ଚିଟାଉ ପଢ଼ି ମନେ ସନ୍ଦେହ ଜନ୍ମିଛି ।
ମୁରାସୁର ରାଜାର ସେ ଅଟେ ପୁଣି ଦୂତ
ପେଷିଛି ଆମ୍ଭଙ୍କୁ ନେବାପାଇଁ ମୁରଦୈତ୍ୟ ।
ମୁରର ସତରଲକ୍ଷ ପୁତ୍ର ପୁଣି ଛନ୍ତି
ଆବର ଯେ ନବଲକ୍ଷ ଛନ୍ତି ପଣନାତି ।
ଆମ୍ଭଠାରୁ ଶିଖିବେ ସେ ପୁଣି ସବୁ ବିଦ୍ୟା
ଦେଖିବାରେ ପଢାଇଲେ ହେବେ କେଡ଼େ ଯୋଦ୍ଧା ।
ଶୁଣିଣ ସୁଜାଣ ମନ୍ତ୍ରୀ ଯୋଡ଼ି ବେନିକର
ବୋଲେ ଅନ୍ତର୍ଯ୍ୟାମୀ ଅଟ ହେ ପରମେଶ୍ୱର ।
ସବୁରି ମନକଥା ତ ଜାଣିପାର ତୁମ୍ଭେ
ଆପଣ ଛାମୁରେ ବୁଦ୍ଧି କହିବୁ କି ଆମ୍ଭେ ।

ପ୍ରଭୁଙ୍କୁ ସଂସାରଯାକ ମନ ଜଣା ସବୁ
ବିଜେକର ଗୁପ୍ତେ ବ୍ୟଗ୍ରେ ରାଜ୍ୟେ ଆମ୍ଭେ ଥିବୁ ।
ଏହିରୂପେ ମନ୍ତ୍ରୀ ତୁଳେ ହ୍ୱନ୍ତି ପ୍ରଭୁ କଥା ।
ଏ ସମୟେ ସନ୍ଧ୍ୟାକାଳ ହୋଇଲା ବ୍ୟବସ୍ଥା
ଦେବଆଳେ ଧୂପ ଦୀପ ଆଳତି କରାଇ
ସନ୍ଧ୍ୟାବିଧି ସ୍ମରଣାଦି ସାରି ଭାବଗ୍ରାହୀ ।
ମଣୋହିକି ପୁଣ ବିଜେ କଲେ ନରହରି
ପର୍ଷନ୍ତି ଲକ୍ଷ୍ମୀ ଖେଚଡ଼ି ପୁଣି ଖଣ୍ଡକ୍ଷୀରୀ ।
ଶାକର ଯେ ଛେନା ଦୁଧ କନ୍ଦପଣା ଗୋଳି
ଭୁଞ୍ଜନ୍ତି ଶେଷଦେବଙ୍କୁ ଘେନି ବନମାଳୀ ।
ଭୁଞ୍ଜିଣ ସେ ଆଚମନ କଲେ ବେନିଭାଇ
ବସିଲେ ସିଂହାସନରେ ସେହୁ ପାନ ଖାଇ ।
ପ୍ରଭାତରେ ଯିବେ ବୋଲି ଗୁପ୍ତ କଥା କଲେ
ଲକ୍ଷ୍ମୀ ଦେବୀଙ୍କର ଗୃହେ ଦେବ ବିଜେ କଲେ ।
ବଲ୍ଲଭ ହେ ଭଗବତୀ ସାରି ପୁଣି ଗ୍ରାସ
ଲୀଳା ଦେବୀଙ୍କର ପୁରେ ବିଜେକଲେ ଶେଷ ।
ବଦ୍ରିକା ନଗ୍ରେ ଚୌଷଠି ସହସ୍ରେ କନ୍ୟା
ଭୋଜନ ସାରି ଶୁତିଲେ ସର୍ବ ବରାଙ୍ଗନା ।
ବଲ୍ଲଭ ଭଗବତୀ ଯେ ପଲ୍ୟଙ୍କେ ଶୋଇଲେ
ନିଶାଘୋରେ କଟୁଆଳ ନଗ୍ରରେ ବୁଲିଲେ ।
ସମସ୍ତଙ୍କ ମନ୍ଦିରରେ ଜଳେ ଦୀପପନ୍ତି
ଗୃହ ମଧ୍ୟରେ ମାଣିକ୍ୟ ହୀରା ଝଟକନ୍ତି ।
କେଳି ମନ୍ଦିରରେ ଦର୍ପଣର ବାଡ଼ ଶୋଭା
ଚାହିଁଲେ ସେ ଦର୍ପଣକୁ ଦିଶେ ରତିପ୍ରଭା ।
ସେ ଯେତେ ଭାବେ ସୁରତି କ୍ରୀଡ଼ା ପ୍ରକାଶଇ
ଚାହିଁଲେ ଦର୍ପଣକୁ ସେ ମାର୍ଗ ଦିଶୁଥାଇ ।
ଲକ୍ଷ୍ମୀଙ୍କର ପୁର ତହୁଁ ଶତାଧିକ ଦିଶେ
ନୃସିଂହ ବିଜୟ କଲେ ମହାଲକ୍ଷ୍ମୀ ପାଶେ ।
ନିଦ୍ରାରେ ନାନାଭାବ ସେ କରିଣ ଗୋବିନ୍ଦ
ପଲ୍ୟଙ୍କରେ ପହୁଡ଼ିଲେ ଲମ୍ଭେ ପଦ୍ମପାଦ ।
ଶଙ୍ଖ ଚକ୍ର ଗଦା ପଦ୍ମ ଜ୍ୟୋତି ପରକାଶେ
ସୁପାତି ଶେଯେ ବସିଲେ ଯାଇ ଜଗଦୀଶେ ।
ଯେବଣ ପୁରେ ନୃସିଂହ କଲେ ଆସି ବିଜେ
ରତ୍ନର ସୁପାତିମାନ ଠାବେ ଠାବେ ସାଜେ ।
ଉପରରେ ଚନ୍ଦ୍ରାତପ ମଣ୍ଡଣି ଯେ ହୋଇ
ମୁକୁତା ଯେ କେରା କେରା ଲମ୍ବିଅଛି ତହିଁ ।
ନାନାଦି କୁସୁମମାଳା ଚୌପାଶେ ଲମ୍ବିଛି
ଲକ୍ଷେ ଲକ୍ଷେ ମଲ୍ଲୀପଦ୍ମ ମାଳତୀ ଲାଗିଛି ।
ମଧୁପ ଭ୍ରମର ତହିଁ ମକରନ୍ଦ ଆଶେ
ଚୁମ୍ବୁଛନ୍ତି ପନ୍ତି ପନ୍ତି ହୋଇ ପୁଷ୍ପ ବାସେ ।

ଚାରିପାଖେ ପାରିଜାତ ପୁଷ୍ପ ଅଛି ତହିଁ
ପବନ ବହନ୍ତେ ବାସ ଗନ୍ଧ ଚହଟଇ ।
କର୍ପୂର ଅଗୁରୁଗୁଣ୍ଡ ପଡ଼ି ଶଯ୍ୟାଯାକେ
ନଗରଯାକରେ ବାସନା ବାସେ ତ୍ରଇଲୋକ୍ୟେ ।
ବିଶୁଦ୍ଧ ସୁବର୍ଣ୍ଣ ପ୍ରାୟେ ଶେଯ ଅଛି ପଡ଼ି
କୁସୁମ ପରାଗମାନ ପଡ଼େ ତହିଁ ଝଡ଼ି ।
ସୋରିଷ କୁସୁମ ପ୍ରାୟ ଦିଶେ ଶଯ୍ୟା ପ୍ରଭା
ଏମନ୍ତ ଶଯ୍ୟାରେ ଆସି ହେଲେ ଲକ୍ଷ୍ମୀଉଭା ।
ଉପରରେ ସଖୀଗଣ ଚାମର ଢାଳନ୍ତି
ବିଞ୍ଚଣା ପଙ୍ଖା ପିଞ୍ଛ ଯେ ପଡ଼େ ଚଉକତି ।
କୁଙ୍କୁମ କଢ଼ି ଅଙ୍ଗରେ ଶୋହେ ରତ୍ନହାର
କଟିରେ ଝୀନପତନୀ ଦିଶେ ଶୋଭାକର ।
ତୁଙ୍ଗ ନିତମ୍ବ କମଳା ହୃଦୟରେ ଶୋହେ
ରୂପେ ପଟାନ୍ତର ବହୁ ଜନମନ ମୋହେ ।
ଲୀଳା ଗତିରେ ଆସନ୍ତି ଦେବୀ କମଳିନୀ
ବେନି କର୍ଣ୍ଣରେ ହୀରକ ଶୋହେ ରବି ଜିଣି ।
ଶରଦଚନ୍ଦ୍ର ଶ୍ରୀମୁଖ ପ୍ରଭା ମନ୍ଦହାସେ
ଶ୍ରୀକଣ୍ଠେ ଅମୂଲ୍ୟ ରତ୍ନ ଶୋଭାକର ଦିଶେ ।
ନୀଳ କେଶରେ ସେବତୀ କୁସୁମର ଗଭା
ଶ୍ରୀଅଙ୍ଗେ ଲକ୍ଷେ ଲକ୍ଷଣ ଘେନି ହେଲେ ଉଭା ।
ପ୍ରିୟାଙ୍କର ପଦ୍ମମୁଖ ଦେଖି ପଦ୍ମ ମୁଖ
କୋଳରେ ଧରିଣ ସ୍ୱାମୀ ବସାଇଲେ ପାଖ ।
ଦିଶିଲେ ହର ପାର୍ବତୀ ପ୍ରାୟ ଶୋଭାବନ
ସେହି ନୃସିଂହ ଦୟାଳୁ ଜାଣେ ପ୍ରିୟା ମନ ।
ଚନ୍ଦ୍ର ଚାଳକ ମାର୍ଗରେ ରତି ଆରମ୍ଭିଲେ
ଶ୍ରୀଭୁଜରେ ହୃଦଭିଡ଼ି ମୁଖେ ମୁଖ ଦେଲେ ।
ଚଉଷଠି ପରିବନ୍ଧେ ଲକ୍ଷ୍ମୀମନ ମୋହି
କୋମଳ ମଧୁର ବାକ୍ୟେ ପୁଛି ଭାବଗ୍ରାହୀ ।
ବୋଲନ୍ତି ଗୋ ପ୍ରିୟେ ମୋର ଶୁଣ ଗୁପ୍ତକଥା
ତୁମ୍ଭେ ମୋ ପ୍ରାଣମଣି ମୁଁ ତୁ ନିଜଭର୍ତ୍ତା ।
ତୁମ୍ଭଠାରୁ ଅନ୍ୟ ମୋର ନାହିଁ ଗୋ ବିଶ୍ୱାସ
ଏକଇ ବ୍ରହ୍ମ ଆମ୍ଭେ ଶ୍ରୀଲକ୍ଷ୍ମୀ ଜଗଦୀଶ ।
ଏ ପୃଥିବୀ ପାଳିବାକୁ ହେଲୁ ବେନିରୂପ
ଆମ୍ଭଙ୍କୁ ଯେ ନ ଚିହ୍ନଇ ଏକା କଉଣପ ।
ଅଜଣା ପଶୁ ଯେଣୁଟି ଘେନେ ଭିନ୍ନକରି
ତୁଳିଲେ ଯେ ତରାଜୁରେ ହେବା ଦୁହେଁ ସରି
ସବୁ ଯୁବତୀଙ୍କ ପରେ ତୁମ୍ଭେ ଠାକୁରାଣୀ
ତୁମ୍ଭଙ୍କୁ ନ ପୂଜି ଯେ ପୂଜନ୍ତି ଡମାଳୁଣୀ ।
ଗଳାରେ କୁରାଢ଼ି ବାନ୍ଧି ଦନ୍ତେ ତୃଣ ଧରି
ସବୁ ଦେବତାଙ୍କୁ ନିନ୍ଦି କରନ୍ତି ଗୁହାରି ।

ପକାନ୍ତି କୁକୁଡ଼ା ଛେଳି ବୋଦା ବଳେ ହାଣି
ବିଷ୍ଣୁ ଦୋରେହା ଅଟନ୍ତି ଲକ୍ଷ୍ମୀ ଠାକୁରାଣୀ ।
କରିଅଛନ୍ତି ସକଳ ଘଟେ ବିଜେ ହରି
ତାହା ନ ଚିହ୍ନି ପକାନ୍ତି ଲୋକେ ବ୍ୟର୍ଥେ ମାରି ।
ଆମ୍ଭେ ଯେ ଠାକୁର ପୃଥ୍ୱୀଯାକେ ଅଟୁ ପୁଣି
ତୁମ୍ଭେ ଯେ ବୋଲାଅ ପୃଥ୍ୱୀଯାକ ଠାକୁରାଣୀ ।
ଠାକୁର ଠାକୁରାଣୀ ଯେ ଲକ୍ଷ୍ମୀ ନାରାୟଣ
ଆନକୁ ବୋଇଲେ ଶିରୀ ତୁଟିବ ଯେ ଜାଣ ।
ଏ କଥା କହିଲୁ ନିଷ୍ଠେଁ ତୁହି ଥାଅ ଶୁଣି
ଆନକୁ ବୋଲନ୍ତି ମୁଖେ ଏକା ଠାକୁରାଣୀ ।
ଠାକୁର ଠାକୁରାଣୀ ଯେ ଜାଣ ଲକ୍ଷ୍ମୀ ହରି
ଶ୍ରୀହରି ସବୁ ହୃଦୟେ ଛନ୍ତି ବିଜେକରି ।
ଅଜ୍ଞାଣା ପଶୁଲୋକେ ତ ହରି ନ ଭଜନ୍ତି
ଆନ ଦେବତାଙ୍କୁ ପୂଜି ଅମୋକ୍ଷେ ମରନ୍ତି ।
ଜୟ ବିଜୟ ଆମ୍ଭର ଦ୍ୱାରୀ ତୁମ୍ଭେ ଜାଣ
ଅସୁର ରୂପକୁ ଧରି ହୋଇବେ ଜନମ ।
ପ୍ରଥମେ ମୁର ଦାରୁଣ ନାମେ ହେଲେ ଦୈତ୍ୟ
ତାହାଙ୍କୁ ମାରିବାକୁ ଯେ ହେଲୁ ଆମ୍ଭେ ଜାତ ।
ଦ୍ୱିତୀୟେ ହେବେ ହିରଣ୍ୟ ପୁଣି ହିରଣ୍ୟାକ୍ଷ
ତାହାଙ୍କୁ ମଧ ମାରିବେ ଜାଣ ପଙ୍କଜାକ୍ଷ ।
ତୃତୀୟେ ହେବେ ରାବ ପୁଣି କୁମ୍ଭକର୍ଣ୍ଣ
ଏ ରୂପେ ଅସୁର ରୂପେ ହେବେ ତିନି ଜନ୍ମ ।
ମାନବେ ପୁଣି ଜନ୍ମିବେ ଆସି ଆଉ ବେଳେ
ବହିବେ ସେ ଦନ୍ତ୍ର ବକ୍ର ନାମ ଶିଶୁପାଳେ ।
ଚକ୍ରରେ ମୋକ୍ଷ ହୋଇଣ ଆସିବେ ବୈକୁଣ୍ଠ
ଲକ୍ଷ୍ମୀଙ୍କ ଆଗେ କହନ୍ତି ବିଷ୍ଣୁ ହୋଇ ହୃଷ୍ଟ ।
ଏବେ ଯେ ପେଶିଛି ମୁରଦୈତ୍ୟ ଦେଖି ଦୂତେ
କପଟେ କରିବ ବିଦ୍ୟାଗୁରୁ ନେଇ ମୋତେ ।
ସତରଲକ୍ଷ ଯେ ପୁତ୍ର ନବଲକ୍ଷ ନାତି
ବୋଲିବ ପଢ଼ାଅ ପାଠ ହୋଇ ଗୁରୁ ମୂର୍ତ୍ତି ।
ଗୁପତ କଥା କାହାକୁ ଏବେ ଜଣାନାହିଁ
ତହିଁ ନିମନ୍ତେ ଯାଉନ୍ତୁ ଆମ୍ଭେ ଗୋପ୍ୟ ହୋଇ ।
ଜାଣିଲେ ଆମ୍ଭର ମାତା ପିତା ଛାଡ଼ିବେ କି
ତୁମ୍ଭଙ୍କୁ ତ ନ କହିଣ ପ୍ରବାସେ ଯିବୁ କି ।
ତୁମ୍ଭେ ମହାଲକ୍ଷ୍ମୀ ଅନ୍ତର୍ଯ୍ୟାମୀ ଠାରୁ ବଳ
ଆମ୍ଭେ ଅଟୁ ଅନ୍ତର୍ଯ୍ୟାମୀ ତୁଲ୍ୟ ବେନିକୁଳ ।
ତୁମ୍ଭଙ୍କୁ ନ କହି ଯିବୁ କି ରୂପେଟି ଆମ୍ଭେ
ଏଥକୁ ପାଞ୍ଚି କଥାଏ କହଲକ୍ଷ୍ମୀ ତୁମ୍ଭେ ।
ମୁରାକୁ ମାରିବା ପାଇଁ ହେଲୁ ଆସି ଜନ୍ମ
ତୁମ୍ଭେ ଗୋ ପରମ ଲକ୍ଷ୍ମୀ ଆମେ ପରଂବ୍ରହ୍ମ ।
ତୁମ୍ଭେ ନ ବୋଇଲେ ଗୋ ନ ପାରୁ ଆମ୍ଭେ ଯାଇ
ଗଲେ ନାତି ପୁତ୍ର ଆଉ ମାରି ଆସିବଇଁ
ଏ ରୂପେ ବାଣୀ ପୁଚ୍ଛନ୍ତେ ପ୍ରଭୁ ପଦ୍ମ ଆଖି
କହନ୍ତି କଟାହ ନେତ୍ରେ ଚାହିଁ ଶଶୀମୁଖୀ ।
ବୋଲନ୍ତି ସାବଧାନେ ହେ ଶୁଣ ଚକ୍ରପାଣି
ତୁମ୍ଭ ମହିମା ସଂସାରେ ଅଛି କେହୁ ଜାଣି ।
ଏକ ସ୍ୱରୂପ ବୁଝିଲେ ଆମ୍ଭେ ଦୁହେଁ ଜାତ
ବେନିଭାଗ କରିଣ ଯେ ଆପେ କଲ ଜାତ ।
ସଂସାରେ ତୁମର ଭକ୍ତ ଛନ୍ତି ଯେତେ ପ୍ରାଣୀ
ଧନ ଜନ ସମ୍ପଦ ଯେ ତୁଚ୍ଛପ୍ରାୟ ମଣି ।
ଶ୍ରୀପାଦ ପଦ୍ମର ରସ ଯେଉଁ ମକରନ୍ଦ
ସର୍ବଦା ସେବା କରନ୍ତି ତାଙ୍କୁ ଭକ୍ତବୃନ୍ଦ ।
କି ବଚନେ କହିପାରେ ତାଙ୍କ ଫଳଶ୍ରୁତି
ପଶୁରେ ଗଣା ସେହୁ ଯେ ଏହା ନ ଜାଣନ୍ତି ।
ସଂସାରେ ତୁମର ଯେତେ ଛନ୍ତି ଭକ୍ତଜନ
ଶ୍ରୀବତ୍ସ ପାଦ ବିନୁ ସେ ନ ଜାଣନ୍ତି ଆନ ।
ହୁଅନ୍ତି ଇନ୍ଦ୍ରିୟଗଣେ ବଶ ଯେତେ ଲୋକ
ସେମାନେ ଭୋଗନ୍ତି ଅନ୍ତେ କୁମ୍ଭୀପାକ ନର୍କ ।
ଶାଗୁଣା କୁକୁର ମେଷ ଗୋରୁ ଗଧ ପ୍ରାୟେ
ବିଡ଼ାଳ ଶୃଗାଳ କାଳ ସର୍ପ ପେଚା ଦେହେ ।
ଏମାନେ ବିଷ୍ଣୁ ମହିମା କେହ୍ନେ ନ ଜାଣନ୍ତି
ଇନ୍ଦ୍ରିଗଣେ ବଶ ହେବା ଲୋକ ସେହିମତି ।
ତୁମର ମହିମାଟି ନ ଜାଣେ ଯେଉଁ ପ୍ରାଣୀ
ମୁଖରେ ନ ବୋଲେ ସେହୁ କର୍ଣ୍ଣରେ ନ ଶୁଣି ।
ନିଶ ଦାଢ଼ି ରଖି ତନୁ ସୌନ୍ଦର୍ଯ୍ୟ କରଇ
କୁନ୍ତଳ ନଖ ମୁଖକୁ ଯତ୍ନେ ସଜାଡ଼ଇ ।
ଦେହେ ଯେତେପାପ ଅଛି ତାହା ନ ଜାଣଇ
ହରି ଭଜୁଥିଲେ ତିନି ପାପୁ ତରିଯାଇ ।
ସେ ପାପୀଙ୍କ ନାମ ଶୁଣ ଏବେ କହୁଅଛି
ଏହି ଶରୀର ନିର୍ମିତ ଯେହ୍ନେ ହୋଇଅଛି ।
ଦୁର୍ଗନ୍ଧ ଯେ କଫ ବାତ ପିତ୍ତ କୃମିପୋକ
ରୁଧିର ମଳ ମୂତ୍ର ହେ ମାଂସ ଦେହଯାକ ।
ଖଙ୍କାର ନାଳ ଝାଳରେ ଚଉଷଠି ବ୍ୟାଧି
ଏହି ରୂପେ ସବୁ ଦେହେ ଅଛି ପାପଭେଦି ।
ଏମନ୍ତେ ନିର୍ମିତ କରି ପ୍ରାଣ ଧରେ ଦେହୀ
ଜୀବନରେ ମୃତ୍ୟୁପିଣ୍ଡ ଅଟେ ଜାଣ ସେହି ।
ଏମନ୍ତ ଅଙ୍ଗକୁ ବହି ରତି କଲେ ସ୍ତିରୀ
ଜୀବନ ଅକାରଣ ସେ ଦେହ ଥିଲେ ଧରି ।
ବିଷ୍ଣୁ ନ ଭଜେ ସେହୁ ଏ ପାପ ଦେହ ବହି
ବନେ ଅକାରଣ ସେ ଥିବ ଯେବେ ଜୀଇ ।

ଅଛନ୍ତି ସୁପତିବ୍ରତା ସ୍ତିରୀ ଯେତେ ପ୍ରିୟା
ଗଙ୍ଗାନଦୀର ସମାନ ଅଟେ ତାଙ୍କ ଦୟା ।
ଜାର ପୁରୁଷକୁ ଯେଉଁ ନାରୀ ଆଶା କରେ
ତାହାର ଶରୀର ଅଟେ ଶ୍ୱାନ ସମାନରେ ।
ଶ୍ୱାନକୁ ଛୁଇଁଲେ ଯେତେ ଦୋଷଟି ଲାଗଇ
ଛୁଇଁଲେ ଦୋଚାରୀ ନାରୀ ସେ ଦୋଷ ହୁଅଇ
ଅପଣାର ନିଜ ପତି ଗୃହେ ଥାଉଁ ଥାଉଁ
ବଳାଏ ପର ପୁରୁଷେ ଚିତ୍ତ ନାରୀ ଯେହୁ ।
ସଂସାରେ ସେ ସ୍ତିରୀ ପ୍ରାଣ ଜାଣ ଅକାରଣ
ସୁପତିବ୍ରତା ସ୍ତିରୀ ମୋ ତହୁଁ ବଡ଼ ଜାଣ ।
ମୋତେ ସେ ଶ୍ରୀମୁଖେ ଆଜ୍ଞାକଲ ବୋଲି ଏକ
କି ରୂପେ ଛାଡ଼ିଯିବ ହେ ମୋତେ ପୁଣ୍ୟଶ୍ଳୋକ ।
ଏକଇ ବ୍ରହ୍ମ ହୋଇଛ ଯେବେ ବେନି ଭାଗ
ଏକତ୍ୱ କରି ଧର ମୋ ଏବେ ଆତ୍ମାଲିଙ୍ଗ ।
ଶିରୀକି ମିଶାଇ ଏବେ ହୃଦପଦ୍ମେ ଧର
କମଳାଙ୍କୁ ବକ୍ଷସ୍ଥଳେ ଘେନି ବିଜେକର ।
ତୁମର ହୃଦରେ ମୁହିଁ ତୁମ୍ଭେ ହୃଦେ ମୋର
ଜୀବ ପରମ ରୂପରେ ଆମର ବିହାର ।
ଜାଣ ସବୁ ପ୍ରାଣୀ ହୃଦେ ଥାଉ ଏ ପ୍ରକାର
ଏ କଥା ସଂସାରେ ଚିହ୍ନି ନ ପାରନ୍ତି ନର ।
ଏହିରୂପେ ମହାଲକ୍ଷ୍ମୀ କହନ୍ତି ଯେ ପ୍ରାଣୀ
ଶୁଣିଣ ହସିଲେ ମନେ ମନେ ଚକ୍ରପାଣି ।
ବୋଲନ୍ତି ଶୁଣ ଗୋ ତୁମେ ପରମ ବୈଷ୍ଣବୀ
ମନ ବିଭୁଥିଲେ କଥା କି ରୂପେ ଶୁଣିବି ।
ଆମେ ତ ତୁମର ପିଣ୍ଡ ତୁମେ ଆମ ଆତ୍ମା
ଏକ ହେବାରୁ ଆମଙ୍କୁ ଭଜେ ବେଦବ୍ରହ୍ମା ।
ପଞ୍ଚଶିଖ ସନକାଦି ମୁନି ଯେ ଆସୁରି
ଏହିମାନେ ଚିହ୍ନି ଏକା ପାରନ୍ତି ଶ୍ରୀହରି ।
ବ୍ରହ୍ମାଣ୍ଡଯାକରେ ଥାଇ ତୁମ୍ଭେ ଆମ ପୁରି
ତେଣୁ ପରମ ଆମେ ଯେ ଶିବରୂପ ଧରି ।
ସଂସାରେ ବୋଲାଉ ଯେଣୁ ଆମେ ପରଂବ୍ରହ୍ମ
ଭଜନ୍ତି ସକଳେ ଲକ୍ଷ୍ମୀ ନରସିଂହ ନାମ ।
ଶ୍ରୀଲକ୍ଷ୍ମୀ ଶ୍ରୀନାରାୟଣ ଲକ୍ଷ୍ମୀକାନ୍ତ ହରି
ଶ୍ରୀଲକ୍ଷ୍ମୀ ଶ୍ରୀନରସିଂହ ଶଙ୍ଖ ଚକ୍ରଧାରୀ ।
ତୁମ ଆମ ବିହାର ଯେ ସଦା ହେଉଥାଏ
ଆମ ବିହାର ଭାଙ୍ଗିଲେ ବ୍ରହ୍ମାର ପ୍ରଳୟେ ।
ଚାଲ ଗୋ ପ୍ରଭାତୁଁ ଯିବା ଅସୁରର ପୁରୀ
ଗୃହରେ ମହାଲକ୍ଷ୍ମୀ ଯେ ଥାନ୍ତୁ ବିଜେକରି ।
ଏରୂପେ କହି ନୃସିଂହ ଲକ୍ଷ୍ମୀ ଏକ ହେଲେ
ମାୟା କମଳିନୀ ରୂପେ ଗୃହେ ବିଜେ କଲେ ।
ଖଗେଶ୍ୱରକୁ ବସନ୍ତି ଧ୍ୟାୟି ଭଗବାନ
ତକ୍ଷଣେ ମିଳିଲେ ଆସି ବିନତା ନନ୍ଦନ ।
ଶ୍ରୀଲକ୍ଷ୍ମୀ ଶ୍ରୀନୃସିଂହ ପାଦତଳେ ପଡ଼ି
ଉଠିଣ ଉଭାହୋଇ ସେ ପୁଚ୍ଛେ କରଯୋଡ଼ି ।
ନୃସିଂହ ଆଜ୍ଞା କରିଲେ ଶୁଣ ପକ୍ଷୀରାଜ
କହିବା ଗୁପତ କଥା ଯେତେ ତୋତେ ଆଜ ।
ଦଇତପୁରକୁ ଯିବା ତୋ ପିଠିରେ ବସି
ତୁହି ଥିଲେ ସଖା ମୋର ହେବୁ ଦିବାନିଶି ।
ଦୂତ ପେଶିଅଛି ମୁରାସୁର ନେବାପାଇଁ
ମୃତ୍ୟୁ ବିଦ୍ୟା ଦେବା ତାର ପୁତ୍ରେଆମ୍ଭେ ଯାଇଁ
ଆମକୁ ନେବାକୁ ଆସେ ବଦରିକା ଗଡୁ
ଯାଇଣ ମାରିବା ଆଗେ ପୁତ୍ର ନାତି ଆଡୁ ।
ତେଣୁ ଆମେ ଚଢ଼ିଯିବା ଗରୁଡ଼ ରଥରେ
ତୁ ଥିଷଲ ସଖା ମୋ ଜାଣ ହୋଇବୁ ସାଥିରେ ।
ଗରୁଡ଼ ବୋଇଲା ସ୍ୱାମୀ ଶୁଣ ମହାପ୍ରଭୁ
ମୋହର ଯେ ପରାକ୍ରମ ତୁମ୍ଭର ତ ସବୁ ।
କୋଟି ବ୍ରହ୍ମାଣ୍ଡ ଦେବତା ଯାର ବୋଲେ ସଜ
ମୋହର ପ୍ରାୟେକ ଲକ୍ଷେ ଗରୁଡ଼େ କି କାର୍ଯ୍ୟ ।
ନୃସିଂହ ଆଜ୍ଞା କଲେ ତୁ ମୋର ତହୁଁ ବଡ଼
ବିଷ୍ଣୁ ବାହନ ହୋଇଣ ବହୁ ଯୋଗାରୁଢ଼ ।
ଏହି ଅବତାର ଯାକେ ପାର୍ଶ୍ୱେ ମୋର ଥାଅ
ମୁର ଦୈତ୍ୟ ମଲା ପରେ ନଗ୍ରକୁ ତୋ ଯାଅ ।
ଗରୁଡ଼ ବୋଇଲେ ମୋତେ ଆଜ୍ଞା ନୋହୁ ସ୍ୱାମୀ
ସଦାକାଳେ ଥିବି ମୁହିଁ ପଦ୍ମ ପାଦେ ନମି ।
ନୃସିଂହ ବୋଇଲେ ଯେବେ ମାଗିଲୁ ତୁ ବର
ପାଞ୍ଚଟି ଅବତାରେ ତୁ ସେବା ମୋତେ କର ।
ନୃସିଂହ ବାମନ ପର୍ଶୁ କୃଷ୍ଣ ଜଗନ୍ନାଥ
ଗରୁଡ଼ସ୍ତମ୍ଭ ମୋ ଆଗେ ହୋଇଥାଅ ନିତ୍ୟ ।
ନୀଳଗିରିରେ ରହିବୁ ଦାରୁବ୍ରହ୍ମରୂପେ
ତୁହି ଆମ୍ଭ ରଥେ ଥିବୁ ସଦା ଭକ୍ତରୂପେ ।
ନୀଳଗିରିରେ ବସିବୁ ଯୋଡ଼ି ବେନିକର
ଏରୂପେ ଆଜ୍ଞା ଦେଲୁରେ ବିନତା କୁମର ।
ସମସ୍ତ ଜନେ ଦର୍ଶନ ଆଗେ ତୋତେ କରି
ଆମ୍ଭଙ୍କୁ ଯାଇଁ ସେବିବେ ପଛେ ନରନାରୀ ।
ବସିଲେ କଳିରେ ଯେବେ ଦେବାଳୟେ ମୁହିଁ
ରହିଥିବୁ ମୋର ଆଗେ ବାହନ ତୁ ହୋଇ ।
ଏହି ରୂପେ ବର ତାକୁ ଭଗବାନ ଦେଇ
ଭାବିଲେ ଶେଷଦେବଙ୍କୁ ସଙ୍ଗେ ନେବାପାଇଁ ।
ଆପଣେ ଶ୍ରୀଅଙ୍ଗରୁ ଯେ କାଢ଼ି ବେନିରୂପେ
ମାୟା ନରସିଂହ ଶେଷ ହେଲେ ପ୍ରଭୁ ଆପେ ।

ପିତାଙ୍କ ପାଖରେ ଥାଅ ବୋଲି ଆଜ୍ଞାଦେଲେ
ଶୁଣି ମାୟା ବେନିଭାଇ ହସ ହସ ହେଲେ ।
ନୃସିଂହ ଆଜ୍ଞା କରିଲେ ଆମ୍ଭ ଆଜ୍ଞା ବହି
ପିତା ମାତା ପାଳି ଆମ୍ଭ ନଗ୍ରେ ଥାଅ ରହି ।
ଆମ୍ଭ ନାମ ଘେନି ତୁମ୍ଭେ ଥାଅ ବେନି ଭ୍ରାତେ
କେହି ନ ଜାଣିବେ ମୁହିଁ ଆସିଲା ପର୍ଯ୍ୟନ୍ତେ ।
ଏ ରୂପେ ନୃସିଂହ ମାୟା ନୃସିଂହଙ୍କୁ କହି
ଶ୍ରୀଅଙ୍ଗୁ କାଢ଼ିଲେ ମାତା ପିତା ଭାବଗ୍ରାହୀ ।
ସାକ୍ଷାତେ କୃଷ୍ଣବଲ୍ଲଭ ତ ହେଲେ ଜାତ
କହୁଛନ୍ତି ନାରଦଙ୍କୁ ସାବିତ୍ରୀର କାନ୍ତ ।
ମାୟା ପିତାଙ୍କୁ ଗରୁଡ଼େ ଘେନି କଲେ ବିଜେ
ମିଳିଲେ ଅଶୀଳ ପାଶେ ଯାଇଁ ବେଦରାଜେ ।
ବଦରିକା ଦେଶ ଲୋକେ ସର୍ବେ ଛନ୍ତି ଶୋଇ
କାହାକୁ ନୃସିଂହ ସ୍ୱାମୀ କଥା ଜଣା ନାହିଁ ।
ସୁଜାଣ ମନ୍ତ୍ରୀ ଗରୁଡ଼ ତାହା ଜାଣେ ଏକା
ମାୟାକୁ କାଢ଼ି ଅଛନ୍ତି ପ୍ରଭୁ ବଦରିକା ।
ମାୟା ପିତାଙ୍କୁ ଘେନିଣ ଗଲେ ବେନି ଭାଇ
ଗରୁଡ଼ ପରେ ବସିଲେ ଅପସର ଦେଇ ।



## ଶେଷ ଓ ନରସିଂହଙ୍କ ବିଦ୍ୟା ପଢ଼ାଇବା ପାଇଁ କନକାବତୀ ଯାତ୍ରା

ଚାଲିଲେ ପହଣ୍ଡି ବିଜେ ପ୍ରାୟେ ପକ୍ଷୀରାଜ
ଖଣ୍ଡେ ଦୂରରୁ ଅଶୀଳ ଦେଖି ହେଲା ସଜ ।
ଚାହିଁଲେ ଗରୁଡ଼େ ତିନି ମୂର୍ତ୍ତିଛନ୍ତି ବସି
ମଧ୍ୟେ ପିତା ବାମ ଦକ୍ଷେ ଛନ୍ତି ବେନି ବସି ।
କୃଷ୍ଣବଲ୍ଲଭ ହୋ ଶୁଣ ଅଶୀଳ ବୋଇଲା
ରାଜାଙ୍କର ଆଜ୍ଞା ଏବେ ତୁମ୍ଭ ପ୍ରତି ହେଲା ।
ଏତେ ବିଳମ୍ବ କରିଣ କିମ୍ପା ବ୍ୟର୍ଥେ ରହୁ
ପୁତ୍ରଙ୍କୁ ପେଷ ତୁ ବେଗେ ମୁର କଥା ହେଉ ।
ବିଳମ୍ବ କଲେ ବୋଲଣା ପାଇବଟି ରାୟେ
ଯାହାର ନାମେ ଚମକ ପଡ଼େ ସବୁଠାଏ ।
ଛାମୁକୁ ଗଲା ପର୍ଯ୍ୟନ୍ତ ଲାଗୁଅଛି ଡର
ଏ ରୂପେ ବୋଲିଣ ଆଣ୍ଟ କଲାକ ଅସୁର ।
ଶୁଣିଣ ମାୟା ନୃପତି ଠିକେ କହେ କାନ୍ଦି
ବୋଇଲେ ପୁତ୍ରେ ପଡ଼ିବେ ଗଲେ ପରା ବନ୍ଦୀ ।
ଗୃହ ପୁତ୍ର ଗଲେ ମୋର ଦିନ ନ ସରିବ
ବେଳହିଁ ତ ନ ବୁଡ଼ିବ ରାତ୍ର ନ ପାହିବ ।
ଲାଗିବ ଭୁଞ୍ଜିବା ଅନ୍ନ ସବୁ ମୋତେ ପିତା
ଜନନୀ ତ ମରିଯିବ ହୃଦେ କରି ଚିନ୍ତା ।

ଚାଲ ସେ ରାଜାଙ୍କ ହସ୍ତେ ସମର୍ପିଣ ଦେବି
କୁହାକୁହି କରି ପୁତ୍ର ଘେନିଣ ଆସିବି ।
ତଥାପି ସେ ନ ବୁଝିଲେ କହିବା ତିଆରି
ତହିଁ ଉତ୍ତାରୁ ପଛେ ମୁଁ ଆସିବି ବାହାରି ।
ଶୁଣିଣ ଅଶୀଳ ତାହା ବହୁ ପ୍ରଶଂସିଲା
ବଡ଼ଲୋକର ମହିମା ବୋଲେ ଭଲା ଭଲା ।
ବଡ଼ଲୋକ ଜାଣନ୍ତି ସେ ଏକା ବଡ଼ କଥା
ହାନିଲାଭ ନ ଜାଣନ୍ତି ତ ସକଳ ବ୍ୟବସ୍ଥା ।
ଅଷ୍ଟ ଅବଧାନ ହୋଏ ମନେକଲେ ନ୍ୟାୟେ
ଅଜଣା ବୁଝାମଣାକୁ କୂର୍ମଗ୍ରୀବ ପ୍ରାୟେ ।
ପଦାକୁ ସେ ଖସୁଥାଇ ମଧ୍ୟେ ପଶୁଥାଇ
ଅଭବ୍ୟ ଲୋକତ ଜାଣ କୂର୍ମ ପ୍ରାୟେ ହୋଇ
ଆପଣତ ବଡ଼ଲୋକ ହେବା କଥା ଜାଣି
ପୁତ୍ରକୁ ଧରିଣ ମୋତେ ଭେଟ ଆସି ପୁଣି ।
ବେଗେଣ ହୁଅ ହେ ସଜ ଯିବା ଏହି ଲାଗେ
ନ କହ ବିଳମ୍ବ କଥା ଆଉ ମୋର ଆଗେ ।
ବଲ୍ଲଭ ବୋଇଲେ ଆଉ ବିଳମ୍ବେ କି କାର୍ଯ୍ୟ
ପୋଏ ବସିଲେଣି ଦେଖ ଏହି ପକ୍ଷୀରାଜ ।
ଅଶୀଳ ବୋଇଲା ତୁମ୍ଭେ ଚାଲ ମୋର ଆଗ
ତୁମ୍ଭ ପଛେ ମୁହିଁ ଚାଲି ଯିବି ହୋଇ ବେଗ ।
ଶୁଣି ଗରୁଡ଼କୁ ପ୍ରଭୁ ଠାରିଣ କହିଲେ
ପକ୍ଷୀରାଜ ଶୂନ୍ୟମାର୍ଗେ ଉଠିଣ ଚଳିଲେ ।
ତାଙ୍କ ପଛରେ ଅଶୀଳ ଗମେ ମନେ କ୍ଷେପି
ଚାଲୁଅଛି ସଙ୍ଗେ ସଙ୍ଗେ ହୋଇ କାମରୂପୀ ।
ବଦରିକା ଆଶ୍ରମରୁ ମୁରାସୁର ପୁର
ପଞ୍ଚାଶତ ଯୋଜନ ଯେ ଅଟେ ପଥ ଦୂର ।
ପ୍ରହରକ ଭିତରେ ସେ ପ୍ରବେଶିଲେ ଯାଇ
କନକାବତୀ ନଗ୍ରରେ ପଶ୍ଚିମ ମୁଣ୍ଡେଇ ।
ସେହି ପୁରେ ଯହିଁ ବିଜେ ପ୍ରଭୁ ସଦାଶିବ
ନୃସିଂହ ସେ ସ୍ଥାନେ ଗଲେ ସହ ଶେଷଦେବ ।
ଉତୁରି ଖଗେଶ୍ୱରର କନ୍ଧୁ ବେନିଭାଇ
ମାୟା ପିତାଙ୍କୁ ଘେନିଣ ସ୍ନାନକଲେ ଯାଇ ।
ସନ୍ଧ୍ୟା କରମ ସାରିଣ ସୂର୍ଯ୍ୟେ ଅର୍ଘ୍ୟ ଦେଲେ
ସାରିଣ ଦେବାର୍ଚ୍ଚନ ସେ ପ୍ରଭୁ ବିଜେ କଲେ ।
ଶୀତଳ ମଣୋହି ଲାଗି ହେଲେ ନାରାୟଣ
ଆଚମନ ସାରି ପ୍ରଭୁ କଲେ ବିହରଣ ।
ଗରୁଡ଼ ସେ ରୂପେ ସନ୍ଧ୍ୟା ତରପଣ କରି
ନୃସିଂହଙ୍କୁ ସେବା କଲା ମଣୋହିକି ସାରି ।
ଅଶୀଳ ଯେ ନୃସିଂହଙ୍କୁ ରଖାଇ ସେଠାରେ
ମିଳିଲାକ ଶୀଘ୍ର ଯାଇଁ ମୁରର ଆଗରେ ।

ଦୂତକୁ ଦେଖିଣ ରାଜା ହସ ହସ ହେଲା
ଆସିଲୁ କିରେ ଅଶୀଳ ବୋଲି ପଚାରିଲା ।
ଦୂତ ବୋଇଲା ସ୍ୱାମୀ ତୋ ଆଜ୍ଞା ପରମାଣେ
ବାପ ପୁଅ ତିନିଙ୍କୁ ମୁଁ ଆଣିଲି ତତକ୍ଷଣେ ।
ନଗ୍ରର ପଶ୍ଚିମ ମୁଣ୍ଡେ ଛନ୍ତି ଦେବ ଆଳେ
ଆଜ୍ଞା ହୋଇଲେ ଛାମୁକୁ ଆଣିବି ତକ୍ରାଳେ ।
ମୁରାସୁର ବୋଲଇ ଯେ ଛାମୁକୁ ମୋ ଆଣ
କି ରୂପ ବର୍ଣ୍ଣ ତାଙ୍କର ଦେଖିବା ଲକ୍ଷଣ ।
ନିର୍ମାଣ କରିବା ତହିଁ ପରେ ବସାଘର
ଦିନ ବୁଝିଲେ ପଢ଼ିବେ ବିଦ୍ୟା ପୋଏ ମୋର ।
ଶୁଣିଣ ଅଶୀଳ ଦୈତ୍ୟ ଗଲା ଶୀଘ୍ର ହୋଇ
ବୋଇଲା କୃଷ୍ଣବଲ୍ଲଭ ଆସ ଶୀଘ୍ର ହୋଇ ।
ମୁରାସୁରଙ୍କର ଆଜ୍ଞା ଦେଲା ଏହିକ୍ଷଣି
ବେଗେ ଆସନ୍ତୁ ଦେଖିବା ଆମ୍ଭେ ଚକ୍ରପାଣି ।
ଶୁଣି ବିଷ୍ଣୁ ମାୟା ପିତା ଉଠିଲେ ହରଷେ
ଚଳାଇ ଅଛନ୍ତି ବେଳି ପୁଅଙ୍କୁ ପାରୁଶେ ।
ତହିଁ ପଛରେ ଗରୁଡ଼ ଚଳେ ଧୀରେ ଧୀରେ
ବେନି ଖଗ ବାଡ଼ କରି ଦେଇ ଅପସରେ ।
ନାସୁ କେଶଯାଏ ହରି ମନ୍ଦିରର ଚିତା
କାଟିଣ ସଙ୍ଗରେ ଧରି ଚାଲେ ଜଗଜ୍ଜିତା ।
ମସ୍ତକରୁ କଟି ଯାଏ ଲମ୍ବିଅଛି ବେଣୀ
ବେଣୀ ଅଗର ଘାଗୁଡ଼ି ବାଜେ କିଣି କିଣି ।
ମୁକୁତା ପୁଞ୍ଜା ପୁଞ୍ଜା ଯେ ଲମ୍ବେ ବେଣୀଯାକେ
କପାଳେ ହୀରା ପାତିଆ ବ୍ରହ୍ମାଣ୍ଡେ ଝଲକେ ।
ସୂର୍ଯ୍ୟରୁ ଶତେକ ଗୁଣେ ଦିଶଇ ଝଟତି
ନିଶାକାଳେ ଚନ୍ଦ୍ର ଯେହ୍ନେ ପ୍ରକାଶେ ପୃଥ୍ୱୀକି ।
କର୍ଣ୍ଣରେ ହୀରା କୁଣ୍ଡଳ କଣ୍ଠେ ଶୋହେ ମାଳ
ଜାନୁରେ କଂସା ଘଣ୍ଟ ଯେ ଶୁଭଇ କୋମଳ ।
ଶରୀରେ ଯାବତ ପୁଷ୍ପ ହୋଇଛି ମଣ୍ଡଣି
ନୃସିଂହର ପ୍ରଭା ଟେକି ଚାଲଇ ଧରଣୀ ।
ପହଣ୍ଡି ବିଜୟ କାଳେ ଯେହ୍ନେ ଜଗନ୍ନାଥ
ସେ ରୂପେ ଚାଲନ୍ତେ ଦିଶେ ଗରୁଡ଼ର ପଥ ।
କପଳି ଚାଲନ୍ତେ ଯେହ୍ନେ ମୂର୍ତ୍ତିମନ୍ତ ହୋଇ
ସେହି ରୂପେ ଦିଶନ୍ତି ନୃସିଂହ ବେନିଭାଇ ।
କନକାବତୀ ପୁରରେ ଛନ୍ତି ଯେତେ ନାରୀ
ଚାରିପାଶେ ରହି ସର୍ବେ ଦେଖନ୍ତି ଉଭାରି ।
କେ ବୋଲେ ଏମାନେ କାହୁଁ ଅଇଲେ ଗୋ କହ
ସାକ୍ଷାତରେ ପରଂବ୍ରହ୍ମ ଏହି ଜାଣିଥାଅ ।
କେ ବୋଲଇ ହରିହର ହେବେ ଏହି ଦୁଇ
ବେନି ଭାଇ ମଧ୍ୟେ ସେହୁ ବସିଛନ୍ତି ଯାଇ ।
ଏହାଙ୍କର ଜନକ ଯେ ହେବ ଏହୁ ଜାଣ
ପିତା ପୁତ୍ର ପରି ଏ ଯେ ଦିଶନ୍ତି ଘଟଣ ।
କେ ନାରୀ ବୋଲେ ସ୍ୱର୍ଗର ଅଟଇ ଏ ଇନ୍ଦ୍ର
ରାଜା ଛାମୁକୁ କରିବା ପାଇଁ ଆସେ କେନ୍ଦ୍ର ।
କେ ବୋଲେ ନୀଳଗିରି ଶ୍ରୀଜଗନ୍ନାଥ କିଏ
ଢଳିଣ ଚାଲୁଅଛନ୍ତି ପହଣ୍ଡି ବିଜୟେ ।
କେହୁ ବୋଲେ ଚନ୍ଦ୍ର ସୂର୍ଯ୍ୟଧରି ରୂପ ବେନି
ରାଜା ମଗଜ ବୁଝିଣ ଯିବେ ଦେହ ଘେନି ।
କେହୁ ବୋଲେ କାମଦେବ ଘେନି ବେନିକର୍ଣ୍ଣ
ଏହାଙ୍କୁ ଦେଖିଣ ସ୍ତିରୀ ହେବେ ଛନ୍ନ ଛନ୍ନ ।
କେହୁ ବୋଲେ ହରିହର ମାୟାରୂପ ଧରି
ଅବଶ୍ୟ କପଟେ ପଶି ଏହୁ ଯିବେ ମାରି ।
କେହୁ ବୋଲେ ଲୀଳାଗତି ହୋଇ ବେନିଭାଇ
ଦାଣ୍ଡରେ ବୁଲୁଅଛନ୍ତି ସର୍ବ ମନ ମୋହି ।
କେହୁ ବୋଲେ କାମଦେବ ଅଟେ ପରା ଏହି
ଦେଖି ଏହାକୁ ଯୁବତୀ ହେବେ କାମେ ବାଇ ।
ଦେଖୁଅଛୁ ତ ପୁରୁଷ ଆମ୍ଭେ କେତେ ରୂପେ
କାମିନୀକୁଳକୁ କାନ୍ତ ନ ମିଳେ ଏ ରୂପେ ।
ମଧ୍ୟେ ରହିଅଛି ଯେହୁ ଅଟେ ପରା ବାପ
ତହିଁ ପଛେ ଅଛି ଦେଖ ଗରୁଡ଼ ଏ ରୂପ ।
ପୂର୍ବକାଳୁ କେତେ ତପ ଥିଲୁ ଆମ୍ଭେ କରି
ତେଣୁ ଦେଖିଲୁ ଗରୁଡ଼ ସହ ଦେବହରି ।
ତ୍ରିପୁରଯାକ ଗରୁଡ଼ ପଦ୍ମମୁଖ ଦେଖ
ଦର୍ଶନ କରିଣ ଥିଲୁ ତାଙ୍କୁ ରତିପାଖ ।
ଯେବଣ ଭାଗ୍ୟରୁ ଆମ୍ଭ ପୁରେ ବିଜେ କଲେ
ଶଙ୍ଖ ଚକ୍ର ଗଦା ପଦ୍ମ ଧରି ପ୍ରକାଶିଲେ ।
ଆସିଲେ ଆମ୍ଭର ମୋକ୍ଷ ପାଇଁ ବ୍ରହ୍ମରାଶି
କେହୁ ବୋଲେ ନୃପତିଗୋ ଆଣେ ଦୂତ ପେଶି ।
କେ ବୋଲେ ଆଗହୁଁ ପୁଣି ଅଛୁ ଶୁଣି ଆମ୍ଭେ
ରାଜାର ପୁତ୍ରଯାକଙ୍କୁ ବିଦ୍ୟା ପଢାଇବେ ।
କେହୁ ବୋଲେ ରାଜପୁତ୍ରେ କରିଥିଲେ ଭାଗ୍ୟ
ଶ୍ରୀମୁଖରୁ ବିଦ୍ୟା ଶୁଣି ହୋଇବେ ମୋକ୍ଷାଙ୍ଗ ।
କେହୁ ବୋଇଲେ ଅଦୃଷ୍ଟେ ଯାହାର ଯା ଥିବ
କାଳେଣ ଦଇବ ତାହା ଲୋଡ଼ିଆଣି ଦେବ ।
କେହୁ ବୋଲେ କାହାକୁ ଏକଥା ଜଣାନାହିଁ
ଏଥିରେ ଭଲ ମନ୍ଦ ଗୋ ଦୁଇକଥା ଥାଇ ।
ବୋଇଲେ ଶୁଣ ପଣ୍ଡିତ ଏହା ସତ ସତ
ଏହି କଥା ଅପୂର୍ବ ହେ ଅଟେ ଅଲୋକିତ ।
ପ୍ରତ୍ୟକ୍ଷେ ଦିଶନ୍ତି ବିଷ୍ଣୁ ପ୍ରାୟେ ବେନିଭାଇ
ଶୁଭ ଅଛି ଏବେ ଅବା ଅଶୁଭ ଅଛଇ ।

ଏହି କଥା ବିଧାତାଙ୍କୁ ହେବ ସିନା ଜଣା
ଭଲ ଯୋଗ ଥିଲେ ହେବ ଭଲ ବୁଝାମଣା ।
ସବୁକାଳେ ପ୍ରାଣୀକି ନ ଥାଏ ଭଲ ଯୋଗ
ଅତି ଉଗ୍ରହେଲେ ସରେ ଅଳ୍ପକେ ତା ଭୋଗ ।
ଶୁଣିଅଛୁ ପଣ୍ଡିତଙ୍କ ମୁଖୁ ପୂର୍ବକାଳେ
ହରଙ୍କୁ ବର ମାଗିଲା ମୁର ଯେତେବେଳେ ।
ବୋଇଲା ଅମର ମୁହିଁ ହେବି ସବୁଦିନେ
ବିଧାତା ଥିବାକାଳେ ମୁଁ ଥିବି ତ୍ରିଲୋଚନେ ।
ଶୁଣିଣ ହେଉ ବୋଇଲେ ତହୁଁ ଉମାବର
ବର ଦେଇଣ କହିଲେ ମୃତ୍ୟୁ ପୁଣି ତାର ।
ବୋଇଲେ ଶ୍ରୀହରି ତୁଲେ ନ ଲାଗିବୁ ପୁଣି
ଲାଗନ୍ତେ ମାରିବେ ନିଶ୍ଚେଁ ଜାଣ ଚକ୍ରପାଣି ।
ଯେଉଁକାଳେ ମୁରଦୈତ୍ୟ ଦିଗବିଜେ କଲା
ଶାଳ୍ମଲ୍ୟ ଦ୍ୱୀପରେ ଯାଇଁ ବିଷ୍ଣୁଙ୍କୁ ଭେଟିଲା ।
ବାଳକରୂପେ ପଲ୍ୟଙ୍କେ ପ୍ରଭୁ ଥିଲେ ଶୋଇ
ପୁତ୍ର କରିବି ବୋଲିଣ ଆଣୁଥିଲା ବହି ।
ଗୁରୁ ହେବାରୁ ତାଙ୍କୁ ଛେଚି ପକାଇଲା
ଛେଚିବା ମାତ୍ରକେ ଜାଣ ପ୍ରଭୁର କିଗଲା ।
ପଳାଇଣ ନାରାୟଣ ପଶିଲେ ସେ ପୁରେ
ସେ ନଗର ଯାକ ପଶି ଖୋଜିଲେ ଅସୁର ।
ବିଷ୍ଣୁଙ୍କୁ ନ ପାଇଣ ସେ ନଗ୍ର ଦେଲେ ପୋଡ଼ି
କହିଲେ ସଂସାରେ ହରି ପ୍ରାଣ ଗଲା ଛାଡ଼ି ।
ତେଣୁ ସେହି ନାରାୟଣ ମନେ ବହି ରୋଷ
ଜନମ ହୋଇ ଏଠାରେ ଆସି ହେଲେ ଦୃଶ୍ୟ ।
ଦେଖ ଗୋ ଦିଶୁଛି ଶଙ୍ଖଚକ୍ର କେତେ ତୋରା
ଶ୍ରୀଅଙ୍ଗ ବିରାଜୁଅଛି ଗୁରୁ ଶୁକ୍ର ପରା ।
କୋଳରେ ଯେ ମହାଲକ୍ଷ୍ମୀଛନ୍ତି ବିଜେକରି
ଏହାଙ୍କୁ ରାଜା ଆଣିଲା ଦେଖ କିମ୍ପା ଧରି ।
ଯୋଗୀନ୍ଦ୍ରମାନେ କରନ୍ତି ଦେଖି ଜୟେ ଜୟେ
ନମନ୍ତି ଯେ ସାଧୁଲୋକ ହରି ପଦପାୟେ ।
ନଗ୍ରର ଲୋକେ କରନ୍ତି ଦେଖି ଦଣ୍ଡବତ
ବୋଲନ୍ତି ଅଲକ୍ଷ୍ୟେ ଦୃଶ୍ୟ ହେଲେ ଜଗନ୍ନାଥ ।
ବୋଲନ୍ତି ଯେ ବୃଦ୍ଧଜନେ ମୋକ୍ଷଦାତା ହରି
ଘେନନ୍ତି ଯେ ପୁତ୍ରମାନେ ପିତାମହ କରି ।
ଅସୁରକୁଳଙ୍କୁ ଦିଶେ ସୁବିଶାଳ କାୟେ
ଦିଶନ୍ତି ଦୁଷ୍ଟଜନଙ୍କୁ ଭଇରବ ପ୍ରାୟେ ।
ଭକ୍ତ ଜନଙ୍କୁ ଦିଶନ୍ତି ସେହି ବିଷ୍ଣୁପ୍ରଭା
ଏ ରୂପେ ନୃସିଂହ ଯାନ୍ତେ ଦିଶଇ ଯେ ଶୋଭା ।
କନକାବତୀ ନଗର ଦାଣ୍ଡେ ପ୍ରଭୁ ବିଜେ
ଚାଲନ୍ତି ଯେ ଲୀଳାଗତି ହୋଇ ଦେବରାଜେ ।

ଗରୁଡ଼ରେ ଅପସର ଦେଇ ନାରାୟଣ
ପିତାଙ୍କ ଦକ୍ଷ ଭାଗରେ ଯାନ୍ତି ରୁଣଝୁଣ ।
ରାଜାର ସିଂହ ଦୁଆରେ ହୋଇଲେ ପ୍ରବେଶ
କହିଲା ଦ୍ୱାରୀ ଯାଇଣ ପଡ଼ିହାରୀ ପାଶ ।
ଶୁଣି ପଡ଼ିହାରୀ କହେ ସେ ଚରଚିଆଙ୍କୁ
ଚରଚିଆ ଚଳିଗଲା ସଭା ଭିତରକୁ ।
ପୂରିଅଛନ୍ତି ଅସୁର ସଭା ଜଗତୀରେ
ବସିଅଛି ମୁରାସୁର ଖଡଗାସନରେ ।
କଣ୍ଟ ବିକଣ୍ଟ ଯେ ଦୁଇଛନ୍ତି ବେନିପାଶେ
ବସିଛି ଆଗେ ଦାରୁଣ ଭାଇ ମନ ତୋଷେ ।
ସୁବିଜ୍ଞ ମନ୍ତ୍ରୀ ତହିଁର ପାର୍ଶ୍ୱେ ଅଛି ବସି
ମୁରର ସତରଲକ୍ଷ ପୁତ୍ରଛନ୍ତି ମିଶି ।
ସୁବେଶ ବେଶ ହୋଇଣ ମୁରଦୈତ୍ୟ ପୋଏ
ବସିଣଛନ୍ତି ପାଶେ ଗନ୍ଧର୍ବ ସଭା ପ୍ରାୟେ ।
ଆବର ନାତି ଅଛନ୍ତି ନବଲକ୍ଷ ବସି
ତାହାଙ୍କୁ ଦେଖିଣ ମୁର ମନ ହୁଏ ଖୁସି ।
ଆବର ଯେ ସେନାପତି ଛନ୍ତି ଚାରିଦିଗେ
ସୁଧର୍ମା ସଭା ପରାୟେ ବସିଛନ୍ତି ଆଗେ ।
କାଙ୍କୋଳ ସେ କାଳକେତୁ ପୁଣି ଲୋହାସୁର
ପ୍ରଳମ୍ବ ଜଳଘଟ ସୁମାଳୀ ମାଳବୀର ।
ସୁକେଶ ରଣଚୂଡ଼ ଚନ୍ଦ୍ରମାଳୀ ସଜିତ
ବିକଚ ମୁଡ଼ା ଅସୁର ରାଜକକ୍ଷ ଦୈତ୍ୟ ।
ଆଲୋପି ବୀରଘଣ୍ଟ ସଲେପି ସଉଦାସ
ଅଶୀଳ ମାଶୀଳ କୋଦାଳ ଯେ ଚାରୁହଂସ ।
ରଣକେଶୀ କୃତକେଶୀ ବଜ୍ରକେଶୀ ବୀର
ସୁରକ୍ଷ ଭକ୍ଷ ରକ୍ଷ ଯେ ଖଡ଼ିକା ଅସୁର ।
ଏ ରୂପେ ଅଛନ୍ତି ବସି ଦୈତ୍ୟ ସେନାପତି
ମୁଖରାବ ଶବଦରେ କମ୍ପେ ବସୁମତୀ ।
ସୁଜେଠି ଜଗଜେଠି ଯେ ଜୟ ମହାଦନ୍ତା
ଯୋଦ୍ଧାମାନେ ଅନର୍ଗଳେ ଛନ୍ତି ଅପ୍ରମିତା ।
ପାଇକ ରାଉତ ରଥୀ ଆଉ ମହାରଥୀ
ଯୋଜନ ପର୍ଯ୍ୟନ୍ତେ ବ୍ୟାପି ରହିଛନ୍ତି ପୃଥ୍ୱୀ ।
କାଖରେ ହସ୍ତ ପୂରାଇ ଶିରେ ଦେଇ କର
ଆଜ୍ଞାକୁ କର୍ଣ୍ଣ ଡେରିଣ ଥାନ୍ତି ସର୍ବନର ।
ସଇନ ବଳ ପଦାତି ଆଉ ଯୋଦ୍ଧା ଯେତେ
ସଭାତଳେ ପଟୁଆରି ଅଛନ୍ତି ସମସ୍ତେ ।
ସୁବର୍ଣ୍ଣ ବାଡ଼ି ଧରିଣ ରାଜ ଖୁଣ୍ଟିଆଏ
ସଭା ନିଃଶବ୍ଦ କରନ୍ତି ରହି ଠାଏ ଠାଏ ।
କେ ଅନ୍ତ କରିବ ତହିଁ ଦୈତ୍ୟ ଅକଳନା
ଆସ୍ଥାନ ପୂରି ବାହାରେ ଅଛନ୍ତି ଅଗଣା ।

ହୀରା ନୀଳା ମାଣିକ୍ୟ ସେ ମୁକ୍ତା ମାଳି ମାଳି
ଥୋଇହସ୍ତ ଧାରଣା କଳସ ତଳେ ଢଳି ।
ସୁବର୍ଣ୍ଣ ସ୍ତମ୍ଭ ବେଢ଼େ ଲମ୍ବାଇ ପାଟଝୁମ୍ପା
ସାରି ସାରି କେରି କେରି ଗଜମୋତି ଝୁମ୍ପା ।
କ୍ଷୀରୋଦ ପାଟପତନୀ ଉପରେ ଚାନ୍ଦୁଆ
ରତ୍ନଖଟେ ବସିରାଜା ଭୁଞ୍ଜେ ପାନ ଗୁଆ ।
ସୁବର୍ଣ୍ଣ ଆଲଟ ପଙ୍ଖା ବିଞ୍ଚଣୀ ଚାମର
ପଡୁଅଛି ଚାରିପାଖେ ରାଜାର ଛାମୁର ।
ହଡ଼ପ ଚନ୍ଦନ ପାନପୁଲ ଧୂପ ଧୂଆଁ
କୁଙ୍କୁମ କସ୍ତୁରୀ ମିଶି କୃଷ୍ଣାଗୁରୁ ଚୂଆ ।
ବାହୁଟି ମୁଦି କଙ୍କଣ ବିଦ ବେନିଭୁଜେ
ଦିଗବାରଣେ ଚିରାଳ ଶୂନ୍ୟେ ଉଡ଼ି ସାଜେ ।
ବାମକରେ ଛୁରୀ କାତି ପରିଘ ମୁଦ୍ଗର
ଦକ୍ଷିଣ ଭାଗରେ ଗଦା ଖଡ୍ଗ ଅସୀବର ।
ପାଣ୍ଡୁର ବର୍ଣ୍ଣ ମୁଖ ପିଙ୍ଗଳବର୍ଣ୍ଣ ନିଶ
ରକ୍ତ କୁମୁଦ ପରାୟେ ନେତ୍ର ପରକାଶ ।
ତାମ୍ବୁଲ ହେ ଭୁଞ୍ଜିବାରେ ଓଷ୍ଠ ଦିଶେ ରଙ୍ଗ
ବିରାଜେ ହୀରାକୁଣ୍ଡଳ ବେନି କର୍ଣ୍ଣଯୁଗ ।
ଉଚ୍ଚାରେ କୁଳିଶ ଶବ୍ଦ ପ୍ରାୟ ମୁଖୁଁ କଥା
ପ୍ରତାପୀ ତିନିପୁରରେ ଦୈତ୍ୟ ମହାରଥା ।
ପନୀର ଯେ ଚତୁଃସମ ଲେପି ନିଜ ଅଙ୍ଗେ
ପତନୀ ବନରଙ୍ଗରେ ଶୋହେ କଟୀଭାଗେ ।
ଘାଗୁଡ଼ି ଅଷ୍ଟରତନ ସ୍ୱର୍ଣ୍ଣସୂତ୍ରେ ଗୁନ୍ଥି
ଅଣ୍ଟାରେ ଖଞ୍ଜିଛି ପୁଞ୍ଜି ପୁଞ୍ଜି ବେଢ଼ଯନ୍ତ୍ରୀ ।
କାଛେଣୀ ନାଗବନ୍ଧରେ ଯମଦାଢ଼ ଖୋସି
ହସ୍ତରେ ବେଳେ ବେଳେକେ ମୋଡ଼େ ନିଶ ହସି
ତିନିପୁରୁ ଆସିଛନ୍ତି ଯେତେ ଲୋକ ଆଦ୍ୟେ
ଥୋକାଏ ଋଷିମାନେ ତ ଛନ୍ତି ସଭାମଧ୍ୟେ ।
ବାସବ ଯମ ଅନଳ ପବନ ନୈର୍ଋତେ
ଖଟଣି ସେବାରେ ଜଗିଛନ୍ତି ଯେଝାମତେ ।
କରନ୍ତି ଯାହାର ଯେଉଁ ସେବା ନିତ୍ୟେ ଆସି
ଆବୋରି ସଭାରେ ଛନ୍ତି ସ୍ଥାନମାନ ବସି ।
କୁବେର ଯେ ଚନ୍ଦ୍ର ସୂର୍ଯ୍ୟ ବାୟୁ ମୃତ୍ୟୁଞ୍ଜୟେ
ଏମାନେ ମୁରକୁ ସେବୁଛନ୍ତି ଅପ୍ରମେୟେ ।
ଦୁଷ୍ଟ ଲୋକଙ୍କୁ ସେ ଜାଣ ସର୍ବେ ଥାନ୍ତି ଡରି
ବିନାଶନ୍ତି ତାକୁ ଏକା ଯଥା କାଠେ ହରି ।
ଅଳ୍ପାୟୁଷ ହୁଅଇ ସେ ନିଜ ଦୋଷବର୍ଲେ
ଏ କଥା ହେଜି ବୁଝି ନ ପାରେ କେତେବେଳେ ।



## ନୃସିଂହଙ୍କର କନକାବତୀ ପୁରରେ ପ୍ରବେଶ ଓ ରାଜପୁତ୍ରଙ୍କର ବିଦ୍ୟାଶିକ୍ଷା

ଏଥୁଅନ୍ତେ ବାଣୀ ଶୁଣ ହୋ ନାରଦ ଋଷି
ଚାର ଯାଇଁ ଜଣାଇଲା ସଭାମଧ୍ୟେ ଆସି ।
ସେ କଙ୍କୋଳସୁର ଆଗେ ଖବର କହିଲା
ଶୁଣନ୍ତୁ ହେ ବୀରମଣି ନୃସିଂହ ଆସିଲା ।
ସିଂହଦ୍ୱାରରେ ଆସି ଅଛନ୍ତି ଜାଣ ରହି
ଆସିବେ ରାଜାର ଆଜ୍ଞା ହେଲେ ବେନିଭାଇ ।
ଶୁଣିଣ କାଙ୍କୋଳସୁର ଉଠିଲା ତତ୍କାଳେ
ରାଜା ଛାମୁରେ କହିଲା ଯାଇଁ କର୍ଣ୍ଣମୂଳେ ।
ବୋଇଲା ଭୋ ସାବଧାନେ ଶୁଣ ଦୈତ୍ୟରାୟେ
ସିଂହଦ୍ୱାରେ ଆସିଣ ହେଲେ ବିପ୍ରପୋଏ ।
ଶ୍ରୀଆଜ୍ଞା ହେଲେ ଆସିବା ତାଙ୍କୁ ଆମ୍ଭେ ଘେନି
ଚିହ୍ନିବା କେହ୍ନେ କହିବେ ସେହି କଥାମାନି ।
ଏହା ଶୁଣି ମୁର ହସି ବୋଲେ ଘେନିଆସ
ତାଙ୍କ ରୂପ ଦେଖି ଆଗ ଜାଣିବା ଭବିଷ୍ୟ ।
ଶୁଣିଣ କାଙ୍କୋଳାସୁର ଗଲା ତତକ୍ଷଣ
ବୋଇଲାକ ରାଜା ଆଜ୍ଞା ହେଲା ବେଗେ ଆଣ ।
ଏହା ଶୁଣି ଚରଚିଆ ଗଲା ବେଗେ ଧାଇଁ
ଦେଖିଲା ସିଂହଦ୍ୱାରରେ ଛନ୍ତି ବେନିଭାଇ ।
ଅଶୀଳକୁ ବୋଇଲା ହେ ଶୀଘ୍ର ଉଠିଆସ
ରାଜା କହିଲେ ଆସନ୍ତୁ ସଙ୍ଗେ ଜଗଦୀଶ ।
ଉଠିଲା ଶୁଣି ଅଶୀଳ ଦୈତ୍ୟ ଅତି ବେଗେ
ଗରୁଡ଼ ରଥ ଚଳାଇ ଦେଲା ସଙ୍ଗେ ସଙ୍ଗେ ।
ସଭାକୁ ଯାନ୍ତେ ଦିଶିଲା ପ୍ରଭୁ ତିନିରୂପେ
ଗରୁଡ଼କୁ ବିଶ୍ୱଗର୍ଭେ ରଖିଦେଲେ ଗୋପ୍ୟେ ।
ଯାହାର ଯହିଁରେ ମନ ଯେମନ୍ତ ସ୍ୱଭାବ
ସେହି ରୂପରେ ଦିଶନ୍ତି ତାକୁ ବାସୁଦେବ ।
ଆବର ଦେବଙ୍କୁ ଦିଶନ୍ତି ଯେ ବିଷ୍ଣୁ ପ୍ରାୟେ
ଦିଶନ୍ତି ଋଷିଯାକଙ୍କୁ ଶଙ୍ଖ ଚକ୍ର କାୟେ ।
ପାତାଳରୁ ନାଗଲୋକ ଆସିଥିଲେ ଯେତେ
ସେ ବୋଇଲେ ଆସିଲେକ ହରି ମୂର୍ତ୍ତିମନ୍ତେ ।
ନରଲୋକ ବୋଇଲେ ଏ ନିର୍ଣ୍ଣେ ପରଂବ୍ରହ୍ମ
ଏହାଙ୍କୁ ଯେ ଭଜଇ ସେ ଭକତ ଉତ୍ତମ ।
କୋଟିଏ ତପ କଲେ ନ ଦେଖି ଯାହା ଭଲେ
ସେ ପ୍ରଭୁ ଦୈତ୍ୟସଭାରେ ଆସି ଦେଖା ଦେଲେ ।
ଏ ରୂପେ ବୋଲି ନମନ୍ତି ସର୍ବେ ଖଣ୍ଡହୁରୁ
ଅସୁରକୁ ଡରି କେହୁ ନ ଉଠେ ସଭାରୁ ।

ମୁରକୁ ଦିଶିଲେ ସେହୁ ଯଥା ପରଂବ୍ରହ୍ମ
ଶଙ୍ଖ ଚକ୍ର ଗଦା ପଦ୍ମ ରାଜେ ସରିସମ ।
ଦୈତ୍ୟମାନଙ୍କୁ ଦିଶନ୍ତି କାଳଯମ ପ୍ରାୟେ
ସୁବିଜ୍ଞ ମନ୍ତ୍ରୀକି ଦିଶନ୍ତି ସେ ବ୍ରହ୍ମମୟେ ।
ବିଷ୍ଣୁଙ୍କୁ ଦେଖିଣ ମନ୍ତ୍ରୀ ମନେ କରେ ସ୍ତୁତି
ସେ ସ୍ତୁତି କରିବାର ଜାଣନ୍ତି ଜଗଜ୍ୟୋତି ।
ଅନ୍ତର୍ଯ୍ୟାମୀ ଶ୍ରୀହରି ସେ ସବୁ ହୃଦେ ଥାନ୍ତି
ଯେ ଯାହା ପାଞ୍ଚେ ତାହା ସେ ସବୁ ଜାଣିଥାନ୍ତି ।
ଅଣୀଳ ଦେଖେ ଏକା ଗରୁଡ଼ମୟ ରଥ
ଏ ରୂପେ ଚାଲନ୍ତି ମାୟା ଢାଳି ଜଗନ୍ନାଥ ।
ପାବଚ୍ଛକୁ ପାବଚ୍ଛ ଶତେ ପାବଚ୍ଛ ଯାଏ
ଚଢ଼ି ଯାଉଁ ଯାଉଁ ପ୍ରଭୁ ପାଞ୍ଚନ୍ତି କଥାଏ ।
ବୋଲନ୍ତି ଧନ୍ୟରେ ମୁର ତୋର ଭାଗ୍ୟରାଶି
ଏତେକାଳ ଯାଏ ଶିରୀ ଭୋଗକଲୁ ଆସି ।
ଦେବଲୋକ ନରଲୋକ ନାଗଲୋକ ମୂଳେ
ଖଟାଇ ରଖିଲୁ ଆଣି ଯାଙ୍କୁ ସଭାତଳେ ।
ଏବେ ବିଧାତା ଫେଡ଼ିଲା ଆଣି ତାଙ୍କ ଦଶା
ମଞ୍ଜାରୀର ଭୟେ ଯେହ୍ନେ ଲୁଚିଯାଏ ମୂଷା ।
ଏମାନେ ସେହିରୂପରେ ହେଲେ ଜାଣ ତୋତେ
ଗୁହାରି କଲେ କେବଳ ଯାଇ ଏକା ମୋତେ ।
ତାହାଙ୍କ ବିକଳ ଆମ୍ଭେ ନ ପାରିଲୁ ସହି
ଜନ୍ମିଲୁ ଆସି ମାନବ ତନୁ ଆମ୍ଭେ ବହି ।
ବିଷ୍ଣୁର ହାତେ ମରିବୁ ବୋଲି ଜାଣିଥିଲୁ
ଏବେ ପୁଣି ଖୋଜି ଲୋଡ଼ି ଗୃହେ ଅଣାଇଲୁ ।
ସୁପଣ୍ଡିତ ଜନମାନେ କରନ୍ତି ଯା ଲକ୍ଷ୍ୟ
କେତେବେଳେ ନୁହଇ ସେ କଥା ଜାଣ ମିଛ ।
ମୂର୍ଖ ଦେହରେ ଦଣ୍ଡ ନ ପଡ଼ିବା ପର୍ଯ୍ୟନ୍ତେ
ନ ମାନେ କାହାକୁ ସେ ସଂସାରେ ଛନ୍ତି ଯେତେ ।
ତାହାର ସୁଖ କଥା ତ ସେ ଏକା ଜାଣଇ
ପ୍ରମାଦ ମାଡ଼ି ପଡ଼ିବ ବୋଲି ନ ପାଞ୍ଚଇ ।
ଏହିଠାରୁ ମୃତ୍ୟୁ ତୋତେ ହେଲା ପରାପତ
ଭଲକୁ ଛାଡ଼ି ଲୋଡ଼ିଲୁ ଏବେ ମନ୍ଦକୃତ୍ୟ ।
କାହିଁ ହଜିଯିବ ଏବେ ଆସ୍ଥାନ ତୋହର
କାଳକୂଟ ଭକ୍ଷି ଏବେ ନପାରୁ ଅସୁର ।
ଏତେ ପାଞ୍ଚି ଗୋବିନ୍ଦ ଆସ୍ଥାନ ତଳେ ମିଳି
ଜଳର ମଧରେ ଯେହ୍ନେ ହଂସ କରେ କେଳି ।
ମୁରାସୁର ପାଶେ ଯାଇ ମିଳିବେ ଗୋବିନ୍ଦେ
ସଭାରେ ବସିଣ ଲୋକେ ଚାହାନ୍ତି ନିଃଶବ୍ଦେ ।
ବୃଷଭ ସୁରଭିପଲ ମଧ୍ୟେ ଯେହ୍ନେ ଦିଶେ
ସେପରି ଦିଶନ୍ତି ସଭାମଧେ ଜଗଦୀଶେ ।
ତାରାଗଣଙ୍କ ମଧ୍ୟରେ ଚନ୍ଦ୍ର ଯେହ୍ନେ ଉଦେ
ନୃସିଂହ ଦିଶନ୍ତି ସେହିରୂପେ ସଭାମଧେ ।
ବିଜୁଳି କଳାମେଘରେ ଯେହ୍ନେ ଦିଶୁଥାଇ
ସେହିପରି ନୃସିଂହଙ୍କ ଜ୍ୟୋତ୍ସ୍ନା ବିରାଜଇ ।
ଦୈତ୍ୟଙ୍କୁ ଦିଶଇ ମହାପ୍ରଭୁ ମେରୁପ୍ରାୟେ
ଦେଖିକରି ଦୈତ୍ୟଯାକ କରୁଥାନ୍ତି ଭୟେ ।
ଏଥୁଅନନ୍ତରେ କଥା ଶୁଣ ହେ ନାରଦ
ଦୈତ୍ୟଙ୍କ ସଭାରେ ବିଜେକଲେକ ଗୋବିନ୍ଦ ।
ରାଜାର ଆଗେ ମିଳିଲେ ଯାଇ ବେନିଭାଇ
ଦେଖିଲା ବିଷ୍ଣୁଙ୍କୁ ମୁର ନୟନ ପୁରାଇ ।
ପାଦଠାରୁ ଶିରଯାଏ ନିରେଖି ଚାହିଁଲା
ଥରେ ଚକ୍ଷୁ ବୁଜି ପୁଣି ଲେଉଟି ଚାହିଁଲା ।
ଲୋତକ ଧାରା ନୟନୁ ପଡ଼େ ଖସି ତାର
ପରଳ ଫାଟିଣ ଲୁହ ବହେ ଝର ଝର ।
ବସନ କରରେ ଧରି ପୋଛେ ହସ୍ତ ଟେକି
ମନରେ ପାଞ୍ଚେ ଆଣିଲି ଭଲା ଶତ୍ରୁ ଡାକି ।
ହାତରେ ମୋ ପଡ଼ିଲାଣି ଆଉ ଯିବେ କାହିଁ
ଯାହା ପାରିବି କରିବି ତାହା ଘରେ ଥୋଇ ।
ପୋଷିଲା ମାଛ ପରାୟେ ହେଲେ ଏବେ ମୋର
ବାପକୁ ଯେ ପଠିଆଇ ଦେବି ଆଗ ତାର ।
ତହିଁ ଉତ୍ତାରୁ ରଖିବି ପୁଣ ଦିନାକେତେ
କଳେ କୌଶଳେ ମାରିବି ପୁତ୍ରଙ୍କର ହସ୍ତେ ।
ଏ ରୂପେ ବିଷ୍ଣୁ ବୋଲି ନ ଥିଲି ମୁହିଁ ଜାଣି
ବୁଝିଲି ନିଶ୍ଚୟ ଏହୁ ଅଟେ ଚକ୍ରପାଣି ।
ଏହାକୁ ମାରି ପାରିବି ଯେବେ ମୁହିଁ ହସ୍ତେ
ଅମର ହୋଇ ରହିବି ମୁହିଁ ଦିନାକେତେ ।
ନୋହିଲେ ମରିବି ଏହା ହାତେ ଯେବେ ମୁହିଁ
ରହିବି ବୈକୁଣ୍ଠପୁରେ ମୋକ୍ଷ ହୋଇ ଯାଇ ।
ଏ ରୂପେ ପାଞ୍ଚି ଲେଉଟି ପୁଣି ବିଚାରିଲା
ଏହି ବେନି ଭାଇ ହାତେ ହେବ କିସ ଭଲା ।
ବୁଝିଲେ ଅଟନ୍ତି ସିନା ବ୍ରାହ୍ମଣର ବସି
ସଙ୍ଗେ ସୈନ୍ୟବଳ ଆଣି ନାହାନ୍ତି ଯେ କିଛି ।
ମୋହର ଯେ ବୁଝିଲେ ଅଛନ୍ତି ଯେତେ ସୈନ୍ୟ
ଚବିଶ ସେନା ଅଟନ୍ତି ମୋର ଯାତୁଧନ ।
ଦାରୁଣ ଭାଇ ବ୍ରହ୍ମାଣ୍ଡ ଜିଣିପାରେ ଗଚ୍ଛି
ମୋହଠାରୁ ବଳିୟାର କ୍ଷତ୍ରିୟ କେ ଅଛି ।
ଆବର ବାଳକେ ମୋର ଯେତେ ଅଛନ୍ତି
ସତର ଲକ୍ଷ କୁମର ନବଲକ୍ଷ ନାତି ।
ଏହାଙ୍କ ହାତରେ ଆଗ ବଳେ ମରାଇବି
ଏମାନେ ନ ପାରିଲେ ମୁଁ ପଛେ ସଂହାରିବି ।

ଏ ରୂପେ ପାଞ୍ଚ ବଲ୍ଲଭ ରାଜା ମୁଖ ଚାହିଁ
ବୋଇଲା ତୁମ୍ଭେଟି ପରା ବଦ୍ରିକାନୃସାଇଁ ।
ତୁମ୍ଭର ନୃସିଂହ ଶେଷ ଦୁହେଁ କି ହେ ସୁତ
କି ରୂପେ ସାଧିଲେ ବିପ୍ର ହୋଇ କ୍ଷତ୍ରିବୃତ ।
ଯାହାର ଯେବଣ ବିଦ୍ୟା ତାକୁ ତାହା ଗଛେ
କାହୁଁ ଏହି ବିଦ୍ୟାଯାକ ଶିଖିଲେ ତୋ ବଂଶେ ।
ତୁମ୍ଭର ପୁତ୍ର ବୋଲିଣ ନ ଥିଲି ମୁଁ ଚିହ୍ନି
ତୁମ୍ଭ ପୁତ୍ର ବୋଲି କହିଲେ ନାରଦ ମୁନି ।
ତେଣୁ କରି ଡକାଇଣ ଆଣିଲି ମୁଁ ଜାଣ
ବିଦ୍ୟା କହିବାକୁ ଶ୍ରେଷ୍ଠ ଅଟନ୍ତି ବ୍ରାହ୍ମଣ ।
ବ୍ରାହ୍ମଣ ମୁଖେ ପୁରାଣ ବିଦ୍ୟା ଶୁଣୁଥିଲେ
ତାହାର ବଂଶ ଉଜ୍ଜ୍ୱଳ ହୁଏ କର୍ମ କଲେ ।
ତୁମ୍ଭର ପୁତ୍ରେ ହୁଅନ୍ତୁ ଏବେ ବିଦ୍ୟାଗୁରୁ
ମୋହର ପୁତ୍ରେ ଶିଖନ୍ତୁ ବିଦ୍ୟା ତାଙ୍କଠାରୁ ।
ତୁମ୍ଭର ଶ୍ରଦ୍ଧା ହୋଇଲେ ତାଙ୍କ ସାଥ ଥାଅ
ନୋହିଲେ ସମର୍ପି ଦେଇ ରାଜ୍ୟେ ତୁମେ ଯାଅ ।
ମାସକ ମଧ୍ୟେ ପଢ଼ାଇ ଜାଣ ବିଦ୍ୟାତତ୍ତ୍ୱ
ତୁମ ରାଜ୍ୟକୁ ମେଲାଣି ହୋଇଯିବେ ଏଥୁ ।
ମାୟାବଲ୍ଲଭ ଏ ରୂପେ ରାଜା ମୁଖୁ ଶୁଣି
ବୋଇଲେ ତୁମେ ତ ଅଟ ଦୈତ୍ୟଶିରୋମଣି ।
ଏଥକୁ ତୁମକୁ ପଦେ କହୁଅଛି ମୁହିଁ
ଶୁଣିଣ କୋପ ନ କର ଏକା ରାଜା ତୁହି ।
ମୋହର ବେନିପୋଏ ତ ଅଟନ୍ତି ଅଳ୍ପଳ
ଯେ ଭଜିପାରେ ତାହାର ଲାଗନ୍ତି ଯେ ମୂଳ ।
ଯେ ଯାହା ମାଗନ୍ତି ଦ୍ୟନ୍ତିବଳେ ତାଙ୍କୁ ତାହା
ଏ ରୂପେ ନୃସିଂହ ମୋ ଅଟନ୍ତି ଚଉବାହା ।
କାହାକୁ କେବେ ପଢ଼ାଇ ନାହିଁ ଏହୁ ପାଠ
ପ୍ରଥମ ଦିନୁ ନାହାନ୍ତି ଘରେ ଖେଳି ଲାଟ ।
ସଂସାର ଲୋକେ ଖେଳନ୍ତି ଯେତେ ବେଳେ ଖେଳ
ତାହା ତ ଜାଣି ନାହାନ୍ତି ମୋର ବେନିବାଳ ।
ବାଳକ ଦିନରୁ ଅନ୍ନ ଭୁଞ୍ଜି ନ ଜାଣନ୍ତି
ଭୁଞ୍ଜାଇଣ ଦେଲେ ଜାଣ ଅନ୍ନ ନ ଭୁଞ୍ଜନ୍ତି ।
ଓଁ କାର ମନ୍ତ୍ରେ ପ୍ରସାଦ ନେଇ ଲାଗିଦେଲେ
ମହା ସୁଖେ ଭୋଗ ଭୁଞ୍ଜି ବସିଥାନ୍ତି ଭଲେ ।
ଆବର ତିନି ଧୂପ ଯେ ପାଞ୍ଚ ଅବକାଶ
ଏ ରୂପେ ଘେନନ୍ତି ନିତ୍ୟ ପୂଜା ଜଗଦୀଶ ।
ବଡ଼ସିଂହାର ବେଶ ସେ ସର୍ବଦା ହୁଅନ୍ତି
ଏ ରୂପେ ପୁତ୍ରଙ୍କର ମୋ ଅଟେ ରାଜନୀତି ।
ବୁଝିଲେ ପୃଥ୍ୱୀଯାକୁ ତୁ ଅଛୁ ସାଧକରି
ତୋ ତୁଲେ ପାରିବେ କି ମୋ ପୋଏ ଶସ୍ତ୍ର ଧରି ।

ଆପଣ ଲୋଡ଼ିଲାରୁ ଯେ ଆଣିଲଇଁ ମୁହିଁ
ଦେଖିଲେ ଦୟା କରିବୁ ଅବା ବୋଲି ତୁହି ।
ତୁ ଆଜ୍ଞାକଲେ ନିଅନ୍ତି ମୋର ବେନି ଶିଷ୍ୟ
ଏହା ଶୁଣି ମୁରାସୁର ହେଲା ହସ ହସ ।
ବୋଇଲା ଭଲ କହିଲୁ ତୁହି କଥା ପାଞ୍ଚ
ଜାଣିବା ଲୋକ ହୋଇ ନ ଜାଣୁ ପରାକିଛି ।
ଆଣିଛି ଏତେ ଆଦର କରି ତୋର ବଳା
ଏବେ କି ବୋଲି ବୋଲିବା ତୋତେ ଘେନିପଳା ।
ତାହାଙ୍କୁ ଆଣିଛି ବିଦ୍ୟା ପଢ଼ାଇବେ ବୋଲି
ତୁହି ବୋଲୁଅଛୁ ଆମ୍ଭେ ଯିବୁ ଘେନି କାଲି ।
ଆସିଲେ ସେ କାହିଁପାଇଁ ଯିବେ କାହିଁପାଇଁ
ଏ କଥା ବିଚାର ତୋର ମନେ ହେଉ ନାହିଁ ।
ମୁଁ ଏବେ କହୁଅଛି ତୁ ଏବେ ଚଳିଯାଅ
ମାସ ପୂରିଲେ ତୋ ପଛେ ଯିବେ ବେନିପୁଅ ।
ଏବେ ତାଙ୍କୁ ମୋତେ ଯେବେ ସମର୍ପିଣ ଯିବୁ
ବିଷ୍ଣୁର ପରାୟ ତାଙ୍କୁ ଆମ୍ଭେ ପାଳିଥିବୁ ।
ଏମନ୍ତେ ଆମ୍ଭେ କାହୁଁ ନ ଯିବୁ ଯେବେ ତୁହି
ତୋତେ ଆଉ କହିଲେ କି ହେବ ବଳିଆଇ ।
ଯିବାର ମନ ହେଲେ ତ ବେଗେ ଚଳିଯାଅ
ମହତ ଊଣା କରିଣ ବଚନ ନ କହ ।
ଏ ରୂପେ ଦୈତ୍ୟ ଆଣ୍ଟରେ କଥା କହି କହି
ତରାଟିଲା ଚକ୍ଷୁବେନି ରାଜାଙ୍କୁ ଅନାଇଁ ।
ଦଇତ୍ୟର ଚକ୍ଷୁହାସ ଦେଖି ଭଗବାନ
ଅନ୍ତର୍ଗତରେ ପାଞ୍ଚିଣ ବିଚାରିଲେ ମନ ।
ବୋଇଲା ଆସିଲ ଘେନି ପାପିଷ୍ଠତ ମୋତେ
ହାତେ ପଡ଼ିବା ଦ୍ରବ୍ୟ ନ ଛାଡ଼େ କଦାଚିତେ ।
ଏହି ରୂପେ ମନେ ମନେ ପାଞ୍ଚି ଭାବଗ୍ରାହୀ
ବୋଇଲେ ହେ ସାବଧାନେ ଶୁଣ ନରସାଇଁ ।
ଆମ୍ଭେ ଯେ ବିପ୍ରକୁଳରେ ହେଲୁ ଅବତାର
ଧରିଲୁ ନୃସିଂହ ନାମ ରହି କଳେବର ।
କେବଳ ପୁରାଣ ବେଦଶାସ୍ତ୍ର ଆମ୍ଭେ ପଢୁ
ଭଜନ କରୁ ହସ୍ତରେ ଧରି ତମ୍ବା ଗଡୁ ।
କେବଳ କଉତୁକରେ କ୍ଷତ୍ରୀ ସଙ୍ଗେ ପଡ଼ି
ଶିଖିଛୁ ଥୋକାଏ ଧନୁର୍ବିଦ୍ୟା ଗୁରୁ ଲୋଡ଼ି ।
ଓହୋଟ ବାହାସ୍ଫୋଟ ଝଞ୍ଜାଳି ଚଉଦଳ
ଜାରଣ ମାରଣାଦି ଧାରଣ ଅନର୍ଗଳ ।
ଚକା ବରଡ଼ ଯେ ଖମ୍ବ ମାଲବିନ୍ଧା ଯାଏ
ଏ ବିଦ୍ୟାକୁ ଶିଖାଇଲେ କୋପିବୁ ତୁ ରାୟେ ।
ଏହା ଶୁଣି ମୁରାସୁର ମନେ ଅଳ୍ପ ହସି
ବୋଲେ ଏ ରୂପେ ମିଳିବେ କାହୁଁ ଗୁରୁ ଆସି ।

ନୃସିଂହ ବୋଇଲେ ତେବେ ତୋ ବିଦ୍ୟାଘର
ଯୋଜନ ଅନ୍ତରେ ନଦୀ ଶରଣାର ତୀର ।
ଶରଣଭଦ୍ରା ବୋଲି ସେ ତୀର୍ଥନାମ କହି
ସେଠାରେ ବିଦ୍ୟା ପଢ଼ିବେ ତୋର ପୋଏ ଯାଇ ।
ଗଣେଶ ଶାରଦା ଦେବୀ ସ୍ଥାପିବ ସେଠାରେ
ଆମ୍ଭେ ମଧ କରିବାକ ବସା ସେହୁ ଘରେ ।
ଶରଣଭଦ୍ରା ନାମରେ ଅଟେ ସେହୁ ନଦୀ
ସେଠାରେ ପଢ଼ିଲେ ବିଦ୍ୟା ଶୀଘ୍ର ହେବ ସିଦ୍ଧି ।
ତୁମ୍ଭର ମନ ଆମ୍ଭଙ୍କୁ ହେଲା ଯେବେ ଶ୍ରଦ୍ଧା
ପଢ଼ନ୍ତୁ ତୋର ତନୟେ ସବୁ ଧନୁର୍ବିଦ୍ୟା ।
ଏହା ଶୁଣି ହେଉ ବୋଲେ ଦୈତ୍ୟରାଜା
ଶ୍ରୀ ଆଜ୍ଞା ପ୍ରମାଣେ କଲେ ନବରକୁ ଖଞ୍ଜା ।
ମାୟାବଲ୍ଲଭ ମେଲାଣି ମାଗି ଚଳିଗଲେ
ଚତକାଳେ ଶ୍ରୀନୃସିଂହ ଦେହେ ଲୀନହେଲେ ।
ବିଶିଲେ ଦୈତ୍ୟମାନଙ୍କୁ ରାଜ୍ୟେ କଲା ପ୍ରାୟେ
ଶୁଣ ହେ ନାରଦ ବୋଲି କହନ୍ତି ଧାତାଏ ।
ଶ୍ରୀବିଷ୍ଣୁଙ୍କ ଯୋଗମାୟା ସବୁଙ୍କୁ ଅଜଣା
ଦେଖୁ ଦେଖୁ ପ୍ରାଣୀମାନେ ହୁଅନ୍ତି ଯେ ବଣା ।
ମେଲାଣି ପାଇ ବଲ୍ଲଭରାଜା ଆଗୁ ଗଲେ
କେହି ନ ଜାଣି ବିଷ୍ଣୁ ଦେହେ ଲୀନ ହେଲେ ।
ଏଥିଉତାରୁ ସେ ରାଜା ମଉଳିଲା ସଭା
ଗଲେ ଯେ ଯାହାପୁରକୁ ଋଷି ନରଦେବା ।
ନୃସିଂହ ଶେଷଦେବଙ୍କୁ କରାଇ ଗୌରବ
ଆଖଡ଼ା ନଗ୍ର ମଧରେ ଦେଲା ନେଇ ଠାବ ।
ପାଚେରୀ ସେ ବେଢ଼ାଇଲା ଗୃହ ଚଉପାଶେ
ଜଗୁଆଳ ଲୋକ ନେଇ ରଖିଲା ହରଷେ ।
ଆବର ଲକ୍ଷେକ ଲୋକ ପାହାରି ରଖିଲା
ବେନି ଭାଇଙ୍କୁ ସେ ନେଇ ନଗ୍ରେ ବନ୍ଦିକଲା ।
ସେ ଦୁହିଁଙ୍କୁ ବାହାରକୁ କେବେ ନ ଛାଡ଼ଇ
ସେ ବନ୍ଦିକଥା ଜାଣନ୍ତି ଏକା ଭାବଗ୍ରାହୀ ।
ନୃସିଂହ ପ୍ରଭୁ ମନରେ ଯେତେ କଥା ଅଛି
ମୁରାସୁରକୁ ଗୋଚର ତାହା ନାହିଁ କିଛି ।
ମାରିବି ବୋଲି ରଖିଛି ସିନା ବନ୍ଦିକରି
ଜାଣନ୍ତି ତାହାର ମନକଥା ଏକା ହରି ।
ଆଖଡ଼ା ନଗ୍ରରେ ପ୍ରଭୁ ହୋଇଲେ ପ୍ରବେଶ
ଗରୁଡ଼ଙ୍କୁ ସଙ୍ଗେ ନେଇଥିଲେ ଜଗଦୀଶ ।
ଏଣେ ବ୍ରହ୍ମା ନୃସିଂହଙ୍କ ବାର୍ତ୍ତା ସବୁ ପାଇ
ପେଷିଲେ ବିଶ୍ୱକର୍ମାଙ୍କୁ ସୁଧାଭାଣ୍ଡ ଦେଇ ।
ବୋଇଲେ ନୃସିଂହ ପାଶେ ବ୍ୟଗ୍ରେ ତୁମ୍ଭେ ଯାଅ
ଯେବଣ ଆଜ୍ଞା ଦେବ ସେ କଥା କରୁଥାଅ ।
କନକାବତୀରେ ପ୍ରଭୁ ଯେତେଦିନ ଥିବେ
ଆସ ଯାଅ ହେଉଥିବୁ ହରି ବିଳସିବେ ।
ଏ ରୂପେ ବିଶ୍ୱକର୍ମାଙ୍କୁ ବ୍ରହ୍ମା କହି ପେଷି
ମିଳିଲା ସେ ବିଶ୍ୱକର୍ମା ମାୟାରୂପେ ଆସି ।
ନୃସିଂହଙ୍କ ପଦ୍ମ ପାଦେ ଆସି ପ୍ରଣମିଲା
ବିଧାତା କହିବା ବାକ୍ୟ ଆନନ୍ଦେ କହିଲା ।
ଅଷ୍ଟରତନରେ ଖଞ୍ଜି ଆସନ କରିଲା
ଏଥିରେ ବିଜୟ କର ବୋଲି ଜଣାଇଲା ।
ମୁକୁତା ହୀରା ନୀଳା ଯେ ମାଣିକ୍ୟ ବୈଦୁର୍ଯ୍ୟ
ସୁବର୍ଣ୍ଣରେ ନିର୍ମା କରିଦେଲା ସବୁ ସଜ ।
ବ୍ରହ୍ମାଙ୍କ ଉପନ ଆଣିଥିଲା ଯେତେ ବିଧି
ନୃସିଂହ ମଣୋହିକି ଯେ କରିଦେଲା ସିଦ୍ଧି ।
ହୀରା ନୀଳା ଯେ ବାଙ୍କୁଆ ଆସର ଗୃହକୁ
ଖଞ୍ଜିଲା ସମସ୍ତ ଆଣି ନୃସିଂହ ଦେବଙ୍କୁ ।
ଗଜମୋତି ପଲ୍ୟଙ୍କ ସୁପାତି ଶେଯ ଆଦି
ଯାବତ ସର୍ଜନା କରିଦେଲେ ବିଶ୍ୱବିଧି ।
ବୋଇଲା ବ୍ରହ୍ମାଙ୍କ ବୋଲେ ଛାମୁକୁ ଆସିଲି
ଦଇତ୍ୟଙ୍କୁ ଦୃଶ୍ୟ ନୋହି ଅଳ୍ପ ନିର୍ମା କଲି ।
ଯାହାର ଆଜ୍ଞାରେ କୋଟି ସୃଷ୍ଟି ହେବ ସଜ
ସେ ପ୍ରଭୁଙ୍କୁ କେତେମାତ୍ର ଅଟଇ ଐଶର୍ଯ୍ୟ ।
ପ୍ରଭୁ ପାଶେ ବିଶ୍ୱକର୍ମା ଜଣାନ୍ତେ ଏରୂପେ
ମନେ ମନେ ମହାପ୍ରଭୁ ହସନ୍ତି ଅଳପେ ।
ବୋଲନ୍ତି ବିଶ୍ୱକର୍ମାକୁ ଚାହିଁ ଭାବଗ୍ରାହୀ
ଯାଅ ଯା ଚଳି ଏଠାରୁ ବେଗେ ଏବେ ତୁହି ।
ଆମ୍ଭେ ଚିନ୍ତାରେ ଏକା ଯା ଆସ ହେଉଥିବୁ
ଆମ୍ଭର କଥା ଲାଗିଲା ତୋତେ ଏଥେ ସବୁ ।
ଏହା ଶୁଣି ବିଶ୍ୱକର୍ମା ଗଲା ସୁଧା ଦେଇ
ବୋଇଲା ସୁମରିଲେ ମୁଁ ନିଶ୍ଚେ ଆସିବଇଁ ।
ଏଥିଉତାରୁ ଆସିଣ ହେଲା ସନ୍ଧ୍ୟାକାଳ
ଆଳତି ଧୂପଲାଗି ଯେ ହେଲେ ଆଦିମୂଳ ।
ପ୍ରତିଦିନ ଯଥାବିଧି ସବୁ ରାଜନୀତି
ନୃସିଂହ ପ୍ରଭୁଙ୍କୁ କରେ ସେ ଗରୁଡ଼ ଯତି ।
ଗରୁଡ଼ ଏକା ଯାବତ ଅତ୍ୟାଚାର କରେ
ଦଇତ୍ୟଙ୍କୁ ନୁହେଁ ଜଣା କନକାବତୀରେ ।
ବ୍ରହ୍ମା ପଠିଆଇ ଥିଲେ ସେ ଅମୃତଭାଣ୍ଡ
ଆବର ଦେଖିଲେ ତହିଁ ଅଛି ପୁରି ଖଣ୍ଡ ।
ନୃସିଂହ ବୋଇଲେ ଏହା ପରଷିବ କେହୁ
ଭୁଞ୍ଜିବା ଆଗ ସୁଖରେ ସବୁକଥା ଥାଉ ।
ମିଳିବ ଅପୂର୍ବ ଭଲ ରସ ଯେବେ ଆସି
ତହାଳେ କରିବ ସୁଖେ ଭୋଗ ତାହା ବସି ।

ନବୀନ କୁସୁମବତୀ ନାରୀ ଥିବ ଯାର
ହେଳା କରି ତାହାକୁ ଯେ ରଖେ ବାପଘର ।
ସେହି କଥା ବିଡ଼ମ୍ବନ ହୁଅଇ ତକ୍ଷାଳେ
ଏ କଥା ଚିହ୍ନି ପାରନ୍ତି ଏକା ସାଧୁଶୀଳେ ।
ଗରୁଡ ବୋଇଲେ ପ୍ରଭୁ ତୁମ୍ଭେ ସୃଷ୍ଟିକର୍ତ୍ତା
ମିଳନ୍ତେ ଆପଣ ମନେ କଲେ ଲୋକମାତା ।
ଆନଲୋକ ଛୁଇଁ ଯେବେ ସୁଧା ପରଷିବ
ଭୁଞ୍ଜି ବସିଲେ ଜଣକୁ ତାହା ନ ଅଣ୍ଟିବ ।
ଅମୃତହସ୍ତା ମାନବ ପରଷିଲେ ଜାଣ
ଭୁଞ୍ଜିଣ ସନ୍ତୁଷ୍ଟ ହେବେ ଶତସସ୍ର ଜଣ ।
ପୁଣି ଦେଖିଲେ ଥିବ ସେ ସୁଧାଭାଣ୍ଡ ପୁରି
କେବଳ ପରଷି ଏକା ପାରନ୍ତି ତା ଶିରୀ ।
ଲକ୍ଷ୍ମୀ ନୃସିଂହ ବିନୁ ନ ପାରେ କେହୁ ବାଣ୍ଟି
ଛୁଇଁଲେ ଅପର ଜନ ସୁଧା ଯିବ ତୁଟି ।
ଲକ୍ଷ୍ମୀ ଠାକୁରାଣୀ ଏକା ପରଷି ପାରନ୍ତି
'ନୋହିଲେ ଶ୍ରୀନାରାୟଣ ପରଷି ଜାଣନ୍ତି ।
ଗରୁଡ଼ଠାରୁ ଏରୂପେ କଥା ଶୁଣିକରି
ଅଙ୍ଗ ଉଲୁସାଇ ଦେଲେ ତତକ୍ଷଣେ ହରି ।
ନୃସିଂହ ଆଗେ ପ୍ରକାଶ ହେଲେ ଲକ୍ଷ୍ମୀଆସି
କୁମାର ପୌର୍ଣ୍ଣମୀ ଦିନ ଯେହ୍ନେ ଦିଶେ ଶଶୀ ।
ଏହା ଦେଖି ଖଗେଶ୍ୱର ନମେ ପଦେ ପଡ଼ି
ପୁଣି ଉଠି ଉଭାହୋଇ କହେ କରଯୋଡ଼ି ।
ବୋଲଇ ଜନମକାଳୁ କଲି କେତେ ତପ
ଏତେକାଳରେ ଦେଖିଲି ଆସି ଲକ୍ଷ୍ମୀରୂପ ।
ସାକ୍ଷାତରେ ଏକ ଅଙ୍ଗ ଲକ୍ଷ୍ମୀ ନାରାୟଣ
ଯୁଗାନୁସାରେ ବହନ୍ତି ଏହିରୂପେ ଜାଣ ।
ଶ୍ରୀମହାଲକ୍ଷ୍ମୀ ସଂସାରେ ଏକା ଠାକୁରାଣୀ
କରନ୍ତି ସବୁରି କନ୍ଧେ ବିଜେ କମଳିନୀ ।
ସାକ୍ଷାତରେ ଶ୍ରୀନୃସିଂହ ପ୍ରଭୁ ପରଂବ୍ରହ୍ମ
ଯେ ସାନ ବଡ଼ କରେ ତା ଅଟେ ମତିଭ୍ରମ ।
ଯାବତ ଅବତାରେ ଠାକୁର ଠାକୁରାଣୀ
ଯାବତ ସ୍ତିରୀଙ୍କ ପରେ ଲକ୍ଷ୍ମୀ ଶିରୋମଣି ।
ନୟନ ପୁରାଇ ତହିଁ ଦେଖିଲଇଁ ଏବେ
ସଦାକାଳେ ସେବୁଥିବି ମୁହିଁ ଭକ୍ତିଭାବେ ।
ଏହାଶୁଣି କମଳିନୀ ଅଳ୍ପ ମନେ ହସି
ବୋଇଲେ ଦୟା କଲେଣି ତୋରେ ବ୍ରହ୍ମରାଶି ।
ନୃସିଂହ ପ୍ରଭୁତ ତୋତେ ଦେଲେ ଯେତେ ବର
ସେହି କଥା ଯାକ ସିଦ୍ଧି ହେଉ ଖଗେଶ୍ୱର ।
ଏଥୁ ଅନନ୍ତରେ ପ୍ରଭୁ ନୃସିଂହ ଠାକୁର
କମଳା ବଦନ ଚାହିଁ କହନ୍ତି ଯେ ଗିର ।

ବୋଇଲେ ସଖୀ ତୁମ୍ଭେ ତ ସବୁ ଅଛ ଜାଣି
ଆମ୍ଭେ ଜୀବ ତୁମ୍ଭେ ଅଟ ପରମ ଯେ ପୁଣି ।
ତେଣୁ ହେ ପରମଲକ୍ଷ୍ମୀ ତୁମ୍ଭ ନାମ ରାଶି
ସବୁରି କନ୍ଧରେ ତୁମ୍ଭେ ସଦା ଥାଅ ବସି ।
କୀଟୁ ବ୍ରହ୍ମଯାଏ ଦିଅ ସମସ୍ତଙ୍କୁ ପଡ଼ି
ଭଣ୍ଡାରୁ ତୁମ୍ଭେ ନିଅ ଯା ଭାଗ୍ୟ ଯାହା ଲୋଡ଼ି ।
କରନ୍ତି ପ୍ରାଣୀ ଅଦୃଷ୍ଟ କୁଶଳରେ ଭୋଗ
ମରଇ ହିଂସ୍ରକ ପର ସୁଖ ଦେଖି ଆଗ ।
କର୍ମାନୁସାରେ ପ୍ରାଣୀଙ୍କୁ ଥାଅ ତୁମ୍ଭେ ଖଞ୍ଜି
ଯେ ଯେତେ ଯୋଗ୍ୟ ଧନରେ ତାକୁ କର ରାଜି ।
ଏବେ ଯେ ବିଧାତା ଜାଣ ଦଧିଭାଣ୍ଡ ଦେଇ
ଆମ୍ଭର ଶାପକୁ ଦେଇଛନ୍ତି ପଠିଆଇ ।
ତୁମ୍ଭେ ଏବେ ଯାହାକୁଟି ପରଷି ଯେ ଦେବ
ସୁଖେ ଭୁଞ୍ଜିବୁ ଗରୁଡ଼ ଆମ୍ଭେ ଶେଷଦେବ ।
ନିର୍ମଳବତୀ ସ୍ତିରୀଏ ଅନ୍ନ ପରଷିଲେ
ତିନିଜଣର ଗ୍ରାସ ପଞ୍ଚଙ୍କୁ ଅଣ୍ଟେ ଭଲେ ।
ଆମ୍ଭେ ତ ଏଠାରେ ଚାରିମୂର୍ତ୍ତି ଜାଣ ଥାଇ
କେଉଁ ରୂପରେ ବଞ୍ଚିବା କାଳ ସୁଖ ପାଇ ।
ଏହା ଶୁଣି ମନେ ହସି ଭୃଗୁରଷି ସୁତା
ବୋଇଲେ ତୁମ୍ଭର ନାମ ଅଟେ ସୁଧାଭୋକ୍ତା ।
ଅମୃତ ଭକ୍ଷଣ କଲେ କ୍ଷଣେ ଯିବ ସରି
ତୁମ୍ଭର ଏକା ଅମୃତ ନାମ ଅଟେ ହରି ।
ଶ୍ରୀହରି ନାମ ଅମୃତ ଆପ୍ୟାନ ଯେ କରେ
ସେ ସୁଧା ପିଇଲେ ପ୍ରାଣୀ ସଂସାରକୁ ତରେ ।
ଖାଇଲେ ଅମୃତ ଷଡ଼ରସ ଯାଏ ସରି
ବୁଝିଲେ ହରିରସ କଳନା ନୋହେ କରି ।
ଅମୃତ ହରି ରସ ଯେ ପ୍ରାଣୀ ଭୁଞ୍ଜିପାରେ
ତାହାର ପୁଣ୍ୟଭାଗ କେ ଲେଖିବ ମହୀରେ ।
ଆବର ଷଡ଼ରସ ଖାଇଲେ ଲୋଭ କରି
ସମୟେ ବ୍ୟାଧି ଜନ୍ମିଣ ନିଶ୍ଚେ ଯାନ୍ତି ମରି ।
ଏହା ଶୁଣି ସତ ବୋଲି ପାଞ୍ଚିଲେ ଶ୍ରୀହରି
ବୋଇଲେ ସୁଧା ଭୁଞ୍ଜିବା ଏବେ ଆଗକରି ।
ଶୁଣିଣ କମଳିନୀ ମଣୋହି କୋଠି ଲିପି
ଝୋଟି ମୁରୁଜ ଲେଖିଣ ସ୍ୱର୍ଣ୍ଣ ପିଢ଼ା ଥାପି ।
ବେନି ଭାଇଙ୍କ ଆସନ ବେନି ନିର୍ଭାକଲେ
ଶୁଣି ଶେଷଦେବ ବଡ଼ ଆନନ୍ଦ ହୋଇଲେ ।
ବୋଲନ୍ତି ଯେ ଲୋକମାତା ଅଟେ ମାତା ସମ
ଜ୍ୟେଷ୍ଠଭ୍ରାତା ପିତା ସମ ଆମ୍ଭ ପରଂବ୍ରହ୍ମ ।
ଲକ୍ଷ୍ମୀ ନୃସିଂହ ଅଟନ୍ତି ଏକଇ ମୂରତି
ପାଞ୍ଚିଲେ ଆବିଳ ଏଥି ହେବ ନର୍କଗତି ।

ଏହା ବୋଲି ଲକ୍ଷ୍ମୀପାଦେ ନମି ଶେଷଦେବ
ବୋଇଲେ ବହୁତ ଦିନ ଭେଟ ନାହିଁ ତବ ।
ବରୁଣ ରାଜାଙ୍କ ଲାଖ ବିନ୍ଧିବାର କାଳେ
ଲକ୍ଷ୍ମୀ ମାତାଙ୍କୁ ଯେ ଦେଖିଲଇଁ ଚର୍ମଡ଼ୋଳେ ।
ଶୁଣି ମହାଲକ୍ଷ୍ମୀ ମନେ ହରଷ ହୋଇଲେ
ଶେଷଦେବଙ୍କୁ ଚାହିଁଣ ବହୁ ପ୍ରଶଂସିଲେ ।
ବୋଇଲେ ନୃସିଂହଙ୍କର ତୁମ୍ଭେ ସାନଭାଇ
ତ୍ରେତୟାଯୁଗେ ଲକ୍ଷ୍ମଣ ପୁଣି ହେବ ଯାଇ ।
ଏ ବେନି ଯୁଗେ ତୁମର ଦିଅର ହୋଇବ
ଦ୍ୱାପର କଳିଯୁଗରେ ଦେଢ଼ଶୁର ହେବ ।
ଏ ଅବତାରେ ଆମକୁ ତୁମେ ଥିବମାନି
ସେବା କରୁଥିବ ହୃଦେ ଭକ୍ତିଭାବ ଘେନି ।
ତୁମେ ତ ଆମକୁ ସେବା ଯେତେ କରୁଥିବ
ତୁମର ସେ ସେବା ଯଥାକାଳେ ଶୁଝା ହେବ ।
ଦ୍ୱାପର କଳିଯୁଗେ ବଡ଼ ଠାକୁର ହେବ
ତୁମର ଉଦ୍ଧାର ଶୁଝିବା ହେ ଶେଷଦେବ ।
ଦ୍ୱାପରଯୁଗେ ପୁଣି ଶ୍ରୀ ବଳଭଦ୍ର ରୂପେ
ଜନ୍ମିଣ ବଡ଼ଠାକୁର ପାଶେ ଯାଇ ଗୋପେ ।
ଶ୍ରୀକୃଷ୍ଣ ପ୍ରଭୁଙ୍କର ଯେ ହେବ ବଡଭାଇ
ଏହି କଥା ବେଦେ ଲେଖି ଅଛନ୍ତିଟି ବିହି ।
ନୀଳଗିରି ବଡ଼ଦାଣ୍ଡେ ଜଗନ୍ନାଥ ଆଗେ
ରଥରେ ବିଜେ କରିବ ବସି କଳିଯୁଗେ ।
ଏହାଶୁଣି ଶେଷଦେବ ବୋଲି ଲକ୍ଷ୍ମୀଆଜ୍ଞା
କେ ମେଣ୍ଟିପାରେ କମଳାଦେବୀ ବାକ୍ୟଆଜ୍ଞା ।
ଶୁଣି କମଳିନୀ ବଡ଼ ଆନନ୍ଦିତା ହେଲେ
ନୃସିଂହ ପାଦେ ସେବିଣ ପାକ ସମ୍ପାଦିଲେ ।
ମଣୋହି କୋଠିରେ ବିଜେ କଲେ ଦୁଇଭାଇ
ସ୍ୱବର୍ଣ୍ଣ ପୀଢ଼ା ପରେ ବସିଲେ ଭାବଗ୍ରାହୀ ।
ରତ୍ନ ପୀଢାରେ ବସିଲେ ପୁଣି ଶେଷଦେବ
ଗରୁଡ଼ ଅନ୍ତରେ ବସି ଭଜେ ବାସୁଦେବ ।
ନୃସିଂହ ବୋଇଲେ ତୁମେ ଶୁଣ ଖଗେଶ୍ୱର
ଅନ୍ତର ହୋଇ ବସିଲେ କିମ୍ପା ଖଣ୍ଡେଦୂର ।
ଷଡ଼ ଯତିରେ ଜଣେ ତୁ ଅଟୁ ମୋର ଭକ୍ତ
ଭକ୍ତେ ନ ଦେଇ ଆମେ ନ ଭୁଞ୍ଜିପାରୁ ଭାତ ।
ତୋହର ମୋହର ମଧ୍ୟେ ହେଲେ ଭୋଗଲାଗି ।
ସର୍ବେ ମୋକ୍ଷ ହୋନ୍ତି ଭୁଞ୍ଜି ପ୍ରସାଦକୁ ବେଗି
ତୋର ମୋର ପ୍ରସାଦ ମହାନିର୍ମାଲ୍ୟ ଅଟେ
ଆଗେ ଥିବୁ ବସି ନୀଳଗିରି ବଇକୁଣ୍ଠେ ।
ସବୁ ଅବତାରେ ତୁହି ମୋହର ବାହନ
ତୋର ନାମ ପ୍ରସାଦଟି ସବୁରି ଭୋଜନ ।
ସବୁ ସମ୍ପ୍ରଦାକୁ ଆମ୍ଭ ପ୍ରସାଦ ନିର୍ମାଲ୍ୟ
ସେ ନିର୍ମାଲ୍ୟ ଅଟେ ଏକାଦଶୀ କଇବଲ୍ୟ ।
ନିରିମାଲ୍ୟ ସେବା ବିନା ଅମେଧ୍ୟ ଏ ଦେହୀ
ଅନ୍ତକାଳରେ ଶରୀର ନରକେ ପଡ଼ଇ ।
ସତତ ନିର୍ମାଲ୍ୟ ସେବା କରଇ ଯେ ପ୍ରାଣୀ
ଚଉଦ ବ୍ରହ୍ମାଣ୍ଡେ ତାର ପ୍ରାଣ ଧନ୍ୟ ପୁଣି ।
ତୁ ଯେବେ ମୋର ଆଗେ ନବସୁ ଖଗେଶ୍ୱର
ସେହି ମନ୍ଦିର ଗୋଟିକ ଅଟେ ଅସଂସ୍କାର ।
ମୋହର ଭକତ ଯେହୁ ଦେବଗୃହେ ଥାନ୍ତି
ସେଠାକୁ ତ ସ୍ୱର୍ଗପୁର ତୁଲ୍ୟ ନ ପଡ଼ନ୍ତି ।
ତୁ ଏବେ ମୋହର ଆଗେ ବସ ଖଗେଶ୍ୱର
ମୁଁ ଜୀବ ଅଟେ ପରମ ଅଟୁ ତୁହି ମୋର ।
ଅଟନ୍ତି ଜୀବ ପରମ ଦୁଇ ଏକ ପ୍ରାଣ
ଏ କଥା ଚିହ୍ନି କେହି ନ ପାରେ ସଂସାରେଣ
ବୁଝିଲେ ଏଠାରେ ଆମ୍ଭେ ଚାରିମୂର୍ତ୍ତି ଥାଇ
ଶ୍ରୀଲକ୍ଷ୍ମୀ ନୃସିଂହ ଶେଷ ଗରୁଡ଼ ଯେ ହୋଇ
ଅମୃତକୁ ପରଷନ୍ତି ଲକ୍ଷ୍ମୀ ଠାକୁରାଣୀ
ମନ ଇଚ୍ଛାରେ ଭୁଞ୍ଜିବା ଆସ ସୁଖେ ପୁଣି ।
ଶୁଣିଣ ଗରୁଡ଼ପତି ଯୋଡ଼ି ବେନିକର
ବୋଇଲା ସବୁଦିନେ ମୁଁ ତୁମ୍ଭ ପରିଚାର ।
ତବ ଆଜ୍ଞା ପ୍ରମାଣରେ ଅଗ୍ରେ ଥିବି ବସି
ଦର୍ଶନ କରିବେ ଜନେ ମୋ ଦେହ ଆଉଁସି ।
ସବୁରି କର ଲାଗି ବର୍ଦ୍ଧୁତେ ଥିବି ରହି
ତପସ୍ୟା କଲା ଲୋକକୁ ଏ ଭାଗ୍ୟ ମିଳଇ ।
ଶୁଣିଣ ହସିଲେ ମନେ ମେନ ଜଗଦୀଶ
ଲକ୍ଷ୍ମୀଙ୍କି ବୋଇଲେ ଏବେ ଅମୃତ ପରଷ ।
ଏହାଶୁଣି ମହାଲକ୍ଷ୍ମୀ ସୁଧାଭାଣ୍ଡ ଆଣି
ଚାରିଭାଗ କରି ଥୋଇଦେଲେ କମଳିନୀ ।
ନୃସିଂହ ପ୍ରଭୁଙ୍କୁ ନେଲେ ପହଣ୍ଡ ମଣାଇ
ମଣୋହି କୋଠରେ ବିଜେ କରାଇଲେନେଇ
ସବୁ ଝୀନ ପାଟ ପ୍ରଭୁ ହୋଇଲେକ ଲାଗି
ଆନନ୍ଦେ ମଣୋହି କଲେ ହୋଇ ଶେଷସଙ୍ଗୀ
ଆଚମନ ସାରିଣ ପଲ୍ୟଙ୍କେ ବିଜେ କଲେ
ଶ୍ରୀମହାଲକ୍ଷ୍ମୀ ସାରନ୍ତେ ଗରୁଡ଼ ସାରିଲେ ।
ଯେଉଁ ରୂପରେ ଅମୃତ ଭାଣ୍ଡ ପୂରିଥିଲା
ଲକ୍ଷ୍ମୀ ହସ୍ତ ଲାଗନ୍ତେ ତିଳାର୍ଦ୍ଧେ ନ ସରିଲା ।
ଏଥୁ ଅନନ୍ତରେ ନରସିଂହ ଦେବ ପୁଣି
ବକ୍ଷସ୍ଥଳେ କମଳାଙ୍କୁ ବସାଇଲେ ଆଣି ।
କୋଳରେ ଧରି ଶ୍ରୀଅଙ୍ଗେ ପ୍ରଭୁ ଗୋପ୍ୟକଲେ
ଦିଗବନ୍ଧନ କରିଣ ନିଦେ ପହୁଡ଼ିଲେ ।

ଶେଷ ମଧ୍ୟ ଆସନକୁ ଗଲେ ବିଜେ କରି
ନିଦ୍ରାରେ ପହୁଡ଼ିଲେ ସେ ନୃସିଂହ ସୁମରି ।
ସୁଧା ଭୁଞ୍ଜିଣ ଗରୁଡ଼ ଜଗିକରି ବସେ
ସୁଦର୍ଶନ ବୁଲଇ ଯେ ନୃସିଂହ ଚୌପାଶେ ।
ଏଥୁ ଅନନ୍ତରେ ରାତ୍ର ହେଲା ଆସି ଶେଷ
ନୃସିଂହ ଶରଣ ବିପ୍ର ପୀତାମ୍ବର ଦାସ ।
ଶ୍ରୀନୃସିଂହ ପୁରାଣ ଏ ଅମୃତ ସାଗର
ଶ୍ରୀନୃସିଂହ ଜନ୍ମଲୀଳା ଏ ଆଦ୍ୟ ଅବତାର ।
ବିଷ୍ଣୁ ଏଠାରୁ ମାନବ ଜନମ ହୋଇଲେ
ଚାରି ଅବତାରେ ଚାରିଲୀଳା କରିଗଲେ ।
ନୃସିଂହ ବାମନ ଅନ୍ତେ ପର୍ଶୁରାମ ରାମ
କୃଷ୍ଣ ଅବତାର ପୁଣି ହେଲେ ପରଂବ୍ରହ୍ମ ।
ସବୁ ଅବତାରେ ସାର ସାର ନୃସିଂହାବତାର
ତାହା ଲେଖିବାକୁ ମୁହିଁ କେତେକ ମାତର ।
ବିପ୍ରକୁଳେ ଜନ୍ମି ମୁହିଁ ହେଲି ଅତି ଦୁଃଖୀ
ଋଷିକୁଲ୍ୟା ନଦୀ ଜଳ ଖାଇ ହୋଏ ସୁଖୀ ।
ଗୃହ ଖଣ୍ଡେ ବାନ୍ଧି ମାତ୍ର ନଦୀ ନୀରେ ଅଛି
କୁଟୁମ୍ବପୋଷେ ଦାତାଏ ଦେଲେ ନିତ୍ୟେଯାଚି
ପୃଥିବୀଯାକ ଭ୍ରମିଣ ଦାତା ଦ୍ୱାରୁ ଆଣି
ଭୋଜନ କରି ପିଅଇ ଋଷିକୁଲ୍ୟା ପାଣି ।
ଏଣୁକରି ସୁଜନେ ମୋ ଦୋଷ କ୍ଷମାକର
ବାଲୁକେଶ୍ୱର ଶିଷ୍ୟ ମୁଁ ବିପ୍ର ପୀତାମ୍ବର ।



## ନୃସିଂହଙ୍କୁ ମାରିବାପାଇଁ ମୁରାସୁରର ଚିନ୍ତା ଓ ମଦନାବତୀ ରାଣୀ ସହିତ ପରାମର୍ଶ

ଏଥୁ ଅନନ୍ତରେ କଥା ଶୁଣ ହେ ନାରଦ
ବିଷ୍ଣୁ ଆସନ୍ତେ ମୁରକୁ ଆସେ ନାହିଁ ନିଦ ।
କିରୂପେ ମାରିବି ବୋଲି ମନେ ହୁଏ ଘୋଷି
ମଦନାବତୀ ରାଣୀର ପାଶେ ଯାଇଁ ବସି ।
ବୋଇଲା ସଖି କହିବି ଶୁଣ ଆରେ ତୋତେ
ତୋହଠାରୁବିଶ୍ୱାସୀକେହିହେଉନାହିଁମୋତେ
ତୁ ମୋର ପ୍ରାଣମଣି ମୁଁ ତୋର ପ୍ରାଣସଖା
ଏକପ୍ରାଣ ବୋଲିଣ ତୁ ଜାଣ ମୋତେ ଏକା
ମଦନାବତୀ ବୋଲେ ତୁମ୍ଭେ ମୋ ଆତ୍ମଲିଙ୍ଗ
ମୋର ଆତ୍ମାକୁ ତୁମେ ପ୍ରତ୍ୟକ୍ଷ ବିଷ୍ଣୁ ଅଙ୍ଗ ।
ପତ୍ନୀକି ପତି ଅଟନ୍ତି ଜାଣ ବିଷ୍ଣୁ ସମ
ମିଳନ୍ତି ଯେ ଯାହାଭାଗ୍ୟ ଘେନି ସ୍ୱାମୀବ୍ରହ୍ମ ।
ପରପୁରୁଷେ ଯେବଣ ନାରୀ ମନ ଦ୍ୟନ୍ତି
ମଲେଣ ତିନିପୁରେ ନ ମିଳେ ତାଙ୍କୁ ଗତି ।
ତଥାପି ଜନ୍ମିଲେ ସେ ବେଶ୍ୟାରେ ଯାଏଦିନ
ତେଣୁ ସେ ପତି ପତ୍ନୀର ଏକା ଭଗବାନ ।
ଏହାଶୁଣି ମୁରାସୁର ବୋଲେ ନିଶ୍ଚେ ସତ
ବୁଝିଲେ ତୋର ପ୍ରାୟେ ନ ମିଳେ ସ୍ତିରୀଭକ୍ତ
ଯୁବତୀକୁଳକୁ ତୁହି ପରମ ବୈଷ୍ଣବୀ
ତେଣୁ ଗୋ ଗୁପତ କଥା ତୋଆଗେ କହିବି
ଯେବଣ କାଳେ କଲଇ ମୁହିଁ ଦିଗବିଜେ
ବିଷ୍ଣୁଙ୍କୁ ପୋଡ଼ିଥିଲଇଁ ନେଇ ଅଗ୍ନିତେଜେ
ମଲା ସେ ବିଷ୍ଣୁ ବୋଲିଣ ନିଶ୍ଚିତ ହୋଇଲି
ଏବେ ସେ ଜନ୍ମିଲା ଯେ ବଦ୍ରିକାନାମେ ପଲ୍ଲୀ
ନାରଦ ଗୋସାଇଁ ତାହା କହିଗଲେ ମୋତେ
କହିଲି ଏ ମହାଗୁପ୍ତବାଣୀ ଜାଣ ତୋତେ ।
ନାରଦଙ୍କର ପୟରେ ନମିଲି ମୁଁ ଯାଇ
ବିଷ୍ଣୁ ଜନ୍ମିଲେ ବୋଲିଣ ପୁତ୍ରେଗଲେ କହି
ଆଣିଲି ତେଣୁ ମୁଁ ଦୂତ ପେଷି ତାଙ୍କୁ ଘେନି
ବିଦ୍ୟାଗୁରୁ କରିଣ ମୁଁ ନଗ୍ରେ ରଖିଲିଣି ।
କଳ୍ପଯନ୍ତ୍ର କରି ତାଙ୍କୁ ଫାନ୍ଦେ ପକାଇବି
ଗୁପ୍ତେ କହି ପୁତ୍ରଙ୍କର ହସ୍ତେ ମରାଇବି ।
ପୋଏ ନ ପାରିଲେ ମୁଁ ମାରିବି କୂଟଛନ୍ଦେ
ମଞ୍ଚପୁରେ ରହିବି ମୁଁ ତେବେ ଅପ୍ରମାଦେ ।
ଏହାଶୁଣି ମହାଦେଈ ବସି ସ୍ତମ୍ଭୀଭୂତେ
ସରିଲା ସଂସାର ବୋଲି ପାଞ୍ଚେ ହୃଦଗତେ ।
ବୋଲଇ ନାରଦ ପରା ଅଟେ ତୁମ୍ଭ ଭାଇ
ମରଣ ବିଦ୍ୟା ସେ ଏକା ଗଲେ ଜାଣ କହି
ସଂସାରଯାକେ କେତେ ନଥିଲେ ବିଦ୍ୟାଗୁରୁ
ତାହା ଛାଡ଼ି ବିଷ୍ଣୁଙ୍କୁ ଆଣିଲୁ ବଦ୍ରିକାରୁ ।
ଯେଉଁ ପ୍ରଭୁ ଛନ୍ତି କୋଟି ବ୍ରହ୍ମାଣ୍ଡରେ ପୁରି
ତାଙ୍କୁ ରଖିଲ ତୁମ୍ଭେ କି ବୋଲି ବନ୍ଦିକରି ।
ଏହି ନୃସିଂହ ଜନ୍ମିଲେ ପୁଣି ଯେଉଁକାଳେ
ଭଗବତୀ ମାତାଙ୍କର ଗର୍ଭୁ ଆଦି ମୂଳେ ।
ବାଳକ ରୂପରେ ଖେଳି କେତେଦିନଯାନ୍ତେ
ବିଷୟ ଭୋଳେ ପଡ଼ି ସେ ଭଗବତୀ ମୋତେ ।
ନୃସିଂହ ପ୍ରଭୁ ଅଳି ନ ପାରି ମାଏ ସହି
ପୂରାଇଲେ ଗମ୍ଭୀରେ କୁଞ୍ଚି ମୁଦ ଦେଇ ।
ଲାଗିବାରୁ କବାଟରେ ଶ୍ରୀ ନୃସିଂହ କର
ଚାହୁଁ ଚାହୁଁ ଫିଟିଗଲା କୁଞ୍ଚି ତତପର ।
ବଶିଷ୍ଠଙ୍କ ମୁଖ ଏହା ଶୁଣିଅଛୁ ଆମ୍ଭେ
କି ବୋଲି ତାଙ୍କୁ ବନ୍ଦୀରେ ରଖିଅଛ ତୁମ୍ଭେ ।

ଲାଗିଲେ ପ୍ରଭୁଙ୍କ ତୁଲେ ହେବ ନାହିଁ ପାର
ଲାଗିଲା ଏକ କଥା ମୋତେ ଅଦ୍ଭୁତ ପ୍ରକାର ।
ପୃଥ୍ୱୀଯାକ ବିବାଦ୍ୱୀ ଯେ ହୋଇଥାଅ ତୁମ୍ଭେ
ତହିଁକି ଟିଆରି ମୁହିଁ କହେ ନାହିଁ କେବେ ।
ସାକ୍ଷାତରେ ଅବତାର ହୋଇଛନ୍ତି ହରି
ଜନ୍ମିବେ ବିପ୍ରର ଘରେ ନରରୂପ ଧରି ।
ଅମର ହେବାକୁ ଯେବେ ତୁମ୍ଭ ମନ ଅଛି
ବିଷ୍ଣୁଙ୍କୁ ବେଗରେ ଛାଡ଼ ସବୁକଥା ମୁଛି ।
ଏମନ୍ତ ବୋଲିଣ ପତ୍ନୀ ସ୍ୱାମୀପାଦ ଧରି
ଲଦିଲା ମସ୍ତକେ ନେଇ ଅତିଶୋକ କରି ।
ରାଣୀର ଏ ଶୋକ ଦେଖି କହେ ରାଜା ହସି
ବୋଇଲା ମୋର କଥା ନଜାଣୁ ଶୁଭ୍ରକେଶୀ
କୋଟିଏ ସିଂହର ଅଟେ ମୋର ପରାକ୍ରମ
ସେ ବିପ୍ର ବେନିଭାଇ କି ହେବେ ମୋତେ ସମ
ମୋହ ସମାନେ ବ୍ରହ୍ମାଣ୍ଡେ କ୍ଷତ୍ରୀ ନାହିଁ କେହି
ଚଉଦ ଭୁବନେ ମହାବୀର ଅଟେ ମୁହିଁ ।
ଦେଖୁଛି ଦଶଦିଗପାଳଙ୍କୁ ଧରିଆଣି
ଖଟଣିକାର କରି ରଖିଛି ମନ ଜାଣି ।
ବିଶାଶଏ ଯୋଜନ ଅଟଇ ମୋର ରାଜ୍ୟ
ପୂରିଅଛି ହୀରା ନୀଳା ମାଣିକ୍ୟ ବୈଡୁର୍ଯ୍ୟ ।
ତେତିଶ ଗୋଟି ରାଣୀଙ୍କ ଉପରେ ତୁ ପାଟ
ବ୍ରହ୍ମାଙ୍କର ପୁତ୍ର ମୁହିଁ ଅଟେ କୁଳଶ୍ରେଷ୍ଠ ।
ମୋହର ଯେ ସାନଭାଇ ଅଛି ଜାଣ ସେହୁ
ମସ୍ତକରେ କରପତ୍ର ଯୋଡ଼େ ଦେଖି ରାହୁ ।
ସତର ଲକ୍ଷ କୁମର ନବଲକ୍ଷ ନାତି
ଏହାଙ୍କ ପାଦଘାତରେ କମ୍ପେ ବସୁମତୀ ।
ଯେତେ ମହାଯୋଦ୍ଧା ସେବା ମୋହର ଅଛନ୍ତି
ପ୍ରଳୟ ସମୁଦ୍ର ହେଲେ ରୁନ୍ଧି ସେ ପାରନ୍ତି ।
ବ୍ରହ୍ମପ୍ରଳୟ ପର୍ଯ୍ୟନ୍ତେ ଆୟୁଷ ମୋ ଅଛି
ଏଣେ ସଂସାରେ କାହାକୁ ମୁହିଁ ନ ଡରୁଛି ।
ଦାରୁଣ ଭାଇ ପୁତୁରା ପୁତ୍ର ମୋର ଯେତେ
ମେରୁକୁ ଟାଳି ପାରନ୍ତି ଏହୁ ବେନି ହସ୍ତେ ।
ବିଜୟ ନାମରେ ଯେଉଁ ରଥ ଅଛି ମୋର
ତହିଁରେ ବସିଲେ ମୁହିଁ ଜିଣିବି ତ୍ରିପୁର ।
ଏଡ଼େ ସମ୍ପଦ ମୋହର ପୁରେ ଅଛି ପୁରି
ତ୍ରିସିଂହ ବେନିଭାଇକି ହେବେ ତୋତେ ସରି
କହିଲୁ ଯଦ୍ୟପି ବିଷ୍ଣୁ ବୋଲି ମୋତେ ବାଣୀ
ବିଷ୍ଣୁ ହାତେ ମଲେ ଯିବି ବଇକୁଣ୍ଠ ପୁଣି ।
ନୋହିଲେବିଷ୍ଣୁ ମରିବେ ଯେବେମୋରହସ୍ତେ
ଅମର ହୋଇ ରହିବି ତେବେଦିନା କେତେ

ତଥାପି ସହସ୍ର ପାଦେ ଜନ୍ମିଲେ ଶ୍ରୀହରି
ତେବେ ଯାଇ ମୋତେ ଜିଣି ପାରିବଟି ମାରି
ସହସ୍ରପାଦ ପୁତ୍ର କେ ଜନ୍ମ କଲାଣି କି
ଗର୍ଭଫାଟି ପୁତ୍ର ମାତା ମରିବେ ନାହିଁକି ।
ଦେବରୁ ମାନସ ଯାଏ ଆଜି ପର୍ଯ୍ୟନ୍ତେଣ
ସସ୍ରପାଦେ କେହି ଜନ୍ମି ନାହିଁ ସଂସାରେଣ ।
ମାନବ ବିଷ୍ଣୁ କେବେ ନପାରେ ମୋତେମାରି
ଦେଖିଲେ ସହସ୍ର ପାଦ ବିଷ୍ଣୁ ଯିବ ମରି ।
ଏଥକୁ ଶୋଚନା ତୁ ନକର ପ୍ରାଣମଣି
ଅପାର କାଳର କଥା ଅଟେ ଏହୁ ବାଣୀ ।
ଏରୂପେ କେହି ଆସ୍ଥାନେ ରାଜା ଯାଇ ବସି
ଖଟିଲେ ଲୋକବର୍ଗ ଯେ ଯାହା ପୁରୁ ଆସି
ସୁବିଜ୍ଞ ମନ୍ତ୍ରୀ ଆଦି ସେ ସଙ୍ଗେ ସେନାଗଣେ
ଯେଯାହାଙ୍କଆସନେବସିଲେ ଅନ୍ୟୋନ୍ୟେ ।
ସମସ୍ତ ପୁତ୍ର ପୁତୁରା ନାତି ବେଶ ହୋଇ
ଦର୍ଶନଦେଲେ ସକଳେ ରାଜା ଅଗ୍ରେ ଯାଇ ।
ବିଶିଲା ସୁଧର୍ମା ସଭା ପ୍ରାୟ ଶୋଭାବନ
ସବୁଙ୍କୁ ବସାଇ ପାଶେ ଦେଲାକ ଚୁମ୍ୱନ ।
ବୋଇଲା କଥାଏ ଶୁଣ ସର୍ବ ପୁତ୍ରମଣି
ବିଦ୍ୟା କହିବାକୁ ଆସିଅଛି ଚକ୍ରପାଣି ।
ପଢ଼ିବ ତାହାଙ୍କଠାରୁ ବିଦ୍ୟାବୋଲି ତୁମ୍ଭେ
ଦୂତ ପେଷିଣ ଡକାଇ ଆଣିଅଛୁ ଆମ୍ଭେ ।
ଶୁଣି ତନୟ ପୁଛିଲେ ବେନିକର ଯୋଡି
ବୋଇଲେ ଆଜ୍ଞାଦେଲେ ଯିବୁବିଦ୍ୟାପଢ଼ି ।
ସେ ଗୁରୁ ପାଶେ ନେଇଣ ଭେଟାଅ ଆମ୍ଭଙ୍କୁ
ଶୁଣି ଡକାଇଲେ ରାଜା ଶ୍ରୀଶୁକ୍ର ଗୁରୁଙ୍କୁ ।
ରାଜାଜ୍ଞା ପାଇ ସଭାକୁ ଶୁକ୍ର ବିଜେ କଲେ
ଦେଖିଣ ଅସୁରେ ଉଠି ପାଦେ ପ୍ରଣମିଲେ ।
ଆସନେ ବସାଇ ରାଜା ନମସ୍କାର କଲା
ମନରେ ଆନନ୍ଦ ହୋଇ ଯୋଗ ପଚାରିଲା ।
ଶୁକ୍ରବୋଇଲେ ପୁଛିଲ ମୋତେଯେବେଯୋଗ
ବିଷୟ ପୁଛିଲେ ସିନା କହିବାତ ମାର୍ଗ ।
ରାଜାବୋଇଲେ ହେ ଗୁରୁ ସାବଧାନେ ଶୁଣ
ଆଣିଅଛୁ ବଦ୍ରିକାରୁ ଦୁଇଟି ବ୍ରାହ୍ମଣ ।
ପୁତ୍ରେ ପଢ଼ିବେ ଆମ୍ଭର ବିଦ୍ୟା ତାଙ୍କଠାରୁ
ଏହି ଘେନି ଯୋଗ ଆମ୍ଭେ ପଚାରୁଛୁ ଗୁରୁ ।
ରାଜାର କଥା ଜାଣିଲେ ତହୁଁ ଶୁକ୍ରମୁନି
ପାଞ୍ଚିଲେ ବିଷ୍ଣୁଙ୍କୁ ଏବେଆସ ରାଜା ଘେନି ।
ଏଡ଼େକ ସମ୍ପଦ ଗୋଟା କରିଲା ବିନାଶ
କହିଲେ ଘେନିବ ମନେ ଏହିକ୍ଷଣି ରୋଷ ।

ଯେବଣ ବିଷ୍ଣୁଙ୍କୁ ଦେବେ ବଇକୁଣ୍ଠୁ ଆଣି
ବଦ୍ରିକା ଆଶ୍ରମେ ଜନ୍ମ କରାଇଲେ ପୁଣି ।
ସେ ପ୍ରଭୁଙ୍କୁ ଆଣିଅଛି କପଟରେ ଧରି
କପଟୀଲୋକ ତ ଜାଣ ଅଚ୍ଛେଯାନ୍ତି ମରି ।
ଆମ୍ଭର ଏ କଥା ଯୋଗବଳେ ହେଲା ଜଣା
କହିଲେ କୋପିବ ସେ ନକରି ବୁଝାମଣା ।
ହୁଡ଼ିଲା ରାଜାର କନ୍ଧୁ ଲକ୍ଷ୍ମୀ ଏବେ ଆସି
ମନେ ପାଞ୍ଚନ୍ତି ଏରୂପେ ବସି ଶୁକ୍ରଋଷି ।
ତଥାପି ରାଜାକୁ ତେବେ କହିବା ବଳାଇ
ଦେବତାମାନେ କୋପିବେ ସ୍ୱର୍ଗପୁରେ ଥାଇ ।
ବ୍ରହ୍ମା ଶୁଣିଲେ କରିବେ ପୁଣ ମନେ ଦୁଃଖ
ଉଚିତକୁହା ବୋଲିବେ ମୋତେ ଚତୁର୍ମୁଖ ।
ଆଉ ମୁରକୁ କହିବା ଯେବେ ହିତପଣେ
ନ ଘେନିଲେ ଆମ୍ଭକଥା ଯିବ ଅକାରଣେ ।
ବଳେ କହିଲେ ବଇରୀ ସବୁରି ହୋଇବା ।
ଏଥିରେ ଭଲ ବୋଲିଣ କିଯୋଗ କହିବା ।
ଯାହାସେ ହୋଇବେତାହାଧାତା ଦେଖିଲେଣି
ଆମେ କହିଲେ ଆଉକି ହେବ ମନେଘେନି ।
ଏହିରୂପରେ ମନରେ ପାଞ୍ଚି ଶୁକ୍ରଗୁରୁ
ବୋଇଲେ ପୁତ୍ରେ ପଢ଼ନ୍ତୁ ବିଦ୍ୟାଆଜିଠାରୁ ।
ଏକେ ତ ମେଷ ଶୁକ୍ରପଞ୍ଚମୀ ଗୁରୁବାର
ଆଜହୁଁ ବିଦ୍ୟା ପଢ଼ନ୍ତୁ ପୁତ୍ରେ ଏକାତୋର ।
ଏହାଶୁଣି ମୁରାସୁର ମନେ ବଡ଼ ହସି
ବୋଇଲା ଅଟନ୍ତି ଆମ୍ଭ ଗୁରୁ ଶୁକ୍ରଋଷି ।
ନୁହନ୍ତା କହିଲେ ଆନଲୋକ ମନ ବୋଧ
ଯାଅରେ ମୋହରପୁତ୍ରେ ବେଗେ ବିଦ୍ୟାସାଧ
ଗୁରୁଙ୍କୁ ସାଙ୍ଗରେ ଘେନି ବିପ୍ର ପାଶେ ଯାଅ
ତୁମ୍ଭଙ୍କୁ ଭେଟ କରନ୍ତୁ ଭୃଗୁଙ୍କର ପୁଅ ।
ଆମ୍ଭର ମୂଳ ଏକତା ଅଟେ ପକ୍ଷୀ ବିଦ୍ୟା
ଖଡ଼ଗ ଶାବେଳୀ ଧନୁଶର ଭାଲିଗଦା ।
ଏହା ସାଧି ସମସ୍ତଙ୍କୁ ରଣେ ଆଗ ଜିଣ
କରିବ ଅନୁକୂଳ ସେ ଶୁକ୍ର ସଙ୍ଗତେଣ ।
ତୁମ୍ଭେତ ଜାଣ ହେ ଗୁରୁ ମୋର ବଳବୀର୍ଯ୍ୟ
ଯେହିରୂପେ ପୁତ୍ରମୋର ଲଭନ୍ତୁ ଐଶ୍ୱର୍ଯ୍ୟ ।
ଏହିରୂପେ ଆଶୀର୍ବାଦ ଦେଇ ବିଜେକର
ଉଠିଲେ ରାଜାର ଆଜ୍ଞା ପାଇ ମୁନିବର ।
ମନେ ପାଞ୍ଚିଲେ ଦେଖିବା ଆଗେ ପଦ୍ମମୁଖ
ଦର୍ଶନକଲେ ତୁଟିବ କୋଟିଜନ୍ମ ଦୁଃଖ ।
ଆଦି ଅବତାର ଜନ୍ମ ହେଲେ ଏହିଠାରୁ
ଧଇଲେ ନରଦେହ କୃଷ୍ଣବଲ୍ଲଭ ଘରୁ ।

ସେହି ପ୍ରଭୁଙ୍କୁ ଦେଖିଲେ ହେଲା ଭଲ ଲାଭ
ଦୈତ୍ୟଙ୍କ କପାଳେ ଯାହାଥିବ ତାହାହେବ ।
ଏରୂପେ କହିଣ ଋଷି ଦଇତ୍ୟଙ୍କୁ ଘେନି
ଉପନ ପୂଜା ସଙ୍ଗରେ ନେଲେ ଶୁକ୍ରମୁନି ।
ବାଜେ ମହୁରୀ କାହାଳି ଶଙ୍ଖ ବୀର ତୁର
ବାଟରେଯାଇ ଦୈତ୍ୟଦେଖିଲେ ଅପ୍ରକାର ।
ଉଲୁକ ଯୋକ ଭୁଜଙ୍ଗ ଗଧ ଗୃଧ୍ର ପକ୍ଷୀ
ପଲପଲ ହୋଇଯାନ୍ତି ବଦନ ନିରେଖି ।
ଆବର ସେମାନେ ଉଚ୍ଚେ ଛାଡ଼ନ୍ତି ବୋବାଳି
ଏହାଦେଖି ପୋଏ ଯାନ୍ତି ରାଜା ଆଜ୍ଞାପାଳି ।
ଶରଣଭଦ୍ରା ତୀରାରେ ହୋଇଲେ ପ୍ରବେଶ
ଯହିଁରେ ବିଜୟ କରିଛନ୍ତି ଜଗଦୀଶ ।
ସେ ପ୍ରଭୁସ୍ଥାନେ ମିଳନ୍ତି ଯାଇ ଶୁକ୍ରଗୁରୁ
ଦେଖିଣ ନୃସିଂହ ପ୍ରଭୁ ଚିହ୍ନିଲେ ଦୂରରୁ ।
ନୃସିଂହ ବୋଇଲେ ମୁନି ଶୁକ୍ର ଅଟ ତୁମ୍ଭେ
ଖଣ୍ଡଦୂରରୁ ଦେଖିଣ ଚିହ୍ନିଲୁଣି ଆମ୍ଭେ ।
ଶୁକ୍ରବୋଇଲେହେ ପ୍ରଭୁ ତୁମ୍ଭେ ଅନ୍ତର୍ଯ୍ୟାମୀ
ଯାହାର ଲୋମମୂଳରେ କୋଟିବ୍ରହ୍ମାଜନ୍ମି ।
ପଞ୍ଚାଶକୋଟି ପୃଥବୀ ଯାର ଯେତେ ସ୍ଥାନ
ଚିହ୍ନନ୍ତି ପୃଥ୍ୱୀର ଜୀବ ଯାକୁ ଭଗବାନ ।
ଏରୂପେ ଚିହ୍ନିବାକୁ ସଂସାରେ ଅଛି କେହୁ
କେବଳ ଭକ୍ତ ବୋଲରେ ଥାଇ ଚତୁର୍ବାହୁ ।
ସର୍ବଘଟେ ଥାଇ ବ୍ରହ୍ମାଣ୍ଡରେଛନ୍ତି ପୂରି
ଏକେତ ଚିହ୍ନି ନପାରେ କେହି ଦେହଧରି ।
ସବୁରି ମନର କଥା ଜାଣ ତୁମ୍ଭେ ପୁଣ
ସରଳ କପଟ ଜନଙ୍କର ଯେତେ ଗୁଣ ।
କପଟୀ ଲୋକମାନେ ତ ଅଚ୍ଛେ ଯାନ୍ତି ନାଶ
ନିଷ୍କପଟ ଲୋକଙ୍କର ବଢୁଥାଏ ବଂଶ ।
ତୁମ୍ଭ ଅଚିହ୍ନା ହୋଇକେ ଅଛି ଚକ୍ରପାଣି
ଆପଣଙ୍କ ଜନ୍ମ ଆମ୍ଭେ ଅଛୁ ଅଛୁ ଜାଣି ।
କୃଷ୍ଣବଲ୍ଲଭ ଘରେ ଜନ୍ମିଲେ ଯେଉଁକାଳେ
ନୃସିଂହ ଅବତାରେ ଯେ ହେଲ ଆଦିମୂଳେ ।
ବୃହସ୍ପତିଙ୍କି ପେଶିଲେ ବ୍ରହ୍ମା ସେହିକ୍ଷଣି
ଜାତକ ଲଗ୍ନବୁଝି ସେ ଗଲେ ସବୁ ଗଣି ।
ବ୍ରହ୍ମାଙ୍କ ସଭାରେ ତୁମ୍ଭ ମହିମା କହିଲେ
ସେଠାରେ ବସି ବୁଝୁଛୁ ସବୁଆମ୍ଭେ ଭଲେ ।
ନୃସିଂହ ବୋଇଲେ ମୁନି ପ୍ରକଟ ନକର
ଥୋକେ ଦୈତ୍ୟମାରି ଯିବୁଁ ବଦରିକାପୁର ।
ତହିଁପରେ ମୁରାସୁର ପାଖେ ଜଣା ହେବୁ
ବଦ୍ରିକାଶ୍ରମରେ ଥାଇ ଦୈତ୍ୟସଂହାରିବୁଁ ।

ଆମ୍ଭଙ୍କୁ ମାରିବାପାଇଁ ସେହୁ ଅଣାଇଛି
ଚାରିଲକ୍ଷ ପ୍ରହରୀଙ୍କି ଜଗାଇ ରଖିଛି ।
ସହସ୍ରେ ମତ୍ତଗଜ ବାନ୍ଧିଅଛି ପୁଣ ଦ୍ୱାରେ
ପାଚେରୀଉଚ୍ଚରେ ଦେଖ ଟେକିଛି ଶୂନ୍ୟରେ ।
ଏରୂପେ କଲେ କିଏ ପାରିବ ମୋତେ ମାରି
ପରକୁ ଚିନ୍ତିଲେ ପାପ ତୁଟେ ତାର ଶିରୀ ।
ପ୍ରମାଦ ପାଞ୍ଚିଲେଲୋକ ଅଳ୍ପକେ ମରଇ
ଶୁକ୍ରଗୁରୁଙ୍କୁ କହିଲେ ପୁଣି ଭାବଗ୍ରାହୀ ।
ଆପଣ ବିଜୟେ କରି ଯାଅ ଏବେ ଚଳି
ଦୈତ୍ୟଙ୍କ ମରଣମୋତେ ହେଲା ଜପମାଳି
ଏହାଶୁଣି ଶୁକ୍ରଗୁରୁ ମନେ ହୃଷ୍ଟ ହେଲେ
ମୁର ପୁତ୍ରଯାକଙ୍କୁ ସମର୍ପି ବିଜେ କଲେ ।
ଆପଣା ପୁରରେ ଯାଇ ହୋଇଲେ ପ୍ରବେଶ
ନୃସିଂହ ଶରଣ ବିପ୍ର ପୀତାମ୍ବର ଦାଶ ।

ଘଘଘ

## ନୃସିଂହଙ୍କଠାରୁ ମୁର ପୁତ୍ରଙ୍କର ବିଦ୍ୟାଶିକ୍ଷା

ଏଥୁଅନନ୍ତରେ ପୁଣ ଶ୍ରୀନୃସିଂହ ପ୍ରଭୁ
ମୁର ପୁତ୍ରକୁ ବୋଇଲେ ବସବେଗେ ବାବୁ ।
ଗଣେଶ ପୂଜା କରିଣ ସରସ୍ୱତୀ ପୂଜ
ସକଳ ଆତ୍ମା ଶ୍ରୀହରି ବୋଲି ହୃଦେ ଭଜ ।
ଭଜିଲେ ଆତ୍ମାଯାକଙ୍କୁ ସର୍ବେ ଏକା ପ୍ରାଣ
ନ ଭଜି ସଂସାରେ ପ୍ରାଣୀ ମରେ ଅକାରଣ ।
ଆତ୍ମାକୁଶଳ ବିଦ୍ୟା ସେ ସାଧିପାରେ ପୁଣି
ଆବର ବିଦ୍ୟା କିଞ୍ଚିତ ପ୍ରାଏ ସେହି ମଣି ।
ଆତ୍ମାର ଗତାଗତକୁ ଜାଣିପାରେ ସେହୁ
ସଂସାରରେ ସୁପୁରୁଷ ଅଟେ ଜାଣ ସେହୁ ।
ଜୀବ ପରମ ଦୁହେଁ ଜୀବକୁ କାଣ୍ଡ ସିଦ୍ଧି
ଏକାକାଣ୍ଡ ସିଦ୍ଧିକରି ପାରନ୍ତି ଯେ ବିନ୍ଧି ।
କରେ ଧରିଣ ସେ ତୀକ୍ଷ୍ଣ ମୁନିଆଁ ଯେ କାଣ୍ଡ
ଚିହ୍ନି ବିନ୍ଧିଲେ ଛିଡ଼ି ପଡ଼ନ୍ତି ଶତ୍ରୁ ମୁଣ୍ଡ ।
ଆରେକକାଣ୍ଡ ମୁନ ଶକାର ପର ଅଟେ
ତାକୁ ବିନ୍ଧିଲେ ଭେଦି ପ୍ରଳୟକାଳ ତୁଟେ ।
ଦେହକୁ ଇନ୍ଦ୍ରିୟଗଣ ଜାଣ କାଳ ଶତ୍ରୁ
ଆତ୍ମାକୁ କ୍ଷୟ କରି ପକାନ୍ତି କୁଳଗୋତ୍ରୁ ।
ଇନ୍ଦ୍ରିୟକୁ ମାରି ଯେହୁ ସାଧ କରିପାରେ
ମହାକ୍ଷତ୍ରୀବୋଲି ତାକୁଦେଖି ଏସଂସାରେ ।
ଇନ୍ଦ୍ରିୟଗଣରେ ବଶ ହୁଅନ୍ତି ଯେତେ ପ୍ରାଣୀ
ଜୀବକୁ ବଧ କରିଣ ପକାନ୍ତି ଯେ ହାଣି ।
ଜୀବତ·ପରମବ୍ରହ୍ମ ଅଟେ ନାରାୟଣ
ଜୀବକୁ ମୂର୍ଖଲୋକେ ତ ମାରନ୍ତିଟି ଜାଣ ।
ଶରୀରରେ ଇନ୍ଦ୍ରିୟଙ୍କୁ ସାଧି ନ ପାରଇ
ସାଧଇ କ୍ଷତ୍ରିୟବିଦ୍ୟା ପରେ ହିଂସା ବହି ।
ଇନ୍ଦ୍ରିୟଗଣଙ୍କୁ ସାଧି ନପାରେ ହୃଦରେ
ଜୀବକୁ ବିନାଶ ମାତ୍ର ଅସ୍ତ୍ରଧରି କରେ ।
ଜୀବ ପରମ ବେନି ଯେ ନ ସାଧି ବିନ୍ଧିବ
ତାହାର କ୍ଷତ୍ରିୟବିଦ୍ୟା ଜୀବହତ୍ୟା ସର୍ବ ।
ଦୈତ୍ୟବୋଇଲେ କହିଲଗୁରୁ ତୁମ୍ଭେ ଯାହା
ବାପ ଅଜା କାଳୁ ଆମ୍ଭେ ଜାଣୁନାହୁଁ ତାହା
ଏହାଶୁଣି ନାରାୟଣ ହେଲେ ହସ ହସ
ପାଞ୍ଚିଲେ ମୂର୍ଖପଣେ କହିଲେ ହେବ କିସ ।
ଅଚ୍ଛବ ହାତେ ପଡ଼ିବ ଯେବେ ଶାଳଗ୍ରାମ
ସେହି କେବେ ଚିହ୍ନଇ କିବୋଲି ପରଂବ୍ରହ୍ମ ।
ଅସ୍ଥି ଦଣ୍ଡାରେ ପିଟିଣ କରେ ଗୁଣ୍ଡାକୃତ
କଥା କହିଲେ ମୂର୍ଖ ବୁଝନ୍ତି ଜ୍ଞାନତତ୍ୱ ।
ଛେଦିଣ ଶାଳଗ୍ରାମକୁ କରେ ଖଣ୍ଡ ଖଣ୍ଡ
କହିଲେ ଅସୁରେ କି ଶୁଣିବେ ଜ୍ଞାଦଦଣ୍ଡ ।
ପଢ଼ିଲେ ବ୍ରହ୍ମବିଦ୍ୟା ବୋଲାନ୍ତି କିସ କିସ
ଚାହାଁନ୍ତି ଉଲ୍ଲୁକପକ୍ଷୀ ପ୍ରାୟେ ଦଶଦିଶ ।
ମୂର୍ଖଠାରୁ ଅସୁରେ ବଳନ୍ତି ତିନିଗୁଣ
ସଭାରେ ବସିଲେ ଏତେ ପାଞ୍ଚି ନାରାୟଣ ।
ମୁର ପୁତ୍ରଙ୍କୁ ବୋଇଲେ ପଢ଼ ଏବେ ବିଦ୍ୟା
ମନେ ଯାହା ପଢ଼ିବ ସେ ବିଦ୍ୟାହେଉ ସିଦ୍ଧ
ଏତେବୋଲି ଲକ୍ଷ୍ୟପତ୍ର ଶିଖାଇଲେ ଆଗ
ଆବର ସାଧିଲେ ପୁଣି ଗଦା କୁନ୍ତ ଖଡ଼୍‌ଗ ।
ଫରି ଖଣ୍ଡା ଶାବେଳି ସାଧକ ମାଲବନ୍ଧ
ବାଡ଼ୋର ଛକା ବାରତା ଆଉ ପରିଲମ୍ଫ
ପରିଲମ୍ଫ ବୋଇଲେଣି ଦଣପକା ବିଦ୍ୟା
ଦେଉଡ଼ି ଅସିପତ୍ର ସାଧନ୍ତି ସର୍ବଯୋଦ୍ଧା ।
ଶକତି ଶୂଳ ଭାଲି ଭୂଷଣ୍ଡ ଶର ଲେନ୍ତି
ପରିଘ ମୁଦ୍‌ଗର ଖପର ଛୁରୀ କାତି ।
କାକୋଡ଼ି ଯାବଦାଢ଼ି ତୀର କମାଣ ଲାଠି
ନାରାଚ, ବ୍ରହ୍ମଶର ଶ୍ରୀବିଷ୍ଣୁ ଶର କାଠି ।
ବରୁଣ ଯେ ମେଘାଶର କୁବେର ନୈର୍ଋତ
ପବନା ଯେ କାଳପାଶ ବୈଷ୍ଣବ ପର୍ବତ ।
ମୋହନା ଜଳରାଶି ଦହନା ଅଗ୍ନିଶର
ପୁଣି ନାରାୟଣ ଶସ୍ତ୍ର ଏକଘ୍ନୀ ଆବର ।
କୋଦାଳ ସୁଖଭେଦୀ ପାତାଳଭେଦୀ ଯନ୍ତ୍ର
ସ୍ତମ୍ଭନ ମୋହନ ବଶୋଚାଟ ପାଶୁପାତ ।

ବେଲଙ୍କ ତ୍ରିକନ୍ୟା ଚଉକନା ବାରକନା
ବେତାଳ ମୁଗୁରା ଅର୍ଦ୍ଧଚନ୍ଦ୍ର ଏକମୁନା ।
ଅକାଳ ଯେ ମହାକାଳ ତ୍ରିକାଳ ଭୈରବ
ଗରୁଡ଼ା ଏକଘନୀ ଏ ବ୍ରହ୍ମଶକ୍ତି ଧ୍ରୁବ ।
ଉଡାଣ ବୁଡ଼ାଣଟି ମାରଣ ପଞ୍ଚାମାର୍ଗ
ଯାବତ ଧାରଣ ସୂତ୍ର ସାଧନ୍ତି ନୃସିଂହ ।
କପାଳି ବିମୋଚନ ନମସ୍କାର ଶରଆଦି
ଗନ୍ଧର୍ବ ଅସ୍ତ୍ରକୁ ଘେନି ବିଷ୍ଣୁ କଉମୁଦି ।
ତ୍ରିମୁଖା ଯେ ପଞ୍ଚସଖା ସପ୍ତମୁଖା ଶର
ଅନଙ୍ଗ ରୁଦ୍ର ଶକତି ମହାମାୟା ଯାର ।
ହତାଶ ବାତାଶ ଶର ପୁଣି ଜଳପାଶ
ଏ ଆଦି ଶର ସୂତ୍ର ସାଧନ୍ତି ହୃଷୀକେଶ ।
ନୃସିଂହ ଅଞ୍ଚଳ ଚିତ୍ତ ଦଇତ୍ୟଙ୍କୁ ଦେଖି
ଖଣ୍ଡା ଝମକାନ୍ତେ ସର୍ବେ ବୁଜନ୍ତିଯେ ଆଖି ।
ସଂସାରେ ଯେତେ ଅଛନ୍ତି ଶସ୍ତ୍ର ମହାଖଳା
ଦେଖାନ୍ତି ସବୁ ଆଣି କୃଷ୍ଣବଲ୍ଲଭ ବଳା ।
ମୁରର ସତରଲକ୍ଷ ତନୟ ପଢ଼ନ୍ତି
ଆବର ଯେ ନବଲକ୍ଷ ନାତି ପଢୁଛନ୍ତି ।
ମୁରାସୁର ରାଜାର ସେ ପାଟ ମହାଦେଈ
ମଦନାବତୀ ବୋଲିଣ ତାର ନାମ କହି ।
କହିବା ମୁରର ପୁତ୍ର ନାମ ଥୋକେ ଶୁଣ
ମ ଅକ୍ଷର ନାମମାନ ଅଛନ୍ତି କହିଣ ।
ପିତାମାତାଙ୍କର ସେହି ଅଦ୍ୟାକ୍ଷରେ ବହି
ଅଛନ୍ତିଟି ତେରଲକ୍ଷ ଯାଏ ଜନ୍ମ ହୋଇ
ପୁତ୍ରଙ୍କ ଉପରେ ମହୀକର୍ଣ୍ଣ ଅଟେ ଶ୍ରେଷ୍ଠ
ତହିଁ ଅଟେ ମିତ୍ରଲାଭ ଅଟଇ କନିଷ୍ଠ ।
କହିବା ଯେ ତିନିଚାର ଦଶକରି ତୁଲ
ଦେଖିଲେ ସତରଲକ୍ଷ ହୋଇବ ବହୁଳ ।
ଏଣୁକରି ଥୋକେନାମ କହୁଅଛି ଶୁଣ ।
ମତୀକର୍ଣ୍ଣ ମିତ୍ରଲାଭ ମୃତ୍ୟୁଙ୍କର ପୁଣ ।
ମହୀଧର ମହୀସୁର ମହାବଳବନ୍ତ
ମହୀଶଙ୍କ ମହାଲାଭ ମଙ୍କିତ ମହନ୍ତ ।
ମିତ୍ରଶିରା ମହୀଶିରା ମଳା ମେରୁଯାଏ
ଏରୂପେ ଅଛନ୍ତି କେତେ ନାମ ବହି ପୋଏ ।
ମୁରର ସତରଲକ୍ଷ ଯାଏ ଯେତେ ପୁତ୍ର
ସବୁଙ୍କର ମ ଅକ୍ଷର ଅଟେ ନାମ ଗୋତ୍ର ।
ଜଣ ଜଣଙ୍କ ଅଟନ୍ତି ପୋଏ ଏକ ଏକ
ଆଖଡ଼ାଶାଳେ ସାଧନ୍ତି ଆସି ବିଦ୍ୟାଯାକ ।
ଅସୁରର ପୁତ୍ରଙ୍କର ସଙ୍ଗେ ରହି ପ୍ରଭୁ
ଅଗମ୍ୟ କ୍ଷତ୍ରିୟ ବିଦ୍ୟାଶିକ୍ଷା ଦ୍ୟନ୍ତି ସବୁ ।

ଯେବଣ ପ୍ରଭୁର ଗର୍ଭେ ଅଛି ବହୁ ବିଦ୍ୟା
ସେବିଦ୍ୟା ସାଧିବାକୁ କେଅଛିକ୍ଷତ୍ରୀଯୋଦ୍ଧା ।
କେ ମାଲ ବିନ୍ଧାଣ କେହୁ ସାଧେ ଚକାଦାଣ୍ଡ
ଗଗନୁ ଡ଼େଇଁପଡ଼ନ୍ତି କେହି ମହୀଖଣ୍ଡ ।
ଏହିରୂପେ ବିଷ୍ଣୁ ବିଦ୍ୟା ପଢ଼ାନ୍ତି ଦୈତ୍ୟଙ୍କୁ
ଆସନ୍ତି ଯେତେକ ଲୋକ ଶିକ୍ଷା ଦେଖିବାକୁ ।
ଦେଖିବେ ଜନମାନେ ଯେ ହୁନ୍ତି ଆଚମ୍ବିତ
ବିଷ୍ଣୁର ଅପୂର୍ବ ବିଦ୍ୟା ଅଟେ ଅଲୋକିତ ।
ଜାରଣ ମାରଣ ବିଦ୍ୟା ପୁଣି ଉଦ୍ଧାରଣ
ସାଧନ୍ତି ଯାବତ ମନ୍ତ୍ର ବିଦ୍ୟା ନାରାୟଣ ।
ଦେଖନ୍ତି ଦେଖଣାହାରୀଣେକେ ଯେତେଯାଇ
କହନ୍ତି ରାଜା ଛାମୁରେ ଆସି ଶ୍ରଦ୍ଧାବହି ।
ବୋଲନ୍ତି ଶୁଣ ହେ ପ୍ରଭୁ ଦୈତ୍ୟକୁଳ ରାଜ
ଭଲ ସେ ପୁତ୍ରମାନଙ୍କୁ କହ ଗୁରୁ ଦ୍ୱିଜ ।
କେଡ଼େ ସୁପଣ୍ଡିତ ପୁଣି ସେହି ବେନିଭାଇ
ନୟନରେ ଦେଖିହୁଏ ମୁଖେ ନୁହେ କହି ।
କେତେବେଳେ ବିଦ୍ୟାଯେ ଶ୍ରୀମୁଖୁ ବାହାରୁଛି
ତାହା ଦେଖିଣ ଆଶ୍ଚର୍ଯ୍ୟ ମନେ ଆମ୍ଭେ ପାଞ୍ଚି
ବ୍ରାହ୍ମଣ ବୋଲିଣ ତୁମ୍ଭେ ମଣିଛ ତାହାଙ୍କୁ
ଶ୍ରୀନାରାୟଣ ପ୍ରାୟ ଯେ ଦିଶିବେ ଆମ୍ଭଙ୍କୁ ।
ଧାଇଁଛୁ ଅପୂର୍ବ ମଣି ତାହା ସର୍ବେ ଆମ୍ଭେ
ଆମ୍ଭଙ୍କୁ ଦିଶନ୍ତି ସେ ପ୍ରତ୍ୟକ୍ଷେ ବାସୁଦେବେ
ବୁଝିଲେ ଅଟନ୍ତି ସେହୁ ଦୁହେଁ ହରିହର
କହିଣ ଅଛନ୍ତି କେତେମାର୍ଗେ ଅଗୋଚର ।
ଏରୂପେ ଦୈତ୍ୟଙ୍କ ମୁଖୁଁ ଶୁଣି ଦୈତ୍ୟରାୟେ
ହୃଦରେ କଥା ପାଞ୍ଚିଣ ମନେ ବଡ଼ ଭୟେ ।
ଭୟ କରୁ କରୁ ମନେ ହୋଇଲାକ ଦମ୍ଭ
ବୋଲେ ଧରି ଆସିଛି କିସୈନ୍ୟବାସୁଦେବ
ବୁଝିଲେ ତ ବେନିଜନେ ଅଟନ୍ତି ଯେ ସେହୁ
ବଦିତ ରହିଲେଣି କି କରିପାରେ ଆଉ ।
କ୍ଷତ୍ରୀ ହୋଇଣ ରହଇ ଯେବେ ବନ୍ଦି ପଡ଼ି
ବୈଦ୍ୟହୋଇଣ ଯେବେନ ପାରେଚିହ୍ନିନାଡ଼ୀ
ଭାରିଯା ହୋଇଣ ଯେବେ ନୁହେ ପୁତ୍ରବତୀ
ଭଲଦ୍ରବ୍ୟ ଭୁଞ୍ଜିଣ ଯେକାଳେ କରେବାନ୍ତି ।
ବିଦ୍ୟାବନ୍ତ ହୋଇ ଯେହୁ ଦୁଃଖେ ଦିନହରେ
ପାକାସ୍ପର୍ଶ ସ୍ତିରୀଙ୍କିଟି ରତି ଯେହୁ କରେ ।
ମନ୍ତ୍ରୀ ହୋଇ ରାଜାଙ୍କୁ ହୁଏ ଯେ ଅଲୋଡ଼ା
ଖଡ଼ି ହସ୍ତ ନ ଛୁଇଁ ଯେ ଧରେ ପାଞ୍ଜିବିଡ଼ା
ସେହୁ ଲୋକମାନଙ୍କୁଟି ବୋଲି ଅପାଣ୍ଡୁକ
ସଭାରେ ବସି ନ କହେ ଯେହୁଭଲବାକ୍ୟ ।

କୁଳସ୍ତିରୀ ଥାଉଁ ଥାଉଁ ରତଯେ ବେଶ୍ୟାରେ
ନବୀନା ସ୍ତିରୀଙ୍କୁ ଯେହ୍ନୁ ଛାଡ଼େ ପିତାଘରେ ।
ବ୍ରାହ୍ମଣ ହୋଇ ପଶୁର ବୁଦ୍ଧି ଯେବେ ଧରେ
ସ୍ନାନସାରି ଯେ ଦେବତା ଦର୍ଶନ ନକରେ ।
ସଂସାର ଲୋକଙ୍କୁ ଯେହ୍ନୁ ବୋଲେ ମୁହିଁ ଉଚ୍ଚ
ବୁଝିଲେ ତାହାଠାରୁକେ ନାହିଁ ପରପଞ୍ଚ ।
ମହାନାୟକ ହୋଇ ଯେ ଲୋକ ନପାଳଇ
ସେହିଲୋକ ବଡ଼ପଣ ଅଳ୍ପେ ନାଶ ଯାଇ ।
ଶ୍ଳୋକପଢ଼ି ପାଦେଯେ ନକରିପାରେ ଅର୍ଥ
ତାହା ଜୀବନ ଗୋଟିକ ବୁଝିଲେ ବିଅର୍ଥ ।
ବିଷ୍ଣୁଙ୍କୁ ଆଣି ଗୃହରେ କରିବଇଁ ବନ୍ଦୀ
ମୋଠାରୁ ବଳବନ୍ତ କେ ଅଛିଆଉ ଯୋଧୀ ।
ହାଣରେ ପଡ଼ିଲା ଦ୍ରବ୍ୟ ଛାଡ଼ିଦେବି ଯେବେ
ପଛନ୍ତେ ମରିବି ଝୁରି ଝୁରି ଅକର୍ତ୍ତବ୍ୟେ ।
ଏଥିର ବୁଦ୍ଧି ପାଞ୍ଚିଣ ବିଷ୍ଣୁଙ୍କୁ ମାରିବି
ବିଷ୍ଣୁ ମଲାରୁ ମୁହିଁ ଯେ ଅମର ହୋଇବି ।
ଲୋକଙ୍କ ମୁଖୁଁ ଶୁଣିଣ ଯେବେ ଛାଡ଼ିଦେବି
ଆଉବେଳେ ଲୋଡ଼ିଲେ ମୁଁ ଭେଟକି ପାଇବି
ଏଥର ଛାଡ଼ିଦେବଇଁ ଯେବେ ଲୋକବାକ୍ୟେ
ଖୋଜିଲେ ନ ପାଇବି ଯେ ଚରାଚର ଯାକେ
ବୁଝିଲେ ହୃଦୟ ଦେହ ଅଟେ ମହାଶୂନ୍ୟ
ଏହାଙ୍କୁ ମାଇଲେ ମୋର ଉଦେହେବ ଜ୍ଞାନ
ହରିମଲେ ସଂସାରେ ମୁଁ ହେବି ଅଧିକାରୀ
ଯେଣୁ ସେ ହରି ମୋହର ଅଟଇ ବଇରୀ ।
ନମାରି ବୈରୀକି ଛାଡ଼ିଦେବି ଯେବେ ମୁହିଁ
ବୋଝଭାର ବହି ନିନ୍ଦା ଥୋଇବଇଁ କାହିଁ ।
ତଥାପି ମୁହିଁ ଯଦ୍ୟପି ମାରିବି ଏକ୍ଷଣି
ତହିଁ ଅପଖ୍ୟାତି କେତେ ଉପୁଜିବ ପୁଣି ।
ବୋଲିବେ ସଂସାରେ ରାଜା କେଡ଼େ ମନ୍ଦକଲା
ଗୁରୁ କରି ରଖି ବିପ୍ର ପୁତ୍ରଙ୍କୁ ମାଇଲା ।
ଗୁରୁହତ୍ୟା ବ୍ରହ୍ମହତ୍ୟା କଲା ଦୁଇଦୋଷ
ଏକଥାକୁ ଡରି ମୁହଁ କରୁନାହିଁ ନାଶ ।
କାହାକୁ ଯେ ଜଣାନୋହୁ ଗୁପ୍ତେ ମରାଇବି
ଲୋକ ଅପଖ୍ୟାତି କିମ୍ବା ଦେହକୁ ଆଣିବି ।
ଜାଣନ୍ତି ସାବତପୁତ୍ରେ ମୋର କୂଟ ଛନ୍ଦ
ଆଖି ପିଛଡ଼ାକେ ମାରି ଆସିଲେ ଗୋବିନ୍ଦ ।
ଆମ୍ଭର ମାରିବା କଥା କେହି ନ ଜାଣିବେ
ଭକ୍ଷାରେସେ ମଲେବୋଲି ସମସ୍ତେ ବୋଲିବେ
ଗୁପତେ ପୁତ୍ରଙ୍କୁ ମାର ବୋଲି ଜଣାଇବି
ଦେହକୁ ମୁଁ ଅପଖ୍ୟାତି କେବେ ନ ଆଣିବି ।
ତଥାପି ଡରି ପଳାଇ ଯିବେ ଅବା ବୋଲି
ଚାରିଲକ୍ଷ ପାହାରୀ ଯେ ନେଇ ଜଗାଇଲି ।
ଆଖଡ଼ାଶାଳକୁ ସେହି ବେଢ଼ିଛନ୍ତି ଜଗି
ମାଛି ବାଟ ନପାଇ ପଳାନ୍ତି ତହୁଁ ଭାଗି ।
ସହସ୍ରେବ ମତ୍ତହସ୍ତୀ ଦ୍ୱାରେ ଅଛି ରଖି
ଆବର ଜଗିଅଛନ୍ତି ସୈନ୍ୟ ଯେତେ ପାଖି ।
ପାଚେରୀ କରିଛି ମୁହିଁ ସସ୍ରେଯୁଣ ଉଚ୍ଚ
ପବନ ନପାରେ ତହିଁ ଚଳି ପଶି ସଞ୍ଚ ।
ଏଥିର ମଧରେ ମୋର ବୈରୀଅଛି ଭରି
କାଳେ ତାଙ୍କୁ ମରାଇବ ପୁତ୍ରେ କହିକରି ।
ଆଜ୍ଞାକୁ ମୋହର ପୁତ୍ରେ ଛନ୍ତି ପୁଣି ଚାହିଁ
ମାରବୋଇଲେ ଶତ୍ରୁଙ୍କୁ ମାରିବେ ସେ ସେହି
ତହୁଁ ଉବୁରି ରହିବେ ଯେବେ ଭାଇ ବେନି
ପେଶିବି ସେନାପତିଙ୍କ ହାତେ ସଂଯମନୀ ।
କଣ୍ଡ ବିକଣ୍ଡ ମୋହର ଅଛନ୍ତି ଯେ ସେନା
କ୍ଷଣକେ ପାରନ୍ତି କରି ତିନିପୁର ଚୂନା ।
ଆବର ଅଛି ଦାରୁଣ ନାମେ ହୋଇ ଭାଇ
କ୍ଷଣକେ ପାଞ୍ଚଶକୋଶ ପୃଥ୍ୱୀପାରେ ଦହି ।
ମୋର ଯେତେ ମହିମା ତା ବିଧାତାଙ୍କୁ ଜଣା
ଚଉଦପୁର ଯାକେ ମୁଁ ଅଟେ ନୃପରଣା ।
ବାସବ ଦେବତାଙ୍କୁ ମୁଁ ରଖିଥିଲି ବନ୍ଦୀ
ମୋଘରେ ରହିଲାକ ଶାଙ୍ଖୋଳି ଗୋଡ଼େପିନ୍ଧି
ଦଶଦିଗପାଳ ମୋର ବୋଲେଥାନ୍ତି ଖଟି
ଯାହାବୋଲ ସେ କରନ୍ତି ନିତ୍ୟେ ତାହାଭେଟି
ତେତିଶକୋଟି ଦେବଙ୍କ କନ୍ୟା ବିଭା ହେଲି
ଶୁଦ୍ଧସ୍ନାନ ସ୍ତିରୀ ମୁହିଁ ନିତ୍ୟେ ରୋଗକଲି ।
ବୈକୁଣ୍ଠପୁରେ ବିଷ୍ଣୁର ଯେତେ ଭୋଗହୁଏ
ସେହି ସଦୃଶ ଭୋଗ ମୁଁ କରେ ସର୍ବଦାଏ
ନିତ୍ୟସ୍ଥଳେ ରାସକ୍ରୀଡ଼ା କରେ ଯେହ୍ନେ ହରି
ସେହିରୂପେ ସ୍ତିରୀବୃନ୍ଦ ଅଛନ୍ତି ମୋ ପୁରୀ ।
ଯମର କାଳଦଣ୍ଡ ନ ପଶେ ମୋର ଘରେ
ଧନ୍ୱନ୍ତରୀ ବନ୍ଧାହୋଇଛନ୍ତି ମୋର ପୁରେ ।
ଏଣୁକରି ନଗ୍ରେ ମୋର ରୋଗ ବିବର୍ଜିତ
ନବଗ୍ରହ ମୋ ସେବାରେ ଛନ୍ତି ଅନୁବ୍ରତ ।
ବଇକୁଣ୍ଠ ପ୍ରଭୁ ସିନା ଅଟେ ଜଗନ୍ନାଥ
ମଞ୍ଚପୁରେ ପ୍ରଭୁ ସିନା ଅଟେ ନରନାଥ ।
ଏଣୁକରି ଶ୍ରୀହରିଙ୍କି ସଦା ଥାଇ ଅଡ଼ି
ସେ ହରି ଗଲାଣି ମୋର ଘରେ ବନ୍ଦୀ ପଡ଼ି ।
ବନ୍ଦୀଥିଲା ଲୋକର କି ଅଛି ଆଉ ବଳ
ମନହେଲା ଦିନପେଷି ଦେବି ଯମଆଳ ।

ଏରୂପେ ମନରେ ଯାହା ପାଞ୍ଚିଅଛି ମୁହିଁ
ମୋତେ ସେ ପାରିବେକି ନୃସିଂହ ବେନିଭାଇ
ନୃସିଂହ ମଲେ କୃଷ୍ଣବଲ୍ଲଭ କି କରିବ
ଅପୁତ୍ରିକ ହୋଇ ମୋତେ ସେବା କରୁଥିବ ।
ମୋତେ କହିବାକୁ କି ସେ ହେବ ଆଉମୁଣ୍ଡ
କ୍ଷଣକରେ ପୋଡ଼ିଦେବି ବଦରିକା ଖଣ୍ଡ ।
ଧର୍ମକୁ ଚାହିଁଣ ମାତ୍ର ରହିଅଛି ମୁହିଁ
ଶତ୍ରୁମଲେ ଭୟ କିସ ଥିବ ଆଉ ତହିଁ ।
ଗୃହସ୍ଥ ମରିଲେ ସ୍ତିରୀ ପୁତ୍ରେ କିସ କାର୍ଯ୍ୟ
ରୋଗ କ୍ଷୟଗଲେ ଦେବ ଯେରୂପେ ଐଶ୍ୱର୍ଯ୍ୟ
ଶତ୍ରୁକ୍ଷୟ ଗଲେ ଆଉ କାହାକୁ ଯେ ଭୟେ
ଅଧଇର୍ଯ୍ୟ ଲୋକ ସିନା ଡରି ମରୁଥାଏ ।
ଧନହୀନ ଲୋକମାନେ ମହାର୍ଘ୍ୟ ପଡ଼ିଲେ
ମରନ୍ତି କାଉଳିହୋଇ ଖାଦ୍ୟ ନ ମିଳିଲେ ।
କୂଟ ନଥିବା ଶରୀର ସୂର୍ଯ୍ୟପରି ଦିଶେ
ପଙ୍କ ନଥିବା ସଲିଳ ନିର୍ମଳ ପ୍ରକାଶେ ।
ନୀରଦ ବିନାଶ ହେଲେ ଚନ୍ଦ୍ର ଯେହ୍ନେ ଦିଶି
ମୁହିଁ ସେହିରୂପେ ଜାଣ ବୈରୀଯିବି ନାଶି ।
ପରମ ସୁଖରେ ରହି ଭୁଞ୍ଜିବଇଁ ଭୋଗ
ରହିଲା ଏରୂପେ ମନେ ପାଞ୍ଚି ତେଜିରାଗ ।
କାହାକୁ କଥା ଫେଡ଼ି ନକହେ ଦୈତ୍ୟରାୟେ
ସ୍ନାନସାରି ସନ୍ଧ୍ୟା ତରପଣ କରିଯାଏ ।
ଈଶ୍ୱରଙ୍କୁ ପୂଜା ସାରି ମଣୋହିକି ଗଲା
ଆଚମନ ସାରି ପୁଣ ଗୁବାକ ଭୁଞ୍ଜିଲା ।
ରତନ କଠାଉ ମାଡ଼ି ସଭାକୁ ଆସଇ
ଚାମର ଆଲଟ ପଛୁଁ ସହଜେ ପଡ଼ଇ ।
ସୁବର୍ଣ୍ଣ ପୀଢ଼ାରେ ବସିଲେକ ଦୈତ୍ୟରାୟେ
ମଣିମା ମଣିମା ଡାକ ଦ୍ୟନ୍ତି ଖୁଣ୍ଟିଆଏ ।
ଆବର ପାତ୍ରମନ୍ତ୍ରୀ ଯେ ସେନାପତିଗଣେ
ଆସ୍ଥାନ ତଳେ ବସିଲେ ଆସି ବେହରଣେ ।
ଯାବତ ଦିଗର ବାର୍ତ୍ତା ତହୁଁ ଚାରଗଣେ
ଅଷ୍ଟ ଅବଧାନୀ ତାହା ବୁଝନ୍ତି ତକ୍ଷଣେ ।
ସବୁରି ମୁଖରୁ ବାର୍ତ୍ତା ଶୁଣେ ରାଜା ବସି
ନୃସିଂହ ପ୍ରଭୁଙ୍କ କଥା ଭଳେ ଅହର୍ନିଶି ।
କୁଟୁଣୀ କାଷ୍ଠ ପରାୟେ ହୁଏ ଛନ୍ନ ଛନ୍ନ
କୁରାଳଚକ୍ର ଜାଣିଣ ଭ୍ରମେ ତାର ମନ ।
କାହାକୁ ନକହି ବ୍ସି କରେ ହୃଦେ ଚିନ୍ତା
ଅଶୀଳ ଦଇତ ଏକା ଜାଣେ ଦୈତ୍ୟକଥା ।
ନିତ୍ୟ ବିଦ୍ୟାପତି ରାଜତନୟେ ଆସନ୍ତି
ଦଇତ୍ୟର କୂଟବୁଦ୍ଧି ଦେବତା ଜାଣନ୍ତି ।

ଅନ୍ତର୍ଯ୍ୟାମୀ ନାଥ ପୁଣ ଥାଇ ସର୍ବ ଦେହେ
ବିକାଶଇ ଝରଝର ସୂର୍ଯ୍ୟଜ୍ୟୋତି-ପ୍ରାୟେ ।
ଯେ ଯାହା ପାଞ୍ଚେ ମନରେ ସକଳ ଜାଣନ୍ତି
ଭଲକୁ ଭଲ କରନ୍ତି ମନ୍ଦକୁ ଦଣ୍ଡନ୍ତି ।
ତେଣୁ ନାରାୟଣ ନାମ ଅନ୍ତର୍ଯ୍ୟାମୀ ଜାଣ
ଏଥୁଉତ୍ତାରେ ନାରଦ ଅନ୍ୟବାଣୀ ଶୁଣ ।

❑❑❑

## ନୃସିଂହଙ୍କ ବଧ ନିମିତ୍ତ ମନ୍ତ୍ରୀ ଓ ପୁତ୍ରଙ୍କ ସହିତ ମୁରର ପରାମର୍ଶ

ଏମନ୍ତେ ବେନି ବରଷ ଭୋଗ ହୋଇଯାନ୍ତେ
ଅଶୀଳକୁ ଡାକିଣ ଯେ ପୁଛେ ମୁର ଦୈତ୍ୟେ
ବୋଇଲାକ ବାପ ଆରେ ସବୁ ଜାଣୁ ତୁହି
ବିଶ୍ୱାସ କଥାମାନ ତ କହେ ତୋତେ ମୁହିଁ ।
ବଲ୍ଲଭ ପୁତ୍ରଙ୍କୁ ତୁ ଯେ ଦେଲୁ ମୋତେ ଆଣି
ମାରିବା ଗୁପତେ ବୋଲି ସବୁ ଅଛୁ ଜାଣି ।
ହେଲେଣି ବାରବରଷ ଆସି ବେଳକାଳ
କିରୂପେ ପେଷିବାକହ ଏବେ ଯମଆଳ ।
ଏହା ଶୁଣି ଅଶୀଳ ଯେ ଯୋଡ଼ି ବେନିକର
ବୋଇଲା ତିନିପୁରେ ତୁଅଟୁ ନୃପବର ।
ଏ ଛାର କଥାକୁ କିମ୍ପା ଚିନ୍ତା କରୁ ଏତେ
ଅନନ୍ତକୋଟି ଯୋଦ୍ଧାଏ ସେବିଛନ୍ତି ତୋତେ
ତାହାକୁ ସମାନ କି ସେ ହେବେ ବେନିଭାଇ
ଜଣ ଜଣକେ ସମୁଦ୍ର ପାରୁ ଆମ୍ଭେ ପିଇ ।
ନୋହିଲେ ମୋତେଆଜ୍ଞାତୁଦେବୁ ଆଗଯେବେ
ସମୟ ବୁଝିଣ ତାକୁ ମାରିବଇଁ ତେବେ ।
ନୋହିଲେ ଅଛନ୍ତି ଯେଉଁ ସସ୍ରେ ମତ୍ତହସ୍ତୀ
ତାଙ୍କ ଦନ୍ତେ ଚିରାଇ ମୁଁ ଦେବି ଆଜରାତି ।
ଆବର ପାହାରିଗଣ ଛନ୍ତି ଯେତେ ଜଗି
ତାହାଙ୍କୁ ବୋଇଲେ ମାରିପକାନ୍ତି ନିଯୋଗି ।
ନୋହିଲେ ସତର ଲକ୍ଷ ପୁତ୍ର ତୋ ଅଛନ୍ତି
ତାହାଙ୍କୁ ଗୁପତେ କହି ମରାଅ ଝଟତି ।
ଏହା ଶୁଣି ବଡ଼ ଶ୍ରଦ୍ଧା କଲା ଦୈତ୍ୟରାଜା
ଅଶୀଳ ଦଇତକୁ ସେ କଲା ବହୁ ପୂଜା ।
ବୋଇଲା ଅଶୀଳ ଆରେ ମୋ ପୁତ୍ରଙ୍କୁ ଆଣ
କହିବା ଗୁପତ କରି ପାର୍ଶ୍ୱେ ବସାଇଣ ।
ଶୁଣିଣ ଅଶୀଳ ଦୈତ୍ୟ ଗଲା ଶୀଘ୍ର ଧାଇଁ
କହିଲା ପୁତ୍ରଙ୍କୁ ଆଗେ ପିତା ଆଜ୍ଞା ପାଇ ।
ବୋଇଲା ରାଜାଙ୍କ ଆଜ୍ଞା ହେଲା ଆସ ବାବୁ
ଶ୍ରୀରାମର ଭେଟ ଆଜ ହୁଅ ପୁତ୍ର ସବୁ ।

ତହିଁ ଉତ୍ତାରୁ ଆସିବ ପଢେ ବିଦ୍ୟା ପଢ଼ି
ଡାକିବାପାଇଁ ଦେଇଛି ମୋତେ ରାଜାଶାଢ଼ୀ
ଶୁଣିକରି ପୁତ୍ରମାନେ ଉଠି ଚଳିଗଲେ
ନୃସିଂହ ଛାମୁରେ ଶୀଘ୍ର ଯାଇଣ ମିଳିଲେ ।
ବୋଇଲେ ସ୍ୱାମୀଯାଉଛୁ ଆମ୍ଭେ ସର୍ବକାଳେ
ଆସିବୁ ପିତାଙ୍କ ଆଜ୍ଞା ଶୁଣି ତତକାଳେ ।
ଶୁଣିକରି ହେଉ ବୋଲି କହି ଆଦିମୂଳ
ବୋଇଲେ ମେଣ୍ଟିଲେ ରାଜା ଆଜ୍ଞାଘଟେକାଳ
ସୁଦର୍ଶନ ଚକ୍ର ଯେହ୍ନେ ବିଷ୍ଣୁ ବଚନକୁ
ସେହିରୂପେ ରାଜା ଆଜ୍ଞା ଅଟେ ସଂସାରକୁ ।
ପିତା ଯେବେ ଡାକିଛନ୍ତି ଯାଅ ଚଳିବେଗେ
ଯାହାସେବୋଲିବେ ତାହା କର ସେହିଲାଗେ
ଶୁଣି ଦଇତକୁମରେ ଗଲେ ଆଜ୍ଞା ପାଇ
ପିତାଙ୍କ ଦର୍ଶନ ପୋଏ କଲେ ବେଗେଯାଇ ।
କଲ୍ୟାଣ କରିଣ ରାଜା ବୋଲେ ଆଗ ବସ
କହୁଛି ବିଶ୍ୱାସେ ଶୁଣ ସେହି କଥା ରସ ।
ଯେବଣ କାଳରେ ମୁହିଁ ଗଲି କଇଳାସେ
ମହାଦେବବର ମୋତେଦେଲେ ମନତୋଷେ
ଯେତେ ମୁଁ ମାଗିଲି ବର ମନ ବାଞ୍ଛା କରି
ସେହିକଥା ସିଦ୍ଧିକରି ଦେଲେ ତ୍ରିପୁରାରି ।
ଆବର କହିଲେ କଥା ଏକ ମୃତ୍ୟୁ ଭେଦ
ବୋଇଲେ ବିଷ୍ଣୁର ତୁଲେ ନକରିବୁ ବାଦ
ବାଦ ଲାଗିଲା ମାରିବୁ ଯେବେ ଏହା ପାରି
ତେବେ ତୁ ପ୍ରଳୟଯାଏ ଥିବୁ ଦେହ ଧରି ।
ହରମୁଖୁ ଶୁଣିଲି ମୁଁ ଏହା ଯେତେବେଳୁ
ଖୋଜୁଥିଲଇଁ ବିଷ୍ଣୁଙ୍କୁ ଜାଣ ସେହିକାଳୁ ।
ଖୋଜନ୍ତେ ଏଗାର ଗଣ୍ଡା ଯୁଗ ଭୋଗ ଗଲା
ତେବେହେଁ ବିଷ୍ଣୁଙ୍କୁ କେବେ ନଦେଖିଲିଭଲା
ଲେଉଟିଣ କେତେଦିନ ଦିଗବିଜେ କଲି
ସପତଦ୍ୱୀପକୁ ବୁଲି ଶାକଲ୍ୟକୁ ଗଲି ।
ବ୍ରାହ୍ମଣ ଗୃହରେ ଏହି ବିଷ୍ଣୁ ଜନ୍ମ ହେଲା
ଅନନ୍ତ ପଡ଼ିହାରୀ ଯେ ବୋଲି ନାମ ଦେଲା
ଏହି କଥାଗୋଟି ଜାଣ ପୂର୍ବେ ହୋଇଥିଲା
ଚାରିଯୁଗ ଏହିପରି କ୍ରମେ ବହିଗଲା ।
ଅନନ୍ତ ପଡ଼ିହାରୀ ନଥିଲେ ଚାରିଯୁଗେ
ଗୋଟିଏ ଲୋକ ରହି ନଥାନ୍ତେ ତିନିସ୍ୱର୍ଗେ ।
ଶାକଲ୍ୟ ଦ୍ୱୀପେ ପଶି ମୁଁ ଗଲି ନଗ୍ରଫେରି
ଦେଖିଲି ପଲ୍ୟଙ୍କରେ ଅନନ୍ତ ପଡ଼ିହାରୀ ।
ଆମକୁ ଦେଖିଲେ ଯହୁଁ ନଗର ବାସୀଏ
ଅନ୍ୟ ଗ୍ରାମରେ ଲୁଚିଣ ରହିଲେ ସଭିଏଁ ।

ଏକା ବାଇ ମିଶ୍ରଙ୍କର ଭାର୍ଯ୍ୟା ସୁଲକ୍ଷଣା
ପୁତ୍ରକୁ ଘରେ ଛାଡ଼ି ଯେ ଗଲା ବୋଇବଣା ।
ଏମନ୍ତ ବେଳେ ପଶିଲୁ ଘରେ ଆମ ଯାଇଁ
ଦେଖିଲୁ ବାଳକରୂପେ ବିଷ୍ଣୁ ଅଛି ଶୋଇ
ମନରେ ପାଞ୍ଚିଲୁ ଏହୁ ଯେବେ ବିଷ୍ଣୁଦେବ
ଘରକୁ ନେଲେ ଖାଇବି ପୋଡ଼ି ଏହା ଜୀବ ।
ଖାଇଲେ ବିଷ୍ଣୁର ମାଂସ ଅମର ହୋଇବି
ମଥାରେ ବହିଣ ମୋର ଗୃହେ ବହିନେବି ।
ବିଷ୍ଣୁର ମାଂସ ଭକ୍ଷିଲେ ଧରିବି ତା ରୂପ
ବଇକୁଣ୍ଠେ ବିଷ୍ଣୁ ପ୍ରାୟ ଥିବ କୋଟି କଳ୍ପ ।
ବିଷ୍ଣୁ ମଲେ ପୃଥିବୀରେ ମୁହିଁ ବିଷ୍ଣୁ ହେବି
ଏହି ବଡ଼ପଣ ମୋର ଇଚ୍ଛାରେ ପାଇବି ।
ପୁଣି ପାଞ୍ଚିଲଇଁ ହରି ଶିଶୁ ସିନା ଅଟେ
ଘରକୁ ଆପେ ବହିଣ ନେବି ରତ୍ନଖଟେ ।
ମଦନାବତୀ କୋଳରେ ଦେବି ପୁତ୍ର ନେଇ
ପୁତ୍ର କରିଣ ପୋଷିବ ମନେ ଶ୍ରଦ୍ଧା ବହି ।
ସେ ହୋଇବ ମାତା ମୁହିଁପିତା ଯେ ହୋଇବି
ଅନନ୍ତ ପଡ଼ିହାରୀ ବୋଲିଣ ଡାକୁଥିବି ।
ଏ ନାମ ଚାରିଯୁଗରେ ବହିଥିବ ହରି
ତେଣୁକରି ମୋର ଏହି ନୋହିବ ବଇରୀ ।
କେଡ଼େ ସଉନ୍ଦର୍ଯ୍ୟ ରୂପ ଅଟେ ବାଳବଛି
ପୋଷିଲେ ବାଳକ ଦିନୁ ନ ଜାଣିବ କିଛି ।
ଆମ୍ଭକୁ ଏ ପିତାମାତା ବୋଲି ମଣିଥିବ
କେତେବେଳେ ମୋରସଙ୍ଗେବିବାଦ ନୋହିବ
ଏରୂପେ ଅଜଣା ହୋଇ ସୁଖେ କାଳନେବୁ
ପ୍ରଳୟ କାଳ ପର୍ଯ୍ୟନ୍ତ ଅମର ହୋଇବୁ ।
ଏରୂପେ ମନେ ପାଞ୍ଚିଣ ମଥାରେ ବହିଲି
ଘରେ ରଖିବି ବୋଲିଣ ବହି ଆଣୁଥିଲି ।
ମେରୁଠାରୁ ଶତେଗୁଣ ମୁଣ୍ଡେ ହେଲା ଗୁରୁ
ପାଞ୍ଚିଲଇଁ ଏହିଠାରେ ପକାଇବି ମରୁ ।
ଏରୂପେ ବୋଲିଣ ଶୂନ୍ୟ ଛେଚିଲି ଶିଳାରେ
ନମରି ଭୂମିରେ ପଡ଼ି ବସିଲା ଆଣ୍ଠୁରେ ।
ପୁଣି ଉଠି ଧାଇଁ ଯାଏ ଅତି ଖରତରେ
ଏହା ଦେଖି ଜାଲ ନେଇ ପାତିଲି ତାପରେ
ପୁଣି ଜାଲରୁ ଖସିଣ ବସେ ଖଣ୍ଡେ ଦୂରେ ।
ଦେଖୁ ଦେଖୁ ବେଗେଯାଇଁ ପଶିଲା କାଘରେ
ଧରା ନଦେଇ ରହିଲା ନଗ୍ରେ ଯାଇଁ ଲୁଚି
କେବେହେଁ ଧରା ଆଉ ନଦେଲା ସେ ଶ୍ରୀବଛି
ତହୁଁ ସର୍ବେ ରହିଲୁ ଯେ ନଗରକୁ ବେଢ଼ି
ଖୋଜିଖୋଜି ନପାବନ୍ତେ ନଗ୍ରଦେଲୁ ପୋଡ଼ି

ପୋଡ଼ ପକାନ୍ତେ ନବର ଧୂମାନ୍ତ ହୋଇଲା
ଅନନ୍ତ ପଡ଼ିହାରୀକି ନ ଦେଖିଲୁ ଭଲା ।
ସେଠାରୁ ମୁଁ ଜାଣିଥିଲି ବିଷ୍ଣୁ ମଲା ବୋଲି
ଏବେ ଜନ୍ମ ହେଲା ପୁଣି ବଦରିକା ପଲ୍ଲୀ ।
ନାରଦ ଗୋସାଇଁ ଆଜ ବିଶ୍ୱାସରେ ମୋତେ
କହିଲେ ବିଷ୍ଣୁ ଜନ୍ମିଲେ ବୋଲିବସିଗୁପ୍ତେ
ବ୍ରାହ୍ମଣ କୃଷ୍ଣବଲ୍ଲଭ ଘରେ ଏବେ ଆସି
ଭଗବତୀ ମାତାଗର୍ଭେ ଜନ୍ମ ବେନି ଶିଷି ।
ବ୍ରହ୍ମାଙ୍କର ପୁରେଯାଇଁ ବିଦ୍ୟା ସେ ପଢ଼ିଲେ
ଧନୁଶର ଶସ୍ତ୍ରମାନ ଅନେକ ଶିଖିଲେ ।
ମୋତେ ସେ ମାରିବବୋଲି ପାଞ୍ଚୁଛନ୍ତି ମନେ
ସେ କଥା ଶୁଣି ତରସ୍ତ ହେଲି ସବୁଦିନେ ।
ତୁମ୍ଭମାନଙ୍କୁ ବିଦ୍ୟା ସେ ପଢ଼ାଇବେ ବୋଲି
ଗୁରୁ ନିଷ୍ଠା କରି ତାଙ୍କୁ ଡକାଇ ଆଣିଲି ।
ଉପ୍ରୋଧରେ ନ ମାଇଲି ନିନ୍ଦାଭୟ କରି
ଏମନ୍ତେ ଯେ ବେନିବର୍ଷ ଗଲା ଏବେ ପୂରି
ଠକାଇ ଆଣିଲି ମାତ୍ର ଗୁରୁ ବୋଲି ଡାକି
ସାଧନ ବଳରେ ତାଙ୍କୁ ମାରି ପାରିବାକି ।
ଦିନ ମୋର ସରୁ ନାହିଁ ବେଳ ବୁଡୁ ନାହିଁ
ଚିନ୍ତାରେ ତନୁ ମୋହର ଗଲା କ୍ଷୀଣହୋଇ ।
ଏହି ନୃସିଂହ ବଇରୀ ମୋର ପୁଣି ଅଟେ
ବ୍ରାହ୍ମଣର ଘରେ ଆସି ଜନ୍ମିଛି କପଟେ ।
ହରି କୂଟ ବୁଝି କୂଟେ ଅଇଁଲଇଁ ଘେନି
ବେନି ବରଷ ହୋଇଲା ଘରେଥିଲି ଆଣି ।
ମନେ ପାଞ୍ଚୁପାଞ୍ଚୁ ଘରେ ବଢୁଛନ୍ତି ଶତ୍ରୁ
ଏଥର ତ ନ ମାଇଲେ ପଳାଇବେ ରାତ୍ରୁ ।
ଏ କଥାକୁ ବୁଝି ବାପ ସୁବିଚାର କର
ବଇରୀ ମଲେ ମୁହିଁ ଯେ ହୋଇବି ଅମର ।
ତୁମ୍ଭେମାନେ ମହାବଳୀ ଅଟ ସର୍ବ ପୋଏ
କୂଟେ ମାରିଣ ପକାଅ ବେଗେଦେବରାୟେ ।
ପୁତ୍ରେ ବୋଇଲେ ହେ ତାତ ଶୁଣ ନୃପମଣି
ଏତେକଥା ଆମ୍ଭେମାନେ ପୂର୍ବୁ ନାହୁଁଜାଣି
ତୁମ୍ଭଙ୍କୁ ଏଡ଼େ ଶତ୍ରୁ ସେ ଯେବେ ହୋଇଛନ୍ତି
ଏତେଦିନ ଯାଏ କିମ୍ପା ରହିଲ ନିବର୍ତ୍ତି
ଆମ୍ଭଙ୍କୁ ଶୁଣାଇଥାନ୍ତୁ ଅଳ୍ପ ଏହା ଯେବେ
ଆଜିଯାଏ ରଖିଥାନ୍ତୁ ଆମ୍ଭେ ଏହା କେବେ ।
ବ୍ୟାଧିଶେଷ ରଣଶେଷ ଶତ୍ରୁ ଶେଷ ପୁଣି
ରଖିଲେ କାଳାନ୍ତେ ଏହି ବଢ଼େ ପ୍ରଳେଜାଣି
କି ବୋଲିଣ ଏଡ଼େ ଶତ୍ରୁ ରଖିଥିଲେ ଘରେ
ଗୁରୁ ବୋଲି ଖ୍ୟାତ କଲ ବ୍ରହ୍ମାଣ୍ଡ ଯାକରେ
ସମସ୍ତେ ଯାଇ ମାଇଲେ ଏବେହେବନିନ୍ଦା
ନ ମାଇଲେ ପ୍ରାଣପରେ ପଡ଼େ ଆସି ଧନ୍ଦା ।
ଆଣିଲାଦିନୁ ସଂହାରି ନ ପାରିଲ ରାୟେ
କଳଙ୍କ ନ ଛଡ଼ାଇଣ ରଖ ଆଜିଯାଏ ।
ସେହିଦିନୁ କହିଥିଲେ ଦେଇଥାନ୍ତୁ ମାରି
ପିଟନ୍ତୁ ଆଖଡ଼ା ଶାଳେ ସର୍ବେ ବେଢ଼ିକରି ।
ଏତେକହି ରାଜପୁତ୍ରେ ହୋଇଣ ପ୍ରଚଣ୍ଡ
ବୋଇଲେକ ଦେଖ କାଲି ତୋର ଶତ୍ରୁମୁଣ୍ଡ
ମାତାଶତ୍ରୁ ପିତାଶତ୍ରୁ ରଖି ନ ଯୋଗାଇ
ଜାଣୁଜାଣୁ ରଖିଲେ ତ ଧର୍ମ ନାଶ ଯାଇ ।
ସେହି ଯେବେ ତୋହଠାରେ ପାପଛନ୍ତି ଚିନ୍ତି
ଆମ୍ଭେମାନେ ମାରିବାରେ ଅଟେ ଧର୍ମମତି ।
ତଥାପି ପଡ଼ିଲେ ଦେଲେ ଆସି ଘାଟିକଥା
ନିଶ୍ଚେହେଁ ମାରିବ ଗୋରୁ ବ୍ରାହ୍ମଣ ଦେବତା
ଆମ୍ଭର ପିତାର ଶତ୍ରୁ ଅଟେ ଦେବହରି
ପୂରିଲା ତାଙ୍କର କାଳ ଶୁଣ ଦଣ୍ଡଧାରୀ ।
କାଲି ରାତ୍ର ଅର୍ଦ୍ଧୁ ଆମ୍ଭେ ଯିବୁ ସର୍ବେ ଧାଇଁ
ନିଶ୍ଚିନ୍ତରେ ଶୋଇଥିବେ ଖଟେ ବେନିଭାଇ ।
ଶୂନ୍ୟହସ୍ତ ହୋଇଣ ଘୁଙ୍ଗୁଡ଼ି ମାରୁଥିବେ
ଏମନ୍ତବେଳେ ମାରିବୁ ଯାଇଁ ଆମ୍ଭେ ସର୍ବେ ।
ଗଦାଘାତେ ପିଟି କରିଦେବୁ ମସିଗୁଣ୍ଡ
ଉଡ଼ିବେ ଛତ୍ର ପରାୟେ ଦେଖିବୁ ସେ ପିଣ୍ଡ ।
ଖଡ଼ଗ ଭୂଷଣ୍ଡି ଗଦା ଆଉ ଅସିପତ୍ରେ
ପିଟିବୁ ଏକାବେଳକେ ଟେକି ତାଙ୍କ ଗାତ୍ରେ ।
ମାଉଁସ ପଞ୍ଜରା ଅସ୍ଥି ପକାଇବୁ ଧ୍ୱଂସି
ଏ ଛାର କଥାକୁ ଭାଳ ବସି ଅହର୍ନିଶି ।
ତୁ ମଧ ଅଶୀଳ ଯାଇଥିବୁ ଆମ୍ଭ ସଙ୍ଗେ
ମଲେ ସେ ଶତ୍ରୁ କହିବୁ ଆସି ରାଜା ଆଗେ
ଅଶୀଳ ବୋଇଲା ଏହା ଲୋଡ଼ିଲେ ନମିଳେ
ନକଲେ ମୁଁ ରାଜକାର୍ଯ୍ୟ ପଶିବି ଅନଳେ ।
କାଲି ରଜନୀ ଅର୍ଦ୍ଧରୁ ହେବ ସର୍ବେ ସଜ
ଗୁପତେ ଲୁଚିମାରିବା ଯାଇଁ ଦେବରାଜ ।
ଖବର ପାଇଲେ ଲୁଚିଯିବେ ବେନିଭାଇ
ପୁଣି ମାରିବାକୁ ଆମ୍ଭେ କେତେ ଥିବା ଧାଇଁ ।
ଏରୂପେ ଦାଣ୍ଡରେ ହଟା କାହିଁକି କରିବା
ମନକଥା ମନେଥାଉ କାଲି ସଂହାରିବା ।
ଏରୂପେ ବାଳକମାନେ କରନ୍ତେ ବିଚାର
ଶୁଣିଣ ମନରେ ଶ୍ରଦ୍ଧାକଲା ମୁରାସୁର ।
ହରିଙ୍କି ମାରିବାକୁ ସେ ମନେ ବିଚାରିଲେ
ଶୟନ କରିବାକୁ ଯେ ଯାହାପୁରେ ଗଲେ ।
ନିଶ୍ଚିନ୍ତରେ ମହାସୁଖେ ଖଟେ ପହୁଡ଼ିଲେ
ସେଠାରୁ ମାୟା ପୁରୁଷ ତାଙ୍କୁ ଭୁଲାଇଲେ ।

ସେ ମାୟା ପୁରୁଷ କଥା ଶୁଣ ଆରେ ବାବା
ସେ ଯେପରି ଯେଉଁଠାରେ ଥାଏ ତାକହିବା ।
ମହାଜନ ଘରେ ଥାଏ କଉଡ଼ି ରୂପରେ
ଭୁଲାଇ ପକାଏ ପ୍ରାଣୀ ସଦା ଲାଳସାରେ ।
ନାରାଚ ରୂପରେ ଥାଇ କ୍ଷତ୍ରୀଙ୍କର ଘରେ
ପେଶନ୍ତେ ପ୍ରାଣୀଙ୍କି ନାଶଯାଇ ସେ ଧନୁରେ
ରାଜାଙ୍କର ଘରେ ଥାଏ ହୋଇ ପାଟରାଣୀ
ସେ ମାୟା ଦାଢୁ ବଞ୍ଚିବେ ନାହିଁ ନୃପମଣି ।
ଚୌଷଠି ରୋଗ ରୂପରେ ମାୟାଦେହେ ଥାଇ
କ୍ଷଣକରେ ମନକଲେ ପ୍ରାଣୀଙ୍କି ନାଶଇ ।
ମାୟାଟି ଲୋଭ ରୂପରେ ସବୁହୃଦେ ବସେ
ପକାଇ ନାନା ମାର୍ଗରେ ବେଳସରି ନାଶେ ।
ମାୟାଟି ହୀରା ନୀଳା ମୋତିମାଣିକ୍ୟ ରୂପେ
ସୁବର୍ଣ୍ଣ ସ୍ୱରୂପ ହୋଇ ସୃଷ୍ଟି ଯାଇ ବ୍ୟାପେ ।
ମାୟା ପଦାର୍ଥ ବୋଲି ନ ଜାଣନ୍ତି କେହି
ପଦାର୍ଥ ଥିବା ଠାବରେ ସବୁ କଷ୍ଟ ହୋଇ ।
ରାଜାହିଁ ବହିନିଏ ବା ଅଗ୍ନି ଖାଇଯାଏ
ଚୋର ବନିଦିଏ ଅବା ଶତ୍ରୁ କରେ କ୍ଷୟେ ।
ମାୟାଟି ଅବିଦ୍ୟା କଥା ବହୁତ କରଇ
ମାୟାକୁ ଜଗି କାର୍ଯ୍ୟ ନକରିପାରେ କେହି ।
ମାୟା ସ୍ତିରୀ ରୂପରେ ତ ସବୁ ଘରେ ଅଛି
ସ୍ୱାମୀକି ରାତ୍ରକାଳରେ ଶ୍ରଦ୍ଧାରେ ସାରୁଛି ।
କାମିନୀ ନୀବି ଦାଢ଼ରେ ପଡ଼ିହୋଏ ମୋହି
ଏରୂପେ ମାୟା ପୁରୁଷ ନର ପ୍ରାଣ ଖାଇ ।
ଏରୂପରେ ଦୈତ୍ୟପୁତ୍ର କ୍ରୀଡ଼ା କରୁକରୁ
ଉଦୟ ହୋଇବେ ସୂର୍ଯ୍ୟନିଶି ପାହିବାରୁ ।
ମୁରର ପୁତ୍ରେ ଉଠିଲେ ନିଜ ଶଯ୍ୟା ଛାଡ଼ି
ଶେଷକଲେ ନିତ୍ୟକର୍ମ ବିଧି ମନ୍ତ୍ର ପଢ଼ି ।
ଆଖଡ଼ାଶାଳେ ଚଳିଲେ ଅନ୍ନ ଭୁଞ୍ଜି ସାରି
ବିଦ୍ୟାସାଧନ କରିଲେ ମନେ କୂଟଧରି ।
ନରସିଂହ ଜଗନ୍ନାଥ ହରି ନାରାୟଣ
ଜାଣନ୍ତି ଯେ ଅନ୍ତର୍ଯ୍ୟାମୀ ସମସ୍ତଙ୍କ ମନ ।
ମୁର ପୁତ୍ରଙ୍କୁ ବିଚାର ମନେ ଜାଣିକରି
ବୋଇଲେନଷ୍ଟେ ଅକାଳେ ଏବେ ଯିବେମରି
ଯାହାକୁ ଯେଉଁ ମାର୍ଗରେ ବିଧାତା ଚଳାଇ
ତତକାଳେତାର ସେହି ବୁଦ୍ଧି ସ୍ଫୁରେ ଯାଇ
ଏହିରୂପେ ମନେ ପାଞ୍ଚ ବଇକୁଣ୍ଠବାସୀ
ବୋଇଲେ ମରିବେ ମୁର ପୋଏ ଆଜନିଶି ।
ପ୍ରଥମୁ ଛାଡ଼ିବେ ନାଡି ପୁତ୍ରରା କୁମାର
ଏକଥା ମୁରକୁ କିଛି ନାହିଁତ ଗୋଚର ।

ସଂସାରେ ଯାହାକୁ ଆସି ଅଭାଗ୍ୟ ପଡ଼ଇ
ପ୍ରଥମୁ ତାହାର ନାଡିଆଡ଼ରୁ ମରଇ ।
ବଦୟନ୍ତି ବେଦବ୍ରହ୍ମା ଶୁଣ ହେ ନାରଦ
କାଲି ରାତ୍ରେ ମୁର ପୁତ୍ରେ ହେବେ ମୃତ୍ୟୁଭେଦ
ଶ୍ରୀନୃସିଂହ ସବୁ ଜାଣି ନଜାଣିଲା ପ୍ରାୟେ
ପଢ଼ାନ୍ତି ସେ ଧନୁର୍ବିଦ୍ୟା ମନେ ନାହିଁ ଭୟେ ।
ଦୈତ୍ୟଙ୍କର କୂଟବୁଦ୍ଧି ଜାଣି ମହାପ୍ରଭୁ
ମନରେ ହସି ପଢ଼ାନ୍ତି ବିଦ୍ୟା ତାଙ୍କୁ ସବୁ ।
ମନେ ପାଞ୍ଚନ୍ତି ଆମ୍ଭର କିଛି ନାହିଁ ଦୋଷ
ଦୋଷକଲା ଲୋକଟି ଅଳ୍ପକେ ଯାନ୍ତି ନାଶ ।
ପରକୁ ପ୍ରମାଦ ଯେବେ ପ୍ରାଣୀଏ ଚିନ୍ତନ୍ତି
ବିଧାତା ତାହାକୁ ଦଣ୍ଡ କାଳିରେ ପକାନ୍ତି ।
ବେନି ବରଷ ପୂରଣ ତିନିବର୍ଷ ମଧ୍ୟେ
ଲେଖିଥାଆନ୍ତି ତାହାଙ୍କ ମୃତ୍ୟୁ ଧାତା ବେଗେ
ଆମ୍ଭଙ୍କୁ ଯେ ଆଣିବାର ତିନିବର୍ଷ ଗଲା
ତିନି ବରଷେ-ମରିବେ ନିଶ୍ଚେ ଦୈତ୍ୟ ଚେଲା
ମୋହର ପାଦରେ ସେବୁଥାନ୍ତି ଯେତେନରେ
ତାଙ୍କୁ ଯେ ମନ୍ଦ ଚିନ୍ତେ ସେ ତିନିବର୍ଷେ ମରେ
ବିଷ୍ଣୁର ମହିମା ଜାଣ ଅଟେ ଏଡ଼େ ପୁଣ
ନୃସିଂହାବତାର ଆମ୍ଭେ ହୋଇଅଛୁ ପୁଣ ।
ଅଶେଷ କୋଟି ବ୍ରହ୍ମାଣ୍ଡ ଆମ୍ଭ ଗର୍ଭେ ଅଛି
ବ୍ରହ୍ମାଣ୍ଡ ଯାକରେ ପୂରି ସଂସାରେ ରହିଛି ।
କୀଟରୁ ବ୍ରହ୍ମା ପର୍ଯ୍ୟନ୍ତେ ଯେତେ ଦଣ୍ଡଧାରୀ
ହୁଅନ୍ତି ଆତଯାତ ବିଷ୍ଣୁ ଗର୍ଭରେ ସେ ପୂରି ।
ଯେବଣ ବାସୁକୀ ଅଛି ଚୌଦପୁର ବହି
ସେହି ପୁଣି ଅଛି ଜାଣି ବିଷ୍ଣୁ ଗର୍ଭେ ରହି ।
ବିଷ୍ଣୁ ଗର୍ଭେ ଚନ୍ଦ୍ର ସୂର୍ଯ୍ୟ ଉଦୟ ହୁଅନ୍ତି
ଦିବସ ରାତ୍ରି କରିଣ ବର୍ଷ ବୋଲାବନ୍ତି ।
ପବନ ଦେବତା ଗର୍ଭ ଭିତରେ ଯେ ଥାନ୍ତି
ସବୁରି ନାସାପୁଟରେ ପରକାଶ ପାନ୍ତି ।
ଆବର ଯେ ଧ୍ରୁବଲୋକ ଛନ୍ତି ବିଷ୍ଣୁ ଗର୍ଭେ
ଭଜନ୍ତି ଉଚ୍ଚ ଆସନେ ବସି ବାସୁଦେବ ।
ବିଷ୍ଣୁର ଗର୍ଭରେ ଥାଇ ହରି ବ୍ରହ୍ମା ବେନି
ସଂସାର ସର୍ଜନା କରିଛନ୍ତି ପୁର ତିନି ।
ମୋହର ତନୁ ଯେ କେଡ଼େ ତାଙ୍କୁନାହିଁ ଜଣା
ମୋ ଦେହ ଦୁର୍ଜୟ ଶୂନ୍ୟ ଅଟେ ଅକଳନା ।
ମୋର ଗର୍ଭମଧ୍ୟେ ବ୍ରହ୍ମା ପ୍ରଳୟ ହୁଅଇ
ପ୍ରଳୟ ଅନ୍ତେ ଏ ମହୀ ପୁଣି ବିକାଶଇ ।
ଆଦ୍ୟେ ହୋଏ ଜଳପୁଣି ଦ୍ୱିତୀୟରେ ସ୍ଥଳ
ତୃତୀୟରେ ପ୍ରକାଶିଣ ଆସେ ଦାବାନଳ ।

ଚତୁର୍ଥରେ ପବନ ଯେ ଶେଷରେ ଆକାଶ
ବିଷ୍ଣୁ ଉଦର ମଧ୍ୟରେ ଲୁଚିଛି ଏ ବିଶ୍ୱ ।
ଗର୍ଭ ମଧ୍ୟରେ ବିହାର ବିଷ୍ଣୁ ନିରାକାର
କାଠି ଉତ୍ତାରୁ ବଳିଣ ବିସ୍ତାର ଶରୀର ।
ବିସ୍ତାର କଥା ଜାଣନ୍ତି ଏକା ଆଦିମୂଳେ
ଆନଲୋକଙ୍କୁ ଜଣାତ ନୁହେଁ କେତେବେଳେ
ଗୋବିନ୍ଦ ନାମ ଗଣିଲେଯେହ୍ନେ ନୋହେଅନ୍ତ
ସେହି ପ୍ରକାରେ ଅଟଇ ବିଷ୍ଣୁ ଗର୍ଭେ ଗର୍ତ୍ତ ।
କ୍ଷୀରାବ୍ଧିଶାୟୀ ବିଷ୍ଣୁଙ୍କ ପାଦେ ମୋର ଆଶ
ଶରଣ ପଶଇ ବିପ୍ର ପୀତାମ୍ବର ଦାଶ ।



## ରାଜପୁତ୍ର ମହୀକର୍ଣ୍ଣର ରାତ୍ରରେ ଆଖଡ଼ାଶାଳେ ପ୍ରବେଶ ଓ ମାୟା ନୃସିଂହ ବଧ

ଏଥି ଉତ୍ତାରେ ପରୀକ୍ଷ ମହାରଥି ପୁଣ
ପୁଚ୍ଛେ ମୁନିଙ୍କ ଆଖଡ଼ଶାଳର ବିଧାନ ।
ନୃସିଂହ ପ୍ରଭୁଙ୍କ ଯେଣୁ ଦୈତ୍ୟ ପୁତ୍ରମାନେ
ମନ୍ଦ ପାଞ୍ଚିଲେ ମାରିବେ ବୋଲି ଯାତୁଧାନେ
ତହିଁକି ପାଞ୍ଚିଲେ ବୁଦ୍ଧି କିସ ଜଗନ୍ନାଥ
ଶୁଣିଲେ ବିଷ୍ଣୁ ପାଦରେ ରହିବ ସେ ଚିତ୍ତ ।
ପରୀକ୍ଷ ମୁଖରୁ ଶୁଣି ହସି ଶୁକମୁନି
ବୋଇଲେ ପୁଣି ନୃସିଂହ ଦେବ ପୁଣ୍ୟଧ୍ୱନି ।
ଚତୁର୍ଥ ସାଗର ଏହି ଅଟେ ଗ୍ରନ୍ଥସାର
ନାରଦ ଆଗେ କହନ୍ତି ଯାହା ବେଦବର ।
ପୁରାଣ ପୁରା କରିଣ ବ୍ରହ୍ମାଛନ୍ତି କହି
ଶୁଣନ୍ତି ଯେ ଶ୍ରଦ୍ଧା ବହି ନାରଦ ଗୋସାଇଁ ।
କହିବା ସେ କଥାଯାକ ମଧ୍ୟ ଏବେ ଶୁଣ
ନୃସିଂହ ଅବତାରର ପ୍ରଜ୍ଞା ଯକ୍ଷ ଗୁଣ ।
ନାରଦ ପଚାରନ୍ତି ଯେ ବିଧାତା କହନ୍ତି
ଗ୍ରନ୍ଥସାର ସାବଧାନେ ଶୁଣରେ ସନ୍ତତି ।
ଶ୍ରୀହରି ତ ଅସୁରଙ୍କୁ ଅଟନ୍ତି ଏକଘ୍ନୀ
ବିଦ୍ୟାଗୁରୁ କରି·ଘରେ ରଖିଲା ବ୍ରହ୍ମାଗ୍ନି ।
ଅଗ୍ନିରେ ପଶି ନ କରି କେହୁ ଜୀଇଛି କି
ଜଳେ ପଡ଼ି ନ ମରି କେ ପ୍ରାଣୀ ଆସିଛି କି ।
ଯେବଣ ଯୁବତୀ ଡେଇଁ ପଡ଼ଇ ଅଗ୍ନିକି
ସେ କେବେ ଅଗ୍ନିକୁଣ୍ଡରୁ ପଳାଇ ଆସେକି ।
ଯୁଦ୍ଧକୁ ଅଖୋଡ଼େ ଯାଇ କେହୁ ନ ପାରେକି
ଯେବଣ ଲୋକଟି ଶସ୍ତ୍ର ଧରିଥାଏ ଟେକି ।

ଭଲ ବାକ୍ୟ କହିଲେ ସେ କୋପଇ ଅଧିକି
ତାହାକୁ ମୃତ୍ୟୁ ଜଗିଣ ପାରେ କିରେ ଡାକି ।
ମୂରକୁ କହିଲେ ଭଲ ନ କରଇ ଯେବେ
ମୃତ୍ୟୁକୁ ଡକାଇ ଘରେ ଆଣିଅଛି ଏବେ ।
ପ୍ରଭୁ ଜାଣନ୍ତି ସକଳ ଦୈତ୍ୟ ମୃତ୍ୟୁଭେଦ
ବଦୟନ୍ତି ବେଦବ୍ରହ୍ମା ଶୁଣ ହେ ନାରଦ ।
ପ୍ରାଣୀଙ୍କୁଯେତେବେଳେରେ ଘୋଟେଆସିକାଳ
ବିବେକ ବୁଦ୍ଧି ହରାଇ ହୁଏ ସେ ବିହ୍ୱଳ ।
ମୁରର ଶିରୀ ଛିଡ଼ିଲା ଜାଣ ଏବେ ଆସି
ଆଦ୍ୟରୁ ତନୟ ନାତି ମରାଉଛି ବସି ।
ମୃତ୍ୟୁକୁ ସେ ଧାଉଅଛି ସୁଧାପ୍ରାୟେ ମଣି
ବଡ଼ସି କଣ୍ଟାକୁ ଯେହ୍ନେ ଧାଏଁ ମୀନ ପୁଣି ।
ସେ ରୂପେ ଅଛନ୍ତି ମୁର ପୁତ୍ରେ କ୍ରୋଧ ବହି
ହରିଙ୍କି ମାରିବେ ବୋଲି ପୁତ୍ରେ ଛନ୍ତି ରହି
ବୋଲନ୍ତି ଆମ୍ଭ ବାପର ଶତ୍ରୁ ଯେହେ ଏହୁ
ଏହାକୁ ଯେ ନ ରଖିବା କି ବୋଲି ଗୃହେ ଆଉ
ଅବିଦ୍ୟାଗୁରୁ ହୋଇ ଯେ କରେ ପ୍ରାଣହତ
ଡାହାଣି ହେଲେ ମାତା କି ବର୍ଜେ ଆଉସୁତ
ନୃପତି ହୋଇ ଯେବେ ନ ପାଳେ ପ୍ରଜାକୁଳ
ଆତ୍ମଘାତକୀ ବୋଲନ୍ତି ତାକୁ ଆଦିମୂଳ ।
ଯୁବତୀ ହୋଇ ଯେବେ ନକରେ ପତିସେବା
ପିଶାଚି ପରାୟେ ବୋଲିଣ ତାକୁ ଲେଖିବା ।
ବ୍ରାହ୍ମଣ ହୋଇଣ ଶୂଦ୍ରକୁ ଯେବେ ସେବାକରେ
ନମସ୍କାର ତାହାକୁ ନକରି କୁଳାଚାରେ ।
ଜାରଜାତକା ଲୋକେ ଯେ ଥିବେ ଦେହଧରି
ତାହାଙ୍କ ମୁଖ ଚାହିଁ ନ ଯିବେ ଯାତ୍ରାକରି ।
ଥାଆନ୍ତି ପରହିଂସ୍ରକ ହୋଇ ଯେତେଲୋକେ
ତାଙ୍କୁ ମାଇଲେ ପାପ ନ ଥାଇ ପୃଥ୍ୱୀଯାକେ
ନୃସିଂହ ବେନିଭାଇ ଯେ ଅଟନ୍ତି ସେ ରୂପେ
ମରିବେ ପରହିଂସାରୁ ଜାଣ ଏବେ ଆପେ ।
ଆମ୍ଭ ପିତାଙ୍କୁ ମାରିବେଯେବେ ହୋଇ ଗୁରୁ
ଏହାଙ୍କୁ ନମାରି କେହ୍ନେ ଛାଡ଼ିଦେବା ଘରୁ ।
ଏହି ରୂପେ କୂଟ ପାଞ୍ଚି ମୁରପୁତ୍ରଯାକ
ଶିଖନ୍ତି ନୃସିଂହ ମୁଖୁ ବିଦ୍ୟା ଏକୁ ଏକ ।
ଏମନ୍ତେ ପଢୁ ହୁଅନ୍ତେ ବେଳ ସାତଘଡ଼ି
ଭୁଞ୍ଜିଆସ ବୋଲକରି ଗୃହେ ଦେଲେ ଛାଡ଼ି ।
ଏହା ଶୁଣି ମୁର ପୁତ୍ରେ ନଗରେ ଚଳିଲେ
ସ୍ନାହାନ ସାରି ଭୋଜନ କରିବାକୁ ଗଲେ ।
ଆଚମନ ସାରି ସଭା କରିଣ ବସିଲେ
ଆଜରାତ୍ରେ ଦେବହରି ମାରିବା ବୋଇଲେ ।

କାହାକୁ ଜଣାନାହିଁ ଯେ ରାତ୍ରଅର୍ଦ୍ଧେ ଯାଇ
ମାରିବା ଆଖଡ଼ାଶାଳେ ସେହି ବେନିଭାଇ
ରାତ୍ରଅର୍ଦ୍ଧୁ ଉଠି ଯିବା ଆଖଡ଼ା ଶାଳକୁ
ସମସ୍ତେ ବେଢ଼ିଣ ଘରେ ପୋଡ଼ିବା ବିଷ୍ଣୁଙ୍କୁ
ଏଥୁ ଅନନ୍ତରେ ବାଣୀ ଶୁଣ ହେ ନାରଦ
ନଦୀକି ବିଜେ କରିଣ ଚଳିଲେ ଗୋବିନ୍ଦ ।
ସ୍ନାନ ସନ୍ଧ୍ୟା ତର୍ପଣାଦି ସାରି ଦେବହରି
ମିଳିଲେ ଆଖଡ଼ାଶାଳେ ଆସି ବିଜେ କରି ।
ରାଜନୀତି ଦେବାର୍ଚ୍ଚନେ ବସି ମହାପ୍ରଭୁ
ଗରୁଡ଼ ଉପନମାନ ଦେଲେ ନେଇ ସବୁ ।
ନ ଜାଣଇ କାହାରିକୁ ଋଷିମାନେ ରସି
କରନ୍ତି ନୃସିଂହ ପାଶେ ଦେବାର୍ଚ୍ଚନେ ବସି ।
ନିତ୍ୟପୂଜା କରିଣ ସେ ଯାନ୍ତି ଋଷିମାନେ
ନୃସିଂହ ବିଜୟ କଲେ ମଣୋହିର ସ୍ଥାନେ ।
ଆସନେ ଭାଇଙ୍କୁ ସଙ୍ଗେ ଘେନି ବିଜେକଲେ
ଶ୍ରୀମହାଲକ୍ଷ୍ମୀ ଆସିଣ ସୁଧା ପରଷିଲେ ।
ଭୋଜନ ସାରିଣ ପ୍ରଭୁ ଆଚମନ କରି
ପଲଙ୍କରେ ବିଜେକଲେ ଲକ୍ଷ୍ମୀ କୋଳେ ଧରି
ଗରୁଡ଼ ଭୁଞ୍ଜି ସାରିଣ ସୁଖେ ବସି ଜାଗି
ଆଦିତ୍ୟ ଦେବତା ଆସି ହେଲେ ନିଶାଲାଗି ।
ସନ୍ଧ୍ୟା ଆଳତିମାନ ଯେ ଲାଗି ହୋଇ ପ୍ରଭୁ
ବଡ଼ସିଂହାର ବେଶକୁ କଲେ ଆସି ସବୁ ।
ଏଥୁଅନନ୍ତରେ ରାତ୍ର ଅର୍ଦ୍ଧ ହେଲା ଆସି
ପାଞ୍ଚନ୍ତି ମନେ ମନେ ସେ ମୁରପୁତ୍ରେ ବସି ।
ଅଶୀଳ ଦୈତ୍ୟ ପ୍ରବେଶ ହେଲା ଆସି ତହିଁ
ବୋଇଲା ହେ ରାଜପୁତ୍ରେ ଶୁଣ କହୁଛଇଁ ।
ସମସ୍ତେ ଚାଲ ଏବେ ଯେ ଧରି ଧନୁଶର
ମାରିବା ଆଖଡ଼ାଶାଳେ ପଶି ଚକ୍ରଧର ।
ସମସ୍ତେ ଚାଲ ଉଠିଣ ଯିବା ଏକାବେଳେ
ବେଢ଼େ ପକାଇ ମାରିବା ଘରେ ଆଦିମୂଳେ
ଏରୂପେ କହନ୍ତି କଥା ପାଞ୍ଚ ଦୈତ୍ୟ ବାଳେ
ଶୁଣିଣ ଉଠିଲେ ଧନୁ ଧରି ରାଜାବାଳେ ।
ସତରଲକ୍ଷ କୁମାର ନବଲକ୍ଷ ନାତି
ଧଇଲେ ଦାରୁଣ ପୁତ୍ରେ ଉଠି ଶରଶକ୍ତି ।
ମହୀକର୍ଣ୍ଣ ବୋଇଲା ହେ ଶୁଣ ମିତ୍ରଲାଭ
ପିତାକୁ କହି ମାରିବା ଚାଲ ବାସୁଦେବ ।
ଏହା ଶୁଣି ରାଜପୁତ୍ରେ ଚଳିଲେ ତତ୍ପରେ
ରାଜାଙ୍କୁ କହିଲେ ଭେଟି ଏକାନ୍ତ ମନ୍ଦିରେ ।
ଏହାଶୁଣି ମୁରାସୁର ବୋଲେ ଯାଅ ପୋଏ
ଶତ୍ରୁକୁ ମାରିଣ ଆସ କରି ସବୁ ଜୟେ ।

ଅଶୀଳ ବୋଇଲା ଦେବ ତୋ ଆଜ୍ଞା ପ୍ରମାଣେ
ଆସନ୍ତୁ ଶତ୍ରୁକୁ ଶୀଘ୍ର ମାରି ପୁତ୍ରଗଣେ ।
ମଦନାବତୀର ସ୍ୱାମୀ ଶୁଣି ଖୁସି ହେଲା
ସଂହାରି ଆସ ଯାଇ ମୋ ଶତ୍ରୁକୁ ବୋଇଲା ।
ଶୁଣି ବାହାରିଲେ ସପ୍ତଦଶ ଲକ୍ଷ ପୁତ୍ର
ଆବର ଗଲେକଯେତେ ଥିଲେ ନାତିଗୋତ୍ର ।
ଦାରୁଣ ପୁତ୍ର ଅଶୀଳ ଆଦି ସେନାପତି
ସମସ୍ତେ ଖଡ଼ଗ ଧରି ଗଲେ ନିଶାରାତ୍ରି ।
ଆଖଡ଼ାଶାଳ ଦ୍ୱାରରେ ପ୍ରବେଶିଲେ ଯାଇ
ଦେଖିଲେ ପାହାରୀମାନେ ଜଗିଛନ୍ତି ତହିଁ ।
ସେମାନେ ପୁଛିଲେ ଉଠି ରାଜପୁତ୍ରଯାକୁ
ବୋଇଲେ ରାତ୍ରେ ଆସିଲ କିମ୍ପା ଆଖଡ଼ାକୁ
ରାଜାର ଜ୍ୟେଷ୍ଠ ତନୟ ଯେଉଁ ମହୀକର୍ଣ୍ଣ
ବୋଲଇ କହିବା ଗୁପ୍ତକଥା ତୁମ୍ଭେ ଶୁଣ ।
ଆମ୍ଭର ଅଟନ୍ତି ଜାଣ ବିଦ୍ୟାଗୁରୁ ଯେହୁ
ଆମ୍ଭଙ୍କୁ ମାରିବେ ବୋଲି ଆସିଛନ୍ତି ସେହୁ ।
ବିଦ୍ୟାଗୁରୁ ହୋଇଣ ସେ ଗୁପ୍ତେଛନ୍ତି ରହି
ରାଜାଙ୍କୁ ମାରିବେ ବୋଲି ଛନ୍ତି ବେନିଭାଇ ।
ଏ ଦୁହେଁ କୃଷ୍ଣବଲ୍ଲଭ ରାଜା ଶିଖି ପୁଣି
ନୃସିଂହାବତାର ହୋଇଛନ୍ତି ଏହିକ୍ଷଣି ।
ନାରଦେ କହିଲେ ଏହିକଥା ଗୁପ୍ତକରି
ତେଣୁ ଏହାଙ୍କୁ ଆଣିଲେ ଆମ୍ଭ ରାଜା ଧରି ।
ଶ୍ରୀ ବିଦ୍ୟାଗୁରୁ କରିଣ ଘରେ ରଖିଲେଣି
ରଖନ୍ତେ ସମୟ ବହିଗଲା ବର୍ଷ ବେନି ।
ଏଡ଼େ ଦିନକରେ ଆସି ରାଜା ଆଜ୍ଞା ହେଲା
ନୃସିଂହକୁ ମାରିବାକୁ ଗୁପ୍ତେ ମନ କଲା ।
ତେଣୁ ସେ ଏଠାକୁ ରାଜା ପେଷିଲେ ଆମ୍ଭଙ୍କୁ
ରାତ୍ରଅର୍ଦ୍ଧେ ମାରିଯିବୁ ଏହି ନୃସିଂହକୁ ।
ଶୁଣିଣ ପାହାରୀମାନେ ହେଲେ ଆଚମ୍ବିତ
ବୋଇଲେ ଲାଗିଲା ଏହାଶୁଣି ବିପରୀତ ।
ଆମ୍ଭ ରାଜାଙ୍କୁ କରିବେ ଯେବେ ସେହୁ ନାଶ
ତାହାକୁ ରଖିଲେ ଆଉ ନ ମିଳେ ପୌରୁଷ
ଦେହେ ପଡ଼ିଲେବ୍ରାହ୍ମଣଗୋରୁ ହେଲେଛେଦି
ରଖିବ କେମନ୍ତେ ଜାଣୁ ଜାଣୁ ଏଡ଼େ ବାଦୀ
ଏରୂପେ ବୋଲି ଜଗିଲେ ଦ୍ୱାରୀଚେତାହୋଇ
ମୁରର ପୁତ୍ରେ ଭିତରେ ପଶିଲେ ଧସାଇ ।
ଅସୁର ପୁତ୍ରଙ୍କ ମାୟା ଜାଣି ଭଗବାନ
ପଲ୍ୟଙ୍କୁ ଉଠି ବସିଣ ବିଚାରିଲେ ମନ ।
ବୋଇଲେ ଆରେ ପାପିଷ୍ଠ ଆସମୋତେମାରି
ତୁମ୍ଭର ବଳେ ମୋତେ କି ନାଶ କରିପାରି ।

ବାଲି ଫିଙ୍ଗିଲେ ପର୍ବତ ହୋଏ କିରେ ଗୁଣ୍ଡା
ଅକର୍ମ ଶିଳାକୁ ହାଣି ପାରଇ କି ଖଣ୍ଡା ।
ପକାଇଣ ଧୂଳି କେହୁ ଅବଧିକରେ ପୋତା
ନଳେ ମାପି ଆକାଶେ କେ କରିବ ଗଣିତା ।
ବିଷ୍ଣୁର ଆୟୁଷ କେତେ କେହୁ କଳିପାରେ
ଜୀବ ଥାଇ କେ ବଢ଼ାଇ ବ୍ରହ୍ମା ପ୍ରଳୟରେ ।
ବିଷ୍ଣୁ ଏକା ରହିକରି ବଢ଼େ ଦେହ ଧରି
ସେ ପ୍ରଭୁଙ୍କୁ ଦୁଷ୍ଟେ ଦେଖ ଆସୁଛନ୍ତି ମାରି ।
ସେ ପାପ ପାଞ୍ଚଇ ସେହୁ ଅଚ୍ଛେ ଯାଏ ନାଶ
ଦଇତେ ଅନଳ ଦେବେ ଜାଣୁଜାଣୁ ଝାସ ।
ଗୁରୁବୋଲି ଏହିମାନେ ନମାନିଲେ ଢାଳେ
ଶିଷ୍ୟହୋଇ ଶତ୍ରୁଠାରୁ ବଳିଲେ ଚଣ୍ଡାଳେ ।
ଗୃହକୁ ଆସିଣ ଏବେ ହେଲେ ଶିରୀଚ୍ୟୁତ
ନିବଂଶ ସେ କରୁଅଛି ଆଦ୍ୟ ନାତି ପୁତ୍ର ।
ଯାହାକୁ ସଂସାରେ ଆସି ଅଭାଗ୍ୟ ପଡ଼ଇ
ନାତିଆଦ୍ଦୁ ବଂଶ ତାର ପ୍ରକାଶି ଛିଡ଼ଇ ।
ଏରୂପେ ପାଞ୍ଚନ୍ତେ ମନେମନେ ଦେବରାଜେ
ଗରୁଡ଼ ଶେଷଦେବଙ୍କୁ ଘେନି କଲେ ବିଜେ ।
ଶ୍ରୀ ମହାଲକ୍ଷ୍ମୀଙ୍କୁ ପ୍ରଭୁ କୋଳାଗ୍ରତ କରି
ତହୁଁ ଉଠି ଚାଲିଗଲେ ପକ୍ଷୀରାଜ ପରି ।
କାହାକୁ ଯେ ଜଣାନାହିଁ ଶୂନ୍ୟେଗଲେ ଉଠି
ଦିଶନ୍ତି ଯେ ଶୋଇଲାର ପ୍ରାୟେ ପଲ୍ୟଙ୍କଟି ।
ଏଥୁଅନନ୍ତରେ ତହିଁ ମୁରପୁତ୍ରଯାକ
ବେଢ଼ିଲେମାରିବେ ବୋଲିହୋଇ ଡାକହାକ
ଦେଖିଲେ ପଡ଼ନ୍ତି ଦ୍ୱାରେ କବାଟ କିଳିଣୀ
ବିଷମ ଅର୍ଗଳି ମୁଦ ବଜ୍ରସମ ଜିଣି ।
ପେଲିଲେ ନଚଳେ ସେହୁ ମେରୁକୀଳା ପ୍ରାୟେ
ତାଡ଼ିଲେକ ଶାବଳର ମୁନେ ଦୈତ୍ୟପୋଏ
କବାଟ ମେଲା କରିଣ ପଶିଲେ ଭିତରେ
ଦେଖିଲେ ପଲ୍ୟଙ୍କବେନି ପଡ଼ିଛି ମନ୍ଦିରେ ।
ଦିଶନ୍ତି ଶୟନ କଲା ପ୍ରାୟେ ବେନିଭାଇ
ଯେହ୍ନେ ତହିଁ ଚନ୍ଦ୍ର ସୂର୍ଯ୍ୟଜ୍ୟୋତି ବିରାଜଇ ।
ପାଟ ଶେଯ ମୁଚୁଳା ଯେ ସ୍ୱର୍ଣ୍ଣ ଜିଣିପାଗ
ପଡ଼ିଅଛି ତହିଁପରେ କେତକୀ ପରାଗ ।
ସୁରତନ ଖଟ ଶେଯ ଦିଶେ ଝଟଝଟ
ପଡ଼ିଛି ଅଚଳମେରୁ ପ୍ରାୟେ ରତ୍ନଖଟ ।
ଦଇତ୍ୟ ବୋଇଲେ ଏହିକାଳେ ବେଗେମାର
ଚେତନା ପାଇଲେ କଥା ହେବ ଅପ୍ରକାର ।
ଅବିଶ୍ୱାସ ହେଲା ପ୍ରାୟେ ହେବ କଥାସିନା
ଚେତା ନୋହୁ ପିଟିକର ପଲ୍ୟଙ୍କରେ ଚୂନା ।
ଅସୁର ଉଠିଲେ ଏତେ ପାଞ୍ଚ କୋପଭରେ
ପିଟିଲେ ଗଦାନେଇଣ ପଲ୍ୟଙ୍କ ଉପରେ ।
ଶାବେଳି ଦୁଆଡ଼ କୁନ୍ତ ଆଉ ଏକ ମୁନା
ପରଶୁ ଖପର କାତି ଭୂଷଣ ଫଳନା ।
ଆବର ମୁଦ୍‌ଗର ଭାଲ ଯଷ୍ଟି ଶକ୍ତି ଶୂଳ
ପିଟିଲେ ଖଡ଼ଗ ବଜ୍ର ନେଇ ଦୈତ୍ୟବଳ ।
ଯେତେ ପରକାର ଶର ହାତେ ଧରିଥିଲେ
ପଲ୍ୟଙ୍କ ଉପରେ ନେଇ ସର୍ବ ପ୍ରହାରିଲେ ।
କେ ପିଟଇ କେ ଛେଚଇ ଭୁଷେ ଶୂଳଧରି
କେହୁ ଖଣ୍ଡା ପ୍ରହାରେ କେ ପାଶୁପତ ମାରି ।
ପଲ୍ୟଙ୍କଯାକ ଭାଙ୍ଗିଣ କଲେ ମସି ଗୁଣ୍ଡ
ଗର୍ଜନ୍ତି ଦଇତ ପୁତ୍ରେ ହୋଇଣ ପ୍ରଚଣ୍ଡ ।
ବୋଲନ୍ତି ଆମ୍ଭ ପିତାର ଗଲା ଶତ୍ରୁକ୍ଷୟେ
କରନ୍ତୁଭୋଗ ନିଶ୍ଚିନ୍ତେ ପୃଥ୍ୱୀ ଏବେ ରାୟେ ।
ଏ ଛାର କଥାକୁ ପୁଣି ଭାଳି ବସିଥାନ୍ତି
କାହାରି ଆଗରେ ଏହି କଥା ନ କହନ୍ତି ।
ଆମ୍ଭଙ୍କୁ ଆଗହୁଁ ପିତା ଯେବେ ଥାନ୍ତେ କହି
ଏତେହେଁ ଦିନ ବର୍ତ୍ତିକି ରହିଥାନ୍ତେ ଏହି ।
ଆସିଣ ଦେଖନ୍ତୁ ଏବେ କାଲି ଇଚ୍ଛା ସୁଖେ
ଶତ୍ରୁଛାର କି ପଡ଼ିଲେ ରହେ ଆମ୍ଭ ମୁଖେ
ଅଶୀଳ ବୋଲେ ଏ ଗଲେ ସମସ୍ତଙ୍କ ଶଲ
ରାଜା ଛାମୁରେ କହିବା ଏବେ ଯାଇ ଚାଲ ।
ଏହା ଶୁଣି ମହୀକର୍ଣ୍ଣ ବୋଲେ ଚାଲବେଗେ
କହିବା ସୁଲଭ କଥା ଯାଇ ରାଜା ଆଗେ ।
ଏହିରୂପେ ମନେ ପାଞ୍ଚି ରାଜପୁତ୍ରମାନେ
ଜଗାଇଣ ଦ୍ୱାରୀଙ୍କୁ ରଖିଲେ ସେ ସ୍ଥାନେ ।
ବୋଇଲେ ରାଜାଙ୍କ ଆଜ୍ଞାହେବ ଯେତେବେଳେ
ଶୁଣିଲେ ତେବେତ ଯାଇ ଆସିବୁ ତତ୍‌କାଳେ
ଏରୂପେ ଆସନ୍ତେ କହି ତାଙ୍କୁ ଦୈତ୍ୟପୋଏ
ନିକାଞ୍ଚନେ ବସିକରି ଭାଳେ ଦୈତ୍ୟରାୟେ ।
ବୋଇଲେ ରାତ୍ରେ ପୁତ୍ରଙ୍କୁ ଦେଲି କିମ୍ପା ପେଷି
ଗୁପତେ ତାହାଙ୍କ ସଙ୍ଗେ ନ ଗଲି ମୁଁ ମିଶି ।
ନପୁଣ ପୁତ୍ରଙ୍କୁ ମୋର ପ୍ରମାଦ ପଡ଼ଇ
ଆଗହୁଁ ପାଞ୍ଚି ଏହା ନଗଲି କିମ୍ପା ମୁହିଁ ।
ଏରୂପେ ଭାଳଇ ମୁର ବସି ମନେ ମନେ
ମିଳିଲେକ ପୁତ୍ରେ ଆସି ରାଜା ସନ୍ନିଧାନେ ।
ମହୀକର୍ଣ୍ଣ ମିତ୍ରଲାଭ ମହୀଶୂଳ ଯାଏ
ମହାକାଳ ମହାବଳ ମହୀଶୀଳ ରାୟେ ।
ମହାନ ମହୀଶୀଳ ଯେ ମକରାକ୍ଷ ଆଦି
ମହୀଚନ୍ଦ୍ର ମହେନ୍ଦ୍ର ମନ୍ମଥ ମନଭେଦୀ ।

ଏହି ବିବିଧ ଅକ୍ଷରେ ପୁତ୍ରନାମ ସିନା
ଗଲେ ରାଜାଙ୍କ ଛାମୁକୁ ଉଡ଼େ ବୀରବାନା ।
ଆସିଣ ରାଜା ପାଦରେ କଲେ ନମସ୍କାର
ଦେଖିଣ ଅଙ୍ଗରୁ ଭୟ ଛାଡ଼ିଣ ସେ ମୁର ।
ପୁଚ୍ଛିଲା ସେ ହସିହସି ଆସିଲ କି ବାବୁ
ଶତ୍ରୁମାରି ପାରିଲ କି କହ ଆଗ ସବୁ ।
ପୁତ୍ରେ ବୋଇଲେ ବିନାଶି ଅଇଲୁ ବଇରି
ଗଦାରେ ପିଟିଣ ତହିଁ ଦେଲୁ ତାଙ୍କୁ ମାରି ।
ପଲ୍ୟଙ୍କ ଖଟ ଦୋଳି ସୁପାତି ଶଯ୍ୟା ଯେତେ
ସମସ୍ତେ ଧୂଳି ହୋଇଣ ଗଲେ ଗଦାଘାତେ ।
ଏ ଛାର କଥାକୁ କେତେ ଭାଳୁଥିଲୁ ତୁହି
ଅଚିନ୍ତା ହୋଇ ନିଶ୍ଚିନ୍ତେ ଥାଅ ଏବେ ରହି
ଏହାଶୁଣି ମୁରାସୁର ହେଲା ବଡ଼ ଶ୍ରଦ୍ଧା
ବୋଲଇଅଟନ୍ତି ପୁତ୍ରେମୋର କେତେଯୋଦ୍ଧା
ସାକ୍ଷାତରେ ବିଷ୍ଣୁମାରି ନିଶ୍ଚିନ୍ତ କରିଲେ
ବିଷ୍ଣୁଠାରୁ ବଡ଼ପ୍ରାୟେ ମୋତେ ଏ ଦିଶିଲେ ।
ଏତେବୋଲି ମହାରାଜା ପୁତ୍ରକୁ ପ୍ରଶଂସି
ସବୁରି ମୁଖେ ଚୁମ୍ବନ ଦେଲାକ ଆଶ୍ୱାସି ।
ପୁତ୍ରଙ୍କୁ ସଙ୍ଗରେ ଧରି ଚଳିଲା ଗୃହକୁ
କ୍ରମରେ ଚଳିଲେ ତହୁଁ ଶଯ୍ୟା କରିବାକୁ ।
ଏଥିଅନ୍ତେ ରାଜା ମନେ ଆନନ୍ଦ ହୋଇଲା
ମଦନାବତୀ ପୁରକୁ ତହୁଁ ବିଜେକଲା ।
ବିଷ୍ଣୁ ମରଣ ପୁତ୍ରଙ୍କ ମୁଖୁଁ ଶୁଣିଥିଲା
ତେଣୁ ଆନନ୍ଦ ଚିତ୍ତରେ ଦ୍ୱିଗୁଣ ଜନ୍ମିଲା ।
ମନର ଆନନ୍ଦ କଥା ଅଳପ ଅଟେ କି
ସ୍ୱର୍ଗର ଭୋଗ ପରାୟ ତୁଳନା ନୁହେଁ କି ।
ତାମ୍ବୁଳ ସାରି ପଲଙ୍କେ ରାଜା କଲା ବିଜେ
ରାଣୀକୁ ଚାହିଁଣ ପୁଣି କହେ ନୃପରାଜେ ।
ବୋଲେ ସଖି ଆଜହେଲା ଏ ବଡ଼ ଅଦ୍ଭୁତ
ମାରିଣ ଆସିଲେ ପୁତ୍ରେ ଯାଇ ଜଗନ୍ନାଥ ।
ଆଜରାତ୍ର ଅର୍ଦ୍ଧକାଳେ ଆଖଡ଼ାକୁ ଯାଇ
ଗୁପ୍ତେ ମାରି ଆସିଲେ ନୃସିଂହ ବେନିଭାଇ ।
ତାହାଙ୍କୁ ସଂସାରେ ସିନା ମୋର ଭୟଥିଲା
ଏଥର ପ୍ରଳୟ ଯାଏ ମହୀ ଭୋଗ ହେଲା ।
ପ୍ରଳୟ ହେଲେ ମରିବି ଜାଣିଥାଅ ତୁହି
ଅଚିନ୍ତା ହୋଇ କରିବା ଭୋଗ ଏବେ ମହୀ ।
ମଦନାବତୀ ଏରୂପେ ରାଜାମୁଖୁ ଶୁଣି
ରହିଲା ନିର୍ଜୀବ ପ୍ରାୟ ହୋଇ ଦଣ୍ଡେ ପୁଣି ।
ନୃସିଂହ ପ୍ରଭୁଙ୍କୁ ପୁତ୍ରେ ମାଇଲେ ବୋଲିଣ
ଜିହ୍ୱା କାମୋଡ଼ିଣ ରାଣୀ କହେ ବିଷ୍ଣୁ ଗୁଣ ।

ବୋଇଲେକେଡ଼େ କଥାତକହ ସ୍ୱାମୀ ମୋତେ
ସଜୀବ ବିଷ୍ଣୁର ତୁଲେ ଲାଗିଲ କେମନ୍ତେ ।
ବିଷ୍ଣୁରେ ଦ୍ରୋହ ଅର୍ଜିଣମଲେ କେତେ ମୂଢ଼
ମଧୁକଇଟଭଠାରୁ ତୁମ୍ଭେ ନୁହେଁ ବଡ଼ ।
ପ୍ରଳୟ ଜାତ ତାହାକୁ ହେଲା ଆଶୁଆଣି
ତାହାକୁ ମାରିଣ ପୃଥ୍ୱୀ କଲେ ଚକ୍ରପାଣି ।
ପଞ୍ଚାଶ କୋଟି ଯାଏ ସେ କାୟା ବିସ୍ତାରିଲେ
ତାହାକୁ ମର୍ଦ୍ଦିଣ ହରି ଜଳେ ପକାଇଲେ ।
ସେ ଦଇତାଠାରୁ ତୁମ୍ଭେ କେତେଗୁଣ ବଡ଼
ବୋଲୁଛ ଆସିଲେପୋଏ ମାରି ଯୋଗାରୂଢ଼
ବାହାରେ ପଚାଶକୋଟି ପୃଥ୍ୱୀଆଦି ଯେତେ
ଅଛିଦ୍ରେ ପୂରିଣ ହରି ଅଛନ୍ତି ଜଗତେ ।
ମୁଠାକରି ଧଇଲେ ସେ ଧରା ନ ଦିଅନ୍ତି
ଭକତ ଚିନ୍ତିବାମାତ୍ରେ ଆଗେ ଉଭା ହୁନ୍ତି ।
ସବୁରି ଦୃଷ୍ଟି ଅଗ୍ରରେ ଥାନ୍ତି ବିଜେ କରି
ଚିହ୍ନି ନ ପାରେ ପ୍ରଭୁଙ୍କୁ କେହି ଦେହ ଧରି ।
ଶୂନ୍ୟରୂପେ ଶରୀରର ମଧ୍ୟେ ଥାନ୍ତି ରହି
ସୁଜ୍ଞାନୀ ଚିହ୍ନି ପାରିଲେ ଦେଖେ ଏକା ସେହି ।
ଭକ୍ତ ଚିନ୍ତାକଲେ ତତକାଳେ ଦୃଶ୍ୟହୁନ୍ତି
ଆତଙ୍କ ନାଶିଣ ତାର ଦୃଷ୍ଟି ଅଗ୍ରେ ଥାନ୍ତି ।
ବସିଲେ ବେନିଜନଙ୍କ ମଧ୍ୟେ ଯାହା ଦିଶେ
ଅଟନ୍ତି ସୃଷ୍ଟି କରତା ସେହିଂଜଗଦୀଶେ ।
ଅହିଂସା ସ୍ୱରୂପେ ହରି ଅଙ୍ଗେ ବ୍ୟାପିଥାନ୍ତି
ଅଟନ୍ତି ପରମାନନ୍ଦ ନିରାଲମ୍ବ ମୂର୍ତ୍ତି ।
ପରମାନନ୍ଦ ଅଟନ୍ତି କାହିଁ ହିଂସା ନାହିଁ
ଶତ୍ରୁ ମିତ୍ର ଭେଦନାହିଁ ସବୁ ସମ ତହିଁ ।
ପ୍ରଳୟ ହେଲେ ସମସ୍ତ ସୃଷ୍ଟି ନାଶ ଯାନ୍ତି
ଏକବ୍ରହ୍ମ ଗୋଟି ସେହି ନିରାଲମ୍ବେ ଥାନ୍ତି ।
ଶ୍ରୀନିରାଲମ୍ବେ ପ୍ରଭୁ ଯେ ଦଶ ଅବତାର
ସ୍ୱରୂପ ହୋଇ ନାଶନ୍ତି ପୃଥ୍ୱୀ ଭାରାଭର ।
ମତ୍ସ୍ୟ କୂର୍ମବରାହ ନୃସିଂହ ରୂପ ହୁନ୍ତି
ବାମନ ପରଶୁରାମ ରାମ କୃଷ୍ଣ ମୂର୍ତ୍ତି ।
ବୌଦ୍ଧ କଳିକିରୂପେ ପରକାଶି ଆଦିମୂଳ
ଲୀଳାସାରିଲେ ଚଳିଣ ଯାନ୍ତି ନିତ୍ୟସ୍ଥଳ ।
ତହୁଁ ବଇକୁଣ୍ଠ ପୁରେ ଯାଇ ବିଜେ ହୁନ୍ତି
ଯୁଗକୁ ଯୁଗ ଜନମି ଦୁଷ୍ଟ ସଂହାରନ୍ତି ।
ତାହାଙ୍କୁ ବୋଲୁଛ ପୋଏ ପକାଇଲେ ମାରି
ବ୍ରହ୍ମାଣ୍ଡ ଯାକରେ ବ୍ୟାପି ଅଛନ୍ତି ଶ୍ରୀହରି ।
କ୍ଷଣକରେ ଯେଉଁ ପ୍ରଭୁ ଲୀନ ହୋଇଯିବେ
କ୍ଷଣକରେ ଆସି ପୁଣି ଆଗେ ଉଭା ହେବେ ।

ସହସ୍ରେକ କୋଟିବାଣ ମାଇଲେ ଯା ଅଙ୍ଗେ
ନଭେଦି ଗୁଣ୍ଡ ହୋଇଣ ପଡ଼େ ସେହିଲାଗେ ।
କୋଟି କୋଟି କରି ମାରୁଥିଲେ ବଜ୍ରବାଣ
ନଭେଦି ଅକର୍ମ ଶିଳା ପରି ନାରାୟଣ ।
ଅଗ୍ନିରେ ନ ପୋଡ଼ି ଯେହ୍ନୁ ଜଳେ ନ ବୁଡ଼ଇ
ପବନରେ ନଉଡ଼େ ସେ ଖଡ଼ଗେ ନ ଛିଡ଼ଇ ।
ଛେଛିଲେ କୋଡ଼ିଲେ ଯାର ନୁହେ ଲୋମ ବାଙ୍କ
ତାଙ୍କୁ ବୋଲୁଛ ମାଇଲେ ବୋଲି ପୁତ୍ରଯାକ ।
ପୁତ୍ରଙ୍କର ଆଶା ତେବେ ଛାଡ଼ ନୃପମଣି
କି ବୋଲି ରଖିଲ ଗୁରୁ କରି ଚକ୍ରପାଣି ।
ଆଖଡ଼ାଶାଳକୁ ତୁମ୍ଭେ କାଲି ଦେଖ ଯାଇ
କିରୂପେ ବିଜୟ କରିଥିବେ ଭାବଗ୍ରାହୀ ।
କରିବ ମୋହ ବୋଲ ଯେବେ ସ୍ୱାମୀଶୁଣ
କୁଟୁମ୍ବଯାକ ହେ ଚାଲ ପଶିବା ଶରଣ ।
ଶରଣ ପଶିଲେ ଜାଣ କରିବେ ସେ ଗତି
ପରମ ଦୟାଳୁ ପୁଣ ସେହି ଲକ୍ଷ୍ମୀପତି ।
ସର୍ବଦା ଅଶରଣ ଯେ ପ୍ରାଣୀ ହୋଇଥିବ
ତାଙ୍କୁ ଶରଣ ଦିଅନ୍ତି ଆଗେ ବାସୁଦେବ ।
ଆଗରେ ଯାଉଛି ମୁହିଁ ପଛେ ତୁମ୍ଭେ ଥାଅ
ଦର୍ଶନ କରିବା ସଙ୍ଗେ ନେଇ ସବୁ ପୁଅ ।
ସାକ୍ଷାତେ ଗୁରୁ ଅଟନ୍ତି ସିନା ଭଗବାନ
ଚାଲ ଦରଶନ କରି ଆସିବା ବହନ ।
ମୁର ବୋଇଲେ ହୋଇଲୁ ସଖିକିରେ ବାଇ
ମଲା ବେଳକୁ ସେବା ତୁ କରିବୁ କିପାଇଁ ।
ଆଜ ରାତ୍ର ଅର୍ଦ୍ଧରେ ତ ସବୁ ପୋଏ ମୋର
ମାରିଣ ଆସି ସେମାନେ ଛନ୍ତି ଯେଝା ଘର ।
ମୃତ ଶବକୁ ଦର୍ଶନ ଯାଇ କରିବୁ କି
କୃଷ୍ଣବଲ୍ଲଭର ପୋଏ ଜୀଇଁ ଆସିବେକି ।
ବିଶାଶଏ ଯୋଜନ ଯେ ଅଟେ ମୋର କ୍ଷିତି
ତହିଁରୁ ଅର୍ଦ୍ଧେକ ଭାଗ ମିଳେ ତୋତେ ବୃତ୍ତି ।
ତେଣୁ ତୁହି କହିବାକୁ ହେଲୁ ମୋତେ କ୍ଷମ
ଆନ କେହି କହିଥିଲେ ହନ୍ତା ପୂର୍ବଜନ୍ମ ।
ଏହାଶୁଣି ମହାଦେଈ ବସେ ହୋଇ ତୁନି
ଶୁଣରେ ବାବୁ ନାରଦ କହେ ପଦ୍ମଯୋନି ।
ଏଥି ଉତ୍ତାରେ ପାହିଲା ଆସି ପୁଣି ରାତି
ପୂର୍ବଦିଗରୁ ଉଦୟ ହେଲେ ଛାୟାପତି ।
ଯେ ବିଧିରେ ନିତ୍ୟକର୍ମ ସାରିଲେ ଯେଝାରେ
ଆଖଡ଼ାଶାଳକୁ ସଜ ହେଲେ ଦୈତ୍ୟବୀରେ ।
ବୋଇଲେ କାଲି ରାତ୍ରେ ଯେ ଶତ୍ରୁ ନାଶିଲଇଁ
କିରୂପେ ହେଲେ ଦେଖିବା ତାର ଶବଯାଇ ।
ଏରୂପେ ମନେ ପାଞ୍ଚି ଯେ ଯାହା ଶସ୍ତ୍ର ଧରି
ବାହାରିଲେ ମୁରପୁତ୍ର ଅଶୀଳାଦି କରି ।
ଆଖଡ଼ାଶାଳରେ ଯାଇ ହେଲେ ପରବେଶ
ନୃସଂହ ଶରଣ ବିପ୍ର ପୀତାମ୍ବର ଦାଶ ।



## ମହୀକର୍ଣ୍ଣ ଦ୍ୱାରା ଆଖଡ଼ାଶାଳ ଦଗ୍ଧ ଓ ଗରୁଡ଼ ହସ୍ତେ ମୁର ପୁତ୍ରଙ୍କର ମୃତ୍ୟୁ

ବଦୟନ୍ତି ବେଦବ୍ରହ୍ମା ଶୁଣ ହେ ନାରଦ
ଜାଣିଲେ ଦୈତ୍ୟଙ୍କ ମାୟା ଯାକ ସଦାନନ୍ଦ ।
ଅଲେଖ ନିରଞ୍ଜନ ଯେ ଅଟେ ଯାର ଦେହୀ
ଶ୍ରୀ ନିରାକାର ପୁରୁଷ ଯେଉଁ ଭାବଗ୍ରାହୀ ।
ପ୍ରକୃତ ଭେଦକୁ ଘେନିଥାନ୍ତି ସର୍ବ ଦେହେ
ଏକଇ ଆତ୍ମା ଜ୍ୟୋତି ନିର୍ଗୁଣ ନିରାମୟେ ।
ଶ୍ରୀନିରାଲମ୍ବ ପୁରୁଷ ପ୍ରଭୁ ବ୍ରହ୍ମରାଶି
ମଞ୍ଚ ପୁରରେ ଜନ୍ମନ୍ତି ଶରୀର ପ୍ରକାଶି ।
ସେ ପ୍ରଭୁ ମହିମା କରିପାରିବ କେ ଅନ୍ତ
କୃଷ୍ଣବଲ୍ଲଭ ଗୃହରେ ହେଲେ ଆସି ଜାତ ।
ମାୟା ମୂର୍ତ୍ତିକୁ ଗୃହରେ ରଖି ଦେବରାଜେ
ମୁରାସୁରର ପୁରକୁ କରିଲେକ ବିଜେ ।
ପଢ଼ାଉଥିଲେ ଯେ ବିଦ୍ୟାଗୁରୁ ହୋଇ ଘରେ
ମାରନ୍ତେ ଦଇତ୍ୟ ଗୁପ୍ତେ ରହିଲେ ଶୂନ୍ୟରେ ।
ଭାବେ ଭଜିବା ବୋଲିଣ ଥିଲେ ଶୂନ୍ୟେଯାଇ
ଦୈତ୍ୟଙ୍କୁ ନୃସଂହ ଯିବାକଥା ଜଣାନାହିଁ ।
ଯେତେବେଳେ ପଶି ଭାଙ୍ଗିଲେ ଚଣ୍ଡାଳେ
ଶୂନ୍ୟରେ ଥାଇ ହସନ୍ତି ପ୍ରଭୁ କୁତୂହଳେ ।
ବୋଲନ୍ତି ପାପୀ ଦଇତ ଅଟୁ କେଡ଼େ ମନ୍ଦ
ହସ୍ତ ଘୋଡାଇଲେ କିବା ଲୁଚେ ସ୍ୱର୍ଗଚାନ୍ଦ ।
ଉଡ଼ି ଯାଇ ପବନକୁ ଧରିକେ ପାରିଛି
ସମୁଦ୍ରର ନୀର ବୋହି କେହୁ ଶୁଖାଇଛି ।
ଅଙ୍ଗୁଳିରେ ମାପି କେହୁ ପୃଥ୍ୱୀ କଳିଛି କି
ବ୍ରହ୍ମାଣ୍ଡରେ ଆତ୍ମାକୁ କେ ଗଣି ପାରିଛି କି ।
ବର୍ଷାଧାରା ନଦୀ ବୋଲି କେହି ଗଣିଛି କି
ଅନନ୍ତ ବିଷ୍ଣୁଙ୍କୁ କେହୁ ମାରି ପାରିଛି କି ।
କି ବୋଲିଣ ମୋତେ ମାରି ଆସିଛ ଦନୁଜ
ଥାଅ ଦିନକ ବଞ୍ଚି ବୁଝିବା ରାତ୍ର ଆଜ ।
କରନ୍ତି ଯେ ନାରାୟଣ ସବୁ ହୃଦେ ବିଜେ
କି ରୂପେ ତାହାଙ୍କୁ ମାରି ପାରିବେ ଦନୁଜେ ।
ଦଇବ ଯୋଗେ ଅଖଡ଼େ ଯିବ ତୁମ୍ଭେ ନାଶ
ଆଜିଠାରୁ ଜୀବନକୁ ଛାଡ଼ିଥାଅ ଆଶ ।

ଚଳଆଡୁ ବଂଶ ଆଗ କରାଇଛି କ୍ଷୟେ
ଏହିକର୍ମ ଅର୍ଜିଥିଲେ ତୁମ୍ଭ ବାପ ମାଏ ।
ଆଜି ଦିନଯାକ ବଞ୍ଚ ରହିଥାଅ ବାଳ
ଏତେବୋଲି ଆକାଶରୁ ଖସି ଆଦିମୂଳ ।
ଆଖଡ଼ାଶାଳେ ମିଳିଲେ ଆସି ଲକ୍ଷ୍ମୀକାନ୍ତ
ଦେଖିଲେକ ହୋଇଅଛି ଶଯ୍ୟାଧ୍ୱସ୍ତ ବ୍ୟସ୍ତ ।
ଗରୁଡ଼ ପୃଷ୍ଠରେ ବସି ପ୍ରଭୁ ବେନିଭାଇ
ବିଶ୍ୱକରମାକୁ ଚିନ୍ତା କଲେ ଭାବଗ୍ରାହୀ ।
ତତକ୍ଷଣେ ବିଶ୍ୱକର୍ମା ମିଳିଲେକ ବେଗେ
ବିଷ୍ଣୁ ବୋଇଲେ ସଜାଡ଼ ଶଯ୍ୟା ଏହି ଲାଗେ ।
ଶୁଣି ବିଶ୍ୱକର୍ମା ଦେଲା ନିରିମାଣ କରି
ଦଣ୍ଡତ୍ୟେ ଆସିବେ ବୋଲି ଗଲା ସେ ବାହାରି ।
ବିଶ୍ୱକର୍ମା ଚଳିଯାନ୍ତେ ନିରିମାଣି ଶଯ୍ୟା
ତହିଁପରେ ବିଜେ କଲେ ଆସି ଦେବରାଜା ।
ନିଶ୍ଚିନ୍ତରେ ତହୁଁ ନିଦ୍ରାଗଲେ ବେନିଭାଇ
ଗରୁଡ଼ ପହରା ଜଗି ରହେ ଗୁପ୍ତ ହୋଇ ।
ନୃସିଂହକୁ ସେବାକରି ବସିଲା ନିଶ୍ଚିନ୍ତେ
ମାୟାରେ ବିଷ୍ଣୁଙ୍କୁ ସେବା କରେ ରହି ଗୁପ୍ତେ ।
ଶ୍ରୀନୃସିଂହ ଆଜ୍ଞାକୁ ସେ ନ ହୁଅଇ ଦୃଶ୍ୟ
ମାୟା ପଟଳ ଢାଙ୍କିଣ ଛନ୍ତି ଜଗଦୀଶ ।
ନ ଦେଖେ ଗରୁଡ଼ କଲା ସେବା କେହିନେତ୍ରେ
ଏଥିଉତ୍ତାରୁ ମିଳିଲେ ଆସି ଦୈତ୍ୟ ପୁତ୍ରେ ।
ଦେଖିଲେ ପଲ୍ୟଙ୍କେ ପ୍ରଭୁ ଛନ୍ତି ନିଦ୍ରାଯାଇ
ଖଟରେ ଶୋଇ ଅଛନ୍ତି ଅଚେତନ ହୋଇ ।
ନିଶି ପାହିଣ ସମୟ ହେଲା ବେନି ଘଡ଼ି
ଅଛନ୍ତି ନିଶ୍ଚିନ୍ତେ ଶୋଇ ବାମକର ମାଡ଼ି ।
ଅଚେତା ପରାୟେ ଶୋଇଛନ୍ତି ଭଗବାନ
ମନେ ପାଞ୍ଚନ୍ତି କରିବେ କିସ ଯାତୁଧାନ ।
ଏହିରୂପେ ମନେ ପାଞ୍ଚ ଅଛନ୍ତି ସେ ଶୋଇ
ତାହା ଦେଖି ଚମତ୍କାର ହେଲେ ଦୈତ୍ୟସାଇଁ ।
ବୋଇଲେ ବଡ଼ ମାୟାବୀ ଅଟେ ଏ ଗୋବିନ୍ଦ
ଏଡ଼େ ପ୍ରଭାତୁକି ହୁହେଁ ଯାଇଛନ୍ତି ନିଦ ।
ରାତିରେ ମାଡ଼ ଖାଇ ସେ ମଲେ ପରା ବୋଲି
ପୁନରପି ଶୋଇ ପଡ଼ିଛନ୍ତି ଗଡ଼ଘାଲ ।
ପଚାରିଲେ କହିବା କି ବୋଲି ତାହା ଆଗେ
ଥୋକେବୋଇଲେ କହିବା କଥା ନାନା ବେଗେ ।
ବଞ୍ଚାଇଣ ବୁଝାଇବା କିସ ଅଛି ଜାଣି
ଉଦାର ଅପାଣ୍ଟୁ କି ସେ ଅଟେ ଚକ୍ରପାଣି ।
ଏତେ ମାଡ଼ ଖାଇ ପୁଣି ଖଟେ ଅଛି ଶୋଇ
ଚତୁରଲୋକ ହୋଇଲେ ଯାଆନ୍ତା ପଳାଇ ।

ବୁଝିଲେ ତ ଦ୍ୱିଜମାନେ ପୁଣି ଅଳସୁଆ
ଖାଇବାକୁ ପାଇଲେ ନ ଯାନ୍ତି ଆନଗାଆଁ ।
ଏହିରୂପେ ସିନା କୃଷ୍ଣବଲ୍ଲଭର ପୋଏ
ରାଜାର ଆଦର ଘେନି ରହିଲେକ ହୁହେଁ ।
ଏ ରୂପେ ବୋଲି ପାଶରେ ମିଳନ୍ତେ ଦଇତ
ମିଛେ ମିଛେ ଖଣ୍ଡିକାଶ ଦେଲେ ଜଗନ୍ନାଥ ।
ବୋଇଲେକ ଶୁଣ ଆରେ ଅସୁର ବାଳକେ
ତୁମ୍ଭର ଅନ୍ୟାୟ ସରି ନାହିଁ ପୃଥ୍ୱୀଯାକେ ।
ସନ୍ଧ୍ୟା କରିବାକୁ ଆମ୍ଭେ ନଦୀକୁ ଯାଆନ୍ତେ
ସେଠାକୁ ବୋଲିଣ ରଡ଼ିଶୁଭେ ଅଲୋକିତେ ।
ନିତ୍ୟକର୍ମ ସାରି ଆମ୍ଭେ ଆସନ୍ତେ ଏଠାକୁ
ଦେଖିଲୁ ଆସନ ଶଯ୍ୟା ନାହିଁ ଶୋଇବାକୁ ।
ତାହା ଦେଖିଣ ଆମ୍ଭକୁ ଲାଗେ ମହାଭୟେ
ପକାଇ ଶୋଇଛୁ ଆନ ଶଯ୍ୟା ଆନଠାଏ ।
କହରେ କାହିଁକି କର ଏଡେ ଉପଦର୍ପ
ଏହାକର ବୋଲିଣ କି କହେ ତୁମ୍ଭ ବାପ ।
ଯାଅ ଯା ବୋଇଲେ ଆମ୍ଭେ ସୁଖେ ଚଳିଯାନ୍ତୁ
ମହତ୍ୱ ବୁଡ଼ାଇ ଏଥେ କିମ୍ପା ରହିଥାନ୍ତୁ ।
ଶୁଣି ମୁରାସୁର ପୋଏ ମନେ ବଡ଼ ଭାଳି
ବଞ୍ଚାଇ କଥା କହନ୍ତି ଥୋକେ ଆଗେ ମିଳି ।
ଅସୁର ବୋଇଲେ ତୁମ୍ଭେ ପୁଚ୍ଛିଲହେ ଯାହା
ଛାମୁରେ କହିବାକୁ ଯେ ଲାଗେ ଭୟ ତାହା ।
ତଥାପି ଗୁରୁଙ୍କୁ ଯେବେ ନ କହିବା ଫେଡ଼ି
ମନରୁ ଦୋଗଧା କେବେ ନ ଯିବ ସେ ଛାଡ଼ି ।
ଏତେକ କହି ବିନୀତ ହୋଇ ଦୈତ୍ୟ ପୋଏ
ବୋଇଲେ କହୁଛି ଶୁଣ ପ୍ରଭୁ ଦେବରାୟେ ।
ଆମ୍ଭେ ଯେ କାଲି ରାତ୍ରେ ଅନ୍ଧାରି ବିଜେକଲୁ
ଆସୁ ଆସୁ ବୁଲୁ ବୁଲୁ ଏଠାରେ ମିଳିଲୁ ।
ଦେଖିଲୁ ମହାସର୍ପେକ ପଡେ ଆସିଦ୍ୱାରେ
ତାହାକୁ ଦେଖିଣ ଗଦା ପିଟି ପଲ୍ୟଙ୍କରେ ।
ଗଦାଘାତେ ସେହୁ ଅହି ଅତି ତରଛରେ
କାହିଁ ଯାଇ ପଶିଗଲା ବିବର ଭିତରେ ।
ଅହି ପଳାନ୍ତେଣ ଆମ୍ଭେ ପୁରକୁ ଚଳିଲୁ
ବୁଝିବା ସକାଳୁ ବୋଲି ଛାମୁକୁ ଆସିଲୁ ।
ଶ୍ରୀଗୋବିନ୍ଦ ବୋଇଲେ ଯେ ପ୍ରମାଣ ଏକଥା
ଗୋତ୍ର ହେଲେ ସର୍ପକୁ ଯେ ନରଖେ ସର୍ବଥା ।
ତୁମ୍ଭର ହୃଦୟ କଥା ଆମ୍ଭଙ୍କୁ ଯେ ଜଣା
ଆନକୁ ଏ ହୃଦକଥା ଅଟଇ ଅଜଣା ।
ଯାହା କରିବେ ସେ ପ୍ରଭୁ ଅବଶ୍ୟ ତା ହେବ
ଯାହା ଯୋଗ ଥିବ ତାହା ରଖି କେ ପାରିବ ।

ଆଜ ମଧ ଏଠାକୁ ଆସିବ ସର୍ପ ଧାଇଁ
ଏଥକୁ ସେ ତାତପର୍ଯ୍ୟେ ଥିବ ତୁମ୍ଭେ ରହି ।
ନିଶାକାଳେ ସେ ହେଉଛି ଧାଡ଼ି ସବୁଦିନେ
ଏହି କଥା ଜଣା ଆସି ହେଲା ଏତେଦିନେ ।
ମହାକ୍ଷତ୍ରୀ ହୋଇ ଆମ୍ଭେ ଡରିବା କାହିଁକି
ଯେ ଯାହାର ଦେହ ବଳ ଶଉର୍ଯ୍ୟ ନାହିଁ କି ।
ପ୍ରଭୁଙ୍କୁ ମେଲାଣି ମାଗି ଚଳିଲେ ଚଞ୍ଚଳେ
ସ୍ନାନସାରିଣ ଭୋଜନେ ଗଲେ ତତକାଳେ ।
ବସିଅଛି ଏକାନ୍ତରେ ଦୈତ୍ୟକୁଳ ରାୟେ
ମୁରାସୁର ପାଶେ ଯାଇ ମିଳିଲେ ତନୟେ ।
ସକଳ ତନୟମାନେ ଦେଖାକଲେ ଯାଇଁ
କହନ୍ତି ଆଖଡାଶାଳ କଥା ହୃଷ୍ଟ ହୋଇ ।
ବୋଲନ୍ତି ଶତ୍ରୁକୁ କାଲି ମାରିକରି ଗଲୁ
ଏବେ ନମରି ସେ ବସିଅଛନ୍ତି ଦେଖିଲୁ ।
ଏହି କଥାମିଛ ଯେବେ ପୁଛ ଅଶୀଳକୁ
ଅଶୀଳ ବୋଲନ୍ତି କିସ କହିବି ରାଜାଙ୍କୁ ।
କେତେ ମାଡ଼ ମାରି ରାତ୍ରେ ଆସିଥିଲୁ ଯାଇଁ
ଦେଖିଲୁ ବସି ଅଛନ୍ତି ଏବେ ବେନିଭାଇ ।
ମୁର ବୋଇଲା ସବୁ ମୁଁ ଜାଣିଛିରେ ବାପ
ବିଷ୍ଣୁଙ୍କୁ ମାରିବା କଥା ଅଟେ ମହାଦର୍ପ ।
ଦିଗ ବିଜେ କାଳରେ ମୁଁ ତାକୁ ପୋଡ଼ିଥିଲି
ଏବେ ସେ ଜନ୍ମିଲା ଆସି ବଦରିକା ପଲ୍ଲୀ ।
ସେହି ବିଷ୍ଣୁ ବୋଲି ତାକୁ ଆଣିଲଇଁ ଧରି
ପୋଷି ପାଳି ଥୋଇ ଏବେ ନ ପାରିଲି ମାରି ।
ଏବେ ସେ ଦିନକୁ ଦିନ ହୋଇଲେ ସିଆଣ
କି ରୂପେ ମାରି ତାହାକୁ ଘେନି ବେଗେ ପ୍ରାଣ ।
ଅଶୀଳ ବୋଇଲା ସେ ନ ଥିଲେ ପଲ୍ୟଙ୍କରେ
ପ୍ରକୃତ ସେକାଳେ ଯାଇଥିଲେ ନଦୀତୀରେ
ଆଜ ଏକାଳେ ଜଗିଣ ତାକୁ ସଂହାରିବୁ
ଚାରିଦିଗେ ରହି ଆଜ ଘରପୋଡ଼ି ଦେବୁ ।
ତ୍ରିଶୂଳକୁ ବାନ୍ଧି ଦ୍ୱାରେ କିଳିବୁ କବାଟ
ଅମୁହାଁ ଦେଉଳ ପ୍ରାୟ ନ ପାଇବେ ବାଟ ।
ତହୁଁ ବଞ୍ଚିଲେ ମାରିବୁ ବେଢ଼ି ଶସ୍ତ୍ରାଘାତେ
ମୁଦ୍‌ଗର ଗଦା ଆବର କୁନ୍ତ ଅସିପତ୍ରେ ।
ଆମ୍ଭର ମୁଖରୁ ଆଜ ପାରିବ କେ ବର୍ତ୍ତି
ସତରଲକ୍ଷ ପୁତ୍ର ଯେ ନବଲକ୍ଷ ନାତି ।
ପାହାରିମାନେ ଅଛନ୍ତି ପୁଣ ତହିଁ ଜଗି
ସହସ୍ରେ ମତ୍ତଗଜ ପୁଣି ଦ୍ୱାରେ ଛନ୍ତି ଜଗି ।
ବ୍ରାହ୍ମଣ ବେନି ଜନଙ୍କୁ କିମ୍ପା ଏତେ ଡରୁ
ତୋର ଶତ୍ରୁ କ୍ଷୟ ଗଲା ଜାଣ ଆଜଠାରୁ ।

ମୁରଦୈତ୍ୟ ଶୁଣି କରେ ଆଉଁଷଇ ନିଶ
ମନେ ପାଞ୍ଚଇ କରିବେ ବିପ୍ର ମୋର କିସ ।
ବୁଝିଲେ ତ ସୈନ୍ୟବଳ ଆଣିନାହିଁ କିଛି
ମାଛଙ୍କୁ ପୋଷିଲା ପ୍ରାୟ ଘରେ ମୁଁ ପୋଷିଛି ।
ନିନ୍ଦା ଅପଖ୍ୟାତିକି ଯେ ଡ଼ରେ ସିନା ମୁହିଁ
ଗୁପତେ ମରାଉଛି ନ ଜାଣୁ ବୋଲି କେହି ।
ନୋହିଲେତ ଆଜଯାଏ ଥାନ୍ତେ ସେକି ଘରେ
ଏକା ଗଦାକରେ ପେଶିଦ୍ୟନ୍ତି ଯମପୁରେ ।
କିରୂପେ ମାରିବେ ଏବେ ଅବାପୁତ୍ର ମୋର
କାଲିକି ସମସ୍ତ କଥା କରିବା ବିଚାର ।
ଏମନ୍ତେ ସେ ପାଞ୍ଚୁ ପାଞ୍ଚୁ ବୁଡ଼ିଗଲା ବେଳ
ଯେ ଯାହାର ବିଧିମାନ ସାରିଲେ ସକଳ ।
ନିଶବଦ ହ୍ୱନ୍ତେ ଦୈତ୍ୟ ନଗ୍ରୁଁ ଗଲେ ଚଳି
ଗୁପତେ ଯାଇ ଆଖଡ଼ାଶାଳ ମଧ୍ୟେ ମିଳି ।
ରକ୍ଷାଲୋକଙ୍କୁ ବୋଲନ୍ତି ତୁମ୍ଭେମାନେ ଶୁଣ
ନିର୍ବନ୍ଧରେ ଥାଅ ଜଗି ଚାରି ପାରୁଶେଣ ।
କାଲି କଥା ତୁମ୍ଭେ କେହି ନ ପାରିଲ ଜାଣ
ନଦୀକି ଗଲେ ନୃସିଂହ ବେନିଭାଇ ପୁଣ ।
ସେ କଥା ଗୋଚରକରି ନ ପାରିଲେ କେହି
ଏବେ ନିଶବଦେ ଜଗିଥାଅ ସର୍ବେ ରହି ।
କରିବା ନାନା ଉପାୟ ପାଞ୍ଚି ଶତ୍ରୁ ନାଶ
ତେବେ ଯାଇ ରାଜାମୁଖେ ପାଇବା ପୌରୁଷ ।
ଏହିରୂପେ ପ୍ରହରୀଙ୍କୁ କହେ ମହୀକର୍ଣ୍ଣ
ଶୁଣି ରକ୍ଷାଲୋକମାନେ ଜଗିଲେ ବହନ ।
ଏଥୁଅନନ୍ତରେ ବାଣୀ ଶୁଣ ହେ ନାରଦ
ନିଶ୍ଚିନ୍ତେ ପଲ୍ୟଙ୍କେ ଶୋଇଥିଲେ ସେ ଗୋବିନ୍ଦ ।
ଅସୁର ଆସିବା କଥା ଜାଣି ଜଗଜ୍ୟୋତି
ଉଠାଇ ଶେଷଦେବଙ୍କୁ ବସିଲେ ତଡ଼ତି ।
ବୋଇଲେ ଏଠାରେ ଆମ୍ଭେ ଥିବାରେ କି କାର୍ଯ୍ୟ
ଏତେ ପାଞ୍ଚଣ ପଦାକୁ ଗଲେ ଦେବରାଜ ।
ଗରୁଡ଼କୁ ବୋଇଲେ ହେ ଶୁଣ ପକ୍ଷୀବର
ସବୁ ଅବତାରେ ଅଟୁ ତୁ ବାହନ ମୋର ।
ଏଣୁ ବୋଲନ୍ତି ତୋହର ନାମ ବିଷ୍ଣୁରଥ
ସେ ରଥରେ ବସି ଏକା ପାରେ ଜଗନ୍ନାଥ ।
ମୋହର ଦେହ ଲାଗନ୍ତେ ନିର୍ମଳ ତୋ ଦେହୀ
ତୋହର ଜନମ ମଧ ଜାଣେ ସର୍ବ ମୁହିଁ ।
ସହସ୍ର ବରଷ ଯାଏ ଡିମ୍ବରୂପେ ଥିଲୁ
ଜ୍ଞାନରେ ହେତୁ ରଖିଣ ପ୍ରକାଶ ତୁ ହେଲୁ ।
ସେ ଡିମ୍ବ କୋଷରୁ ଜନ୍ମି ବହିଲୁ ଯେ ମୋତେ
ମୋର ଆଗେ ରହି ସେବାକରୁ ଦିବା ରାତ୍ରେ ।

ତୋହର ମୋହର ମଧ୍ୟେ ଭୋଗଲାଗି ହେଲେ
ଲୋକମାନଙ୍କୁ ନିର୍ମାଲ୍ୟ ହୁଏ ସେବାକଲେ ।
ସୁବର୍ଣ୍ଣ ପଦ୍ମ ପତ୍ରେ ତୁ କଲୁ ଜ୍ଞାନ ପାନ
ତେଣୁ ନାମ ତୋହରଟି ହୋଇଲା ସୁପର୍ଣ ।
ତୋହର ଭାଇ ଅରୁଣ ସୂର୍ଯ୍ୟରଥେ ଗମେ
ପଞ୍ଚାଶକୋଟି ଯୁଣ ଯେ ସଂସାରରେ ଭ୍ରମେ ।
ସେହିରୂପେ ପିଠିରେ ତୁ ଥାଉମୋତେ ବହି
ମାତା ଛଳେ ଜନକଙ୍କୁ ଖୋଜିଲୁ ତୁ ଯାଇ ।
ଗଜ କଚ୍ଛପକୁ ପୁଣି ଲକ୍ଷେ ବର୍ଷ ଯାଏ
ଉଡ଼ିଲୁ ଧରିଣ ଗୋଡ଼େ ମହାଶୂନ୍ୟମୟେ ।
ତୋର ଯେଉଁ ଭାରା ଗଜ କଚ୍ଛପର ଭାରା
ଯହିଁରେ ବସୁ ବହି ନପାରେ ବସୁନ୍ଧରା ।
ଚିନ୍ତନ୍ତେ ମନରେ ଭୟ କରିମୋତେ ତୁହି
ଶ୍ରୀଅଙ୍ଗରୁ ଭୁଜକାଢ଼ି ପ୍ରକାଶ କଲଇଁ ।
ସେ ଭୁଜ ପରେ ବସିଲୁ ତୁହି ଦୃଢେ ମାଡ଼ି
ଗଜକଚ୍ଛପ ଦୁହିଁଙ୍କୁ ଧରିଥିଲୁ ଭିଡ଼ି ।
ଭୁଜରେ ବସିଲୁ ମୋର ଲକ୍ଷେ ବର୍ଷ ଯାଏ
ଭୁଞ୍ଜିଲୁ ସୁଖେ ବସିଣ ଗଜ କଚ୍ଛକାୟେ ।
ତାହାଙ୍କୁ ଭକ୍ଷିଣ ତୁହି ସଂସାର ରଖିଲୁ
ସେହିଦିନୁ ସେବି ମୋତେ ପାରୁଶେ ରହିଲୁ ।
ଏବେ ମୁହିଁ ଜନ୍ମ ହୋଇପଡ଼େ ଦୈତ୍ୟହାତେ
ଏଥିରୁ କିପରି ପାରିକର ବେଗେ ମୋତେ ।
ଆଖଡ଼ାଶାଳକୁ ଯେବେ ଆସିଛନ୍ତି ଦୈତ୍ୟ
ଏକାମାଡ଼େକ ହୁଅନ୍ତୁ ସର୍ବେ ପ୍ରାଣେ ହତ ।
ପାଚେରୀ ଘର ଦୁଆର ସବୁ ଟାଳି ନିଅ
ବଡ଼ବାନଳେ ସବୁଙ୍କୁ ପୋଡ଼ି ଦହିନିଅ ।
ଯେତେକ ଦଇତ୍ୟ ଏଥେ ଜଗିଛନ୍ତି ଆସି
ମୁରର ମାହୁନ୍ତ ଗଜ ଯେତେ ନାତିଶିଷି ।
ସମସ୍ତଙ୍କୁ ମାରି ଅବ୍‌ଧି ମଧ୍ୟେ ପକାନେଇ
ଗୋଟିଏ ଉବୁରି ଏଥୁ ନଯାନ୍ତୁ ସେ କେହି ।
ଆମ୍ଭେ ନଦୀତୀରେ ଜାଣ ରହିଅଛୁ ଏକା
ମାରିଣ ସାରିଲେ ମିଶି ଯିବାକ ବଦ୍ରିକା ।
ଗରୁଡ଼ ବୋଇଲେ ସ୍ୱାମୀ ଆଜ୍ଞା ପରମାଣେ
ସମୁଦ୍ର ଶୋଷ ବୋଇଲେ ଶୋଷିବି ତକ୍ଷଣେ ।
ଆଜଯାଏ ନ କହିଲ ଏହା କାହିଁପାଇଁ
ପଢ଼ାଉଥିଲ ଯେ ପାଠ ବେଠି ପ୍ରାୟ ହୋଇ ।
ଅସୁର ଛାରର ବୋଲେ କିମ୍ପା ରହିଥିଲ
ଏପରି ମୂର୍ଖ ସ୍ଥାନକୁ କାହିଁକି ଆସିଲ ।
ବେନି ବରଷ ରହିବା ଏଥେ କାଳ କାଟି
ବିଷ୍ଣୁ ଅପରାଧୀ ମରେ ତିନି ବରଷେଟି ।

ଆସିଲା ଦିନରୁ ଆଜ୍ଞା ପାଇଥାନ୍ତି ଯେବେ
ଏତେ ଦିନଯାଏ କିମ୍ପା ଥାଆନ୍ତେ ଦାନବେ ।
ଏହି ରୂପେ ବୋଲି ପକ୍ଷୀ ଲୁଚି ରହେ ଘରେ
ଶ୍ରୀ ନୃସିଂହ ବିଜେକଲେ ଯାଇ ନଦୀ ତୀରେ ।
ଏଥୁ ଅନନ୍ତରେ ପୁଣି ଦୈତ୍ୟମାନେ ଆସି
ଲାଛିଲେ ଯେ ଅଗ୍ନିବାଣ ଆଖଡ଼ାରେ ପଶି ।
ଜଳିଲା ସେ ହୁତାଶନ ଶୂନ୍ୟେଯାଏ ବଢ଼ି
ଭିତରେ ଥାଇଣ ପକ୍ଷୀ ଛାଡ଼େ ଘୋର ରଡ଼ି ।
ସେ ରଡ଼ି ଶୁଣିଣ ଦୈତ୍ୟ ମାନେ ଶ୍ରଦ୍ଧାକଲେ
ଶତ୍ରୁମଲା ବୋଲି ହରିବୋଲ ନାଦ କଲେ ।
ହରିବୋଲ ଶୁଣିଣ ଗରୁଡ଼ ଘୁମୁରଇ
କୁହାଟିଣ ରଡ଼ି ଘର ଭିତରେ ଛାଡଇ ।
ଦରପୋଡ଼ା କାଠଧରି ଫିଙ୍ଗେ ଚାରିଆଡ଼େ
ଦୈତ୍ୟ ନ ପଶନ୍ତି ଯେ ଆଖଡ଼ାଶାଳ ଗଡ଼େ ।
ଗୃହ ଚାରିଆଡ଼େ ଦୈତ୍ୟ ବେଢ଼ିଛନ୍ତି ରହି
ମାଛି ଗଳିବାକୁ ବାଟ ନପାଇବ ତହିଁ ।
ଅଗ୍ନିକୁଣ୍ଡେ ଥାଇ ପକ୍ଷୀ ଡାକିଲେ କୁହାଟି
ବୋଲେ ଅକାରଣ ପୋଡ଼ିଦେଲୁ ପୁରଗୋଟି ।
ତୁମ୍ଭର କେଉଁ ବଇରୀ ଥିଲୁ ଆମ୍ଭେ ହୋଇ
ତୁମ୍ଭେ ପୋଡ଼ିଲେ ଅଗ୍ନିକି ପାରେ ମୋତେ ଖାଇ ।
ପୋଡୁଥିଲେ ସୁବର୍ଣ୍ଣରୁ କଳଙ୍କ ଛାଡ଼ଇ
ସେହିରୂପ ମୋର ଅଙ୍ଗ ଅଗ୍ନିକି ଅଟଇ ।
ସର୍ପର ଅଙ୍ଗରୁ କାତି ଛାଡଇ ଯେସନେ
ଛଡ଼ାଇ ଦିଅମୋ ଅଙ୍ଗୁ କଳଙ୍କ ତେସନେ ।
ଏ ରୂପେ ବୋଲିଣ ପକ୍ଷୀ ଗରଜନ କଲା
ଲକ୍ଷେ ଯୋଜନ ପର୍ଯ୍ୟନ୍ତେ କାୟା ବିସ୍ତାରିଲା ।
ହୁଂକାର ନାଦରେ ଉଠି ଉଡ଼ନ୍ତେ ଶୂନ୍ୟରେ
ପୃଥିବୀ ଯେ ଦଲ ଦଲ କମ୍ପେ ପାଦଭରେ ।
ଧନ୍ୟ ସେହୁ ପକ୍ଷୀରାଜ ବିନତାର ସୁତ
ପଞ୍ଚାଶ ଯୁଣ ପର୍ଯ୍ୟନ୍ତ ବିସ୍ତାରିଲା ହାତ ।
କୋଟିଏ ଯୋଜନଯାଏ ଅଟେ ତାର ଥଣ୍ଟ
ସହସ୍ରଯୁଣ ବିସ୍ତାରି ନେଲା ପିଠି ପେଟ ।
ବେନି ସସ୍ର ଯୁଣଯାଏ ଲମ୍ବାଇଲା ହୃଦ
ତିନିସସ୍ର ଯୁଣଯାଏ ଲମ୍ବାଇଲା ପାଦ ।
ଚାରିସହସ୍ର ଯୁଣ ଯେ ଅଟେ ମୁଖରେଖା
କ୍ଷଣକରେ ଘୋଟିପାରେ ବ୍ରହ୍ମାଣ୍ଡକୁ ଏକା ।
ମହା ବତାସ ପରାୟେ ପଡ଼େ ଶୂନ୍ୟ ଖସି
ପବନ ଯେ ଅଣଚାଶ ଡେଣାରୁ ପ୍ରକାଶି ।
ମେରୁ ପର୍ବତ ପରାୟେ ଆସେ ଶୂନ୍ୟୁ ଉଡ଼ି
ତାହା ଦେଖି ଦୈତ୍ୟଙ୍କର ଧୈର୍ଯ୍ୟଗଲା ଛାଡ଼ି ।

ପକ୍ଷୀରାଜ ଗରୁଡ଼ର ଦେଖି ବିଶ୍ୱମୂର୍ତ୍ତି
ଆବର ଗଗନ ଯାକ ଦେଖି ତାର ଜ୍ୟୋତି ।
ମୁରର ତନୟମାନେ ହେଲେ ଚମତ୍କାର
ନାରାଚମାନ ଧରିଣ ବିନ୍ଧିଲେ ତପୂର ।
ମହୀକର୍ଣ୍ଣ ମୂଳେ ଯେ ସତରଲକ୍ଷ ଭାଇ
ବିନ୍ଧିଲେ ଗରୁଡ଼ପଛେ ନାନା ଶର ଦେଇ ।
ଶର ବାଜନ୍ତେଣ ପକ୍ଷୀ ହସ୍ତେ ଦେଲା ପୋଛି
ବୋଇଲା ଯୁଦ୍ଧକଲେ କି କାର୍ଯ୍ୟ ଏଥେ ଅଛି ।
ରାତ୍ର ପାହିଗଲେ ସିନା ଚହଳ ହୋଇବ
ଜାଣିଲେ ତ ମୁରାସୁର ଯୁଦ୍ଧେ ବାହାରିବ ।
ନୃସିଂହ କହିବା କଥା ଆଗ କରିବଇଁ
ଏତେ ପାଞ୍ଚି ବିଶ୍ୱରୂପ ପ୍ରକାଶିଲା ସେହି ।
ଦୈତ୍ୟଙ୍କପରେ ପିଟିଲା ଖଗ ବେନି ନେଇ
ନିଜଅଙ୍ଗୁ ଅଣଚାଶ ପବନ ବହଇ ।
ବଜ୍ର ପଡ଼ିଲା ପରାୟେ ପିଟେ ବେନି ଡେଣା
କେ କାହିଁ ପଡ଼ିଣ ମଲେ ତାହା ନୋହେ ଜଣା ।
ଭାଙ୍ଗଇ କାହାର ଅଣ୍ଟା ଛିଣ୍ଡିପଡ଼େ ମୁଣ୍ଡ
କାହାର ଗୋଡ଼ ଛିଣ୍ଡଇ ହୋଇ ଖଣ୍ଡ ଖଣ୍ଡ ।
ଆଖଡ଼ାଶାଳ ପାଖରେ ଯେତେ ଦୈତ୍ୟ ଥିଲେ
ସମସ୍ତେ ମାଡ଼ ପାଇଣ ପବନେ ଉଡ଼ିଲେ ।
ତୃଣ ପ୍ରାୟ ଉଡ଼ି ଅବ୍‌ଧି ମଧ୍ୟେ ଗଲେ ପଡ଼ି
ସମୁଦ୍ର ପାଖରେ କିଏ ପଡ଼େ ମୁଖମାଡ଼ି ।
ପାହାରିଗଣ ତହିଁଟି ଯେତେ ଥିଲେ ଜଗି
ମାହୁନ୍ତ ଗଜ ପ୍ରଭୃତି ହେଲେ ପ୍ରାଣତ୍ୟାଗୀ ।
ଥଣ୍ଟରେ ବୁକୁ ବିଦାରି ପକାଇଲା ଚିରି
ପକ୍ଷର ଚୋପୋଡା ଘାତେ ସର୍ବ ପଡ଼ି ମରି ।
ଆଖଡ଼ାଶାଳଯାକଟି ହେଲା ନାରଖାର
ଗୋଟିଏ ଉବୁରି ତହିଁ ନଗଲେ ଅସୁର ।
ସବୁଙ୍କୁ ଯାଇ ଥଣ୍ଟରେ ଧରେ ରୁଣ୍ଡିଆଇ
ଆକାଶକୁ ଉଠିଯାଇ ବିଶ୍ୱମୂର୍ତ୍ତି ହୋଇ ।
ଶୂନ୍ୟେ ଉଡ଼ି ଉଡ଼ି ତାଙ୍କୁ ଜଳେ ଦେଲା ମାଡ଼ି
ଅଗାଧ ଜଳରେ ପଡ଼ି ସର୍ବେ ଗଲେ ବୁଡ଼ି ।
ଏହିରୂପେ ମାରି ପକ୍ଷୀ କୂଳେ ଉଭା ହୋନ୍ତେ
ସମୁଦ୍ର ମଧ୍ୟୁ ବାହାରି ଆସେ ଏକ ଦୈତ୍ୟେ ।
ରାଜାର ଜ୍ୟେଷ୍ଠପୁତ୍ର ଯେ ଅଟେ ମହୀକର୍ଣ୍ଣ
ବାହାରି ଆସି କୂଳରେ ମିଳେ ଧାତୁ ଧାନ ।
ପଦାରେ ଉଭା ହୋଇଣ ଛାଡ଼େ ଘୋର ରଡ଼ି
ଗରୁଡ଼ ଉପରେ ଆଣି ମାରେ ବଜ୍ର ବାଡ଼ି ।
ପକ୍ଷୀବର ଦେଖିକରି ହୋଇ ଆଡ଼ କରେ
ବଜ୍ରବାଡ଼ି ପ୍ରହାରନ୍ତେ ଭାଙ୍ଗିଯାଏ ଖରେ ।
ପୁନରପି ମହୀକର୍ଣ୍ଣ ପିଟେ ଗଦା ତୋଳି
ବାଜିଣ ପକ୍ଷୀ ଅଙ୍ଗରେ ହୋଇଗଲା ଧୂଳି ।
ସେ ଗଦା ଭାଙ୍ଗନ୍ତେ ଦୈତ୍ୟ ଶୂନ୍ୟହସ୍ତ ହେଲା
ଈଶ୍ୱର ଦେବା ମନ୍ତ୍ରକୁ ସୁମରଣା କଲା ।
ମନ୍ତ୍ର ସୁମରନ୍ତେ ବେଗେ ଆସିଲାକ ଶର
ବୋଇଲାକ ମହୀକର୍ଣ୍ଣ ମଲୁ ପକ୍ଷୀବର ।
ସତର ଲକ୍ଷ ଭାଇଙ୍କୁ ଆଜି ତୁ ମାଇଲୁ
ନବଲକ୍ଷ ପୁତ୍ରରାଙ୍କ ପ୍ରାଣନାଶ କଲୁ ।
ଏମାନେ ହାତରେ ଯେବେ ଶର ଧରିଥାନ୍ତେ
ତୋ ବାପ କରନ୍ତା ନିଶ୍ଚେ ଦଶକ୍ରିୟା ତୋତେ ।
ମେରୁଗିରି ଟଳିବାକୁ କ୍ଷମତା ଯାହାର
ନିଶସ୍ତ୍ର ଥିବାରୁ ତାଙ୍କୁ ବଧିଲୁ ପାମର ।
ବୁଝିଲେ ଅଟନ୍ତି ରାଜପୁତ୍ରେ ବାଳବସ୍ତି
ତାହାଙ୍କୁ କେଉଁ ରୂପରେ ଯିବି ମୁହିଁ ମୁଚ୍ଛି ।
ତୁ ଅବା ମୋତେ ମାର ମୁଁ ଅବା ତୋତେ ମାରେ
ବିହି ଲେଖିଅଛି ଏହି କଥା କପାଳରେ ।
ଅଶୀଳ ସେନାପତି ଯେ ଗଲା ମଧ ମରି
ମୁଁ ଥାଇ ପାରିବି କିସ ଏବେ ଦେହ ଧରି ।
ଏ ରୂପେ କହି ପେଷିଲା ବେଗେ ନାଗଫାଶ
ବୋଇଲା ପକ୍ଷୀକୁ ଯାଇ ବାନ୍ଧିକରି ଆସ ।
ସେ ପକ୍ଷୀର ମୁଣ୍ଡ ହାଣି ରାଜାପାଶେ ଯିବି
ଶତ୍ରୁ ମରିଲେ ବୋଲି ତା ଅଗ୍ରେ ଜଣାଇବି ।
ଏ ରୂପେ ବୋଲି ସେ ପେଶିଦ୍ୟନ୍ତେ ନାଗଫାଶ
ଚଳିଗଲା ଅହିବର ବ୍ୟାପି ଦଶଦିଶ ।
ମହୀକର୍ଣ୍ଣ ବୋଲେ ଶୂନ୍ୟେ ଆସନ୍ତେ ସେ ମାଡ଼ି
ଦେଖିକରି ଗରୁଡ଼କୁ ପଳାଇଲେ ଛାଡ଼ି ।
ବିବର ଖୋଜି ପଶିଲେ ଯାଇ ପାତାଳରେ
ତାହା ଦେଖି ମହୀକର୍ଣ୍ଣ କମ୍ପେ ଥରହରେ ।
ବୋଇଲା ମେଣ୍ଢିଲା କେଡେ ଶରପକ୍ଷୀଛାର
ମୋଠାରୁ ଅଟଇ କେଡ଼େ ଏହୁ ଅକ୍ରାମର ।
ମୋର ମୃତ୍ୟୁ ଭେଦ ନାହିଁ କାହାକୁତ ଜଣା
ମୋ ଠାରୁ ଅଟଇ ବଡ଼ ଏ କି ଅକଳଣା ।
ଏ ରୂପେ ବୋଲି ଦଇତ୍ୟ ପର୍ବତାସ୍ତ୍ର ଧରି
ଗରୁଡ଼ର ଉପରକୁ ବିନ୍ଧେ କୋପକରି ।
ଖଗେଶ୍ୱର ଅଙ୍ଗେ ବାଜି ନଗ ଗଲା ଭାଜି
ତାହା ଦେଖି ମହୀକର୍ଣ୍ଣ ଉଠିଲା ଗରଜି ।
ବେନିକରେ ଶୂଳଧରି ପିଟନ୍ତେ ତ୍ୱରିତ
ମାଡ଼ ନବାକୁ ସେ ପକ୍ଷୀଗଲା ଲକ୍ଷେହାତ ।
ଲେଉଟି ସେ ବୁଲିପଡ଼ି ଆଗେ ହେଲା ଉଭା
ଖତାଇ ହୋଇଣ ପୁଣି ହଲାଇଲା ଗ୍ରୀବା ।

କହେ ସେ ହେଉଣ୍ଡି ମାରି ହସି ଟହ ଟହ
ଭାଇ ମଲେ ବୋଲି ଯାଇ ବାପ ଆଗେ କହ ।
ସତରଲକ୍ଷ କୁମର ନବଲକ୍ଷ ନାତି
ଏହାଙ୍କୁ ମାଇଲେ ଏକ ଗୁରୁତ୍ମାନ ଯତି ।
ଏରୂପେ ପିତାଙ୍କୁ କହଯାଇ ବେଗେ ତୋର
ଶୁଣିତ ମହୀକର୍ଣ୍ଣର କମ୍ପେ ଜାନୁ ଶିର ।
ବୋଇଲା ହାତେ ମୋହର ଧନୁ ଧରିଥିଲେ
ତୁ ଛାର ମାରନ୍ତୁ ଲକ୍ଷେ ଗରୁଡ଼କି ହେଲେ ।
ନିଶସ୍ତ୍ର ହୋଇଣ ଆମ୍ଭେ ସମସ୍ତେ ଥିବାରୁ
ପବନେ ଉଡ଼ାଇ ଜଳେ ପକାଇଲୁ ମେରୁ ।
ଏଥର ମୋଠାରୁ ବଞ୍ଚିଗଲେ ଦେହ ଧରି
ଗରୁଡ଼ ନାମ ବହିବୁ ତେବେ ଯୁଗ ଚାରି ।
ଏତେକ ବୋଲି ହୁଂକାରି ଉଠିଲା ସେ ଯୋଦ୍ଧା
କୋଟିଏ ସହସ୍ର ଭାର ଧରି ହସ୍ତେ ଗଦା ।
ସେ ଗଦା ଧରିଣ ପକ୍ଷୀପରେ ଦେଲା ପିଟି
ଗଦା ବାଜନ୍ତେଣ ପକ୍ଷୀ ହସଇ କୁହାଟି ।
ପୁଣିହିଁ ପିଟିଲା କୁନ୍ତ ଯଷ୍ଟି ହୃଦେ ଆଣି
ଦୁହାଜ ସାବେଳି ଖଣ୍ଡା ଧରି ପୁଣି ହାଣି ।
ସତରଲକ୍ଷ ଆବର ଆଠଲକ୍ଷ କର
ଚାରିଯୁଗ ସାର ଶର ବିନ୍ଧିଲାକ ଧରି ।
ଚାରିଯୁଗରେ ନାରାଚ ସଦାକାଳେ ସମ
ଚିହ୍ନ ବିନ୍ଧିପାରିବାଟି ଅଟେ କ୍ଷତ୍ରୀ ଧର୍ମ ।
ବଡ଼ଲୋକଙ୍କୁ ମାଇଲେ ଜାଣ ବଡ଼ଶରେ
ତାହାକୁ ନକରେ ନିନ୍ଦା କେହି ତିନିପୁରେ ।
ନୀଚ ଲୋକକୁ ଯଦ୍ୟପି ବ୍ରହ୍ମଶକ୍ତି ମାରି
ସଭାରେ ତାହାକୁ ଜାଣ ସର୍ବେ ନିନ୍ଦାକରି ।
ଗରୁଡ଼ ପକ୍ଷୀ ବୋଲି ସେହୁ କରିଣ ବିଚାର
ମନ୍ତ୍ର ପଢିକରି ବିନ୍ଧିଦେଲା ବ୍ରହ୍ମଶର ।
ପଡ଼ନ୍ତେ ସେ ଶର ଆସି ଗରୁଡ଼ ଉପରେ
ବିନତାନନ୍ଦନ ତାହା ପୋଛିଲା ହାତରେ ।
ଗରୁଡ଼ ବୋଇଲା ଆରେ ମାରୁକିନା ତୁହି
ବଜ୍ରଠାରୁ ବଳି ଶକ୍ତି ଅଟେ ମୋର ଦେହୀ ।
ମୋହର ଜନମ କାଳେ ଧାତା ଯେତେବେଳେ
ଅଢାଇ ଅକ୍ଷର ଲେଖି ବସାନ୍ତି କପାଳେ ।
ମୁହିଁ ବୋଇଲି ଶୁଣିମା ହେଉ ପିତାମହ
ମହାବଜ୍ର କରିଣ ଯେ ରଖିବା ମୋ ଦେହ ।
ଏକଘନୀ ବ୍ରହ୍ମଶକ୍ତି ବଜ୍ରଶକ୍ତି ଯାଏ
ଏମାନେ ପଡ଼ିଲେ ମୋର ନକାଟିବ କାୟେ ।
ବାଜିଲେ ଆବର ଶରଯାକ ଦେବି ପୋଛି
ଶୁଣିଣ ହେଉ ବୋଲିଣ ଗଲେ ବିଷ୍ଣୁ ବସି ।

ଶୁଣ ଆରେ ମହୀକର୍ଣ୍ଣ କହୁଅଛି ମୁହିଁ
ତୁହି ମାରିବାରୁ ଦେହ ହୁଏ କୁଣ୍ଡିଆଇ ।
ତୁ ମାଡ଼ ମାରିବୁ କେତେ ହେବୁ ମାତ୍ରଲାଣ୍ଡୁ
ଅଙ୍ଗେ ବାଜି ଦେହ ମୋର ହେବ ଜାଣ କଣ୍ଡୁ ।
ଆହ୍ମୁରି ଥିବ ଯେତେକ ବିନ୍ଧୁ ବେଗେ ବାଣ
ତହିଁ ଉତ୍ତାରୁ ମୁଁ ଯାଇ ଘେନିବି ତୋ ପ୍ରାଣ ।
ଶୁଣିଣ ସେ ମହୀକର୍ଣ୍ଣ ବୋଇଲାକ ନିଷ୍ଠା
ଅଦୋଷେ ଭାଇଙ୍କୁ ମୋର ମାଇଲୁ ପାପିଷ୍ଠ ।
ଏ କଥାରେ ଧର୍ମ ତୋତେ ସହିବକି ଜାଣ
ଆମ୍ଭେ ତ ତୋହର ଶତ୍ରୁ ନୋହିଥିଲୁ ପୁଣ ।
ଶୁଣିଣ ଗରୁଡ଼ ବୋଲେ ତୁମ୍ଭେ କେଡ଼େ ଧର୍ମୀ
ଶ୍ରୀଗୁରୁ କରି ରଖିଲ ଘରେ ଅନ୍ତର୍ଯ୍ୟାମୀ ।
ତୁମ୍ଭଙ୍କୁ କି ଶତ୍ରୁ ଯେ ନୃସିଂହ ବେନିଭାଇ
ତାଙ୍କୁ ଘରେ ରଖି ଅଗ୍ନି ଦେଲରେ ଲଗାଇ ।
ବିଦ୍ୟାଗୁରୁ କରି ରଖିଥିଲ ଘରେ ଆଣି
ଚାରିପାଖେ ରହି ଘର ପୋଡ଼ିଦେଇ ପୁଣି ।
ତୁମ୍ଭେ ନ ମରନ୍ତ ଆଉ ମରନ୍ତା କେହୁରେ
ଏହି ରୂପଟିରେ ଧର୍ମ ଜଗିଛି ସଂସାରେ ।
ବଡ଼ପଣେ ମାରନ୍ତି ଯେ ନିର୍ବଳ ଲୋକଙ୍କୁ
ନାରାୟଣ ବିନାଶନ୍ତି ତାହାର ଦର୍ପକୁ ।
ବଳବନ୍ତର ଗାରିମା ସେ ଭାଙ୍ଗି ଦିଅନ୍ତି
ଏହି କଥାମାନ ପ୍ରାଣୀ ହେଜି ନ ପାରନ୍ତି ।
ଗୁରୁ ହତ୍ୟା ବ୍ରହ୍ମହତ୍ୟା ବେନି ଦୋଷ କଲ
ଏହି ଦୋଷରୁ ତୁମ୍ଭେରେ ଅପଲକେ ମଲ ।
ତୁହି ମଲେ ଏବେ ପୁର ଅପୁତ୍ରିକ ହେବ
ଷୋଡ଼ଶ କର୍ମକୁ ଆଉ ଗୋଟିଏ ନଥିବ ।
ଜଳଦେବା ଲୋକ ଆଗେ ହେବ ଅନ୍ତର୍ହିତ
ମରିବ ନ ଚାହିଁ ପୁତ୍ର ମୁଖ ମୁର ଦୈତ୍ୟ ।
ଏ ରୂପେ ବୋଲିଣ ପକ୍ଷୀ ହୁଂକାରକୁ ଟେକି
ମହୀକର୍ଣ୍ଣକୁ ଧଇଲା ଯାଇ ଥଣ୍ଟେ ଯାକି ।
ମେରୁ ପର୍ବତରେ ତାକୁ ଛେଚିଲା ଯେ ନେଇ
ତହିଁରେ ନୋହିଲା କିଛି ବାଧା ଦୈତ୍ୟ ଦେହୀ ।
ପୁଣିହିଁ ଗରୁଡ଼ ଗଳା ଧରି ତାକୁ ଭିଡ଼ି
ଉଦୟଗିରି ପର୍ବତେ ପିଟିଲା କଚାଡ଼ି ।
କମ୍ପିଲା ସେ ଗିରିବର ପୃଥ୍ୱୀ ଗଲା କମ୍ପି
ତେବେ ହେଁ ସେ ଦୈତ୍ୟପଡ଼ି ନମଲା କଦାପି ।
ତା ଦେଖିଣ ଖଗେଶ୍ୱର ମହାକୋପ କଲା
ବିନ୍ଧ୍ୟଗିରି ଉପର ସେ ନେଇ କଚାଡ଼ିଲା ।
ପର୍ବତ ଉପରେ ଯାଇ ପଡ଼ନ୍ତେ ଅସୁର
ଦେହକୁ ଆଉଁସି କରି ହସେ କରକର ।

ତା ଦେଖି ଗରୁଡ଼କରେ ମୋଡ଼ିଲାକ ନିଶ
ଦୈତ୍ୟକୁ ଧରିଣ ପୁଣି ଉଠିଲା ଆକାଶ ।
କୁଞ୍ଜଳ ଗିରି ଉପରେ ଛେଛିଲାକ ନେଇ
ଦୈତ୍ୟଅଙ୍ଗ ବାଜି ଗିରିଗଲା ଧୂଳି ହୋଇ ।
ତେଡ଼େଛେଚାରେ ନୋହିଲା ଦୈତ୍ୟ ଯହୁଁ ନାଶ
ପୁଣିହିଁ ଗରୁଡ଼ ଧରି ଉଠିଲା ଆକାଶ ।
ହିମାଳୟ ପରବତେ ଛେଛିଦେଲା ନେଇ
ଟହ ଟହ ହସି ଦୈତ୍ୟ ଦେହ ଆଉଁଷଇ ।
ତାହା ଦେଖି ପକ୍ଷୀରାଜ କୋପାନଳ ହେଲା
ଆଣ୍ଟେ ଧରି ଭିଡ଼ି ଗନ୍ଧମାର୍ଦ୍ଦନକୁ ଗଲା ।
ତହିଁରେ ଛେଚନ୍ତେ ତାର ନୁହେଁ ଲୋମ ବଙ୍କା
ଦେଖି ତାହା ପକ୍ଷୀବର ମନେକଲା ଶଙ୍କା ।
ପାଞ୍ଚିଲା କି ରୂପେ ହେବ ଏହି ଦୈତ୍ୟନାଶ
ୟାକୁ ଛାଡ଼ିଲେ ହସିବେ ପୁଣି ହୃଷୀକେଶ ।
ବୋଲିବେ ଦୈତ୍ୟକୁ ତୁରେ ନ ପାରିଲୁ ମାରି
ନିଶି ପାହିଗଲେ ଆମ୍ଭେ ଯିବାଟି କିପରି ।
ଏହା ବୋଇଲେତ ଲଜ୍ଜା ପାଇବିନା ମୁହିଁ
ଏତେ ପାଞ୍ଚି ଧରି ତାକୁ ଶୂନ୍ୟେ ଉଡ଼ିଯାଇ ।
ଆକାଶ ଉପରେ ରହି ଚାହିଁ ଚଉଦିଗେ
ଦେଖିଲାକ ଲୋକାଲୋକ ଗିରି ଅଛି ଆଗେ ।
ନିର୍ଘାତେ ଛେଚନ୍ତେ ତହିଁନେଇ ବାହୁବଳେ
ତହିଁ ନ ମରି ପଡ଼ିଲା ଆସି ଖସି ତଳେ ।
ତା ଦେଖି ଗରୁଡ଼ ପୁଣି ବସିଲାକ ମାଡ଼ି
ପ୍ରହାର କଲାକ ପଦେ ବେନି ଖଗ ଭିଡ଼ି ।
ଚାପୁଡ଼ା କହୁଣୀ ଖୁନ୍ଦା ବିଧା ମୁଖୀ ମାରି
ବୁକୁରେ ସେ ମାଡ଼ିବସି ନଖେ ବୁକୁ ଚିରି ।
ଗର୍ଜି ପୁଣି ପକ୍ଷୀବର ତାହାକୁ ଧଇଲା
ଶୂନ୍ୟମାର୍ଗେ ଲକ୍ଷେଯୁଣ ଦୂରକୁ ଫିଙ୍ଗିଲା ।
ନିର୍ଘାତ ପ୍ରାୟେ ଭୂମିରେ ଦୈତ୍ୟଆସି ପଡ଼ି
ହସେ ଟହ ଟହ ହୋଇ ହସ୍ତେ ନିଶମୋଡ଼ି ।
ବୋଲଇ ତୁ ଛେଚି ଛେଚି ମୋତେ କି କରିବୁ
ତୁହି ମୋତେ କଦାପିରେ ମାରି ନ ପାରିବୁ ।
ଏହା କହି ଗରୁଡ଼ ଯେ ମନେ କ୍ଷୋଭ ପାଇ
ବୋଇଲା ମୁଁ ଛାଡ଼ିଦେବି ପଳାଉ ଯେ ଏହି ।
ଏ ରୂପେ ମାରୁ ମାରୁ ନ ମଲା ଯେବେ ଏହୁ
ଅମର ହୋଇଣ ଏହୁ ମଞ୍ଚେ ରହିଥାଉ ।
ଏ ରୂପେ ବୋଲନ୍ତେ ପକ୍ଷୀରାଜ ଭାଳି ମନେ
ସ୍ୱର୍ଗପୁରେ ଦେବେ ଡାକ ଦେଲେ ଥାଇ ଶୂନ୍ୟେ ।
ଆହେ ପକ୍ଷୀରାଜ ତୁହି ଶୁଣ ଆମ୍ଭ ବାଣୀ
ନୃସିଂହ କହିଅଛନ୍ତି ଯାହା ତୋତେ ପୁଣି ।
ମାଇଲୁ ମୁରର ପୁତ୍ରଯାକ ଆଜ୍ଞା ପାଳି
ଏହାକୁ ଛାଡ଼ିଦେଲେ ନ ରହେ ମହୀସ୍ଥଳୀ ।
ଏ ଦୈତ୍ୟର ମୃତ୍ୟୁଭେଦ କହୁଅଛି ଶୁଣ
ଏହାକୁ ଯେ ଶିବବର ଦେଇଛନ୍ତି ଜାଣ ।
ଦୈତ୍ୟଭାଲପଟେ ଯେବେ ମାରିବୁ ତୁ ଥଣ୍ଟ
ତେବେ ଯାଇ ମହୀକର୍ଣ୍ଣ ହେବ ପ୍ରାଣେ ନଷ୍ଟ ।
ଏଥର ତୋହର ହସ୍ତେ ମୃତ୍ୟୁ ହୋଇଯିବ
ଲେଉଟି ଏ ଆରଜନ୍ମେ ବୈଲୋଚନ ହେବ ।
ମାଳତୀ ରୂପେ ଏହାକୁ ମାରିବେକ ହରି
ଲେଉଟି ଜନ୍ମିବ ତ୍ରେତାଯୁଗେ ମଞ୍ଚପୁରୀ ।
ରାବଣେଶ୍ୱରର ପୁତ୍ର ହେବ ଇନ୍ଦ୍ରଜିତ
ସରିଯିବ ସେହିଠାରୁ ତାର ଜନ୍ମକୃତ୍ୟ ।
ଶରୀର ଛେଚୁଥିଲେ ନମରେ କେତେବେଳେ
ଏ ରୂପେ ବର ଦେଇଣ ଅଛନ୍ତି ସୁଢଳେ ।
ଶୁଣିଣ ସାଗର ତାକୁ କଲା ଧନ୍ୟ ଧନ୍ୟ
ବୋଇଲା ଭଲା ବରରେ ଦେଲେ ପଞ୍ଚାନନ ।
ଏତେ ବୋଲି ଗର୍ଜି ପକ୍ଷୀ ବସିଲାକ ମାଡ଼ି
ମାଇଲା କପାଳେ ଥଣ୍ଟ ଅତ୍ୟନ୍ତରେ ଭିଡ଼ି ।
ଥଣ୍ଟବାଜି ବେନିଫାଳ ହୋଇଗଲା ଫାଟି
ଦୈତ୍ୟକୁ ଧରିଣ ସିନ୍ଧୁ ଜଳେ ଦେଇ ଛାଟି ।
ଏ ରୂପେ ଗରୁଡ଼ ହାତେ ମହୀକର୍ଣ୍ଣ ମଲା
ବଡ଼ବା ଅନଳେ ପଡ଼ି ଦହିର୍ଯ୍ୟ ହୋଇଲା ।
ପାହାରୀ ସୈନ୍ୟଙ୍କୁ ଘେନି ଗଜ ବାଜି ଆଦି
ସବୁଙ୍କୁ ସମୁଦ୍ରେ ନେଇ ପକ୍ଷୀଦେଲା ମର୍ଦ୍ଦି ।
ଶୁଦ୍ଧ କରୁ କରୁ ତିନି ପ୍ରହର ଯେ ରାତି
ଶୁଣନ୍ତି ନାରଦ ଋଷି ବିଧାତା କହନ୍ତି ।
ମୁରର ଯେ ପୁତ୍ରଯାକ ମାରି ଖଗେଶ୍ୱର
ନୃସିଂହ ଛାମୁରେ ଯାଇ ମିଳିଲା ତତ୍ପର ।
ନୃସିଂହ ବୋଇଲେ ଧନ୍ୟ ଧନ୍ୟ ପକ୍ଷୀରାଜ
ତୋହର ଘେନି କରିବି ମୁହିଁ ଦେବକାର୍ଯ୍ୟ ।
ନାଶିବି ମୁଁ ଦୈତ୍ୟବଳ ମାରିବଇଁ ମୁର
ନିଶି ନ ପାହୁଣୁ ଚାଲ ଯିବା ଆମ୍ଭପୁର ।
ଏ ରୂପେ ବୋଲି ଗରୁଡ଼େ କଲେ ପ୍ରଭୁ ବିଜେ
ଚଳିଲେ ଭାଇଙ୍କି ଘେନି ସଙ୍ଗେ ଦେବରାଜେ ।
ବଦରିକା ଆଶ୍ରମରେ ପ୍ରବେଶିଲେ ଯାଇଁ
ଉଠିଲେ ଗରୁଡ଼ କନ୍ଧୁ ନୃସିଂହ ଦ୍ୱିଭାଇ ।
ମାୟାମୂର୍ତ୍ତିଯାକ ପୁଣି ଦେହେ ଗୋପ୍ୟକଲେ
ବିଶ୍ୱକର୍ମାଙ୍କୁ ଛାମୁକୁ ପୁଣି ଅଣାଇଲେ ।
ନୃସିଂହ ବୋଇଲେ ଶୁଣ ଆହେ ବିଶ୍ୱକର୍ମା
ତୋତେ ଜଣା ଆମ୍ଭର ଯେ ସବୁ କୀର୍ତ୍ତିସୀମା ।

ଦେବଙ୍କ ହିତେ ଆମ୍ଭର ଜନ୍ମ ସିନା ଏଥେ
ହେଲି ମୁହିଁ ଅବତାର ମୁରଦୈତ୍ୟ ଅର୍ଥେ ।
ଦେବଙ୍କର ଗଲାଣିତ ଜାଣ ସବୁ ନାଶ
ପ୍ରାଣୀଙ୍କି ତିନିପୁରେ ନଦେଲା କାହିଁ ବାସ ।
ମୋର ଜନ୍ମ ପୁଣି ଶୁଣି ଘେନିଗଲା ମୋତେ
ଆଖଡ଼ାଶାଳେ ରଖିଲା ନେଇ ଦିନାକେତେ ।
କପଟେ ପୁତ୍ରଙ୍କୁ ତାର ପଢ଼ାଏ ଯେ ପାଠ
କହିଲି ଗୁରୁମାରଣ ବିଦ୍ୟା ତାଙ୍କୁ ନଷ୍ଟ ।
ସେହି ଅଧର୍ମରୁ ତାର ଗଲେ ପୁତ୍ର ନାଶ
ତୋତେ ଏକଥାଟି ଜଣା ହୋଇଛି ସର୍ବସ୍ୱ ।
ତେଣୁଟି ତୋତେ ଚିହ୍ନିଲୁ ଆମ୍ଭେ ଏହିଲାଗେ
ଦଣ୍ଡକ ଭିତରେ ଗଡ଼ ନିର୍ଭାକର ବେଗେ ।
ମୁରାସୁର ଦୈତ୍ୟବଳ ଦେବ ଯେବେ ପେଷି
ଦେଖିଲେ ଗଡ଼କୁ ମୋର ନ ପାରିବେ ପଶି ।
ଏଗାର ଯୁଣ ପାଚେରୀ ଥିବୁ ଉଚ୍ଚକରି
ଆସିବା ଦୈତ୍ୟ ପଳାଉଥିବେ ଦେଖିକରି ।
ପଞ୍ଚାଶ ଯୁଣ ବିସ୍ତାର ଗଡ଼ ଗର୍ଭ ହେବ
ଅଚିନ୍ତା ହୋଇ ରହିବେ ଯାଇ ସର୍ବେଠାବ ।
ଦୋମୁହିଁ ଯେ କଡ଼ମୁହିଁ ପୁଣି ଲଙ୍କମୁହିଁ
ଦେଖିଲେ ପୁଛିବେ ଅନ୍ୟଲୋକ ବଣା ହୋଇ ।
କନ୍ଦି ବିକନ୍ଦି କରିବୁ ମାର୍ଗେ ମଞ୍ଚ ଭାଡ଼ି
କରୁଣା କାହୁରା ମେଲା ଗୁରୁଜ ଯେ କାଢ଼ି ।
ଓହଳା ଅଗମ୍ୟ ଆଡ଼ବାଙ୍କ ଗୁଡ଼ା ଆଟୁ
ଧଡ଼ିମେଲା କାଳିଦର ଭଣ୍ଡ ଭୁଆ କାଟୁ ।
ଏ ରୂପେ ଉଚ୍ଚ ପାଚେରୀ ଚାରିବେଢ଼ କର
ମାହୁନ୍ତ ରଥ ପଦାତି ରହିବେ ପ୍ରଚୁର ।
ସଙ୍ଗତେ ବିନ୍ଧାଣିଗଣ ଅୟୁତେକ ଘେନି
ବହଳେ ଯୋଜନ କରି ରଖି ଚାରିଖାନୀ ।
ଅଛନ୍ତି ମୋହର ପାରିଷଦ ପୁଣି ଯେତେ
ବିଷ୍ଣୁର ପୁତ୍ରେ ଯେ ବିଜେ କରନ୍ତୁଟି ନିତ୍ୟେ ।
ଅଠର ପଦ୍ମ ଯେ ମେଘ ବାତ ସଙ୍ଗେ ଥିବେ
ମେରୁ ପଶ୍ଚିମ ଭାଗରୁ ସ୍ୱର୍ଣ୍ଣ ଆଣି ଦେବେ ।
ଭିତରେ ରୂପା ବାହାରେ ଥିବ ସୁନାବେଢ଼
ବିଚିତ୍ର ଚିତ୍ର କରିଣ ନିର୍ମାଣିବ ବାଡ଼ ।
ଦେଖିବା ମାତ୍ରକେ ଲୋକେ ହେବେ ଚମତ୍କାର
ଶତ୍ରୁଙ୍କୁ ସେ ଦିଶୁଥିବ ମହାଭୟଙ୍କର ।
ଦଣ୍ଡକ ମଧରେ ଏହା ନିର୍ମାଣି ତୁ ଦେବୁ
ରାତ୍ର ନପାହୁ ତୋହର ନଗ୍ରକୁ ତୁ ଯିବୁ ।
ବଦରିକା ଲୋକଯାକ ଶୋଇଛନ୍ତି ନିଦେ
କରିବୁ ଷାଠିଏ ଲୀଳା ମଧେ ଗଡ଼ ଉଦେ ।

ପୁଣି ବିଶ୍ୱକର୍ମା ସେହି ଆଜ୍ଞା ପରମାଣେ
ଗଡ଼କୁ ନିର୍ମାଣକରି ଦେଲାକ ତକ୍ଷଣେ ।
ନୃସିଂହ ଆଜ୍ଞାକୁ ଶତେଗୁଣ କଲା ଉଚ୍ଚ
ଦିଶିଲା କ୍ଷୀର ବୈକୁଣ୍ଠ ପ୍ରାୟ ମହାତେଜ
ତିନିପୁରରେ ଅଛନ୍ତି ଯେତେ ଦେବଦେହୀ
ଚିତ୍ରରେ ସେ ସବୁ ରୂପେ ନିର୍ମାଣିଲା ତହିଁ ।
ନୃସିଂହ ପ୍ରଭୁଙ୍କ ବାକ୍ୟେ ସର୍ବେଠୁଳ ହେଲେ
ହୁଅନ୍ତେ ତା ବିଶ୍ୱକର୍ମା ପ୍ରଭା ପ୍ରକାଶିଲେ ।
ବଦ୍ରିକା ନଗ୍ରେ ଅଛନ୍ତି ଯେତେ ଜନପୁରୀ
ସବୁରି ଚିତ୍ର ଦିଶିଲା ହୋଇ ବାରି ବାରି ।
ଯେ ଯାହାର ରୂପମାନ ଘରବାଡ଼ି ସ୍ଥାପି
ବଦ୍ରିକାନଗରେ ଥିଲେ ଲୋକ ଯେତେ ବ୍ୟାପି ।
ପ୍ରଥମରେ ଲକ୍ଷ୍ମୀଙ୍କର ଅଙ୍ଗ ନିର୍ଭା କଲା
ଶ୍ରୀନୃସିଂହ ସ୍ୱାମୀଙ୍କର କୋଳେ ବସାଇଲା ।
ଶେଷଦେବଙ୍କର କୋଳେ ଇଳାଦେବୀ ସ୍ଥାପି
ଚୌଷଠି ସହସ୍ର କନ୍ୟା ଲେଖିଲାକ କଳ୍ପି ।
ଯାହାର ଯେ ରୂପେ ଚିତ୍ର ବସାଇଲା ବାଡ଼େ
ଝଟକି ଦିଶଇ ରୂପ ଖଣ୍ଡଦୂରୁ କେଡ଼େ ।
କୃଷ୍ଣବଲ୍ଲଭର ରୂପ ଭଗବତୀ ରୂପ
ବାଡ଼ରେ ଚିତ୍ର କରିଣ ଲେଖି ବିଶ୍ୱକଳ୍ପ ।
ତହିଁ ଉତାରୁ ଗରୁଡ଼ ରୂପ ପୁଣି ଲେଖି
ଲେଖିଲା ଶ୍ରୀ ନୃସିଂହଙ୍କ ଅଷ୍ଟଗୋଟି ସଖୀ ।
ସୁଜାଣ ମନ୍ତ୍ରୀକି ଆଦି ଘେନି ଯେତେ ଜନ
ସବୁରି ଚିତ୍ରକୁ ସେହି କରିଲା ଲେଖନ ।
ଏ ରୂପେ ଗଡ଼ର ବାଡ଼ ନିର୍ମାଣ କରିଣ
ବିଜେ କଲା ନିଜପୁରେ ମେଲାଣି ଘେନିଣ ।
ଶୁଣ ହେ ନାରଦ କହୁଛନ୍ତି ବେଦବର
ଶ୍ରୀନୃସିଂହ ପୁରାଣ ଏ ଅଟେ ଅଗୋଚର ।
ଏଥି ଉତାରେ ହୋଇଲା ରାତ୍ର ଆସି ଶେଷ
ନୃସିଂହ ଶରଣ ବିପ୍ର ପୀତାମ୍ବର ଦାଶ ।



## ଶ୍ରୀନୃସିଂହଙ୍କର ସଭା ଓ ଦେବଗଣଙ୍କର ପ୍ରବେଶ

ମଗଧେ ଯେ ଶଙ୍ଖଧ୍ୱନି କଲେ ଦେବ ଆଳେ
ପଣ୍ଡିତେ ପଢ଼ନ୍ତି ସ୍ତୁତି ସ୍ତୋତ୍ର ପ୍ରାତଃକାଳେ ।
ସଭାରେ ନୃସିଂହ ବେନି ଭାଇ କଲେ ବିଜେ
ଭେଟିଲା ସୁଜାଣ ମନ୍ତ୍ରୀ ଆସି ଦେବରାଜେ ।
ବଦରିକା ନଗରରେ ଯେତେ ଜନ ଥିଲେ
ଗରୁଡ଼କୁ ଦେଖି ସର୍ବେ ଆନନ୍ଦିତ ହେଲେ ।

ନିଜ ନିଜ ରୂପମାନ ଚିତ୍ରବାଡ଼େ ଦେଖି
କୁହାକୁହି ହେଉଛନ୍ତି ନ ପିଛାଡ଼ି ଆଖି ।
ବୋଲୁଛନ୍ତି ଧନ୍ୟ ଧନ୍ୟ ଶ୍ରୀନୃସିଂହ ସ୍ୱାମୀ
କେଡ଼େ ଗଡ଼ ପ୍ରକାଶିଲେ ପ୍ରଭୁ ଏହି ଭୂମି ।
ରାତ୍ରିକ ମଧ୍ୟେ କେ ଏହା ଦେଲା ଜାଣସର୍ଜି
କୋଟିଏ ତପକଲେ ନ ପାଇ ଯାହା ଭଜି ।
ଭଲା ଏ ଗଡ଼ ସୃଜିଲେ ଶ୍ରୀନୃସିଂହନାଥ
ଦେହଧାରୀ ହୋଇ କେତେ ଦେଖିଲେ ଯେ ଏଥ ।
ଏ ଗରୁଡ଼ ପକ୍ଷୀରାଜ ଅଟେ କେଡ଼େ ଭକ୍ତ
ରହିଛି ନୃସିଂହ ସେବାକରି ଅବିରତ ।
ପୁରାଣେ ଗରୁଡ଼ ନାମ ଥିଲୁ ସିନା ଶୁଣି
ଏବେ ଅବିରତେ ତାହା ଦେଖୁଥାଇ ପୁଣି ।
ଧନ୍ୟ ଏ ପକ୍ଷୀଙ୍କ ରାଜା ଅଟନ୍ତି ଗରୁଡ଼େ
ଏପରି ହୋଇଛି ଲେଖା ମଧ୍ୟ ଗଡ଼ବାଡ଼େ ।
ଏସନ ବୋଲିଣ ଲୋକେ ହ୍ୱନ୍ତି କୁହାକୁହି
ଗରୁଡ଼କୁ ଦେଖି ସର୍ବେ ଦାଣ୍ଡେଛନ୍ତି ଧାଇଁ ।
ଆବର ଯେ ଚଉଷଠି ସସ୍ର ନାୟିକାଏ
ହସନ୍ତି ବାଡ଼ କାନ୍ଥରେ ଦେଖି ଅପ୍ରମୟେ ।
ବୋଲନ୍ତି ଯେ ଶ୍ରୀନୃସିଂହ ପ୍ରଭୁ ପୁଣ୍ୟଶ୍ଳୋକ
ଏକା ରାତ୍ରକରେ ନିର୍ଭା କଲେ ଗଡଯାକ ।
ଆମ୍ଭ ସ୍ୱରୂପ ସାକ୍ଷାତେ ଅଛନ୍ତି ଏ ଲେଖି
ଦିଶନ୍ତି ପ୍ରତିମା ହୋଇ ବିଜେ ସର୍ବସଖୀ ।
ଆବର ତେତିଶକୋଟି ଦେବଥିଲେ ଯେତେ
ସମସ୍ତ ଚିତ୍ରରେ ବସିଛନ୍ତି ଗଡ଼କାନ୍ଥେ ।
ସଂସାରେ ଛପନକୋଟି ଛନ୍ତି ଯେତେ ଜୀବେ
ଚିତ୍ରରୂପେ ବସିଛନ୍ତି ଦେଖ ବାଡ଼େ ସର୍ବେ ।
ବ୍ରହ୍ମା ବିଷ୍ଣୁ ଈଶ୍ୱର ଯେ ଦଶଦିଗପାଳେ
ବସିଛନ୍ତି ଯେ ଯାହାର ପତ୍ନୀ ଘେନି କୋଳେ ।
ଯେତେକ ଜନ ଅଛନ୍ତି ତିନିପୁରେ ପୂରି
ଚିତ୍ରରେ ଦେଖ ଦିଶନ୍ତି ସର୍ବ ବାରି ବାରି ।
ଆବର ଅଠାଶୀସସ୍ର ଋଷିଗଣ ଯେତେ
ଦିଶନ୍ତି ତପସ୍ୟା କଲାପ୍ରାୟ ତପୋବନ୍ତେ ।
ଏ ରୂପେ ଦେଖି ଧାଇଁଲେ ଶ୍ରୀନୃସିଂହ ପାଶେ
ବୋଇଲେକ ଯେତେ କୀର୍ତ୍ତିକଲ ଜଗଦୀଶେ ।
ଆଜଯାଏ ଆମ୍ଭେ ଦେଖି ନ ଥିଲୁ ଯେ ତୋଳେ
ଶୟନେ ସ୍ୱପନେ ଦେଖିନାହୁଁ ନିଦ୍ରାକାଳେ ।
ଏହି କଥା ପୁରାଣରେ କେଉଁ ନାହୁଁ ଶୁଣି
ସୁପଣ୍ଡିତ ଏହି କଥା ନାହାନ୍ତି ବଖାଣି ।
ଅଦ୍ୟାପି ବଦ୍ରିକାରେ ନ ଥିଲୁ ଦେଖି ଯାହା
କେତେ ରୂପରେ ସ୍ଥାପିଲେ ଏହା ଚଉବାହା ।

ଧନ୍ୟ ଧନ୍ୟ ନୃସିଂହ ଏ ଅବତାର ବାଣୀ
ତୁମ୍ଭର ଜନ୍ମଦିନରୁ ସୁଖୀହେଲେ ପ୍ରାଣୀ ।
ଦିଶନ୍ତି ଯୁବତୀମାନେ ଦେବସ୍ତିରୀ ପ୍ରାୟେ
ଦିଶୁଛନ୍ତି ସାକ୍ଷାତରେ ନର କାମମୟେ ।
କାମଧେନୁ କ୍ଷୀରପ୍ରାୟ ଧେନୁଙ୍କ ଅଙ୍ଗରୁ
ମନରେ ଯେତେକଚ୍ଛିବ ବହେ ତେତେଚିରୁ ।
ତୁମ୍ଭର ଆଜ୍ଞା ପ୍ରମାଣେ ବଦରିକା ଲୋକେ
ତାହାଙ୍କର କ୍ଷୀର ଦୁହିଁ ଭୁଞ୍ଜୁଥାନ୍ତି ଥୋକେ ।
ପୂର୍ବରୁ ଦ୍ୱିଗୁଣ ହୋଇ କୃଷି ଉପୁଜଇ
କରନ୍ତି ପ୍ରଜାଏ ଭୋଗ ତାହା ସୁଖପାଇ ।
ସୁଖେ ବଣିଜ କରନ୍ତି ବହୁଧନ ମିଳେ
ପାଟଳ କୁଳଙ୍କୁ ଭୋଗ ସ୍ୱର୍ଗଠାରୁ ବଳେ ।
ରାଉତ ରଥି ପଦାତି ସେନାଦଳ ଯେତେ
ଆବର ଅଛନ୍ତି ଗଜ ଅଶ୍ୱ ଅପ୍ରମିତେ ।
ଲକ୍ଷକୋଟି ଭଣ୍ଡାରରୁ ନିତ୍ୟ ସଦାବର୍ତ୍ତ
ନ ସରଇ ଯେତେ ବ୍ୟୟ ହୁଏ ଅପ୍ରମିତ ।
ବୋଲନ୍ତି ମାନବ ବିଷ୍ଣୁ ବୋଲି ମୂର୍ଖଜନେ
କେ ଅନ୍ତ ପାଇବ ଚିନ୍ତି ସେ ମହିମା ଧ୍ୟାନେ ।
ଜନ୍ମକାଳୁ ଆମ୍ଭେ ଦେଖିଅଛୁ ଯାହା ରହି
ବେଳକୁ ବେଳ ଅଧିକ ଗଡ଼ ପ୍ରକାଶଇ ।
ଅପୂର୍ବ ଗଡ଼ ସୃଜିଲେ କରି ଅତି ଦୃଢ଼
ସୁବର୍ଣ୍ଣମୟ ସେ ପୁର ଦିଶେ ଚାରିବେଢ଼ ।
ଏ ଗଡ଼ରେ କେତେ ଦ୍ରବ୍ୟଅଛି ଅନ୍ତନାହିଁ
ବହିନେଲେ ପୂରିଅଛି ଦେଲେ ନ ସରଇ ।
ତୁମ୍ଭ ପ୍ରଭା ଲାଗି ଦିଶେ ସମସ୍ତ ସୁନ୍ଦର
ବାଳବୃଦ୍ଧ ଦିଶୁଛନ୍ତି ଯୁବା ପରକାର ।
କରୁଛନ୍ତି ଦେବେସ୍ୱର୍ଗେ ଯେତେଯେତେ ଭାଗ
ତହୁଁ ଶତେଗୁଣ ବଳି ବଦରିକା ସ୍ୱର୍ଗ ।
ଏତେ ବୋଲି ଚଉଷଠି ସହସ୍ର ନାୟିକା
ନୃସିଂହ ପାଦରେ ନମି ଗଲେ ବଦରିକା ।
ଯେ ଯାହା ପୁରରେ ଯାଇ ହେଲେ ପରବେଶ
ସଭାରେ ଯେ ବିଜେ କରିଛନ୍ତି ଜଗଦୀଶ ।
ମହାବଳୀ ଗରୁଡ଼ ଯେ ଶ୍ରୀଛାମୁରେ ବସେ
ସୁଜାଣ ମନ୍ତ୍ରୀ ବସନ୍ତି ଜଗଦୀଶ ପାଶେ ।
ବୋଲନ୍ତି ହେ ମନ୍ତ୍ରୀ ତୋତେ କହିବା ଯା ଶୁଣ
ଆମ୍ଭର ବାହନ ଅଟେ ଏହୁ ପକ୍ଷୀ ଜାଣ ।
ମୋତେ ଏ ବହିଥାଏ ମୁଁ ବହେ ବ୍ରହ୍ମାଣ୍ଡକୁ
ମୋ କହିବା କଥା ଜଣା ନୁହଇ କାହାକୁ ।
ସବୁ ଜୀବ ଦେହରେ ମୁଁ ରହେ ରାତ୍ର ଦିନ
ଆମ୍ଭ କୁଶଳେ ବର୍ତ୍ତନ୍ତି ତେଣୁ ସର୍ବଜନ ।

ମୋହର ଜୀବନ ଏହୁ ମୁହିଁ ପ୍ରାଣ ତାର
ଷଡ୍‌ଯତି ମଧ୍ୟେ ଏହୁ ଅଟେ ଖଗେଶ୍ୱର ।
ମୁହିଁ ବହିଥାଇ ଏହି ସଂସାରକୁ ମୁଣ୍ଡେ
ମୋତେ ବହି ବୁଲେ ଏହୁ ଅଶେଷ ବ୍ରହ୍ମାଣ୍ଡେ ।
ମୋ କହିବା କଥା ନାହିଁ କାହାକୁ ତ ଜଣା
ଅଟନ୍ତି ଜୀବ ପରମ ବିଷ୍ଣୁ ଅକଳଣା ।
ଗରୁଡ଼ ଗୋବିନ୍ଦ ବେନି ଅଟନ୍ତି ଯେ ଏକ
ଏକ ବୋଲି ନ ପାରନ୍ତି ଚିହ୍ନି କେଉଁଲୋକ ।
ଏକଥାକୁ ଏକ ବୋଲି ଯେ ପାରନ୍ତି ଚିହ୍ନି
ତାହାକୁଟି ସୁପଣ୍ଡିତ ବୋଲି ମହାଜ୍ଞାନୀ ।
ଶୁଣନ୍ତି ସୁଜାଣ ମନ୍ତ୍ରୀ କହନ୍ତି ମୋହନ
ଯେ ଚିହ୍ନି ପାରନ୍ତି ତାକୁ ବୋଲି ସୁଜ୍ଞଜନ ।
ଗରୁଡ଼ ଅଟଇ ଜୀବ ମୁଁ ପରମ ବ୍ରହ୍ମ
ତେଣୁ ଯେ ପରମାନନ୍ଦ ଅଟେ ମୋର ନାମ ।
ଗରୁଡ ଜୀବର ଆତ୍ମା ମୁହିଁ ପରମଟି
ମୋତେ ସେହୁ ବହେ ମୁହିଁ ବହେ ନବସୃଷ୍ଟି ।
ନବସୃଷ୍ଟି ବୋଇଲେ ସେ ନବଦ୍ୱାର କହି
ପୁଛିଲେ ଦଶଦ୍ୱାର କେ ନପାରେ ବତାଇ ।
ଦଶଦ୍ୱାର ମୁଖପଦ୍ମ ପ୍ରକାଶଇ ଶବ୍ଦ
ସେହିଟି ଅଟଇ ଜାଣ ଗରୁଡ଼ ଗୋବିନ୍ଦ ।
ଗରୁଡ଼ ଉପରେ ବସି ମୁଁ ଟେକେ ହକାର
ସକାରେ ବିହାର କରି ଆସେ ତତପର ।
ହକାରୁ ସକାର କ୍ଷରେ ଶବଦ ପ୍ରକଟେ
ଗରୁଡ଼ ଉପରେ ବସି ଚାଲଇ ତ୍ରିକୂଟେ ।
ଶୁଣନ୍ତି ସୁଜାଣ ମନ୍ତ୍ରୀ କହନ୍ତି ଯେ ବ୍ରହ୍ମା
ଏ ରୂପେ ଗରୁଡ଼ ହରି ଜାଣ ଏକ ଆତ୍ମା ।
ସବୁରି ଦେହରେ ଜୀବ ପରମ ଯେ ଥାନ୍ତି
ସଂସାର ମୁଣ୍ଡାଇ ଚାଲି ଶବ୍ଦ ପ୍ରକାଶନ୍ତି ।
ଶୁଣିକରି ମନ୍ତ୍ରୀବର ଚାହେଁ ନୃସିଂହକୁ
ସଂସାର-ସଙ୍ଗ ମୂଣ୍ଡେ ସେ ଦେଖିଲା ଆତ୍ମାକୁ ।
ବୋଇଲା ସବୁରି ଦେହେ ଅଛନ୍ତି ଏ ରୂପେ
ଯାହା ଚିହ୍ନି ନ ପାରଇ କେହି ପ୍ରାଣୀ ଆପେ ।
ଭଲା ଯେ ମହିମା ଏହି ନୃସିଂହ ଖବର
ସବୁରି ଦେହେ ରହିଣ ବହେ କଳେବର ।
ନୃସିଂହ ବୋଲନ୍ତି ମନ୍ତ୍ରୀ ଦେଖ ଗରୁଡ଼କୁ
ଏହୁ କହିବାରୁ ମାରେ ମୁଁ ଦୈତ୍ୟ ଯାକଙ୍କୁ ।
ଶୁଣିଣ ମନ୍ତ୍ରୀ ଲେଉଟି ପୁଣି ଦେଲା ଚାହିଁ
ଗରୁଡ଼ ଉପରେ ବସିଛନ୍ତି ଭାବଗ୍ରାହୀ ।
ଦେଖିଲେ ସେ ଶଙ୍ଖ ଚକ୍ର ଗଦା ପଦ୍ମ ଧରି
ଗରୁଡ଼ ବାହନେ ପ୍ରଭୁ ଛନ୍ତି ବିଜେକରି ।

ଲେଉଟି ପ୍ରଭୁଙ୍କୁ ମନ୍ତ୍ରୀ ଚାହିଁଲା ନିରେଖି
ଦେଖିଲା ଆସନେ ବସିଛନ୍ତି ପଦ୍ମଆଖି ।
ତରାଟିଣ ଗରୁଡ଼କୁ ପୁଣି ସେ ଚାହାଁନ୍ତେ
ତାହାର ପିଠିରେ ବସିଛନ୍ତି ଲକ୍ଷ୍ମୀକାନ୍ତେ ।
ରତ୍ନ ପାଦୁକାରେ ପାଦ ଦେଇଥିଲେ ହରି
ସେ ପାଦ ଚିହ୍ନାଇ ଦେଲେ ମୋତେ ଗୁରୁ କରି ।
ଦେଖିଲି ଗରୁଡ଼ ପରେ ଶଙ୍ଖଚକ୍ର ଜ୍ୟୋତି
ପ୍ରତ୍ୟକ୍ଷେ ଏ ବୈନତେୟ ଅଟେ ବିଶ୍ୱମୂର୍ତ୍ତି ।
ଜୀବ ପରମ ସବୁରି ହୃଦେ ଅଟେ ସତ୍ୟ
ପ୍ରାଣୀଙ୍କୁ ଅଜଣା ଏହି ଅଟେ ମହାଗୁପ୍ତ ।
ଅବଶ୍ୟ ତାରିବେ ଭବଜଳୁଁ ମୋତେ ହରି
ବସିଲା ଏତେ ପାଞ୍ଚି ସେ ପାଦ ଚିହ୍ନିକରି ।
ସଭାରେ କରନ୍ତି ବିପ୍ରମାନେ ବେଦଧ୍ୱନି
ଏଥୁଅନ୍ତେ ମିଳିଲେକ ଆସି ସର୍ବମୁନି ।
ଚତୁର୍ଦ୍ଦଶ ଭୁବନରେ ଛନ୍ତି ଯେତେ ଋଷି
ଶ୍ରୀନୃସିଂହ ଦର୍ଶନକୁ ମିଳିଲେକ ଆସି ।
ବଶିଷ୍ଠ ସନକ ବିଶ୍ୱାମିତ୍ର ବେଦବ୍ୟାସ
ଅଗସ୍ତି ଯେ ମାର୍କଣ୍ଡେୟ ହୋଇଲେ ପ୍ରବେଶ ।
କପିଳ ଭାର୍ଗବ ବିଭାଣ୍ଡକ ଭରଦ୍ୱାଜ
ବିଶ୍ରବା ଶକ୍ତିମୁନି ଯେ କପିଳ ଅଗ୍ରଜ ।
ବିଭାଣ୍ଡକ ବାଲମିକ ନାରଦ ଗୌତମ
ସନକ ସନତ ଶରଭଙ୍ଗ ସନାତନ ।
ଭାର୍ଗବ ଦୁର୍ବାସା ଆଉ ମରୀଚି ଯେ ମୁନି
ପୁଲହ ତୁମ୍ବର ଅଷ୍ଟାବକ୍ର ଯମଦଗ୍ନି ।
ଆସୁରି ଲୋମାଞ୍ଚ ପଞ୍ଚଶିଖ ବଟଋଷି
ମାଣ୍ଡବ୍ୟ ଯେ ପରାଶର ଗୋମତ ତପସ୍ୱୀ ।
ମେଷ କଞ୍ଚକ କୋକିଳ ଆଦି ମହା ମୁନି
ବୈଶମ୍ପାୟନ ସହିତ ମିଳିଲେ ଯେ ଜ୍ଞାନୀ ।
ବ୍ରହ୍ମଋଷି ଦେବଋଷି ରାଜଋଷି ଯେତେ
ନୃସିଂହଙ୍କ ଦର୍ଶନକୁ ଆସିଲେ ସମସ୍ତେ ।
ଆସିଲେ ବୃଷଭ ପରେ ଚଢ଼ି ସଦାଶିବ
ପାର୍ବତୀଙ୍କୁ କୋଳେ ଧରିଛନ୍ତି ମହାଦେବ ।
ଭୃକୁଟି ଯେ ନନ୍ଦି ନାମ ଡାହାଣେ ଅଛନ୍ତି
ଚାଲନ୍ତି କାର୍ତ୍ତିକ ଆଗ ପଛେ ଗଣପତି ।
ରହିଛନ୍ତି ଚାରିପାଖେ ଶିବଗଣ ବେଢ଼ି
ଏ ରୂପରେ ବିଜେକଲେ ବୃଷପୃଷ୍ଠେ ଚଢ଼ି ।
ଖବର ପାଇଣ ଇନ୍ଦ୍ର ଆସିଲେ ତକ୍ଷଣେ
ଐରାବତ ହସ୍ତୀ ଚଢ଼ି ଅଛନ୍ତି ଆପଣେ ।
ଦଶଦିଗପାଳେ ଯେ ତେତିଶକୋଟି ଦେବ
ନବଗ୍ରହ ସଙ୍ଗେ ଘେନି ଆସିଲେ ବାସବ ।

ଆବର ଯେ ବିଦ୍ୟାଧର କିନ୍ନରଙ୍କ ମେଳେ
ବଦରିକାରେ ମିଳିଲେ ଯାଇ ଆଖଣ୍ଡଳେ ।
ଖବର ପାଇଣ ବ୍ରହ୍ମା ଆସିଲେ ତତ୍ପର
ହଂସ ବାହନରେ ଆସିଛନ୍ତି ବେଦବର ।
ଚଉଷଠି ସହସ୍ର ଯେ ବିପ୍ର ସଙ୍ଗେ ଘେନି
ମିଳିଲେ ବଦ୍ରିକା ଦେଶେ ଯାଇ ପଦ୍ମଯୋନି ।
ବ୍ରହ୍ମା ରୁଦ୍ର ଇନ୍ଦ୍ର ଋଷି ଦେବବୃନ୍ଦ ଦେଖି
ଆସନ ତେଜିଣ ଉଭାହେଲେ ପଦ୍ମ ଆଖି ।
ଶ୍ରୀନୃସିଂହ ବେନିଭାଇ ହ୍ମନ୍ତେ ପାଦେ ଉଭା
ଐରାବତକୁ ତେଜିଣ ଉଠିଲେ ମଘବା ।
ଉଠିଲେ ହଂସ ବାହନ ତେଜି ପଦ୍ମଯୋନି
ବୃଷଭ ତେଜି ଉଠିଲେ ପ୍ରଭୁ ଶୂଳପାଣି ।
ବରୁଣ ମଗର ଯାନ ତେଜି ଉଭା ହେଲେ
ମୃଗ ବାହନ ତେଜିଣ ବାୟୁ ବିଜେ କଲେ ।
ମେଷ ବାହନ ତେଜିଣ ଅଗ୍ନି ଦେବ ଉଠି
ଶମନ ତେଜ୍ୟ କଲେକ ମହିଷର ପିଠି ।
କୁବେର ଉଠିଲେ ନର ବାହନକୁ ଛାଡ଼ି
ସର୍ବେ ଶୃତିଲେ ନୃସିଂହ ପଦ୍ମପାଦେ ପଡ଼ି ।
ଯେ ବିଧି ଆସନମାନ ତେଜି ଦେବତାଏ
ଭୂମିରେ ଉଭାହୋଇଲେ ଭେଟି ଦେବରାୟେ ।
ନୃସିଂହ ବେନି ଭାଇଙ୍କ ପାଦପଦ୍ମେ ନମି
ଈଶ୍ୱର ପାଦରେ ପୁଣି ହୋଇଲେ ପ୍ରଣମି ।
ନମିଲେ ଋଷିମାନଙ୍କ ପାଦେ ଅପ୍ରମିତ
ଦେବ ଅନୁରୂପେ କଲେ ସେ ମାନନ୍ୟକୃତ୍ୟ
ଶ୍ରୀବିଷ୍ଣୁଙ୍କ ପାଦପଦ୍ମେ ବହୁ ସ୍ତୁତି କଲେ
ଚରଣର ଧୂଳିନେଇ ଦେହେ ବୋଳିହେଲେ ।
ଦର୍ଶନ କରିଣ ସ୍ତୁତି କରୁ ବିପ୍ରମାନେ
ଋଷିଏ କଲ୍ୟାଣ କଲେ ଶ୍ରୀହରି କୀର୍ତ୍ତନେ ।
ଈଶ୍ୱର ସନ୍ତୁଷ୍ଟ ହୋଇ ଆଶୀର୍ବାଦ କଲେ
ବ୍ରହ୍ମା କଲ୍ୟାଣ କରିଣ ପାଦେ ଅର୍ଘ୍ୟ ଦେଲେ ।
ସୁଧର୍ମା ସଭାକୁ ଦେଲେ ଉନ୍ଦ୍ର ଦେବ ଆଣି
ସ୍ଥାପିଲେ ବଦ୍ରିକାଶ୍ରମେ ତାକୁ କୁଶପାଣି ।
ବିନତା କୁମରକୁ ଶ୍ରୀବ୍ରହ୍ମା ରୁଦ୍ର ଦେଖି
କରନ୍ତି ଶ୍ରୀବିଷ୍ଣୁ ପୂଜା ଶୁଦ୍ଧକରି ଆଖି ।
ବଦ୍ରିକାଶ୍ରମେ ସ୍ଥାପି ସୁଧର୍ମା ସଭା ଗୋଟି
ନୃସିଂହ ଘେରି ବସିଲେ ତହିଁ ପରମେଷ୍ଠୀ ।
ସକଳେ ବସନ୍ତେ ଦିବ୍ୟଶୋଭା ହେଲା ଉଭା
ତା ମହିମା ନ ପାରନ୍ତି କହି ସୁରଦେବା ।
ସଭାରେ ବସିଅଛନ୍ତି ଶ୍ରୀନୃସିଂହ ଦେବ
ଚାରିପାଶେ ବେଢ଼ିଛନ୍ତି ଦେବବ୍ରହ୍ମା ଶିବ ।

ଦେବଋଷି ଆଦିକଲେ ନୃସିଂହଙ୍କ ପୂଜା
ଗାୟନ କରନ୍ତି ଚାରିବେଦ ମୁନିଦ୍ୱିଜା ।
ଶଙ୍କର ବ୍ରହ୍ମା ବାସବ ସର୍ବଦେବ ଆସି
ପଢ଼ନ୍ତି ନୃସିଂହ ସ୍ତୁତି ତାଙ୍କ ଆଗେ ବସି ।
ଜୟ ଜୟ ଶ୍ରୀନୃସିଂହ ନିତ୍ୟ ନିରାକାର
ଜୟ ଜୟ ନୃସିଂହ ତୁ ଦଶ ଅବତାର ।
ଆମ୍ଭର ହିତରେ ସ୍ୱାମୀ ମଞ୍ଚେ ଜନ୍ମ ହେଉ
ଦୁଷ୍ଟଙ୍କୁ ସଂହାରି ପୁଣି ବୈକୁଣ୍ଠକୁ ଯାଉ ।
ଅବ୍ୟକ୍ତ ବ୍ରହ୍ମତୁ ଦେବ ପୁରୁଷ ପୁରାଣ
ସର୍ବକାଳେ ଆମ୍ଭେମାନେ ତୁମ୍ଭର ଶରଣ ।
ମୁରାସୁର ଭାରା ନ ପାରୁ ଆମ୍ଭେ ସହି
କି ରୂପେ ତାହାକୁ ମାରି ରଖ ପ୍ରଭୁ ମହୀ ।
ଅପାର ଦୁଷ୍ଟ ଅସୁର ଅଛି ଦୈତ୍ୟ ପୋଷି
ତାହାଯୋଗେ ଆମ୍ଭେ ସ୍ୱର୍ଗେ ପାରୁନାହୁଁ ପଶି ।
ଛାମୁକୁ ଆସିବା ପାଇଁ ପାଉ ନାହୁଁ କାଳ
ସେବାରେ ଖଟଣି କରି ରଖିଲା ଚଣ୍ଡାଳ ।
କେତେ କାଳେ ଦରଶନ କଲୁ ଆସି ପ୍ରଭୁ
ଶ୍ରୀ ଛାମୁକୁ ଆଜ୍ଞା ଦେଲେ ବେଗେ ଆମ୍ଭେ ଯିବୁ ।
ଶୁଣିଣ ନୃସିଂହ ତାହା ହସ ହସ ହେଲେ
ମାରିବୁ ମୁରକୁ ବୋଲି ନିଶେ ହସ୍ତ ଦେଲେ ।
ମୁର ମାରଣେ ହୋଇଛୁଁ ଆମ୍ଭେ ଅବତାର
ଏକଥାରେ ଆଉ କିଛି ସଂଶୟ ନ କର ।
ମୁର ରାକ୍ଷସକୁ ଆମ୍ଭେ କେଭେହେଁ ନ ଡରୁ
ପୁତ୍ର ନାତିକୁ ମାରିଣ ଦେଲି କାଲିଠାରୁ ।
ଏବେତ ବୋବାଳି ଘରେ ପଡ଼ିଥିବେ ଯାଇ
ପୁତ୍ରଶୋକ ଗୋଟିକ କି ଅଳପ ଅଟଇ ।
ଏକ ଦୁଇ ନୁହେଁ ଯେ ସତର ଲକ୍ଷ ପୁତ୍ର
ନବଲକ୍ଷ ନାତି ଆଦି ମଲେ କାଲି ରାତ୍ର ।
ମୁର ଦାରୁଣ ଅଛନ୍ତି ସିନା ଆଉ ରହି
ସେନାପତି ସୈନ୍ୟରେ କି କାର୍ଯ୍ୟ ଅଛି ତହିଁ ।
ମୁରର ଯେ ପ୍ରାଣ ଜାଣ ମୋର ହାତେ ଅଛି
ଜୀବଥାଉଁ ମଲାଣି ସେ ବୋଲି ଦିଅ ପୋଛି ।
ସବୁଙ୍କୁ ମାରିବି ଯୁଦ୍ଧକରି ଗୋଟି ଗୋଟି
ଶୂନ୍ୟରେ ଥାଇଣ ତୁମ୍ଭେ ଦେଉଥିବ ଦୃଷ୍ଟି ।
ଏଥିଉତ୍ତାରେ ଯେ ଶୁଣ ହେ ନାରଦ ଦ୍ୱିଜେ
ସଭାରେ କୃଷ୍ଣବଲ୍ଲଭ କଲେ ଯାଇ ବିଜେ ।
ବ୍ରହ୍ମା ଶିବ ଆଦି ପାଦେ କଲେ ନମସ୍କାର
ନମିଲେ ଋଷିମାନଙ୍କୁ ଦେଖି ନୃପବର ।
ଦେବତାମାନଙ୍କୁ ଦେଖି ବହୁ ପୂଜା କଲେ
ଚରଣ ତଳରେ ନମି ଆଗେ ଉଭା ହେଲେ ।

ବ୍ରହ୍ମା ବୋଇଲେ କହିବା ରାଜା ତୋତେ ଶୁଣ
କେତେ ସୁଭାଗ୍ୟେ ଲଭିଲୁ ପୁତ୍ର ନାରାୟଣ ।
ସବୁ ପ୍ରକାଶ କରନ୍ତି ବିଷ୍ଣୁ ନିଜ ଗର୍ଭୁ
ଏହି ସିନା ଶେଷଦେବ ଅନନ୍ତ ଯେ ପ୍ରଭୁ ।
ତୁମ୍ଭର ଯେ ଜ୍ୟେଷ୍ଠ ବଧୂ ଅଟେ କମଳିନୀ
ଶଙ୍ଖନିଧି ପଦ୍ମନିଧି ରାଜେ ହୃଦେ ପୁଣି ।
ହୋଇଛି ଅଚଳ ଯେଣୁ ଲକ୍ଷ୍ମୀ ତୁମ୍ଭ ପୁରେ
ଦେଖ ସେବନ୍ତି ତୋ ପୁତ୍ର ପାଦେ କୋଟି ନରେ ।
ବଲ୍ଲଭ ବୋଲେ କହିଲ ଯେବେ ବିହି ଏହା
ଆପଣଙ୍କ ଆଜ୍ଞା ଯାହା କେ ଭାଙ୍ଗିବ ତାହା ।
କର୍ମରେ ଏମନ୍ତ ପୁତ୍ର ଯେବେ ମୋର ଦେଲେ
କାହିଁକି ମୁରର ଭୟ ମୋତେ ଲଗାଇଲେ ।
ବଲ୍ଲଭ ବାକ୍ୟ ଶୁଣି ହସିଲେ ବିରଞ୍ଚି
ବୋଇଲେ ପୁତ୍ରଙ୍କ ଗୁଣ ନ ଜାଣୁ ତୁ କିଛି ।
ସାକ୍ଷାତରେ ବିଷ୍ଣୁ ଦେହୀ ଜନ୍ମିଲେ ତୋ ଘରେ
ମୁରଲାଗି ବାନ୍ଧିଲେ ଏ ଗଡ଼ ବଦ୍ରିକାରେ ।
ଦୂତକୁ ତ ପେଷିଥିଲା ତୁମ୍ଭେ ଜାଣିଅଛ
ପୁତ୍ରେ ତୋର ଗୁପ୍ତେଯାଇ ମାଇଲେ ତା ବକ୍ଷ ।
ସତରଲକ୍ଷ ପୁତ୍ର ଯେ ନବଲକ୍ଷ ନାତି
ଏକାବେଳେ ମାରିଦେଲା ଏ ଗରୁଡ଼ ଯତି ।
ସେହି ଗରୁଡ଼ଟି ବସିଅଛି ଦେଖ ପାଶେ
ଏହାର ହାତେ ଆମର ମରିବେ ରାକ୍ଷସେ ।
ପ୍ରଥମରୁ ନାତିପୁତ୍ର ମଲେଣି ତା ଜାଣ
ଏବେ ସେନାପତିମାନେ ମରିବେ ଆସିଣ ।
ତେଣୁ ଏହି ଗଡ଼ ବାନ୍ଧିଛନ୍ତି ଅଗୋଚରେ
ଦେଖୁଛ ସେବୁଝୁଁ ଆସି ଆମ୍ଭେ ବ୍ରହ୍ମାସ୍ତୁରେ ।
ତୋହର ପୁରେ ଅଛନ୍ତି ଯେତେ ସଖାସଖୀ
ଜାଣୁଛ ଏ ଅବତାର କଥା ତୁମ୍ଭେ ଦେଖି ।
ରାମ ଅବତାରଟି ଏ କନ୍ୟାଠାରୁ ଅଧେ
ସେବିବେ ବତିଶସସ୍ର ଯାଇ ରାମ ପାଦେ ।
ଶ୍ରୀ ରାମ ରାସ କରିବେ ସରଯୁର ତୀରେ
ଆଧାତ୍ମରେ ଲେଖାଅଛି ନାହିଁ ପୁରାଣରେ ।
ରାସକ୍ରୀଡ଼ା ସାରି ସୁଖେ ପୁଣ ରଘୁବଂଶୀ
କୃଷ୍ଣାବତାରେ ଦ୍ୱାପରଯୁଗେ ହେବେ ଆସି ।
ଏହି ନାୟିକାଗଣରୁ ଷୋଳସସ୍ର ଯିବେ
ଶ୍ରୀକୃଷ୍ଣଙ୍କ ନିମନ୍ତେ ଏ ଗୋପେ ଜନମିବେ ।
ଷୋଳସସ୍ର କନ୍ୟାଯେ ଗୋପବାଳୀ ହେବେ
ଗୋପକନ୍ୟାବୋଲାଇସେ ଶ୍ରୀକୃଷ୍ଣେ ରମିବେ ।
ସେ ଅବତାର ମହିମା ଅକଳିତ ଅଟେ
ତହିଁ ଉତ୍ତାରୁଟି ପ୍ରଭୁ ଯିବେ ବଇକୁଣ୍ଠେ ।
କଳିଯୁଗେ ବସିବେକ ଯାଇ ନୀଳଗିରି
ସେ ଅବତାର ମହିମା ଶୁଣ ଦେବାଚାରି ।
ଏହି ନାଶିକାରୁ ପୁଣି ଆଠସସ୍ର ଜୀବେ
ପଣ୍ଡା ପଢ଼ିଆରୀ ପଶୁପାଳକ ହୋଇବେ ।
ଦଇତାପତି ସୁଆର ଆଉ ମୁଦିରଥ
ଏମାନେ ସେବା କରିବେ ପ୍ରଭୁ ଜଗନ୍ନାଥ ।
ଶ୍ରୀଜଗନ୍ନାଥଙ୍କୁ ସେହି ନେବେ ଦିନକାଳେ
ଶୁଣ ହେ ବଲ୍ଲଭ ଏହିରୂପେ ଆଦିମୂଳ ।
ନୃସିଂହକୁ ଭଜିଲେଟି ସର୍ବ ଭୟ ଯାଏ
ନୃସିଂହଙ୍କୁ ଭଜି ଲୋକ ବଇକୁଣ୍ଠ ପାଏ ।
ଶ୍ରୀନୃସିଂହଙ୍କୁ ଭଜିଣ ସିଦ୍ଧ ଯୋଗୀଜନେ
ଅମର ହୋଇଣ ବସିଛନ୍ତି ଯୋଗାସନେ ।
ନୃସିଂହ ଭଜି ପୁରାଣ କୀର୍ତ୍ତନ ଯେ କରେ
ରହଇ ତାହାର କୀର୍ତ୍ତିଗୋଟି ବ୍ରହ୍ମାଣ୍ଡରେ ।
ଶୁଣହେ ବଲ୍ଲଭ ରାଜା ନୃସିଂହଙ୍କ ବାଣୀ
ନୃସିଂହଙ୍କୁ ଆଶ୍ରାକରି ତରିଯାନ୍ତି ପ୍ରାଣୀ ।
ତୋର ନୃସିଂହ ଏମନ୍ତ ପ୍ରଭୁ ଭାବଗ୍ରାହୀ
ଦୁଷ୍ଟ ନିବାରନ୍ତି ସନ୍ଥଜନ ରକ୍ଷା ପାଇଁ ।
ଏବେ ଏଥି ମୁରଦୈତ୍ୟ ସଂସାରେ ବଳିଲା
ନୃସିଂହ ଜନ୍ମ ଶୁଣିଣ ସହି ନ ପାରିଲା ।
ଜନ୍ମିଛି ଯାହାର ଲୋମ କୋଣୁ ବସୁନ୍ଧରୀ
ତାହାକୁ ମାରିବ ବୋରି ନେଲା ମୁର ଧରି ।
ଅଶୀଳ ତ ଆସିବାର ତୁମ୍ଭେ ଜାଣିଅଛ
ନକହି ତୁମ୍ଭଙ୍କୁ ଲୁଚି ଗଲେଟି ଶ୍ରୀବକ୍ଷ ।
ଯୋଡ଼ିଏ ମାୟା ତନୟ ଅଙ୍ଗୁ ପ୍ରଭୁ କାଢ଼ି
ଗୁପତେ ସେ ଚଳିଗଲେ ତୁମ୍ଭପାଶେ ଛାଡ଼ି ।
ତାର ରାଜ୍ୟକୁ ଅଢ଼ାଇ ବର୍ଷ ହେଲା ଗଲେ
ଦୈତ୍ୟ ପୁତ୍ରଙ୍କୁ ନୃସିଂହ ବିଦ୍ୟା ପଢ଼ାଇଲେ
ତହିଁଉତ୍ତାରୁ ସେ ମୁର କୂଟବୁଦ୍ଧି କଲା
ପୁତ୍ରକୁ ଡକାଇ ତାଙ୍କୁ ଗୁପତେ କହିଲା ।
ବୋଇଲାଯେ ଏ ନୃସିଂହ ଅଟେ ଆମ୍ଭ ଶତ୍ରୁ
ତାହାକୁ ଜଗିଣ ତୁମ୍ଭେ ମାର ଆଜ ରାତ୍ରୁ ।
ସେ କଥା ଶୁଣିଣ ପୁତ୍ରେ ପାଞ୍ଚ ପାପ ବୁଦ୍ଧି
ରାତ୍ରରେ ସର୍ବେ ପଶିଲେ ଆସି ପୁରରୁନ୍ଧି ।
ସେହିଦିନ ତାଙ୍କ ଦୋଷ ପ୍ରଭୁ ନ ଘେନିଲେ
ଗୁପତରେ ନଦୀତୀରେ ଯାଇଣ ରହିଲେ ।
ଲେଉଟି ଆସିଲେ ଆରଦିନ ଦୈତ୍ୟମାଡ଼ି
ରହିଲେ ରଜନୀ ଅର୍ଦ୍ଧେ ଆସି ଗଲେ ବେଢ଼ି
ଶୟନ ପୁରକୁ ଜଗି ଲଗାଇଲେ ଯୂଇ
ଅଗ୍ନିକୁ ଦେଖି ରହିଲେ ପ୍ରଭୁ ଶୂନ୍ୟେ ଯାଇ ।

ଚାହିଁ ଗରୁଡ଼କୁ ଆଜ୍ଞାଦେଲେ ମାର ବୋଲି
ଶୁଣିଣ ଉଠିଲା ପକ୍ଷୀବର ଖଗ ମେଲି ।
ବେନି କାଖେ ରୁଣ୍ଡିଆଇ ସବୁଙ୍କୁ ଧଇଲା
ହାଦେ ଉଡ଼ାଇଣ ସିନ୍ଧୁ ଜଳେ ପକାଇଲା ।
ବଡ଼ବାନଳରେ ମାରି ସବୁ ଦେଲା ପୋଡ଼ି
ଆଣିଲା ନୃସିଂହ ବେନିଭାଇ ତହୁଁ ଧାଡ଼ି ।
ତେଣୁ ସେ ବାନ୍ଧିଲେ କ୍ଷଣେମାତ୍ର ଗଡ଼ରାତ୍ରେ
କାହାକୁ ନ ଜଣାନାହିଁ ସୃଜିଲେ ଜଗତେ ।
କିମ୍ପାଇ ମୁକୁଳା କରି ରଖନ୍ତେ ଏ ସ୍ଥାନ
ଏଘେନି ନିର୍ବନ୍ଧ କରିଗଲେ ଭଗବାନ ।
ବିଶ୍ୱକର୍ମାକୁ ଚିନ୍ତନେ ନିର୍ମାଣିଲା ଗଡ଼
ତୁମ୍ଭର ଭୟ ନାଶିଲେ ଏବେ ଯୋଗାରୁଢ଼ ।
ପାଇଲେ ବଦ୍ରିକା ଲୋକେ କଷ୍ଟ ବୋଲିକରି
ତେଣୁ ଏ ଅଭୟଗଡ଼ବାନ୍ଧିଲେ ପାଚେରୀ ।
କରିବେ ସମର ଏବେ ମରିବେ ଦନୁଜ
ଦେବତାମାନଙ୍କୁ ଏବେ ଦେବେ ଅଇଶ୍ୱର୍ଯ୍ୟ ।
ମାତାପୁତ୍ର ଯୋଡ଼ିଏଯେ ତୁମ୍ଭ ଘରେ ଛାଡ଼ି
ଅସୁର ପୁରକୁ ଗଲେ ଗରୁଡ଼ରେ ଚଢ଼ି ।
ଶୁଣହେ କୃଷ୍ଣବଲ୍ଲଭ କହନ୍ତି ଯେ ବ୍ରହ୍ମା ।
ଏରୂପେ ଅଟେ ନୃସିଂହ ପ୍ରଭୁଙ୍କ ମହିମା ।
ତୁମେ ବିଷ୍ଣୁର ଯେ ଅଟ ପିତାମାତା ପୁଣି
ନର ଜନ୍ମେ ତୁମ୍ଭପ୍ରାୟେ ନାହିଁକେ ଅଗ୍ରଣୀ ।
ଶୁଣିଣ କୃଷ୍ଣବଲ୍ଲଭ ଭଗବତୀ ମାଏ
ବ୍ରହ୍ମା କଥାରୁ ଚିହ୍ନିଲେ ଶ୍ରୀବିଷ୍ଣୁର କାୟେ ।
ବୋଲନ୍ତି ଭଲ ମହିମା ତୋର ହୃଷୀକେଶି
ମାୟାପୁତ୍ର ଘରେ ଛାଡ଼ିଗଲ ବ୍ରହ୍ମରାଶି ।
ଧନ୍ୟ ଏ ଆମ୍ଭର ଭାଗ୍ୟ ଧନ୍ୟ ଚକ୍ରପାଣିସ
ଏତେବୋଲି ବନ୍ଧାଇଲେ ଶିରେ ଅର୍ଘ୍ୟଁ ଆଣି
ବଜାଇ ଶଙ୍ଖ ମହୁରୀ ଶ୍ରୀବୀର କାହାଳୀ
ନୃସିଂହକୁ ପୁଷ୍ପାଞ୍ଜଳି ଦ୍ୟନ୍ତେ ସର୍ବେ ମିଳି ।
ଚନ୍ଦନ ଚତୁଃସମେ ଶ୍ରୀନୃସିଂହ ପୂଜିଲେ
ଅଷ୍ଟରତ୍ନ ଅଳଙ୍କାର ଅଙ୍ଗେ ପିନ୍ଧାଇଲେ ।
ଲଲାଟେ ହରି ମନ୍ଦିର ଶିରେ ଦୁର୍ବାକ୍ଷତ
ହୁଳହୁଳି ଦିଅନ୍ତି ଯେ ନାରୀ ଅପ୍ରମିତ ।
ପୁତ୍ରକୁ ବେଶ କରିଣ ଭଗବତୀ ରାଣୀ
ଭିତରପୁରେ ମିଳିଲେ ଯାଇ ସେଇକ୍ଷଣି ।
ଏଥୁଅନନ୍ତରେ ସେହି ଶ୍ରୀନୃସିଂହ ପ୍ରଭୁ
ବ୍ରହ୍ମାଙ୍କୁ ବୋଲନ୍ତି ଦେଖିଯିବା ଗଡ଼ ସବୁ ।
କିରୂପେ ସେ ବିଶ୍ୱକର୍ମା ସଜକଲା କାଲି
ସେ ଗଡ଼େ ପଶି ଦେଖିବା ଚାଲ ବୁଲିବୁଲି ।
ଏତେକ କହି ଗରୁଡ଼େ ହରି ବିଜେକଲେ
ଶେଷଦେବ ଦେବଯାନ ତହୁଁ ଆହୋରିଲେ ।
କୃଷ୍ଣବଲ୍ଲଭ ରାଜନ ହେଲେ ଅଶ୍ୱଲାଗି
ନୃସିଂହ ଗହଣେ ଲାଗିଅଛି ମାୟା ତ୍ୟାଗୀ ।
ଶଙ୍ଖ ଚକ୍ର ଗଦାପଦ୍ମ ଶୋହେ ବିଷ୍ଣୁକରେ
କଉସ୍ତୁଭ ମଣି ଶୋଭୁଅଛି ହୃଦୟରେ ।
ନୀଳଇନ୍ଦୀବର ପ୍ରାୟେ ଦିଶେ ତନୁ ଶୋଭା
ଶିରେ ମୁକୁଟ ସେବତୀ କୁସୁମର ଗଭା ।
କଙ୍କଣ ବାହୁଟି ବିଦମୁଦି ଜଗଦ୍‌ବଳା
ମଣିମାଣିକ୍ୟ ହୀରାରେ ବିରାଜଇ ଗଳା ।
କଟିରେ ସୁଝୀନବାସ କନ୍ଧେ ଯଜ୍ଞସୂତା
ପ୍ରକାଶି କୋଟି ମନ୍ଦର ରୂପ ଜଗଜ୍ଜିତା ।
ବିଜୟ କଲେ ସେ ପ୍ରଭୁ ଗରୁଡ଼ ପୃଷ୍ଠରେ
ଦେବଙ୍କୁ ବୋଇଲେ ବସ ଯେଯାହାଯାନରେ
ବ୍ରହ୍ମା ରୁଦ୍ର ଇନ୍ଦ୍ର ନୃସିଂହଙ୍କ ଆଜ୍ଞା ପାଇ
ବାହାରିଲେ ନିଜ ନିଜ ବାହନ ଆରୋହି ।
ବଇକୁଣ୍ଠପୁର ପ୍ରାୟେ ଦିଶେ ବଦରିକା
ସେବାରେ ବସିଅଛନ୍ତି ସକଳ ନାୟିକା ।
ମଙ୍ଗଳ ହୁଳହୁଳିରେ ଗୀତ ବାଦ୍ୟଧ୍ୱନି
ଅଙ୍ଗ ଢାଳି ଢାଳି ଚାଲୁଅଛନ୍ତି କାମିନୀ ।
କେହୁ ବକ୍ରେ ଚାହାନ୍ତି କେ ଚାହାନ୍ତି ନିରେଖି
ଜାଣନ୍ତି ନାରୀଙ୍କ ମନ କଥା ପଦ୍ମ ଆଖି ।
ମହୁରୀ ତାଳ ଯେ ନାନାବିଧ ବାଦ୍ୟବାଜେ
ଗରୁଡ଼ପୃଷ୍ଠେ ବିଜୟ ପ୍ରଭୁ ଦେବରାଜେ ।
ଆକାଶେ କରନ୍ତି ପୁଷ୍ପବୃଷ୍ଟି ଦେବଗଣେ
ଶ୍ରୀ ନୃସିଂହ ଶେଷଦେବ ବିଜୟ ଗହଣେ ।
ସମସ୍ତ ଦେବତା ସୁଖେ ଆସନରେ ବସି
ନୃସିଂହ ଚରଣେ ବିଜେ କଲେ ହସିହସି ।
କିନ୍ନରୀ ଅପସରାଏ ଆଗେ ଆଗେ ରହି
ବଜାନ୍ତି ହରଷେ ତାଳଖୋଳ ଗୀତ ଗାଇ ।
ମନପବନ ରଥରେ ଋଷିମାନେ ବସି
ବଜାନ୍ତି ପଞ୍ଚମସ୍ୱରେ ବୀଣା ହସି ହସି ।
ନୃସିଂହଙ୍କ ବେନି ପାଶେ ବ୍ରହ୍ମା ପଞ୍ଚାନନ
ଚାଲନ୍ତେ ବାହନେ ବସି ହୋଇ ହୃଷ୍ଟମନ ।
ଚାରିପାଶେ ଦଶଦିଗପାଳେ ସଜ ହୋଇ
ଚାଲନ୍ତି ବାହନମାନ ଚଢ଼ି ଶ୍ରଦ୍ଧାବହି ।
ଦ୍ୱିଜମାନେ ରହି ବେଦ ପଢ଼ନ୍ତି ଚୌପାଶେ
ମହାସନ୍ତ୍ରମରେ ଯାଉଛନ୍ତି ଦଶଦିଶେ ।
ବୈକୁଣ୍ଠପୁରେ ବିଷ୍ଣୁଙ୍କ ଯେରୂପେ ଗ୍ରହଣ
ତହୁଁ ଶତ ଅଧିକରେ ଯାନ୍ତି ହରିଗଣ ।

ପାଞ୍ଚୁଛନ୍ତି ଦେବ ଏବେ ଯିବ ଆମ୍ଭ ଦୁଃଖ
ମୁରାସୁରକୁ ମାରିବେ ନିଶ୍ଚେ ପଦ୍ମମୁଖ ।
ଆଉ ଅବା କେତେଦିନ ଅଛି ଦୁଃଖଭୋଗ
ଶ୍ରୀନୃସିଂହ ପ୍ରଭୁ ଲାଗି କରିବା ଦୈଭୋଗ ।
ଏରୂପରେ ମନେ ମନେ ପାଞ୍ଚି ଦେବଗଣେ
ଚାଲନ୍ତି ବଦ୍ରିକାଦାଣ୍ଡେ ବିଷ୍ଣୁଙ୍କ ଗହଣେ ।
ଅଶୀଏ ଅର୍ବୁଦ ଯୋଦ୍ଧା ଶତର୍ବୁଦ ରଥ
ଚାଲନ୍ତି ପନ୍ଦର ଲକ୍ଷ ପାଇକ ପଦାତି ।
ଉଡ଼ଇ ଆଲମ୍ୱ ପାଟଛତ୍ର ଅପ୍ରମିତ
ଉଛୁଳଇ ବାଦ୍ୟନାଦ ଆଘାତ ଜଗତ ।
ଶ୍ରୀନୃସିଂହ ପ୍ରଭୁଲାଗି ସର୍ବେ ତେଜୋମୟ
ପ୍ରକାଶନ୍ତି ଶୌର୍ଯ୍ୟ ଧୈର୍ଯ୍ୟବଳ ମେରୁପ୍ରାୟ ।
ଚଉଦସସ୍ର ବଜାର ନଉସସ୍ର ସାହି
ବୁଲନ୍ତି ଗରୁଡ଼ ପୃଷ୍ଠେ ପ୍ରଭୁ ଭାବଗ୍ରାହୀ ।
ଦେଖନ୍ତି ବଦ୍ରିକାପୁର ଗରୁଡ଼ରେ ଚଢ଼ି
ଧାମନ୍ତି ଲୋକେ ଦେଖିଣ ଆଗପଛ ମାଡ଼ି ।
ବିଶ୍ୱକର୍ମା ସୃଜିବାର ଯେବଣ ଦୁର୍ଗମ
ମଞ୍ଚମଣ୍ଡଳ ଯାକକୁ ଅଟେ ଅତି ରମ୍ୟ ।
ବ୍ରହ୍ମା ବୋଇଲେ ଶୋଭିଲା ଅଟେଏ କଟକ
ଦିଶଇ ବୈକୁଣ୍ଠପୁର ଦ୍ୱିଗୁଣ ଝଟକ ।
ତହିଁ ଅଛନ୍ତି ନୃସିଂହଦେବ ବିଜେକରି
ସହସ୍ରେ ବୈକୁଣ୍ଠହେଲେ ନୁହେ ତାକୁ ସରି ।
ହରି ଯେଉଁପୁରେଥାନ୍ତି ସେ ବୈକୁଣ୍ଠ ଏକା
ତେଣୁ ବଇକୁଣ୍ଠ ଅଟେ ଜାଣ ବଦରିକା ।
ଶ୍ରୀନୃସିଂହ ସ୍ୱାମୀଜାଣ ଆଜ୍ଞା ପରମାଣେ
ବିଶ୍ୱକର୍ମା କେତେଚିତ୍ର ସ୍ଥାପିଅଛି କୋଣେ ।
ଆବର ସେ ଗଡ଼ ବାନ୍ଧିଅଛି ଯାହା ଆଣି
ନପାରିବେ କହି କେହୁ ତାହା ପରିମାଣି ।
ଦୋମୁହିଁ ଯେ ଆଡ଼ମୁହିଁ ଘର ଗୁଣ୍ଡିଜଳା
ପଞ୍ଜୀରମେଳା ଜାଙ୍ଗୁଲା ଗୁଜ ଚୋରିନଳା ।
ଧାଉଡ଼ି ପିଣ୍ଡା ଯେ ବେଦୀମାନ ଦମଦମା
କେଲୁଆ ମଞ୍ଚା ଭାଡ଼ି ଯେ କପାଟର ସୀମା ।
ଚକଡ଼ା ନଳି ଖାତ ଯୋଜର ନଳି ଗୁଣ୍ଡ
ଦୁଆଡ଼ ସାବେଲା ଖଣ୍ଡା ଛୁରୀ ଫରୀ କାଣ୍ଡ ।
ତୀର ଧନୁ ପରଶୁ ଯେ କାତି ଏକମୁନା
ବାଙ୍କେଡୀ ଗୁରୁଜଗୋଳି ଦୋକନାଫର୍କନା ।
ବ୍ରହ୍ମପୁରୀ ବିଷ୍ଣୁପୁରୀ ରୁଦ୍ରପୁରୀ ପନ୍ଥା
ଯୁଝିଲେ ତ ତହିଁ ବସି ଛିଡ଼େ ଶତ୍ରୁ ମଥା ।
ଏ ବଡ଼ ସୂତ୍ର ମାର୍ଗକେ ପାରୁ ମୁଖେ କହି.
ଲାଖ ଭେଦ କାଣ୍ଡ ସୂତ୍ର ସବୁ ଅଛି ହୋଇ ।

ଏରୂପେ ବୋଇଲେ ବ୍ରହ୍ମା ରୁଦ୍ରଇନ୍ଦ୍ରଯାଏ
ପ୍ରଶଂସା କରି ଦେଖନ୍ତି ସେ ଅପୂର୍ବ ପ୍ରାୟେ ।
ବ୍ରହ୍ମା ବୋଲନ୍ତି କଲିଣି ମୁହିଁ ଯେତେ ଭୋଗ
ଲେଖନ୍ତେ ଯେ ଶତକୋଟି ପଦ୍ମ ହେବଯୁଗ ।
ଏରୂପେ ଗଡ଼ର ମାର୍ଗ ଦେଖି ନାହିଁ ଦିନେ
ବୈକୁଣ୍ଠର ଶତେଗୁଣ ଦିଶୁଛି ନୟନେ ।
ରୁଦ୍ର ବୋଇଲେତ ମୁହିଁ ଜନ୍ମ ହେଲା ଦିନୁ
ଦେଖନ୍ତେ ପନ୍ଦରକୋଟି ଭୋଗହେଲା ମନୁ ।
ମନୁ ଗୋଟିକେ ପୁଣି ବିସ୍ତାରି ଗଣ୍ଡାଯୁଗ
ସତ୍ୟ ସତର ଲକ୍ଷ ଅଠେଶସସ୍ର ଭୋଗ ।
ତ୍ରେତା ବାରଲକ୍ଷ ଛୟାଣୋଇ ସସ୍ରଯାଇ
ଦ୍ୱାପର ଆଠଲକ୍ଷ ଚୌଷଠି ସସ୍ର ହୋଇ ।
କଳି ଚାରିଲକ୍ଷ ଯେ ବତୀଶସସ୍ର ଜାଣ
ଏହିରୂପେ ଚାରିଯୁଗ ଏକ ଗଣ୍ଡା ପୁଣ ।
ପଞ୍ଚମୁଖେ ଅଛି ମୋର ପଞ୍ଚଦଶ ନେତ୍ର
ତହିଁରେ ଦିନେତ ଦେଖିନାହିଁ ଏଡ଼େକ୍ଷେତ୍ର ।
ବାସବ ବୋଇଲେ ସତ୍ୟସୃଷ୍ଟି ପାଳେ ମୁହିଁ
ବଦ୍ରିକା ସମାନ ଗଡ଼ କାହିଁ ଦେଖିନାହିଁ
ଋଷିଏ ବୋଇଲେ ଆମ୍ଭେ ଜନମୁ ଆମର
ଏଡ଼େଗଡ଼ ଦେଖିନାହୁଁ ଭ୍ରମି ତିନିପୁର ।
ଆଉ ଅଛନ୍ତି ବଦ୍ରିକା ନଗ୍ରେ ଯେତେଲୋକ
ସମସ୍ତେ ଦେଖିଣ ତୋଷ ହୁଅନ୍ତି ଗଡ଼ଯାକ ।
ଏରୂପେ ନଗର ବୁଲି ଦେଖାଇଲେ ହରି
ସିଂହଦ୍ୱାରେ ରହିଲେ ସେ ଆସି ବିଜେକରି ।
ବ୍ରହ୍ମାଏ ବୋଇଲେ ଆମ୍ଭେ ହେଉଛୁ ମେଲାଣି
ମୁରକୁ ମାରିଣ ଏବେ ରଖ ଏ ଧରଣୀ ।
ରୁଦ୍ର ବୋଇଲେକ ମୁହିଁ କି କରିବି ପୁଣ
ଶର ଦେଇପାରେ ମୁହିଁ ନ ପାରେ ମାରିଣ ।
ତଥାପି ଶରୀରୁ ହୋଏ ଶରୀର ସମ୍ଭୁତ
ଶରୀରେ ନ ରହି ପ୍ରାଣୀ ହୁଅନ୍ତି ନିପାତ ।
ଶରୀରକୁ ଆୟୁ ଶତେ ଆଠ ଯେ ବରଷ
ଏ କଥା ଲେଖିଅଛନ୍ତି ବେଦେ ଜଗଦୀଶ ।
ଶରୀରେ ଲେଖିଛି ଯାହା ନ କରି ତା ପ୍ରାଣୀ
ଅଳପରେ ଅଳ୍ପାୟୁଷ ହୁଅନ୍ତି ନ ଜାଣି ।
ଶୁଣିଣ ନୃସିଂହ ଦେବ ହେଲେ ହସ ହସ
ବୋଇଲେ ତ ଏବେ ଚଳିଯାଅ ଯେଝାଦେଶ
ମୁରାସୁର ଦୈତ୍ୟକଥା ଲାଗିଲା ଆମ୍ଭଙ୍କୁ
ଅବତାର ହୋଇଅଛୁ ତାକୁ ମାରିବାକୁ ।
ଆଜ୍ଞା ପାଇ ବ୍ରହ୍ମା ରୁଦ୍ର ଇନ୍ଦ୍ର ଚଳିଗଲେ
ଋଷିଙ୍କର ସହିତରେ ସର୍ବେ ବିଜେକଲେ ।

କିନ୍ନରୀ ଅପସରୀ ଯେ ଦେବଗଣ ଆଦି
ଯେ ଯାହା ଭୁବନେ ଯାଇ ଭୋଗ କଲେଗାଦି
ଗରୁଡ଼ଙ୍କୁ ଦେବରାୟେ ମଣୋହି କରାଇ
ପିତାମହ ଅନ୍ତଃପୁରେ ବିଜେ କଲେ ଯାଇ ।
ବେନି ବଧୂଙ୍କୁ ସୁବେଶ କରି ଭଗବତୀ
କମଳା ଇଳାବର୍ଣ୍ଣିକା ଆବର ଭାରତୀ ।
ଚୌଷଠି ସହସ୍ର କନ୍ୟା ଆଉ ଅଷ୍ଟ ସଖୀ
ଏହାଙ୍କ ବେଶ ବର୍ଣ୍ଣିକେ ପାରେ ଗ୍ରନ୍ଥଲେଖି ।
ଘେନିଣ ନାୟିକାଗଣ ଭଗବତୀ ରାଣୀ
ପୁତ୍ରଙ୍କୁ ଶିରେ ବନ୍ଦାଇ ଦେଲେ ଅର୍ଘ୍ୟ ଆଣି ।
ମଙ୍ଗଳ ହୁଳହୁଳି ଯେ ଗୀତନାଦ କରି
ମଣୋହି ଗୃହକୁ ଗଲେ ପୁତ୍ର ସଙ୍ଗେ ଧରି ।
ଆସନେ ବସାଇ ତିନିପୁତ୍ରେ ଭଗବତୀ
ମୁରୁଜମାନ ଦେଇ ଠା ସଜ କରିଛନ୍ତି ।
ପିତା ବାମେ ଦକ୍ଷିଣେ ନୃସିଂହ ବେନିଭାଇ
ମଣୋହିରେ ବିଜେକଲେ ଆନନ୍ଦିତ ହୋଇ ।
କମଳା ସମ୍ପାଦି ଷଡ଼ରସ ଦ୍ୟନ୍ତି ବାଢ଼ି
ପରଷନ୍ତି ଭଗବତୀ ଝିଲି ପୁଲି ନାଡ଼ୀ ।
ବେନିପାଶେ ବେନି ଭାଇ ମଧ୍ୟରେ ବଲ୍ଲଭ
ଭୁଞ୍ଜିଣ ହେଲେ ସନ୍ତୋଷ ଶ୍ରୀନୃସିଂହଦେବ ।
ଲକ୍ଷ୍ମୀ ଭଗବତୀ ଇଳା ଅଷ୍ଟସଖୀ ଆଦି
ନାୟିକାଗଣ ମିଶିଲେ ଭୁଞ୍ଜିଲେ ସମ୍ପାଦି ।
ଆଚମନ ସାରି ତହୁଁ ତାମ୍ବୁଳ ଭୁଞ୍ଜିଲେ
ମହାଲକ୍ଷ୍ମୀ ପୁରକୁ ଶ୍ରୀନୃସିଂହ ଗଲେ ।
ଇଳା ଠାକୁରାଣୀପୁରେ ବିଜେ ଶେଷଦେବ
ନାନାରୂପେ କ୍ରୀଡ଼ାରସେ କଲେ କେଳିଭାବ
ଲକ୍ଷ୍ମୀ ନୃସିଂହ ମହିମା ରସେ ଅଲୋକିତ
ଲକ୍ଷ୍ମୀବିନା ଆନ ସ୍ତ୍ରୀ ନଛୁଅନ୍ତି ଶ୍ରୀକାନ୍ତ ।
ଆନ ସ୍ତିରୀ କ୍ରୀଡ଼ାଭାବ ଅଟେ ମାୟାରସ
ସେ ପାଦେ ଶରଣ ବିପ୍ର ପୀତାମ୍ବର ଦାଶ ।
ଜାତିରେ ବ୍ରାହ୍ମଣ ହୋଇ ଅଟେ ମୁହିଁ ମୂର୍ଖ
ସଭାରେ ମୁଁ କରିନାହିଁ କେବେ ପକ୍ଷାପକ୍ଷ ।
ସବୁଦିନେ ଉଦାସରେ ଦିନ ମୋର ଯାଏ
ବିଷ୍ଣୁର ଚରଣ ଭଜି ସମୟ କଟାଏ ।
ସୁଜନଙ୍କ ପାଦପଦ୍ମେ ଲାଗେ ଖେଡୁଆଳି
ଦେଖିଲେ ମୂରୁଖ ଜନ ତହୁଁ ଯାଏ ଚାଲି ।
ପଣ୍ଡିତଜନଙ୍କୁ ମୋର ନଥାଇଯେ ଭୟେ
ମୂର୍ଖଙ୍କୁ ଦେଖି ଅନ୍ତର ହୋଇ ମୁହିଁ ଯାଏ ।
ସୁଜନ ସୁଜ୍ଞାନୀ ପଣ୍ଡିତ ଯେବେ ପ୍ରାଣୀ
ସେମାନେ ଚିହ୍ନିପାରନ୍ତି ଏକା ମୋତେ ପୁଣି
ସଂସାରଯାକେ ଅଛନ୍ତି ଯେତେ ଜୀବଜନ୍ତୁ
ସବୁରି ସାନପୁତ୍ର ମୁଁ ଅଟେ ବୀର୍ଯ୍ୟତନ୍ତୁ ।
ସମସ୍ତେ ମୋହର ପିତା ସବୁ ସ୍ତିରୀମାତା
ଏହାଲେଖବୋଲି ଆଜ୍ଞାଦେଲେ ଜଗଜ୍ଜିତା ।
ଶ୍ରୀବିଷ୍ଣୁ ଆଜ୍ଞା ପ୍ରସାଦୁଁ ଲେଖେ ମୁଁ ପୁରାଣ
ବିପ୍ର ପୀତାମ୍ବର ଦାଶ ପଶିଲା ଶରଣ ।



## ମୁରାସୁରର ସଭା ଓ ପୁତ୍ରଙ୍କ କଥା ଶୁଣି ଚାରିଦିଗକୁ ଦୂତ ପ୍ରେରଣ

ଏହିରୂପେ ଦିବାରାତ୍ର ଯାନ୍ତେ ହୋଇଭୋଗ
ସଭାରେ ବିଜୟକରି ବସିଲେ ନୃସିଂହ ।
ସେହିଠାରୁ ମୁରଦୈତ୍ୟ କଥା ଏବେ ଶୁଣ
ଚତୁର୍ଥ ସାଗର ବାଣୀ ଅଟେ ଏ ପୁରାଣ ।
କନକାବତୀ କଟକ ନଗର କାହାଣୀ
ସାବଧାନେ ବସି ଶୁଣ ଏବେ ନୃପମଣି ।
ସେ ନଗର ପୂର୍ବଦ୍ୱାରେ ମୁର କରେ ସଭା
ତିନିପୁର ଲୋକେ ଆସି ହୋଇଛନ୍ତି ଉଭା ।
ଦେବଗଣ ନରଗଣ ନାଗଗଣ ଆଦି
ଛତିଶ ସେନା ଆବର ଯେତେ ମହାଯୋଧି ।
ବାରତା କହନ୍ତି ଦୂତେ ତିନିପୁରୁ ଆସି
ପାତ୍ରମନ୍ତ୍ରୀଙ୍କ ମୁଖରୁ ଶୁଣେ ରାଜା ବସି ।
ଶୁକ୍ରଗୁରୁ ରହିଛନ୍ତି ତହିଁ ବିଜେକରି
ବସିଛନ୍ତି ସଭାଯାକ ନିଶବଦେ ପୂରି ।
ଆଖଡ଼ାଶାଳ ଖବର ଦେଲା ଚାର ଆସି
ବୋଇଲାକ ସାବଧାନେ ଶୁଣ ଦୈତ୍ୟଶଶୀ ।
ଯେତେ ତୁମ୍ଭ ପୁତ୍ର ନାତି ବିଦ୍ୟା ପଢୁଥିଲେ
ନାହାନ୍ତି ସେଠାରେ କେହିକାହିଁ ଚାଲିଗଲେ
ରାହୁତ ମାହୁନ୍ତ ଆଦି ଯେତେକ ପଦାତି
ପାହାରିଗଣ ସହିତେ ଗୋଟିଏ ନାହାନ୍ତି ।
ଆଖଡ଼ାଶାଳର ସୀମା ପାଚେରୀକି ଯାଇ
ଭୋଦେବ ଦେଖିଲିତହିଁ କେହି ଲୋକନାହିଁ ।
ପ୍ରଥମ ଖଣ୍ଡ ଆବର ବୃକ୍ଷ ଗିରି ଖଣା
ହୋଇଅଛି ମହାଶୂନ୍ୟ ତେଡ଼େକ ଅଗଣା ।
ମୋହର କହିବା କଥା ବିଶ୍ୱାସ ନହେଲେ
ବୁଝନ୍ତୁ ଅପର ଦୂତପେଶି ତାହା ଭଲେ ।
ଏମନ୍ତ ବୋଲି କହନ୍ତେ ଦୂତଆସି ବାଣୀ
ସଭାଯାକ ନିସ୍ତବଦ ହେଲେ ତାହାଶୁଣି ।
କେବୋଲେ ବହିଲା କିହୋ ଅଣଚାଶ ବାତ
କେ ବୋଲେ ଶୁଣି ଲାଗୁଛି ଏହା ବିପରୀତ ।

କେବୋଲେ ଆସିଲା ଯେବେ ଅଣଚାଶମାଡ଼ି
ବୃକ୍ଷମାନେ ଉପୁଡ଼ିଣ ତଳେ ଥାନ୍ତେ ପଡ଼ି ।
କୋବୋଲେ ଅଟନ୍ତି ରାଜପୁତ୍ରେ କେଡ଼େଯୋଧି
ଉପାୟକରି ତଳକୁ ଦେଲେ ଶରରୁନ୍ଧି ।
କେବୋଲେକେଡ଼େ ପାଚେରୀସେହି କାହିଗଲା
ପବନ ବହନ୍ତେ ଭାଜି ଦିଶନ୍ତା ତା ମେଲା ।
କେବୋଲେକେଡ଼େ ଆଖଡ଼ା ପାଚେରୀ ବେଢ଼
କିରୂପେ ଉପାଡ଼ି ଦେଲା ବାତ ତେଡ଼େ ଗଡ଼
ତଥାପି ହେଲେ ବାତକୁ ବୋଲିବା ନାକିସ
ଯହିଁଲତା ବୃକ୍ଷ ଦେଖନାହିଁ ତହିଁ ଲେଶ ।
ଏରୂପେ ବୋଲିଣ ଦୈତ୍ୟ ହୁଅନ୍ତେ କାଉଳି
ଅନ୍ତଃପୁର ମଧ୍ୟେ ପଡ଼ିଗଲାକ ବୋବାଳି ।
ଝରା ପରିବାରିଏ ସେ ସଭାକଥା ଶୁଣି
ମହାଦେଈଙ୍କୁ କହିଲେ ପୁତ୍ରଙ୍କର ବାଣୀ ।
ବୋଇଲେ ଆଖଡ଼ାଶାଳେ ଯେତେଯାଇଥିଲେ
ପାଚେରୀ ଘର ସହିତ କାହିଁ କେଣେ ଗଲେ ।
ଏ ରୂପେ ଯେ ଦୂତମାନେ କହୁଛନ୍ତି ଆସି
ଶୁଣିଣ କାନ୍ଦନ୍ତି ରାଣୀମାନେ ଶୋକେ ବସି ।
ଜଣେ ନୁହଇ ତେତିଶକୋଟି ମହାରାଣୀ
ଭୂମିରେ ପଡ଼ି ଲୋଟନ୍ତି ଉଚ୍ଚେଟେକିବାଣୀ ।
ସଭାରୁ ଉଠି ସବୁଙ୍କୁ ମୂର ନିବର୍ତ୍ତାଇ
ବୋଇଲାକ ଅକାରଣେ ରୋଦୁଛ କିପାଇଁ ।
ଗଲା ମଲା ବୋଲି କିଛି ଗୋଚର ତ ନାହିଁ
ମହୀକର୍ଣ୍ଣକୁ ମୋହର ମାରି କେ ପାରଇ ।
ସହସ୍ରେ ହରି ହେଲେ କି ହେବ ତାଙ୍କୁ ସରି
ଜାଣିଛି ଆଉ ପୁତ୍ରଙ୍କ ଗୁଣ ଜନ୍ମ କରି ।
ବ୍ରହ୍ମାଣ୍ଡୋଯାକେ ମୋହର ପୁତ୍ରେ ମହାବଳୀ
ଜଣେ ଜଣେ ମେରୁଗିରି କ୍ଷଣେଦେବେ ଟାଳି
କିରୂପେ କାହିଁ ସେ ଅବା ଯାଇଛନ୍ତି ଲୁଚି
ଏଥକୁ କରୁଛ ଶୋକ କିମ୍ପା ମନେ ମୂର୍ଚ୍ଛି ।
ଏରୂପେ କହି ସବୁଙ୍କୁ ରାଜା ନିବର୍ତ୍ତାଇ
ଲେଉଟି ସଭା ମଧ୍ୟରେ ବସିଲେକଯାଇଁ ।
ସକଳ ସେନାଙ୍କୁ ଚାହିଁ ପୁଚ୍ଛେ ପୁଣି ପୁଣି
ବୋଇଲା ସ୍ଥିର କରିଣ କହ କଥା ପୁଣି ।
ସୁବିଜ୍ଞ ମନ୍ତ୍ରୀକି ପୁଣି ପୁଚ୍ଛେ ରାଜା ଚାହିଁ
ସେ ବଲ୍ଲଭ ରାଜା ପୋଏ ଗଲେ ମଧ କାହିଁ ।
କିବା କୁହୁକବିଦ୍ୟା ସେ କରି ଲୁଚାଇଲେ
କି ଅବା ସେ ଜଳଧର ବ୍ୟୂହ ପ୍ରକାଶିଲେ ।
ନୁହନ୍ତି ତ ଏତେ ତେବେ ସତର ଯେ ଲକ୍ଷ
ଆବର ଅଟନ୍ତି ନାତି ମୋର ନବଲକ୍ଷ ।

ମୋପୁତ୍ରନାତିଙ୍କି କାହିଁ ରଖିଲେ ସେ ନେଇ
ବିଚାରି ମୁଁ କିଛି ସ୍ଥିର କରିପାରୁନାହିଁ ।
କାହିଁ ଭୁଲାଇ ପୁତ୍ରଙ୍କୁ ମୋର ଲୁଚାଇଲେ
କହ କହ ମନ୍ତ୍ରୀବର ମନେ ପାଞ୍ଚି ଭଲେ ।
ସୁବିଜ୍ଞ ବୋଲେ ଶୁଣିମା ହେଉ ନୃପସାଇଁ
ଅଧୈର୍ଯ୍ୟ ନୋହିଲେ କଥା ଏକ କହିବଇଁ ।
ଚାରିଦିଗକୁ ପେଷିବା ଏବେ ଦୂତ ଜାଣ
ତେବେ ସିନା ସବୁ କଥା ଜାଣିବା ତକ୍ଷଣ ।
ଶୁଣିଣ ବୋଇଲା ମୁରାସୁର ସତ୍ୟ ସତ୍ୟ
ଚାରିଦିଗକୁ ଏବେହୋ ପେଷ ବେଗେ ଦୂତ ।
କେ ଆଜିଆସିବ କେ ଆସିବ ଯେ କାଲି
ବିଳମ୍ବ ନକରି ଶୀଘ୍ରେ ଆସନ୍ତୁ ଯେ ବୁଲି ।
ଦୂତ ଆସିବାଯାଏ ନକରେ ସ୍ନାନ ପୁଣି
ପେଷ ବେଗେ ଦୂତ କହନ୍ତି ଯେ ତଥ୍ୟବାଣୀ
ଶୁଣିଣ ପେଷିଲା ମନ୍ତ୍ରୀବର ବେଗେ ଦୂତ
ରାଜାର ଛାମୁରେ ଆସି କହିବ ଯେ ସତ୍ୟ ।
ଏହି ଲାଗେ ଯାଅ ବେଗେ ଦଶଦିଗ ବୁଲି
କେହୁ ବା ଆଜ ଆସ କେ ଅବା ଆସକାଲି ।
ଶୁଣିକରି ଚାରଗଣ ହେଲେ ବେଗେ ସଜ
ଅଶ୍ୱଚଢ଼ି ବୁଲିଲେକ ଯାଇ ରାଜ୍ୟ ରାଜ୍ୟ ।
ଛତିଶ ଗଡ଼ ପାଟଣା ମଠ ପେଣ୍ଠ ନଗ୍ର
ଆସନ୍ତି କନ୍ଦି ବିକନ୍ଦି ଖୋଜି ବୁଲି ବ୍ୟଗ୍ର ।
ତଡ଼ାଗ ପୁରୁଣାବାସ ଜୀର୍ଣ୍ଣକୂପ ଆଦି
ଜଙ୍ଗଲ ବନ କନ୍ଦର ଆଉ ନଦ ନଦୀ ।
ତ୍ରିପୁରଯାକ ବୁଲି ସେ ଅଗମ୍ୟେ ପଶିଲେ
ଚିହ୍ନବର୍ଣ୍ଣ କେଉଁଠାରେ କିଛି ନ ଦେଖିଲେ ।
ଏଥୁ ଅନନ୍ତରେ ସର୍ବେ ରାଜାଙ୍କୁ ପ୍ରବୋଧି
ସଭାକୁ ନେଇ କହନ୍ତି ଭିନ୍ନ ଭିନ୍ନ ବୁଦ୍ଧି ।
ସୁବିଜ୍ଞ ମନ୍ତ୍ରୀ ବିକଣ୍ଠ ଆଉ କଣ୍ଠ ଜେନା
ସମସ୍ତେ କହନ୍ତି ତାକୁ ବାକ୍ୟ ପ୍ରବୋଧନା ।
ବୋଲନ୍ତି ଭୋ ରାଜା ଏବେ ମନ୍ଦିରକୁ ଚାଲ
ବୋଧି ରାଣୀଙ୍କୁ କହିବା କିଛିକଥା ଭଲ ।
ଶୁଣିଣ ସବୁରି ବୋଲ ମୁରାସୁର ମାନି
ଚାଲେ ଧୀରେଧୀରେ ସଙ୍ଗେଭାଇଙ୍କୁ ଯେଘେନି
ସେନାପତି ଗଣ ମଧ୍ୟ ଚାଲୁଛନ୍ତି ସଙ୍ଗେ
ଚାଲନ୍ତି ଯେ ଶୁକ୍ରମୁନିରାଜା ଆଗେଆଗେ ।
ଅନ୍ତଃପୁର ମଧ୍ୟରେ ଯେ ହୋଇଲେ ପ୍ରବେଶ
ଆରତରେ ରୋଦନ୍ତି ସେ ସର୍ବ ରାଣୀହଂସ ।
ସବୁଙ୍କୁ କହନ୍ତି ଶୁକ୍ରମୁନି ତିଆରିଣ
ବୋଲନ୍ତି ବୁଝିବାଯାଏ ନକର କାରୁଣ୍ୟ ।

କୃଷ୍ଣବଲ୍ଲଭ ପୁତ୍ରେ କୁହୁକ କରିଲେ
ମାୟାଜାଲେ କୁମରଙ୍କୁ ଲୁଚାଇ ରଖିଲେ ।
ଏଣୁକରି ତୁମ୍ଭେ କେହି ନକର ରୋଦନ
କାଲିକି ଯେ ଜଣାଯିବ ସ୍ଥିର କଥାମାନ ।
ଏରୂପେ କହି ଥୋକାଏ ଗୁରୁ କଲେ ବୋଧ
କହନ୍ତି ଚତୁରାନନ ଶୁଣନ୍ତି ନାରଦ ।
ସେଦିନ ଅସୁର ରାଜା ନକଲା ମଶୋହି ।
ରହିଲାକ ଉପବାସେ ଦୂତଙ୍କୁ ସେ ଚାହିଁ ।
ଶୀତଳ ଦ୍ରବ୍ୟ ସାରିଣ. ରାତ୍ର ପୁହାଇଲେ
ଏଥିଅନନ୍ତରେ ଚାରେ ପ୍ରବେଶ ହୋଇଲେ ।
ପଶ୍ଚିମ ପୂର୍ବ ଦକ୍ଷିଣ ଦିଗରୁ ହେ ଚାରେ
ପ୍ରବେଶ ହୋଇଲେ ଆସି ରାଜାଙ୍କ ଛାମୁରେ
ବୋଇଲେ ଶୁଣ ହେ ରାଜା ବୁଲି ବୁଲି ମହୀ
ତୋ ପୁତ୍ରଙ୍କ ଚିହ୍ନବର୍ଣ୍ଣ ନ ଦେଖିଲୁ କାହିଁ ।
ଶୁଣି ମୁରାସୁର ବୋଲେ କ୍ଷଣେ ମଥାପୋଡି
ବୋଇଲା ସେ କାହିଁଗଲେ ଏତେ ପୁତ୍ରନାତି ।
କୃଷ୍ଣବଲ୍ଲଭର ପୁତ୍ର ଗଲେ ମଧ୍ୟ କାହିଁ
ମୋତେହିଁ ସେ ମନ୍ଦପାଞ୍ଚ ରହିଲେକ ମହୀ ।
ଏରୂପେ କରନ୍ତେ ମୁରାସୁର ମନ ଦୁଃଖ
ମିଳିଲେ ଉତ୍ତର ଦିଗ ଚାର ଆସି ପାଖ ।
ଘଣ୍ଟାରବ ମୃଗ ପ୍ରାୟେ ଛନ୍ତି ସର୍ବେ ଚାହିଁ
ଉତ୍ତର ଦିଗରେ ଚାର ଆସି ବାର୍ତ୍ତା କହି ।
ବୋଇଲେ ଶୁଣହୋ ଦେବଦୈତ୍ୟକୁଳରାୟେ
ପୁତ୍ରମାରି ଗଲେ କୃଷ୍ଣ ବଲ୍ଲଭର ପୋଏ ।
ଦେଖିଲୁ ବଦ୍ରିକାଶ୍ରମେ ଛନ୍ତି ଦୁହେଁ ବସି
ଆବର ବନ୍ଧୁ ଅଛନ୍ତି ଗଡ଼ତୋଟା ମିଶି ।
ହୋଇଛି ପାଚେରୀ କାନ୍ଥ ଦଶଯୁଣ ଉଚ୍ଚ
ବେନିକୋଶ ଓସାରରେ ବସେ ଗଡ଼ ସଞ୍ଚ ।
ତୁମ୍ଭ ପୁତ୍ରଙ୍କୁ ପଢ଼ାଉଥିଲେ ବିଦ୍ୟା ଯେହୁ
ଦେଖିଲୁ ସେ ଶଙ୍ଖଚକ୍ର ଗଦାପଦ୍ମ ବାହୁ ।
ଗରୁଡ଼ ବୋଲି ଅଛଇ ପାଶେ ପକ୍ଷୀ ଜଣେ
ତାହାରି ହାତେ ମରାଇ ଗଲେ ନାରାୟଣେ ।
ବାତଘାତେ ସମସ୍ତଙ୍କୁ ଉଡ଼ାଇ ସେ ନେଲା
ସମୁଦ୍ରେ ପକାଇ ସେହୁ ମାଡ଼ିଣ ବସିଲା ।
ଥଣ୍ଟମୁନେ ହାଣି ହାଣି ପାଦେ ଦେଲା ମାଡ଼ି
ଗୋଟିଏ କେହି ଉବୁରି ନାହାଁନ୍ତି ବାହୁଡ଼ି ।
ମହୀକର୍ଣ୍ଣ ପୁତ୍ର ଏକା କଲା ଯେତେ ଯୁଦ୍ଧ
କପାଳ ଫୁଟାଇ ପ୍ରାଣ ନେଲା ପକ୍ଷୀ ମନ୍ଦ ।
ବେନିଫାଳ କରି ସମୁଦ୍ରକୁ ଫିଙ୍ଗି ଦେଲା
ବଲ୍ଲଭପୁଅଙ୍କୁ ତହୁଁ ବହିଣ ଆଣିଲା ।
ବଦ୍ରିକାନଗ୍ରରେ ଆସି ହୁଅନ୍ତେ ପ୍ରବେଶ
ଏକାରାତ୍ରକେ ବାନ୍ଧିଲେ ଗଡ଼ ହୃଷୀକେଶ ।
ଏରୂପେ ବଦ୍ରିକାଲୋକେ ହ୍ୱନ୍ତି କୁହାକୁହି
ଏକଥା ଶୁଣି ଅଇଲୁ ଆମ୍ଭେ ବେଗେ ଧାଇଁ ।

## ପୁତ୍ରଙ୍କର ମୃତ୍ୟୁ ସମ୍ବାଦ ଶୁଣି ମୁର ଓ ରାଣୀମାନଙ୍କର ଶୋକ ଏବଂ ପୁତ୍ରବଧୂମାନଙ୍କର ଦେହତ୍ୟାଗ

ଶୁଣିଣ ପଡ଼ିଲା ମୁରାସୁର ମହୀଲୋଟି
ଘଡ଼ିକେ ଚେତନାପାଇ ଉଠିଲା କୁହାଟି ।
ନିର୍ଘାତପ୍ରାୟ ପଡ଼ିଲା ପୁଣି ହୋଇ ଛେଚି
ଶବ ପଡ଼ିଲା ପ୍ରାୟ ସେ ଭୂମିରେ ଶୋଇଛି ।
ଭାଇ ଅସାଷ୍ଟାମ ଦେଖି ଧାଇଁଲା ଦାରୁଣ
ସୁବାସ ଜଳ ସିଞ୍ଚିଲା ନେଇ ଉପରେଣ ।
ସାଷ୍ଟାମ ହୋଇ ବସିଲା ପୁଣି ମୁର ଉଠି
ଦାରୁଣ ଶୋକବାଣୀ ନ ସରେ କହିଲେଟି ।
ରାଣୀହଂସପୁରେ ଡକା ପଡ଼େ ଅନର୍ଯ୍ୟାପ
କେ ବୋଧି ପାରିବ କହି ସ୍ତିରୀଙ୍କ ବିଳାପ ।
ସ୍ତିରୀଙ୍କ ରୋଦନରେ ଘର ପଡ଼ଇ ଓଲଟି
ସେ ଶୋକ ଶୁଣିଲା ଲୋକ ହୃଦୟାଏ ଫାଟି ।
ରାଣୀଙ୍କ ରୋଦନ ଶୁଣି ମୁରାସୁର ରାଜା
କାନ୍ଦଇ ବାହୁନି ଦୁଃଖ କରି ସବୁ ତେଜ୍ୟା
ବୋଲଇ ଆରେରେ ମୋରପୁତ୍ର କୁଳଦୀପ
ବଲ୍ଲଭର ପୋଏ ହେଲେ ମୋର କାଳସର୍ପ ।
କେବଣ ଘରେ ମରୁଡ଼ି କାର ଏତେ ଅଛି
ନବଲକ୍ଷ ନାତି ସପ୍ତଦଶ ଲକ୍ଷ ବସି ।
ଘରମୋର କଲା ଶୂନ୍ୟ ଡାକକଲା ଶୂନ୍ୟ
କା ନାମଧରି ଡାକିବି ଆଉ ପ୍ରତିଦିନ ।
ଏକାବେଳକରେ ମୋର ବୁଡ଼ାଇଲା ବଂଶ
କି ବୋଲି ସଭାରେ ମୁହିଁ ମୋଡ଼ିବଇଁ ନିଶ ।
କାହାନାମ ଧରି ଡାକିବିରେ ଦାଣ୍ଡେଯାଇ
ଜଣେହେଲେ ବର୍ତ୍ତିତହୁଁ ନଆସିଲେ କେହି ।
ଏକାବେଳକେ ମୋତେରେ ଅପୁତ୍ରିକ କଲ
ନାତିଆଉ ବଂଶମୋର ବୁଡ଼ାଇଣ ଦେଲ ।
ଆଖି ଥାଉଁ ଥାଉଁ ଅନ୍ଧକରି ଗଲ ମୋତେ
ଦିନେ ବାଦରା ପକ୍ଷୀକି ନଦିଶେ ଯେମନ୍ତେ ।
ତୁମ୍ଭବିନା ବଞ୍ଚିବି କି ଆଉ ଦେହ ଧରି
ବର୍ତ୍ତିବ କାହାରି ବାପ ଏତେ ପୁତ ମାରି ।
ହେଲାରେ ପ୍ରଳୟ ବୁଡ଼ିଗଲା ସମରାଷ୍ଟ୍ର
ଚାଲିବି ଶତ୍ରୁମାନଙ୍କୁ ଚାହିଁ କେହ୍ନେ ବାଟ ।

କାହାର ଘରେ ଶୁଣିଛ ଏଡ଼େକ ମରୁଡ଼ି
ମାସେ ପକ୍ଷେ ନୁହେଁ ଗଲେ କ୍ଷଣକରେ ଛାଡ଼ି
ଶତ୍ରୁମାନଙ୍କର କାଢ଼ ଉଠିଆ ହୋଇଲା
ଯାହା ପାଞ୍ଚୁଥିଲେ ତାହା ଧାତା ଆଣି କଲା ।
ଆରେ ଆରେ ମହୀକର୍ଣ୍ଣ ଆରେ ମିତ୍ରଲାଭ
ତୁମ୍ଭଙ୍କୁ ମୂର୍ଚ୍ଛି ରହିବି ମୁହିଁ କେଉଁଠାବ ।
ସଂସାରେ ହେଲାରୁ ତୁମ୍ଭେ ଧର୍ମବନ୍ତ ପରା
ଅଖଡ଼େ ଗଲ ମରି ନକରି ପରଦାରା ।
ଋଷିମାନଙ୍କର ଘର ପୋଡ଼ିଥାନ୍ତି ଯେବେ
ତେବେସେ ବର୍ଦ୍ଧୁତେ ସର୍ବେ ରହିଥାନ୍ତ ଶୁଭେ
ଭୋଜନେ ବିପ୍ରଙ୍କୁ ବିଷ ଭରି ଯେବେ ଦ୍ୟନ୍ତି
ଯେ ମଲେ ତୁମ୍ଭେ ବର୍ଦ୍ଧୁତେ ଜାଣ ରହିଥାନ୍ତ
ଋଷିପୁତ୍ରମାନଙ୍କୁ ନ ଥିଲି କିରେ ମୋଡ଼ି
ଶାସନ ଗ୍ରାମମାନ ନ ଥିଲକିରେ ପୋଡ଼ି ।
ଗର୍ଭଣୀସ୍ତିରୀ ଖୋଜି ନ ଥିଲ କିରେ ହାଣି
ଦେବ ଆଳମାନଙ୍କରେ ନ ଦେଲକି ଶୋଣି ।
ଅଗ୍ନିରେ ହୋମକରି କି ପରିମ୍ରା ନ କଲ
ମାନନୀୟା ସ୍ତିରୀଙ୍କୁ କି ଗର୍ବେ ନ ହରିଲ ।
ମିତ୍ର ପତି ମାନଙ୍କୁରେ ନ କଲ ରମଣୀ
ସଭାରେ ବସି ସପକ୍ଷେ ନ କହିଲ ବାଣୀ ।
ବିଧବା ବ୍ରାହ୍ମଣୀଗଣ କିବା ନ ହରିଲ
ପଥୁକୀମାନଙ୍କୁ ତୁମ୍ଭେ କିବା ନ ବଧିଲ ।
ଗୋହତ୍ୟା ବ୍ରହ୍ମହତ୍ୟା ଯେ ସ୍ତିରୀହତ୍ୟା ତିନି
ଏହା ନ କରି ରହିଲ କିମ୍ପା ହୋଇ ତୁନି ।
ତେଣୁକରି ଅପମୃତ୍ୟୁ ଲଭିଲରେ ବାପ
କିରୂପେ ରହିବି ମୁଁ ନ ଦେଖି ତୁମ୍ଭ ରୂପ ।
ଗନ୍ଧର୍ବ ସଭାପ୍ରାୟ ମୋ ପାଖେ ଥାଅ ବସି
ଦେଖିଣ ସୁଜନେ ତାହା ହେଉଥାନ୍ତି ତୋଷି ।
ବୋଲନ୍ତି ନାହିଁ କେ ମୁର ପ୍ରାୟେ ଭାଗ୍ୟବନ୍ତ
କରୁଅଛି ଭଲା ଭୋଗ ଘେନି ଦାରା ସୁତ ।
ଚାରି ଜାତିରେ କେହି ଏ ଭୋଗ କରିନାହିଁ
ବ୍ରହ୍ମ କ୍ଷତ୍ରି ବୈଶ୍ୟ ଶୂଦ୍ର ଛନ୍ତି ଯେତେରହି ।
ସେ ଭୋଗଯାକ ନେଇରେ ଏବେମୋରବଳା
ଅଗାଧ ସମୁଦ୍ରେ ମୋର ବୁଡ଼ାଇଲେ ଭେଳା
କଲରେ କେଡ଼େ ନିସଖା ମୋତେ ପୁତ୍ରମଣି
ବଲ୍ଲଭ ପୁତ୍ରଙ୍କୁ ଏବେ କିଏ ଦେବ ଆଣି ।
ମୋର ପୁତ୍ରଙ୍କୁ ମାରି ସେ ଯେବେ ବର୍ତ୍ତିଗଲେ
ଆତ୍ମା ବିକଳ ହୋଇବ ତାଙ୍କୁ ଦେଖୁଥିଲେ ।
ଆଉ ମୁହଁ ଦେଖିବିକି ନେତ୍ରେ କୁମରଙ୍କୁ
ସଭା ଅମଙ୍ଗଳ ମୋର ଦିଶିବ ଶତ୍ରୁଙ୍କୁ ।

ସର୍ପଙ୍କୁ ଯେ ଦୁଧ ଦେଲେ ତାହା ହୁଏ ବିଷ
ବିପ୍ରଙ୍କୁ ଯେ ବସା ଦେଲେ ହୁଏ କୂଳନାଶ ।
କିମ୍ପା ବିପ୍ରଙ୍କୁ ଆଣିଲି ମୁହିଁ ଗୁରୁକରି
ଶିଖାଇ ବସାଇ ମୋର ପୁତ୍ରଗଲେ ମାରି ।
ଅଟଇ ଅଜ୍ଞାତ କୁଳଶୀଳ ଯେଉଁ ଲୋକ
ତାଙ୍କୁ ବସାଦେଲେ କାଳେ ହୁଏ ସେ କଣ୍ଟକ
ଆରେ ଆରେ ପୁତ୍ର ମୋର ଅଟୁ କୁଳ ଦୀପ
ପୃଥ୍ୱୀଯାକ ଏକାକୀ ମୁଁ ଅର୍ଜିଥିଲି ପାପ ।
ମଦନାବତୀ ରାଣୀ ନଥିବ ପରା ପ୍ରାଣେ
ପୁତ୍ର ଶୋକ କରି ମରିଥିବ ଅକାରଣେ ।
ପିତାଠାରୁ ମାତା ଶୋକ ଦ୍ୱିଗୁଣ ବଳଇ
କେତେକ ଯେ ବୋଧୁଥିଲେ ଶାନ୍ତି ନ ଭଜଇ
ସମସ୍ତ ଦୁଃଖରୁ ପୁତ୍ର ଦୁଃଖ ବଡ଼ କାଟେ
ନିର୍ଲ୍ଲଜ୍ଜ ଆତ୍ମା ରହିଛି କିମ୍ପା ମୋର ଘଟେ ।
ଏରୂପେ ବୋଲି ଭୂଇଁରେ ପଡ଼ନ୍ତେ ସେ ଢ଼ଳି
ଆରେ ଆରେ ପୁତ୍ରବୋଲି ମୂର୍ଚ୍ଛାଯାଇ ପଡ଼ି
କାଙ୍କୋଳାସୁର ଧଇଲା ଯାଇ କରେ ଟେକି
ମୃତଜନ ପ୍ରାୟେ ଗଲା ତା ନାସିକା ଛିଡ଼ି ।
ରହିଲା ସ୍ଥାବର ପ୍ରାୟେ ପୁଣି ସ୍ଥିର ହୋଇ
ଘଡ଼ିକେ ବସିଲା ଚେତାପାଇ ନୃପସାଇଁ ।
ବୁକୁ ଦମ ଦମ କରି ଛାଡ଼ଇ ନିଃଶ୍ୱାସ
କାନ୍ଦି କାନ୍ଦି ନପାରେ ଯେ ଚାହିଁ ଦଶଦିଶ ।
ମହାକ୍ରୋଧ ହୋଇ ମହାଶୋକ ଜଳେ ପଡ଼ି
ଦଣ୍ଡକେ ଛାଡ଼ଇ ପୁଣି ଉଚ୍ଚେ ଘୋର ରଡ଼ି ।
ଆରେ ଆରେ ମହୀକର୍ଣ୍ଣ ଆରେ ମିତ୍ରଲାଭ
ବଜ୍ରଶର ଧରି ନଥିଲକି ହୋଇ ଦମ୍ଭ ।
ଆରେ ଆରେ ମୃଗକେତୁ ଆରେ ମହୀଧର
ତୁମ୍ଭଙ୍କୁ ମୂର୍ଚ୍ଛି ରଖିବି କେମ୍ନେ କଳେବର ।
ଜଣ ଜଣକେ ଅଟ ମୋ କୁଳର ଦୁଲଣା
ଏକାବେଳକରେ ମରି ମୋତେ ଭଲ ବଣା ।
ଦିନେ ମୁଁ ତୁମ୍ଭର ଅଳି ସହି ନାହିଁ ବାବୁ
ମୂଳ ସହିତରେ ଟାଳି ଦେଲେ ବୃକ୍ଷ ସବୁ ।
ବୁଝିଲେ ପୁତ୍ର ମୋହର ଅଟ ସଭାଯୋଗ୍ୟ
ବୁଦ୍ଧିରେ ଯେ ବୃହସ୍ପତି ସମ ଅଟ ପ୍ରାଜ୍ଞ ।
କ୍ଷତ୍ରୀପଣେ ପର୍ଶୁରାମ ପ୍ରାୟକେ ଯେ ଅଟେ
କନ୍ଦର୍ପ ରୂପକୁ ଜିଣି ଦ୍ୱିଗୁଣ ମୁରାଟ ।
ବିଦ୍ୟାପଣରେ ଗଣେଶ ପ୍ରାୟ ତୁମ୍ଭ ବୁଦ୍ଧି
ଦୟା କଥାରେ ଯେ ଅଟ କରୁଣା ବାରିଧି ।
ସୁମୂର୍ତ୍ତି ପଣେ ଗନ୍ଧର୍ବ ପ୍ରାୟ ତୁମ୍ଭେ ଦିଶ
ତୁମ୍ଭ ଗୁଣ ଗୁଣି ମୋର ଉଡୁଛି ସାହସ ।

କାର ଗଜା ନିଶ କେହୁ ତିରିଶ ବର୍ଷିଆ
କେ ଧେନୁ ବାହୁଡ଼ା କେହୁ ବଡ଼ ଚକାଡ଼ିଆ
କେ ସଭାପଣ୍ଡିତ କେହୁ ନ୍ୟାୟ ରୀତିଗଞ୍ଜା
କେ ମୋର କୁଳନନ୍ଦନ ରଣରକ୍ଷ ରାଜା ।
କେ ଦିଗ ବାରଣ କେହୁ ରାଜନୀତି ଘେନା
କେ ରିପୁବଳଗଞ୍ଜା କେ ବୀରମର୍ଦ୍ଧ ବାନା ।
କେବଣ ଦିନେ ମୁଁ ପାପ ଅର୍ଜିଥିଲି ବାପ
ମୋତେ ଏକା ପଡ଼ିଲାକ ବିନଶ୍ୟତି ଶାପ ।
ଯେବଣ ବରଟି ମୋତେ ଥିଲେ ହରଦେଇ
ବିଷ୍ଣୁର ହାତେ ନମରୁ ମଲ ଆଗ ହୋଇ ।
ଏରୂପେ ବୋଲି ରୋଦନ ସେହୁ କରୁକରୁ
ଶୁଭିଲା ଉଚ୍ଚେ କାନ୍ଦଣା ରାଣୀ ହଂସ ପୁରୁ ।
ଆରେ ଆରେ ପୁତ୍ରବୋଲି କରିଣ ରୋଦନ
ଗଡ଼ନ୍ତି ଭୂମିରେ ପଡ଼ି ହୋଇ ଅଚେତନ ।
ବାହୁନି କାନ୍ଦନ୍ତି ଗୁଣମାନ ଭୂମିଲୋଟି
ଆମ୍ଭର ଆତ୍ମା ହୃଦୟ ନ ଗଲାଟି ଫୁଟି ।
ଆରେ ଆରେ ପୁତ୍ରମାନେ ଅଟ କୁଳଦୀପ
ଆମ୍ଭର ମୁହାଁସ ଛାଡ଼ିଗଲା ଆରେ ବାପ ।
କେ ରାଣୀ ବୋଲେ ଭାଜିଲା ଆମ୍ଭରଯେ ବପୁ
ଆଖଡ଼ାରେ ମଲେ ପୁତ୍ରେ କେଉଁ ବ୍ରହ୍ମଶାପୁ ।
କେ ବୋଲଇ ଆରେ ପୁତ୍ର ଗଲକେଣେ ଛାଡ଼ି
ଆମ୍ଭର ମୁଣ୍ଡେ ଚଡ଼କ ପଡୁ ବେଗେ ମାଡ଼ି ।
କେବୋଲଇ କେଡ଼େ କଥା କଲ ବାଳବୟି
ମନ୍ଦିରମାନଙ୍କୁ ତୁଚ୍ଛା କରିଗଲ ମୂର୍ଚ୍ଛି ।
କେ ବୋଲଇ ନବଯୁବା ପତ୍ନୀଗଲ ଛାଡ଼ି
କେ ଏବେ ପିନ୍ଧିବ ତାଙ୍କ ଅଷ୍ଟରତ୍ନ ଚୂଡ଼ି ।
କେ ବୋଇଲା ମଲା ମୋର ଏକଇର ବସି
କି କରିବ ମାତା ବୋଲି ନ ଜାଣିଲା କିଛି ।
କେ ବୋଲଇ ବେନିଗୋଟି ପୁତ୍ରମୋର ମଲେ
କେ ବୋଲଇ ତିନିପୁତ୍ର ମୋତେ ଛାଡ଼ିଗଲେ
କେବୋଲେ ଚାରୋଟିକେହୁ ବୋଲେପାଞ୍ଚବଳା
ଏରୂପେ ରୋଦନ କରି କାନ୍ଦନ୍ତି ଅବଳା ।
ମଦନାବତୀ ରାଣୀର ପାଞ୍ଚପୁତ୍ର ମଲେ
ମହୀକର୍ଣ୍ଣ ମିତ୍ରଲାଭ ମୃଗକେତୁ ତୁଲେ ।
ମଦନ ଯେ ମନସିଜ ଏହି ପାଞ୍ଚବଳା
ପୁତ୍ରଙ୍କ ଶୋକରେ ରାଣୀ କାନ୍ଦେ ଅନର୍ଗଳା
ଭୂମିରେ ସେ ଗଡ଼ି ଗଡ଼ି ଉଠେ ରଡ଼ିପାଡ଼ି
ସୁତିଲା ନିର୍ଜୀବ ପ୍ରାୟେ ହୋଇ ଶଯ୍ୟାଛାଡ଼ି ।
ପୋଇଲୀ ପରିବାରୀ ଶ୍ଳେ ଦାସୀ ମୃଦୁସୁଲୀ
ସର୍ବେ ଟେକିଣ ଧରନ୍ତି ରାଣୀ ଉଠ ବୋଲି ।
ପୁତ୍ରଙ୍କ ଶୋକେ ରାଣୀନଶୁଣେ କାର ବାଣୀ
ନିର୍ଜୀବ ଲୋକ ପରାୟ ଶୋଇଛି ଯେ ଶୁଣି ।
ଖବର ପାଇ ବିଜୟ କଲେ ଶୁକ୍ର ଆସି
ଗୁରୁଙ୍କୁ ଦେଖି ଅଲଗା ହୋଇ ସର୍ବେ ବସି
ରାଣୀ ଛାମୁରେ ଆସନେ ଗୁରୁବିଜେ କଲେ
ରାଣୀକି କୋମଳ ବାକ୍ୟ କହି ଉଠାଇଲେ ।
ଗୁରୁଙ୍କ ବାକ୍ୟ ମଦନାବତୀ ରାଣୀ ଶୁଣି
ବସିଲାକ ମଥାପୋଡି ଗଣ୍ଡେ ଦେଇ ପାଣି ।
ପୁତ୍ରର ଶୋକେ ସେ କଷ୍ଟୀହୋଇ ମହାଦେଈ
ବସିଲାକ ସଲଜ୍ଜରେ ଗୁରୁପାଦ ଧ୍ୟାୟି ।
ବୋଇଲେକ ରାଣୀ ଏବେ ଦେହତୋର ରଖ
ବୁଝିଲେ ସଂସାରେ ନାହିଁ ପୁତ୍ରଶୋକୁଁ ଦୁଃଖ
ସୁପଣ୍ଡିତ ଲୋକମାନେ ଶୋକ ନ କରନ୍ତି
ଜୀବର ଗତାଗତକୁ ଏକା ସେ ଜାଣନ୍ତି ।
ଜୀବ ଜନ୍ମ ହୁଏ ମୃତ୍ୟୁପଥ ରଖି ଆଗ
ମୃତ୍ୟୁକୁ ଆଗେ ରଖିଣ ଧରେ ଦେହବେଗ
ଜୀବର ନିୟମ ଏହି ଅଟେ ଜାଣ ତୁହି
ଜନ୍ମ ହେଲାରୁ ସେ ଜୀବ ମୃତ୍ୟୁ ସଙ୍ଗେ ଥାଇ
ଜୀବର ଜନ୍ମ ନିୟମ ଅଟେ ବେନିପଥ
ନିତ୍ୟେ ତାହାର ସାଧନା ଅଟେ ଅନୁବ୍ରତ
ଏ ଘେନି ପଣ୍ଡିତ ଜନେ ଶୋକ ନ କରନ୍ତି
ବୋଲନ୍ତିକେ କାହାପୁତ୍ରକେ କାହାର ନାତି
ତୁହି ତା ସ୍ତିରୀ କୁଳକୁ ଅଟୁ ଲକ୍ଷ୍ମୀ ଦ୍ୱିଜା
ପିତାଙ୍କ ନାମ ତୋହର କେଶରୀ ଯେ ରାଜା
ଶାଳକୀ ଦ୍ୱୀପରେ ଯେହୁ ଅଟେ ଚକ୍ରବର୍ତ୍ତୀ
ପଣ୍ଡିତ ପଣକୁ ପୁଣି କିବା ବୃହସ୍ପତି ।
ସକଳ ଶାସ୍ତ୍ରରେ ଜ୍ଞାନୀ ଅଟେ ମହାରାଜା
କରନ୍ତି ଯେ ପାଞ୍ଚଲକ୍ଷ ନୃପ ପାଦପୂଜା ।
ଏମନ୍ତ ମହାରାଜାର ଅଟୁ ତୁ ଦୁଲଣୀ
ପ୍ରତ୍ୟକ୍ଷେ ପଦ୍ମିନୀ ତୁହି ନାରୀ ଶିରୋମଣି ।
କମଳା ପାର୍ବତୀ ପ୍ରାୟ ଅଟେ ତୋର ବୁଦ୍ଧି
ତୋତେ କେବୋଧିବ ତୁହିସବୁପାରୁ ବୋଧି
ତୋହର ଲକ୍ଷଣ ଘେନି ରାଜାର ଏ ଯଶ
ଯାବତ ପୃଥିବୀ ଜିଣି ହେଲା ନୃପଈଶ ।
ବ୍ରହ୍ମାଦି ଶଙ୍କର ତୋତେ କରନ୍ତି ଯେ ଧନ୍ୟ
ପୁଣ୍ୟବତୀ ସ୍ତିରୀ ବୋଲି ବୋଲନ୍ତି ସୁଜନ ।
ପୃଥ୍ୱୀରେ ଯାହାକୁ ଜାଣ ସର୍ବେ ହୃତିତୋଷ
ତାହାପ୍ରାୟ ଭାଗ୍ୟବନ୍ତ ନ ମିଳେ ମନୁଷ୍ୟ ।
ସ୍ତିରୀରତ୍ନ ହୋଇ ତୁ ଏକଥା ପାଞ୍ଚୁ ନାହୁଁ
ଏରୂପେ ଗଲେଣି କେତେ ସତୀ କହୁଁ କହୁଁ ।

ଏଡ଼େ ବଡ଼ ପୃଥିବୀକୁ ସର୍ଜିଲେ ଦଇବ
ପ୍ରଳୟ ହୋଇଲେ ପୁଣି ସେହି ନାଶଯିବ ।
କେହୁ ଜନ୍ମେ ଆଜି କେହୁ ମରେ କାଲିପରି
ଯେତେବେଳେ ଆସେଲେଖିସତେ ଭୋଗକରି
ଜନ୍ମ ମରଣ ଏ ସାର ଅଟେ ସର୍ବକାଳେ
ଅଭାଗ୍ୟ ଲୋକଟି ମଲା ପ୍ରାଣୀକୁ ଯେ ଭାଳେ ।
ଭାଳିଲାକ୍ଷଣି ଆସନ୍ତା ଯେବେ ମଲାଲୋକ
ରହିବାକୁ ଠାବ କାହିଁ ହ୍ୱନ୍ତା ପୃଥ୍ୱୀଯାକ ।
ଆପଣେତ ଜୀଇଁଥିଲେ ସର୍ବ ଭୋଗ ଭୁଞ୍ଜେ
ପୁଣିହିଁ ଦ୍ରବ୍ୟ ପଦାର୍ଥ ସୁତ ବିତ୍ତ ଅର୍ଜେ ।
ଏକଇ ଆତ୍ମା ଯେ ସବୁ ବୀର୍ଯ୍ୟହୋଇ ବ୍ୟାପେ
ପିତାମାତା ସୁତ ସୁତ ବହେ ନାମ ଆପେ ।
ପୁତ୍ର ଶୋକ ବୃଥା କରୁ କିମ୍ପା ଶଶୀମୁଖୀ
ତୋ ଦେହକୁ ଚିରକାଳ ପାରିବୁ କି ରଖି ।
ଯେ ସ୍ଥାନରୁ ଆତ୍ମା ଘେନି ପୁତ୍ରେ ଆସିଥିଲେ
ଲେଉଟି ପ୍ରବେଶ ଯାଇ ସେହିଠାରେ ହେଲେ
ଏକଥାରେ ଆୟତ୍ତ ତ କାର ନୁହେଁ କିଛି
ଯେତେକ ସେ ଆଣିଥାଏ ତେତେଯାଏ ବଞ୍ଚି ।
ଜ୍ଞାନବତୀ ହୋଇ କେତେ ଶୋକ ତୁହିକରୁ
ଲୋଭ ମୋହ କାମକ୍ରୋଧ ନ ତେଜହୃଦରୁ ।
ଯାହା କହିଲୁ ତୁମ୍ଭକୁ ତାହା ସବୁ ଜାଣି
ଜାଣୁ ଜାଣୁ ଜୀବନକୁ ଅକାରଣ ମଣୁ ।
ସକଳ କଥା ଗୋଚର ତୋତେ ମହାଦେଇ
କ୍ଷତ୍ରୀକୁଳେ ଜନ୍ମିଲେ କି ପ୍ରାଣେ ଆଶାଥାଇ
ଅଟନ୍ତି କ୍ଷତ୍ରୀୟ ସବୁ ପୁତ୍ରଯାକ ତୋର
କ୍ଷତ୍ରିୟ ମୃତ୍ୟୁରେ ଚିନ୍ତା ତୁ ଆଉ ନ କର ।
ଫଳିବ ବୃକ୍ଷ ସିନା ତୁ ଅଟୁ ମହାଦେଈ
ପୁଣି ସମୟରେ ପୁତ୍ର ଜନ୍ମିବେ ତୋଦେହୀ ।
ଆମ୍ଭେ ତୋତେ ତିଆରି ଯେ କହିବୁ କିଜ୍ଞାନ
ତୋରପରି ଯୁବତୀ ନ ମିଳେ ସ୍ତିରୀରତ୍ନ ।
ଏଡ଼େ ପଣ୍ଡିତା ହୋଇ ତୁ କିମ୍ପା ହେଉବଣା
ଶଯ୍ୟାରୁ ଉଠି ସ୍ୱାମୀକୁ ତୋର ଏଣେଅଣା ।
ତିନିଦିନ ହୋଇଲାଣି ଛୁଇଁନାହିଁ ପାଣି
ଦେହେ ହେବ କ୍ଳେଶ ଉଠମୋରବାକ୍ୟ ଶୁଣି
ଅତିଚିନ୍ତା କଲେ ଦେହ ହୋଇଥାଏ କ୍ଳେଶ
ବସନରେ ଅଗ୍ନିଲାଗି ଯେହ୍ନେ ହୁଏ ନାଶ ।
ଅତିଧନ ହେଲେ କେଭେ ନ ରହେ ନିଶ୍ଚଳେ
ଅତି ବଳବନ୍ତ ଯେହ୍ନେ ପଡ଼ଇ ଅନଳେ ।
କେତେକ ଜନ ମରନ୍ତି ହୋଇ ମହାକ୍ରୋଧି
କେତେକ ଜନ ମରନ୍ତି ଘୋଟିଲେକ ବ୍ୟାଧି ।

ଅତିଶୟ ରତି କଲେ ଆୟୁ ହୁଏ ହାନି
ଅତି କପଟୀ ଲୋକକୁ ନ ମିଳେ ମେଦିନୀ ।
ଏହିରୂପେ ଶୁକ୍ରଗୁରୁକହନ୍ତେ ତିଆରି
ଶୁଣିଣ ରାଣୀ ଘେନିଲେ ତାହା ବଡ଼କରି ।
ହସ୍ତେ ଅର୍ଘ୍ୟଥାଳି ଧରି ରାଜା ଛାମୁଗଲେ
ଚରଣ ସେବା କରିଣ ପାଦ ପଖାଳିଲେ ।
ବୋଇଲେ ଯେ ମନ୍ଦିରକୁ ବିଜେକର ଏବେ
ଜୀଇଁଥିଲେ ସବୁ ଅଛି ଛାଡ଼ ଶୋକ ତେବେ ।
ତୁମ୍ଭେ ଶୁଭେଥିଲେ ମୋର ସବୁ କଥା ଅଛି
ମନେକଲେ ତ ଆଣିବ ଭାର୍ଯ୍ୟାଲକ୍ଷେ ବାଛି ।
ଆବର ଲେଉଟି କେତେ ପୁତ୍ର ହେବେ ଜନ୍ମ
ପତ୍ନୀକୁ ଅଟନ୍ତି ପତି ସିନା ବିଷ୍ଣୁ ସମ ।
ପତିଅନ୍ତେ ସ୍ତିରୀ ଯେବେ ରହେ ଦେହଧରି
ତାର କୁଟୁମ୍ବଯାକକୁ ସେ ଅଟେ ଅଇରୀ ।
ପତି ଅନ୍ତେ ସ୍ତିରୀ ଅଟେ ଅସୁରୀ ସମାନ
ବାରବ୍ରତ କଲେ ତରେ ନରକରୁ ପୁଣ ।
ପତିକୁ ନ ସେବି ଯେହୁ ଅନ୍ୟଦେବ ସେବେ
ସେ ଦେବ ତାକୁ ପ୍ରସନ୍ନ ନହୁଅଇ କେବେ
ସେବିଲେ ପତିକୁ ସେହୁ କ୍ଷଣେ ବର ଦ୍ୟନ୍ତି
ଗୃହସ୍ଥ ବିନେ ସ୍ତିରୀକୁ ନାହିଁ ଅନ୍ୟଗତି ।
ପତିସେବା ନ କରି ଯେ କରେ ଅନ୍ୟ ସେବା
ପିଶାଚୀ ବୋଲିଣ ସେହୁ ନାରୀକୁ ଲେଖିବା
ଜୀଇଣ ଥିଲେ ଗୃହସ୍ଥ କେତେ ପୁତ୍ର ହେବେ
ଫଳୁଥିବା ବୃକ୍ଷମାନେ ଲେଉଟି ଫଳିବେ ।
କେ କାହାର ପୁତ୍ର ପିତା କେ କାହାର ମାତା
ଯେସନେ ବୃକ୍ଷରେ ଫଳ ଫଳେ ଅପ୍ରମିତା ।
ବୃକ୍ଷର ଫଳ ଫଳିଣ ଯେହ୍ନେ ଯାନ୍ତି ଝଡ଼ି
ସେ ଫଳ ପଡ଼ିଲେ ଝଡ଼ି ଲାଗେ କି ବାହୁଡ଼ି ।
ପୁତ୍ର ପୁତ୍ରୀଙ୍କର ଜନ୍ମ ଅଟେ ସେହିମତ
ସମୁଦ୍ର ଲହରୀ ପ୍ରାୟ ହ୍ୱନ୍ତି ଆତଯାତ ।
ଦହନ ହେଲା କାଷ୍ଠ ନ ଦେଖି ଯେହ୍ନେ ଆଉ
ସେରୂପେ ଗଲେ ସେ ପୁତ୍ରେ ତୁମ୍ଭେ ଥାଉଁଥାଉଁ
ଏ ଆତ୍ମା ସବୁରି ଦେହେଥିଲେ ଲୋଭଥାଇ
ଆତ୍ମା ଗଲେ ଛୁଡ଼ି କେହି କାହାରିଯେ ନାହିଁ
ପଣ୍ଡିତ ଜନଙ୍କ ମୁଖୁ ଶୁଣିଛି ମୁଁ ଯାହା
ବୋଲନ୍ତି ଯେ ପତିପତ୍ନୀ ଅଟେ ଏକଦେହା ।
ତନୟ ନ ଥିବା ସ୍ତିରୀ ନୁହେଁ କାହିଁଲେଖା
ଡାଳ ନ ଥିବାର ବୃକ୍ଷ ଯେସନେ ନିଶାଖା ।
ଗୃହସ୍ଥ ନ ଥିବା ସ୍ତିରୀ ଅଟେ ନିରୀମାକ୍ଷୀ
ବିଧବା ହେଲେ ସଂସାରେ ସ୍ତିରୀ ବଡ଼ ଦୁଃଖୀ

ଯୁବତୀ ସ୍ତିରୀ ବିଧବା ଯେବେ ହୋଇ ରହି
ତାହାଠାରୁ ପାପୀ ହୋଇ ସଂସାରେକେ ନାହିଁ
ଜୀବ ଥିବାଯାକ ତାର ପ୍ରାଣ ଅସାର୍ଥକ
ସୁଲଭ ସ୍ତିରୀଙ୍କୁ ଦେଖି ହୁଅଇ ବିମୁଖ ।
ବୋଲେ ଏହିରୂପେ ମୁହିଁ ବେଶ ହେଉଥାନ୍ତି
ଏରୂପେ ମନରେ ପାଞ୍ଚି ସୁକୃତ ନାଶନ୍ତି ।
ଦେଖି ଯୁବା ପୁରୁଷକୁ କାମେ ହୁଏ ଘାରି
ମନେ ପାଞ୍ଚି ରହଇ ସେ ଲାଜେ ଡରିକରି ।
ଦାଣ୍ଡରେ ଲୋକଙ୍କୁ ସେହୁ ଚାହିଁ ନିଏ ଦିନ
ବିଧାତାକୁ ନିନ୍ଦାକରି କରଇ ରୋଦନ ।
ସଂସାରକୁ ନିନ୍ଦାକରି କରଇ ରୋଦନ
ସବୁ ବିଧବା ଏପରି ହୋଇବେ କି ପୁଣ ।
ବିଧବା ସ୍ତିରୀମାନେ ତ ସଂସାରକୁ ମାତା
ଏ କଥା ବେଦରେ ଲେଖି ଅଛନ୍ତି ବିଧାତା ।
ସଂସାରର ନିତ୍ୟାଚାର ନ ପାରେ ଯେ କରି
ମଲେ ନରକରେ ପଡ଼େ ସେ ବିଧବାସ୍ତିରୀ ।
ପୁନରପି ଜନ୍ମିଲେ ସେ ହୁଏ ମହାପାପୀ ।
କେବଳ କରଇ ସ୍ତିରୀ ହେଲେ ଶୁଦ୍ଧରୂପୀ ।
ବିଧବା ହୋଇଣ ଯେବେ ରହିବ ସଂସାରେ
ବ୍ରହ୍ମଚାରୀ ପରି ରହିଥିବ ନିତ୍ୟାଚାରେ ।
ଶୁଚିମନ୍ତ ହୋଇ କହୁଥିବ ସତ୍ୟବାଣୀ
ତ୍ୟାଗ କରି ଲୋଭ ମୋହ କାମ ହୃଦୁଁ ପୁଣି
ଦେହକୁ ବେଶ କରିଣ ନ ଚାଲିବ ଦାଣ୍ଡେ
ପିନ୍ଧୁଥିବ ସେହୁ ନିତ୍ୟ ଶୁକ୍ଳ ବସ୍ତ୍ର ଖଣ୍ଡେ ।
ତଇଳ ହଳଦୀ ଗନ୍ଧ ଦ୍ରବ୍ୟ ନ ଘେନିବ
ତାମ୍ବୁଳ ନ ଭୁଞ୍ଜି ଶିରେ ପୁଷ୍ପ ନ ମଣ୍ଡିବ ।
ଶରୀରରେ ଭୂଷଣ ନ ହେବ ଅଳଙ୍କାର
ହବିଷ୍ୟ ଅନ୍ନ ଭୁଞ୍ଜିଣ ରଖିବ ଶରୀର ।
ଦେବତାଙ୍କ ପୂଜା କରି କରି ଭଜୁଥିବ
ରୋଷଶାଳାକୁ ଗଲେ ସେ ପାଦ ପଖାଳିବ ।
ପରିସ୍ରା କଲେ ଘେନିବ ପାଣି ଅହୋରାତ୍ର
ମଳ ଉତ୍ସର୍ଗିଲେ ଧୋଉଥିବ ଅଣ୍ଟା ଗାତ୍ର ।
ମୃତ୍ତିକା ଘଷିବ ଦଶଥର ବାମହସ୍ତେ
ସପତଥର ଘେନିବ ପୁଣି ବାମହାତେ ।
ବେଳେ ଲଗାଇ ଉତ୍ପତ୍ତି ସ୍ଥାନେ ନିଷ୍ଠାକରି
ପଦରେ ଘେନିବ ତିନିଥର ଜଳଧରି ।
ମୂର୍ଖ ସ୍ତିରୀଙ୍କର ସଙ୍ଗେ ନୋହିବ ସେ ଗୋଷ୍ଠୀ
ପର ପୁରୁଷରେ ମନ ନ ଦେବ ଯେ ଦୃଷ୍ଟି
ଟିକ୍‌କଣ ମାଖି ନୋହିବ ଅଙ୍ଗେ କଦାଚିତ
ନଖକୁ ଚାହିଁଣ ଚାଲୁଥିବ ପାଦଗତେ ।
କାହାରି ତୁଲେ ନୋହିବ କ୍ଷଣେ ପରିହାସ
ଭଜିବ ଗୁରୁଙ୍କୁ ସେବାକରି ପୀତବାସ ।
ପ୍ରଭାତ କାଳରୁ ଉଠି ସ୍ନାନ କରୁଥିବ
ସବୁରି ଚିତ୍ତକୁ ଘେନି ବାକ୍ୟ ପ୍ରକାଶିବ ।
ଶାଶୁ ଶ୍ୱଶୁରଙ୍କ ବାକ୍ୟ ସଦା ଥିବ ପାଳି
ରାତ୍ର ପ୍ରହରେ ଥାଉ ଭଜିବ ବନମାଳୀ ।
ଶ୍ରୀ ମଧୁସୂଦନ ନାମ ସଂକୀର୍ତ୍ତନ କରି
ଭଜିବ ସେ ଅନୁକ୍ଷଣେ ରାମ କୃଷ୍ଣ ହରି ।
ହବିଷ୍ୟ କରିବ ଏକାଦଶୀ ନିଷ୍ଠକର୍ମେ
ତରଇ ବିଧବା ସ୍ତିରୀଥିଲେ ଏତେ ଧର୍ମେ ।
ସେ ସ୍ତିରୀଙ୍କୁ ବ୍ରହ୍ମାଣ୍ଡରେ ବୋଲି ପୁଣ୍ୟଦେହୀ
ପତିକି ତାରଣ ସେହୁ ଆପେ ତରିଯାଇ ।
ଏହା ନ କରନ୍ତି ପତିହୀନ ସ୍ତିରୀ ଯେତେ
ମଲେ ସେହୁ ନରକରେ ପଡ଼େ ଦେହ ଅନ୍ତେ
ସେହି ସ୍ତିରୀ ନ ପାଇବ କେବେ ସଦଗତି
ସବୁଜନ୍ମେ ସ୍ୱାମୀହୀନ ସେହୁ ହେଉଥାନ୍ତି ।
ଶିଷ୍ୟକୁ ଗୁରୁ କରନ୍ତି ଯେହ୍ନେ ପରିତ୍ରାଣ
ଭାରିଯାକୁ ଗୃହସ୍ଥ ସେ ରୂପେ ଅଟେ ଜାଣ ।
ଅସମୟ କାଳରେଟି ଧୈର୍ଯ୍ୟ ଯେବେ ହେବ
ତାହାର ବୁଦ୍ଧିକି ସରି ନୁହନ୍ତି ଦଇବ ।
ଏହିରୂପେ ମୁରାସୁର ରାଣୀମୁଖୁ ଶୁଣି
ଅମୃତ ଦୃଷ୍ଟି କରିଣ ଭାଷେ ମଞ୍ଜୁବାଣୀ ।
ବୋଇଲେ ସଖିରେ ତୁହି କହିଲୁ ଯେ କଥା
ଅମୃତପାନ ପ୍ରାୟେ ମୋ ଅଙ୍ଗୁଁ ଗଲା ବ୍ୟଥା ।
ହୋଇଲେ ଶୁଷ୍କକାଷ୍ଠ ତୋ ବାକ୍ୟେ ପଲ୍ଲବିବ
ଶୁଣିଲେ ବୃଦ୍ଧାର ନବଯୁବା ଉପୁଜିବ ।
ପଢ଼ିବ ଅନୂଢ଼ା ନାରୀଠାରୁ କ୍ଷୀର ବହି
ଶୁଣିଲାକ୍ଷଣି ସେ କ୍ଷୁଧା ତୃଷା ଯିବ କାହିଁ ।
ଶାରଦା ମାଗୀଠାରୁ କେ ଅଛି ଆଉ ବଡ଼
ସେ ପୁଣି ନୋହିବେ ତୋର ବଚନରୁ ଗାଢ଼
ତୋହର ବଚନକୁ ଯେ ସୁଧାମୟ ମଣି
ଏତେ ଦିନରେ ଶୁଣିଲେ ତୋର ବାକ୍ୟ ଧ୍ୱନି
ମୋହର ତୋଠାରେ ଚିନ୍ତାମାନ ଥିଲା ରହି
ଏଥର ସେ ସବୁଦୂର ହେଲା ମହାଦେଈ ।
ଶୁଣିଲି ଅମୃତମୟ ବାକ୍ୟ ଏବେ ତୋର
ଲକ୍ଷେ ସିଂହର ଯେ ବଳହେଲା ଏବେ ମୋର
ବଧୂମାନଙ୍କୁ କରାଅ ଏବେ ବେଗେ ସଜ
କରନ୍ତୁ ସେ ଯଥାବିଧି ରାଜକୁଳ କାର୍ଯ୍ୟ ।
ସନ୍ତକଯାକ ଧରିଣ ନଦୀକୂଳେ ଯାନ୍ତୁ
ଗଉରୀ ପୂଜା କରିଣ ଅନଳେ ପଡ଼ନ୍ତୁ ।

ଏରୂପେ କହିଣ ରାଜା ରାଣୀ ମନ ଘେନି
ମନ୍ତ୍ରୀସହ ଆଜ୍ଞା ଦେଲା ହେଉ ବାଦ୍ୟଧ୍ୱନି ।
ନିର୍ମାଣ କରାଅ ଏବେ ସତୀକୁଣ୍ଡ ବେଗେ
ଚଳନ୍ତୁ ଏ ବଧୂମାନେ ତହିଁ ଏହି ଲାଗେ ।
ଶୁଣିଣ ସୁବିଜ୍ଞ ମନ୍ତ୍ରୀ ଖୋଳାଇଲେ ଖାତ
ଛବିଶଲକ୍ଷ ହାତ ସେ ହୋଇଲାକ ଗାତ ।
ଚନ୍ଦନକାଠ ଛେଦିଣ ତହିଁରେ ପୂରାଇ
ଢାଳି ଗୁଆଘୃତ ଦେଲେ ଲଗାଇଣ ଯୁଇ ।
ବଧୂ ଯେ ନାତୁଣୀ ବଧୂ ସଜ ହୋଇଗଲେ
ବିପ୍ରଙ୍କୁ ଯେ ଦାନ ଦେଇ ଗୌରୀ ପୂଜାକଲେ
ସନ୍ତକମାନ ଧରିଣ ଅନଳେ ପଶିଲେ
ଦେବ କର୍ମ ମାର୍ଗେ ସର୍ବେ ସତୀ ହୋଇଗଲେ



## ମୁରସହ ବ୍ରହ୍ମାଙ୍କର ଯମପୁରେ ଗମନ ଓ ଅମୋହମାଳା ପ୍ରଦାନ

ଦ୍ୱାଦଶ ଦିନେ ସାରିଲା ରାଜା ସତୀ କାର୍ଯ୍ୟ
ଏଥୁଅନ୍ତେ ଯାହା ହେଲା ଶୁଣ ଋଷି କାର୍ଯ୍ୟ ।
ପୁତ୍ରଙ୍କ ଶୋକରେ ରାଜା ମନେ ଦୁଃଖୀହୋଇ
ଧାତାଙ୍କୁ ଯେ ସୁମରିଲା ମନେ ମନେ ଧ୍ୟାୟି ।
ଆସନ ଟଳୁ ଜାଣିଲେ ପିତା ଯୋଗ ଧ୍ୟାନେ
ପାଞ୍ଚନ୍ତି ଚିନ୍ତିଲା ମୁରାସୁର ଦୁଃଖମନେ ।
ଆମ୍ଭେ ହେ ଯାଇ ତାହାକୁନବୋଧିବାଯେବେ
ଶାନ୍ତି ନ ଭଜି କୋପିବ ରାଜା ଅହଂଭାବେ ।
ପୁତ୍ର ମରୁଡ଼ି କଥା କି ଅଳପ ବାଧଇ
ସଂସାରେ ବନ୍ଧ୍ୟା ସ୍ତିରୀକି ରୋଦନ କରଇ ।
କେବଳ ସଦା କାଳରେ ଦୁଃଖେ ରହିଥାଇ
ପୁତ୍ରହୀନଙ୍କୁ ବୋଧିଲେ ଧରମ ହୁଅଇ ।
ଏରୂପେ ସେ ମନେ ପାଞ୍ଚି ମରାଳରେ ବସି
ମିଳିଲେ ଯେ ପିତାମହ ଦୈତ୍ୟପାଶେ ଆସି
ଅମୋହମାଳା ଗୋଟିଏ ଧରି ବେଦବର
ଯାନ ତେଜି ଭୟେ ଉଭା ହୋଇଲେ ସତ୍ୱର
ବସିଅଛି ସଭାକରି ଦୈତ୍ୟ ମନଦୁଃଖେ
ଏମନ୍ତ ବେଳେ ମିଳିଲେ ବ୍ରହ୍ମା ତାର ପାଖେ
ପିତାଙ୍କୁ ଦେଖି ଆସନୁ ବେଗେ ଉଠି ମୁର
ଲୋଚନୁ ଲୋତକ ଧାରାବହି ବୋଲି ଗିର
ଉଠି ଶୋକଭରେ ଦେଲା ଆସନ ପକାଇ
ବସିଲେ ଯେ ପିତାମହ ଧୀରେ ତହିଁ ଯାଇଁ ।
ଶୋକଭରେ ଦଇତ ନ ପାରେ ବାକ୍ୟ କହି
ନମିଲା ଲୋତକ ଜଳେ ତାଙ୍କ ପାଦ ଧୋଇ ।
ପ୍ରଣାମ ସାରିଣ ବସେ ମଥାକୁ ସେ ପୋତି
ବ୍ରହ୍ମା ବୋଇଲେ ବାପ ନକର ଶୋକ ଅତି ।
ତୋ ପୁତ୍ର ମରଣ ବାର୍ତ୍ତା ମିଳିବାରୁ ମୋତେ
ସଙ୍ଖୋଳି ଆସିଛି ଆରେ ବାପଧନ ତୋତେ
ଅସୁର ବୋଲେ ଶୁଣିମା ହେଉ ପିତାମହ
ସଂସାର ଯାକରେ ତୁମ୍ଭେ ଧାତା ପରା ହୁଅ ।
ମୋତେ ଏତେ ପୁତ୍ର ନାତି ତୁମ୍ଭେ ଦେଇଥିଲ
ଦିନକେ କି ମରିବାକୁ ଭାଲେ ଲେଖିଥିଲ ।
ଦୁଇ ଚାରି ନୁହନ୍ତି ସତରଲକ୍ଷ ପୁତ୍ର
ଆବର ମୋ ନବଲକ୍ଷ ନାତି କୁଳ ଗୋତ୍ର ।
ଦଣ୍ଡକ ଭିତରେ ଯେବେ ଏ ସମସ୍ତ ମରି
କି ବୋଲି ଲେଖିଲ ଏହା ଆହେ ମୁଖ ଚାରି
ଧାତା ବୋଲେ ଆରେବାବୁ ଶୁଣ ତୁହି ଏହା
ଗୋବିନ୍ଦ ଭିଆଣ ଅଟେ ସ୍ୱର୍ଗ ମଞ୍ଚ ଯାହା ।
ଈଶ୍ୱରଟି ବସାଇବେ ଏକ ଗୋଲା ହାଟ
ତହିଁ ବିକା କିଣା କରୁଥାନ୍ତି ଜନପୁଟ ।
ଗୋଲାହାଟ ବୋଲି ସେହି ହାଟ ନାମ କହି
ଅଛନ୍ତି ଅପାର ଲୋକ ମିଳି ଜାଣ ତହିଁ ।
ଛପନ କୋଟି ପସରା ଥୋଇଣ ଅଛନ୍ତି
ହାଟେ ଆସି ଲୋକେ ତାହା କିଣିଣ ନିଅନ୍ତି ।
ଯେଉଁ ସମୟରେ ସେହି ହାଟ ଥିଲା ବସି
ବାୟବ୍ୟ କୋଣରୁ ଇନ୍ଦ୍ର ବର୍ଷା କରେ ଆସି ।
ମହାବତାସ ବହିଣ ମାରେ ଘଡ଼ଘଡ଼ି
ହାଟରୁ ପଳାଇଗଲେ ଲୋକେ ଉଠି ପଡ଼ି ।
ମଣ୍ଡପେ ସହସ୍ର ଲୋକ ଯାଇ ବସିଗଲେ
ତହିଁରଯେ କଥା ମୋତେ କହିଦେବା ଭଲେ
ଚାରିଦିଗେ ମେଘ ଘୋଟି ବରଷନ୍ତି ପାଣି
ବିଜୁଳି ଯେ ଘନ ଘନ ମାରେ ଶୂନ୍ୟେ ଟାଣି ।
ମଣ୍ଡପର ଚାରିପାଖ ମାରେ ଘଡ଼ ଘନି
ମଣନ୍ତି ସେ ସ୍ଥାନେ ଥିବା ଲୋକେ ଡକାପାଡ଼ି
ବୋଲନ୍ତି କାହାକୁ ଏଥେ ମାରିବ ଚଡ଼କ
ତେଣୁ ଛାଡ଼ି ନ ଘୁଞ୍ଚନ୍ତି ଏଥୁ ମେଘଯାକ ।
ଅଳପ ଦୂରରେ ରହି ପିଟେ ବଜ୍ର ଆଣି
କାହାକୁ ମାରିବ କିଏ ତାହା ଅଛି ଜାଣି ।
ଏଥକୁ ଉପାୟ ଆମ୍ଭେ କରିବାକ ପାଞ୍ଚି
ପଦାକୁ ଯାଇଣ ଜଣେ ଆସୁଥାଇ ଘୁଞ୍ଚି ।
ଯାହାର ଦୁର୍ଭାଗ୍ୟ ଥିବ ସେ ସିନା ମରିବ
ବିଚାର ଶୁଣିଣ କଲେ ହେଉ ବୋଲି ସର୍ବ ।
ସଭାରୁ ଉଠି ପଦାକୁ ବେଗେ ଜଣେ ଗଲା
ଚଡ଼କ ମାରିବାଠାଇଁ ପ୍ରବେଶ ହୋଇଲା ।

ଲେଉଟି ଆସି ବସିଲା ପୁଣି ମଣ୍ଡପରେ
ଆଉ ଜଣେ ଚଳିଯାଇ ମିଳିଲା ସେଠାରେ ।
ଏ ରୂପରେ ତହିଁ ସର୍ବେ ଯା ଆସ ହୁଅନ୍ତେ
ତା ମଧ୍ୟୁ ଏକା ହୋଇଣ ଜଣେଥିଲା ପ୍ରାନ୍ତେ
ତାହାକୁ ବୋଇଲେ ଆହେ ତୁମ୍ଭେ ଚଳିଯାଅ
ତୋ କର୍ମରେ ଯାହାଅଛି ତାହା ଭୋଗପାଅ
ବାହୁଡ଼ି ଆସିଲେ କଥା ଉତ୍ତମ ତ ହେଲା
ଚଡ଼କ ତ ମାଇଲେ ତୋ ଭୋଗ ସରିଗଲା ।
ପୁଣି ଭୟ କରିଣ ସେ ବେଗେ ଗଲା ଉଠି
ବୋଇଲା ଗୋବିନ୍ଦରକି ନାହିଁମୋତେ ଦୃଷ୍ଟି
ସବୁଙ୍କୁ ରଖି ପଛକେ ଦେବେ ମୋତେ ମାରି
ନ ଗଲେକ ପରମାଦ ଗଲେ ଯିବି ମରି ।
ଭୋ ପ୍ରଭୁକି ମୃତ୍ୟୁ ମୋତେ ଥିଲା ଏହା ଲେଖି
ବୁଝିଲେ ସଂସାରେ ମୁହିଁ ଅଟେ ନିରିମାଖି ।
ସାତଟି ପୁତ୍ରରେ ମୋର ଗୋଟିଏ ଦୁଲଣୀ
ଆମ୍ଭ ଦୁହିଁଙ୍କୁ ଯେ ମିଶି ହେବେ ଦଶ ପ୍ରାଣୀ ।
ମୁହିଁ ମରିଗଲେ ଏହୁ ହେବେ ଅରକ୍ଷିତ
ଏଥକୁ ଯେ ପରିତ୍ରାଣ କରିବେ ଶ୍ରୀକାନ୍ତ ।
ଏରୂପେ ବୋଲି ପଦାକୁ ଉଠି ଚଳିଯାନ୍ତେ
ମାଇଲା ଯେ ଘଡ଼ଘଡ଼ି ମଣ୍ଡପର କାନ୍ଥେ ।
ସହସ୍ରେକ ଲୋକ ମରିଗଲେ ସେହିଠାରେ
ବିହି ଲେଖିବା କଥାକେ ଆନ କରିପାରେ ।
ଜଣକ ଲାଗି ସମସ୍ତେ ଥିଲେ ଜାଣ ଜୀଇଁ
ଏରୂପରେ କାହାକୁ ମଲା କଥା ଜଣାନାହିଁ ।
ଅପୂର୍ବ ମରଣ ଏହୁ ଅଟେ ଶୁଣିବାକୁ
ଏହି ପ୍ରକାରେଟି ମୃତ୍ୟୁ ଥିଲା ତୋ ପୁତ୍ରଙ୍କୁ ।
ଏରୂପେ ବିହି ଜାଣ ପୂର୍ବୁ ଥାନ୍ତି ଲେଖି
ଏହା ନଜାଣି ପ୍ରାଣୀଏ ହେଉଥାନ୍ତି ଦୁଃଖୀ ।
ଯେତେକ ସେ ଲେଖିଥାନ୍ତି ବସି ଭାଲପଟେ
ସେତେକ ଭୋଗ ସେହୁ ଯେ କରଇ ନିରାଟେ
ଭୋଗ ସରିଲେ ତାକୁ କେ ରଖି ନ ପାରଇ
ଯେ ଯେତେ ଆଣିଥାଇ ସେସେତେ ଦିନଯାଇ
ବ୍ରହ୍ମା ବୋଇଲେ କହିବା ଆଉ ମଧ ଶୁଣ
ତୋହର ପୁତ୍ର ନୁହନ୍ତି ସେହି ଯମଗଣ ।
ଶାପ ପାଇ ତୋର ବୀର୍ଯ୍ୟେ ଜନ୍ମ ହେଲେଆସି
କହିବା ତାହାଙ୍କ କଥା ଶୁଣ ଆହେ ବସି ।
ଦକ୍ଷ ପ୍ରଜାପତି ପୋଏ ମଲେ ଯେଉଁକାଳେ
ଆଣିଲେକ ଯମଗଣ ଯାଇ ତାଙ୍କୁ ବଳେ ।
ବାଟରେ ଆସୁ ମଦିରା ଯାଚିଲେ ଗରବେ
ଶୁଣି ଦକ୍ଷପୋଏ ଶାପ ତାଙ୍କୁ ଦେଲେ ସର୍ବେ

ବୋଇଲେ ଆମ୍ଭଙ୍କୁ ଯେଣୁ ଯାଚିଲ ଅଲାଗି
ଏ ଦୋଷୁ ମଝେ ଅସୁର ତୁମ୍ଭେ ହୁଅ ବେଗି
ଏହିରୂପେ ଶାପ ଜାଣ ଦ୍ୟନ୍ତେ ଦକ୍ଷପୋଏ
ଶୁଣିଣ ଯେ ଯମଗଣ କଲେ ମହାଭୟେ ।
ବୋଇଲେ ନଜାଣି ଦୋଷ ଅରଜିଲୁ ଆମ୍ଭେ
ଦକ୍ଷବ୍ରହ୍ମା ପୁତ୍ର ବୋଲି ନ ଚିହ୍ନିଲୁ ପୂର୍ବେ ।
ତହିଁର ଫଳ ପାଇଲୁ ଆମ୍ଭେ ଏବେ ଶୁଣ
କେଉଁରୂପେ ମୋକ୍ଷ ହୋଇ ଆସିବୁଟି ଜାଣ ।
ତଥାପି ହୋଇଲେ ଦୈତ୍ୟ ପୃଥ୍ୱୀ ନଚଳିବ
ଆମ୍ଭ ପ୍ରତି ଦେବତାର ବହୁ କୋପ ହେବ ।
ମରିବା ଲୋକଙ୍କୁ ଆମ୍ଭେ ଆଣିବାକୁ ଯାଉ
ପାପୀଜନଙ୍କୁ ଆଣିଣ ବହୁ ଦଣ୍ଡ ଦେଉ ।
ଆମ୍ଭେତ ରହିଲେ ଏହା କରିବ କେ କହ
ଅଳ୍ପାୟୁ ହୋଇ ଆସିବୁ ଏହି ଆଜ୍ଞାଦିଅ
ଶୁଣିଣ ସେ ଦକ୍ଷପୁତ୍ର ହେଲେ ହସ ହସ
ବୋଇଲେ ଯାଅରେ ହୁଅ ମୁରଦୈତ୍ୟ ଶିଷ୍ୟ
ସତରଲକ୍ଷ ପୁତ୍ର ଯେ ନବଲକ୍ଷ ନାତି
ଅସୁର ବୀର୍ଯ୍ୟରେ ଜନ୍ମ ହେବ ବିନଶ୍ୟତି ।
ଯେରୂପେ ମରିବ ତୁମ୍ଭେ କହିବୁଁ ତା ଶୁଣ
ତୁମ୍ଭଙ୍କୁ ପଢ଼ାଇବେ ଯେ ଆସି ନାରାୟଣ ।
ମରିବ ବିଷ୍ଣୁଙ୍କୁ ମନ୍ଦ ପାଞ୍ଚି ତୁମ୍ଭେ ତହିଁ
ମରାଇବେ ଯେ ଗରୁଡ଼ ହାତେ ଲକ୍ଷ୍ମୀସାଇଁ ।
ମରିବ ହେ ଖଗେଶ୍ୱର ହାତେ ତୁମ୍ଭେ ଜାଣ
ଏକଥା ପୂର୍ବରୁ ପାଞ୍ଚିଛନ୍ତି ନାରାୟଣ ।
ସମୁଦ୍ର ମଧରେ ପଡ଼ିଯିବ ସର୍ବେ ବୁଡ଼ି
ତେବେ ଏ ପାତକ ତୁମ୍ଭ ଅଙ୍ଗୁ ଯିବ ଛାଡ଼ି ।
ଶୁଣି ଯମଗଣ ଚଳିଗଲେ ତୋଷ ହୋଇ
ଏଥିଉତ୍ତାରୁ ହେ କଥା ଶୁଣ ନୃପସାଇଁ ।
ତୋହର ବୀର୍ଯ୍ୟରେ ଆସି ହେଲେ ସେହିଜନ୍ମ
ପାପରୁ ସେ ମୋକ୍ଷହୋଇ ଗଲେ ନିଜ ଧାମ ।
ଅଛନ୍ତି ତୋହର ପୁତ୍ରେ ଯାଇ ଯମପୁରେ
ଆଖଡ଼ାକରି ସାଧନ୍ତି ବିଦ୍ୟା ସେହିଠାରେ ।
ଦେଖିବୁ ପୁତ୍ରଙ୍କୁ ଯେବେ ମୋର ସଙ୍ଗେ ଆସ
ଦେଖିଲେ ଯେ ଛାଡ଼ିଯିବ ତୋର ମୋହପାଶ
ଶୁଣିଣ ସେ ମୁରାସୁର ଆନନ୍ଦିତ ହେଲା
ବିଜୟ ରଥରେ ଚଢ଼ି ବ୍ରହ୍ମା ସଙ୍ଗେ ଗଲା ।
ମରାଳଯାନ ଚଢ଼ିଣ ବିଜେ ବେଦବର
ମୁରାସୁରକୁ ଘେନିଣ ଗଲେ ଯମପୁର ।
ମୁରର ପୁତ୍ରେ ସାଧନ୍ତି ତହିଁ ସର୍ବ ବିଦ୍ୟା
କେ ଧନୁ ସାଧଇ କେହୁ ସାଧକରେ ଗଦା ।

ବ୍ରହ୍ମାଏ ବୋଇଲେ ଦେଖ ତୋ ପୁତ୍ରଯାକଙ୍କୁ
ବିଦ୍ୟା ସାଧୁଅଛନ୍ତି ଏ ସୃଷ୍ଟି ଜିଣିବାକୁ ।
ତୁହି ଭାଳୁଥିବୁ ମୋର ପୁତ୍ରେ କେଣେ ଗଲେ
ନୟନ ପୁରାଇ ଦେଖ ତାଙ୍କୁ ଏବେ ଭଲେ ।
ଶୁଣିଣ ସେ ମୁରାସୁର ମନେ ତୋଷବହି
ପୁତ୍ରଙ୍କର ନାମଧରି ଡାକେ ଶ୍ରଦ୍ଧା ପାଇ ।
ବୋଇଲା ଆସିଲ ଆରେ ପୁତ୍ର ମୋତେ ଛାଡ଼ି
କାହୁଁ ଅଛନ୍ତି ମାତାଏ ମନେ ମନେ ଲୋଡ଼ି ।
ଆସରେ ବାପ ଘରକୁ ଯିବା ଏବେ ଆମ୍ଭେ
ପଛେ ଏ ବିଦ୍ୟା ସାଧିବ ଏଥେ ଆସି ତୁମ୍ଭେ
ଶୁଣିଣ ବୋଇଲେ ଯମଗଣ ମାର ମାର
କିଏ ତୁହି କେଉଁମାନେ ତୋହର କୁମର ।
ତୋହ ଘରେ ଥିବାଯାଏ ପୁତ୍ର ଥିଲୁ ।
ମରିବା ମାତ୍ରବେ ପରଲୋକକୁ ଅଇଲୁ ।
ସାଧୁଅଛୁ ଗଦାଧନ୍ନୁ ମରିବ ବାଜିଲେ
ଆଡ଼ହୋଇ ଉଠିଯାଅ ଏହିଠାରୁ ଭଲେ ।
ମୁର ବୋଇଲା ଶୁଣରେ ବାପ ମହୀକର୍ଣ୍ଣ
ବାପକୁ ତେଜି ମଉସା ପାଦେ କେମ୍ନେ ମନ
ମୋହର ପ୍ରାୟେ ସଂସାରେ ବାପ ମିଳିବ କି
ମଦନାବତୀ ପ୍ରାୟେକ ମାତ ହୋଇବ କି ।
ମୁଁ ତୁମ୍ଭର ନିଜ ବାପ ତୁମ୍ଭେ ମୋର ବସ୍ତ
ଏହିକଥା କାହିଁପାଇଁ ତୁମ୍ଭେ ପାଶୋରୁଛ ।
ପୁତ୍ରେ ବୋଇଲେହେଁ ବାପ କିମ୍ପାପାଶୋରିବୁ
ତୁ ଏଥୁଗଲେ ମରିବୁ ଆମ୍ଭେ ଆଣିଯିବୁଁ ।
ଶୁଣିଣ ସେ ମୁରାସୁର ହେଲା ଆଚମ୍ବିତ
ବ୍ରହ୍ମାଙ୍କର ମୁଖ ଚାହିଁ ହୋଇଲା ଚକିତ ।
ବିଧାତା ବୋଇଲେ ଏହିରୂପେ ସଂସାରଟି
ତୁ ଏହା ନ ଜାଣି ଶୋକ କରୁ କାହାକୁଟି ।
ଦଇବୀ ମାୟାରେ ପଡ଼ିହେଉ କେତେବାଇ
କାହାର ବାପ କେ ପୁତ୍ର କାହାର କେହୋଇ
କେ କାହାର ଭାରିଯା କେ ଅଟେ କାରସ୍ୱାମୀ
ଯେତେ ସମ୍ପତ୍ତି ଅର୍ଜେ ସେ ନୋହେତାରପୁଣି
ଯେଉଁଠାରୁ ଆସିଅଛି ସେହିଠାକୁ ଯାଏ
ଏକଥା ନ ଚିହ୍ନି ପ୍ରାଣୀ ଭ୍ରମେ ଭ୍ରମ ହୁଏ ।
ଅମୋହମାଳ ଦେଉଛି ମୋର ଏବେ ନିଅ
ଏହି ମାଳାଥିଲେ ତୋତେ ନ ଲାଗିବ ମୋହ
ଏହିରୂପେ କହି ମାଳ କଣ୍ଠେ ତାର ଦେଲେ
ତହୁଁ ମୁର ପୁତ୍ର ଆଶା ପରିତ୍ୟାଗ କଲେ ।
ଲୋଭ ମୋହ ଶୋକ ଆଦି ତେଜି ମୁରାସୁର
ବ୍ରହ୍ମାଙ୍କ ପାଦରେ ନମି ଗଲା ନିଜପୁର ।

ବିଧାତା ଯେ ବିଜେ କଲେ ଆପଣା ନିବାସ
କନକାବତୀ ନଗରେ ମିଳିଲା ରାକ୍ଷସ ।
ଭାଜିଗଲା ଶୋକ ମୋହ ତନୟଙ୍କ ସ୍ନେହ
ସଭାକୁ ଯାଇ ବୋଇଲା ସର୍ବେ ସଜ ହୁଅ ।
ଭାଇକି ବୋଇଲା ଏବେ ଦାରୁଣରେ ଶୁଣ
ବଦ୍ରିକା ନଗ୍ରକୁ ଏବେ ପେଷ ସୈନ୍ୟଗଣ ।
କୃଷ୍ଣବଲ୍ଲଭର ପୋଏ କେଡ଼େ ବଳୀୟାର
ପୁତ୍ରଙ୍କ ଛଳେ ପେଷିବି ତାଙ୍କୁ ଯମପୁର ।
କଟକଯାକ ପୋଡ଼ିବା ବେଢ଼ି ଚାରିପାଖ
ଉପାଡ଼ି ସିନ୍ଧୁ ମଧରେ ପକାଇବି ଦେଖ ।
ବଂଶଯାକକୁ କରିବି ଆଜି ଭସ୍ମ ରାଶି
ଦେଖିବେ ସ୍ୱର୍ଗରେ ତାହା ଦେବଗଣେ ବସି
ସୈନ୍ୟଙ୍କୁ ମୋ ସଜକର ବଦରିକା ଯାଏ
ଶୁଣି ଦାରୁଣ ଖୁଣ୍ଟିଆ ଆଗେ ଯାଇ କହେ ।
ବୋଇଲା ରାଜାର ଆଜ୍ଞା ହେଲା ପରମାଣ
ଦାଣ୍ଡରେ ବଜାଅ ବେଗେ ଟମକ ନିଶାଣ ।
ଶୁଣିଣ ଖୁଣ୍ଟିଆ ଘେନି ରାଜାର ଯେ ଆଜ୍ଞା
ଟମକିଆକୁ କହିଲା ଡାକି ରାଜା ଆଜ୍ଞା ।
ବୋଇଲା ଦାଣ୍ଡରେ ଯାଇ ବଜା ଟମକକୁ
ବଜାଇ ଟମକ ନାଦେ ଡାକିବ ସୈନ୍ୟଙ୍କୁ ।
ଟମକ ବଜାଇ ସେହୁ ଏକା ଡାକୁଥିବ
ସମସ୍ତଙ୍କ ନାମମାନ ଟମକେ ବାଜିବ ।
ବଇରୀ ମର୍ଦ୍ଦନ ନାମ ଟମକ ଯେ କହି
ବାଜଣା ଶୁଣି ଆସିବେ ଏଥେ ସର୍ବେ ଧାଇଁ ।
ପ୍ରତ୍ୟେକର ନାମ ଧରି ଟମକ ବାଇବୁ
ନାଦରେ ନାମ ଧରିଣ ସବୁଙ୍କୁ ଡାକିବୁ ।
ଶୁଣି ଟମକିଆ ଧରି ଟମକ ଯେ ପିଟି
ନାଦରେ ନାମ ଧରିଣ ଡାକେ ଗୋଟି ଗୋଟି
ବୋଲେ ଆମ୍ଭ ରାଜାକାଲି ସୈନ୍ୟଗଣ ନେଇ
ବଦରିକାପୁରେ ଯିବେ ଜିଣିବାର ପାଇଁ ।
ସେନାମାନେ ସଜ ହୋଇ ଶୀଘ୍ର ମିଳ ଆସି
ଟମକ ଡାକଇ ଏହି କଥା ଅହର୍ନିଶି ।
ଶୁଣିଣ ଧାଇଁଲେ ସେନାମାନେ ହୋଇ ସଜ
ରାଜା ଛାମୁରେ ମିଳିଲେ ଚଢ଼ି ଅଶ୍ୱଗଜ ।
ନୃପତି ବୋଇଲେ ଆହେ ସର୍ବେ ଯିବାଚାଲ
ବଦରିକା ନଗ୍ରେ କାଲି କରିବା ଯେ ଗୋଳ
ବଲ୍ଲଭ ପୁତ୍ରଙ୍କୁ ମାରି ଅର୍ଜିବା ଯେ ଯଶ
ତେବେ ସଭାରେ ବସିଣ ହେବା ହସ ହସ ।
ପୁତ୍ରଙ୍କ ମରଣ ଦେଖି କମ୍ପୁଛି ମୋ ଦେହ
ନୁହନ୍ତି ଦୁଇ ଚାରି ସତରଲକ୍ଷ ପୁଅ ।

କ୍ରମରେଯେ ମୋର ମଲେ ବଧୂ ମୋରମଲେ
ବିଦ୍ୟାଗୁରୁ ହୋଇଣ ସେ ଏଡ଼େ କର୍ମ କଲେ
କି ରୂପେ ଅଛଇ ଧର୍ମ ତାକୁ ଜାଣ ସହି
ମାରିଣ ପଳାଇ ଗଲେ ଦ୍ୱିଜରୂପ ବହି ।
ଗଲେ ବୁଝିବା ସେ ବେନି ଭାଇଙ୍କର କଥା
ଆଗେ ପଡ଼ିଲେ ମୋଡ଼ିଣ ଦେବି ଧରି ମଥା



## କାଙ୍କୋଳାସୁରର ଯୁଦ୍ଧ ଯାତ୍ରା

କାଙ୍କୋଳାସୁର ଉଠିଲା ଶୁଣି ଗଳଗାଜି
ଭୂମିରେ ହାତକୁ ପିଟି ନିଶ ମୋଡ଼େ ଗର୍ଜି
ବୋଇଲା ହେଉଛ କେତେ ବ୍ରାହ୍ମଣଙ୍କୁ ତମ
କାଲି ତ ଗଲେ ପୋଛିବ ତାଙ୍କ ପାଞ୍ଜି ଯମ
ଆମ୍ଭେ ଥାଉଁ ଥାଉଁ କିମ୍ପା ଯିବୁ ଯୁଝି ତୁହି
ଲୋକେ ବୋଲିବେ ରାଜାର ବିବେକଯେନାହିଁ
ଏରୂପେ ସେନାପତିଏ ଛାମୁରେ କହନ୍ତେ
ସଂସାରେ ବାଛି ପାରିବେ ଆଉକେହୁତୋତେ
ସେମାନଙ୍କୁ ଯୁଦ୍ଧକୁ ଯେ ଆଗ ପେଷ ତୁହି
ସେନାମାନେ ନ ପାରିଲେ ଯୁଝିବୁ ତୁ ଯାଇ ।
ସମ୍ଭ୍ରମହୋଇ ଚଳିବୁ ତୁହି ଯେତେବେଳେ
ପୃଥିବୀ ପଡ଼ିବ କିବା ଯାଇ ରସାତଳେ ।
ପୁତ୍ରଙ୍କର ପାଶେ ଯେବେ ଥାଆନ୍ତୁ ତୁ ରହି
ଗୋଟିଏ ତୋହର ପୁତ୍ର ମରନ୍ତେ କିମ୍ପାଇଁ ।
ତଥାପି ଆମ୍ଭେମାନେ ତ ପାଖେଥାନ୍ତୁ ଯେବେ
କିରୂପେ ବଲ୍ଲଭ ପୋଏ ମାରିଯାନ୍ତି ତେବେ ।
ଗୃହରେ ଆଣି ରଖିଲୁ ତାଙ୍କୁ ହେଳାକରି
ବରଷ ତିନି ରଖିଲୁ ନ ପାରିଲୁ ମାରି ।
ଶେଉଳ ମାଛ ପ୍ରାୟେ ସେହେଲେ ମନ୍ଦଜାଣ
ଭେଣ୍ଡିଆ ଚଣ୍ଡିଆ ବୁଦ୍ଧି କାହିଁ କେତେପୁଣ
ମୁଁ ଆଗେ ଯୁଦ୍ଧକୁ ପୁଣ ଯାଉଅଛି ଚଳି
ବଲ୍ଲଭର ପୁତ୍ରମାରି ଦେବି ବିଶାବଳୀ ।
ଆବର ମାରିଲେ ବେନି ସେନା ବାହାସ୍ଫୋଟ
ଚୋବାନ୍ତି ଦଶନପନ୍ତି ଭିଡ଼ି ରଟମଟ ।
ବୋଇଲେ କାଙ୍କୋଳତୁଲେ ଯିବୁ ଆମ୍ଭେବେନି
ତିନିହେଁ ଘୋଟିବୁ ମିଶିଗଲେ ପୁର ତିନି ।
ଏରୂପେ ସେ ଚନ୍ଦ୍ରମାଳା କହି ରଣଜିତ
ବୀରକେଶର ଦାନାରେ ଟେକନେଇ ହସ୍ତ ।
ବୋଇଲେ ବଦ୍ରିକା ଆମ୍ଭେ ଯାଇ ଆସୁକିନା
ତେବେ ଯେ ରାଜା ବିଚାର କରୁ ବସି ସିନା ।
ପୁଣି ମୁରାସୁର କହେ ହଲାଇଣ ଥୋଡ଼
ବୋଇଲାକ ପୁତ୍ରଠାରୁ ତୁମ୍ଭେ ମୋର ବଡ଼ ।
ତୁମ୍ଭଙ୍କୁ ଦେଖି ପୁତ୍ରଶୋକ ପାଶୋରିଛି
କିରୂପେ ହେ ମାର କୃଷ୍ଣବଲ୍ଲଭର ବଂଶି ।
ବଡ଼ ବଇରୀ ମୋହର ଅଟଇ ସେ ଏକା
ସେ ମଲାଯାଏ ମୋର ନଯାଏ ହୃଦୁ ଦକା ।
କିରୂପେହେଲେ ଯାଇ ମାରିଆସ ବେଗେ
ପ୍ରଳୟ ଯାଏରେ ତୁମ୍ଭେ ରହିବ ମୋସଙ୍ଗେ
ପରମ ସୁଖେ ରହିଣ କରିବ ଯେ ଭୋଗ
ଆମ୍ଭଙ୍କୁ ଯାବତ ଚନ୍ଦ୍ର ଅର୍କେ ନାହିଁ ଭୋଗ ।
ତେତିଶକୋଟି ଯେ ରାଣୀ ଅଛନ୍ତି ମୋ ସତୀ
ଲେଉଟି ସେ କେତେ ପୁତ୍ର କରିବେ ଉତ୍ପତ୍ତି ।
ବାଳକେ ମରିବାରୁ ନକରେ ମୁହିଁ ଚିନ୍ତା
ଦେଖିବ ବିଷ୍ଣୁଙ୍କୁ ଜିଣି ହେବି କେଡ଼େଜିତା ।
ମୁହିଁ ସଂସାରଯାକରେ ଅଟେ ଏକା ବଡ଼
ମୋହ ସଙ୍ଗରେ କି ସରିହେବ ଯୋଗାରୁଢ଼ ।
ଆବର ଲୋକଙ୍କୁ ମୁହିଁ ମନେ ନ ଗଣଇ
ଦେଖୁଛତ ନିତି ବ୍ରହ୍ମା ଆସୁଛି ତ କହି ।
ଆବର ଯେ ଦିଗପାଳେ ଯେତେକ ଅଛନ୍ତି
ସମସ୍ତେତ ଖଟିଛନ୍ତି ହୋଇ ବଶବର୍ତ୍ତୀ ।
ଶୁଣିଣ କହନ୍ତି ସେନାମାନେ ପାଦଧରି
ବୋଲନ୍ତି କିଏ ନଅଛି ତୁମ୍ଭ ସେବାକରି ।
ମଣ୍ଡଳାଧିପତି ତୁହି ମୁର୍ଦ୍ଧାନାଭିଷେକୀ
କେକହିପାରେ ଛାମୁରେ ତୋତେ ମଥାଟେକି
ଯେତେ ଚକ୍ରବର୍ତ୍ତୀ ଆଉ ଚାରିଯୁଗ ରାଜା
ତୋର ସମାନେ ସଂସାରେ ନାହିଁ ତାରପୂଜା
ଶାନ୍ତିପଣକୁ ପ୍ରତ୍ୟକ୍ଷେ ତୁହି ଗଙ୍ଗାଜଳ
ତୀକ୍ଷଣପଣକୁ ସାକ୍ଷାତେ ଅଟୁ କାଳାନଳ ।
କ୍ଷତ୍ରୀପଣକୁ ନୁହନ୍ତି ରୁଦ୍ର ହରି ସରି
ବାସୁକୀ ପ୍ରାୟେ ବସିଛୁ ଭାରା ଜନ ତାରି ।
ଲକ୍ଷ୍ମୀ ଶାରଦାଙ୍କ ପ୍ରାୟ ଦୟା ତୁହି କରୁ
କ୍ଷଣକେ ଯାବତ ଲୋକ ଦମ୍ଭ ଭାଙ୍ଗିପାରୁ ।
ସମସ୍ତ ଲୋକଙ୍କ ମନ କଲେ ଏକଠୁଳ
ତହିଁରୁ ଦ୍ୱିଗୁଣ ବଳେ ତାର ବୁଦ୍ଧିବଳ ।
କୁବେର ବରୁଣଙ୍କର ଅଛି ଯେତେ ଧନ
ତହିଁରୁ ଦ୍ୱିଗୁଣ ବଳେ ତୋ ସମ୍ପତ୍ତିମାନ ।
ବ୍ରହ୍ମାଣ୍ଡଯାକ ଅଛନ୍ତି ଯେତେ ଋଷିପୁତ୍ର
ତହିଁକି ଦ୍ୱିଗୁଣ ବଳେ ତୋର ଗୁରୁମନ୍ତ୍ର ।
ଶୁଣିଣ ମୁରର ମନ ହେଲା ବଡ଼ ତୋଷ
ବୋଇଲାରେ ନୃସିଂହକୁ ବେଗେ ମାରିଆସ ।
ପାଇକ ରାଉତ ରଥି ସର୍ବେ ଯାନ୍ତୁ ଚଳି
ବହନ ଆଗରେ ବାଜୁବୀର ବାଜାବଳି ।

ଗଜ ଅଶ୍ୱ ଖର ଉଷ୍ଟ୍ର ମଇଁଷି ଯାନରେ
ଯେ ବିଧିବିଧାନେ ଚଢ଼ି ଚଳନ୍ତୁ ଗମ୍ଭୀରେ ।
ହୁଅନ୍ତୁ ପଦାତି ସୈନ୍ୟମାନେ ବେଗେ ସଜ
ପୁଣି ବାହାର ହୋଇଲେ ଦଶଲକ୍ଷ ଗଜ ।
କୋଟିଏ ଅଶ୍ୱ ଯେ ଓଟ ଅର୍ବୁଦେକ ଗଲେ
ତେରପଦ୍ମ ସୈନ୍ୟ ତାଙ୍କ ସଙ୍ଗେ ବାହାରିଲେ
ଲାଙ୍ଗିଆଯେ ତୀକ୍ଷ୍ଣକାଠି ଖଡ଼୍‌ଗତୀକ୍ଷ୍ଣମୁନା
ଶକତି ମୁଦ୍‌ଗର ଗଦାଶୂଳ ଫରକନା ।
ଧନୁ ନାରାଚ ସାବୋଳି କାଣ୍ଡ ଭାଲ ଖଣ୍ଡା
ଚାଲନ୍ତି କ୍ଷତ୍ରି ଧରିଣ ହୋଇ ପରଚଣ୍ଡା ।
କାଙ୍କୋଳାସୁର ରାଜାର ଆଗେ କହି ଗଲା
ସଙ୍ଗେ ଶରଜିତ ଚନ୍ଦ୍ର ମାଳୀକୁ ଯେ ନେଲା ।
ଚଳିଲେକ ସୈନ୍ୟଯାକ ସିଂହଦ୍ୱାରବାଟେ
ଦିଶନ୍ତି ସ୍ୱର୍ଗକୁ ଗଲା ପ୍ରାୟେ ଦୈତ୍ୟଥାଟେ ।
ଢୋଲ ଦମା ଟମକ ଯେ ବାଜେ ଘଡ଼ଘଡ଼ି
କାହାଳି ଚଡ଼କା କାମଭେରୀ ବଜ୍ର ରଡ଼ି ।
ଦୁନ୍ଦୁଭି ମହୁରୀ ଶଙ୍ଖ ପଖାଉଜ ବାଜେ
ଦୈତ୍ୟଙ୍କ ମୁଖ ରାବରେ ତିନିପୁରେ ଗଜେ ।
ଆକାଶେ ଥାଇ ପାଞ୍ଚନ୍ତି ଦେବେ ମନତୋଷେ
ବୋଇଲେ ମୃତ୍ୟୁପଶିଲେ ଏବେ ପୁର ଦେଶେ ।
ପାହାରୀଗଣ ସତରଲକ୍ଷ ମଲେ ପୋଏ
ନବଲକ୍ଷ ନାଚି ଆଦି ଗଲେ ସବୁ କ୍ଷୟେ ।
ଏବେ ସେ ଆସନ୍ତି ବହୁ ସେନା ଯୁଦ୍ଧ କରି
ନୃସିଂହ ହସ୍ତରେ କାଲି ଯିବେ ନିଶ୍ଚେ ମରି ।
ଏ ରୂପେ ପାଞ୍ଚିଣ ଦେବେ ହୁଅନ୍ତି ଆନନ୍ଦ
ଏଥି ଉତ୍ତାରେ ସେ ବାଣୀ ଶୁଣ ହେ ନାରଦ ।
ତେରପଦ୍ମ ଯାଏ ସେନା ସଙ୍ଗତରେ ଘେନି
ଆସନ୍ତି ସମର କରି ସେନାପତି ତିନି ।
ବଦ୍ରିକା ଦେଶକୁ ଯେ କନକାବତୀ ପୁର
ଦୁଇଶ ପଚାଶ ଯୁଣ ହୁଏ ପଥ ଦୂର ।
ଦିନକ ମଧ୍ୟେ ଆସିଲେ ଦୈତ୍ୟବଳ ମାଡ଼ି
ବଦ୍ରିକା ଦେଶେ ରହିଲେ ଆସି ବସାପାଡ଼ି ।
ଉତ୍ତରପାଖେ ଆନନ୍ଦ ବନ ନାମେ ତୋଟା
ନୈମିଷାରଣ୍ୟକୁ ବଳି ଦିଶେ ବନଗୋଟା ।
ବଦ୍ରିକା ନଗ୍ରକୁ ମାଡ଼ିଅଛି ଉପବନ
ବହଇ ସେ ଗଙ୍ଗାନଦୀ ତୀର୍ଥ ଅତି ପୁଣ୍ୟ ।
ସେ ବନର ମହିମାକୁ କି ଦେବା ଉପମା
ନୃସିଂହ କରନ୍ତି ନିତ୍ୟ ଯହିଁ ପରିକ୍ରମା ।
ଚୌଷଠି ସହସ୍ର ନାୟିକା ଘେନି ବିହରନ୍ତି
ଯଜ୍ଞ ବେଦୀରେ ନୃସିଂହ ରାହାସ କରନ୍ତି ।

ନୃସିଂହ ବନବିହାର ଅଟଇ ସେ ତୋଟା
ନନ୍ଦନ ବନରୁ ବଳି ଦିଶଇ ପ୍ରତିଷ୍ଠା ।
ନାନାଦି ମହୌଷଧି ଯେ ବନେ ଅଛି ରହି
ଚିହ୍ନି ପାରିଲେ ନପଶେ ରୋଗତାର ଦେହୀ ।
ଆବର ଲାଗିଛି ପୁଷ୍ପଲତା ଧାଡ଼ି ଧାଡ଼ି
ବାସନାରେ ଚହଟଇ ବେନି ଯୁଣ ମାଡ଼ି ।
ଅବସନ୍ତେ ବସନ୍ତ ଯେ ବହେ ସର୍ବ କାଳେ
ନୃସିଂହ ଯେ ବିହରନ୍ତି ତହିଁ ତରୁତଳେ ।
ସେ ବନେ ପଶିଲେ ରୋଗବ୍ୟାଧିନଷ୍ଟ ହୋଇ
ଦେଖିଲେ ପଡ଼ିବ ଶତ୍ରୁ ହେଲେ ମୋହଯାଇ ।
ବିରାଜେ ଉତ୍ତମ ଚୂତ ବନ ପନ୍ତି ପନ୍ତି
ବାରମାସଯାକ ଫଳଫଳି ଝୁଲୁଥାନ୍ତି ।
ଆବର ତହୁଁ ପଣସ ଗୁଆ ନାରିକେଳ
କଦଳୀ କମଳା କରମଙ୍ଗା ମାଳ ମାଳ ।
ନାରଙ୍ଗ ବାତାପି ଟଭା ଲେମ୍ବୁ ତାଳସଜ
କପିତ୍‌ଥ ଖଜୁରୀ କେନ୍ଦୁ ହରି ପାଦାମ୍ବୁଜ ।
ମୁନଙ୍ଗ ପିଜୁଳି ନରକୋଳି ସଜନାଟି
ଆବର ଡାଳିମ୍ବ ଫଳ ପଡ଼େ ପାଚି ଫୁଟି ।
ଆବର ଜମ୍ବୀର ବରକୋଳି ସୀତାଫଳ
ଅଁଏଳା ତେନ୍ତୁଳି ରାଜଜାମୁ ମାଳ ମାଳ ।
ଏ ଆଦି ସୁସ୍ୱାଦୁଫଳ ଫଳେ ନାନାଜାତି
ଲବଙ୍ଗ ମରିଚ ଜାତି ଫଳ ପନ୍ତି ପନ୍ତି ।
ବାସଙ୍ଗ ଦାରାକ୍ଷ ଦେବଦାରୁ କଳାଜିରା
ବଡ଼ଜିରା ଚିରାବତା ବାହାଡ଼ା ଗୋଖରା ।
କଟୁ ରୋହିଣୀ କାଫଡ଼ କୁଢ଼ ଶୁଣ୍ଠୀ ମୁଥା
ଆର୍ଦ୍ରକ ନିମ୍ବ ଆବର ମହାନିମ୍ବ ତଥା ।
ବେଗୁନିଆ ଅଦା ମେଥି ଶୁକ୍ଳଚିତା ପାରି
ଧନିଆ ଛତୁରି ଜାଇତିରି ଶୃଙ୍ଗବେରି ।
ଆବର ଅଛନ୍ତି ତହିଁ ନାନାପୁଷ୍ପ ତରୁ
ମାଧବୀ ବକୁଳ ଜାଇ ଯୁଇ ଚମ୍ପା କୁରୁ ।
ଦୟଣା ମରୁଆ ଛୁରୀଅନା ନାଗେଶ୍ୱର
କଦମ୍ବ ତଗର ମଲ୍ଲୀ ତରାଟ କନ୍ୟର ।
କାମିନୀ ନିଆଳି ଆଉ ଗୋଲାପ ସେବତୀ
ପାଟଳୀ ଅଶୋକ ଫୁଲ ରଙ୍ଗଣୀ ମାଳତୀ ।
ଅପରାଜିତା କାଞ୍ଚନ ଆଉ କିଆଫୁଲୀ
କେତକୀ କାମୋଦ କୁନ୍ଦ କରୁଣା କୁବେରୀ ।
ମନ୍ଦାଏ ଅଁଏଳା ଗଙ୍ଗଶିଉଳି ରଙ୍ଗଣୀ
ତୋଟାର ମଧ୍ୟେ ଅଛଇ ଦିବ୍ୟ ପୁଷ୍କରିଣୀ ।
ତହିଁର ମଧ୍ୟେ ଫୁଟଇ କୁମୁଦ ଉତ୍ପଳ
ସେ ହ୍ରଦରେ ଜଳ ପୂରିଅଛି ବେନିକୂଳ ।

ଧନ୍ୟ ସେହି ପୁଷ୍କରିଣୀ ଗଙ୍ଗା ସମ ବାରି
ଜଳଜନ୍ତୁ ବୁଲୁଛନ୍ତି ତହିଁରେ ପହଁରି ।
ବଗୁଲୀ ହଂସ ମରାଳ ଆଦି ପାଣିକୁଆ
ଗଙ୍ଗାରେ ବୁଡବଇ ପାଣିକୁଆ ଯେ ଡେଣ୍ଟିଆ ।
ମତ୍ସ୍ୟରଙ୍କା ତିଳ ବାଙ୍କମୁଖୀ କାକ ଛନ୍ତି
ବୁଲନ୍ତି ଚକୋଇ ଚକ୍ରବାକ ପନ୍ତି ପନ୍ତି ।
ଗରୁଡ଼ ଶାରଙ୍ଗ ରାଜହଂସ ବଢକାଙ୍କ
ଏମନ୍ତ ଚଳନ୍ତି ଜଳେ ପକ୍ଷୀ ଏକୁ ଏକ ।
କ୍ରୀଡ଼ନ୍ତି କପୋତ କପୋତୀ ଯେ ପାରାବତ
କେହୁ ଶ୍ୟାମବର୍ଣ୍ଣ କେହୁ ଅଟେ ଶ୍ୱେତପୀତ ।
କୋକିଳ ଶାରୀ ଶୁଆ ଯେ ବୃକ୍ଷେ ଦ୍ୟନ୍ତିରାବ
ବାଦରୀ ଜଳପାତିଆ କୁମ୍ଭାଟୁଆ ଜୀବ ।
ଶ୍ୟାମଳକେଶରୀ ଶଙ୍ଖଚିଲ ଭାଣ୍ଡ ଭୁଆ
ମଞ୍ଜରୀ ଗୋବରୀ ଚିଲ ଭଦଭଦଳିଆ ।
ଭଉଁରୀ କୋଇଲୀ ବାଜପାଇ ଖରାଖାଇ
ଶାଗୁଣା ବାଇଆ ମାଟି ଛଟା ହୋଇ ଜୁଇ ।
ନୀଳବଣି ରାଜବଣି ଡେଣ୍ଟିଆ ଛଞ୍ଚାଣ
ଚଉଡ଼ ଚିନ୍ତାମଣି ଯେ ବାଟ ଛାଲି ପୁଣ ।
କୁକ୍‌କୁଟ ଆବର ଭାଲ୍ୟାଖାଇ ନୀଳକଣ୍ଠ
କପୋତ ବଗୁଲୀ ପେଚା ବାଜ ଲମ୍ବଥଣ୍ଟ ।
ଚାତକ କାଳୀ ନାଗୁଣୀ ପୁଣ୍ଡୁରୀ ବାଲିଆ
ନେପାଳ ଚଢ଼ାଇ ଦ୍ରୋଣକଙ୍କ ଭରତିଆ ।
ଖଚର ଭୂମିରେ ଯେ କସରା ପାଟଭାରି
ନାନାବର୍ଣ୍ଣରେ ଅଛନ୍ତି ତହିଁ ଜୀବପୁରି ।
ବିମୁଖୀ ମହୁଲା ଚଷାପୁଅ ନାମେ ପକ୍ଷୀ
ପୁରାଣେ ଥୋକାଏ ପକ୍ଷୀ ନାମ ଗଲି ଲେଖି ।
ଆବର ଶୁଣିମା ଥୋକେ ଚଉପଦୀ ଜନ୍ତୁ
ପୂରିଅଛନ୍ତି ବ୍ରହ୍ମାଣ୍ଡଯାକ ଯେତେ ତନ୍ତୁ ।
ବରାହ ହରିଣ ଗଜ ଅଶ୍ୱ ସେ ସମ୍ବର
ଶାଳୋହା ମୃଗ ପଶା ଯେ ବଳିଆ ଝିଙ୍କର ।
ମହିଷ ଦଳ ଶାର୍ଦ୍ଦୂଳ ଗୋରୁ ବାହୁଟିଆ
ଶୋଲଙ୍ଗା ମାର୍ଜାରା କାଳୀମୁଖା ବଣଭୁଆ ।
ଜମ୍ବୁକ ଗୟଳ ବ୍ୟାଘ୍ର ଭାଲୁ ମାଳ ମାଳ
କସ୍ତୁରୀ ଖରିଦ ମୂଷା ନକୁଳ ମେପାଳ ।
ଖୁରାଣ୍ଟ ସିଂହ ଯୂଥ ଯେ ଆବର ଭେରଣ୍ଡା
ଶରଭ ଚମରୁ ବନଗୋରୁ ଛୁଆ ଗଣ୍ଡା ।
କୁଟୁରା ମେଷ ଛେଳି ଯେ ଭେକ ଆଦିକରି
ଏ ବିଧିରେ ଲେଖିଗଲି ଚଉପଦୀ ଭରି ।
ଖୋଜିଣ ସବୁ ଲେଖିଲେ ପୋଥି ଏକ ହେବ
ବଦ୍ରିକା ଆଶ୍ରମ ତୋଟା ଅଟଇ ଅପୂର୍ବ ।

ଆନନ୍ଦବନ ଏ ରୂପେ ପ୍ରକାଶେ ମହିମା
ମହାବିଶ୍ୱଗର୍ଭ ଅଟେ ବଦ୍ରିକାର ସୀମା ।
ସେବନେ କାଙ୍କୋଳା ଚନ୍ଦ୍ର ମାଳି ଶରଜିତ
ଲୁଚାଏ ସୈନ୍ୟ ଘେନିଣ ମିଳିଲେ ଦଇତ ।
ସେ ବନ ମଧ୍ୟେ ପଶନ୍ତେ ଯାଇଁ ଦୈତ୍ୟ ଥୋକେ
ରହିଲେ ଧୀବର ଜାଲ ପ୍ରାୟେ ତୋଟା ଯାକେ ।
ଖାଳୋଇ ମଧ୍ୟେ ଯେ ରୂପେ ମାଛପକ୍ଷୀ ରହେ
ରହିଲେ ତୋଟାକାଣେ ଯେ ଯାଇ ଅପ୍ରମୟେ ।
ତୋଟାକୁ ଦେଖିଣ ଦୈତ୍ୟ ବହୁ ପ୍ରଶଂସନ୍ତି
ଯାବତ ଫଳ ଖାଇଣ ଉଦର ପୋଷନ୍ତି ।
ବୁଲନ୍ତି ରାଜାର ସଙ୍ଗେ ବୁଲି ବୁଲି ଆମ୍ଭେ
ଦେଖିନ ଥିଲୁ ସଂସାରେ ଏଡ଼େ ତୋଟା କେବେ ।
ସାତଦ୍ୱୀପ ଚତୁର୍ଦ୍ଦଶ ଭୁବନେ ଯେ ଛନ୍ତି
ଏ ରୂପରେ ତୋଟା କେହି ନେତ୍ରେ ନ ଦେଖନ୍ତି ।
କେତେକ ଅଛନ୍ତି ତହିଁ ତୋଟାଳିଆ ଜଟି
ଗଣି ଲେଖିଲେ ଯେ ହେବ ଷାଠିଏ ସସ୍ରଟି ।
ତାହାଙ୍କୁ ଜଗିଅଛନ୍ତି ପୁଣି କେତେ ସସ୍ର
ଭଲା ଏହାଙ୍କୁ ପୋଷିଛି ଦେଇ ଅନ୍ନବସ୍ତ୍ର ।
ମୁରକୀର୍ତ୍ତିକି ଦ୍ୱିଗୁଣ ବଦରିକା କ୍ଷେତ୍ର
ନୋହିଲେ ମାରନ୍ତି କି ସତରଲକ୍ଷ ପୁତ୍ର ।
ଆବର ଯେ ନବଲକ୍ଷ ନାତି ଗଲେ ମରି
ଗଡ଼କୁ ଏ ନିର୍ଭାକଲା କ୍ଷଣେ ବିକେକରି ।
ଗଡ଼ିତ କେତେ ଦିଶଇ ଭିତର ନ ଦେଖି
ଦିଶଇ ବାହାରେ କେତେ ତୋରା ଚାରିପାଖି ।
ଆବଭ ଆସନ୍ତି ଗଙ୍ଗାପାଣି କୁହା କେତେ
ଦିଅନ୍ତି ଔଷଧ ବୃକ୍ଷମୂଳେ ଜଳେ ନିତ୍ୟେ ।
କୋଦାଳ କୁରାଢ଼ୀ କୋଡ଼ି କ୍ଷଣେ ନ ଛାଡ଼ନ୍ତି
ଶୋଧନ୍ତି ମେଦିନୀଯାକେ କରି ପୂର୍ଣ୍ଣଗତି ।
ଝିଙ୍କର କଣ୍ଟକ ଖାଲ ଖଣା ବିବର୍ଜିତ
ଶୋଧନ୍ତି ପାଷାଣ ତାଡ଼ି ମାଟି ଅପ୍ରମିତ ।
ଏସନ ବନେ ରହିଲୁ ଆମ୍ଭେ ବସାପାଡ଼ି
ଏମନ୍ତ ବୋଲି ଖାଆନ୍ତି ଦୈତ୍ୟଫଳ ଲୋଡ଼ି ।
ତୋଟାର ରକ୍ଷକ ଦେଖି ମହାକୋପଭରେ
ବୋଇଲେ ଏଠାକୁ ଆସ କାହା ଆଦେଶରେ ।
ମଣୋହି ତୋଟାରେ କରୁଅଛ ଉପଦ୍ରବ
ନ ଜାଣକି ଆରେ ମୂଢ଼େ ନୃସିଂହ ପ୍ରଭାବ ।
ପଳାଅରେ ବେଗେ ଏଥୁ ଥାଉଁ ଥାଉଁ ପ୍ରାଣ
ନୃସିଂହ ଜାଣିଲେ ଯମପୁରେ ଯିବ ପୁଣ ।
ଦୈତ୍ୟ ବୋଇଲେରେ ତୁମ୍ଭ ପ୍ରଭୁ ଆଗେକହ
ଆମ୍ଭଙ୍କୁ ପଠାଇ ଅଛି ମୁରଦୈତ୍ୟ ରାୟ ।

କାକୋଳ ଚନ୍ଦ୍ରମାଳୀ ଯେ ଶରଜିତ ଘେନି
ଆସିଛନ୍ତି ଯୁଦ୍ଧପାଇଁ ଏହି ବୀର ତିନି ।
ତେର ପଦ୍ମ ସୈନ୍ୟ ସଙ୍ଗେ ଅଛନ୍ତି ଯେ ଆସି
ତୋଟାରେ କି ଅଛି ସବୁ ବଦରିକା ନାଶି ।
ଶୁଣି ରକ୍ଷାପାଳେ ଧାଇଁ ଗଲେ ଅନ୍ତରାଳେ
ନୃସିଂହ ଛାମୁରେ ଯାଇ କହିଲେ ତତ୍କାଳେ ।
ବୋଇଲେ ଶୁଣ କମଳାକାନ୍ତ ମହାପ୍ରଭୁ
ଭାଙ୍ଗିଲେ ଆନନ୍ଦବନ ପଶି ଦୈତ୍ୟେ ସବୁ ।
ବୋଇଲେ ତୁମ୍ଭ ପ୍ରଭୁଙ୍କୁ କହ ବେଗେ ଯାଇ
ସେ କଥା ଶୁଣ ଅଇଲୁ ଆମ୍ଭେ ଶୀଘ୍ର ଧାଇଁ ।
ଶୁଣିଣ ନୃସିଂହ ସ୍ୱାମୀ ଅଳ୍ପେ ଦେଲେ ହସି
ବୋଇଲେ କହରେ ଦୈତ୍ୟ କେତେ ଛନ୍ତି ଆସି ।
ତୋଟାରରକ୍ଷ ପାଳକେ ବୋଇଲେ ହେ ଶୁଣ
ତିନିଗୋଟି ସେନାପତି ଆସିଛନ୍ତି ଜାଣ ।
ଗୋଟିଏ କାକୋଳାସୁର ଏକ ଶରଜିତ
ଗୋଟାଏକ ଚନ୍ଦ୍ରମାଳୀ ଏହି ତିନି ଦୈତ୍ୟ ।
ତେରପଦ୍ମ ଯାଏ ଆସିଅଛନ୍ତି ସଇନି
ତୋଟା ଉଜାଡ଼ି ଅଛନ୍ତି ସେନାପତି ତିନି ।
ଦୈତ୍ୟଙ୍କ ତାରିଫ ଦେବ କହିଲେ ନ ସରେ
ପୃଥ୍ୱୀଖୋଳି ନେଲା ପ୍ରାୟ ଡରାନ୍ତି ଅସୁରେ ।
ସବେକି ତୋଟା ଆମ୍ଭର ଖୋଳି ନେବେ ବହି
ନ ପାରୁ ତାହାଙ୍କ ପୌଢ଼ି ଦେବ ଆମ୍ଭେ ସହି ।
ତାହା ଶୁଣି ମହାପ୍ରଭୁ ଅଳ୍ପ ଅଳ୍ପ ହସି
ସୁଜାଣ ମନ୍ତ୍ରୀକି ଆଜ୍ଞା ଦେଲେ ବ୍ରହ୍ମରାଶି ।
ବୋଇଲେ ସୈନ୍ୟ ଆମ୍ଭର ବେଗେ କର ସଜ
ଏ ରୂପେ କହି ଗରୁଡ଼ ଚଢ଼ି ଦେବରାଜ ।
ଶେଷଦେବଙ୍କୁ ସଙ୍ଗତେ ଘେନି ଚକ୍ରପାଣି
ବସିଲେ ଶ୍ରୀ ଦେବଯାନ ରଥେ ସପ୍ତଫେଣୀ ।
ପୁଣି ଚାହିଁଲେ ଗରୁଡ଼ ମୁଖ ଭାବଗ୍ରାହୀ
ବୋଇଲେ ଚାହିଁଲେ ତେରପଦ୍ମ ହୁଅ ତୁହି ।
ସେ ତିନି ସେନାକୁ ଆମ୍ଭମୂଳେ ଦିଅ ଛାଡ଼ି
ଆବର ତୁ ଦୈତ୍ୟଙ୍କର ପକା ବେକମୋଡ଼ି ।
ଶୁଣିଣ ବଢ଼ିଲା ଖଗପତି ଶତେଗୁଣ
ତାହା ଦେଖିଣ ସନ୍ତୋଷ ହେଲେ ନାରାୟଣ ।
ପଞ୍ଚାଶ ଯୋଜନ ଯାଏ ବିସ୍ତାରିଲା ଡେଣା
ପଞ୍ଚାଶଗୁଣ ଯେ ଲମ୍ବ ଥଣ୍ଟ ଲମ୍ବ ଅକଳଣା ।
ପନ୍ଦର ସହସ୍ର ଗୁଣ ପିଠି ବିସ୍ତାରିଲା
ସପତ ଯୋଜନ ମୋଟ କଟି ବେଢ଼ କଲା ।
ତିନିଶତ ଯୋଜନ ସେ ବିସ୍ତାରିଲା ପାଦ
ଦେହ ଓସାର କରି କେ ନପାରେ ତା ହୃଦ ।

ଯୋଜନ ଯୋଜନକେ ବିସ୍ତାରିଲା ନଖ
କ୍ଷଣକେ ସେ ପାରହୋଇ ସସ୍ରକୋଟି ମୁଖ ।
ନୃସିଂହ ପ୍ରଭୁଙ୍କ ଆଜ୍ଞାଫିଟେ ଯେତେ ମୁଖୁ
ଆସଇ ଯେତେତେ କାର୍ଯ୍ୟ କରି ଦେଖୁ ଦେଖୁ ।
ଏବେ ସେ ବୋଇଲେ ତେରପଦ୍ମ ରୂପଧର
ସେହି ରୂପ ଧଇଲେକ ବିନତା କୁମର ।
ନିଜମୂର୍ତ୍ତି ଗୋଟିକରେ ବିଷ୍ଣୁଛନ୍ତି ବହି
ଶୁଣ ଆହେ ନାରଦ ଯେ ବିଷ୍ଣୁଗ୍ରନ୍ଥ କହି ।
ଏଥୁଅନନ୍ତରେ ମନ୍ତ୍ରୀ ସୈନ୍ୟଦଳ ସାଜି
ବାହାରିଲେ ସିଂହଦ୍ୱାରେ ଲଗ୍ନବେଳା ବୁଝି ।
ଚାଲନ୍ତି ନୃସିଂହ ଆଗେ ପାରିଷଦ ଗଣେ
ବିଷ୍ଣୁର ପ୍ରଭା ପ୍ରକାଶି ଯାନ୍ତି ଜଣେ ଜଣେ ।
ମହାବଳ ସତ୍ୟାନନ୍ଦ ସୁବନ ସୁନନ୍ଦ
ଆନନ୍ଦ ଗୋବିନ୍ଦ ଆଦିକନ୍ଦ ଉପନନ୍ଦ ।
ଆନନ୍ଦ ବିନୋଦ ମହାନନ୍ଦ ପ୍ରେମାନନ୍ଦ
କୁନ୍ଦ ଆବର ଯେ ମହାକୁନ୍ଦ ସଦାନନ୍ଦ ।
ସୁମନ ବ୍ରହ୍ମଣ୍ୟ ବିଶ୍ୱକ୍ସେନ ବିଦ୍ୱଜନ
ଦୃମନ ବିଶ୍ୱକେସନ ଜୀବ ଜନାର୍ଦ୍ଦନ ।
ସୁଭଦ୍ରାବୀରଭଦ୍ରା ଯେ ମହାଭଦ୍ରାଗଣ
ଅଜୟନ୍ତ ବିଜୟନ୍ତ ଜୟନ୍ତ ବରୁଣ ।
ହରିଦାସ ରାମଦାସ କୃଷ୍ଣଦାସ କହି
ଅଟନ୍ତି ନୃସିଂହ ସଖାଗଣ ଜାଣ ଏହି ।
ଶ୍ରୀହରି ସେବାରେ ସଦା ଥାଆନ୍ତି ଏମାନେ
ଅବତାର ଗୋଟିକରେ ନାମ ଭିନ୍ନେ ଭିନ୍ନେ ।
ନୃସିଂହ ଗହଣେ ଚାଲୁଛନ୍ତି ସର୍ବେ ମିଳି
ଶ୍ରୀନୃସିଂହ ଗୁଣ ଗାଇ ଯାନ୍ତି ଢଳି ଢଳି ।
ସ୍ୱର୍ଣ୍ଣକରି ବିଭୂଷିତ ପଗଡ଼ି ଶିରରେ
ନାନାରଙ୍ଗ ଝୀନବାସ ଶୋଭଇ ଶରୀରେ ।
ହରିମନ୍ଦିର ତିଳକ ଭାଲପଟେ କାଟି
ଦିଶଇ ନାସାରୁ କେଶଯାଏ ପ୍ରଭାଗୋଟି ।
ବସନ୍ତ କୁଣ୍ଡଳ କଳା ଧଳା ପୀତବର୍ଣ୍ଣ
ଏ ରୂପେ ତିଳକ ଘେନିଛନ୍ତି ବିଷ୍ଣୁଗଣ ।
କଣ୍ଠରେ ରୁଦ୍ରାକ୍ଷମାଳୀ କର୍ଣ୍ଣେ ବାରବଲ୍ଲୀ
ହୃଦରେ ଯେ ହୀରାପଦ୍ମ କରେ ପାଟଫୁଲି ।
କଟିରେ ଯେ କଷାବସ୍ତ୍ର ତ୍ରିକଚ୍ଛ କାଛେଣି
ଆବର ଯେ ସୁନାସୂତା ଶିକୁଳି ଛନ୍ଦଣି ।
ସମସ୍ତଙ୍କ କରେ ଶଙ୍ଖଚକ୍ର ଗଦା ଶୋଭା
ବଜାନ୍ତି ଝଞ୍ଜାଳ ବେଣୁ ବୀଣା କେହୁ ଅବା ।
ସବୁରି କରେ ଅଛଇ ପର୍ଶୁପାଶ ଭାଲ
ମୁଷଳ ଗଦା ଭୁଷଣ୍ଡୀ ଶକ୍ତି କାତି ଛେଲ ।

ଚାମର ଛତ୍ରି ତାରାସ ଦଣ୍ଡ ଦେଲା ଟେକି
ସେବାରେ ଲାଗିଅଛନ୍ତି ହରିନାମ ଡାକି ।
ହରିଗୁଣ ମହିମା ଏ ରୂପ ଅଗୋଚର
ଆଗରେ ସ୍ତୁତି କରନ୍ତି ଭାଟ ପଏକାର ।
ଏଥିଉତ୍ତାରୁ ଯେ ଶୁଣ ନାରଦ ମହର୍ଷି
ପ୍ରଭୁଙ୍କୁ ଜଣାଇଲେ ସୁଜାଣ ମନ୍ତ୍ରୀ ଆସି ।
ବୋଇଲେକ ସାବଧାନେ ଶୁଣ ମହାପ୍ରଭୁ
ମିଳିଲେ ପଞ୍ଚାଶ ଖର୍ବ ସୈନ୍ୟ ଆସି ସବୁ ।
ଆଜ୍ଞାକଲେ ଆଉ ସୈନ୍ୟ ମିଳିବେକ ଆସି
ଶୁଣିଣ ନୃସିଂହ ପ୍ରଭୁ ଅଳ୍ପ ଅଳ୍ପ ହସି ।
ବୋଇଲେକ ତିନିସେନା ଆସିଛନ୍ତି ଯେବେ
ତାହାଙ୍କୁତ କ୍ଷଣମାତ୍ରେ ମାରିଦେବୁ ଆମ୍ଭେ ।
ପ୍ରଥମେ ସମ୍ଭ୍ରମେ ଯିବା ତୋଟାକୁ ଯେ ବୋଲି
ତେଣୁ ଏ ଦେଖଣାହାରୀ ଥାଟ ସୈନ୍ୟକଲି ।
ଚାଲନ୍ତି କର୍ଣ୍ଣାଟେଶ୍ୱର ରାଜା ଆଗହୋଇ
ଦେଖା ଦିଅନ୍ତୁ ଯେ ତୋଟା ବାହାରେ ଯେ ଥାଇ ।
ଦେଖ ମନ୍ତ୍ରୀ ଗରୁଡ଼ରେ କେତେ ଗୋଟା ମୋର
ଦେଲାଣି ସେ ତେରପଦ୍ମ ଯାଏ ଅବତାର ।
ଏ ରୂପେ ବୋଲି ଶ୍ରୀଭୁଜେ ପ୍ରଭୁ ଆଉଁଷିଲେ
ତେରପଦ୍ମ ନୃସିଂହ ଅଙ୍ଗୁ ଜାତ କଲେ ।
ତେରପଦ୍ମ ଗରୁଡ଼ରେ କଲେ ଯାଇ ବିଜେ
ନିଜ ଗରୁଡ଼ରେ ବସିଛନ୍ତି ଦେବରାଜେ ।
ସବୁରି ହସ୍ତରେ ଶଙ୍ଖଚକ୍ର ଗଦାପଦ୍ମ
ମିଳିଲେ ସେ ବନେ ଯାଇ ଶ୍ରୀନୃସିଂହ ବ୍ରହ୍ମ ।
ଆନନ୍ଦବନର ମଧ୍ୟେ ଅଛି ଯଜ୍ଞବେଦୀ
ତହିଁ ବିଜେକଲେ ନରସିଂହ ଦୟାନିଧି ।
ଗରୁଡ଼ ଉତ୍ତର ଭାଗେ ଯେ ଆନନ୍ଦବନ
ସେ ବନେ ପଶିଦେଖିଲେ ବହୁବଛା ସୈନ୍ୟ
ତେରପଦ୍ମ ନୃସିଂହ ଯେ ଅଙ୍ଗୁଜାତ କଲେ
କହିବା ତାହାଙ୍କ ନାମମାନ ଶୁଣ ଭଲେ ।
ଅଲୌକିକ ଅଟେ ଏହି ପୁରାଣ ପ୍ରସଙ୍ଗ
ପ୍ରଥମ ନାମ କହିବା ଶ୍ରୀବତ୍ସ ନୃସିଂହ ।
କୂର୍ମ ବରାହ ବାମନ ଭାର୍ଗବ ନୃସିଂହ
ଶ୍ରୀରାମ କୃଷ୍ଣ ନୃସିଂହ ବଉଦ୍ଧ ନୃସିଂହ ।
କଲକୀ ନୃସିଂହ ପୁଣି ଗୋବିନ୍ଦ ନୃସିଂହ
ଏ ଛପନକୋଟି ଜୀବ ପ୍ରତ୍ୟକ୍ଷେ ନୃସିଂହ ।
ଘର୍ଘର ନୃସିଂହ ଭଦ୍ର ଚଞ୍ଚଳ ନୃସିଂହ
ଭୃଗୁ ନୃସିଂହ ଭୈରବ ଝର୍ଝର ନୃସିଂହ ।
ଝଞ୍ଜମଠାକୁର ଆଉ ନିର୍ଗୁଣ ନୃସିଂହ
ମୁଖପଦ୍ମ ଜଗନ୍ମୟ ତ୍ରୈଲୋକ୍ୟ ନୃସିଂହ ।

ଅନାଦି ନୃସିଂହ ଦୟାଧଇର୍ଯ୍ୟ ନୃସିଂହ
ନମଇଁ କରୁଣା ସିନ୍ଧୁ ଅଭୟ ନୃସିଂହ ।
ମଧୁସୂଦନ ନୃସିଂହ ଶ୍ରୀମନ୍ତ ନୃସିଂହ
ଗରୁଡ଼ ଶ୍ରୀଯୋଗାରୁଢ଼ ଲଳିତ ନୃସିଂହ ।
ମହାଶାନ୍ତ ସଙ୍କର୍ଷଣ ବୀର ନରସିଂହ
ଶରଣ ପଞ୍ଜର ବ୍ରହ୍ମ ଓଁ କାର ନୃସିଂହ ।
ହକାର ନୃସିଂହ ରୂପୀ ଶେଖର ନୃସିଂହ
ଭୂଚରରୂପେ ନୃସିଂହ ଗୋପାଳ ନୃସିଂହ ।
ଭୂପାଳ ଶ୍ରୀଧରେ ପୁଣି ମାଧବ ନୃସିଂହ
ଗନ୍ଧର୍ବ ନରସିଂହ ଯେ ଶ୍ରୀହରି ନୃସିଂହ ।
ମୁରାରୀ ନୃସିଂହ ରୂପ ଗୋବତ୍ସ ନୃସିଂହ
ଦାମୋଦର ନରସିଂହ ଶ୍ରୀବତ୍ସ ନୃସିଂହ ।
ଇପଇନ୍ଦ୍ର ଦେବଇନ୍ଦ୍ର ମୃଗେନ୍ଦ୍ର ନୃସିଂହ
ହଇମ ହାହା ନୃସିଂହ ଦେହେ ନରସିଂହ ।
ଧରଧର ନରସିଂହ ମାର ମାର ନରସିଂହ
ଶ୍ରୀମାତା ନୃସିଂହ ଆଉ ଶ୍ରୀପିତା ନୃସିଂହ ।
ଯତୋ ଅନ୍ତର୍ଯ୍ୟାମୀ ପ୍ରଭୁ ତତୋ ନରସିଂହ
ଏବିଧି ଜନ୍ମିଲେ ବିଷ୍ଣୁ ଅଙ୍ଗରୁ ନୃସିଂହ ।
କେତେନାମରେ ନୃସିଂହ ଆଖ୍ୟାରହିନାହିଁ
ସବୁ ନାମ ପରେ ବୃଝ ନୃସିଂହ ଚିତ୍ତୋଇ ।
ତେରପଦ୍ମ ଗରୁଡ଼ ପୃଷ୍ଠେ ବିଜେ କଲେ
ସମସ୍ତଙ୍କ କରେ ଶଙ୍ଖ ଚକ୍ର ପ୍ରକାଶିଲେ ।
ଭକ୍ତକୁ ଦିଶନ୍ତି ପ୍ରଭୁ ସବୁ ହରି ମୟ
ଦୁଷ୍ଟଗଣଙ୍କୁ ଦିଶନ୍ତି ପ୍ରଳୟ ପରାୟ ।
ବୀରାଧିବୀରଙ୍କ ପ୍ରାୟ ସର୍ବେ ସଜହୋଇ
ଶ୍ରୀହରି ମନ୍ଦିର ଚିତା ଶଙ୍ଖଚକ୍ର ବାହି ।
ଯେଉଁ ନୃସିଂହ ରୂପ ତ୍ରଇଲୋକ୍ୟଭେ ସମ୍ଭବେ
ସହସ୍ର କାଙ୍କୋଳାପ୍ରାୟେ ଦୈତ୍ୟ କି କରିବେ ।
ଯାହାକୁ ଯେତେ ବେଳେଟି ଥାଏ ଯେଉଁ ଯୋଗ
ବିଧାତା ଯେ ତାହା ଆଣିକରେ ବଇଭୋଗ ।
କାଙ୍କୋଳା ଅସୁର ଶରଜିତ ଚନ୍ଦ୍ରମାଳୀ
ନୃସିଂହଙ୍କ ସୈନ୍ୟ ଦେଖି ମନେ ମନେ ଭାଳି ।
ବୋଲନ୍ତି ହୋ ଦେଖ ଦେଖ ବ୍ରାହ୍ମଣଙ୍କ ଛବି
ସମ୍ପଦଭୋଳେ ଚାଲନ୍ତି ହୋଇକେଡ଼େ ଗର୍ବୀ ।
ଏ ରୂପେ ଯେ ଆମ୍ଭେ ଅଛୁ ବୋଲି ବଡ଼ ପଣେ
ଆସିଛ ପକ୍ଷୀ ଲୋଚାଏ ଚଢ଼ି ଜଣେ ଜଣେ ।
ଏଣୁ ଏହି ବିପ୍ରକୁଳ ସର୍ପଠାରୁ ବଳେ
ଯେତେ କ୍ଷୀରଦେଲେ ତାହା ହୁଏ ବିଷ କାଳେ ।
ଏ ଘେନି ତ ଗଜଦ୍ୱିଜ ଶ୍ୱାନ ବୁଦ୍ଧି ଏକ
ପରକୁ ହିଂସା କରିଣ ମରନ୍ତି ତ୍ରିଲୋକ ।

କୁକ୍କୁଟ ଶାଗୁଣା କାକ ତିନିକୁଳ ଜାତି
ପରକୁ ପୋଷୁ ଥାଆନ୍ତି ଏହୁ ଦିନରାତି ।
ସର୍ପକୁ ପୟ ଦେଲେ ନ ହୁଅଇ କି ବିଷ
ବିପ୍ରକୁ ସେହି ରୂପରେ ନ ଯିବ ବିଶ୍ୱାସ ।
ରାଜାପୁତ୍ରଙ୍କୁ ଆଖଡ଼ାଘରେ ମାରିଦେଲେ
ପଳାଇ ଆସି ବାନ୍ଧିଲେ ଖଡ଼ଦେଶ ଭଲେ ।
ଯାହାର ଦ୍ରବ୍ୟ ଖାଆନ୍ତି ତାକୁ ଶୂଳହୋନ୍ତି
ପାପକୁ ନ ଡରି ମୂଢ଼େ ପ୍ରାଣୀଙ୍କୁ ଶାପନ୍ତି ।
କାଙ୍କୋଳାବୋଲଇ ଚୋଟା ନଗରଭାଙ୍ଗିବି
ନୃସିଂହ ବେନି ଭାଇଙ୍କି ଆଜି ମାରି ଦେବି ।
ଶବରର ଫାନ୍ଦେ ପଡ଼ି ମୃଗ ଯିବ କାହିଁ
ଧୀବର ଜାଲେକ ପଡ଼ି ମୀନ ଜୀବ ପାଇ ।
ବ୍ୟାଧର ଅଠା ଲାଗିଣ ପକ୍ଷୀ ନ ମରେ କି
ସର୍ପମୁଖେ ପଡ଼ି ଭେକ କେବେ ବଞ୍ଚଇକି ।
ବ୍ୟାଘ୍ରର ମୁଖରୁ ବର୍ତ୍ତି ପାରଇ କି ମେଷ
ଶ୍ୟାମଳ କବଳୁ ବକ ପ୍ରାଣର କି ଆଶ ।
ରବି ଉଦୟେ କି କେବେ ଅନ୍ଧକାର ରହେ
ତେସନ ହୋଇଲା ମୋର ଆଗେ ଦ୍ୱିଜପୋଏ ।
ଯେଉଁପରି ରାହୁଗ୍ରହ ଚନ୍ଦ୍ରଙ୍କୁ ଗ୍ରାସଇ
ନୃସିଂହ ଗ୍ରାସିବା ପାଇଁ ତେହ୍ନେ ଆସି ମୁହିଁ ।
ପୂର୍ବେ ମୁହିଁ ବାସବଙ୍କୁ ରଖିଥିଲି ବାନ୍ଧି
ସହସ୍ର ବରଷଯାଏ ଥିଲା ବେଢ଼ି ପିନ୍ଧି ।
ସେ କଥା ଲକ୍ଷ୍ମୀକାନ୍ତ ନ ପାରେ ମନେ ଭାବି
ପକ୍ଷୀ ଲୋଚାଏ ବେଢ଼ିଣ ଆସେ ମୋରେ ଯୁଝି ।
ଆହ୍ମେ ଏତେଲୋକ ବୋଲି କହେ ଗର୍ବ ବହି
ସମ୍ପତ୍ତି ଦେଖାଇ ଆସେ କ୍ଷତ୍ରୀକୁଳ ନୋହି ।
ବ୍ରାହ୍ମଣ କୁଳ ଏ କୃଷ୍ଣ ବଲ୍ଲଭର ପୋଏ
ଚହଟି ହେଉଅଛନ୍ତି ସଫେରୀଙ୍କ ପ୍ରାୟେ ।
ମୋ ଆଗେ ପଡ଼ିବେ ନିଶ୍ଚେଯିବେ ଯମପୁର
ଶୁଣିଲେ କେଡ଼େ ସନ୍ତୋଷ ହେବ ମୁରାସୁର ।
ଏ ରୂପେ କାଙ୍କୋଳା ମନେ ପାଞ୍ଚେ ପାପ ବୁଦ୍ଧି
ଜାଣିଲେ ଅସୁର ମନକଥା ଦୟାନିଧି ।
ବୋଇଲେ ଘୋଟିଲା ପାପିଷ୍ଟକୁ ସନ୍ନିପାତ
ଏହାକୁ ଯେ ନେବା ପାଇଁ ବସିଛି କୃତାନ୍ତ ।
ପଦାର୍ଥ ମଦେ ବୟସ ମଦେ ଏ ନ ଜାଣି
ଏ ହେତୁ ଲୋକ ନ କହେ କେଭେ ଭଲ ବାଣୀ ।
ପରକୁ ପ୍ରମାଦ ଏହି ଦୁହେଁ ଚିନ୍ତୁ ଥାନ୍ତି
ବସିଅଛି ମୃତପିଣ୍ଡ ବୋଲି ନ ଜାଣନ୍ତି ।
ମାରି ଯାଉଥିବା ବୋଲି ପାଞ୍ଚୁ ଥାନ୍ତି ହୃଦେ
ଏହିଟି ପଡ଼ନ୍ତି ଅପଘାତେ ଅପ୍ରମାଦେ ।
ବିଜ୍ଞଜନମାନେ ସିନା ପରହିତେ ଥାନ୍ତି
ମଧୁର ଭାଷୀ ହୋଇଣ ବାକ୍ୟେ ପ୍ରକାଶନ୍ତି ।
ପରର ପ୍ରମାଦ ଦେଖି ନ ପାରନ୍ତି ସହି
ନ ଭାଳ ବୋଲି ଭରସା ଦେଉଥାନ୍ତି ତହିଁ ।
ଏକ ଯୁବତୀରେ କାଟୁଥାନ୍ତି ଦିନକାଳ
ଏକ ବୁଚନକେ କହି ହୁଅନ୍ତି ସେ ମେଳ ।
ମାତା ପିତା ପାଦେ ନିତ୍ୟେ କରନ୍ତି ସେ ସେବା
ଦେବତା ବିପ୍ରରେ ଭକ୍ତିଥାଏ ରାତ୍ରଦିବା ।
ବିଷ୍ଣୁ ପୂଜାବିଧି କରୁଥାନ୍ତି ବାରମାସି
ଦୁର୍ଜନ ଲୋକଙ୍କ ତୁଲେ ବଚନ ନ ଭାଷି ।
ରହନ୍ତି ଦୁଷ୍ଟଲୋକଙ୍କୁ ଦେଖି ଅପସରି
ପରହିତେ ଥାନ୍ତି ଆତ୍ମାଠାରେ ଦୟା କରି ।
ପରାର୍ଥେ ଧର୍ମ କରିଣ ସଦାଦିନ ଥାନ୍ତି
ସଂସାରେ ହୁଡ଼ି କାହାକୁ କିଛି ନ କହନ୍ତି ।
ଏମନ୍ତ ଲୋକଙ୍କ ହୃଦେ ବିଜେ ନରହରି
ନିର୍ମଳ ଚିତ୍ତେ ତାହାଙ୍କୁ ଦୟା ଥାନ୍ତି କରି ।
ତଥାପି କ୍ଷଣ ଯେବେ ଧର୍ମେ ଥାଇ ପଡ଼େ
ଅଳ୍ପକେ ଖଣ୍ଡନ୍ତି ତାଙ୍କ କ୍ଲେଶ ଯୋଗାରୁଢ଼େ ।
ଏ ରୂପେ ପାଞ୍ଚନ୍ତେ ଅନ୍ତର୍ଯ୍ୟାମୀ ଅନ୍ତରଙ୍ଗେ
କାଙ୍କୋଳାସୁର ମିଳିଲା ଆସି ପ୍ରଭୁଆଗେ ।
ବୋଇଲେ ଶୁଣହୋ କୃଷ୍ଣବଲ୍ଲଭର ପୋଏ
ସର୍ବଦା ଏ ରୂପ କର୍ମ ବ୍ରାହ୍ମଣର ନୋହେ ।
ଦ୍ୱାବିଂଶତି ଗୁଣ ଥିଲେ ବିପ୍ରେ ପୂଜାଜାଣି
ଦେଖାଅ ହଟ ଚମଟ ବିଦ୍ୟାକେତେ ପୁଣି ।
ମୁରଦୈତ୍ୟର ନଗ୍ରକୁ ଗଲ ବିଦ୍ୟାକହି
ତର୍କରେ ନ କହି ତାଙ୍କୁ ଅଇଲ ପଳାଇ ।
ତୁମ୍ଭଙ୍କୁ ନ ଦେଖି ଆମ୍ଭ ମୁରାସୁର ରାଜା
ହେଳାକଟି ରହିଲା ସେ ନ କରିଣ ପୂଜା ।
ଏ ରୂପେ ବସିଛି ମୁରାସୁର ହୋଇ ମାନୀ
ଆସିଅଛି ତୁମ୍ଭଙ୍କୁ ଯେ ଯିବି ମୁହିଁ ଘେନି ।
ସଜହୋଇ ଚାଲ ଏବେ ବେଗ ହୋଇ ଆସ
ନ ଗଲେ କରିବ ଆମ୍ଭ ରାଜା ମହାରୋଷ ।
ଏ ରୂପେ କାଙ୍କୋଳାସୁର କହଇ କପଟେ
ବୋଲେ ଅନ୍ତର୍ଯ୍ୟାମୀ ଏହି ଭଲା ଆସି ରଟେ ।
ନୃସିଂହ ବୋଇଲେ ତୁହି ଶୁଣରେ କାଙ୍କୋଳା
ସେ କଥା ଯେ ଦେଖି ଶୁଣି ନାହିଁ କର୍ଣ୍ଣଡୋଳା ।
ବିଦ୍ୟାଗୁରୁ କରି ମୋତେ ରଖି ଘରେ ନେଇ
ମାରବୋଲି ତନୟଙ୍କୁ କହିଲା ବତାଇ ।
ନିଶାର୍ଦ୍ଧେ ଆସି ରହିଲେ ମୋର ଘରେ ବେଢ଼ି
ଭାଙ୍ଗି ଗୁଣ୍ଡା କରିଦେଲେ ଛାଡ଼ି ଘୋରରଡ଼ି ।

ଦଇବେ ସେ ଦିନ ଆମ୍ଭେ ପ୍ରକୃତି ଯେ କରି
ନଦୀକି ଯାଇଣ ଥିଲୁ କି ରୂପେ ବାହାରି ।
ଶତ୍ରୁ ନାଶିଲୁ ବୋଲିଣ ମନେ ଦୈତ୍ୟପାଞ୍ଚ
ଜୟ ଶବଦ କରିଣ ତହୁଁ ଗଲେ ଘୁଞ୍ଚ ।
ଆଦିତ୍ୟ ଉଦେ ହୁଅନ୍ତେ ଆସିଲେ ସେ ଦେଖି
ପଲ୍ୟଙ୍କରେ ଶୋଇଥିଲୁ ଆମ୍ଭେ ବୁଜି ଆଖି ।
ଦେଖିଣ ଆମ୍ଭଙ୍କୁ ସେହି ହେଲେ ଚମତ୍କାର
ବଞ୍ଚାଇ କହିଲେ କଥାମାନ ଦୁରାଚାର ।
ବୋଇଲେ ଏ ରାତ୍ରେ ବିଦ୍ୟା ପଚାରି ଆସିଲୁ
ତୁମ୍ଭର ଗୃହେ ଭୁଜଙ୍ଗ ପଶିଲା ଦେଖିଲୁ ।
ଆମ୍ଭ ଗୁରୁଙ୍କୁ ଗିଳିଲା ନିଶ୍ଚେ ସର୍ପ ବୋଲୁଁ
ତାହାକୁ ଖୋଜିଣ ଘର ଭଙ୍ଗି ପକାଇଲୁ ।
ଏ ରୂପେ ବଞ୍ଚାଇ କହି ଚଳନ୍ତେ ଦାନବେ
ତାହା ନ ଘେନିଲୁ ଆମ୍ଭେ ସମଦଶା ଭାବେ ।
ଲେଉଟି ସେ ଆରଦିନ ଅର୍ଦ୍ଧରାତ୍ରେ ଆସି
ଆଖଡାଘର ପୋଡ଼ିଲେ ଦେଇ ଅଗ୍ନିରାଶି ।
ଉବୁରି ଆସିଲୁ ଆମ୍ଭେ ଧର୍ମେ ତହୁଁ ଚଳି
ଜାଣୁ ଜାଣୁ କହୁ କି ତୋ ପରା ଦୂତମିଳି ।
କାଙ୍କୋଳା ବୋଲେ ଦୂତର ପ୍ରାୟେ ଦିଶଇକି
ମୋର ନାମେ ସ୍ୱର୍ଗପୁର ପଡ଼ଇ ଚମକି ।
ବାସବଙ୍କୁ ବନ୍ଦୀକରି ରଖିଥିଲି ରଣେ
ମୁରଦୈତ୍ୟର ସେନା ମୁଁ ଅଟେ ବଡ଼ ଜଣେ ।
ଦେଖିଛ ଦଇତ କେତେ ଆଣିଛି ମୁଁ ଘେନି
ଲେଖିଲେତ ତେରପଦ୍ମ ହୋଇବେ ସଇନି ।
ତୁମ୍ଭ ବେନି ଭାଇଙ୍କି ଯେ ପୁଣି ନେବାପାଇଁ
ଦେଇଛି ରାଜନ ମୋତେ ଶ୍ରଦ୍ଧାରେ ପଠାଇ ।
ତୁମ୍ଭଙ୍କୁ ନ ଘେନି ସଙ୍ଗେ କେହ୍ନେ ଯିବୁ ବୃଥା
ଗଲେ ବୁଝିବା ପଛକେ ସେଠାର ବ୍ୟବସ୍ଥା ।
ନୃସିଂହ ବୋଇଲେ ପୁଣି ଶୁଣରେ ଅସୁର
କେବେ ହେଁ ଆମ୍ଭେ ଏଠାରୁ ନ ଯିବୁ ଏଥର ।
କାଙ୍କୋଳା କହିଲା ତାହାଶୁଣି ଉଚ୍ଚୈବାଣୀ
ବୋଇଲା ଧରିନେଲେ ତୁ କରିବୁ କି ପୁଣି ।
ନୃସିଂହ ବୋଇଲେ ମୋତେ ଧରିନେବା ପାଇଁ
ଏହି ତିନିପୁର ମଧ୍ୟେ କେହି ଦିଶୁନାହିଁ ।
କାଙ୍କୋଳା ବୋଇଲା ମୁହିଁ ଦେବି ଏକାଧରି
ମୋର ନାମେ ଚମକି ଯେ ପଡ଼େ ତିନିପୁରୀ ।
ଇନ୍ଦ୍ରଙ୍କୁ ଶାଙ୍କୋଳି ଦେଲି ସହସ୍ର ବରଷ
ତୁମ୍ଭେ କୃଷ୍ଣବଲ୍ଲଭର ଅଟ ବେନି ଶିଷ୍ୟ ।
ନୃସିଂହ ବୋଇଲେ କହୁଅଛ ନୃତ୍ୟକରି
ତୋହପରି ଚାରିଲକ୍ଷ ନ ପାରବେ ଧରି ।
ସାମାନ୍ୟ ପ୍ରାୟ କି ମୋତେ ମଣିଲୁ ଏକାନ୍ତ
ଅଶେଷ ବ୍ରହ୍ମାଣ୍ଡେ ମୁହିଁ ଅଟେ ଲକ୍ଷ୍ମୀକାନ୍ତ ।
କ୍ଷୀରସିନ୍ଧୁ ବୈକୁଣ୍ଠେ ମୁଁ ଭଗବାନ ହେଲି
ଦୁଷ୍ଟ ମାରିବାକୁ ମୁହିଁ ଉପୂନ୍ନ ହୋଇଲି ।
ମୁହିଁ ସେହି ମତ୍ସ୍ୟରୂପ ମୁହିଁ କୂର୍ମ ଜାଣ
ମୁହିଁ ସେ ବରାହ ମୂର୍ତ୍ତି ନରସିଂହ ପୁଣ ।
ମୁହିଁଟି ବାମନମୂର୍ତ୍ତି ମୁହିଁ ପର୍ଶୁରାମ
ମୁହିଁ ଏକା ରଘୁନାଥ ମୁହିଁ କୃଷ୍ଣ ବ୍ରହ୍ମ ।
ଏକା ବଉଦ୍ଧରୂପରେ ମୁଁ ହୁଏ ପ୍ରକାଶ
କଲକୀରୂପ ଧରିଣ କରେ ଦୁଷ୍ଟ ନାଶ ।
ମୁହିଁ ଆସିଣ ଏ କୃଷ୍ଣବଲ୍ଲଭର ଘରେ
ନୃସିଂହ ନାମ ଧରିଣ ଜାତ ବଦ୍ରିକାରେ ।
ମୁହିଁ ଶାକଲ୍ୟ ଦ୍ୱୀପରେ ଥିଲି ଏକା ରହି
ପଲ୍ୟଙ୍କରେ ଥିଲି ଶୋଇ ବାଳରୂପ ହୋଇ ।
ତୁମ୍ଭେ ପରା ମୁର ଦୈତ୍ୟ ସଙ୍ଗେ ଯାଇଥିଲ
ସମସ୍ତ ଅସୁର ଯାଇ ଖଟକୁ ଟେକିଲ ।
ସେ କଥା ଏବେ ପାଶୋରି ପକାଇଲ ଦୈତ୍ୟ
ମାରିବାପାଇଁ ଆସିଛ ଏବେ ମୋର ହସ୍ତ ।
ଆବର କଥାଏ ମୋର ଶୁଣରେ କାଙ୍କୋଳା
ମାଇଲୁ ସତରଲକ୍ଷ ମୁରାସୁର ବଳା ।
ନବଲକ୍ଷ ନାତିକି ତା ଧରି ଏକାବେଳେ
ଗରୁଡ଼ ହାତେ ମରାଇ ଫିଙ୍ଗିଲୁ ସାଗରେ ।
ସେଠାରୁ ଚଳିଆସିଲୁ ଆମ୍ଭେ ବଦରିକା
ଦେଖ ଏତେ ହରିଗୁଣ ଅଟୁ ଆମ୍ଭେ ଏକା ।
ଶଙ୍ଖ ଚକ୍ର ଗଦା ପଦ୍ମ ସମସ୍ତଙ୍କ କରେ
ଆଜ ତୋତେ ମାରିପେଷି ଦେବୁ ଯମପୁରେ ।
ଶୁଣିଣ କାଙ୍କୋଳା କୋପେ ଉଠିଲା ଗର୍ଜିଣ
ସୈନ୍ୟଙ୍କୁ ବୋଇଲା ମାର ଏ ନୃସିଂହଗଣ ।
ଶୁଣି ଅସୁରେ ଧାଇଁଲେ ମନେ ଗର୍ବ ବହି
ବେଢ଼ିଲେ ଗରୁଡ଼କୁ କାଙ୍କୋଳା କୋପ ବହିଁ ।
ମଧୁର ଭାଣ୍ଡକୁ ଯେହ୍ନେ ମାଛି ବେଢ଼ିଯାନ୍ତି
ସେହିରୂପେ ଚାରିଆଡ଼େ ଅସୁରେ ବେଢ଼ନ୍ତି ।
ଦୈତ୍ୟଙ୍କୁ ଦେଖି ଧଇଲେ ପ୍ରଭୁ ଧନୁଶର
ଶାରଙ୍ଗ କୌମୋଦୀ ଗଦା ପରଶୁ କୁଠାର ।
ଶଙ୍ଖଚକ୍ର ଗଦାପଦ୍ମ ଚାରିହସ୍ତେ ଧରି
ଦୈତ୍ୟଙ୍କ ଆଗରେ ଦେଖାଇଲେ ବିଜେକରି ।
ଧଇଲେକ ଶେଷଦେବ ବାବଲ ଯେ ଶର
ସପ୍ତଫଣା କାଢ଼ି କରୁଛନ୍ତି ଫୁତ୍କାର ।
ନୃସିଂହ ବେନିଭାଇଙ୍କି କାଙ୍କୋଳାଯେ ଦେଖି
ସୈନ୍ୟମାନଙ୍କୁ ବୋଇଲା ବିନ୍ଧଶର ଯୋଖି ।

ଶୁଣିଣ ଦୈତ୍ୟ ସକଳ କଲେ ଶର ବୃଷ୍ଟି
ଶକତି ଗଦା ପିଟିଲେ ଆଣି କୋଟି କୋଟି ।
ଖଡ୍ଗ ମୁଦଗର କାତି ଯଷ୍ଟି ଏକମୁନା
ଛକଡ଼ା କୁନ୍ତ ଭୁଷଣ୍ଡ ଖୁର୍ପି ଫରକିନା ।
ଶାବେଳୀ ପରିଘ ପର୍ଶୁ ପାର୍ଶ ପରି ଛେଲି
ଦୁଆଲି ଗୁରୁଜ କୁନ୍ତମୁନ ଚକ୍ରଭାଲି ।
ବିନ୍ଧିଲେ ଦୈତ୍ୟ କକଡାମାସ ବୃଷ୍ଟିପ୍ରାୟେ
ପଡ଼ଇ ଶର ନୃସିଂହଗଣଙ୍କର କାୟେ ।
ଗରୁଡ଼ ବିଷ୍ଣୁ ଅଛନ୍ତି ଯହିଁ ବିଜେକରି
ଅସୁର ତହିଁ କରିବେ କିସ ଶର ମାରି ।
ଶ୍ରୀନୃସିଂହ ଶେଷଦେବ ଅଛନ୍ତି ଯେ ବହି
ଅସୁର ଲକ୍ଷେ ଥାଇଣ କି କରିବେ ତହିଁ ।
ଅସୁର ଯୁଦ୍ଧ କରନ୍ତେ ବିନ୍ଧି ତୀକ୍ଷ୍ଣ ବାଣ
କହିଲେ ନୃସିଂହଗଣେ ଠାରି ନାରାୟଣ ।
ବୋଇଲେ ପଛୁ ଦଇତ୍ୟଗଣ ମାରି ଆସ
ଚକ୍ଷୁ ପିଛଡ଼ାକେ ଯାଅ ହୋଇଣ ଅଦୃଶ୍ୟ ।
ଶୁଣିଣ ଧାଇଁଲେ ହରିଗଣ ଅସ୍ତ୍ରଧରି
ବକ୍ର ପଡ଼ିଲା ପରାୟ ଆସିଲେ ସେ ମାଡ଼ି ।
ଏହି ସମୟକୁ ଏକା ଚନ୍ଦ୍ର ସୂର୍ଯ୍ୟ ସାକ୍ଷୀ
ଆସନ୍ତି ନୃସିଂହଗଣ ଓଲଟାକୁ ଦେଖି ।
ଆଗରେ ଶର ବିନ୍ଧନ୍ତେ ସବୁଙ୍କୁ ଯେ ଜିଣା
ପଛକୁ ମାରିବା ଶର ହୁଏ କି କଳନା ।
ପ୍ରଥମୁଁ ହସ୍ତ ଟେକିଣ ନ ମାରନ୍ତି ହରି
ଯେ ଆଗେ ମାରେ ତାହାକୁ ନାରାଚ ପ୍ରହାରି ।
ଆଗେ ଯେ ମାରେ ତାହାର ଧର୍ମ ହୁଏ ହାନି
ନ ପାରେ କେଭେ ଜିତି ସେ ବଡ଼ପଣ ଘେନି ।
ପ୍ରଭୁ ମାରିବାକୁ ଆଗ ନ ଟେକନ୍ତେ ହାତ
ମରନ୍ତି ତେଣୁ ଦଇତ୍ୟ ହୋଇ ଅରକ୍ଷିତ ।
ଦେଖାଶୁଣା ନାହିଁ ଯେ ଏ ରୂପେ ଯୁଦ୍ଧକାହିଁ
ଭାଜିଲେ ଦଇତ୍ୟ ଦୁଇଆଡୁ ଭୟପାଇ ।



## କାଙ୍କୋଳାସୁରର ଯୁଦ୍ଧ ଓ ମୃତ୍ୟୁ

ସୈନ୍ୟଙ୍କୁ ସାଜିବା ଦେଖି କାଙ୍କୋଳାଦଇତ
ନୃସିଂହ ପାଶେ ପ୍ରବେଶ କଲା ଦିବ୍ୟ ରଥ ।
ଆବର ଯେ ଶରଜିତ ଦୈତ୍ୟ ଚନ୍ଦ୍ରମାଳୀ
କାଙ୍କୋଳା ସଙ୍ଗେ ନୃସିଂହ ଆଗେଯାଇ ମିଳି ।
ତାହାକୁ ଦେଖି ଭରସା ପାଇ ଦୈତ୍ୟଉଠି
ବିନ୍ଧିଲା ସେ ଶରମାନ ଆଣି କୋଟି କୋଟି ।
ଖଡଗ ଗଦା ଚକ୍ର ଧରି ଶ୍ରୀନୃସିଂହଗଣେ
ପିଟିଲେ ଦୈତ୍ୟ ସୈନ୍ୟଙ୍କ ମୁଣ୍ଡେ ଘୋରରଣେ ।
ପଡ଼ିଲେ ଅସୁର ମଡ଼ା ମାନ କୋଟି କୋଟି
ବହିଲା ରକତ ନଦୀ ବସୁଧାର ପିଠି ।
ଧାମନ୍ତି ଶୂନ୍ୟେ ଗମନ କରି ହରିଗଣ
ଶ୍ୟାମଳ ଝାମ୍ପ ମାରଇ ଯେହ୍ନେ ବକମାନ ।
ଶ୍ରୀନୃସିଂହଗଣ ଜାଣ ସେ ପ୍ରକାର ରଣେ
ଯେହ୍ନେ ଚାହିଁଲେ ଦିଶନ୍ତି ତେଣେ ହରିଗଣେ ।
ଏ ରୂପେ ମାରୁ ଦଇତ ହେଲେ ଅବଶେଷ
ଭାସିଲେ ରୁଧିର ସ୍ରୋତେ ପଡ଼ି ଗଜ ଅଶ୍ୱ ।
ଏ ରୂପେ ମାରନ୍ତେ ଅପ୍ରମେୟ ଦୈତ୍ୟଗଣ
ପଡ଼ିଲା ମଡ଼ା ଚଉଦ ଯୁଣଯାଏ ରଣେ ।
ସୈନ୍ୟମରୁଡ଼ି ଦେଖିଣ କାଙ୍କୋଳା ଯେଡ଼ୋକେ
ନୃସିଂହ ପ୍ରଭୁଙ୍କୁ ଚାହିଁ ବୋଲେ କୋପବାକ୍ୟେ ।
ବୋଇଲା ଶୁଣରେ କୃଷ୍ଣବଲ୍ଲଭର ବସ୍ତେ
କେଡ଼େ ଅବିଶ୍ୱାସୀ ହେଲେ ଜନ୍ମି ତୁମ୍ଭେ ମଞ୍ଚେ ।
ତୁମ୍ଭର ନାମ ପଡ଼ିଲା ଯହୁଁ ସଂବୁଠାରେ
କୁବିଦ୍ୟା ଲୋଚାଏ ଶିକ୍ଷାକଲ ବ୍ରହ୍ମାପୁରେ ।
ସୁବିଦ୍ୟା ହୋଇ ତୁମ୍ଭର ହୃଦେ ନାହିଁ ପଦେ
ମାରୁଅଛ ପ୍ରାଣୀ ଯାକୁ ଲାଗି ଅପ୍ରମାଦେ ।
ଏ ପାପ ବୁଦ୍ଧି ତୁମ୍ଭ ନଜାଣି ମୁରାସୁର
ଗୁରୁ କରିଣ ରଖିଲା ନେଇ ଘରେ ତାର ।
ତୁମ୍ଭର ଏ ଗୁଣ ସେହି ଥାନ୍ତା ଯେବେ ଜାଣି
ପୁତ୍ରଙ୍କୁ ବ୍ୟର୍ଥେ କିମ୍ପାଇଁ ମାରନ୍ତା ନୃମଣି ।
ଶିଷ୍ୟ ଲୁଚାକୁ ଆସିଲ ତୁମ୍ଭେ ପରା ମାରି
କି ରୂପେ ତୁମ୍ଭଙ୍କୁ ସହିଅଛି ବସୁନ୍ଧରୀ ।
ନ କଲ ତ ଟିକେ ତୁମ୍ଭେ ହୃଦେ ହେଲେ ଦୟା
କି ରୂପେ ଏ କର୍ମକଲ ଆରେ କୁଳକ୍ଷୟା ।
ବିନା କାରଣରେ ରାଜପୁତ୍ରଙ୍କୁ ମାଇଲ
ବାଳହତ୍ୟା କରିଣ ପଳାଇ ଆସିଲ ।
ଏଡ଼େହେଁ ପାପୀଙ୍କି ଧର୍ମ ସହିଛି କେମନ୍ତେ
ତେଣୁ ଆସିକରି ପଡ଼ିଗଲ ମୋର ହାତେ ।
ମରେ କି ମୂଷିକ କେବେ ବହୁଲୋକେ ପଡ଼ି
ମଣ୍ଡୁକି ବଞ୍ଚେକି କାହିଁ ସର୍ପ ଦେଲେ ଧାଡ଼ି ।
କୁହୁଡ଼ି ରହଇ କିହେ ଉଦେ ହେଲେ ସୂର୍ଯ୍ୟ
ସେହି ରୂପେ ନାଶ ତୁମ୍ଭେ ହେବରେ ନିର୍ଲ୍ଲଜ ।
ମୁଁ ଅଟେ କାଙ୍କୋଳାସୁର ମୁର ସେନାପତି
ମୋତେ ତ ଦେଖିଣ ଲୁଚିଥିଲ ବଳାରାତି ।
ମୁରଦୈତ୍ୟ ଲାଗି ଜିଣିଅଛି ତିନିପୁର
ଦେଖିଲେ ମୋତେ ପଳାନ୍ତି ଡରିବ୍ରହ୍ମାବର ।
କାଣୁ କାଣୁ ତୁମ୍ଭେ ଆସି ପଡ଼ିଲ ମୋ ହାତେ
କାଳମୁଖୁ ବଞ୍ଚି ଏବେ ଯିବରେ କେମନ୍ତେ ।

ଏ ରୂପେ ବୋଲିଣ ଧନୁ ଧରନ୍ତେ ଅସୁର
ହସନ୍ତି କାଙ୍କୋଳା କଥା ଶୁଣି ଚକ୍ରଧର ।
ନୃସିଂହ ବୋଇଲେ ଯେତେ କହିଲୁ ତୁ ବାଣୀ
ଭାଗ୍ୟଥିଲା ଯାଏ ସୁଖ ଭୁଞ୍ଜୁଥାଏ ପ୍ରାଣୀ ।
ଭାଗ୍ୟ ସରିଲେଟି ଜାଣ କନ୍ଧୁ ଖସେ ଶିରୀ
ଯାବତ କ୍ଳେଶ ତାହାକୁ ଘୋଟେ ଆସି କରି ।
ଭାଗ୍ୟଥିଲା ଯାକେ ଭୋଗ କରୁଥିଲ ସୁଖେ
ଭାଗ୍ୟ ଶେଷବେଳକୁରେ ମିଳିଲ ମୋ ପାଖେ ।
ତୁମ୍ଭଙ୍କୁ ମାରିବୁ କହୁଅଛୁ ଡାକିହାକି
ଲୋଡ଼ିଲେ ଯେ ଆଉ ପୂର୍ବ କଥା ପାଇବକି
ତୁମ୍ଭର ପାଇଁ ଆମ୍ଭର ଏହି ଅବତାର
ଦୈତ୍ୟଙ୍କୁ ମାରିଣ ଯିବୁ ବଇକୁଣ୍ଠପୁର ।
ତୁ ଯେତେକ କହୁ ଆସିକରି ଗାଲୁପେଲି
ବୁଝିଲେ ଜାଣ ତୋ ଥିବ ନାହିଁ ଆଉ କାଲି ।
ପୁଣି ହିଁ ବୋଲି ଜିଣିଛି ମୁଁ ଯେ ତିନିପୁର
ମୋତେ ଦେଖିଲେ ଲୁଚଇ ଡରି ପୁରନ୍ଦର ।
ସେ ବଡ଼ପଣ ତୋହର ଜାଣିଛୁ ଯେ ଆମ୍ଭେ
କେତେବଡ଼ାଇ କରୁଛୁ ଆସି ଆମ୍ଭଆଗେ ।
ତୁମରି ଶୀଜା ଯେ ମୁର ବୋଲେ ବିଷ୍ଣୁ ନାହିଁ
ମୁହିଁ ଏକା ବିଷ୍ଣୁ ଅଟେ ବୋଲି କହଯାଇ ।
ମୁଁ ଏକା ଆସିଲି ତାର ପୁତ୍ରଯାକ ମାରି
ତୋତେ ମାରିଣ ପେଷିବି ଏବେ ଯମପୁରୀ ।
ତୋହଲାଗି ଦେବେ ହେଲେ ପାଉଛନ୍ତି କଷ୍ଟ
ଏବେ ଧାତା ମୋତେ ତୋତେ କରାଇଲା ଭେଟ ।
ଶୁଣିଣ କମ୍ପି ଉଠିଲା କାଙ୍କୋଳାର କାୟ
ବିନ୍ଧିଲା ଧନୁରେ ଶର ଯୋଚି ଅପ୍ରମେୟ ।
କୋଟିଏ ଶର ପେଷିଛି କରି ତୀକ୍ଷ୍ଣ ମୁନ
ବେନିଲକ୍ଷ ପେଷିଦେଲା ପୁଣ ଯାତୁଧାନ ।
କତୁରୀ ବାଣ ପେଷିଲା ପୁଣ ଲକ୍ଷେଯାଏ
ଆକାଶଯାକ ପୂରିଣ ଦିଶେ ଶରମୟେ ।
କ୍ଷେପିଣ ଆସନ୍ତେ ଚାରିଦିଗେ ଶରମାନ
ହାବୋଡ଼ାଶର ଛେଦିଲେ ତାହା ଭଗବାନ ।
ଭାଜିଣ ସେ ଶରମାନ ହେଲେ ଖଣ୍ଡ ଖଣ୍ଡ
ଦେଖିଣ କାଙ୍କୋଳାସୁର ଗର୍ଜଇ ପ୍ରଚଣ୍ଡ ।
ପୁଣି ଦଶଲକ୍ଷ ପେଷିଦେଲା ଅହିଶର
ଗରୁଡ଼କୁ ଦେଖି ସର୍ପେ ପଶିଲେ ବିବର ।
ପୁଣି ଅଧାଚନ୍ଦ୍ର ବାଣେ ମାରେ ଲକ୍ଷ ଚାରି
କତୁରୀ ବାଣକୁ ପେଷି ଛେଦିଲେ ଶ୍ରୀହରି ।
କାଙ୍କୋଳା ବୋଇଲା ଶୁଣ ଭଗବତୀ ବହ୍ଲା
ସବୁ ଶର ତୋତେ ଆଜି କରୁଛି ପରୀକ୍ଷା ।

ତୁହି ମଲେ ଆମ୍ଭ ରାଜା ସୁଖେ ଥିବ ରହି
ପଡ଼ିଅଛୁ ମୋର ଆଗେ ଯିବୁ ଆଜି କାହିଁ ।
ନୃସିଂହ ବୋଇଲେ ଶୁଣ ଆରେ ନିଲକ୍ଷଣ
ଏକ ଶସ୍ତ୍ର ପେଶି ମୋତେ କି ଜିଣିବୁ ଜାଣ ।
ଦିଗବିଜେ କରି ତୁମ୍ଭେ ଗଲ ଯେଉଁକାଳେ
ଶାକଲ୍ୟଦ୍ୱୀପକୁ ବୋଲି ଗଲରେ ଚଣ୍ଡାଳେ ।
ସୁଦର୍ଶନ ଚକ୍ରଥିଲା ଦୁଆରେ ମୋହର
ଲକ୍ଷେ କୋଟି ଦୈତ୍ୟ ଯୁଝି କି କଲରେ ତାର ।
ଯେତେ ହେଁ ନାରାଚ ଆଣି ପିଟିଲ ତା ଦେହେ
ନ ପାରିଲ ଲୋମ ବଙ୍କା କରି ତା କେବେ ହେଁ ।
ଧର୍ମକୁ ଚାହିଁ ଆମ୍ଭେ ଯେ ପାଞ୍ଚଣ ମନକୁ
ରଖିଥିଲୁ ଆଜଯାଏ ଭାବ ବୁଝିବାକୁ ।
ଆମ୍ଭେ ପୁଣି ସେ କାଳରେ ବାଳକ ରୂପରେ
ନିଦ୍ରାରେ ଶୋଇଣ ଥିଲୁ ପଲ୍ୟଙ୍କ ଉପରେ ।
ଆସିପୁଣି କେତେ ଦୈତ୍ୟ ଟେକିଲ ମୋ ଶଯ୍ୟା
ଘୁଞ୍ଚାଇ ନ ପାରି ପୁଣି ପାଇଲ ଯେ ଲଜ୍ଜା ।
ଗୁହାରି କଲ ପରାରେ ମୁର ଦୈତ୍ୟ ଆଗେ
ସେହି ମଧ ପାରନ୍ତାକି ଟେକି କୋଟି ଯୁଗେ ।
ତା ଭାବ ବୁଝିବା ପାଇଁ ଉଶ୍ୱାସ ହେ ହେଲୁ
ବହି ଘେନିଯାନ୍ତେ ପୁଣି ମାଡ଼ିଣ ବସିଲୁ ।
ସହି ନ ପାରି ସେ ଉଭା ଛେଚିଲାକ ଧରି
ପାଷାଣେ ପଡ଼ନ୍ତେ ଗୁଣ୍ଡା ହେଲା ବସୁନ୍ଧରୀ ।
ତହିଁରେ ପଡ଼ି ମୋର କି ଲୋମ ହେଲା ବଙ୍କା
ଆସିଅଛୁ ଏଠାକୁ ଯେ ମାରିବାକୁ ଏକା ।
ଛେଚନ୍ତେ ପଳାଇ ମୁହିଁ ଆସଇ ପୁରକୁ
ସଙ୍ଗେ ସଙ୍ଗେ ଧାଇଁ ଆସି ମୋର ନବରକୁ ।
ଖୋଜିଣ ନ ପାଇ ମୋତେ ପୋଡ଼ି ଦେଲେ ପୁର
ଲୋମଟିଏ ବଙ୍କା କରି ପାରିଲ କି ମୋର ।
ଜାଣୁ ଜାଣୁ ଆମ୍ଭ ତୁଲେ କର ଆସି ଯୁଦ୍ଧ
ଏକାଚକ୍ରକୁ ମୋ କରି ପାରିବକି ସାଧ ।
ଆସିଛୁ ତୁ ପରା ମୋତେ ମାରିବାର ପାଇଁ
ଫିଟିଲେ ଆମ୍ଭର ବାକ୍ୟ ମରନ୍ତୁ ଯେ ତୁହି ।
କେବଳ ଦେଖିବାପାଇଁ କଉତୁକ ତୋର
ଦଣ୍ଡେ ଆଉ ତୋତେ ମାତ୍ର କରିଛୁ ଅମର ।
ବିନ୍ଧ ଏବେ ବାଣ ତୋର ଆଣିଛୁ ଯେତେକ
ତାହା ଶୁଣି କାଙ୍କୋଳାର କମ୍ପେ ଦେହଯାକ ।
ପ୍ରଜ୍ୱଳିତ ହୋଏ ପୁଣି ଘୋଟେ ଯେହ୍ନେ କାଳ
ମାରିବା କଥାକୁ ସେହି ଧରିଛି କେବଳ ।
ନୃସିଂହ ବାକ୍ୟ ଶୁଣି ନ ଶୁଣେ ଦୈତ୍ୟ କିଛି
ବେଳକୁ ବେଳ ଧନୁରେ ବିନ୍ଧେ ଶର ଯୋଚି ।

ଗରୁଡ଼ ଉପରେ ପଡ଼ି ବାଜି ହୋଏ ଧୂଳି
ଯାହାର ପିଠିରେ ବସିଛନ୍ତି ବନମାଳୀ ।
ସବୁ ଶର ବିନ୍ଧି ଦୈତ୍ୟ ହୋଇଲା ନିଶସ୍ତ୍ର
ରଥରୁ ସୂର୍ଯ୍ୟଙ୍କୁ ଝିଙ୍କି ବିନ୍ଧିଲା ସେ ଅସ୍ତ୍ର ।
ଦୈତ୍ୟ ମନ୍ତ୍ରବଳୁ ଚଳିଗଲେ ସଂଜ୍ଞାକାନ୍ତ
ଶ୍ରୀନୃସିଂହ ପାଦେ ନମି ହୋଇଲେ ଉଦିତ ।
ତାହା ଦେଖିଣ କାଙ୍କୋଳା ହୋଏ ଚମତ୍କାର
ଶ୍ରୀନୃସିଂହ ଆଜ୍ଞାକଲେ ଶୁଣରେ ଅସୁର ।
ରହିବ ତୋହର ପରା ରଥ ହୋଇ ତୁନି
ତୁନି ହୋଇ ରହିଲେ ନ ଯିବୁ ସଂଯମନୀ ।
ଇନ୍ଦ୍ରକୁ ଯେ ବହକଲା ପ୍ରାୟ ନୋହେ ଆଜ
ମୃତ୍ୟୁକୁ ଯେ ତରିବାକୁ କର ଏବେ କାର୍ଯ୍ୟ ।
ମୁରସଙ୍ଗେ ବୁଲିଯିବା କଥା ନୋହେ ଏହୁ
ମୋତେ ଜିଣି ପାରିଲେଟି ହେବୁ ରଣ ରାହୁ ।
ଘରକୁ ଯିବାର କଥା ଛାଡ଼ ଏବେ ଆଶ
ଯମ ତ ପୋଛି ଦେଲାଣି ତୋହରି ଆୟୁଷ ।
କାଙ୍କୋଳା ବୋଇଲା ତେବେ ଶୁଣ ନାରାୟଣ
ତୋ କଥା ଶୁଣି ହସୁଛି ମୋର ଆତ୍ମା ଜାଣ ।
ବ୍ରାହ୍ମଣ କୁଳେ ଜନ୍ମିଛ ତୁମ୍ଭେ ସିନା ଆସି
କ୍ଷତ୍ରିକୁଳେ ଜନ୍ମିଥିଲେ ଥାଆନ୍ତି ମୁଁ ତ୍ରାସି ।
ସନ୍ଧ୍ୟା ତରପଣ ପୂଜା ବୈଶ୍ୱଦେବ କର
ନାସାରେ ହସ୍ତ ଦେଇଣ ଗାୟତ୍ରୀ ସୁମର ।
ମାତ୍ର ତୁମ୍ଭର ଏଥିରେ ପଡ଼ପଣ ଅଛି
ଯୁଦ୍ଧକୁ ସମାନ ତୁମ୍ଭେ ନୁହ ବିପ୍ରବଚ୍ଛି ।
ଏଣୁ କରି ତୁମ୍ଭଙ୍କୁ ନ ଥାଇ ଆମ୍ଭ ଡର
ଏହା ଶୁଣି ହରି ପୁଣି ଦେଲେକ ଉତ୍ତର ।
ନୃସିଂହ ବୋଇଲେ ଆରେ କାଙ୍କୋଳାତୁ ଶୁଣ
ଆଦିକ୍ଷତ୍ରୀ ପର୍ଶୁରାମ ନୁହଇ କି ଜାଣ ।
ବିପ୍ରକୁଳେ ପର୍ଶୁରାମ ନ ଥିଲେ କି ଜନ୍ମି
ଦୁଷ୍ଟନାଶେ ଏକୋଇଶ ଥର ପୃଥ୍ୱୀ ଭ୍ରମି ।
ବ୍ରାହ୍ମଣ ଗୋସାଇଁ ଏଥୁ ହୁଅନ୍ତି ଯେ ସାନ
ତୁ ହାଡ଼ିଜାତି ଚିହ୍ନିବୁ କାହୁଁ ପୁଣ୍ୟଜନ ।
ସଂସାରେ ତ ପୁଣ୍ୟଜନ ଅସୁରଙ୍କୁ କହି
ଅସୁର ବିପ୍ରଙ୍କୁ ଏଣୁକରି ନ ମାନଇ ।
ନୃସିଂହ କହିବା କଥା ଶୁଣିଣ ଦଇତ
ବିନ୍ଧିଲା ଧନୁରେ ଶର ଯୋଚି ଅପ୍ରମିତ ।
ଆଖି ପିଛଡ଼ାକେ ବିନ୍ଧେ ଲକ୍ଷ ଲକ୍ଷ ଶର
ତାହା ଦେଖି ଖଗ ଆଦିଦେଲା ଖଗେଶ୍ୱର ।
ନାରାଚମାନ ପଡ଼ିଣ ହୁନ୍ତି ଚୂର୍ଣ୍ଣଗତି
ହସିଣ ଯେ ଖଗେଶ୍ୱର ବାକ୍ୟ ପ୍ରକାଶନ୍ତି ।

ବୋଲନ୍ତିରେ ଶୁଣ ତୋତେ କହିବା କାଙ୍କୋଳା
ଲୋଡ଼ିଛୁ ଅମୃତପାନ ଛାଡ଼ି ମୃତ୍ୟୁଭେଳା ।
ଚାହିଁ ପୁଣି ଆଙ୍ଗୁଳିରେ ଖୋଳୁଛୁ ତୋ ଆଖି
ହେଉଛୁ ତୁ ବିଷ୍ଣୁ ଦ୍ରୋହୀ ଅରିକୁଳ ରଖି ।
ପିତା ଛାଡ଼ି ପିଉସାର ପାଦତଳେ ନମୁ
ବୟସ ଗର୍ବରେ ଯମରାଜାକୁ ତୁ ଡମୁ ।
ଅପମୃତ୍ୟୁରେ ଯେବଣ ଯମ ପାରେ ମରି
ତାହା ନ ପାଞ୍ଚି ନୃସିଂହେ ହେଉଛୁ ବଇରୀ ।
ସୂର୍ଯ୍ୟଙ୍କ ଗଳାରେ ବାନ୍ଧି ଝିଙ୍କୁଛୁ ଦଉଡ଼ି
ଶୂନ୍ୟକୁ ମାପୁଛୁ ଭୂମିପରେ ଶୋଇପଡ଼ି ।
ସମୁଦ୍ର ସଙ୍ଗେ ସରିକି ହେବ କ୍ଷୁଦ୍ରନଦୀ
ଚନ୍ଦ୍ରତୁଲେ ସରିହେବେ କି ନକ୍ଷତ୍ର ଆଦି ।
ପତିଙ୍କ ତୁଲେ ସରି କି ହେବେ ମୃତପ୍ରାଣୀ
ପତିବ୍ରତାର ସଙ୍ଗେ କି ତୁଲ୍ୟ ଦୋଚାରୁଣୀ ।
ସୁପଣ୍ଡିତ ସଭା ମଧ୍ୟେ ମୂର୍ଖ ଯେବେ ବସେ
ହଂସସଭା ମଧ୍ୟେ ବକ ପରାୟେକ ଦିଶେ ।
ସଞ୍ଚାଣପକ୍ଷୀ ପ୍ରାୟ କି ଆନପକ୍ଷୀ ହୋଇ
ବଢ଼ିଜଳ ବାନ୍ଧିଣ କେ ପାରିବ କି ଥୋଇ ।
ଶ୍ରୀଗୁରୁ ସଙ୍ଗେ ସରିକି ହେବ ଶିଷ୍ୟପୁତ୍ର
ବ୍ରାହ୍ମଣ ସଙ୍ଗେ ସରି କି ହେବ ଶୂଦ୍ରମାତ୍ର ।
ରାଜାଙ୍କ ସଙ୍ଗେ ପ୍ରଜାଏ ସରି କି ହୋଇବ
ଶୂଦ୍ରମୁଖେ ପଢ଼ିବେଦ କେବେ କି ବର୍ତ୍ତିବ ।
ପିତାମାତା ସଙ୍ଗେ ସରି ହେବ କି ମଉସା
କ୍ଷୀରପାନ ଦେଇ ପ୍ରାଣ କରନ୍ତି ଯେ ପୋଷା ।
ଗୃହସ୍ଥର ସଙ୍ଗେ ସରି ହେବ କି ଭାରିଯା
ଏ କଥା ନ ଚିହ୍ନି ମରୁଅଛୁ କରି ଲଜ୍ଜା ।
ଶ୍ରୀବିଷ୍ଣୁଙ୍କ ସଙ୍ଗେ ସରି ହେବ କି ମନୁଷ୍ୟ
ଏ ମାର୍ଗମାନ ବୁଝି ତୁ ନ ପାରୁ ରାକ୍ଷସ ।
ବାତୁଳ ପ୍ରାୟେ ଆସି ତୁ ଯୁଦ୍ଧେ ହେଲୁ ଠିଆ
ଅଗ୍ନିରେ ପଡ଼ିଣ କେହି ଧରିଅଛି କାୟା ।
ଜାଣୁ ଜାଣୁ ଆସିଣ ତୁ ଲୋଡୁ ଅଗ୍ନିକୁଣ୍ଡ
ତୋତେ କି କହିବା ଛାର ଅସୁରରେ ମୂଢ଼ ।
ଗରୁଡ଼ଯତି କଥା ଯେ ନ ଶୁଣି କାଙ୍କୋଳା
କୋପେଣ ଶର ଯୋଚିଣ ବିନ୍ଧେ ଅନର୍ଗଳା ।
ଦେଖିଣ ସେ ଖଗେଶ୍ୱର ମଥା ଦେଲା ଆଡ଼ି
ବାଜିଣ ସେ ଶରମାନ ତଳେ ଗଲା ପଡ଼ି ।
ତାହା ଦେଖିଣ ନୃସିଂହେ ଗରୁଡ଼କୁ ଚାହିଁ
ଠାରି ଆଜ୍ଞା ଦେଲେ ଦୈତ୍ୟ ମାର ବେଗେ ଯାଇ ।
ଶୁଣିଣ ସେ ଖଗେଶ୍ୱର ଧରି ବିଷ୍ଣୁ ରୂପ
ମାଇଲା ସେ କାଙ୍କୋଳାର ସୈନ୍ୟ ଅନର୍ଯ୍ୟାପ ।

ଲକ୍ଷେ ଯୋଜନଯାଏ ସେ କାୟା ବିସ୍ତାରିଲା
ରାହୁର ପ୍ରାୟେ ଘୋଟି ସେ ଦୈତ୍ୟକୁ ଗ୍ରାସିଲା ।
ଶୁଣ ଆହେ ନାରଦ ସେ ଗରୁଡ଼ ଚରିତ
ଯେତେ ଆଜ୍ଞା ଦେଲେ ତତେ ହେଲେ ମୃତ୍ୟୁଗତ
କାହାକୁ ଚରଣ ମାରି କାହାକୁ ବିଦାରି
କାହାର ଅନ୍ତବୁଜୁଳି ଥଣ୍ଟେ ଦିଏ ଚିରି ।
କାହାକୁ ମାରଇ କାହା ମୁଣ୍ଡେ ଛେଚି ଗୋଡ଼େ
କାହାକୁ ଶୂନ୍ୟରେ ଟେକି ଭୂମିରେ କଚାଡ଼େ ।
ଥୋକାଏ ଡେଣାପବନ ଘାତେ ଯାନ୍ତି ଉଡ଼ି
ଭୂମିରେ ପଡ଼ନ୍ତି ପୁଣି ଆସି ମୁଖମାଡ଼ି ।
କାହାକୁ ଘୋଷାଡ଼ି ନେଇ ଫୋପାଡ଼ି ସେ ଦିଏ
କାହାକୁ ମାରି ସମୁଦ୍ର ମଧ୍ୟେ ଫିଙ୍ଗି ଦିଏ ।
କାହାକୁ ବିନ୍ଧିଣ ମାରି କରେ ଖଣ୍ଡ ଶତ
ଏ ବିଧିରେ ତୋର ପଦ୍ମ ଦୈତ୍ୟ କଲା ହତ ।
ବହିଲା ରକତନଦୀ ସିନ୍ଧୁମୁଖେ ପୁଣି
ଶୁଣହେ ନାରଦ ଏହି ଗ୍ରନ୍ଥର ଯେ ବାଣୀ ।
ଶରଜିତ ବକ୍ରମାଳୀ କାଙ୍କୋଳାକୁ ଛୁଡ଼ି
ଆବର ସୈନ୍ୟମାଇଲା ଖୋଜିଲୋଡ଼ି ଲୋଡ଼ି ।
ଗରୁଡ଼ ବିଶ୍ୱରୂପକୁ ଦେହେ ସଂହାରିଲା
ନିଜେ ନୃସିଂହଙ୍କୁ ନେଇ ସମରେ ପଶିଲା ।
ଶଙ୍ଖଚକ୍ର ଗଦାପଦ୍ମ ଚାରିକରେ ସାଜେ
ଦେବଯାନ ଉପରେ ଶ୍ରୀ ଶେଷଦେବ ବିଜେ ।
ସୈନଯାକ ମରନ୍ତେ ତା କାଙ୍କୋଳ ଯେ ଦେଖି
ବିନ୍ଧିଲା ଲକ୍ଷେ ନାରାଚ ଉପ୍ରୋଧ ଉପେକ୍ଷି ।
ତା ଦେଖିଣ ତୀକ୍ଷ୍ଣଶର ପେଷିଲେ ନୃସିଂହ
ବାଜି ଦୈତ୍ୟଶର ସବୁ ହୋଇଗଲା ଭଙ୍ଗ ।
କତୁରୀଶର ପୁଣିହିଁ ଦୈତ୍ୟ କରେ ଧରି
ଶ୍ରୀନୃସିଂହ ଉପରକୁ ବିନ୍ଧେ କୋପ କରି ।
ଅନ୍ତରୀକ୍ଷେ ଯେ ନାରାଚ ଆସି ମନ୍ତ୍ରବଳେ
ଗର୍ଜିଣ ଧାମଇଁଶର ଆକାଶ ମଣ୍ଡଳେ ।
ଶ୍ରାବଣ ମାସରେ ଯେହ୍ନେ ହୁଏ ଜଳବୃଷ୍ଟି
ତେସନେ ଅଟନ୍ତି ଶୂନ୍ୟମାର୍ଗେ ଶରଘୋଟି ।
ଦେଖିଣ ପେଷିଲେ ତୀକ୍ଷ୍ଣଶର ନାରାୟଣ
ବାଜିଣ ଭାଜିଲେ ଶରମାନେ ଛାଡ଼ିରଣ ।
ସାତଲକ୍ଷ ନାରାଚ ସେ ପୁଣ କରେ ଧରି
ଶ୍ରୀ ନୃସିଂହ ଉପରକୁ ବିନ୍ଧେ କୋପ କରି ।
ଦେଖି ପ୍ରଭୁ ଶ୍ରୀ ନୃସିଂହ ମନ୍ତ୍ର ଦେଲେ ପଢ଼ି
ଫୁଙ୍କନ୍ତେ ସେ ଶରମାନ ଶୂନ୍ୟେଗଲେ ଉଡ଼ି ।
ପାତାଳପୁରକୁ ପଶିଗଲେ ଶରଯାକ
ଶ୍ରୀନୃସିଂହ ମନ୍ତ୍ରପ୍ରଭା ଅଟେ କେଡ଼େ ଦେଖ ।

କାଙ୍କୋଳା ବୋଇଲା ତୁମ୍ଭେ ଅଟ ତେଡ଼େ ମନ୍ଦ
ବିପ୍ରଜାତି ହେବାରୁ ତ ଜାଣ କୂଟଛନ୍ଦ ।
ପନ୍ନଗ ପରାୟ ତୁମ୍ଭ ସର୍ବଦା ପ୍ରକୃତି
ଯଜ୍ଞସୂତ୍ର ବହିଭଜ ଗାୟତ୍ରୀଙ୍କୁ ନିତି ।
କାହାଣେ ବାପଣେ ମାଣେ ମିଳେ ଯେଉଁ ଠାରେ
ସେଠାରେ ବସିଣ ବେଦ ପଢ଼ ଉଚ୍ଚସ୍ୱରେ ।
ଆଶୀର୍ବାଦ କରି ଖାଅ ଲୋକଙ୍କୁ ସେ ଯଚି
ଆଡ଼ମ୍ବରେ ଚାଲ ଦାଣ୍ଡେ ଧରି କୁଶବଟି ।
ଗଡୁ କିମ୍ବା ପାତ୍ର ଧରି ଭଣ୍ଡି ସବୁ ଖାଅ
ତଳହସ୍ତେ ପାଣି ଧରି ଦାନ ଘେନୁଥାଅ ।
ସହସ୍ର ନାମକୁ ଗୁଣି ପର ମୂଳ ଲାଗ
ଦିନାର୍ଦ୍ଧରେ ପାଞ୍ଜିଧରି କହ ସବୁ ଯୋଗ ।
ଅତି ପାପୀଲୋକ ଯାଇ ଜନ୍ମେ ତୁମ୍ଭ କୋଳେ
ଦାନ ଘେନିବାକୁ ଆସ ପୁଣି ତତକାଳେ ।
କହିଲେ ନ ସରେ ଜାଣ ବ୍ରାହ୍ମଣଙ୍କ ପୌଢ଼ୀ
ଯୁଦ୍ଧକୁ ଆସିଛ ପକ୍ଷୀ ଗୋଟିଏକ ଚଢ଼ି ।
ଶୁଣି ପ୍ରଭୁ ବୋଇଲେ କି ଏହା ଯେବେ ହୋଇ
ବିପ୍ରଙ୍କ ପାଦ କାହିଁକି ତୁମ୍ଭେ ପିଅ ଧୋଇ ।
ବ୍ରାହ୍ମଣଙ୍କୁ ବରି ତୁମ୍ଭେ ଗୃହେ କିମ୍ପା ନିଅ
ବରକନ୍ୟା ବସି ବେଦୀପରେ ବିଭା ହୁଅ ।
ପଢ଼ନ୍ତିତ ବିପ୍ରବେଦ ବୋଲି ଯେବେ ଜାଣ
ସେ ବେଦ ମହିମା ତୋତେ କହିବାରେ ଶୁଣ ।
ଓଁ କାର ବେଦାଙ୍ଗ ବ୍ରହ୍ମା ଅଟେ ଆଠଅଙ୍ଗ
ଚତୁସ୍ୱାହା ତ୍ରୟସ୍ଥାନ ପଞ୍ଚଦେବାମାର୍ଗ ।
ବ୍ରହ୍ମା ବିଷ୍ଣୁ ଶିବଟି ଓଁ କାର ରୂପ ମୂର୍ତ୍ତି
ସୁପଣ୍ଡିତ ଜନେ ଏକା ଓଁ କାର ଚିହ୍ନନ୍ତି ।
ତୁମ୍ଭର ଗୁରୁପରାରେ ଶୁକ୍ରମୁନି ଅଟେ
ତୁମ୍ଭ ରାଜା ଆଗେ ବେଦପଢ଼ି କେଡ଼େ ଶ୍ରେଷ୍ଠ ।
ତୁମ୍ଭେ ଅଲାଜୁକ ବୋଲି ବିପ୍ର ନିନ୍ଦାକର
ସେହି ବେଦମନ୍ତ୍ର ପଢ଼ି ହୁଅ କନ୍ୟାବର ।
କାହିଁକି ବିପ୍ରମାନଙ୍କୁ ବରି ହୁଅ ବିଭା
ଦୁର୍ବାକ୍ଷତ ବନ୍ଦାପନା କର କିମ୍ପା ନିର୍ଭା ।
କାହିଁକି ବିପ୍ରଙ୍କୁ ପଣେ ମାଣେ ଯାଚିଦିଅ
ରୋଗନାଶ ପାଇଁ ସସ୍ର ନାମକୁ ପଢ଼ାଅ ।
ଶୁଦ୍ଧ ହୋଇବ ବୋଲିଣ ଦଶକ୍ରିୟା କର
ଉତ୍ତର ଷୋଡ଼ଶ କର୍ମେ ବିପ୍ରେ ଆଗୋ ବର ।
ପିତୃଶ୍ରାଦ୍ଧ ନିମନ୍ତେ ଯେ ବିପ୍ର ଆଣ ବରି
ଉଦ୍ଧାର ପିତାମାତାଙ୍କୁ ପିଣ୍ଡଦାନ କରି ।
ତୁମ୍ଭର ଶୁକ୍ର ଗୁରୁଙ୍କୁ ପଚାର ରେ ଯାଇଁ
କାହିଁକି ସେ ପଢେ ବେଦ ତୁମ୍ଭ ଗୃହେ ଥାଇ ।

ବୁଝିଲେ ଚ ଶୁକ୍ରମୁନି ବିପ୍ର ନୁହନ୍ତ କି
ତାଙ୍କ ପାଦଧୂଳି ବୋଲି ହେଉଛ କାହିଁକି ।
ଛାଣୁ ଛାଣୁ ଥାରେ ମୂର୍ଖ କିମ୍ବା ବିପ୍ର ନିନ୍ଦ
ପକ୍ଷୀଲାଗି ହୁଏ ମୋର ଅବତାର ମନ୍ଦ ।
ଆମ୍ଭେ ଅବତାର ହେଲେ ବହେ ସେ ଆମ୍ଭଙ୍କୁ
ବହିଥିବାରୁ ଯେ ଆମ୍ଭେମାରୁ ଯେ ଦୈତ୍ୟଙ୍କୁ ।
ବିନତାର ପୁତ୍ର ଅଟେ ସେ ଗରୁଡ଼ ଯତି
ଶ୍ରୀ ଲକ୍ଷ୍ମୀ ନୃସିଂହଙ୍କୁ ଯେ ବହୁଥାଇ ନିତି ।
ସେ ବହିବାରୁ ବହୁଙ୍କୁ ଆମ୍ଭେ ନାସାପୁଟେ
ନିର୍ମଳ କରି ସମସ୍ତ ବୁଝ ସର୍ବ ଘଟେ ।
ଏଣୁ ସେ ବାହନ ମୋର ଅଟେ ମନ୍ତ୍ରସାହା
ଜଳ ତୁଳସୀ ମନ୍ତ୍ରେ ନୈବେଦ୍ୟ କରି ଯାହା ।
ସେହିଁ ସ୍ୱାହାମନ୍ତ୍ର ଛାଣ ଗରୁଡ଼ ନୃହରି
ସବୁରି ହୃଦପଦ୍ମରେ ଛନ୍ତି ବିଜେ କରି ।
ବୋଇଲି ହୋମରେ ଘୃତଦେଇ ବିପ୍ର ସ୍ୱାହା
ସେ ହବିଷାନ୍ନ ନ ଭୁଞ୍ଜେ ଆମ୍ଭେ ଭୁଞ୍ଜୁ ତାହା ।
ପ୍ରାଣ ଅପାନ ବ୍ୟାନ ଯେ ଉଦାନ ସମାନ
ଏ ପଞ୍ଚପ୍ରାଣ ଆମ୍ଭେଟି ଅଟୁ ଆତ୍ମା ଜ୍ଞାନ ।
ଶ୍ରୀହରିର ଗରୁଡଟି ମୁର ପୁତ୍ରଯାକ
ମାରିଣ ଆଖଡ଼ା ଘରେ ଆସିଲା ବଦ୍ରିକା ।
ଏବେ ତୋର ତେରପଦ୍ମ ସୈନ୍ୟଯାକ ମାରି
ଆମ୍ଭଙ୍କୁ ସମରେ ଆସିଅଛି ବହିକରି ।
ଶୁଣିଣ କାଙ୍କୋଳାସୁର ମହାକୋପ କଲା
ଶ୍ରୀନୃସିଂହ କଥା ତାର କର୍ଣ୍ଣେ ନ ପଶିଲା ।
ଧନୁରେ ଶର ଘେନିଣ ବିନ୍ଧେ ବେଗେ ଟାଣି
ତୀକ୍ଷ୍ଣଶରେ ପେଷି ଛେଦି ଦେଲେ ଚକ୍ରପାଣି ।
ପୁଣି ଅର୍ଦ୍ଧ ଚନ୍ଦ୍ରବାଣ ପେଷିଲା ଅସୁର
କର୍ଣ୍ଣମୂଳ ଯାଏ ଝିଙ୍କିଆଣି ଧାତିକାର ।
ଏଥର ସମ୍ଭାଳ ବୋଲି ପେଷିନ୍ତେ ବହନ
ଛେଦିଲେ ହାବୋଡ଼ା ଶରେ ତାହା ଭଗବାନ ।
କାଙ୍କୋଳା ଦେଖି ହୋଇଲା ମହା କୋପାନଳ
ଆକର୍ଷି ଲୁହାର ଧନୁ ଧରି କରତଳ ।
ଓଟାରି ଲକ୍ଷେକ ଶର ବିନ୍ଧେ ଗୁଣଟାକି
ଧନୁରୁ ନ ଖସୁଁ ଛେଦି ଦେଲେ ଚକ୍ରପାଣି ।
ପୁଣିହିଁ ଧଇଲା ବଜ୍ରଶର ଲକ୍ଷ ଚାରି
ଗୁଣରେ ବସାଇ ବିନ୍ଧିଦେଲା କୋପକରି ।
ଲେଉଟି ଲକ୍ଷେକ ଶର ପାଖରେ ଯେ ଥିଲା
ବାବଲ ଆଦି ନାରାଚ କୋପେ ବୃଷ୍ଟି କଲା ।
ପେଷିଣ ଗୁଣ ଟଙ୍କାରି କରି ରୋଷଭରେ
ଦିଶିଲା ଅନ୍ଧାରମୟ ସୃଷ୍ଟି ଦିବସରେ ।

ଗଗନେ ଆସନ୍ତେ ପକ୍ଷୀଗଣ ଯେହ୍ନେ ଉଡ଼ି
ଧାମନ୍ତେ କାଣ୍ଡ ଖଣ୍ଡାଏ କରି ଘୋର ରଡ଼ି ।
ଦେଖିଣ ସେ ମହାପ୍ରଭୁ ପେଷି ତୀକ୍ଷ୍ଣ ଶର
ଛେଦିଲେ ନାରାଚ ଆସୁଁ ଆସୁଁ ଚକ୍ରଧର ।
ଉଠିଲାକ ହୁତାଶନ ଅଗ୍ନିଜ୍ୱାଳା ଜିଣି
ଛେଦିଲେ ନୟନ ପିଛାଡ଼ନ୍ତେ ଚକ୍ରପାଣି ।
ପୁଣି ହିଁ ଲକ୍ଷେକ ଶର କାଙ୍କୋଳା ଯେ ଧରି
ଫିଙ୍ଗିଲା ନୃସିଂହ ପରେ ମହାକୋପକରି ।
ପକ୍ଷୀକୁ ବିନ୍ଧଇ ଲକ୍ଷେ ଶେଷଦେବେ ଲକ୍ଷେ
ତେରପଦ୍ମ ନୃସିଂହଙ୍କୁ ବିନ୍ଧେ ଲକ୍ଷେ ଲକ୍ଷେ ।
ଘଣ୍ଟାଲତା ଶର ତୋର ସହସ୍ର ଯେ ସନ୍ଧି
ସୁଜାଣ ମନ୍ତ୍ରୀକୁ ପୁଣ ସସ୍ରେ ବାଣ ବିନ୍ଧି ।
ଆଉ ସୈନ୍ୟଙ୍କୁ ଜଣକେ କାଣ୍ଡେ କାଣ୍ଡେ ମାରି
ଧାମନ୍ତି ସେ ଶରମାନ ଆକାଶ ଯେ ପୂରି ।
ଏତେ ନାରାଚ ଆସିବା ଦେଖି ଚକ୍ରପାଣି
ପଦ୍ମେକ ଶର ବିନ୍ଧିଲେ ପ୍ରଭୁ ବେଗେ ଟାଣି ।
କାଙ୍କୋଳାଦୈତ୍ୟର ବାଣ ଆସୁ ଶୂନ୍ୟେ ଗର୍ଜି
ନୃସିଂହର ବାଣ ପଡ଼ି ମଧ୍ୟେ ଗଲେ ଭାଜି ।
କାଙ୍କୋଳା ବୋଇଲା ମୋର ଶରଗଲା ବ୍ୟର୍ଥ
କି ରୂପେ ନାଶିଲା ଏତେ ବାଣ ଜଗନ୍ନାଥ ।
କରିବି ମୁଁ ଏବେ କିସ ବୋଲି ମନେ ପାଞ୍ଚେ
ରଥେ ଥାଇ ଡାକେ ଚନ୍ଦ୍ରମାଳୀକୁ ସେ ଉଚ୍ଚେ ।
ଶରଜିତକୁ ଘେନିଣ ବେଗେ ଧାଇଁଆସ
ମାରିବା ତିନିହେଁ ମିଶି ନୃସିଂହ ନରେଶ ।
ଏ ରୂପେ ଦୈତ୍ୟ ଡାକନ୍ତେ ଜାଣି ଭାବଗ୍ରାହୀ
ଦୈତ୍ୟ ନ ମିଶୁ ବିନ୍ଧିଲେ ଶର କୋପ ବହି ।
ପେଷିଣ କତୁରୀ ନାମେ ଶର ବ୍ରହ୍ମରାଶି
ରଥରେ ଚାରି ଅଶ୍ୱକୁ ପକାଇଲେ ଧ୍ୱଂସି ।
ପୁଣି ହିଁ ବାବଲ ଶର ପେଷିଲେକ ଟାଣି
ଅଶ୍ୱ ସାରଥିର ମୁଣ୍ଡ ପକାଇଲେ ହାଣି ।
ଅଶ୍ୱ ସାରଥିର ମୁଣ୍ଡ ପଡ଼ିଲା ଭୂମିରେ
ସେ ରଥକୁ ଛାଡ଼ିଦୈତ୍ୟ ପଳାଏ ଶୂନ୍ୟରେ ।
ଅପର ରଥେ ବସିଲା ଯାଇ ବେଗେ ଉଠି
ଧନୁରେ ଯୋଚି ବିନ୍ଧିଲା ଶର କୋଟି କୋଟି ।
ନୃସିଂହ ତାହା ଦେଖିଣ ଅଗ୍ନିଶର କାଢ଼ି
ବିନ୍ଧିଲେ ସେ ଲକ୍ଷ୍ମୀକାନ୍ତ ମନ୍ତ୍ର ହୃଦେ ପଢ଼ି ।
ବୋଇଲେକ ବାଣଯାକ ବେଗେ ପୋଡ଼ିପକା
ଆବର ସେ ରଥ ପୋଡ଼ ତାକୁ ଛାଡ଼ ଏକା ।
ଶୁଣି ଅଗ୍ନିଶର ଧାଇଁଗଲା ତଡ଼ ବଡ଼ି
ଦୈତ୍ୟର ସେ ଶରଯାକ ସବୁ ଦେଲା ପୋଡ଼ି ।

ପୁଣି ସେହି ଯାଇ ରଥ ପୋଡ଼ିଲା ତତ୍କାଳେ
ତାପପାଇ ଦୈତ୍ୟ ଡେଇଁ ପଡ଼ିଲାକ ତଳେ ।
ଧାମଇଁ ସେ ପାଦଗାମୀ ହୋଇ ତରତର
ହସ୍ତୀର କନ୍ଧରେ ଯାଇ ବସିଲା ତପୃର ।
ସେ ହସ୍ତୀର ନାମ ପୁଣି ଅଟେ ପୁଷ୍ପବନ୍ତ
ଗଜପରେ ବସିଲା ସେ ହସ୍ତେ ଧରି କୁନ୍ତ ।
ଶ୍ରୀନୃସିଂହ ସ୍ୱାମୀ ତାହା ଦେଖି ପଦ୍ମନେତ୍ର
ଧରି ବ୍ରହ୍ମଶର ପେଷି ଦେଲେ କ୍ଷଣମାତ୍ରେ ।
ପଡ଼ିଲା ସେ ବଜ୍ର ଯାଇ ହସ୍ତୀ କୁମ୍ଭ ସ୍ଥଳେ
ଦ୍ୱିଫାଳ ହୋଇ ପଡ଼ିଲା ମୁଣ୍ଡଯାକ ତଳେ ।
ପୁଣି ହିଁ ପେଷିଣ ତୀକ୍ଷ୍ଣ ଶର ଚକ୍ରପାଣି
ମାହୁନ୍ତର ମୁଣ୍ଡଗୋଟି ପକାଇଲେ ହାଣି ।
ମାହୁନ୍ତ ଗଜର ପ୍ରାଣଗଲା କ୍ଷଣି ଛାଡ଼ି
ସାହାଣି ଅଶ୍ୱକୁ ଆଣିଦେଲା ତଡ଼ବଡ଼ି ।
ଅଶ୍ୱବାଗ ଧରି ବେଗେ କାଙ୍କୋଳା ଚଢ଼ଇ
ମନେ ସାହସ ବାନ୍ଧିଲା ଯହୁଁ ଦମ୍ଭ ହୋଇ ।
ନୃସିଂହ ଦେଖିଣ ତାହା ଧରି ତୀକ୍ଷ୍ଣ ଶର
ଗୁଣରେ ଯୋଚି ବୋଇଲେ ଅଶ୍ୱବେଗେ ମାର ।
ଆଜ୍ଞା ପ୍ରମାଣେ ସେ ଶର ଗଲା ବେଗେ ଧାଇଁ
ଚାରିଟାପୁ ଛେଦି ମୁଣ୍ଡ ତଳେ ଦେଲା ଥୋଇ ।
ଲେଉଟି ତୂଣିରେ ଆସି ପଶିଲା ତପୃର
ନୃସିଂହ ପୁରାଣ ଏହି ଅଟେ ଗ୍ରନ୍ଥସାର ।
ବିପ୍ର ପୀତାମ୍ବର ଦାଶ ଅଟେ ନରାଧାମ
ଏ ଗ୍ରନ୍ଥ କି ଲେଖିବାକୁ ଅଟଇ ସକ୍ଷମ ।
ଶ୍ରୀନୃସିଂହ ଯୁଦ୍ଧ ଦେଖି କାଙ୍କୋଳା ଡରିଲା
ଚାହିଁଣ ଚନ୍ଦ୍ରମାଳୀକି ହସ୍ତ ଠାରିଦେଲା ।
କାଙ୍କୋଳାଠାରି ଡାକନ୍ତେ ଜାଣି ଶେଷଦେବ
ବୋଇଲେ ଏଥର ଛାଡ଼ି ନ ଆସେ ଦାନବ ।
ଚନ୍ଦ୍ରମାଳ ଶରଜିତ ସଙ୍ଗତେ ମିଶିଲେ
ବିଳମ୍ବ ହେବ ତିନିହେଁ ମିଳି ଯୁଦ୍ଧ କଲେ ।
ଶୁଣିଣ ନୃସିଂହ ସ୍ୱାମୀ ମନେ ଅଳ୍ପ ହସି
ସୁଦରଶନ ଚକ୍ରକୁ ଦେଲେ ପ୍ରଭୁ ପେଷି ।
ବୋଇଲେ ଏ କାଙ୍କୋଳାର ମୁଣ୍ଡପକାହାଣି
ଏ ଛାର ସଙ୍ଗେ ଯୁଝିବା ଆଉ କେତେ ପୁଣି ।
ଭାବକୁ ବୁଝିବା ପାଇଁ ଯୁଝିଥିଲ ଏତେ
ନ ମାରିଣ ବିନ୍ଧୁଥିଲ ବାଣଗୋଟି କେତେ ।
ତୁ ଏବେ ଯାଇ ଦୈତ୍ୟର ମୁଣ୍ଡବେଗେ କାଟ
ବାହୁଡ଼ି ଆମ୍ଭ ଛାମୁରେ ଶୀଘ୍ର ଆସି ଭେଟ ।
ଶୁଣିଣ ସେ ସୁଦର୍ଶନ ଗଲା ଅନ୍ତରାଳେ
ଦୈତ୍ୟର ମୁଣ୍ଡକୁ ହାଣି ଆସିଲା ତତ୍କାଳେ ।

ଶ୍ରୀନୃସିଂହ ପ୍ରଭୁ କରେ ପରବେଶ ହେଲା
ଉତ୍ତାନଶାୟୀ ହୋଇଣ କାଙ୍କୋଳା ପଡ଼ିଲା ।
ଗର୍ଜନକରି ଭୂମିର ଦୈତ୍ୟ ପଡ଼ିଗଲା
ଦେବଗଣଙ୍କ ଆସନ ସ୍ୱର୍ଗରେ କମ୍ପିଲା ।
କାଙ୍କୋଳା ମରିବା ବାର୍ତ୍ତା ଦେବଗଣ ପାଇ
ପୁଷ୍ପ ବରଷିଲେ ଶ୍ରୀନୃସିଂହ ଶିରେ ନେଇ ।
ଦେବକୁଳକୁ ଯେଣୁ ସେ ଦୁଃଖ ଦେଉଥିଲା
ଅଳପ ଆୟୁଷ ହୋଇ ତେଣୁ ଏବେ ମଲା ।
ପ୍ରାଣୀମାନଙ୍କୁଟି ଯେହୁ ଦେଉଥାଇ ଦୁଃଖ
ପ୍ରାଣ ଅନ୍ତେ ପଡ଼େ ସେହୁ କୁମ୍ଭୀପାକ ନର୍କ ।
ପରକୁ ପ୍ରମାଦ ଯେହୁ ହୃଦେ ଚିନ୍ତୁଥାଇ
ତାହାର ଅଭାଗ୍ୟକଥା କହି ନ ସରଇ ।
କାହାକୁ ମାରଇ ସେହୁ ମାଡ଼ ବଡପଣେ
ସେ ମାଡ଼ ଲେଉଟି ତାକୁ ପଡ଼େ ତତକ୍ଷଣ ।
କେହୁ ଜାଣ ବଡ଼ପଣ ବହି କଳି କରେ
କେହୁ ମନେ ଡରି କଳି କରେ ଧୀରେ ଧୀରେ ।
ବୁଝିଲେ ସବୁରି ଆତ୍ମା ସଂସାରରେ ଏକ
ଏକଥା ଭାବି ନ ପାରେ ଏକା ଅବିବେକ ।
ବୁଝିଲେ ଏ ପୃଥ୍ୱୀଯାକ କାହାରି ନୁହଇ
ସବୁଙ୍କୁ ଦ୍ୱିପାଦ ଭୂମି ଛନ୍ତି ପ୍ରଭୁ ଦେଇ ।
ଦ୍ୱିପାଦ ଭୂମିରେ ନାହିଁ କାହାର ଯେ ବଳ
ସବୁ ଲୋକଙ୍କୁତ ଦେଇଛନ୍ତି ଆଦିମୂଳ ।
ଏ ରୂପେ ବୋଲିଣ ଦେବ ଶାନ୍ତିକୁ ଲଭନ୍ତି
ନାରଦ ଶୁଣନ୍ତି ବେଦପତି ଯେ କହନ୍ତି ।
କାଙ୍କୋଳାସୁର ସଇନ୍ୟ ଆଣିଥିଲା ଯେତେ
ଅଶ୍ୱହସ୍ତୀ ଯେ ପଦାତି ରଥ ଅପ୍ରମିତେ ।
ସବୁରି ପ୍ରାଣଗଲା ସେ ପଡ଼ିଲେକ ଢଳି
ଆବର ଅଛନ୍ତି ଶରଜିତ ଚନ୍ଦ୍ରମାଳୀ ।
ପବନଘାତେ ଭାଙ୍ଗଇ ଯେହ୍ନେ ରମ୍ଭାବନ
ସେହପରି ମରିଗଲେ କାଙ୍କୋଳର ସୈନ୍ୟ ।
ପଦାତି ଉପରେ ଅଶ୍ୱ ପଡ଼ିଲେ ଯେ ମାଡ଼ି
ଅଶ୍ୱ ଉପରେ ପର୍ବତପ୍ରାୟ ଗଜ ପଡ଼ି ।
ବହିଲା ରକତ ସ୍ରୋତ ନଦୀପ୍ରାୟ ଜାଣ
ଦଣ୍ଡେକ ଶୋଷିଣ ସବୁ ଦେଲେ ଯୋଗିନୀଗଣ ।
କଙ୍କାଳୀ ଚାମୁଣ୍ଡା କାତ୍ୟାୟନୀ ଭଦ୍ରକାଳୀ
ଭକ୍ଷନ୍ତି ରକତ ମାଂସ ହୋଇ ମତୁଆଳି ।
କହ କହ ହଟ ହଟ କରି ଘୋର ଧ୍ୱନି
ମଡ଼କୁ ମଡ଼ାରେ ଛେଦିଦ୍ୟନ୍ତେ ଯାଜ୍ଞସେନୀ ।
ଖାଙ୍କର ମୁଣ୍ଡ ଖର୍ପର ଗଲେ ଧରି ଖଣ୍ଡା
ମଦିରା ମାଂସ ଖାଇଣ ନାଚଇ ପ୍ରଚଣ୍ଡା ।

କେଶକୁ ମୁକୁଳା କରି ହସି ଟହ ଟହ
ଖେଳନ୍ତି ସେ ରସରଙ୍ଗେ ଉଲଗ୍ନ ଯେ ଦେହ ।
କାଳିକା କାମାକ୍ଷୀ କାଳରାତ୍ରୀ କାମସେଣା
ଚମ୍ପାଇ ବିମଳା ପଦ୍ମତୋଳା ଚାରୁଗଣା ।
ଚର୍ଚ୍ଚିକା ଚାମୁଣ୍ଡା ଶାକମ୍ଭରୀ ଚନ୍ଦ୍ରମୁଖୀ
ଶରଦା ରୁଦ୍ରାଣି କାମଚଣ୍ଡୀ ବିରୂପାକ୍ଷୀ ।
ଟେଣ୍ଟାଳୀ କଙ୍କାଳୀ କରାଳୀ ଯେ ଦୁର୍ଗେଶ୍ୱରୀ
କୋଠରୀ ବାହୁଟି ବାବଭୁତି ଝାଡ଼େଶ୍ୱରୀ ।
ଚୁପାଇ କୁନ୍ତାଇ ହାଡ଼ବାଇ ମହାମାୟୀ
ପାଟୋଳୀ ନମାଇ ଅନ୍ତରାଇ ପର୍ବତାଇ ।
ହିଙ୍ଗୁଳାଇ ମାତଙ୍ଗୀ ସାରକମା ତିଳୋତ୍ତମା
ହାବେଣୀ ମଙ୍ଗଳାଚଣ୍ଡୀ ତାରେଣୀ ଯେ ଭୀମା ।
କପାଳୀ ବିଜୟା ଛାୟା ମାୟା କଳାମୁଖୀ
କାଳି ଯେ କାଳରାତ୍ରୀ ଚର୍ଚ୍ଚିକା ରକ୍ତାକ୍ଷୀ ।
ଏହିରୂପେ ଯୋଗିନୀଗଣ ପଶି ରଣଭୂଇଁ
କ୍ଷଣକମାତ୍ରେ ଶୋଣିତ ଦେଲେ ସବୁଖାଇ ।
ସେ ଅଭୟା ପାଦତଳେ ରହୁ ମୋର ମନ
ଅନୁକ୍ଷଣେ ବାଞ୍ଛାକରେ ପୀତାମ୍ବର ଦୀନ ।

### ଶରଜିତ ଏବଂ ଚନ୍ଦ୍ରମାଳୀର ଯୁଦ୍ଧ ଓ ମୃତ୍ୟୁ

ଶୁଣନ୍ତି ନାରଦ କହୁଛନ୍ତି ବେଦବର
ଏ ନୃସିଂହ ପୁରାଣର ମହିମା ଅପାର ।
କାଙ୍କୋଜାର ମରିବାର ଦେଖି ଶରଜିତ
କାନ୍ଦିଲେ ଚନ୍ଦ୍ରମାଳୀକି ଘେନି ଅପ୍ରମିତ ।
ବୋଇଲା ଭୋ ସଖା ଗଲୁ ତୁ ଆମ୍ଭଙ୍କୁ ଛାଡ଼ି
ନିସଖା ହୋଇ ରହିଲୁ ଆମ୍ଭେ ଏଥେ ପଡ଼ି ।
ତୋ ଗୁଣ ତ ବାହୁନିଲେ କାଳ ନ ଅଣ୍ଟିବ
ଏ ରୂପେ ବୋଲି ଖଡ଼ଗ ଧଇଲେ ଦାନବ ।
ଚନ୍ଦ୍ରମାଳୀ ବୋଇଲା ହୋ ଶରଜିତ ଶୁର
ମୋ ଭାଗେ ଶେଷଦେବ ତୋ ଭାଗେ ନାରାୟଣ ।
ଏ ରୂପେ ବୋଲି ଧଇଲା ଶର ଚନ୍ଦ୍ରମାଳୀ
ବୋଇଲା ଶେଷଦେବର ଛେଦିବି ମଉଳି ।
ଶେଷଦେବ ମଲେ ଏକା ଏ ନୃସିଂହ ଦେବ
ମାରିବା ଯେ ଦୁହେଁ ଏକା ହୋଇ ବାସୁଦେବ ।
ମାରିଛ ଆମ୍ଭର ରାଜସୁତ ପରଂବ୍ରହ୍ମ
ତାର ସାନଭାଇ ମଲେ ହେବ ସରିସମ ।
ଏ ରୂପେ ସେ ଚନ୍ଦ୍ରମାଳୀ ବିଚାରୁ ବିଚାରୁ
ଜାଣି ତାହା ଶେଷଦେବ ହସି ଖଣ୍ଡେଦୂରୁ ।
ବୋଇଲେ ଦୈତ୍ୟର ଏବେ ପୂରିଲା ଆୟୁଷ
ପ୍ରକୃତିଛଡ଼ା ହୋଇ ଏ ପାଉଛି ଭବିଷ୍ୟ ।
ବିନ୍ଧୁବାଣ ଆଗ କୋପ ଉପୁଜୁ ଯେ ତାର
ତହିଁ ଉତ୍ତାରୁ ମୁଁ ପ୍ରାଣ ଘେନିବି ଏହାର ।
ଏ ରୂପେ ପାଞ୍ଚୁ ପେଷିଲା ଦୈତ୍ୟବାଣ ବେଗେ
ତୀକ୍ଷଣଶର ପେଷି ଶେଷଛେଦିଲେ ସେ ଲାଗେ ।
ପୁଣିହିଁ ଅର୍ଦ୍ଧଚନ୍ଦ୍ରକୁ ପେଷିଲାକ ଦୈତ୍ୟ
ସପତ ଫଣିରେ ଫୁଙ୍କି ଦେଲେ ଇଳାକାନ୍ତ ।
ସେ ଶର ଯାଇଁ ସମୁଦ୍ର ଜଳେ ଗଲା ମିଳି
ଦେଖିକରି ସ୍ତମ୍ଭୀଭୂତ ହେଲା ଚନ୍ଦ୍ରମାଳୀ ।
ବୋଇଲା ମେଣ୍ଟିଲା କେଡ଼େଶର ଶେଷଦେବ
ନୁହଇ ମନୁଷ୍ୟ ଏହୁ ଅଟେ ବ୍ରହ୍ମା ଶିବ ।
ନୃସିଂହ ପ୍ରଭୁଠାରୁ ଏ କେଡ଼େ ବଳିୟାର
ନୋହିଲେ ମେଣ୍ଟିଣ କରିପାରନ୍ତା କି ଶର ।
ଏ ରୂପେ ବୋଲି ଲକ୍ଷେକ ଅହିଶର ଧରି
ବିନ୍ଧିଲା ସେ ଦୈତ୍ୟବୀର ମନେ କୋପକରି ।
ଆସନ୍ତେ ସେ ସର୍ପ ମଞ୍ଚ ମଣ୍ଡଳକୁ ଘୋଟି
ଗରୁଡ଼ ଦେଖି ପାତାଳେ ପଶିଲେ ସେ ହଟି ।
ତାହା ଦେଖି ଚନ୍ଦ୍ରମାଳୀ ହେଲା ଆଚମ୍ବିତ
ବୋଇଲା ବିନ୍ଧିଲା କେଡ଼େ ଶର ଇଳାକାନ୍ତ ।
ପୁଣିହିଁ ପେଶିଲା ବଜ୍ରଶର ଦୈତ୍ୟ ନେଇ
ଛେଦିଲେ ପର୍ବତ ଶର ପେଷି ଇଳାସାଇଁ ।
ଦେଖିଣ ତା ଚନ୍ଦ୍ରମାଳୀ ହେଲା ଚମତ୍କାର
ବୋଇଲା ଧନ୍ୟ ଅଟଇ ଏହୁ ବିପ୍ରବର ।
ବୁଝିଲେତ ବିପ୍ରତୁଳ ଅଟେ ଗୋଳକୁଣ୍ଡା
କ୍ଷତ୍ରୀଠାରୁ ବଳିକାରେ ସାଧନାକେ ଗଣ୍ଡା ।
ବଳିଷ୍ଠ ସମାନ ମୁହିଁ ବିନ୍ଧିଲି ଯେ ଆଣି
କି ରୂପେ ମେଣ୍ଟିଣ କରୁଅଛି ସସ୍ର ଫଣି ।
ମୋ ଆଗେ ପଡ଼ନ୍ତି ଏହି ଯିବ ଆଜ କାହିଁ
ଜୀବନ୍ତା ବନ୍ଦୀ କରିଣ ଧରିନେବି ମୁହିଁ ।
ଶାଙ୍କୋଳି ପିନ୍ଧାଇ ରାଜା ଆଗେ ନେଇ ଦେବି
ଦେଖିଲେ ଛାଡ଼ିବ ମୁରାସୁର ପୁତ୍ର ବୋବି ।
ଏ ରୂପେ ବୋଲିଣ କୋପ ହୋଇ ଚନ୍ଦ୍ରମାଳୀ
ଧଇଲା ଭୂମିରେ ଆଣ୍ଠୁମାଡ଼ି ଧନୁତୋଳି ।
ଗୁଣରେ ବସାଇ ଲକ୍ଷେ ଶର ତୀକ୍ଷଣମୁନ
ମନ୍ତ୍ରବଳେ ପେଷିଣ ତା ଦେଲା ଯାତୁଧାନ ।
ମହୁ ଘରକୁ ପଳାନ୍ତି ମାଛି ଯେହ୍ନେ ଭାଜି
ସେହି ପ୍ରକାରେ ଆସନ୍ତି ଶର ଶୂନ୍ୟେ ଗର୍ଜି ।
ଦେଖିଣ ଶେଷ କତୁରୀଶର ଧରି ମାରି
ଅସୁର ଶରକୁ ବାଟେ ଦେଲେକ କତୁରୀ ।
ତାହାଦେଖି ଚନ୍ଦ୍ରମାଳୀ ହେଲା କୋପାନଳ
ଆକର୍ଷି ତୁହାଇ ଧନୁ ଧରି କରସ୍ଥଳ ।

ନାରାଚ ବିନ୍ଧନ୍ତେ ପରିଘାଇ ବାଣ ଟାଣି
ଗୁଣରୁ ଛାଡୁ ଛେଦିଲେ ଶର ସପ୍ତଫେଣୀ ।
ମନରେ କୋପ କରିଣ ଇଳାଦେବୀ କାନ୍ତ
କତୁରୀଶର ଧଇଲେ ଆଣି ପୁଣି ହସ୍ତ ।
ବିନ୍ଧିଲେ ହୁଙ୍କାର ନାଦକରି ସପ୍ତଫଣୀ
ଅସୁର ହସ୍ତରୁ ଧନୁ ପକାଇଲେ ହାଣି ।
ପୁଣି ପେଷିଲେକ ବାଣ ଶ୍ରୀନୃସିଂହ ଭାଇ
ସାରଥିକି ରଥପରେ ଦେଲେକ ଚିହ୍ନାଇ ।
ରଥ ଚକଡ଼ାରେ ଦୈତ୍ୟ ହୋଇଥିଲା ଛିଡ଼ା
ତା ଦେଖି ସେ ଡେଇଁ ପଳାଇଲା ଦଶଭେଡ଼ା ।
ଶିରରୁ ମୁକୁଟ ଖସି ପଡ଼ିଲା ଭୂମିରେ
ତ୍ରିପଣ୍ଡ ହୋଇଣ ଝାଳ ବହଇ ଶରୀରେ ।
ତାଲୁକା କଣ୍ଠ ଅଧର ପୃଷ୍ଠ ଯାଏ ଶୁଖି
ଅଣ୍ଟାରେ ସମ୍ଭାଳି ବାସ ନ ପାରଇ ରଖି ।
କାତର ହୋଇ ଧଇଲା ଗଦା ପୁଣି କରେ
ଧାମଇଁ ସେ ପାଦଗତି ହୋଇ କୋପଭରେ ।
ଚୌଷଠି ସହସ୍ରଭାର ଗଦା ହସ୍ତେ ବହି
ପ୍ରଚଣ୍ଡ ଅଗ୍ନିର ଶିଖା ପ୍ରାୟ ଅଛି ଧାଇଁ ।
ମିଳନ୍ତେ ହସ୍ତରେ ଗଦା ଧରି ଶେଷ ଆଗେ
ପିଟିବାକୁ ମନକଲା ଅନନ୍ତଙ୍କ ଅଙ୍ଗେ ।
ଗରୁଡ଼ ଦେଖିଣ ତାହା ରଥେ ଦେଲା ପେଲି
ବାଜନ୍ତେ ଗଦା ପୃଥ୍ୱୀରେ ପଡ଼ିଲା ଚହଲି ।
ପଡ଼ନ୍ତେ ସେ ଗଦାବର କଲା ଘୋର ଧ୍ୱନି
ବାସୁକୀ ଆସନଯାଏ କମ୍ପିଲା ମେଦିନୀ ।
ଗଦା ଉପରେ ପିଟନ୍ତେ ଗଦା ଇଳାକାନ୍ତ
ବାଜନ୍ତେ ଦୈତ୍ୟର ଗଦାହେଲା ଚୂର୍ଣ୍ଣିଭୂତ ।
ସହସ୍ର ଖଣ୍ଡ ହୋଇଣ ପଡ଼ିଲାକ ଭାଜି
ତୁଣ୍ଡ ବିସ୍ତାରି ଦୈତ୍ୟ ଧାଇଁଲା ଗଳଗାଜି ।
ବାବଲଶର ପେଷିଲେ ପୁଣି ସପ୍ତଫଣୀ
ବୋଇଲେ ଦୈତ୍ୟକୁଯାଇ ବେଗେ ପକାହାଣି ।
ଯୁଝିବା ଏହାର ଦୈତ୍ୟସଙ୍ଗେ କେତେ ଆଉ
ମଲେ ବେଗେ ଏ ସଂସାରୁ କଳଙ୍କଟି ଯାଉ ।
ଶୁଣିଣ ବାବଲ ଶର ଗଲା ଅନ୍ତରାଳେ
ଦୈତ୍ୟର କନ୍ଧରେ ଯାଇ ପଡ଼ିଲା ତତ୍କାଳେ ।
ବେନିଖଣ୍ଡ କରିଦେଲା ଦୈତ୍ୟକୁ ଯେ ହାଣି
ଗର୍ଜିଲା ଅସୁର ବୀର ପଡ଼ିଲା ଧରଣୀ ।
ମରନ୍ତେ ଯେ ଚନ୍ଦ୍ରମାଳୀ ଦେଖି ଶରଜିତ
ଆହାରେ ସଖା ବୋଲି ସେ କାନ୍ଦିଲା ବହୁତ ।
ତୋହରି ଗୁଣ ବାହୁନି ମୁହିଁ କାନ୍ଦୁଥିଲେ
ବିଅର୍ଥେ ମୁଁ ମରିଯିବି ସମର ନ କଲେ ।
ନୃସିଂହ ଏକ୍ଷଣି ଛେଦି ପକାଇବ ମୁଣ୍ଡ
ଯୁଦ୍ଧରେ ମଲେ ପବିତ୍ର ହେବ ସିନା ପିଣ୍ଡ ।
ସମର କରୁ କରୁ ଯେ ନାରାଚରେ ମଲେ
ତାହାଙ୍କୁ ଯମଦଣ୍ଡ ନଲାଗେ ପ୍ରାଣ ଗଲେ ।
ଏ ରୂପେ ପାଞ୍ଚିଲେ ଧନୁ ଧଇଲା ସେ ଦୈତ୍ୟ
ନୃସିଂହ ଉପରେ ବାଣ ବିନ୍ଧିଲା ଅୟୁତ ।
ନାରାଚ ଆସନ୍ତେ ତାହାଦେଖି ନାରାୟଣ
ତୀକ୍ଷ୍ଣ ନାରଚେକ ପେଷି ଛେଦିଲେ ତକ୍ଷଣ ।
ଦେଖିଣ ତା ଶରଜିତ ମନେ ମନେ ପାଞ୍ଚି
ବୋଇଲା କେଡେ କ୍ଷତ୍ରିୟ ଅଟେ ଶିରୀବତ୍ସି ।
ଏ ଧନୁର୍ଦ୍ଧର ପଣେ କି ଦେବା ପଟାନ୍ତର
ଏ ରୂପେ କ୍ଷତ୍ରୀ ଜଣେ ନମିଳେ ତିନିପୁର ।
ବ୍ରାହ୍ମଣ କୁଳେ ଜନ୍ମି ଏ କେଡ଼େ ଶରବନ୍ତ
ଆମ୍ଭେ ବୋଲିବାକୁ ଧନୁ ଧରୁ ମାତ୍ର ହସ୍ତ ।
କେଡ଼େ କ୍ଷତ୍ରୀ ହେଲେ କିସେ ଯିବେ ମୋର ଆଗ
ମରିବ ସେ ଛଟପଟ ହୋଇ ପ୍ରାଣତ୍ୟାଗ ।
ଯାକୁ ଜିଣିଲେ ଏ ଯଶ ,ହେବ ଅଳ୍ପ ମୋର
ବ୍ରହ୍ମାଣ୍ଡ ଯାକ ବୋଲନ୍ତି ମୋତେ କ୍ଷତ୍ରୀବର ।
ଏ ରୂପେ ବୋଲି ଦଇତ ଗର୍ଜି କୋପଭରେ
ଧଇଲା ସହସ୍ରେ ବଳ ଧନୁ ବାମକରେ ।
ଲକ୍ଷେକ ବାବଲବାଣ ଯୋଚେ ନେଇ ଗୁଣେ
ମନୁ ବେଗେ ଚଳି ଶର ବର୍ଷିଲା ତକ୍ଷଣେ ।
ପେଷିଲାକ କ୍ଷଣେମାତ୍ର ମୁଁ କାର ଯେ କରି
ପୁଣି ହିଁ ପେଷିଲା ଦୈତ୍ୟ ଅଧାଚନ୍ଦ୍ର ଚାରି ।
ଆଖି ପିଛଡ଼ା ମାତ୍ରକେ କଲା ଶର ବୃଷ୍ଟି
କମ୍ପିଲା ଗୁଣ ଟଙ୍କାର ଘାତେ ନବସୃଷ୍ଟି ।
ପୁଣି ଅୟୁତେ କତୁରୀବାଣ ହସ୍ତେ ଘେନି
ଆଖି ପିଛଡ଼ାମାତ୍ରକ ପେଷେ ଯାତୁଧାନି ।
ପୁଣିହିଁ ପେଷିଲା ତୀକ୍ଷ୍ଣଶର ଲକ୍ଷେ ଚାରି
ଆସନ୍ତି ଶରମାନେ ଯେ ଆକାଶରେ ପୂରି ।
ଅସୁର ବିନ୍ଧିବା ଦେଖି ହସି ଲକ୍ଷ୍ମୀନାହା
ତହିଁକି ଯେ ପ୍ରତିଅସ୍ତ୍ର କଲେ ଚଉବାହା ।
ମନଭେଦୀ ଶର ପେଷିଦ୍ୟନ୍ତେ ନରସିଂହ
ରଖିଲା ଦୈତ୍ୟର ଶର ରୁନ୍ଧି ଅଧା ସ୍ୱର୍ଗ ।
ସବୁ ବେନି ଖଣ୍ଡ କରି ଭାଙ୍ଗି କୁଢ଼ କଲା
ନୃସିଂହ ତୂଣୀରେ ଆସି ପ୍ରବେଶ ହୋଇଲା ।
ଦେଖିକରି ଚମତ୍କାର ହେଲା ଦୈତ୍ୟବୀର
ପର୍ବତଶର ଲକ୍ଷେକ ବିନ୍ଧିଲା ତତ୍ପର ।
ମନ୍ତ୍ରକୁ ପଢ଼ି ନାରାଚ ବେଗେ ଦେଲା ଛାଡ଼ି
ଆସନ୍ତି ଯେ ଗିରିମାନ ଗଗନରେ ଉଡ଼ି ।

ଦେଖିଣ ପେଷନ୍ତି ବଜ୍ରଶର ନାରାୟଣ
ବାଟରେ ବାଜିଣ ଗୁଣ୍ଡା ହେଲା ତତକ୍ଷଣ ।
ପୁଣି ପନ୍ନଗ ଶରକୁ ଶରଜିତ କାଢ଼ି
ପେଷିଲା ଲକ୍ଷେକ ମନେ ମନେ ମନ୍ତ୍ରପଢ଼ି ।
ଧାମନ୍ତେ ସେ କାଳସର୍ପ ହୋଇ ବିକରାଳ
ଶୂନ୍ୟରେ ଆସନ୍ତେ ମୁଖୁଁ ପଡ଼ଇ ଗରଳ ।
ଆସନ୍ତି ସେ ଜିହ୍ୱାମାନକରି ଲହ ଲହ
ଫଣାକୁ ବିସ୍ତାରିଛନ୍ତି ଯେ ଯାହାର ଦେହ ।
ତାହା ଦେଖି ଦେବତାଏ ଶୂନ୍ୟପୁରେ ଡରି
ଲୁଚିଲେ ମେରୁକ୍ରୋଡରେ ମନେ ଭୟ କରି ।
ଦେବତାଙ୍କ ଭୟେ ଜାଣି ଶ୍ରୀନୃସିଂହ ପ୍ରଭୁ
ନାଶିଲେ ଗରୁଡ଼ ଶର ପେଷି ସର୍ପ ସବୁ ।
ଦେଖିଣ ସେ ଶରଜିତ ହେଲା ଚମତ୍କାର
ବୋଇଲା ଭଲା ନୃସିଂହ ଅଟେ ମହାବୀର ।
ମୋହ ବାଣଠାରୁ ତାରବାଣ କେଡ଼େ ଟାଣ
ବିନ୍ଧିଲାକ୍ଷଣି ଟା ଭାଜି ପକାଏ ତକ୍ଷଣ ।
ଏଥର ମୁଁ ଅଗ୍ନିଶର ବେଗେ ପେଷିଦେବି
ନୃସିଂହଗଣ ଯାକଙ୍କୁ ପୋଡ଼ି ପକାଇବି ।
ଏ ରୂପେ ବୋଲି ଧନୁରେ ଶର ନେଇ ରଖି
ଦକ୍ଷିଣ କର୍ଣ୍ଣ ପର୍ଯ୍ୟନ୍ତ ଆଣିଲାକ ଝିଙ୍କି ।
ବିନ୍ଧନ୍ତେ ସେ ଅଗ୍ନି ଜଳିଉଠେ ଶୂନ୍ୟେ ପୂରି
ଆସନ୍ତେ କୃଶାନୁ ଘୋଟି ଦେଖି ନରହରି ।
ଧଇଲେ ଜଳଧାରା ଶର ଦେବରାଜ
ହେଲା ଜଳବୃଷ୍ଟି ଲିଭିଗଲା ଅଗ୍ନିତେଜ ।
ଦେଖି ଶରଜିତ ବିନ୍ଧେ ପୁଣି ମେଘଶର
ଛେଦିଲେ ବାୟୁବତାସରେ ତାହା ଚକ୍ରଧର ।
ନାଶକର ଶର ପୁଣି ପେଷନ୍ତେ ଦଇତ୍ୟ
ଛେଦିଲେ ବାରୁଣାଶରେ ତାହା ଲକ୍ଷ୍ମୀକାନ୍ତ ।
ଦେଖିଣ ଦୈତ୍ୟବୀର ମନରେ କଲାଶଙ୍କା
ବୋଇଲା କେଡ଼େ କ୍ଷତ୍ରୀ ଏ ଅଟେ ବିଷ୍ଣୁ ଏକା ।
ଯୁଝିଲେ ଏ ପ୍ରଭୁ ସଙ୍ଗେ ମଙ୍ଗଳ ତ ନାହିଁ
ବାହୁଡ଼ି ଗଲେ ହସିବା ରାଜା ମୋତେ ଚାହିଁ ।
ତେରପଦ୍ମ ଶ୍ରୀ ନୃସିଂହଗଣ ଯହିଁ ଛନ୍ତି
ତହିଁକି ହୋଇଛି ଜଣେ ମୁହିଁ ଏକାକ୍ଷତ୍ରୀ ।
ଯୁଦ୍ଧ କରୁ କରୁ ଏ ନୃସିଂହ ହାତେ ମଲେ
ପବିତ୍ର ହୋଇ ବୈକୁଣ୍ଠ ପୁରେ ଯିବି ଭଲେ ।
ଏ ରୂପେ ପାଞ୍ଚ ଦଇତ୍ୟ କରେ ଧରି ଧନୁ
ପେଷେବାଣ ଶୂନ୍ୟେଯେହ୍ନେ ଉଇଁଆସେ ଭାନୁ ।
ଏ ରୂପେ ଆସନ୍ତେ ଶରମାନ ମହାତେଜେ
ଛେଦିଲେ ତୀକ୍ଷଣନାରାଚ ପେଶି ଦେବରାଜେ ।

ପାଞ୍ଚଲେ କରିବା ଏହା ସାଥେ କେତେ ଯୁଦ୍ଧ
ଆଣ୍ଡି ନାରାଚ ପେଷିଣ କରିଦେବା ବଧ ।
ଏହା ପାଞ୍ଚ ପ୍ରଭୁ ଅଜଗବ ଧନୁକାଢ଼ି
ଗୁଣେ ବସାଇ ବାବଲ ଶର ମନ୍ତ୍ର ପଢ଼ି ।
ବୋଇଲେ ଦୈତ୍ୟର ଶିରପକା ବେଗେ ହାଣି
ଗୃହକୁ ଗଲେ ଯେ ଶୀଘ୍ର ହେବ ଦେହପାଣି ।
ଶୁଣିଣ ବାବଲଶର ଚଳିଲା ତତ୍କାଳେ
ଆସିଲା ଦୈତ୍ୟର ଶିର ହାଣି କୋପାନଳେ ।
ନୃସିଂହ ତୂଣୀରେ ଆସି ପଶିଲା ତତ୍ପର
ଶୁଣ ହେ କଳହ ପ୍ରିୟ କହେ ବେଦବର ।
ଏ ରୂପେ ମଲେ ମୁରର ସେନାପତି ତିନି
ଚନ୍ଦ୍ରମାଳୀ ଶରଜିତ କାଙ୍କୋଳାକୁ ଘେନି ।
ଆବର ଯେତେକ ସେନା ଥିଲେ ତ ଉବୁରି
ନୃସିଂହ ଗଣ ତାହାଙ୍କୁ ଦେଲେ ସବୁ ମାରି ।
ଅୟୁତେକ ଗଜ ଅଶ୍ୱ ଲକ୍ଷେ ଲମ୍ବଗ୍ରୀବ
ଜଣେ ଉବୁରି ତହୁଁ ନଗଲେ ଜାଣଧ୍ରୁବ ।
ସଂହାରିଲେ ସମସ୍ତଙ୍କୁ ଶ୍ରୀନୃସିଂହଗଣେ
ଗଙ୍ଗାରେ ସ୍ନାନ କରିଣ ଗଲେ ପ୍ରଭୁ ସ୍ଥାନେ ।
ନୃସିଂହ ବୋଲେ ଆନନ୍ଦବନରେ ରହିଥାଅ
ଯଜ୍ଞବେଦୀପରେ ବସି ତୁମ୍ଭେ ପୂଜାପାଅ ।
ତେର ପଦ୍ମଯାଏ ତହିଁ ବାନ୍ଧି କୁଞ୍ଜଲତା
ସେହି କୁଞ୍ଜବନେ ତୁମ୍ଭେ ହେବ ହର୍ତ୍ତା କର୍ତ୍ତା ।
ନୃସିଂହ ଗୋଟିଏ କୁଞ୍ଜ ଏକବାନ୍ଧ ରହ
ଦଇତ୍ୟ ଯୁଝିଲେ ପୁଣି ଆସି ଦେଖାଦିଅ ।
ରହିଲେ ନୃସିଂହଗଣେ ପ୍ରଭୁ ଆଜ୍ଞାପାଇ
ଶୂନ୍ୟରେ ସ୍ତୁତି କରନ୍ତି ଦେବଗଣେ ରହି ।
ଚନ୍ଦନ ଦୁର୍ବା ଅକ୍ଷତ କରେ ଧରି ପୁଷ୍ପ
ଦେବତାମାନେ ମିଳିଲେ ଆସି ବିଷ୍ଣୁ ପାଶ ।
ଶ୍ରୀନୃସିଂହ ମଥାପରେ କଲେ ପୁଷ୍ପବୃଷ୍ଟି
ନମନ୍ତି ଯେ ସ୍ତୁତିକରି ଦେବେ କୋଟି କୋଟି ।
ବୋଲନ୍ତି ନୃସିଂହ ଜୟ ଜୟ ପଦ୍ମନାଭ
ପାଦ ସେବୁଛୁ ତେତିଶକୋଟି ଆମ୍ଭେ ଦେବ ।
ଆଦ୍ୟ ଅବତାର ଶ୍ରୀ ନୃସିଂହ ନରହରି
ବଲ୍ଲଭ ଘରେ ଜନ୍ମିଲେ ଆସି ଦେହ ଧରି ।
ଆନ କେହୁ ନିବାରନ୍ତେ ଏତେ ଦୈତ୍ୟବଳ
ଏ ଦୈତ୍ୟଗଣଙ୍କୁ ତୁମ୍ଭେ ପ୍ରତ୍ୟକ୍ଷେ ଅନଳ ।
ଏ ଯେଉଁ କାଙ୍କୋଳାସୁର ମୁର ସେନାପତି
ସମସ୍ତ ସେନା ଉପରେ ଅଟେ ବଡ଼ମୂର୍ତ୍ତି ।
ସ୍ୱର୍ଗରେ ରଖିଲା ବାସବଙ୍କୁ ବନ୍ଦିକରି
ବହୁତ କ୍ଳେଶ ପାଇଲା ତହିଁ ବଜ୍ରଧାରୀ ।

ତୁମ୍ଭ ପ୍ରସାଦରୁ ଏବେ ଭୁଞ୍ଜି ବସେ ଭୋଗ
ନଶ୍ଚିନ୍ତ ହୋଇ ବସିବ ଇନ୍ଦ୍ରଦେବ ସ୍ୱର୍ଗ ।
କୃଷ୍ଣବଲ୍ଲଭ ନୃପତି ବଡ଼ ଭାଗ୍ୟବନ୍ତ
ପ୍ରତ୍ୟକ୍ଷେ ଲଭିଲା ପୁତ୍ର କରି ଲକ୍ଷ୍ମୀକାନ୍ତ ।
ପ୍ରତ୍ୟକ୍ଷେ ଅଦିତିଅଂଶ ଅଟେ ଭାଗ୍ୟବତୀ
ଏ ରୂପେ କହନ୍ତି ପାଦେ ନମି ଦେବେ ସ୍ତୁତି ।
ମେଲାଣି ହୋଇଣ ଦେବେ ଗଲେ ଯେଝା ଦେଶ
ସେ ପାଦେ ଶରଣ ବିପ୍ର ପୀତାମ୍ବର ଦାଶ ।
ଦେବଙ୍କୁ ମେଲାଣି କରି ପ୍ରଭୁ ବ୍ରହ୍ମରାଶି
ନଗରକୁ ବିଜେ କଲେ ଗରୁଡ଼ରେ ବସି ।
ଆଗରେ ବଜାଇ ବୀର କାହାଳୀ ଯେ ଶଙ୍ଖ
ନୃସିଂହଙ୍କ ଚାରିପାଖେ ଯାଇ ସୈନ୍ୟଯାକ ।
ଆଗରେ ସୁଜାଣ ମନ୍ତ୍ରୀ କର୍ଣ୍ଣାଟ ଈଶ୍ୱର
ଚଢ଼ିଛନ୍ତି ଦେବଯାନେ ଅନନ୍ତ ଭୂଧର ।
ବଦରିକା ବଡ଼ଦାଣ୍ଡେ ଯାନ୍ତି ଆଦିମୂଳ
କରନ୍ତି ଶୂନ୍ୟେ କୁସୁମବୃଷ୍ଟି ଦେବକୁଳ ।
ଚୌଷଠି ସହସ୍ର କନ୍ୟା ଦ୍ୟନ୍ତି ହୁଳହୁଳି
ନିଜ ମନ୍ଦିରେ ମିଳିଲେ ଯାଇଁ ବନମାଳୀ ।
ଆବର ଅଛନ୍ତି ଅଷ୍ଟସଖୀ ସେବା ଲାଗି
ଯାହାର ଯେମନ୍ତ ସେବା କରନ୍ତି ଯେ ବେଗି ।
ପୁତ୍ରଙ୍କୁ ଘେନିଣ ମାଏ ଧରି ଅର୍ଘ୍ୟଥାଳୀ
ବନ୍ଦାନ୍ତି ବଧୂଙ୍କୁ ସଙ୍ଗେ ଘେନି ବଳମାଳୀ ।
ନୃସିଂହଙ୍କ ବେନି ନେତ୍ରେ କନ୍ୟା ବେନି ନେତ୍ର
ଚାହାନ୍ତି ପ୍ରେମ ରସରେ ହୋଇ ଏକସୂତ୍ର ।
ଜାଣିବା ମାତ୍ରକେ ନେତ୍ର ହେଲା ପ୍ରେମେ ପ୍ରୀତି
ନୟନେ ନୟନେ ରଖି ତୋଷକଲେ ମତି ।
ନୃସିଂହ ଜାଣନ୍ତି ଏହା ଆନ ଜାଣେ ନାହିଁ
କେବଳ ନାୟିକାଗଣେ ଅଗୋଚର ରହି ।
ବ୍ରହ୍ମାଣ୍ଡେ ସେ ନାୟିକାଙ୍କପରି ନାହିଁ ସ୍ତିରୀ
ଖୋଜିଲେ ମିଳିବ କୋଟିକରେ ଏକ ନାରୀ ।
ଏଥିଉତ୍ତାରେ ନୃସିଂହ ପ୍ରଭୁ ଭାବଗ୍ରାହୀ
ଗରୁଡ଼ କନ୍ଧୁ ଉତୁରି କଲେ ସଭାଯାଇ ।
ମନ୍ତ୍ରୀଙ୍କୁ ବୋଇଲେ ଗୃହ ମଧ୍ୟେ ଏବେ ଯାଅ
କାଲିକି ସଇନ୍ୟ ସାଜିଥିବି ଜାଣିଥାଅ ।
ଲେଉଟି ଆଉ ଦଇତ୍ୟ ଆସିବେଟି ଯୁଝି
ଖବର ଦେବ ହୋ ତୁମ୍ଭେ କାଲି ମୋତେ ବୁଝି ।
ମୁରର ମରିବା ଯାଏ ନିତି ହେବ ଯୁଦ୍ଧ
ଆମ୍ଭ ବ୍ୟତୀତ ନୁହଇ ଆନେ ସେହୁ ସାଧ ।
ଶୁଣିଣ ସେ ମନ୍ତ୍ରୀବର ହୋଇଲା ପ୍ରଣମି
ବୋଇଲା କରିବି ମୁହିଁ କିସ ଅନ୍ତର୍ଯ୍ୟାମୀ ।

ସମସ୍ତ ଲୋକଙ୍କ ମନ ଆଗୁଁ ତୁମ୍ଭେ ଜାଣ
ଉତ୍ତମ କରି କହିଲେ ମାତ୍ର କେ ଯେ ପୁଣ ।
କୀଟୁ ବ୍ରହ୍ମଯାଏ ସବୁ ଯାହାକୁ ତ ଜଣା
ମୁଁ କି କହିବି ମହିମା ଯାର ଅକଳଣା ।
ଛାମୁରେ ଆସିଣ ଆମ୍ଭେ କରନ୍ତେ ପ୍ରକାଶ
ତାହା ତୁମ୍ଭେ ଜାଣିଯିବ ଆହେ ଜଗଦୀଶ ।
ଶ୍ରୀନୃସିଂହ ସ୍ୱାମୀ ମନେ ମନେ ବଡ଼ ହସି
ବୋଇଲେ ସାକ୍ଷାତେ ମନ୍ତ୍ରୀ ତୁ ହୋ ବ୍ରହ୍ମଅଂଶି ।
ଏ ରୂପେ କହିଲୁ ହେବା କଥା ଚିହ୍ନି ମୋତେ
ନୋହିଲେ ଆନ ଚିହ୍ନି ନ ପାରେ କଦାଚିତେ ।
ଏ ରୂପେ ଶ୍ରୀମୁଖେ କହି ପ୍ରଭୁ ଆଜ୍ଞା ଦେଲେ
ମେଲାଣି ଦେଇଣ ପ୍ରଭୁ ଭିତରକୁ ଗଲେ ।
ମଣୋହିକୋଠାରେ ବିଜେ ହେଲେ ବେନିଭାଇ
ଶ୍ରୀଅଙ୍ଗ ପଖାଳି ପରେ ଖଦିଲାଗି ହୋଇ ।
କମଳା ସମ୍ଭାଦିଛନ୍ତି ଷଡ଼ରସେ ପାକ
ପରଷନ୍ତି ଭଗବତୀ ଭୁଞ୍ଜନ୍ତି ନୃସିଂହ ।
ଶେଷଦେବଙ୍କୁ ଘେନିଣ ପ୍ରଭୁ ଭାବଗ୍ରାହୀ
ଭୁଞ୍ଜିସାରି ପିନ୍ଧାଲାଗି ଦେଲେ ବେନିଭାଇ ।
ଖଗେଶ୍ୱରଙ୍କୁ ପ୍ରସାଦ ଦେଲେ ପୁଣି ଖଞ୍ଜି
ଅତି ତୋଷ ହେଲେ ବିଷ୍ଣୁ ନିର୍ମାଲ୍ୟ ଯେ ଭୁଞ୍ଜି ।
ଆବର ଯେ ଅବଶେଷେ ଯେତେ ଥିଲା ବଳି
ଧଇଲେ ନାୟିକାଗଣ ତାହା କରେ ତୋଳି ।
ଭୁଞ୍ଜିଲେ କୈବଲ୍ୟ ଜୁର କରି ପ୍ରେମଭୋଳେ
ଅଟନ୍ତି ନୃସିଂହ ଅଙ୍ଗ ସେହୁ ସର୍ବ କାଳେ ।
ଶ୍ରୀନୃସିଂହ ଜନ୍ମ ହେଲେ କନ୍ୟା ଜନ୍ମ ହୋନ୍ତି
ନୋହିଲେ ସେ ନିତ୍ୟସ୍ଥଳେ ସଦା ରହିଥାନ୍ତି ।
ନୃସିଂହ ରାସ ହେଉଛି ନିତ୍ୟ ନିତ୍ୟସ୍ଥଳେ
ରାସ ଚିହ୍ନି ନ ପାରଇ କେହୁ ଭୂମଣ୍ଡଳେ ।
କେବଳ ଭକତିମନ୍ତ ବିଜ୍ଞ ସାଧୁଜନେ
ମୋ ନିତ୍ୟକୁ ଚିହ୍ନି ଏକା ପାରନ୍ତି ସେମାନେ ।
ନିତ୍ୟ ନିର୍ଗୁଣ ବ୍ରହ୍ମ ଯେ ଅଟନ୍ତି ଶ୍ରୀହରି
ବ୍ରହ୍ମ ପ୍ରଳୟକାଳେ ସେ ନିତ୍ୟଅଙ୍ଗ ଧରି ।
ନିତ୍ୟ ଯାହାକୁ ବୋଲି ସେ ପୂର୍ଣ୍ଣାନନ୍ଦ ଦେହୀ
ନିତ୍ୟ ଥିବାରୁ ସେ ରାସ ନିତ୍ୟ ପ୍ରକାଶଇ ।
ନିରାଳମ୍ବେ ବିଷ୍ଣୁଙ୍କୁ କେ ଚିହ୍ନି ନ ପାରନ୍ତି
ଅଣହେତୁରୁ ପ୍ରାଣୀଟି ବ୍ୟର୍ଥେ ମରୁଛନ୍ତି ।
ବୁଝିଲେ ଅଟନ୍ତି ଏକା ନୃସିଂହ ଯେ ନିତ୍ୟ
ତାହାଙ୍କ ବିନୁ କେ ଆନନାହିଁ ଗତାଗତ ।
ଅନିତ୍ୟ ବୋଲି ସକଳ ରୂପ ଜାଣ କହି
ନିତ୍ୟକୁ ନଭଜି ନରେ ଗୁପ୍ତେ ହୋନ୍ତି ମୋହି ।

ନିତ୍ୟଟି ଶ୍ରୀଜଗନ୍ନାଥ ନିର୍ଗୁଣ ଶ୍ରୀହରି
ନିତ୍ୟକୁ ଚିହ୍ନି ଭଜିବେ ତେବେ ଯାଇ ତରି ।
ସର୍ବଦା ଯେହୁ ଥାଏଟି ତାକୁ ନିତ୍ୟ ବୋଲି
ଅନିତ୍ୟ ଯେ ଅଟେ ଶୁଣ ସେହୁରୂପ ଭାଳି ।
ବିଚାରିଲେ ସମସ୍ତଙ୍କ ଦେହ ଅଟେ ଏକ
କୀଟରୁ ବ୍ରହ୍ମପର୍ଯ୍ୟନ୍ତେ ଅଟନ୍ତି ଯେ ଲୋକ ।
ଏ ଦୁର୍ଲ୍ଲଭ ଦେହ କ୍ଷଣଭଙ୍ଗୁର ହୁଅନ୍ତେ
ତେଣୁ ଯେ ଅନିତ୍ୟ ବୋଲି ଲେଖନ୍ତି ସମସ୍ତେ ।
ବିଷ୍ଣୁ ଅବତରି ଯେବେ ଧରନ୍ତିଟି ରୂପ
ସେହି ରୂପେ ଗଲେ ହୁଏ ନିତ୍ୟେ ରାସକଳ୍ପ ।
ଭଜିଲେ ସେ ରୂପେ ସର୍ବେ ନିତ୍ୟେ ରାସ ଯାଇ
ନିତ୍ୟକୁ ଜନ୍ମନ୍ତି ରାସ ପୁଣି ଦେହ ବହି ।
ନିତ୍ୟରାସକୁ ଚିହ୍ନିଲେ ନିତ୍ୟକୁ ଯେ ଜାଣି
ସେ ରାସମଣ୍ଡଳୁ କନ୍ୟା ପ୍ରଭୁଛନ୍ତି ଆଣି ।
ବଦ୍ରିକା ଧାମେ ନାୟିକା କରିଛନ୍ତି ହରି
ଦ୍ୱାପର ଯୁଗେ ହୋଇବେ ସେହୁ ଗୋପନାରୀ ।
ଏହି ବଦରିକା ଧାମେ କୈବଲ୍ୟ ଭୋପୁର
ଶ୍ରୀବିଷ୍ଣୁ ପ୍ରସାଦ ଖାଇହେଲେ ଅଜ୍ରାମର ।
ଏ ରୂପେ ମଣୋହି କରି ପ୍ରଭୁ ଦେବରାଜେ
ଆଚମନ ସାରି ହେଲେ ପଲ୍ୟଙ୍କରେ ବିଜେ ।
ସେବିଲେ ଶ୍ରୀମହାଲକ୍ଷ୍ମୀ ଆସି ହୃଷୀକେଶ
ସେ ପାଦେ ଶରଣ ବିପ୍ର ପୀତାମ୍ବର ଦାଶ ।
ଏଥିଉତ୍ତାରେ ନାଦରମୁନି ତପୋଧନ
ବ୍ରହ୍ମାର ପାଦରେ ନମି କରନ୍ତି ଦର୍ଶନ ।
ବୋଲନ୍ତି କହ ଅସୁର ଏବେ ଯେତେମଲେ
କାଙ୍କୋଳା ଯେ ଶରଜିତ ଚନ୍ଦ୍ରମାଳୀ ତୁଲେ ।
ଏମାନେ ତ ମରିବାର ଜାଣିଲା କି ମୁର
ସେ କଥା କହ ଶୁଣିମା ଆହେ ବେଦବର ।
ନାରଦ ଯେ ପଚାରନ୍ତି କହନ୍ତି ଚୌମଥା
ବୋଲନ୍ତି ହୋ ସାବଧାନେ ଶୁଣ ଦୈତ୍ୟ କଥା ।
ପୁରାଣ ମହାର୍ଣ୍ଣବ ଏ ଅଟେ ମଧୁକୁଣ୍ଡ
ଚତୁର୍ଥ ସାଗର ଏହି ଅଟେ ମୋକ୍ଷଦାଣ୍ଡ ।
ଶୁଣିବେ ବିପ୍ରାଦି ଚାରିବର୍ଣ୍ଣ ଯେବେ ଏହା
ଦେହଅନ୍ତେ ବୈକୁଣ୍ଠକୁ ନେବେ ଲକ୍ଷ୍ମୀନାହା ।
ଶୁଣିଲେ ଯେ ସ୍ତିରୀକୁଳ ହେବେ ପୁତ୍ରବତୀ
ଯଜ୍ଞପତ୍ନୀଙ୍କ ପରାୟେ ବୋଲାଇବେ ସତୀ ।
ଆବର ବ୍ରହ୍ମାଣ୍ଡେ ଯେତେ ଜାତିଛନ୍ତି ପୁରି
ନୃସିଂହ ଗ୍ରନ୍ଥ ଶୁଣିଲେ ଯିବେ ନିଷ୍ଠେ ତରି ।
ଅସୁର ମରିବା କଥା କହିବା ଯେ ଶୁଣ
ରାଜାର ଆଗେ କହିଲେ ଆସି ଚାରଗଣ ।

ବନମଧ୍ୟେ ଲୁଚିଥିଲେ ଯେଉଁ ସବୁ ଚାରେ
ପ୍ରବେଶ ହେଲେ କନକାବତୀ ନଗରରେ ।
ସଭାର ମଧ୍ୟରେ ବସିଅଛି ମୁରାସୁର
ପୁତ୍ରଙ୍କର ଶୋକଚିନ୍ତା କରେ ଶତେଥର ।
ମନର ଆରମ୍ଭେ ମାତ୍ର କହେ କଥା କେତେ
ଏମନ୍ତ ବେଳେ ମିଳିଲେ ଆଗେ ଆସି ଦୂତେ ।
ମନ୍ତ୍ରୀ ବୋଇଲା ଭୋ ସ୍ୱାମୀ ଶୁଣ ନୃପବର
ବଦରିକା ନଗ୍ର ଦୂତେ ଆସିଲେ ତୋହର ।
କାଙ୍କୋଳା ଗଲା କଥା ତ ଭଲ ଦିଶୁନାହିଁ
ଯୋଗିନୀ ମୁଖରେ ଗଲାଯୁଦ୍ଧେ ସଜହୋଇ ।
ଭଙ୍ଗାଇ ରଖିବ ବୋଲି ଭାବିଥିଲି ହୃଦେ
ତୁମ୍ଭଙ୍କୁ ଭୟ କରିଣ ରହିଲି ବିଷାଦେ ।
ଦୂତେ ଆସିଲେଣି ବୁଝି ଏହି ସେହି ବାର୍ତ୍ତା
ଶୁଣିଣ ଅଧିକେ ରାଜା ମନେ କଲା ଚିନ୍ତା ।
ସୁବିଜ୍ଞ ମନ୍ତ୍ରୀ ଦୂତଙ୍କ ମୁଖ ପୁଣି ଚାହିଁ
ବୋଇଲା କହ ଶୁଣନ୍ତୁ ବାର୍ତ୍ତା ନୃପସାଇଁ ।
ଶୁଣି ଦୂତମାନେ ରାଜା ଛାମୁକୁ ଯେ ଗଲେ
ଦର୍ଶନ କରିଣ ପାଦେ ଆଗେ ଉଭା ହେଲେ ।
ମୁରବୋଇଲା ଯେ ମୋରଗଲେ ତିନିସେନା
ବଦ୍ରିକାପୁର କି ଜୟ କଲେ କହ କିନା ।
କେଡ଼େ ସନ୍ତ୍ରର୍ବରେ ଯାଇ କି କଲେ ସେ ଥାଟ
ଦୂତ ବୋଇଲେ ଭୋ ଦେବଗଲା ସବୁ ନଷ୍ଟ
ସେନାପତିମୂଳେ ତୁମ୍ଭ ସୈନ୍ୟ ଯେତେ ଥିଲେ
ଖବର ଆଣିଦେବାକୁ କେହି ନ ରହିଲେ ।
ଏକକୋଟି ମତ୍ତଗଜ ଅଶ୍ୱ ଯେ କୋଟିଏ
କୋଟିଏ ମଇଁଷି ଓଟ ଗଲେ ସବୁ କ୍ଷୟେ ।
ରକ୍ତନଦୀ ତିନିତାଳ ଉତ୍ସର୍ଗେ ବହିଲା
ଗଙ୍ଗାର ସଲିଳଯାକ ରକ୍ତମୟ ହେଲା ।
ପୃଥ୍ୱୀରେ ଯେ ମଡ଼ାକୁଢ଼ ହୋଇଗଲେ ଭାସି
ରକ୍ତନଦୀରେ ବୋଇତ ପ୍ରାୟ ମଡ଼ା ଦିଶି ।
ନାଚନ୍ତି କୁକୁର କାକ ଗୃଧ୍ର ସାରଗୁଣା
ଜମ୍ବୁଳ ପିଶାଚ ଭୂତ ପ୍ରେତ ଅକଳନା ।
ପର୍ବତ ଖୋଲରେ ଆମ୍ଭେ ଲୁଚିଥିଲୁ ଯାଇ
ଆସିଲେ ନୃସିଂହଗଣ ରଣମଦେ ଧାଇଁ ।
ପଛଭାଗରୁ ପିଟିଲେ ଧରି ଲୁହାବାଡ଼ି
ଆବର ଭୁଷଣ୍ଡ ଗଦାଘାତେ ଗଲେ ପଡ଼ି ।
ତୁମ୍ଭେ ତିନିସେନାପତି ଦେଖି ତାହା ନେତ୍ରେ
ବିନ୍ଧିଲେ ଶର ନୃସିଂହ ଶେଷଦେବ ଗାତ୍ରେ ।
ଏ ରୂପେ ଅନେକ ଯୁଦ୍ଧ ତିନିସେନା କଲେ
ଅକଳେ ବଲ୍ଲଭପୁତ୍ର ହାତେ ପ୍ରାଣ ଦେଲେ ।

ଏହା ଶୁଣି ମୁରାସୁର ପଡ଼ି ମୂର୍ଛାଗଲା
ଘଡ଼ିକେ ଚେତନାପାଇ ବହୁଶୋକ କଲା ।
ବୋଇଲା ଆରେ କାଙ୍କୋଳା ଆରେ ଶରଜିତ
ଆରେ ଚନ୍ଦ୍ରମାଳୀ ଅନାୟାସେ ହେଲହତ ।
ଏଡ଼େବଡ଼ ରଥି ହୋଇ ବ୍ୟର୍ଥେ ମରିଗଲ
ବିପ୍ରହସ୍ତେ ମରି ମାତ୍ର ସ୍ୱର୍ଗପ୍ରାପ୍ତ ହେଲ ।
ବିଜ୍ଞମନ୍ତ୍ରୀ ମୋହର ଯା କହିଲା ସେ ସତ
ଯୋଗିନୀମୁଖେ ଯାଇରେ ହେଲ ପ୍ରାଣେହତ ।
ଅକାଳ ମୃତ୍ୟୁରେ ମେଣ୍ଟି ନ ପାରିଲ କେହି
ମଲରେ ବିପ୍ରଙ୍କ ହସ୍ତେ ଏଡ଼େ କ୍ଷତ୍ରୀହୋଇ ।
ଯାହାକୁ ଦେଖିଲେ ଶତ୍ରୁ କମ୍ପେ ଥରହର
ମଲରେ ବିପ୍ରଙ୍କ ହାତେ ସେହି ତିନି ବୀର ।
ପୁତ୍ରଙ୍କର ଶୋକ ସିନା ଲାଗୁଥିଲା ମୋତେ
ତୁମ୍ଭଙ୍କୁ ଏବେ ମୂର୍ଛି ମୁଁ ରହିବି କେମନ୍ତେ ।
ଏ ରୂପେ ହେବ ବୋଲି କି ଥିଲି ମୁହିଁ ଜାଣି
ବଲ୍ଲଭ ପୁତ୍ରଙ୍କୁ ଏବେ କେ ଦେବରେ ଆଣି ।
ମୋ ଆଗେ ପଡ଼ିଲେ ଯାହା କରନ୍ତି ମୁଁ ଧରି
କହିଲେ କିସ ହେବ ସେ କଥା ମନେ କରି ।
ଏ ରୂପେ ବୋଲି ସେ ରାଜାକରେ ଗୁରୁଶୋକ
ସଭାରେ ସବୁଙ୍କୁ ଚାହିଁ କାନ୍ଦଇ ଅନେକ ।
ଜଣ ଜଣଙ୍କୁ ସେ ଚାହିଁ କାନ୍ଦେ ଉଚ୍ଚକରି
ବୋଲଇ କେଡ଼େ ରଥି ମୋ ବ୍ୟର୍ଥେ ଗଲେ ମରି ।
ଅଖଡ଼େ ମାଇଲା ମୋର ପୁତ୍ର ମହାବାହୁ
ଶ୍ରୀନୃସିଂହ ଶେଷ ମୋତେ ହେଲେ କାଳରାହୁ ।



## ଖଡ଼ିକା ହିରଣ୍ୟକେଶୀ ଓ କୃତ କେଶରୀ ଯୁଦ୍ଧକୁ ଗମନ ଓ ମୃତ୍ୟୁ

ରାଜାକ୍ରୋଧ ଦେଖି ଯେ ହିରଣ୍ୟ କେଶୀବର
ଖଡ଼ିକାଯେ କୃତକେଶୀ ଉଠି ଧାତିକାର ।
ବୋଇଲା କାଙ୍କୋଳାଯୁଦ୍ଧ ନ ଜାଣଇ କିଛି
ସୈନ୍ୟଲୋଚାଏ ଅଖଡ଼େ ନେଇ ମରାଇଛି ।
ସୈନ୍ୟଙ୍କୁ ପାଖରେ ରଖି ସମର ଯେ କରେ
ସେକ୍ଷତ୍ରୀ କେତେବେଳେ ନମରେ ଅଖଡ଼ରେ
ନ ଧରି ଲୋକବର୍ଗଙ୍କୁ ସମୂଳେ ମାରିଲା
କେଡ଼େ କ୍ଷତ୍ରୀ ହୋଇ ବିପ୍ରହସ୍ତେ ପ୍ରାଣଦେଲା ।
ଯୁଦ୍ଧର ଛନ୍ଦ ତର୍କ ଯେ ପ୍ରାଣୀ ବୁଝି ଜାଣେ
ସେ ସିନା ଜିଣି ଆସଇ ରଣେ କ୍ଷତ୍ରୀପଣେ ।
ଆମ୍ଭେମାନେ କରିବୁ ଯେ ଗଲେ ନାନାଛନ୍ଦ
ସାଧି ଲୋପବିଦ୍ୟା ମାରି ଦେବୁ ଆଦିକନ୍ଦ ।
ହୋଇଣ ସେ କୀଟ ପୋକ ପଶିବୁ ତା ପୁରେ
ଚାଳେ ବାଡ଼େ ଲୁଚି ରହିଥିବୁ ଦିବସରେ ।
ନିଶାରେ ଶୁଅନ୍ତେ ନିଶବଦେ ବେନିଭାଇ
ମାଡ଼ି ବସିଣ ଝୁଣିବୁ ତାଙ୍କ ତଣ୍ଟି ଯାଇ ।
ଆବର ଯେ ନଗ୍ରଯାକ ଥିବେ ଯେତେ ଲୋକ
ସବୁଙ୍କୁ ଯେ ଗିଳିଦେବୁ ହୋଇ ଡିଆଁପୋକ ।
ଏଥକୁ ଶୋକ ନକର ରାଜା କଦାଚିତେ
ତୁ ଜୀଇଥିଲେ ଜନ୍ମିବେ ପୁତ୍ର ନାତି କେତେ ।
ଗର୍ଭରୁ ଜନ୍ମିଲେ ମଲାସରି ଭାବ ଚିତ୍ତେ
ସ୍ଥାବର ଜଙ୍ଗମ କୀଟ ପତଙ୍ଗ ସହିତେ ।
ଜନ୍ମ ନୋହୁଣ ଅମର ପ୍ରାଣୀ ହୋଇଥାଇ
ଜନ୍ମ ହୋଇଲେ ସେ ମୃତ୍ୟୁ ଦେହ ନ ଛାଡ଼ଇ ।
ଗର୍ଭରୁ ଜନ୍ମ ହୋଇଣ କେହୁ ଅବା ମରେ
କେହୁ ଅବା ମରଇଟି ଶହକ ଭିତରେ ।
ସଂସାରେ ଚିରହୋଇ କେ ଜାଣ ରହିଲାଣି
ଭୁଞ୍ଜିଲା ଗ୍ରାସ ଖାଇ ନପାରେ ଦେହ ଘେନି ।
ଘଡ଼ିକ ମଧରେ ଆସି ଘୋଟେ ନାନାଭୋଗ
କେ ଚିଡ଼ି ହୋଇ କଲାଣି ରହି କେତେ ଭୋଗ ।
ଏଥକୁ ଚିନ୍ତା କିଛି ନ କର ରାଜା ତୁହି
ଯାଉଛୁ ମାରି ଆସିବୁ ଆମ୍ଭେ ଭାବଗ୍ରାହୀ ।
ଆମ୍ଭେ ବାହୁଡ଼ିଲେ ପଛେ ତୁହି ଯୁଝି ଯାଅ
ମନକୁ ଆସଇ ଯାହା ବିଚାରି ତା କହ ।
ଶୁଣି ସେହି ମୁରାସୁର ରହେ ହୋଇ ତୁନି
କହିଲେ ରାଜା ଆସ୍ୟକୁ ଚାହିଁ ଶୁକ୍ରମୁନି ।
ବୋଇଲେ ଛାମୁରେ ରଥି ତୁମ୍ଭ ପ୍ରାୟେ ଥାଉଁ
ଯାଅ ଯା ବୋଲିଣ ଆଜ୍ଞା କିମ୍ପାଇ ନ ଦେଉ ।
ଯାହାର ଯେ ଭାତଖାଇ ସେ ତା ହିତେ ଥାଇ
ଏହା ନ କଲେ ତାହାକୁ ପୃଥ୍ୱୀ ନ ସହଇ ।
ରାଜା କାନ୍ଦୁଅଛି ଶୋକ ସନ୍ତାପରେ ବସି
ଯାଅ ଯାଅ ଯୁଦ୍ଧ କର ତିନି ସେନା ମିଶି ।
ଶୁଣିଣ ବୋଇଲା ମୁରାସୁର ଆଚ୍ଛା ଆଚ୍ଛା
ଶୁକ୍ରଙ୍କୁ ନମାଇଲେ ନ ହୁଏ ମୋର ରକ୍ଷା ।
ବଲ୍ଲଭ ପୁତ୍ରଙ୍କୁ ରଣେ ଆସିବ ଯେ ହାଣି
ତାହାକୁ କରିବି ମୋର ରାଜ୍ୟ ଶିରୋମଣି ।
ଶୁଣି ତ୍ୱରେ ତିନିବୀରେ ଚଳିଲେ ତତକ୍ଷଣ
ଖଡ଼ିକା ହିରଣ୍ୟକେଶୀ କୃତକେଶୀ ଜାଣ ।
ନିଶାରେ ଚଳିଲେ ଏକାହୋଇ ତିନିବୀର
ଶୂନ୍ୟରେ ସେ ଗଲେ ଗମି ବଦରିକା ପୁର ।
ବତାସ ପରାୟ ଗଲେ ଗଗନେ ସେ ଉଡ଼ି
ରହିଲେ ଆନନ୍ଦବନେ ଯାଇ ବସା ପାଡ଼ି ।

ନୃସିଂହଙ୍କ ଉପବନ ଦେଖି କଉଣପେ
ଅପୂର୍ବ ମଣି କରନ୍ତି ଧ୍ୟାନ ଆପେ ଆପେ ।
ବୋଲନ୍ତି ବଦ୍ରିକାଧାମ ଅଟେ କେଡ଼େ ସ୍ଥାନ
ସ୍ୱର୍ଗରୁ ଏ ଶତେଗୁଣ ଅଟେ ଶୋଭାବନ ।
ସହସ୍ରେକ ଯୁଣ ଯାଏ ଅଟେ ତୋଟା ବେଢ଼
କେତେ ଫଳ ପାଚି ପଡ଼ିଅଛି ହୋଇ ଢୁଢ ।
ଏ ରୂପେ ଦୈତ୍ୟ ପାଚିଲା ଫଳ ନେତ୍ରେ ଦେଖି
ଭୁଞ୍ଜିଲେ ତୋଷ ହୋଇଣ ମନେ ହୋଇ ସୁଖୀ ।
ଦେଖିଲେ ରୁଧିର ନଦୀ ବହଇ ବନରେ
ଭକ୍ଷନ୍ତି ଯୋଗିନୀଗଣେ ବସି ନଦୀତୀରେ ।
ତାହା ଦେଖି ଚମତ୍କାର ହେଲେ ଦୈତ୍ୟବୀରେ
ଅସ୍ଥି ଚର୍ମ କୁଢ଼ କୁଢ଼ ପଡ଼ିଛି ଭୂମିରେ ।
ବୋଇଲେ ମାଇଲେ କେଡ଼େମୋଡ଼ ବିପ୍ରବେନି
ଏ ବିପ୍ରଙ୍କ ପ୍ରାୟେ କ୍ଷତ୍ରୀନାହିଁ ପୁର ତିନି ।
ବ୍ରାହ୍ମଣ ବୋଲି ବିଚାରୁଥାଉଁ ଆମ୍ଭେମାନେ
ଅଟନ୍ତି ଏ କ୍ଷତ୍ରିଠାରୁ ବଳି ତ୍ରିଭୁବନେ ।
ଏହାଙ୍କୁ ମାରି ଅର୍ଜିବା ଆମ୍ଭେ କେଡ଼େ ଯଶ
ନୋହିଲେ ମଲେ ଲଭିବା ଜାଣ ସ୍ୱର୍ଗବାସ ।
ଏ ରୂପେ ପାଞ୍ଚି ରହିଲେ ଲୁଚି ତିନିଦୈତ୍ୟେ
ବିଷ୍ଣୁଙ୍କୁ ମାରିବେ ବୋଲି ଚିନ୍ତା ହୃଦଗତେ ।
ଏ ରୂପେ ରହିଲେ ବନମଧ୍ୟେ ବୁଡ଼ି ବୁଡ଼ି
ଶୁଣ ହେ ନାରଦ ଋଷି ଏ ଗ୍ରନ୍ଥର ଧାଡ଼ି ।
ଅସୁର ଆସିବା ଜାଣିପାରି ଭାବଗ୍ରାହୀ
ଛାମୁକୁ ବେଗେ ଆଣିଲେ ଗରୁଡ଼ଙ୍କୁ ରାଇ ।
ବୋଇଲେ ଗରୁଡ଼ ଶୁଣ ଏ ବିପଦ ବାଣୀ
ଆନନ୍ଦବନକୁ ଦୈତ୍ୟ ଆସିଲେ ଏକ୍ଷଣି ।
କାହାରିକୁ ଜଣାନାହିଁ ବନେଛନ୍ତି ପଶି
ଦେଖିବା ବୁଲିଚାଲି କି ମାର୍ଗେ ଛନ୍ତି ଆସି ।
ଗରୁଡ଼ ବୋଲେ ବସି ଚିଟା ହେଉଥିଲି
ଶ୍ରୀଆଜ୍ଞା ହେଲା ଆସିବା ଚାଲ ତେବେ ବୁଲି ।
ଶୁଣିଣ ମନେ ବହୁତ ଶ୍ରଦ୍ଧା ପ୍ରଭୁ କଲେ
ସୁବେଶ ହୋଇ ଗରୁଡ଼ ପୃଷ୍ଠେ ବିଜେକଲେ ।
ଶିରେ ପୁଷ୍ପଗଭା କର୍ଣ୍ଣେ କୁଣ୍ଡଳକୁ ଖଞ୍ଜି
ଭାଲେ ଶ୍ରୀକସ୍ତୁରୀ ଚିତାଦିଶେ ମନରଞ୍ଜି ।
କଟୀରେ ପୀତ ବସନ ହୃଦେ କଉସ୍ତୁଭ
ଶ୍ରୀବତ୍ସ ମହିମା ଚିହ୍ନି ଦିଶଇ ଅପୂର୍ବ ।
ନୃସିଂହଙ୍କ ହୃଦପଦ୍ମେ ଲମ୍ବେ ବନମାଳା
ଆଦିତ୍ୟ ଚନ୍ଦ୍ରପ୍ରାୟେ ଦିଶେ ବେନିଡ଼ୋଳା ।
ଶଙ୍ଖ ଚକ୍ର ଗଦା ପଦ୍ମେ ସୁଶୋଭିତ କର
ଚାରିସମ୍ପ୍ରଦାଙ୍କ ଚାରିକର ମୋକ୍ଷଦ୍ୱାର ।
ଜାଜ୍ୱଲ୍ୟମାସନେ ଜ୍ୟୋତି ଧରିଦେବରାଜେ
ପ୍ରାଣୀକି ଯେ ମୋକ୍ଷ କରି ଶତ୍ରୁଦର୍ପ ଗଞ୍ଜେ ।
ଲକ୍ଷଣ ଲକ୍ଷେ ଧରି ଶ୍ରୀ ହୃଦପଦ୍ମେ ଶିରୀ
ଜ୍ୟୋତିର ପ୍ରଭା ପ୍ରକାଶିଛନ୍ତି ବିଜେ କରି ।
ଭକ୍ତକୁ ଦିଶଇ ଏକା ଆନେ ନ ଦିଶଇ
ଶେଷଦେବଙ୍କର ଜ୍ୟୋତି କେ ପାରିବ କହି ।
ସପ୍ତ ଫେଣାରେ ସପ୍ତବ୍ରହ୍ମାଣ୍ଡ ଆଶ୍ୱାସନ୍ତି
ପଶୁ ଏ ପୁତ୍ର ପ୍ରସବି ଯେହ୍ନେ ଲେହୁଥାନ୍ତି ।
ଭୂମିରେ ପଡ଼ିଲାମାତ୍ରେ କରି ଆଶ୍ୱାସନା
ଜିହ୍ୱାରେ ଲେହି କରନ୍ତି ଦେହ ସଂସ୍ଥାପନା ।
ସେହି ପ୍ରକାରେ ଏ ଶେଷଦେବ ନବସୃଷ୍ଟି
ଅମୃତ ଜିହ୍ୱାକୁ ସର୍ଜି ତହିଁ ପାଳନ୍ତିଟି ।
ଅପ୍ୟାନ କରନ୍ତି ତୋଷି ଆତ୍ମା ପୁରୁଷକୁ
ପାଳନ କରୁଅଛନ୍ତି ଜୀବ ବର୍ତ୍ତିବାକୁ ।
ଏମନ୍ତ ମହିମା ଅଟେ ସେ ଅନନ୍ତବାସୀ
ଶ୍ରୀନୃସିଂହ ଆଜ୍ଞାକଲେ ଖଗେବସ ଆସି ।
ଭାଇଙ୍କି ସଙ୍ଗରେ ଘେନି ପ୍ରଭୁ ଭାବଗ୍ରାହୀ
ଗରୁଡ଼ ଉପରେ ବସି ମିଳିଲେକ ଯାଇ ।
ଆନନ୍ଦବନେ ଦଇତ୍ୟ ରହିଛନ୍ତି ଲୁଚି
ଆମ୍ଭଙ୍କୁ ଗୁପ୍ତେ ମାରିବେ ବୋଲି ମନେ ପାଞ୍ଚି ।
ତାହାଙ୍କୁ ମାରିଣ ଦେଇ ଆସିବାକ ଚଳି
ଏ ରୂପେ ପାଞ୍ଚି ବୋଲନ୍ତି ବନେ ବନମାଳୀ ।
ଚଳନ୍ତି ଗଛକୁ ଗଛ ଦେଖି ଶିରୀବତ୍ସ
ଅସୁରେ ଲୁଚିଅଛନ୍ତି ହୋଇ କୀଟ ମାଛି ।
ପାଞ୍ଚନ୍ତି ବେନି ଭାଇଙ୍କି ଦେଖି ମନେ ଦୈତ୍ୟେ
ବୋଲନ୍ତି ଏପରା କୃଷ୍ଣବଲ୍ଲଭର ସୁତେ ।
ନିଶାରେ ଆଜି ହୋଇବେ ଏହୁ ପ୍ରାଣେ ନାଶ
ମଲେ ଏ ରାଜାର ଶତ୍ରୁ ଯିବ ହୋଇ ତୋଷ ।
ଏ ରୂପେ ପାଞ୍ଚନ୍ତେ ତିନି ସେନା ମନେ ଗୁଣି
ଜାଣିଲେ ତାହାଙ୍କ ମନକଥା ଚକ୍ରପାଣି ।
ମନରେ ହସି ବୁଲିଲେ ତୋଟା ଯାକ ଫେରି
ମଧ୍ୟାହ୍ନକାଳେ ନବରେ ଆସି ବିଜେ କରି ।
ପ୍ରସାଦ ଖଞ୍ଜା କରିଣ ଖଗବରେ ଦେଇ
ଭୋଜନ ମଣୋହି ରାଜା ସାରି ବେନିଭାଇ ।
ସେଦିନ ଜାଣି ବାହାର ମଣ୍ଡପକୁ ଗଲେ
ଗୁପତେ ସେ ଅସୁରକୁ ମାରିବି ପାଞ୍ଚିଲେ ।
ହୋଇଛି ଗ୍ରୀଷ୍ମକାଳ ଏଣେ ପରବେଶ
ପଦାରେ ବସିଛି ଶଯ୍ୟାକରି ହୃଷୀକେଶ ।

ଉପର ମଣ୍ଡନ ଚନ୍ଦ୍ରାତପ ଅଛି ହୋଇ
ମାଣିକ୍ୟ ମୁକୁତା ହୀରା ନୀଳା ବିରାଜଇ ।
ନଗ୍ରର ଐଶାନ୍ୟକୋଣେ ମଣ୍ଡପ ନିର୍ମଳ
ଶୁତିରେ ଦୈତ୍ୟଙ୍କୁ ମାରିବାକୁ ଆଦିମୂଳ ।
ପ୍ରଭୁଙ୍କୁ ଜଗି ରହିଲେ ତହିଁ ସଖାଗଣ
ବିଜେ କଲେ ନିଦ୍ରାବତୀ ସବୁ ନେତ୍ରେ ପୁଣ ।
ଠକାରରେ ନିଦ୍ରା ତହିଁ ଗଲେ ପଦ୍ମ ଆଖି
ପାଖେ ଗଦା ଚକ୍ର ପ୍ରଭୁ ଅଛନ୍ତି ଯେ ରଖି ।
ଶେଷଦେବ ଯେ ବାବଲ ଶରଗୋଟି ଆଣି
ଶଯ୍ୟାର ପାଶରେ ଶୋଇଛନ୍ତି ସପ୍ତଫେଣି ।
ଏମନ୍ତ ଆସି ହୁଅନ୍ତେ ରାତ୍ର ନବଘଡ଼ି
ଥିଲେ ଯେ ଦୈତ୍ୟ ତିନି ବନେ ବୁଡ଼ି ପାଡ଼ି ।
ଖଡ଼ିକା ଦୈତ୍ୟ ହିରଣ୍ୟକେଶୀ କୃତକେଶୀ
ପଶିଲେ ସେ ମଶାରୂପେ ନଗ୍ରେ ଉଡ଼ିଆସି ।
ପାଚେରୀ ବଦିକ୍ରାକୁରେ ଆସି ପ୍ରବେଶିଲେ
ଈଶାନ ମଣ୍ଡପେ ଯାଇ ବିଷ୍ଣୁଙ୍କୁ ଦେଖିଲେ ।
ମଣ୍ଡପର ଥୋର ହସ୍ତେ ବସି ମଶା ରୂପେ
ବଲ୍ଲଭ ପୁତ୍ରଙ୍କୁ ଦେଖି ବସିଲେ କୌଣପେ ।
କପଟରେ ନିଦ୍ରାଯାଇଛନ୍ତି ବେନିଭାଇ
ସମସ୍ତେ ତ ନିଶବଦେ ଛନ୍ତି ନିଦ୍ରା ଯାଇ ।
ଘୁଙ୍ଗୁଡ଼ି ମାରନ୍ତେ ନିଶବଦେ ଘନ ଘନ
ଶଯ୍ୟାର ପାଶେ ବସିଲେ ଯାଇ ଯାତୁ ଧନ ।
ନିଶମୋଡ଼ି ନେତ୍ର ଦୁଇ ଅନ୍ତରାଳ କରି
ଉଠିଲେ ସେ ବାହୁତଳେ ବସନ ବିସ୍ତାରି ।
ବସିଲା ଖଡ଼ିକାସୁର ମାନି ଅନନ୍ତଙ୍କୁ
ଧଇଲେ ହିରଣ୍ୟ କୃତକେଶୀ ନୃସିଂହଙ୍କୁ ।
ଜାଣିଣ ତା ମହାପ୍ରଭୁ ଉଠି ଅନ୍ତରାଳେ
ବସିଲେ ବେନି ଦୈତ୍ୟଙ୍କୁ ମାଡ଼ି ପାଦତଳେ ।
ଶୂକରୀକି ଧରି ଯେହ୍ନେ ବାନ୍ଧଇ ଶୂକର
ଯେହ୍ନେ ଭୂମିପରେ ନ ଲାଗଇ ପାଦ ଶିର ।
ବଦ୍ରିକା ଉତ୍ତରଭାଗେ ଅଛି ମେରୁଗିରି
ସେଠାବକୁ ବୋଲି ଫିଙ୍ଗି ଦେଲେ ଦଇତ୍ୟାରି ।
ଶୋଣିତ ଯେ ଝର ଝର ବହେ ନବଦ୍ୱାରେ
ଜଳଧାରା ପ୍ରାୟ ଖସି ପଡ଼ିଲେ ଭୂମିରେ ।
ପୁଣି ତାଙ୍କ ପାଦ ଧରି ବୁଲାଇ ଦୁହିଁଙ୍କି
ଛାଡ଼ି ଦେଲେ ଚକ୍ରପ୍ରାୟ ଶୂନ୍ୟମାର୍ଗେ ଟେକି ।
ଶୂନ୍ୟରୁ ପଡ଼ିଲେ ବଜ୍ରପ୍ରାୟ ଦୈତ୍ୟଆସି
ପୃଥ୍ୱୀ ଶତେହାତ ଗଲା ପାତାଳକୁ ପଶି ।
ପୁଣି ହିଁ ସେ ଅସୁରକୁ ଧରି ନାରାୟଣ
କୌମୋଦକୀ ଗଦାବର ପିଟିଲେ ଶିରେଣ ।

ନିଃଶେଷେ ପଡ଼ିଣ ଦୈତ୍ୟ ହେଲେ ପ୍ରାଣେ ହତ
ଏଥି ଉତ୍ତାରୁ ସେ ପୁଣ ଖଡ଼ିକା ଦଇତ ।
ଅନନ୍ତ ମୂରତିକି ସେ କରେ ଧରୁଁ ଜାକି
ଉଠିଲେ ଯେ ଶେଷଦେବ ସପ୍ତଫଣା ଟେକି ।
ରେ ରେ କାର କରି ହୃଦେ ବସିଲେକ ମାଡ଼ି
କଟିରେ ଯେ ବାମ ଆଣ୍ଠୁ ହସ୍ତେ ତୋଟିଭିଡ଼ି ।
ବୁଲାଇ କରନ୍ତେ ସପ୍ତଜିହ୍ୱା ଲହ ଲହ
ଦିଶିଲା ସୂର୍ଯ୍ୟର ପ୍ରାୟ ଜ୍ୟୋତି ଫୁଟି ଦେହ ।
ଦକ୍ଷିଣ ହସ୍ତରେ ପୁଣି ଚକ୍ର ଶକ୍ତି ଧରି
ପିଟିଲେ ନିର୍ଘାତ ପ୍ରାୟ ଟେକି କୋପ କରି ।
ସହସ୍ରେକ ହାତଯାଏ ପୃଥ୍ୱୀଗଲା ପଶି
ବେଗେ ଦୈତ୍ୟ ଉଠିଲା ଯେ ତହୁଁ ହସି ହସି ।
ଦେଖିଣ ଧଇଲେ ଶେଷ ଦେବ ବଜ୍ରପୁଣି
ଦୈତ୍ୟର ମୁଣ୍ଡେ ପିଟିଲେ କୋପେ ସପ୍ତଫେଣୀ
ତତ୍‌କ୍ଷଣେ ମୁଣ୍ଡ ଫାଟିଗଲା ଦୈତ୍ୟବୀର
ଶୂନ୍ୟରେ ଥାଇଣ ଦେବେ ବିଞ୍ଚନ୍ତି କର୍ପୂର ।
ବୋଲନ୍ତି ନୃସିଂହ ଧନ୍ୟ ଧନ୍ୟ ଶେଷଦେବ
ତୁମ୍ଭ ମହିମା କହି ନ ପାରେ ବ୍ରହ୍ମା ଶିବ ।
ଏକଇ ବ୍ରହ୍ମ ଯେ ଅଟ ତୁମ୍ଭେ ବେନିଭାଇ
ନୃସିଂହ ବଡ଼ ଅନନ୍ତ ସାନ ଯେ ଅଟଇ ।
ସତ୍ୟ ତ୍ରେତା ବୋଲି ଜାଣ ଯେଉଁ ଦୁଇ ଯୁଗ
ଯେ ଯୁଗରେ ବଡ଼ଭାଇ ଅଟନ୍ତି ନୃସିଂହ ।
ଏ ନୃସିଂହ ଅବତାର ଉତ୍ତାରେ ଯେ ଯାଇ
ଶ୍ରୀରାମ ଲକ୍ଷ୍ମଣ ବୋଲି ହେବେ ଦୁଇଭାଇ ।
ଏ ଦୁଇ ଯୁଗରେ ବଡ଼ ନୃସିଂହଟି ଜାଣ
ପୂର୍ବରୁ ସଞ୍ଚି ଅଛନ୍ତି ଏହା ନାରାୟଣ ।
ଏହି ଲକ୍ଷ୍ମଣ ଦ୍ୱାପର ଯୁଗେ ପୁଣି ଯାଇ
ବଳଭଦ୍ର ରୂପେ ଜନ୍ମ ହେବେ ବଡ଼ଭାଇ ।
ଶ୍ରୀ ଜଗନ୍ନାଥ ଭିଆଣ ଅଟେ ଏ ପ୍ରମାଣ
ସାନକୁ ସେ ବଡ଼କରେ-ବଡ଼ କରେ ସାନ ।
ସାନହିଁ ସେ ଏକାଜାଣ ବଡ଼ହିଁ ସେ ଏକ
ନ ଜାଣିପାରି କରନ୍ତି ଭିନ୍ନ ଅବିବେକ ।
ଏ ରୂପେ କହି କରନ୍ତି ଦେବେ ଧନ୍ୟ ଧନ୍ୟ
ଉଠିଲେକ ନିଦ୍ରାତେଜି ବଦରିକା ଜନ ।
ଚାହାଁନ୍ତି ବାଳୁତ ଜନ ପ୍ରାୟ ବସି ଥୋକେ
ଦାନବ ରୂପ ପାଞ୍ଚନ୍ତି ବସି ଏକେ ଏକେ ।
କେ ବୋଲେ ପାଷାଣ କି କେ ବୋଲେ ମହାଦାରୁ
କେ ବୋଲେ ଦିଶନ୍ତି ପରପଞ୍ଚ ଖଣ୍ଡେଦୂରୁ ।
କେ ବୋଲେ ଏଡ଼େ ନଗ୍ରେ କି ରୂପେ ଦୈତ୍ୟ ଆସି
ଅଖଡ଼େ ଏ ମଲା ଦେଖ ବିଷ୍ଣୁଘରେ ପଶି ।

ଅଧର୍ମ ଲୋକ ନ ଜାଣି ଅଛେ ନାଶ ଯାନ୍ତି
ବୟସ ମତ୍ତଗର୍ବରେ ହେଜି ନ ପାରନ୍ତି ।
କେ ବୋଲେ ହୃଦରେ ମୋର ଥିଲା ହେଲା ଚେତ
ଶେଷକୁ ମାଡ଼ିପଡ଼ିଲା ଦଇତ୍ୟ ପ୍ରମତ୍ତ ।
ହୁଙ୍କାରି ଧରିଲେ ତାକୁ ଶେଷଦେବ ଉଠି
ବଜ୍ର ଶକତିଏ ଧରି ମୁଣ୍ଡେ ଦେଲେ ପିଟି ।
ପଡ଼ିଛି ଉତ୍ତାନଶାୟୀ ହୋଇ ଦୈତ୍ୟ ଦେଖୁ
ମନ୍ଦର ଗିରିର ପ୍ରାୟ ପଡ଼ିଛି ତା ମୁଖୁ ।
ରୁଧିର ବହୁଛି ଟୋପି ଟୋପି ନାସା କର୍ଣ୍ଣେ
ଉଚ୍ଛୁରା ଉଚ୍ଛୁରି ହୋଇ ଆସି ବେନିଜନେ ।
କେ ବୋଲଇ କାହିଁ ଗଲେ ପ୍ରଭୁ ଭାବଗ୍ରାହୀ
ଅଛନ୍ତି ସେଠାରେ ଏକା ଶେଷଦେବ ରହି ।
ଏ ରୂପେ ବୋଲି ଧାଇଁଲେ ତହୁଁ ଉଦବେଗ
କହିଲେ ସବୁ ବଲ୍ଲଭ ରାଜାଙ୍କର ଆଗେ ।
ବୋଇଲେ ଦୈତ୍ୟେକ ମରି ପଡ଼ିଅଛି ଦାଣ୍ଡେ
ଦେଖିଲେ ଶେଷ ଅଛନ୍ତି ଏକ ଗ୍ରାମମୁଣ୍ଡେ ।
ନାହାନ୍ତି ତ ତହିଁ ଏକା ଶ୍ରୀନୃସିଂହ ପ୍ରଭୁ
ଛାମୁକୁ କହିବା ପାଇଁ ଆସିଲୁ ଏସବୁ ।
ଶୁଣିଣ ଶଯ୍ୟାରୁ ରାଜା ଉଠିଲେ ବିକଳେ
ଦାଣ୍ଡକୁ ବୋଲି ଧାଇଁଲେ ହୋଇ ଅସମ୍ଭାଳେ ।
ଶ୍ରୀନୃସିଂହ କାହିଁ ବୋଲି ଲୋଡ଼ନ୍ତି ଚୌକତି
ଶେଷଦେବଙ୍କୁ ଦେଖିଣ ତୋଷକଲେ ମତି ।
ଏଥି ଉତ୍ତାରେ ନୃସିଂହ ପ୍ରଭୁ ଭାବଗ୍ରାହୀ
ମେରୁ ପର୍ବତରୁ ବିଜେକଲେ ଶୀଘ୍ର ହୋଇ ।
ଅସୁର ବେନିଙ୍କୁ ନେଇ ସମୁଦ୍ରେ କଚାଡ଼ି
ଶରୀରେ ଶୋଣିତ ଟୋପି ଟୋପି ଅଛି ପଡ଼ି ।
ଆସନ୍ତେ ଶୀଘ୍ର ଯେ ଧାଇଁ ଭାଇ ତହିଁ ମନ
ମନେ ପାଞ୍ଚିଲେ ନ ମଲା ପୁଣ ଯାତୁଧାନ ।
ସଭାର ମଧ୍ୟେ ହୁଅନ୍ତେ ଆସି ପରବେଶ
ଦେଖିଲେ ପିତାଙ୍କ କୋଳେ ବସିଛନ୍ତି ଶେଷ ।
ନୃସିଂହକୁ ଦେଖି କୃଷ୍ଣବଲ୍ଲଭ ବିରାଜେ
ବୋଲନ୍ତି ଯେ ଏତେ ରାତ୍ରେ ଗଲ କି କି କାର୍ଯ୍ୟେ
ନିଃଶ୍ୱାସ ଯେ ଖରତର ରୁଧିର ଲେପନ
କହିଲେ ଶୁଣିବୁ ଆଗ ଆମ୍ଭେ ସୁବଚନ ।
ନୃସିଂହ ବୋଇଲେ ତାତ ଶୁଣ କଥା ଯେତେ
କନକାବତୀ ପୁରକୁ ଆସି ତିନି ଦୈତ୍ୟେ ।
ଶେଷଦେବଙ୍କୁ ବସିଲା ଜଣେ ଅଣ୍ଟେମାଡ଼ି
ଆଉ ବେନିଦୈତ୍ୟ ମୋତେ ଧଇଲେକ ଭିଡ଼ି ।
ଆଉ ବେନିଦୈତ୍ୟଙ୍କୁ ଧରିଟାଣି ଶୂନ୍ୟେ ନେଲି
ମେରୁ ପର୍ବତ ଉପରେ ଛେଚି ମାରିଦେଲି ।
କେବଳ ସେଠାରେ ଚଇତନ ରହିଅଛି
ତେଣୁ ଆସିଲି ଶୀଘ୍ର ନ ପାରି ମନୁ ମୁର୍ଚ୍ଛି ।
ଦେଖିଲି ଦାଣ୍ଡେ ପଡ଼ିଛି ଅସୁରର ଶବ
ଏ କଥାକୁ ଶଙ୍କା କିଛି ନ କର ହେ ଦେବ ।
ଆଜହୁଁ ମୁରକୁ ଯେ ନକର କେହି ଭୟେ
ଶ୍ରୀ ନୃସିଂହ ଥିବା ସ୍ଥାନ ପର୍ବତ ଯେ ହୁଏ ।
ଶ୍ରୀ ନୃସିଂହ ପ୍ରଭୁ ଜାଣି ଯେଉଁ ନଗ୍ରେ ଥାନ୍ତି
ସେ ନଗ୍ରଲୋକଙ୍କୁ ଯେ ନ ଲାଗେ ଭୟଭୀତି ।
ତୁମ୍ଭଙ୍କୁ ଆମ୍ଭ ଥାନ୍ତେ କି ଅଛି ଅପଚୟେ
ଆବର ଏ ଯେତେ ଦୈତ୍ୟ ମାରିବି ଏଠାଏ ।
ରାତ୍ର ପାହିଲେ ଏ ମଢ଼ା ଦେବା ଫୋପଡ଼ାଇ
ଏଥର ଯେ ଦେହ ପାର୍ଣି ହେବା ବେନି ଭାଇ ।
ଶୁଣିଣ ଛାଡ଼ିଲେ ନଗ୍ର ଲୋକ ମନୁ ଭୟ
ବୋଇଲେ ନୃସିଂହ ସବୁକରିବେ ଯେ ଜୟ ।
ରିଷ୍ଟ ଶାନ୍ତି ଅର୍ଥେ କୃଷ୍ଣବଲ୍ଲଭ ଯେ ରାଜା
ଅନେକ ଯେ ଦେଇ ବିପ୍ର କଲା ପାଦପୂଜା ।
ଈଶ୍ୱର ଶ୍ରୀବିଷ୍ଣୁଆଳ ଦେବଆଳ ଯେତେ
ଉପନମାନ ଯେ ବାଡ଼ିଦେଲେ ନାନାମତେ ।
ଶୀତଳ ଦ୍ରବ୍ୟ ଦେଇଣ କଲେ ଦେବୀପୂଜା
ସବୁଙ୍କୁ ସନ୍ତୋଷ କଲେ ସେ ବଲ୍ଲଭ ରାଜା ।
ଶୁଣିଣ ନୃସିଂହମାତା ହୋଇଲେ ସନ୍ତୋଷ
ବୋଇଲେ ମୋର ପୁତ୍ରକୁ ରଖ ଜଗଦୀଶ ।
ବୁଝିଲେ ଯେ ରାତ୍ର ଅଛି ଆଉ ସପ୍ତଘଡ଼ି
ଯେ ଯାହା ମନ୍ଦିରେ ଚାଲ ଶୁତିବା ବାହୁଡ଼ି ।
ଏ ରୂପେ ବୋଲି ଗୃହକୁ ମାଏ ଗଲେ ଚଳି
ଲକ୍ଷ୍ମୀଙ୍କ ମନ୍ଦିରେ ଯାଇ ନୃସିଂହ ଯେ ମିଳି ।
ଇଳାଠାକୁରାଣୀପାଶେ ବିଜେ ଶେଷଦେବ
ମାତା ପିତା ସହ ନିଦ୍ରାଗଲେ ଯେଝାଠାବ ।
ପ୍ରଭାତରୁ ଉଠି ପ୍ରଭୁ ସ୍ନାନ ସନ୍ଧ୍ୟା ସାରି
ବସିଲେକ ଆସି ସଭାମଧ୍ୟେ ବିଜେକରି ।
ଅସୁର ମଢ଼ାକୁ ଝିଙ୍କି ନେଲେ ପାପୀଜନେ
ସିଞ୍ଚିଲେ ଯେ ଚତୁଃସମ ମେଢ଼ ଚାରିଥାନେ ।
ବିଞ୍ଚିଲେ କର୍ପୂରଗୁଣ୍ଡ ବଦରିକା ଦାଣ୍ଡେ
ପକାନ୍ତି ଯେ ହୁଳହୁଳି କାମିନୀଏ ତୁଣ୍ଡେ ।
ଆନନ୍ଦେ ନଗର ହେରି ଗଲେ ମହାପ୍ରଭୁ
ଚୌଷଠି ସହସ୍ର କନ୍ୟା ମିଳି ଆସି ସବୁ ।
ନିତ୍ୟସ୍ଥଳୀ ନାୟିକା ସେ ଅଟନ୍ତି ସ୍ତ୍ରୀଗଣ
କରନ୍ତି ନୃସିଂହ ବଦ୍ରିକାରେ ବେହରଣ ।
ଅଷ୍ଟପ୍ରହରରେ ଅଷ୍ଟ ସଖି ସେବା କରି
ନୃସିଂହଙ୍କ ରାସେ ହୋଇଥାନ୍ତି ପଢ଼ିହାରୀ ।

ନାୟିକାଗଣଙ୍କ ମଧ୍ୟେ ଶ୍ରୀନୃସିଂହ ବିଜେ
ଲାଗନ୍ତି ସର୍ବେ ନୃସିଂହ ଦେବ ସେବାକାର୍ଯ୍ୟେ ।
ଚାଲନ୍ତି ଆଗ ପଛରେ ହୁଳିହୁଳି ଦେଇ
ବିଭା ମଣ୍ଡଳ ଗୁଜରୀ ନାଦେ ଗୀତ ଗାଇ ।
କେବଣ ନାଗରୀ ମଧୁକେରୀ ବାଣୀ ଟେକେ
ନୃସିଂହଙ୍କୁ ଦେଖି ଭୋଳ ହୁଅନ୍ତି ଏକୁ ଏକେ ।
ସ୍ତିରୀଙ୍କର ମନକଥା ଶ୍ରୀ ନୃସିଂହଙ୍କୁ ଜାଣି
ସବୁରି ମୁଖେ ଚୁମ୍ବନ ଦ୍ୟନ୍ତି ଚକ୍ରପାଣି ।
କାହାକୁ ନୃସିଂହ ସ୍ୱାମୀପ୍ରେମ ନୋହେ ଦୃଶ୍ୟ
ନଗ୍ରରେ ବୁଲନ୍ତି ବୋଲି ଜାଣନ୍ତି ତ୍ରିଦଶ ।
ଲେଉଟି ମିଳିଲେ ଆସି ନଗ୍ରେ ଜନାର୍ଦ୍ଦନ
ବୋଲନ୍ତି ଭଲା ଅଟଇ ଏହୁ ଭଗବାନ ।
ରାତ୍ରରେ ପେଷିଲା ମୁର ତିନିଗୋଟି ଦୈତ୍ୟେ
ଗୁପତେ ସେ ଆସିଥିଲେ ଏହି ନଗ୍ରପ୍ରାନ୍ତେ ।
କାଲି ଗଲା ରାତ୍ରରେ ଏ ମାଇଲା ନୃସିଂହ
ଏହି ରୂପେ କୁହାକୁହି ହୁଅନ୍ତି ଲୋକବର୍ଗ ।
ଏଥିଉତ୍ତାରେ ସେ ବାଣୀ ନାରଦ ହୋ ଶୁଣ
ମୁରର ଦୂତେ ଯେ ଆସିଥିଲେ ଗୁପତେଣ ।
ଜଙ୍ଗମ ଯୋଗୀରୂପେ ଯେ ହୋଇଣ ଭିକ୍ଷାଶୀ
ବୁଲଇ ଅଜଣା ହୋଇ ବଦ୍ରିକାରେ ପଶି ।
ମୁରର ତିନି ସେବା ତରିବା କଥା ଜାଣି
ସେ ଖବର ଧରି ଦୂତେ ଗଲେ ସେହିକ୍ଷଣି ।
କନକାବତୀ ପୁରରେ ହେଲେ ପରବେଶ
ସେନାଙ୍କ ମୃତ୍ୟୁ କହିଲେ ଯାଇଁ ରାଜାପାଶ ।
ବୋଇଲେ ଭୋ ଦେବ ଆମ୍ଭେ ଥିଲୁ ଯେ ବଦ୍ରିକା
ଭିକ୍ଷାଶୀ ରୂପରେ ଯାଇଁ ଦାଣ୍ଡେ ବୁଲୁ ଏକା ।
ତୁମ୍ଭର ଯେ ତିନି ସେନା ଗଲେ ମାରିବାକୁ
ରାତ୍ରରେ ମାଡ଼ି ବସିଲେ ଯାଇଁ ନୃସିଂହଙ୍କୁ ।
ଦେଖି ତାହା କୋପେ ଉଠି ବସି ବେନିଭାଇ
ଖଡ଼ିକାସୁରକୁ ମାଡ଼ି ବସ ଶେଷ ଯାଇଁ ।
ଫେଡ଼ିଲେ ବଜ୍ରଶକତି ଘେନି ତାର ବୁକୁ
ନୃସିଂହ ଘେନିଣ ଗଲେ ସେ ବେନି ସେନାଙ୍କୁ ।
ମେରୁର ଉପରେ ନେଇ ତାଙ୍କୁ କଚାଡ଼ିଲା
ଛେଚିବା ଘାତେ ତାହାଙ୍କୁ ମୃତ୍ୟୁ ଘୋଟିଗଲା ।
ଏ କଥା ଦେଖିଣ ଆମ୍ଭେ ଆସିଲୁ ଏକ୍ଷଣି
ଶୁଣିଣ ସେ ମୂର୍ଚ୍ଛଗତେ ପଡ଼ିଲା ନୃପମଣି ।
ଦଣ୍ଡକେ ସେ ଚେତି ଉଠି ଉଚ୍ଚସ୍ୱରେ କାନ୍ଦି
ସମସ୍ତଙ୍କୁ ବାହୁନେଇ ବିଷ୍ଣୁଙ୍କୁ ସେ ନିନ୍ଦି ।
ବୋଇଲେ ବିପ୍ର ନୃସିଂହ ମାଇଲାକେ ତାକୁ
ବ୍ରାହ୍ମଣ ଘରେ ଜନମି ନାଶିଲା ଦୈତ୍ୟଙ୍କୁ ।

କ୍ଷତ୍ରୀ ହେଲେ ସିନା ମୁହିଁ ପ୍ରଶଂସା କରନ୍ତି
ଆଛା ଏ ଅଛଇ ବୋଲି ଯୁଦ୍ଧେ ବାହାରନ୍ତି ।
ବିପ୍ର କୁଳରେ ଜନମି ହେଲା ଶତ୍ରୁ ମୋତେ
ମାଇଲା ସତରଲକ୍ଷ ପୁତ୍ର କ୍ଷଣମାତ୍ରେ ।
ନବଲକ୍ଷ ନାତିଙ୍କୁ ରେ ପୁଣ ଦେଲା ମାରି
ଏବେ ହେଁ ଷଡ଼ ସୈନ୍ୟଙ୍କୁ ଦେଲା ଶବକରି ।
ନାରାଚମାନ ଧରି କି ନ ଗଲେ ଯୁଦ୍ଧକୁ
ମାରନ୍ତେ ନା ଗୁଣ୍ଡାକରି ଗାୟତ୍ରୀ ପଣ୍ଡାକୁ ।
ଗଡୁ ତମ୍ବାପାତ୍ରି ଆଉ ନ ପାରନ୍ତେ ଧରି
ତିଳ କୁସୁମେ ତର୍ପଣ ନ ପାରନ୍ତେ କରି ।
ତୁମ୍ଭର ଯେତେକ ବୁଦ୍ଧି ନେଲା କେହୁ କାଢ଼ି
ନିର୍ବୁଦ୍ଧି ହୋଇ ମଲରେ ବିପ୍ର ହାତେ ପଡ଼ି ।
ପକାନ୍ତି ଅଣ୍ଟାକୁ ଭାଙ୍ଗିଯାନ୍ତେ ଛୋଟା ହୋଇ
ଘରକୁ ବୁଲି ଆଉ ନ ଯାନ୍ତେ ସେହୁ କାହିଁ ।
ବୁଡ଼ାଇଲ ବୁଦ୍ଧିବଳ ମଲ ଅକାରଣ
ତୁମ୍ଭପରା ରଥି ବ୍ୟର୍ଥେ ଛାଡ଼ିଲରେ ପ୍ରାଣ ।
କି ବୋଲି ଏବେରେ ମୁହିଁ କହିବି କାହାକୁ
ଶୁଣି ଶତ୍ରୁମାନେ ପୁଣି ହସିବେ ଆମ୍ଭଙ୍କୁ ।
ଦେବତାମାନେ ଯେ ଶୁଣି ହେବେ ଗର୍ବେଶ୍ୱର
ବାସବ ଶୁଣି ହସିବେ ହୋଇ କରକର ।
ତୁମ୍ଭର ଘେନି କାହାକୁ ମୁହିଁ ନ ମାରଇ
ଛାଡ଼ିକରି ଗଲେ ତୁମ୍ଭେ ଏକା ମୋତେ ଥୋଇ ।
ପ୍ରଳୟ ଜଳରେ ଯେହ୍ନେ ସର୍ବେ ଯାଇ ଭାସି
ସେହି ପରାୟେ ଗଲରେ ତୁମ୍ଭେମାନେ ଖସି ।
ଶାର୍ଦ୍ଦୂଳ ଘରେ ପଶିଣ ଗୃଧ୍ର କଲା ନାଟ
ମଣ୍ଡୁକୀ ଜଗିଲା ବସି କାଳସର୍ପ ବାଟ ।
ବିକ୍ରମ ସିଂହଙ୍କୁ ମୃଗ ମାଇଲାରେ ଖେଦି
ଶ୍ୟାମଳ ଘରେ ବସିଲା ବକ ଦ୍ୱାର ରୁନ୍ଧି ।
ଛେଳିଙ୍କ ବୁଦ୍ଧି ଅଟନ୍ତି ସିସା ବିପ୍ରପୋଏ
ବାତୁଳାଖେଳା ଲୋକବି ଜାଣେ ଭଲ ନ୍ୟାୟେ
ଶାସ୍ତ୍ରରେ ତ ଋଷିମାନେ ଅଛନ୍ତି ଯା କହି
ବାଣିଜ୍ୟ ଜୁଆ ଯେ ଯୁଦ୍ଧ ତର୍କେ ପ୍ରବର୍ତ୍ତଇ ।
ବଳ ଦେଖିଲେ ମାରିବି ତାକୁ ପ୍ରୀତି କରି
ବୁଦ୍ଧିବଳ ଥିଲେ ସଭାମଧ୍ୟେ ଜିଣିପାରି ।
ଏ ତିନି କଥାରେ ତର୍କ ବୁଝି ନ ପାରିଲା
ଜାଣୁ ଜାଣୁ ବ୍ରହ୍ମଶର ହସ୍ତେ ପ୍ରାଣ ଦେଲା ।
ଏ ରୂପେ ବୋଲି ସେ ରାଜା ଚାହାନ୍ତେ ଚୌକତି
ଦେଖିଲା ଆଗେ ଅଛି ସୁବିଜ୍ଞ ମହାମନ୍ତ୍ରୀ ।
ଦକ୍ଷିଣ ଭାଗେ ଅଛନ୍ତି ଶୁକ୍ରଗୁରୁ ବସି
ବୀରବାହୁ କାଳକେତୁ ସଉଦାସ ମିଶି ।

ମୁରାସୁର ବୋଲଇରେ ସର୍ବେ ହୁଅ ସଜ
ମୁଁ ଗଲେ ନୃସିଂହ ପ୍ରାଣ ଘେନିବି ଯେ ଆଜ ।

□□□

## ବୀରବାହୁ, କାଳକେତୁ ଓ ସୌଦାଗର ଯୁଦ୍ଧକୁ ଗମନ ଏବଂ ମୃତ୍ୟୁ

ଶୁଣିଣ ସେ ତିନି ସେନା ନିଶେ ହାତ ଭରି
ରାଜାଙ୍କୁ ତିଆରି ପୁଣି କହି ବଡ଼କରି ।
ବୋଲନ୍ତି କ୍ରୋଧ କିପାଇଁ କରୁ ମହୀପତି
ବୁଝିଲେ ଏ ତ୍ରିପୁରେ ତୁ ଅଟୁ ଚକ୍ରବର୍ତ୍ତୀ ।
ତୋହର ଲୋତକ ଯେବେ ପଡ଼ିବ ମେଦିନୀ
ପୃଥ୍ୱୀକି ଅଶୁଭ ଜାଣ ହେବ ଶିରୀହାନୀ ।
ଆମ୍ଭର ଥାଆନ୍ତେ ତୁ କି ଯିବୁ ଯୁଦ୍ଧକରି
ନପକା କେତେବେଳେ ତୋ ନେତ୍ରୁ ଅଶ୍ରୁବାରି ।
ଆମ୍ଭର ଆଗ ତୁ ଦେଖ କେଡ଼େ ବଡ଼ ଯୁଦ୍ଧ
କରିବୁ ନୃସିଂହ ଶେଷଦେବ ଶିରଚ୍ଛେଦ ।
ଭୋ ଶୁକ୍ରଗୁରୁ କଲ୍ୟାଣ ତୁମ୍ଭେ ବେଗେ କର
ହସାଇ ରସାଇ କରି ରାଜା ଦିନ ହର ।
ଏ ରୂପେ କହି ରାଜାଙ୍କୁ ମାଗିଲେ ମେଲାଣି
ଗଲେ ସେହୁ ଶୀଘ୍ର ଚଳି ଯୋଗ ବାର ଜାଣି ।
ନୃପତି ବୋଇଲେ ବାବୁ ଶୁଭେ ଯାଇ ଆସ
ତୁମ୍ଭେ ଥିଲେ ରହିଥିବ ମୋର ସବୁ ଯଶ ।
ହେଉ ହେଉ ଦେବ ବୋଲି ଗଲେ ତିନିବୀର
ମେଲାଣି ହୋଇଣ ଗଲେ କରି ନମସ୍କାର ।
ସପ୍ତଦିନେ ମିଳିଲେ ସେ ବଦରିକା ଦେଶ
ଆନନ୍ଦ ବନରେ ଯାଇ ହୋଇଲେ ପ୍ରବେଶ ।
କେତେ ଫଳଅଛି ତହିଁ ତାର ଅନ୍ତ ନାହିଁ
ପଡ଼ିଅଛି ପାଚି ଫୁଟି ବାସ ଚହଟଇ ।
ଭୁଞ୍ଜିଣ ସେ ତିନିବୀରେ ହୁଅନ୍ତେ ସନ୍ତୋଷ
ତୋଟାକୁ ଦେଖି ସେ ଧନ୍ୟ କରନ୍ତି ବିଶେଷ ।
ବୋଲନ୍ତି ଜମ୍ବୁଦ୍ୱୀପେ ଏ ତୋଟା ଦେଖିନାହିଁ
ବ୍ରାହ୍ମଣ ରାଜା ହୋଇଣ ଆସିଲା ଏ କାହିଁ ।
ବସନ୍ତ ବହୁଛି ଅବସନ୍ତେ ପରିମଳ
ଲୋଡ଼ିବା ମନରେ ଯାହା ମିଳୁଛି ସେ ଫଳ ।
ଧନ୍ୟ ଏହି ବନତୋଟା ଧନ୍ୟ ପୁଣ୍ୟସ୍ଥାନ
ଏ ନଗରେ ଲୋକଙ୍କର ଜୀବନ ଯେ ଧନ୍ୟ ।
ବୈଶାଖ ଶୁକ୍ଳ ପଞ୍ଚମୀ ତିଥି ଚନ୍ଦ୍ରବାର
ବୃକ୍ଷରୁ ପଡ଼ଇ ଫଳ ପାଚି ଅଗୋଚର ।
କମଳା ଆମ୍ବ ଜାମୁ ଯେ ପଣସ କଦଳୀ
ଭୁଞ୍ଜନ୍ତି ଅସୁରମାନେ ଏହି ଫଳ ତୋଳି ।
ଏ ରୂପେ ରହି ସେ ବନେ ଦିନ ବଞ୍ଚୁ ଥାନ୍ତି
ଏକାନ୍ତରେ ନୃସିଂହଙ୍କୁ ଦେଖି ନ ପାରନ୍ତି ।
ଏ ରୂପେ ବଞ୍ଚନ୍ତେ ତିନି ଚାରିଦିନ କାଳ
ଜାଣିଲେ ସେ କଥା ଅନ୍ତର୍ଯ୍ୟାମୀ ଆଦିମୂଳ ।
ବୋଇଲେ ଅସୁର ବନେ ଅଛନ୍ତି ଯେ ଲୁଚି
ଆମ୍ଭଙ୍କୁ ମାରିବେ ଆସିଛନ୍ତି ମନେ ପାଞ୍ଚି ।
ମାରିବା ପାଇଁ ସେ ଧାଇଁ ଅଛନ୍ତି ଦଇତ୍ୟେ
ଦଇବ କଢ଼ାଇ ତାଙ୍କୁ ଆଣିଛନ୍ତି ଏଥେ ।
ଏତେ ପାଞ୍ଚିଣ ଶ୍ରୀ ନୃସିଂହ ଭାଇ ସଙ୍ଗେ ଧରି
ବୋଇଲେ ତୋଟାକୁ ଆସ ଯିବା ବିଜେକରି ।
ଏ ରୂପେ ବୋଲି ଗରୁଡ଼ କନ୍ଧେ ବାହାରିଲେ
ସୁଜାଣ ମନ୍ତ୍ରୀ ଆଦି ଯେ ସଙ୍ଗେ ବାହାରିଲେ ।
ଚଳିଲେ ସମ୍ଭ୍ରମେ ଥାଟ ତୋଟାଯାକ ପୂରି
ନୃସିଂହ ପ୍ରଭୁ ଅଛନ୍ତି ଯହିଁ ବିଜେକରି ।
ପଦାତି ଆବର ଅଶ୍ୱ ଗଜ ସୈନ୍ୟ ଘେନି
ଚଳନ୍ତି ବନେ ନୃସିଂହ ଶେଷଦେବ ବେନି ।
ବୈକୁଣ୍ଠ ଭୁବନୁ ବିଜେ କଲା ପ୍ରାୟେ ଦିଶେ
ମନର ମଧ୍ୟରେ ବିଜେ ପ୍ରଭୁ ଜଗଦୀଶେ ।
ବାଜେ ଟମକ ଦମାଲ ଢୋଲ ବିଜିଘୋଷ
ଜୟ ଜୟ ଶବଦ ଯେ ଶୁଭେ ଚଉପାଶେ ।
ବନକୁ ସେ ତିନି ଦୈତ୍ୟବୀର ଥିଲେ ଆସି
ନୃସିଂହ ଶେଷ ଦେଖିଣ ହୋନ୍ତି ମନତୋଷି ।
ବୋଲନ୍ତି ଏ ପରା କୃଷ୍ଣବଲ୍ଲଭର ପୁତ୍ର
ତୋଟାକୁ ଆସୁଅଛନ୍ତି ଘେନି ସୈନ୍ୟଛତ୍ର ।
ଲୁଚିଲେ ଯେ ଆମ୍ଭେ ଆଉ ହେବ ଏଥେଁ କିସ
ଏ ରୂପେ ପାଞ୍ଚି ଦଇତ୍ୟ ହେଲେ ଆଗେ ଦୃଶ୍ୟ ।
ନୃସିଂହ ବୋଇଲେ କହ ଅଟ ତୁମ୍ଭେ କେକେ
ଆନନ୍ଦବନେ ପଶିଲ ଆସି ଅବିବେକେ ।
ଆସିଲ ମୃତ୍ୟୁକୁ ସଙ୍ଗେ ଘେନି ତୁମ୍ଭେ ବ୍ୟର୍ଥ
ଏ ରୂପେ ବୋଲି ଧଇଲେ ଧନୁ ଜଗନ୍ନାଥ ।
ନୃସିଂହ ଧନୁ ଅସୁରେ ଦେଖି ଦେଲେ ଡାକ
ବୋଲେ ଅନ୍ୟାୟ କରି ନମାର ପୁଣ୍ୟଶ୍ଳୋକ ।
ଜଣକୁ ଜଣେ କରିବା ଆସ କ୍ଷତ୍ରୀ ଧର୍ମ
ଲକ୍ଷେକ ଯୋଦ୍ଧା ଆସିଛୁ ଘେନି ପରଂବ୍ରହ୍ମ ।
ଜଣକୁ ଜଣେ କହିଛି ସିନା ଯୁଦ୍ଧଭଙ୍ଗୀ
ଅଧର୍ମେ ଯୁଦ୍ଧ କଲେଟି ନର୍କେ ପଡ଼େ ବେଗି ।
ପ୍ରଭୁ ବୋଇଲେ କି ରୂପେ କହ ହେବ ଯୁଦ୍ଧ
ଅସୁର ବୋଲେ କରିବା ଆସ ମାଲବନ୍ଧ ।
ନୃସିଂହ ବୋଇଲେ ଆମ୍ଭେ ବୁଝିଲେ ଦ୍ୱିଭାଇ
ତୁମ୍ଭେ ତିନିଜଣ ଆସିଅଛ ଦୈତ୍ୟ ଧାଇଁ ।

ସୌଦାସ ବୋଇଲା ମୋର ନାମହେ ସୌଦାସ
ତୋ ନାମ ନୃସିଂହ ପରା ତୁ ବଲ୍ଲଭ ଶିଷ୍ୟ ।
ତୁମ୍ଭର ଭାଗେ ହୋଇଲି ମୁହିଁ ତେବେ ଆଜ
ବୀରବାହୁ ତୁଲେ ଶେଷଦେବଙ୍କୁ ଯେ ଖଞ୍ଜ ।
ନୃସିଂହ ବୋଇଲେ ଏହ୍ନେ ହେବ ଯେବେ ରଣ
ଆମ୍ଭେ ଅଛୁ ବେନି ତୁମ୍ଭେ ଅଛ ତିନିଜଣ ।
ସୌଦାସ ବୋଇଲା ତେବେ ଶୁଣ ପଦ୍ମଆଖି
ତୁମ୍ଭର ବାହନ ପରା ଅଟଇ ଏ ପକ୍ଷୀ ।
କାଳକେତୁ ଦୈତ୍ୟତୁଲେ ତାକୁ ଖଞ୍ଜାକର
ଏହିରୂପେ ଧର୍ମଯୁଦ୍ଧ କଲେ ହେବ ପାର ।
ନୃସିଂହ ବୋଇଲେ ଭଲା ବାଣ୍ଟିଲୁ ତୁ ଭାଗ
ବୁଝିଲେ ପକ୍ଷୀର ଏକା ଅଟଇ ଅଭାଗ୍ୟ ।
କାଳକେତୁ ତୁଲେ ଯାହା ଭୁଞ୍ଜିଲୁ ତୁ ତାକୁ
ଏତିକି ଭୟ ଏକା ଯେ ଲାଗୁଛି ଆମ୍ଭଙ୍କୁ ।
ମାରିବା ଛନ୍ଦ ତର୍କ ନ ଜାଣଇ ସେ କିଛି
ଯହିଁକି ପେଶିଲେ ଚଳେ ବିନତାର ବଚ୍ଛି ।
କଶ୍ୟପଙ୍କ ପୁତ୍ରଯାକେ ଏହି ସେ ଉଦାର
ଯହିଁକି ପେଶିଲେ ତହିଁ ଚଳଇ ତତ୍ପର ।
ଏଡେହେଁ ଯୁଦ୍ଧକୁ ପକ୍ଷୀ ପାରିବ କି ନାହିଁ
କେତେ ହେଁ ଦୁର୍ଗମ ତାକୁ ଲଗାଇଲୁ ତୁହି ।
ଯେଉଁକାଳେ ତୋର ସେହୁ ହୋଇଥିଲେ ଶତ୍ରୁ
ସେହି ମରିଗଲେ ବ୍ୟର୍ଥେ ଗଲା ଆମ୍ଭ କ୍ଷେତ୍ରୁ
ତଥାପି ଆମ୍ଭେ ଦୈତ୍ୟକୁ ପାରୁ ସିନା ମାରି
ଯେ କେବେ ଧନୁଶର ନ ପାରେ ହସ୍ତେ ଧରି ।
କହ ହୋ ଗରୁଡ଼ ଏବେ କହ ତୋ କଥା ତୁ
ଧରିଲେ ମାରିବି ଏହିକ୍ଷଣି କାଳକେତୁ ।
ଗରୁଡ଼ ବୋଇଲା ମୋର କର୍ମେ ଯାହା ଅଛି
ତାହା କେ ଆନକରି ନ ପାରେ ଶିରୀବଚ୍ଛି ।
ତୁମ୍ଭଙ୍କୁ ସେବିବାରୁ ଏ ଦୈତ୍ୟକଲେ ଦୁଃଖ
ମଲେ ମରିବା ପଛେ ନ ଭାବ ପଦ୍ମମୁଖ ।
ଜାତ କରି ପିତା ମାତା ଦିନେ ହେଲେ ମୋତେ
ମାରିଣ ଆଜଯାଏ ନ ଥିଲେ କଦାଚିତେ ।
କେଡ଼େଲୋକ ପୁତ୍ର ମୁହିଁ ଅଟେ ଜାଣ ହରି
ଛାର ଏ ଅସୁର ହାତେ ବ୍ୟର୍ଥେ ଯିବି ମରି ।
ତୁମ୍ଭଙ୍କୁ ଭଜି ଭଜି ମୁଁ ବଞ୍ଚୁଥିଲି କାଳ
ତହିଁକି ଏ ନଷ୍ଟେ ଯେବେ କଲେ ଆସିଗୋଳ ।
କି ରୂପେ ଲାଗିବି ଏବେ ମୁହିଁ ମାଲବନ୍ଧ
ଜାଣି ନାହାନ୍ତି ମୋ ବାପ ଅଜା ଋଷିବୃନ୍ଦ ।
ମୁହିଁ ମାତ୍ର ଜାଣେ ଝିଙ୍କା ବାହୁ ଖଟକାରୀ
ନଖରେ ବିଦାରି ଅଣ୍ଟେ ପକାଏ ଯେ ଚିରି ।
ପ୍ରଭୁ ବୋଇଲେ ଆହୁରି ମାର୍ଗେ ମାଡ଼ିଅଛି
ଧରିବ ବାହୁକୁ ବାହୁ ଛନ୍ଦିହୋଇ ବାଛି ।
ଚିରିଦେବ ବେନି ପାଦଠାରୁ ଶିରଯାଏ
ଏ ରୂପେ ଯେ ମାଲବନ୍ଧେ ଯୁଦ୍ଧ କଲେ ହୁଏ ।
ଶୁଣି ସେ ଗରୁଡ଼ ଅଳି ଅଳ୍ପେ ଦେଲା ହସି
ବୋଇଲା ହୋ ଧନ୍ୟ ଧନ୍ୟ ପ୍ରଭୁ ବ୍ରହ୍ମରାଶି ।
ଯାହାକୁ ଯେତେ ଯେ ଦେଇଥାନ୍ତି ପରମାୟୁ
ତେତେକ ପୂରିଲେ ରଖି ନ ପାରେ କେ ଆଉ ।
ଗରୁଡ଼ ବୋଇଲା ତୁରେ କାଳକେତୁ ଶୁଣ
ଘରଣୀକି ତୋର କହି ଆସିଛୁ କି ପୁଣ ।।
ଯାଉଛି ମୁଁ ମରିବାକୁ ବୋଲି କହିଥାନ୍ତୁ
ଶୁଣି ଉଠିଲା କୋପକରି କାଳକେତୁ ।
ବାସ ପିନ୍ଧିଲା ତ୍ରିକଚ୍ଛି ରୂପେ ଭିଡ଼ି ବାଛି
ଗରୁଡ଼ ଦେଖିଣ ତାକୁ ନିଶ ମୋଡୁ ଅଛି ।
କାଳକେତୁ ବୋଇଲାରେ ଶୁଣ ପକ୍ଷୀ ନଷ୍ଟ
ଏକଇ ମୁଥ ମାରିଣ ଭାଙ୍ଗିବି ତୋ ଅଣ୍ଟ ।
ଗରୁଡ଼ ବୋଇଲା ମୋତେ ଶୂନ୍ୟ ଦେଖିବାରୁ
ନୃସିଂହଙ୍କୁ ନ ମାରି ଯେ ଆସି ମୋତେ ମାରୁ ।
ତୁ ଆଗେ ମାଇଲା ଯାଏ ଚାହିଁଅଛି ତୋତେ
ଦେଖିବା କି ରୂପେ ଆଗ ମାରୁ ଆସି ମୋତେ ।
ମାଇଲାକ୍ଷଣି ଅଣ୍ଟରେ ଦେବି ତୋତେ ଚିରି
ଶୁଣି ଉଠିଲା କାଳକେତୁ କୋପକରି ।
ଗରୁଡ଼ ପରେ ମାରିଲା ନେଇ ବଜ୍ରବିଧା
ଲେଉଟି ପକ୍ଷୀ ମାଇଲା ମୁଖେ ଏଇ ଖୁନ୍ଦା ।
ସେ ଖୁନ୍ଦା ବାଜି ପଡ଼ିଲା ଦୈତ୍ୟ ମୁଖମାଡ଼ି
ବେନିଖଗେ ଧରି ତାକୁ ଦେଲାକ କଚାଡ଼ି ।
ବିଶ୍ୱରୂପ ଧରି ତାକୁ ଶୂନ୍ୟେ ଉଡ଼ିଗଲା
ପଞ୍ଚାଶ ଯୋଜନ ଉଚ୍ଚେ ଛେଚି ପକାଇଲା ।
ଏଡ଼େ ଛେଚାରେ ନୋହିଲା ଦୈତ୍ୟ ପ୍ରାଣନାଶ
ଗରୁଡ଼ ଆଗେ ମିଳିଲା ଧରି କରେ ନିଶ ।
ବୋଇଲେ ପୃଥ୍ୱୀ ଗିଳିବି ଗିଳି ତୋତେ ଜାଣ
କେଉଁ ନୃସିଂହ ରଖିବ ଏବେ ଆସି ପୁଣ ।
ମାରିଛୁ ମୁରର ପୁତ୍ର ନାତି ପରା ତୁହି
ଦେଉଛି ସେ ପରାଭବଯାକ ନାଶି ମୁହିଁ ।
ଗରୁଡ଼ ବୋଇଲା ତୋର ଅଟେ କେଡ଼େ ଭାଗ୍ୟ
ମୃତ୍ୟୁକାଳରେ ଧଇଲୁ ନାମ ତୁ ନୃସିଂହ ।
ଏଥର ଏବେ ଘେନିବି ପ୍ରାଣ ଆଜ ତୋର
ପାରିଲେ ଡାକ ରଖୁ ତୋ ବାପା ମୁରାସୁର ।
ତୋ ଛାର ସଙ୍ଗେ ଲାଗିଲେ ହେବ ଆଉ କିସ
ଉପାଡ଼ି ଦେବି ଆଜ ତୋ ମୋଡ଼ିବାର ନିଶ ।

ଏ ରୂପେ ବୋଲି ଖଗରେ ପକ୍ଷୀ ତାକୁ ଧରି
ହୃଦୟରେ ମାଡ଼ିବସି ଥଣ୍ଟେ ଦେଲା ଚିରି ।
ଚଞ୍ଚୁ ଧରି ଫିଙ୍ଗିଦେଲା ଶବ ସମୁଦ୍ରକୁ
ଗଙ୍ଗାରେ ବୁଡ଼ି ଭେଟିଲା ଆସି ନୃସିଂହକୁ ।
ଶ୍ରୀହରି ବୋଇଲେ ଶୁଣ ହେ ବିନତା ସୁତ
ମୋହର ଘେନି ତୁ କ୍ଳେଶ ପାଇଲୁ ବହୁତ ।
ଏହି ରୂପେ ବୋଲି ହରି ଆଉଁଷିଲେ ଦେହ
ବୋଇଲେ ଆରୋଗ୍ୟ ହୋଇ ଅମର ତୁ ହୁଅ ।
ଗରୁଡ଼ ବୋଇଲା ମୋର ଅଟେ କେଡ଼େ ଭାଗ୍ୟ
ମୋ ଦେହ ଶ୍ରୀପଦ୍ମ କରଲାଗି ହେଲା ଯୋଗ୍ୟ ।
ପଡ଼ିବା ଗଡ଼ିବା କଥା କୋଡ଼ିବା ଯେ ଥିଲା
କରପଦ୍ମ ଲାଗି ସବୁ ଉଶ୍ୱାସ ହୋଇଲା ।
ସକଳ କର୍ତ୍ତା ଯେବଣ ହରି ଭଗବାନ
ତୁମ୍ଭ ମହିମା ଏକା ନ ଜାଣେ ମୂର୍ଖଜନ ।
ତୁମ୍ଭର ଏଡ଼େକ କ୍ଳେଶ ଦେଖି ମୋର ଦେହୀ
ଶରୀର ମୋହର କମ୍ପେ ଅସୁରଙ୍କୁ ଚାହିଁ ।
କିଞ୍ଚିତେ ଆଜ୍ଞା ଫିଟନ୍ତା ଯେବେ ପ୍ରଭୁ ମୁଖୁଁ
ମୁରର ନଗର ଫିଙ୍ଗି ଦ୍ୟନ୍ତି ସମୁଦ୍ରକୁ ।
ପୃଥ୍ୱୀରେ ଅସୁର କରି ନ ରଖନ୍ତି ମୁହିଁ
ଶୁଣିଣ ହସନ୍ତି ମନେ ପ୍ରଭୁ ଭାବଗ୍ରାହୀ ।
ପକ୍ଷୀକି ବୋଇଲେ ତୁହି ସେ ରୂପେ ନୋହୁକି
ତୋହର ପ୍ରାୟ ସଂସାରେ ଜଣେ ମିଳଇ କି ।
ସତ୍ୟଯୁଗରେ ଗରୁଡ଼ ତ୍ରେତାଯୁଗେ ହନୁ
ଦ୍ୱାପର ଯୁଗରେ ପାର୍ଥ ବଳେ ଆମ୍ଭେ ମନୁ ।
କଳିଯୁଗେ ଆମ୍ଭ ଆଜ୍ଞା ଅଟେ ଏକା ବଡ଼
ଘେନନ୍ତି ଏ ଚାରିକଥା ସମ ଯୋଗାରୁଢ଼ ।
ଆମ୍ଭର ଆଜ୍ଞା ସବୁଙ୍କୁ ଅଟେ ଜାଣ ବଳ
ଏ କଥା ଚିହ୍ନି ପାରନ୍ତି ଏକା ସାଧୁଶୀଳ ।
ବୋଇଲା ମୁର କଟକ ଦିଅନ୍ତୁ ଯେ ଫିଙ୍ଗି
ଏ ନୃସିଂହ ଅବତାର ଅଚ୍ଛେ ଯାନ୍ତା ଭାଙ୍ଗି ।
ଏଡ଼େ ଅବତାରକୁ ତୁ କ୍ଷଣେ ଭାଙ୍ଗିଦେଲେ
କି ରୂପେ ନୃସିଂହ ଲୀଳା ରାସ ହେବ ଭଲେ ।
ଶ୍ରୀହରି ବୋଇଲେ ଶୁଣ ବିନତାର ସୁତ
ବୁଝିଲେ ସେ ଦୈତ୍ୟକୁଳ ତୋତେ କେତେ ମାତ୍ର
ଏ ମୋହର ଅବତାର ଘେନି ହୁଏ ସବୁ
ଆବର ଆସିଲେ ଦୈତ୍ୟ କେତେ ସଂହାରିବୁ ।
ତୁ ଏବେ ନାଶିବୁ ଦୈତ୍ୟ ଜଣେ ଭାଗପାଇ
ଆମ୍ଭର ଭାଗ ସାରିବୁ ଆମ୍ଭେ ଦେଖ ତୁହି ।
ଶେଷଦେବଙ୍କୁ ଭାଗରେ ପଡ଼ିଛି ସୌଦାସ
ବୀରବାହୁକୁ କରିବୁ ଆମ୍ଭେ ପ୍ରାଣ ନାଶ ।

ଏ ରୂପେ କହି ତ୍ରିକଚ୍ଛେ କାଛାଦେଲେ ଛନ୍ଦି
ରେ ରେ ଅସୁର ବୋଲିଣ ପାଦ ଦେଲେ ଛନ୍ଦି ।
ଦେଖିଣ ମାଇଲା ବୀରବାହୁ ବାହାସ୍ଫୋଟ
ନୃସିଂହ ଉପରେ ମାଡ଼ି ବସିଲା ସେ ଦୁଷ୍ଟ ।
ନୃସିଂହ ମାଡ଼ି ବସିଲେ ତାକୁ ଲେଉଟାଇ
ମାଇଲେକ ବଜ୍ରମୁଥେ ବୁକୁରେ ତା ନେଇ ।
ବିକ୍ରମ ମୂରତି ଧରି ଶ୍ରୀନୃସିଂହ ନାଥେ
ପାଦେ ପାଦେ ଛନ୍ଦି ପୁଣି ମାଇଲେକ ମୁଥେ ।
ଭୂମିରେ ଯେ ଗଡାଗଡ଼ି ଭିଡାଭିଡ଼ି ହେଲେ
ଲେଉଟି ସେ ମାଡ଼ିବସି ହୃଦେ ତାଡ଼ିଦେଲେ ।
ତଳରୁ ଟେକିଣ ପୁଣି ଶୂନ୍ୟେ ଦେଲେ ଛେଚି
ତହିଁରେ ନ ମରି ଦୈତ୍ୟ ରହିଲାକ ଘୁଞ୍ଚି ।
ବୋଇଲା ଏଥର ଦେବି ନୃସିଂହଙ୍କୁ ଗିଳି
ଦେଖିବା ରଖିବ କେଉଁ ବାପ ପ୍ରତିପାଳି ।
ଏ ରୂପେ ତୁଣ୍ଡ ବିସ୍ତାରି ଦେଲା ବୀରବାହୁ
ଚନ୍ଦ୍ରକୁ ଯେସନେ ଘୋଟି ଆସେ କାଳ ରାହୁ ।
ଆସିଣ ସେ ରୂପେ ଦୈତ୍ୟ ପଡ଼ିଲାକ ମାଡ଼ି
ମରୁ ଏହି ଦୈତ୍ୟ ବୋଲି ଦେଲେ ଘୋର ରଡ଼ି ।
ସତ୍ୟ କରିଛନ୍ତି ମାଲ ବିନ୍ଧାଣ ଯେ ଯୁଦ୍ଧ
ତେଣୁ କରେ ନ ଧଇଲେ ଅସ୍ତ୍ର ଆଦିକନ୍ଦ ।
ଶ୍ରୀ ନୃସିଂହ ରଡ଼ି ଶୁଣି ଦୈତ୍ୟ ଗଲା ଘୁଞ୍ଚି
ହୁଙ୍କାର ନାଦରେ ମାଡ଼ି ବସିଲେ ଶ୍ରୀବତ୍ସି ।
ବିକ୍ରମ ସିଂହ ମୂରତି ହୋଇ ଭଗବାନ
କ୍ରୋଧରେ ଦିଶଇ ଚକ୍ଷୁ ବେନି ରକ୍ତବର୍ଣ୍ଣ ।
ବୋଇଲେ ଏ ଛାରକୁ କି ହେବ ଆଉ ରଖି
ଏ ଯୁଦ୍ଧକୁ ଯେ କେବଳ ଧର୍ମ ହେବ ସାକ୍ଷୀ ।
ଏ ରୂପେ ମାଡ଼ି ବସିଲେ ଯାଇ ଅସୁରକୁ
ଶ୍ରୀପଦ କରରେ ଝିଙ୍କି ଧଇଲେ କେଶକୁ ।
ବୁଲାଇ ଚକ୍ର ପରାୟେ ପିଟିଲେ ବୃକ୍ଷରେ
ଫାଟି ମୁଣ୍ଡ ଗୋଟି ପଡ଼ିଲାକ ବସୁଧାରେ ।
ମାଇଲେ ମୁଥେକ ପୁଣି ବୁକୁରେ ତା ବସି
ହୃଦରେ ଭେଦିଣ ହସ୍ତ ଗର୍ଭେ ଗଲା ପଶି ।
ଆଣିଲେ କଳିଜା ଅନ୍ତପିତ୍ତ ସବୁ ଝିଙ୍କି
ପ୍ରାଣକୁ ଛାଡ଼ି ସେ ଦୈତ୍ୟ ତରାଟିଲା ଆଖି ।
ଅସୁରର ଦେହଯାକ କରି ଖଣ୍ଡ ଖଣ୍ଡ
ଫିଙ୍ଗି ଦେଲେ ସମୁଦ୍ରକୁ ଧରି ତାର ପିଣ୍ଡ ।
ଶରୀରଯାକ ଦିଶଇ ରକ୍ତ ଟୋପି ଟୋପି
ଏଥିଉତ୍ତାରେ ଯେ ଶୁଣ ହେ ନାରଦ ତପୀ ।
ଦୈତ୍ୟ ସଉଦାସର ଯେ ଶୁଣ ଏବେ ଯୁଦ୍ଧ
ଲାଗିଲା ଅନନ୍ତ ସଙ୍ଗେ ତାର ମାଲବନ୍ଧ ।

ଅସୁର ଯେ ସଉଦାସ ଅଟେ ମହାବଳୀ
ସପ୍ତଫଣାକୁ ଦେଖି ନ ପାରେ ପାଦଚାଳି ।
ବୋଇଲା ରହିଛି ଶୂନ୍ୟେ ଫଣାଯାକ ଢାଙ୍କି
ଧଇଲେ ଫଣାରେ ପୁଣ ଦେବେ ମୋତେ ଫୁଙ୍କି
ହଟି ରହିଲେ ରହିବି କଥା ମୋର ଜିଣି
ଯାଇ ମାଡ଼ିବସି ମୋଡ଼ି ଦେବି ସପ୍ତଫେଣୀ ।
ଏ ରୂପେ ପାଞ୍ଚି ଦଇତ୍ୟ ବାତପ୍ରାୟ ହୋଇ
ମାଇଲା ଅନନ୍ତମୂର୍ତ୍ତି ଧରି ବିଧା ନେଇ ।
ବାଜନ୍ତେ ସେ ବିଧା ଯାଇ ଶେଷଦେବ ଶିରେ
ଆଉଁଷି ଦେଇଣ ମାଡ଼ିବସି ଦୈତ୍ୟପରେ ।
ବୋଇଲେ ପାପିଷ୍ଠ ଏବେ ମରିବୁରେ ଜାଣ
ମେରୁ ପରେ ଛେଚିଦେଲେ ଛାଡ଼ିବ ତୋ ପ୍ରାଣ ।
ଏ ରୂପେ ବୋଲିଣ ଝିଙ୍କି ଘେନିଗଲେ ଶେଷ
ଗିରିରେ କଚାଡ଼ନ୍ତେ ନ ମଲା ସଉଦାସ ।
ଅସୁର ନ ମରନ୍ତେ ସେ ବସିଲେକ ମାଡ଼ି
କହୁଣି ମାରି ଧଇଲେ କରେ ପୁଣି ଭିଡ଼ି ।
ଶୂନ୍ୟରେ ଟେକି ତାହାକୁ ଶୂନ୍ୟେ ଦେଲେ ଛେଚି
ନ ମରି ଅସୁର ତେଡ଼େ ମାଡ଼େ ହସୁଅଛି ।
ଦୈତ୍ୟର ହସିବା ଦେଖି ଉଠି କୋପ କରି
ଚକ୍ରଘାଟକୁ ଯେ ଫିଙ୍ଗି ଦେଲେ ତାକୁ ଧରି ।
ସେ ଚକ୍ରଘାଟେ ପଡ଼ି ନ ମଲା ମହାବଳୀ
ପାତାଳ ପର୍ଯ୍ୟନ୍ତ ଗଲା ଭୂମିରେ ଯେ ଗଳି ।
ନ ମରି ଧାଇଁଲା ଚକ୍ରଘାଟୁଁ ଅନ୍ତରାଳେ
ଅନନ୍ତ ପାଶରେ ଆସି ମିଳିଲା ତତ୍କାଳେ ।
ସେ ଚକ୍ରଘାଟରେ ଗଙ୍ଗା ନ ପାରିଲେ ରଖି
କଳେ ମରିବାକୁ ବିହି ନାହାନ୍ତି ଯେ ଲେଖି ।
ବଦ୍ରିକା ପୁରକୁ ଘାଟ ଅଟେ ତେର ଯୁଣ
ଦଣ୍ଡକ ମଧ୍ୟେ ଆସିଲା ଦୈତ୍ୟ ପୁଣି ଜାଣ ।
ଶେଷଦେବଙ୍କୁ ଘୋଟିଲା ଆସି ରାହୁ ପ୍ରାୟେ
ଧରିଛି ଯେ ବିଶ୍ୱରୂପ ଶୂନ୍ୟମାର୍ଗ ଯାଏ ।
ଦେଖି ଶେଷଦେବ ହୃଦେ ବସିଲେକ ମାଡ଼ି
ମଥାପରେ ମଥମାରି ମୁଣ୍ଡେ ମୁଣ୍ଡ କୋଡ଼ି ।
ତେବେ ହେଁ ଦୈତ୍ୟକୁ ଜାଣ ନୁହନ୍ତେ ମରଣ
ଡାକନ୍ତି ଗଗନମାର୍ଗେ ରହି ସୁରଗଣ ।
ଭୋ ଦେବ ଶେଷ ଶୁଣିମା ତୁମ୍ଭେ ଆତ୍ମବାଣୀ
ନାଭିରେ ତା ଅଛି ଝିଙ୍କ ଅମୃତ ଯେ ମଣି ।
ସେ ମଣିଟି ବାହାରିଲେ ଦୈତ୍ୟ ମୃତ୍ୟୁଜାଣ
ତପେ ତାକୁ ବର ଦେଇଛନ୍ତି ବ୍ରହ୍ମା ପୁଣ ।
ଶୁଣିଣ ସେ ଶେଷଦେବ ହେଲେ କୋପାନଳ
ନାଭିରେ ମୁଥେକ ନେଇ ମାଇଲେ ତତ୍କାଳ ।

ହସିଲେ ହୁଙ୍କାର ଧ୍ୱନିକରି ହୃଦେ ମାଡ଼ି
ମହାକ୍ରୋଧଭରେ ନାଭିମଣ୍ଡଳକୁ ତାଡ଼ି ।
ବସିଲେ ହୃଦୟଯାକ ମାଡ଼ି ସପ୍ତଫେଣୀ
ଫୁଟାଇ ନାଭି ପେଟରୁ କାଢ଼ି ସୁଧାମଣି ।
ଦକ୍ଷିଣ କରରେ ଭରି କାଢ଼ିଲେକ ଗର୍ଜି
ପ୍ରହାର କରିଣ ପାଦ ପୋଛିଲେ ତା ପାଞ୍ଜି ।
ପୁଣି ହିଁ ସେ କ୍ରୋଧ ହେଲେ ପ୍ରଭୁ ସାନଭାଇ
ଅକର୍ମଶିଳା ଉପରେ ଛେଚିଲେକ ନେଇ ।
ଦୈତ୍ୟକୁ ମାରି ଗଙ୍ଗାରେ ଯାଇ ସ୍ନାନ କଲେ
ଶୂନ୍ୟରେ କୁସୁମ ବୃଷ୍ଟି ଦେବତାଏ କଲେ ।
କୋମଳ ବାକ୍ୟରେ ଦେବେ କରନ୍ତି ଯେ ସ୍ତୁତି
ବୋଲନ୍ତି ଅନନ୍ତ ପ୍ରତ୍ୟକ୍ଷରେ ବହୁମୂର୍ତ୍ତି ।
ଶୁକ୍ଳ ଶୁଭ୍ର ଶଙ୍ଖ ଆଉ ଗୋକ୍ଷୀରର ଆଭା
ଶିରରେ ସପତଫଣୀ ଦିବ୍ୟଜ୍ୟୋତି ପ୍ରଭା ।
ପିଙ୍ଗଳ ଯେ କୃଷ୍ଣବର୍ଣ୍ଣ ଦିଶେ ଜଟାଜ୍ୟୋତି
ହସ୍ତରେ ଶୋଭା ବାବଲଶର ବ୍ରହ୍ମଶକ୍ତି ।
ପ୍ରସନ୍ନ ମୁଖ ପୁରୁଷ ଆଦି ଯୋଗାରୂଢ଼
ଉଦୟ ରବିର ପ୍ରାୟ ଦିଶେ ନେତ୍ର ବେଢ଼ ।
ଦିଶଇ କର୍ଣ୍ଣ କୁଣ୍ଡଳ ଗୁରୁ ଶୁକ୍ର ଜ୍ୟୋତି
କନ୍ଦର୍ପ ତୀକ୍ଷ୍ଣ ବାଣ ଭ୍ରୂଲତା ବେନିପନ୍ତି ।
ନାସାରୁ ଅମୃତ ପ୍ରାୟ ବହଇ ପବନ
ଯେ ପବନଯାକ ଜାଣ ନାସାରୁ ଉତ୍ପନ୍ନ ।
ସେ ପବନ ସବୁ ନାକେ ସୁଲଳିତ ବହେ
ଏକଥା ପ୍ରମାଣ ବୋଲି ନଚିନ୍ତେ କେବେଁ ହେଁ ।
ଆତ୍ମା ଭିତରୁ ପବନ ଆସୁଥାଇ ବହି
ବହୁଥିବା ଯାଏ ଜୀବ ସଂସାରେ ଜୀଅଇ ।
ଯୋଗାରୁଢ଼ ପୁରୁଷ ଯେ ସ୍ୱୟଂ ବ୍ରହ୍ମମୟ
ଯୋଗୀନ୍ଦ୍ରମାନେ କରନ୍ତି ବସି ତାଙ୍କୁ ଲୟ ।
ଅନନ୍ତ ଶେଷଦେବ ତୁ ଇଳାଦେବୀ ସ୍ୱାମୀ
ତିଳପ୍ରାୟ ବହୁ ପଞ୍ଚ ଶତ କୋଟି ଭୂମି ।
କଟିତଟେ ଶୋହେ ଝୀନ ପଟନୀର ବାସ
ସେ ବାସକୁ ଶ୍ରୀକପଡ଼ା କରନ୍ତି ପୁରୁଷ ।
ଏ ଅବତାରକୁ ଆଦି ଅବତାର ଯେତେ
ବଡ଼ଭାଇ ହେବ ତୁମ୍ଭେ ତ୍ରେତାଯୁଗ ଅନ୍ତେ ।
ଏ ସଂସାରେ ଯେଉଁରୂପେ ଅଛି ଭାଇ ଭାଗ
ଏ ରୂପେ ବାଣ୍ଟି ଜନ୍ମିବ ତୁମ୍ଭେ ଚାରିଯୁଗ ।
ସତ୍ୟ ତ୍ରେତାଯୁଗେ ହେବ ଶ୍ରୀନୃସିଂହ ବଡ
ଦ୍ୱାପର କଳିଯୁଗେ ଏ ବଡ଼ ଯୋଗରୁଢ଼ ।
ନୃସିଂହ ବଡ଼ ହୋଇଣ ସାନ ହେବ ପୁଣ
ସାନହୋଇ ଜ୍ୟେଷ୍ଠ ଭାଇ ହେବ ତୁମ୍ଭେ ଜାଣ ।

ବଳଭଦ୍ର ନାମ ବହି ହେବ ତୁମ୍ଭେ ଜାତ
ଦ୍ୱାପର କଳିଯୁଗରେ ନାମ ହେବ ଖ୍ୟାତ ।
ପୂର୍ବରୁ ଗୋବିନ୍ଦ ଏହା ଅଛଇ ଭିଆଇ
ବୁଝିଲେ ନୃସିଂହ ଶେଷ ଅଟେ ଏକା ଦେହୀ ।
ପୃଥ୍ୱୀରେ ଧାରଣା ପ୍ରଭୁ ତୁମ୍ଭେ ଏକା ଅଟ
ମୁର ଭାଇର କରିବ ତୁମ୍ଭେ ମୁଣ୍ଡକାଟ ।
ତହିଁ ଉତ୍ତାରୁ ମୁରକୁ ମାରିବେ ନୃସିଂହ
ତେବେ ହେ ଆମ୍ଭେ ବସିବୁ ଜାଣ ଯାଇ ସ୍ୱର୍ଗ ।
ଆମ୍ଭକୁ ଯେ କେତେ ଦୁଃଖ ଦେଲାଣି ସେ ମୁରା
ଏତେ କାଳ ସାମନ୍ତ ପାଇଲୁ ତୁମ୍ଭ ପରା ।
ଜଣାଇ କହୁଛୁଁ ଆମ୍ଭେ ଅନନ୍ତକୁ ଡାକି
କେତେ କେତେ କଷ୍ଟ ସେହୁ ଦେଲାଣି ସଭିଙ୍କି ।
ରାନ୍ଧଣା ରନ୍ଧାଇଲା ଉଚ୍ଛିଷ୍ଟ ପୋଛାଇଲା
ପାଇଟା ଧୁଆଇଲା ହାନ୍ଦୋଳା ବୁହାଇଲା ।
ଚରଣକୁ ଘସାଇଲା ଗ୍ରାମ ଜଗାଇଲା
ଲୋକବର୍ଗ କରି ଚିଠିପତ୍ର ବୁହାଇଲା ।
ବିଷୟାକୁ କରାଇଲା କୃଷି କରାଇଲା
ମଣ୍ଡପ ଛାଅ ବୋଲିଣ ମୁଖେ ଆଜ୍ଞା ଦେଲା ।
ଅତି ଉଗ୍ର ଲୋକଙ୍କୁ ଯେ ଡରିଥାନ୍ତି ପ୍ରାଣୀ
ସେ ଯାହା ବୋଇଲେ ତାହା କରନ୍ତି ସେ କ୍ଷଣି ।
ଅତି ଉଗ୍ର ଲୋକ ଜାଣ ଅଂଶ୍ଚେ ନାଶଯାଇ
ତେଣୁ ସେ ପ୍ରଭୁଙ୍କୁ ଆମ୍ଭେ କହୁଛୁ ଜଣାଇ ।
ଯେ ଯେଡ଼େ ଯୋଗ୍ୟ ତାକୁ ନ କଲେ ଗଉରବ
ଏ କଥାଟି ସତେ ମନ୍ଦ ମନେ ବିଚାରିବ ।
ପଣ୍ଡିତ ଲୋକଙ୍କୁ ନିନ୍ଦି ମୂର୍ଖଙ୍କୁ ଯେ ବନ୍ଦେ
କେତେବେଳେ ଶିରୀ ତାର ନ ରହନ୍ତି କନ୍ଧେ ।
ଦୈତ୍ୟଙ୍କ ଶିରୀ ଗଲାଣି ଦେହୁ ଏବେ ଛାଡ଼ି
କେବଳ କହୁଛୁ ଆମ୍ଭେ ଦୁଃଖେ କରଯୋଡ଼ି ।
ଦିନକ ଗଲେ ଆମ୍ଭଙ୍କୁ ଲାଗେ ଯୁଗପ୍ରାୟ
ଦୈତ୍ୟଙ୍କ ଲାଗି ସ୍ୱର୍ଗେ ନ ରହୁ ଦେବତାଏ ।
ଦୟା ଥିବାରୁ ତୁମ୍ଭର ଆସିଲୁ ଯେ ଏଥ
ନୋହିଲେକ ଅନ୍ଧପରି ଲାଗେ ସବୁ ପଥ ।
ଶୁଣିଣ ସେ ଇଳାକାନ୍ତ ଦେବେ ଦେଲେ ବୋଧ
ବୋଇଲେ ଏବେ ଆଉ ନ କରେ କହି କ୍ରୋଧ ।
କ୍ଷଣକମାତ୍ରେ ଦିଅନ୍ତୁ ଆମ୍ଭେ ହେଲେ ନାଶି
ଭାବି ବୁଝିଥାଉ ଦୈତ୍ୟଙ୍କର କଥା ବସି ।
ପଞ୍ଚମ ଦିନ ମୁରର ଅଛି ଆଉ ଭୋଗ
ମିଥୁନମାସେ ହୋଇବ ତାର ପ୍ରାଣତ୍ୟାଗ ।
ଶୁଣିଣ ଦେବତାମାନେ ହୋଇଲେ ସନ୍ତୋଷ
ଅନନ୍ତ ପାଦରେ ନମି ଗଲେ ସ୍ୱର୍ଗଦେଶ ।

ଏଥିଉତ୍ତାରେ ନୃସିଂହ ଶେଷ ବେନିଭାଇ
ମନ୍ତ୍ରୀକି ଆଜ୍ଞା ଦେଲେକ ନଗ୍ରେ ଯିବାପାଇଁ ।
କର୍ଣ୍ଣଟେଶ୍ୱର ସହିତେ ସର୍ବେ ହୁଅ ସଜ
ଦୈତ୍ୟ ତ ମଲେଣି ଆଉ ଅଛି କିସ କାର୍ଯ୍ୟ ।
ଶୁଣି ମନ୍ତ୍ରୀବର ଶ୍ରୀ ଆଜ୍ଞା ପରମାଣେ
ଟମକ ବଜାଅ ବୋଲି କହିଲେ ତକ୍ଷଣେ ।
ଶୁଣିଣ ସେ ଟମକିଆ ପିଟିଲା ଟମକ
ନଗ୍ରକୁ ଚାଲ ବୋଲିଣ ଶବ୍ଦକଲା ହାକ ।
ବୋଇଲାକ ରାତ୍ର ଆସି ହେଲା ଦାଣ୍ଡେ ଏବେ
ଦିହୁଡ଼ି ଯେ ଦୀପହୁଳା ଲଗା ଯାଇ ସର୍ବେ ।
ଏଥିଉତ୍ତାରେ ନୃସିଂହ ଶେଷ ବେନିଭାଇ
ଗରୁଡ଼ ଉପରେ ବିଜେ କଲେ ବେନିଭାଇ ।
ମହୁରୀ ଶଙ୍ଖ ଦମାଲୁ ମେଘା ଢୋଲ ବାଜେ
ଆଡ଼ପ ମଣ୍ଡପୁଁ ଯେହ୍ନେ ବିଜେ ଦେବରାଜେ ।
ବାହୁଡ଼ି ଗୁଣ୍ଡିଚା ବିଜେ ଯେହ୍ନେ ଶୋଭାଦିଶେ
ତେହ୍ନେ ଆସନ୍ତି ବଦ୍ରିକା ନଗ୍ର ଜଗଦୀଶେ ।
ଚନ୍ଦ୍ରଉଦିଆ ଦିହୁଡ଼ି ଦୀପ ହୁଳା ଜଳେ
ଦିନରୁ ଅଧିକ ଶୋଭେ ଯାନ୍ତି ଆଦିମୁଳେ ।
ଦୈତ୍ୟର ମରୁଡ଼ି ଯାକ ବାଟେ କଥା ହୋଇ
ହସି ସହି ନଗରେ ସେ ପ୍ରବେଶିଲେ ଯାଇ ।
ଗରୁଡ଼ କନ୍ଧରୁ ଉଠି ପ୍ରଭୁ ଶେଷଦେବେ
ମନ୍ତ୍ରୀକି ବୋଇଲେ ଯାଅ ଯେଝାପୁରେ ଏବେ ।
ଗରୁଡ଼ରୁ ବସା ସଞ୍ଚା କରାଇ ବହନ
ଭିତର ଗୃହେ ମିଳିଲେ ଯାଇ ଭଗବାନ ।
ପିତା ମାତାଏ ଦେଖିଣ ହୋଇଲେ ହରଷ
ମଣୋହି କୋଠାରେ ବିଜେ କଲେ ହୃଷୀକେଶ
ପରଷନ୍ତି ମହାଲକ୍ଷ୍ମୀ ସୁଖାଦ୍ୟ ଆଣିଣ
ମଣୋହି କଲେକ ବସି ଅନନ୍ତ ସଙ୍ଗେଣ ।
ଭୁଞ୍ଜିଣ ସେ ଆଚମନ ସାରି ବେନିଭାଇ
ସୁପାତି ଶେଯରେ ବିଜେକଲେ ଯହୁଁ ଯାଇ ।
ଲକ୍ଷ୍ମୀଙ୍କ କୋଳେ ଶୁତିଲେ ପ୍ରଭୁ ନାରାୟଣ
ଖଟିଲେ ଅଷ୍ଟସଖି ଯେ ସେବାରେ ଆସିଣ ।
ଚୌଷଠି ସହସ୍ର କନ୍ୟା ଚାମର ଯେ ଧରି
ବସିଲେ ଲକ୍ଷ୍ମୀ ନୃସିଂହ ପାଦେ ସେବାକରି ।
ଇଲା ଠାକୁରାଣୀ ପୁରେ ଶେଷ କଲେ ବିଜେ
ଭଜେ ପୀତାମ୍ବର ଦାସ ଶ୍ରୀପଦ ପଙ୍କଜେ ।
ସୁଜନ ସୁପଣ୍ଡିତ ହେ ସାଧୁଜ୍ଞାନ ଦୀକ୍ଷା
ଅନୁସରି ମାଗୋ ମୋତେ ଦିଅ ଭକ୍ତିଦୀକ୍ଷା ।
କି ରୂପେ ଭକତି ହେବ ମାଗୁଛି ତା ଦିଅ
ଏ ଭକ୍ତି ଦେଇଣ ମୋତେ ଦୟା କରିଥାଅ ।

ମାଗୁଛି ଆନ ଭିକ୍ଷା ନ ପୂରେ ପେଟ ଜାଣ
କୁଟୁମ୍ବ ପୋଷିବା ଅର୍ଥେ ମାଗେ ପୁତ୍ର ପୁଣ ।
କୁଟୁମ୍ବ ଜଞ୍ଜାଳ ଅଟେ ଏ ଦେହକୁ ମାୟା
ମାୟାରେ ପଡ଼ି ଚିହ୍ନି ନ ପାରେ ବିଷ୍ଣୁକାୟା ।
ମାଗୁଅଛି ଭିକ୍ଷା ତୁହି ସାଧୁ ପଦେ ସେବି
ଭକ୍ତି ଭିକ୍ଷା ଦେଲେ ସଂସାରୁ ମୁଁ ତରିଯିବି ।
ସୁଭକ୍ତ ଜ୍ଞାନ ଧ୍ୟାନ ଏ ତିନି ମୋତେ ଦେବା
ଆନ ଭିକ୍ଷାରେ ଗର୍ଭ ନ ପୁରେ ମୋର ବାବା ।
ଋଷିକୁଲ୍ୟା ନଦୀତୀରେ ଅଟେ ମୋର ମଠ
କୁଟୁମ୍ବ ଜଞ୍ଜାଳେ କଲି ପଡ଼ି କାଳ ନଷ୍ଟ ।
ଯେଉଁ ଦିନ ଖୋରାକ ନ ମିଳେ ଅକସ୍ମାତେ
କୁଟୁମ୍ବ ଆକୁଳେ ମନ ଘାଣ୍ଟି ହୁଏ ନିତ୍ୟେ ।
କୁଟୁମ୍ବ ଆକୁଳ ମେରୁଠାରୁ ଅଟେ ଗରୁ
କେବଳ କାଟେ ମୁଁ କାଳ ହରି ଭଜନରୁ ।
ହରି ମୋର ଅନ୍ନଦାତା ହରି ମୋକ୍ଷଦାତା
ହରିବିନୁ ତାରଣ ଯେ ନାହିଁ ଆନକର୍ତ୍ତା ।
ଏଣୁ ସାଧୁଙ୍କୁ ମାଗୁଛି ମୁହିଁ ଜ୍ଞାନ ଭିକ୍ଷା
କୁଟୁମ୍ବ ଜଞ୍ଜାଳୁ ତାରି ମୋତେ କର ରକ୍ଷା ।
ରକ୍ଷାକଲେ ଦୀକ୍ଷା ମୁଁ ପାଇବି ଜ୍ଞାନ ଭକ୍ତି
ପୀତାମ୍ବରଙ୍କୁ ରଖିବେ ଦେବୀ ସରସ୍ୱତୀ ।



## ଅମୃତମଣି ବୃତ୍ତାନ୍ତ

ଏଥୁଅନନ୍ତରେ ପୁଣି ନାରଦ ଯେ ମୁନି
କୃତ୍ୟକୃତ୍ୟ ହୋଇ ପୁଚ୍ଛାକଲେ ପଦ୍ମଯୋନି ।
ବୋଇଲେ ମଲେ ମୁରର ଯେଉଁ ତିନି ଦୈତ୍ୟ
ଗୋଟିଏ କଥା ଲାଗିଲା ମୋତେ ଆଚମ୍ବିତ ।
ସଉଦାସ ବୋଲି ଯେହୁ ଅଟେ ଦୈତ୍ୟରାଣ
ଅମୃତମଣି ପାଇଲା କାହୁଁ ସେହୁ ପୁଣ ।
ନାନାଦି ରିଷ୍ଟରୁ ବଞ୍ଚିଥିଲା କେତେକାଳୁ
ଅନନ୍ତ ବୋଲି ମାଇଲେ ତାକୁ ଯୋଗବଳୁ ।
ନାରଦ ଯେ ପଚାରନ୍ତେ ହସି ପଦ୍ମଯୋନି
ବୋଇଲେ କହିବା ତାହା ଶୁଣ ତେବେ ମୁନି ।
ଏହୁ ବଡ଼ କଉତୁକ କଥା ଅଟେ ଜାଣ
ପଚାରିବାରୁ ବୁଝୁଛ ତୁମ୍ଭେ ସିନା ପୁଣ ।
ତୁମ୍ଭର ପ୍ରାୟେ ଶ୍ରୋତା ନ ମିଳେ ଚାରିଯୁଗେ
ସୌଦାସର କଥା ଶୁଣ ଯେହ୍ନେ ବରମାଗେ ।
ପୂର୍ବଜନ୍ମରେ ସେ ଲକ୍ଷେ ବିପ୍ରଙ୍କୁ ଯେ ବରି
ନିତିହିଁ ଅନ୍ନଭୋଜନ ଦିଏ ପୂର୍ଣ୍ଣକରି ।
ଏମନ୍ତେ ସେ ମାଘମାସ ଦ୍ୱାଦଶୀରେ ପୁଣି
ଭୋଳାରେ ଆମିଷ ଗୃହେ ରନ୍ଧାଇଲା ଆଣି ।
ବିପ୍ରଙ୍କୁ ବସାଇ ପୁଣି ଦ୍ୟନ୍ତେ ଅନ୍ନଗ୍ରାସ
ତହିଁର ସଙ୍ଗତେ ଆଣି ପରଷେ ଆମିଷ ।
ଯେତେକ ବ୍ରାହ୍ମଣ ତହିଁ ସର୍ବେ ସାମବେଦୀ
ନିତିହିଁ ଘରେ ଦିଅଇ ଅନ୍ନ ରାନ୍ଧିରୁନ୍ଧି ।
ଦୁର୍ଭାଗ୍ୟ କର୍ମରୁ ବୁଦ୍ଧି ହ୍ୱନ୍ତେ ବାମ ଜାଣ
ରନ୍ଧାଇଲା ସେ ଦିନ ହେ ଆମିଷ ତିଉଣ ।
ଅନ୍ନତୁଲେ ସେ ଆମିଷ ଦ୍ୟନ୍ତେ ଆଣି ଥୋଇ
ଉଠିଲେ ବ୍ରାହ୍ମଣେ ତାହା ଦେଖି କ୍ରୋଧ ହୋଇ ।
ବୋଇଲେ ଆରେ ପାପିଷ୍ଠ କଲୁ କେଡ଼େ କୃତ୍ୟ
କି ବୋଲି ଆମିଷ ଦେଲୁ ମିଶାଇ ତୁ ଭାତ ।
ଏ ପାପେ ଯେ ତୋର ନାହିଁ ଆନ ପ୍ରତିକାର
ଯାଅ ଆରେ ସଉଦାସ ହୁଏ ତୁ ଅସୁର ।
ଏହିରୂପେ ଶାପଦେଇ ଯାନ୍ତେ ବିପ୍ରମାନେ
ମରା ଉଭାରୁ ଜନ୍ମ ସେ ହେଲା ଦୈତ୍ୟଗଣେ ।
ଅସୁର ବୁଦ୍ଧି ଧରିଣ ବହୁ ପାପ କଲା
ବ୍ରାହ୍ମଣ ଗୋରୁ ଆଦି ସେ ସବୁ ସଂହାରିଲା ।
ଏ ରୂପେ ସେ କେତେଦିନ ମନେ ବୁଦ୍ଧି ପାଞ୍ଚି
ତପସ୍ୟା କରିଣ ଏବେ ସେବିବି ବିରଞ୍ଚି ।
ଏତେ ବିଚାରି ଦଇତ୍ୟ ତପେ ମନ କଲା
ନୈମିଷା ଅରଣ୍ୟେ ପଶି ଧାତାଙ୍କୁ ସେବିଲା ।
ପିପାସା ଯେ କ୍ଷୁଧା ନିଦ୍ରା ଦେଲା ସବୁ ଛାଡ଼ି
ଭାରିଯା ମୁହାଁସ ଆଦି ମନରେ ନ ଲୋଡ଼ି ।
ଏ ରୂପେ କେତେକ କାଳ ବସି ତପକଲା
ତେବେ ଧାତାର ଆସନ ପୁଣି ନ ହଲିଲା ।
ତା ଦେଖି ଦଇତ୍ୟ ଉଠି ବିଚାରିଲା ପୁଣି
ତାହାର ଉଚ୍ଚେ ଖୋଳିଲା ଭୂମି ଶାସ୍ତ୍ର ଆଣି ।
ତହିଁ ପଶିଣ ପୋତିଲା ତାହାର ଯେ ଗାତ୍ର
କେବଳ ନାସିକା ଚକ୍ଷୁ ଦିଶେ ଏକମାତ୍ର ।
ଭଜୁଥାଇ ଧାତା ନାମ ମୁହୂର୍ତ୍ତେ ନ ଛାଡ଼ି
ନ ଖାଏ ଅନ୍ନ କିଛି ସେ ମନ୍ତ୍ର ଏକା ପଢ଼ି ।
ଏ ରୂପେ ପୋତି ହୋଇ ସେ ମନ୍ତ୍ର କରେ ଜପ
ସହସ୍ର ବରଷେ ତୃଣପରି ହେଲା ରୂପ ।
ନିର୍ଜୀବ ପ୍ରାୟେ ହୁଅନ୍ତେ ଆସି ପରମେଷ୍ଠୀ
ଚାହିଁଲେ ଭୂମିରେ ପୋତି ହୋଇଛି କାୟାଟି ।
କଢ଼ାଇ ମୃତ୍ତିକା କଲେ ବାହାର ତା ଦେହ
ପାଣି ମୁଠାଏ ମନ୍ତ୍ରି ସିଞ୍ଚିଲେ ପିତାମହ ।
ଚେତନା ପାଇ ଦଇତ୍ୟ ଡାକିଲା ଧାତାକୁ
ବୋଇଲା କିମ୍ପା ଭାଙ୍ଗିଲ ଆସି ତପସ୍ୟାକୁ ।
ବିଧାତା ବୋଇଲେ ବସ ତୁ ଯାହାକୁ ଭଜ
ସେଜାଣି ଆସିଲେ ବିଜେ କରି ତୋର କାର୍ଯ୍ୟ ।

ଅସୁର ବୋଲେ ଭଜନ ମୋର ଅଷ୍ଟବାହୁ
ବ୍ରହ୍ମାର ବିନେ ମୁହିଁ ନ ଜାଣେ ଆନ କେହୁ ।
ମସ୍ତକୁ ସାଧୁ ସାଧୁ ଏ ଦେହ ଅବା ଯିବ
ଏ ବେନି କଥା ବୁଝି ସେ ରଖିବେ ଦଇବ ।
ବିଧାତା ବୋଇଲେ ଆମ୍ଭେ ବ୍ରହ୍ମା ଏକ ଅଟୁ
ଆସିବୁ ବର ଦେବାକୁ ଧରି କୁଶବଟୁ ।
ଦେଖରେ ମୋହର ଏବେ ଚାରୋଟି ଲପନ
ଅଷ୍ଟଭୁଜ ଅଷ୍ଟଆଖି ଆଠଗୋଟି କର୍ଣ୍ଣ ।
କନ୍ଧରେ ଯେ ଯଜ୍ଞସୂତ୍ର ହସ୍ତେ ଜପାମାଳି
ସବୁକୁ ମୁଁ ଭୋଗ ଦେଇଅଛି ପ୍ରତିପାଳି ।
ହରିମନ୍ଦିର ଚେତା ମୋ ନାସୁ କେଶଯାଏ
ବ୍ରହ୍ମା ସଂପ୍ରଦା ତିଳକ ପ୍ରସିଦ୍ଧ ନାମ ଏ ।
ଏ ତିଳକ ଘେନି ବ୍ରହ୍ମା ସମ୍ପ୍ରଦାୟର ପୁରୁ
ମାଗିଲେ ବର କ୍ଷଣକେ ଆମ୍ଭେ ଦେଇପାରୁ ।
ଏ ରୂପେ କହନ୍ତେ ବ୍ରହ୍ମା ଚିହ୍ନିଲା ସୌଦାସ
ବୋଇଲା ନିଶ୍ଚେ ଅଟନ୍ତି ଏହୁ ଲୋକଈଶ ।
ଏ ରୂପେ ଚିହ୍ନି ନମିଲା ଦୈତ୍ୟ ପିତା ପାଦେ
ବୋଇଲାକ ବିଜେ କଲେ ବସି ହଂସହୃଦେ ।
ବ୍ରହ୍ମା ବୋଇଲେ ତୁହିରେ ମାଗୁଛୁ କି ମାଗ
ଯାହାକୁ ମାଗିବୁ ତାହା ଦେବା ଆମେ ଆଗ ।
ଦୈତ୍ୟ ବୋଇଲା ଅମର କରି ମୋତେ ରଖ
ଯାଚି ବର ଯେବେ ଦେଲ ଆହେ ଚତୁର୍ମୁଖ ।
ବ୍ରାହ୍ମଣମାନଙ୍କ ଶାପୁଁ ଯିବି ମୁହିଁ ତରି
ଆବର ବର ମାଗୁଛି ଦିଅ ମୁଖ ଚାରି ।
ଯେତେକାଳ ବଞ୍ଚିବି ମୁଁ ତ୍ରିଜୀବୀ ହୋଇବି
କାହାର ହସ୍ତରେ ମୁହିଁ କେବେ ନ ମରିବି ।
ବିଧାତା ବୋଇଲେ ଶୁଣ କହିବା ତା ଏବେ
ଜନମ ହେଲେ ଶରୀର ଛାଡ଼ନ୍ତି ସେ ସର୍ବେ ।
କେହୁ ଦଶ ବିଂଶେ କେହୁ ବାରବର୍ଷେ ମରେ
କେହୁ ଅବା ମରେ ଯାଇ ଷାଠିଏ ବର୍ଷରେ ।
ଶ୍ରୀବିଷ୍ଣୁ ପରା ସ୍ୱାମୀ ଏ ମହୀରେ ଜନ୍ମିଲେ
ସେ ପୁଣି ଚଳନ୍ତି ଲୀଳା ସାରି ମନହେଲେ ।
ଆଉ କଥାଏ କହିବା ମଧ ତୋତେ ଶୁଣ
ବ୍ରାହ୍ମଣମାନଙ୍କ ମହିମାଟି ଯେତେ ପୁଣ ।
ଗୋବିନ୍ଦଠାରୁ କେ ବଡ଼ ବ୍ରହ୍ମାଣ୍ଡରେ ନାହିଁ
ସେ ପୁଣି ବିପ୍ରର ପାଦ ହୃଦେ ଛନ୍ତି ବହି ।
ଶ୍ରୀବିଷ୍ଣୁ ପରା ପ୍ରଭୁ ସେ ବିପ୍ର ପାଦଘାତେ
ଚିହ୍ନକୁ ଲିଭାଇଣ ନ ପାରେ କଦାଚିତେ ।
କହିବା ଏବେ ତୋତେ ସେ କଥା ଆରେ ଶୁଣ
ଭାଗ୍ୟରୁ ମୋତେ ଯେ ଭେଟ ପାଇଲୁ ତୁ ଜାଣ ।
ଅମୃତମଣି ଦେଉଛି ତୋତେ ଏବେ ନିଅ
ତାର ନାଭିରେ ଥୋଇ ତୁ ଗୁପ୍ତେ ରଖି ଥାଅ ।
କାହାକୁ ଗୋଚର ତୁହି ନ କରିବୁ ଏହା
ମରିବୁ ତୁ ଯାହା ହାତେ କହିବା ଯେ ତାହା ।
ନୃସିଂହ ମହାପ୍ରଭୁ ଯେ ହେବେ ଅବତାର
ଜନ୍ମିବେ ତାହାଙ୍କ ସଙ୍ଗେ ଅନନ୍ତ ଆବର ।
ସେ ପ୍ରଭୁ ତୁଲେ କରିବୁ ଯେବେ ତୁହି ଯୁଦ୍ଧ
ଅବଶ୍ୟ ତାହାଙ୍କ କରେ ହେବୁ ପ୍ରାଣେ ବଧ ।
ନାଭି ଖୋଳିକେ ଯେହ୍ନେ ନ ନେବ ମଣିକୋଷ
ଏଥକୁ ତ ଲୟ କରିଥିବୁ ସଉଦାସ ।
ଅସୁର ବୋଲେ ଅପାର କାଳର ଏ କଥା
ଆନକେ ମାରିତୋତେ ନ ପାରେ ଏ ବ୍ୟବସ୍ଥା ।
ବିଧାତା ବୋଇଲେ ଦେଲଇ ମୁଁ ବର ଯେତେ
ଆନର ହାତେ ତୋ ମୃତ୍ୟୁ ନାହିଁ କଦାଚିତେ ।
ଏ ରୂପେ କହି ହସିଲେ ବ୍ରହ୍ମା ହଂସପିଠି
ପୁଣି ନାରଦ କହନ୍ତି ପୁଣ ପରମେଷ୍ଠି ।
ସୌଦାସ ଦୈତ୍ୟର କଥା ଏ ରୂପେ ସେ ଜାଣ
କହିବା ମୁରଦୈତ୍ୟର କଥା ଏବେ ଶୁଣ ।
ଏ ରୂପେ ରାଜାର ଜାଣ ମରୁ ସେନା ତିନି
ଆସିଲେ ଦୂତମାନେ ଯେ ମଲାବାର୍ତ୍ତା ଘେନି ।
ମୁରର ଆଗେ କହିଲେ ଯାଇ ବସି ଚାର
ବୋଇଲେ ତିନିସେନା ତ ଗଲେ ଯମପୁର ।
ମାଇଲେ କୃଷ୍ଣବଲ୍ଲଭ ପୋଏ ମଲ୍ଲଯୁଦ୍ଧେ
ପଡ଼ିବାରୁ ଘାତେ ବନ ଭାଜିଗଲା ଅଧେ ।
ଶୁଣିଣ ବୋଲେ ରାଜାରେ କିସ ଆସି କହୁ
ସୌଦାସକୁ ମାରିବାକୁ ଏ ସଂସାରେ କେହୁ ।
କେଡ଼େବଡ଼ କ୍ଷତ୍ରିକୁରେ ମାଇଲେକ ରଣେ
ଅମରବର ପାଇଛି ସେହି ମୁହିଁ ଜାଣେ ।
ଦୂତେ ବୋଇଲେ ଫେଡ଼ିଣ ତାର ନାଭିମୂଳ
ପଦାକୁ କାଢ଼ିଣ ଫିଙ୍ଗି ଦେଲେ ମଣିଶିଳ ।
ନୃସିଂହର ସାନଭାଇ ଅନନ୍ତଟି ଯେହୁ
ସୌଦାସର ମୃତ୍ୟୁଭେଦ ପାଇଲେ ସେ କାହୁଁ ।
ବଜ୍ରଶକତି ଧରିଣ ନାଭିଦେଶ ଫୋଡ଼ି
ଅମୃତମଣି ଗୋଟିକ ଦେଲେ ଯହୁଁ କାଢ଼ି ।
ତେବେ ହେଁ ସେ ମୁରାସୁର ମନେ ସତ ଗଲା
କହିବା ମାର୍ଗୁ ମୋତେ ସେ ଏବେ ଜଣାଗଲା ।
ମନରେ ବସିଣ ଚିନ୍ତାକଲା ରାଜା କାନ୍ଦି
ବୋଇଲା ଘରେ ରହିଲି ବ୍ୟର୍ଥେ ମୁହିଁ ବନ୍ଦି ।
ଆରେ ଆରେ କାଳକେତୁ ଆରେ ବୀରବାହୁ
ଆହାରେ ତୁ ସଉଦାସ ରଣେ ଅଟୁ ରାହୁ ।

କେତେ ହେଁ କାଳରୁ ମୋତେ ଥିଲ ସେବା କର
ବ୍ରାହ୍ମଣ ହସ୍ତରେ ଏବେ ବ୍ୟର୍ଥେ ଗଲ ମରି ।
ଯେବଣ ବିପ୍ରମାନେ ଯେ ଧରି ସ୍ରୁବ ଦଣ୍ଡ
ଅଗ୍ନିରେ ପକାନ୍ତି ମନ୍ତ୍ରପଢ଼ି ଘୃତଭାଣ୍ଡ ।
ଘୃତେ ଅଗ୍ନି ଲାଞ୍ଛି ବୋଲୁଥାନ୍ତି ସ୍ୱାହା ସ୍ୱାହା
ସ୍ୱାହା କେ ଅର୍ଥ ନ କରି ପାରେ ନର ଦେହା ।
ବ୍ରାହ୍ମଣ ମାତ୍ର ବୋଲନ୍ତି ସ୍ୱାହା ପଢ଼ି ମନ୍ତ୍ରେ
କରିଣ ଅର୍ଥ ତାହା ନ ପାରେ କେହି ଗାତ୍ରେ ।
ସ୍ୱାହା ବେନିକ୍ଷର ଜୀବ ପରମ ଯେ ଅଟେ
ଏକଥା ଚିହ୍ନି କେହି ନ ପାରେ ସର୍ବଘଟେ ।
ସ୍ୱାହା ବେନି ଅକ୍ଷର ସତୁରି ଆତ୍ମା ଜାଣ
ଏ ଅକ୍ଷର ତତ୍ତ୍ୱ କେହି ନ ଜାଣେ ବ୍ରାହ୍ମଣ ।
ବ୍ରହ୍ମାର ପୁତ୍ର ମୁଁ ଜାଣିଅଛି ବେଦପଢ଼ି
ଖୋଜିଲେ ପାଇବ ଯଜୁର୍ବେଦ ଏହା ଲୋଡ଼ି ।
ଅଗ୍ନିରେ ଘୃତ ଦେଇଣ ବୋଲନ୍ତି ଯେ ସ୍ୱାହା
ସ୍ୱାହା ନ ଚିହ୍ନେ ବ୍ରାହ୍ମଣ ହ୍ୱନ୍ତି କ୍ରୋଧେ ଠିଆ ।
ଏମନ୍ତ ବିପ୍ର ହାତରେ ମଲ ତୁମ୍ଭେ ଯାଇ
ତୁମ୍ଭର ମୃତ୍ୟୁ ଶୁଣି ମୋ ଦେହ ସହୁନାହିଁ ।
କାହାଣ ପଣେ ମାଗିବା ଲୋକଙ୍କ ହାତରେ
ତୁମ୍ଭପରା କ୍ଷତ୍ରୀ ହୋଇ ମଲ ସଂଗ୍ରାମରେ ।
ରାଜାର ଏ ବିପ୍ରନିନ୍ଦା ଶୁଣି ଶୁକ୍ରଗୁରୁ
ପାଞ୍ଚନ୍ତି ଏଡ଼େ ମୂର୍ଖ କେ ନାହିଁ ମୂରଠାରୁ ।
ଯେବଣ ବିପ୍ରକୁଳ ଏ ପୃଥ୍ୱୀକୁ ପବିତ୍ର
କରନ୍ତି ଯେ ଆଶୀର୍ବାଦ ବହି ଯଜ୍ଞସୂତ୍ର ।
କୁଶାଗ୍ରେ ପାଣି ଦେଇ ଯେ ସମସ୍ତ ତାରନ୍ତି
ବିପ୍ର ପଦରଜ ଘେନି ସକଳେ ତରନ୍ତି ।
ବିପ୍ରଙ୍କ ପଦରଜ ନ ପଡ଼େ ଯାର ଘରେ
ସର୍ପ ଗୃହ ପ୍ରାୟେ ସେହି ଦିଶେ ବ୍ରହ୍ମାଣ୍ଡରେ ।
ବିପ୍ର ସନ୍ତୋଷରୁ ଲକ୍ଷ୍ମୀ ସନ୍ତୋଷ ହୁଅନ୍ତି
ଏମନ୍ତ ବିପ୍ରଙ୍କୁ ମୂର୍ଖେ ଯାଚକ ବୋଲନ୍ତି ।
ପାପିଷ୍ଠ ଚାଣ୍ଡାଳ ଅସୁରାଦି ଯେତେ ଲୋକ
ସେମାନେ ବ୍ରାହ୍ମଣ ନିନ୍ଦା କରନ୍ତି ଅନେକ ।
ଅସୁର ଜାତି ସିନା ଏ ମୁରାସୁର ବୁଦ୍ଧି
ବିପ୍ର ନିନ୍ଦାକରି ମନେ ହେଲେ କ୍ରୋଧେ ଧନ୍ଦି ।
ଏବେ ବସି ଶୋକ କରୁଅଛି ପରପାଇଁ
ଏ ମଲେ କାନ୍ଦିବ କିଏ ଏହା ନ ଜାଣଇ ।
ବୁଝିଲେ ତ ଅଣଚାଶ ଦିନ ଅଛି ବର୍ତ୍ତି
ଏ ରୂପେ ପାଞ୍ଚି ପ୍ରବୋଧି ଶୁକ୍ର କହୁଛନ୍ତି ।
ବୋଲନ୍ତି ଭୋ ରାଜନ ନକର ଆଉ ଚିନ୍ତା
ଏ କଥା ସଭିଙ୍କି ସୃଜି ଅଛନ୍ତି ବିଧାତା ।

କେ ଅବା ଆଗେ କେହୁ ବା ପଛେ ଯାଏ ମରି
ସଂସାରେ ଚିର ହୋଇ କେ ନାହିଁ ଦେହ ଧରି ।
ରାଜା ବୋଇଲେ କହିବି ଶୁଣ ଗୁରୁଦେବ
ସେନାଙ୍କୁ ଚାହିଁ ପାଶୋରି ଥିଲି ମୁହିଁ ସର୍ବ ।
ଏହାଙ୍କୁ ଘେନି ବ୍ରହ୍ମାଣ୍ଡେ ମୁହିଁ ଅଧିକାରୀ
ଏ ମୋତେ ଘରେ ରଖିଣ ଗଲେ ଆଗ ମରି ।
ଏହାଙ୍କୁ ଘେନି ଜଗତେ ଗଲେ ମୁହିଁ ଜିଣି
ବୁଦ୍ଧି ବସିଲି ଅଧିକ ହୋଇ ଘରେ ପୁଣି ।
କେତେହେଁ ଯେ ଅପଘାତ ପଡ଼ିଲାଣି ମୋତେ
କି ଅବା ଲୋକରେ ଦ୍ରୋହ ଅର୍ଜିଲି ଜଗତେ ।
ଏ ରୂପେ ବୋଲି ରାଜା ଚାହିଁଲା ଚଉଦିଗେ
ବାତଚକ୍ର ପ୍ରାୟ ମନ ଭ୍ରମଇ ଆତଙ୍କେ ।
ବୋଇଲା ସଭାରେ କିସ ହେବ ଆଉ ବସି
ଦେଖନ୍ତେ ପାଶରୁ ଗଲେ ଦଶସେନା ଖସି ।
ତେରପଦ୍ମ ସୈନ୍ୟ ଆଉ ବାରଲକ୍ଷ ଗଜ
ଅର୍ବୁଦେକ ଲମ୍ବଗ୍ରୀବ ହେଲେ ପ୍ରାଣତ୍ୟାଗ ।
ସତରଲକ୍ଷ କୁମର ନବଲକ୍ଷ ନାତି
ପାହାରି ଯେ ଚାରିଲକ୍ଷ ହେଲେ ନିବଶ୍ୟତି ।
ବ୍ରାହ୍ମଣକୁଳରେ ଜନ୍ମି ସେହି ବେନିଭାଇ
ମାଇଲେ ସେନାଙ୍କୁ ମୋର ବଦ୍ରିକା ରେ ଥାଇ ।
ଏତେ ସଙ୍କଟରେ କେହୁ ହେବ ମୋତେ ସାହା
ରାଜ୍ୟ ଅଧେ ଦେଇ ତାକୁ କରନ୍ତି ମୁଁ ନାହା ।



## କାଳଘଣ୍ଟ, ବୀରଘଣ୍ଟ, ରଣଚୂଡ଼ ଓ ବଜ୍ରମାଳୀର ଯୁଦ୍ଧ ଏବଂ ମୃତ୍ୟୁ

ଏ ରୂପେ ସେ ରାଜାମୁଖୁ ଶୁଣି ଚାରିସେନା
ପ୍ରତିଜ୍ଞା କରି ଟେକିଲେ ଗଜ ବୀରବାନା ।
ସେ ଚାରିସେନାଙ୍କ ନାମ ଶୁଣ ତପିସାଇଁ
ବୀରଘଣ୍ଟ କାଳଘଣ୍ଟ ରଣଚୂଡ କହି ।
ଆବର ବଜ୍ରମାଳୀ ଏ ରୂପେ ଚାରି ବୀର
ମୋଡ଼ିକରି ନିଶମାନ ଉଠିଲେ ତତ୍ପର ।
ତଳେ ହାତ ପିଟି ସଭା ମଧ୍ୟେ ଘୁମୁରନ୍ତି
ବୋଲନ୍ତି ବସି ନ କରୁ କିମ୍ପା ରାଜନୀତି ।
ଯାହାର ଆଜ୍ଞାରେ ଆସି ଦଶଦିଗ ପାଳେ
ଖଟନ୍ତି ଖଟଣିକାର ହୋଇ ପାଦତଳେ ।
ବିଧାତା ଯେ ନିତ୍ୟ ଆସି ଭେଟି ତୋତେ ଯାନ୍ତି
ତୋତେ ନ ପୁଛି ସଂସାର ସେହି ନ ସୃଜନ୍ତି ।
ଯହିଁରେ ସଦାଶିବଟି ଶିବଗଣେ ଆଣି
ତୋତେ ସେହୁ ଭେଟିଗଲେ ହ୍ୱନ୍ତି ଦେହପାଣି ।

ବାସବ ତୋହର ପୁଣି ଅଟେ ବଶବର୍ତ୍ତୀ
ଦେବକୁଳ ବେନି ତୋର ସେବାରେ ଯେ ଥାନ୍ତି ।
ଦଶଗୋଟି ସେନା ତୋର ମଲେ ସିନା ଯାଇ
ମୁର୍ଦ୍ଧନା ସେନା ଯେ ଆମ୍ଭେ ଅଛୁ କେତେ ରହି ।
ଆମ୍ଭେମାନେ ଥାଉଁ ଥାଉଁ ଏଡ଼େ ଚିନ୍ତା ତୋର
ନ ପେଶି ଆମ୍ଭଙ୍କୁ କିମ୍ବା ଭାବୁଛୁ ପ୍ରଚୁର ।
ବାଳକାଳୁ ଆମ୍ଭେ ସେବି ରହିଅଛୁ ତୋତେ
ଭୁଞ୍ଜିଲୁ ଭୋ ରାଜଭୋଗ ତୋ ପ୍ରସାଦୁ ନିତ୍ୟେ ।
ଏବେ ତୋତେ ଅସମୟ ପଡ଼ିଲାରୁ ଆସି
ଚିନ୍ତାକରି ବସିଅଛୁ ଆମ୍ଭଙ୍କୁ ନ ପେଶି ।
କ୍ଷତ୍ର ବୃତ୍ତି ଲୋକର ଯେ ଯୁଦ୍ଧ ଏକା ମୂଳ
ଯୁଦ୍ଧରେ ମଲା ଲୋକକୁ ନ ହେବ ବିକଳ ।
ଗଙ୍ଗାସ୍ନାନ ଫଳ ଭଳେ ଯୁଦ୍ଧେ ମଲେ ପ୍ରାଣୀ
ସେହୁ ଯେତେ ପୁଣ୍ୟ ଲଭେ କେ ପାରିବ ଗଣି ।
ଜ୍ୱର ରୋଗବ୍ୟାଧି କରି ମରନ୍ତି ଯେ ଲୋକେ
ହରିନାମ ଧରି ମଲେ ତାର ବେଦବାକ୍ୟେ ।
ନୋହିଲେ ତ କୁମ୍ଭୀପାକେ ପଡଇ ସେ ଜାଣ
ଏ କଥା ପୁରାଣେ ଲେଖିଛନ୍ତି ମୁନିଗଣ ।
ନୋହିଲେ ସେ ନାରାୟଣ ସ୍ମରି ମରିଥିଲେ
ସେହି ଲୋକ ତରିଯାଏ ଏ ସଂସାରୁ ଭଲେ ।
ପୁଣି ସଂସାରେ ବୋଲନ୍ତି ଯାକୁ ସର୍ବେ ଭଲ
ତାହାର ଜୀବନ ଏକା ଅଟଇ ଅମୂଲ୍ୟ ।
ଦିନେ ମାତ୍ର ଜୀବଥିଲେ ସାର୍ଥକ ତା ପ୍ରାଣ
କେ ହେବି ହିଂସ୍ରକ ଜୀବଥିଲେ ସଂସାରେଣ ।
ମଧୁକୈଟଭ ବୋଲି ଯେ ଥିଲେ ପୂର୍ବେ ଜନ୍ମି
ତାହାଙ୍କ କୀର୍ତ୍ତି ରହିଛି ଦେଖ ଏହି ଭୂମି ।
ସେ ମଧୁକୈଟଭ ହେଲେ ବିଷ୍ଣୁଠାରେ ବାଦୀ
ମାରି ଜଗନ୍ନାଥ ତାଙ୍କୁ କରିଦେଲେ ମେଦି ।
ପ୍ରଳୟ ଜଳରେ ମାଡ଼ି ଦେଲେ ତାକୁ ଥୋଇ
ଲେଉଟି ପ୍ରଳୟ ଯାଏ ରହିଲା ତା ଦେହୀ ।
ଶରବନ୍ତ ଲୋକେ ମୃତ୍ୟୁ ଭୟ ନ କରନ୍ତି
ଆମ୍ଭାକୁ ସେ ତୃଣ ପ୍ରାୟେ ମଣି ଯୁଦ୍ଧେ ଯାନ୍ତି ।
କ୍ଷତ୍ରିୟ ଲୋକ ଯେତେକ କାଳ ଜୀଇଥାଇ
ତେଣିକି ତାହାଙ୍କୁ ଶତେ ବରଷ ଅଟଇ ।
ମାରିବା ମରିବାକୁ ନ ଡରେ ଯେଉଁ କ୍ଷତ୍ରୀ
କ୍ଷତ୍ରୀ ଉପରେ କ୍ଷତ୍ରୀ ସେ ଅଟେ ମହାକ୍ଷତ୍ରୀ ।
ଆମ୍ଭେମାନେ ଥାଉଁ ଥାଉଁ କି କରିବ ତୋତେ
ଶ୍ରୀଆଜ୍ଞା ଦେଲେ ଚଳିବୁ ଆମ୍ଭେ ଯେଝାମତେ ।
ବଦରିକା ପଲ୍ଲୀଖଣ୍ଡ ଟାଳି ପକାଇବୁ
ଜନପଦେ ଜଣେ କରି ଆଉ ନ ରଖିବୁ ।

ବୁଝିଲେ ତୋହର ସିନା ଅଟଇ ଏ ମହୀ
ଏକାଙ୍ଗ ଚକ୍ରବର୍ତ୍ତୀ ତୁ ଅଟୁ ନୃପସାଇଁ ।
ଚଉଦପୁରେ ଚମକ ପଡ଼େ ନାମ ତୋର
ମୁର୍ଦ୍ଧନା ଅଭିଷେକୀ ତୁ ଅଟୁ ନୃପବର ।
ଆମ୍ଭଙ୍କୁ ପେଶି ଦିଅନ୍ତି ଯେବେ ଦଣ୍ଡଧାରୀ
ଶତ୍ରୁଙ୍କୁ ଯାଇଣ ତୋର ଆସନ୍ତୁ ସଂହାରି ।
ଏ ରୂପେ କହନ୍ତେ ରାଜା ଆଗେ ବୀରଘଣ୍ଟ
ଶୁଣିଣ ସେ ମୁରାସୁର ମନେ ହେଲା ହୃଷ୍ଟ ।
ବୋଇଲା ତୁମ୍ଭର ପରାକ୍ରମ ମୋତେ ଜଣା
ଆଗମ କଥା ତୁ ପାରୁ କରିଣ କଳନା ।
ବଦ୍ରିକା ନଗ୍ରକୁ ଯାଇ କର ବେଗେ ଧ୍ୱଂସ
ନୃସିଂହ ବେନି ଭାଇଙ୍କୁ ଶୀଘ୍ର ମାରିଆସ ।
ସଙ୍ଗରେ ଯେ ଅଶୀଲକ୍ଷ ନିଅ ମତ୍ତହସ୍ତୀ
ବାରପଦ୍ମ ଅଶ୍ୱ ତେରପଦ୍ମ ଯେ ପଦାତି ।
କୋଦାଳ କୋଡ଼ିଆ ଶାବଳିଆ ମାଟିହଣା
ଦୁଆଡ଼ ଖଣତି କାଙ୍କ ଭୁଷଣ୍ଡି ଫର୍କନ୍ତା ।
ଏ ଶସ୍ତ୍ର ଧରି ବେଟିଆ ବାରଲକ୍ଷ ଯାନ୍ତୁ
ବଦ୍ରିକା ନଗର ଭାଙ୍ଗି ଶୂନ୍ୟ କରିଦ୍ୟନ୍ତୁ ।
ଉଜାଡ଼ି ତା ଦେଶଘୋଷ ଧ୍ୱଂସ କରିଦିଅ
ମାରିଣ ବ୍ରାହ୍ମଣ ଯାକ ଆସି ମୋତେ କହ ।
ବଲ୍ଲଭ ପୁତ୍ରକୁ ଆଗ ବାନ୍ଧି ଧର ତଳେ
ପାଷାଣ ମଡ଼ାଇ ଦିଅ ନେଇ ଗଙ୍ଗା ଜଳେ ।
ଆସିବ ନୃସିଂହ ବେନିଭାଇ ଯେବେ ମାରି
ତେବେ ପୃଥ୍ୱୀରେ ଭୁଞ୍ଜିବ ରହି ଭୋଗଶିରୀ ।
ଶୁଣିଣ ସେନାମାନେ ଯେ ଯୋଡ଼ି ବେନିକର
ବୋଇଲେ କେଉଁ ଭୋଗ ନ ଭୁଞ୍ଜୁ ଏବେ ତୋର
ଏଥୁ ଅଧିକେ ଭୋଗ ନ ମିଳୁ ପଛେ ଆଉ
କି ରୂପେ ଶତ୍ରୁ ତୋହର ଶୀଘ୍ରେ କ୍ଷୟ ଯାଉ ।
ଏ ରୂପେ ବୋଲିକରି ଯେ ଗଲେ ଚାରି ବୀରେ
ଆଗରେ ଚାଳନ୍ତି ଅଶ୍ୱ ଗଜ ଧୀରେ ଧୀରେ ।
ହସ୍ତୀଙ୍କର ଘଣ୍ଟ ଘଣ୍ଟ ଶୁଭେ ଘୋରଧ୍ୱନି
ବହେ ମଦଧାର ଗଜ କପାଳରୁ ପୁଣି ।
ଟୋପା ଟୋପା ଖସିପଡ଼ି ଯାଉଅଛି ତଳେ
କର୍ଦ୍ଦମ ହୁଅଇ ଧୂଳି ଉଡ଼ି ବାୟୁବଳେ ।
ହସ୍ତୀମାନଙ୍କର ଘଣ୍ଟା ଶବ୍ଦ କରେ ଟାଣ
କାହାର ପିଠିରେ ରୂପା ପଲ୍ୟଙ୍କ ଭୂଷଣ ।
କାହାର ପିଠିରେ ଦମା କରୁଅଛି ଶବ୍ଦ
କାହାର ପିଠିରେ ଘଣ୍ଟ କରେ ଘୋର ନାଦ ।
କେ ଅଶ୍ୱ ଉପରେ କେହୁ ହସ୍ତୀ ଉପରେଣ
ଘାଗୁଡ଼ି ବାନ୍ଧି ଚାଲଇ କରି ରୁଣଝୁଣ ।

କେ ଶ୍ୱେତବର୍ଣ୍ଣ ପାଣ୍ଡୁର ବର୍ଣ୍ଣ କେହୁ ଦିଶି
କେ କଳା ଶ୍ୟାମଳ କେହୁ ବଉଳା ପ୍ରକାଶି ।
ଧରିଣ ଅଙ୍କୁରମାନ ମାହୁନ୍ତେ ପ୍ରକୋପି
କେ ତଳେ ଗମଇ କେହି ଆକାଶକୁ କ୍ଷେପି ।
ଏହି ରୂପେ ବାହାରନ୍ତେ ଅଶୀଲକ୍ଷ ଗଜ
ତହିଁର ପଛେ ଚାଲନ୍ତି ଅଶ୍ୱେ ହୋଇ ସଜ ।
ରଙ୍ଗବର୍ଣ୍ଣ ଶ୍ୟାମବର୍ଣ୍ଣ ଅଟେ କାହା ଜ୍ୟୋତି
ଶଙ୍କିଆ ନାରଙ୍ଗୀ କେହୁ ଗୌରବର୍ଣ୍ଣ ମୂର୍ତ୍ତି ।
କେଦାର ନାଗବନ୍ଧ ଯେ ମଣ୍ଡଣି କା କାନ୍ଧେ
କନକମୃଗ ଚାମର ଶିରେ ହାର କନ୍ଧେ ।
ଶ୍ୱେତ କୃଷ୍ଣ ଚାମର ହେ ହୃଦେ ମାଳ ମାଳ
କନକାଜାଲି କମରେ ଖଞ୍ଜା ମଢ଼ିଆଳ ।
ପିଠିରେ ଦାନ୍ତର ଖଞ୍ଜା ନାଗବନ୍ଧ ପଡ଼ି
ପାଦୁକା ଶିଉଳି ଲୋମ ଲମ୍ବେ ଯୋଡ଼ି ଯୋଡ଼ି ।
ଘାଗୁଡ଼ି ଯେ ପୁଞ୍ଜି ପୁଞ୍ଜି ଘଣ୍ଟା ରୁଣଝୁଣ
ଚାଲନ୍ତେ ତିନିପୁର ଯେ କମ୍ପେ ଶବଦେଣ ।
ପାଟରେ ଜଗବନ୍ଧ ଯେ ନାଗବନ୍ଧ ରଜ୍ଜୁ
ମଣ୍ଡଣି ଚାରିପାଶରେ ସ୍ୱର୍ଣ୍ଣଜରୀ ସାଞ୍ଜୁ ।
ରାଉତଗଣ ବିଚିତ୍ର ବେଶଭୂଷା ହୋଇ
ଚାଲୁଛନ୍ତି ପାଟପାଗ ମୁଣ୍ଡେ ଭିଡ଼ିଦେଇ ।
ତରଆଲ ଛୁରୀ ଖଣ୍ଡା ଯମଦାଢ଼ ଧରି
ବାବଲ ଧନୁ କମାଣ ତୀର ଯେ କଟୁରୀ ।
ନାଗରଜ୍ଜୁ ଧରିକରି କଷଣୀ ଯେ ଛାଟ
କେବଳ ଅଶ୍ୱ ଚାଲଇ ଚମକି ଚୌପଟ ।
ପୁଞ୍ଜା ପୁଞ୍ଜା ହୋଇଣ କେ ଗମେ ତଡ଼ବଡ଼
କେ ପାଦଗତିରେ ଧାଇଁ ଚାଲେ ହୋଇ ଆଡ଼ ।
ଘୁଞ୍ଚଇ ପଛକୁ କେହି ଟେକି ଶୂନ୍ୟେ ମୁଣ୍ଡ
କେ ଗମଇ ବେନିପାଦେ ଘଣ୍ଟାରବ ତୁଣ୍ଡ ।
କେ ଧାପେ ଧାଆନ୍ତେ ଦେହ ନ ଦିଶଇ ପଥେ
କେ ଶୂନ୍ୟେ ଗମଇ କେହୁ ଗମେ ଶୂନ୍ୟ ହସ୍ତେ ।
ଏ ବିଧିରେ ଯୋଦ୍ଧାମାନେ ହେଲେ ଆଗୁସାର
ପଦାତିଗଣେ ଚାଲନ୍ତି ହୋଇ ଖରତର ।
ବେଲୁଦ୍ର ନାଲି କାଛି ଯେ ପିନ୍ଧି ଚଉତନ
ଅଙ୍ଗି ଜଙ୍ଗି ଗନ୍ତାଇ ଯେ ପାଟ ବୋପି ବାନ ।
କେହୁ ତୀରକମାଣ ଯେ ଚକ୍ର ଭାଲି କାତି
ଭୂଷଣ୍ଡୀ ଦୁଆଡ଼ ଶୀଳ ପରିଘ ଶକତି ।
ଆଡ଼ଣା ଫିଲିପିନ୍ଧି ଯେ ହୁଆର ବଦାଉ
ମୁଦ୍ଗର ଗଦା ଛେଲି କୁନ୍ତ ଦାଉ ଦାଉ ।
ଝଞ୍ଜାଳ ଝାଉଁ ଝାଉଁ ଝମବ ଝଲମଲ
ଢାଲ ଧନୁ ଧରି ଚାଲୁଛନ୍ତି ମହାମଲ୍ଲ ।

ବାହାର ହୋଇଲେ ସର୍ବ ଶସ୍ତ୍ରମାନ ଧରି
ଚାଲନ୍ତେଣ ଦୁଲୁ ଦୁଲୁ ହୁଏ ବସୁନ୍ଧରୀ ।
ଟମକ ନିଶାଣ ଭେରୀ ବାଜେ ଘୋରନାଦେ
ଚମକେ ପୃଥିବୀ ବୀର କାହାଳୀ ଶବଦେ ।
ମହୁରୀ ଦମାଲୁ ଶଙ୍ଖ କମ ଢୋଲ ଦମା
ପଟହା ଏକଗୁଡ଼ା ଯେ ବାଜେ ଘୁମୁଘୁମା ।
ଦୁନ୍ଦୁଭି ବିଜିଘୋଷ ଯେ ଝାଳ କକ ଯୋଡ଼ା
କଂସାଳ ତାଳ ତାଳି ଯେ ବାଜେ ଦରପଡ଼ା ।
ମର୍ଦ୍ଦଳ କୋଳାହଳ ଯେ ବଂଶୀ ବୀଣାବାଜେ
ଡମ୍ବରୁ ତୁମ୍ବୁରୁ ନାଦ ଜନମନ ରଞ୍ଜେ ।
ଏ ବିଧିରେ ନାନାବାଦ୍ୟ ବାଜେ ଥାଟଯାକେ
କମ୍ପନ୍ତି ତାଡକା ଶବ୍ଦ ନାମେ ଦେବଲୋକେ ।
ଶୂନ୍ୟରେ ଯେ ପକ୍ଷୀଗଣ ନ ପାରନ୍ତି ଉଡ଼ି
ପଡନ୍ତି ଡିଙ୍ଗର ବନ ଗିରି ବୃକ୍ଷେ ଝଡ଼ି ।
ଥାଟରେ ଆଗୁଆଣି ଯେ ଚାରି ସେନାପତି
ମଙ୍ଗଳ କେତୁ ରାହୁଙ୍କ ପ୍ରାୟ ବୀର ମୂର୍ତ୍ତି ।
ଚଢ଼ି କରି ରଥରେ ସେ ହେଲେ ଆଗୁସାର
ବୀରକେତନ ବାନା ହେ ଉଡ଼େ ଫର ଫର ।
ଚାଲନ୍ତି ସଇନ୍ୟ ପୁରି ବେଢ଼ି ଆଗପଛ
ଉଦ୍ଦଣ୍ଡ ଯେ ଏକଲକ୍ଷ ଚାମର ଯେ ଲକ୍ଷେ ।
ଆଲମ୍ବ ବିଲମ୍ବ ଛତ୍ରେ ଆକାଶ ଯେ ଛାଇ
ଆଦିତ୍ୟ ଦେବଙ୍କର ରଶ୍ମି ନ ଦିଶଇ ।
ଚାଲନ୍ତି ସଇନ୍ୟମାନେ ଅତି ତେଜୋମୟ
ମରିବାକୁ ଜୀଇଁବାକୁ କାର ନାହିଁ ଭୟ ।
ରାଉତ ମାହୁନ୍ତ ବୀର ଅଶ୍ୱେ ବିହରନ୍ତି
ଯହିଁକି ପେଶିଲେ ତାଙ୍କୁ ଯହିଁକି ଚଳନ୍ତି ।
କେ ଦାଣ୍ଡ ପୂରାଇ ବିନ୍ଧିଦ୍ୟନ୍ତି ଲକ୍ଷ୍ୟ ସ୍ଥାନେ
କେ ବକ୍ରବାଣକୁ ଯୋଖି ମାରନ୍ତି ଯେ ଶୂନ୍ୟେ ।
ଧାମନ୍ତି କେ ଖଣ୍ଡା ଫରି ଧରି ଆଗେ ଆଗେ
କେହି ସୁଖେ ଅଶ୍ୱ ଚଢ଼ି ଚାଲେ ଅତି ବେଗେ ।
କେ କୁନ୍ତଶାବେଳି ଘେନିଯାଏ ଶୂନ୍ୟେ ଶୂନ୍ୟେ
କେହି ସପ୍ତ ଶଲ ପାଇଁ ଧାଏଁ ରଣ ସ୍ଥାନେ ।
କେ ଶୂଳ ଭୂଷଣ୍ଡି ଫିଙ୍ଗି ମାରେ ସୂତ୍ରକରି
କେ ଚକ୍ର ବୁଲାଇ ଫିଙ୍ଗି ଦ୍ୟନ୍ତି ଦୁଇ ଚାରି ।
କେହୁ ବାହୁ ବିସ୍ତାରିଣ ଚାଲେ ଅଲୋକିତ
କାହା ଲାଞ୍ଜ ଚଳେ ଦୁଇଶତ ତିନିଶତ ।
କେହି ଯାଇ ଆଡ଼ମାରି ମାରେ ଗଗନରେ
କେହି ଛୁରୀ ଖଣ୍ଡା ଧରି ଚାଲଇ ଭୂମିରେ ।
କେ ଡେଇଁ ପଡ଼ିଣ କେହି ବସେ ଶତହାତେ
କାହାର ଯେ କିଛି ଲାଞ୍ଜ ଉଡ଼େ ଶୂନ୍ୟ ପଥେ ।

ଏ ରୂପେ ସଜ ହୋଇଣ ଆସନ୍ତେ ରାକ୍ଷସ
ବଦ୍ରିକା ନଗରେ ଯାଇ ହୋଇଲେ ପ୍ରବେଶ ।
ଦେଖିଲେ ପାଚେରୀ ଶୋଭେ ଗଡ଼ ଚଉକତି
ଯୋଜନ ପାଞ୍ଚ ଯେ ଉଚ୍ଚ ଅଟେ ଦୀର୍ଘପ୍ରତି ।
ଆବର ବେନି ଯୋଜନ ଗଡ଼ର ବିସ୍ତାର
ଦେଖିଣ ସେ ଦୈତ୍ୟମାନେ ହୋନ୍ତି ଚମତ୍କାର ।
ଗଡ଼ର ଭିତରଯାକ ସୁବର୍ଣ୍ଣ ପାବଚ୍ଛ
ବିଶ୍ୱକର୍ମା ନିର୍ମାଣିଛି ଅତ୍ୟନ୍ତ ସୁସଞ୍ଚ ।
ବାରଲକ୍ଷ ବେଠିଆ ଯେ ସୈନ୍ୟ ସଙ୍ଗେ ଛନ୍ତି
ଗଡ଼କୁ ବେଢ଼ି ଅଛନ୍ତି ସର୍ବ ଦୈତ୍ୟପନ୍ତି ।
ଏ ରୂପେ ରହିଲେ ବେଢ଼ି ଗଡ଼ ଦୈତ୍ୟବୃନ୍ଦ
କହନ୍ତି ବ୍ରହ୍ମା ବସିଣ ଶୁଣନ୍ତି ନାରଦ ।
ବଦ୍ରିକା ନଗରମଧ୍ୟେ ଛନ୍ତି ଚକ୍ରପାଣି
ଅନ୍ତର୍ଯ୍ୟାମୀ ପୁରୁଷ ଯେ ସବୁ ପାରେ ଜାଣି ।
ପାଞ୍ଚିଲେ ଦେଇଛି ମୁରାସୁର ସେନା ପେଶି
ବାରପଦ୍ମ ସୈନ୍ୟ ଏବେ ଅଛନ୍ତି ତ ଆସି ।
ଏଡ଼େ ହେଁ ଗଡ଼କୁ ମୋର ପୁଣି ଦେଲେ ଟାଳି
ସମୁଦ୍ରରେ ପକାଇବେ ପୃଥ୍ୱୀଯାକ ଖୋଳି ।
ବେଠିଆ ମାଠିଆ କୋଦାଳିଆ ପଥୁରିଆ
ଏମାନେ ତ ଖୋଳିବାକୁ ହୋଇଛନ୍ତି ଠିଆ ।
ତିନିଶଗଣ୍ଡା ଲେଖାଏଁ ଛନ୍ତି ଚାରିକୁଳ
ଗଡ଼ ଖୋଳିବାକୁ ଆସି ଅଛନ୍ତି ଚଣ୍ଡାଳ ।
ଏତେ ହେଁ ଲୋକ ଯେ ମୋତେ ଆସିଛନ୍ତି ମାରି
ସମସ୍ତେ ତ ମରି ଜାଣ ଯିବେ ସ୍ୱର୍ଗପୁରୀ ।
ଏ ରୂପେ ମନରେ ପାଞ୍ଚି ଲକ୍ଷ୍ମୀଦେବୀ କାନ୍ତ
କୋଟିଏ ନୃସିଂହ ରୂପ ଅଙ୍ଗୁ କରି ଜାତ ।
ତରିବେ ନଗ୍ରର ଲୋକଯାକ ବୋଲିକରି
ସବୁରି ଘରେ ଯେ ବିଜେ କଲେ ନରହରି ।
ଅସୁର ଆସିବାର ଖବର ଯେ ପାଇ
କବାଟମାନଙ୍କୁ କିଳି ଗୃହେ ଥିଲେ ରହି ।
ଶ୍ରୀ ନୃସିଂହ ମହାପ୍ରଭୁ ସବୁଘରେ ପଶି
ଦୈତ୍ୟଙ୍କୁ ନ ଡର ବୋଲି କହି ହସି ହସି ।
ବୋଲନ୍ତି ମୋହର ଥାନ୍ତେ ତୁମ୍ଭର କି ଡର
ରହିଣ ସୁଖେ କର ଯେ ଯାହା କାରବାର ।
ଏ ରୂପେ କହି ଧଇଲେ ପ୍ରଭୁ ନିଜରୂପ
କେ ଜାଣିପାରେ ବିଷ୍ଣୁଙ୍କ ଏହି ମାୟାକଳ୍ପ ।
ବ୍ରହ୍ମାଦି ଶଙ୍କରଙ୍କୁ ଯେ ଅଟେ ଅଗୋଚର
ବିଷ୍ଣୁ ମହିମା ଜାଣନ୍ତି ଏକା ଯୋଗେଶ୍ୱର ।
ଏ ରୂପେ କହିଣ ପ୍ରଭୁ ଏକ ରୂପ ହେଲେ
ଭାଇଙ୍କି ସଙ୍ଗରେ ଘେନି ସଭାରେ ବସିଲେ ।

ସଖାଗଣଙ୍କୁ ଘେନିଣ ସୁଜାଣ ହେ ମନ୍ତ୍ରୀ
ଢାଳିଲେ ଶ୍ରୀପାଦପଦ୍ମ ଦେଇ ଅର୍ଘ୍ୟପାତ୍ରୀ ।
ଗରୁଡ଼ ଆସିଣ ତହିଁ ଦରଶନ କଲେ
ପାଦରୁ ଧୂଳି ନେଇଣ ମଥାରେ ବୋଳିଲେ ।
ଶ୍ରୀନୃସିଂହ ପାଦେ ସର୍ବେ ହେଲେ ପ୍ରଣିପାତ
ସମସ୍ତେ କଲେ ବସିଣ ହରିବୋଲ ଜାତ ।
ଗରୁଡ଼ ଉଭା ହୋଇଲେ ଯୋଡ଼ି ବେନିକର ।
ପ୍ରଭୁ ଆଜ୍ଞା ଦେଲେ ତାକୁ ବସ ପକ୍ଷୀବର ।
ବସିଲେ ହରିଙ୍କ ଆଜ୍ଞା ପାଇ ପକ୍ଷୀରାଜ
ଏଥୁଅନ୍ତେ ହେ ନାରଦ କଥା ଶୁଣ ଆଜ ।
ଖୁଣ୍ଟିଆ ଆସିଲା ବେଗେ ସିଂହଦ୍ୱାରୁ ଧାଇଁ
ନୃସିଂହ ଛାମୁରେ କହେ ପାଦେ ପଡ଼ି ଶୋଇ ।
ବୋଇଲେ ଭୋ ଦେବ ଦୈତ୍ୟ ଅଇଲେ ଅପାର
ବେଢ଼ିଲେ ବସା କରିଣ ବଦ୍ରିକା ନଗର ।
ଶୁଣିଣ ନୃସିଂହପ୍ରଭୁ ଅଳ୍ପ ମନେ ହସି
ବୋଇଲେ ଜାଗ୍ରତେ ଥାଅ ସିଂହଦ୍ୱାରେ ବସି ।
ଶୁଣିଣ ଖୁଣ୍ଟିଆ ତହୁଁ ଗଲା ଶୀଘ୍ର ଧାଇଁ
ସୈନ୍ୟଙ୍କୁ ଜାଗ୍ରତ କରି ରଖିଲା ଜଗାଇ ।
ଏଥୁଅନନ୍ତରେ ପ୍ରଭୁ ମନ୍ତ୍ରୀ ମୁଖ ଚାହିଁ
ବୋଇଲେ ଦକ୍ଷିଣଦ୍ୱାର ସାଜ ବେଗେ ଯାଇ
ସର୍ବକାଳେ ଅଟ ତୁମ୍ଭେ ଭକ୍ତ ଯେ ମୋହରି
ମାନସ ଜାଣି ମୋହର ଥାଅ ସେବାକରି ।
ଅନେକ ଅସୁରବଳ ଅଛନ୍ତି ଯେ ଆସି
ଚାହାଁନ୍ତେ ଦିଗଯାକ ଯେ ଦେଦିନୀ ନ ଦିଶି ।
ଶୁଣି ସୁଜାଣ ମନ୍ତ୍ରୀ ଆଜ୍ଞା ଶିରେ ଧରି
ଗଡ଼ର ଦକ୍ଷିଣଦ୍ୱାରେ ଜଗିଲା ଆବୋରି ।
ଗରୁଡ଼କୁ ବୋଇଲେ ତୁ ଶୁଣ ପକ୍ଷୀବର
ପଶ୍ଚିମଦ୍ୱାର ତୋତେଟି ଲାଗିଲା ମୋହର ।
ଦୈତ୍ୟଙ୍କୁ ଦେଖିଣ ଡରୁଅଛନ୍ତି ମୋ ଲୋକେ
ଭିତରେ ନ ପଶୁ କେହି ତୋର ଥିବାଯାକେ ।
କିସ ସେ କରିବେ ଆଗେ ଦେଖିବାଟି ତାହା
ତହିଁକି କଥାଏ ଅଛି ଶୁଣ ପକ୍ଷୀନାହା ।
କର୍ଣ୍ଣାଟେଶ୍ୱରଙ୍କୁ ଚାହିଁ ପ୍ରଭୁ ଆଜ୍ଞାଦେଲେ
ଉତ୍ତର ଦ୍ୱାର ତୁମ୍ଭଙ୍କୁ ଲାଗିଲା ବୋଇଲେ ।
ପୂର୍ବର ଭାଗେ ରହିବୁ ଆମ୍ଭେ ବେନିଭାଇ
ଦୈତ୍ୟ ପଡ଼ିଲେ ଆସିବୁ ତାକୁ ମୃତ୍ୟୁ ଦେଇ ।
ଆମ୍ଭଙ୍କୁ ମନୁଷ୍ୟ ପ୍ରାୟ ମଣିଛନ୍ତି ମୂଢ଼େ
ଜାଣୁ ଜାଣୁ ମରୁଅଛି ଆସିଣ ଅଖଡ଼େ ।
ଏ ଘେନି ତୁମ୍ଭେମାନେ ସେ ଚାରିଦ୍ୱାରେ ଥାଅ
ଯେ ଡେଇଁ ପଶିବ ତାକୁ ମୃତ୍ୟୁବାଟ ଦିଅ ।

ସୁଦର୍ଶନ ଚକ୍ର ବୁଲୁଅଛି ମୋର ଏଣେ
ଡେଇଁଲେ ଗଡ଼କୁ ସେହି କାଟିବ ତକ୍ଷଣେ ।
ଏ ରୂପେ କହିଣ ଆଜ୍ଞା ଦ୍ୟନ୍ତି ଭାବଗ୍ରାହୀ
ଜଗିଲେ ଗଡ଼ ସକଳେ ତାତପର୍ଯ୍ୟେ ଯାଇ ।
ଏଥୁଅନ୍ତେ ପୁଣ ବିଶ୍ୱକର୍ମାକୁ ଚିନ୍ତିଲେ
ଟଳନ୍ତେ ଆସନ ଆସି ତକ୍ଷଣେ ମିଳିଲେ ।
ନୃସିଂହ ବୋଇଲେ ଗଡ଼ ଲାଗିଲାକ ତୋତେ
ସେ ଗଡ଼ଭାଙ୍ଗିଲେ ତୁହି ତୋଳୁଥିବ ନିତ୍ୟେ ।
ଦିବସେ ଭାଙ୍ଗିଲେ ରାତ୍ରେ ତୁ ନିର୍ମାଣି ଦେବୁ
ଏ ଆଜ୍ଞା ଆମ୍ଭର ପ୍ରତିପାଳି ରହିଥିବୁ ।
ଶୁଣି ବିଶ୍ୱକର୍ମା ରହିଲେକ ଆଜ୍ଞା ଘେନି
ଶୁଣ ହେ ନାରଦ କହୁଛନ୍ତି ପଦ୍ମଯୋନି ।
ଚାରି ସେନାପତି ବେଢ଼ିଗଲେ ବଦ୍ରିଦେଶ
ବୀରଘଣ୍ଟ ବୋଲେ ଚାହିଁ ଅଛ ଆଉ କିସ ।
କୋଦାଳିଆମାନେ ଏବେ ଗଡ଼ଖାଇ ଖୋଳ
ମାଟି ବହି ପକାନ୍ତୁ ସେ ବେଠିଆ ସକଳ ।
ଯାଅ କାଳଘଣ୍ଟ ତୁହି ଦକ୍ଷିଣରେ ଲାଗି
ତୋର ଅଙ୍ଗବଳ ଘେନି ବଦରିକା ଭାଙ୍ଗି ।
ପୁଣ ରଣଚୂଡ଼କୁ ସେ ବୋଇଲାକ ତୁହି
ପୂର୍ବ ପାଚେରୀ ଭାଙ୍ଗ ଯା ମାଟିଆ ଲଗାଇ ।
ବକ୍ରମାଳିକି ବୋଇଲା ଯାଅ ତୁ ଉତ୍ତରେ
ଧୂମାନ୍ତ କରି ପକା ସେ ପାଚେରୀକି ଖରେ ।
ଚଉପାଶେ ରହି ଗଡ଼ ବେଢ଼ି ରଥଯାକ
ଗଜ ଅଶ୍ୱ ସୈନ୍ୟଘେନି ଯାଅ ଯେତେ ଲୋକ ।
ରହିଲେ ପଶ୍ଚିମେ ଯାଇ ବୀରଘଣ୍ଟ ସେନା
ପଶିଣ ତିନି ଭାଇଙ୍କି ନେଲା ତିନି ଜେନା ।
ଦେଖିଣ ଯେ ତିନିଶତ ତ୍ରିଂଶପଦ୍ମ କୋଟି
କୋଦାଳ କୋଡ଼ିକାଙ୍କ ସେ ଧରି ହସ୍ତେ ଉଠି
ବୋଇଲେ ଯେ ତୁମ୍ଭେମାନେ ଆମ୍ଭ ତହୁଁ ଶୁଣ
ତିନି ତିନି ଲକ୍ଷ ତୁମ୍ଭେ ଗଡ଼ ବାହାରେଣ ।
ପାଚେରୀ ମୂଳକୁ ଖୋଳି କର ତଳେ ଗର୍ତ୍ତ
ପାଷାଣ ତାଡ଼ି ଜଳରେ ପକାଅ ସମସ୍ତ ।
ଶୁଣିଣ ବେଠିଆଦଳ ଗଲେ ତତକାଳେ
ଗଡ଼ ଚାରିପାଖ ଖୋଳି ପକାଇଲେ ତଳେ ।
ଗଡ଼ର ଯୁଣେ ଓସାର ମାପ ଧରି ଧରି
ଖୋଳିଣ ଦୂରେ ପକାନ୍ତି ଅଲୋକିତ କରି ।
ଖୋଳନ୍ତି ସେ ଦିନଯାକ ମାଟି ଫୋପାଡ଼ନ୍ତି
ରାତ୍ରେ ବିଶ୍ୱକର୍ମା ତାହା ଲେପନ କରନ୍ତି ।
ବିଷ୍ଣୁର ନିର୍ମାଣ ଭୂମି ଯେଉଁ ବଜ୍ର ବାଡ଼
ଖୋଳିଣ କିସ କରିଲେ ତହିଁ ଦୈତ୍ୟ ରାଢ଼ ।
ପ୍ରଭାତକାଳରୁ ଉଠି କରି ଦୈତ୍ୟଲୋକେ
ଗଡ଼ଯାକର ନିର୍ମାଣ ଦେଖନ୍ତି ଅଧିକେ ।
ତାହା ଦେଖି ଚମତ୍କାର ହୁଅନ୍ତି ଦୈତ୍ୟମାନେ
ବୋଲନ୍ତି ଏକଥା ଆମ୍ଭେ ଦେଖିନାହୁଁ ଦିନେ ।
ଖୋଳିବାର ଶ୍ରମଯାକ ବ୍ୟର୍ଥ ଏବେ ଗଲା
ଦିବସରେ ଖୋଳିଯାନ୍ତେ ରାତ୍ରେ ଉଛୁଳିଲା ।
ବୋଇଲେ ବେଠିଆ କୋଦାଳିଆ ଶୁଣ ବାପ
ଦିବସେ ସେ ଖୋଳାଯାକ ରାତ୍ରେ ଦେଲେ ଲେପ
ସଭାରେ ତ କହିବାକୁ ଲାଜ ଲାଗେ ଏହା
ବ୍ୟର୍ଥଗଲା ତ ସକଳ କଲାକାର୍ଯ୍ୟ ଯାହା ।
ଥୋକାଏ ବୋଇଲେ ଆସ ଖୋଳି ଜଗିଥିବ
କି ରୂପେ କେ ଦେବ ଲେପ ସେ କଥା ଜାଣିବ ।
ଏ ରୂପେ ବୋଲି ଖୋଳିଲେ ସର୍ବେ ଯାଇ କାନ୍ଥ
ବାହୁକ ବେଢ଼ିଆ ତିନିଲକ୍ଷ ବଳବନ୍ତ ।
ଖୋଳିଣ ସେ ମାଟିଯାକ ଜଳେ ଦେଲେ ଢାଳି
ଦିବସ ଅନ୍ତେ ଯେ ଚଳିଗଲେ ଅଂଶୁମାଳୀ ।
ଭୋଜନ ସାରିଣ ଦୈତ୍ୟ ଆଗମନ କଲେ
ଜଗିଣ ପ୍ରହରୀଯାକ ଉଜାଗର ହେଲେ ।
ଶ୍ରୀନୃସିଂହ ଆଜ୍ଞା ଦେଲେ ନିଦ୍ରାବତୀ ରାଇ
ଦୈତ୍ୟଙ୍କୁ ନିଶ୍ଚେଷ୍ଟ କରି ପକାଅ ଶୁଆଇ ।
ନିଦ୍ରାବତୀ ଶ୍ରୀ ନୃସିଂହ ଆଜ୍ଞା ପରମାଣେ
ଦୈତ୍ୟଙ୍କର ନେତ୍ରେ ମାଡ଼ି ବସିଲେ ତକ୍ଷଣେ ।
ସମସ୍ତେ ନିଦ୍ରାରେ ଘାରି ନିଶ୍ଚେଷ୍ଟେ ଶୋଇଲେ
କ୍ଷଣକରେ ବିଶ୍ୱକର୍ମା ଗଡ଼ ନିର୍ମାଣିଲେ ।
ପୂର୍ବଠାରୁ ଅଧିକରେ ନିର୍ମାଣିଲେ କାନ୍ଥ
ପ୍ରଭାତୁ ଦୈତ୍ୟ ଦେଖିଣ ହେଲେ ଆଚମ୍ବିତ ।
ବୋଇଲେ ଏ କେଡ଼େ କଥା କଲା ବିପ୍ରମଣି
ଏ ରୂପେ କଲେ କେବେ ନ ପାରେ ସେହୁ ଜିଣି ।
ଚାରି ସେନାପତି ପୁଣି ବିଚାରିଲେ ବସି
ନଗର ଧ୍ୱଂସିବା ଆସ ଗଡ଼େ ଡେଇଁ ପଶି ।
ନୋହିଲେ ନୁହନ୍ତି ବିପ୍ରକୁଳ କେବେ ନାଶ
ମାରିବା ଗଡ଼ରେ ଡେଇଁପଶି ବେଗେ ଆସ ।
ଏ ରୂପେ ମନେ ପାଞ୍ଚନ୍ତେ ସେନାପତି ଚାରି
ଜାଣିଲେ ସେ କଥା ଅନ୍ତର୍ଯ୍ୟାମୀ ଦେବହରି ।
ପାଞ୍ଚିଲେ ସରିଲା ଏବେ ଦୈତ୍ୟଙ୍କର ନାଟ
କି କରିବେ ବୁଝିବା ନା ଦୈତ୍ୟଙ୍କର ହଟ ।
ଗଡ଼କୁ ମୋର ଖୋଳି ସେ ଟାଳି ନ ପାରିଲେ
ଡେଇଁ ପଶିବା ବୋଲି ଯେ ଏବେ ବିଚାରିଲେ
ଏ ରୂପେ ପାଞ୍ଚି ଉଠିଲେ ପ୍ରଭୁ ଜଗତୀରେ
ଶେଷଦେବଙ୍କୁ ଯେ ଘେନିଛନ୍ତି ସଙ୍ଗତରେ ।

ପାଚେରୀ ଶିଖରେ ବିଜେକଲେ ବେନିଭାଇ
ଦେଖିଲେ ଦୈତ୍ୟ ଯେ ପୂରିଛନ୍ତି ଅନ୍ତ ନାହିଁ ।
ପୁଚ୍ଛିଲେ ଦୈତ୍ୟମାନଙ୍କୁ ଚାହିଁ ନାରାୟଣ
ବୋଇଲେ ଅଇଲ କାହିଁକିରେ ଅକାରଣ ।
ତୁମ୍ଭର ଆମ୍ଭର କିଛି ସମ୍ବନ୍ଧ ତ ନାହିଁ
କାହିଁକି ଆସିଛ ଅନିମିତ୍ତେ ଥାଟ ବାହି ।
ଏମନ୍ତ ବୋଲି ପୁଚ୍ଛିଲେ ଯହୁଁ ଲକ୍ଷ୍ମୀକାନ୍ତ
ଚାହିଁ ଚାରି ସେନାପତି ଦେଖି ବେନିଭ୍ରାତ ।
ବୀରଘଣ୍ଟ ବୋଇଲେ ଏ ଅଟେ ଆମ୍ଭ ଶତ୍ରୁ
ଏହାକୁ ଧରିଣ ଆମ୍ଭେ କରିଦେବା ମୃତ୍ୟୁ ।
ମୂଳକୁ ତ ନିବାରିଲେ ଡାଳେ କିସ କାର୍ଯ୍ୟ
ରାଜା ବନ୍ଦୀ ହୋଇଲେକି ହେବ ନାଶିକାଜ୍ୟ ।
ରଣେ ମଲା ପାଇକଙ୍କୁ ହାଣି ହାଣି ଗଲେ
ତାହାଙ୍କୁ ବୀର କ୍ଷତ୍ରିୟ ଅଲାଜୁକ୍ ବୋଲେ ।
ପ୍ରଳାପ କରିଣ ମେଘ ଶୂନ୍ୟେ ଯେବେ ଘୋଟେ
ରବିର ଆଲୋକ କାହିଁ ହଜେ ଜାଣ ଭେଟେ ।
ସତିକା ପତିର ଆଗେ ଭାର୍ଯ୍ୟା ହେଲେ ଡିହା
ପଦକେ ସେ ଉଠି ଆସି ବେଗେ ହେବ ଠିଆ ।
ସଂସାରେ ଜାଣ ବହୁତ କୃଷି ଉପୁଜିଲେ
ମାହାର୍ଘ ଲୋଡ଼ିବା ଲୋକ କି କରିବେ ଭଲେ ।
ଅଗ୍ନି ଲାଗିଲେ ପଡ଼ଇ ଜଳ ଯେବେ ମାଡ଼ି
ସେ ନଗ୍ର କେତେବେଳେ ନ ଯାଏ ଆଉ ପୋଡ଼ି
ଆମ୍ଭ ଆଗେ ଆସି ଏହୁ ମିଳିଲେକ ଯେବେ
ଛୋଡ଼ିବା କ୍ଷତ୍ରିକି ଏହା ନ ମିଳଇ କେବେ ।
ଏ ରୂପେ ମନରେ ପାଞ୍ଚି ବୀରଘଣ୍ଟ ବୀର
ନୃସିଂହ ମୁଖକୁ ଚାହିଁ କହଇ ଉତ୍ତର ।
ବୋଇଲେ ତୁମ୍ଭେ ପରା ଏ ମୁରାସୁର ରାଜ୍ୟେ
ପାଠ ପଢ଼ାଇବ ବୋଲି ଗଲରେ ନିର୍ଲ୍ଲଜେ ।
ନ କହିଣ ପଳାଇ ଆସିଲ ନିଶାକାଳେ
ତୁମ୍ଭଠାରୁ ଦୋଷୀ କିଏ ଅଛି ଭୂମଣ୍ଡଳେ ।
ନୋହିଲେ ବୋଲନ୍ତି ବିପ୍ରଙ୍କୁ ତ ଲୋକେଡିହା
ସଭାରେ ହୁଅନ୍ତି ଆଗ ହୋଇ ଉଚ୍ଚକୁହା ।
ଲୋକଙ୍କ ଯେ ପାଦ ଧୂଳି ବଳେ ଯାଚି ଦିଅ
ହାରିଲେ କଥାରେ ଜିଣୁଅଛୁ ବୋଲି କହ ।
ଦେଖିଲେ ପରଶିରୀ ନ ପାର କେବେ ସହି
ହିଂସାରେ ଲୋକଙ୍କୁ ନାଶ ଖଟମିଛ କହି ।
ବୁଝିବା ଅଟନ୍ତି ବିପ୍ରମାନେ ଘରବୁଡ଼ା
ସଭା ମୁରୁଛି ପଳାନ୍ତି ନ ହୋଇଣ ଛିଡ଼ା ।
ଏ ରୂପେ ବ୍ରାହ୍ମଣ ସିନା ତୁମ୍ଭେ ବେନିଭାଇ
ବିଦ୍ୟା ପଢ଼ାଇଣ ଲୁଚି ଅଇଲ ପଳାଇ ।

ଏ ଘେନି ବ୍ରାହ୍ମଣ ଗୋଷ୍ଠୀ ଅଟେ ଅବିଶ୍ୱାସୀ
ଆପଣେ ରାଜା ହୁଅନ୍ତି ସର୍ବବର୍ଣ୍ଣେ ଆସି ।
ରାଜ୍ୟ ନ ଥାଇ ସେ ରାଜା ଆପେ ଆପେ କହି
ବ୍ରହ୍ମାଣ୍ଡଯାକେ ପାଷାଣ୍ଡ ଜାତି ଏଡ଼େ ନାହିଁ ।
ନୃସିଂହ ବୋଇଲେ ଶୁଣ କହିବାରେ ମୂଢ଼େ
ମୂର୍ଖେ ଶିରୀ ଅର୍ଜିବୋଲନ୍ତି ଯେ ଆମ୍ଭେ କେଡ଼େ
ସମସ୍ତଙ୍କୁ ବୋଲନ୍ତି ଯେ ଅଟୁ ଆମ୍ଭେ ସିଂହ
ଝିଣ୍ଟିକାକୁ ଶ୍ୱାନଆଉ ଶ୍ୱାନେ ଯେହ୍ନେ ବ୍ୟାଘ୍ର ।
ତେଡ଼େକେ ହେବାରୁ ଆରେ କ୍ଷତ୍ରୀ ଏଡ଼େ ହୋଇ
ଚୋର ଦଣ୍ଡୁଆସି ପ୍ରାୟ ଖୋଳ ଆମ୍ଭ ଭୂଇଁ ।
ଆମ୍ଭେ ବିପ୍ରମାନେ ମେଲିଆ ତ ବୋଲି ଜାଣ
ଜାଣି ବିପ୍ର ହାତେ ଆସି ମଲ ଅକାରଣ ।
ତୁମ୍ଭର ସେ ଶୁକ୍ରଗୁରୁ ବିପ୍ରପରା ଅଟେ
ତାଙ୍କ ପାଦ ପୁଣି ନିତି ଘେନ ଭାଲପାଟେ ।
ତୁମ୍ଭଙ୍କୁ କେବେ ସେ ହିଂସା କଲେଣି କି କହ
କାହାକୁ ବୁଡ଼ାଇ ଶୁକ୍ର ଧରିଛନ୍ତି ଦେହ ।
ଘେନୁଛ ସେ ଶୁକ୍ରଋଷିଙ୍କର ପାଦ ଧୂଳି
ନିତି ହେଉଅଛ ଦେହ ମୁଣ୍ଡେ କିମ୍ପା ବୋଲି ।
ପଳାଇଲେ ବୋଲି ଯେବେ ଜାଣିଲ ରେ ମୋତେ
କାହିଁକି ମର ପଳାଇ ଯିବା ଲୋକ ହସ୍ତେ ।
ତଥାପି ଆସିଲ ଯେବେ ବଡ଼ ପଣେ ଯୁଝି
ଚୋର ପ୍ରାୟ ଖୋଳି ମୋର ଦିଅ ଗଡ଼ଭାଞ୍ଜି ।
ରାଜାକୁ ତୁମ୍ଭେ ବାହୁକ କହ ଏବେ ଯାଇ
କାହିଁକି ଦେଉଛି ମରିବାକୁ ପଠିଆଇ ।
ତୋହର ଯେତେକ ସୈନ୍ୟ ଗଲେ ଆଜଯାଏ
ବାହୁଡ଼ିଲେ ନାହିଁ କେହି ତହିଁରୁ ଗୋଟିଏ ।
ବୋଲ ଏହି ରୂପେ ଆମ୍ଭେ ମଲେ ହେବ ଯଶ
ଏ ରୂପେ ବେଗରେ ଯାଇ କହ ରାଜା ପାଶେ ।
ଶୁଣିଣ ଉଚ୍ଚରେ ସେନାମାନେ ଶିର ଝୁଣି
ଥୋଇଲେ ନୃସିଂହ ସ୍ୱାମୀ ଆଗେ ରଥ ଆଣି ।
ବୋଇଲେ ଶୁଣରେ କୃଷ୍ଣ ବଲ୍ଲଭର ପୋଏ
ବୁଝିଲେ ସଂସାର କମ୍ପୁଅଛି ଯାର ଭୟେ ।
ପଚାଶକୋଟି ଯୋଜନ ଯେଉଁ ବସୁନ୍ଧରୀ
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଯେ ଯୁଗଆଦି କରି ।
ମୁରଶିଖା ଜାଣ ଟେକିଅଛି ଏବେ ଯାଏ
କେଡ଼େ ରାଜାକୁ ତୁମ୍ଭେ ନ ମାନ ବିପ୍ରପୋଏ ।
ଆମ୍ଭେ ଅଟୁ ମହାକ୍ଷତ୍ରୀ ରାଜା ଘେନି ସଙ୍ଗେ
ଜାଣିଛୁ ସବୁଙ୍କୁ ତିଳପ୍ରାୟେ ରଣରଙ୍ଗେ ।
ଏମନ୍ତ କରନ୍ତେ ବୀରଗଣ କୋପ ହୋଇ
ହସିଣ କହନ୍ତି କଉତୁକେ ଭାବଗ୍ରାହୀ ।

ବୋଲନ୍ତିରେ ତୁମ୍ଭେ ଏଡ଼େ କ୍ଷତ୍ରୀଅଟ ଯେବେ
କରିବାତ କେଡ଼େ ଯୁଦ୍ଧ ଦେଖିବା ତ ଆମ୍ଭେ ।
ଆସରେ ଦୈତ୍ୟ କରିବ ତୁମ୍ଭେ ପରା ଯୁଦ୍ଧ
ହେଲଣି ଘରୁ ଆସିଲାବେଳୁଁ ପ୍ରାଣେ ବଧ ।
ଏ ରୂପେ କହିଲେ ଉଚ୍ଚେ ଯହୁଁ ନାରାୟଣ
କମ୍ପିଲେ ସେ ଚାରିସେନା ଧରି ଧନୁତୂଣ ।
ମାଡ଼ିଲେ ପୁଚ୍ଛକୁ ଯେହ୍ନେ ଉଠେ କାଳସର୍ପ
ଧରିଣ ବିନ୍ଧିଲେ ଶସ୍ତ୍ରମାନ କଉପଣ ।
ଶ୍ରୀନୃସିଂହ ବେନିଭାଇ ଦେଖି ବେନିଡ଼ୋଳେ
ଅଜଗବ ଧନୁକୁ ସେ ଧଇଲେ ତତ୍କାଳେ ।
ପେଶି ଅଧାଚନ୍ଦ୍ର ବାଣ ଛେଦୁଁ ବେନିଭାଇ
ଅସୁର ବିନ୍ଧିବା ଶର ଛିଡ଼ିପଡ଼େ ମହୀ ।
ବୀରଘଣ୍ଟ ଯେ ପର୍ବତଶର ଦେଲା ପେଶି
ଶ୍ରୀନୃସିଂହ ବଜ୍ରଶର ପେଶି ଦେଲେ ନାଶି ।
ପୁଣି ଜଳପାଶ ଛେଦିଦେଲା ଦୈତ୍ୟବୀର
ମରୁତ ଶରେ ଛେଦିଲେ ତାହା ଚକ୍ରଧର ।
ଆବର ସେ କରୀବର ଶର ପୁଣି ପୁଣି
ପେଶିଣ ବୋଲେରେ ପକା ବିପ୍ରଙ୍କୁ ଯେ ହାଣି ।
ଛେଦିଲେ କେଶରୀବାଣ ପେଶି ମହାପ୍ରଭୁ
ସିଂହକୁ ଦେଖି ପଳାଇଗଲେ ଗଜେ ସବୁ ।
ପୁଣିହିଁ ପେଶିଣ ବୀରଘଣ୍ଟ ନାଗପାଶ
ବୋଇଲେ ଶ୍ରୀନୃସିଂହଙ୍କୁ ବାନ୍ଧି ଘେନିଆସ ।
ବିଧିରେ ଗରୁଡ଼ ଅଟେ ଯାର ନିଜାସନ
ତାହାକୁ ପାରିବେ କିସ କରି ନାଗସୈନ୍ୟ ।
ଗରୁଡ଼ଙ୍କୁ ଦେଖି ନାଗେ ପଳାଇଲେ ରାଗେ
ପଶିଲେ ପାତାଳପୁରେ ଯାଇ ଲୁଚି ବେଗେ ।
ଦିଗପାଳଙ୍କର ଅସ୍ତ୍ର ନେଇଗଲେ ଯେତେ
ସେହି ଶରମାନ ରହିଥିଲେ ମୁଖାଗ୍ରତେ ।
ବୋଇଲେ ବଳରେ ତୁମ୍ଭେ ନେଲ ହେ ଛଡ଼ାଇ
ବିଷ୍ଣୁଙ୍କୁ ବିନ୍ଧିଲେ ଆମ୍ଭେ ଯିବୁଟି ପଳାଇ ।
ବଳପଣେ ନେଲେ ଦ୍ରବ୍ୟ କାହାକୁ ମିଳେକି
ଏଣୁ ସେ ଲୋକକୁ କେତୁହୀନ ନ ବୋଲେକି ।
ନେଲେ ବଳେ ଜୟ ଜାଣ ନୁହଇ ତାହାକୁ
ଏ ରୂପେ ସେ ଶରମାନ କହନ୍ତେ ଦୈତ୍ୟଙ୍କୁ ।
ସେ କଥା ଶ୍ରବଣେ ତାଙ୍କ ନ ପଶିଲା ଜାଣ
ଭୋଳରେ ସେ ଶରଯାକ ନେଲେ ଦୈତ୍ୟଗଣ
ସେ ଶରଯାକ ସାଇତି ରଖିଥିଲେ ଦୈତ୍ୟେ
ନୃସିଂହକୁ ମାର ବୋଲି ବିନ୍ଧିଲେ ତୁରିତେ ।
ଇନ୍ଦ୍ରଙ୍କର ବଜ୍ରଶର ଅଗ୍ନିଙ୍କର ବାଣ
ନୈର୍ଋତର ଲୌହଶର ବରୁଣ ଯେ ପୁଣ ।
ପବନ ଦେବତାଙ୍କର ପବନାସ୍ତ୍ର ଯୋଖି
ବିନ୍ଧଇ ଅସୁରେ ଟାଣି ଉପ୍ରୋଧ ନ ରଖି ।
କୁବେରର ରତ୍ନାବଳୀ ଈଶାନ ଭୈରବ
ଆକାଶୁ ପ୍ରଳୟ ପାତାଳରୁ ମହୀଧ୍ରୁବ ।
ଏ ବିଧିରେ ଦଶଦିଗପାଳ ଶର ଧରି
ଶ୍ରୀନୃସିଂହ ଉପରକୁ ବିନ୍ଧିଲେ ଦେବାରି ।
ଆସନ୍ତେ ସେ ଶରମାନ ନୃସିଂହଙ୍କୁ ଚାହିଁ
ଶରଣ ପଶିଲେ ପଦ୍ମପାଦେ ସର୍ବେ ଯାଇ ।
ପାଦପଦ୍ମକୁ ଚାହିଁଣ ସର୍ବେ କଲେ ସ୍ତୁତି
ବୋଇଲେ ଦେଖିଲୁ ଏତେ କାଳେ ଜଗଜ୍ଜ୍ୟୋତି
ଆପଣ ଯେତେକ ଶର ଦେଲେ ଦେବତାଙ୍କୁ
ବଳେ ଘେନିଗଲେ ପଶି ଆପଣା ମନକୁ ।
ଆମ୍ଭଙ୍କୁ ଏ ଯୋଗ ଯେତେ ଦିନ ଥିଲା ଆସି
ଭେଟିଲୁ ସୁଖେ ଦର୍ଶନ କରି ବ୍ରହ୍ମରାଶି ।
ଶ୍ରୀନୃସିଂହ ସ୍ୱାମୀ ଶୁଣି ଅଳ୍ପ ମନେ ହସି
ବୋଇଲେ ତୁମ୍ଭେ ଆମ୍ଭର ରହ ଏବେ ଆସି ।
ଶୁଣି ରହିଲେ ଶରମାନ ଆଜ୍ଞାପାଇ
ଶୁଣ ଆହେ ନାରଦ ଯେ ବେଦବର କହି ।
ଏଥିଉତ୍ତାରୁ ଅସୁର ସେନାପତି ଚାରି
ବିନ୍ଧନ୍ତେ ସେ ଶରଯାକ ତୂଣୁ ଗଲେ ସରି ।
ନୃସିଂହ ବୋଇଲେ ଆଉ ଶର ଥିଲେ ବିନ୍ଧ
ନୋହିଲେ ଛେଦିବି ଏହି କ୍ଷଣି ତୁମ୍ଭ କନ୍ଧ ।
ଶୁଣିଣ ପଡ଼ିଲେ ଦୈତ୍ୟ ବୀର ରଥୁ ଡେଇଁ
ରେ ରେ କାର କରି ଗଦା ଧଇଲେକ ଯାଇ ।
ସମ୍ଭାଳ ବିପ୍ରରେ ବୋଲି ଛାଡ଼ି ଘୋରରଡ଼ି
ନୃସିଂହ ଉପରେ ନେଇ ପିଟିଲେ କଚାଡ଼ି ।
ଦେଖି ମହାପ୍ରଭୁ କୌମୁଦକୀ ଗଦା ଧରି
ଭାଙ୍ଗିଲେ ଦୈତ୍ୟଙ୍କ ଗଦା ଖଣ୍ଡ ଖଣ୍ଡ କରି ।
ଭାଜନ୍ତେ ସେ ଗଦା ଦୈତ୍ୟ ହେଲେ ଶୂନ୍ୟହସ୍ତ
ନୃସିଂହ ବୋଇଲେ ଏବେ କରିବା କେମନ୍ତ ।
ଶୁଣିଣ ସେ ବାହାସ୍ଫୋଟ ମାଇଲେ ରାକ୍ଷସ
ବୋଇଲେ ଯେ ମାଲଯୁଦ୍ଧ କରିବା ହୋ ଆସ ।
ଦୈତ୍ୟଙ୍କର ବାଣୀ ଶୁଣି ହସି ଚକ୍ରପାଣି
ଚକ୍ରକୁ ବୋଇଲେ ଯାଇ ପକା ବେଗେ ହାଣି ।
ଶୁଣି ସେ ସୁଦର୍ଶନ ଗଲା ଅତି ବେଗେ
ଚାରି ସେନାଙ୍କର ମୁଣ୍ଡ ଛେଦିଲା ସେ ଲାଗେ ।
ସମୁଦ୍ରେ ପକାଇ ଦେଇ ସ୍ନାନ ଟବେଗେ କଲା
ନୃସିଂହ ଦକ୍ଷିଣ କରେ ପ୍ରବେଶ ହୋଇଲା ।
ଏଥି ଉତ୍ତାରେ ସେ ପ୍ରଭୁ ଲକ୍ଷ୍ମୀଦେବୀ କାନ୍ତ
ଗରୁଡ଼କୁ ଆଜ୍ଞାଦେଲେ ବେଗେମାର ଦୈତ୍ୟ ।

ଅସୁର ସୈନ୍ୟଙ୍କୁ ବେଗେ ପେଶ ସଂଯମନୀ
ଗୋଟିଏ ଜବୁରି କେ ନ ଯାନ୍ତୁ ପ୍ରାଣ ଘେନି ।
ପଦାତି ରାଉତ ହସ୍ତୀ ଘୋଡ଼ା ଆଦିକରି
ଯେମନ୍ତେ ପାର ତେମନ୍ତେ ଦିଅ ତୁହି ମାରି ।
ଶୁଣିଣ ଉଠିଲା ବୈନତେୟ ମହାକୋପେ
ବଳକୁ ଦେଖି ଶ୍ୟାମଳ ପକ୍ଷୀ ଯେହ୍ନେ ଝାମ୍ପେ ।
ସେ ରୂପେ ସେ ଶୂନ୍ୟେ ଉଡ଼ି ପଡ଼େ ଆସି ମାଡ଼ି
ଗୋଟିଏ ଗୋଟିଏ ଝିଙ୍କି ଦିଏ ବେକ ମୋଡ଼ି ।
ଆବର ସେ ଥଣ୍ଟେ ଧରି କରେ ଖଣ୍ଡ ଖଣ୍ଡ
ପାବରେ ଯେ ଚୂର୍ଣ୍ଣକରି ମନ୍ଥେ କାର ପିଣ୍ଡ ।
ମାହୁନ୍ତ ଯେ ମତ୍ତହସ୍ତୀ ପଦାତି ସଭିଏଁ
ବୀର ହୟଗ୍ରୀବ ଆଦି ହେଲେ ମଡ଼ାମୟେ ।
ପଡ଼ିଲା ଅସୁର ଥାଟଯାକେ ମହାଗୋଳ
ପିଟିଲେ ସେ ଦୈତ୍ୟମାନେ ଘେନି ଗଦାଶୂଳ ।
ମାହୁନ୍ତମାନେ ଯେ ଗଜ ଅଶ୍ୱ ଉହାଡ଼ିଲେ
ରାଉତମାନେ ଭାଲାକୁ ଟିଟକୁଣି କଲେ ।
ପଦାତିଗଣ ଶାୟକ ଶର କରେ ଧରି
ବିନ୍ଧିଲେ ଗରୁଡ଼ ଉପରକୁ କୋପ କରି ।
ବଳଦା ବୃଷ୍ଟିର ପ୍ରାୟେ ପଡ଼ନ୍ତେ ସେ ଶର
ବାଜନ୍ତେଣ ଟହ ଟହ ହସେ ଖଗେଶ୍ୱର ।
ଲାଗନ୍ତ ପଡନ୍ତେ ଅଙ୍ଗେ ଖଗେ ଦିଏ ଝାଡ଼ି
ବିହ୍ୱ ହୋଇଣ ସେ ଶରେ ଶୂନ୍ୟେ ଯାନ୍ତି ଉଡ଼ି ।
ବଳତେ ବିନ୍ଧନ୍ତେ ଏକମୁଖେ ଶର ଟାଣି
ଆସନ୍ତି ଶରେ ଶ୍ରାବଣ ବୃଷ୍ଟିଧାରା ଜାଣି ।
ବରାହ ଚରୁଆ ଆଉ ବାଙ୍କୋଡ଼ି ବା ଧଣ୍ଡା
କୁଣ୍ଡଳି ଯେ ଯମଦାଢ଼ କାତି ଛୁରୀ ଖଣ୍ଡା ।
ଆବର କଟୁରୀ ଖରଶାଣି ଏକମୁନ
ବିନ୍ଧନ୍ତି ଏ ଆଦି ଶରମାନ ଯାତୁଧାନ ।
ଖଗବର ପକ୍ଷେ ତାହା ଦିଏ ଗୁଣ୍ଡାକରି
ଦେଖିଣ ଦୈତ୍ୟ ରହିଲେ ଟିକେ ଅପସରି ।
ଗରୁଡ଼ ବୋଇଲା ଏବେ ସରିଲା କି ଶର
ଏ ରୂପେ କହି ଗର୍ଜିଲା ବୀର ଖଗେଶ୍ୱର ।
କାହାକୁ ମନ୍ଥି କାହାକୁ ଥଣ୍ଟେ ଦିଏ ଚିରି
କାହାକୁ ଖଗେ ପକାଇ ଦିଏ ବେଗେ ମାରି ।
କାହାର ମୁଣ୍ଡକୁ ମୋଡ଼ି କଲେ ବାହୁଛଟା
କାହାପେଟ ଚିରି ଭାଙ୍ଗିଦିଏ କାର ଅଣ୍ଟା ।
କାହା ଅନ୍ତମାଳା କାଢ଼େ ତୁଣ୍ଡ ଦିଏ ଚିରି
ଏ ରୂପେ ସେ ସୈନ୍ୟଯାକ ସବୁ ଗଲା ମାରି ।
ସୁଜାଣ ମନ୍ତ୍ରୀ ମାଇଲା କେତେ ଅନ୍ତ ନାହିଁ ।
କର୍ଣ୍ଣାଟ ରାଜା ଯୁଦ୍ଧ କେ ପାରେ ମୁଖେ କହି ।

ବାରପଦ୍ମ ସୈନ୍ୟ ବାରଯୁଣ ଥିଲେ ମାଡ଼ି
ଭୂମିରେ ଶ୍ରାବଣ ବୃଷ୍ଟି ପ୍ରାୟ ଗଲେ ପଡ଼ି ।
ବହିଲା ରକତ ନଦୀ ନିତିତାଳ ଉଛେ
ଏତେକ ଯୁଦ୍ଧ କେ କରି ନାହିଁ ସ୍ୱର୍ଗମଞ୍ଚେ ।
ଶାଗୁଣା ଜମ୍ବୁକ ଶଙ୍ଖଚିଲ କାକପୋଇ
ଭକ୍ଷନ୍ତି ମାଂସ ରୁଧିର ଯାନ୍ତି କେହୁ ପିଇ ।
ଚାଚିକା ଯୋଗିନୀ ଗଣ ଭ୍ରମି ଯେଝାମତେ
ଭକ୍ଷନ୍ତି ମରିବା ଦୈତ୍ୟଯାକ ଦିବାରାତ୍ରେ ।
ଧରିଣ ସେ ଗୋଟି ଗୋଟି କରି ମଡ଼ାବଳି
ଭୁଞ୍ଜନ୍ତି ସେ ମଦ୍ୟପାନେ ଦେଇ ହୁଳହୁଳି ।
କହିଲେ ଯେ ନ ସାରଇ ଯୁଦ୍ଧ ମହା ଘୋର
ପଡ଼ିଲେ ଯେ କୁଢ଼କୁଢ଼ ହୋଇ ଦୈତ୍ୟବୀର ।
କାହାର ଯେ ମୁଣ୍ଡଫାଟି କାହା ପିଠି କଣା
କାହାର ବେକ ଛିଡଇ କାହା କଟୀ ହଣା ।
କାହାର ଭୁଜ ଛିଡ଼ଇ ବାଜି ଶରଘାତେ
କାହା ଜାନୁ ଜଙ୍ଘ ଛିଡ଼ିଗଲା ଅପ୍ରମିତେ ।
ଶୋଣିତ ନଦୀରେ ମଡ଼ା ଭାସେ କୁତୂହଳ
ଟେକଇ ପବନଘାତେ ରକତ ଉଲ୍ଲୋଳ ।
ଏ ରୂପେ ହୋଇ ବାରପଦ୍ମ ସୈନ୍ୟ ହତ
ରାଉତ ମାହୁନ୍ତ ହସ୍ତୀ ଘୋଡ଼ା ଅପ୍ରମିତ ।
ଗରୁଡ଼ କର୍ଣ୍ଣାଟେଶ୍ୱର ସୁଜାଣ ଯେ ମନ୍ତ୍ରୀ
ମାଇଲେକ ବାରପଦ୍ମ ସୈନ୍ୟ ତିନିକ୍ଷତ୍ରୀ ।
ସଂଗ୍ରାମେ ଅସୁର ସୈନ୍ୟଯାକ କରି ଧ୍ୱଂସ
ନୃସିଂହ ଛାମୁରେ ଯାଇ ହୋଇଲେ ପ୍ରବେଶ ।
ପ୍ରଭୁ ବୋଇଲେରେ ଦୈତ୍ୟଗଲେ ଯମପୁର
ଗଲେ ବୋଲି ଆଗେ କହେ କର୍ଣ୍ଣାଟ ଈଶ୍ୱର ।
ସୁଜାଣ ମନ୍ତ୍ରୀ ବୋଇଲେ ମୁଁ ହାରିଲି ଯାହା
ଛାମୁରେ କେ ଲେଖି କହିପାରେ ବସି ତାହା ।
ମୁଁ କେତେ ମାଇଲି କେତେ କର୍ଣ୍ଣାଟ ମାଇଲେ
ଗରୁଡ଼ ହସ୍ତରେ ଅପ୍ରମିତ ସୈନ୍ୟ ମଲେ ।
ଗରୁଡ଼ ବୋଲେ ଶୁଣିବା ହେଉ ଭାବଗ୍ରାହୀ
ବୁଝିଲେ ତ ଯୁଦ୍ଧ ମୋତେ ଅଣ୍ଟିଲା ଯେ ନାହିଁ ।
ଯେତେ ଆଜ୍ଞା ଦେଲେ ଦେବ ତେତେ ଦେଲି ମାରି
ଶୁଣି ହସିଲେ ମନେ ମନେ ନରହରି ।
ବୋଇଲେ ରେ ଖଗେଶ୍ୱର କହିବା ତୁ ଶୁଣ
ଗତ କଥାକୁ ଭାବିବା ଅଟେ ଅକାରଣ ।
କାଲି ଯେ ଆସିବେ କଣ୍ଟ ବିକଣ୍ଟ ଏ ଦୁଇ
ମୂରର ସେ ବଡ଼ ସେନାପତି ବେନିଭାଇ ।
ଆସିବେ ଅପାର ସୈନ୍ୟ ସଙ୍ଗେ ସେହୁ ଘେନି
ଅଶୀପଦ୍ମ ବାଳା ପୁଣି ପୁରୁଷ ଯେ ତିନି ।

ମାରିବୁଁ ସେ ତିନି ରାକ୍ଷସଙ୍କୁ ଆମ୍ଭେ ଏକା
ସୁରତି ଯୁଦ୍ଧକରି ତୁ ମାରିବୁ ନାୟିକା ।
ଷଡ଼ଯତିରେ ଜଣେ ମୁଁ ଅଟେ ମହାଯତି
ଯତିହୋଇ କେମନ୍ତେ ମୁଁ ଡରିବଇଁ ରତି ।
ନୃସିଂହ କହିଲେ ତୋତେ କହିବା ଯେ ତତ୍ତ୍ୱ
ବୀର୍ଯ୍ୟକୁ ସ୍ତମ୍ଭିଣ ରତି କରିବୁ ବହୁତ ।
ଉଠିବ ଅନଳ ଜଳି ତାହାଙ୍କ ଶରୀରୁ
ତେବେ ସେ ସର୍ବେ ମରିଣ ତରିବେ ସଂସାରୁ ।
ଯତିଙ୍କ ଭିନ୍ନ ଆନ ନ ପାରେ କେହୁ ମାରି
ତୋହରି ପ୍ରାୟ ଯତି ଯେ ନାହିଁ ତିନିପୁରୀ ।
ଏଡ଼େ ହେଁ ବଳିଷ୍ଠ ଯତି ଅଛି କେହି କହ
ଶୁଣି ଗରୁଡ଼ ହସଇ ହୋଇ ଟହଟହ ।
ଗରୁଡ଼ ବୋଲେ ଶୁଣିମା ହେଉ ମହାପ୍ରଭୁ
ଯତିଙ୍କ ଉପରେ ଯତି ତୁମ୍ଭେ ଅଟ ସବୁ ।
ମୋହର କେବଳ ଅଛି ଯତିପଣ ସିନା
କି ରୂପେ ମାରିବି ଏକା ମୁହିଁ ଏତେ କନ୍ୟା ।
ଏ ନଷ୍ଟ କନ୍ୟା ପାଇଲେ କାହୁଁ ଏଡ଼େ ଶାପ
ତୁମ୍ଭ କୃପା ହେଲେ ଧରିପାରେ ବିଶ୍ୱରୂପ ।
ନୋହିଲେ ଏତେ ସ୍ତିରୀ ନ ପାରେ କେବେ ମାରି
ମାଇଲେ ସ୍ତିରୀହତ୍ୟା ନ ଲାଗୁ ମୋତେ ହରି ।
ନୃସିଂହ ବୋଇଲେ ତେବେ କହିଦେବା ଶୁଣ
ବୁଝିଲେ ତ ତୋର ମୋର ଅଟେ ଏକା ପ୍ରାଣ ।
ମୁଁ ଯେଣୁ କହିଲି ହେବ ନାହିଁ ହତ୍ୟା ଦୋଷ
ପୂର୍ବରୁ କହିଅଛନ୍ତି ମୋତେ ବେଦବ୍ୟାସ ।
ଶ୍ରୀବେଦବ୍ୟାସ ଆଜ୍ଞା ନ ଟଳେ କଦାଚିତେ
ସେ ସ୍ତିରୀଏ ନ ମରନ୍ତି ଆନଲୋକ ହସ୍ତେ ।
ବ୍ୟାସଙ୍କ ମୁଖୁଁ ଶାପ ସେ ପାଇଛନ୍ତି ପୂର୍ବେ
ବିଶେଷ କରି କହିବା ଶୁଣ ତୁମ୍ଭେ ଏବେ ।
ଅଶୀପଦ୍ମ ନାୟିକା ସେ ଇନ୍ଦ୍ର ପରିବାରୀ
ପ୍ରଭାତରୁ ଆସିଥିଲେ ଗଙ୍ଗାସ୍ନାନ କରି ।
ବ୍ୟାସରଷିଙ୍କୁ ସେ ବଳା ଦେଖି ବାଟେ ଏକା
ମୁନିଙ୍କୁ ବଳେ ଓଟାରି ଧରି କଲେ ଝିଙ୍କା ।
କାମରେ ଭୋଳାହୋଇ ସେ ବୟସର ଗର୍ବେ
ଋଷିଙ୍କୁ ସେ ପରିହାସ କଲେ ଯାଇ ସର୍ବେ ।
ବଳେଣ ସେ କଉପୁନି ଧରି ଉଛୁଳିଲେ
ଉଲଗ୍ନ ହୋଇଣ ଆଗେ ଉଭାରି ରହିଲେ ।
ଦେଖିଣ ମୁନି ତାହାଙ୍କୁ ହେଲେ ବିଷପ୍ରାୟ
ମନରେ ଯେ କ୍ରୋଧ ଜାତ ହେଲା ଅପ୍ରମେୟ ।
ବୋଇଲେ ପାପିଷ୍ଠ ଲୋ ରାକ୍ଷସୀ ବୁଦ୍ଧିକଲ
ଆମ୍ଭପରା ଋଷିଙ୍କୁ ତ ଚିହ୍ନି ନ ପାରିଲ ।
ଏ ଘେନି ରାକ୍ଷସୀ ହୁଅ ତୁମ୍ଭେମାନେ ଯାଇ
କରାଅ ଦୈତ୍ୟଙ୍କୁ ରତି ପ୍ଲକ୍ଷଦ୍ୱୀପେ ରହି ।
ଏ ରୂପେ ଶାପ ଦେଇଣ ଯାନ୍ତେ ମୁନିବର
ସେ ବୋଇଲେ ଆମ୍ଭଙ୍କୁ ହେ ମୁନି ଦୟାକର ।
ତୁମ୍ଭର ରୂପକୁ ଦେଖି ଆମ୍ଭେ ମନକଲୁ
ତହିଁର ଏ ଦଶା ଆମ୍ଭେମାନେ ତ ଭୁଞ୍ଜିଲୁ ।
ବିଷ୍ଣୁଙ୍କର ରୁଦ୍ରପ୍ରାୟ ଦିଶେ ତୁମ୍ଭ ଜ୍ୟୋତି
ମାତିଲୁ ଭୋଳ ହୋଇଣ କରିବାକୁ ରତି ।
କେଉଁରୂପେ ଆମ୍ଭେ ମୋକ୍ଷ ହେବୁ ଆହେ କହ
ବ୍ୟାସ ବୋଇଲେ କହିବା ତେବେ ଶୁଣିଥାଅ ।
କାର୍ପଣ୍ୟ ହୋଇ ମାଗିଲ ଯେବେ ମୋକ୍ଷଗତି
ଆନଲୋକ ହାତେ ମଲେ ନୋହିବ ଯେ ମୁକ୍ତି ।
ଗରୁଡ଼ଙ୍କୁ ଭେଟିବ ଲୋ ତୁମ୍ଭେ ଯେତେବେଳେ
ବିଷ୍ଣୁଙ୍କର ଭକ୍ତ ସେହୁ ଅଟେ ସର୍ବକାଳେ ।
ତାହାକୁ ଦେଖିଲା କ୍ଷଣି ରତି କରାଇବ
ତେବେ ଯାଇ ତୁମ୍ଭେମାନେ ମୋକ୍ଷ ହୋଇଯିବ
ଆନଲୋକ ବିହ୍ୱଳିତ ଦେଖି ହେଉଥିବେ
ରତି ଇଚ୍ଛାକରି ତତକ୍ଷଣେ ମରିଯିବେ ।
ତୁମ୍ଭଙ୍କୁ ପୁରୁଷ ଲୋକ ନ ପାରିବେ ଜିଣି
ପ୍ରାଣ ବିସର୍ଜିବେ ସେହୁ ରତି କଲା କ୍ଷଣି ।
ଏ ଘେନି ତୁମ୍ଭଙ୍କୁ କେହି ଜିଣି ନ ପାରିବେ
ସାତଦ୍ୱୀପ ରାଜାଯାକ ହାରି ପଳାଇବେ ।
ଆଜଠାରୁ ତୁମ୍ଭେମାନେ ରକ୍ଷକନ୍ୟା ହୁଅ
ତ୍ରିମୁଣ୍ଡା ବୀରକୁ ସେବି ପ୍ଲକ୍ଷଦ୍ୱୀପେ ଥାଅ ।
ଏହା ଶୁଣି ସୁନ୍ଦରୀଏ ରାକ୍ଷସୀ ଯେ ହୋଇ
ସେବିଲେ ସେ ତ୍ରିମୁଣ୍ଡାକୁ ବ୍ୟାସ ଆଜ୍ଞା ପାଇ ।
ଏ ରୂପେ କହି ସେ ବ୍ୟାସ ଗଲେ ଅନ୍ତର୍ଦ୍ଧାନେ
ଏହା ଶୁଣି ଖଗେଶ୍ୱର ହସେ ମନେ ମନେ ।
ଗରୁଡ଼ ବୋଇଲେ ସ୍ତିରୀ ହସିବେ କି ରୂପେ
ବୁଝିଲେକ ଆମ୍ଭେ ରହିଥାଉ ଜମ୍ବୁଦ୍ୱୀପେ ।
ନୃସିଂହ ବୋଇଲେ ମୁର ଆଣିବ ଡକାଇ
କାଲି ବେଳ ସାତ ଦଣ୍ଡେ ଦେଖିବୁ ଯେ ତୁହି ।
କର୍ଣ୍ଣାଟକ ବୋଇଲେ ନ ଭାଳ ମନେ କିଛି
କନକାବତୀ ନଗ୍ରକୁ ଅବଶ୍ୟ ଦେଉଛି ।
ମନ୍ତ୍ରୀକି ବୋଇଲେ ଅଟୁ ତୁହୋ କେଡ଼େ କ୍ଷତ୍ରୀ
ତ୍ରେତୟା ଯୁଗେ ସୁମନ୍ତ୍ର ନାମେ ହେବୁ ମନ୍ତ୍ରୀ ।
ତୁ ମୋତେ ନ ଛାଡୁ ମୁହିଁ ନ ଛାଡ଼ଇ ତୋତେ
ମନ୍ତ୍ରୀ ବୋଇଲେ ଆଜ୍ଞା ହେ ମେଣ୍ଟିବ ଜଗତେ ।
ପ୍ରଭୁ ଆଜ୍ଞାରେ ସଂସାରେ ଆମ୍ଭେ ଅଟୁ ଏଡ଼େ
ତୁମ୍ଭ କୃପାରୁ ଆମ୍ଭଙ୍କୁ ଦୈତ୍ୟେ ଛାର କେଡ଼େ ।

ଶୁଣିଣ ହସିଲେ ମନେ ମନେ ନାରାୟଣ
ଏଥି ଉତ୍ତାରୁ ଆସିଲେ ସ୍ୱର୍ଗୁ ଦେବଗଣ ।
ଦେଖିଲେ ବଦ୍ରିକା ଦେଶେ ହାଡ଼ମାଂସ ମୟେ
ମରି ପଡ଼ିଛନ୍ତି ଦୈତ୍ୟ ବାରଯୁଣ ଯାଏ ।
ଚିନିଚାଲ ଉପରେ ସେ ରକ୍ତନଦୀ ବହେ
ନୃତ୍ୟ ଗୀତ କରନ୍ତି ତା ଦେଖି ଦେବତାଏ ।
ଚନ୍ଦନ କୁଙ୍କୁମ ଗନ୍ଧର୍ପରାଗ ଅଗୁର
ପକାନ୍ତି ଦେବେ ନୃସିଂହ ପ୍ରଭୁଙ୍କର ଶିର ।
ବଦରିକା ଦେଶଯାକ କଲେ ପୁଷ୍ପବୃଷ୍ଟି
ସ୍ତୁତିକଲେ ଶ୍ରୀନୃସିଂହ ପାଦପଦ୍ମେ ଖଟି ।
ଜୟ ଜୟ ନୃସିଂହ ତୁ ସର୍ବରୂପ ଧରୁ
ମଞ୍ଚେ ଅବତରି ତୁହି ଦୈତ୍ୟକୁଳ ମାରୁ ।
ଜୟ ଜୟ ନୃସିଂହ ତୁ ଦେବଙ୍କର ବନ୍ଧୁ
ବ୍ରହ୍ମାଣ୍ଡକୁ ରକ୍ଷାକରୁ ଜନ୍ମି କ୍ଷୀରସିନ୍ଧୁ ।
ଜୟ ତୁ ନୃସିଂହ ଜୀବଙ୍କର ମୋକ୍ଷଦାତା
ଦୈତ୍ୟଙ୍କୁ ମାରି ବୋଲାଉ ସୃଷ୍ଟି ରକ୍ଷାକର୍ତ୍ତା ।
ଅନେକ ଅସୁର ଛନ୍ତି ଏ ପୃଥ୍ୱୀରେ ପୂରି
ମୁରର ଲାଗି କମ୍ପଇ ନିତ୍ୟ ବସୁନ୍ଧରୀ ।
ଏବେ ଆସି ଦୈତ୍ୟକଲ ଥୋକାଏ ବିନାଶ
କାଲିକି ଆସିବେ କଣ୍ଟ ବିକଣ୍ଟ ରାକ୍ଷସ ।
ଅଟନ୍ତି ତ୍ରିମୁଣ୍ଡା ରାକ୍ଷସର ବେନି ପୋଏ
ପ୍ଳକ୍ଷଦ୍ୱୀପ ରାଜା ଅଟେ ସେହି ଦୈତ୍ୟରାୟ ।
ଆଣିଛି ପ୍ରୀତିରେ ବଶକରି ମୁରାସୁର
ବଡ ପ୍ରତାପୀ ଅଟନ୍ତି ସେହି ବେନି ବୀର ।
ଅଶୀପଦ୍ମ ସୈନ୍ୟ ତାର ସର୍ବେ ଯୁବାସ୍ତିରୀ
ପୁରୁଷ ହୋଇ ତାଙ୍କୁ ନ ପାରେ ଯୁଦ୍ଧ କରି ।
ରତି ରସ ଦେଇ ହୃଦେ ବସନ୍ତି ସେ ମାଡ଼ି
ଉଠ ଲୋ ସଖି ବୋଲୁ ଯେ ଆତ୍ମାଯାଏ ଛାଡ଼ି ।
ତୁମ୍ଭବଳେ ତାଙ୍କୁ ଅବା ପାରିବ କେ ନାଶି ।
ନୋହିଲେ ଆନଲୋକ ନପାରେ କେ ଭରସି
ଏ ଘୋର ସଙ୍କଟରୁ ଯେ ତୁମ୍ଭେ ଉଦ୍ଧରିବ
କି ରୂପେ ଉପାୟ କରି ତାଙ୍କୁ ସଂହାରିବ ।
ଏ ରୂପେ କହି ଶ୍ରୀପାଦପଦ୍ମ ଦେବେ ନମି
ମେଲାଣି ହୋଇ ଚଳିଲେ ସର୍ବେ ସ୍ୱର୍ଗଭୂମି ।
ଏଥିଉତ୍ତାରେ ନୃସିଂହ ଶେଷ ବେନି ଭାଇ
ତିନି ଦିବସ ଯାଏ ସେ ଯୁଦ୍ଧେ ଥିଲେ ରହି ।
ଗଙ୍ଗାରେ ଯେ ନିତ୍ୟକର୍ମ ସାରି ବ୍ରହ୍ମରାଶି
ନଗରେ ଯେ ବିଜେକଲେ ସନ୍ଧ୍ୟାକାଳେ ଆସି ।
ସଭିଙ୍କୁ ମେଲାଣି ଦେଇ ଭିତରକୁ ଗଲେ
ମାତା ପିତାଙ୍କୁ ଦର୍ଶନ ବେଗେ ଯାଇ କଲେ ।

ଭୋଜନ ଯେ ଆଚମନ ସାରି ବେନିଭାଇ
ଭୁଞ୍ଜିଲେ ଗରୁଡ଼ ଆଦି ସର୍ବେ ସୁସ୍ଥ ହୋଇ ।
ଲକ୍ଷ୍ମୀଙ୍କ ପୁରରେ ବିଜେକଲେ ନାରାୟଣ
ବିପ୍ର ପୀତାମ୍ବର ଦାସ ସେ ପଦେ ଶରଣ ।
ବିହାରକଲେ ସେ ପ୍ରଭୁ ଲକ୍ଷ୍ମୀକୋଳେ ଘେନି
ସେ ରସମାର୍ଗ ସର୍ବଦା ପାରେ ଏକା ଚିହ୍ନି ।
ସେବାରେ ପ୍ରହରୀ ଅଷ୍ଟସଖୀ ଜଗିବସେ
କ୍ଷୀର ବଇକୁଣ୍ଠ ପ୍ରାୟ ବଦରିକା ଦିଶେ ।
ଚଉଷଠିସସ୍ର କନ୍ୟା ନୃସିଂହ ବିଳସି
ସେବିଲେ ଯେ ଯାହା ସେବା ଘେନି ବ୍ରହ୍ମରାଶି ।
କେକୀପୁଚ୍ଛ ଢାଳଇ କେ ଢାଳଇ ଚାମର
ଆଲଟ ବିଞ୍ଚଇ କେହୁ ଚାପଇ ପୟର ।
ସବୁରି ମନ ନୃସିଂହ ଚକ୍ରପାଣି ମୋହି
କରନ୍ତି ଯେ ରସକେଳି ରୂପେ ରୂପେ ବହି ।
ଶ୍ରୀନୃସିଂହ ପ୍ରଭୁ କଥା ଅଟେ ଯୋଗମାୟା
ଯେସନକ ଜଳେ ଦୃଶ୍ୟ ହୁଏ ବିଦ୍ୟୁଚ୍ଛାୟା ।
ଦିଶନ୍ତି ସମସ୍ତଙ୍କୁ ଯେ ଏକରୂପ ପ୍ରାୟେ
ଚୌଷଠି ସସ୍ର ରୂପ ଶ୍ରୀ ନୃସିଂହ ମୟେ ।
ନିଜ ରୂପରେ ଲକ୍ଷ୍ମୀଙ୍କୁ କୋଳେ ପ୍ରଭୁ ଘେନି
କରନ୍ତି ଅତ୍ୟନ୍ତ ପ୍ରେମରସ ମନ ଚିହ୍ନି ।
ଚଉଷଠି ପରିବନ୍ଧ ଅଶୀମୁଦ୍ରା ଭେଦ
କ୍ରୀଡନ୍ତି କୋଳେ ଘେନି ଶ୍ରୀଲକ୍ଷ୍ମୀଙ୍କୁ ଗୋବିନ୍ଦ ।
ଆବର ଯେ ଶେଷ ଇଳା ଠାକୁରାଣୀ ତୁଲେ
ସୁପାତି ଶେଯ ପଲ୍ୟଙ୍କେ ଘେନି ବିଜେ କଲେ ।
ନାନା ବିନୋଦରେ କଲେ ସେ ରଜନୀ ଶେଷ
ଏଥି ଉତ୍ତାରେ ଉଠିଲେ ଶେଯୁ ଜଗଦୀଶ ।
ପ୍ରଭାତୁ ସାରିଲେ ନିତ୍ୟକର୍ମ ନାରାୟଣ
ବିପ୍ର ପୀତାମ୍ବର ଲେଖେ ନୃସିଂହ ପୁରାଣ ।
ପନ୍ଦର ସହସ୍ର ଗ୍ରନ୍ଥ କଲେ ବ୍ୟାସମୁନି
ଇତି ଶ୍ରୀନୃସିଂହ ପୁରାଣ ଏ ପୁଣ୍ୟଧ୍ୱନି ।
ଏହାକୁ ଯେ ଏକ ମନେ ପଢ଼ନ୍ତି ଶୁଣନ୍ତି
କୋଟିଏ ଗଙ୍ଗାସ୍ନାନର ଫଳ ସେ ଲଭନ୍ତି ।
ହରିଣୀକୁ ରଖିଥିଲେ ଯେହ୍ନେ ଜଗନ୍ନାଥ
ଶୁଣିବା ଲୋକେ ଯେ ତରିଯିବେ ପୁଣ୍ୟଗ୍ରନ୍ଥ ।
ଏହି ଚତୁର୍ଥ ସାଗର ନୃସିଂହ ପୁରାଣ
ପଢ଼ି ଶୁଣି ଭବ ଲୋକେ ପାରିହେବ ପୁଣ ।
ଆଦି ଅବତାରେ ଆଦ୍ୟଯୁଗର ଏ ଗ୍ରନ୍ଥ
ଭକ୍ତମନ୍ତ ଲୋକେ ଶୁଣି ହୋଇବେ କୃତାର୍ଥ ।



## କଣ୍ଠ ବିକଣ୍ଠର ଯୁଦ୍ଧ ଓ ମୃତ୍ୟୁ

ଶ୍ରୀ ନାରଦ ମୁନି ପୁଚ୍ଛାକଲେ ବ୍ରହ୍ମା ଆଗେ
କହିବା ହେଉ ଯେ ମୁରାସୁର କଥା ବେଗେ ।
ମାଇଲେ ଯେ ଚାରି ସେନାପତି ଦେବରାଜ
ପଦାତି ଯେ ବାରପଦ୍ମ ଅଶୀଲକ୍ଷ ଗଜ ।
ଷାଠିଏଲକ୍ଷ ଯେ ହୟ ଯୁଦ୍ଧେ ଗଲେ କ୍ଷୟ
ଏମାନେ ମଲାରୁ କିସ କଲା ମୁରରାୟ ।
ନାରଦ ପୁଚ୍ଛନ୍ତି କହୁଛନ୍ତି କୁଶପାଣି
ବୋଲନ୍ତି ଶୁଣହେ ଏବେ ମୁରଦୈତ୍ୟ ବାଣୀ ।
ମରନ୍ତେ ରାଜାର ସେନାପତି ପ୍ରଭୁ ହସ୍ତେ
ବନେ ଲୁଚିଥିଲେ ମୁରାସୁର ବେନିଦୂତେ ।
ସେନାଏ ମରିବା ଦେଖି ବାର୍ତ୍ତାଗଲେ ଘେନି
ଶୁଣ ହେ ନାରଦ କହୁଛନ୍ତି ପଦ୍ମଯୋନି ।
ମୁରାସୁର ଆଗେ ଯାଇ କହିଲେ ଖବର
ସଭାରେ ବସିଅଛନ୍ତି ଅନେକ ଅସୁର ।
ସଭାରେ ଆସନ ପରେ ମୁର ଅଛି ବସି
ଏହି ସମୟରେ ଦୂତ ପ୍ରବେଶିଲେ ଆସି ।
ସଭାର ତଳେ ପ୍ରବେଶ ହେଲେ ଦୂତ ଯାଇ
ପ୍ରଣାମ କଲେକ ଦୂତେ ଶିରେ କରଦେଇ ।
ଆଗରେ ଉଭା ହୋଇଣ ଯୋଡ଼ି ବେନିକର
ମନ୍ତ୍ରୀ ବୋଇଲେ ତୁମ୍ଭରେ କେଉଁ ଦିଗଚାର ।
ଦୂତେ ବୋଇଲେ ଯେ ଥିଲୁ ବଦରିକା ଦେଶେ
ମୁର ବୋଇଲାରେ ଆସି ବସ ମୋର ପାଶ ।
ବଦରିକା ଦେଶ କଥା କହ ଭଲକରି
ଚାରି ସେନାପତି ମୋର ଗଲେ ତାଙ୍କୁ ମାରି ।
ବଲ୍ଲଭ ରାଜା ପୁତ୍ରକୁ ଜିଣିଲେ କି କହ
ଶୁଣିଣ ସେ ଦୂତଙ୍କର ଶୁଖିଗଲା ମୁହଁ ।
ମୁରାସୁର ବୋଇଲା ନ କହ ହୁଅ ତୁନି
କହରେ ସେ ଚାରିସେନା ଗଲେ ସୈନ୍ୟଘେନି ।
ଦୂତେ ବୋଇଲେ ସରିଲା ଦେବତାଙ୍କ ନାଟ
ଗୋଟିଏ ତ ଦେଖିଲାକୁ ନାହାନ୍ତି ସେ ଥାଟ ।
ତହୁଁ ରାଜା ବୋଲେକଥା ହୋଇଲା ସନ୍ଦେହ
ବଦ୍ରିକାଗଡ଼ ଟାଳି କି ଆସିଲେ ରେ କହ ।
କହିବାଲୋକେ ବୋଇଲେ ଶୁଣ ତେବେ ବସି
ବାରଲକ୍ଷ ବେଠିଆ ଯେ କୋଦାଳିଆ ମିଶି ।
ବଦରିକା ଗଡ଼େ ଲାଗି ଖୋଳି ତାଡ଼ି ଦ୍ୟନ୍ତେ
ନିତ୍ୟରାତ୍ରେ ପୁରେ ତାହା ଦେଖୁ ଆମ୍ଭେ ନେତ୍ରେ
ଦିବସେ ଖୋଳନ୍ତେ ରାତ୍ରେ ଯାଏ ସବୁ ପୂରି
ବସିଲେ ଚାରି ସେନାଏ ଏ କଥା ବିଚାରି ।
ବୋଇଲେ ଏ ଗଡ଼ ଡେଇଁ ପଶିବରେ ଆସ
ପ୍ରାଣକୁ ନିଆଶା କରି ତାଙ୍କୁ ବେଗେ ନାଶ ।
ଯେ ମୁଁଖେ ପଡ଼ିବେ ତାଙ୍କୁ ହାଣିବା ସେଠାଏ
ଏଥକୁ ତୁମ୍ଭେ ମନେ ନକର କିଛି ଭୟେ ।
ପଡ଼ିବେ ନୃସିଂହ ବେନିଭାଇ ଯେବେ ଆଗେ
ରାଜ୍ୟକୁ ଘେନିଣ ତାକୁ ନେବା ସଙ୍ଗେ ସଙ୍ଗେ ।
ଶ୍ରୀମହାରାଜା ଛାମୁରେ ଦେବା ବେଗେ ନେଇ
ଦେଖିଲେ କେଡ଼େ ଆନନ୍ଦ ହେବେ ନୃପସାଇଁ ।
ଏ ରୂପେ ବିଚାର ସିନା ପାଞ୍ଚନ୍ତେ ହୃଦରେ
ବଲ୍ଲଭପୋଏ ବସିଲେ ଆସି ପାଚେରୀରେ ।
ଦେଖିଣ ସେ ବେନି କୁଳ ହେଲେ ରୋଷାରୋଷ
ତୃତୀୟ ଦିନଯାଏ ହେ ହେଲା ରଣଘୋଷ ।
ଗରୁଡ଼ ବୋଲି ତାଙ୍କର ପକ୍ଷୀ ଏକ ଥିଲା
ହୁଁ କାର ନାଦେ ଉଠି ସେ କେଡ଼େ ଯୁଦ୍ଧ କଲା ।
ତୁମ୍ଭର ଯିବା ସୈନ୍ୟଙ୍କୁ ଅଧେ ଦେଲା ନାଶି
ତାହାର ବଳକୁ ଊଣା ହେବ ଦେବକାଶୀ ।
ଆବର ରାଜା ଅଟଇ ଗୋଟିଏ କର୍ଣ୍ଣାଟି
ତାହାକୁ ନୁହନ୍ତି ସରି ନୃପ ଦଶଗୋଟି ।
ସୁଜାଣ ବୋଲିଣ ମନ୍ତ୍ରୀ ଅଛି ଆଉ ଜଣେ
ଏକାଶରକେ ମାଇଲା ସୈନ୍ୟ ପଣେ ପଣେ ।
ବଲ୍ଲଭ ପୁତ୍ରଙ୍କୁ କିସ କହିବାକ ବାଣୀ
ଚକ୍ରେ ଚାରି ସେନାପତି ମୁଣ୍ଡ ଦେଲେ ହାଣି ।
ତିନିତାଳ ଉତ୍ସର୍ଗରେ ବହେ ରକ୍ତ ନଦୀ
ମଡ଼ା ପଡ଼ିବାରେ ପୃଥ୍ୱୀ ଉଠେ ପୂରି ଗନ୍ଧି ।
ବାରପଦ୍ମ ସୈନ୍ୟ ତୋର ଗଲେ ସବୁକ୍ଷୟେ
ବେଠିଆ ଯେ କୋଦାଳିଆ ନାହାନ୍ତି ଗୋଟିଏ ।
ଏତେକ ଦେଖିଣ ଆମ୍ଭେ ଆସିଅଛୁ ନିକର
ଶୁଣି ମୁର ନେତ୍ରୁ ବହେ ଲୋତକର ଧାର ।
ବସିଲା ପଲକ ନ ପକାଇ ଦଣ୍ଡେଯାଏ
ଆକୁଳ ହୋଇଣ ଶୋକେ ଛାଡ଼ିଲା ରଡ଼ିଏ ।
ବୋଇଲା ଏକା କରିରେ ମୋତେ ଗଲ ଛାଡ଼ି
ବୁଝିବା ନ ଯୁଦ୍ଧ କଲେ ବିପ୍ରଙ୍କର ପ୍ରୌଢ଼ି ।
ପନ୍ନଗ ପରାଏ ସିନା ବିପ୍ର ବୁଦ୍ଧି ମାତ୍ର
ମୋର ପ୍ରାୟ କ୍ଷତ୍ରିକି ସେ ଦିବା କଲା ରାତ୍ର ।
ବେନି ସମ୍ବର ଆଣି ରଖିଲି ମୁଁ ଘରେ
ଗୁପତେ ମାରିବେ ବୋଲି ପାଞ୍ଚିଲି ମନରେ ।
ମାରିଥିଲେ ବିଷ ଦେଇ ଯାଇଥାନ୍ତା ପାପ
ଏତେ କଥା କାହିଁପାଇଁ ପଡ଼ନ୍ତାରେ ବାପ ।
ଦେଖୁ ଦେଖୁ ମୋ ଚଉଦ ସେନାପତି ମଲେ
ପୁଞ୍ଜା ପୁଞ୍ଜା ହୋଇ ଯାଇ ବାହୁଡ଼ି ନଇଲେ ।

ବ୍ରାହ୍ମଣକୁଳରେ ଜନ୍ମି ମେଳିଆ ସେ ହୋଇ
ପୁତ୍ରକୁ ମାଇଲେ ମୋର ଶ୍ରୀଗୁରୁ ବୋଲାଇ ।
ସେନାପତିମାନେ ମୋର ଯିବାମାତ୍ରେ ଦେଖ
ଦେଇଛି ମାରି ସେ ବିପ୍ର ସୈନ୍ୟ ପଦ୍ମଶଙ୍ଖ ।
ମାନବ ଦେହ ବହି ମୋ ସଙ୍ଗେ ବାଦୀ ହେଲା
ତାହାକୁ ଡରିଣ ମୁହିଁ ରହିବି କି ଭଲା ।
ଆହେ କଣ୍ଟ ବିକଣ୍ଟ ଯା କହିବି ତା ଶୁଣ
ବଦ୍ରିକା ଦେଶଯାଏ ମୁଁ ଯାଉଅଛି ପୁଣ ।
ନୃସିଂହ ବେନିଭାଇଙ୍କି ଧରିଣ ଆଣିବି
ମାଉଁସ କାଟିରେ ଭାଇ ତହୁଁ ଲଗାଇବି ।
ମାତା ରାଣ୍ଡିକି ଧରିଣ ଆଣିବି ଘୋଷାଡ଼ି
ନାସା ଶ୍ରବଣ କାଟିଣ ଦାଣ୍ଡେ ଦେବି ଛାଡ଼ି ।
କୃଷ୍ଣ ବଲ୍ଲଭକୁ ଆଣି ବସାଇବି ଶୂଳେ
ନଗ୍ର ଲୋକଙ୍କୁ ପେଶିବି ଆଜ ଯମଆଳେ ।
ଏ କଥାଯାକ ଯାଇ ମୁଁ କଲାପରେ ଜାଣ
କର୍ଣ୍ଣାଟେଶ୍ୱରକୁ ମାରି ଘେନିବି ତା ପ୍ରାଣ ।
ସେ ପୁଣି ମୋହର ରାଜ୍ୟେ ହେବ ଆସି ରାଜା
ନୃସିଂହ ଘରେ ଅଛି ନ ପାଇ ମନେ ଲଜ୍ଜା ।
ଖାଇଣ ସେ ଏକମାଡ଼େ ପକାଇଛି ଭାଜି
ବ୍ୟର୍ଥେ ମୋତେ ଅଭିମାନେ ମାରୁଅଛି ଗଞ୍ଜି ।
ଈଶ୍ୱର ଦେଇ ଅଛନ୍ତି ବର ଯେ ଆମ୍ଭଙ୍କୁ
ବ୍ରହ୍ମା ପ୍ରଳୟ ପର୍ଯ୍ୟନ୍ତ ଦେହ ଧରିବାକୁ ।
ଶୁଣରେ କଣ୍ଟ ବିକଣ୍ଟ ବେନି ସେନାପତି
ବଦ୍ରିକା ଦେଶକୁ ମୁହିଁ ଯାଉଛି ସମ୍ପ୍ରତି ।
ଆମ୍ଭେ ଆସିବା ଯାଏ ଏ ସଭା ମଧ୍ୟେ ଥାଅ
ବେହେରା ଯେ ମହାପାତ୍ରପଣେ ଦିନ ନିଅ ।
ଏହିରୂପେ ମୁରାସୁର କହନ୍ତେ ସଭାରେ
ଉଠିଲେ ସେ ବେନିଭାଇ ଗଦାଧରି କରେ ।
ବୋଇଲେ ଆମ୍ଭେ ଥାଆନ୍ତେ କେହ୍ନେ ତୁମ୍ଭେ ଯିବ
ଏଥର ନ ଗଲେ ଆମ୍ଭେ ଧର୍ମହାନି ହେବ ।
ଲକ୍ଷେ ବରଷ ରହିଲୁଁ ଆମ୍ଭେ ତୁମ୍ଭପାଶେ
ଆପରଙ୍କ ଅନ୍ନ ଖାଇ ବଞ୍ଚି ବାରମାସେ ।
ସଂସାରଲୋକେ ଶୁଣିଲେ କି ବୋଲି ବୋଲିବେ
ଆମ୍ଭକୁ ସଭା ଅଯୋଗ୍ୟ ବୋଲି ଝିଙ୍ଗାସିବେ ।
ବୋଲିବେ ତାଙ୍କର କିଛି କ୍ଷତ୍ରିପଣ ନାହିଁ
ସ୍ତିରୀଏ ବସିଲା ପ୍ରାୟ ରହିଥାନ୍ତି ସେହି ।
ଠକପଣ ବହି ଖାଉ ଥାନ୍ତି ସବୁ ଜଟି
ରାଜା ଅସମୟେ ନ ଲାଗନ୍ତି ଯୁଦ୍ଧେ ଉଠି ।
ଏ ରୂପେ ବୋଇଲେ ଲଜ୍ଜା ବହୁତ ହୋଇବ
ଆମ୍ଭେ ଥାଉ ଥାଉ ତୁମ୍ଭେ ଯୁଦ୍ଧେ କିମ୍ପା ଯିବ ।

ନିର୍ଲ୍ଲଜ ଲୋକ ନିନ୍ଦାକୁ କେବେ ନ ଡରନ୍ତି
ଆପେ ଆପେ ବଡ଼ ବୋଲି ଲୋକରେ କହନ୍ତି ।
କେତେକାଳୁ ରହି ଖାଉଅଛୁ ତୁମ୍ଭ ଅନ୍ନ
ମହାକ୍ଷତ୍ରୀ ହୋଇ କିମ୍ପା ରଖିବା ଜୀବନ ।
ମହାକ୍ଷତ୍ରୀ ହୋଇ ଯେବେ ଯୁଦ୍ଧକୁ ସେ ଡରେ
ତାର ପ୍ରାଣ ଅକାରଣ ଅଟଇ ସଂସାରେ ।
ଆମ୍ଭଙ୍କୁ ସେହୁ ମାରୁ ବା ଆମ୍ଭେ ତାଙ୍କୁ ମାରୁ
ଆମ୍ଭେ ଥାଉଁ ତୁମ୍ଭେ କାହିଁ ପାଇଁ ଯିବ ଘରୁ ।
କ୍ଷତ୍ରିୟ ହୋଇ ଯୁଦ୍ଧକୁ ରହେ ଯେବେ ଡରି
ନ କରଇ କର୍ମ ଯେହୁ ହୋଇ ବ୍ରହ୍ମଚାରୀ ।
ପଣ୍ଡିତ ହୋଇ ବେଳେ ନ କହେ ମଞ୍ଜୁବାଣୀ
ଦାତା ହୋଇଣ ଅଧର୍ମେ ଗମେ ଯେବେ ପ୍ରାଣୀ
ସେବକ ହୋଇ ସାଆନ୍ତ ଆଜ୍ଞା ଯେବେ ମେଣ୍ଟେ
ଶିଷ୍ୟ ଗୁରୁଙ୍କ କଥାରେ ଯଦ୍ୟପି କି ଯୁଟେ ।
ଭଣ୍ଡୁଥାଇ ମୂର୍ଖପଣେ ଦେବା ବୋଲି ନିତି
ସଂସାରେ ଲୋକଯାକେ ସେ ଅଟଇ ବିଜାତି ।
ଭାରିଯା ହୋଇଣ ଯେବେ ହୁଏ ଦୋଚାରୁଣୀ
ପାକାମ୍ବରଣ ସ୍ତିରୀକୁ ରମେ ଯେହୁ ପୁଣି ।
ନୃପତି ହୋଇଣ ଯେବେ ନ୍ୟାୟ ନ କରଇ
ମହାକ୍ଷତ୍ରୀ ହୋଇ ଯେବେ ଯୁଦ୍ଧକୁ ନ ଯାଇ ।
ଏତେ ଲୋକମାନେ ଜାଣ ନରକେ ପଡ଼ନ୍ତି
ଆମ୍ଭଙ୍କୁ ପେଶ କନକାବତୀ ନରପତି ।
ତୁମ୍ଭର ଅନ୍ନ ଖାଇଣ ଏତେ ଦିନ ଯାଏ
କିଛି ଗୁଣ କରିନାହୁଁ ତ୍ରିମୁଣ୍ଡାର ପୋଏ ।
ଏବେ ଆଜ୍ଞା ଦିଅ ଦେଖ ଆମ୍ଭ କରାମତ
ବଦ୍ରିକା ନଗରେ ଗଲେ କରିବୁ ଧୂମାନ୍ତ ।
ବଲ୍ଲଭ ପୁତ୍ରଙ୍କ ମୁଣ୍ଡ ଆଣିଦେବୁ ହାଣି
କରିବୁ ତୁମ୍ଭର ଅନ୍ନ ଯେବେ ଭୋଗ ପୁଣି ।
ଶୁଣିଣ ସେ ମୁରାସୁର ଆନନ୍ଦିତ ହେଲା
ଯାଅ ଯାଅ ବୋଲି କଣ୍ଠେ ସ୍ୱର୍ଣ୍ଣମାଳା ଦେଲା ।
କର୍ପୂର ଚନ୍ଦନ ଅଙ୍ଗେ ଲେପିଲାକ ପୁଣି
ହୀରାର ପଦକ ଗଳେ ଲମ୍ବାଇଲା ଆଣି ।
କଣ୍ଟ ବିକଣ୍ଟ ଯେ ବେନି ହେଲେ ମହାତୋଷ
ଭୁଞ୍ଜିଲେ ରାଜାର ସଙ୍ଗେ ବସି ଷଡ଼ରସ ।
ସେ ଦିନ ଯେ ଏହିରୂପେ ରାତି ଗଲା ପାହି
ଯୁଦ୍ଧେ ବାହାରିଲା କଣ୍ଟ ବିକଣ୍ଟ ଏ ଦୁଇ ।
ମୋହିନୀ କନ୍ୟାମନଙ୍କୁ ଦେଲେ ପରମାଣ
ବୋଇଲେ ଚାଲ ପଡ଼ିଲା ଏବେ ବରଗଣ ।
ଯେ ଯାହାର ଅନୁରୂପେ ବ୍ୟଗ୍ରେ ହୁଅ ସଜ
ବଦ୍ରିକା ଦେଶେ ମାରିବା ପାଇଁ ଦେବରାଜ ।

ଶୁଣିଣ ନାଗରୀମାନେ ହେଲେ ହସ ହସ
ବୋଇଲେ ମିଳିଲା କେତେକାଳେ ଯୁଦ୍ଧ ରସ ।
ଚାଳିଶପଦ୍ମ ଯେ ନାରୀ ସର୍ବେ ନବଯୁବା
ସିନ୍ଦୂର କଜ୍ଜ୍ୱଳ ଘେନି ପ୍ରକାଶିଲେ ଶୋଭା ।
ମଥାରେ ଖୋଲରୀ ଖୋଷା ସଙ୍ଗତେ ଭଉଁରୀ
ମାଣିକ ମୁକ୍ତା ହୀରା ନୀଳା କେରି କେରି ।
ଶିର ପରେ ସୀମନ୍ତିନୀ ବ୍ରହ୍ମଜାତି ହୀରା
ମାଣିକ ମାରାଗ ମୋତି ପଦ୍ମକେରା କେରା ।
ନୟନେ କଜ୍ଜ୍ୱଳ ରେଖା କର୍ଣ୍ଣମୂଳ ଯାଏ
ନାସାରେ ବସଣୀ ଗଜମୁକ୍ତା ଶୋଭାପାଏ ।
କଣ୍ଠରେ ପୋହଳା ହେମକଣ୍ଠ ନୀଳମଣି
ଅଷ୍ଟରତ୍ନରେ ପଦକ ହୋଇଲେ ଖଞ୍ଜାଣି ।
ଇନ୍ଦ୍ର ଗୋବିନ୍ଦର ପାଟ କାଛେଣି ଯେ ଭିଡ଼ି
ତଥିପରେ ବସାଇଣ ମୁକ୍ତା ଧାଡ଼ି ଧାଡ଼ି ।
କଙ୍କଣ ମୁଦ୍ରିକା ଚିତ୍ର ତାଡ଼ ଯୋଡ଼ି ଯୋଡ଼ି
ନାନା ଅଳଙ୍କାରେ ମଣ୍ଡି ହୁଅନ୍ତି ସଜାଡ଼ି ।
ପାଦେ ବାଜେଣି ନୂପୁର ବଳା ଗଣ୍ଡିକମ
ହୀରା ନୀଳା ମାଣିକ୍ୟ ଘାଗୁଡ଼ି ଝମ ଝମ ।
ଚରଣଦେଶ ଅଙ୍ଗୁଳି ଦଶବର୍ଣ୍ଣେ ମୁଦି
ଚଳନ୍ତି ନାଗରୀମାନେ ନୂଆବସ୍ତ୍ର ପିନ୍ଧି ।
ରଣମଲ୍ଲ ମୋହିନୀଏ ସୁବେଶ ଯେ ହୋଇ
ପାଲିଙ୍କି ଖଟ ଉପରେ ବସିଲେକ ଯାଇ ।
ହାନ୍ଦୋଳା ପଲଙ୍କ ବୋଲା ଚଳେ ମାଳମାଳ
ଧାଡ଼ି ଧାଡ଼ି ହୋଇ ବାଳି ଚଳନ୍ତି ସକଳ ।
ଏଥି ଉତ୍ତାରେ ସେ କଣ୍ଡ ବିକଣ୍ଡ ଯେ ଦୁଇ
ବାହାରିଲେ ମୁରାସୁର ସଙ୍ଗେ ସଜ ହୋଇ ।
ମେଲାଣି ମାଗିଣ ଗଲେ ରଥେ ବିଜେ ହୋଇ
ପ୍ରଚଣ୍ଡ ଚଣ୍ଡ ଏ ବେନି ନ୍ୟନ୍ତି ରଥ ବାହି ।
ପାଞ୍ଚଲକ୍ଷ ଅଶ୍ୱ ଦଶଲକ୍ଷ ଗଜଯାଏ
ଏତେକ ଯେ ଦେଲା ତାଙ୍କ ସଙ୍ଗେ ମୁରରାୟେ ।
ପଛରେ ଯେ ଅଶ୍ୱବଳ ଆଗେ ଗଜବଳ
ମଝିରେ ଚଳନ୍ତି କଣ୍ଡ ବିକଣ୍ଡ ଚଞ୍ଚଳ ।
ମହା ପ୍ରତାପରେ ଯାଉଛନ୍ତି ବେନିଭାଇ
ନୃସିଂହ ମାରିବେ ବୋଲି ନିଶେ ହାତଦେଇ ।
ହସ୍ତରେ ଯେ ଗଦାମାନ ଦୁହେଁ ଛନ୍ତି ଧରି
ପଡ଼ିଲେ ସେ ଗିରିବରେ ହୋଇଯିବେ ଚୂରି ।
ଏ ରୂପେ ବଳିଷ୍ଠ କଣ୍ଡ ବିକଣ୍ଡ ଯେ ଘେନି
ପ୍ଲକ୍ଷଦ୍ୱୀପ ମୁର ତାଙ୍କୁ ଆସିଅଛି ଘେନି ।
ଯୁବତୀବୃନ୍ଦ ଘେନିଣ ଯାନ୍ତି ବେନିବୀର
ବାଜେ ବୀର ବାଦ୍ୟମାନ ତହିଁ ଅଗୋଚର ।

ମହା ପ୍ରତାପରେ ହସ୍ତୀବଳ ଚଳୁଛନ୍ତି
ଚରଣ ଆଘାତେ ଗିରିବର ଟଳୁଛନ୍ତି ।
ତହିଁ ପଛରେ ମୋହିନୀଗଣ ସୈନ୍ୟ ସାଜେ
ମଧ୍ୟରେ ସେ ବେନି ସୈନ୍ୟ କରୁଥାନ୍ତି ବିଜେ ।
ଚଳନ୍ତି ତହିଁରେ ପଛେ ସୈନ୍ୟ ଅକଳନା
କରନ୍ତି ଶୂନ୍ୟରେ ଦେଖି ଦେବ ମନ ଉଣା ।
ବୋଲନ୍ତି ଏତେକ ସୈନ୍ୟ ଆନେ ନୁହେଁ ମାରି
ମାଇଲେ ମାରିବେ ଏକା ଉପାୟେ ଶ୍ରୀହରି ।
ଏମନ୍ତ ଯୁବତୀଙ୍କୁ ଯେ ଛୁଇଁଲେ ଶ୍ରୀହାନି
ଏହାଙ୍କୁ ମାରି ରଖିବେ ପ୍ରଭୁ ପୁର ତିନି ।
ଦିବସ ଅନ୍ଧାର ଏହୁ କଲେ ବେନି ଭାଇ
ଏ ପୃଥ୍ୱୀ ରକ୍ଷାକରିବେ ପ୍ରଭୁ ଲକ୍ଷ୍ମୀସାଇଁ ।
ଏ ରୂପେ କଥା ହୁଅନ୍ତେ ବସି ଦେବଗଣେ
କୁହାଟ ଦେଇ ସ୍ତିରୀଏ ଯାନ୍ତି ବୀର ପଣେ ।
ପ୍ରବେଶ ହୋଇଲେ ଯାଇ ବଦରିକା ଦେଶ
ବୈଶାଖ ଶୁକଳପକ୍ଷ ଦଶମୀ ପ୍ରବେଶ ।
ଶୁଣ ହେ ନାରଦ ଋଷି ବଦ୍ରିକାର ବାଣୀ
ଯେଉଁ ତୋଟା ରୋପିଛନ୍ତି ପ୍ରଭୁ ଚକ୍ରପାଣି ।
ତହିଁରେ ଯାଇ ସ୍ତିରୀଏ ହୋଇଲେ ପ୍ରବେଶ
ଦେଖି ତୋଟାକୁ ସ୍ତିରୀଏ ହେଲେ ହସ ହସ ।
ଯେ ଯାହା ଲୋଡ଼ିବେ ବନେ ମିଳଇ ସେ ଫଳ
ଏକେ ତ ଗ୍ରୀଷ୍ମକାଳ ଫଳ ପକ୍ୱ ବେଲ ।
ଯହିଁରେ ଚାରିସହସ୍ର ଯୋଜନ ଯେ ବନ
ରୋପି ଅଛନ୍ତି ପ୍ରତ୍ୟକ୍ଷେ ପ୍ରଭୁ ଭଗବାନ ।
ଯେ ବନର ଫଳଭୁଞ୍ଜି ହେଲେ ସର୍ବେତୋଷ
ରହିଲେ ସେ ଯୁବତୀ ସଜାଡ଼ିଣ ଯେ ବାସ ।
କଣ୍ଡ ବିକଣ୍ଡ ଏ ବେନି ଘର ତହିଁ ବାନ୍ଧି
ଗଡୁଆ ଆବର ତମ୍ବୁ ଟାଣି ବନ ରୁନ୍ଧି ।
ରହିଲେ ସୁସ୍ଥାନ ସୁଖ ପାଇ ଦିନାକେତେ
ବିଚାର କଲେକ ଶୁଣି ତ୍ରିମୁଣ୍ଡାର ସୁତେ ।
ବୋଇଲେକ ବିଷ୍ଣୁ ତୁଲେ ଯେବେ ହେବା ବାଦୀ
ପିତାଙ୍କୁ ତ ନ କହିଲେ ନୁହେଁ କାର୍ଯ୍ୟସିଦ୍ଧି ।
ଏଠାକୁ ବାପାକୁ ଆମ୍ଭେ ନ ଆଣିବା ଯେବେ
ହାରିଲେ ତ ଆମ୍ଭ ପିତା ମନେ ଝୁରୁଥିବେ ।
ଆମ୍ଭର କରାମତି ଯେ ନ ଜାଣିବେ କେହି
ମିଶିଣ କରିବୁ ବାପ ପୋଏ ଯୁଦ୍ଧ ଯାଇ ।
ଏ ରୂପେ ପାଞ୍ଚି ବିକଣ୍ଡ କଣ୍ଡ ବେନି ପୋଏ
ବସିଲେ ଭୁବନେଶ୍ୱରୀ ମନ୍ତ୍ର କରି ଧ୍ୟାୟେ ।
କଳ୍ପନା କରି ପଢ଼ନ୍ତେ ଲକ୍ଷେ ମନ୍ତ୍ରାବଳୀ
ଜାଣିଲା ତ୍ରିମୁଣ୍ଡା ଯାନ୍ତେ ଆସନ ଯେ ଟଳି ।

ବୋଇଲା ପୁତ୍ରକୁ ମୋର ପଡ଼ିଲା ଆଘାତ
ସଙ୍କଟ ନ ପଡ଼ିଲେ କି ଲୋଡ଼ିଲେ ମୋ ସୁତ ।
ଯୁବତୀ ସୈନ୍ୟ ଡକାଇ ଆଣି ସେହି ଲାଗେ
ବୋଇଲା ଜମ୍ବୁଦ୍ୱୀପକୁ ଚାଲ ଯିବା ବେଗେ ।
ବୋଇଲା ଦେଶକୁ ପୁତ୍ରେ ଅଛନ୍ତି ମୋ ଆସି
ଦେଇଅଛି ମୁରାସୁର ଯୁଦ୍ଧେ ତାଙ୍କୁ ପେଶି ।
ସେଠାରେ ପ୍ରବେଶ ହେବା ଚାଲ ବେଗେ ଯାଇ
ମନ୍ତ୍ରବଳରୁ ଏକଥା ମୋତେ ଜଣା ହୋଇ ।
ଶୁଣିଣ ସେ ନାରୀଟିଏ ହେଲେ ହସ ହସ
ପାଞ୍ଚଲେ ମିଳିଲା ଏତେ କାଳେ ସ୍ୱର୍ଗବାସ ।
ବ୍ୟାସଙ୍କର ଦେଲା ଶାପ ହେଲା ଆସି ସିଦ୍ଧି
ବଦ୍ରିକା ଗଲେ ଦେଖିବୁ ପ୍ରଭୁ ଦୟାନିଧି ।
ନୃସିଂହଙ୍କ ମୁଖ ଦେଖି ହେବା ପରିତ୍ରାଣ
ଗଲେ ହେଁ ମୋକ୍ଷ କରିବେ ନିଶ୍ଚେ ନାରାୟଣ ।
ଏ ରୂପେ ପାଞ୍ଚଣ ସ୍ତିରୀ ଚଳିଲେ ତତ୍ପର
ଶୁଣନ୍ତି ନାରଦ କହୁଛନ୍ତି ବେଦବର ।
ଯୁବତୀଙ୍କୁ ଧରି ସେ ତ୍ରିମୁଣ୍ଡାସୁର ରାୟ
ଚଳିଲାକ ରଥ ଚଢ଼ି ହୋଇ ବୀର ପ୍ରାୟ ।
ବଦ୍ରିକା ଦେଶରେ ଯାଇ ହୋଇଲେ ପ୍ରବେଶ
କଣ୍ଡ ବିକଣ୍ଡ ଦେଖିଣ ହୋଇଲେ ହରଷ ।
ପିତାଙ୍କୁ ଯେ ନମସ୍କାର କଲେ ବେନିଭାଇ
ମୁରଘ ଯେ କଥାଯାକ ବସିଲେକ କହି ।
ଶୁଣିଣ ତ୍ରିମୁଣ୍ଡାସୁର ନିଶେ ହାତ ହେଲା
କାହିଁରେ ନୃସିଂହ ବୋଲି କରି ପଚାରିଲା ।
ପୁତ୍ର ବୋଇଲେ ହେ ତାତ ଶୁଣ ଆମ୍ଭ ବାଣୀ
ବୈକୁଣ୍ଠ ଭଗବାନ ଅଟନ୍ତି ସେ ପୁଣି ।
କୃଷ୍ଣବଲ୍ଲଭର ଘରେ ହେଲେ ଆସି ଜନ୍ମ
ଶ୍ରୀ ନୃସିଂହ ଶେଷ ବୋଲି ବହିଛନ୍ତି ନାମ ।
ମୁରାସୁରକୁ ବହୁତ ଦେଲେ ସେହୁ ଦୁଃଖ
ମଲେଣି ସତର ଲକ୍ଷ ପୁତ୍ର ନାତି ଯାକ ।
ଆବର ଚଉଦସେନା ଗଲେ ମଧ ମରି
ମୋତେ ପେଶିଛନ୍ତି ବଡ଼ ଭରସା ସେ କରି ।
ଆବର କହିବି କିସ ସୈନ୍ୟଙ୍କ ମରୁଡ଼ି
ତ୍ରିମୁଣ୍ଡାସୁର ଚାହିଁଲା କରେ ନିଶମୋଡ଼ି ।
ବୋଇଲା ମୋହର କମ୍ପେ ଦେହ ଏହା ଶୁଣି
ମୁରକୁ ନିର୍ବଂଶ କରି ଦେଲା ଚକ୍ରପାଣି ।
ଆଗହୁଁ ସେ ଯେବେ ମୋତେ ଲୋଡ଼ିଆଣିଥାନ୍ତା
କାହିଁକି ମୁରାସୁରଟି ଅପୁତ୍ରିକ ହୁନ୍ତା ।
ବଲ୍ଲଭ ରାଜାପୁତ୍ରେ କି କରନ୍ତା ବିନାଶ
ମୋତେ ଦେଖିଥିଲେ ଛାଡ଼ିଯାନ୍ତେ ରାଜ୍ୟଦେଶ

ଏ ରୂପେ ନିଶ ମୋଡ଼ିଣ କହନ୍ତେ ତ୍ରିମୁଣ୍ଡା
ଶୁଣିଣ କଣ୍ଡ ବିକଣ୍ଡ ମାରନ୍ତି ଯେ ହେଣ୍ଡା ।
ଏଥି ଉତ୍ତାରେ ଯେ କଥା ନାରଦ ହେ ଶୁଣ
ଅସୁର ଆସିବା ଜାଣିପାରି ନାରାୟଣ ।
କର୍ଣ୍ଣାଟେଶ୍ୱରକୁ ସିଂହଦ୍ୱାରେ ରଖାଇଲେ
ଗଡେ ନ ପଶନ୍ତୁ ଦୈତ୍ୟବୋଲି ଆଜ୍ଞାଦେଲେ ।
ସୁଦର୍ଶନକୁ ଚାହିଁଣ ପୁଣି ଜଗନ୍ନାଥ
ବୋଇଲେ ପୁରବାସୀ କେ ନ ପଶୁ ଏପଥ ।
ତ୍ରିମୁଣ୍ଡା ଅସୁର ଆସିଅଛି ଯୁଦ୍ଧକରି
କଣ୍ଡ ବିକଣ୍ଡ ଯୋଡ଼ିଏ ପୁତ୍ର ସଙ୍ଗେ ଧରି ।
ଅଛଇ ଯେ ଅଶୀପଦ୍ମ ସ୍ତିରୀ ସଙ୍ଗେ ଆଣି
ବୁଝିବୁ ତାହାଙ୍କ ଯୁଦ୍ଧକଥା ପଛେ ପୁଣି ।
ଶୁଣିଣ ସେ ସୁଦର୍ଶନ ଶ୍ରୀଆଜ୍ଞା ପ୍ରମାଣ
ଗଡ଼ ଜଗିବାକୁ ସେହି ବାହାରେ ତକ୍ଷଣ ।
ଗରୁଡ଼ ମୋହର ଏକା ମୋହିନୀ କନ୍ୟାଙ୍କୁ
ମୁକଳି କରିଣ ପେଶିଦେବ ସ୍ୱର୍ଗେ ତାଙ୍କୁ ।
ଏ ନାରୀଏ ବ୍ୟାସଶାପ ପୂର୍ବେ ଥିଲେ ପାଇ
ପ୍ଲକ୍ଷଦ୍ୱୀପୁଁ ଆସିଛନ୍ତି ରଣ ପାଇଁ ଧାଇଁ ।
ଖଗେଶ୍ୱରକୁ ଚାହିଁଲେ ପୁଣି ନାରାୟଣ
ବୋଇଲେ କରିବି ଆଜ ତୋତେ ଘେନି ରଣ ।
ମୁରାସୁର ପେଶିଅଛି ଦୁଇ ସେନାପତି
କଣ୍ଡ ବିକଣ୍ଡ ନାମରେ ବିଦିତ ଅଟନ୍ତି ।
ତାହାର ସଇନି ଯାକ ସବୁ ସ୍ତିରୀମୟ
ତାହାଙ୍କ ପ୍ରାଣ ତୋହରି ହାତେ ଯିବକ୍ଷୟ ।
ପ୍ଲକ୍ଷଦ୍ୱୀପ ରାଜା ଆସିଅଛି ଜମ୍ବୁଦ୍ୱୀପ
ଅଶୀପଦ୍ମ ସୈନ୍ୟ ଘେନି ସବୁ ସ୍ତିରୀ ରୂପ ।
ସେ ରାଜାକୁ ବରି ଆଣିଅଛି ଆଗୁଆଣି
ଦେଖିଲେ ଯୁଝିବା ଲୋକ ମୋହି ହେବେ ପୁଣି ।
ତୋତେ ତ ଆଗରୁ କହିଅଛୁ ତାଙ୍କ ନୀତି
ଅଶୀପଦ୍ମ ଏବେ ହୁଅ ତୁ ଗରୁଡ଼ ଯତି ।
କଣ୍ଡ ବିକଣ୍ଡର ପ୍ରାଣ ମୁହିଁ ନେବି ପୁଣ
ତ୍ରିମୁଣ୍ଡାସୁରକୁ ତୁହି ମାରିବୁ ଯେ ଜାଣ ।
ଶୁଣିଣ ସେ ଖଗେଶ୍ୱର ଆଜ୍ଞା ପରମାଣେ
ବୋଇଲା ସ୍ତିରୀଙ୍କ ସଙ୍ଗେ ଯୁଝିବି ମୁଁ ରଣେ ।
ଗରୁଡ଼ ମୁଖରୁ ଶୁଣି ଉଠି ଦେବରାଜେ
ଶଙ୍ଖ ଚକ୍ରାଗଦା ପଦ୍ମାରାଜେ ଚତୁର୍ଭୁଜେ ।
ବାବଲ ଶର ଧରିଣ ଶେଷଦେବ ସ୍ୱାମୀ
ପାଚେରୀ ଉପରେ ଯାଇ ବସିଲେ ବିକ୍ରମୀ ।
ଜଗତୀ ଉତ୍ତର ବାହି ଉପରେ ନୃସିଂହ
ଦୈତ୍ୟ ସ୍ତିରୀସୈନ୍ୟ ଦେଖି ହସନ୍ତି ଶ୍ରୀରଙ୍ଗ ।

ଦେଖିଲେ ଆନନ୍ଦ ବନଯାକ ଘରମୟେ
ଦିଶନ୍ତି ସ୍ତିରୀ କିନ୍ନରୀଗଣଙ୍କର ପ୍ରାୟେ ।
ତ୍ରିମୁଣ୍ଡାର ପୁତ୍ରଙ୍କୁ ଯେ ଡାକି ଚକ୍ରପାଣି
ବୋଇଲେ ବାପଙ୍କୁ ସଙ୍ଗ କଲ କିରେ ଆଣି ।
ତୁମ୍ଭ ବଂଶକୁ ଥିଲେ ସେ ବୃଦ୍ଧକାଳ ହୋଇ
ମରିବ ପୁତ୍ରଙ୍କ ସଙ୍ଗେ ଅରକ୍ଷିତ ହୋଇ ।
ତୁମ୍ଭର ରାଜ୍ୟକୁ ଆମ୍ଭେ ଯୁଝି ଯେବେ ଯାନ୍ତୁ
ବଇରୀଭାବ ଧରନ୍ତୁ ହୃଦେ ତେବେ କିନ୍ତୁ ।
ମରୁଅଛ ବଡ଼ପଣେ ହୃଦେ ହିଂସା ବହି
ମାତାକୁ ନ ପୋଷି ମାଉସୀକୁ ପୋଷ ଯାଇ ।
ପିତାଙ୍କ ନ ନମି ମଉସାର ପାଦେ ନମ
ପତ୍ନୀକୁ ତେଜ୍ୟା କରିଣ ବେଶ୍ୟାତୁଲେ ରମ ।
ଦଇବ ତୁମ୍ଭଙ୍କୁ ବିନା କାର୍ଯ୍ୟେ କଲା ବାଇ
ମରୁଅଛ ବ୍ୟର୍ଥେ ତୁମ୍ଭେ ପରଗୋତ୍ରେ ରହି ।
ପଣ୍ଡିତେ ଲକ୍ଷ୍ୟ କରନ୍ତି ଶାସ୍ତ୍ର ଯାହା ଆଣି
ସପ୍ତପୁରୁଷେ ଯାର ନ ଥାନ୍ତି ବିଦ୍ୟା ପୁଣି ।
ତାର ପୁତ୍ର ନାତି ଯେବେ ପଢ଼ନ୍ତିଟି ବେଦ
ବସନ୍ତି ସେ ବାଦକରି ବହି ଅହଂବାଦ ।
କନ୍ଦଳ ଲଗାଇ ପୁଣି ମୁହେଁ ହୁଏ ଟାଣି
ପ୍ରସ୍ତାବ ସଦୃଶେ ସେ ନ ପଢ଼େ ଶ୍ଳୋକଆଣି ।
ସପ୍ତ ପୁରୁଷେ ଯାର ନ ଥାଇ ଘରେ ଦ୍ରବ୍ୟ
ତାହାର ପୁତ୍ର ଧନାଢ଼୍ୟ ଜାଣ ଯେବେ ହେବ ।
ସେମାନେ ପାଞ୍ଚେ ସଂସାରେ ଆମ୍ଭେ କେଢ଼େ ଲୋକ
ଆମ୍ଭର ପ୍ରାୟକ ଧନୀ କେ ନାହିଁ ପୃଥ୍ୱୀଯାକ ।
ସପ୍ତପୁରୁଷେ ଯାର ନ ଥାଇ କ୍ଷତ୍ରିପଣ
ତାହାର ପୁତ୍ରଟି ଯେବେ ଧରେ ଧନୁ ତୂଣ ।
ସେ ବୋଲଇ ଆମ୍ଭଠାରୁ ନାହିଁ ଆନ କ୍ଷତ୍ରୀ
ମୁକାରପଣ ବହିଣ ବସେ ଲାଖ ସୂତ୍ରି ।
ସମର ଭୂମିକୁ ଆଗ ବଳେ ଯାଏ ଥାଇଁ
ବଳିଷ୍ଠ କ୍ଷତ୍ରୀ ନଜର ପୁଣି ନ ଆଣଇ ।
ସପ୍ତପୁରୁଷେ ଯାର ନ ଥାଏ ସାଧୁ ବୁଦ୍ଧି
ତାହାରି ପୁତ୍ରଟି ଯେବେ ପାରେ ଜ୍ଞାନସାଧି ।
ସେ ବୋଲଇ ମୋର ଠାରୁ ନାହିଁ ଆଉ ଜ୍ଞାନୀ
ଏ ସଂସାରେ ଶ୍ରୀବିଷ୍ଣୁଙ୍କୁ ପାରେ ମୁହିଁ ଚିହ୍ନି ।
ସପ୍ତପୁରୁଷ ଯାର ନ ଥାଏ ଅଶ୍ୱ ଚଢ଼ି
ତାହାର ପୁତ୍ରଟି ଯେବେ ବାନ୍ଧେ ରାଜଶାଢ଼ୀ ।
ସେ ବୋଲେ ମୋହର ଅଟେ ଏହି ପୃଥ୍ୱୀଯାକ
କୁଳୀନ ଜନମାନଙ୍କୁ ମଣେ କରି ଲୋକ ।
ସପ୍ତପୁରୁଷେ ଯେହୁ ନ ଦେଇଥାଏ ଦାନ
ତାହାର ପୁତ୍ରଟି ଯେବେ କରେ ଦାନ ପୁଣ୍ୟ ।
ସେ ବୋଲଇ ମୋଠାରୁ କେ ନାହିଁ ଦୟାବନ୍ତ
କୁବୁଦ୍ଧି ଲୋକ ପାଞ୍ଚନ୍ତି ଜାଣ ଏହି ମତ ।
ତୁମ୍ଭରି କ୍ଷତ୍ରିୟପଣ ପୂର୍ବୁ କେବେ ନାହିଁ
ଗର୍ବରେ ସିନା ଆସିଛ ଯୁଦ୍ଧେ ତୁମ୍ଭେ ଧାଇଁ ।
ଶରପାଇଁ ମରୁଅଛ ବ୍ୟର୍ଥେ ତୁମ୍ଭେ ଆସି
ଏ ରୂପେ କହିଲେ ଝିଙ୍ଗାସିଣ ବ୍ରହ୍ମରାଶି ।
ଶୁଣିଣ ସେ ବେନି ଦୈତ୍ୟ ଉଠି କୋପାନଳେ
ବୋଇଲେ ପ୍ରେତେ ନ ଯିବେ ବିପ୍ର କେତେ ବେଳେ ।
ଯେବଣ ମୁର ଅସୁର ତିନିପୁର ରାଜା
ଆମ୍ଭଙ୍କୁ ନିମନ୍ତ୍ରି ସେହି କରେ ପାଦପୂଜା ।
ସଂସାର ଯାକର ଭୋଗ ଭୁଞ୍ଜୁ ଆମ୍ଭେ ଜାଣ
ଆମ୍ଭଙ୍କୁ ନ ମାନିଅଛି କେ ପୃଥ୍ୱୀରେ ପୁଣ ।
ଏ ରୂପେ ବୋଲି ଧଇଲେ ଦୁହେଁ ଧନୁକରେ
ବିନ୍ଧିଲେ ଷାଠିଏ ଲକ୍ଷ ଶର କୋପଭରେ ।
ଆସନ୍ତେ ପ୍ରଳୟବାତ ପ୍ରାୟ ଶର ମାଡ଼ି
ଦେଖିଣ ନୃସିଂହ ପ୍ରଭୁ ଦେଲେ ଚକ୍ରଆଡ଼ି ।
ବାଜିଣ ନାରାଚମାନେ ଦେଲେ ପଛଘୁଞ୍ଚି
ଦୈତ୍ୟଙ୍କୁ ଦେହେ ରହିଲେ ଲମ୍ବ ହୋଇ ଯୋଚି
ହୃଦରେ ଲାଗନ୍ତେ ଦୁହେଁ ହେଲେ ଅନରାଳ
ଗୃହ ପୋଡ଼ିଲେ ଯେରୂପେ ପ୍ରାଣୀ ଅସମ୍ଭାଳ ।
ଦୈତ୍ୟଙ୍କର ମନ ଜାଣି ହସି ନାରାୟଣ ।
ବୋଇଲେ ଆଦ୍ୟ ଆଣ୍ଟ କି କଲେ ଏବେ ଶୁଣ
ଆପଣା ବଡପଣ ଯେ ପ୍ରାଣୀ ଜାଣ କହେ
ଅଳ୍ପକେ ସେ ଲୋକମାନେ ନିଶ୍ଚେ ଯାନ୍ତି କ୍ଷୟେ
ଶୁଣି କଣ୍ଟ ବିକଣ୍ଟ ଦେବେ ଦେହ ପୋଛି
ଧାଇଁଲେ ଦୋମୁନା ଶର ବାରଲକ୍ଷ ବାଛି ।
ଗୁଣରେ ବସାଇ ପୁଣି ମନ୍ତ୍ରୀ ଦେଲେ ଛାଡ଼ି
ବୋଇଲେ ନୃସିଂହ ଦେହେ ବସଯାଇ ମାଡ଼ି ।
ଏ ରୂପେ କହି ଛାଡ଼ନ୍ତି ଶର ପରିତାପେ
ଆସନ୍ତି ସେ ଶରମାନ କ୍ଷେପି ଅନର୍ଯ୍ୟାପେ ।
ଧାଇଁଲେ ତା ଦେଖି ହରି ଶଶିରଙ୍ଗ ଯେ ଧନୁ
ପେଶିଲେ ତିଆରି ବହୁଶର ଶତମନୁ ।
ବୋଇଲେ ଦୈତ୍ୟଙ୍କରଶରପକା ବେଗେ କାଟି
ଶୁଣିଣ ଧାଇଁଲେ ବେଗେ ଶୂନ୍ୟେ ଶରଗୋଟି ।
ଦୈତ୍ୟଙ୍କ ଶର ତତ୍କାଳେ ଦେଲେ ସବୁଛେଦି
ଭାଜିଣ ପଡ଼ିଲେ ଛତ୍ରପ୍ରାୟ ପୃଥ୍ୱୀ ଭେଦି ।
ଦେଖିଲେ ବିନ୍ଧିଲେ ବେନି ଦୈତ୍ୟ ପୁଣି ଶର
ତୀକ୍ଷ୍ଣ ନାରାଚେ ଛେଦିଲେ ତାହା ଚକ୍ରଧର ।
ଶେଷଦେବଙ୍କର ତୁଲେ ଯୁଝଇ ତ୍ରିମୁଣ୍ଡା
ବାମକରେ ଗଦାବର ଦକ୍ଷକରେ ଖଣ୍ଡା ।

ଧରିଣ ବାବଲ ଶର ଶେଷଦେବ ଉଠି
ବୁଲାଇ ସେ ଚକ୍ରପ୍ରାୟ ଶୂନ୍ୟେ ଟେକି ମୁଷ୍ଟି ।
ପିଟନ୍ତେ ସେ ଗଦାନେଇ ବାଜି ହେଲା ଗୁଣ୍ଡ
ତା ଦେଖିଣ ଚମତ୍କାର ହେଲା ଦୈତ୍ୟଷଣ୍ଢ ।
ମନରେ ପାଞ୍ଚଇ ପୁତ୍ରେ କହିଲେ ଯା ସତ
ଜନ୍ମିଲେ ବ୍ରାହ୍ମଣ ଘରେ ବିଷ୍ଣୁ ଆସି ମର୍ତ୍ତ ।
ପ୍ରତ୍ୟକ୍ଷେ ବୈକୁଣ୍ଠର ଏ ଅଟେ ଜଗନ୍ନାଥ
ନୋହିଲେ ସହନ୍ତା ମୋର ଗଦା କାର ମାଥ ।
ଏବେ ପାଞ୍ଚଦିନ ହେଲା ଲାଗିଲାଣି ରଣ
କମ୍ପଇ ପୃଥ୍ୱୀ ପେଶ୍‌ନ୍ତେ ଯାଆ ଏକବାଣ ।
ଅଧୈର୍ଯ୍ୟ ହୋଇ ପେଶିବା ଏବେ ବାଣ କାଣ୍ଡ
ବିଷ୍ଣୁହାତେ ମଲେ ହେବ ପବିତ୍ର ଏ ପିଣ୍ଡ ।
ଜିଣିଲେ ରହିବ ଆମ୍ଭ କୀର୍ତ୍ତି ଚାରିଯୁଗେ
ମୁର ଶତ୍ରୁ ମଲେ ଜାଣିବେକ ତିନିସ୍ୱର୍ଗେ ।
ତଥାପି କ୍ଷତ୍ରି ହୋଇକି ଯିବା ଆମ୍ଭେ ଘୁଞ୍ଚି
ଆମ୍ଭକୁ ଅଯୋଗ୍ୟ କରି ଲେଖିବେ ଶ୍ରୀବତ୍ସି ।
ଏଥକୁ ଯେ ସିଦ୍ଧି ପାଞ୍ଚି କରିବାକ ଯୁଦ୍ଧ
ଯୁବତୀଗଣ କରିବେ ମୋର ଏକା ସାଧ ।
ଏତେ ବୋଲି ସ୍ଥିରୀଙ୍କି ତ୍ରିଗୁଣ୍ଡା ହେଲା ଆଜ୍ଞା
ବୋଇଲେ ବିପ୍ରଙ୍କୁ ଆଲୋ ଦେଖାଅ ପ୍ରତିଜ୍ଞା ।
ଦେଖିଲାକ୍ଷଣି ହୁଅନ୍ତି ସର୍ବେ କାମୋବଶ
ତେମନ୍ତ କରିଣ ତୁମ୍ଭେ ଲଗାଅ ମୁହାଁସ ।
ଏ ରୂପେ ତ୍ରିମୁଣ୍ଡାସୁର କହନ୍ତେ ସ୍ତିରୀଙ୍କୁ
ସେ କଥା ଜାଣି କହିଲେ ପ୍ରଭୁ ଗରୁଡ଼କୁ ।
ବୋଇଲେ ଲାଗିଲା ଏବେ ତୋତେ ସ୍ତିରୀଯୁଦ୍ଧ
ତୋହ ବ୍ୟତୀତ ଆନରେ ନୁହନ୍ତି ସେ ସାଧ ।
ପୂର୍ବେ ତ କହିଥାଇଁ ସେ କଥା ଅଛୁ ଜାଣି
ବଧ କର ହେ ସ୍ଥିରୀଙ୍କି କାମଶର ଟାଣି ।
ଶୁଣି ଉଠିଲା ଖଗେଶ୍ୱର ମନେ ହସି
ବିଷ୍ଣୁ ବୋଲେ ବିଶ୍ୱରୂପ ଧରିଲା ପ୍ରକାଶି ।
ଅଶୀପଦ୍ମ ଯାଏ ସେହୁ ହୋଇଲା ଗରୁଡ଼
ସମସ୍ତ ଗରୁଡ଼ ଯାକ ଦିଶେ ଯୋଗାରୁଢ଼ ।
ବିଷ୍ଣୁର ଅଠର ଚିହ୍ନ ପକ୍ଷୀ ଦେହଯାକେ
ଶୁଣନ୍ତି ନାରଦ ବ୍ରହ୍ମା କହନ୍ତି ଯେ ମୁଖେ ।
ଶଙ୍ଖ ଚକ୍ର ଗଦା ପଦ୍ମ କୋଦଣ୍ଡ କଳଶ
ଶାରଙ୍ଗ ଧ୍ୱଜ ବଜ୍ର ଯେ ଖଡ଼ଗ ପ୍ରକାଶ ।
ସ୍ୱସ୍ତିକ ଗୋଷ୍ପଦ କମ୍ବୁ ଅଙ୍କୁଶ ଲଙ୍ଗଳ
ବେଣୁ ପାଶ ଚିହ୍ନ ଫୁଟି ଦିଶଇ ମୂଷଳ ।
ଏ ଆଦି ଯେତେକ ଅଷ୍ଟାଦଶ ଚିହ୍ନ କହି
ଗରୁଡ଼ ଦେହେ ପ୍ରକାଶି ସବୁ ବିରାଜଇ ।

ଶ୍ରୀନୃସିଂହ ରୂପବର୍ଣ୍ଣ ଗରୁଡ଼ର ଦେହେ
ପୃଥ୍ୱୀଯାକ ପୂରିଦିଶେ ପ୍ରକାଶି ତା କାୟେ ।
ରୂପତାର ଶୁକ୍ଳବର୍ଣ୍ଣ ସ୍ୱର୍ଣ୍ଣଜ୍ୟୋତି ଥଣ୍ଟ
ହାଟକ ପ୍ରାୟ ଚରଣ ଚଞ୍ଚୁ ଆଉ କଣ୍ଠ ।
ଅନେକ ରୂପରୁ ସେହୁ ପକ୍ଷୀନାମ ହେଲା
ବୈନତେୟ ନାମ ବହି ବିନତା ନାଶିଲା ।
କେବଳ ଅଟେ ଗରୁଡ଼ ଯୋଗାରୁଢ ବୁଦ୍ଧି
ତେଣୁ ସେ ଗରୁଡ଼ ନାମ ଯତିରେ ପ୍ରସିଦ୍ଧି ।
ସର୍ବ ଯତିଙ୍କ ଉପରେ ଅଟେ ଯତିଶ୍ରେଷ୍ଠ
ବିନ୍ଦୁକୁ ସଂହାରି ଠେକି ରଖିଲା ତ୍ରିକୁଟ ।
ତିନି ତିହୁଡ଼ି ତ୍ରିଣଟ ତ୍ରିମୁନା ସ୍ଥାନରେ
ବିନ୍ଦୁ ରଖି ଅଶୀପଦ୍ମ ହେଲା ତା ଶରୀରେ ।
ନାରଦ ତାହା ଶୁଣିଣ ଆଚମ୍ଭିତ ହେଲେ
ଏବେ ଗରୁଡ଼ ଜନ୍ମିଣ କି ନାମ ବହିଲେ ।
ଅଶୀପଦ୍ମ ବୋଲିଣ ଯେ କହିଲେ ତିର୍ଯ୍ୟଙ୍କୁ
କେବଣ ନାମ ବହି ସେ ଗଲେଟି ଯୁଦ୍ଧକୁ ।
ଶୁଣି ମନେ ମନେ ହସି ଚତୁର ଆନନ
ବୋଇଲେ ଥୋକେ ହେ ଶୁଣ ଗରୁଡର ନାମ ।
ସୋଂହସ ଗରୁଡ଼ ପରହଂସ ଯେ ଗରୁଡ଼
ଯୋଗାନ୍ତ ଗରୁଡ଼ ପୁଣି ସକାର ଗରୁଡ଼ ।
ହକାର ଗରୁଡ଼ ଆଉ ନିର୍ଗୁଣ ଗରୁଡ଼
ସର୍ବତ୍ର ଗରୁଡ଼ ତତ୍ତ୍ୱତାରଣ ଗରୁଡ଼ ।
କହ କହ ଗରୁଡ଼ କୁହା କୁହ ଗରୁଡ଼
କୋହ କୋହ ଗରୁଡ଼ ମହାଘୋର ଗରୁଡ଼ ।
ଅଘୋରାୟ ଗରୁଡ଼ ମହେନ୍ଦ୍ରାୟ ଗରୁଡ଼
ଉପେନ୍ଦ୍ରାୟ ଗରୁଡ଼ ଯୋଗେନ୍ଦ୍ରାୟ ଗରୁଡ଼ ।
ତ୍ରିପୁଣାୟ ଗରୁଡ଼ ମହାଭକ୍ତ ଗରୁଡ଼
ତ୍ରିବିକ୍ରମ ଗରୁଡ଼ ଶ୍ରୀବୈଷ୍ଣବ ଗରୁଡ଼ ।
ବିଷ୍ଣୁ ସାର ଗରୁଡ଼ ବିଷ୍ଣୁ ଭଜ ଗରୁଡ଼
ନିରଞ୍ଜନ ଗରୁଡ଼ ଯେ ବିରଳା ଗରୁଡ଼ ।
ବିକଟାଳ ଗରୁଡ଼ ହେ ବିଦାରଣଗରୁଡ଼ ।
ସୁକ୍ଷେଣ ଗରୁଡ଼ ମହାଭୀଷଣ ଗରୁଡ଼ ।
ଅଘୋର ଗରୁଡ଼ ପୁଣି ସୁଘୋଟ ଗରୁଡ଼
ମହାଉଦଣ୍ଡ ଗରୁଡ଼ କୋଦଣ୍ଡ ଗରୁଡ଼ ।
ଦୁର୍ଦ୍ଦଣ୍ଡ ଗରୁଡ଼ କୋଦଣ୍ଡ ଗରୁଡ଼ ।
ମହାପାତାଳ ଗରୁଡ଼ ଆସ୍ତିକ ଗରୁଡ଼ ।
ପଦ୍ମନାଭ ଗରୁଡ଼ ଯେ ଧରାଧର ଗରୁଡ଼
ମାର ମାର ଗରୁଡ଼ ଯେ ହୁଙ୍କାର ଗରୁଡ଼ ।
ଫୁଙ୍ଫୁକାର ଗରୁଡ଼ ସିଂହାସନ ଗରୁଡ଼
ମେଘନାଦ ଗରୁଡ଼ ଯେ ଝଂଝଂଝଂ ଗରୁଡ଼ ।

ଝୁମୁଝୁମୁ ଗରୁଡ଼ ଚିହି ଚିହି ଗରୁଡ଼ ।
ଟୁହୁ ଟୁହୁ ଗରୁଡ଼ ପରିମେଷ ଗରୁଡ଼ ।
ଏଥୁଅନ୍ତେ ପୁଣ ସେ ମୋହିନୀ କନ୍ୟାମନେ
ନୃସିଂହ ସୈନ୍ୟଙ୍କୁ ବେଢ଼ିଗଲେ ରଣସ୍ଥାନେ ।
ତହୁଁ ଗରୁଡ଼ ଗଣଙ୍କୁ ବେଢ଼ିଲେକ ଆସି
ମୋହନ ମୁଖ ଦେଖାଇ କାମେ ଅଭିଳାଷୀ ।
କାହାର ବଦନ ଦରପଣ କାନ୍ତି ପ୍ରାୟେ
ମୋହନ ମୁଖ ଦେଖାଇ କାମେ ବାଇପ୍ରାୟେ ।
କାହାର ବରନ ଦରପଣ କାନ୍ତି ପ୍ରାୟେ
କାହାର ବସନ ଦିଶେ ଚନ୍ଦ୍ରମା ପରାୟେ ।
କାହାର ବଚନ ଶୁଭେ ନିନ୍ଦି ପିକରାବ
କାହାର ବାକ୍ୟ ଅମୃତପ୍ରାୟ ମଧୁଭାବ ।
ସେହି ତାଳ କଂସାଳ ଝଞ୍ଜାଳବାଣୀ ବାଣୀ
ଦିଶନ୍ତି ମେନକା ରମ୍ଭାପ୍ରାୟ ସର୍ବେ ପୁଣି ।
ଚାଲନ୍ତି କେ ଆଖିପତା ମାରି ହୋଇଗେଲ
ଗରୁଡ଼ ଯତିଙ୍କ ଦିଶନ୍ତି ସେ ମୃତ୍ୟୁଶଲ ।
କେହି ବକ୍ରଭାବେ ଚାହିଁ ନାଚେ ଘୁମୁ ଘୁମୁ
ଗରୁଡ଼ ଦେଖିଣ ତାହା କମ୍ପଇଁ ପ୍ରଥମୁଁ ।
ଏ ରୂପେ ଅସୁରୀମାନେ ଲଗାନ୍ତେ ମୋହନ
ସେ ଛବିକି-ଗରୁଡ଼ ତ ନପୁଂସକ ମନ ।
ଲଗାଇ ପରମହଂସ ଚିତ୍ତ ଖଗପତି
ଅଶୀପଦ୍ମ ଗରୁଡ଼ ଯେ ହୋଇ ଏକମୂର୍ତ୍ତି ।
ଧାତୁକୁ ଲିଙ୍ଗଚକ୍ରରୁ ଜ୍ଞାନମାର୍ଗେ ଟେକି
ନାଭି ଚକ୍ରରେ ଯେ ଭରି ହୃଦଚକ୍ରେ ରଖି ।
କଣ୍ଠଚକ୍ରେ ପୂରାଇ ଲଲାଟଚକ୍ରେ ନେଲା
ବିନ୍ଦୁଘରେ ରଖି ତହୁଁ ଗଣ୍ଠି ପକାଇଲା ।
ତିନି ତିହୁଡ଼ି ତ୍ରିକୂଟ ତ୍ରିମୁନା ସନ୍ଧିରେ
ଧାତୁ ରଖିଲା ପୂରାଇ ସେହୁ ପଟୁଆରେ ।
ଲିଙ୍ଗଚକ୍ର ପ୍ରଭାକଲା ହସ୍ତୀ ଥୋର ପ୍ରାୟେ
କାହାକୁ ନୁହଇ ଦୃଶ୍ୟ ପ୍ରକାଶିଛି କାୟେ ।
ନ ଜାଣିଲା ପ୍ରାୟେ ଅଛନ୍ତି ତ ଧନୁଧରି
ପକ୍ଷୀକେ ଯୁବତୀ ଜଣେ ରହିଲେ ଆବୋରି
ମନେ ପାଞ୍ଚେ ଗରୁଡ଼ ଏ ଥିଲେ ଅନ୍ୟଜାତି
ବୁଦ୍ଧି ଅନୁକ୍ରମେ ପୁଣି ହୋଇଲେ ବିଜାତି ।
ବ୍ୟାସଋଷି ଶାପ ଯାହା ଦେଲେ କୋପାନଳେ
ସେ ଦୋଷ ଏବେ ଖଣ୍ଡିଲେ ଆସି ଏତେ କାଳେ
ଏ ରୂପେ ମନରେ ପାଞ୍ଚି ସେ ଗରୁଡ଼ଗଣ
ଅସୁରୀଙ୍କ ମନ ଘେନି ପୁଚ୍ଛନ୍ତି ବହନ ।
ବୋଲନ୍ତି ଶୁଣ ତ୍ରିମୁଣ୍ଡାସୁର ପରିଚାରୀ
ଆମ୍ଭଙ୍କୁ ପାଞ୍ଚଣ ଯେବେ ସ୍ୱାମୀପ୍ରାୟ କରି ।
ଜଣକୁ ଜଣେ ଧରି ଯେ ଏକାନ୍ତ ହୋଇବ
ବନକନ୍ଦରେ ପଶିଣ ନିଶ୍ଚିନ୍ତେ ରହିବ ।
ଶୁଣିଣ ଅସୁରୀମାନେ କଲେ ମନେ ହାସ
ବୋଇଲେ ଅଛି ଆନନ୍ଦ ବନେ ଆମ୍ଭ ବାସ ।
ତମ୍ଭୁ ଟାଣି ରହିଅଛୁ ଆମ୍ଭେ ଘର କରି
ସେ ଗୃହପରି ସ୍ଥାନ ନ ମିଳେ ତିନିପୁରୀ ।
ସ୍ତିରୀଙ୍କର କଥା ଶୁଣି ଗରୁଡ଼ ଯେ ହସି
ବୋଇଲେ ଆମ୍ଭେ ଅଟୁ ଯେ ଜାତି ବ୍ରହ୍ମଅଂଶୀ ।
ଜନ୍ମରୁ ଆଜଯାଏ ନ ଜାଣୁ କଦାଚିତେ
କି ରୂପେ ଆଜଯାଏ ସେ ଅଟଇ ଜଗତେ ।
ଅସୁରୀ ବୋଇଲେ ତୁମ୍ଭେ କିଛି ନ ଜାଣିଲେ
ଆମ୍ଭେ ସବୁ ଜାଣୁ ଶିଖିଯିବ କହିଦେଲେ ।
ଅଙ୍ଗୁଳି ଦେଖାଇଲେ ଯେ ପାରେ ସବୁ କଳି
ଏମନ୍ତ ପୁରୁଷ ଜାଣ ସଂସାରେ ନ ମିଳି ।
ଶୁଣି ପକ୍ଷୀଗଣ ପୁଣି ପୁଚ୍ଛିଲେକ ହସି
ବୋଇଲେ ଆନନ୍ଦବନେ କିମ୍ପା ଅଛ ଆସି ।
ନୃସିଂହ ତୋଟାରେ କିମ୍ପା ଅଛ ବସା ପାଡ଼ି
ପ୍ରଭୁଙ୍କୁ କେତେ କର ଯେ ଦେଲେଣି କଉଡ଼ି ।
ଅସୁରୀ ବୋଇଲେ ତୁମ୍ଭେ ଦେଲ ଯେବେ ବର
କାହାକୁ କାହିଁକି ଆଉ ଦେବୁ ଆମ୍ଭେ କର ।
ପଡ଼ନ୍ତେ କରର କଥା ପଛେ ବୁଝ ସିନା
ତୁମ୍ଭର ଆମ୍ଭର ଆଗ ପ୍ରୀତି ଲାଗୁ କିନା ।
ଏ ରୂପେ ବୋଲି ନାରୀଏ ଗରୁଡ଼କୁ ଧରି
ଆନନ୍ଦବନେ ପଶିଲେ ଯାଇଣ ଅସୁରୀ ।
କୁହାଟ କୁରୁଳି କରି ହୁଳହୁଳି ଦେଲେ
ଆଖିପତା ମାନ ମାରି ବଳେ କୋଳ କଲେ ।
ସେ କଥାମାନ ଦେଖିଣ ଗରୁଡ଼ ଫେରନ୍ତେ
ଗର୍ବେ ଉନମତ୍ତା ନାରୀ ଧରି କୋଳାଗ୍ରତେ ।
କେବଣ ସ୍ତିରୀ ବୋଲଇ ହସିବା ଯେ ମାଡ଼ି
ଚଢିଣ ବୁକୁପରେ ଗୋ ଦେବା ମୁଣ୍ଡମୋଡ଼ି ।
କେ ବୋଲେ ଆଦ୍ୟ ସୁରତିରଙ୍ଗ ଆଗ କର
ନିର୍ବଳ ହେଲେ ଯେ ମାଡ଼ି ବସିବା ତତ୍ପର ।
କେ ବୋଲେ ଜାନୁସନ୍ଧିରେ ଧରିଦେବା ଯାକି
ତଳକୁ ଯେ ଲେଉଟାଇ ଚିପିବା ତଣ୍ଟିକି ।
କେ ବୋଲଇ ଆଗ ଆସ ପୋହିତ କରିବା
ତା ଉପରେ ମାଡ଼ିବସି ଶୋଣିତ କରିବା ।
କେ ବୋଲଇ ଚାଲ ସର୍ବେ ହେବା ବିବସନ
ମୋହିତ ହୁଅନ୍ତୁ ଦେଖି ଆମ୍ଭ ଜାନୁ ସ୍ତନ ।
ଏ ରୂପେ ବିଚାରି ମନେ କରୁ ରାକ୍ଷାସୁଣୀ
ତାହାଙ୍କର ଛବି ଦେଖି ଗରୁଡ଼ ତା ଜାଣି ।

ନୃସିଂହଙ୍କର ଆଜ୍ଞାବଳୁ ସେ ଗରୁଡ଼ ଯତି
ହସ୍ତୀଥୋର ପ୍ରାୟ ପରକାଶି ଲିଙ୍ଗମୂର୍ତ୍ତି ।
ପ୍ରଥମେ ଲଗାଇ ପ୍ରେମଭାବ କରୁ କରୁ
ବେଳକୁ ବେଳ ଯେ କ୍ରୀଡ଼ା ବଳିଲା ପ୍ରେମରୁ ।
ହସ୍ତରେ କୁଟୀଳ ଧରି ଧାନ୍ୟ ଯେହ୍ନେ କୁଟି
ସେ ରୂପେ ତାହାଙ୍କୁ ମାଡ଼ିବସି ଗରୁଡ଼ଟି ।
ସ୍ଥାନ ପରୁଆରେ ନେଇ ଧାତୁକୁ ଯେ ରଖି
କଠିନ କରିଣ ଯୋଗ ଧାରଣକୁ ଟେକି ।
ଯେସନେ ସର୍ପ ବିବର ମଧ୍ୟେ ପଶେ ଗଳି
ସେହିରୂପେ ଗରୁଡ଼ ଯେ କରେ ରସକେଳି ।
ପବନ ସୂତ୍ରରେ ଧରି ଲିଙ୍ଗଚକ୍ର ସ୍ଥାନ
ନ ଢାଳନ୍ତି ବୀର୍ଯ୍ୟକୁ ସେ କରନ୍ତି ରମଣ ।
ପରସ୍ତିରୀକୁ କରିବ ଯେବେ ଜାଣ ରତି
ବୀର୍ଯ୍ୟ ନ ଢାଳିବା ଲୋକ ଅଟେ ମହାଯତି ।
ଏଣୁ ସେ ଗରୁଡ଼ ମହାଯତିରେ ଯେ ଲେଖା
ଏଡ଼େକ ବ୍ରାହ୍ମଣ୍ୟ ନାହିଁ ବ୍ରହ୍ମାଣ୍ଡରେ ଦେଖା ।
ଏ ରୂପେ ପକ୍ଷୀ ଶୃଙ୍ଗାର ରସ କରୁ କରୁ
ଶୃଙ୍ଗାର ନୁହଇ ସେହୁ ଅଟେ ମହାମାରୁ ।
ଚୁମ୍ବନ ଦେଲା ପରାୟ ଚଞ୍ଚୁଦ୍ୟନ୍ତେ ମାଡ଼ି
ସେ ଥଣ୍ଟ ବାଜି ଛାଡ଼ନ୍ତି ସ୍ତିରୀ ଘୋର ରଡ଼ି ।
ଏ ରୂପେ ସେ ପକ୍ଷୀରାଜ କରନ୍ତେ ରମଣ
ତାଙ୍କ ଭଗଦ୍ୱାର ଜଳି ଉଠିଲା ତକ୍ଷଣ ।
ମଲୁଁ ମଲୁଁ ବୋଲି ଛାଡୁଛନ୍ତି ଘୋର ରଡ଼ି
ଗରୁଡ଼ ବୋଲେ ମରୁଛ କିମ୍ପା ଡକାପାଡ଼ି ।
ଆମ୍ଭେ ତ ଅପ୍ରୀତି ତୁମ୍ଭ ତୁଲେ ହୋଇନାହୁଁ
ଏଡ଼େ ରହସ୍ୟରେ କାନ୍ଦୁଅଛ କିମ୍ପା ଆଉ ।
ତଥାପି ତୁମ୍ଭ ଗର୍ଭରେ ବୀର୍ଯ୍ୟ ପଡ଼ିନାହିଁ
ବୀର୍ଯ୍ୟ ଛାଡ଼ିବା ଲୋକଙ୍କୁ ଥାନ୍ତା ସିନା କହି ।
ଆମ୍ଭର ନ ଥିଲା ମନ ତୁମ୍ଭେ ତୁମ୍ଭ ତହିଁ
ତୁମ୍ଭେ ସିନା ସାହସେ ଯେ ଆସିଥିଲ ଧାଇଁ ।
ନିସତ ହେଲାଣି ଏବେ ଡାକିଲ କାହିଁକି
କୁହାଟି ପାଡ଼ିଲେ ତୁମ୍ଭେ ଆଉ ରହିବକି ।
ଏ ରୂପେ ବୋଲି ପକ୍ଷୀଏ କରନ୍ତି ଯେ କଳି
ପ୍ରାଣ ଛାଡ଼ି ଅସୁରୀଏ ପଡ଼ିଲେକ ଟଳି ।
ଉପୃତ୍ତି ଦୁଆର ଫାଟୁ ପଡ଼ିଲେ ସକଳେ
ନାରଦ ଶୁଣନ୍ତି ଧାତା କହନ୍ତି ସମୂଳେ ।
ଗଲେ ସେହି ମୁକ୍ତ ହୋଇ ଋଷିଶାପୁଁ ତରି
ତେଜିଣ ଅସୁରୀ ଅଙ୍ଗ ହେଲେ ଅପସରୀ ।
ବ୍ୟାସଙ୍କ ଶାପୁଁ ସେ ତରି ଗଲେ ମୋକ୍ଷ ହୋଇ
ରହିଲେକ ଦେବକୁଳ ସ୍ୱର୍ଗପୁରେ ଯାଇ ।

ଦେହ ଛାଡ଼ିଣ ଚଳନ୍ତେ ମଞ୍ଚରୁ ସ୍ୱର୍ଗକୁ
ଗରୁଡ଼ ଗଣେ ଯେ ଫିଙ୍ଗି ଦେଲେ ସମୁଦ୍ରକୁ ।
ସଂହାରି ଗରୁଡ଼ ରୂପ ନିଜରୂପ ହେଲେ
ଗଙ୍ଗାସ୍ନାନ କରି ଶ୍ରୀନୃସିଂହ ପାଶେ ଗଲେ ।
ବୋଇଲେ ଭୋ ସ୍ୱାମୀମଲେ ସେ ଅସୁରୀଯାକ
ଶୁଣିଣି ଆନନ୍ଦ ହେଲେ ତହିଁ ପୁଣ୍ୟଶ୍ଳୋକ ।
ନିଶରେ ହାତ ଦେଇଣ ମୋଡ଼ି ଦେବରାୟେ
ବୋଇଲେ କେଣେ ଯିବେ ସେ ତ୍ରିମୁଣ୍ଡାର ପୋଏ
ଏବେ ତ ତୁମ୍ଭେ ଜାଣ ସେ ନିଶ୍ଚେଁ ଯିବେ ମରି
ଯୁବତୀ ଲୋଚାଏ ଧରି ଆସେ ଯୁଦ୍ଧ କରି ।
ଏ ଘେନି ତ ପରମାୟୁ ହେଲା ତାଙ୍କ କ୍ଷୟେ
ଯୁବତୀ ସଙ୍ଗଦୋଷ ଯେ ହେଲେ ଯେଝାଠାଏ ।
କେଡ଼େ ଲୋକ ମାନେ ଯୁବତୀଙ୍କ ସଙ୍ଗଦୋଷୁ
ବେକ ହାଣିଲା ପରାୟ ହୁନ୍ତି ଧୂଳିପାଂଶୁ ।
ଯୁବତୀଗଣଙ୍କୁ ଘେନି ଯୁଦ୍ଧ କରି ଗଲେ
କେ ଅଛି ଜିଣିବ କହ ସଙ୍କଟ ପଡ଼ିଲେ ।
ଏକଥା ଆମ୍ଭେ ପୁରାଣେ ନାହୁଁ କାହିଁ ଶୁଣି
ସମରେ ପଶୁଛି ସ୍ତିରୀ ଲୁଚାଏ ଯେ ଆଣି ।
କୁମତି ଲୋକକୁ ଏକା ଲାଗଇ ଏ ସୁଖ
ସ୍ତ୍ରୀ ବାଳକ ଧରି ଯୁଦ୍ଧେ ପଶନ୍ତି ଯେ ମୂର୍ଖ ।
ବୁଝିଲେ ବାଳକ ସ୍ତିରୀ ଅଟନ୍ତ ଅଦଣ୍ଡ୍ୟ
ତାହାଙ୍କୁ କି ବୋଲି ମୂର୍ଖେ ଯୁଦ୍ଧେ କଲେ ରୁଣ୍ଡ ।
ଯୁଦ୍ଧେ ପଶିଲେ ହେ ଗୋତ୍ରୁ ବିପ୍ର ହେଲେ ମରି
ଇତିହାସେ ଏହା କହିଛନ୍ତି ମୁଖଚାରି ।
ଦକ୍ଷ ପ୍ରଜାପତିଙ୍କର ଦେଖ ଏ ପୁତ୍ରକୁ
ନାରଦ ସହି ନ ପାରେ ମାରିଛନ୍ତି ତାଙ୍କୁ ।
ଗୃହରେ ରହିବ ସର୍ପ ଯେବେ ବାସକରି
ଗୋତ୍ରହିଁ ହେଲେ ଘଉଡ଼ି ଦେବ ତାଙ୍କୁ ମାରି ।
ଶୁଣିଣ କଣ୍ଠ ବିକଣ୍ଠ ଉଠି ମହାକ୍ରୋଧେ
ସ୍ତିରୀଙ୍କର ମୃତ୍ୟୁ ଦେଖି ଭୟ ପାଇ ହୃଦେ ।
ବୋଲନ୍ତି ବିପ୍ରରେ ତୁମ୍ଭେ ପାଷାଣ ଯେ ଅଟ
ମିଥ୍ୟାମାଳା ଜପି ପ୍ରାଣୀଙ୍କର ତୋଟି କାଟ ।
ଯୁବତୀ ହତ୍ୟା ବୋଲିରେ ନ ମାନିଲ ଟିକେ
ଅଶୀପଦ୍ମ ସ୍ତିରୀଙ୍କୁରେ ମାଇଲ ସମକ୍ଷେ ।
ବୋଇଲେ ନୃସିଂହ ସ୍ୱାମୀ ଶୁଣାଇ ଶୁଣାଇ
ବ୍ରାହ୍ମଣ ନିନ୍ଦା କରିବା ଉଚିତ ନୁହଇ ।
ବ୍ରାହ୍ମଣର ମାଳାଜପ କରିବା ଯେ ଶୁଣ
ଜପନ୍ତି ସବୁରି ହୃଦେ ବସି ନାରାୟଣ ।
ସେ ଜପ ଛିଡ଼େ ଯାର ସେ ଚଳେ ସଂଯମନୀ
ଶମଶାନ ଭୂମିକୁ ଯେ ଯାନ୍ତି ତାକୁ ଘେନି ।

ଅଁନଲେ ତାହାକୁ ପୋଡ଼ିଦ୍ୟନ୍ତି ଥିବାଲୋକେ
ଏ ରୂପେ ଜପ ସବୁରି ଅଛି ଦେହ ଯାକେ ।
ସେ ଜପ ଥିବାରୁ ତୁମ୍ଭେ ସୁଖ ଭୁଞ୍ଜୁଥିଲ
କ୍ଷଣକେ ଗଲେ ସେ ଜପ ଛାଡ଼ି ତୁମ୍ଭେ ମଲ ।
ସେହି ଜପଟି ବ୍ରାହ୍ମଣେ ଜପୁଥାନ୍ତି ବସି
ଏକୋଇଶ ସସ୍ରଘରେ ଅଛି ପୁଣି ଘୋଷି ।
ବ୍ରାହ୍ମଣ ଗୋସାଇଁମାନେ ଏହି ଜପ ଜପି
ମାଳାକୁ ଭଜନ କରି ଭଜନ୍ତି ଅଦ୍ୟାପି ।
ଏ ଜପଟି ଥିଲା ଯାକେ ଦେହ ଥାଏ ଧରି
ଏହି ଜପ ଛିଡ଼େ ଯାର ସେହି ଯାଏ ମରି ।
ହୃଦେ ଜପୁଥିବାରୁ ରେ ଥିଲ ତୁମ୍ଭେ ବର୍ତ୍ତି
ଜପକୁ ନ ଚିହ୍ନି ନିନ୍ଦି ଯାଅ ଯମକତି ।
ସ୍ତିରୀହତ୍ୟା ବୋଲି ତୁମ୍ଭେ ନିନ୍ଦା ଯେବେକଲ
ସ୍ତିରୀ ଲୁଚାଏ କାହିଁକି ତୁମ୍ଭେ ଆଣିଥିଲ ।
ଏ ଘେନି ତୁମ୍ଭଙ୍କୁ ଆଗେ ଲାଗିଲା ସେ ଦୋଷ
ଝାଡ଼ିବା ଲୋକଙ୍କୁ କିରେ ଲାଗେ ସର୍ପବିଷ ।
ସେ ଦୋଷରୁ ମରିଯିବ ତୁମ୍ଭେ ଏବେ ଜାଣ
ଏକ୍ଷଣି ଛାଡ଼ିବ ଆମ୍ଭ ବାଣେ ତୁମ୍ଭ ପ୍ରାଣ ।
ଏଥୁଅନ୍ତେ କଣ୍ଠାସୁର ଉଠେ କୋପ ହୋଇ
ବିକଣ୍ଠକୁ ବୋଇଲାରେ ଉଠ ବେଗେ ଭାଇ ।
ନୃସିଂହର ତୁଲେ ମୋର ଲାଗୁଛି ସମର
ତୁ ଜଗି ଶେଷଦେବଙ୍କୁ ବେଗେ ଯାଇ ମାର ।
ଏ ରୂପେ କହିଣ କଣ୍ଠ ନୃସିଂହ ଉପରେ
ମନ୍ତ୍ରିଣ ପେଶିଲା ଅହିଶର କୋପଭରେ ।
ଚଳିଲେ ସର୍ପେ ଆକାଶ ପଥ ମଧ୍ୟେ ଘୋଟି
ଉଲ୍‌କାପାତ ହୋଇଣ କମ୍ପେ ନବସୃଷ୍ଟି ।
ଫୁଙ୍କାର ଧ୍ୱନି କରିଣ ଗର୍ଜି ସେ ଧାମନ୍ତେ
ଦେଖିଁକରି ଗରୁଡ଼ଙ୍କୁ ଭଜିଲେ ସମସ୍ତେ ।
ଭୟେ ପଳାଇଣ ସର୍ବେ ପଶିଲେ ପାତାଳେ
ତାହା ଦେଖି ଶଙ୍କା କଲେ ତ୍ରିମୁଣ୍ଡାର ବାଳେ ।
ବୋଇଲା ମେଣ୍ଟିଲେ କେଡ଼େ ଶର ମୋର ଦେଖ
ନୁହଇ ସାମାନ୍ୟ ଲୋକ ଏହୁ ପଦ୍ମମୁଖ ।
ଏହି ଶର ପେଶି ମୁହିଁ ସବୁଥାଇ ଜିଣି
ତହିଁରୁ ବଞ୍ଚି ରହିଛି କେମ୍ଭେ ଚକ୍ରପାଣି ।
ଏ ରୂପେ ବୋଲି ପେଶିଲା ପୁଣି ଲକ୍ଷେ ଶର
ପର୍ବତା ନାରାଚ ବୋଲି ଅଟେ ନାମ ତାର ।
ବୋଇଲାକ ନୃସିଂହର ପକା ସୈନ୍ୟମାରି
ଏ ରୂପେ ବୋଲି ସେ ମନ୍ତ୍ର ପଢ଼ିଲା ଦେବାରି ।
ତା ଦେଖିଣ ବଜ୍ରଶର ପେଶୁଁ ନରସିଂହ
ଖଣ୍ଡ ଖଣ୍ଡ ହୋଇ ଭାଜିଗଲା ଗିରିଶୃଙ୍ଗ ।

କଣ୍ଠାସୁର ଦେଖି ତାହା ଚମତ୍କୃତ ହେଲା
ଭାଇକି ତିଆରି ସେହି ନୃସିଂହ କହିଲା ।
କହନ୍ତି ଶେଷଦେବଙ୍କୁ ଚାହିଁ ଭାବଗ୍ରାହୀ
ଆହେ ବାବୁ ସାବଧାନେ ଥିବୁ ଯୁଦ୍ଧ ରହି ।
ଅଟନ୍ତି ଏ ଦୈତ୍ୟକୁଳ ଲୋକେ ଅବିବେକ
ଯୁଝିବା ତାହାଙ୍କ ସଙ୍ଗେ ହୋଇଣ ସତର୍କ ।
ଶୁଣି ସହଦେବ ମନେ ହସି ଧୀରେ ଧୀରେ
ପାଞ୍ଚନ୍ତି କିସ କରିବ ମୋତେ ଦୈତ୍ୟଛାରେ ।
ଏକା ନାରାଚକେ ମୁହିଁ ପାରେ ମୁଣ୍ଡକାଟି
ଏ ରୂପେ ବୋଲି ଧଇଲେ କରେ ଧନୁଗୋଟି ।
ଶେଷଦେବର ପ୍ରତିଜ୍ଞା ଶୁଣି ଚକ୍ରଧର
ବୋଇଲେ ସେ ଗରୁଡ଼ଙ୍କୁ ଶୁଣ ପକ୍ଷୀବର ।
ତ୍ରିମୁଣ୍ଡାର କଥା ମୋତେ ଲାଗିଲାଟି ରଣେ
ସମ୍ଭାଳି ରଖିବୁ ଶେଷଦେବ ସବୁକ୍ଷଣେ ।
ଶୁଣିଣ ସେ ପକ୍ଷୀରାଜ ନମି ପାଦଗତେ
ବୋଇଲା କରନ୍ତି କେଡ଼େ ଦୟା ପ୍ରଭୁ ମୋତେ ।
ଯେଉଁ ଶେଷଦେବ ଓଲଟାଇ ଦେଲେ କର
ରସାତଳେ ଯାଇ ପଡ଼ିଯିବ ଚରାଚର ।
ସେ ପ୍ରଭୁଙ୍କୁ ସାହା ମୁହିଁ ହେବି ପୁଣ ରହି
କହିଛନ୍ତି କେଡ଼େ ଦୟା କରି ଭାବଗ୍ରାହୀ ।
ଏ ରୂପେ ପାଞ୍ଚନ୍ତି ପକ୍ଷୀରାଜ ହୃଦଗତେ
ସେ କଥା ଜାଣିଲେ ଅନ୍ତର୍ଯ୍ୟାମୀ ଲକ୍ଷ୍ମୀକାନ୍ତେ ।
ବୋଇଲେ ଗରୁଡ଼ ପରି ନାହିଁ ମୋର ଭକ୍ତ
କେଡ଼େ ହେଁ ବଳିଷ୍ଠ ସେହି ବିନତାର ସୁତ
ଯାର ପକ୍ଷାଘାତେ ଯିବ ବ୍ରହ୍ମାଣ୍ଡଟି ଟଳି
ସେହି ମୋହର ସହିଛି ଭାରା ଯେ ଆର୍ଦ୍ଧୋଳି ।
ଏଡେ ଭକ୍ତ ଥାଉଁ ମୋର କାହାକୁ ଯେ ଡର
ଏ ରୂପେ ବୋଲି ଧରିଲେ ଶର ପ୍ରଭୁ କର ।
ଶଙ୍ଖ ଚକ୍ର ଗଦା ପଦ୍ମ ଶୋହେ ଚତୁର୍ଭୁଜେ
ବାବଲ ଧରିଣ ଶେଷଦେବ କଲେ ବିଜେ ।
କଣ୍ଠ ତୁଲେ ନୃସିଂହ ବିକଣ୍ଠ ତୁଲେ ଶେଷ
ଗରୁଡ଼ ତ୍ରିମୁଣ୍ଡାର ଲାଗିଲା ଅମରକ୍ଷ ।
ତ୍ରିମୁଣ୍ଡା ବୋଇଲା ବାପ ଶୁଣ ପୁତ୍ରେ ମୋର
ଦେଖ ମୋ ସଙ୍ଗେ ଲାଗିଲା ଆସି ପକ୍ଷୀ ଛାର ।
ଗରୁଡ଼ର ଥଣ୍ଟ ମୁହିଁ ପକାଇବି ଭାଙ୍ଗି
ନୃସିଂହ ବେନିଭାଇଙ୍କୁ ଥାଅ ଏକା ଜଗି ।
ଏତେ ବୋଲି କୋପେ ଶସ୍ତ୍ର ଧରିଣ ତ୍ରିମୁଣ୍ଡା
ଗରୁଡ ପରେ ପିଟିଲା ନେଇ ଆଗ ଖଣ୍ଡା ।
ଖଣ୍ଡା ପଡ଼ନ୍ତେ ସେ ପକ୍ଷୀ ଦେଲା ଖଗ ଆଡ଼ି
ବାଜନ୍ତେ ପଡ଼ିଲା ଧୂଳି ହୋଇ ଖଣ୍ଡା ଝଡ଼ି ।

ଖଣ୍ଡାଭଗ୍ନ ଦେଖିଉଠେ ଦୈତ୍ୟ ମହାକୋପେ
ବୁଲାଇ ସେ ଗଦାବର ପିଟିଲା ପ୍ରତାପେ ।
ଦେଖି ଖଗେଶ୍ୱର ଆଡ଼ିଲାକ ନେଇ ପିଠି
ବାଜିଣ ସେ ଗଦା ପଡ଼ିଲାକ ଧୂଳି ଉଠି ।
ଦେଖିଣ ତ୍ରିମୁଣ୍ଡା ତାହା ଆଚମ୍ବିତ ହେଲା
ଲେଉଟି ନିର୍ଘାତେ ଗଦା ନେଇ କଚାଡ଼ିଲା ।
ଗଦା ବାଜନ୍ତେଣ ପକ୍ଷୀ ହସେ ଟହ ଟହ
ବୋଇଲା ଦୈତ୍ୟରେ ଏବେ କରିବୁ କି କହ ।
ତ୍ରିମୁଣ୍ଡା ବୋଇଲା ତୁ ରେ କେଡ଼େ ହେଁ ବଳିଷ୍ଠ
ବଜ୍ରହୁଁ ଦେହ ତୋହର ଅଟେ କେଡ଼େ ଆଣ୍ଟ ।
ମରୁରେ ପଡ଼ନ୍ତେ ସେହୁ ଯାନ୍ତା ରସାତଳ
ଭଲା ତୋତେ ଦେଇଛିରେ ଧାତା ଆୟୁବଳ ।
ଧନ୍ୟ ଆରେ ପକ୍ଷୀ ତୋର ଅଟେ ଜନ୍ମକଳା
ଗରୁଡ଼ ବୋଲେ ବହନ ଏଥୁ ତେବେ ପଳା ।
ଗଦା ଗୋଟିଏ ପିଟିଲୁ ସିନା ମୋର ପିଠି
ପଡ଼ିଲେ ବଜ୍ରମାନେ ଯିବେ ଧୂଳି ଉଠି ।
ବାଜନ୍ତେ ତୋ ଗଦା କରେ ମୋର ଦେହକଣ୍ଡୁ
ନାରାଚ ବିନ୍ଧିଲେ ସେହୁ ଯିବେ ହୋଇ ଲାଣ୍ଡୁ ।
ଯେତେକ ଶର ଅଛଇ ତୋର ବେଗେ ଆଣ
ଏ ରୂପେ ବୋଲି ଯେ ଖଗ ବିସ୍ତାରିଲା ପୁଣ ।
ଶତେ ଯୋଜନକୁ ବଢ଼ିଗଲା ବେନି ଡ଼େଣା
ଶୁଣ ନାରଦ ମହିମା ତାର ଅକଳନା ।
ନୃସିଂହ ଆଜ୍ଞାରେ ସେହୁ ଯେତେ ବଢୁଥିବ
ଶେଷ ମହିମା ଜାଣି ନ ପାରେ ବ୍ରହ୍ମାଶିବ ।
କିଞ୍ଚିତେ ବିସ୍ତାରି ସିନା ଦେଉଅଛି ଖଗ
ଆବର ଯେ ଦଶଗୁଣ ଦିଶେ ପିଠିଭାଗ ।
ବାର ଯୋଜନକୁ ବଢ଼ିଗଲା ଏକ ଅଣ୍ଟ
ତା ଦେଖି ତ୍ରିଶୁଣ୍ଡା ଚାହୁଁ ଅଛି ମଟ ମଟ ।
ବୋଇଲା ନ ପୁଣ ଏହୁ ଗିଳିଦେବ ମୋତେ
ଏ ରୂପେ ପାଞ୍ଚ ବିନ୍ଧିଲା ଶର ଅପ୍ରମିତେ ।
ଶାବେଳି ଗଦା କୁନ୍ତ ଯେ ଛେଲ ଭାଲ ଖଣ୍ଡା
ଗରୁଡ଼ ଉପରେ ନେଇ ପିଟିଲା ତ୍ରିମୁଣ୍ଡା ।
ଶକତି ପର୍ବତ ବଜ୍ରଶର ମନଭେଦୀ
ଆବର ଜଳପାଶ ଯେ ନାଗପାଶ ବିନ୍ଧି ।
ମହା ଅକର୍ମଶିଳା ଯେ ଗରୁଡ଼ ମହିମା
ବଢ଼ାଇଥିଲା ତା ପିଠି ଦଶଗୁଣ ସିନା ।
ପେଶିଲା ଯେତେକ ଶର ତ୍ରିମୁଣ୍ଡା ଯେ ଜାଣ
ସେ ଶରଙ୍କ ନାମ ଏବେ କହିବା ହୋ ଶୁଣ ।
ଗରୁଡ଼ ପୃଷ୍ଠରେ ପଡ଼ି ଭାଜିଲା ତା ତେଜ
ଶୁଣ ନାରଦ ଯେ ରୂପେ ଗଲା ତେଜ ଆଜ ।
ଗଦା ଗଲା ଭାଜି ଶାବେଳି ହେ ଗଲା ଝଡ଼ି
କୁନ୍ତ ଲୋଚା ହେଲା ଛେଲ ମୁନ ହେଲା ମୋଡ଼ି
ବାଜିଣ ସେ ଭାଲ ଜାଣ ହେଲା ଖଣ୍ଡ ଖଣ୍ଡ
ବଜ୍ର ଶକତି ଯେ ହେଲା ତହିଁ ମସି ଗୁଣ୍ଡ ।
ଯେଉଁ ମନଭେଦି ଶର ଅଟଇଟି ପୁଣି
ପୁରାଣେ ତାହା ବଡ଼ିମା କଥା ଥାଉଁ ଶୁଣି ।
ଗରୁଡ଼ ତହିଁ ଦ୍ୱିଗୁଣ ହୋଇଲାକ ବେଢ଼ି
ରହିଲା ପଚାଶକୋଟି ଯୁଣ ପୃଥ୍ୱୀମାଡ଼ି ।
ସେ ଖଗେଶ୍ୱରକୁ ଶର ନ ପାରିଲା ଜିଣି
ଗରୁଡ ପିଠିରେ ପଡ଼ି ଭାଜିଲା ସେକ୍ଷଣି ।
ଆବର ଯେ ଜଳପାଶ ମାଡ଼ି ଆସୁଥିଲା
ଗରୁଡ଼ ପିଠିରେ ପଡ଼ି ବଳେ ବହିଗଲା ।
ଆବର ଆସନ୍ତେ ଶୂନ୍ୟେ ନାଗପାଶ ଗ୍ରାସି
ଗରୁଡ଼ ଦେଖି ପାତାଳେ ଗଲେ ଭୟେ ପଶି ।
ବାଜି ଦେହେ ଖଣ୍ଡାମାନ ହେଲେ ମସିଗୁଣ୍ଡା
ଦେଖି ମନେ ମହାଭୟ କଲାକ ତ୍ରିମୁଣ୍ଡା ।
ବୋଇଲା ଏ ପକ୍ଷୀ ନୁହେଁ ଅଟେ ବଡ ଜଣ
ଏହାର ହାତେ ନିଶ୍ଚୟ ଯିବ ମୋର ପ୍ରାଣ ।
ଏ ଅବା ମୋତେ ମାରୁ ମୁଁ ଅବା ପାରେ ମାରି
ଯାଉଛି ମୁଁ ମାଲବନ୍ଧେ ହେବି ଧରାଧରି ।
ଏ ରୂପେ ବୋଲିଣ ଦୈତ୍ୟ ରଥୁ ଡ଼େଇଁ
ମାଇଲା ସେ ଗରୁଡ଼କୁ ଏକ ବିଧା ଯାଇ ।
ବାଜନ୍ତେ ବିଧା ଉଠିଲା ପକ୍ଷୀ କୋପଭରେ
ମାଇଲା ମୁଥେକ ନେଇ ନିର୍ଘାତ ପ୍ରକାରେ ।
ସେ ମୁଥ ବାଜି ପଡ଼ନ୍ତେ ଦୈତ୍ୟ ମୁଖମାଡ଼ି
ହୁଁ କାର ନାଦେ ପିଠିରେ ତାର ପକ୍ଷୀଚଢ଼ି ।
ମୁଖରେ ଯେ ଅଶ୍ୱପ୍ରାୟ ଦେଲା କଡ଼ିଆଳି
ମୂଷିକକୁ ମାଡ଼ି ଯେହ୍ନେ ବସଇ ବିଡାଳୀ ।
ହୃଦରେ ଚଞ୍ଚୁ ଭୁଷନ୍ତେ ନେଇ ଖଗେଶ୍ୱର
ପକ୍ଷୀକି ଲେଉଟି ମାଡ଼ି ବସିଲା ଅସୁର ।
ନ ପାରିଲା ପ୍ରାୟ ପକ୍ଷୀ ତଳେ ଥିଲା ପଡ଼ି
ଲେଉଟି ସେ ଖଗେଶ୍ୱର ବସିଲାକ ମାଡ଼ି ।
ରେ ରେ ଦୈତ୍ୟ ବୋଲିଣ ଯେ ଧରିଲାକ ଯାକି
ନିର୍ଘାତ ପରାୟେ ଟେକି ଶୂନ୍ୟେ ଦେଲା କ୍ଷେପି ।
ତଳରେ ପଡ଼ି ସେ ଦୈତ୍ୟ ହସେ ଟହ ଟହ
ପୁଣି ଗରୁଡ଼ ବସିଲା ମାଡ଼ି ତାର ଦେହ ।
ବେନିଖଗେ ସାଉଁଟି ସେ ଶୂନ୍ୟେ ଗଲା ଉଡ଼ି
ମେରୁର ଉପରେ ନେଇ ଛେଚିଲା କଚାଡ଼ି ।
ନୋହିଲା କେବୋହେଁ ତ୍ରିମୁଣ୍ଡାର ପ୍ରାଣନାଶ
ପୁଣିହିଁ ପକ୍ଷୀକି ମାଡ଼ି ବସିଲା ରାକ୍ଷସ ।

ଗରୁଡ଼ ଦେଖିଣ କାଖେ ଯାକି ମାରେ ହେଣ୍ଡା
ବୋଇଲା ଏଥର ନିଶ୍ଚେ ମଲୁରେ ତ୍ରିମୁଣ୍ଡା ।
ବୋଇଲା କରିବା ମାଲାବନ୍ଧେ ଦୁହେଁ ଯୁଦ୍ଧ
ଯେ ମାରି ପାରିବେ ତାଙ୍କୁ ରଖିବେ ଗୋବିନ୍ଦ ।
ଏ ରୂପେ ବୋଲି ହୁଙ୍କାର ନାଦ ପକ୍ଷୀ କଲା
ତ୍ରିମୁଣ୍ଡାକୁ ଲେଉଟାଇ ମାଡ଼ିଣ ବସିଲା ।
ମାଲବନ୍ଧ ପ୍ରାୟେକ ସେ ହେଲେ ଛନ୍ଦାଛନ୍ଦି
ଛାତିକି ଯେ ଛାତିପଟ ବାହୁ ବାହୁ ବାନ୍ଧି ।
ପାଦକୁ ଯେ ପାଦ ଛନ୍ଦି ହୁନ୍ତି ଗଡାଗଡ଼ି
କେ ତଳେ ପଡ଼ିଣ କେହୁ ବସେ ପୁଣି ମାଡ଼ି ।
ବାଜିଣ ଯେ ବନଗିରି ପଡ଼ି ହେଲେ ଧୂଳି
ଗରୁଡ଼ ଯେ ମାଡ଼ିବସି ପାଡେ ହୁଳହୁଳି ।
ଏହିରୂପେ ତିନିଦଣ୍ଡ ଲାଗନ୍ତେ ସମର
କଉତୁକ ପ୍ରାୟ ତାହା ମଣେ ଖଗେଶ୍ୱର ।
ସମର ଆଦ୍ୟୁ ଯେବେ ସେ ଦୈତ୍ୟ ମାରିଦ୍ୟନ୍ତା
ଏତେବେଳ ଯାଏ ତ୍ରିମୁଣ୍ଡା କି ଜୀଇଥାନ୍ତା ।
ଗରୁଡ଼ ବଳକୁ କିସ ଅଟେ ସେ ଅସୁର
ଏକ ନିଃଶ୍ୱାସକେ କମ୍ପିଯିବ ତିନିପୁର ।
ଖଗ ବିଞ୍ଚନ୍ତେ ବହିବ ଯାର ଅଣଚାଶ
ସେହି ପୁରୁଷ ଯୁଦ୍ଧକୁ କିଏ ସେ ରାକ୍ଷସ ।
କେବଳ ଶେଷଦେବଙ୍କୁ ଛାଡ଼ିଯିବ ଡରେ
ବୈନତେୟ ପାଞ୍ଚଇ ସେ ଆପଣା ହୃଦରେ ।
ବୋଲଇ କେଡ଼େ ଅପ୍ରାଧ କଲି ମୁଁ ପାମର
ଶେଷଦେବଙ୍କୁ ଛାଡ଼ି ଆସିଲି ଏତେ ଦୂର ।
ଶ୍ରୀନୃସିଂହ ପ୍ରଭୁ ଆଜ୍ଞା ମେଣ୍ଟିଣ ଆସିଲି
ସହସ୍ରେ ଯୋଜନ ଭିଡ଼ି ଦୈତ୍ୟକୁ ଆଣିଲି ।
ଭାଇକି ମୋ ସମ୍ଭାଳି ଥିବୁ ବୋଲି ଥିଲେ
ଏବେ ସେ ଆଜ୍ଞା ମେଣ୍ଟିଲି ମୁହିଁ କାହା ବୋଲେ
ଆସିଲି ସମର ସ୍ଥାନ ଛାଡ଼ି ଏତେ ଦୂର
ମେରୁରେ ଛେଚିଲେ ଆଣି ନ ମଲା ଅସୁର ।
ଏବେ ହେଁ କିରୂପେ ମାରି ଶୀଘ୍ରେ ଯିବି ଚଳି
ଏ ରୂପେ ପାଞ୍ଚି ଉଠିଲା କୋପେ ମହାବଳୀ ।
ଅସୁରକୁ ଧରି ପୁଣି ମାଡ଼ିଣ ବସିଲା
ଗଗନକୁ ଚଢ଼ି ବିଂଶ ଯୁଣ ଉଚ୍ଚ ହେଲା ।
ବସିଣ ଗର୍ଜିଣ ବିଶ୍ୱ ରୂପେ ବୁକୁ ମାଡ଼ି
ଥଣ୍ଟ ମାରି ପକ୍ଷୀ ବେକନଳୀ ଦେଲା ତାଡ଼ି ।
ହୃଦୟରେ ପାଦଦେଇ ଭୁଜ ଉପାଡ଼ିଲା
ମଲି ମଲି ବୋଲି ଦୈତ୍ୟ ପ୍ରାଣ ଛାଡ଼ିଗଲା ।
ଶରୀରୁ ତା ପ୍ରାଣ ଛାଡ଼ିଗଲା ଅନ୍ତରୀକ୍ଷେ
ତକ୍ଷଣେ ଯାଇ ବସିଲା ପୁଣି ଦେବଲୋକେ ।
କାହାକୁ ଥଣ୍ଟରେ ଚିରି ପାଦେ ଦିଏ ମାରି
ନିମିଷମାତ୍ରେ ସବୁଙ୍କୁ ଦେଲା କ୍ଷୟ କରି ।
ନୃସିଂହକୁ ଚାହିଁ କରି ମନେ ପାଇ ଲାଜ
ରହିଲା ଶେଷଦେବଙ୍କ ପାଶେ ପକ୍ଷୀରାଜ ।
ଜାଣିଲେ ସେ ମନକଥା ତାର ଚକ୍ରପାଣି
ଯୁଦ୍ଧରେ ଲାଗିଅଛନ୍ତି ହସ୍ତେ ଧନୁ ଟାଣି ।
କଣ୍ଟ ବିକଣ୍ଟର ତୁଲେ ଘୋର ଯୁଦ୍ଧକରି
ସେ କଥା ଗୋଟିକି ଏବେ ଶୁଣ ତପଚାରୀ ।
ଜକଡ଼ାମାସେ ବରଷେ ଇନ୍ଦ୍ର ଯେହ୍ନେ ପାଣି
କଣ୍ଟ ବିକଣ୍ଟ ବିନ୍ଧନ୍ତି ଶର ତଥା ଟାଣି ।
ଛେଦି ପକାନ୍ତି ସେ ଶରଯାକ ନାରାୟଣ
ବିନ୍ଧନ୍ତି କଣ୍ଟ ବିକଣ୍ଟ ବେନି ପୁଣ ବାଣ ।
ନାଶନ୍ତି ଦୂରହୁଁ ଦେଖି ତାହା ଦଇତ୍ୟାରି
ଲେଉଟି କଣ୍ଟ ଅସୁର ଅଗ୍ନିଶର ମାରି ।
ମନ୍ତ୍ରପଢ଼ିଣ କୃଶାନୁ ଶର ଦେଲା ଛାଡ଼ି
ବୋଇଲା ଶତ୍ରୁକୁ ମାରି ପକାବେଗେ ପୋଡ଼ି ।
ଶୁଣିଣ ସେ ଅଗ୍ନିଶର ଆସେ ଶୂନ୍ୟେ ଘୋଟି
ବିନ୍ଧିଲେ ନୃସିଂହ ଜଳଧାରା ଶରଗୋଟି ।
ଲିଭିଲେ ସେ ବୈଶ୍ୱାନର ଗଲେ ଗୋପ୍ୟ ହୋଇ
ଦେଖି ତାହା ଚମତ୍କାର ହେଲେ ଦୈତ୍ୟଦୁଇ ।
ବୋଲେ ମେଣ୍ଟିଲେ ବଲ୍ଲଭପୁଏ କେଡ଼େଶର
ନୁହନ୍ତି ସାମାନ୍ୟ ନୁହେଁ ହେବେ ହରିହର ।
ସେହି ତ ମଲେ ରହନ୍ତେ ପୁଣି ଅପସରି
ଏ ରୂପେ ବୋଲି ଉଠିଲେ କରେ ଧନୁଧରି ।
ସୂର୍ଯ୍ୟାବଳି ଅର୍ଦ୍ଧଚନ୍ଦ୍ର ରତ୍ନାବଳିସାଏ
ବିନ୍ଧିଲେ ଆବର ଦେବପର ଅପ୍ରମେୟେ ।
ବାବଲ ଶରେ ଛେଦିଲେ ତାହା ପଦ୍ମମୁଖ
ବାଣ ଭଗ୍ନ ଦେଖି ଦୈତ୍ୟ କରନ୍ତି ଯେ ଦୁଃଖ ।
କଣ୍ଟ ବିକଣ୍ଟ ଏ ଦୁହେଁ ବହୁଶ୍ରମ ପାଇ
କନିଷ୍ଟ ବୋଇଲା ଏବେ ଶୁଣ ବଡ଼ଭାଇ ।
ଶ୍ରୀ ନୃସିଂହ ପ୍ରଭୁ ହେଲେ ପାରେ ସବୁ କରି
ପଳାଇ ଯିବାର ଏହା ମୁଖୁ ଆମ୍ଭେ ତରି ।
ଗଲେ ତ ଲୋକରେ ନିନ୍ଦା ପାଇବା ଅବଶ୍ୟ
ମୁରାସୁରକୁ କହିବା ଯାଇଁ ଆଉ କିସ ।
ତଥାପି ପଳାଇ ଗଲେ ଚାହିଁବା କା ମୁଖ
ଏ ରୂପେ ଜୀଇଁବା ଯାହା ମଲେ ବଡ଼ ସୁଖ ।
ସଭାରେ ଚାହିଁବା କାହା ମୁଖ ଆମ୍ଭେ ଯାଇ
ହସିବେକ କ୍ଷତ୍ରୀମାନେ ନାକେ ହସ୍ତ ଦେଇ ।
ବୋଲିବେ ଭୟାନ୍ତୁ କଣ୍ଟ ବିକଣ୍ଟ ଯେ ବେନି
ସମରେ ମରିବ ସେ ଯେ ଆସିଥିବ ଘେନି ।

ଏ ରୂପେ ବୋଇଲେ ଲୋକେ ମୃତ୍ୟୁରୁ ବଳିବ
ଏହିଠାରେ ମଲେ ନିଶ୍ଚେ ସ୍ୱର୍ଗଭୋଗ ହେବ ।
ସାଜର ଏ କଥା ଶୁଣି ହସେ ବଡ଼ଭାଇ
ବୋଇଲା କହିଲୁ ଏଡ଼େ କଥା କିମ୍ପା ତୁହି ।
ଏଥର କରିବା ଚାଲ ଯାଇଁ ଗଦାଯୁଦ୍ଧ
ତହିଁ ନ ପାରିଲେ କରିବାକ ମାଲବନ୍ଧ ।
ନୃସିଂହ ହାତେ ମଲେ ଲଭିବା ବୈକୁଣ୍ଠ
ଏ ରୂପେ ବୋଲିଣ ଗଦା ଧରି କରେ କଣ୍ଠ ।
ପ୍ରାଣଆଶା ଛାଡ଼ି ରଥୁ ପଡ଼ିଲାକ ଡେଇଁ
ମିଳିଲେ ନୃସିଂହ ସ୍ୱାମୀପାଶେ ଦୁହେଁ ଯାଇ ।
ବୋଇଲେ କରିବା ଏବେ ଆସ ଗଦାଯୁଦ୍ଧ
ତହିଁକି ଲାଗୁଛି ଆମ୍ଭ ମନେ ବଡ଼ ସଧ ।
ପାରିଲେ ତୁମ୍ଭଙ୍କୁ ଜିଣି ହେବ ବଡ଼ ଯଶ
ବୋଲିବେକ ଭଲା କ୍ଷତ୍ରୀ ତ୍ରିମୁଣ୍ଡାର ଶିଷ୍ୟ ।
ନୃସିଂହ ବୋଇଲେ ଆଚ୍ଛାକଲ ହେବେ ବାଛା
ବୈକୁଣ୍ଠେ ବସ ହେ ତେବେ ହେଲା ଯେବେ ଇଚ୍ଛା
ଶୁଣିଣ ଧାଇଲେ କରେ ଗଦା ଦୈତ୍ୟ ବେନି
ଉଠିଲେ ନୃସିଂହ କୌମୋଦକୀ ଗଦାଘେନି ।
ଶେଷଦେବ କରେ ବଜ୍ର ମୂଷଳକୁ ଧରି
ବୁଲାନ୍ତି ନୃସିଂହ ଗଦା ଚକ୍ରପ୍ରାୟ କରି ।
ଶୂନ୍ୟରେ ଧରନ୍ତେ ଗଦା ଫିଙ୍ଗି ମନେ ପାଞ୍ଚ
ଆଣ୍ଠୁରେ ଉଠି ଡିଅନ୍ତି ପୁଣି ଭଡ଼ା ଦଶ ।
ପଛକୁ ଉଠି ଦିଅନ୍ତି ପୁଣି ଭଡ଼ା ଦଶ
ଲେଉଟି ଥାଉଁ କରନ୍ତି ପୁଣି ଗଦାଘୋଷ ।
କେ ଗଦା ପିଟନ୍ତି ଗଦା ଦିଅନ୍ତି କେ ଆଡ଼ି
କେବଣ ଗଦା ବାଜିଣ ଉଠେ ମଥା ପୋଡ଼ି ।
କେହି ଶୂନ୍ୟେ ଆଡ଼ଚିରା ମାରେ ଗଦାଘାତେ
କେ ଡେଇଁ ପଡ଼ି ଭୂମିରେ ମାରଇ ଯେ ନାଡ଼େ ।
ଚରଣରେ ଛଟକର ଚାଲି ଏକାବେଳେ
କାହାର ଗଦା ପଡ଼ିଲେ ସେ ମହୀରୁ ତୋଳେ ।
ଏ ରୂପେ ସେ ଗଦାମାରି ହୁନ୍ତି ପିଟାପିଟି
ବାଜନ୍ତେ ଗଦା କାହାର ଅଗ୍ନି ଜଳିଉଠି ।
କାହାର କାହାକୁ ତହିଁ ନାହିଁ ଉପରୋଧ
କେ ପିଟଇ ଉଣା କେହୁ ପିଟେ ହୋଇ କ୍ରୋଧ ।
ଉଞ୍ଚାଇ କେ ଅରବନ୍ଧ ମାରେ ଶୂନ୍ୟେ ଧରି
କେହି ଗଣା ପିଟୁ ପିଟୁ ହସ୍ତଯାଏ ଫେରି ।
ଭରସା କରିଣ କେହି ପିଟି ପକାବନ୍ତେ
ନୃସିଂହ ବୋଇଲେ ଭଲ ଅଛ ବେନି ଦୈତ୍ୟେ ।
ତୁମ୍ଭର କ୍ଷତ୍ରିୟପଣ ଦେଖିଲୁ କୌତୁକେ
ବୁଝିଲେ ତ ଯୋଦ୍ଧାପଣେ ନାହିଁକେ ତ୍ରିଲୋକେ ।
ଏଥର ଗଦା ସମ୍ଭାଳି ପାରୁ ଯେବେ ମୋର
ତେବେ ତ ରହିବୁ ଦିନାକେତେ ହୋଇ ଚିର ।
ଏବେ ଦେଖ କହୁଁ କହୁଁ ହେଲା ସାତଦିନ
କୌମୁଦକୀ ଗଦା ପିଟିଲେକ ଭଗବାନ ।
ପିଟିବା ଛଟକେ ଛିଡ଼ିଗଲା ଦୈତ୍ୟମୁଣ୍ଡ
ଦେବତାମାନେ ଯେ ଆସି ଶୂନ୍ୟେହେଲେ ରୁଣ୍ଡ ।
ଶ୍ରୀନୃସିଂହ ଶିରରେ ଆଣି ପୁଷ୍ପ ବୃଷ୍ଟି କଲେ
ଶୁଣ ବିକଣ୍ଠ ଦୈତ୍ୟ ହେ ମୃତ୍ୟୁ ଏବେ ଭଲେ ।
ବଜ୍ର ମୂଷଳରେ ଶେଷଦେବ ଦେଲେ ମାରି
କଣ୍ଠ ବିକଣ୍ଠ ଏ ବେନି ଗଲେ ଭବୁ ତରି ।
ଏ ରୂପେ ତାଙ୍କୁ ମାରି ଶ୍ରୀନୃସିଂହ ବେନିଭାଇ
ଗଙ୍ଗାରେ ପଶିଣ ସ୍ନାନ କଲେ ବେଗେ ଯାଇଁ ।
ଉଠିଲେ ସନ୍ଧ୍ୟାତର୍ପଣ କରି ଭଗବାନ
ଗରୁଡ଼ ଉପରେ ଯାଇ ବସିଲେ ବହନ ।
ଦେବଯାନ ରଥେ ବସିଲେକ ଶେଷଦେବ
କଳିଯୁଗେ ତାଳଧ୍ୱଜ ନାମ ସେ ହୋଇବ ।
ଈକାର ବିଭାକାଳେ ତା ଧାତା ଦେଇଥିଲେ
ସେ ରଥରେ ଶେଷଦେବ ଥାଇଣ ବସିଲେ ।
ବଦ୍ରିକା ନଗରେ ଯାଇ ହେଲେ ପରବେଶ
ନୃସିଂହ ଶରଣ ବିପ୍ର ପୀତାମ୍ବର ଦାଶ ।
ସବୁ ଦ୍ୱାରେ ଦଧି ମାଛ ପୂର୍ଣ୍ଣକୁମ୍ଭ ଥୋଇ
ଢାଳନ୍ତି ଚାମରମାନ ଭୃତ୍ୟଗଣେ ଯାଇ ।
ନଗରରେ ଯେତେ ନାରୀ ବାଳବୃଦ୍ଧ ଯୁବା
ସମସ୍ତେ ଦେଖନ୍ତି ଦାଣ୍ଡେ ଆସି ହୋଇ ଉଭା ।
ଖେଦା ଖେଦା ହୋଇ ବଡ଼ ଦାଣ୍ଡେ ଯାକେ ପୂରି
ପକାନ୍ତି ଯେ ହୁଳହୁଳି ମଙ୍ଗଳ ଉଚ୍ଚାରି ।
ଢୋଲ ଦମା ଟମକ ଯେ ବାଜେ ବିଜିଘୋଷ
ବାଜଇ ମହୁରୀ ଶଙ୍ଖ ବୀଣା ଚଉପାଶ ।
ଘଣ୍ଟି ଘଣ୍ଟା ଘାଗୁଡ଼ି ଯେ ବାଜେ ରୁଣଝୁଣ
କଂସାଳ ତାଳ ଯନ୍ତ୍ରର ଶବ୍ଦ ଗରୁ ଟାଣ ।
ନାଚନ୍ତି ଗଣିକା ସ୍ତିରୀମାନେ ବୀଣାବାଇ
ଶୁଭୁଅଛି ଗହଗହ ବଦରିକା ଭୂଇଁ ।
ଦକ୍ଷିଣ ମେଲାରେ କଲେ ଶ୍ରୀନୃସିଂହ ବିଜେ
ସୁଜାଣ ମନ୍ତ୍ରୀକି କହନ୍ତି ଯେ ଦେବରାଜେ ।
ବୋଇଲେ ଗୃହକୁ ଏବେ ସର୍ବେ ଚଳିଯାନ୍ତୁ
ଭଜନମାନ ସାରିଣ ପ୍ରସାଦ ଯେ ପାନ୍ତୁ ।
ପୁନଶ୍ଚ ଆସିବେ ବୋଲି ଆଉ କେତେ ଦୈତ୍ୟ
ହୋଇବ ଅନେକ ଯୁଦ୍ଧ ପୁଣି ଅପ୍ରମିତ ।
ସୁଜାଣ ମନ୍ତ୍ରୀ ଶୁଣ ଶ୍ରୀଅଜ୍ଞା ପରମାଣେ
ସମସ୍ତେ ଚଳହୋ ବୋଲି କହିଲା ତକ୍ଷଣେ ।

କର୍ଣ୍ଣାଟେଶଙ୍କୁ ପୁଣି ଶ୍ରୀମୁଖେ ଦେଲେ ଆଜ୍ଞା
ପ୍ରସାଦ ନିମନ୍ତେ ଚଳ ଆହେ ନୃପ ସଂଜ୍ଞା ।
ଖଟଣିକାର ଯେ ଲୋକେ ଗଲେ ଆଜ୍ଞାପାଇ
ପୁଣିହିଁ ଖଗେଶ୍ୱରଙ୍କୁ ଆଜ୍ଞାଦେଲେ ଚାହିଁ ।
ବୋଇଲେ ହେ ଗରୁଡ଼ ତୁ ବେଗେ ଯାଅଚଳି
ଗ୍ରାସକର ଅମୃତ ହେ ବସାରେ ଯେ ମିଳି ।
ଶୁଣି ପକ୍ଷୀରାଜ ତାର ଯୋଡ଼ି ବେନିକର
ବସାକୁ ସେ ଯାଉ ଯାଉ ମନେ ପାଞ୍ଚେ ତାର ।
ବୋଇଲା ତା ଭୁଞ୍ଜିବାକୁ ଘରେ ନାହିଁ କିଛି
ଯେତେ ଥିଲା ଖାଇ ଦେଇ ଅଛି ସବୁ ପୋଛି ।
ଏବେ ଗଲାକ୍ଷଣି କିସ ଭୁଞ୍ଜିବି ଯେ ମୁହିଁ
ଉପାୟ ନ କଲେ ଗ୍ରାସ କେବେ ନ ମିଳଇ ।
ଏ ରୂପେ ବୋଲି ବୁଲନ୍ତେ ପକ୍ଷୀ ନଗ୍ରଯାକେ
ସବୁରି ଘରେ କୁଣିଆ ଦେଖେ ଦୁଇ ଏକେ ।
କାହା ଘରେ ପଡ଼ିଛନ୍ତି ଯାଇ ସାତ ପାଞ୍ଚ
କୁଣୁଆ ଦେଖି ଗରୁଡ଼ କଲେ ମନ ତୁଚ୍ଛ ।
ଘରକୁ ଘର ସେ ପଶିଆସେ ପଛଘୁଞ୍ଚି
କୁଣୁଆ ଦେଖି କାହାକୁ ନ ମାଗଇ କିଛି ।
ସବୁରି ଘରେ କୁଣୁଆ ପ୍ରଭୁ ଅନ୍ତର୍ଯ୍ୟାମୀ
ଗରୁଡ଼ ଦେଖିଣ ତାହା ଆସେ ନଗ୍ର ଭ୍ରମି ।
ନ ମାଗିଣ ଇଚ୍ଛାକରି ଆସନ୍ତେ ବସାକୁ
ଗରୁଡ଼ ପାଞ୍ଚେଣି ପ୍ରଭୁ ଜାଣିଲେ ମନକୁ ।
ଅନ୍ନ ପଡ଼ିଦାତା ଯେ ଅଟନ୍ତି ଭାବଗ୍ରାହୀ
ବସାରେ ପ୍ରସାଦ ଦେଇ ଅଛନ୍ତି ଯେ ଥୋଇ ।
ଆଜ୍ଞା ଅନୁସାରେ ସବୁ ହୋଇଅଛି ଥୁଆ
ଗୋରସ ଛେନା ଶାକର ଦୁଧ ଖଣ୍ଡମୁଆଁ ।
ସିଙ୍ଗଡ଼ା ଲବଣୀ ଖାଇ ହୋଇ ମେଞ୍ଚି ମେଞ୍ଚି
ନବାତ କର୍ପୂର ପୁଳି ଦାଢ଼ି ହୋଇ ସିଞ୍ଚି ।
ଅମୃତ ଝିଲ୍ଲୀ କଦଳୀ ସାଚିପଣା ଆଦି
ଗରୁଡ଼ର ବସାଘରେ ଅଛି ପରସାଦି ।
ଦେଖିଣ ତା ଖଗେଶ୍ୱର ହେଲା ଆଚମ୍ୱିତ
ବୋଇଲା ଧନ୍ୟ ହେ ପ୍ରଭୁ ଶ୍ରୀ ନୃସିଂହନାଥ ।
ଏ ରୂପେ ନୁହନ୍ତେ ଯେବେ ହରି ଅନ୍ତର୍ଯ୍ୟାମୀ
କି ରୂପେ ବରୁଣ ପୁରୁ ଆସନ୍ତେ ସେ ଲକ୍ଷ୍ମୀ ।
ଏଡ଼େ ହେଁ ଲାଖ ପାରନ୍ତା ବିନ୍ଧି କେଉଁ ନର
ପ୍ରତ୍ୟକ୍ଷେ ଅଟନ୍ତି ମହାଲକ୍ଷ୍ମୀ ପତ୍ନୀ ଯାର ।
ଏମନ୍ତ ଲକ୍ଷ୍ମୀମନ୍ଦିରେ ଛନ୍ତି ଯାର ରହି
ସେ ପ୍ରଭୁ ନ ଦେବେ ଉପହାର କାହିଁପାଇଁ ।
ପ୍ରକୃତି ମଞ୍ଜିରୁ ମୂଳ ପାରେ ବିଷ୍ଣୁ ଚିହ୍ନି
ନୋହିଲେ ଅଟନ୍ତି ସେ କି ପ୍ରଭୁ ଅନ୍ତର୍ଯ୍ୟାମୀ ।

ବ୍ରହ୍ମାଣ୍ଡେ ଯେବଣ ମୁରାସୁର ଚକ୍ରବର୍ତ୍ତୀ
ସତର ଲକ୍ଷ କୁମର ନବଲକ୍ଷ ନାତି ।
ଛତିଶ ଯେ ସେନାପତି ଆଉ ସୈନ୍ୟଯେତେ
ନାଶନ୍ତି ଶ୍ରୀହରି ଦେଖିଅଛି ମୁଁ ସାକ୍ଷାତେ ।
ଅନୁବ୍ରତେ ଅଟନ୍ତି ସେ ଦାନୀ ଚକ୍ରପାଣି
ସବୁଙ୍କୁ ତ ପଡ଼ି ଖଞ୍ଜୁଥାନ୍ତି ମନଜାଣି ।
ଏମନ୍ତ ପ୍ରଭୁର ମୁଁ ଯେ ଅଟେ ସେବାକାରୀ
ଲୋଡ଼ିଲେ କି ଗ୍ରାସ ପାଇ ପ୍ରଭୁଙ୍କୁ ନ ସ୍ମରି ।
ନୋହିଲେ ବିଧାତା ପକ୍ଷୀ ଜନ୍ମ କରନ୍ତା କି
ଏଡ଼େକ ପ୍ରଭୁ ସେବି ନ ଜାଣେ କଥା ତର୍କି ।
ଏ ରୂପେ ମନରେ ପାଞ୍ଚି ହେଲା ଗାଲେ ମାରି
ଅମୃତ ଭୁଞ୍ଜଇ ବସି ପ୍ରଭୁ ଚିନ୍ତି କରି ।
ଗରୁଡ଼ ପାଞ୍ଚଣଯାକ ନୃସିଂହ ଜାଣିଲେ
ନିତ୍ୟ ଅମୃତ ତୁମ୍ଭଙ୍କୁ ମିଳିବ ବୋଇଲେ ।
ମହାଲକ୍ଷ୍ମୀ ଦେଉଥିବେ ସେ କାଳେ ତୁମ୍ଭଙ୍କୁ
ମନରେ ପାଞ୍ଚିବୁ ଯେତେବେଳେ ଭୁଞ୍ଜିବାକୁ ।
ପ୍ରଦ୍ୟୁମ୍ନ ହସ୍ତେ ଦେଲେ ସେ ତୋତେ ଦେଉଥିବ
ଏ ଆମ୍ଭର ଆଜ୍ଞା ଗୋଟି ସବୁକାଳେ ଥିବ ।
ନୃସିଂହ ଦେହେ ଗରୁଡ଼ ମନ ଯାଇଥିଲା
ନୃସିଂହ ବର ଦିଅନ୍ତେ ହୃଦରେ ଜାଣିଲା ।
ସବୁରି ମନକୁ ଚିହ୍ନି ପାରନ୍ତି ଶ୍ରୀହରି
ଶୁଣନ୍ତି ନାରଦ କହୁଛନ୍ତି ମୁଖଚାରି ।
ସୁଜାଣ ମନ୍ତ୍ରୀ ଆଦି ଯେ ଗଲେ ଆଜ୍ଞା ପାଇ
ଗୃହେ ବିଜେକଲେ ଶ୍ରୀନୃସିଂହ ବେନିଭାଇ ।
ମଣୋହିମାନ ସାରିଣ ମୁଖ ପଖାଳିଲେ
କର୍ପୂର ଭୁଞ୍ଜି ପଲ୍ୟଙ୍କେ ଯାଇ ବିଜେକଲେ ।
ଏଥୁ ଅନନ୍ତରେ ରାତ୍ରି ହୁଅନ୍ତେ ପ୍ରବେଶ
ବିଜେକଲେ ଲକ୍ଷ୍ମୀପୁରେ କମଳା ବିଳାସ ।
ସେବାରେ ଲାଗିଲେ ଆସି ନାୟିକା ସରବେ
ଇଳାଠାକୁରାଣୀପୁରେ ବିଜେ ଶେଷଦେବ ।
ଲକ୍ଷ୍ମୀଙ୍କି ଘେନିଣ ନିଦ୍ରାଗଲେ ନାରାୟଣ
ବିପ୍ର ପୀତାମ୍ବର ଦାସ ସେ ପାଦେ ଶରଣ ।
ଧନ୍ୟ ହେ ପରମ ଲକ୍ଷ୍ମୀ ଧନ୍ୟ ହେ ନୃସିଂହ
ଏ ରୂପେ ସ୍ତୁତି କରନ୍ତି ଦେବେ ବସି ସ୍ୱର୍ଗ ।
ବୋଲନ୍ତି ସେ ଧନ୍ୟ ଧନ୍ୟ ଏ ବଲ୍ଲଭରାୟେ
ତାଙ୍କ ପରି ଭଗବତୀ ଅଯୋନି ଜନ୍ମାଏ ।
ପୂର୍ବରେ ଏ ତପ କରିଥିଲେ ବେନି ପ୍ରାଣୀ
ପାଇଛନ୍ତି ପୁତ୍ରବଧୂ ବିଷ୍ଣୁ କମଳିନୀ ।
ଯେତେ ଉପଦ୍ରବ ପଡ଼େ ସଂସାରରେ ଆସି
ନୃସିଂହ ବ୍ୟତୀତ ତାହା ପାରନ୍ତା କେ ନାଶି ।

ଯେବଣ ମୂର ଅସୁର ଜାତ ଦୈତ୍ୟକୁଳେ
ରାଜା ହୋଇଛି ବ୍ରହ୍ମାଣ୍ଡଯାକେ ତପବଳେ ।
ତିନିପୁରେ କେ ତା ଭାରା ନ ପାରନ୍ତେ ସହି
ତେଣୁ ସେହି ମହାପ୍ରଭୁ ଜାତ ଆସି ମହୀ ।
ମାନବ ରୂପରେ ଆସି କରନ୍ତି ବିହାର
ଦୀନଦୁଃଖୀ ବାନ୍ଧବ ସେ କମଳାଙ୍କ ବର ।
ବୁଝିଲେ ମାନବ ଦେହେ ସବୁ ଭୋଗ ଭୁଞ୍ଜି
ଆନଜୀବ ବେଭାରେ କେ ଆଣି ଭୁଞ୍ଜି ମାଞ୍ଜି ।
ତେଣୁ ସେ ମାନବ ଦେହ ବହିଲେ ନୃସିଂହ
ମାନବ ଦେହୁ କେ ବଳି ନାହିଁ ତିନିସ୍ୱର୍ଗ ।
ମାନବ ଦେହେ ଭୋଗାଦି ଅମୃତ ସମାନ
ଆବର ଜୀବ ବିହାର ଅଟେ ପଶୁଜନ୍ମ ।
ସଂସାରେ ମାନବ ଦେହୁଁ ନାହିଁ ବଳ କେହି
ଆବର ଜୀବ ଦେହକୁ ଅସାର୍ଥକ କହି ।
ଦୁର୍ଲ୍ଲଭ ଦେହ ବୋଲିଣ ପାଞ୍ଚୁ ନାରାୟଣ
ମାନବ ଦେହେ ପ୍ରକାଶ ଆସି ହୋନ୍ତି ପୁଣ ।
ଏ ରୂପେ ପାଞ୍ଚନ୍ତି ସ୍ୱର୍ଗେ ବସି ଦେବତାଏ
ଶୁଣ ହେ ନାରଦ ମୁନି କହନ୍ତି ଧାତାଏ ।
ଏଥୁ ଅନନ୍ତରେ କନକାବତୀ ନଗରରେ
କଣ୍ଟ ବିକଣ୍ଟ ଏ ବେନି ମରନ୍ତେ ଯୁଦ୍ଧରେ ।
ଆନନ୍ଦ ବନରେ ବେନି ଦୂତଥିଲେ ଲୁଚି
ଖବର ଘେନି ବହନ ଗଲେ ତହୁଁ ଘୁଞ୍ଚି ।
କନକାବତୀ ନଗରେ ପ୍ରବେଶିଲେ ଯାଇଁ
ଦେଖିଲେ ସଭାରେ ବସିଅଛି ଦୈତ୍ୟସାଇଁ ।
ସଙ୍ଗଣେ ମନ୍ତ୍ରୀଙ୍କି ଘେନି କରଇ ବିଚାର
କିମ୍ପା ନ ଫେରିଲେ କଣ୍ଟବିକଣ୍ଟ ହେ ମୋର ।
ଗଲେଣିତ ସାତଦିନ ହେଲା ଯୁଦ୍ଧଠାକୁ
ସଂସାରେ କେ ନ ଦିଶଇ ତାଙ୍କୁ ଜିଣିବାକୁ ।
ମୋହର ସମାନ ସେହି ଦୁହେଁ କ୍ଷତ୍ରିବର
ଦିଗବିଜେ କାଳୁ ଆଣି ରଖିଥିଲି ଘର ।
ପ୍ଲକ୍ଷଦ୍ୱୀପ ରାଜା ତ୍ରିମୁଣ୍ଡାର ପୁତ୍ର ବେନି
ବଲ୍ଲଭପୁତ୍ରକୁ ଏକା ପାରିବ ସେ ଜିଣି ।
ବୁଝିଲେ ଯୁଦ୍ଧକୁ ନେଇ ଅଛି ଯେତେ ସ୍ତିରୀ
ଦେଖିବ ପୁରୁଷେକ ନ ହୋଇବ ଯେ ଘାରି ।
ବଲ୍ଲଭପୁତ୍ରେ ଯେ ଦେଖି ହେବେ ଅଶକତ
ଘେନିବେ ପ୍ରାଣ ତାଙ୍କର ତ୍ରିମୁଣ୍ଡାର ସୁତ ।
ଶ୍ରୀନୃସିଂହ ବେନିଭାଇ ମରିବା ପର୍ଯ୍ୟନ୍ତେ
ମନମଥ ବାରଣତ ନୁହେଁ କଦାଚିତେ ।
ଏ ରୂପେ ସେ ରାଜା ମନ୍ତ୍ରୀ ହୁନ୍ତି କଥା ଧୀରେ
ବଦ୍ରିକାରୁ ଆସି ଦୂତେ ମିଳିଲେ ଛାମୁରେ ।
ରାଜାଙ୍କ ସଙ୍ଗତେ ବସିଥିଲେ ମନ୍ତ୍ରୀବର
ଦୂତଙ୍କୁ ବୋଇଲେ ତୁମ୍ଭେ କେଉଁ ଦେଶ ଚାର ।
ଶୁଣିଣ ସେ ଚାର ବେନି ଶୁତି ପାୟେପଡ଼ି
ଉଭା ହୋଇ କହନ୍ତି ଯେ ବେନିକର ଯୋଡ଼ି ।
ବୋଲନ୍ତି ଆସିଲୁ ଆମ୍ଭେ ବଦ୍ରିକାରୁ ଜାଣ
ସେଠା କଥା ପଦେ ରାଜା କହୁଅଛୁ ଶୁଣ ।
କଣ୍ଟ ବିକଣ୍ଟ ନୃସିଂହ ହାତେ ପ୍ରାଣ ଦେଲେ
ଯୁଦ୍ଧକୁ ଯିବା ସମସ୍ତ ସ୍ତିରୀ କ୍ଷୟ ଗଲେ ।
ହୋଇଲା ସପତଦିନ ଯାଏ ମହାରଣ
ଗରୁଡ଼କୁ ଘେନି ମାଇଲେକ ନାରାୟଣ ।
ଦୂତଙ୍କ ମୁଖୁ ଏମନ୍ତ ବାକ୍ୟ ରାଜା ଶୁଣି
ବସିବା ଠାବରେ ଢଳି ପଡ଼ିଲା ନୃମଣି ।
ମୋହେ ଭୂମିରେ ପଡ଼ିସେ ହୋଏ ଛଟପଟ
ସ୍ତମ୍ଭକୁ ଆଉଜି ବସି ଚାହେଁ ମଟ ମଟ ।
ସଞ୍ଚାଣ ପକ୍ଷୀ ପରାୟ ନୟନ ତରାଟି
ଅନାଇଁ ସେ ଚଉଦିଗେ ଚାହେଁ ମିଟି ମିଟି ।
ରହିଲା ସେ ଅଧୋମୁଖେ ନିର୍ଜୀବ ଯେ ହୋଇ
ଲୋତକର ଧାରା ଗଳି ନେତ୍ରୁ ଯାଏ ବହି ।
ପିଣ୍ଡରୁ ତା ଆତ୍ମା ଗଲା ପ୍ରାୟ କରେ ମନ
ହୃଦରେ କୁଣ୍ଠାଇ ହୋଇ କରଇ ରୋଦନ ।
ବୋଇଲାକ ଅନ୍ଧକାର ଦିଶିଲାକ ପୃଥ୍ୱୀ
ଦେଖ ଦେଖ ମଲେ ମୋର ସର୍ବ ସେନାପତି ।
ସତର ଲକ୍ଷ ଯେ ପୁତ୍ର ନବଲକ୍ଷ ନାତି
ଏହାଙ୍କୁ ଥିଲା ପାଶୋରି ନ କରିଣ ଭୀତି ।
ହେ ସୁବିଜ୍ଞ ମନ୍ତ୍ରୀବର କରିବା କି କହ
ଜୀବନ ଗଲା ପରାୟେ ଲାଗୁଛି ମୋ ଦେହ ।
ପୃଥ୍ୱୀରେ ମୁଁ ପ୍ରଭୁ ହୋଇ ହଜାଇଲି ବୁଦ୍ଧି
କି କରିବି କହ ଏବେ ମଲେ ତେଡ଼େ ଯୋଦ୍ଧି ।
ଭଲା ଅଟନ୍ତି ସେ କୃଷ୍ଣବଲ୍ଲଭର ପୋଏ
ଯାବତ ସେନାଙ୍କୁ ମୋର ସେହୁକରେ କ୍ଷୟେ ।
କଣ୍ଟ ବିକଣ୍ଟ ପରାୟେ ରଥୀ ଦେଲେ ମାରି
ବଦ୍ରିକା ପଲ୍ଲୀରେ ରହିଛନ୍ତି ଗଡ଼ କରି ।
ଯାହା କହିଥିଲେ ମୋତେ ନାରଦ ମହର୍ଷି
ସେ କଥା ଫଳିଲା ପ୍ରାୟ ଦିଶିଲାକ ଆସି ।
ପୂର୍ବରେ ଈଶ୍ୱର ଯାହା କହିଥିଲେ ମୋତେ
ବୋଇଲେ ମରିବୁ ମୁରାସୁର ବିଷ୍ଣୁ ହାତେ ।
ଆବର ଯେଉଁ କାଳରେ ହେଲି ମୁଁ ନୃମଣି
ବାନ୍ଧିଲି କନକାବତୀ ନଗ୍ରେ ଶାଢ଼ୀ ଆଣି ।
ରାଜା ହୋଇକରି ବସିଥିଲି ଯେତେବେଳେ
ଧାତା କହିଲେ ମାରିବେ ତୋତେ ଆଦିମୂଳେ ।

ଏ ତିନି ମୂର୍ତ୍ତିଙ୍କ କଥା ଫଳିଗଲା ଏବେ
ବ୍ରାହ୍ମଣ କୋଳେ ଜନ୍ମିଲେ ଆସି ବାସୁଦେବେ ।
ତଥାପି ଜାଣନ୍ତି ଯେବେ ହରି ବୋଲି ମୁହିଁ
ନୃସିଂହ ହାତରେ ମଲେ ଯାନ୍ତି ମୋକ୍ଷ ହୋଇ ।
କ୍ଷତ୍ରୀହେଲେ ନୁହନ୍ତା ତ ମୋତେ ଲୋକଲଜ୍ଜା
ଏ ରୂପେ ସନ୍ତାପି ହୋଇ ବୋଲେ ଦୈତ୍ୟରାଜା
ସଭାମଧ୍ୟେ ପାତ୍ର ମନ୍ତ୍ରୀ ଥିଲେ ବସି ଯେତେ
ରାଜାର ସନ୍ତାପ ଦେଖି ବୋଲନ୍ତି ସମସ୍ତେ ।
ସୁବିଜ୍ଞ ମନ୍ତ୍ରୀ ବୋଲେ ହୋ ଶୁଣ ଦୈତ୍ୟରାଜ
ବ୍ରହ୍ମାଙ୍କ ପୁତ୍ର ହୋଇତୁ ହୋଇଲୁ ଅଧୈର୍ଯ୍ୟ ।
ମରିବା ଲୋକଙ୍କୁ କିମ୍ପା ବସ୍ତୁ କୋଳ କରି
ସଂସାରେ ଜନ୍ମିଅଛନ୍ତି ଯେତେ ଦେହ ଧରି ।
କେହି ଆଜି ମରୁଅଛି କେହି କାଲି ଜାଣ
ସବୁକାଳେ ରହିବ କି ଜୀବଙ୍କର ପ୍ରାଣ ।
ବୁଝିଲେ ତ ଆଜିକାଲି ସବୁକାଳେ ଅଛି
ଜନ୍ମିଲେ ମରିଣ ପ୍ରାଣୀ ଲେଉଟି ଜନ୍ମୁଛି ।
ତୋ ଠାରୁ ସଂସାରେ ବଡ଼ ହୋଇ କେ ନ ଥିଲେ
ସେମାନେ ଏ ପୃଥ୍ୱୀ ଛାଡ଼ି ମରି ଚାଲିଗଲେ ।
ମରିବା ଲୋକଙ୍କୁ କିମ୍ପା କାନ୍ଦୁଛ ବାହୁନି
ବ୍ରହ୍ମାଙ୍କଠାରୁ କେ ବଡ଼ ନାହିଁ ପୁର ତିନି ।
ପ୍ରଳୟ ହୋଇଲେ ସେହି ପୁଣି ଯାନ୍ତି ମରି
ସେ ମଲେ କାନ୍ଦୁଛି କିଏ ପିଣ୍ଡକୁ ଆବୋରି ।
ଯେହୁ ମରଇ ପ୍ରଳୟ ବୋଲି ତାକୁ ଘେନି
ନ ଜାଣିବା ଲୋକ ଏକା କାନ୍ଦେ ଦିନ ବଞ୍ଚି ।
ଆପେ ଜୀଇଥିଲେ ସବୁ ଏ ସଂସାରେ ଅଛି
ନ ଜାଣବି ଲୋକ ଏକା କାନ୍ଦେ ଦିନ ବଞ୍ଚି ।
ନେତ୍ରରୁ ଲୁହ ପକାନ୍ତି ଜାଣ ଯେତେ ପ୍ରାଣୀ
ତେତିକି ଆୟ ତାହାର ତୁଟେ ସେହିକ୍ଷଣି ।
ଜୀବ ତ ଜନମି ଅଛି ମରିବାର ପାଇଁ
କାନ୍ଦୁଛି କିମ୍ପା ରାଜା ତୁ ଏଡ଼େ ବିଜ୍ଞ ହୋଇ ।
ମଲା କଥା ତ ଆଶ୍ଚର୍ଯ୍ୟ ନୁହେଁ କେବେ ଜାଣ
ଶରୀରର ମୃତ୍ୟୁ କଥା କହିବା ହୋ ଶୁଣ ।
ଦେହ ଲାଗେ ଆସି ଯେମ୍ନେ ଏ ମରଣ ବାଣୀ
ସେ କଥା ତୁ ସାବଧାନେ ଶୁଣ ନୃପମଣି ।
ସେ ଜନକୁ ସର୍ବେ ନିନ୍ଦା କରନ୍ତି ଟି ଜାଣ
ସେ ନିନ୍ଦା ପ୍ରାଣୀକି ଅଟେ ପ୍ରତ୍ୟକ୍ଷ ମରଣ ।
ଦେବା ଦୟା ଧର୍ମ ଯେତେ ଏ ସଂସାରେ ଅଛି
ତାହା ଯେ ନକରେ ତାକୁ ମରଣରେ ଗଛି ।
ଦେବତା ବିପ୍ର ଗୁରୁ ନ ସେବେ ଯେହୁ ଦେଖି
ସେ ଲୋକମାନଙ୍କୁ ଜାଣ ମୃତ୍ୟୁ ତୁଲେ ଲେଖି ।

ଅରଜି ସେହୁ ନ କରେ କୁଟୁମ୍ବ ପୋଷଣ
ଜୀବନ ଥାଉଁ ଥାଉଁ ସେ ମଲା ବୋଲି ଜାଣ ।
ଆପଣା ପତ୍ନୀ ଥାଉଁ ଯେ ରମେ ପରସ୍ତିରୀ
ମରଣ ସମାନେ ସେହି ନରେ ନିନ୍ଦାକରି ।
ପଦାର୍ଥ ଅର୍ଜି ପାଷାଣ ପ୍ରାୟେ ସେହୁ ସଞ୍ଚେ
ନ ପିନ୍ଧି ନ ଖାଇ ଦାରିଦ୍ରରେ ଦିନେ ବଞ୍ଚେ ।
ତାହାକୁ ଯେ ମୃତଶବ ସଙ୍ଗେ ସରି କରି
ଆବର କହୁଛୁଁ ଶୁଣ ଆହେ ଦଣ୍ଡଧାରୀ ।
ଯେହୁ ଜାଣ ତୀର୍ଥବ୍ରତ ଦାନପୁଣ୍ୟ ନିନ୍ଦେ
ସେ ମଲା ବୋଲି ଘେନନ୍ତି ତାକୁ ଜନପଦେ ।
ଯେହୁ ଜାଣ ସଭାରେଟି କହେ ପକ୍ଷକରି
ତାହାର ଜୀବନ ଥିବା ମୃତ୍ୟୁ ସଙ୍ଗେ ସରି ।
ପରର ଘରେ ପଶନ୍ତି ଯାଇ ସେହୁ ଗୋଟି
ମରଣର ତୁଲେ ଲେଖି ତାର ପୋଷାବୃତ୍ତି ।
ସଭାରେ ଧର୍ମନ୍ୟାୟ ନ କରେ ଯେହୁ ଜାଣ
ମରଣ ତୁଲେ ଯେ ଲେଖି ତାର ବଡ଼ପଣ ।
ଗୁହାରି କରନ୍ତେ ଯେ ନ କରେ ବୁଝାମଣା
ସେ ଲୋକର ବଡ଼ପଣ ମୃତ୍ୟୁ ତୁଲେ ଗଣା ।
ନ ପୋଷେ ପିତାମାତାଙ୍କୁ ଯେଉଁ ପୁତ୍ର ଜାଣ
ସେ ପୁତ୍ରର ଦେହ ଗୋଟି ମୃତ୍ୟୁ ତୁଲେ ଗଣ ।
ମାନବ ହୋଇ ପୁରାଣ ଶାସ୍ତ୍ର ଯେହୁ ନିନ୍ଦେ
କେବଳ ସେ ନରଦେହ ଲେଖି ମୃତ୍ୟୁ ପଦେ ।
ନ ମାନି ଯେ ବଡ଼ସାନ ଘେନି ନମସ୍କାର
ତାହାରହିଁ ମୃତ୍ୟୁ ଜାଣ ଘୋଟଇ ତପ୍ପର ।
ବିପତ୍ତି କାଳରେ ଯେହୁ ଧୈର୍ଯ୍ୟ ନୋହେ ଜାଣ
ତାହାର ଦେହଟି ଜାଣ ଅଟେ ଅଧାପ୍ରାଣ ।
ତୁମ୍ଭେ ତ ବ୍ରାହ୍ମଣ ପୁତ୍ର ବଳେ ବଳୀୟାର
ମଲା ଲୋକଙ୍କ ନିମନ୍ତେ କିମ୍ପା ଶୋକ କର ।
ଆପଣ ତ ଜୀଇଥିଲେ ସବୁକଥା ଅଛି
ଯେ ମଲା ସେ ଗଲା ଅଧଇର୍ଯ୍ୟ ନୁହେଁ କିଛି ।
ଦେହ ଧରିଲେ ଦେବତା ହେଲେ ଜାଣମରି
କେ କାହାର ବନ୍ଧୁ କେ କାହାର ବଇରୀ ।
କେ କାହାର ଶତ୍ରୁ ଅଟେ କେ କାହାର ମିତ୍ର
କେ କାହାର ଭାଇଅଟେ କେ କାହାର ଗୋତ୍ର ।
କେ କାହାର ପୁତ୍ର ଅଟେ କେ କାହାର ନାତି
ଦେହ ଧଇଲେ ସମସ୍ତେ ମରି ସଢ଼ିଯାନ୍ତି ।
ତୁ ନୋହୁ ମୋର କିଛି ମୁଁ ତୋର ନୁହେଁ କିଛି
ଦେହ ଥିବାଯାକେ କେ ନ ପାରେ ମାତ୍ର ମୂର୍ଚ୍ଛି ।
ବୁଝିଲେ ସଂସାର ପତ୍ନୀଠାରୁ ସ୍ନେହ ନାହିଁ
ସେହି ପୁଣି ମରିଗଲେ ପାଶୋରି ପକାଇ ।

ମରନ୍ତି କେ ଆଜି କାଲି କେହି କ୍ଷଣେ ଦଣ୍ଡେ
ଚିରହୋଇ କେହି ରହି ନାହାନ୍ତି ବ୍ରହ୍ମାଣ୍ଡେ ।
ଧନ ନୋହେ ଚିର ଏ ଜୀବନ ନୋହେ ଚିର
ଆୟୁଷକୁ ଚିରି କରି ରଖିବ କେ ନର ।
ସବୁରି ମୁଣ୍ଡରେ ଜାଣ ମୃତ୍ୟୁ ଅଛି ବସି
ଅନବରତେ ଆୟୁଷ କ୍ଷୟ କରେ ଗ୍ରାସି ।
ଏ କଥାଟି ପ୍ରାଣୀମାନେ ନ ପାରନ୍ତି ଚିହ୍ନି
ଡାକନ୍ତି ଜନମ ହେଲେ ଲୋକେ ନନା ନାନୀ ।
କେ ଅନ୍ନ ଭୁଞ୍ଜୁ ଭୁଞ୍ଜୁ କେ ହାଇ ମାରୁମାରୁ
କେହି ଝୁଣ୍ଟିପଡ଼ି ମରେ କେ ଦୁର୍ବଳ ହେବାରୁ ।
ମରନ୍ତି କେ ହଣାହଣି ହୋଇ ଶସ୍ତ୍ରଘାତେ
କେ ଅବା ମରନ୍ତି ପଡ଼ିହୋଇ ରୋଗଗ୍ରସ୍ତେ ।
ଏ ରୂପେ ମାଡ଼ି ବସିଛି ମୃତ୍ୟୁ ସବୁ ମୁଣ୍ଡେ
ଏକଥା ନ ଚିହ୍ନି ଭୋଳା ହୋନ୍ତି ପ୍ରାଣୀ ପିଣ୍ଡେ ।
ତୁହି ତ ଦଇତ୍ୟ ରାଜା ସବୁ କଥା ଜାଣୁ
ଜାଣୁ ଜାଣୁ କାହିଁକି ତୁ ଶୋକ ମନେ ଆଣୁ ।
ବଲ୍ଲଭପୁତ୍ର ନୁହନ୍ତି ବିଷ୍ଣୁ ହେବେ ଜାଣ
ଆନ ଛାର ବସନ୍ତା କେ ଗରୁଡ଼ ପରେଣ ।
ସତରଲକ୍ଷ କୁମର ନବଲକ୍ଷ ନାତି
ଦେଖୁଛ ମାଇଲେ ଆଦ୍ୟ ହୋଇ ଗୁରୁମୂର୍ତ୍ତି ।
ସେନାକୁ ସେଠାବକୁ ତୁ ପେଶୁ ପରା ରଣେ
ଯାଇଣ ବାହୁଡ଼ି କେହୁ ନ ଆସନ୍ତି ଜଣେ ।
ତୁ ଏବେ ଡରି ରହିଲେ ହେବ ଆଉ କିସ
ନାଶିଲେ ତୋର ବଂଶକୁ ଏବେ ତାକୁ ନାଶ ।
ଏ କଥାରେ ହେଳା ତୁ ନ କର ଆଉ ରାଜା
ସଭିଙ୍କର ମୃତ୍ୟୁ ବିହି କରିଛନ୍ତି ଖଞ୍ଜା ।
କେ ଆଗ କେ ପଛ ମରିବାର କଥା ସତ
ମରିବା ପର୍ଯ୍ୟନ୍ତ ଯେଝା ନ ଛାଡ଼ି ମହତ୍ୱ ।
ପ୍ରାଣକୁ ମୁରୁଛି ଥିବ ମହତ୍ତ୍ୱକୁ ରଖି
ତେବେ ତାକୁ ବଡ଼ଲୋକ ବୋଲିଜାଣ ଲେଖି ।
ଶୁଣି ସେନାମାନେ ବୋଇଲେ ଯେ ସତ ସତ
କଣ୍ଡ ବିକଣ୍ଡ ମଲେ କି ଗଲା ମରାମତ ।
ବୁଝିଲେ ତ ଅଛୁ ଆମ୍ଭେ ଯେତେ ସେନାପତି
ଆମ୍ଭେ ଥାଉଁ ଥାଉଁ କିମ୍ପା କରୁଅଛ ଭୀତି ।
ପୁତ୍ରେ ମଉନ୍ତେ ବୟସ ତୋର ତୁଟିଲା କି
ଶ୍ରୀକାମଦେବର ପ୍ରାୟ ଦିଶୁଛି ଅଧିକି ।
ଯହିଁରେ ତେତିଶକୋଟି ଛନ୍ତି ଭୁଆସୁଣୀ
ତହିଁରେ ମଦନାବତୀ ଅଟେ ପାଟରାଣୀ ।
ନବୀନ କିଶୋରୀ ସଂସାରର ମନୋହାରୀ
ଏ ରୂପେ ପ୍ରିୟା ଥାଉ ତୁ ବସୁ ଚିନ୍ତାକରି ।

ଲେଉଟି ପୁତ୍ର ଜନ୍ମିବେ ତୋର କେତେ ଆସି
ଶୁଣି ମୁରାସୁର ମନ ମଧ୍ୟେ ବଡ଼ ହସି ।
ବୋଇଲା ଏ ନାତି ଲେଖା ହେବେ ମୋର ଯେଣୁ
ତେଣୁ କହିଲେ ଏ ବାକ୍ୟମାନ ସମ୍ଭାଷଣୁ ।
ଆମ୍ଭେ ତ ବ୍ରହ୍ମାର ବୀର୍ଯ୍ୟ ହୋଇଅଛୁ ଜାତ
ମୋହର ସୈନ୍ୟ କଶ୍ୟପ ଋଷିଙ୍କର ସୁତ ।
କଶ୍ୟପ ଋଷି ମରୀଚି ଋଷିଙ୍କର ପୁଅ
ମରୀଚି ଋଷିର ବାପ ଅଟେ ପିତାମହ ।
ତେଣୁ ନାତିଲେଖା ମୋର ହେବାରୁ ଏଜାଣ
ଭରସି କରି କହଇ ମୋତେ ତିଆରିଣ ।
ଏ ରୂପେ ବୋଲି ବହୁତ ତାଙ୍କୁ ଭିଆଇଲା
ଆସନେ ବସାଇ ପରସାଦ ଭୁଞ୍ଜାଇଲା ।
ବୋଇଲା ମୁଁ ତୁମ୍ଭ ଘେନି ଥିଲି ଯଶକରି
ନୃସିଂହ ଲାଗି ମୁଁ ହେଲି ଏବେ ହତଶିରୀ ।
ଶୁଣିଣ ଉଠିଲେ ଅଷ୍ଟସେନା କୋପଭରେ
ମାରି ବାହାସ୍ଫୋଟ ଧନୁ ଧଇଲେକ କରେ ।
କେ ନିଶ ମୋଡ଼ଇ କେହୁ ଠୁଙ୍କେ ବାହୁବେନି
କେହୁ ବୁକୁ ଚମକାଇ ହଲାଏ ମୂର୍ଦ୍ଧନି ।
କେହି ଆଡ଼ ଚିରାମାରି ଗର୍ବେ ଡେଇଁ ଡେଇଁ
କେହି ହାତତଳେ ପିଟି ପୃଥ୍ୱୀ ଚମକଇ ।
କେହୁ ବୋଲି ପଡ଼ିବଣି ବଦ୍ରିକାରେ ହରି
ଯୁଦ୍ଧକୁ ଆସିଲେ ଅଷ୍ଟସେନା ବୋଲିକରି ।
ଶୁଣିଣ ସେ ମୁରାସୁର ହେଲା ବଡ ତୋଷ
ବୋଇଲା ଶତ୍ରୁକୁ ମୋର ଯାଇ ବେଗେ ନାଶ ।
ଶୁଣିଣ ସେ ବୃକାସୁର ଉଠି ସେହି ଲାଗେ
ଅଷ୍ଟସେନା ଘେନି ବାହାରିଲା ଅତି ବେଗେ ।
ସେ ଅଷ୍ଟ ସେନାପତିଙ୍କ ନାମ ଥାଅ ଶୁଣି
ପ୍ରଥମରେ ବୃକାସୁର ହେଲା ଆଗୁଆଣି ।
ଆବର ଆଲୋପୀ ବୀରବାହୁ ରଣକେଶୀ
ସୁଲେପା ମଦନାବତୀ ଲୋହଶିରା ମିଶି ।
କୃତକେଶୀକୁ ଘେନି ଏ ରୂପେ ଅଷ୍ଟସେନା
ଜଣକେ ସେ ପଦ୍ମେ ସୈନ୍ୟଧରି ଯାତୁଧାନା
ତିନିଦିନେ ମିଳିଲେକ ଯାଇ ବଦ୍ରିକାରେ
ଆନନ୍ଦ ବନରେ ବସା କଲେ ଦୈତ୍ୟବୀରେ ।
ଦେଖିଲେ ସେ ବନଯାକ ଦିଶଇ ଶୋଭନ
ଦ୍ୱିତୀୟ ବୈକୁଣ୍ଠ ପ୍ରାୟ ପ୍ରକାଶେ ସେ ସ୍ଥାନ ।
ଅସୁର ଦେଖି ତାହାକୁ ବହୁ ପ୍ରଶଂସିଲେ
ପ୍ରଶଂସା କରିଣ ପୁଣି ମନେ ଶଙ୍କା କଲେ ।
ବୋଲନ୍ତି ବାନ୍ଧିଛି କେଡ଼େ ଗଡ଼ ନରସିଂହ
ଆମ୍ଭେ ତ ଦେଖି ଏହା ନ ଥିଲୁଁ ତିନିସ୍ୱର୍ଗ ।

ଏ ରୂପେ ବୋଲି ଆନନ୍ଦ ବନେ ଦୈତ୍ୟଯାଇଁ
ଗଡ଼ରେ ପଶି ନ ପାରି ରହିଲେକ ତହିଁ ।
ବଦୟନ୍ତି ବେଦବ୍ରହ୍ମା ଶୁଣ ହେ ନାରଦ
ନୃସିଂହ ପୁରାଣ ଏହି ଅଟେ ମୋକ୍ଷପ୍ରଦ ।
ଚତୁର୍ଥ ସାଗର ଏହି ଅଟେ ଗ୍ରନ୍ଥ ରସ
ସମ୍ପୂର୍ଣ୍ଣେ ଶୁଣିଲେ ଏହା ଖଣ୍ଡଇ ଯେ କ୍ଲେଶ ।
ଦେବଙ୍କୁ କ୍ଲେଶୁ ରଖନ୍ତି ଯେହ୍ନେ ଚକ୍ରପାଣି
ଶୁଣିଲେ ତରିବେ ସେହିରୂପେ ସର୍ବପ୍ରାଣୀ ।
ଅନୁକୂଳେ ଶ୍ରୀନୃସିଂହ ନାମ ଅଟେ ମୂଳ
ନିମିଷେ ଭାବିଲେ ପାଇ କୋଟି ତୀର୍ଥ ଫଳ ।
ଶ୍ରୀସତ୍ୟଯୁଗ ଗ୍ରନ୍ଥ ଏ ଅଟଇ ପୁରାଣ
ଏ ଗ୍ରନ୍ଥ ଉତ୍ତାରେ ହେଲା ଯାବତ ବଖାଣ ।
ମଧୁକଇଟଭ ମୁର ଦାରୁଣ ସମ୍ବର
ଏ ଦୈତ୍ୟମାନେ ଜନ୍ମିଲେ ଆଦ୍ୟ ଅବତାର ।
ଶାରଦା ମାତାର ଆଜ୍ଞାହେଲା ଜାଣ ମୋତେ
ତେଣୁ ଏହି ପୁରାଣକୁ ଲେଖଇ ପ୍ରାକୃତେ ।
ଶାରଦା ଲକ୍ଷ୍ମୀର ପାଦପଦ୍ମେ ସେବା ମୋର
ଏ ଭବସାଗରୁ ମୋତେ ତାରିବେ ଶ୍ରୀଧର ।
ଯାହାର ନାମ ଧରନ୍ତେ ତୁଟେ ରୋଗବ୍ୟାଧି
ଯାହାର ନାମ ଧରନ୍ତେ ତୁଟେ ମାୟାବନ୍ଧୀ ।
ଯାହାର ନାମ ଧରନ୍ତେ ତୁଟେ ମନୁଭ୍ରାନ୍ତି
ଯା ନାମ ଧରନ୍ତେ ଖଣ୍ଡେ ସକଳ ବିପତ୍ତି ।
ଯାହାର ନାମ ଧରନ୍ତେ ଲକ୍ଷ୍ମୀ ପରାପତ
ଯାହାର ନାମ ଧରନ୍ତେ ଆୟୁଷ ବର୍ଦ୍ଧିତ ।
ଯାହାର ନାମ ଧରନ୍ତେ ଋଷି ତପଶାଳୀ
ମାନବ ଜନ୍ମେ ହେବ କି ମୁହିଁ ତେଡ଼େ ଭଳି ।
ହେ ସାଧୁଜନେ ମାୟାରୁ ମୋତେ ତାରିରଖ
ମାୟାଲାଗି ଭଜି ମୁଁ ନ ପାରେ ପଦ୍ମମୁଖ ।
ଯାବତ କାୟା ତାବତ ମାୟା ଜାଣଘୋଟେ
ତାବତ ମାୟାରୁ ଭଜି ନ ପାରେ ମୁଁ ଆମ୍ଭେ ।
ସ୍ୱପନରେ ଆଜ୍ଞା ମୋତେ ଦେଲେ ଠାକୁରାଣୀ
ବୋଇଲେ ମାୟାକୁ ତୁରେ ଡରୁଛୁ କି ଶୁଣି ।
ଦେହକୁ ଧରି ଜନ୍ମନ୍ତି ଜାଣୁ ଯେତେ ନରେ
ମାୟାକୁ ଛାଡ଼ି ନାହାନ୍ତି କେହି ଏ ସଂସାରେ ।
ଦଇବୀ ମାୟାକୁ ତୁହି ଯେବେ ଏତେ ଡରୁ
ପଢ଼ ଏ ନୃସିଂହ ଗ୍ରନ୍ଥ ତରିବୁ ସଂସାରୁ ।
ଶ୍ରୀ ନୃସିଂହ ଅବତାର ଅଟେ ଆଦି ଜନ୍ମ
ଏ ନୃସିଂହ ଅଂଶୁ ଜନ୍ମି ମାରିବେ ହିରଣ୍ୟ ।
ହେବେ ଏହି ନୃସିଂହଟି ଦଶ ଅବତାର
ଜନମିଣ ବାରେ ବାରେ ମାରିବେ ଅସୁର ।
ତରିବା ନିମନ୍ତେ କହିଦେଲେ ମୁକ୍ତିବାଟ
ବ୍ୟାସ ଋଷିଙ୍କ କୃତ ଏ ସଂସାରରେ ପାଟ ।
ହେ ସାଧୁ ସୁଜ୍ଞଜନେ ନ ଧର ମୋର ଦୋଷ
ବିପ୍ର ପୀତାମ୍ବର ମୁହିଁ ବାଲୁକେଶ ଶିଷ୍ୟ ।



## ବୃକାସୁର ଆଦି ଅଷ୍ଟସେନାପତିଙ୍କର ଯୁଦ୍ଧ ଓ ମୃତ୍ୟୁ

ନୃସିଂହ ପୁରାଣ ବାଣୀ କହିବା ହୋ ଶୁଣ
ପଡ଼ନ୍ତେ ମୁରର ଅଷ୍ଟସେନା ତୋଟାରେଣ ।
ପ୍ରଭୁ ମନ୍ତ୍ରୀକି କହିଲେ ସୈନ୍ୟ ସଜକର
ଦୈତ୍ୟ ଲୋଚା ଏକ ପେଶିଅଛି ମୁରାସୁର ।
ଆଠଲକ୍ଷ ସୈନ୍ୟ ପୁଣି ଅଛନ୍ତି ଯେ ଆସି
ପଦାକୁ ଗଲେ ବୁଝିବା ସିନା କଥା ବସି ।
ଶୁଣିଣ ସୁଜାଣ ମନ୍ତ୍ରୀ ସୈନ୍ୟକୁ ଡାକନ୍ତେ
ନୃସିଂହ ଛାମୁରେ ଆସି ମିଳିଲେ ସମସ୍ତେ ।
କର୍ଣ୍ଣାଟେଶ୍ୱର ନୃସିଂହଠାରୁ ଆଜ୍ଞା ପାଇ
ଆସଇ ଛାମୁକୁ ସେହି ନୂଆବେଶ ହୋଇ ।
ତଥିପରେ ଉତ୍ତରୀୟ ହୋଇଅଛି ଛନ୍ଦି
ବାନ୍ଧି ଅଛନ୍ତି ମଥାରେ ସଟା କରିପାଗ
ସୁବର୍ଣ୍ଣ ମୁକୁଟ ପ୍ରଭା ଅତ୍ୟନ୍ତ ସରାଗ ।
ଲମ୍ବାଇ ଯେ ପାଟପୁଲି ମୁକ୍ତା କେରି କେରି
କପାଳେ ହରିମନ୍ଦିର ଚିତା ଦିଶେ ବାରି ।
କର୍ଣ୍ଣରେ କୁଣ୍ଡଳ ଦିଶେ ଗୁରୁ ଶୁକ୍ର ପ୍ରାୟେ
ତଥି ଉପରେ ଲମ୍ବଇ ମାଣିକ୍ୟ କେରାଏ ।
ମୁକ୍ତା ହୀରାଲୀଳା ସ୍ୱର୍ଣ୍ଣ କଣ୍ଠି ମାଳ ମାଳ
ନକ୍ଷତ୍ର ପନ୍ତି ପରାୟେ ରାଜେ କଣ୍ଠ ତଳ ।
ସହସ୍ର ଦଳ କମଳ ପ୍ରାୟ ହୃଦଗତେ
ପଦକ ଅଛି ପ୍ରତିମା ତହିଁ ଶତେ ଶତେ ।
ଆବର ଅଳଙ୍କାର ଯେ ନାନାବର୍ଣ୍ଣେ ଖଞ୍ଜା ।
ଭୂଷିତ ହୋଇଣ ଆସେ କର୍ଣ୍ଣାଟେଶ ରାଜା ।
କେତକୀ ଫୁଲରୁ ସେହୁ ପାଖୁଡ଼ାଏ କାଢ଼ି
ମଥାରେ ଖଞ୍ଜିଛି ପିଠିଯାଏ ଅଛି ପଡ଼ି ।
ସୁବର୍ଣ୍ଣ ଘାଗୁଡ଼ି କଟିତଟେ ପୁଞ୍ଜା ପୁଞ୍ଜା
ବାହାରେ ବାହୁଟି ମୋଡ଼ା ଶିଶୁଳି ଯେ ଖଞ୍ଜା
ଉଢ଼େ ଫର ଫର ଆଡ଼ ପଣନ୍ତର ଫେର
ବାଳ ଆଦିତ୍ୟପରାୟ ଦିଶେ ଜ୍ୟୋତି ତାର ।
ଅଙ୍ଗରେ ସରୁ ସୁଝୀନ ପତନ ଯେ ଭିଡ଼ି
ତା ଉପରେ ଅଷ୍ଟରତ୍ନ ମେଖଳାଏ ପଡ଼ି ।
ଜାନୁର ଉପରେ ପୁଣି ଲମ୍ବେ ମୋତି ଝରା
ଚାହିଁବା ଲୋକେ ଯେଦେଖି ହ୍ମନ୍ତିମନେ ତୋରା

ଧନୁ ତୀର କମାଣ ଯେ ନାନା ଅସ୍ତ୍ର ଧରି
ନୃସିଂହ ଛାମୁରେ ଉଭା ହେଲା ଅପସରୀ ।
ଶ୍ରୀନୃସିଂହ ପ୍ରଭା ଦେଖି ହେଲେ ହସ ହସ
ବୋଇଲେ କର୍ଣ୍ଣାଟେଶ୍ୱର ହେଲେ ଆଚ୍ଛାବେଶ
ଏଥିଅନ୍ତେ ସେ ସୁଜାଣ ନାମେ ମନ୍ତ୍ରୀବର
ସେ ମଧ୍ୟ ସୁବେଶ ହୋଇ ଅଇଲେ ଛାମୁର ।
ମଥାରେ ଅନେକ ପୁଷ୍ପ ଗୁଛି ସେହି ଖଞ୍ଜି
ଗଳାରେ ମୁକ୍ତାମାଳ ଲମ୍ବେ ପୁଞ୍ଜି ପୁଞ୍ଜି ।
ଗୁରୁଶୁକ୍ର ପ୍ରାୟେ କର୍ଣ୍ଣେ କୁଣ୍ଡଳ ଯେ ଦିଶେ
ଶ୍ରୀହରି ମନ୍ଦିର ଚିତା ଲଲାଟେ ପ୍ରକାଶେ ।
ସୁରଙ୍ଗି ପାଟର ଛତା ଦିବ୍ୟ ପରିଚ୍ଛଦ
ନାନାଦି ଅଳଙ୍କାରରେ ଭୂଷଣ ଯେ ହୃଦ ।
ଆବର ଯେ ଧନୁତୂଣ ଧରି ମନ୍ତ୍ରୀବର
ନୃସିଂହ ଛାମୁରେ ଆସି ଭେଟିଲା ତତ୍ପର ।
ଦେଖି ଶ୍ରୀନୃସିଂହ ପ୍ରଭୁ ବହୁ ଶ୍ରଦ୍ଧାହେଲେ
ଏଥି ଉତ୍ତାରେ ଗରୁଡ଼ ଆସି ବିଜେକଲେ ।
ବଢ଼ାଇ ଶତେ ଯୋଜନ ଯାଏ କାୟାଗୋଟି
ପଚାଶ ଯୋଜନ ଯାଏ ବିସ୍ତାର ତା ପିଠି ।
ତେପନ ଯୋଜନଯାଏ ବିସ୍ତାରିଛି ଡେଣା
ଆବର ତା କେଶମାନ ଅଟେ ଅକଳନା ।
ନାସାଗ୍ର ହରିମନ୍ଦିର ଚିତା କେଶଯାଏ
ଶ୍ରବଣେ କୁଣ୍ଡଳେ ଦିଶେ ଗୁରୁ ଶୁକ୍ର ପ୍ରାୟେ
ଗଳାରେ ମୁକୁତାମାଳ ଲମ୍ବେ ପୁଞ୍ଜି ପୁଞ୍ଜି
ବେଣୀରେ ସୁବର୍ଣ୍ଣ ଝରା ଶତ ଶତ ଖଞ୍ଜି ।
କାନ୍ଧରେ ପଇତା ନବଗୁଣେ ଅଛି ପଡ଼ି
କଣ୍ଠରେ ଯେ ନବରତ୍ନ ଲମ୍ବେ ଯୋଡ଼ିଯୋଡ଼ି
ଅଣ୍ଟାରେ ଶୋଭିତ ରଙ୍ଗ ପାଟଫୁଲି ଛନ୍ଦେ
ଓହଳି ପଡ଼ିଛି ପିଠିଯାକୁ ନାଗବନ୍ଧେ ।
କାହାର ସୁଗନ୍ଧ ବୋଳା ଦାଢ଼ି ଦିଶେ କଳା
ଶୋଭଇ ବେନି ହସ୍ତରେ ହୀରା ବେନିମାଳା ।
ଦେହରେ ଯେ ଅଳଙ୍କାର ଦିଶେ ଝଟ ଝଟ
ତହିଁକି ଯେ ଶୋଭାବନ ସବୁ ରଙ୍ଗ ପାଟ ।
ଉପରେ ଖଞ୍ଜିଛି ଝୀନ ମଞ୍ଜିଷ୍ଠାର ଶାଢ଼ୀ
ବସିଛି ସୁବର୍ଣ୍ଣ କାମମାନ ଧାଡ଼ି ଧାଡ଼ି ।
କଙ୍କଣ ତ ବେନିକରେ ବାଜେ ରୁଣୁ ଝୁଣ
ପାଦରେ ନୂପୁର ବେନି ଶୁଭେ ଝମ ଝମ ।
ଶିରରେ ସେ ମଣ୍ଡିଅଛି ଜବାପୁଷ୍ପ ଗଭା
ଉଦୟକାଳରେ ଯେହ୍ନେ ସୂର୍ଯ୍ୟ ଜ୍ୟୋତିପ୍ରଭା
ଜାନୁରେ ଘଣ୍ଟି ଘାଗୁଡ଼ି ଘଣ୍ଟା ଅଛି ବାନ୍ଧି
ଚଳିବା ଚଞ୍ଚଳ ନାଦେ ଉଛୁଳେ ସ୍ୱର୍ଣ୍ଣାଦି ।
ଚରଣ ତୋଡ଼ରେ ବାନ୍ଧିଅଛି ମୋତି ଜରା
ତାହା ମଧ୍ୟେ ବିରାଜଇ ପଦ୍ମ ରାଗ ହୀରା ।
ପାଦ ଅଙ୍ଗୁଷ୍ଠିରୁ ଅଣ୍ଟାଠାରୁ କଣ୍ଠଯାଏ
ସୁବର୍ଣ୍ଣ ଘାଗୁଡ଼ି ଖଞ୍ଜି ଚାଲେ ପକ୍ଷୀରାୟେ ।
ନିଃଶ୍ୱାସ ପବନ ବାଜି ମୁଖନିଶ ହଲେ
ପହଣ୍ଡି ବିଜେ ପରାୟେ ଚାଲେଗେଲେଗେଲେ
ପିଠିର ଉପରେ ପୁଣି ଲମ୍ବିଅଛି ବେଣୀ
ବାସୁକୀ ଶିରରେ ଯେହ୍ନେ ଶୋହେ ସପ୍ତଫେଣୀ
କର୍ଣ୍ଣରେ ମୁକୁତା ମାଳି ଲମ୍ବେ କେରା କେରା
କପାଳେ ହୀରାପଦକ ଝମକାଇ ତୋରା ।
ମଞ୍ଜିଷ୍ଠା ପାଟର ଶାଢ଼ୀ ମାଲବନ୍ଧେ ଭିଡ଼ି
ଦୋଷଡ଼ା କରନ୍ତି ସବୁ ଝୀନ ପାଟଶାଢ଼ୀ ।
ହୀରାର ଦର୍ପଣ ଗୋଟି ନେତ୍ର ଅଗ୍ରେଶୋହେ
ଚାହିଁବାମାତ୍ରେ ତା ଦେହ ଦିଶେ ଆଲୋମୟ
ଡେଣାକେ ଚିରାଳମାନ ଲମ୍ବେ ଶତେ ଶତେ
ଶୂନ୍ୟରେ ଷାଠିଏ ଯୁଣ ଉଡ଼େ ଅପ୍ରମିତେ ।
ତାମ୍ବୁଲ କର୍ପୂର ସଜ ମରିଚ ଚୋବାଇ
ନିଶକୁ ସେ ମୋଡ଼ି ମୋଡ଼ି ଚାଲେ ଶ୍ରଦ୍ଧାବହି
ତ୍ରିଭଙ୍ଗି ଛନ୍ଦରେ ଉଭାହୋଇ ଚାଲେ ଢଳି
ଶ୍ରୀହରିର ନାମ ପଢ଼ିମାରେ କରତାଳି ।
ଶ୍ରୀନୃସିଂହ ଦେଖି ତାହା ବହୁ ଶ୍ରଦ୍ଧା କଲେ
ଗରୁଡ଼ କଣ୍ଠେ ଅକ୍ଷୟମାଳା ନେଇ ଦେଲେ ।
ବୋଇଲେ ମୁହିଁ ତୋହର ଅଙ୍ଗେ ଗୁରୁଦେବ ।
ସଂସାର ଶୃଙ୍ଗମୁଣ୍ଡେ ତୋ ବିହାର ଏ ଧ୍ରୁବ ।
ସଂସାରେ ଶୃଙ୍ଗ ମୁଣ୍ଡେ ଯେ ମୁଦ୍ରା ଛନ୍ଦିଥାଇ
ସେ ମୁଦ୍ରା ଛିଡ଼ିଲା ଲୋକେ ନିଶେଁ ମୃତ୍ୟୁପାଇ
ସେମୁଦ୍ରାସ୍ଥାନେ ଯେହେତୁ ରଖିଥାଇ ନିତ୍ୟେ
ତାହାର ଦେହେ ରୋଗ ନପଶେ କଦାଚିତେ
ତ୍ରିକୂଟେ ତିନି ତିହୁଡ଼ି ଯେଉଁ ମୁଦ୍ରା ସ୍ଥାନ
ସେ ସ୍ଥାନ ଶିକୁଳିଛନ୍ଦେ ବିଜେ ଭଗବାନ ।
ସଂସାରେ ବାଳକ ବୃଦ୍ଧା ଯୁବା ଯେବେ ଥାଇ
ଶିକୁଳୀଛିଣ୍ଡା ଦିନ ନ ପାରେ ରଖି କେହି ।
ଶିକୁଳୀ ଅଷ୍ଟଉତ୍ତର ଯାଏ ମାଳ ଅଛି
ସବୁଖଞ୍ଜି ଦେଇଛନ୍ତି ପ୍ରଭୁ ଶିରୀବତ୍ସି ।
ଶିକୁଳୀ ମାଳରେ ଯେତେ ଯେହୁ ଆଣିଥାଇ
ତେତିକି ବରଷ ଭୋଗ କରି ମରିଯାଇ ।
ସେ ଶିକୁଳୀମାଳା ପୁରା ହୋଇ ଯାଉ ଥିବ
ଶତେକ ଉପରେ ଆଠ ବରଷ ଭୋଗିବ ।
ମୋହର ମନ ଗରୁଡ଼ ଏକା ସିନା ଜାଣେ
ସବୁରି ମନ କଥା ମୁଁ ଜାଣେ ତତକ୍ଷଣେ ।

ଏଣୁ ମୁଁ ସବୁରି ପରେ ଅଟେ ଭଗବତ
ଶ୍ରୀଭାଗବତଙ୍କ ଭାରା ବହନ୍ତି ପଣ୍ଡିତ ।
ମୁଁ ଯେବେ ନୃସିଂହ ରୂପ ହେବି ଆଜ ଜାଣ
ସବୁ ନୃସିଂହ ବସନ୍ତୁ ତୋର ପିଠିରେଣ ।
ଲକ୍ଷେ ନୃସିଂହ ପ୍ରକାଶି ହେବି ନିଜଦେହ
ତୁ ଲକ୍ଷେ ଗରୁଡ଼ ହୋଇ ନୃସିଂହଙ୍କୁ ବହ ।
ଶୁଣି ଖଗେଶ୍ୱର ସେହି ଆଜ୍ଞା ପରମାଣେ
ଲକ୍ଷେକ ଗରୁଡ଼ ରୂପ ହେଲା ତତକ୍ଷଣ ।
ଦେଖିଣ ନୃସିଂହ ସ୍ୱାମୀ ଶ୍ରଦ୍ଧା ଯେ ବହିଲେ
ଶ୍ରୀନୃସିଂହ ଲକ୍ଷେ ମୂର୍ତ୍ତି ଅଙ୍ଗୁ ଜାତକଲେ ।
ଶଙ୍ଖ ଚକ୍ର ଗଦା ପଦ୍ମ ଶ୍ରୀହସ୍ତରେ ଧରି
ଅଟନ୍ତି ନୃସିଂହ ରୂପ ସବୁ ଏକା ହରି ।
ସବୁରି କରେ କମାଣ ଧନୁ ତୀର ଶକ୍ତି
ପରିଘ ଖପର ଭୂଷା ଶୂଳ ଛୁରୀ କାତି ।
ବାମେ ଯମଦାଢ଼ ଯେ ଦକ୍ଷିଣେ ଖଣ୍ଡା ଫେରି
ଶୁଣହେ ନାରଦ କହୁଛନ୍ତି ମୁଖଚାରି ।
କୁବେରା ମେଘା ବରୁଣା ଶର ନଇର୍ଋତା
ପବନା ମୋହନା କାଳପାଶ ପରବତା ।
ଦହନା ଶୋଷନା ଅଗ୍ନିଶର ଅସିବର
ବାବଲ ଯେ ମନଭେଦୀ ଆପବର ମୁଦଗର ।
ପାତାଳେ ଯେ ଦୁର୍ଗଭେଦୀ ମଞ୍ଚଭେଦୀ ମୁନା
ସ୍ତମ୍ଭନ ମୋହନ ବଶ ଗୋଟିକା ଅଙ୍ଗନା ।
ଶକତି କୁନ୍ତ ତ୍ରିମୁନା ଯଷ୍ଟି ଶୂଳ ଲେଛି
ପିନାକ ଅକ୍ଷୟ ପାଶୁପତ ବ୍ରହ୍ମଶକ୍ତି ।
ଦୋକାନା ଯେ ଏକମୁନା ଲଙ୍କା ଆରକନ
ମୁରାରୀ ବେତାଳ ଅର୍ଦ୍ଧଚନ୍ଦ୍ର ସୁଦର୍ଶନ ।
ଅକାଳ ତ୍ରିକାଳ ମହାକାଳ ଏକଘେନି
ଗରଡ଼ା କୁହୁଡ଼ି ଅହିଶର ବଜ୍ର ଧ୍ୱନି ।
ଉଡ଼ାଇ ବୁଡ଼ାଇ ଆଉ ତାଡ଼ନ ମାରଣ
ଭୈରବ ସିଂହନାଦ ବିଜୟା ଜୟବାଣ ।
କୈମୋଦକୀ ବିଷ୍ଣୁବାଣ ଆବର ଅଭଙ୍ଗ
ଏ ରୂପେ ନାରାଚ ଧରି ଜନ୍ମିଲେ ନୃସିଂହ ।
ଶଙ୍ଖ ଚକ୍ର ଗଦା ପଦ୍ମ ସର୍ବେ ଚତୁର୍ଭୁଜ
ବହି ଏହାକୁ ପାରଇ ଏକା ପକ୍ଷୀରାଜ ।
ବୋଲେ କେଡ଼େ ପୁଣ୍ୟଅଟେ ମୋରଶରୀରଟି
ଶ୍ରୀନୃସିଂହ ବିଷ୍ଣୁମାନେ ବସିବେ ମୋ ପିଠି
ଏତେ ବୋଲି ସମସ୍ତେ ଶ୍ରୀନୃସିଂହ ବିଷ୍ଣୁଙ୍କୁ
ପ୍ରଣାମ କରି କହିଲେ ପୃଷ୍ଟେ ସମସ୍ତଙ୍କୁ ।
ଦେବଯାନ ରଥେ ବିଜେ ଶେଷଦେବ କଲେ
ବାମକରେ ଧନୁଧରି ନିଶ ଆଉଁଷିଲେ ।
ବୋଇଲେ ଦୈତ୍ୟେଆଜିକି ଯିବେପ୍ରାଣଘେନି
ମୁରାସୁର ଲାଗି ସର୍ବେ ଗଲେ ସଂଯମନୀ ।
ଏ ରୂପେ ବୋଲି ମୁକୁଟ ପ୍ରାୟ ଫଣା ଡେରି
ଉଠିଲେ ସିନ୍ଧୁ ଲହରି ପ୍ରାୟ ଫୁ ଫୁ କରି ।
ଗରୁଡ଼ ଉପରେ ଯାଇ ବସିଲେ ନୃହରି
ଦେବଯାନ ରଥେ ଶେଷଦେବ ବିଜେକରି ।
ଉଡ଼ନ୍ତି ଶ୍ୱେତ ଫରୁଆମାନେ ରାଜହଂସ
ଯାତ୍ରା କରନ୍ତି ଏମାନେ ଦେଖି ହୃଷୀକେଶ ।
ଶ୍ରୀଭାଗବତୀ ବନ୍ଦାନ୍ତି ଘେନି ଅର୍ଘ୍ୟଥାଳି
ଚୌଷଠି ସହସ୍ର କନ୍ୟା ଦ୍ୟନ୍ତି ହୁଳହୁଳି ।
ଅଷ୍ଟସଖୀଙ୍କର ମଧ୍ୟେ ବିଜେ କମଳିନୀ
ମନରେ ପାଞ୍ଚନ୍ତି ଇଳାଦେବୀ ଶୁଭବାଣୀ ।
କରନ୍ତେ କୃଷ୍ଣବଲ୍ଲଭ ରାଜା ଆଶୀର୍ବାଦ
ବ୍ରାହ୍ମଣମାନେ ପଢ଼ନ୍ତି ଆଗେ ଚାରିବେଦ ।
ଟମକ ନିଶାଣ ନାଦେ କମ୍ପେ ଦଶଦିଶ
ଘଣ୍ଟା ଶବଦ ଉଚ୍ଛୁଳି ପଡ଼େ ତିନି ସ୍ୱର୍ଗ ।
ସିଂହଦ୍ୱାର ବାଟେ ଚଳିଗଲେ ସୈନ୍ୟଗଣ
ଆଗରେ ଯେ ଆଗୁଆଣି ମନ୍ତ୍ରୀ ସେହୁ ଜାଣ ।
ବଦ୍ରିକା ସିଂହଦ୍ୱାରୁ ଉପବନ ଯାଏ
ଦିଶନ୍ତି ନୃସିଂହଗଣ ପୁରି ତେଜୋମୟ ।
ସୁଜାଣ ମନ୍ତ୍ରୀ ଚଳନ୍ତି କର୍ଣ୍ଣାଟେଶ ସଙ୍ଗେ
ଚଳନ୍ତି ଯେ ତିନିପଦ୍ମ ସୈନ୍ୟ ଘେନି ସଙ୍ଗେ
ଗରୁଡ଼ ଉପରେ ବସି ବିଜେ ନରହରି
ଗୀତ ଗାବନ୍ତି କନଡ଼ା ରାଗେ ଅପସରୀ ।
ବାଜେ ଝଞ୍ଜାଳ ମର୍ଦ୍ଦଳ ହୋଇ ଦମ ଦମ
ଟମକ ଘଣ୍ଟି ଘାଗୁଡ଼ି ଘଣ୍ଟା ଝମ ଝମ ।
ବାଜେ ଦମା ଦୁଲୁ ଦୁଲୁ ହୋଇ ଘଡ଼ିଘଡ଼ି
ଶୁଜଇ ଘୁମୁରା ଘୁମୁଘୁମୁ ନାଦ ରଡ଼ି ।
ବାଜଇ ଯାମଳ ଘୋଡ଼ା ଶଙ୍ଖ ଆଗେ ଆଗେ
ଶୂନ୍ୟରେ ଚିରାଳମାନ ଉଡ଼େ ଚଉଦିଗେ ।
ଏରୂପେ ସଇନି ଘେନିଗଲେ ବେନିଭାଇ
ପ୍ରଭୁ ଗହଣ ଦେଖନ୍ତି ଦେବେ ଶୂନ୍ୟେଥାଇ ।
ବ୍ରହ୍ମା ସହିତରେ ଇନ୍ଦ୍ର ଆଦି ସୁରଗଣ
ଈଶ୍ୱର କୁବେର ଯମ ଅଗ୍ନି ସହିତେଣ ।
ନଇର୍ଋତ ଦିବାକର ପବନ ବରୁଣ
ରାହୁ ମଙ୍ଗଳ ଭାର୍ଗବ ଶଶୀ ଶନି ପୁଣ ।
ଆବର ଯେ ବୃହସ୍ପତି ଚାର ବାର ତିଥି
କରଣ ଯୋଗଆଦି ଯେ ବ୍ରହ୍ମା ପୁତ୍ର ନାତି ।
ମରିଚି ଅଙ୍ଗିରା ଭୃଗୁ ବଶିଷ୍ଠ କଶ୍ୟପ
ସ୍ତୁତି କରନ୍ତି ସକଳେ ଦେଖି ପ୍ରଭୁରୂପ ।

ବୋଲନ୍ତି ଅଳ୍ପକେ ଯିବ ମୁରାସୁର ନାଶ
ହେଲାଣି ଚଉଦ ମନୁ ଦେଲା କେତେ କ୍ଳେଶ
ମନୁ ଗୋଟିକ ଯେ ବାଅସ୍ତରୀ ଗଣ୍ଡା ଯୁଗ
ବୁଡ଼ିଲା ଦୈତ୍ୟେର ଲାଗି ଆମ୍ଭ ସୁଖଭୋଗ ।
ତଥାପି ମଲେଣି ସେନାପତିଯାକ ଆସି
ଏଣିକି ତ ମୁର ମଲେ ହେବା ସ୍ୱର୍ଗବାସୀ ।
ଏରୂପେ ବୋଲିଣ ଦେବେ ଶୂନ୍ୟେ ସ୍ତୁତିକରି
ଚଳିଲେ ନୃସିଂହ ପାଦେ ନମି ଯେଝା ପୁରୀ ।
ଏଥୁ ଅନନ୍ତରେ ନରସିଂହ ମହାପ୍ରଭୁ
ଆନନ୍ଦବନେ ଦେଖିଲେ ଦୈତ୍ୟଯାକ ସବୁ ।
ପୁଛିଲେରେ କେତେତୁମ୍ଭେ ଅଟ ଯାତୁଧାନେ
କାହିଁକି ଆସି ପଶିଲ ବଳେ ମୋର ବନେ ।
ଯେବଣ ତୋଟା ମୋହର ପୃଥ୍ୱୀରେ ଅପୂର୍ବ
ସେ ବନେ ପଶି କରୁଛ କିମ୍ପା ଉପଦ୍ରବ ।
ଶୁଣି ଦୈତ୍ୟମାନେ ଉଠିଲେକ କରି କୋହ
ବୋଇଲେ ତୁମ୍ଭେ କି କୃଷ୍ଣବଲ୍ଲଭର ପୁଅ ।
ଆମ୍ଭର ଯେତେକ ସେନା ଏଥେ ଥିଲେ ଆସି
ସେମାନଙ୍କୁ ଖୋଜୁଛୁ ଏ ବନ ମଧ୍ୟେ ପଶି ।
ଏହି ବନକୁ ଆନନ୍ଦବନ ପରା ବୋଲି
ସଂସାରଯାକକୁ ନାମ ପଡ଼ିଛି ଉଛୁଳି ।
ଲୁଚାଇ ତୁମ୍ଭେ ତାହାଙ୍କୁ ରଖିଅଛ କହ
ଥିବା ଶୁଣି ଆମ୍ଭ ରାଜା କରିବେତ ସ୍ନେହ ।
ନୃସିଂହ ବୋଇଲେ ଆରେ ଗଲା ମଲା କଥା
ବୃହସ୍ପତି ହେଲେ କହି ନ ପାରଇ ମିଥ୍ୟା ।
ଶ୍ରୀଗୋବିନ୍ଦ ଖେଳ ଏହୁ ଅଟେ ବିଷ୍ଣୁ ମାୟା
ଜନ୍ମ ହୋଇଲେ ଜାଣ ମଲା ନିଶ୍ଚେ କାୟା ।
ଜନ୍ମିଲା ସେ ଆସି କାହୁଁ ମଲେ ଗଲା କାହିଁ
ଏ ବୁଇ ଚିହ୍ନିଲା ଲୋକ ଜାଣ ନାହିଁ କେହି
ଯହିଁରୁ ସେ ଆସିଥିଲା ସେଠାବକୁ ଗଲା
ସେ ସ୍ଥାନକୁ ତ ଚିହ୍ନି ଯେ ବୋଲୁ ମଲା ମଲା
ତହିଁକି ଯେ ଉପଲକ୍ଷ୍ୟ ଶୁଣି ଦୈତ୍ୟମାନେ
ଦୀପ ଲିଭାଇଦେଲେ ସେ ରହେ ଯେଉଁସ୍ଥାନେ
ସେହି ସ୍ଥାନରୁ ସେ ଆତ୍ମା ଆସି ଦେହ ବହେ
ଦେହକୁ ଛାଡ଼ିଗଲେ ସେ ଘଟେ ଜନ୍ମ ରହେ
ଏଣୁ ସେ ସ୍ଥାନେ ଜୀବର ଜାଣ ଗତାଗତ
ଲେଉଟି ଚୌଷଠିଯୋନି ଭ୍ରମେ ହୋଇଜାତ
ମଲା ଲୋକଙ୍କୁ ଖୋଜୁଛ ଆସିଯେବେ ତୁମ୍ଭେ
ଏଥର ମଲେ ଦେଖିବ ଯାଇ ଥିବାଠାବେ ।
ପବିତ୍ରବନ୍ତ ପବିତ୍ର ସ୍ଥାନେ ଯାଇ ଜନ୍ମେ
କପଟୀ ଲୋକ ଚୌଷଠି ଯୋନିମଧ୍ୟେ ଭ୍ରମେ ।

ଅଧର୍ମ ଅର୍ଜିଲା ପ୍ରାଣୀ ଅଳ୍ପେଯାଇ ନାଶ
ଧର୍ମବନ୍ତ ପ୍ରାଣୀର ବର୍ଦ୍ଧିତ ହୁଏ ବଂଶ ।
ଯାହାର ବାପ ଅଧର୍ମମାନ ଅର୍ଜୁଥାଇ
ତାର ପୁତ୍ର ନାତି ମହାଦରିଦ୍ର ହୁଅଇ ।
ଅଧର୍ମୀ ଲୋକର ବିତ୍ତ ବଢ଼େ ଅପ୍ରମିତ
ଛାଡ଼ିଲା ବେଳରେ ଯାଏ ସେ ମୂଳ ସହିତ ।
ତୁମ୍ଭ ରାଜା ଆମ୍ଭଠାରେ ମନେ ହିଂସାଧରି
ପୁତ୍ର ନାତି ଆଦିକରି ମଲେଣି ତାହାରି ।
ହିଂସ୍ରକ ଲୋକ ସଭିଙ୍କି ହୋଇଥାଏ ଭାରା
ପାପୀଲୋକଙ୍କ ଭରା ନ ବହେ ବସୁନ୍ଧରା ।
ଅଳ୍ପକେ ପରହିଂସ୍ରକ ଲୋକ ବୁଡ଼ିଯାଏ
ସୁକୃତବନ୍ତର ବଂଶବର୍ଦ୍ଧିତ ଯେ ହୁଏ ।
ଦୁଷ୍ଟ ମରଣେ ବୋଲାନ୍ତି ଭଲୁ ପାପ ଗଲା
ଉତ୍ତମ ଲୋକମରଣେ ବୋଲନ୍ତି କି ହେଲା ।
ସଂସାରେ କେହି ତ ଚିର ହୋଇ ନ ରହିବ
ତୁମ୍ଭେ ଆସିଅଛ ଏଥି ମୃତ୍ୟୁ କରିଠାବ ।
ଆମ୍ଭର ଗୃହେ ଯେ ଆମ୍ଭେ ସୁଖେ ଅଛୁ ରହି
ତୁମ୍ଭ ଇଚ୍ଛାରେ ମରୁଛ ତୁମ୍ଭେ ବଳେ ଧାଇଁ ।
ତଳେ ଡେଉଁଛ ଉପରେ ବୁଲେ କାଳଚକ୍ର
ପାପୀଙ୍କି ଜଗିଥାଆନ୍ତି ହୋଇ ଏହୁ ବକ୍ର ।
ମରିଯାଏ ଡେଉଁ ଡେଉଁ କେହୁ ତଳେ ପଡ଼ି
କାହାଗଲା କଟିଯାଏ କାଳଚକ୍ରେ ପଡ଼ି ।
ଏ କଥା ମୂର୍ଖଲୋକ ନପାରେ ହେତୁ କରି
ଧର୍ମରେ ରହି ଅଛଇ ସିନା ବସୁନ୍ଧରୀ ।
ଏବେ ଯେ ତୁମ୍ଭର ରାଜା ଅଛି ମୁରାସୁର
ସେ ହେଲେ ରହିବ କେତେଦିନ ହୋଇଚିର
ତୁମ୍ଭେବୋଲ ଆମ୍ଭେ ଆସିଅଛୁ ଖୋଜିଦୈତ୍ୟ
ତାହାଙ୍କ ପ୍ରାୟ ମରିବ ତୁମ୍ଭେ ଆଜି ସତ୍ୟ ।
ଏକଥା ନିଶ୍ଚୟ ଜାଣ ଅଟେ ବିଷ୍ଣୁ ମାୟା
ବିଷ୍ଣୁ ମାୟାରୁ ବଞ୍ଚିକେ ଧରିନାହିଁ କାୟା ।
ଶ୍ରୀନୃସିଂହ କଥାଶୁଣି କଲେଦୈତ୍ୟ କୋପ
କେ ବୋଲେକେବଣ ବିଷ୍ଣୁଅଟଇ ତୋ ବାପ
କୃଷ୍ଣ ବଲ୍ଲଭର ପୁଅ ଅଟ ତୁମ୍ଭେ ଦୁଇ
ବିପ୍ରକୁଳେ ଜନ୍ମି ବୋଲୁଅଛ ବିଷ୍ଣୁ ମୁହିଁ ।
ନୃସିଂହ ବୋଇଲେ ବିଷ୍ଣୁ ଚିହ୍ନକିରେଦୈତ୍ୟ
ବୁଝିଲେ ଯେ ବିଷ୍ଣୁ ସବୁଙ୍କର ତାତମାତ ।
ସକଳ ଘଟରେ ଆତ୍ମା ଏକା ବିଷ୍ଣୁ ଅଟେ
ବିଷ୍ଣୁଙ୍କୁ ଚିହ୍ନି କେହି ନପାରେ ସର୍ବଘଟେ ।
ଭକ୍ତଙ୍କୁ ଶ୍ରୀବିଷ୍ଣୁ ପାଦପଦ୍ମ ଏକା ଜଣା
ଦୁଇଗୋଟି ଚରଣ ସେ ଅଟେ ଅକଳଣା ।

ସେ ପାଦପଦ୍ମରୁ ଝରି ବହେ ମକରନ୍ଦ
ସେ ମକରନ୍ଦକୁ ଚୁମ୍ବି ମୋର ଭକ୍ତବୃନ୍ଦ ।
ସମସ୍ତେହିଁ ଚୁମ୍ବୁଥାନ୍ତି ରାତ୍ର ଦିବା ଝିଙ୍କି
ସେ ଝିଙ୍କାଝିଙ୍କି କଥା ନ ଜାଣେ କେହିବାକି
ସାକ୍ଷାତେ ସେ ପଦ୍ମ ପାଦ ଅଟେ ପରମାଣ
ଉତ୍ତମ ଶିଷ୍ୟେ ପଢ଼ାନ୍ତି ଗୁରୁ ଏହାଜାଣ ।
ଯେ କୃଷ୍ଣବଲ୍ଲଭ ଅଟେ ଆମ୍ଭ ପିତା ଜାଣ
ତାହାଙ୍କ ବୀର୍ଯ୍ୟରୁ ଆମ୍ଭ ଦେହ ବିଦ୍ୟମାନ ।
ଆମ୍ଭେଟି ଜାଣ ସର୍ଜନା କରୁଛୁ ଏ ସୃଷ୍ଟି
ଆମ୍ଭେ ଯେ ଥାପିଛୁ ବ୍ରହ୍ମା କରି ପରମେଷ୍ଠୀ ।
ଆମ୍ଭେ ସେ ରୁଦ୍ରଙ୍କୁ ବ୍ରହ୍ମାଣ୍ଡରେ ଜାତକଲୁ
ଆମ୍ଭେ ଯେ ନେଇ ଇନ୍ଦ୍ରଙ୍କୁ ସ୍ୱର୍ଗେ ବସାଇଲୁ ।
ଆମ୍ଭେ ଦଶଦିଗପାଳମାନ ଅଛୁ ସ୍ଥାପି
ଆମ୍ଭେସେ ବ୍ରହ୍ମାଣ୍ଡେ ଚନ୍ଦ୍ର ସୂର୍ଯ୍ୟଅଛୁ ରୋପି
ଆମ୍ଭେ ସେ ସଂସାରଯାକେ ଜଳ ବୃଷ୍ଟି କରୁ
ମନବୋଧକୁ ଯେ ମାତ୍ର ଯୋଗ ବାର ଧରୁ ।
ଶ୍ରୀବିଷ୍ଣୁ ଆଜ୍ଞାରେ ସିଁନା କଲେ ଜଳବୃଷ୍ଟି
ତହିଁକି ଚାହିଁ କହନ୍ତି ଯୋଗ ଜ୍ୟୋତିଷଟି ।
କେତେକ ବା ଘଟୁଥାଇ କେତେ ନ ଘଟଇ
ସବୁ କଥାକୁ ସତ୍ୟ ମୁଁ ଅଟେ ଭାବଗ୍ରାହୀ ।
ଆମ୍ଭେ ସେହି ବାସୁକୀକୁ ଅଛୁ ଜାତକରି
ବହିଛି ପଞ୍ଚାଶକୋଟି ପୃଥ୍ୱୀ ବସୁନ୍ଧରୀ ।
ଆମ୍ଭେ ଯେ ଶରୀରୁ ପବନକୁ ଜାତ କଲୁ
ସବୁଙ୍କରି ନାସାପୁଟେ ଛନ୍ଦି ବାନ୍ଧିଦେଲୁ ।
ପାଦେ ବାନ୍ଧନ୍ତେଣ ସେହି ହେଲା ପାଦଛନ୍ଦି
ଆମ୍ଭ ଶ୍ରୀପାଦପଦ୍ମ ନ ଚିହ୍ନି ହୁନ୍ତି ଧନ୍ଦି ।
ଆମ୍ଭ ପାଦପଦ୍ମ ଯେବେ ଚିହ୍ନରେ ଦଇତ୍ୟ
କାହିଁକି ହୁଅନ୍ତ ଅଳପକେ ମୃତ୍ୟୁଗତ ।
ଆମ୍ଭେ ଏକା ହେଉ ଜାଣ ଦଶଅବତାର
ଅସୁର ମାରିଣ ଚଳୁ ବଇକୁଣ୍ଠ ପୁର ।
ଚିହ୍ନନ୍ତି ଆମ୍ଭର ପାଦପଦ୍ମ ଶଙ୍କରଟି
ଆଉ ଚିହ୍ନନ୍ତି ଭୂଷଣ୍ଡ ଚିହ୍ନେ ପରମେଷ୍ଠୀ ।
ବଶିଷ୍ଟଙ୍କୁ ସେ ଭୂଷଣ କାକ ଚିହ୍ନାଇଛି,
ତେଣୁ ସେ ଆମର ହୋଇ ସର୍ବକାଳେ ଅଛି
ଚିହ୍ନନ୍ତି ଆମ୍ଭର ପଦ୍ମପାଦ ଭକ୍ତଜନ
ତାହାଙ୍କ ବ୍ୟତୀତ ଚିହ୍ନିନ ପାରେ କେ ଆନ
ଚିହ୍ନନ୍ତି ଆମ୍ଭର ପାଦ ଏକା ଋଷିମାନେ
ତେଣୁ ସେ ଅମର ହୋଇଛନ୍ତି ସବୁଦିନେ ।
ଆମ୍ଭର ପାଦପଦ୍ମକୁ ଯୋଗୀଜନେ ଚିହ୍ନି
ଲୋକଙ୍କୁ ପାରନ୍ତି ବୋଧି ସଂସାରେ ସେ ଜ୍ଞାନୀ

ଦୈତ୍ୟ ହେବାରୁ ଆମ୍ଭଙ୍କୁ ତୁମ୍ଭେ ନିନ୍ଦାକର
ଏହି ସକାଶୁରେ ଆସି ଅଳପକେ ମାର ।
ଶୁଣିଣ ଉଠିଲେ ଦୈତ୍ୟମାନେ କୋପକରି
ଯୁଦ୍ଧକୁ ସଜ ହୋଇଲେ ହସ୍ତେ ଧନୁ ଧରି ।
ଶ୍ରୀନୃସିଂହ ଆଜ୍ଞାକଲେ ଶୁଣ ମନ୍ତ୍ରୀବର
କର୍ଣ୍ଣାଟେଶ୍ୱରକୁ ଘେନି ଯୁଦ୍ଧ ବେଗେକର ।
ଅସୁରେ ଧନୁ ଧରିଣ ଯୁଦ୍ଧେ କଲେ ସଜ
ତୁମ୍ଭର ଯେ କରାମତି ଦେଖାଯିବ ଆଜ ।
ଲେଉଟି କହିଲେ ଗରୁଡ଼କୁ ନାରାୟଣ
ବୋଇଲେ କରିବା ଅସୁରଙ୍କୁ ସଂହାରଣ ।
ଶେଷଦେବଙ୍କୁ ଯେ ଆଜ୍ଞାକଲେ ପୁଣ ଚାହିଁ
ବୋଇଲେଟି ତାତପର୍ଯ୍ୟେ ଥିବ ଯୁଦ୍ଧେ ରହି ।
ଏ ରୂପେ କହି ଧଇଲେ ଧନୁ ନାରାୟଣ
ଅଜଗବ କୌମୋଦକୀ ଆଉ ସୁଦର୍ଶନ ।
ଆଦ୍ୟରେ ଯେ ବୃକାସୁର ବିନ୍ଧୁଶର ଟାଣି
ଛେଦିଲେ ତୀକ୍ଷ୍ଣ ନାରାଚେ ତାହା ନୃପମଣି ।
ବିଲଙ୍କା ଦେଶର ସେହୁ ଅଟେ ନୃପମଣି ।
ଲଙ୍କାଠାରୁ ଶତେଗୁଣ ତାର ନଗ୍ର ପୁଣି ।
ଦିଗବିଜେ କରି ମୁର ଆଣିଥିଲା ବରି
ସେ ଥାଟରେ ସେନାପତି ଅଟ ଅଧିକାରୀ ।
ତାହାର ତୁଲେ ଯୁଝନ୍ତି ପ୍ରଭୁ ନାରାୟଣ
ବେଳକୁ ବେଳ ଲାଗିଲା ଯୁଦ୍ଧ ଗୁରୁଟାଣ ।
ଲକ୍ଷେକ ପର୍ବତାଶର ଦ୍ୟନ୍ତି ବୃକା ଛାଡ଼ି
ତହିଁକି ସେ ବଜ୍ର ଶକ୍ତି ଦେଲେ ପ୍ରଭୁ ଆଡ଼ି ।
ସେ ବ୍ରଜ ଶକତି ବାଜି ଗିରିଡ଼େଣା ଯାକ
ତତକାଳେ ଛେଚି ତାହାଦେଲେ ପୁଣ୍ୟଶ୍ଳୋକ
ପଡ଼ିଲେ ପର୍ବତଯାକ ଜମ୍ବୁଦ୍ୱୀପେ ଯାଇ
ଦେଖିଣ ବୃକା ତାହାକୁ ବହୁ ପ୍ରଶଂସଇ ।
ସାଧୁରେ ବିପ୍ର ବୋଲିଣ ବହୁ ପ୍ରଶଂସିଲା
ପନ୍ନଗଶର ପୁଣି ସେ ଅର୍ବୁଦେ ବିନ୍ଧିଲା ।
ଦେଖି ଗରୁଡ଼କୁ ଭାଜିଗଲେ ସର୍ବ ଅହି
ତହିଁକି ଗରୁଡ଼ ଶର ବିନ୍ଧି ଭାବଗ୍ରାହୀ ।
ଛେଦିଲେ ସର୍ପଯାକକୁ ଗଲେ ଶର ଭକ୍ଷି
ତାହାଦେଖି ବୃକାସୁର ନ ପିଛାଡ଼େ ଆଖି ।
ପୁଣି ନାରାଚେ ସେ ଶତକୋଟି ଦେଲା ବିନ୍ଧି
ତୀକ୍ଷ୍ଣରେ ଛେଦିଲେକ ତାହା ଦୟାନିଧି ।
କୌସ୍ତୁଭ ନାମରେ ଶର ହସ୍ତେ ପ୍ରଭୁ ଧରି
ବିନ୍ଧିଲେକ ଆକର୍ଷିଣ ଚକ୍ରଗତି କରି ।
ଅସୁରର ଚାରିପାଖେ ଯେତେ ସୈନ୍ୟଥିଲେ
ତୁଳାକୁଢ଼ ପ୍ରାୟ ସେହି ଗଗନେ ରହିଲେ ।

ଶ୍ରୀନୃସିଂହ ମହାଯୁଦ୍ଧେ ଦେଖି ବୃକାସୁର
କୁହୁକ ବାଣ ବିନ୍ଧିଲା ହୋଇ ଆଗୁସାର ।
ପୃଥିବୀରୁ ଶୂନ୍ୟଯାଏ ଅନ୍ଧକାର ଦିଶି
ପୁଚ୍ଛନ୍ତି ଶେଷଦେବଙ୍କୁ ଚାହିଁ ପ୍ରଭୁ ହସି ।
ବୋଇଲେ କପଟଯୁଦ୍ଧ ଦେଖ ଦୈତ୍ୟକଲା
ଆମ୍ଭଙ୍କୁ ଲୁଚି ପଳାଇ ଯିବା ଅବା ଭଲ ।
ଶେଷଦେବ ବୋଇଲେ ଏକଥାନୁହେଁକେବେ
ଅପାର ସୈନ୍ୟ ଘେନିଣ ଅଛନ୍ତି ଦାନବେ ।
ପଳାଇ ଯିବାର କଥା କେବେ ନୁହେଁ ସ୍ୱାମୀ
ଆମ୍ଭଙ୍କୁ କପଟେ ଧରିନେବେ ଅନ୍ତର୍ଯ୍ୟାମୀ ।
ଏରୂପେ ବଚନ ଶେଷଦେବ କହୁଁ କହୁଁ
ଅନ୍ଧାରେ ବିନ୍ଧିଲା କାଳପାଶ ଦୈତ୍ୟରାହୁ ।
ଅନନ୍ତ ବୋଇଲେ କୂଟ କଲାଟି ଅସୁର
ଏଥକୁ ଉପାୟ ବେଗେ ଲକ୍ଷ୍ମୀକାନ୍ତ କର ।
ଶୁଣିଣ ତା ପ୍ରତିଅସ୍ତ୍ର କଲେ ନରହରି
ପେଶି ଛେଦିଦେଲେ ତାର ଜଳଧର ପୁରୀ ।
ଦେଖିଣ ସେ ବୃକାସୁର ମନେ କଲା ଶଙ୍କା
କହୁଁ କହୁଁ ନାରାଚକେ ବିନ୍ଧିଦେଲା ଏକା ।
ପୃଥିବୀରୁ ଶୂନ୍ୟଯାଏ କୁହୁଡ଼ି ଘୋଟନ୍ତେ
ଆପଣାଥାଟରେ ଯାଇ ପଶିଲା ଦଇତ୍ୟେ ।
ସେମାନଙ୍କ ସହିତରେ ବିଚାର ସେ କଲା
ବଦ୍ରିକାପୁରକୁ ଯାଇ ଆସୁଛି ବୋଇଲା ।
ତାହାର ଗୁପତ କଥା ସବୁ ଦୈତ୍ୟ ଜାଣି
ନୃସିଂହ ଥାଟରେ ପଶି କଲେ ଯୁଦ୍ଧ ପୁଣି ।
ଅନେକ କୂଟ ଛନ୍ଦ ସେ ଜାଣେ ବୃକାସୁର
ଦୁର୍ଗାଙ୍କୁ ସେବି ଶିଖିଛି ମନ୍ତ୍ର ଅଗୋଚର ।
ଯାହା ପାଞ୍ଚିବ ତତ୍କାଳେ ହୁଏ ତାହା ସିଦ୍ଧ
ଯେ ମନ୍ତ୍ର ନାମ ଓଁକାର ପରଂବ୍ରହ୍ମ ପଦ ।
ଓଁକାର ବ୍ରହ୍ମ ଅକ୍ଷରୁ ସମସ୍ତ ଉତ୍ପତ୍ତି
ଦଇବୀ ବିଦ୍ୟା ସକଳ ପ୍ରକାଶ ହୁଅନ୍ତି ।
ସେ ମନ୍ତ୍ର ଗୋଟିଏ ବୃକା ଦୁର୍ଗାଙ୍କ ପ୍ରସାଦେ ।
ଆବୃତ୍ତି କରିଣ ରଖିଅଛି ଆଣି ହୃଦେ ।
ଆପଣା ଥାଟୁ ଯୋଡ଼ିଏ ଧରି ଦୈତ୍ୟବୀର
ଗଙ୍ଗାତଟକୁ ଯେ ବୋଲି ଗଲା ବୃକାସୁର ।
ତାଙ୍କ ମୁଣ୍ଡ ହାଣି ଗଙ୍ଗାଜଳେ ବୁଡ଼ାଇଲା
କୂଳରେ ଥୋଇ ମୁଠାଏ ପାଣି ସିଞ୍ଚିଦେଲା ।
ବୋଇଲେ ନୃସିଂହ ଶେଷ ପ୍ରାୟ ତୁମ୍ଭେ ହୁଅ
ସେହି ସଦୃଶେ ତୁମ୍ଭର ଦିଶୁ ମୁଖ ଦେହ ।
ନୃସିଂହ ବେନି ଭାଇଙ୍କ ତୁଲ୍ୟ ଦିଶୁ ମୁଣ୍ଡ
ଲଲାଟ ନାସିକା ଚକ୍ଷୁ କର୍ଣ୍ଣ ଓଷ୍ଠ ତୁଣ୍ଡ ।
ହରିମନ୍ଦିର ଚିତା ନାସାଗ୍ର କେଶ ଯାଏ
ଦଶନପନ୍ତି ପ୍ରକାଶୁ ମୁଖେ ସେହି ପ୍ରାୟେ ।
ମନ୍ତ୍ର ବଳରେ ପାଞ୍ଚିଲା ବୃକା ସବୁ ଭାବି
କଉସ୍ତୁଭ ମଣି କଣ୍ଠେ ହୃଦେ ଅଛି ଲମ୍ବି ।
ଦିଶିଲା ଶ୍ରୀ ଶଙ୍ଖ ଚକ୍ର ଗଦା ପଦ୍ମ ଚିହ୍ନ
ଅଜଗବ କୌମୋଦକୀ ଆଉ ସୁଦର୍ଶନ ।
କନ୍ଧେ ବିରାଜଇ ଯଜ୍ଞ ଉପବୀତ ସୂତା
ହୃଦରେ ଶ୍ରୀବତ୍ସ ଚିହ୍ନ ଦିଶେ ଅପ୍ରମିତା ।
କର ପାଦବଲ୍ଲଭ ଯେ ଅଣ୍ଟା କଟିବେଢ଼
ଧଇଲେ ନୃସିଂହ ଶେଷ ରୂପ ଦୈତ୍ୟରାଢ଼ ।
ଗରୁଡ଼ ରୂପ ସିଦ୍ଧାନ୍ତ ମନ୍ତ୍ରେ ପୁଣି କଲା
ଦୈତ୍ୟ ମୁଣ୍ଡ ଗଣ୍ଡି ଗରୁଡ଼ରେ ବସାଇଲା ।
ବଦ୍ରିକାପୁରରେ ଯାଇ ହୋଇଲେ ପ୍ରବେଶ
ଯେବଣ ଠାବରେ ପୂରିଛନ୍ତି ନାରୀହଂସ ।
ବଲ୍ଲଭ ଯେ ଭଗବତୀ ବସିଛନ୍ତି ଚାହିଁ
ସେଠାବରେ ବେନିମୁଣ୍ଡ ପକାଇଲେ ନେଇ
ଗଣ୍ଡି ମୁଣ୍ଡକୁ ପକାଇ ତହିଁ ଯୋଡ଼ିଦେଲା
ପୁତ୍ର ତୋର ମଲେ ବୋଲି କୁହାଟି ଡାକିଲା
ଦେଖିଣ ବଲ୍ଲଭରାଜା ପୁତ୍ରଙ୍କ ବଦନ
ବସିବା ଠାବରେ ଢଳି ପଡ଼ିଲା ରାଜନ ।
ପ୍ରଥମରେ ନୃସିଂହର ମୁଖଗୋଟି ଚିହ୍ନି
ଶତଦଳ ପଦ୍ମପ୍ରାୟ ଦିଶଇ ମୁର୍ଦ୍ଧନୀ ।
ସୂର୍ଯ୍ୟର ଜ୍ୟୋତିପରାୟେ ଦିଶେ ଶେଷ ମଥା
ଦେଖି ଭଗବତୀର ନସ୍ଥୁରେ ତୁଣ୍ଡୁ କଥା
ନୃସିଂହ ମଥା ଧରନ୍ତେ ମାତା ପୁଣି ବୋଲି
ରୁଧିର ପଡୁଛି ଟୋପି ଟୋପି କଣ୍ଠୁଗଳି ।
ଶେଷଦେବ ମଥା କୃଷ୍ଣବଲ୍ଲଭ ଯେ ଆଣି
କାନ୍ଦନ୍ତି ଭୂମିରେ ଗଡ଼ି ପଡ଼ି ରାଜା ରାଣୀ ।
ଆହ ପୁତ୍ର ବୋଲି ରୋଦନ୍ତି ଯେ ବାପମାଏ
କେଣେ ଅନାଥ କରିଣ ଗଲ ବେନି ପୋଏ
ଆମ୍ଭଙ୍କୁ ତୁମ୍ଭ ମହିମା ସବୁ କହୁଥିଲ
ଛାର ଏ ଅସୁର ହସ୍ତେ ଅଖଡ଼େ ମରିଲ ।
ତୁମ୍ଭଙ୍କୁ ନଦେଖି ଆମ୍ଭେ ଜୀଇବୁ କି ଆଉ
ଆମ୍ଭ ପ୍ରାଣ ନାଶକର ଆଗେ ନେଇଯାଉ ।
ଦୈତ୍ୟଙ୍କ ମାୟାକୁ ବାବୁ ଜାଣି ନ ପାରିଲ
କି ଯୋଗରେ ଘରୁ ଯାଇ ବାହୁଡ଼ି ନଇଲ ।
ମଲି ଆରେ ବାପ ବୋଲି ଭଗବତୀ ରାଣୀ
ବଜ୍ରାଘାତ ହେଲା ପ୍ରାୟ ପଡ଼ିଲା ଧରଣୀ ।
ପୁଣି ଉଠି ପୁତ୍ରମୁଖ ଚାହିଁଲେ ତରାଟି
ଚକ୍ଷୁ ମୁଖ ନାସା କର୍ଣ୍ଣ ଓଷ୍ଠ ଦାନ୍ତ ପାଟି ।

ଦେଖି ଅଣ୍ଟା ପେଟ ଜାନୁ ଆଦି ପାଦଯାଏ
ରୋଦନ୍ତି ଚାହିଁଣ ସବୁଠାକୁ ବାପ ମାଏ ।
ଆହାରେ ପୁତ୍ର ବୋଲିଣ ଭଗବତୀ ମାତ
କେଶବାସ ଅସମ୍ଭାଳେ ପଡ଼େ ଭୂମିଗତ ।
ସହସ୍ର ଚନ୍ଦ୍ରର ଜ୍ୟୋତି ଦିଶେ ତୁମ୍ଭ ମୁଖ
ନୟନ ଯୁଗଳ ଦିଶେ ସୂର୍ଯ୍ୟଦେବ ରେଖ ।
ଶ୍ରୀ ମୁଖପଦ୍ମ କଣ୍ଠରୁ କସ୍ତୁରୀ ଯେ ଦାଢ଼ି
ଉଡ଼େ ଫରହରେ ବଲ୍ଲଭର ଓଷ୍ଠ ନାଡ଼ି ।
ଶ୍ରବଣେ ହୀରା କୁଣ୍ଡଳ ବାହୁନିବି କିସ
ମୁଖପଦ୍ମର ସୁଶୋଭା ମୋହୁଛି ତ୍ରିଦଶ ।
ଡାହାଣବର୍ତ୍ତକ ଶଙ୍ଖ କଣ୍ଠର ଆକୃତି
ବୃଷାଳ ହୃଦୟ ତୁମ୍ଭ ଶୋଭା ଯାର କାନ୍ତି ।
ସୁସଙ୍ଖ ନାଭିଶଙ୍ଖ ଯେ ପଦ୍ମପତ୍ର ପେଟ
ଦିଶଇ ଆଗକୁ ଶୋଭା ପଛକୁ ମୁରାଟ ।
ପେଟ ନାଭି ଅଣ୍ଟା ଜାନୁ ଉରୁ ପାଦଯାଏ
ଏକକୁ ଆରେକ ଶୋଭା ଅଟ ବେନି ପୋଏ
ଯେତେ ଗୁଣ ତୁମ୍ଭରି ମୁଁ ଶୁଣୁଥିଲି ବସ
ଋଷିଙ୍କର ବଚନ କି ହେଲା ଏବେ ମିଛ ।
ଯାହାର ପାଦେ ନମନ୍ତି ବ୍ରହ୍ମା ନିତ୍ୟେ ଆସି
ଯାହାକୁ ଭଜନ୍ତି ସାତକଳ୍ପ ରୁଦ୍ର ବସି ।
ବିପ୍ରଙ୍କର ଆଶୀର୍ବାଦ ହୋଇଗଲା ମିଛ
ଦେବଙ୍କ ବଚନମାନ ହୋଇଲା ଅସତ୍ୟ ।
ସୁଲଭ ସ୍ତିରୀମାନଙ୍କ ବାକ୍ୟ ନ ଫଳିଲା
ଭକତମାନଙ୍କ ବାଞ୍ଛା ବିଫଳ ଯେ ହେଲା ।
ସଂସାର ଲୋକ ଭଜନ୍ତି ସଦା ତୁମ୍ଭ ନାମ
ବିଫଳ ହୋଇଲା ତାହା ପୋଡୁ ଆମ୍ଭ କର୍ମ
ଗର୍ଭରେଷ୍ଠିତି କାଳରେ କହିଲ ଯା ମୋତେ
ସେ କଥାକୁ ଅପ୍ରାପତ କଲ ମୋର ସୁତେ ।
ମୁହିଁତ ରାଢ଼େଣୀ ତାହା ସତ୍ୟ କରିଥିଲି
ମୋ ଘରେ ଅଛନ୍ତି ବୋଲି ହେଲା ମୁହିକଲି
ବିଷ୍ଣୁବୋଲି ଛାଡ଼ିଦେଲି ତୁମ୍ଭଙ୍କୁ ମୁଁ ରଣେ
ଅସୁର ଛାର ମାରିଲେ ହେଲା ଅକାରଣେ ।
ବଦ୍ରିକା ନଗ୍ର କାହାକୁ ଏବେ ଦେଇଗଲ
ଏଡ଼େ ଗଡ଼ ବାନ୍ଧି ଭୋଗକରି ନ ପାରିଲ ।
ସୌନ୍ଦର୍ଯ୍ୟର ଶୋଭା ସାର ଅଟ ପୁତ୍ର ବେନି
ଅଖଡ଼େ ଯେ ତୋଟିକାଟିଗଲ ମୋର ଘେନି
ସହସ୍ର ଚନ୍ଦ୍ରୁ ଅଧିକ ଦିଶେ ତୁମ୍ଭ ଦେହ
ତହିଁରେ ଆପଦ ଆସି ପଡୁ ମୋର ଗୃହ ।
ହୀରାରୁ ବହୁତ ଗୁଣେ ଟାଣ ଦାନ୍ତ ପାଟି
ତହିଁର ଆପଦମାନ ପଡୁ ମୋର ଦୃଷ୍ଟି ।
ବିରାଜେ ତଡ଼ିତ ପ୍ରାୟ ତୁମ୍ଭ ଚକ୍ଷୁ ବେନି
ତହିଁର ଅଭାବ ମୋର ପଡୁରେ ମୁର୍ଦ୍ଧନି ।
ମୋହର ଦୁଃଖ ଦେଖିଣ ଉଠି ହେଲେ ବସ
କଥାପଦେ ପଦେ କହି ମନ ମୋର ତୋଷ ।
ତିଳପୁଷ୍ପ ପ୍ରାୟ ତୁମ୍ଭ ଦିଶଇ ନାସିକା
ତହିଁର ଆପଦ ଘେନଇଁ ମୁଁ କିନା ଏକା ।
ହସ୍ତୀ ଥୋର ପ୍ରାୟ ଶୋହେ ତୁମ୍ଭ ବେନିଭୁଜ
ତହିଁର ଆପଦ ଘେନଇ ମୁଁ କିନା ଆଜ ।
ପକ୍ୱବିମ୍ବ ପରାୟେକ ତୁମ୍ଭ ଓଷ୍ଠ ଦୁଇ
ଆରକ୍ତି ପଦ୍ମପ୍ରାୟେ ଯେ ଜ୍ୟୋତି ବିରାଜଇ ।
କୁନ୍ଦନ ହେମ ପରାୟ ତୁମ୍ଭ ବକ୍ଷ ସ୍ଥଳ
ତୋ ଆପଦ ଆସି ପଡୁମୋର କନ୍ଧସ୍ଥଳ ।
ତୁମ୍ଭର ଏ ଭୁଜମାନ ଗଢ଼ିଲା କେ ଅବା
ଶତଦଳ ପଦ୍ମ ପ୍ରାୟ ପ୍ରକାଶୁଛି ପ୍ରଭା ।
ଗଜକୁମ୍ଭ ପ୍ରାୟ ଅଟେ ତୁମ୍ଭ ବେନି କନ୍ଧ
ତହିଁର ଆପଦ ଆସି ପଡୁ ମୋର ହୃଦ ।
ହେମଜ୍ୟୋତି ପରାୟେ ଯେ ଦିଶେ ଲୋମସଞ୍ଚ
ତହିଁକି ମୋର ଲକ୍ଷ୍ୟ ନ ଦିଶେ ସ୍ୱର୍ଗମଞ୍ଚ ।
ମୁକ୍ତାପନ୍ତି ପରାୟ ତୁମ୍ଭ ଦନ୍ତପତି
ତହିର ଆପଦ ମୋର ମୁଣ୍ଡେ ପଡୁନିତି ।
ଦୁଃଖୀର ସଙ୍ଗାଳି ମୋର ପ୍ରାଣ ପଞ୍ଚଭୂତ
ଅତଳ ସମୁଦ୍ରେ ମୋର ବୁଡ଼ିଲା ବୋଇତ ।
ପୁତ୍ରଙ୍କ ପ୍ରାୟେ ପକାରେ ଦୈତ୍ୟମୋତେହାଣି
ଏତେ ବୋଲି ମୂର୍ଚ୍ଛାଗଲେ ଭଗବତୀ ରାଣୀ ।
ନୃସିଂହ ମାତାର ଶୋକ କେହୁ କହିପାରି
କାନ୍ଦନ୍ତି ବଦ୍ରିକା ନଗ୍ରଯାକ ନରନାରୀ ।
ସ୍ତିରୀପୁରୁଷ ଯେ ଯୁବା ବାଳବୃଦ୍ଧା ଯାଏ
ରୋଦନ କରନ୍ତି ସର୍ବେ ବସି ଅପ୍ରମୟେ ।
ଚୌଷଠି ସହସ୍ର କନ୍ୟା ନୃସିଂହ ଭିଳାଷୀ
ଭୂମିରେ ପଡ଼ି ଉଚ୍ଚରେ କାନ୍ଦନ୍ତି ଯେ ବସି ।
ନୃସିଂହଙ୍କ ଅଷ୍ଟସଖା ଯେତେ ପରିବାରୀ
କାନ୍ଦନ୍ତି ଅସମ୍ଭାଳେ ସେ ହାହାକାର କରି ।
ଶେଷଦେବଙ୍କ ଭାରିଯା ଇଳା ଠାକୁରାଣୀ
ତରୁପ୍ରାୟ ଛେଦିହୋଇ ପଡ଼ିଲେ ଧରଣୀ ।
ବୋଇଲେ ହା ସ୍ୱାମୀ ବ୍ରହ୍ମାଣ୍ଡର ଅଧିକାରୀ
କର ଲେଉଟାନ୍ତେ ଲେଉଟେ ଯେ ବସୁନ୍ଧରୀ
ଯାହାର ପାଦେ ନମନ୍ତି ବ୍ରହ୍ମା ଶତେବାର
ତେଡ଼େ ପ୍ରଭୁଙ୍କୁ ନାଶିଲା କେହ୍ନେ ଦୈତ୍ୟଛାର
ଦଶଦିଗପାଳ ଯାର ପାଦତଳେ ବନ୍ଦି
ସେ ପ୍ରଭୁଙ୍କୁ ଦୈତ୍ୟଛାର ପକାଇଲା ଛେଦି ।

ଆହା ସ୍ୱାମୀବୋଲିଣ ସେ ହେଲେ ଅସମ୍ଭାଳ
ବିଭୋଳ ପରାୟ ହୋଇ ଗଡ଼ନ୍ତି ଭୂତଳ ।
କାନ୍ଦନ୍ତି ଉଦର ଛିଣ୍ଡାଇଣ ଉଚ୍ଚସ୍ୱରେ
ବୋଲନ୍ତି ସଖୀମାନଙ୍କୁ କହମୋତେ ଥରେ ।
ସ୍ୱାମୀଙ୍କ ରୂପ ଦେଖାଅ ବେଳେ ଏଥୁ ନେଇ
ଏରୂପେ ବୋଲି ଅଇଲେ ଶୀଘ୍ରେ ଘରୁ ଧାଇଁ
ଆହା ସ୍ୱାମୀ ବୋଲି ଧଇଲେକ ମଥାଗୋଟି
ଏକରେ ସେ କରେ ଧରି ଚୁମ୍ବନ୍ତି ବିମ୍ବୋଷ୍ଠୀ
ଆନକୁ କହନ୍ତି ସାକ୍ଷୀ କରି ଶୋକଚିତ୍ତେ
ସ୍ୱାମୀର କହିବି କେଉଁ ଗୁଣ କହ ମୋତେ ।
ମୋତେ କହିଥିଲେ ତିନିଜନ୍ମର ଯେ ବାଣୀ
ଆମ୍ଭର ନାମ ଶେଷ ତୋ ନାମ ଇଳା ପୁଣି
ଦ୍ୱିତୀୟ ଅବତାରରେ ତୁ ଉର୍ମିଳା ହେବୁ
ଲକ୍ଷ୍ମଣ ହୋଇଣ ଆମ୍ଭେ କେଳି ଯେ କରିବୁ
ତୃତୀୟେ ହେବୁ ଆମ୍ଭେ ଶ୍ରୀବଳଭଦ୍ର ମୂର୍ତ୍ତି
ଦ୍ୱାପର ଯୁଗେ ରେବତ୍ରୀ ହେବ ତୁମ୍ଭେ ସତୀ ।
ତିନି ଜନମର କଥା କହିଥିଲ ଯେତେ
ଏ ଜନ୍ମଗୋଟି ବିଫଳକଲ ମୋର ବ୍ୟର୍ଥେ ।
ଆମ୍ଭର ନବବୟସ ତୁମ୍ଭେ ନବଯୁବା
ଏ ଭୋଗ ଆମ୍ଭର ଭାଙ୍ଗିଦେଲେ କେଉଁବାବା
ଗେଲହୋଇ ଶୋଇବି ମୁଁ ଯେବେପିଠିଦେଇ
ଶ୍ରୀଭୁଜେ ବସାଅ ଟେକି ମୋତେ ଆଉଁସାଇ ।
କେତକୀ ଫୁଲକୁ ଗୁନ୍ଥି ମଥାରେ ମୋ ଖଞ୍ଜି
ବଳେମୋରନେତ୍ରେ ନେଇ କଜ୍ଜ୍ୱଳ ଯେରଞ୍ଜି
ସେ ସୁଖ ଭାଙ୍ଗି ଏବେ ତ ଗଲ ମୋତେଛାଡ଼ି
ଭକ୍ତ ଭାବରେ କହିବି କିସ ପୁଣି ଲୋଡ଼ି ।
ପୃଥ୍ୱୀରେ ଜୀବ ଯାକୁ ଯେ ପ୍ରଭୁ ଅଟେ ମୋକ୍ଷ
ଲଭିଲି ସେପ୍ରଭୁ ପତ୍ନୀହୋଇ କେଡ଼େ ଦୁଃଖ
ସତେହେଁ ସତୀ ଯେବେ ମୁଁ ଶେଷଦେବ ପତ୍ନୀ
ଉଠନ୍ତୁ ଶ୍ରୀସ୍ୱାମୀ ଦେଢ଼ଶୁରୀ ପ୍ରାଣ ଘେନି ।
ଅସୁର ମୁଣ୍ଡକୁ ହାଣି ପକାନ୍ତୁ ସେ ଆଜ
ପତିବ୍ରତା ବାକ୍ୟସିଦ୍ଧି କର ଦେବରାଜ ।
ଶୋକ ପ୍ରତାପରେ ଶାପଦ୍ୟନ୍ତେ ଇଳାଦେବୀ
ହସି କମଳିନୀ ସେହି କଥା ମନେ ଭାବି ।
କମଳା ହସନ୍ତେ ସର୍ବେ ହେଲେ କୁଆବୁଆ
ତାଟକା ହୋଇଣ ମନେ ହୋଇଛନ୍ତି ଠିଆ ।
ଚାହିଁ ରହିଛନ୍ତି ବଦରିକା ନଗ୍ରଯାକ
ପାଞ୍ଚନ୍ତି ଏଥେ ଯେ କଥା ଥିବ ଭଲବାକ୍ୟ ।
କେବୋଲେକେମନ୍ତେକେବୋଲେଇକଥାଅଛି
ଏତେ ଦୁଃଖକାଳେ ହସିଲେକ କମଳାକ୍ଷୀ ।

ନୃସିଂହ ଶେଷକୁ ଦେଲେ ଅସୁର ଯେ ହାଣି
ହସନ୍ତି କି କଥା ପାଞ୍ଚ ଅବା କମଳିନୀ ।
ସ୍ୱାମୀ ଦିଅର ଦୁହେଁ ତ ଛନ୍ତି ମରି ପଡ଼ି
କାନ୍ଦନ୍ତି ଶାଶୁ ଶ୍ୱଶୁର ଦୁହେଁ ଭୂମି ଗଡ଼ି ।
ତହିଁରେ ଦେଖ କମଳା ସୁବେଶ ଯେ ହୋଇ
ନାନା ଅଳଙ୍କାର ସେହୁ ସଙ୍ଗେ ଛନ୍ତି ନାଇ ।
କମଳାର ଶୋଭା କେହୁ ମୁଖେ ପାରେ କହି
ଭୂତ ଭବିଷ୍ୟତ ଆଉ ବର୍ତ୍ତମାନେ ନାହିଁ ।
କୁରଙ୍ଗ ନୟନ ତିଳପୁଷ୍ପ ପ୍ରାୟ ନାସା
ଚାମରକେଶ କନଡ଼ା ପଡ଼ି ମୁଦ୍ରା ଖୋସା ।
ବିସ୍ତାର ଉର ଉଲଟ ରମ୍ଭା ପ୍ରାୟ ଜାନୁ
ପାଦ ଅଳତା ଯେସନେ ଦିଶେ ଉଦେ ଭାନୁ ।
ଭୁଜର ଅଙ୍ଗୁଳି ପଦ୍ମ ମୃଣାଳ କି ଶୋହେ
ପାଦର ଅଙ୍ଗୁଳି ଦିଶେ ଚମ୍ପା କଢ଼ି ପ୍ରାୟେ ।
ଜଗତଜନର ମାତା ମହିମା ଅପାର
ଝସକେତନ କି ଉଦେ ମଣିର ଆକାର ।
କୁନ୍ଦିଲା ଭଉଁରୀ ପ୍ରାୟ ଦିଶେ ନାଭିଠାଣି
ରକ୍ତ ଉତ୍ପଳ ପରାୟ ଶୋଭା ବେନି ପାଣି ।
ପିନ୍ଧିଣ ଅଛନ୍ତି ମାତା ଯେଉଁ ପାଟଶାଢ଼ୀ
ତହିଁକି ଶୋଭା ଦିଶଇ ସୁବର୍ଣ୍ଣର ଚୂଡ଼ୀ ।
ହୀରାର ତଡ଼କା ପ୍ରଭା କଣ୍ଠେ ରତ୍ନହାର
କଟିରେ ମେଖଳା ଖଞ୍ଜା ଚରଣେ ନୂପୁର ।
ଶ୍ରବଣଶିଖେ ବେଣ୍ଟୁଲା ଗଜମୋତି ଶୋହେ
କପାଳେ ସିନ୍ଦୂରବିନ୍ଦୁ ରବିଜ୍ୟୋତି ପ୍ରାୟେ
ବନ୍ଧୁକି ପୁଷ୍ପ ପରାୟେ ଅଧର ପ୍ରକାଶେ
ଜଗତର ମାତା ସେହି ସମସ୍ତଙ୍କୁ ପୋଷେ ।
ବସି କହିଲେ ଜୀଇଁବେ ମଲା ପ୍ରାଣୀ ଜାଣ
ଯୁବତୀକୁଳକୁ କେହି ଅଟେ ମୋକ୍ଷ ପାନ ।
ଲକ୍ଷ୍ମୀଙ୍କୁ ଦେଖି ସନ୍ତୋଷ ହୁଅନ୍ତି ଜାଣ ସର୍ବେ
ବୋଲନ୍ତି ଯେ କେଡ଼େଭାଗ୍ୟ କରିଥିଲୁ ଆମ୍ଭେ
ଏ ନଗରଯାକେ ପୂରିଅଛୁ ଯେତେ ଲୋକ
ଆଜିଯାଏ କରି ନାହୁ ଏପରି ଆଲୋକ ।
ଦିନେ ପଦାକୁ ନାହାନ୍ତି ଲକ୍ଷ୍ମୀ ବିଜେକରି
ଭାବୁଥାନ୍ତି ଦେଖିବା କିରୂପେ ବୋଲି ଶିରୀ ।
ଅଲଭ୍ୟେ ଦର୍ଶନ ଆସିକଲୁ କମଳିନୀ
ଯେ ଯାହା ପାଞ୍ଚଇ ତାକୁ ମିଳେ କାଳେପୁଣି
ମହାଲକ୍ଷ୍ମୀଙ୍କୁ ଦେଖନ୍ତି ବୋଲି ସର୍ବେ ଜାଣ
ମାୟାରେ ଯେ ହାଣି ହୋଇଛନ୍ତି ନାରାୟଣ ।
ମିଛ ପ୍ରାୟେ ଲାଗୁଅଛି ଏ ବାଣୀ ତ ଶୁଣି
ସାକ୍ଷାତରେ ଗୋବିନ୍ଦକୁ ପାରିବ କେ ହାଣି ।

କେ ବୋଲଇ ମଲା ଜାଣ ଲୁଚେ ହେଲେମିଛ
ନୃସିଂହ ଶେଷଙ୍କ ମୁଖ ଦେବ ଏ ପ୍ରତ୍ୟକ୍ଷ ।
ତେଣୁ ଭିତରପୁରୁ ଶ୍ରୀ ମହାଲକ୍ଷ୍ମୀ ଆସି
ଦେଖନ୍ତି ସେ ମଲାମୁଣ୍ଡ ଦେବୀ ଶୁଭ୍ରକେଶୀ ।
କ୍ଷଣକରେ ଆଉ କଥା ସବୁ ଜଣାଯିବ
ଲକ୍ଷ୍ମୀଙ୍କୁ ଦେଖିଲୁ ହେଲା ଏ କଥା ତ ଶୁଭ ।
ଏରୂପେ ବୋଲି ହୁଅନ୍ତେ ଲୋକ କୁହାକୁହି
କହିଲା ସୁମତି ବୃଦ୍ଧନାରୀ ଏକ ଚାହିଁ ।
ବୋଇଲାକ ମହାଲକ୍ଷ୍ମୀ ଯହିଁ ବିଜେକଲେ
ସେ କଥା ଗୋଚର ପୁଣି ହେଲାନାହିଁ ଭଲେ
ପୂର୍ବରୁ ଯେ ଅଛି ଏକ ପୁରାତନ ବାଣୀ
ସତ ବୁଝିବାକୁ ବିଜେକଲେ କମଳିନୀ ।
ନୋହିଲେ ସେ କାହାପାଇଁ ଏଠାକୁ ଆସନ୍ତେ
କାହିଁକି ହସିଲା ପ୍ରାୟ ମୁଖ ପ୍ରକାଶନ୍ତେ ।
ଏରୂପେ କହନ୍ତେ ବୃଦ୍ଧାସ୍ତିରୀ ଅନୁମାନେ
ସୁଜାଣ ମନ୍ତ୍ରୀର ପ୍ରିୟା ଶୁଣିଲା ତା କର୍ଣ୍ଣେ ।
ବୋଇଲା ଏଡ଼େକ କଥା ପାରିବ କେ କରି
ସ୍ତିରୀକୁ ଯେ ଅଗ୍ନିକୁଣ୍ଡ ଅଟେ ଗଙ୍ଗାବାରି ।
ଆବର କହୁଛି କିଛି କଥା ସର୍ବେ ଶୁଣ
ବିଷ୍ଣୁର ମରଣ କଥା ଅଟେ ମିଥ୍ୟା ଜାଣ ।
କୂଟମାୟା ବୋଲି ତ ଏ କିଛି ଜଣାହୋଇ
ସ୍ତିରୀଙ୍କ ଲକ୍ଷଣ ପୁଣ କହୁଅଛି ମୁହିଁ ।
ମାତାଙ୍କ ମୁଖରୁ ଶୁଣିଅଛି ଇତିହାସେ
ପତି ମୃତ୍ୟୁ ନୋହୁ ପତ୍ନୀ ବିବର୍ଣ୍ଣା ଯେ ଦିଶେ ।
ପତିର ଆତ୍ମା ଥାଇ ଯେ ତିନିମାସ ସ୍ତିରୀ
କହିବା ତାର ଶକୁନ ପୁଣ ଦୁଇ ଚାରି ।
ଦିଶଇ ଯେ ଓଷ୍ଠ କଳା ମୁଖର ବିକୃତି
ଚକ୍ଷୁର ପିତୁଳା ଢ଼େଇଁ ଲୋତକ ଉତ୍ପତ୍ତି ।
ହସିଲେ ଦଶନପନ୍ତି ବିପରୀତ ଦିଶେ
ମନ ସଦା ଛନ୍ନ ଛନ୍ନ ହୁଏ ଅବଶେଷେ ।
ଅଗ୍ନିର ତପତି ପ୍ରାୟେ ନାସାବାୟୁ ବହେ
ବଥାଇଲେ ଅଣ୍ଟାପିଠି ମନେ କରି ଭୟେ ।
ଚାହିଁଲେ ଅନ୍ଧାର ଦିଶେ ଦଶଦିଗ ମହୀ
ଭୁଞ୍ଜିଲେ ଯେ ତିକ୍ତ ପ୍ରାୟ ଭୋଜନ ଲାଗଇ ।
ନାଭିର ସେ ପଦ୍ମକୋଷ ଲାଗେ ବସନରେ
ଶ୍ରୀକୃଷ୍ଣ ନାମ ତୁଣ୍ଡେ ନ ବୋଲେ ବସି ଥରେ
ସଙ୍ଗରୁ କେହି ଯଦ୍ୟପି ହୁଏ ପୁତ୍ରବତୀ
ତାହାର ଶିରୀ ଦେଖି ନପାରେ ହୋଇକର୍ତ୍ତି ।
ବାତୁଳ ସ୍ତିରୀଙ୍କ ପ୍ରାୟ କଥା କହୁଥାଇ
ଏରୂପେ ଲକ୍ଷଣ ଆଗୁଁ ଘଟଣା ହୁଅଇ ।

ସୁଲଭ ସୁଲକ୍ଷଣୀ ଯେ ପତିବ୍ରତା ନାରୀ
ସେହୁ ଚିହ୍ନି ଜାଣନ୍ତି ଏ କଥା ହେତୁକରି ।
ତକ୍ଷାଳେ ଲକ୍ଷଣମାନ ଗୋଚର କରନ୍ତି
ମୁଁ ଏବେ କହଇ ଶୁଣ ଲକ୍ଷ୍ମୀର ଯେ ଜ୍ୟୋତି
ଏହି ଦେଖ କମଳାର ଦିଶେ ଓଷ୍ଠ ରଙ୍ଗ
ବିଧବା ସ୍ତିରୀପ୍ରାୟେ ନ ଦିଶେ ଲକ୍ଷ୍ମୀଅଙ୍ଗ ।
ଦେଖ ଯେ ଯୁବତୀ ଏହି ଲକ୍ଷ୍ମୀ ରୂପଗୋଟି
ସହସ୍ର ଚନ୍ଦ୍ର ଅଧିକ ଦିଶେ ମୁଖ ଫୁଟି ।
ଶିରରୁ ତ ପାଦଯାଏ ନିରେଖିଣ ଚାହଁ
ଗୋଟିଏ ଅଲକ୍ଷଣ ନ ଦିଶେ ଲକ୍ଷ୍ମୀ ଦେହ ।
ଶୁଣି ଏହା ସତ ସତ ଯୁବତୀ ବୋଲନ୍ତି
ଦେଖ ଶେଷଦେବ ପତ୍ନୀ କି ଶୋଭା ଦିଶନ୍ତି ।
ଏତେ ଯେ ଡକାପାରିଣ ରୋଦନ କରନ୍ତି
ଟିକିଏ ଅଲକ୍ଷଣ ନ ଦିଶେ ତାଙ୍କ ମୂର୍ତ୍ତି ।
ସ୍ତିରୀ ଲକ୍ଷଣ ପୁରୁଷ ନୁହଇ ଯେ ରୋଗୀ
ସ୍ତିରୀକର୍ମ ଘେନି ହୁନ୍ତି ପୁରୁଷଟି ଭୋଗୀ ।
ଦୟା ଧର୍ମ କଥାରେ ସ୍ତ୍ରୀ ଯେବେ ନିତ୍ୟ ଥାଇ
ତାହାର କୁଳ ଉଜ୍ଜ୍ୱଳ ନିଶ୍ଚୟ ହୁଅଇ ।
ପାଳନ୍ତି ସେ ମହାଲକ୍ଷ୍ମୀ ଇଳା ପତିବ୍ରତା
ଏହାଙ୍କ ଯୋଗୁ ଜୀଇଁବେ ନିଶ୍ଚେ ବେନିଭ୍ରାତା
ମନ୍ତ୍ରୀର ଭାରିଯା ତହୁଁ କହନ୍ତେ ଏ ବାଣୀ
ଭଗବତୀ ମାତା ଉଠିଲେକ ତାହାଶୁଣି ।
ଶ୍ରୀମହାଲକ୍ଷ୍ମୀ ଓଷ୍ଠୁ ଧଇଲେକ ଶାଶୁ
ବୋଇଲେ କମଳା ମାଗୋ କାହିଁକିତ ହସୁ ।
ସ୍ୱାମୀ ଦିଅର ହାଣରେ ତୋର ଛନ୍ତି ପଡ଼ି
ଆମ୍ଭର ତା ଦେଖି ପ୍ରାଣ ଯାଉଅଛି ଛାଡ଼ି ।
ଆମ୍ଭ ସାହସ ଉଡୁଛି ତାହାଙ୍କ ସକାଶୁ
ତୁ ମୋର ଭିତର ପୁରୁ ହସି ହସି ଆସୁ ।
କି ସନ୍ଧିଥିଲେ ଗୋ ମୋତେକହ ଏବେମାତା
ତୋ ମୁଖୁ ଶୁଣିଣ ମୋର ହୃଦେ ବସୁଚେତା
ଶୁଣିଲି ଶକୁନ କଥାମାନ କହିବାରୁ
ତେଣୁ ମୁଁ ପୁଛଇ ତୋତେ ପ୍ରସନ୍ନ ମୁଖରୁ ।
ସ୍ୱାମୀ ଦିଅର ତୋହର ନୁହନ୍ତି କି ଏହି
ଆମ୍ଭେ ଦେଖିଲୁ ପଡ଼ିଛି ଛିଡ଼ି ମୁଣ୍ଡ ଦୁଇ ।
ଲକ୍ଷ୍ମୀ ବୋଇଲେ ମାତାଗୋ ତୁମ୍ଭେଗୁରୁଜନ
ତୁମ୍ଭ ଛାମୁରେ କହୁଛି ଜାଣ ମୋର ଜନ୍ମ ।
ଯେବଣ କାଳରେ ଭୃଗୁକଲେ ମୋତେ ଜାତ
ବସିଲେ ବ୍ରହ୍ମରେ ହେତୁ ରଖି ତପୋବନ୍ତ ।
ଋଷିଙ୍କର ମନକଥା ଜାଣି ଭଗବାନ
ଏକ ଅଙ୍ଗ ବେନିଭାଗ କଲେ ଜନାର୍ଦ୍ଦନ ।

ଅର୍ଦ୍ଧେକ ପୁରୁଷ ଅର୍ଦ୍ଧେ ସ୍ତିରୀରୂପ ହେଲେ
ବେନି ମୂର୍ତ୍ତି ହୋଇରଷିଙ୍କୁ ଯେଦେଖାଦେଲେ
ପ୍ରକାଶ ହୋଇଣ ହରି ଲକ୍ଷ୍ମୀ କର ଧରି
ବୋଇଲେ ସଖିରେ ମୋର ଅଟୁ ମନୋହାରୀ
ମୁଁ ଅଟେ ଜୀବପିତା ତୁ ଅଟୁ ଲୋକମାତା
ଏଣୁ ଯେ ବୋଲାଉ ଆମ୍ଭେ ଦୁହେଁ ସୃଷ୍ଟିକର୍ତ୍ତା
ଏକଇ ଅଙ୍ଗ ହେଲଇଁ ଆମ୍ଭେ ମୂର୍ତ୍ତି ବେନି
ସର୍ବଦା ଆମ୍ଭେ ଯେ ଥାଇ ସର୍ବ ଲୟ ଘେନି ।
ଯେହୁ ମରଇ ତାହାକୁ ଲୟ ବୋଲି ଜାଣ
ନୁହଇ ପ୍ରଳୟ କେବେ ଲକ୍ଷ୍ମୀ ନାରାୟଣ ।
ପୁରୁଷ ମଲେ ଭାରିଯା ହୁଅଇ ବିଧବା ।
ଆମ୍ଭେ ଅମର ସର୍ବଦା ତୁମ୍ଭେ ନବଯୁବା ।
ତୁମ୍ଭଙ୍କୁ ବିଧବା ଯୋଗ କେବେ ନାହିଁ ଜାଣ
ବ୍ରହ୍ମ ପ୍ରଳୟ ହେଲେହେଁ ଆମ୍ଭେ ଏକା ବ୍ରହ୍ମ ।
ଲକ୍ଷ୍ମୀ ବୋଇଲେ ଶୁଣିମା ହେଉତେବେହରି
ତଥାପି ମନ୍ଦ ହେଲେ ମୁଁ ଜାଣିବି କିପରି ।
ହରି ବୋଇଲେ ସନ୍ଦେହ ମନେ ଯେବେକଲ
ତହିଁକି କଥାଏ ଶୁଣ କହିଥିବା ଭଲ ।
ତୁମ୍ଭଙ୍କୁ ମନରେ ଶଙ୍କା ଲାଗିବ ଯେ ଦିନ
ସେ ଦିନ ଭଜିବ ହୃଦେ ଚିନ୍ତି ଭଗବାନ ।
ଅନାମିକା ଅଙ୍ଗୁଳିରୁ ତରଜନୀ ଯାଏ
ମନ୍ତ୍ରକୁ ଭଜି କରିବ ଧ୍ୟାନେ ମୋତେ ଲୟେ
ସେହିକ୍ଷଣି ତୁମ୍ଭଆଗେ ହେବୁ ଆମ୍ଭେ ଉଭା
ସର୍ବଦା ତୁମ୍ଭର ମୁଖ ଦିଶିବ ଗୋ ଶୋଭା ।
ଆବର ଦର୍ପଣ ଦେଖି ମୁଖ ଚାହିଁ ଦେବ
ମଳିନ ଦିଶିଲେ ମନ୍ଦ ଆମ୍ଭଙ୍କୁ ଯେ ହେବ ।
ମଳିନ ତୁମ୍ଭର ମୁଖ କେବେ ହେବ ନାହିଁ
ତେଣୁ ସେ କେବେ ଆମ୍ଭେ ନମରୁ ପ୍ରାଣସହୀ
ଏରୂପେ କହନ୍ତି ମହାଲକ୍ଷ୍ମୀ ଶାଶୂ ଆଗେ
ଶୁଣିଣ ଯେ ଭଗବତୀ ସ୍ଥିର ହେଲେ ବେଗେ
ବୋଲନ୍ତି ଶୁଣ ତୁ ମାଗୋ ବିଷ୍ଣୁ ପାଟରାଣୀ
ବ୍ୟଗ୍ରେ କର ଚିନ୍ତା ଦେଖିବାର ଚକ୍ରପାଣି ।
ଶାଶୁଙ୍କ ଆକୁଳ ଶୁଣି ଜଗତର ମାତା
ପଦ୍ମାସନେ ବସିକଲେ ନୃସିଂହକୁ ଚିନ୍ତା ।
କମଳା ଚିନ୍ତିବା ଜାଣିପାରି ଭଗବାନ
ଜାଣିଲେ ମାତା ପିତାଙ୍କ ଶୋକ ଜନାର୍ଦ୍ଦନ
ଅସୁର ସେ ମାୟାକଲା ବୋଲି ବିଚାରିଲେ
ସୂର୍ଯ୍ୟାବର୍ତ୍ତକ ଯେ ଶର ତକ୍ଷଣେ ବିନ୍ଧିଲେ ।
କୁହୁଡ଼ି ନାଶି ମନ୍ତ୍ରୀକୁ ଦେଲେ ପ୍ରଭୁ ଆଜ୍ଞା
ବୋଇଲେକ କର୍ଣ୍ଣାଟକୁ ରଖିବ ମୋ ଆଜ୍ଞା ।

ନୃସିଂହ ଗଣଯାକଙ୍କୁ ଚାହିଁ ଭଗବାନ
ବୋଇଲେ ଉଠିଣବେଗେମୋର ଦୈତ୍ୟସୈନ୍ୟ
ଆଠପଦ୍ମ ସୈନ୍ୟଙ୍କୁ ସେ ନୃସିଂହ ଲକ୍ଷେକ
ତୁମ୍ଭଙ୍କୁ ନାମ ତା ମଧ୍ୟେ କିଛି କହିବାକ ।
ଅଭୟ ନୃସିଂହ ପୁଣି ସଭୟ ନୃସିଂହ
ସୋହଂହଂସନୃସିଂହ ପୁଣି ସୁଘୋଷ ନୃସିଂହ ।
ମହାଉଗ୍ର ନୃସିଂହ ଯେ ବେତାଳ ନୃସିଂହ
ମହାଭଦ୍ର ନୃସିଂହ ଯେ ରଉଦ୍ର ନୃସିଂହ ।
ମହାବିକଟ ନୃସିଂହ ବିରାଟ ନୃସିଂହ
ମହା ବିହଡ଼ି ନୃସିଂହ ବିଦାର ନୃସିଂହ ।
ମହାବିକଟ ନୃସିଂହ ଦୂଷଣ ନୃସିଂହ
ମହାଭୈରବ ନୃସିଂହ ଭୈରବୀ ନୃସିଂହ ।
ବରାହ ନୃସିଂହ ଆଉ ବିକଟ ନୃସିଂହ
ମହାଦେବ ନୃସିଂହ ଯେ ସୁକାନ୍ତି ନୃସିଂହ
ସୁଭଟ ନୃସିଂହ ପୁଣି ଉଭଟ ନୃସିଂହ
ଅଘୋଟ ନୃସିଂହ ମହାସୁଘଟ ନୃସିଂହ
ସୁଭଦ୍ରା ନୃସିଂହ ଆଉ ଅନନ୍ତ ନୃସିଂହ
ଶ୍ରୀଅନାଦି ନୃସିଂହ ଯେ ପିଅର ନୃସିଂହ
ମହାସିଦ୍ଧ ନୃସିଂହ ଯେ ଶ୍ରୀଲକ୍ଷ୍ମୀ ନୃସିଂହ
ଏହିରୂପେ ନୃସିଂହ ଯେ ହେଲେ ବିଷ୍ଣୁଅଙ୍ଗ
ନିଜ ମଥାକୁ ଚାହିଁଣ ପୁଣି ନାରାୟଣ
ମୁଣ୍ଡରୁ ପୁରୁଷ ଜାତ କଲେ ତତକ୍ଷଣ ।
ତାର ନାମ ମୃତ୍ୟୁ ଜାଣ ସବୁ ମୁଣ୍ଡେ ବସେ
ଆତ୍ମ ପୁରୁଷକୁ ଧରି ନିରନ୍ତରେ ଗ୍ରାସେ ।
ଗ୍ରାସୁ ଗ୍ରାସୁ ଆୟୁଷ ଯେ ଦିନୁ ଦିନ ଛିଡ଼େ
ସେ ପାଞ୍ଚୁଥାଇ ଭେଣ୍ଟା ମୁଁ ହେଉଥାଇଯେଡ଼େ
ମରିବା କଥା ଗୋଟିକ କେବେ ନ ଜାଣଇ
ଯେ ଯାହା ଭାଗ୍ୟରୁ ତେଜିକି ଯେ ଜୀଇଁଥାଇ
କାଳ ଶରୀରରୁ ଏହି ଆତ୍ମା ହୁଏ ଜାତ
ସେ କାଳଟି ମୃତ୍ୟୁ ଜାଣ ଅଟେ ବିଷ୍ଣୁ ସତ୍ୟ
ବିଷ୍ଣୁ ପ୍ରକାଶନ୍ତି ଏ ଛପନ କୋଟି ଜୀବ
ଛପନ କୋଟି ବର୍ଣ୍ଣରେ ଆତ୍ମା ହୁଏ ଧ୍ରୁବ ।
ମନୁଷ୍ୟବର୍ଣ୍ଣ ଗୋଟିଏ ରୂପ ଜାଣ ଏକା
ଏରୂପେ ଛପନ କୋଟି ଜୀବ ହୁଏ ଲେଖା ।
ବିଷ୍ଣୁର ମହିମା ମୁଖେ କେ ପାରିବ କହି
ନୃସିଂହ କହିଲେ ମୃତ୍ୟୁ ନୃସିଂହକୁ ଚାହିଁ ।
ଅଲୋପି ସଲୋପି ଅଛନ୍ତି ଯେ ବେନି ଦୈତ୍ୟ
ତାହାକୁ ଯେ ମାର ବେଗ କରି କଣ୍ଠଗ୍ରତ ।
ନୃସିଂହଗଣ ମାରନ୍ତୁ ଯାଇ ଦୈତ୍ୟବଳ
ଶୁଣିଣ ସକଳ ଧାଇଁଗଲେ ତତକାଳ ।

ତୀର କମାଣ ଯେ ଧନୁ ଧରି ଯେଝା କରେ
ଅସୁରଥାଟ ବେଢ଼ିଲେ ଯାଇ କୋପଭରେ
ରେରେକାର କରି ସର୍ବେ ପଡ଼ିଲେକ ମାଡ଼ି
ବାଜଇ ଟମକ ବିଜିଘୋଷ ଯୋଡ଼ି ଯୋଡ଼ି ।
ମର୍ଦ୍ଦଳ ତାଳ କାହାଳି ଶ୍ରୀନୃସିଂହ ତାଳ
ଦମ ଦମ ହୁଲୁହୁଲୁ ଶୁଭେ ଅନ୍ତରାଳ ।
ଘୁମୁରା ଯେ ଘୁମୁ ଘୁମୁ ଶୁଭେ ଘୋରନାଦ
ସକଳ ନୃସିଂହଙ୍କର ବିକରାଳ ଶବ୍ଦ ।
ହୁଳହୁଳି ଦେଇ ନାଚନ୍ତି ସେ କୁତୂହଳେ
ବୋଲନ୍ତି ଦୈତ୍ୟରେ ଏବେ ଯିବ ଯମଆଳେ
କ୍ଷଣକରେ ଉଗ୍ର କେହୁ କ୍ଷଣେ ଚୋରମୂର୍ତ୍ତି
କ୍ଷଣକେ ଘୋଟେ କେ ପାଞ୍ଚଶତ କୋଟିକ୍ଷିତି
କାହାର ଯେ ଦାନ୍ତପାଟି ଶୁଭେ ରଟମଟ
ସୂର୍ଯ୍ୟର ପ୍ରାୟ କାହାର ଦିଶେ ଚକ୍ଷୁବାଟ ।
ନାସା ବାତାଘାତେ ଗିରିବର ଯାନ୍ତି ଉଡ଼ି
କେ କର ବୁଲାନ୍ତେ ବୃକ୍ଷେପଡ଼ନ୍ତି ଯେ ଛିଡ଼ି
କେ ବୋଲଇ ମାରମାର ଧରି ବେଗେହାଣ
ମୁଣ୍ଡକୁ ମୋଡ଼ି ପକାଇ ତୋଟି ବେଗେଝୁଣ ।
ଏରୂପେ ନୃସିଂହଗଣ କୋଳାହଳ କରି
ଜଣେ ଜଣେ ପଡ଼ିଗଲେ ଦୈତ୍ୟଙ୍କ ଉପରି
ଏଥୁ ଉତ୍ତାରେ ଯେ ବାଣୀ ଶୁଣ ହେ ନାରଦ
ଗୃହକୁ ଯିବାକୁ ସଜ ହୋଇଲେ ଗୋବିନ୍ଦ
ଭାଉଙ୍କି ବୋଇଲେ ଯିବା ନଗ୍ରକୁ ହେ ଆସ
ଏହିକ୍ଷଣି ଗଲା ବୃକା ମାତା ପିତା ପାଶ ।
ତୁମ୍ଭ ଆମ୍ଭ ରୂପେ ଦୈତ୍ୟ ଯୋଡ଼ାଏକନେଲା
ମୁଣ୍ଡହାଣି ପିତାମାତା ଆଗେ ଦେଖାଇଲା ।
ଦେଖି ଗଡୁଛନ୍ତି ଶୋକେ ରୂପବତୀ ରାଣୀ
ଏତେକ ବୋଲି ଗରୁଡ଼େ ବିଜେ ଚକ୍ରପାଣି
ଶେଷଦେବ ବିଜେ କଲେ ଦେବଯାନ ରଥେ
ତକ୍ଷଣେ ନଗ୍ରେ ମିଳିଲେ ଯାଇ ଜଗନ୍ନାଥେ
ଶେଷ ବୋଇଲେ ଶୁଣିମା ହେଉ ଚକ୍ରପାଣି
ଆଜ୍ଞାଦେଲେ ଦୈତ୍ୟକୁ ମୁଁ ପକାନ୍ତି ଯେହାଣି
ପିତାମାତାଙ୍କର ଆଗେ ମାୟା ଯେବେ କଲା
ଏହିକ୍ଷଣି ତାକୁ ହାଣି ପକାଇବା ଭଲା ।
ଶେଷଦେବଙ୍କର କୋପ ନୃସିଂହ ଶୁଣି
ବୋଇଲେ ଦୋଷୀଲୋକକୁ ଏରୂପେ ନହାଣି
କ୍ଷତ୍ରୀମାନଙ୍କୁ ଏ ଜାଣ ଅଟଇ ଅଧର୍ମ
ହସ୍ତରେ ନଥିଲେ ଧନୁ ନକରି ସଂଗ୍ରାମ ।
ଶବବହା ଲୋକକୁ ମାଇଲେ ବଡ଼ ଦୋଷ
ବିଧିରେ ଶବକୁ ବହି ଆସିଛି ରାକ୍ଷସ ।

ଯେ ପ୍ରାଣୀଟି ଗ୍ରାସ ଅର୍ଥେ ଭୁଞ୍ଜି ବସିଥାଇ
ତାକୁ ମାଇଲେଗୋହତ୍ୟାଦୋଷଜାଣହୋଇ
ସ୍ତିରୀ ପୁରୁଷରତି ଯେ ପ୍ରାଣୀ ଯାଇ ଦେଖେ
ଶତେକ ଜନ୍ମଯାକେ ସେ ମରେ ଅପୁତ୍ରିକେ
ମୃତ୍ୟୁ ଶବଟିକୁ ବହିଥାନ୍ତି ଯେତେ ନର
ଚନ୍ଦ୍ରେ ଗ୍ରାସିଲେ କି ରାହୁନୁହେଁ ଅସଂସ୍କାର ।
ସ୍ନାନ କଲେ ଯାଇ ସର୍ବେ ହୁଅନ୍ତି ଯେ ଶୁଦ୍ଧ
ଶବକୁ ବହିବା ଲୋକ ଅଟଇ ଅମେଧ ।
ନାରାଚ ଗଦା ଯେ କୁନ୍ତ ଧରିନାହିଁ କର
ଉଲ୍ଲୁକ ପରାୟେ ବସିଅଛି ବୃକାସୁର ।
ବଦ୍ରିକା ନଗରଯାକ ଅଟେ ଯଜ୍ଞଭୂମି
ଏ ନଗ୍ରେ ଯମ ପଶି ନପାରେକେବେ ଗମି
ଆମ୍ଭଙ୍କୁ ଦେଖିଣ ଦୈତ୍ୟ ପଳାଇଣ ଯିବ
ନଗ୍ର ବାହାରେ ମାରିବ ତାକୁ ଶେଷଦେବ
ମାରିବାପାଇଁ ଆସିଛି ଏଥେ ଦୈତ୍ୟ ଜାଣ
ଆବର ପ୍ରହରେ ତାର ଅଛଇ ପରାଣ ।
ଆତୁର ହେବା କଥାତ ନୁହେଁ କେବେ ଭଲ
କରିବା ବିଚାର କର କାର୍ଯ୍ୟ ସମତୁଲ ।
ବିଷୟ ବୁଝା ଲୋକଙ୍କୁ ବୋଲି ସର୍ବେ ବଡ଼
ଧର୍ମରେ ଥିବା ଲୋକଙ୍କୁ ସାହା ଯୋଗାରୁଢ଼
ରଜସ୍ୱଳା ସ୍ତିରୀଙ୍କି ଛୁଇଁଲେ ଯେତେ ଦୋଷ
ମୃତଶବ ବହିବା ଲୋକଟି ସେ ସଦୃଶ ।
ତ୍ରେଣୁକରି ତଇଳ ଗୋମୟ ଲେପି ହୋନ୍ତି
ସ୍ନାହାନ ସନ୍ଧ୍ୟା ସାରିଣ ଗୃହକୁ ଆସନ୍ତି ।
ଦୈତ୍ୟଛାରକୁ ମାରିବାକିମ୍ପା ଏତେବେଳେ
ମାତାଙ୍କୁ ଦର୍ଶନ ଚାଲ କରିବା ଚଞ୍ଚଳେ ।
ଶେଷଦେବଙ୍କୁ ବୋଇଲେ ଏ କଥାଗୋଟିସତ
ବଡ଼ଲୋକର ବଚନ ଅଟେ ଅଲଙ୍ଘିତ ।
ସାନ ହେଉ ବଡ଼ ହେଉ ବାକ୍ୟ ଥିବମାନି
ସେ ଲୋକର ମହତ୍ତ୍ୱଟି ନୁହେଁ କେବେ ହାନି
ଏରୂପେ କଥା ନୃସିଂହ ବେନି ଭାଇ ହୋଇ
ଗରୁଡ଼କୁ ବୋଇଲେ ତଳକୁ ଖସ ଚାହିଁ ।
ଏହା ଶୁଣି ଗରୁଡ଼ ଯେ ମନେ ଅଳ୍ପ ହସି
ଶୂନ୍ୟରୁ ତଳକୁ ଧୀରେ ଧୀରେ ପଡ଼େ ଖସି ।
ସେଠାବରେ ନଗ୍ରଲୋକ ଯେତେଦେଖିଥିଲେ
ଧନ୍ୟ ଧନ୍ୟ ମହାଲକ୍ଷ୍ମୀ ବୋଲି ପ୍ରଶଂସିଲେ
ଭଲା ସେ ପ୍ରସନ୍ନ ବିଦ୍ୟା ତୋହଠାରେ ଅଛି
ଚିନ୍ତିବା ମାତ୍ରକେ ଆସି ମିଳିଲେ ଶ୍ରୀବତ୍ସି ।
ଭାଇଙ୍କି ସଙ୍ଗତେ ଧରିଛନ୍ତି ବିଜେକରି
ଭଲା ତୋର ତପ କୃଷ୍ଣବଲ୍ଲଭର ନାରୀ ।

କେ ବୋଲଇ ଅନ୍ନ ମେଞ୍ଚ ନେଇ ନିଉଛାଅ
ବେନି ଭାଇଙ୍କ ଯେ ଉଣା ଅଛି ମୁଣ୍ଡେ ଦିଅ
କେବୋଲେ ଗୋବର ବିଣ୍ଡା ମାର ଅସୁରଙ୍କୁ
ଆସିଅଛି କେଉଁ ଲାଗେ ଦେଖି ନୃସିଂହଙ୍କୁ ।
ବସି ବୃକାସୁର ଉଠିଲାକ ମନଛନ୍ନେ
ଶେଷ ମୃତ୍ୟୁ ଶବ ଘେନି ପକାଇଲା ଶୂନ୍ୟେ
ଗଙ୍ଗାରେ ମେଲିଣ ତାଙ୍କୁ ସ୍ନାନ ବେଗେ କଲା
ଆପଣା ଥାଟରେ ଯାଇ ପ୍ରବେଶ ହୋଇଲା ।
ଏଥିଉତ୍ତାରେ ନୃସିଂହ ବେନିଭାଇ ଆସି
ପହଣ୍ଡି ବିଜେ ପରାୟେ ଉଭା ହୋଇ ଆସି ।
ଶେଷଦେବଙ୍କ ଭୁଜ ଧରି ବିଜେକଲେ
ମାତା ପିତାଙ୍କର ଆଗେ ପ୍ରବେଶ ହୋଇଲେ
ନିରେଖି ରହିଲେ ଦଣ୍ଡେଯାଏ ଭଗବତୀ
ବୋଇଲେ ଫିଟିଲା ଏବେ ମୋର ମନୁଭ୍ରାନ୍ତି
ଚହିଁଉତ୍ତାରୁ ପୁତ୍ରଙ୍କ ଓଷ୍ଠ ମାଏ ଧରି
ଆସିଲ କିହୋମୋ ବାପବୋଲି କୋଳକରି
ତୁମ୍ଭଙ୍କୁ ନ ଦେଖି ମୋର ସାହା ଉଡୁଥିଲା
ଏବେ ମୋର ପାଞ୍ଚପ୍ରାଣ ଦେହେ ପ୍ରକାଶିଲା
ଦଇତ୍ୟ ଚଣ୍ଡାଳ ଦେଖି ଯୋଡ଼ା ମୁଣ୍ଡ ହାଣି
ତୁମ୍ଭରି ରୂପ ପରାୟ ଦେଖାଇଲା ଆଣି ।
ଥିବାରୁ ପରମଲକ୍ଷ୍ମୀ ମୋର କୁଳବଧୂ
ଦେଖିଲି ପୁତ୍ର ବେନିଙ୍କ ଲକ୍ଷ୍ମୀ ପରସାଦୁଁ ।
ଅନନ୍ତ ବୋଇଲେ ମାଗୋ ଶୁଣ ଗର୍ଭଧାରୀ
ସାକ୍ଷାତେ କମଳା ସେହି ଭୃଗୁଙ୍କ କୁମାରୀ ।
ତେଣୁ ସେ ଭାର୍ଗବୀ ନାମ ଅଟେ ତାହାଙ୍କର
ଭୂତ ଭବିଷ୍ୟତ କଥା ଜାଣନ୍ତି ତତ୍ପର ।
ସେ ଆମ୍ଭର ଗୃହେ ଥାନ୍ତେ ତୁମ୍ଭର କି ଭୟେ
କୋଟି କୋଟି କଷଣକୁ କରନ୍ତି ସେ କ୍ଷୟେ ।
ଏ ଜନ୍ମ ମିଶି ଜନ୍ମିଲେ ସେହୁ ତିନି ଥର
ଆଦ୍ୟରେ ଏ ମହାଲକ୍ଷ୍ମୀ ଅଟେ ଅବତାର ।
ତ୍ରେତାଯୁଗରେ ଜନକ ଘରେ ହେବ ଜାତ
ସୀତା ନାମ ବହିବେ ସେ ଜଗତର ମାତ ।
ପୁଣିହିଁ ଦ୍ୱାପରଯୁଗେ ହୋଇବେ ରୁକ୍ମିଣୀ
ଏକଥାଯାକ ପୁରାଣେ ଆମ୍ଭେ ଅଛୁ ଶୁଣି ।
ନୃସିଂହ ବୋଇଲେ ମାଗୋତୁମ୍ଭେ ଆମ୍ଭମାତା
ଆମ୍ଭ ସମାନ ଅଟନ୍ତି ଜାଣ ଭୃଗୁସୁତା ।
ଯାହାଙ୍କ କନ୍ଧରେ ଲକ୍ଷ୍ମୀ ବିଜେ କରିଥାନ୍ତି
କେବେହେଁ ତାହାଙ୍କୁ ଅପଘାତ ନ ପୀଡ଼ନ୍ତି ।
କମଳା କନ୍ଧୁ ଖସନ୍ତି ଯାର ନିଷ୍ଠେ ଜାଣ
ତାହାଙ୍କୁଟି ଅପମୃତ୍ୟୁ ଘୋଟେ ଅଳ୍ପକେଣ ।

କମଳା କାନ୍ଧେ ଥିଲେ ନପାରେ ଯମ ନେଇ
ଲକ୍ଷ୍ମୀ କନ୍ଧୁଗଲେ ମନ୍ଦ ପ୍ରକୃତି ଯେ ହୋଇ
କମଳା ଖସିଲେ କନ୍ଧୁ ହୁଏ ବୁଦ୍ଧି ନୀଚ
ଘେନଇ ସେ ଅପଖ୍ୟାତି ହୋଇ ପରପଞ୍ଚ ।
ଲୋକଙ୍କୁ ଦିଅଇ ଦୁଃଖ ନାନାବିଧ କ୍ଳେଶ
ଅଳ୍ପକେ ମରନ୍ତେ ନୋହେ ଚିର ଯେ ଆୟୁଷ
ପାପିଷ୍ଠ ମଲେ ବୋଲନ୍ତି ପାପ ଏଥୁଗଲା
ସୁବିଜ୍ଞ ମଲେ ବୋଲନ୍ତି ଭଲ ଯେ ନହେଲା ।
ଶ୍ରୀହରି ପୁତ୍ର ଯେ ତୁମ୍ଭ ଲକ୍ଷ୍ମୀ ଅଟେ ବଧୂ
ଏବନେ ଥାଆନ୍ତେକିମ୍ପାଘୋରକିମାତାକାନ୍ଦୁ
ଶୁଣିଣ ସେ ଭଗବତୀ ଆନନ୍ଦିତ ହେଲେ
ପୁତ୍ର ବଧୂଙ୍କୁ ଘେନିଣ ଗୃହେ ଚଳିଗଲେ ।
ଚଉଷଠୀ ସସ୍ର କନ୍ୟା ଆଉ ଅଷ୍ଟ ସଖୀ
ଚାମର ଢାଳନ୍ତି ଧୀରେ ଯାଇ ଶଶିମୁଖୀ
କୃଷ୍ଣବଲ୍ଲଭ ଆନନ୍ଦ ନୁହଇ ଯେ କହି
ଚଳିଲେକ ଇଳାଦେବୀ ସୁବେଶ ଯେ ହୋଇ
ଦେଖି ନଗ୍ରଲୋକେ ବଡ଼ ସନ୍ତୁଷ୍ଟ ହୋଇଲେ
ଅସୁରେ ମରନ୍ତୁ ବୋଲି ହୁଳହୁଳି ଦେଲେ ।
କନଡ଼ା ମାଳଶ୍ରୀ ରାଗେ ଗୀତମାନ ଗାଇ
ରହିଲେ ଅତି ଆନନ୍ଦେ ଯେଝା ଗୃହେ ଯାଇ
ଶ୍ରୀନୃସିଂହ ବେନିଭାଇ ସନ୍ଧ୍ୟାପୂଜା ସାରି
ଷୋଡ଼ଶ ଉପଚାରରେ ଦେବପୂଜା କରି ।
ଆସନ ଗଡୁ ଯେ ପାଦ୍ୟ ଅର୍ଘ୍ୟ ମଧୁପର୍କ
ବସନ ସ୍ୱାଗତ ଜଳ ଆଭରଣ ଯାକ ।
ନୈବେଦ୍ୟ ଚନ୍ଦନ ଧୂପ ଦୀପ ଆଚମନ
ଏ ବିଧି ପୂଜା ସାରିଣ ଉଠି ଭଗବାନ ।
ମାତା ପିତାଙ୍କ ସହିତେ ଭାଇ ବେନି ସଙ୍ଗେ
ମଣୋହି ସ୍ଥାନରେ ବିଜେ କଲେଯାଇବେଗେ
ଷଡ଼ରସରେ ଯେ ପାକ ରାନ୍ଧିଥିଲେ ଲକ୍ଷ୍ମୀ
ସମସ୍ତଙ୍କୁ ଭୁଞ୍ଜାଇଣ ଭୁଞ୍ଜି ଅନ୍ତର୍ଯ୍ୟାମୀ ।
ଆଚମନ ସାରି ଆସନରେ ବିଜେକଲେ
ମହାଲକ୍ଷ୍ମୀଙ୍କୁ ଚାହିଁ ଶ୍ରୀମୁଖେ ଆଜ୍ଞା ଦେଲେ
କ୍ଷୁଧାର୍ତ୍ତୀ ହୋଇଣ ଧାଇଁ ଆସିଲୁରେ ସଖି
ତତ୍କାଳେ ଆମ୍ଭଙ୍କୁ ଷଡ଼ରସ ଦେଲୁ ଦେଖି
ଏବେ ସେ ନୃସିଂହଗଣ ଯୁଦ୍ଧେଛନ୍ତି ଲାଗି
ତାଙ୍କୁ ଦୟାକରି ମିଳୁ ସୁଭୋଜନ ବେଗି ।
ବୁଝିଲେ ସଂସାରଯାକ ତୁହି ସିନା ପାଳୁ
ଭକ୍ଷନ୍ତୁ ନୃସିଂହଗଣ ତୁମ୍ଭ କୃପାବଳୁ ।
କର୍ଣ୍ଣାଟେଶ ରାଜା ପୁଣି ଯେ ମନ୍ତ୍ରୀ ସୁଜାଣ
ଖଗେଶ୍ୱର ସହ ତୋଷ ହୁଅନ୍ତୁ ଭୁଞ୍ଜିଣ ।

ଶୁଣିଣ ସେ ମହାଲକ୍ଷ୍ମୀ ସ୍ୱାମୀ ଆଜ୍ଞା ଗୋଟି
ଚାହିଁଲେ ସେ ସମସ୍ତଙ୍କୁ କରି ଏକଦୃଷ୍ଟି ।
ସବୁରି ଆଗେ ମିଳିଲା ଯାଇ ଷଡ଼ରସ
ହସ୍ତେ ପଡ଼ନ୍ତେ ତକ୍ଷଣେ କଲେ ସର୍ବେଗ୍ରାସ
ବୋଲନ୍ତି ହେ ଧନ୍ୟ ଧନ୍ୟ ଶ୍ରୀନୃସିଂହ ପ୍ରଭୁ
କମଳା ଦୟା କଲେବି ତୁମ୍ଭଦୟା ସବୁ ।
ଗୋବିନ୍ଦ ଆଶ୍ରୟ କଲା ଲୋକେ ଭାଗ୍ୟବନ୍ତ
ତାହାଙ୍କୁ ସର୍ବେ ବୋଲନ୍ତି ଜାଣି ବିଷ୍ଣୁଭକ୍ତ
ଏହି ରସ ସୁଧାପାନ ଆନେ ମିଳନ୍ତା କି
ଏରୂପେ ବୋଲି ଅମୃତଦେଲେ ସର୍ବେଢୋକି
ମହାବଳିଷ୍ଠ ହୋଇ ସେ କଲେ ଘୋର ଯୁଦ୍ଧ
କର୍ଣ୍ଣାଟେଶ ଯୁଦ୍ଧେ କଲେ ଅସୁରଙ୍କୁ ବଧ ।
ନାଶିଲେ ସୁଜାଣ ମନ୍ତ୍ରୀ ଦୈତ୍ୟ ପଦ ଦୁଇ
ନୃସିଂହଗଣଙ୍କୁ କହିଲେକ ଚିତୁଆଇ ।
ବୋଇଲେ ଅସୁରବଂଶ ନିପାତ ଯେ କର
ନୃସିଂହଠାକୁର ଆସି କରନ୍ତୁ ସମର ।
ଶୁଣିଣ ନୃସିଂହଗଣ ଧାଇଁ ଧାଡିକାରେ
ପିଟିଲେ ବଜ୍ର ଶକତି ଦୈତ୍ୟଙ୍କ ମୁଣ୍ଡରେ ।
ଜଣକେ ପାରନ୍ତି ଦୈତ୍ୟମାନେ ଗିରିଟାଳି
ନୃସିଂହଗଣ ଯୁଝନ୍ତି ପ୍ରାୟ ତାଙ୍କୁ ତୋଳି ।
ଯୁଝନ୍ତି ଅସୁରବଳ ଆଶା ଛାଡ଼ି ପ୍ରାଣ
ବିନ୍ଧନ୍ତି ଯେ ନିଃଶ୍ୱାସକେ କୋଟିକୋଟି ବାଣ
ଶ୍ରୀନୃସିଂହଗଣ ଅଙ୍ଗ ଅଟେ ବଜ୍ର ସେହ୍ନା
ବାଜି ଶରମାନ ହୋଇଯାନ୍ତି ସବୁ ଚୂନା ।
ଅସୁର ମାରି କରନ୍ତି ବୀରେ ରଣକେଳି
ଜୀବନ ଛାଡ଼ି ଦଇତ୍ୟେ ପଡ଼ିଲେକ ଢ଼ଳି ।
ଦଇତ୍ୟେ ବିନ୍ଧନ୍ତି ଶର ହୋଏ ଉର୍ଦ୍ଧ୍ୱବାହୁ
ରବିକୁ ଅମାବାସ୍ୟାରେ ଘୋଟେଯେହ୍ନେ ରାହୁ
କଟାରୀ ବୁଲାଇ ଦୈତ୍ୟଙ୍କର ମୁଣ୍ଡ ମୋଡ଼ି
ଖାଆଲୋ ଯୋଗିନୀ ବୋଲି ଦ୍ୟନ୍ତିଘୋରରଡ଼ି
ଦନୁଜେ ମରନ୍ତେ ବହିଲାକ ରକ୍ତନଦୀ
ଆଲୋପି ଦେଖିଣ ତାହାବହୁତ ଯେ କାନ୍ଦି ।
ବୃକା ବୋଇଲା ଆଲୋପି ମୋର କଥା ଶୁଣି
ଶ୍ରୀନୃସିଂହ ବେନିଭାଇ ପଳାଇଲେ ଜାଣି ।
ଗୃହରେ ଦେଖି ଆସିଛି ତାଙ୍କୁ ଜାଣ ମୁହିଁ
ସୈନ୍ୟ ଛାରକୁ ତାହାର ଡରିବା କିମ୍ପାଇଁ ।
ଆଲୋପି ବୋଲେ ତୁ ସତ କହିଲୁରେ ବାବୁ
ଶ୍ରୀନୃସିଂହ ସୈନ୍ୟମାରିବା ଆସ ଏବେ ସବୁ
ରାଉତ ନଥିବା ସୈନ୍ୟ ଜାଣ ଛେଳି ପ୍ରାୟ
ଦେଖ ଆହୋ ବୃକାସୁର କରୁଛି ମୁଁ ଜୟ ।

ଏରୂପେ ବୋଲି ଦଇତ୍ୟ ଧଇଲାକ ବାଣ
ବିନ୍ଧିଲାକ ମନ୍ତ୍ରପଢ଼ି ଗୁଣେ ବସାଇଣ ।
ଦେଖିଣ ମୃତ୍ୟୁ ନୃସିଂହ ଆଡ଼ିଲେକ ମୁଣ୍ଡ
ବାଜିଣ ସେ ବାଣମାନ ହେଲେ ଖଣ୍ଡ ଖଣ୍ଡ ।
ପୁଣିହିଁ ଆଲୋପି ବିନ୍ଧିଲାକ ଶର କୋଟି
ଦେଖିଣ ମୃତ୍ୟୁ ନୃସିଂହ ବିସ୍ତାରିଲେ ପାଟି ।
ପଡ଼ିଣ କ୍ଷେ ଶରମାନେ ଗର୍ଭେଯାଇ ମିଳି
କ୍ରୋଟାନଳେ ପଡ଼ି ତତକ୍ଷଣେ ଗଲେ ଜଳି
ଦେଖିଣ ଆଲୋପି ଦୈତ୍ୟମାନେ କଲା ଶଙ୍କା
ପୁଣିହିଁ ଧଇଲା କରେ ବଜ୍ର ଶକ୍ତି ଏକା ।
ହୁଂକାର ନାଦେ ପିଟନ୍ତି ଶକ୍ତି ରୋଷ ବହି
ଚାହିଁଣ ମୃତ୍ୟୁ ନୃସିଂହ ଗଲେ ଆଡ଼ ହୋଇ
ଲେଉଟି ବଜ୍ର ଶକତି ଧରି ଦୈତ୍ୟ ଉଠି
ମୃତ୍ୟୁନୃସିଂହ ମୁଣ୍ଡରେ କୋପେନେଇ ପିଟି
ଦେଖିଣ ମୃତ୍ୟୁ ନୃସିଂହ ଗଲେ ଆଡ଼ହୋଇ
ଭୂମିରେ ତ୍ରିତାଳ ପଶିଲାକ ଶର ଯାଇ ।
ଧାଇଁଯାଇ ମହାକୋପେ ସେ ମୃତ୍ୟୁନୃସିଂହ
ମୁଥେ ମାରନ୍ତେ ପଡ଼ିଲାମୋହେ ଦୈତ୍ୟସିଂହ
ସେଠାରୁ ବଳି ତାହାକୁ ବସିଲେକ ମାଡ଼ି
ପୁଣିହିଁ ମୃତ୍ୟୁନୃସିଂହ ପିଟିଲେକ ବାଡ଼ି ।
ଅସୁର ଅଙ୍ଗରେ ବାଜି ହେଲା ମସିଗୁଣ୍ଡ
ପୁଣିହିଁ ମୃତ୍ୟୁନୃସିଂହ ଧରି ଲୌହଦଣ୍ଡ ।
କ୍ରୋଧରେ ଅସୁର ଅଙ୍ଗେ ତାହାନେଇ ପିଟେ
ବାଜନ୍ତେ ଲୌହଦଣ୍ଡରୁ ଅନଳ ଯେ ଉଠେ
ଶସ୍ତ୍ର ନ ଭେଦନ୍ତେ କୋପେସେ ମୃତ୍ୟୁନୃସିଂହ
ଆକର୍ଷି ବସିଲେ ବାଳବନ୍ଧେ ମାଡ଼ି ଅଙ୍ଗ ।
ମାଇଲେକ ବଜ୍ରମୁଥେ ନେଇ ହୃଦେ ତାର
ପଡ଼ିଛି ଦୈତ୍ୟ ଭୂମିରେ ଦେଇ ଆଣ୍ଡୁଭାର
ମାଡ଼ିବସି ଦଶନଖେ ରାମ୍ପିଲେ ତା ବୁକୁ
ତେବେ ସେ ନଘଟେ ମୃତ୍ୟୁଆଲୋପି ଦୈତ୍ୟକୁ
ଭଳନ୍ତି ମୃତ୍ୟୁନୃସିଂହ ନ ପାରିବି ଆଉ
ଛାଡ଼ିଣ ଦେବି ପଛକେ ଏ ପଳାଇ ଯାଉ ।
ମୃତ୍ୟୁକୁ ନୃସିଂହ କଥା ଦେବତାଏ ଜାଣି
ଶୂନ୍ୟରେ ଥାଇ କରନ୍ତି ଭୟେ ସ୍ତୁତି ପୁଣି ।
ବୋଲନ୍ତି ଶୁଣହୋ ସ୍ୱାମୀ ମୃତ୍ୟୁନୃସିଂହହରି
ସନ୍ଥଜନ ରଖି ଦୁଷ୍ଟଜନ ଦେଇ ମାରି ।
ଲୋହିତବର୍ଣ୍ଣ ତୋ ଦେହଆରକ୍ତ ତୋଦୃଷ୍ଟି
ବିକଟାଳ ରୂପେ ପାଳୁ ବ୍ରହ୍ମାଣ୍ଡ ତୁ ଘୋଟି ।
ଲହଲହ ଜିହ୍ୱା ତୋରଶିରେ ମୁଣ୍ଡମାଳ
ରାକ୍ଷସ ବଳକୁ ତୁହି ଅଟୁ କାଳାନଳ ।

ବ୍ରହ୍ମାଣ୍ଡ କମ୍ପଇ ଯାଇ ଶବ୍ଦ ରଡ଼ିଘାତେ
ବୁଝିଲେ ଏ ଛାର କିସ ଅଟନ୍ତି ଦଇତ୍ୟେ ।
ଏହାରପାଇଁ ନୃସିଂହ କଲେ ଚୋଟେକାତ
ମୋଡ଼ିଲେ ମୁଣ୍ଡ ଛିଡ଼ିଣ ପଡ଼ିବ ଦଇତ୍ୟ ।
ଏହାର ଦେହରେ ଅଛି ଅମୃତ ଯେ ମଣି
ଏବର ଏହାକୁ ଦେଇଛନ୍ତି ଗୋସାମଣି ।
ମୁଣ୍ଡ ସଙ୍ଗେଯେବେ ଅନ୍ତ ବାହାର ହୋଇବ
ତେବେ ଯାଇ ତାର ମଣି ଛିଡ଼ିଣ ପଡ଼ିବ ।
ଏରୂପେ କହି ଡାକିଲେ ଦେବେରହି ଶୂନ୍ୟେ
ମୃତ୍ୟୁ ନୃସିଂହ ଶୁଣିଲେ ତାହା ବେନିକର୍ଣ୍ଣେ
ମନରେ ହରଷ ହୋଇ ଛାଡ଼ି ଘୋରରଡ଼ି
ମୁଣ୍ଡରେ ପଡ଼ିଲେ କାଳ ଆସି ତାର ମାଡ଼ି
ସେହିଠାରୁ ପ୍ରାଣ ତାର ଗଲା ଅଧା ସ୍ୱର୍ଗ
ପିଛଡ଼ା ନ ପକାଇ ସେ ଚାହିଁ ଚଉଦିଗ ।
ମୋଡ଼ନ୍ତେ ତା ବେକ ଧରି ମୁଣ୍ଡ ଗଲା ଛିଡ଼ି
ଆଲୋପି ପ୍ରାଣଗଗନ ମାର୍ଗେ ଗଲା ଉଡ଼ି ।
ଖସିଣ ପଡ଼ିଲା ମଣି ରୁଧିର ସଙ୍ଗରେ
ପର୍ବତ ସମାନ ପିଣ୍ଡ ପଡ଼ିଲା ଭୂମିରେ ।
ଶୂନ୍ୟରେ ଥାଇଣ ଦେବେ କଲେ ଜୟଜୟ
କୁସୁମ ବୃଷ୍ଟି କରିଲେ ଶ୍ରୀନୃସିଂହ କାୟ ।
ଯାବତ ଜୀବଙ୍କ ମୁଣ୍ଡେ ସଦା ବିଷ୍ଣୁଭ୍ରମି
ବୋଇଲନ୍ତି ଶୁଣହେ ମୃତ୍ୟୁ ନୃସିଂହ ଭୋସ୍ୱାମୀ
କୀଟବ୍ରହ୍ମଯାଏ ସବୁଙ୍କରି ମୁଣ୍ଡେ ବସୁ
ଚକ୍ଷୁ ପଲକ ଚାଳି ତୁ ସମସ୍ତଙ୍କୁ ଗ୍ରାସୁ ।
ତୁ ଯେଉଁ ରୂପେ ଗ୍ରାସୁ ନପାରେ କେହୁଜାଣି
ମାରି ଜନ୍ମିଲେ ଆମ୍ଭଙ୍କୁ ତୁହି ଗ୍ରାସୁ ପୁଣି ।
ମୃତ୍ୟୁଠାରୁ ବର୍ତ୍ତିବାକୁ ନାହିଁ କାର ବୁଦ୍ଧି
ଶ୍ରୀବ୍ରହ୍ମା ବିଷ୍ଣୁ ଆବର ନର ସନକାଦି ।
ବିହାର କରୁ ସକଳ ମସ୍ତକେ ଯେ ତୁହି
ତୋର ଉପରେ କାହାର ଆଉବଳ ନାହିଁ ।
ମୃତ୍ୟୁକୁ ଦେହରେ ବହି ସବୁଦ୍ରବ୍ୟ ସଞ୍ଚ
ମୃତ୍ୟୁକୁ ଛାଡ଼ି ଗୋବିନ୍ଦ ପାରେ ଏକା ବଞ୍ଚ
ସେ ଯହିଁ ଗଲେକ ମୃତ୍ୟୁ ସଙ୍ଗେତାର ଥାଇ
ମୃତ୍ୟୁକୁ ଛାଡ଼ି କେହି ନ ପାରେ ଦେହ ବହି
ଅମୃତକୁଣ୍ଡେ ରହିବ ପ୍ରାଣୀ ଯେବେ ବୁଡ଼ି
କେବେହେଁ ମୃତ୍ୟୁ ତିଳାର୍ଦ୍ଧେ ନାହିଁତାକୁଛାଡ଼ି
ବୈକୁଣ୍ଠପୁରକୁ ଗଲେ ମୃତ୍ୟୁ ନାହିଁ ଆନ
ମୃତ୍ୟୁକୁ ଜିଣି ଅଛନ୍ତି ଏକା ଭଗବାନ ।
ମୃତ୍ୟୁକୁ ଛାଡ଼ି ସଂସାରେ ନର ନ ରହଇ
ସ୍ୱର୍ଗରେ ରହିଲେ ବଞ୍ଚ ନ ପାରଇ ସେହି ।

ଯେଣେହେଁ ଗଲେ ମୃତ୍ୟୁକୁ ସଙ୍ଗେ ଥାଏ ବହି
ବସି ବସି ଚାଲିଗଲି ବିଜେ କରୁଥାଇ ।
ପାଲିଙ୍କି ପଲ୍ୟଙ୍କେ ଗଜ ଅଶ୍ୱେ ବସିଥିଲେ
ମୃତ୍ୟୁକୁ ସେ ମୁଣ୍ଡେ ବହି ରାତ୍ରଦିବା ବୁଲେ ।
ଯାହାଙ୍କୁଟି ଯେତେବେଳେ ଥାଇଯେଉଁ ଯୋଗ
ତାହାକେ ମେଣ୍ଟି ଜାଣ ନ ପାରେ ତିନିସ୍ୱର୍ଗ
ହେ ସୁଜ୍ଞ ଜନେ ମୃତ୍ୟୁକୁ କଲେ ମନେଚିନ୍ତା
ମୃତ୍ୟୁ କଥାକୁ ଅଟନ୍ତି ସେହି ମୋକ୍ଷଦାତା ।
ମାନବ ଜନ୍ମେ ଏହାକେ ପାରେ ସଂଖ୍ୟାକରି
ବିପ୍ର ପିତାମ୍ୱର ସେହି ମୃତ୍ୟୁକୁ ଯେ ଡରି ।
ମୃତ୍ୟୁରୁ ବଞ୍ଚି ନ ପାରେ ରହିଲେଟି ଗୁପ୍ତେ
ଶ୍ରୀଶାରଳା ଠାକୁରାଣୀ ଆଜ୍ଞାଦେଲେ ମୋତେ
ବୋଇଲେ ତୁ ଦେହ ବହି ଡରୁଛୁ କିମ୍ପାଇ
ମୃତ୍ୟୁକୁ ଯେ ଲୁଚିବାକୁ ସ୍ଥାନ ନାହିଁ କାହିଁ ।
ପଳାଇଗଲେ ମୃତ୍ୟୁ କି ଛାଡ଼ିବ ମୁହୂର୍ତ୍ତେ
ଏଥକୁ ପରମଗତି କହେ ଶୁଣ ତୋତେ ।
ଏ ସଂସାରୁ ତରିବାକୁ ଲୋଡ଼ ଯେବେ ଭେଳା
ଆଜ୍ଞାଦେଲୁ ଲେଖ ଶ୍ରୀନୃସିଂହ ଗ୍ରନ୍ଥଲୀଳା ।
ଏରୂପେ ପରମଲାଭ ଦେଉ ମାତା ମୋତେ
ତେଣୁ ଏ ନୃସିଂହ ଗ୍ରନ୍ଥ ଲେଖେ ଜନହିତେ
କହନ୍ତି ଯେ ବେଦ ବ୍ରହ୍ମା ଶୁଣ ହେ ନାରଦ
ଶ୍ରୀନୃସିଂହ ପୁରାଣ ଏ ଅଟେ ମୋକ୍ଷପ୍ରଦ ।
ମାତାପିତାଙ୍କ ଛାମୁରେ ନୃସିଂହ ଜଣାଇ
ସମର ସ୍ଥାନେ ମିଳିଲେ ଆସି ବେନିଭାଇ ।
ଆଲୋପି ଦୈତ୍ୟ ମାରିବା ଖବର ସେ ଶୁଣି
ମନମଧ୍ୟେ ବଡ଼ ଶ୍ରଦ୍ଧା ବହି ଚକ୍ରପାଣି ।
ନୃସିଂହ ବୋଇଲେ ଶୁଣ ଉଗ୍ର ନରସିଂହ
ସଲୋପି ମାର ବେଗେ କରୁ ପ୍ରାଣତ୍ୟାଗ ।
ଆଉ ସୈନ୍ୟଙ୍କୁ ନୃସିଂହଗଣ ମାର ଯାଇ
ମନଇଚ୍ଛାରେ ଯେ ମାର ସୃଷ୍ଟି ରକ୍ଷାପାଇଁ ।
ଶୁଣିଣ ନୃସିଂହ ସେହି ଆଜ୍ଞା ପରମାଣେ
ଧନୁଧରି ଧାଇଁ ଯାଇ ପଶିଗଲେ ରଣେ ।
ଶ୍ରୀ ଉଗ୍ର ନୃସିଂହ କରେ ନାରାଚ ଧଇଲେ
ସଲୋପି ଦଇତ୍ୟ ଆଗେ ଯାଇଁ ବିଜେକଲେ ।
ଦେଖିଣ ଦଇତ୍ୟ ଆଗେ ଯାଇଁ ଉଭା ହୁଏ
ବୋଇଲେ ତୁହି କି କୃଷ୍ଣବଲ୍ଲଭର ପୋଏ ।
ଶୁଣିଣ ଉଗ୍ର ନୃସିଂହ ହଇ ହଇ କହି
ତୁ ଯାହା ବୋଇଲୁ ଆମ୍ଭ ପ୍ରାଣ ଏକ ସେହି
ବୁଝିବା ପାଇଁ ତୋହର କରାମତ ବଳ
ତେଣୁ ସେ କି ମୋତେପେଶିଛନ୍ତି ଆଦିମୂଳ ।

ଦିଶୁଛି ମୋତେ ଝିଣ୍ଟିକା ପ୍ରାୟ ତୁହି ଜାଣ
ନୃସିଂହ ସଙ୍ଗେ କେ ପରି ଅଛି ସଂସାରେଣ
ଶୁଣି ସଲୋପି ବୋଇଲା ତେବେ ଆଚ୍ଛାଆଚ୍ଛା
ଏକ ନାରାଚ ବାଜିଲେ ହୋଇଯିବ ମୂର୍ଚ୍ଛା ।
ଏରୂପେ ବୋଲି ଧଇଲା ଧନୁ ବାମକରେ
ପର୍ବତ ବାଣ ସହସ୍ରେ ପେଷିଲା ତପ୍ପରେ ।
ବଜ୍ରଶରେ ଭାଙ୍ଗନ୍ତେ ଯେ ତାକୁ ଉଗ୍ରମୂର୍ତ୍ତି
ଦେଖିଣ ସଲୋପି ମନେ କରଇ ଯେ ସ୍ତୁତି ।
ବୋଲେ ଧନ୍ୟଧନ୍ୟ ତୁହେ ଉଗ୍ର ନରସିଂହ
ଯେ ତୋତେ ଜନ୍ମକଲା ସେନିଷ୍ଟେ ବିଷ୍ଣୁ ଅଙ୍ଗ
କେଡ଼େହେଁ ଶର ମୋହର ମେଣ୍ଟିଲୁ ତୁଆଜ
ପୁଣି ନାଶକର ଶର ବିନ୍ଧିଲା ଦନୁଜ ।
ତୀକ୍ଷ୍ଣଶର ସେ ନୃସିଂହ ନାଶିଦେଲେତାହା
ସେହି ନୃସିଂହ ଅଟନ୍ତି ସେହୁ ଚଉବାହା ।
ପୁଣିହିଁ ସେ ମେଘଶର ପେଷିଲା ସଲୋପି
ଆସିଲେ ସେ ମେଘମାନେ ଦଶଦିଗ ବ୍ୟାପି
ଶୂନ୍ୟରେ ତ୍ରିଶୂଳ ପ୍ରାୟ ଆସନ୍ତେସେମାଡ଼ି
ନୃସିଂହ ଦେଖି ପବନ ଶର ଦେଲେ ଛାଡ଼ି ।
ବହିଲାକ ଅଣଚାଶ ଭାଜି ମେଘମାଳ
ପଶିଲେ ପବନ ବଳେ ଗଗନ ମଣ୍ଡଳ ।
ବିନ୍ଧିଲା ବେଲଙ୍କ ନାମେ ଶର ପାଞ୍ଚଗୋଟି
ଲୋମ ଗୋଟିକେ ଯେ ଏକହେବଲେଖିଲେଟି
ଖଣ୍ଡଦୂରୁ ଦେଖି ଉଗ୍ର ନୃସିଂହ ତା ଶୁଣି
ବାବଲ ଶରକୁ ପେଷି ପକାଇଲେ ହାଣି ।
ପୁଣି ସଲୋପି ନିର୍ଘାତ ଶର ଦେଲା ବିନ୍ଧି
ପେଷି ବଜ୍ରଶର ଦେଲେ ନୃସିଂହ ତାଛେଦି
କୁହୁକ ନାରାଚ ପୁଣି ପେଷିଲା ଦଇତ୍ୟ
ସୂର୍ଯ୍ୟାବଳୀ ନାରାଚେ ତା କଲେ ପ୍ରଭୁ ହତ
ପୁଣି ସଲୋପି ଆସୁର ଶର ଦେଲା ପେଷି
କାଳିକା ବାଣରେ ଉଗ୍ର ନୃସିଂହ ତା ନାଶି
ଏରୂପେ ଲାଗନ୍ତେ ଅନେକ ଯେ ଘୋରଯୁଦ୍ଧ
ଦେଖିଣ ନୃସିଂହ କଲେ ମହାକ୍ରୋଧ
ପିଟନ୍ତେ ଅମୋଘ ଗଦାନେଇ ଦୈତ୍ୟଅଙ୍ଗେ
ଭାଙ୍ଗିଲେ ସାରଥି ସହ ରଥ ରଣରଙ୍ଗେ
ଯାନ ଅଭାବେ ଯୁଝିଲା ହୋଇ ପାଦଗତି
ତିନିଲକ୍ଷ ନାରାଚ ପଞ୍ଚାଶତ ପ୍ରତି ।
ଅଧା ଚନ୍ଦ୍ରକୁ ପେଷିଲେ ଉଗ୍ର ନରସିଂହ
ସଲୋପିର ଧନୁଶର କଲେ ସବୁ ଭଙ୍ଗ ।
ଶୁଣି ଦୈତ୍ୟବୀର ଧଇଲାକ ଆନ ଧନୁ
ନାରାଚ ଶତେ ପେଶିଲା କୋପ ବହି ଧନୁ

ପଡ଼ିଲା ସେ ଶର ଉଗ୍ର ନରସିଂହ ଅଙ୍ଗେ
ଲୋମ ଭେଦି ବହିଲାକ ରକ୍ତ ବେନି ଜଙ୍ଗେ
ରୁଧିର ଦେଖିଣ ଉଗ୍ର ହେଲେ ପରଚଣ୍ଡ
ବାବଲଶର ପେଷିଲେ କଲେ ବେନିଖଣ୍ଡ ।
ଧନୁ ଛିଡ଼ନ୍ତେ ଦଇତ୍ୟ ହେଲା ଶୂନ୍ୟହସ୍ତ
ମାଇଲା ନୃସିଂହ ହୃଦେ ନେଇ ବଜ୍ର ମୁଠ ।
ବାଜନ୍ତେ ସଲୋପି ଦୈତ୍ୟ ମୁଠ ହୃଦେ ଯାଇ
ହସିଲେ ଉଗ୍ର ନୃସିଂହ ହସ୍ତେ ପୋଛିଦେଇ
ଅସୁର ଉପରେ ମାଡ଼ିବସି ଘୋରନାଦେ
ଚମକି ପଡ଼ିଲା ତିନିପୁର ସେ ଶବଦେ ।
ଅସୁର ଲେଉଟନ୍ତେଣ ତାକୁ ଲେଉଟାଇ
ମାଇଲେକ ବଜ୍ରମୁଠ ଦୈତ୍ୟମୁଣ୍ଡେ ନେଇ
ମୁଠ ବାଜି ଅସୁରର ମୁର୍ଦ୍ଧାଗଲା ଫାଟି
ଶୂନ୍ୟପୁରେ ଦେବେ ଥାଇ କଲେ ପୁଷ୍ପବୃଷ୍ଟି
ନମସ୍ତେ ଉଗ୍ର ନୃସିଂହ ତୁମ୍ଭ ପାଦେ ଆଶ
ସଲୋପି ଦୈତ୍ୟକୁ ମାରି ରଖିଲ ତ୍ରିଦଶ ।
ଆବର ଯେତେକ ସୈନ୍ୟଛନ୍ତି ବେଗେମାର
ଶୁଣି ହରିଗଣ ଧାଇଁଲେକ ଧାଡିକାର ।
ଦୈତ୍ୟଙ୍କର ଶିର ମୋଡ଼ିଧରି ମାଳେମାଳେ
ଏକଡ଼ ସେକଡ଼ ମୋଡ଼ି ପକାନ୍ତି ଭୂତଳେ ।
ଦୈତ୍ୟଙ୍କୁ ସେ ଦିଶୁଛନ୍ତି ଯେହ୍ନେ କାଳାନଳ
ଗରୁଡ଼େ ବସିଅଛନ୍ତି ପ୍ରଭୁ ଆଦିମୂଳ ।
ଭୈରବ ମୂରତି ଧରି ଶ୍ରୀ ନୃସିଂହ ବୀରେ
ଗହ ଗହ ଶବ୍ଦ କରି ଯାନ୍ତି ଫୁଙ୍ଫୁକାରେ ।
କେ ବେକ ମୋଡ଼ିଣକେହୁ କରେ ଖଣ୍ଡ ଖଣ୍ଡ
ମଉରଙ୍ଗେ ଡେଇଁ ଲମ୍ଫଇ କେ ଧରି ମୁଣ୍ଡ
ଚର୍ମକୁ ଉଚ୍ଛୁଡ଼ି କେହୁ ବସେ ଚକମାଡ଼ି
ବେନିଫାଳ କରି ବୁଲେ କେହୁ ଏକା ଫେଡ଼ି
ଏରୂପେ ନୃସିଂହଗଣ ଦୈତ୍ୟଯାକ ମାରି
ଆଉ କେ ଅଛି ଡାକନ୍ତେ ଫୁଙ୍ଫୁକାର କରି
ହସନ୍ତି ନୃସିଂହ ତାହା ଶୁଣି ନିଶ ଧରି
ନିଜଗଣଙ୍କୁ କହନ୍ତି ସମ୍ବୋଧନ କରି ।
ବୋଲନ୍ତି ଯେ କେତେଯୁଦ୍ଧ କଲଣିରେ ତୁମ୍ଭେ
ଆବର ଥିବା ଦୈତ୍ୟଙ୍କୁ ମାରିବୁ ଯେ ଆମ୍ଭେ
ଏରୂପେ ବୋଲିଣ ପ୍ରଭୁ ହସ୍ତେ ଚକ୍ରଧରି
ବୋଇଲେ ଥିବା ଦୈତ୍ୟଙ୍କୁଆସ ବେଗେମାରି
ସମର କରନ୍ତେ କାଳ ହେବ ସିନା ମଠ
ଏକାବେଳକରେ ଚକ୍ର ଯାଇ ମୁଣ୍ଡକାଟ ।
ବୀରବାହୁ ରଣକେଶୀ ବୃକାସୁର ତିନି
ମଦନା ଲୋହ ଅସୁର ହୃଷୀକେଶୀ ଘେନି ।

ଏ ଷଡ଼ ସେନାଙ୍କୁ ମାରି ଆସ ଶୀଘ୍ରେ ଚଳି
ଶୁଣିଣ ସେ ସୁଦର୍ଶନ ଗଲା ଆଜ୍ଞା ପାଳି ।
ମହାବିଶ୍ୱରୂପ ଧରି ଗର୍ଜିଣ ପଡ଼ିଲା
ଷଡ଼ସେନା ମୁଣ୍ଡ ଯାଇ କାଟି ପକାଇଲା
ଗଙ୍ଗାନଦୀରେ ସ୍ନାହାନ କଲାଯାଇ ପଶି
ନୃସିଂହ ଦକ୍ଷିଣ କରେ ବିଶ୍ରାମିଲା ଆସି ।
ବୋଇଲା ପୁଚ୍ଛିବି ଏକ କଥା ନାରାୟଣ
ଦେଖିଲି ବାଟେ ଆସୁ ମୁଁ ଅପୂର୍ବ ସ୍ତିରୀଗଣ
ଦୈତ୍ୟ ମଲାରୁ ଭୁଞ୍ଜନ୍ତି ମାଂସ ସେହୁ ବସି
କହନ୍ତି ନୃସିଂହ ସ୍ୱାମୀ ଶୁଣି ମନେ ହସି ।
ବୋଇନ୍ତି ସେମାନେ ଜାଣ ଅଟନ୍ତିଟି ଯେହୁ
ତାହାଙ୍କ ନାମ ଶୁଣ ଶ୍ରୀମୁଖେ ଆମ୍ଭେ କହୁ ।
ଚର୍ଚ୍ଚିକା ଚାମୁଣ୍ଡା ଭଗବତୀ ଯୋଗେଶ୍ୱରୀ
କାଳିକା ଯେ କାଳରାତ୍ରି ମେଧା ଶାକମ୍ଭରୀ ।
ନରେଣୀ ନାରେଙ୍ଗୀ ରାମଚଣ୍ଡୀ ଉଗ୍ରତାରା
କୋଠରୀ ବ୍ରାହ୍ମଣୀ ଆଉ ବାସେଳୀ ତ୍ରିପୁରା
ଚମ୍ପାଇ ଅପରାଜିତା ରୁପାଇ ପିଙ୍ଗଳା
ସରକମା ମାରକମା ହାହୁତୀ ହିଙ୍ଗୁଳା ।
କାଳରାତ୍ରି କାଳମାଳେ କଙ୍କାଇ କାଳିକା
ସିଦ୍ଧେଶ୍ୱରୀ କାଳଶୁଣି ପାଟେଳୀ ଚର୍ଚ୍ଚିକା
କଞ୍ଚାଖାଇ ବକ୍ରଦନ୍ତୀ ପିଶାଚୀ ଶୋଷିଣୀ
ନାଗୁଳା ବିମଳା ସର୍ପମୁଖୀ ବିମୋଚନୀ ।
ବିଜୟା ଡାକିନୀ ଛାୟା ମାୟା ଡାକେଶ୍ୱରୀ
ଅମ୍ବାଳୀ ବଙ୍କାଳୀ ଅମ୍ବୁବତୀ ଘଟଙ୍କରୀ ।
ଆବର ଶାଗୁଆ ନାଇକୋଳା ମିଟିଚିଲୀ
ଭକ୍ଷନ୍ତି ଭଲ୍ଲୁକୀ ଶାଗୁଣୀ ଯେ ପଲିପଲି ।
ନୃସିଂହଗଣଙ୍କୁ ଏହି ଥାନ୍ତି ଅନୁସରି
ଦୈତ୍ୟଙ୍କୁ ମାରନ୍ତେ ସେହୁ ଖାଆନ୍ତି ବିଦାରି
ଏହିରୂପେ ଶ୍ରୀମୁଖରୁ ଶୁଣି ସୁଦର୍ଶନ
ମନେ ପାଞ୍ଚେ ଧନ୍ୟ ଧନ୍ୟ ଏହି ଭଗବାନ ।
ହେ ବୁଧଜନେ ପୁରାଣ ଶୁଣ ଏକଚିତ୍ତେ
ଠିକ ଠିକ କରି କହିଲଇଁ ପଦ କେତେ ।
ମହାଗ୍ରନ୍ଥ ପୁରାଣ ଏ କଳନା ନ ଯାଇ
ପଢ଼ନ୍ତେ ଶୁଣନ୍ତେ ପୁଣି ଗତିମୁକ୍ତି ପାଇ ।
ସପ୍ତଜନ୍ମଯାକେ ଯେବେ ପାପ ଥିବ କରି
ସଙ୍କଟେ ଶୁଣି ସଂସାରୁ ଯିବ ହାଦେ ତରି ।
ନୃସିଂହ ପୁରାଣ ଶୁଣିବାର ପୁଣ୍ୟବନ୍ତୁ
ଯଶ ଶିରୀ ବର୍ଦ୍ଧିତ ଯେ ହୁଏ ଧର୍ମବନ୍ତୁ ।
ରାଜପୀଡ଼ା ଶତ୍ରୁ ପୀଡ଼ା ନବଗ୍ରହ ପୀଡ଼ା
କରନ୍ତି ସୁଦୟା ଏହୁ ଗ୍ରନ୍ଥ କଲେ ପଢ଼ା ।

ସକଳ ତୀର୍ଥକୁ ଗଲେ ଯେତେ ପୁଣ୍ୟ ଅଛି
ସେହି ପୁଣ୍ୟମାନ ଏହି ପୁରାଣେ ପୂରିଛି ।
ଏ ଗ୍ରନ୍ଥ ଶୁଣିଲା ଲୋକ ସବୁ ତୀର୍ଥ ଲଭେ
ଦେହାନ୍ତେ ବୈକୁଣ୍ଠେଘେନିଯାନ୍ତି ବାସୁଦେବେ
ପଦ ପଦକେ ଅମୃତ ଅଟେ ଏହୁ ବାଣୀ
ସନ୍ତୋଷେ ଶୁଣିଣ ଦାନ ଦେବେ ସାଧୁପ୍ରାଣୀ
ଦେହଅନ୍ତେ ଯେ ବସିବେ ଯାଇ ବିଷ୍ଣୁ ଲୋକେ
ବିପ୍ର ପୀତାମ୍ବରକୁ ଯେନେବେ ପୁଣ୍ୟଶ୍ଳୋକେ
ବଦୟନ୍ତି ବେଦବ୍ରହ୍ମା ଶୁଣ ହେ ନାରଦ
ଶ୍ରୀନୃସିଂହ ପୁରାଣ ଏ ଅଟେ ମୋକ୍ଷପ୍ରଦ ।
ଯେତେ ନୃସିଂହଗଣ ଶ୍ରୀଅଙ୍ଗୁ ଜନ୍ମିଥିଲେ
ପ୍ରଭୁଙ୍କ ଛାମୁରେ ଆସି ପ୍ରବେଶ ହୋଇଲେ ।
ରକତରେ ଜର ଜର ସବୁଙ୍କର ଅଙ୍ଗ
ମହାକାଳ ଫଳପ୍ରାୟ ଦିଶଇ ସୁରଙ୍ଗ ।
ଯୁଦ୍ଧେ ଜୟ କରି ସର୍ବେ ଅଙ୍ଗୁଭୟ ଛାଡ଼ି
ଶୁତିଲେ ଶ୍ରୀନୃସିଂହଙ୍କ ପଦ୍ମପାଦେ ପଡ଼ି ।
ଉଠ ଉଠ ବୋଲି ଆଜ୍ଞା ଦେଲେ ମହାପ୍ରଭୁ
ବୋଇଲେ ଅସୁର ସୈନ୍ୟ ନାଶିଲ ଯେ ସବୁ
ନୃସିଂହଗଣ କହନ୍ତି ଶ୍ରଦ୍ଧାବନ୍ତ ହୋଇ
ବୋଲନ୍ତି ଯେ ସାବଧାନେ ଶୁଣ ଲକ୍ଷ୍ମୀସାଇଁ ।
ମୁରକୁ ଜାଣ ଖବର ଦେବାକୁ ଗୋଟିଏ
ନାହାନ୍ତି ସବୁଙ୍କୁ ନାଶି ଯୁଦ୍ଧେ କଲେ ଜୟେ
ଶ୍ରୀନୃସିଂହ ତାହା ଶୁଣି ହସି ମନେ ମନେ
ଉଗ୍ର ନୃସିଂହକୁ ବର ଦେଲେକ ପ୍ରସନ୍ନେ ।
ଶ୍ରୀହରି ବୋଇଲେ ଶୁଣ ଉଗ୍ର ନରସିଂହ
ବତିଶ ଅକ୍ଷରେ ତୁମ୍ଭେ ହୁଅ ମନ୍ତ୍ର ଅଙ୍ଗ ।
ଉଗ୍ର ନରସିଂହ ବୀର ମନ୍ତ୍ରେ ଚକ୍ର ଧରି
ବିପ୍ରେ ୰ସିଲେ ନିମଗ୍ନ ହୋଇ ପୂଜାକରି ।
ବତିଶ ବର୍ଣ୍ଣେ ବସି ତୁ ହୁଏ ମନ୍ତ୍ରରାଜ
ଆମ୍ଭେ ଏକ ପ୍ରତ୍ୟକ୍ଷରେ ତୁମ୍ଭେ ଚତୁର୍ଭୁଜ ।
ବତିଶ ନୃସିଂହମୂର୍ତ୍ତି ବତିଶ ଅକ୍ଷରେ
ମନ୍ତ୍ରରାଜ ହୋଇ ରହୁ ସଂସାର ଭିତରେ ।
ଏବେ ମୋର ଶ୍ରୀଅଙ୍ଗରେ ସର୍ବେ ହୁଅଲୀନ
ଲେଉଟି ପ୍ରକାଶି ମାତ ଦେବ ଯାତୁଧାନ ।
ଏରୂପେ ଶ୍ରୀନୃସିଂହ ମୁଖରେ ଆଜ୍ଞା ଦେଇ
ନୃସିଂହଗଣ ରଖିଲେ ନିଜ ଅଙ୍ଗେନେଇ ।
ଏଥୁଅନନ୍ତରେ ସୁଜାଣ ଯେ ମହାମନ୍ତ୍ରୀ
କର୍ଣ୍ଣାଟେଶ୍ୱର ରାଜନ ସୂର୍ଯ୍ୟବଂଶ କ୍ଷତ୍ରୀ ।
ଏମାନେ ପାଶକୁ ସେନାଯାକ ହକରାଇ
ନୃସିଂହ ଠାକୁର ପାଶେ ପ୍ରବେଶିଲେ ଯାଇ

ମନ୍ତ୍ରୀ ବୋଇଲେ ହେ ସ୍ୱାମୀ ପରମ ଈଶ୍ୱର
ହେଲାଣି ତ ବେଳ ଅସ୍ତ ନଗ୍ରେ ବିଜେକର ।
ତୁମ୍ଭେ ଅନ୍ତର୍ଯ୍ୟାମୀ ସବୁଙ୍କରି ମନ ଜାଣ
ସମସ୍ତେ ମିଶି ମାଇଲୁ ଆମ୍ଭେ ଦୈତ୍ୟଗଣ ।
ଶ୍ରୀନୃସିଂହ ପ୍ରଭୁ ଶୁଣି ମନେ ହର୍ଷ ହେଲେ
କର୍ଣ୍ଣାଟକୁ ପ୍ରଶଂସି ମନ୍ତ୍ରୀକୁ ପ୍ରଶଂସିଲେ ।
ଗରୁଡ଼େ ପ୍ରଶଂସି ଯିବାପାଇଁ ହେଲେ ଉଭା
ବୋଇଲେ ବଦ୍ରିକାମୋର ତୁମ୍ଭଘେନି ଶୋଭା
ନଗ୍ରହିଁ ଶୋଭା ଗ୍ରହଣ ମୋର ଶୋଭାପାଏ
ତୁମ୍ଭ ସାହାବଳୁ ମୁହିଁ ସବୁ କରେ ଜୟେ ।
କେତେ ଲାଖ ବିନ୍ଧି ଲକ୍ଷ୍ମୀଙ୍କୁ ଯେହେଲୁ ବିଭା
ତୁମ୍ଭ ଘେନି ଅବତାର ଦିଶେ ମୋର ଶୋଭା
ଗରୁଡ଼ ଯତି ମୋହର ବ୍ରହ୍ମାଣ୍ଡରେ ଶ୍ରେଷ୍ଠ
କ୍ଷଣକେ ବହି ବୁଲଇ ଚଉଦ ବୈକୁଣ୍ଠ ।
ବୁଝିଲେ ମୋହର ତହୁଁ ଅଟେ ଭକ୍ତ ବଡ଼
ଗରୁଡ଼ ପ୍ରାୟ କେ ନାହିଁ ଭକ୍ତ ଯୋଗାରୁଢ଼ ।
କେତେହେଁକ ଶ୍ରମପାଇ ସେବିଛି ମୋ ପାଦେ
ଏହା ମହିମାରେ ଗୁଣ ଦିଶେ ଚାରିବେଦେ ।
କର୍ଣ୍ଣାଟ ଦେଶର ରାଜା କହିବା କି ପୁଣ
ଛାଡ଼ି ନିଜ ରାଜ୍ୟ ସେବିଅଛି ମୋତେ ଜାଣ ।
ମୁରକୁ ମାରି କରିବି ଯେବେ ମୁହିଁ ରାଜା
ଚାରିଯୁଗେ ମୋ ପ୍ରତିଜ୍ଞା ସବୁ ହେବ ବୁଝା ।
ସୁଜାଣ ମନ୍ତ୍ରୀ ମହିମା କହିବା କି ପୁଣି
କରିଛି ସେବା ମୋତେ ଶ୍ରୀଗୁରୁ ପ୍ରାୟ ମଣି
ଏ ଅବତାର ଅନ୍ତେ ଏ ଲେଉଟି ଜନ୍ମିବ
ତ୍ରେତାଯୁଗରେ ସୁମନ୍ତ ମନ୍ତ୍ରୀ ଯାଇ ହେବ ।
ଆମ୍ଭେ ଯେ ହୋଇବୁ ରଘୁନାଥ ଅବତାର
ସେ କାଳେ ଆମ୍ଭର ମନ୍ତ୍ରୀ ହେବ ମନ୍ତ୍ରୀବର
ଏ ଯୁଗେ ଏହାର ଗୁଣ ନ ପାରେ ମୁଁ ଶୁଝି
ତ୍ରେତାଯୁଗେ ଦେବି ସବୁ ବରତନ ଖଞ୍ଜି ।
ଶୁଣି ମନ୍ତ୍ରୀବର ତହୁଁ ଯୋଡ଼ି କରପତ୍ର
ବୋଇଲେ ସ୍ୱାମୀହେ ତୁମ୍ଭେ ଆମ୍ଭ ପୁଣ୍ୟକ୍ଷେତ୍ର
ଏଡ଼େ କ୍ଷେତ୍ରେ ଥାଇ ବରତନ କି କରିବୁ
ଶ୍ରୀମୁଖରେ ହେଉ ଆଜ୍ଞା ପାଦ ସେବିଥିବୁ ।
ନୃସିଂହ ସ୍ୱାମୀ ଶୁଣିଣ ଅନ୍ତର୍ଗତେ ହସି
ନଗରକୁ ବିଜେ କଲେ ଗରୁଡ଼ରେ ବସି ।
ବାଜଇ ରତ୍ନକଂସାଳ ଖୋଳ କରତାଳି
ବସିଣ ଦେବଯାନରେ ଶେଷଦେବ ଚଳି ।
ବାମଭାଗେ କର୍ଣ୍ଣାଟେଶ ଦକ୍ଷିଣରେ ମନ୍ତ୍ରୀ
ଚଳନ୍ତି ଆଗ ପଛରେ ସୈନ୍ୟ ସେନାପତି ।

ଅବତରି ଗରୁଡ଼ରୁ ପ୍ରଭୁ ଜଗଦୀଶ
ଶ୍ରୀବଦ୍ରିକା ନଗ୍ରେ ଯାଇ ହୋଇଲେ ପ୍ରବେଶ
ଦେବଯାନ ତେଜି ଶେଷଦେବେ ବିଜେକଲେ
ସଭିଙ୍କୁ ମେଲାଣି ଦେଇ ମନ୍ଦିରକୁ ଗଲେ ।
ଏଥୁଅନ୍ତେ ସନ୍ଧ୍ୟାସାରି ଶ୍ରୀପରମେଶ୍ୱର
ମାତା ପିତାଙ୍କୁ ଯାଇଣ କଲେ ନମସ୍କାର ।
ଆଶିଷ ଦେଇ ଅନେକ ଶ୍ରଦ୍ଧା ମାତାକଲେ ।
ଅରିଷ୍ଟ ଖଣ୍ଡନ ପାଇଁ ବିପ୍ରେ ଦାନ ଦେଲେ
ବ୍ରାହ୍ମଣ ଲକ୍ଷେକ ବରି କଲେ ଦାନ ପୁଣ୍ୟ
ସେବିଲେ ଗାବ ଦୋହନ କରି ପଞ୍ଚାନନ ।
ଦେବୀ ଆଳୟକୁ ଯାଇ ଉପନ ଯେ ଦେଲେ
ସନ୍ନ୍ୟାସୀଙ୍କୁ ବରିଣ ସେ ତୋଷ କରାଇଲେ
ପୁତ୍ରଙ୍କର ରିଷ୍ଟ ଶାନ୍ତି କରି ବାପମାଏ
ମଣୋହି ସ୍ଥାନରେ ବିଜେକଲେ ଦେବରାୟେ
ଜଗତଜନନୀ ଲକ୍ଷ୍ମୀ ଷଡ଼ରସ ଆଣି
ସ୍ୱାମୀ ଦିଅର ଶ୍ୱଶୁରେ ପରଷନ୍ତି ପୁଣି ।
ସମସ୍ତେ ଯେ ଏହିରୂପେ ଭୋଜନକୁ ସାରି
ଶୟନ ମନ୍ଦିରେ ଶ୍ରୀନୃସିଂହ ବିଜେକରି ।
ଶ୍ରୀମହାଲକ୍ଷ୍ମୀ ଆସିଣ ଚରଣ ସେବିଲେ
ଆବର ଯେ ଅଷ୍ଟସଖୀ ଚାମର ଢ଼ାଳିଲେ ।
ଚୌଷଠି ସହସ୍ର କନ୍ୟା ଗାନ୍ଧାର ରାଗରେ
ଗୀତ ଗାଇ ନାଚନ୍ତି ଯେ ବିବିଧ ରଙ୍ଗରେ ।
ସ୍ତିରୀଙ୍କ ମଧ୍ୟେ ନୃସିଂହ ଏକା ବିଜେ କରି
ସବୁରି ମନକୁ ମୋହିଛନ୍ତି ନରହରି ।
ସେ ମାୟା ବିହାର ଭାବ ଅଟଇ ଅଗମ୍ୟ
ଏ ଭାବେ ବିହାର ଲଗାଇ ସେ ପରଂବ୍ରହ୍ମ ।
ପାଞ୍ଚନ୍ତି ସର୍ବେ ମନେ ମୋ ସଙ୍ଗେ ଏକାହରି
ରମଣ କରୁଅଛନ୍ତି ସର୍ବ ତେଜ୍ୟା କରି ।
ସେ ସ୍ତିରୀ ବୃନ୍ଦଙ୍କ ମନେ ହୁଏ ଏହି ଭାବ
ଆନ ନ ଜାଣେ ଜାଣନ୍ତି ଏକା ବାସୁଦେବ
ଶ୍ରୀମହାଲକ୍ଷ୍ମୀ ଜାଣନ୍ତି ପୁଣି ନାରାୟଣ
ସବୁକୁହିଁ ଅଗୋଚର ସେହି ଲୀଳା ଶୁଣ ।
ଲକ୍ଷ୍ମୀ ବ୍ୟତୀତ ହରି ନ ରସେ ଅନ୍ୟସ୍ତିରୀ
ସବୁବେଳେ ଲକ୍ଷ୍ମୀଙ୍କି ସେ କୋଳେ ଥାନ୍ତି ଧରି ।
ଏଣୁ ସେହି ମହାଲକ୍ଷ୍ମୀ ଅଟେ ସୁଲକ୍ଷଣୀ
ନୃସିଂହ ଅକ୍ଷୟ ଅକ୍ଷୟା ଯେ କମଳିନୀ ।
ଦଶଅବତାରରେ ସେ ଏକ ବିଷ୍ଣୁଲୀଳା
ଏହା ନ ଚିହ୍ନି ପ୍ରାଣୀଏ ହେଉଥାନ୍ତି ଭୋଳ ।
ଶ୍ରୀଦଶଅବତାରରେ ଯେତେ ଲୀଳା ଖେଳ
ଅଜ୍ଞାନ ପ୍ରାଣୀଏ କରୁଥାନ୍ତି ସାନ ବଡ଼ ଖେଳ ।

ଏ ଚାରି ଯୁଗେ ବିଷ୍ଣୁର ଲୀଳା ହୁଏ ଯେତେ
ସମାନ କରି ଘେନନ୍ତି ସବୁ ସୁପଣ୍ଡିତେ ।
ସକଳ ଘଟରେ ଲକ୍ଷ୍ମୀ ନୃସିଂହ ଯେ ବିଜେ
ଲକ୍ଷ୍ମୀଟି ପରମ ଜାଣ ଜୀବ ଦେବରାଜେ ।
ଶ୍ରୀ ନୃସିଂହ ବକ୍ଷସ୍ଥଳେ ଲକ୍ଷ୍ମୀ ଯେଣୁଛନ୍ତି
ଲାଗିଛି ତେଣୁ ଏ ସର୍ବଘଟେ ଲୀଳାରୀତି ।
ଏକା ଚିହ୍ନିପାରନ୍ତି ଯେ ଏକା ସାଧୁ ପ୍ରାଣୀ
ଶୁଣନ୍ତି ନାରଦ ଯାହା ଭଣେ କୁଶପାଣି ।
ମୁହିଁ ବିପ୍ର ପୀତାମ୍ବର ଅଟେ ନରାଧମ
ଋଷିକୁଲ୍ୟା ନଦୀତଟେ ଅଟେ ମୋର ଗ୍ରାମ ।
ଗଲାଣି ସପ୍ତପୁରୁଷ ବୈଷ୍ଣବ ମତରେ
ରହିଛି ମୁଁ ମଠ ବାନ୍ଧି ଋଷିକୁଲ୍ୟା ତୀରେ ।
ଭକତିଭାବେ ଶୁଣିବେ ଯେହୁ ଏହି ଗ୍ରନ୍ଥ
ଖଣ୍ଡିବେ ସେ ଲୋକ କ୍ଳେଶମାନ ଜଗନ୍ନାଥ ।
ସୁଜନଙ୍କ ସଭାମଧ୍ୟେ ପଢ଼ିବେ ଯେ ବସି
ଶୁଣିବା ଲୋକକୁ ତାରନ୍ତି ଯେ ବ୍ରହ୍ମରାଶି ।
ସଙ୍କରାନ୍ତି ଅମାବାସ୍ୟା ପୌର୍ଣ୍ଣମୀରେ ଯେବେ
ଦ୍ୱାଦଶୀରେ ଶ୍ରବଣାରେ ପଢ଼ିବଟି ଶୁଭେ ।
ଆବର ଯେ ବ୍ୟତିପାତ ଦିନକ୍ଷୟା ତିଥି
ରବି ଚନ୍ଦ୍ର ଗ୍ରହଣ ଯେ ଆବର ବୈଧୃତୀ ।
କାର୍ତ୍ତିକ ମାଘ ଆବର ମାସ ବଇଶାଖ
ସଂକଳ୍ପ କରି ଶୁଣିବେ ଏହା ଯେତେ ଲୋକ ।
ରାଶିଟିକି ନବଗ୍ରହେ ହେଲେ ଊଣା ଆସି
ସଂକଳ୍ପ କରି ପଢିବ ଏ ଗ୍ରନ୍ଥକୁ ବସି ।
ଚିତ୍ତକୁ ନିର୍ମଳ କରି ଶୁଣ ମନ ଦେଇ
ସକଳ ପାପ ଖଣ୍ଡନ ତୋର ଯିବ ହୋଇ ।
ସୁଜ୍ଞାନୀ ସୁଜନ ସୁପଣ୍ଡିତ ଯେତେ ନର
ଶୁଣିଲେ ନୋହିବ ଚଉବର୍ଗ ଊଣା ତାର ।
ଯେବଣ କୁଳେ ସୁପୁତ୍ର ଥିବ ଜାଣ ଜନ୍ମି
ଶୁଣିବେ ନୃସିଂହ ଗ୍ରନ୍ଥ ଭରି କର୍ଣ୍ଣ ବେନି ।
ଲେଖଇ ନୃସିଂହ ଗ୍ରନ୍ଥ କହେ ପ୍ରଭୁ ମୋତେ
ବାଦ ବିବାଦ ମୁଁ କରି ନାହିଁ କଦାଚିତେ ।
ବୁଝିଲେ ଲୋଭ ବହିଲେ ମୋର ନ ସରଇ
ଭକ୍ତିରେ ମୁଁ ବୁଡ଼ିଅଛି ପାଦପଦ୍ମ ଧ୍ୟାୟି ।
ନୃସିଂହ ପୁରାଣ ଏହୁ ଅଟେ ଭବାର୍ଣ୍ଣବ
ବ୍ରାହ୍ମଣ ମୁଁ ପୀତାମ୍ବର ସେବେ ବାସୁଦେବ ।



## ବଳି ବାମନୋପାଖ୍ୟାନ

ନୃସିଂହ ମହିମା ଏବେ ଶୁଣ ମନ ଦେଇ
ବିହାର କରୁ କରୁ ଯେ ରାତିଗଲା ପାହି ।
ଶଯ୍ୟାରୁ ଉଠିଣ ପ୍ରଭୁ ଶ୍ରୀମୁଖ ପଖାଳି
ସ୍ନାନ ଦେବର୍ଚ୍ଚନ ସାରି ପ୍ରଭୁ ବନମାଳୀ ।
ମଣୋହି ସାରି ସଭାରେ କଲେ ଯାଇ ବିଜେ
ଶୁଣ ନାରଦ କହନ୍ତି ଯୁବରାଜ ଆଜେ ।
ମୁରର କଥା କହିବା ଶୁଣ ଏବେ ତୋତେ
ମରନ୍ତେ ସେ ଅଷ୍ଟ ସେନା ବେଗେ ଗଲେ ଦୂତେ ।
ରାଜାର ଛାମୁରେ ଯାଇ ଶୁତି ପାଦେ ପଡ଼ି
ନ ପୁଚ୍ଛୁଁ ବାର୍ତ୍ତା କହନ୍ତି ଉଠି କରଯୋଡ଼ି ।
ବୋଲନ୍ତି ଶୁଣ ଅସୁରକୁଳ ଶିରୋମଣି
ବଦ୍ରିକାଦେଶୁଁ ଆସିଲୁ ଆମ୍ଭେ ଏହି କ୍ଷଣି ।
ସୈନ୍ୟଙ୍କୁ ବେଢ଼ି ମାଇଲେ ମିଳି ବିପ୍ରଗଣ
ସୈନ୍ୟ ଛେଦିଲେ ଚକ୍ରକୁ ପେଷି ନାରାୟଣ ।
ଯେତେ ଯାଇଥିଲେ ସର୍ବେ ଯୁଦ୍ଧେ ଆଜମଲେ
ଖବର ଦେବାକୁ ତହିଁ କେହି ନ ରହିଲେ ।
ଶୁଣିଣ ସେ ମୁରାସୁର ହେଲା ଥର ହର
ବସିଲା ଠାବରୁ ଢଳି ପଡ଼ିଲା ନୃବର ।
ମୁକୁନ୍ଦ ସେ ମୂଢ଼ା ତାର ଛାମୁରେଣ ଥିଲେ
ସ୍ତମ୍ଭେ ଆଉଜାଇ ରାଜାକୁ ସେ ବସାଇଲେ ।
ଆବର ଆସିଲେ ପାତ୍ର ମନ୍ତ୍ରୀ ସର୍ବେ ଧାଇଁ
ସର୍ବେ ପ୍ରବୋଧନ୍ତି ଛାମୁରେଣ ଉଭା ହୋଇ ।
ପାଇକ ରାଉତ ସେନା ଆସି ସର୍ବେ ମାଡ଼ି
ରହିଲେ ରାଜାର ଚାରିପାଖଯାକ ବେଢ଼ି ।
ଆପଣା କପାଳେ ରାଜା ତାଡ଼େ ବେନିପାଣି
ମନରେ ଶୋକ କରିଣ କାନ୍ଦେ ନୃପମଣି ।
ସବୁ ସେନାମାନେ ନାମଧରି ବେଳେବେଳେ
ରୋଦନ ସେ କରୁଅଛି ପଡ଼ି ଭୂମିତଳେ ।
ଆରେ ଆରେ ଲ୍କକାସୁର ଆରେ ବୀରବାହୁ
ତୁମ୍ଭ ଘେନି ହୋଇଲିଣି ରଣରେ ମୁଁ ରାହୁ ।
ଆରେ ଆରେ ଲୋହାସୁର ଆରେ ରଣକେଶୀ
କେଡ଼େ ରଥୀମାନେ ଯାଇ ନପାରିଲେ ଆସି
ଆରେ ରେ ଅଲୋପି ଆହାରେ ମଦନାବଳି
ସଲୋପି କୃତକେଶୀରପାର ପୃଥ୍ୱୀଦଳି ।
ଆହାରେ କାଙ୍କୋଳାସୁରରେ ଖଡ଼ିବାସୁର
ଆରେ ଆରେ ସୌଦାସ କଣ୍ଟ ବିକଣ୍ଟ ରେ ମୋର ।
ଆରେ ଆରେ ବଜ୍ରମାଳି ଆରେ ରଣଚୂଡ
ଆରେ ଆରେ କାଳକେତୁ ସମରେ ତୁ ଗାଢ଼ ।
ଆରେ ଆରେ କନ୍ଧାସୁର ଆରେ ଶରଜିତ
ଆରେ ଆରେ ଜଳଘଣ୍ଟ ଚନ୍ଦ୍ରମାଳି ଦୈତ୍ୟ ।
ତୁମ୍ଭ ପ୍ରାୟେ କ୍ଷତ୍ରୀ ଆଉ ନ ମିଳଇ ମୋତେ
କି ଯୋଗେ ମଲରେ ବାପ ଯାଇ ବିପ୍ରହାତେ ।

ଅଟଳ ମେରୁଗିରି କେ ଟାଳିଦେଲା ବାବୁ
ସମୁଦ୍ର ପାଣିଯାକକୁ ପିଇଲା କେ ସବୁ ।
ଆକାଶକୁ ଗିଳି କେହୁ ଦେଲା ରବିତଳେ
ପାତାଳକୁ ଫିଙ୍ଗି କେହୁ ଦେଲା ସ୍ୱର୍ଗଆଳେ ।
ତୁମ୍ଭ ଘେନି ପୁତ୍ରକୁ ମୁଁ ଥିଲି ଆରେ ମୂର୍ଚ୍ଛି
ଅକାଳ କାଣ୍ଡ ହୋଇଲେ ମୋତେ ବିପ୍ରବର୍ଦ୍ଧି
ହୋମଘୃତ ପୋଡ଼ି ବୋଲନ୍ତି ଯେ ସ୍ୱାହାସ୍ୱାହା
ସେହି ମୋତେ ତଣ୍ଡାଇଲେ କରି କୁଆବୁଆ ।
ମୁଁ ଯେଉଁଦିନ ଯୁଦ୍ଧକୁ ଯିବି ଜାଣ ଉଠି
ବ୍ରାହ୍ମଣଙ୍କର ଆଉ କି ରଖିବଇଁ ସୃଷ୍ଟି ।
ଦେଖି ମୋତେ ପଳାନ୍ତି ଯେ ସନ୍ଧ୍ୟା ପୂଜାଛାଡ଼ି
ଲୋକଙ୍କୁ କରନ୍ତି ଆଶୀର୍ବାଦ ମନ୍ତ୍ର ପଢ଼ି ।
ଗଡୁ ତମ୍ବାପାତ୍ର ଶ୍ରୁବ କାହିଁ-ହଜିଯାନ୍ତା
ସଂସାରେ ବ୍ରାହ୍ମଣ ନାମ ଆଉ ନ ରହନ୍ତା ।
ଛଡ଼ାଇଣ ଗୃହବାଡ଼ି ପିଟିଥାନ୍ତି ଯେବେ
ବିପ୍ରମାନେ ବର୍ତ୍ତି ରହି ଥାଆନ୍ତେ କି ଶୁଭେ ।
ତୁମ୍ଭପରା ରଥୀ ଯାଇ ସର୍ବେ ମରିଗଲ
ବିପ୍ର ଅଳସୁଆ ଜାତି ହାତେ ପ୍ରାଣ ଦେଲ ।
ବୁଝିଲେ ମୋ ତୁଲେ ବଡ଼ ସଂସାରକେ ଅଛି
ନିତ୍ୟ ଆସି ଆଶୀର୍ବାଦ କରନ୍ତି ବିରଞ୍ଚି ।
ଦଶଦିଗପାଳେ ମୋର ଭଣ୍ଡାର ଜଗନ୍ତି
କୁବେର ଭୃତ୍ୟପରି ମୋ ସେବାରେ ଲାଗନ୍ତି ।
ଯେବଣ କୁଳରେ ମୁହିଁ ହୋଇଅଛି ଜାତ
ସେ ବଂଶ ମହିମା ସୃଷ୍ଟି ମଧ୍ୟେ ଅଲୋକିତ ।
ସବୁ ବେଦ ପରେ ଯେଟି ଅଟେ ସୁରରାଜ
ସେ ସୁରରାଜ ମହିମା କହୁଅଛି ବୁଝ ।
ଅଣାକାର ବ୍ରହ୍ମରୁ ଆକାର ହେଲେ ଆସି
ସେ ଆକାର ସ୍ୱୟମ୍ଭୁରୁ ଶ୍ରୀବିଷ୍ଣୁ ପ୍ରକାଶି ।
ସେ ବିଷ୍ଣୁ ନାଭିକମଳୁ ବ୍ରହ୍ମା ହେଲେ ଜାତ
ସେ ବ୍ରହ୍ମାଙ୍କ ବୀର୍ଯ୍ୟରୁ ମୁଁ ହୋଇଛି ସମ୍ଭୂତ ।
ଅକ୍ଷୟକୁଳେ ହୁଅନ୍ତେ ମୁହିଁ ଅବତାର
ଅକ୍ଷୟ ବରଟି ମୋତେ ଦେଲେ ଉମାବର ।
ବିଧାତା ଥିବାଯାକ ନ ସ୍ପର୍ଶେ ମୋତେ ରୋଗ
ବୟାଅଶୀ ଗଣ୍ଡାଯାକ କଲିଣି ମୁଁ ଭୋଗ ।
ଅନଳେ ଜଳେ ସ୍ଥଳେ ମୋ କାହିଁ ନାହିଁ ମୃତ୍ୟୁ
କେବଳ ବୁଡ଼ିଲା ବଂଶ ବ୍ରାହ୍ମଣଙ୍କ ହେତୁ ।
ରାଜାର ବିଷାଦ ଦେଖି ସୁବିଜ୍ଞ ଯେ ମନ୍ତ୍ରୀ
ବୋଇଲେ ହେ ସାବଧାନେ ଶୁଣିବା ନୃପତି ।
ବ୍ରାହ୍ମଣ ଗୋସାଇଁଙ୍କୁ ନ ମଣ ତୁମ୍ଭେ ସାନ
ବ୍ରାହ୍ମଣ ଘରେ ଜନ୍ମନ୍ତି ସିନା ଭଗବାନ ।
ବିପ୍ରମାନେ ବିଷ୍ଣୁଠାରୁ ଅଟନ୍ତି ଯେ ବଡ଼
ବ୍ରାହ୍ମଣ ଯେ ନମାନଇ ସେହି ଲୋକ ମୂଢ଼ ।
ସେ ବ୍ରାହ୍ମଣ ସାକ୍ଷାତରେ ଜାଣ ବିଷ୍ଣୁ ଅଂଶ
ବିପ୍ରଙ୍କୁ ନ ମାନିଲେ ସେ ବିଶ୍ୱ ହୁଏ ଭସ୍ମ ।
ବ୍ରାହ୍ମଣଙ୍କଠାରୁ ବଡ଼ ସଂସାରେ କେ ନାହିଁ
ସେ ତୋ ବଇରୀ ପାରିଲେ ମାର ତାକୁ ଯାଇ ।
ବଇରୀ ମାଇଲେ କେବେ ହୁଏ ନାହିଁ ଦୋଷ
ବ୍ରାହ୍ମଣ ନିନ୍ଦା ଆଉ ନକର ନୃପଈଶ ।
ଯେଉଁରୂପେ ବିପ୍ରଘରେ ବିଷ୍ଣୁ ଜନ୍ମ ହୁଏ
ସେ କଥା କହିବା ଶୁଣ ସାବଧାନେ ରାୟେ ।
ବ୍ରହ୍ମାଙ୍କର ଜ୍ୟେଷ୍ଠପୁଅ ବଶିଷ୍ଠ ଯେ ମୁନି
ପଢୁଥିଲେ ସେ ପୁରାଣ ପୋଥି ଦିନେ ଘେନି ।
ତାହାଙ୍କ ମୁଖରୁ ଆମ୍ଭେ ଶୁଣିଅଛୁ ଯାହା
ସେ କଥାତୁ ସାବଧାନେ ଶୁଣ ନୃପନାହା ।
ଭବିଷ୍ୟତ କଥା ପଛକୁଟି ଯାହା ହେବ
ବିଷ୍ଣୁଙ୍କର ଜନ୍ମଲୀଳା କହିବା ତା ଭାବ ।
ଶୁଣୁଥିଲେ ବିଷ୍ଣୁଲୀଳା ଚାରିଯୁଗେ ସରି
ଥିବାଲୋକ ପୁଚ୍ଛନ୍ତି ଯେ ଅର୍ଥ ସଙ୍ଗସରି ।
ପୁରାଣ ପୋଥିକୁ ଧରି ବଶିଷ୍ଠ ମହର୍ଷି
ସଭାରେ ଯେ କହୁଥିଲେ ଶୁଣିଛ ଯେ ବସି ।
ଭବିଷ୍ୟତ କଥା ଯେତେ ହୋଇବ ବନ୍ଦକୁ
ତହିଁର ପ୍ରସଙ୍ଗ କହୁଅଛି ଆପଣଙ୍କୁ ।
କଶ୍ୟପ ଋଷି ଅଟନ୍ତି ଜାଣ ବ୍ରହ୍ମଯତି
ତାଙ୍କ ଗୃହେ ବିଷ୍ଣୁ ଯାଇ ହେଲେ ଉତପତ୍ତି ।
କଶ୍ୟପ ପତ୍ନୀ ଅଦିତି ନାମେ ଠାକୁରାଣୀ
ସେ ମାତାଗର୍ଭୁ ପ୍ରସବ ହେଲେ ଚକ୍ରପାଣି ।
ଯହିଁକି ସେ ଜନ୍ମ ହେଲେ କହିବା ହୋ ଶୁଣ
ବଳିରାଜା ବୋଲି ଜଣେ ଥିଲା ନୃପରାଣ ।
ମହାଚକ୍ରବର୍ତ୍ତୀ ପଣେ ନୃପତି ସେ ହେଲା
ଯେ ଯାହା ମାଗିଲେ ଦାନ ଅନୁକ୍ଷଣେ ଦେଲା ।
ଦାନ ଦେଇ ପାଞ୍ଚେ ମୁଁ ଯେ ହେବି ସ୍ୱର୍ଗେ ଇନ୍ଦ୍ର
ମୋହର ସମାନେ କେହୁ ହେବ କି ନରେନ୍ଦ୍ର ।
ମୋର ପ୍ରାୟ ଦାନୀ ନାହିଁ ସଂସାରେ କେ ଜନ୍ମ
ଲକ୍ଷେକୋଟି ସୁବର୍ଣ୍ଣ ମୁଁ ଦିଏ ନିତି ଦାନ ।
ରାଜନ ସାତ୍ତ୍ୱିକ ଗୁଣେ ଦାନ ଦେଇଥାଇ
ବିପ୍ରଙ୍କର ପ୍ରୀତିଅର୍ଥେ ପୁଣ୍ୟ ନ ବାଞ୍ଛଇ ।
ମୁହିଁ ବଡ଼ଦାତା ବୋଲି କହେ ପୃଥ୍ୱୀଯାକେ
ବୋଲଇ ମୋର ପ୍ରାୟେକ ନାହିଁ ତିନିଲୋକେ ।
ଏ ରୂପେ ମୁଁ କାର ବାଣୀ ଦେବତାଏ ଶୁଣି
କହିଲେ ବିଷ୍ଣୁଙ୍କ ଆଗେ ଯାଇ ସୁରଶ୍ରେଣୀ ।

ଦେବଙ୍କର ବାକ୍ୟଗୋଟି ଶୁଣି ଭଗବାନ
ଅଦିତି ମାତା ଗର୍ଭରୁ ହୋଇଲେ ଜନମ ।
ବିଷ୍ଣୁ ଜନ୍ମନ୍ତେ ଦିଶିଲା ପୃଥ୍ୱୀ ଶୋଭାକର
ଶ୍ରୀଜଗମୋହନ ପ୍ରଭୁ ବାମନାବତାର ।
ଏଡ଼େ ହେଲେ ଶୋଭା ଦିଶୁଥାନ୍ତି ଜଗତରେ
ଜନ୍ମ ହୋଇଲେ ବାମନ ଅଦିତି ଉଦରେ ।
କଶ୍ୟପର ପରିବାରୀ ଯେତେ ଥିଲେ ତହିଁ
ସେବିଲେ ସର୍ବେ ବାମନ ବିଷ୍ଣୁ ପାଦେ ଯାଇ ।
ଏହି ଯେ ନୃସିଂହ ଦେବ ବାମନାବତାର
ସେ ବାମନବିଷ୍ଣୁ କଥା ଶୁଣ ନୃପବର ।
ଅଦିତି ଗର୍ଭୁ ପ୍ରସବ ହୁଅନ୍ତେ ସେ ଆସି
ବ୍ରହ୍ମାଣ୍ଡଯାକକୁ ଶୋଭା ଦିଶିଲେ ପ୍ରକାଶି ।
ବାଳୁତ ତନୁଧରି ସେ ଜାତ ନରହରି ।
ଲାଗିଲେ ସେବାରେ ବସି କଶ୍ୟପର ନାରୀ ।
କଂସାଳ ଯେ ତାଳ ଖୋଳ ବାଇ ନାଭିକାଟି
ସ୍ନାନାଦି କରାଇଦେଲେ ଅଙ୍ଗେ ବୋଳି ଘୁଟି ।
ଏନ୍ତୁଡ଼ି ଶଯ୍ୟା ପାରିଣ ଦେଲେ ହୁଳହୁଳି
ବାମନ ଗୋସାଇଁକୁ ସେ କରେ ଧରି ତୋଳି ।
ଶଯ୍ୟାପରେ ଶୁଆଇଲେ ନେଇ ଚକ୍ରପାଣି
କୁସୁମ ବୃଷ୍ଟି କରନ୍ତି ସ୍ୱର୍ଗୁ ଦେବେ ଆଣି ।
ଚନ୍ଦନ ଦାରୁକାଠରେ ଏନ୍ତୁଡ଼ିକୁ କରି
ସେବନ୍ତି ସେ ବାମନଙ୍କୁ କଶ୍ୟପର ନାରୀ ।
ଏଥୁଅନ୍ତେ ଅଦିତି ଯେ ବିଷ୍ଣୁଙ୍କର ମାତା
କୁଶଙ୍କା କରି ପୁତ୍ରଙ୍କୁ କରେ ମନେ ଚିନ୍ତା ।
ପାଞ୍ଚନ୍ତି ଏ ରୂପେ କେହ୍ନେ ଜନ୍ମିଲା ବାଳକ
ମାପିଲେ ବାରଅଙ୍ଗୁଳି ହେବ ଦେହଯାକ ।
କେଉଁ ବଳିଷ୍ଠ ହୋଇ ଏ ପୋଷିବ ଆମ୍ଭଙ୍କୁ
କହିବାକୁ ଆସେ ମାତ୍ର ପୁତ୍ର ବୋଲିବାକୁ ।
ଏ ରୂପେ ଜନ୍ମିଲେ ମୂର୍ତ୍ତିଧରି ଯେବେ ଆସି
ତେଣୁ ପୁତ୍ର ନାମ ହେଉ ଯେ ବାମନ ଋଷି ।
ମାତା ଦେବା ନାମ ଶୁଣି ହସି ଭଗବାନ
ଶଯ୍ୟାରୁ ଉଠି କହନ୍ତି ବସି ସୁବଚନ ।
ବୋଲନ୍ତି ଜନନୀ ତୁମ୍ଭେ ଶୁଣ ଦକ୍ଷଜେମା
ତୁମ୍ଭ ଆଗେ ଆମ୍ଭେ କହିପାରୁ କି ମହିମା ।
କଶ୍ୟପଋଷି ବୋଲିଣ ଯେ ଆମ୍ଭର ବାପ
ବୁଝିଲେ ନିମିଷ ଅଟେ ତାଙ୍କୁ କୋଟିକଳ୍ପ ।
ତାହାଙ୍କ ମୁଖରୁ ତୁମ୍ଭେ ସବୁ ଅଛ ଶୁଣି
ଆପଣଙ୍କ ଆଗେ ଆମ୍ଭେ କହିବୁ କି ପୁଣି ।
ଆମ୍ଭର ଯେତେକ ଜନ୍ମ ତୁମ୍ଭଙ୍କୁ ସେ ଦିନେ
ଏ କଥା ଶୁଣିଣ ତୁମ୍ଭେ ଭାଳୁଛ କେସନେ ।

ଆମ୍ଭେ ପୁଣି ଅବତାର ହେବୁ ଦଶଥର
ଲୀଳାସାରି ଯିବୁ ପୁଣି ବଇକୁଣ୍ଠ ପୁର ।
ତୁମ୍ଭେ ଅକ୍ରାମର ହୋଇଥିବ ଦେହ ଧରି
ବିଷ୍ଣୁଙ୍କୁ ଯେ ଭଜି ଭଜି ଭବୁଁ ଯିବ ତରି ।
ଆମ୍ଭଙ୍କୁ ଦେଖନ୍ତି ନେତ୍ର ଯୋଗେ ଯେତେ ନରେ
ତାହାଙ୍କ କି ବ୍ରତ ଲୋଡ଼ା ଅଟଇ ସଂସାରେ ।
ନାନାଦି ତୀର୍ଥବ୍ରତ ଯେ ଘେନି ତୁଚ୍ଛ କରି
ଯେ ଭକେ ନିତ୍ୟ ଶ୍ରୀରାମ କୃଷ୍ଣ ନରହରି ।
ଯେବଣ ପ୍ରାଣୀ ପରକୁ ଜାଣ ହିଂସା କରେ
ଦେବତା ପୂଜି ସେହୁ ସେ ତରଇ ସଂସାରେ ।
ତୁମ୍ଭେ ତ ଅମର ହୋଇ ବ୍ରହ୍ମାଣ୍ଡରେ ଥିବ
ବିଷ୍ଣୁଙ୍କୁ ଯେ ଭାଳି ଭାଳି କାଳ ବଞ୍ଚିଯିବ ।
ଏ ରୂପେ ଜ୍ଞାନ କହନ୍ତେ ଶେଯୁଁ ବାଳା ଉଠି
ଶୁଣି କରି ଚମତ୍କାର ହେଲେ ଅଦିତିଟି ।
ବୋଇଲା କହିଲା କେଡ଼େ ଜ୍ଞାନ ପୁତ୍ର ହୋଇ
ଯାହାଟି ଯୋଗିନ୍ଦ୍ରମାନେ ନ ପାରିବେ କହି ।
ଜାଣିଲା ମୋହର ମନକଥା କେହ୍ନେ ବଳା
ଏନ୍ତୁଡ଼ିଶାଳରୁ ଉଠି କହେ ଜ୍ଞାନକଳା ।
ସିଦ୍ଧପୁରୁଷ ଜଣେ କି ଜନ୍ମ ହେଲା ଆସି
ନୋହିଲେ କହନ୍ତା ଏଡ଼େ କଥା କେହ୍ନୁ ଆସି ।
ପୁଚ୍ଛିବି ଯାଙ୍କ ମହିମା ଯେବେ ପଦେ ମୁହିଁ
କେଉଁ ପୁରୁଷ ଜନ୍ମିଲେ ଆସି ଦେହ ବହି ।
ଏ ରୂପେ ପାଞ୍ଚି ବୋଇଲେ ମାଏ ଶୁଣ ବାପ
ଆପଣ କେ କହ ବାବୁ ନ କରିଣ ଗୋପ୍ୟ ।
ବାମନ ବୋଇଲେ ଆମ୍ଭେ ପରଂବ୍ରହ୍ମଚାରୀ
କ୍ଷୀରର୍ଣ୍ଣବ ଛାଡ଼ି ଆସିଅଛୁ ବିଜେ କରି ।
ପରମହଂସ ବୋଲାଉ ଆମ୍ଭେ ଆଦିମୂଳ
ଭକତକୁ ପ୍ରତିପାଳୁ ରଖୁ ଦେବକୁଳ ।
ଆମ୍ଭକୁ କରନ୍ତି ବିପ୍ରେ ସବୁକାଳେ ପୂଜା
ବ୍ରାହ୍ମଣ ବିନା ପୂଜା ନ ପାରେ ହେଲେ ରାଜା ।
ଜଳ ତୁଳସୀ ଦେଇଣ ଭାବନା ଯେ କରେ
ଷୋଡ଼ଶ ମୁଦ୍ରାଦି ଉପଚାରେ ପୂଜା କରେ ।
ସର୍ବଦା ବିପ୍ରଙ୍କ ଘରେ ଆମ୍ଭର ଯେ ଜନ୍ମ
ଦେବହୁତି ଗର୍ଭେ ହେବୁ କପିଳ ଯେ ନାମ ।
ଦେବବ୍ୟାସ ଅଂଶେ ପୁରାଣକୁ ବଖାଣିବୁ
ଯମଦଗ୍ନି ପରେ ପର୍ଶୁରାମ ଯେ ହୋଇବୁ ।
ଆଦ୍ୟେରୁ ଯେ ଆମ୍ଭ ନାମ ହେଲା ଜାଣ ସେତେ
ସମୂହେ କହିବା ତାହା ଶୁଣ ବିଧିମତେ ।
ଶ୍ରୀମତ୍ସ୍ୟ କୂର୍ମ ବରାହ ନୃସିଂହ ବାମନ
ପର୍ଶୁରାମ ରଘୁନାଥ ଦେବକୀ ନନ୍ଦନ ।

ଉଦ୍ଧବ କଳକୀ ଏହି ରୂପେ ଅବତାର
ନିତ୍ୟସ୍ଥଳୀରୁ ପ୍ରକାଶି ଆସି ମଞ୍ଚପୁର ।
ଲୀଳା ସରିଲେ ପୁଣିଯେ ବୈକୁଣ୍ଠକୁ ଯାଉ
ଶୁଣ ଗୋ ଜନନୀ କହୁଛନ୍ତି ମହାବାହୁ ।
ଏବେ ବାମନ ରୂପରେ ହେଲୁ ଅବତାର
ଯାଉଛୁ ବଳିକି ଦାନ ମାଗି ତିନିପୁର ।
ଏ ତିନିପୁର ତୁମ୍ଭଙ୍କୁ ଦାନ ଦେଇଯିବୁ
ଏହି ନିମନ୍ତେ ଜନ୍ମିଲୁ ଆମ୍ଭେ ତୁମ୍ଭ ଗର୍ଭୁ ।
କୁଶଙ୍କା ନ କରି ମୋତେ ଘେନିଲ ଯେ ମାଏ
ପୋଷି ନ ପାରିବ ବୋଲି କରୁଛ ଯେ ଭୟେ ।
ଏ ସଂସାରେ ଯେତେ କାଳ ଥିବ ତୁମ୍ଭେ ଜୀଇଁ
ଦେଉଛି ଅଚିନ୍ତେ ଭୋଗକର ଦାନ ଭୁଇଁ ।
ଦାନ ଦେଇ ସେ ପୃଥ୍ୱୀକି ହରନ୍ତି ଯେ ଲୋକ
ଷାଠିଏ ସହସ୍ର ଜନ୍ମ ପଡ଼େ କୁମ୍ଭୀପାକ ।
ଆପଣାର କଲାକୀର୍ତ୍ତି ପରକଲା କୀର୍ତ୍ତି
ଅଜ୍ଞାନେ ହରିଲେ କେହୁ ହୁଏ ନର୍କଗତି ।
ଦେବତା ବ୍ରାହ୍ମଣ ଶାପେ ହୁଏ ସେ ନିବଂଶ
ଶୁଣ ଆଗୋ ଦକ୍ଷ ଜେମା କହନ୍ତି ରମେଶ ।
ଦାନ ଘେନିଣ ତୁମ୍ଭଙ୍କୁ ପୃଥ୍ୱୀ ଦେଇ ଯିବୁ
ପିତା ମାତା ସର୍ବ ଆମ୍ଭେ ପ୍ରତ୍ୟକ୍ଷ ପାଳିବୁ ।
ପିତା ମାତାଙ୍କ ସେବା ଯେ ନ କରନ୍ତି ଜାଣ
ପର ଜନ୍ମ କୁଳନାଶ ହୁଅନ୍ତି ସେ ପୁଣ ।
ମାଏ ବୋଇଲେ ରେ ବାପ ତୁମ୍ଭେ ମୋର ସୁତ
ତୁମ୍ଭର ସର୍ଜନା ସିନା ଅଟେ ଏ ଜଗତ ।
ମୁଁ ରାଢ଼େଣୀ ତୁମ୍ଭଙ୍କୁ ନ ପାରଇ ଯେ ଚିହ୍ନି
ମାନବ ପରାୟେ ମଣି କହିଲି ନ ମାନି ।
ବୁଝିଲେ ଆପଣା ପ୍ରତ୍ୟକ୍ଷରେ ଭଗବାନ
ଶ୍ରୀମୁଖେ କହ ଶୁଣିବା ତୋର ସୁବଚନ ।
ପଦେ ମୁଁ ପଚାରୁଅଛି ଜୀବ ମୋକ୍ଷ ପାଇଁ
କହିବ ଅଳପ କରି ଶୁଣିବି ଯେ ମୁହିଁ ।
ବାମନ ବୋଇଲେ ଆମ୍ଭେ ବିପ୍ର ବ୍ରହ୍ମଚାରୀ
ଆତ୍ମାସ୍ୱରୂପ ସକଳ ଘଟେ ଅଛୁ ପୂରି ।
ସେ ଆତ୍ମାଗୋଟି ମାତା ତୁମ୍ଭ ହୃଦେ ଚିହ୍ନ
ତୁମ୍ଭ ଆତ୍ମାରୁ ପ୍ରକାଶି ଅଛନ୍ତି ବାମନ ।
ସେ ଆତ୍ମାରୁ ସୂତ୍ର ଚାରି ଶୁଣସି ଗୋ ମାଏ
ଦ୍ୱିପାଦ ଛନ୍ଦା ହୋଇଣ ପାଦେ ଚାଲୁଥାଏ ।
ସେ ପାଦଟି ଗୋବିନ୍ଦର ଅଟେ ପଦ୍ମପାଦ
ଅନୁକ୍ଷଣେ ସ୍ମରଣରେ ଗଳେ ମକରନ୍ଦ ।
ଏ ମକରନ୍ଦ ଯେ ଜାଣ ଚିହ୍ନି ପିଇପାରେ
କଦାଚ ରୋଗ ପଶି ନ ପାରେ ତା ଶରୀରେ ।
ଏ କଥାକୁ ତଥ୍ୟକରି ପାରନ୍ତି ଯେ ଚିହ୍ନି
ସେହିମାନେ ତରିଯାନ୍ତି ଶୁଣ ଗୋ ଜନନୀ ।
ଶ୍ରୀକୃଷ୍ଣ ପ୍ରଭୁଙ୍କର ଶ୍ରୀପାଦପଦ୍ମ ପୁଷ୍ପ
ସେ ପଦ୍ମରୁ ଅନୁବ୍ରତେ ଗଳେ ମଧୁରସ ।
ମଧୁମାଛି ପ୍ରାୟ ପାରେ ମନକୁ ଯେ କରି
ସେହିମାନେ ମକରନ୍ଦ ପାଇଛନ୍ତି ତରି ।
ଏହି ମକରନ୍ଦ ପାନକର ଗୋ ଜନନୀ
ଏ ରୂପେ ଚିହ୍ନାଇ ଦେଲେ ସେ ବାମନ ମୁନି ।
ବୋଇଲେ ବହୁ କହିଲେ ହୋଇବ ବା କିସ
ଶୁଣିଣ କଶ୍ୟପ ପ୍ରିୟା ହେଲେ ମନ ତୋଷ ।
ବାମନ ବିଷ୍ଣୁ କଥାରେ ତାଙ୍କୁ ବୋଧ ଦେଇ
ବୋଇଲେ ଯାଉଛି ବଳିଠାରୁ ଦାନପାଇଁ ।
ଅଦିତି ବୋଇଲେ ବାପ ଶୁଣ ହେ ବାମନ
ବ୍ରତ ନୋହୁଣୁ ଘେନିବ ତୁମ୍ଭେ କେହ୍ନେ ଦାନ ।
ଶୁଣିକରି ମନେ ମନେ ହସି ଭଗବାନ
କଥାଏ କହିବି ଏବେ ଶୁଣ ମୋ ବଚନ ।
ବାମନ ବୋଇଲେକ ଗୋ ଶୁଣିମା ଜନନୀ
ଗର୍ଭୁ ଜନମି ପଇତା କନ୍ଧେ ଆମ୍ଭେ ଘେନି ।
ଉଦରରେ ନବମାସ ହୋଇବା ଉତ୍ତାରୁ
ତେତେବେଳେ ବସି ଆମ୍ଭେ ବ୍ରହ୍ମାଙ୍କୁ ସୁମରୁ ।
ଅଠାଶି ସହସ୍ର ଋଷି ଘେନି ବେଦବର
ଆଶାରୂପେ ତୁଣ୍ଡେ ଗଳି ପଶିଲେ ତୁମ୍ଭର ।
ନିଚେଷ୍ଟ ହୋଇ ନିଦ୍ରାରେ ଥିଲ ତୁମ୍ଭେ ଶୋଇ
ଆମ୍ଭେ ଥିବା ସ୍ଥାନ ଜାଣ ବିଷ୍ଣୁ ଗର୍ଭ ବହି ।
ବିଷ୍ଣୁର ମହିମା ଏଡ଼େ ଅଟଇଟି ଜାଣ
ଆନକେ କରିପାରେ ଏ କଥା ସଂସାରେଣ ।
ବ୍ରହ୍ମାଙ୍କୁ ବୋଇଲୁ ଆମ୍ଭେ ଗର୍ଭେ ବ୍ରତ କର
ବଳି ରାଜାର ଛାମୁକୁ ଯିବୁ ତତପର ।
ପୁଣି ହେଉ ବୋଲି କହି ବ୍ରତ ବିଧି କଲେ
କନ୍ଧରେ ଯଜ୍ଞ ପଇତା ପିନ୍ଧାଇଣ ଦେଲେ ।
ଗଡ୍ଡୁ ତମ୍ବାପାତ୍ର କୁଶବଟୁ ହସ୍ତେ ଦେଇ
ଗାୟତ୍ରୀମନ୍ତ୍ର କର୍ଣ୍ଣରେ ଦେଲେ ପୁଣି କହି ।
ଦେଖ ଦେଖ ଜନନୀ ଗୋ ସବୁ ମୋର ଅଛି
ଝୁଲି ଝୁଲି ହୋଇ ଚାଲି ଗଲେ ବ୍ରହ୍ମବହ୍ନି ।
ଜଗତମୋହନ ସ୍ୱାମୀ ସର୍ବ ମନ ମୋହି
ବଳି ରାଜାର ଛାମୁରେ ବିଜେ କଲେ ଯାଇଁ ।
ସିଂହଦ୍ୱାରେ ଦ୍ୱାରପାଳ ଯେତେ ଜଗିଥିଲେ
ବାମନଙ୍କୁ ଦେଖି ସର୍ବେ କୁହାଟି ହସିଲେ ।
ତାହାଙ୍କର ହସ ଦେଖି ବାମନ ଗୋସାଇଁ
ଚାଲନ୍ତି ଯେ ବାର ବାର ବିପ୍ରଛବି ଦହି ।

ବାମନ ରୂପକୁ ଚାହିଁ ଆସନ୍ତି ଯେ ଦେଖି
ଅଧିକ ଛୋଟ ହୋଇଣ ଚାଲନ୍ତି ପଦ୍ମାକ୍ଷି ।
ଚାହିଁ ଚମତ୍କାର ହୁଅନ୍ତି ସେ ସର୍ବଜନ
ବୋଲନ୍ତି କରିଛି ଭଲା ବିହି ଏହା ଜନ୍ମ ।
ଇଳାପଞ୍ଜରି ବାଟରେ ପରା ଯିବ ଗଳି
କେଡ଼େ ଗେଲ ହୋଇ ବିପ୍ର ଚାଲେ ଢଳିଢ଼ଳି ।
ବଳି ମହାରାଜାଙ୍କର ଶୁଣି ଦାନୀପଣ
ତେଣୁ ଦାନ ମାଗି ଅବା ଆସିଛି ବ୍ରାହ୍ମଣ ।
ଏ ରୂପେ ବୋଲି ହୁଅନ୍ତି ଲୋକେ କୁହାକୁହି
ରାଜର ଛାମୁରେ ବିପ୍ର ପ୍ରବେଶିଲା ଯାଇ ।
ଆସନଶୁଦ୍ଧି କରିଣ ବସି ପଦ୍ମାସନେ
ଉଚ୍ଚାରିଲେ ଯଜୁର୍ବେଦ କାଣ୍ଡ ଜନାର୍ଦ୍ଦନେ ।
ସର୍ବାତ୍ମା ଆତ୍ମା ବୋଲିଣ ଟେକି ରୋଳଧ୍ୱନି
ଶୁଣିଣ ବଳିରାଜାର କମ୍ପିଲା ମୂର୍ଦ୍ଧନି ।
ବୋଲନ୍ତି ଆହେ ବିପ୍ର ନ ପଢ଼ ଆଉ ବେଦ
ତୁମ୍ଭର ବେଦ ଶୁଣିଣ କମ୍ପୁଛି ମୋ ହୃଦ ।
ମାଗିବ ଯାହା ମୁଁ ଖୋଜି ଦେବି ନିଶ୍ଚେ ତାହା
ତୁମ୍ଭର ଏ ବେଦ ଶୁଣି କମ୍ପୁଛି ମୋ କାୟା ।
ତାହା ଶୁଣି ଅଧିକାରେ ବାମନ ଗୋସାଇଁ
ସାମବେଦ ଉଚ୍ଚସ୍ୱରେ ବସିଲେକ ଗାଇ ।
ସେ କଣ୍ଠର ସ୍ୱର ପ୍ରାୟ ବ୍ରହ୍ମାଣ୍ଡରେ ନାହିଁ
ତେତିଶକୋଟି ଦେବତା ଯେତେକ ଅଛଇ ।
ସ୍ୱର ଟେକିଲେ ଅମୃତ ପଡୁଅଛି ବହି
ସେ ବେଦ ନାଦେ ତରଳି ପଡ଼େ ଜାଣ ମହୀ
ବଳିରାଜା ବୋଇଲେ ହୋ ଶୁଣ ବିପ୍ରବର
କେଡ଼େ କ୍ଷୁଦ୍ରତନୁ ବହି ଟେକି ଉଚ୍ଚସ୍ୱର ।
ତରଳି ହୋଇଲା ବଳି ବିପ୍ର ଦେବ ଶୁଣି
ଯାଚଇ ବଳେ ସେ ଦାନ ଧରି କୁଶପାଣି ।
ବୋଲଇ ବିପ୍ର ହୋ ମାଗକରୁ କେଡ଼େହେଳ
ତୁରିତେ ଦାନ ଦେବି ନ ପାରେ ସହି କାଳ ।
ନୋହିଲେ ଯେ ଉପଦ୍ରବ ହେବ ଏଥି ଜାତ
ଦେବା ନେବାଲୋକର ଯେ ନ ଥାଇ ଆୟତ୍ତ ।
ଦେବି ବୋଲିବା ଲୋକର କ୍ଷଣେ ହୁଏ ଆନ
ଏହି ସନ୍ଧି ବୁଝି ଏକା ପାରନ୍ତି ସୁଜନ ।
ଭିକ୍ଷାମାଗିଲେକ ଷଡନିଃଶ୍ୱାସ ସେ ତୋ ଦେବ
ନୋହିଲେତ ମୂଳ ଲାଗି ନେବା ପ୍ରାୟ ହେବ ।
ନ ଦେଲେ ମାଗିଲାକ୍ଷଣି ଧର୍ମ ହୁଏ ତ୍ୟଜ୍ୟା
ଶୁଣ ଆହେ ବିପ୍ରବର କହେ ବଳିରାଜା ।
କେମନ୍ତେ ଯେ ଦେବାବୋଲି ପାଞ୍ଚୁଥାଇବସି
ଭାଙ୍ଗିଲ ଲୋଭ ଚଣ୍ଡାଳ ହୃଦେ ତାର ପଶି ।

ନୋହିଲେ ବେନିକୁଳରୁ ଜଣକୁ ଯେ ବଧେ
କି ଅବା ରାଜାର ବଂଶ ପଡ଼ଇ ପ୍ରମାଦେ ।
କିବା ତା କୁଟୁମ୍ବ ଲୋକ ଭଗ୍ନ କରନ୍ତିତ
ଏ ଘେନି ଦେଲାଠାରେ ନ କରି ହେଳା ଚିତ୍ତ ।
ମାଗ ଆହେ ବିପ୍ରବର ଯାହା କର ଇଚ୍ଛା
ସତ୍ୟକରି ପୂରାଇବି ତୁମ୍ଭ ମନୋବାଞ୍ଛା ।
ବେଦଧ୍ୱନି ବନ୍ଦ କଲେ ପୁଣି ଭଗବାନ
ଭେଳିକି ଲଗାଇ ତାକୁ କହନ୍ତି ବଚନ ।
ବୋଇଲେ ହେ ସାବଧାନେ ଶୁଣ ବଳିରାଜ
କୁଟୁମ୍ବକୁ ପୁଚ୍ଛି ସିନା କରିବ ଏ କାର୍ଯ୍ୟ ।
ଗୃହର କର୍ତ୍ତା ହୋଇ ନ ପୁଚ୍ଛି କୁଟୁମ୍ବଙ୍କୁ
ଦେବାଧର୍ମ ପୁଣ୍ୟ କେବେ ନ ମିଳିବ ତାକୁ ।
ମଲାବେଳେ ସଙ୍ଗତରେ କେହୁ ଯେ ନ ଯାଇ
ଯେତେ ଅର୍ଜିଲେ କୁଟୁମ୍ବତୋତେଦ୍ୟନ୍ତି ଖାଇ ।
ଯେ ଯେତେ କରଇ ଧର୍ମ ତେତେ ସଙ୍ଗେନିଏ
ଏ କଥାଟି ଧ୍ରୁବ ଜାଣ କହିଲୁ ହୋ ରାୟେ ।
ଯେତେ ଅଜଘରେ ଆଣି ରଖେ ଗୃହକର୍ତ୍ତା
ତାହାକୁ କୁଟୁମ୍ବଯାକ କରନ୍ତି ଅହନ୍ତା ।
ବୋଲନ୍ତି ଧନେ କରୁଛ କିମ୍ପା ହରବର
କୁଟୁମ୍ବଯାକ ଯୋଗୀକି ହୋଇଲେ ତୋହର ।
ଏଡ଼େ ହେଁ ପଣ ଦେଇଛି ତୋତେ କେଉଁ ଲୋକ
ପଚାରୁ ତ ତେବେ ଦେଇଥାନ୍ତୁ ଧନଯାକ ।
ଏ ରୂପେ ତ ଘରଣୀ କହନ୍ତି ନାସ୍ତିବାଣୀ
ବୋଲନ୍ତି ଜ୍ଞାନୀଲୋକେ ଲୋ ଶୁଣ ଚଣ୍ଡାଳୁଣୀ ।
ତୋହର ବାପଘରୁ ତ ଆଣିନାହୁଁ ଦ୍ରବ୍ୟ
ମୋହର ଅରଜିବାର ଅଟେ ସିନା ସର୍ବ ।
ମଲାବେଳକୁ ଯିବାକି ଏହା ସଙ୍ଗେ ଘେନି
ଏ ଘେନି ଯେ ଧର୍ମ କରୁଥାନ୍ତୁ ସାଧୁପ୍ରାଣୀ ।
ନଗର ଯେ ପୁରଦ୍ୱାର ଭାର୍ଯ୍ୟା ଧନସୁତେ
ଏମାନେ କେହି ଜାଣ ନ ଯାଆନ୍ତି ସଙ୍ଗତେ ।
ଆସିଲା ବେଳରେ ଏକ ଗଲାବେଳେ ଏକ
ମୃତ୍ୟୁକାଳରେ ନେଲେଣି ଧନ କେତେ ଲୋକ ।
ଜୀବନ ଥିବାଯାକ ଯେ ପତ୍ନୀ ବୋଲେ ଥାନ୍ତି
ଗଲାବେଳେ ସବୁ ଛାଡ଼ି ମୃତ ହୋଇଯାନ୍ତି ।
ତୁହି ମହାଦାତା ଏହି ସଂସାରରେ ଅଟୁ
ଆମ୍ଭଙ୍କୁ ବୋଲି ଏ ରୂପେ କହି ପରା ଜଟୁ ।
କେତେ ଦୁଃଖେ ଚାଲି ଆସିଅଛି ଲକ୍ଷଯୁଣ
ସୁବେଦୀ ବ୍ରାହ୍ମଣ ବୋଲି ମୋତେ କି ନ ଜାଣ ।
ଧରି କୁଶପାଣି ବସିଅଛୁ ଦାନଦେଇ
ତୁ ଦାନ ନ ଦେଲେ ଆମ୍ଭେ ନେବୁ କି ବଳାଇ ।

ବଳି ବୋଇଲା ବିପ୍ର ହେ ନୋହିବା ବିରସ
ମାଗିବଟି ତୁମ୍ଭେ ଯାହା ଦେବି ମୁଁ ଅବଶ୍ୟ ।
ମାଗିବ ଯେତେକ ଧନ ଦେବି ନିଅ ବହି
ଏ କଥାରେ ଲୋଭ ଜାଣ କିଛି ମୋର ନାହିଁ ।
ବାମନ ବୋଇଲେ ଶୁଣ ଆହେ ବଳିରାଜା
ଦେବା ମନ ଥିଲେ ମୋତେ କରପାଦପୂଜା ।
ମାଗିବା କଥା ପ୍ରାଣୀକି କେଡ଼େ ବଡ଼ ଲାଜ
ଏ ସଂସାର ଦେଖାଲୋକେ ଜାଣ ଚତୁର୍ଭୁଜ ।
ବିଷ୍ଣୁତୁଲ୍ୟ ଲୋକେ କରୁଥାନ୍ତି ଦାନପୁଣ୍ୟ
ପାପୀ ପାଷାଣ୍ଡ ସାଇତି ରଖେ ଯେହୁ ଧନ ।
ତଥାପି ମାଗିବା ଲୋକେ କେତେ ପରି ପାଞ୍ଚେ
ଦେବ କି ନ ଦେବ ବୋଲି ଓହୋରିଣ ଘୁଞ୍ଚେ ।
ମାଗିବା କଥା ଗୋଟିକେ ସଙ୍କୋଚ ନୁହେଁ କି
ଚିହ୍ନିଣ ଏକା ଏକଥା ପାରନ୍ତି ବିବେକୀ ।
ବିଷ୍ଣୁର ଏ ବାକ୍ୟ ଶୁଣି ହସି ବଳିରାଜ
ବୋଇଲା ମୁଁ ସତ୍ୟକଲି ମାଗ ଆହେ ଦ୍ୱିଜ ।
ଧର ହେ କୁଶ ପାଣି ମୁଁ ଦେବି ଦାନ ଟେକି
ଏ ରୂପେ ବୋଲି ହସ୍ତକୁ ଧରି ବଳି ଝିଙ୍କି ।
ଶ୍ରୀପଦ୍ମକର ଗୋଟିକ ଧରି ବିସ୍ତାରିଲା
ମାଗ ମାଗ ବେଗେ ଦାନବୋଲି ଡାକ ଦେଲା ।
ବଳିର ଏକଥା ଦେଖି ହସି ଭଗବାନ
ଦିଗପାଳଙ୍କୁ ଯେ ସାକ୍ଷୀ କରନ୍ତି ଚାହିଁଣ ।
ଚନ୍ଦ୍ରସୂର୍ଯ୍ୟଙ୍କୁ ଚାହିଁଲେ ପୁଣି ପଦ୍ମଆଖି
ବୋଇଲେ ବଳି ଦେଉଛି ମୋତେ ପାଣିଟେକି ।
ଏଥିରେ ମୋହର ଜାଣ କିଛି ନାହିଁ ଦୋଷ
ଭୋକିଲା ବ୍ୟାଘ୍ରକୁ ଯାଚୁଅଛି ବଳେ ଗ୍ରାସ ।
ପ୍ରତିହାରୀ ଲୋକଙ୍କର ଲୋକ ବଳିଆର
ବ୍ରହ୍ମାଣ୍ଡ ମାଗି ନେବାକୁ ସାହସ ତାଙ୍କର ।
ଦାତାର ମନ ସିନା ସେ କେତେ ପାଞ୍ଚିଦିଏ
ଏଥକୁ ମୋ ଦୋଷ ନାହିଁ ଶୁଣଟି ସଭିଏଁ ।
ବଳିରାଜା ବୋଲେ କେତେ କରୁଛ ହେ ସାକ୍ଷୀ
ଦେଉଛି ପାରିବ ଯେତେ ଧନ ନିଅ ଟେକି ।
ତୁମ୍ଭେ ନ ପାରିଲେ ବେଗେ ବୋଝିଆ କରାଅ
ଦେବି ତିନିଦିନ ଯେତେ ପାରିବ ହୋ ନିଅ ।
ବାମନ ବୋଇଲେ ତେବେ ଧର ତମ୍ଭାପାତ୍ରୀ
ଆମ୍ଭେ ତ ବ୍ରାହ୍ମଣ ଅଟୁ ଯଜୁର୍ବେଦ ଗୋତ୍ରୀ ।
ଶୁଣି ବଳିରାଜା ଧଇଲାକ କୁଶପାଣି
ବାମନ ହସ୍ତରେ ଟେକିଦେଲା ବେଗେ ଆଣି ।
ତଳ ହସ୍ତରେ ବାମନ ଧରି କୁଶଜଳ
ବୋଇଲା ହୋ ଭୂମିଦାନ ଦିଅ ମହୀପାଳ ।
ସଂକଳ୍ପ କରିଣ ଦିଅ ତିନିପାଦ ଭୂମି
ଲୋଭେ ମାଗିଲେ ବୋଲିବେ ଲୋଭୀ ଅନ୍ତର୍ଯ୍ୟାମୀ
ଶୁଣିଣ ଯେ ବଳିରାଜା ସିଝାଡ଼ିଲା କର
ବୋଲେ ମାଗିଲୁ ଏ ଛାରକଥା ବିପ୍ରବର ।
ପାଦ ତୋର ଦିଶେ ଲମ୍ଭ ଚଉକେ ଚଉକେ
ପହଣ୍ଡି ଦେଖିଣ ହସୁଅଛନ୍ତି ଯେ ଲୋକେ ।
ମୋହର ପରା ଦାନୀକି ତୋହ ପରା ଦ୍ୱିଜ
କି ବୋଲିବେ ତୋତେ ମୋତେ ଲାଗୁଅଛି ଲାଜ ।
ବାମନ ବୋଲେ ଏତିକି ଦିଅ ବଳିରାୟେ
ଶକ୍ୟକୁ ଚାହିଁ ସିନା ଯେ ଦାତା ଦାନ ଦିଏ ।
ସନ୍ତୋଷରେ ଦାନ ଦେବ ସନ୍ତୋଷରେ ନେବ
ତେବେ ସେ ଜନ ଯାଇଣ ବୈକୁଣ୍ଠେ ବସିବ ।
ଶୁଣିଣ ହସଇ ପାତ୍ରୀ ଧରି ବଳି ହସ୍ତେ
ବୋଲଇ କରିବୁ ତିନିପାଦେ କୃଷି କେତେ ।
ତିନିପାଦ ଭୂମି ମୋତେ ମାଗିଲୁ ଯେ ତୁହି
ବୃତ୍ତି କେତେ ଗୃହ କେତେ କରିବୁ ତୁ ତହିଁ ।
ବାମନ ବୋଲେ ତୋର ନ ଦେବା ବୁଦ୍ଧିପାଞ୍ଚ
ଆମ୍ଭେ ମାଗିବା କଥା ତ କଲୁ ଅବା ସ୍ୱଞ୍ଚ ।
ସୁଖେ ଥାଅ ରାଜା ଆମ୍ଭେ ଯାଉଅଛୁ ଚଳି
ତୋର ସତ୍ୟହାନି କଲୁଣି ତୁ ନିଶ୍ଚେ ବଳି ।
ଲୋଭ ଦେଖାଇ କହୁଛି ମୋତେ କେତେ ତୁହି
ଲୋଭୀ ଲୋକଙ୍କୁ ଯେ ଧର୍ମ ପ୍ରାପତ କି ହୋଇ ।
ଲୋଭରୁ ସେ ପାପ ଯେତେ ପାପୁଁ ହୋଏ ମୃତ୍ୟୁ
ଏକଥା ପୁରାଣେ ଲେଖିଛନ୍ତି କୁଶକେତୁ ।
ବଳି ବୋଇଲା ମୁଁ ତେବେ ଦେଲି ତିନିପାଦ
ତୁମ୍ଭ କର୍ମେ ଯାହା ଦେଇଅଛନ୍ତି ଗୋବିନ୍ଦ ।
ସେ କଥା ଆନ କରି ନ ପାରେ କେହୁ ଜାଣ
ତୁମ୍ଭ ଭାଗ୍ୟରେ ଏତିକି ଫଳିଛି ପ୍ରମାଣ ।
ଶୁଣ ଆହେ ମୁରାସୁର ସୁବିଜ୍ଞ ଯେ କହେ
ତିନିପାଦେ ବୋଲି ଜାଣିଥିଲା ବଳିରାୟେ ।
କହୁଁ କହୁଁ ବାମନା ଯେ ଘୋଟିଲେ ତ୍ରିପୁର
ବାମପାଦେ ଦେଲେ ବ୍ୟାପୀ ପୃଥ୍ୱୀ ଚରାଚର ।
ଦକ୍ଷିଣ ପାଦକୁ ବିପ୍ର ମାଗିଲେକ ଭୂମି
ତାହା ଦେଖି ବଳିରାଜା ଚିତ୍ତ ଗଲା ଭ୍ରମି ।
ବୋଇଲା ସେ ସ୍ୱର୍ଗ ଅଛି ନିଅ ତାକୁ ପୁଣି
ତୁ ଏଡ଼େ ବିପ୍ର ବୋଲି ନଥିଲି ମୁହିଁ ଜାଣି ।
ଶୁଣିଣ ସେ ମହାପ୍ରଭୁ ସ୍ୱର୍ଗେ ଗଲେ ଘୋଟି
ବୁଝ ଆହେ ମୁରାସୁର ଏ ରୂପେ ବିପ୍ରଟି ।
ଆବର ପାଦକୁ ଭୂମି ମାଗନ୍ତେ ଶ୍ରୀବତ୍ସ
ଦେଖି ବଳିରାଜାକୁ ନ ସ୍ଫୁରେ ବୁଦ୍ଧି କିଛି ।

ମନରେ ପାଞ୍ଚେ ରାଜା ଏ ବିପ୍ର ଅଟେ କେହୁ
ଚନ୍ଦ୍ରକୁ ରାହୁ ପରାୟେ ଘୋଟେ କହୁଁ କହୁଁ ।
କିବା ଏହୁ ବ୍ରହ୍ମା ଅଟେ ରୁଦ୍ର ବାସୁଦେବ
ନୋହିଲେ ଏଡ଼େ ମାୟାକେ କରିପାରେ ସର୍ବ ।
ଏ ଯେବେ ଶ୍ରୀବିଷ୍ଣୁ ହେବ ମୋର ବଡ଼ଭାଗ୍ୟ
ଦାନବେଦା କଥା ରହିଥିବ ଚାରିଯୁଗ ।
ବିଷ୍ଣୁ ନୋହିଥିଲେ ଏହା ମାଗନ୍ତା କେ ଆସି
ବେନିପାଦେ ବେନି ଭୁବନକୁ ଗଲା ଗ୍ରାସି ।
ଭଲା ମୁଁ ଦେଖି ପରୀକ୍ଷାକରି ବୁଝିବଇଁ
ଆଉ ଗୋଟିଏ ପାଦ ଏ କାହିଁଅଛି ଥୋଇ ।
ସେ ପାଦ ଦେଖିଲେ ଜାଣିବି ମୁଁ ବିଷ୍ଣୁ ବୋଲି
ନୋହିଲେ ବିପ୍ରକୁ ଖେଦି ଦେବି ଏଥୁପେଲି ।
ଏ ରୂପେ ପାଞ୍ଚି ପୁଚ୍ଛିଲା ବଳି ବ୍ରାହ୍ମଣକୁ
କାହିଁ ତୋର ପାଦ ଆଉ ଦେଖାଅ ଆମ୍ଭଙ୍କୁ ।
ଶୁଣିଣ ସେ ତ୍ରିବିକ୍ରମ ହେଲେ ଭଗବାନ
ନାଭିରୁ ପାଦେକ କାଢ଼ି ଦେଲେ ଜନାର୍ଦ୍ଦନ ।
ସୂର୍ଯ୍ୟ ଉଦୟ ପରାୟ ଦିଶେ ପାଦ ଜ୍ୟୋତି
ବିଜୁଳିର ପ୍ରଭାପ୍ରାୟ ଦିଶେ ନଖକାନ୍ତି ।
ରକ୍ତପଦ୍ମ ପ୍ରାୟ ପାଦତଳିପା ଯେ ଦିଶେ
ସୁବର୍ଣ୍ଣ ଚମ୍ପା ପରାୟ ଅଙ୍ଗୁଳି ପ୍ରକାଶେ ।
ତେତିଶକୋଟି ଦେବେ ସେ ପାଦେଛନ୍ତି ଲାଗି
ବିପ୍ରରୂପେ ବିଷ୍ଣୁ ଅଛନ୍ତି ତ ଦାନ ମାଗି ।
ସବୁ ଲୋକଙ୍କର ଶ୍ରେଷ୍ଠ ଅଟେ ଯେମ୍ନେ ଗୁରୁ
ପଶୁଙ୍କ ମଧେ ଯେ ରୂପ ଶ୍ରେଷ୍ଠ ଅଟେ ଗୋରୁ ।
ଯାବତ ଦେବ ଦିଶନ୍ତି ବିପ୍ରଙ୍କର ହୃଦେ
ବିପ୍ରଙ୍କ ହୃଦରେ ହରି ସର୍ବକାଳେ ଉଦେ ।
ବିପ୍ରକୁଳରେ ଜନ୍ମନ୍ତି ତେଣୁ ଭଗବାନ
ନାଭିରୁ ପାଦେକ କାଢ଼ିଦେଲେ ଜନାର୍ଦ୍ଦନ ।
ସେ ଅଭୟ ପଦ୍ମପାଦ ଦେଖି ବଳି ନେତ୍ରେ
ସାକ୍ଷାତରେ ବିଷ୍ଣୁ ବୋଲି ଚିହ୍ନିତାର ଗାତ୍ରେ ।
ପାଦ କାଢ଼ି ହରି ବୋଲୁଛନ୍ତି ଦିଅ ଦାନ
ନ ଦେଲେ ତୋହର ହାନି ହେବଟି ରାଜନ ।
ଦେବାକୁ ଯେ ତିନିପାଦ କରିଛୁ ତୁ ସତ୍ୟ
ବେନିପାଦ ଭୂମି ଦେଇ ହେଲୁ ତୁ ନିସତ ।
ଦିଅ ବେଗେ ଦାନ ଆମ୍ଭେ ଯିବୁ ଶୀଘ୍ର ଚଳି
କାହିଁକି ହେଳା କରୁଛୁ ଆହେ ନୃପବଳି ।
ଶୁଣି ବଳି ମହାରାଜା ହୋଇଲା ଚକିତ
ମନରେ ପାଞ୍ଚଇ ଏକା ଅଛି ମୋର ମାଥ ।
ଏତେ ପାଞ୍ଚି ପଦ୍ମାସନେ ବସି ଅଧୋମୁଖେ
ବସାଇଣ ପୁତ୍ର ପତ୍ନୀ ନିଜ ଜାନୁପାଖେ ।
ବିଷ୍ଣୁଙ୍କୁ ବୋଲେ ମୋ ମୁଣ୍ଡେ ଦିଅ ଏବେ ପାଦ
ପୃଥିବୀ ନାହିଁ ତ ଆଉ ଶୁଣ ହେ ଗୋବିନ୍ଦ ।
ଆପଣ ପଦ୍ମପାଦକୁ ମଥା ମୋର ଅଛି
ଲଦ ବେଗେ ସେ ପାଦକୁ ତରିବି ଶ୍ରୀବତ୍ସି ।
ଶୁଣିଣ ଠାକୁର ତାହା ହୋଇଲେ ସନ୍ତୋଷ
ରାଜା ମନକଥା ଜାଣି ପ୍ରଭୁ ହୃଷୀକେଶ ।
ବୋଇଲେ ସଂସାରେ ଏଡ଼େ ଭକ୍ତ ନ ମିଳଇ
କୁଟୁମ୍ବଯାକ ମୁର୍ଚ୍ଛିଣ ଦାନ ମୋତେ ଦେଇ ।
ଆପଣାର ମଥା ପୁଣି ଦେଲା ଦାନ କରି
ୟାକୁ ନାଶିଲେ ଯେ ଧର୍ମ ବୁଡ଼ିବ ମୋହରି ।
ରଖିବା ପାତାଳେ ନେଇ ସୁଖଭୋଗ ଦେଇ
ଚନ୍ଦ୍ର ସୂର୍ଯ୍ୟ ଥିବାଯାଏ ଥିବ ଦେହ ବହି ।
ଏତେକ ପାଞ୍ଚି ଗୋବିନ୍ଦ ଲଦି ପାଦଗୋଟି
ଚାପିଲେ ସେ ପାତାଳକୁ ଶିରେ ତାର ଉଠି ।
ରଖିଲେ ବୈକୁଣ୍ଠପୁରେ ତାକୁ ଜଗନ୍ନାଥ
ଚଳିଲା ସେ ବଳିରାଜା ସୁତଳ ପର୍ଯ୍ୟନ୍ତ ।
ସତ୍ୟରେ ଯେହୁ ରହିଛି ଧର୍ମ ତହିଁ ଅଛି
ଧର୍ମରେ ଯେହୁ ରହିଛି ଦୟା ତହିଁ ଅଛି ।
ଦୟାରେ ଯେହୁ ରହିଛି ଜ୍ଞାନ ତହିଁ ଅଛି
ଜ୍ଞାନବନ୍ତ ଜନ ଘରେ ଥାନ୍ତି କମଳାକ୍ଷୀ ।
କମଳା ଯହିଁ ଥାଆନ୍ତି ବିଷ୍ଣୁ ତହିଁ ଥାନ୍ତି
ବିଷ୍ଣୁଅଂଶ ଥିବା ଲୋକଠାରେ ବଡ଼ ଭକ୍ତି ।
ପଦାର୍ଥ ଥିବା ଲୋକଟି ଦରିଦ୍ର ଯେ ଅଟେ
ଦେବତା ବ୍ରାହ୍ମଣଙ୍କୁ ନ ସେବେ ପରିପାଟେ ।
ଶୁଣ ମୁରାସୁର ବିଷ୍ଣୁଙ୍କର ଏଡ଼େ ପ୍ରଜ୍ଞା
ସବୁଲୋକଙ୍କ ମୋହଟି ଲେଖି ପ୍ରଭୁ ଆଜ୍ଞା ।
ଛାର ଏ ବିପ୍ର ବୋଲ ନ ଘେନ ମନେ ତୁହି
ବାର ଆଙ୍ଗୁଳିରେ ଜନ୍ମ ଘୋଟିଲେକ ମହୀ ।
ବଳିର କୁଟୁମ୍ବଯାକ ଚାପି ପାତାଳରେ
ସେ ପୁଣି ନାଶ ନୋହିଣ ରହେ ବୈକୁଣ୍ଠରେ ।
ଏ ରୂପେ ବଶିଷ୍ଠ ଜାଣ ଗ୍ରନ୍ଥ ପଢୁଥିଲେ
ବିଷ୍ଣୁ ଦଶ ଅବତାର ମହିମା କହିଲେ ।
ଏଣୁ ସେ ବ୍ରାହ୍ମଣଙ୍କୁ ନ କର ନିନ୍ଦା ତୁହି
ବ୍ରାହ୍ମଣଘରେ ଜନ୍ମନ୍ତି ସିନା ଭାବଗ୍ରାହୀ ।
କୃଷ୍ଣବଲ୍ଲଭ ରାଜା ସୁବେଦୀ ବିପ୍ରବର
ତାହାଙ୍କ ଘରେ ନୃସିଂହ ହେଲେ ଅବତାର ।
ତୁ ତାକୁ ନ ଜାଣି ମଣୁଅଛୁ ବିପ୍ରପରି
ଶ୍ରୀ ବିଦ୍ୟାଗୁରୁ ହୋଇ ତୋ ପୁତ୍ରଗଲେ ମାରି ।
ପୁଣି ହିଁ ପେଷିଲୁ ସୈନ୍ୟଯାକ ପୁଞ୍ଜା ପୁଞ୍ଜା
ଗୋଟିଏ ବାହୁଡ଼ି ତୋର ନ ଆସିଲେ ରାଜା ।

ଏ ରୂପେ କହନ୍ତି ମନ୍ତ୍ରୀ ବିଷ୍ଣୁ ଅବତାର
ଶୁଣି ହସ ହସ ହୋଇ ବୀର ମୁରାସୁର ।
ବୋଇଲେ ମନ୍ତ୍ରୀ କହିବା ଶୁଣ କିଛି ତୋତେ
ତୁ ଯେତେକ ଉପଲକ୍ଷ୍ୟ ଦେଲୁ ଆଣି ମୋତେ ।
ମାନବ ବିଷ୍ଣୁ ଅଟଇ ସିନା ଜାଣ ଏହୁ
ସହସ୍ର ପାଦ ବିଷ୍ଣୁକେ ଦେଖିଛି ତା କହୁ ।
ତେବେ କହିଲେ ସଂସାରେ ତାକୁ ମାନିବଇଁ
ଦେଖିଲେ ମୋକ୍ଷ କରିବେ ପ୍ରଭୁ ଭାବଗ୍ରାହୀ ।
ମାନବ ବିଷ୍ଣୁ ଏ ସିନା ବଲ୍ଲଭର ସୁତେ
ତେଣୁ ଏହାକୁ ମୁହିଁ ନ ମାନେ କଦାଚିତେ ।
କୃଷ୍ଣବଲ୍ଲଭ ବୋଲି ସେ ଅଟେ ବଡ଼ଲୋକ
ଭିକ୍ଷା ମାଗି ଗ୍ରାମେ ଗ୍ରାମେ ବୁଲେ ପୃଥ୍ୱୀଯାକ ।
ପଲ୍ଲୀ ଖଣ୍ଡେ ଥିଲାକୁ ସେ ଅଛି ସିନା ରହି
ନୋହିଲେ ପଳାନ୍ତାଣି ସେ ବାଳୁତ ଯେ ହୋଇ ।
ନୃସିଂହ ପୁତ୍ର ତାହାର ପାଷାଣ୍ଡ ଯେ ଅଟେ
ବୁଡ଼ଇ ସେ ପରଘର ଢଳେ ନଟକୂଟେ ।
ବ୍ରାହ୍ମଣ ସଂସାରେ ସେ ଯେ ଅଟେ ବଡ଼ ଦୋଷୀ
ପରକୁ ସେ ହଂସାକରି ମରେ ଅହର୍ନିଶି ।
ଦେଖିଲେ ପରର ଶିରୀ ନ ପାରନ୍ତି ସହି
ବୁଝିବ କାଲି ଗଲେ କି ମରିବଇଁ ମୁହିଁ ।
ଏ ରୂପେ ବୋଲିଣ ରାଜା ଗର୍ଜି ଘନ ଘନ
ଶୁଣିଣ ସ୍ତବଧେ ରହିଛନ୍ତି ସଭାଜନ ।
ହେ ବୁଧଜନେ ପୁରାଣ ଶୁଣ ଏକ ମନେ
ଦେହାନ୍ତେ ବସିବ ଯାଇ ବୈକୁଣ୍ଠ ଭୁବନେ ।
ପଦ ପଦକେ ଅମୃତ ଅଟେ ଏହୁ ବାଣୀ
ସନ୍ତୋଷ ଶୁଣିଣ ଦାନ ଦେବେ ସାଧୁ ବାଣୀ ।
ଇହଜନ୍ମେ ଯଶ ଶିରୀ ବର୍ଦ୍ଧିତ ହୋଇବ
ପୀତାମ୍ବରକୁ ରଖିବେ ପ୍ରଭୁ ଶେଷଦେବ ।



## ଦାରୁଣ ସେନାର ଯୁଦ୍ଧ ଓ ମୃତ୍ୟୁ

ବଦୟନ୍ତି ବେଦବ୍ରହ୍ମା ଶୁଣ ହେ ନାରଦ
କମ୍ପିଲେ ମୁରର କୋପ ଦେଖି ଦେବବୃନ୍ଦ ।
ରାଜାରୋଷ ଦେଖି ଦାରୁଣ ଯେ ଭାଇ ତାର
ସଭାରୁ ସେ କ୍ରୋଧ ହୋଇ ଉଠିଲା ତତ୍ପର
ବୋଇଲା ମୋର କଥା ନ ଜାଣୁ କିରେ ଭାଇ
ମୋତେ ନ ପେଷି ପେଷୁଛୁସୈନ୍ୟ କାହିଁପାଇଁ
ଆଜ ମୁହିଁ ଗଲେ ଶତ୍ରୁ ନାଶିବ ତୋ ପୁଣ
ଏଥକୁ କେତେ ଚିନ୍ତା ତୁ କରୁ ନୃପରାଣ ।
ଦାରୁଣ ଭାଇର କ୍ରୋଧ ଦେଖି ମୁରାସୁର
ବୋଲେ ମୁଁ ଛାଡ଼ିପାରିବି ତୋତେକେମନ୍ତେବୀର
କରିଣ ଯୁଦ୍ଧ ଆଉ ନ ଯିବା କେଉଁ ରଣେ
ଆମ୍ଭର ପଛକେ ଶୁକ୍ର ମରନ୍ତୁ ସେ ସୈନ୍ୟେ
ମରନ୍ତୁ ପଛକେ ପୁତ୍ର ମରନ୍ତୁ ଯେ ସୈନ୍ୟ
ତୁ ଗଲେ ଯୁଦ୍ଧ କରି ନ ସରିବ ମୋ ଦିନ ।
ଦାରୁଣ ବୋଲେ ଭାଇ ତୁ ସର୍ବ ଜଗଜ୍ଜିତା
ମୋ ପରା କ୍ଷତ୍ରିୟ ରଖି କରୁଛୁ କି ଚିନ୍ତା ।
ଗଲେ ମାରିବି ବ୍ରାହ୍ମଣଯାକ ବଦ୍ରିକାରୁ
ସ୍ୱାହାପଢ଼ା ମନ୍ତ୍ରକାଣ୍ଡି ସରିବ ଏଠାରୁ ।
ମୁରାସୁର ବୋଇଲେକ ଶୁଣିବା ଦାରୁଣ
ବ୍ୟର୍ଥେ ଅକାରଣେ ଯାଇ ନ ମାର ବ୍ରାହ୍ମଣ
ବଲ୍ଲଭ ପୁତ୍ରଙ୍କୁ ପକା ପାରୁ ଯେବେ ମାରି
ଅମର ହୋଇଣ ଆମ୍ଭେ ଥିବା ଦେହଧରି
ଦାରୁଣ ବୋଲେ ଭାଇ ଏ କଥା ହେଲେସତ
ଯୁଦ୍ଧରେ ପଶିଲେ ଗୁରୁ ବିପ୍ର କରି ହତ ।
ବିପ୍ରଙ୍କ ଛବି ଦେଖିଣ କମ୍ପୁଛି ମୋ ଦେହ
ମୁଁ ଯାଇଁ ଆସିବାଯାଏ ସୁଖେ ନଗ୍ରେ ଥାଅ ।
ଗଲେଟି ସୈନ୍ୟ ସବୁଙ୍କୁ ସଙ୍ଗେ ଯିବି ଘେନି
ବଲ୍ଲଭ ପୁତ୍ରଙ୍କୁ ପେଷି ଦେବି ସଂଯମନୀ ।
ଅବଶ୍ୟ ମାରି କରିବି ତାଙ୍କୁ ପୋଡ଼ାବଲି
କଟକଯାକ ତା ଧ୍ୱଂସ ଦେବି ତାକୁ ଗିଳି ।
ଏରୂପେ କହି ସେ ଦୈତ୍ୟ ହେଲା ଆଗୁସାର
ସୈନ୍ୟ ଘେନିଗଲା ସେହି ବଦରିକା ପୁର ।
କହିବା ସେନାପତିଙ୍କ ନାମ ଶୁଣ ଥୋକେ
ପ୍ରଚଣ୍ଡ ଚଣ୍ଡ ଏ ନାମ ଅଟେ ଗ୍ରନ୍ଥବାକ୍ୟେ ।
ବିକୁଖି ଅର୍ଘାସୁର ଯେ ଶଙ୍ଖାସୁର ଯେନା
କୁମୁଣ୍ଡା ତ୍ରିମୁଣ୍ଡା ଶରମୁଣ୍ଡା ଶୁରସେନା ।
ବ୍ୟାଘ୍ର ମୁଣ୍ଡା ଅଶ୍ୱମୁଣ୍ଡା ସିଂହମୁଣ୍ଡା ତୁଲେ
ମଞ୍ଜାରି ଉଲ୍ଲୁକମୁଖା ପେଚାମୁଖା ଗଲେ ।
ରୋଡ଼ଙ୍ଗା ଡେଙ୍ଗା ଆବର ଦୈତ୍ୟ ମହୀଗରା
ଝମ୍ପାସୁର ପମ୍ପାସୁର ନରକା ଯେ ବୀରା ।
ଏହାଙ୍କ ମୂଳେ ଯେ ଶତ ଅର୍ବୁଦେକ ବଳା
ଯୁଦ୍ଧେ ଗଲା ଘେନି ଯେ ଦାରୁଣ ଅନର୍ଗଳା
ବାଟରେ ଚାଲନ୍ତେ ସୈନ୍ୟ ନ ଯାଇକଳନ
ଅଶ୍ୱଚଢ଼ି ଗମଇ ଯେ ଦାରୁଣ ଦର୍ଶନ ।
ବଜାଇ ସେ ନାନାବାଦ୍ୟ ଘେନିଦୈତ୍ୟବଳ
ପ୍ରଳୟ କାଳରେ ଯେହ୍ନେ ସମୁଦ୍ର କଲ୍ଲୋଳ
ଧର ଧର ମାର ମାର ଶୁଭେ ଉଚ୍ଚ ବୋବି
ଦୈତ୍ୟଙ୍କର ପାଦଘାତେ କମ୍ପେ ପୃଥ୍ୱୀଦେବୀ
ସବୁରି କରରେ ଧନୁ ଶର ବାଦ୍ୟମାନ
ଶାବେଳି ଗୁରୁଜ ଗଦା ଲାଙ୍ଗିଆ କୃପାଣ ।

ପରିଘ ଖଣ୍ଡା ହୁଆଦ କ୍ଷୁରୀ କରବାଳ
ଭୂଷଣ ନାରାଚ କାଣ୍ଡ ଶକ୍ତି ଅନର୍ଗଳ
ଚାଲନ୍ତେ ଦଇତ୍ୟ ତିନିଯୋଜନ ଯେ ମାଡ଼ି
ଧାମନ୍ତି କେ ନାଚି ନାଚିକରି ଘୋର ରଡ଼ି
ଘଣ୍ଟ ଘଣ୍ଟା ଘାପୁଡ଼ି ଯେ ବାଜେ ରୁମୁଝୁମୁ
ଦମାଳୁ ଦୂଳୁ ଦୂଳୁ ଘୁମୁରା ଘୁମୁ ଘୁମୁ ।
ଟମକ ନିଶାଣ ଢୋଲ ବାଜେ ଘଡ଼ି ଘଡ଼ି
ବଇଁଶୀ ବେଣୁବୀଣା ଯେ ବାଜେଯୋଡ଼ିଯୋଡ଼ି
ଚାଲନ୍ତି ଦଇତ୍ୟବଳ ଯୁଦ୍ଧେ ଦଣ୍ଡବାହି
ମିଳିଲେ ଆନନ୍ଦବନେ କୁତୂହଳେ ଯାଇ ।
ପଡ଼ିଲେ ଟାଡୁଆ ତମ୍ବୁ ବାନ୍ଧି ତୋଟାମାଡ଼ି
ଉଚ୍ଛୁଳି ଆନନ୍ଦବନ ଶୁଭେ ଘିଡ଼ି ଘିଡ଼ି ।
ଏଥୁ ଉତ୍ତାରେ ଯେ ଶୁଣ ରାତି ଯାନ୍ତେ ପାହି
ଜାଣିଣ ଡାକିଲେ ଅନ୍ତର୍ଯ୍ୟାମୀ ଭାବଗ୍ରାହୀ ।
ବାରୁଣ ଆସିଲା ବୋଲି ଜାଣି ମନବେଗେ
ସାରି ନିତ୍ୟକର୍ମ ଚଳିଗଲେ ନରସିଂହେ ।
ଶେଷଦେବଙ୍କୁ ଘେନିଣ ଗଲେ ତୋଟାଦ୍ୱାରେ
ସୁଜାଣ ମହାମନ୍ତ୍ରୀ ଯେ ଅଛି ସଙ୍ଗତରେ ।
ଆଗହୁଁ ସଜ ହୋଇଣ କର୍ଣ୍ଣାଟେଶ ରାଜା .
ନୃସିଂହଙ୍କ ବାମପାଶେ ଚଳେ ବାଇ ବାଜା
ଦକ୍ଷିଣ ଭାବରେ ଚାଲେ ପକ୍ଷୀ ମହାବଳୀ
ନୃସିଂହ ଆଗରେ ନାଚି ଯାଏ ଢଳି ଢଳି ।
ଚାଲନ୍ତି ଯେ ଆଗ ପଛେ ଶ୍ରୀନୃସିଂହଗଣ
କହିବା ତାହାଙ୍କ ନାମ ନାରଦ ହୋ ଶୁଣ
ବିକଟ ନୃସିଂହ ପୁଣି ବିରାଳ ନୃସିଂହ
ଉଗ୍ର ନରସିଂହ ଆଉ ସୋହଂସ ନୃସିଂହ
ଭୀଷଣ ନରସିଂହ ଯେ ବିହଡ଼ ନୃସିଂହ
ଭଇରବ ନରସିଂହ ବରାହ ନୃସିଂହ
ସୁଘୋଷ ନରସିଂହ ଯେ ଅଜୟ ନୃସିଂହ
ବିଜୟ ନୃସିଂହ ଆଉ ଅନନ୍ତ ନୃସିଂହ
ଅନାଦି ନୃସିଂହ ସେଯେ ବେତାଳ ନୃସିଂହ
ଜାନୁ ନରସିଂହ ଯେ ସୁଚଣ୍ଡ ନରସିଂହ ।
ପ୍ରଚଣ୍ଡ ନରସିଂହ ଯେ ଘର୍ଘର ନୃସିଂହ
ଡହ ଡହ ନୃସିଂହ ଟହ ଟହ ନୃସିଂହ ।
ଏ ବିଧି ନୃସିଂହଗଣ ଜାତ ବିଷ୍ଣୁଅଙ୍ଗ
ଯେ ଯାହା ବାହନ ଚଢ଼ି ହୋଇଛନ୍ତି ଆଗ
ପୟରେ ଚାଲନ୍ତି ଯେହ୍ନେ ବିଜେ କରି ହରି
ସେରୂପେ ଚାଲନ୍ତି ହରିଗଣ ଦିଗ ପୂରି ।
ଶେଷଦେବଙ୍କର କର ଧରିଣ ନୃସିଂହ
ମିଳିଲେ ଆନନ୍ଦବନ ମଧେ ଯାଇ ବେଗ
ଶ୍ରୀନୃସିଂହଗଣଯାକ ଧରି ବିପ୍ରମୂର୍ତ୍ତି
ଦେଖିଲେ ନରସିଂହଙ୍କର ଚାଲିବାର ଗତି ।
ପ୍ରଭୁଙ୍କ ଚାଲିବାମାର୍ଗ ଚାହିଁ ହରିଗଣେ
ମାରିବା ଦୈତ୍ୟବୋଲିଣ ପଶିଲେକ ରଣେ
ବ୍ରାହ୍ମଣରୂପ ହୋଇଣ ହସ୍ତେ ଧରି ଛତା
କଣ୍ଠରେ ରୁଦ୍ରାକ୍ଷମାଳା କନ୍ଧେ ଯଜ୍ଞସୂତା ।
ଗଡୁଆ ତମ୍ବାପାତ୍ରୀ ଯେ ହସ୍ତେ କୁଶବିଡ଼ି
କେ ରଣେ ଧାମଇଁ କେହୁ ମନ୍ତ୍ରଭାଗ ପଢ଼ି ।
କେ ପଢ଼େ ଯଜୁର୍ବେଦ କେ ପଢ଼େସାମବେଦ
ନୃସିଂହଗଣ ପ୍ରଜ୍ଞା ଏ ଶୁଣ ହେ ନାରଦ ।
କେତୁ ଦ୍ୱିଜ ବରଷକେ ଆଚାର୍ଯ୍ୟ ବରଣ
କେ ବ୍ରହ୍ମା ବରଣ କେହୁ ଗାୟତ୍ରୀ ସ୍ମରଣ
କେହି ଚଣ୍ଡୀ ଗୁଣେ ପଢ଼େ କେ ଅପରାଜିତା
ଯୁଦ୍ଧରେ ପଢ଼ନ୍ତି ହରିଗଣ ହୋଇ ମତ୍ତା ।
ଦୈତ୍ୟକୁ ଦିଶନ୍ତି ଯଥା ସାଧାରଣ ଦ୍ୱିଜ
ଧରିଛନ୍ତି ଅସ୍ତ୍ରଶସ୍ତ୍ର ସର୍ବେ ହୋଇ ସଜ ।
ନରସିଂହ ପ୍ରଭୁ ପାଶେ ଯାନ୍ତି ଉଭା ହୋଇ
ହସନ୍ତ ଠାକୁରେ ତାହା ଦେଖି ଶ୍ରଦ୍ଧା ବହି
ଶ୍ରୀନୃସିଂହ ଆଜ୍ଞା କଲେ ଶୁଣ ହରିଗଣ
ଟିକିଏ ପଛକୁ ଘୁଞ୍ଚି ତୁମ୍ଭେ ରହ ପୁଣ ।
ଦଇତ୍ୟଙ୍କୁ ଆମ୍ଭେ ଆଗେଦେଖା ଦେବୁଯାଇ
ଅସୁର କି ବୋଲିବେ ତା ଶୁଣିବା ଆଗହିଁ
ଶୁଣିଣ ନୃସିଂହଗଣ ଗଲେ ଘୁଞ୍ଚି ପୁଣ
ବସିଲେ ତୋଟା ଜଗତୀପରେ ନାରାୟଣ ।
ଶୁଣ ନାରଦ କହନ୍ତି ଲୋକ ପିତାମହ
ଏସନବେଳେ ଦଇତ୍ୟ ଦେଖିଲେ ନୃସିଂହ
ବସନ୍ତେ ନୃସିଂହ ବେନିଭାଇ ଜଗତୀରେ
ଦେଖିଣ ଦଇତ୍ୟ ଧାଇଁ ଆସିଲେ ତପୂରେ
ବୋଇଲେ ତୁମ୍ଭେ କି କୃଷ୍ଣବଲ୍ଲଭର ଶିଷ୍ୟ
ଏଡ଼େ ପ୍ରପଞ୍ଚ ହୋଇଣ ସଂସାରେ ଜନ୍ମିଛ ।
ପୂର୍ବେ ଯେ ଥିଲେ ତୁମ୍ଭର ପିତାପିତାମହ
ସେମାନେ ପାପୀ ନୁହନ୍ତି ବହୁ ପୁଣ୍ୟଦେହ
ବୁଲିଣ ସେ ଗ୍ରାମେ ଗ୍ରାମେ ମାଗନ୍ତି ଲୋକଙ୍କୁ
ଯାଉଁଳି କନ୍ଧେ ପକାଇ ପୋଷି କୁଟୁମ୍ବକୁ ।
ହସାଇ ରସାଇ ପୁଣି ମାଗି ଘେନିଯାନ୍ତି
ଥିବାରୁ ବ୍ରାହ୍ମଣପଣ ପାଇଲେ ସଦଗତି ।
ଯେ ଯାହାର କୁଳବିଦ୍ୟା କଲେ ସିନା କରି
ନାଶିଲେ ଯେ ବ୍ରହ୍ମବିଦ୍ୟା କ୍ଷତ୍ରିବିଦ୍ୟା କରି
ବ୍ରାହ୍ମଣ ପଣେ ଥିଲେ ତ ପାଉଥାନ୍ତି ପୂଜା
ବ୍ରାହ୍ମଣଙ୍କୁ କେଡ଼େ କରି ମନେ ଆମ୍ଭେ ରାଜା

ଥିବାରୁ ବଦ୍ରିକାଦେଶେ ସିନା ବିକାଉଛ
ବ୍ରାହ୍ମଣ ଲୋଚାଏ ଆଣି ଯୁଦ୍ଧେ ପୁରାଉଛ ।
କୃଷ୍ଣବଲ୍ଲଭ ବୋଲି ଯେ ଅଛି ବୁଢ଼ା ତାଙ୍କ
ତୁମ୍ଭେ ଦୁହେଁ ମରନ୍ତେ ସେ ହେବ ପ୍ରାଣାନ୍ତକ
ଉତ୍ତର ଷୋଡ଼ଶ କର୍ମ କରିବ କେ ତାକୁ
ଏ କଥା ନ ପାଞ୍ଚି ଆସୁଅଛି ମରିବାକୁ ।
ବ୍ରାହ୍ମଣ କୁଳରେ ଜନ୍ମି ଏଡ଼େ ମୂର୍ଖ ହେଲ
ମୁରାସୁର ରାଜାକୁରେ ତୁମ୍ଭେ ନ ମାନିଲ ।
ତାର ପୁତ୍ର ସେନାପତି ନାଶ ଅନିମିତ୍ତେ
ତୁମ୍ଭର କନ୍ଧରୁ ଶିରୀ ଛାଡ଼ିଲା ନିୟତେ ।
ଦୈତ୍ୟଙ୍କର କଟୁବାକ୍ୟ ଶୁଣିଣ ନୃସିଂହ
ହସିଣ ପ୍ରଭୁ କହନ୍ତି କଥା ପରସଙ୍ଗ ।
ନୃସିଂହ ବୋଇଲେ କହୁଅଛି ତେବେ ଶୁଣ
ସାକ୍ଷାତରେ ଅଟନ୍ତି ଯେ ଦ୍ୱିଜ ନାରାୟଣ ।
ଯାହା ବୋଇଲେ ମାଗିଣ ବହନ୍ତି ଯାଉଁଳି
ଦିଅନ୍ତି ଲୋକଙ୍କୁ ବିପ୍ରେ ଘେନି ପାଦଧୂଳି ।
ବିପ୍ର ଆଶୀର୍ବାଦ ପାଇଁ ଲକ୍ଷେ ସୁନା ଦେଲେ
ପଦେ କଲ୍ୟାଣକୁ ତୁଲ ନୁହଇଟି ଭଲେ ।
କୋଟିଏ ତୀର୍ଥକୁ ଗଲେ ଯେତେ ଫଳପାଇ
ବିପ୍ର ଆଶୀର୍ବାଦ ସମ ତାହା ନୁହେ କହି ।
ବିପ୍ରଙ୍କର ବେଦଧ୍ୱନି ଅଟେ ଆଦ୍ୟ ପାଟ
ଦଶକର୍ମେ ବେଦୀପରେ ପିନ୍ଧିଛନ୍ତି ପାଟ ।
ନବଗୁଣେ ପଇତାକୁ ମନ୍ତ୍ରି ଶୁଦ୍ଧ କରି
ମାଗନ୍ତି ଯେ ଭକ୍ତ ଭିକ୍ଷା ଦଣ୍ଡ ହସ୍ତେ ଧରି ।
ଉଠନ୍ତି ବେଦୀ ଉପରୁ ଯାଉଁଳି ପକାଇ
ବୃଷାଣି କରନ୍ତି ଶଙ୍ଖ ଆଗରେ ବଜାଇ ।
ମଥାରେ ମୁକୁଟ ବାନ୍ଧି ହସ୍ତେ ଗଡୁଧରି
ଛତ୍ରକୁ ଟେକି ଚାଲନ୍ତି ଦାଣ୍ଡେ ବିଜେ କରି ।
ସେ ଚାଲି ମହିମା ବିଷ୍ଣୁ ବିଜେ ପ୍ରାୟ ଦିଶେ
ଦେଖିବା ଲୋକମାନଙ୍କ ଦୁରିତ ବିନାଶେ ।
ତରନ୍ତି ବ୍ରାହ୍ମଣଯାକ ଲାଗି ଜଣେ ସର୍ବେ
ତୁମ୍ଭେ ନ ଚିହ୍ନି ନିନ୍ଦୁଛ ସିନା ମତ୍ତଗର୍ବେ ।
ବ୍ରାହ୍ମଣ ତ ବ୍ରହ୍ମାଙ୍କର ମୁଖୁ ହେଲେ ଜାତ
ଏଣୁକରି ବ୍ରାହ୍ମଣ ଯେ ସଦା ବିଷ୍ଣୁଭକ୍ତ ।
ବ୍ରାହ୍ମଣ ଲାଗି ସବୁରି ଅଛି ଜାଣ ଖ୍ୟାତି
ବ୍ରାହ୍ମଣ ଗୋସାଇଁ କି ଯେ ମୂର୍ଖେ ନ ମାନନ୍ତି
ଆଦ୍ୟ ମଧ ପ୍ରାନ୍ତକୁ ଯେ ବିପ୍ର କର୍ତ୍ତା ପୁଣି
ସଚରାଚରଯାକରେ ବ୍ରାହ୍ମଣ କାରେଣୀ ।
ବ୍ରାହ୍ମଣ ଅଟନ୍ତି ପୃଥିବୀକି ଗଙ୍ଗାଜଳ
ତରନ୍ତି ବ୍ରାହ୍ମଣ ପାଦୋଦକେ ଶୁକ୍ରକୁଳ ।
ସବୁ ଜାତିଙ୍କ ଉପରେ ବିପ୍ର ଅଟେ ସୂର୍ଯ୍ୟ
କଲ୍ୟାଣ କଲେ ପାତକ ହୁଅଇ ଦହିର୍ଯ୍ୟ ।
ଆୟୁଷଦାତା ଅଟନ୍ତି ବିପ୍ରେ ପ୍ରାଣୀଙ୍କର
ଆଶୀର୍ବାଦ କରି ରିଷ୍ଟ ଖଣ୍ଡନ୍ତି ଯେ ତାର ।
ବ୍ରାହ୍ମଣମାନଙ୍କ ଗୁଣ ଏମନ୍ତ ଅଟଇ
ବ୍ରାହ୍ମଣ ଗୋସାଇଁଟି କି ମୂର୍ଖ ନ ମାନଇ ।
ଆମ୍ଭେ ଯେ ଶ୍ରୀ ନାରାୟଣ ବିପ୍ରକୁଳେ ଜନ୍ମୁ
ଦୁଷ୍ଟଯାକ ନିବାରିଣ ବୈକୁଣ୍ଠକୁ ଗମୁଁ ।
ତୁମ୍ଭେ ହେଲେ ଏଠାକୁ କି ଯିବ ଆଜ ବର୍ତ୍ତି
କହିଲେ ଅସୁରଗଣେ ଏହା ଜଗଜ୍ଜ୍ୟୋତି
ତାହା ଶୁଣି ଦୈତ୍ୟମାନେ ଗର୍ଜିଣ ଉଠିଲେ
ଅସମ୍ଭାଳେ ଅସ୍ତ୍ର ଶସ୍ତ୍ର ହସ୍ତରେ ଧଇଲେ ।
ଧାଇଁଲେକ ଏକମୁଖ ହୋଇ ଅନ୍ତରାଳ
ଦାରୁଣ ଦୈତ୍ୟର ଯେତେଥିଲେ ସେନାବଳ
ନୃସିଂହକୁ ମାର ବୋଲି ଦେଲେ ଘୋରରାବ
ଶୁଣ ହେ ନାରଦ ଋଷି କହନ୍ତି ଦଇବ ।
ଦାରୁଣ ଦୈତ୍ୟର ଥିଲେ ଯେଉଁ ସେନାଗଣ
ଯୁଦ୍ଧକୁ ସେ ବାହାରିଲେ କରିବାକୁ ରଣ ।
ପ୍ରଚଣ୍ଡର ସୈନ୍ୟ ସପ୍ତଦଶ ପଦ୍ମଯାଏ
ଚାମୁଣ୍ଡାର ସୈନ୍ୟ ଚଳିଗଲେ ଅପ୍ରମେୟ ।
ନିର୍ଭତୀ ସେନାର ସୈନ୍ୟ ଏଗାର ମର୍ଭୁତ
ଚଳିଗଲା ତିନିପଦ୍ମ ଧରି ଅର୍ଘାଦୈତ୍ୟ ।
ପମ୍ପା ଅସୁରର ସୈନ୍ୟ ବାରଲକ୍ଷ ଯୋଦ୍ଧା
ସବୁରି କରେ ମୂଷଳ ଚକ୍ର ଅସି ଗଦା ।
ତ୍ରିଶିରା ସହସ୍ରଶିରା ନବରାଶି ଦୈତ୍ୟ
ଏ ତିନି ସେନାଙ୍କ ସୈନ୍ୟ ବାଇଶି ମର୍ଭୁତ
ପମ୍ପା ବିରୂପା ଅରୂପା ଅସୁର ଏ ତିନି
କୋଡ଼ିଏ ମର୍ଭୂତ ସେନା ଉଠିଲେ ଏ ଘେନି
ଅକାଳ କାଳ ମଞ୍ଜାରିମଖା ଯେ ଅମର ।
ଏ ତିନି ସେନାର ସୈନ୍ୟ ପନ୍ଦର ସାଗର
କାଳିମୁଖା ବଳିମୁଖା ସିଂହମୁଖା ମୂଳେ
ନବବୃନ୍ଦ ସୈନ୍ୟ ଘେନିଗଲେ ଏକାବେଳେ
ଧର୍ମକେତୁ କାଳକେତୁ ଚିତ୍ରସେନା ତିନି
ଚଉଦ ଖର୍ବ ସୈନ୍ୟ ଏ ଗଲେ ସଙ୍ଗେ ଘେନି
ଏହିରୂପେ ଦାରୁଣର ସେନାପତି ଯେତେ
କିଞ୍ଚିତେ ଲେଖିଲି ତାହା ମୁହିଁ ପଦକେତେ ।
ଏତେ ସୈନ୍ୟ ଘେନି ମୁରାସୁର ସାନଭାଇ
ଗଲା ବଦ୍ରିକାକୁ ଯୁଦ୍ଧ କରିବାର ପାଇଁ ।
ହେ ବୁଧଜନ ଏହା ନ ପାରେ ସଂଖ୍ୟାକରି
ମାନବ ଦେହ ବହି ମୁଁ ଅଛି ଅବତରି ।

କନକାବତୀଠାରୁ ବଦରିକାଯାଏ
ପୂରି ଦିଶୁଅଛି ସୈନ୍ୟ କଳନା ନ ହୁଏ ।
ଶତେକ ତିରିଶଯୁଣ ଏଥି ମଧ୍ୟସ୍ଥଳୀ
ପୂରି ଦିଶୁଛନ୍ତି ରହି କେ ପାରେ ତା କଳି
ଦେଖି ବୃନ୍ଦାରକେ ତ୍ରାସ କଲେ ରହି ସ୍ୱର୍ଗେ
ପଳାଇ ପଶିଲେ ଭୟକରି ମେରୁ ଶୃଙ୍ଗେ ।
ଦଶଦିଗପାଳେ ଏକା ଗଲେ ଯଶୋବନ୍ତୀ
ଆକୁଳେ ପୁଚ୍ଛନ୍ତି ଯାଇକରି ମନେ ଭୀତି ।
ବୋଲନ୍ତି ଭୋ ପିତା ଏବେ ଶୁଣିବା ଗୁହାରି
ଦୈତ୍ୟଙ୍କୁ ଦେଖି ଆସିଲୁ ଆମ୍ଭେ ଭୟକରି
ବ୍ରହ୍ମା ବୋଇଲେ କେ ତୁମ୍ଭେ ଏଥକୁ ନଡର
ପ୍ରଭୁଙ୍କୁ ଆଦିଜନ୍ମ ଏ ନୃସିଂହବତାର ।
ତାହାଙ୍କ ମହିମା ତୁମ୍ଭେ ପାରିବକି ଜାଣି
ସବୁଟି ନୃସିଂହମୟ ହେବେ ଚକ୍ରପାଣି ।
ନୃସିଂହଗଣ ନୃସିଂହ ପଛଭାଗେ ଛନ୍ତି
ଶ୍ରୀଆଜ୍ଞା ଫିଟିଲେଦେବେ ଦୈତ୍ୟଙ୍କୁ ସେମନ୍ତି
ମୁର ଭାଇକୁ ମାରିବେ ପ୍ରଭୁ ଶେଷଦେବ
ଏକଥା ଆଗରୁ ସଞ୍ଚ ଅଛଇ ଦଇବ ।
ଆବର ସୁଜାଣ ମନ୍ତ୍ରୀ କର୍ଣ୍ଣାଟେଶ ରାଜା
କ୍ଷଣକେ ଜିଣି ପାରନ୍ତି ସ୍ୱର୍ଗର ବିଡ଼ୋଜା ।
ଦେଖିଣ ଗରୁଡ଼ ରହିଅଛି ପଟୁଆରୀ
କ୍ଷଣକେ ଘୋଟିବ ମନ କଲେ ତିନିପୁରୀ ।
ଏରୂପେ ବୋଧ କହନ୍ତେ ତାଙ୍କୁ ଲୋକଈଶ
ଶୁଣିଣ ସେ ଦିଗପାଳେ ହେଲେ ମନେତୋଷ
ଏଥି ଉତ୍ତାରେ ଯେ ବାଣୀ ଶୁଣ ହେ ନାରଦ
ଦୈତ୍ୟଙ୍କର ଦୁଷ୍ଟବୁଦ୍ଧି ଦେଖିଣ ଗୋବିନ୍ଦ
ନୃସିଂହଗଣଙ୍କ ଆଜ୍ଞାଦେଲେ ତତପର
ବୋଇଲେ ଏଥର ତୁମ୍ଭେ ଅସୁରଙ୍କୁ ମାର
ଶୁଣିଣ ଧାଇଁଲେ ଆଜ୍ଞା ପାଇ ହରିଗଣ
ସମସ୍ତେ ଧରି ଅକ୍ଷୟ ପାଶୁପତ ବାଣ ।
ଅକ୍ଷୟ ତୂଣୀର ଆଦି ଖଡ୍ଗ କୁନ୍ତ ଯଷ୍ଟି
ଭୈରବ ନୃସିଂହଗଣ ପଞ୍ଚଦଶ କୋଟି ।
ଚରଣ ଏକପାଦ ଯେ ଦଶ ଦଶ ଭୁଜ
ତିନି ତିନ ନେତ୍ର ଜିହ୍ୱା ଯେ ଅମୃତ ତେଜ ।
ଶରୀର ପ୍ରକାଶେ ଶୁକ୍ଳାମ୍ବର ଦେହକାନ୍ତି
ପିନାକ ନାରାଚ ପାଶୁପାତବଜ୍ରଶକ୍ତି ।
ଉଗ୍ର ନୃସିଂହ ଯେ ଦଶଲକ୍ଷ ଚଳିଗଲେ
କୌମୁଦକୀ ଗଦା ଚକ୍ର ସର୍ବେ ଧରିଥିଲେ ।
ଶରୀରେ ବିରାଜେ ଦିବ୍ୟ ଶଙ୍ଖ ଚକ୍ର ଚିହ୍ନ
ଶ୍ରୀବଇଜୟନ୍ତୀ ମାଳା ହୃଦେ ଲମ୍ବମାନ ।

ସୁନ୍ଦର ପୀତବସନ ବିରାଜେ ସର୍ବାଙ୍ଗେ
ପରଶୁ ମୁଦ୍‌ଗର ଧରି ଉଭା ହେଲେ ଆଗେ
ଶ୍ରୀବୀର ନୃସିଂହଗଣ ଜାଣ ବୃନ୍ଦ ଦଶ
କଟିରେ ଯେ ପିନ୍ଧିଛନ୍ତି ନୂଆ ପୀତବାସ ।
ନାନାବିଧ ଶସ୍ତ୍ରମାନ ଅଛନ୍ତି ଯେ ଧରି
ଯୁଦ୍ଧକୁ ସେ ଗଲେ ଘୋର ଗରଜନ କରି ।
କାଳାନଳ ନୃସିଂହ ଯେ ଜାଣ ବାରଖର୍ବ
ବଡ଼ବାଗ୍ନି ପ୍ରାୟ ବୁଲାଇ ସେ ଜିହ୍ୱାସର୍ବ ।
ଭୀଷଣ ନୃସିଂହ ଜନମିଲେ ସାତକୋଟି
ଖଡ଼ଗ ଗଦା ଗୁରୁଜ କରେ କୁନ୍ତ ଯଷ୍ଟି ।
ଶ୍ରୀଭଦ୍ର ନୃସିଂହଗଣ ଜାତ କୋଟିଲକ୍ଷ
ଶ୍ରୀନୃସିଂହ ମୂର୍ତ୍ତିମନ୍ତ ଜନ୍ମିଲେ ଅସଂଖ୍ୟ ।
ଆହେ ବୁଧଜନେ ଏହି ଅଗାଧ ସାଗର
ମୁହିଁ ତାହା ଲେଖିବାକୁ କେତେକ ମାତର
ଗଣିଲେକି ଗଙ୍ଗାବାଲି କାଳେ ଯିବ ସରି
ନୃସିଂହଗଣ ଲେଖିବ କେହୁ ସଂଖ୍ୟାକରି
ବିପ୍ରକୁଳେ ଜନ୍ମ ମୋତେ କଲ ନିରାକାର
ପୁରାଣେ ଗଲା ମୋ ଦିନ ଚୌରାଶୀ ବସ୍ଥର
ଦେହ ବହିଲାଠାରୁ ମୁଁ କରେ ବିଷ୍ଣୁ ପୂଜା
ସାହୁର ଖାତକି ନୁହେଁ ରାଜାର ମୁଁ ପ୍ରଜା
ହରିବାଣୀ ବ୍ୟତୀତ ନ ଜାଣେ ଆନ ମୁହିଁ
ଜ୍ଞାନ ଅମୃତକୁ ଭୁଞ୍ଜି ଗୃହେ ବସିଥାଇ ।
ହରିଙ୍କୁ ମୁଁ ଦୃଷ୍ଟି ଅଗ୍ରେ ଦେଖେ ଅନୁକ୍ଷଣେ
ଦେଖନ୍ତି ସକଳେ ତାଙ୍କୁ ଚିହ୍ନେ ନାହିଁ ଜଣେ
ଯେବଣଠାରେ ଉପାୟ ହୋଇଛି ଏ ସୃଷ୍ଟି
ଗଲାବେଳେ ସେହିଠାରେ ରହଇ ପାଲଟି ।
ତହିଁ ଉତ୍ତାରୁ ହୁଅଇ ହରି ଆତଯାତ
ଯେ ଯେତେଯୋଗ୍ୟ ତାହାକୁ ସେସ୍ଥାନପ୍ରାପତ
ଭଲକୁ ଭଲସ୍ଥାନ ମନ୍ଦକୁ କୁସ୍ଥାନ
ଏହିକଥା ଗୋଟି ଧ୍ରୁବ ଗୋବିନ୍ଦ ଲେଖନ
ଗୋବିନ୍ଦ ଆଜ୍ଞାରୁ ମୁହିଁ ଲେଖଇ ତ ସାର
ଅପଣ୍ଡିତ ଲୋକର ଏ ନୁହଇ ଚାତର ।
ନ ଧରିବ ସୁଜ୍ଞଜନମାନେ ମୋର ଦୋଷ
ଶ୍ରୀନୃସିଂହ ଆଶ୍ରିତ ମୁଁ ପୀତାମ୍ବର ଦାଶ ।
ଶୁଣ ହେ ନାରଦ କହୁଛନ୍ତି ବେଦ ବ୍ରହ୍ମା
କେହୁ ଲେଖି କହିପାରେ ନୃସିଂହ ମହିମା ।
ରହିଲେ ଆନନ୍ଦ ବନଯାକ ସବୁ ପୂରି
ଶ୍ରୀଅଙ୍ଗୁ ପ୍ରକାଶି ଦିଶିଲେକ ରୂପ ଧରି ।
ଯେତେଦୈତ୍ୟ ନୃସିଂହମୂରତି ତ ହେଲେ
ଶ୍ୱେତ କୃଷ୍ଣବର୍ଣ୍ଣ ଧରି ଦେହ ପ୍ରକାଶିଲେ ।

କେଶର ଫୁଲାଇ କରି ଜିହ୍ୱା ଲହ ଲହ
ପ୍ରଭୁଙ୍କୁ ବୋଇଲେ ଆମ୍ଭେ କି କରିବୁ କହ
ଶ୍ରୀନୃସିଂହ ଆଜ୍ଞାକଲେ ଶୁଣ ବୀରମାନେ
ମାର ଏହି ଅସୁରଙ୍କୁ ପଶି ରଣସ୍ଥାନେ ।
ଦାରୁଣ ଦୈତ୍ୟକୁ ଛାଡ଼ି ଆଉ ସବୁ ମାର
ଶେଷଦେବଙ୍କର ହାତେ ମରିବ ସେ ବୀର ।
ଏ ଦାରୁଣ ଅନ୍ତେ ଆମ୍ଭେ ମୂରକୁ ଯେ ଜାଣ
ସମର କରିଣ ନିଶ୍ଚେଁ ଘେନିବୁ ତା ପ୍ରାଣ ।
ମୁରକୁ ମାରିଣ ଆମ୍ଭେ ମୁରାରି ଯେ ହେବୁଁ
ଯୁଗକୁ ଯୁଗ ଯେ ତୁମ୍ଭେ ଜନ୍ମିବ ମୋ ଗର୍ଭ
ଏହି ଅବତାରେ ହୋଇ ଶ୍ରୀନୃସିଂହଗଣ
ଆଉ ଅବତାରେ ମଧ୍ୟ କହିବା ହେ ଶୁଣ ।
ଏହି ମୁରାସୁର ମଲେ ହିରଣ୍ୟ ହୋଇବ
ତାହାର ବୀର୍ଯ୍ୟରୁ ପୁଣି ପ୍ରହ୍ଲାଦ ଜନ୍ମିବ ।
ଜନ୍ମ ହେଲାକ୍ଷଣି ଭଜିବ ଯେ ଭଗବାନ
ତାହାଶୁଣି ମନେ ଶଙ୍କା କରିବ ହିରଣ୍ୟ ।
ବୋଲିବ ଏ କୁଳାଙ୍ଗାର ଜନ୍ମିଲା କାହିଁକି
ଜନ୍ମ ହୋଇ ଭଜିଲା ଏ ମୋର ବଇରୀକି ।
ଆଜ ପଢ଼ାଇବି ଶିବପୁରାଣ ମୁଁ ଆଣି
ନ ପଢ଼ିଲେ କୁମରକୁ ପକାଇବି ହାଣି ।
ଏତେ ବୋଲି ପୁତ୍ରକୁ ଯେ ବସି କୋଳକରି
ବୋଲିବରେ ଭଜ ବାପ ଶଙ୍କର ଗଉରୀ ।
ହରିଙ୍କୁ ଭଜିଲେ ତୁହି ଅଳ୍ପେ ମରିଯିବୁ
ହରିଙ୍କୁଭଜିଲେ ବାପ ଅମର ହୋଇବୁ ।
ଅମର ଯେବେ ତୁ ହେବୁ ଭୁଞ୍ଜିବୁ ଯେ ଶିରୀ
ପୃଥ୍ୱୀଯାକେ କରିବି ମୁଁ ତୋତେ ଦଣ୍ଡଧାରୀ
ନୃପତି ହୋଇ ବସିବୁ ମୋର ସିଂହାସନେ
ଏ ସୁଖ ତେଜି ଭଜୁଛୁ କିମ୍ପା ହରି ମନେ ।
ଶୁଣିଣ ସେ ପ୍ରହଲାଦ ମନେ ହୋଇ ଭୋଳ
ବୋଲିବ ଶୁଣ ହେ ତାତ କଶ୍ୟପର ବାଳ
ତୁହି ତ ବୁଝିଲେ ମୋର ପିଣ୍ଡର କାରେଣି
ହରି ବ୍ରହ୍ମାଣ୍ଡ କରତା ମୋକ୍ଷଦାତା ପୁଣି ।
ହରିଙ୍କୁ ଭଜିଣ ହର ଛନ୍ତି ଆଶ୍ରେକରି
ଭଜନ୍ତି ସେ ଅନୁକ୍ଷଣେ ସୁଖ ଅନୁସରି ।
ଶ୍ରୀହରି ପାଦକୁ ନାହାନ୍ତି ଯେ ଭେଟପାଇ
ଗଲାଣି ଲକ୍ଷେକ ଯୁଗ ମୁଣ୍ଡେ ଜଟା ବହି ।
ମୁହିଁ ଜନ୍ମ ହେଲାଦିନୁ ଅବିଦ୍ୟା ନ କରି
ଭଜଇ ମୁଁ ଅନୁବ୍ରତେ ରାମକୃଷ୍ଣ ହରି ।
ହରିନାମ ରସ ଲାଗେ ମୋତେ କେଡ଼େ ସ୍ୱାଦ
ମିଶିଣ ଦୁହେଁ ଚୁମ୍ବିବା ଆସ ମକରନ୍ଦ ।
ଭୁଞ୍ଜିବୁ ସେ ମକରନ୍ଦ ରସ ଯେହ୍ନେ ଚିହ୍ନି
ସବୁ ଆତ୍ମା ଏତ ଜାଣି ଭବେ ହେବା ମୁନି ।
ଅଛନ୍ତି ସବୁରି ଦୁଷ୍ଟ ଅଗ୍ରେ ପ୍ରଭୁ ରହି
ଏ ସଂସାର କାହାରିକୁ ଏହା ଜଣା ନାହିଁ ।
ଆହେତାତ ଦେଖ ଦେଖ ତୁମ୍ଭ ଆମ୍ଭ ମଧ୍ୟେ
ବିଜେ କରିଛନ୍ତି ପ୍ରଭୁ ଶୁକ୍ଳାମ୍ବର ହୃଦେ ।
କ୍ଷଣକେ ତୁମ୍ଭେ ବସନ୍ତ ହେବେ ହେତୁଦେଇ
ଦେଖ ହେ ତୁମ୍ଭର ହୃଦେ ବିରାଜନ୍ତି ସେହି ।
ହିରଣ୍ୟ ବୋଲଇ ବଳା ବୋଇଲୁ କୁ କିସ
ଶୁଣି ତୋର କଥା ମୋତେ ଲାଗୁଅଛି ବିଷ
କେବଣ ପ୍ରଭୁ ରଖିବେ ଦେଖି ତୋତେ ଆଜ
ଏରୂପେ ବୋଲି ଗର୍ଜିଣ ଉଠିବ ଦନୁଜ ।
ଚକ୍ଷୁ ତରାଟି ଧାଇଁବ କୋପେ ଶିରଝୁଣି
ବୋଲିବେ କାହିଁରେତୋର ଦେଖା ଚକ୍ରପାଣି
ନୋହିଲେ ଶିର ତୋହର ଛେଦିବି ଏକ୍ଷଣ
ଏରୂପେ ବୋଲି ଗର୍ଜିଣ ଉଠିବ ହିରଣ୍ୟ ।
ଫିଙ୍ଗିବ ପ୍ରହ୍ଲାଦ କେଶ ଧରି ଅନ୍ତରାଳେ
ବାତଚକ୍ରେ ବୁଲିଆସି ବସିବ ସେ ତଳେ ।
ହସି ପିତାଙ୍କୁ କହିବ ଚାହିଁ କରଯୋଡ଼ି
ବୋଲିବ ନ ବୋଲ ତୁମ୍ଭେ ଶ୍ରୀହରିଙ୍କୁ ଛାଡ଼ି
ଅଟନ୍ତି ସବୁରି ମୋକ୍ଷଦାତା ଜଗନ୍ନାଥ
ଶତ୍ରୁଙ୍କୁ ହେଲେହେଁ ଆଗ ଦ୍ୟନ୍ତି ମୋକ୍ଷପଥ
ତୁମ୍ଭେଯେବୋଲଦେଖାଅମୋତେଯେବେହରି
ଦୁଷ୍ଟ ଆଗରେ ମୋହର ଛନ୍ତି ବିଜେ କରି ।
କୀଟୁଁ ବ୍ରହ୍ମଯାଏ ପ୍ରଭୁ ଅଛନ୍ତି ଯେ ରହି
ତୋର ଆଉଜା ସ୍ତମ୍ଭରେ ଛନ୍ତି ଭାବଗ୍ରାହୀ
ଶୁଣି ହିରଣ୍ୟ ଅସୁର ଉଠିବ ତତ୍କାଳେ
ସ୍ତମ୍ଭରେ ମାରିବ ପାଦ ନେଇ କୋପାନଳେ
ପାଦ ବାଜନ୍ତେ ନୃସିଂହ ପ୍ରଭୁ ଭାବଗ୍ରାହୀ
ସ୍ତମ୍ଭୁ ଅବତରି ଦୈତ୍ୟକୁ ଯେ ଦେଖାଦେଇ
ସହସ୍ର ବରଷଯାଏ ଘୋର ଯୁଦ୍ଧକରି
ତୁମ୍ଭେ ଯେ ନୃସିଂହଗଣ ଥିବ ହୃଦେ ପୂରି ।
କର ଅଙ୍ଗୁଳିଯାକ ମୋ ଦେହ ନଖଦାଢ଼ି
ସୂର୍ଯ୍ୟର କିରଣ ପ୍ରାୟ ପ୍ରକାଶିତ ବେଢ଼ି ।
ମହାତୀକ୍ଷ୍ଣ ଦାଢ଼ି ଦେହ ନଖଯାକ ମୋର
ବିଦାରିଲେ ଯିବ ସେହି ବଇକୁଣ୍ଠପୁର ।
ଆମ୍ଭେ ନୃସିଂହ ଏକା ତା ସ୍ତମ୍ଭୁ ବାହାରିବୁଁ
ନୃସିଂହ ନାମ ବହିଣ ହିରଣ୍ୟ ମାରିବୁ ।
ନୃସିଂହ ନ ଥିଲେସ୍ତମ୍ଭୁ କେହ୍ନେହୋନ୍ତାଜାତ
ଶୁଣିଣ ନୃସିଂହଗଣେ କହନ୍ତି ଶ୍ରୀକାନ୍ତ ।

ଆବର ଯେ ଅବତାର କହିବା ତା ଶୁଣ
ଲେଉଟି ହିରଣ୍ୟ ଯାଇଁ ହୋଇବ ରାବଣ ।
ଆମ୍ଭେଯେ ନୃସିଂହ ଏକା ତ୍ରେତାଯୁଗେ ଯାଇ
ହୋଇବୁ ଯେ ଅବତାର ରାମ ଚାରିଭାଇ ।
ରାମ ଲକ୍ଷ୍ମଣ ଭରତ ଶତ୍ରୁଘ୍ନ ହୋଇବୁ
ଦଶରଥଙ୍କର ଘରେ ଯାଇ ଜନମିବୁ ।
ରାବଣ ଯେ ହରିନେବ ଜନକର ଝିଅ
ତୁମ୍ଭେ ଯେ ନୃସିଂହଗଣ ଏହା ଶୁଣିଥାଅ ।
ତହିଁର ନିମନ୍ତେ ଆମ୍ଭେ ପ୍ରବେଶିବୁ ଲଙ୍କା ।
ତୁମ୍ଭେମାନେ କପିବଳ ହେବ ଯାଇ ଏକା ।
ତୁମ୍ଭର ସାହା ପାଇଣ ମାରିବୁ ରାବଣ
ଆବର ଯେ ଅବତାର କହିବା ତା ଶୁଣ ।
ଦ୍ୱାପର ଯୁଗରେ ଯାଇ କୃଷ୍ଣ ଅବତାରେ
ବଢ଼ିବୁ ଜନମ ହୋଇ ନନ୍ଦରାଜା ଘରେ ।
କୃଷ୍ଣ ଅବତାର ଆମ୍ଭେ ଯାଇ ଏକା ହେବୁ
ମଥୁରା ଯାଇଣ କଂସରାଜା ସଂହାରିବୁ ।
ଦ୍ୱାରକାରେ ରହି ମାରିବୁ ଯେ ଶିଶୁପାଳ
ତୁମ୍ଭେଟି ନୃସିଂହଗଣ ହେବ ଯଦୁବଳ ।
ଏହି ଅବତାର ଅନ୍ତେ ବୈକୁଣ୍ଠକୁ ଯିବ
ଶୁଣନ୍ତି ନୃସିଂହଗଣେ କହନ୍ତି ଯେ ଦେବ ।
ଅସୁର ରୂପେ ଜନ୍ମିବ ମୁର ତିନିଥର
ଶିଶୁପାଳ ହେବ ପୁଣି ଆଉ ଜନ୍ମେ ତାର ।
ମାନବ ଜନମ ବହି ମରି ଆମ୍ଭ ହାତେ
ଏରୂପେ ମୋକ୍ଷ ହୋଇବ ଚାରିଜନ୍ମ ଅନ୍ତେ
ଏବେ ହେ ନୃସିଂହଗଣ ତୁମ୍ଭେ ବେଗେଯାଅ
ଦୈତ୍ୟଗଣଙ୍କୁ ମାରିଣ ଆରୋଗ୍ୟରେ ଥାଅ
ଶୁଣି ହରିଗଣ ଧାଇଁଗଲେ ଆଜ୍ଞାପାଇ
ଦୈତ୍ୟଙ୍କୁ ଦିଶିଲେ ଦ୍ୱିଗୁଣରେ ରଣଭୂଇଁ
ନୃସିଂହ ପ୍ରଭୁଙ୍କୁ ସିନା ବେଢ଼ିଥିଲେଦୈତ୍ୟେ
ପାଞ୍ଚଲେ କାହୁଁ ଆସିଲେ ମାଡ଼ି ବିପ୍ର ଏତେ
ଲେଖନ୍ତେ ତ ଲକ୍ଷକୋଟି ହେବେ ବିପ୍ରଗଣ
ଏତେ ପାଞ୍ଚି ଗଦା ପିଟିଲେକ ନିର୍ଘାତେଣ ।
ଦେଖିଣ ଉଗ୍ର ନୃସିଂହ ପାତିଲେକ ମୁଣ୍ଡ
ପଡ଼ିଣ ସେ ଗଦାମାନ ହୋଇଗଲେ ଗୁଣ୍ଡ ।
ହରି ଆଜ୍ଞା କଲେ ଶୁଣ ହେ ଉଗ୍ରନୃସିଂହ
ମହାଜ୍ୱାଳା ଥାଟ ସୈନ୍ୟମାର ତୁମ୍ଭେ ବେଗ
ବୀର ନରସିଂହକୁ ଯେ ଚାହିଁ ପୁଣହରି
ଶସ୍ତ୍ର ଶିଳା ସଇନ୍ୟକୁ ମୋର ଯୁଦ୍ଧକରି ।
ଚାହିଁଲେ ଭୀଷକଣ ନୃସିଂହକୁ ଚକ୍ରଧର
ଅର୍ଘାସୁର ଥାଟଯାକ ବେଗେ ତୁମ୍ଭେ ମାର
ଜନ ନୃସିଂହକୁ କହିଲେ ଯେ ଭାବଗ୍ରାହୀ
ଶଙ୍ଖାସୁର ସୈନ୍ୟକୁ ତୁ ମାର ବେଗେ ଯାଇ
ଭଦ୍ର ନରସିଂହକୁ ଶ୍ରୀହରି ଆଜ୍ଞାଦେଲେ
ଧେନୁକାସୁର ସୈନ୍ୟକୁ ସଂହାର ବୋଇଲେ
ମୂର୍ତ୍ତିମନ୍ତ ନୃସିଂହକୁ ବୋଲେ ଲକ୍ଷ୍ମୀବର
ଏ ପଦ୍ମାସୁର ସୈନ୍ୟଙ୍କୁ ବହନ ଯେ ମାର
ଆମ୍ଭେ ହେଲେହେଁ ଦିଅନ୍ତୁ ଚକ୍ରେ ପୁଣିହାଣି
କୌତୁକ ପାଇ ତୁମ୍ଭଙ୍କୁ ପ୍ରକାଶିଲୁ ଆଣି ।
ଶୁଣିଣ ନୃସିଂହଗଣ ପେଷି ବଜ୍ରଶର
ଦୈତ୍ୟଙ୍କ ଅଙ୍ଗରେ ପଡ଼ି ହେଲା ଶତେ ଚୂର
ଶ୍ରୀନୃସିଂହଗଣ ଯେତେ ସର୍ବେ ମହାବଳୀ
ଦୈତ୍ୟଙ୍କ ନାରାଚ ଅଙ୍ଗେ ପଡ଼ି ହୁଏ ଧୂଳି
ନୃସିଂହଗଣ ବିସ୍ତାରି କାୟା ଶତେଯୁଣ
ମାଇଲେକ ବିଧାନେଇ ଦୈତ୍ୟ ଉପରେଣ
କେହି ପେଟ ଫୁଲାଇଣ କାଢ଼ି ଅନ୍ତମାଳା
ଧଇଲା ସୈନ୍ୟ ମରୁଡ଼ି ଦେଖି ମହାର୍ଗଳା ।
ତାହା ତୁଲେ ଧଣ୍ଡଗିଲା ଶସ୍ତ୍ରଗିଳା ଉଠି
ପିଟିଲେ ଉଗ୍ରନୃସିଂହଠାରେ ନେଇ ଯଷ୍ଟି
ପଡ଼ନ୍ତେ ସେ ଯଷ୍ଟି ଭାଜି ହେଲା ଶତେଖଣ୍ଡ
ଧାମନ୍ତି ସେ ଶୂନ୍ୟହସ୍ତେ ଟେକି ଭୁଜଦଣ୍ଡ ।
ଅସୁରେ ଗଦା ଧରିଣ ପିଟିଲେକ ନେଇ
ଭାଜିଣ ସେ ଗଦାମାନ ଗଲେ ଚୂର୍ଣ୍ଣହୋଇ ।
ଦେଖି ଦୈତ୍ୟଙ୍କୁ ଆଉ ନସ୍କୁରେ ମନେ କିଛି
ତୁଣ୍ଡ ବିସ୍ତାରି ଧଇଲେ ନୃସିଂହକୁ ଭକ୍ଷି ।
ବଢ଼ାଇଣ ଭୁଜଧଣ୍ଡ ଧରି ନଖେ ଟୋଳି
ଗର୍ଭକୁ ବୋଲି ତାହାକୁଦେଲା ଦୈତ୍ୟଗିଳି
ଦେବତାମାନେ ଶୂନ୍ୟରେ ତାହା ଦେଖୁଥିଲେ
ଆତଙ୍କ ହୋଇ ଅନେକ ସ୍ତୁତିପାଠ କଲେ
ବୋଇଲେ ପ୍ରଭୁ ସଂସାର ତୋର ଏବେ ରଖ
ଉଗ୍ରନୃସିଂହଙ୍କୁ ଗିଳିଦେଲା ଦୈତ୍ୟ ମୂର୍ଖ ।
ଦୈତ୍ୟଙ୍କ ପାଇଁ ତୁମ୍ଭେ ଯେ କଲ ପ୍ରଭୁ ଜାତ
ତୁମ୍ଭଙ୍କୁ ଗିଳିଲେ ପୃଥ୍ୱୀ ହେବ ରସାଗତ ।
ଆଉ କି ରହିବୁ ଦେବଗଣ ସ୍ୱର୍ଗପୁରେ
ଏଥକୁ ଭୋ ନୃସିଂହ ଯେ କୃପାକର ବାରେ
ଭୋଦେବ ଉଗ୍ରନୃସିଂହ ଅଟେ ବିଷ୍ଣୁମାଳା
ପୃଥ୍ୱୀହନ୍ତକ ଅଟଇ ଏହି ମହୀଗିଳା ।
ଆବର ସହସ୍ର ଗିଳା ଧଣ୍ଡଗିଳା ବେନି
ଗର୍ଭ ଚିରିଲେ ମରିବେ ଏହୁ ଦୈତ୍ୟ ତିନି
ଭୋଦେବ ଉଗ୍ର ନୃସିଂହ କୃପାକର ବାରେ
ପୀତାମ୍ୱର ଶରଣ ଯେ ପଶେ ନିରନ୍ତରେ

ଏ ରୂପେ ଦେବତାମାନେ କରନ୍ତି ଯେ ସ୍ତୁତି
ଗର୍ଭେ ଧଇଲେ ନୃସିଂହଗଣ ଘୋରମୂର୍ତ୍ତି ।
ଦୈତ୍ୟଙ୍କ ଗର୍ଭ ଚିରିଣ ହୋଇଲେ ବାହାର
ପ୍ରାଣ ଛାଡ଼ି ଦୈତ୍ୟଗଣ ଗଲେ ଯମପୁର ।
ଦେଖିଣ ଦେବତାମାନେ କଲେ ଜୟେଜୟେ
ବର୍ଷିଲେ କୁସୁମମାନେ ନୃସିଂହଙ୍କ ଦେହେ
ଏଥିଉତ୍ତାରେ ଯେ ବାଣୀ ନାରଦ ହୋ ଶୁଣ
କହିବା ଦାରୁଣ ସେନାମାନଙ୍କର ଗୁଣ ।
କୁମଣ୍ଡ ପ୍ରଚଣ୍ଡ ଚଣ୍ଡ ଆଉ ବେଣାସୁର
ଆକାଶଯାଏ ଯେ ଟେକି ଅଛନ୍ତି ଯେ ଶିର
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଘୋଟିଲା ପ୍ରାୟ ଦିଶେ
ନୃସିଂହଗଣଙ୍କୁ ମାଡ଼ି ବସିଲେ ରାକ୍ଷସେ ।
ଦେଖି ବୀର ନୃସିଂହ ଯେ ଧାଏଁ କୋପକରି
ଅକ୍ଷୟ ତୂଣୀର ଧନୁ କୌମୋଦକୀ ଧରି ।
ଶକତି ଶୁଳ ମୂଷଳ ପରିଘ ଖଡ଼ଗ
ମହା ବିଶ୍ୱରୂପ ଧରି ଧାଇଁଲେ ନୃସିଂହ ।
ଦୈତ୍ୟଙ୍କଠାରୁ ଧଇଲେ ରୂପ ଶତେଗୁଣ
ପିଟିଲେ ଶୂଳେକ ନେଇ ଅସୁର ଶିରେଣ
ବାଜିଣ ପୃଥ୍ୱୀ କମ୍ପିଲା ସେହି ଶୂଳଘାତେ
ଟହ ଟହ ହୋଇ ହସି ଉଠିଲେ ଦଇତ୍ୟେ
ପିଟିଲେ ଛଡ଼ାଇ ଶୂଳ ନୃସିଂହ ଉପରେ
ନିଷ୍କମ୍ପେ ଅଛନ୍ତି ରହି ସେ ନୃସିଂହବୀରେ ।
ପଡ଼ିଣ ଅଙ୍ଗରେ ବାଜି ଶୂଳ ହେଲା ଧୂଳି
ଚାହିଁ କୋପକରିଲେ ସେ ଦୈତ୍ୟମହାବଳୀ
ଧରିଣ କରେ ଗଦାକୁ ପିଟିଲେ ସେ ଦୈତ୍ୟ
ବାଜନ୍ତେ ଗଦା ହସିଲେ ପ୍ରଭୁ ଅପ୍ରମିତ ।
ପଡ଼ିଣ ଅଙ୍ଗେ ହୋଇଲା ଗଦା ଶତେଚୂର
ପୁଣିହିଁ ଲକ୍ଷେ ନାରାଚ ବିନ୍ଧିଲେ ଅସୁର ।
ପଡ଼ନ୍ତେ ଶର କକଡ଼ା ମାସ ବୃଷ୍ଟି ଜାଣ
ନୃସିଂହ ନିଃଶ୍ୱାସେ ଉଡ଼ିଗଲେ ତତକ୍ଷଣ ।
ପୁଣିହିଁ ବିନ୍ଧନ୍ତେ ଅଗ୍ନିଶର ଦୈତ୍ୟଆଣି
ନୃସିଂହଙ୍କୁ ଦେଖି ଅଗ୍ନି ଲିଭିଲେ ସେକ୍ଷଣି
ଅଗ୍ନି ବୋଇଲେ ପ୍ରତ୍ୟକ୍ଷେ ତୁମ୍ଭେ ବିଷ୍ଣୁଅଙ୍ଗ
ତୁମ୍ଭଙ୍କୁ ସେ ନ ଚିହ୍ନନ୍ତି ଏ ଅସୁର ବର୍ଗ ।
ଏବେ ଏହି ଅସୁରଙ୍କୁ ବେଗେ ସ୍ୱାମୀ ମାର
ଏତେ କହିଣ ପ୍ରଣମିଲେ ବୈଶ୍ୱାନର ।
ଦେଖିଣ ଦଇତ୍ୟ ତାହା ଚମତ୍କାର ହେଲା
ଗୁରୁଜ କୁନ୍ତ ଯଷ୍ଟି ଯେ ପୁଣ ପ୍ରହାରିଲା ।
ଲାଙ୍ଗିଆ ଢେଲ ଶାବେଳି ଭାଲ ଛୁରୀ ଖଣ୍ଡା
ଏକାବେଳକେ ପିଟିଲାନେଇ ଦୈତ୍ୟଷଣ୍ଢା
ପରଶୁ ଚକ୍ର ନାରାଚ କାତି ଫଳି ଫଳା
ପିଟିଲେ ଯେ ଯାହା ମନ କୋପ ଅନର୍ଗଳା
ନୃସିଂହ ସ୍ୱାମୀ ଦେଖିଣ ଗଲେ ଆଡ଼ହୋଇ
ଅସୁରଙ୍କୁ ମାଡ଼ି ବସିଲେକ କୋପେ ଡେଇଁ
ଶୂନ୍ୟହସ୍ତ ହୁଅନ୍ତେ ଦୈତ୍ୟ ହେଲେ ଅଶକତ
ମାଇଲେ ଚାରିଙ୍କୁ ମାଡ଼ିବସି ବଜ୍ରମୁଥ ।
ବାଜନ୍ତେ ସେ ମୁଥ ଦୈତ୍ୟମଲେ ବୁକୁଫାଟି
ଦେଖିଣ ଧାଇଁଲେ ହରିଗଣ କୋଟି କୋଟି
'ସେ ଚାରି ସେନା ସୈନ୍ୟଙ୍କୁ ପକାଇଲେ ହାଣି
ପଡ଼ିଲେକ ମଡ଼ା କୁଢ଼ ଗିରିପ୍ରାୟ ପୁଣି ।
ସପ୍ତକ୍ରୋଶ ଯାଏ ଥିଲେ ଅସୁରର ସୈନ୍ୟ
ବେଢ଼ିଲେ ପିମ୍ପୁଡ଼ିମାଳ ପ୍ରାୟ ହରିଗଣ ।
ମଲା କଥାରେ ସେ ହେତୁନାହିଁ ଦୈତ୍ୟଙ୍କର
ମାରିବା ବୋଲନ୍ତି ମରୁ ଅଛନ୍ତି ଅସୁର ।
ବିନ୍ଧନ୍ତି ଶର କକଡ଼ା ମାସ ବୃଷ୍ଟି ଜାଣି
ଗଦା ମୁଦ୍ଗର ଢେଲ ଶରମାନ ଟାଣି ।
ପରିଘ ଭୂଷଣ୍ଡ କୁନ୍ତ ବଜ୍ରବାଣ ମାରି
ଶକତି ପରଶୁ ଖଣ୍ଡା ଚକ୍ରକୁ ପ୍ରହାରି ।
ଶାବେଳି ମୁଦ୍ଗର ମହାକାଳ ପାଶୁପତ
ବିନ୍ଧନ୍ତି ଅସୁରେ କ୍ରୋଧ ହୋଇ ନାନାଶସ୍ତ୍ର ।
ନୃସିଂହ ଗଣଙ୍କ ହୃଦୁ ଉଠେ ଅଗ୍ନି ଜଳି
ପଡ଼ିଣ ସେ ଶରମାନ ଦେହେ ହୁଅନ୍ତି ଧୂଳି ।
ଧନ୍ୟ ଧନ୍ୟ ପ୍ରଭୁ ସେହି ନୃସିଂହଙ୍କ ପୁତ୍ରେ
ନିଃଶ୍ୱାସ ଗୋଟିକେ ମାରି ପକାନ୍ତି ମର୍ତ୍ତ୍ୟେତେ
ତିନିଘଡ଼ି ଯୁଦ୍ଧ ଲାଗିଲାକ ଅପ୍ରମେୟେ
ଦେଖନ୍ତେ ମଲେସେ ଦୈତ୍ୟ କୋଟିବୃନ୍ଦଯାଏ
ସେ ସବୁ ଶବକୁ ଯୋଗିନୀମାନେ ଗଲେ ଭକ୍ଷି
ଡାକିନୀ ବେତାଳୀ ପିଶାଚୁଣୀ କାଳମୁଖୀ ।
ଏସନ ମହିମା ଏ ନୃସିଂହ ଗ୍ରନ୍ଥ ବାଣୀ
ମାନବ ଜନ୍ମକେ ଲେଖିପାରେ କେହୁପ୍ରାଣୀ
ପରମ ମହେଶ୍ୱରୀ ଯେ ଶାରଦା ସୁମୁଖୀ
ହୃଦରେ ବସି କହନ୍ତି ପଦଯାକ ଯୋଖି ।
ତାହା ମୁଁ ବୁଝି ଲେଖଇ ନେଇ ତାଳପତ୍ରେ
କୁଟୁମ୍ବ ପୋଷି ଭ୍ରମଇ ଏଣେ ଅହୋରାତ୍ରେ ।
ଅନ୍ନ ବ୍ୟାକୁଳେ ବସି ନ ପାରେ ମନସ୍ଥିରେ
ବିଷୟ ସଂସାରେ ମାତ୍ର କରେ ନିତ୍ୟାଚାରେ
ପଦାର୍ଥ ଯେ ଦାରାସୁତ ନାନା ବ୍ରତଆଦି
ଗୋବିନ୍ଦେ ସମର୍ପିସବୁ କରଇ ଭୋଗାଦି ।
ବିଷ୍ଣୁ ବ୍ୟତିରେକେ ମୁଁ ନ ଜାଣେ ଆନକିଛି
କାହାକୁ କହିଲେ ଦୁଃଖ ନେବ କି କେଯାଚି

ବିଷ୍ଣୁର ଉପରେ ବିଷ୍ଣୁଥାନ୍ତେ ଯେବେ ଜଣେ
ତେବେ ମୁଁ ଗୁହାରି କରି କହନ୍ତି ଚରଣେ ।
କୁଟୁମ୍ବ ଜଞ୍ଜାଳ ଦେହକୁ ଯେ କାଳପାଶ
ଏଡ଼େ ଜଞ୍ଜାଳ ଥାଇ କେ କହେ ଜ୍ଞାନରସ ।
ସେମାନଙ୍କୁ ଏ ସଂସାରେ ବୋଲିକୁ ପଣ୍ଡିତ
ସୁପଣ୍ଡିତ ଲୋକ ଅଟଇଟି ବିଷ୍ଣୁଭକ୍ତ ।
ମନୁଷ୍ୟ ଜନ୍ମସିନା ମୁଁ କେତେକ ମାତର
ତେଣୁ ଏହି ଗ୍ରନ୍ଥ ମୋତେ ଅଟେ ଅଗୋଚର
ସୁପଣ୍ଡିତ ମୁଖରେ ଏ ଗ୍ରନ୍ଥ ଅର୍ଥ ହୁନ୍ତେ
ଶ୍ରାବଣ ପରି ବ୍ୟାପନ୍ତା ଆକାଶ ପର୍ଯ୍ୟନ୍ତେ ।
ଯେତେକ ଦିଶିଲା ପଦ କେତେ ଗଲା ସ୍ଫୁରି
ବିଷ୍ଣୁ ମହିମା କେ ଲେଖିପାରେ ଅନ୍ତକରି ।
ମୂର୍ଖ ଆଗରେ ପଢ଼ିବ ଯେବେ ବେଦ ଆଣି
ସେ ବୋଲେ କାନ ଅତଡ଼ା ପଡୁଛି ଯେ ଶୁଣି
ସୁପଣ୍ଡିତ ଜନ ମୁଖୁ ଶୁଣି ଏ ପୁରାଣ
ତେଣୁକରି ଗ୍ରନ୍ଥ ମୁହିଁ କଲି ଉଚ୍ଚାରଣ ।
ଯାର ଲୋମକୂପୁଁ ଜନ୍ମେ ବ୍ରହ୍ମାଣ୍ଡହିଁ ନିତ୍ୟେ
ସେ ମନ କଲେ ନୃସିଂହଗଣ ଅବା କେତେ
ଜନ୍ମିଲେ ଉଗ୍ର ନୃସିଂହଗଣ ଦଶଲକ୍ଷ
ଏକାବର୍ଣ୍ଣରେ ସ୍ୱରୂପ ଦିଶନ୍ତି ପ୍ରତ୍ୟକ୍ଷ ।
ଜନ୍ମିଲେ ମହାନୃସିଂହଗଣ ଦଶକୋଟି
ଜନ୍ମିଲେ ମହା ନୃସିଂହଗଣ ମେବଚ୍ଛଟି ।
ଜ୍ୱଳନ୍ତ ନୃସିଂହଗଣ ଜନ୍ମିଲେ ଅଯୁତେ
ସର୍ବତ୍ର ନୃସିଂହଗଣ ଜନ୍ମିଲେ ମର୍ଭୁତେ ।
ମୂର୍ତ୍ତିମନ୍ତ ନୃସିଂହ ଯେ ଜାତ ଖର୍ବ ଖର୍ବ
ମୁହିଁ ତାହା ଲେଖିବାକୁ ଅଟଇ କି ଯୋଗ୍ୟ
ଶ୍ରୀନୃସିଂହ ଅଙ୍ଗୁଜାତ ହୁନ୍ତି ଯେତେ ରୂପ
ମୁଁ ତାହା କିସ ଲେଖିବି କରିଣ ସଂକ୍ଷେପ ।
କରିବା କରୁଣା ମୋତେ କମଳା ବିଳାସ
ଶ୍ରୀନୃସିଂହ ଶରଣ ମୁଁ ପୀତାମ୍ବର ଦାସ ।



## ଦାରୁଣ ଦୈତ୍ୟର ଯୁଦ୍ଧ

ଏଥୁଅନନ୍ତରେ ଦାରୁଣର କଥା ଶୁଣ
ଚତୁର୍ଥ ସାଗର ଏହି ନୃସିଂହ ପୁରାଣ
ବଦୟନ୍ତି ବେଦବ୍ରହ୍ମା ଶୁଣ ହେ ନାରଦ
ଉଠିଲା ଦାରୁଣ ଦୈତ୍ୟ କରିବାକୁ ଯୁଦ୍ଧ ।
ସୈନ୍ୟଙ୍କୁ ବୋଇଲା ଚାହିଁଅଛ କେଉଁଲାଜେ
ଦେଖୁ ଦେଖୁ ସାତସେନା ନେଲେ ଯମରାଜେ
ବ୍ରାହ୍ମଣଙ୍କ ହସ୍ତେ କେଉଁ ଧନୁ ଶସ୍ତ୍ର ଅଛି
ଦେଖିଲାକ୍ଷଣି ତାଙ୍କୁରେ ପଳାଉଛ ଘୁଞ୍ଚି ।

ମୁଁ ହେଲେ ବିପ୍ରଯାକଙ୍କୁ ମଣୁଛୁ ଏମନ୍ତ
ଗଣ୍ଡମାଳା ପୋକ ପ୍ରାୟେ ହୁଅନ୍ତି ସେ ଜାତ
ତୁମ୍ଭେହେଲେ ଶବତାଙ୍କୁ ସେହେଲେ ଶାଗୁଣା
ଏରୂପେ ହେଲେ,ଲାଗୁଛି ମୋତେ ବୁଝାମଣା
ଶୁବ ସୁଚ ଯାଙ୍କ ହସ୍ତୁ ନିଅନ୍ତି ଛଡ଼ାଇ
ପିଟନ୍ତି ମୁଁ ମୁଣ୍ଡ ଫାଟିଯାନ୍ତେ ଶବ ହୋଇ ।
ଏରୂପେ ଦେଲି ବିସ୍ତାରି ଦୈତ୍ୟ ବେନିବାହୁ
ଚନ୍ଦ୍ରଙ୍କୁ ଧାଇଁ ଘୋଟଇ ଯେସନେକ ରାହୁ ।
ସେ ରୂପେ ଯୋଜନଯାଏ ବଢ଼ାଇଲା କର
ବତାସ ପରାୟ ଛାଡ଼େ ନିଃଶ୍ୱାସ ପ୍ରଖର ।
ଥୋକାଏ ନୃସିଂହଗଣ ଧଇଲା ଦରାଣ୍ଡି
ଗର୍ଭକୁ ବୋଲିଣ ଗିଳିଦେଲା ମୁଣ୍ଡଗଣ୍ଡି ।
କିଞ୍ଚିତ ପ୍ରାୟକ ମଣି ଧରି ଦୈତ୍ୟରାଢ଼ି
ବୋଇଲା ଭସ୍ମ ହୁଅନ୍ତି ଗର୍ଭେ ମୋର ପଡ଼ି
ଏମନ୍ତ ପାଞ୍ଚିଣ ଦୈତ୍ୟ ଧଇଲା ନିରାଟେ
ଲକ୍ଷେ କୋଟି ମର୍ଭୁତେ ଗିଳିଲା ମୁଖବାଟେ
ଶୁଣ ନାରଦ ନୃସିଂହ ଗଣଙ୍କର ମାୟା
ଅକ୍ଷୟ ଅଜରାମୟ ଧରିଛନ୍ତି କାୟା ।
ଅସୁର ଥିଲା ପାଞ୍ଚିଣ ଭସ୍ମ ହେବେ ବୋଲି
ଅସୁର ନାସାବାଟରେ ବାହାରିଲେ ପେଲି ।
ଲେଉଟି ଅସୁରେ ତାଙ୍କୁ ପୁଣି ଦିଏ ଗିଳି
ସେ ବାଟେ ବାହାରି ସର୍ବେ ଆସନ୍ତି ସେଚାଲି
ଦେଖିଣ ଦଇତ୍ୟ ତାହା ହୁଏ ଆଚମ୍ବିତ
ବୋଇଲା ବ୍ରାହ୍ମଣ ଏହୁ ନୁହଇ ପ୍ରକୃତ ।
ଏହାଙ୍କୁ ମାରି ଅର୍ଜିବ କିସ ଯଶ ଶିରୀ
ବୁଝିଲେ ନୃସିଂହ ସିନା ଆମ୍ଭର ବଇରୀ ।
ତାହାଙ୍କୁ ଖୋଜି ମାରିବି ଆଗ ଯାଇ ମୁହିଁ
ମାରିବି ବଦ୍ରିକା ଗଡ଼େ ପଶି ବେନିଭାଇ ।
ଏରୂପେ ପାଞ୍ଚି ଦଇତ୍ୟ ଡାକିଲା ସେନାଙ୍କୁ
ବୋଇଲାରେ ଏଥିଲାଗି ମାର ବ୍ରାହ୍ମଣଙ୍କୁ ।
ଯେ ରୂପେ ଯାଇ ଯାହାଙ୍କୁ ମାରବେଗେଯୁଝି
ବଲ୍ଲଭ ପୁତ୍ରଙ୍କୁ ଏବେ ଯାଉଛି ମୁଁ ଖୋଜି
ନାହାନ୍ତି ବ୍ରାହ୍ମଣଗଣ ମଧ୍ୟେ ବେନିଭାଇ
ମୋତେ ସେ ଦେଖିଣ ଡରିଗଲେଣି ପଳାଇ
ଶୁଣି ସେନାପତିମାନେ ହେଲେ ଆଗୁସାର
ସୈନ୍ୟମାନଙ୍କୁ ବୋଇଲେ ବ୍ରାହ୍ମଣଙ୍କୁ ମାର
ଏରୂପେ କହି ଉଠିଲେ ଦୈତ୍ୟ ଶିରଝୁଣି
ଯେ ରୂପେ ହାନ୍ଦୋଳି ହୁଏ ସାଗରର ପାଣି
ଶ୍ରୀନୃସିଂହଗଣ ତୁଲେ ଲାଗିଲା ସମର
ଏଥି ଉତ୍ତାରେ ଯେ କଥା ଶୁଣ ଦାରୁଣର ।

କପଟ ରୂପ ଧରିଣ ଗଲା ବଦ୍ରିଦେଶ
ମାୟା ଜଟିଳ ରୂପରେ ହୋଇଲା ସନ୍ନ୍ୟାସ
ତମ୍ବାର ବର୍ଣ୍ଣ ପରାୟେ ଶରୀର ପ୍ରକାଶି
ପିଙ୍ଗଳ ବର୍ଣ୍ଣ ପରାୟେ ଦେହ ଲୋମ ଦିଶି ।
ନୟନ ବେନି ଦିଶଇ ସୂର୍ଯ୍ୟତେଜ ପ୍ରାୟେ
କଣ୍ଠରେ ରୁଦ୍ରାକ୍ଷମାଳା ବିଭୂତି ଯେ କାୟେ
ଶିରେ ଜଟାଭାର ଲଲାଟରେ ଚିତା କାଟି
ହସ୍ତରେ ବେଦ କାଣ୍ଡିଯେ କଟିରେ ଲାଙ୍ଗଟି
କର୍ଣ୍ଣରେ କୁଣ୍ଡଳ ବେନି ତମ୍ବାର ବିରାଜେ
କରରେ ସ୍ଫଟିକ ମଣି ଜପମାଳା ସାଜେ ।
ନବଗୁଣରେ ପଇତା କାନ୍ଧେ ଅଛି ପଡ଼ି
କଟିରେ ଯେ କଉପୂନୀ ପିନ୍ଧିଅଛି ଭିଡ଼ି ।
କର୍କଶ ପିଙ୍ଗଳ ବର୍ଣ୍ଣ ମୁଖ ନିଶ ଦାଢ଼ି
ଧରି ଲାଉତୁମ୍ବା ଲୁହା ଚିମୁଟା ଯେ ବାଡ଼ି ।
ଏରୂପେ ମାୟା ଜଟିଳ ହୋଇଲା ଦାରୁଣ
ବଦ୍ରିକା ଦେଶେ ମିଳିଲାଯାଇ ତତକ୍ଷଣ ।
ସ୍ୱର୍ଗରୁ ଆସିଲା ପ୍ରାୟେ ଦିଶେ ତପୀଶୀଳ
ବଲ୍ଲଭ ପାଶରେ ଆସି ମିଳିଲା ଜଟିଳ ।
ଦେଖିଣ ବ୍ରହ୍ମଚାରୀଙ୍କି ସେ ବଲ୍ଲଭ ରାଜା
ମନେ ପାଞ୍ଚିଲେ ଅଟନ୍ତି ଏହି ବ୍ରହ୍ମଦ୍ୱିଜା ।
ଶ୍ରୀହରି ହରରୁ କିବା ଜଣେ କଲେ ବିଜେ
ଏତେ ପାଞ୍ଚି ପୂଜା ତାଙ୍କୁ କଲେ ନୃପରାଜେ
ଆସନ ଦେଇ ସୁବାସ ଜଳପାତ୍ରେ ଆଣି
ଜଟିଳର ପାଦଧୋଇ ଦେଲେ ତତକ୍ଷଣି ।
ଷଡ଼ାର୍ଘ୍ୟରେ ପୂଜିଣ ଯେ କଲେ ମନତୋଷ
ପୁଚ୍ଛନ୍ତି କିମର୍ଥେ ବିଜେକଲେ ମମ ଦେଶ ।
ଆପଣଙ୍କୁ ନେତ୍ରେ ମୁହିଁ କେବେ ଦେଖିନାହିଁ
ପୂର୍ବଭାଗ୍ୟରୁ ଏତେକ ଦେଖା ପାଇଲଇଁ ।
ଗୃହ ମୋହର ପବିତ୍ର ହେଲା ଏତେକାଳେ
ବଂଶର ମୋ ବଡ଼ଭାଗ୍ୟ ଦେଖିଲି ମୁଁ ଡୋଳେ
ବିଷ୍ଣୁଙ୍କ ସମାନ ତୁମ୍ଭେ ଅଟ ମୁନିବର
ଦେଖିଲା ବେଳରୁ କ୍ଲେଶ ଗଲାଣି ମୋହର ।
ବଲ୍ଲଭ ବାକ୍ୟ ଶୁଣିମା ବସି ମାୟା ଋଷି
ବୋଇଲେ ବ୍ରହ୍ମା ଅଛନ୍ତି ଜାଣମୋତେପେଷି
କୁଟୁମ୍ବଯାକ ତୁମ୍ଭର ଘେନି ଆମ୍ଭ ସଙ୍ଗେ
ଗଲେ ସ୍ୱର୍ଗପୁରେ ଯାଉ ଦେଖିବ ଏଲାଗେ ।
ତୁମ୍ଭର ପୁତ୍ରେ ଅଟନ୍ତି ପୁଣ୍ୟ ମହାଯୋଗ୍ୟ
ଗଲେ କରିବେ ତାହାଙ୍କୁ ଘେନି ବ୍ରହ୍ମଯୋଗ ।
ଆପଣ ବିଜେ କରିବେ ପତ୍ନୀ ସଙ୍ଗେ ଘେନି
ଆସିବ ପୁଷ୍ପକ ପେଷିଦେବେ ବ୍ରହ୍ମଯୋନି ।
ଏରୂପେ ଜଟିଳ ଋଷି କହନ୍ତେ ବଚନ
ରାଜାଙ୍କୁ ମିଳିଲା କହୁଁ କହୁଁ ମାୟାମାନ ।
ଦେବଙ୍କର ରଥ ପ୍ରାୟେ ଦିଶେ ମହାଜ୍ୟୋତି
ଚାହିଁଲେ ପଡ଼ିବ ମୋହ ହୋଇ ସୁରପତି ।
ନାନାଦି ଚିତ୍ରରେ କମ ଦିଶେ ପରିଚୟ
ଯେତେ ମନାସିଲେ ତେତେ ହୁଅଇ ସେଲୟ
ଅରୁଣଜ୍ୟୋତି ପରାୟ ଦିଶେ ତାର ଆଭା
ଧାଡ଼ି ଧାଡ଼ି ସ୍ୱର୍ଣ୍ଣ ପ୍ରକାଶଇ ଜ୍ୟୋତି ଶୋଭା
ମାଣିକ୍ୟର ମୋତିମାଳ ଲମ୍ବେ କେରାକେରା
ନୀଳଜୀମୂତ ପରାୟ ଦିଶେ ବଡ଼ ତୋରା ।
ସୁରଙ୍ଗ ପାଟପତନୀ ଉଡ଼େ ଫରଫର
ସବୁର୍ଣ୍ଣ କଳସମାନ ଦିଶେ ଶୋଭାକର ।
ଯେତେ ପାଞ୍ଚିଲେ ଚଳଇ ତେଣେ ମାୟାରଥ
ସେ ରଥ ଦେଖି ବଲ୍ଲଭ ହେଲେ ଆଚମ୍ବିତ
ଅସୁର ରଥ ଏ ବୋଲି ନ ଜାଣେ ରାଜନ
ମନରେ ପାଞ୍ଚନ୍ତି ପ୍ରତ୍ୟକ୍ଷ ଏ ଦେବଯାନ ।
ଆମ୍ଭେ ଭାଗ୍ୟବାନ ହେଲୁ ଲୋଡ଼ିବାରୁ ବ୍ରହ୍ମା
ଭଲା ଏ ପୁଷ୍ପକ ରଥ ଦେଖିଲୁ ମହିମା ।
କେଡ଼େ ଋଷି ପୁଣି ଆସିଛନ୍ତି ମୋତେ ନେଇ
ଏହାଠାରୁ ବେଶି ଭାଗ୍ୟ ଲୋଡ଼ିଲେ କି ପାଇ
ଯିବାକୁ କରନ୍ତେ ରାଜା ମନ ଉଦବେଗ
ଅନ୍ତର୍ଯ୍ୟାମୀ ପ୍ରଭୁ ତାହା ଜାଣିଲେ ନୃସିଂହ
ଭାଇଙ୍କୁ ସଙ୍ଗରେ ଧରି ବିଚାରିଲେ ହରି
ବୋଇଲେ ଆମ୍ଭ ପିତାଙ୍କୁ ନେଲା ଆଜ ଧରି
କପଟ ପାଞ୍ଚି ଦଇତ୍ୟ ଗଲା ଏହିକ୍ଷଣି
ବସାଇ ଆଣିବ ମାୟା ରଥେ ରାଜାରାଣୀ ।
ଆହେ କର୍ଣ୍ଣାଟ ଈଶ୍ୱର ହେ ସୁଜାଣ ମନ୍ତ୍ରୀ
ଆହେ ଗରୁଡ଼ ଶୁଣିମା ତୁମ୍ଭେ ତିନିକ୍ଷତ୍ରୀ
ନୃସିଂହଗଣଙ୍କୁ ଘେନି ଯୁଦ୍ଧେ ତୁମ୍ଭେ ଥାଅ
ଅସୁର ଲୁଚାଇ ମାରି ପଦା କରିଦିଅ ।
ଦାରୁଣ ଦଇତ୍ୟ ଆମ୍ଭ ନବରକୁ ଗଲା
ଯତିବେଶ ଧରି ପିତା ଆଗେ ଦେଖାଦେଲା
ଆମ୍ଭେ ନ ଗଲେ କରଇ ଦୈତ୍ୟସିନାମନ୍ଦ
ମାତା ପିତାଙ୍କୁ ପକାଇ ଦେବ କରି ଫାନ୍ଦ ।
ଶୁଣି ମନ୍ତ୍ରୀବର ଯୋଡ଼ିଲାକ ବେନିକର
ବିଜେକର ବୋଲି ଯୁଦ୍ଧେ ହେଲା ଆଗୁସାର
କର୍ଣ୍ଣାଟ ଈଶ୍ୱର ନୃପଗଣ ସଙ୍ଗେ ଘେନି
ମହା ଘୋରଯୁଦ୍ଧ କରି ମାଇଲେ ସଇନି ।
ଅସୁର ଧରିଣ ଧନୁ ଶର ବିନ୍ଧିବାରୁ
ଡେଇଁ ଗରୁଡ଼ ଧଇଲେ ତାହା ଖଣ୍ଡେଦ୍ରୁ ।

ସବୁରି ନାରାଚ କାଣ୍ଡ ଖଣ୍ଡ ଖଣ୍ଡ କରି
ଭିଡ଼ିଲାକ ତିନିଲକ୍ଷ ଦୈତ୍ୟ ଆଣ୍ଟେ ଧରି ।
ପର୍ବତେ କଚାଡ଼ି ସମୁଦ୍ରକୁ ଦେଲା ଫିଙ୍ଗି
ଆବୋରି ରହିଲେ ଆଗେ ହରିଗଣ ଜଗି ।
ଏଥୁଅନ୍ତେ ଶ୍ରୀନୃସିଂହ ଶେଷ ବେନିଭାଇ
ନଗରକୁ ଗଲେ ଶତ୍ରୁ ନାଶିବାର ପାଇଁ ।
ନୃସିଂହ ଦ୍ୱାରେ ଯାଇଣ ପ୍ରବେଶ ହୁଅନ୍ତେ
ଦାରୁଣ ବୋଇଲା ରାଜା କାହାନ୍ତି ତୋସୁତେ
ବଲ୍ଲଭ ବୋଲେ ଶୁଣିବା ହେଉ ତପଚାରୀ
ମୁରାସୁର ପାପୀ ମୋତେ ହୋଇଲା ଭଗାରି
ଅସୁର ସୈନ୍ୟ ଲୋଚାଏ ନିତି ନିତି ପେଷି
ତାକୁ ମାରି ମାରି ପୁତ୍ରେହେଲେଣି ମୋକେଶି
ଏକଥା ଆପଣ ଆଗରୁ ତ ଜାଣିଥିବେ
ଆଣିଛି ଡକାଇ ଦେବେ ପୁତ୍ରଙ୍କୁ ମୋ ଏବେ
ଆନନ୍ଦବନେ ମୋ ପୁତ୍ର ଥିବେ ସିନା ରହି
ଦୈତ୍ୟେଙ୍କ ସଙ୍ଗେ ସମର ଲାଗିଥିବେ ଯାଇ
ମୁରାସୁର ସାନଭାଇ ଦାରୁଣ ଚାଣ୍ଡାଳ
ସେ ପୁଣି ଆଜି ଆସିଣ କରିଛି କନ୍ଦଳ ।
ସେ ଯୁଦ୍ଧ ଆଜକ ପଛେ ରଖାଇଣ ଦେବି
ତୁମ୍ଭକୁ ଆଣି ଦର୍ଶନ ଆଗ କରାଇବି ।
ଆପଣଙ୍କ ସଙ୍ଗେ ଆମେ ବ୍ରହ୍ମାପୁରେ ଯିବୁଁ
ଏଥୁ ଅଧିକ ଆଉ କି ଭାଗ୍ୟ ଅରଜିବୁ ।
ଶୁଣିଣ ଦାରୁଣ ଦୈତ୍ୟ ହଲାଇଲା ମୁଣ୍ଡ
ମନରେ ପାଞ୍ଚି ହୃଦରେ ହୁଅଇ ପ୍ରଚଣ୍ଡ ।
ବୋଇଲା ପ୍ରୀତି ହେବାର ସିନା ଏଥେସହ୍ୟ
ହାତେ ପଡ଼ିଲେ କରିବି ସିନା ସବୁ କାର୍ଯ୍ୟ
ପତି ପତ୍ନୀ ପୁତ୍ର ବୋହୂ ଚାରିଙ୍କୁ ଯେ ନେବି
ମୁରାସୁର ରାଜା ଆଗେ ଉଭା କରାଇବି ।
ବେନି ପୁତ୍ରଙ୍କର ଶିର ପକାଇବି ଛେଦି
ପିତା ମାତାଙ୍କୁ ଶୂଳିରେ ନେଇ ଦେବି ଲଦି
ଏରୂପେ ଜଟିଳ ହୃଦେ ପାଞ୍ଚନ୍ତେଣ ବସି
ଶ୍ରୀନୃସିଂହ ବେନିଭାଇ ପ୍ରବେଶିଲେ ଆସି ।
ଦେଖିଣ ମାୟା ତପସ୍ୱୀ ନିରେଖି ଚାହାନ୍ତେ
ଦେଖିଲାକ ଶଙ୍ଖଚକ୍ର ଶୋହେ ବେନିହସ୍ତେ
ଅଷ୍ଟାଦଶ ଚିହ୍ନ ପୁଣି ଦେଖି ଗୋଟି ଗୋଟି
ଦେଖିଣ ଅସୁର ଚକ୍ଷୁ ରହିଲା ତରାଟି ।
ଦଣ୍ଡେ ପର୍ଯ୍ୟନ୍ତ ବସିଣ ମନରେ ପାଞ୍ଚିଲା
ହୃଦୟ ମଧରେ ଅତି ଭୟ ଜାତ ହେଲା ।
ବୋଇଲା ଜନ୍ମିଲା ବିପ୍ରକୁଳେ ଭାବଗ୍ରାହୀ
ଅବଶ୍ୟ ମୃତ୍ୟୁର ହାତେ ଦେବ ଆଜ ଏହି ।

ପୁଣିହିଁ ପାଞ୍ଚିଲା ଏହି ବିଷ୍ଣୁ ଯେବେ ହନ୍ତା
ମଥା ଉପରେ ସହସ୍ରଫଣା ଦିଶୁଥାନ୍ତା ।
ତେବେ ବା ମୋତେ ମାରନ୍ତା ଏହି ଶିରୀବସି
ଏ ବେନି ଭାଇଙ୍କଠାରେ ଚିହ୍ନ ନାହିଁ କିଛି ।
ଏ ମାନବ ବିଷ୍ଣୁ ସିନା ମୋର କି କରିବ
ଏହାଙ୍କୁ ନାଶିଲେ ମୋର କଳହ ଛାଡ଼ିବ ।
ତଥାପି ହେଉ ନୋହୁ ଏ ଯିବି ଆଜ ଘେନି
ଏରୂପେ ମନରେ ପାଞ୍ଚେ ସେ ଜଟିଳ ମୁନି ।
ଦାରୁଣର ପାଞ୍ଚଯାକ ଜାଣି ଭଗବାନ
ପିତାଙ୍କ ଆଗେ ମିଳିଲେ ଆସି ଜନାର୍ଦ୍ଦନ ।
ପୁତ୍ରଙ୍କୁ ଦେଖିଣ ବାପ ମନେ ତୋଷ ହେଲେ
ମୁନିଙ୍କୁ ବସାଇ ରାଜା ଗୃହକୁ ଚଳିଲେ ।
ମିଳିଲେକ ପତ୍ନୀପାଶେ ପୁତ୍ରସଙ୍ଗେ ଘେନି
ଦେଖି ପୁତ୍ରଙ୍କୁ ଆନନ୍ଦ ହେଲେ ମାତା ପୁଣି
ପୁତ୍ରମୁଖେ ଚୁମ୍ବ ଦେଇ ଭଗବତୀ ମାଏ
ସ୍ୱାମୀ ମୁଖ ଚାହିଁ ଆନନ୍ଦିତ ଅପ୍ରମେୟେ ।
ବଲ୍ଲଭ ବୋଲେ ଶୁଣ ଗୋ ନୃସିଂହମାତା
ସ୍ୱର୍ଗରୁ ରଥେକ ପେଷିଛନ୍ତି ଆଜ ପିତା ।
ପୁତ୍ରଙ୍କୁ ସଙ୍ଗେ ଘେନିଣ ଚାଲ ଯିବା ବେଗେ
ଆସିଛନ୍ତି ଋଷି ଘେନି ଯିବାକୁ ହେ ସ୍ୱର୍ଗେ
ପତିର ଏ ବାକ୍ୟ ଶୁଣି ବେଶ ହେଲେ ରାଣୀ
ଖଞ୍ଜିଲେକ ଅଳଙ୍କାର ଦେହଯାକ ଆଣି ।
ବୋଇଲେକ କେଡ଼େଭାଗ୍ୟ ଅଟେଆଜମୋର
ମାନବ ଦେହେ ଦେଖିବା ଯାଇ ସ୍ୱର୍ଗପୁର ।
ପିତାମାତାଙ୍କର ମନ ଜାଣି ବ୍ରହ୍ମରାଶି
ଶୀଘ୍ରେଣ ଚଳନ୍ତୁ ବୋଲି ଦେଲେମାୟାପେଷି
ନଗ୍ରକୁ ଦୈତ୍ୟ ପଠାଇ ଯାଏ କିନା ପୁଣି
ଅଧିକ ଚଞ୍ଚଳ ମନ କଲେ ଚକ୍ରପାଣି ।
ଦେଖିବା ସ୍ୱର୍ଗ ବୋଲି ନୃସିଂହ ବାପମାଏ
ମିଳିଲେ ଜଟିଳ ଦୈତ୍ୟ ପାଶେ ଯାଇଁ ଦୁହେଁ
ପୁତ୍ରଙ୍କୁ ସଙ୍ଗେ ବଦ୍ରିକା ଦଣ୍ଡଧାରୀ ଧରି
ଋଷିଙ୍କ ପାଦରେ ଦଣ୍ଡ ପ୍ରଣାମ ଯେ କରି
ତା ଦେଖି କମ୍ପାନ୍ତି ଶେଷଦେବ ନିଜଦେହ
ନୃସିଂହ ବୋଇଲେ ଭାଇ କ୍ଷଣେ ଆଉ ରହ
ଏଠାରୁ ଗଲେ ଋଷିକି ଦେବା ପୂଜାବଳି
ଏ ରଥ ଘେନି ଯାଆନ୍ତୁ ଶୀଘ୍ର ଏବେ ଚଳି ।
ବୁଝିଲେ ଆଉ ଦଣ୍ଡକେ ଅଛି ସିନା ବର୍ତ୍ତି
ଏ ରଥକୁ ଘେନି ଏବେ ଯାଉ ବେଗେ ମତି
ବଦ୍ରିକା ନଗ୍ରଦାଣ୍ଡେ କି ରୂପେ ଦେବା ମାରି
ଅହିଂସା ଭୂମିଖଣ୍ଡିକ ଅଟେ ଦିବ୍ୟ ପୁରୀ ।

ରଣସ୍ଥାନେ ଗଲେ ନିଶ୍ଚେ ମାରିଦେବା ଜାଣ
ଏରୂପେ ଭାଇଙ୍କୁ କହିଲେକ ନାରାୟଣ ।
କହନ୍ତେ ଠାରି ଶେଷକୁ ହେଲା ତାହା ଜଣା ।
ଆନକୁ ଏ ଅଗୋଚର ଅଟେ ଅକଳନା ।
ପାଞ୍ଚିଦୈତ୍ୟ ହେଲାମୋର କାର୍ଯ୍ୟ ଏବେସିଦ୍ଧି
ନୃସିଂହ ମଲେ କରିବୁ ଭୋଗସବୁ ଆଧି ।
ସଚରାଚର ଯାକରେ ହେବୁ ଆମ୍ଭେ ବିଭୁ
ଏକଥା ପୂର୍ବରୁ ଲେଖିଅଛନ୍ତି ଆମ୍ଭୁ ।
ଏତେକ ପାଞ୍ଚି ଦାରୁଣ ବଲ୍ଲଭଙ୍କୁ ଚାହିଁ
ବୋଇଲା ରଥରେ ବସି ଯିବା ସଜହୋଇ
ଜଟିଳ ମୁନିର ମୁଖୁଁ ଶୁଣି ନୃପରାଜେ
ପତ୍ନୀ ପୁତ୍ର ଘେନି ଯାଇ ରଥେ କଲେ ବିଜେ
ମାୟା ଜଟିଳ ବସିଲା ରଥମଧ୍ୟେ ଯାଇ
ସେଠାରୁ ଗଗନେ ନେଲା ମାୟାଯାନ ବାହି
ମିଳନ୍ତେ ଧଇଲା ରଣସ୍ଥାନେ ନିଜ ମୂର୍ତ୍ତି
ହୋଇଲା ପ୍ରତ୍ୟକ୍ଷେ ସେହି ଅସୁର ଆକୃତି ।
ମହା ବିକଟାଳ ମୂର୍ତ୍ତି ହୋଇଣ ଦାରୁଣ
ରାଜାଙ୍କୁ ବୋଲଇ ଏବେ ମଲରେ ବ୍ରାହ୍ମଣ ।
ପୁତ୍ରଙ୍କୁ ମାର ପେଷିବି ତୋତେ ସଂଯମନୀ
ଶୂଳେ ବସାଇବି ଭଗବତୀକି ତୋ ଆଣି ।
ତୋତେମାରି ବଳିଦେବିଦେହୁ ତୋର ମାଂସ
ଏତେକ ନକଲେ ମୁଁ ନ ଯାଇ ଭାଇ ପାଶ ।
ଏଥିଉତ୍ତାରେ ଦାରୁଣ ଦୈତ୍ୟ ସେନାମାନେ
ନୃସିଂହ ମାତାଙ୍କୁ ଦେଖି ଧାଇଁ ହତଜ୍ଞାନେ ।
ଦାରୁଣ ଛାମୁରେ ଆସି ହୋଇଲେ ପ୍ରବେଶ
ବୋଇଲେ ଏହାଙ୍କୁ ନେବା ଧରି ରାଜା ପାଶ
ବ୍ରାହ୍ମଣ ଲୁଚାଏ ଆଉ ମାରିବା କିମ୍ପାଇଁ
ବୃକ୍ଷକୁ ହାଣିଲେ ମୂଳଡ଼ାଳେ କିସ ଥାଇ ।
ମୁର ରାଜାର ପାଶରେ ନେଇ ଦେଖାଇବା
ତହିଁ ଉତ୍ତାରୁ ଏହାଙ୍କୁ ଶୂଳେ ବସାଇବା ।
ଏରୂପେ ବୋଲିବାହାନ୍ତେ ଦୈତ୍ୟ ମାୟାରଥ
ତହୁଁ ତିଳାର୍ଦ୍ଧେ ଘୁଞ୍ଚାଇ ନ ପାରିଲେ ରଥ ।
ନିର୍ମାୟାପୁରୁଷ ଯହୁଁ ରଥେ ଛନ୍ତି ରହି
ତେଣୁ ସେ ମାୟାରଥ ନ ପାରେ ତହିଁ ଯାଇ
ଦୈତ୍ୟ ମାୟାଠାରୁ ପ୍ରଭୁମାୟା ବଳିଗଲା
ତେଣୁ ସେ ରଥ ଘୁଞ୍ଚାଇ ତିଳେ ନ ପାରିଲା
ଶୁଣ ନାରଦ ବିଷ୍ଣୁର ମହିମା ଯେ ଏଡ଼େ
ଦୈତ୍ୟଙ୍କୁ ଦେଖିଣ ବଲ୍ଲଭ ସେ ଡକାପାଡ଼େ
କହଇ ଯେ ନୃସିଂହଙ୍କୁ ଚାହିଁ ତାତ ମାତ
ବୋଲନ୍ତି ଅଖଡ଼େ ଆସି ହରାଇଲୁ ସୁତ ।
ଆସିଲୁ ବଦ୍ରିକା ନଗ୍ର ଛାଡ଼ି ପୁତ୍ର ଘେନି
ଅସୁର ହାତେ ପଡ଼ିଲୁ ଏବେ ଚାରିପ୍ରାଣୀ ।
ଦୈତ୍ୟ ସମୁଦ୍ରେ ପୁତ୍ରଙ୍କୁ ଆଣି ମେଲିଲଇଁ
ଆହା ବିଧାତା ମୋତେ ଏ କଥା ଥିଲୁ ଲିହି
ଭୋ ଧର୍ମ ପୁରୁଷ ମୋତେ ରକ୍ଷାକର ଏଥୁ
ମରିବୁ ପଛେ ଆମ୍ଭେ ମୋ ପୁତ୍ରେ ସୁଖେଥାନ୍ତୁ
ଆମ୍ଭେ ବେନି ପ୍ରାଣୀ ସୃଷ୍ଟି ମଧ୍ୟେ ବଡ଼ଦୁଃଖୀ
ବୁଝିଲେ ପୁତ୍ର ଅଟନ୍ତି ମୋର ବେନି ଆଖି ।
କେବଣ ପୁରୁଷ ମୋତେ କଲା ଏଡ଼େ ବାଇ
ଅଇଲୁ କି ସ୍ୱର୍ଗ ଦେଖିବାକୁ ବ୍ୟର୍ଥେ ଧାଇଁ ।
ସ୍ୱର୍ଗକୁ ଯେ ଯାଉଁ ଯାଉଁ ସରିଲାକ ନାଟ
କେଡ଼େ କପଟ କରିଣ ଆଣିଲାରେ ନଷ୍ଟ ।
ଭୋ ଧର୍ମଦେବ ପ୍ରତ୍ୟକ୍ଷ ତୁମ୍ଭେଯେବେସତ୍ୟ
ମୋହର ପୁତ୍ରଙ୍କ ହାତେ ମରୁ ପାପୀ ଦୈତ୍ୟ
ମୁଁ ଯେବେ ଅଗ୍ନି ଗର୍ଭରୁ ହୋଇଛି ଉତ୍ପତ୍ତି
ଏ ମୋର ବାକ୍ୟ ତୋତେ ଫଳୁ ମାୟାଯତି
ଏରୂପେ ପିତା ଜନନୀ କରନ୍ତି କାରୁଣ୍ୟ
ଏଥୁ ଅନନ୍ତରେ ମୁନି ନାରଦ ହେ ଶୁଣ ।
ଅନ୍ତର୍ଯ୍ୟାମୀ ପୁରୁଷ ତା ଜାଣି ଆଦିମୂଳ
ହୃଦରେ ପାଞ୍ଚିଲେ ମାତା ପିତାଙ୍କ ବିକଳ ।
ପିଅର ଜନନୀ ଶୋକ ନ ପାରିଲେ ସହି
ଶେଷକୁ କହିଲେ ଠାରି ପ୍ରଭୁ ଭାବଗ୍ରାହୀ ।
ରଥରୁ ତୁ ଅସୁରକୁ ଧରି ପଡ଼ ତଳେ
ଆମ୍ଭେ ବସିଅଛୁ ମାତା ପିତାଙ୍କର କୋଳେ ।
ଏରୂପେ କହିଲେ ଠାରି ଯହୁଁ ଭଗବାନ
ଜାଣିଣ ଉଲ୍ଲାସ କଲେ ଶେଷଦେବ ମନ ।
ଛେଳିକୁ ବାଘ ଯେସନେ ଝାମ୍ପେ ଗିଳିବାକୁ
ସେରୂପେ ସେ ଶେଷଦେବ ଧରି ଅସୁରକୁ ।
କ୍ରୋଧେ ଝିଙ୍କି ପ୍ରଭୁ ଧରିଲେକ ତାରବାଳ
ଦୈତ୍ୟକୁ ଓଟାରି ଖସି ପଡ଼ିଲେକ ତଳ ।
ରଥରୁ ପଡ଼ି ସେ ଦୈତ୍ୟ ନୋହିଲା ବିନାଶ
ଅନନ୍ତ ଅଙ୍ଗେ ପିଟିଲା ଆଣି ଲୌହପାଶ ।
ତହିଁକି ନ ମାନି ସେ ନୃସିଂହ ସାନଭାଇ
ପିଟିଲେ ଅସୁର ଅଙ୍ଗେ ବଜ୍ରଶର ନେଇ ।
ଶର ବାଜନ୍ତେ ଅସୁର ଉଠିଣ ହସଇ
ବୋଇଲା ନମାରୁ ମୋତେରେ ନୃସିଂହ ଭାଇ
ବ୍ରହ୍ମଶର ପେଷିଲେକ ଶେଷଦେବ ପୁଣି
ବାଜନ୍ତେ ହସ୍ତରେ ଆଡ଼ିଦେଲା ଦୈତ୍ୟଟାଣି
ଦେଖି ତାହା ଚମତ୍କାର ହେଲେ ଇଳାସାଇଁ
ବାବଲ ଶର ବିନ୍ଧିଲେ ବ୍ୟଗ୍ରେ ଧରି ନେଇ ।

ସେ ଶର ବାଜନ୍ତେଦୈତ୍ୟ ଆଡ଼ିଦେଲା ଦେହ
ହସ୍ତରେ ନିଶ ମୋଡ଼ିଣ ହସେ ଟହ ଟହ ।
ବୋଇଲାରେ ବ୍ରାହ୍ମଣ ତୋ ଜନ୍ମ ଭଲା ଭଲା
ବ୍ରାହ୍ମଣ କୁଳେ ଜନ୍ମିତୁ ଏଡ଼େ ଅନର୍ଗଳା ।
ଧନ୍ୟ ତୋର ପିତାମାତା ଧନ୍ୟ ବଳବୀର୍ଯ୍ୟ
ଏଥର ପ୍ରାଣ ଘେନିବି ତୋର ନିଷ୍ଟେ ଆଜ ।
ଏ ବ୍ରହ୍ମଶକ୍ତି ସମ୍ଭାଳି ତୁହି ଯେବେ ପାରୁ
ତେବେ ଜାଣିବି ତୁ ଅଟୁ ବ୍ରହ୍ମାଣ୍ଡର ଗୁରୁ ।
ଏରୂପେ ବୋଲି ଦଇତ୍ୟ ଧଇଲେକ ଶକ୍ତି
ସେ ବ୍ରହ୍ମଶକ୍ତିର ନାମ ଅଟେ ବ୍ରହ୍ମମୂର୍ତ୍ତି ।
ଧନୁରେ ଯୋଚି ବିନ୍ଧନ୍ତେ ଟାଣି ଦୈତ୍ୟବୀର
ପଡ଼ିଲେ ଚମକି ଚହିଁ ଥିଲେ ଯେତେ ନର
ଦେବ ଆଦି ଦଶଦିଗ ବ୍ରହ୍ମ କୀଟ ଯାଏ
ସମସ୍ତେ ଚମକିପଡ଼ି ଗଲେ ଠାଏଁ ଠାଏଁ ।
ସମର ସ୍ଥାନେ ଥିଲେଟି ଯେ ନୃସିଂହଗଣେ
ଚମକି ସେମାନେ ପଡ଼ିଗଲେ ଜଣେ ଜଣେ ।
ତା ଦେଖି କର୍ଣ୍ଣାଟେଶ୍ୱର ହୋଇଲେ ବିକଳ
ବୋଇଲେ ସୁଜାଣ ମନ୍ତ୍ରୀ କିକଲା ଚଣ୍ଡାଳ
ଗରୁଡ଼ ବୋଲେ ଅନ୍ୟାୟ କଲାକ ଏ ପାପୀ
ମାରିବ କାହାକୁ ଦୈତ୍ୟ ହୋଇ ମହାକୋପୀ
ନୃସିଂହ ପ୍ରଭୁଙ୍କୁ ଏ ନ ପାରେ କେବେ ମାରି
କାହାକୁ ମାରିବ ଏ ଚଣ୍ଡାଳ ଅମରାରି ।
ନୃସିଂହ ବିନା ଏହା ନ ପାରେ କେହି ରଖି
ଏରୂପେ ପାଞ୍ଚି ଚିନ୍ତିଲା ପକ୍ଷୀ ପଦ୍ମ ଆଖି ।
ଗରୁଡ଼ ଚିନ୍ତିବା ଜାଣିଲେକ ଭଗବାନ
ତକ୍ଷଣେ ହସ୍ତରୁ ପେଷିଦେଲେ ସୁଦର୍ଶନ ।
ଚକ୍ରକୁ ବୋଇଲେ ତୁହି ବେଗେ ଚଳିଯିବୁ
ବ୍ରହ୍ମଶକ୍ତି ଆଗରେ ମୋ ଆଜ୍ଞା ପ୍ରକାଶିବୁ ।
ଦୈତ୍ୟ ବିନ୍ଧୁଛି ଭାଇକି ମୋର ମାରିବାକୁ
ଏ ଅବତାରେ ମାରି ନ ପାରେ କେବେତାକୁ
ଏ ଅବତାରେ ଦାରୁଣ ମୁର ମରିଯାଇ
ତ୍ରେତା ଯୁଗରେ ରାବଣ ହେବେ ବେନିଭାଇ
ସେ ଯୁଗେ ଜନ୍ମିବୁ ଆମେ ଦଶରଥ ଘରେ
ରାମ ଲକ୍ଷ୍ମଣ ହୋଇବୁ ପୁର ଅଯୋଧ୍ୟାରେ ।
ପିତାଙ୍କର ସତ୍ୟପାଳି ବନେ ଆମ୍ଭେ ଯିବୁ
ଦଣ୍ଡକାରଣ୍ୟରେ ପୁଣି ଜାୟା ହରାଇବୁ ।
ରାବଣ ଆସି ଚୋରାଇ ନେବ ମୋର ପ୍ରିୟା
ରକ୍ଷ କପିବଳ ଧରି ଯିବି ସୁବଳୟା ।
ରାବଣ ଭାଇ ପୁତ୍ରଙ୍କୁ ସବୁ ଦେବୁ ମାରି
ସେ କୋପେ ଆସିବ ଦଶଗ୍ରୀବ ଯୁଦ୍ଧକରି ।

ସମର କରୁ କରୁ ସେ ଧରି ବ୍ରହ୍ମଶକ୍ତି
ଲକ୍ଷ୍ମଣଙ୍କୁ ମାରି ଚଳିଯିବ ଲଙ୍କପତି ।
ସେ ଶକ୍ତି ଯାଇ ସୌମିତ୍ରୀ ବୁକୁରେ ପଡ଼ିବ
ପାତାଳ ପର୍ଯ୍ୟନ୍ତ ଗଳି ମାଡ଼ିଣ ବସିବ ।
ଜାମ୍ବବର ବୁଦ୍ଧିବଳେ ବର୍ତ୍ତିବ ମୋ ଭାଇ
ହନୁ ହସ୍ତରେ ଔଷଧି ଆଣିବେ ବୁହାଇ ।
ନାକେ ଦୋରୁଅ ପକାନ୍ତେ ଉଠିବ ସୌମିତ୍ରୀ
ଏ କଥା ପୂର୍ବରୁ ଲେଖିଅଛି ବେଦପତି ।
ଏ ରୂପେ ସେ ବ୍ରହ୍ମଶକ୍ତି ପୁରୁଷଙ୍କୁ କହି
ତୁ ଯାଇ ଆସିବୁ ସୁଦର୍ଶନ ଶୀଘ୍ର ହୋଇ ।
ଶୁଣି ସୁଦର୍ଶନଚକ୍ର ବ୍ୟଗ୍ରେ ଗଲା ଚଳି
ଶକ୍ତି କର୍ଣ୍ଣପାଶେ କହିଲାକ ଆଜ୍ଞା ପାଳି ।
ବିଷ୍ଣୁର ଆଜ୍ଞା କହନ୍ତେ ଯାଇ କର୍ଣ୍ଣମୂଳେ
ଶୁଣିଣ ସେ ଶକ୍ତି ଶାନ୍ତ ହୋଇଲା ତତ୍କାଳେ
ବୋଇଲାକ ବ୍ରହ୍ମଶକ୍ତି ଶୁଣ ସୁଦର୍ଶନ
ତୁମ୍ଭେ ଆମ୍ଭେ ଦୁହେଁ ଅଣବାହୁଡ଼ା ତ ଜାଣ
ଉତ୍ପାତ ଲୋକଙ୍କୁ ଆମ୍ଭେ ପେଷିଲେ ଯେମାରି
ଅଣବାହୁଡ଼ା ନିନ୍ଦାକୁ ଘେନି ଆମ୍ଭେ ଡରି ।
ଚକ୍ର ବୋଇଲେ ଆମ୍ଭର ଆଜ୍ଞା ଏକା ମୂଳ
ନମାନି ତୁ ଦୈତ୍ୟ କଥା ବ୍ରହ୍ମାପୁରେ ଚଳ
ଆଜହୁଁ ନିଶ୍ଚିନ୍ତ ହୋଇ ତ୍ରେତାଯାଏ ଥାଅ
ବିଷ୍ଣୁଙ୍କୁ ନିନ୍ଦିବାକୁ କେ ଅଛି ମୋତେ କହ
ଆହେ ସୁଦର୍ଶନ ତୁମ୍ଭେ ଅଟ ବ୍ରହ୍ମଶକ୍ତି
ଆମ୍ଭହୁଁ ସହସ୍ରଗୁଣେ ଗରୁଡ଼ ଯେ ଯତି ।
ବିଷ୍ଣୁର ବାହନ ସେହି ସବୁକାଳେ ଅଟେ
ସୁଦର୍ଶନ ଚକ୍ରେ ତାଙ୍କୁ ମାଇଲେ ନ କାଟେ
ସହସ୍ରେକ ବ୍ରହ୍ମଶକ୍ତି ପିଟିଲେକ ନେଇ
ତିଳାର୍ଦ୍ଧେତା ଲୋମବାଙ୍କ କେବେହେନହୋଇ
ମନ କଲେ ପୃଥ୍ୱୀଯାକ ପାରେ ସେହୁ ଦଳି
ବିଷ୍ଣୁ ଆଜ୍ଞା ନୋହିଲେ ନଯାଏ ପାଦେ ଚାଲି
ଏମନ୍ତ ଗରୁଡ଼କୁ ଯେ ବାହନଟି କରି
ବିଷ୍ଣୁଙ୍କୁ ଏ ଅବତାରେ ନପାରେ କେ ମାରି
ଶୁଣିଣ ସେ ବ୍ରହ୍ମଶକ୍ତି ମନେ ଶ୍ରଦ୍ଧା ହେଲା
ପ୍ରମାଣ ଏ କଥା ବୋଲି ମନେ ବିଚାରିଲା ।
ଚକ୍ରକୁ ବୋଲେ ଆପଣ ତେବେ ବିଜେ କର
ବୁଝିଲେ ବିଷ୍ଣୁର ଆମ୍ଭେ ଦୁହେଁ ପରିଚାର
ଆପଣ କି କହିବେ ତା ଶୁଣିବାଟି ସିନା
ନିସ୍ତରିଲି ଶୁଣି ଏବେ ନୃସିଂହ ମହିମା ।
ଶୁଣିବାକ୍ଷଣି ବ୍ରହ୍ମାଙ୍କପୁରେ ଆମ୍ଭେ ଯିବୁ
ଏ ରୂପରେ ଆଜ୍ଞା ଦେଇ ଅଛନ୍ତି ସେ ପ୍ରଭୁ

ଶୁଣି ସୁଦର୍ଶନ ଚଳିଗଲେ କ୍ଷଣେମାତ୍ରେ
ପ୍ରବେଶ ହେଲେ ନୃସିଂହ ପ୍ରଭୁ କରପତ୍ରେ ।
ବଦୟନ୍ତି ବେଦବ୍ରହ୍ମା ଶୁଣ ହେ ନାରଦ
ନୃସିଂହ ପୁରାଣ ଏହୁ ଅଟେ ମୋକ୍ଷପ୍ରଦ ।
ବ୍ରହ୍ମଶକ୍ତିକୁ ଧରିଣ ବିନ୍ଧନ୍ତେ ଦାରୁଣ
ସୂର୍ଯ୍ୟର ଜ୍ୟୋତିପରାୟେ ଦିଶିଲା କିରଣ ।
ବିଷ୍ଣୁ ଆଜ୍ଞା ଶୁଣି ଚଳିଗଲା ଅନ୍ତରୀକ୍ଷେ
ବ୍ରହ୍ମାଙ୍କ ପୁରେ ରହିଲା ଯାଇ ଶକ୍ତି ସୁଖେ ।
ସେ ଶକ୍ତିର ତେଜ ଦେଖି ବଲ୍ଲଭର ନାରୀ
ବୋଇଲା ପୁତ୍ରଙ୍କୁ ମୋର ଗଲା ବ୍ୟର୍ଥେ ମାରି
ଆହାମୋର ପୋଏବୋଲି କରୁଥାଏ ଶୋକ
କି ସ୍ୱର୍ଗ ଦେଖିବି ବୋଲି ହେଲି ଅବିବେକ ।
ଆଉ କି ବର୍ତ୍ତିଯିବୁ ଏ ପୁତ୍ରକୁ ଘେନିଣ
କେତେ ବ୍ରହ୍ମଶକ୍ତି ପେଶି ଦେଲା ଯାତୁଧାନ ।
ନୃସିଂହ ବୋଇଲେ ମା ନ କର କିଛି ଶୋକ
ମାରିବି ଦୈତ୍ୟକୁ ଏହିକ୍ଷଣି ଶେଷ ଦେଖ ।
ଆମ୍ଭେ ବେନିଭାଇ ସାକ୍ଷାତରେ ବିଷ୍ଣୁଜାଣ
ନ ଚିହ୍ନି ଶୋକ କରୁଛ ତୁମ୍ଭେ ଅକାରଣ ।
ଏ ମୁର ଦାରୁଣ ପାଇଁ ହୋଇଅଛୁ ଜାତ
ମାରିବେକ ଶେଷ ଆଗୋ ଏ ଦାରୁଣ ଦୈତ୍ୟ
ପଛନ୍ତେ ମୁହିଁ ମାରିବି ଯାଇ ମୁରାସୁର
ଏହି ନିମନ୍ତେ ହୋଇଛୁ ଆମ୍ଭେ ଅବତାର
ମାରିବୁ ଅସୁର ବଳଯାକ ଏହିଲାଗେ
ଦେଖି ଶ୍ରୀନୃସିଂହଗଣ ପୂରିଛନ୍ତି ସଙ୍ଗେ ।
କର୍ଣ୍ଣାଟେଶ୍ୱର ରାଜନ ଏ ସୁଜାଣ ମନ୍ତ୍ରୀ
ଆବର ସମରେ ଅଛି ଗରୁଡ଼ ଯେ ପକ୍ଷୀ ।
ମନକୁ ନ ଆସିଲେଗୋ ଦେଖିବେନିଡୋଳେ
ଏରୂପେ କହି କୃତିହା ହରି ଜାତ କଲେ ।
ତାହାଙ୍କୁ ବୋଇଲେ ତୁମ୍ଭେ ଅସୁରଙ୍କୁ ମାର
ଶୁଣ ନାରଦ କହନ୍ତି ପ୍ରଭୁ ବେଦବର ।
କୃତିହା ଜାତ ହୁଅନ୍ତେ ନୃସିଂହ ସେ ହେଲା
ଅଥର୍ବେଦ ଥାଇ ତାହା ବ୍ରହ୍ମ ନିଯୋଜିଲା ।
ଶ୍ରୀନୃସିଂହ ମନ୍ତ୍ର ସ୍ତୋତ୍ର ନୃସିଂହ କବଚ
ନୃସିଂହ ଅର୍ଗଳ ଆଦି ନୃସିଂହ ନାରାଚ ।
ନୃସିଂହ ଜଣାଣ ଯେ ନୃସିଂହ ଋଷିଛନ୍ଦ
ନୃସିଂହ ଧ୍ୟାନପୂଜା ପ୍ରକାଶେ ଚାରିବେଦ ।
ନୃସିଂହ ସହସ୍ର ନାମ ନୃସିଂହ ତିହଡ଼ା
ବ୍ରାହ୍ମଣକୁଳେ ସମସ୍ତ ଏକ କରି ପଢ଼ା ।
ଶ୍ରୀନୃସିଂହ ତଳେ ଥାଇ ସମସ୍ତ ଦେବତା
ଶ୍ରୀନୃସିଂହଙ୍କୁ ଇଷ୍ଟକରି ଭଜନ୍ତି ବିଧାତା ।

ଦୁର୍ଗାଙ୍କ ସେବା କଲେ ଈଶ୍ୱରଙ୍କୁ ପାଇ
ଈଶ୍ୱର ସେବିଲେ ବିଷ୍ଣୁ ସୁପ୍ରସନ୍ନ ହୋଇ ।
ବିଷ୍ଣୁ ସେବିଲେ ନୃସିଂହ ପ୍ରସନ୍ନ ହୋଇଟି ।
ନୃସିଂହ ପରେ ଆଉ ନାହିଁ ଦେବ ସୃଷ୍ଟି ।
ଏଣୁ ବ୍ରହ୍ମ ଅଟେ ଶ୍ରୀନୃସିଂହ ଉପାସକ
ଶୁଣି ତେଣେ କୃତିହା ପୁରୁଷ ବିଷ୍ଣୁ ବାକ୍ୟ
ପଞ୍ଚଦଶ ଅନଳ ପ୍ରକାଶ ତାର ଦେହୀ
କ୍ରୋଟାନଳ କାଳାନଳ ବର୍ଣ୍ଣାନଳ ବହି ।
ଜାତ ଅନଳ ପିଙ୍ଗଳାନଳ ଜ୍ୱାଳା ଘେନି
ବଡ଼ବାନଳ ପ୍ରଳୟ ରୁଦ୍ରାନଳ ଅଗ୍ନି ।
ପ୍ରଚଣ୍ଡାନଳ କ୍ରୋଟରାନଳ ଘୋରାନଳ
ଚିତାଜଳ ଦାବାନଳ ଦହନାଗ୍ନି ଜଳ ।
ଏହି ପଞ୍ଚଦଶ କୃତିହାର ମୁଖ ଅଟେ
କ୍ଷଣକେ ମନେକଲେ ଏ ପୃଥ୍ୱୀଯାକ ଘୋଟେ ।
ବୋଇଲେତ କୃତିହାକୁ ଅସୁରଙ୍କୁ ଗ୍ରାସ
ଦେଖି ଜନନୀ ମୋହର ହୁଅନ୍ତୁ ସନ୍ତୋଷ ।
ସେ କୃତିହା ଆଜ୍ଞାପାଇ ଦେଲେ ଘୋରରଡ଼ି
ଅସୁରବଳକୁ ବସିଲେକ ଯାଇ ମାଡ଼ି ।
ଯୋଜନେକ ପରିଯନ୍ତେ ବିସ୍ତାରିଲେ ତୁଣ୍ଡ
ଗିଳିଲେକ ଲକ୍ଷକୋଟି ଦୈତ୍ୟଙ୍କର ମୁଣ୍ଡ ।
ପଡ଼ିଣ କ୍ରୋଟରାନଳେ ସର୍ବେ ଗଲେ ଜଳି
ସେ କୃତିହା ଭକ୍ଷିବାର ପାରିବ କେ କଳି ।
ବନସ୍ତ ପୋଡ଼ିଲା ପ୍ରାୟେ ଭକ୍ଷି ଦୈତ୍ୟ ଆଣି
ସେହି ପଞ୍ଚଦଶ ମୁଖ ଉଦୟ ସେକ୍ଷଣି ।
କେବଣ ମୁଖ ଗ୍ରାସଇ ଯେହ୍ନେ ଚନ୍ଦ୍ର ରାହୁ
କେବଣ ମୁଖ ପ୍ରସଇ ବାଟେ ଯାଉଁ ଯାଉଁ ।
କେବଣ ନୟନ ମୁଖେ ଦିଶେ ବିକଟାଳ
କେବଣ ମୁଖ ଦିଶଇ ରକ୍ତେ ଢଳଢ଼ଳ ।
କେବଣ ମୁଖ ଆକାଶଯାଏ ଉର୍ଦ୍ଧ୍ୱେ ଟେକେ
କେବଣ ମୁଖ ଯେ ଗିଳିଦିଏ ବେନି ଲକ୍ଷେ ।
କେବଣ ମୁଖରେ ଯେତେପଡ଼େ ତେତେଗିଳି
ପଡ଼ିଣ ଭସ୍ମ ହୁଅନ୍ତି ସେହୁ କ୍ରୋଟାନଳେ ।
ଯେତେଦୈତ୍ୟପଡ଼େଆଗେତେତେକଯେଗ୍ରାସି
ସବୁଙ୍କୁ ସେ ବିନାଶିବ ସଂଗ୍ରାମରେ ପଶି ।
ଅଗ୍ନିର ତେଜ ଲାଗିଣ ମରନ୍ତି ଯେ ପୋଡ଼ି
ଅସୁରେ ମଲେ କୃତିହା ଅଗ୍ନିମୁଖେ ପଡ଼ି ।
ସମର ଛାଡ଼ି ପଳାନ୍ତେ ଦୈତ୍ୟଗଣ ଭାଜି
ଦାରୁଣ ସେନା ଭାଜିଲେ ହୋଇ ଗଳଗାଜି ।
ଯେ ଯାହାର ସୈନ୍ୟ ଘେନି ନାରାଚକୁ ଧରି
ଧନୁରେ ଯୋଚି ବିନ୍ଧିଲେ ଦୈତ୍ୟ ଲକ୍ଷଚାରି

ନୃସିଂହଗଣ ଯାରିବେ କଂସ ଅସୁରଙ୍କୁ
ନ ଅଣ୍ଟନ୍ତି ଦୈତ୍ୟଯାକ ଏକା କୃତିହାଙ୍କୁ ।
ଛୀବନ୍ତ ସୈନ୍ୟ ଆଉ ଯେ ଥିଲେଯେତେରହି
ତାହାଙ୍କୁ ଘେନିଣ ଯୁଦ୍ଧ କରେ ଦୈତ୍ୟଯାଇ
ଠାକୁର ଆଜ୍ଞାରେ ବିହିଲେ ନୃସିଂହଗଣଙ୍କୁ
ବୋଇଲେ ମାରରେ ବ୍ୟଗ୍ରେ ଅସୁରସୈନ୍ୟଙ୍କୁ
ସାତକୋଟି ସେନାଙ୍କୁ ସେ ସପତ ନୃସିଂହ
ମାର ହୋ ବ୍ୟଗ୍ରରେ ଯାଇ କର ରଣ ଭଙ୍ଗ
ଦାରୁଣ ଦୈତ୍ୟଙ୍କୁ ଛାଡ଼ି ମାର ଆଉ ସର୍ବ
ତାହାଙ୍କୁ ଏକା ମାରିବେ ଜାଣ ଶେଷଦେବ ।
ନୃସିଂହଗଣ ଧାଇଁଲେ ଅତି ବ୍ୟଗ୍ର ହୋଇ
ମାତାଙ୍କୁ ଦେଖନ୍ତି ଚମତ୍କାର ଭାବଗ୍ରାହୀ ।
ଜ୍ୱଳନ୍ତ ନୃସିଂହ ତୁଲେ ସାତଲକ୍ଷ ସୈନ୍ୟ
ଚଳିଲା ଧେନୁକା ସୁନ୍ଦୁ ରଣେ ଦେଇ ମନ ।
ଭୀଷଣ ନୃସିଂହ ତୁଲେ ଜଗି ଡେଙ୍ଗାସୁର
ଚାରୋଟି ସେନା ଘେନିଣ କଲା ରଣଘୋର ।
ସର୍ବତୋମୁଖ ବୋଲିଣ ଯେଉଁ ନରସିଂହ
ଚାରୋଟି ସେନା ଘେନି ସେ କଲା ରଣରଙ୍ଗ
ଏ ବିଧି ଦୈତ୍ୟ ନୃସିଂହଗଣଙ୍କର ତୁଲେ
ପ୍ରାଣକୁ ମୃରୁଛି ତହିଁ ଯୁଦ୍ଧ ଯାଇ କଲେ ।
ବିନ୍ଧନ୍ତି ନାରାଚ ଦୈତ୍ୟ କୁତୂହଳ କରି
ତହିଁକି ନୃସିଂହଗଣ ଦ୍ୱିଗୁଣେ ଯେ ମାରି ।
ସପତ ନୃସିଂହଙ୍କୁ ସେ ସାତକ୍ଷୌଣୀ ସୈନ୍ୟ
ବିନ୍ଧନ୍ତେ ନାରାଚ ଅନର୍ଯ୍ୟାପେ ଯାତୁଧାନ ।
ବରୁଣ ଅସ୍ତ୍ର ଧରିଣ ବିନ୍ଧନ୍ତେ ନୃସିଂହ
ଦେଖିଣ ସେ ଚାରିଦୈତ୍ୟେ ପାତିଲେକ ଅଙ୍ଗ
ପଡ଼ିଣ ସେ ଦେବଅସ୍ତ୍ର ହେଲା ଖଣ୍ଡ ଖଣ୍ଡ
ଜ୍ୱାଳା ନୃସିଂହ ପିଟିଲେ ପୁଣି ଲୌହଦଣ୍ଡ ।
ତଥାପି ଅସୁରଗଣ ନ ମରିଲେ ଯହୁଁ
ନୃସିଂହ ବ୍ରହ୍ମଶକତି ପିଟିଲେକ ତହୁଁ ।
ସେ ଶକ୍ତି ବାଜନ୍ତେ କମ୍ପିଗଲା ମହୀସ୍ଥଳି
ବୁକୁ ଫାଟିଣ ଶୋଣିତ ପଡ଼ିଲାକ ଗଳି ।
ସେ ଚାରିଙ୍କ ମୃତ୍ୟୁ ଦେଖି ଆଉ ଚାରି ସେନା
ଭାସ୍କର ଦୈତ୍ୟର ମୂଳେ ବୀରକାଳ ଯେନା
ଧାଇଁଲେ ମୁଦଗର ଗଦା ଶାବେଳିକୁ ଘେନି
ସର୍ବତୋ ମୁଖକୁ ଶୂଳ ପିଟିଲେକ ଅଣି ।
ନୃସିଂହ ସର୍ବତୋମୁଖ ଯେଉଁ ହରିନାମ
ଅସୁର ଛାର କି ତାଙ୍କୁ ହୋଇବଟି ସମ ।
ଧନୁରେ ଯୋଚି ବିନ୍ଧନ୍ତେ ଶର କରେତୋଳି
ନୃସିଂହ ଅଙ୍ଗେ ବାଜି ସେ ହୋଇଗଲେ ଧୂଳି
ଝଲକ ବ୍ରହ୍ମାଣ୍ଡଯାକ ଦିଶିଲେ ବ୍ରହ୍ମାଗ୍ନି
କହିଲେ ନ ସରଇ ଏ ଯୁଦ୍ଧ ଘୋରଧ୍ୱନି ।
ବଦୟନ୍ତି ବେଦବ୍ରହ୍ମା ଶୁଣ ହେ ନାରଦ
ଆକାଶେ ଥାଇ ଦେଖିଲେ ତାହା ଦେବବୃନ୍ଦ
ଗଗନ ଘୋଟି ଧାଇଁଲେ ଦୈତ୍ୟେବୀର ଚାରି
ଖଡ଼୍‌ଗ ଫଳା ଶାବେଳୀ କୁନ୍ତ କରେ ଧରି ।
ଦୈତ୍ୟଙ୍କର ମୂର୍ଖପଣ ଦେଖି ଦେବଲୋକେ
ଡାକି ମାତଳିକୁ କହିଲେକ ବୃନ୍ଦାରକେ ।
ନକରି ବିଳମ୍ବ ତୁହି ଏହିଲାଗେ ଯିବୁ
ଦୈତ୍ୟଙ୍କର ମୃତ୍ୟୁଭେଦ ପ୍ରଭୁଙ୍କୁ କହିବୁ ।
ଏହି ଚାରିଦୈତ୍ୟେ ତପ କଲେ ପବନକୁ
ସେ ବର ମାଗିବା କଥା କହୁଁ ଆପଣଙ୍କୁ ।
ଦେହରୁ ସେ ମାଂସ କାଟି ଅନଳେ ପକାନ୍ତେ
ତପସ୍ୟାବଳୁ କଅଁଳେ ମାଂସ ଅନୁବ୍ରତେ ।
ବରଷ ଅଶୀଏ ଯାଏ ତପ କଲେ ବସି
ତେବେ ପବନ ତାଙ୍କୁ ନଦେଲେ ଦେଖାଆସି
ପୁଣିହିଁ ସେ ମାଂସକାଟି ପକାନ୍ତେ ଅନଳେ
ଏଣେକାଟନ୍ତେ ଯେ ତେଣେ କଅଁଳେତତ୍‌କାଳେ
ଯେ ଯାହାର ମାଂସପୋଡ଼ି ଆପେ ଭୁଞ୍ଜିଦ୍ୟନ୍ତି
କେବେହେଁ ପବନଙ୍କୁ ସେ ଭେଟ ନ ପାବନ୍ତି
ମୈଥୁନ ନିଦ୍ରା ଆହାର ଦେଲେ ପୁଣି ଛାଡ଼ି
ଶୋଇଲେ ଅନଳ ଶଯ୍ୟାକରି ତହିଁ ପାଡ଼ି ।
ଉପରେ ସୂର୍ଯ୍ୟର ତେଜ ତଳେ ଅଗ୍ନିତେଜ
ଏରୂପେ କାଷ୍ଠା କରିଣ ପଡ଼ନ୍ତେ ଦନୁଜ ।
ପବନ ଦେଖିଣ ତାହା ସହି ନ ପାରିଲେ
ଦୈତ୍ୟଙ୍କ ଦେହେ ଅମୃତ ଆଣି ବରଷିଲେ
ଅମୃତ ପାଇଣ ଦୈତ୍ୟ ଉଠିଲେ ତପୁରେ
ମରୁତ ବୋଇଲେ ବର ମାଗରେ ଅସୁରେ
ମାଗିବ ତୁମ୍ଭରେ ଯାହା ଦେବଇଁ ମୁଁ ଆଜ
ଶୁଣିଣ କର ପ୍ରସାରି ଉଠିଲେ ଦନୁଜ ।
ଅସୁର ବୋଇଲେ ସ୍ୱାମୀ ଦେବୁ ଯେବେ ବର
ତୋର ଥିବାଯାକେ ଆମ୍ଭେ ହୋଇବୁ ଅମର ।
ତୁହି ମଲାଦିନ ଆମ୍ଭେ ନିଶ୍ଚୟ ମରିବୁ
ଆମ୍ଭଙ୍କୁ ତ ସ୍ୱାମୀ ଏହି ବର ଦେଇଯିବୁ ।
ଆପଣ ମଲାରୁ ମରିଯିବେ ସର୍ବଜୀବ
କାହା ନାସାରେ ପବନ ଆଉ ନ ରହିବ ।
ତୁ ମଲେ ମରିବୁ ଆମ୍ଭେ ନିଶ୍ଚେ ଏହା ଜାଣ
ଆମ୍ଭଙ୍କୁ ଯେ ଏହି ବର ଦିଅ ପଞ୍ଚପ୍ରାଣ ।
ମରୁତ ଦେବତା ଶୁଣି ଅସ୍ତୁ ଅସ୍ତୁ କଲେ
ତୁମ୍ଭଙ୍କୁ ଏ ବର ପ୍ରାପ୍ତ ହୋଇବ ବୋଇଲେ ।

ଏ ରୂପେ ବର ଦେଇଣ ଗଲେ ଅନ୍ତର୍ଦ୍ଧାନେ
ତୁ ଏବ କହ ସର୍ବତୋମୁଖ ବେନିକର୍ଣ୍ଣେ ।
ଶୁଣିଣ ମାତଳି ତାହା ଶୀଘ୍ରେ ଗଲା ଚଳି
ସର୍ବତୋମୁଖର ଆଗେ କହିଲା ଯେ ମିଳି ।
ବୋଇଲା ଶୁଣିବା ପ୍ରଭୁ ହେ ସର୍ବତୋମୁଖ
ଏ ରୂପେ କହି ପେଷିଲେ ମୋତେ ବୃନ୍ଦାରକ ।
ଦୈତ୍ୟଙ୍କର ମୃତ୍ୟୁଭେଦ ଏ ରୂପରେ ଜାଣି
ଗିଳିଲେ ସେ ପବନକୁ ମରିବେ ଏକ୍ଷଣି ।
ଏହା କହି ମାତଳି ଯେ ଗଲା ସ୍ୱର୍ଗଯାନେ
ଶୁଣିଣ ସର୍ବତୋମୁଖ ରଖିଲେ ତା ମନେ ।
ଶରୀର କୋପ ବହିଣ ଛାଡ଼ି ଘୋର ରଡ଼ି
ତହିଁର ରୂପେକ ଜାତ ହୋଇଲେ ବାଦୁଡ଼ି ।
ରଡ଼ିର ଭିତରୁ ହୁଅନ୍ତେ ସେ ଆସି ଜନ୍ମ
ଶ୍ରୀମୃଗନୃସିଂହ ବୋଲି ଦେବେ ତାର ନାମ ।
ତାହାକୁ ବୋଇଲେ ଗିଳ ତୁ ହୋ ପବନକୁ
ନ ବୁଝି କିମ୍ପା ବର ସେ ଦେଲେ ଅସୁରକୁ ।
ଦଣ୍ଡେହେଁ ପରିଯନ୍ତେ ତୁ ଗିଳି ରଖିଥିବୁ
ଦୈତ୍ୟ ମରିବା ଦେଖିଣ ତୁହି ଛାଡ଼ିଦେବୁ ।
ଶୁଣି ମୃଗନୃସିଂହ ଧାଇଁଲା କୋପଭରେ
ପଡ଼ିଲା ମରୁତପୁରେ ଯାଇଁ ଧାଡିକାରେ ।
ଦେଖିଣ ସମୀର ତହୁଁ ପଳାଇଲା ଘୁଞ୍ଚି
ବ୍ରହ୍ମାଙ୍କ ପୁରେ ପବନ ରହେ ଯାଇ ଲୁଚି ।
ବ୍ରହ୍ମାଙ୍କୁ ବୋଲେ ସମ୍ଭାଳି ଏବେ ମୋତେରଖ
ଧାଇଁଅଛି ମୃଗସିଂହ ଗିଳିବାକୁ ଦେଖ ।
କେବଣ ଦୋଷକୁ ଗିଳିବ ମୋର ଦେହ
ଗିଳିଲେ ସଂସାରେ ସର୍ବେଯିବେ ହୋଇ ମୋହ
କୀଟ ବ୍ରହ୍ମ ପରିଯନ୍ତେ ସର୍ବେ ଯିବେ ସରି
ଏଥିକି ବୁଦ୍ଧି କହିବା ମୋତେ କୁଶଧାରୀ ।
ବିଧାତା ବୋଇଲେ ତେବେ ଶୁଣ ପଞ୍ଚପ୍ରାଣ
ତୋତେ ଗିଳିଲେ ମରିବେ ଦୈତ୍ୟ ଚାରିଜଣ ।
ଆମ୍ଭେ ଏ ସଂସାରୁ ପଛେ ଦଣ୍ଡେ ଯିବୁ ମରି
ଅସୁର ମଲାରୁ ତୋତେ କାଢ଼ିବେ ଉଦଗାରି ।
ନୃସିଂହ ଗର୍ଭେ ଅସୁର ମଲାଯାଏ ଥାଅ
ତୁମ୍ଭର ଦେବାର ବର ହେବ କି ଅନ୍ୟାୟ ।
ଆପଣ ଗୋପ୍ୟ ହୋଇ ଯା ରହ ଦଣ୍ଡେ କାଣ
ଏ ରୂପେ କହି ବୋଧିଲେ ପିତା ପାଞ୍ଚପ୍ରାଣ ।
ବ୍ରହ୍ମାଙ୍କ ବାକ୍ୟରେ ଶାନ୍ତ ହେଲେ ଦିତିସୁତ
ପବନକୁ ଧରି ଗିଳି ଦେଲେକ ତୁରିତ ।
ବଦୟନ୍ତି ବେଦବ୍ରହ୍ମା ଶୁଣ ହେ ନାରଦ
ମିଳିଲେ ମୃଗନୃସିଂହ ଧରି ବନମଧ ।

ବର ଦେଇଥିବା ସକାଶରୁ ଦିତିଶିଷ୍ୟ
ଲୁଚିଣ ପଶି ରହିଲେ ଗର୍ଭେ ଅଣଚାଶ ।
ଯାହାକୁହିଁ ତିଳଚୋପା ଅଟେ ବସୁନ୍ଧରୀ
ଦେଖ ସତ୍ୟପାଳି ଲୁଚିଲେକ ଦେହ ଧରି ।
ସାକ୍ଷାତେ ସେ ବ୍ରହ୍ମରୂପ ଦିତିଦେବୀ ବଳା
ଜଳରୁ ଶତେକ ଗୁଣେ ଯାନ୍ତି ଅନ୍ତର୍ଗଳା ।
ବୁଝିଲେ ପବନ ପାଣି ଅଟନ୍ତି ସେ ଏକ
ଶୀତଳ ପାରନ୍ତି ଶାନ୍ତିକରି ପୃଥ୍ୱୀଯାକ ।
ଜଳ ପବନୁ ହୁଅନ୍ତି ପ୍ରାଣୀ ଆତଯାତ
ସେ କଥା ଚିହ୍ନି କେହି ନ ପାରେ କରିତତ୍ତ୍ୱ ।
ମାତା ରଜ ପିତା ବୀର୍ଯ୍ୟ ନୁହଇକି ଜଳ
ସେ ଜଳ ମଧ୍ୟେ ପବନ ହୁଏ ଯାଇ ଠୁଳ ।
ଅଶେଷ ବ୍ରହ୍ମାଣ୍ଡ ମଧ୍ୟେ ବାୟୁ ପୂରିଥାଇ
କୀଟ ବ୍ରହ୍ମଯାଏ ନାସା ମଧ୍ୟେ ଉଦେହୋଇ ।
ଆତ୍ମାକୁ ଭୁଞ୍ଜାଇ ପୁଣି ଭୁଞ୍ଜେ ଅନୁକ୍ଷଣେ
କରଇ ସେ ରାସକ୍ରୀଡ଼ା ହଂସ ଯୋଗଧ୍ୟାନେ ।
ପ୍ରାଣାଦି ପବନ ଘେନି ସର୍ବ ଜୀବ ହୃଦେ
ପ୍ରକାଶି ଅହୋରାତ୍ର ସେ ଚାଲେ ଏକପାଦେ ।
ସ୍ୱପ୍ନ ସୁଷୁପ୍ତି ଜାଗ୍ରତେ ପ୍ରକାଶଇ ଧ୍ୱନି
ବାସନା ଚିହ୍ନୁଥାଇ ସୁଗନ୍ଧ ଗନ୍ଧ ଚିହ୍ନି ।
ନାଭିରୁ ପ୍ରକାଶେ ନାସାପୁଟେ ରୂପଧରି
ଯୁବତୀ ପୁରୁଷଙ୍କର ନାସାରେ ବିହରି ।
ଓଁକାର ବ୍ରହ୍ମକୁ ବୋଲା ଶବ୍ଦ ଥାଇ ଟେକି
ଶିକୁଳି ଛନ୍ଦ ପ୍ରାୟ ସେ ହୁଏ ଝିଙ୍କାଝିଙ୍କି ।
ଦେଢ଼େଇ ଅଢ଼େଇ ହୋଇ ଚାଲେ ଏକଘଟେ
ତରୁଣ ବୃଦ୍ଧ ବାଳକ ଯୁବା ନାସାପୁଟେ ।
ମନେ କଲେ ମାରଇ ସେ ଗୋଟି ତିନିପୁର
ଏଡ଼େ ପୁରୁଷ କଶ୍ୟପ ଋଷିର କୁମର ।
ସେ ମହାପୁରୁଷ ବର ଦେବାର ସତ୍ୟରେ
ଲୁଚି ରହିଲେ ଗର୍ଭରେ ପର ଉପକାରେ ।
ଶୁଣି ନାରଦ କହନ୍ତି ପୁଣି ବେଦବର
ପବନ ନ ବହନ୍ତେ ନିର୍ଜୀବ ହେଲେ ନର ।
ଯାଦବ ଜୀବ ପଡ଼ିଲେ ପୁଣ କାଣ ଢଳି
ଭୂମିରେ ମୋହ ଯାଇଣ ନ ପାରିଲେ ଚଳି ।
ନିର୍ଜୀବ ହୁଅନ୍ତେ ସର୍ବେ ନିର୍ଜୀବ ସେ ହେଲେ
ଏଥିଉତ୍ତାରେ କହିବା ବାଣୀ ଶୁଣ ଭଲେ ।
ଦୈତ୍ୟ ନିର୍ଜୀବ ହୁଅନ୍ତେ ସର୍ବମୁଖ ଉଠି
କରେ ବଜ୍ରଶରକୁ ସେ ଧରି ଦେଲେ ପିଟି ।
ବାଜନ୍ତେ ସେ ଶର ଦୈତ୍ୟ ପଡ଼ିଲାକ ଢଳି
ରକତ ଉଦ୍‌ଗାରି ମଲେ ଦୈତ୍ୟ ବୀରଚାରି ।

ଶୁଣିଣ ନାଦର ଋଷି ମନେ କଲେ ଶଙ୍କା
ବୋଲନ୍ତି ଏ ସନ୍ଧି କହିବାକୁ ସ୍ୱାମୀ ଏକା ।
ସଂସାରେ ଢଳି ପଡ଼ିଲେ ସମସ୍ତ ଯେ ଜୀବ
ନୃସିଂହଗଣ କିମ୍ପାଇଁ ନୋହିଲେ ନିର୍ଜୀବ ।
ଧାତା ବୋଇଲେ ହୋ ଶୁଣ ତେତେ ବ୍ରହ୍ମଦ୍ୱିଜ
ଅଟନ୍ତି ନୃସିଂହଗଣ ଅଯୋନି ଆତ୍ମଜ ।
ଯୋନି ସମ୍ଭୁତ ଯେତେକ ଗଲେ ମୋହହୋଇ
ଅଯୋନି ସମ୍ଭୁତ ରହିଗଲେ ମୋହନୋହି ।
ଶୁଣିଅଛି ପବନକୁ ଗିଳିଲେ ନୃସିଂହ
ଯେ ପବନ ଭକ୍ଷଇ ସେ ନିଷ୍ଟେ ବ୍ରହ୍ମଅଙ୍ଗ ।
ପବନକୁ ଗିଳି ଯେହୁ ପାରଇ ସଂସାରେ
ସେ ପ୍ରାଣୀକୁ ରୋଗ ଘୋଟି କେବେ ହେଁ ନ ପାରେ
ନୃସିଂହଗଣ ନିର୍ଜୀବ କିମ୍ପା ହୋନ୍ତେ ପୁଣି
ଦଇତ୍ୟେଚ ଏହିବର ମାଗିଥିଲେ ପୁଣି ।
ପବନଗୋପନ ନୋହିଲେ ମାରନ୍ତେ କି ଦୈତ୍ୟ
ଆବର କହିବା ସନ୍ଧିକଥା ଶୁଣ ତୋତେ ।
ପବନ ଧାରଣ ହୋଇଥିଲେ ଯେତେ ପୁଣ
ସେମାନେ ମୋହରେ ପଡ଼ି ନାହାନ୍ତିଟି ଜାଣ ।
ବ୍ରହ୍ମଜ୍ଞାନୀମାନେ ପୁଣି ନୋହିଲେକ ମୋହୀ
ଆତ୍ମଜ୍ଞାନୀମାନେ ସେହିରୂପେ ଛନ୍ତି ରହି ।
ଯୋଗେନ୍ଦ୍ର ପୁରୁଷ ଯେତେ ଥିଲେ ପୁଣି ଜାଣ
ସେମାନେ ତ ମୋହପାଇଁ ନାହାନ୍ତି ହୋ ପୁଣ ।
ବୁଝିଲେ ଋଷିଗଣେ ତ ବ୍ରାହ୍ମଣ ପୁରୁଷେ
ତାହାଙ୍କ ନିଃଶ୍ୱାସ ଗୋଟି ପ୍ରାଣୀଙ୍କ ବରଷେ ।
ତେଣୁକରି ଋଷିମାନେ ନ ହୋଇଲେ ମୋହି
ଷାଠିଏ ଲିତାରେ ସିନାଦଣ୍ଡେ ବୋଲି କହି ।
ତେଣୁ ସେହି ଋଷିମାନେ ସଂସାରେ ସଜୀବ
ଶୁଣହେ ନାରଦ ଋଷି କହନ୍ତି ଦଇବ ।
ଦେହ ବହି ଯେତେ ଜୀବ ଅଛନ୍ତି ବ୍ରହ୍ମାଣ୍ଡେ
ସେମାନେ ମୋହି ପଡ଼ିଲେ ମାତ୍ରକ ସେ ଦଣ୍ଡେ ।
ନାରଦ ଶୁଣିଣ ତାହା ହୋଇଲେ ସନ୍ତୋଷ
ବୋଇଲେ ପବନ କଥା କହ ଏବେ ରସ ।
ମରୁତର ମୃଗସିଂହ କାଢ଼ିବେ କିପରି
ଏକଥା କହ ଆଗେ ଶୁଣିବା ବିସ୍ତାରି ।
ଧାତା ବୋଇଲେ ନୃସିଂହ ଗ୍ରନ୍ଥ ତେବେ ଶୁଣ
ପ୍ରାଣ ପୁରୁଷେ ପ୍ରକାଶ ହେଲେ ଯେମନ୍ତେଣ ।
ସେ ଚାରି ଦୈତ୍ୟଙ୍କ ମୃତ୍ୟୁ ଦେଖିଣ ନୃସିଂହ
ବୋଇଲେ ମୃଗସିଂହକୁ ବାୟୁ କାଢ଼ବେଗେ ।
ସଂସାରେ ଜୀବଯାକ ତ ପଡ଼ିଛନ୍ତି ମୋହେ
ପବନ ବହିଲେ ଜୀଇଁ ଉଠିବେ ସଭିଏଁ ।
ଆବର ଯାଚି ଦେଉଛୁ ତୋତେ ନିଅ ବର
ଆମ୍ଭର ବୋଲ ପାଳି ଯେ ଗିଳିଲୁ ସମୀର ।
ଏଥକୁ କହୁଛୁ ତୋତେ ଶୁଣ ମୃଗସିଂହ
ଚାରିଯୁଗେ ମୃଗ ହୋଇଥିବୁ ବହି ଅଙ୍ଗ ।
ପବନମଧ ଯେ ସାହା ହେବେ ଜାଣ ତୋତେ
ଚାଲୁଥିବୁ ପବନର ପରି ତୁହି ନିତ୍ୟେ ।
ପଳାଇଲେ ଦଶହାତେ ଯାଇ ଉଭା ହେବୁ
ପବନବଳେ ଗମିବୁ ପବନ ଭକ୍ଷିବୁ ।
ମୃଗନାଭି ବହିଣ ଯେ ଜନ୍ମିବୁ ଆପଦେ
ମୃଗେନ୍ଦ୍ର ବୋଲି ତୋ ନାମ ରହୁ ବେଦେ ।
ସିଂହ ମୃଗେନ୍ଦ୍ର ପଞ୍ଚାସ୍ୟ ହର୍ଯ୍ୟକ୍ଷ କେଶରୀ
ଏଣେ ନୃସିଂହ ନାମକୁ ବହି ଅବତରି ।
ଆଜ୍ଞାପାଇ ମୃଗସିଂହ କର ବେନି ଯୋଡ଼ି
ନୃସିଂହ ବାକ୍ୟେ ପବନ ଗର୍ଭୁ ଦେଲା ଛାଡ଼ି ।
ବହିଲା ନାସିକା ଦ୍ୱାରେ ଅଣଚାଶ ପେଲି
କ୍ଷଣକେ ବ୍ୟାପି ସଂସାରଯାକ ଗଲା ବୁଲି ।
ବହି ମଳୟ ପବନ ବାଜି ସବୁଠାରେ
ପୂରିଣ ଆକାଶଯାକ ରହିଲା ପୃଥ୍ୱୀରେ ।
ଜୀବାଦି କରି ଯେତେକ ପଡ଼ିଥିଲେ ମୋହେ
ସେ ଜୀବପାଇ ଉଠିଲେ ଯେ ଯାହାର ଦେହେ ।
ଏଥିଉତ୍ତାରେ ଜାଣ ଏ ପୁଣ ମୃଗସିଂହ
ସର୍ବତୋମୁଖ ପ୍ରଭୁଙ୍କୁ ମାଗେ ବର ଦିଅ ।
ବୋଇଲାକ ପବନକୁ ଗିଳିଦେଲି ମୁହିଁ
ତହିଁକି ମୋହର ସିଦ୍ଧ କଥା ଯାଅ ଥୋଇ ।
ନୃସିଂହ ସର୍ବେତୋମୁଖେ ଆଛା ବୋଲି ପାଞ୍ଚି
କଥାନ୍ତେ ସିଦ୍ଧାନ୍ତ କରି ଦେଲେ ପୁଣି ଯୋଚି ।
ବୋଇଲେ ମୁଖେ ଗିଳିଲୁ ଯେଣୁ ପବନକୁ
ସେ କଥାକୁ ତତ୍ତ୍ୱକରି କହିବା ତୁମ୍ଭଙ୍କୁ ।
ଘାଉଆ ଘାଆ ଯେ ଫୁଙ୍କିଦେଲେ ଯିବ ଉଡ଼ି
ନ ଫୁଙ୍କି ରାଉଳ କେହ୍ନେ ବିଷଦେବେ କାଢ଼ି ।
ପବନ ତୋହର ଘେନି ପଶୁ ସର୍ବମୁଖେ
କୀଟୁଁ ବ୍ରହ୍ମ ପରିଯନ୍ତେ ଯେତେଛନ୍ତି ଲୋକ ।
ଆବର କଥାଏ ମଧ କହିଥିବା ସିଦ୍ଧି
ପବନକୁ ଦଣ୍ଡେ ଯାଏ ଗିଳିଦେଲୁ ଯଦି ।
ସେହୁ ଦଣ୍ଡକଟି ଜାଣ ସର୍ବଦିନେ ନିତ୍ୟ
ଦଣ୍ଡକ ନିଶ୍ଚଳ ହୋଇ ନ ବହିବ ବାତ ।
ଭୁଞ୍ଜିବେ ରାନ୍ଧିଣ କରୁ ସବୁ ପାକଶାନ୍ତି
ପବନ ଛବିର ଏକା ଯୋଗୀଏ ଜାଣନ୍ତି ।
ଶୁଣ ହେ ନାରଦ ଋଷି କହନ୍ତି ଯେ ବ୍ରହ୍ମା
ଇତି ଶ୍ରୀ ନୃସିଂହ ଗ୍ରନ୍ଥ ପୁରାଣ ମହିମା ।

ଯେ ଜନ ସଙ୍କଳ୍ପ କରି ଶୁଣେ ବସି ମୁଖେ
ତା ବଂଶ ବୃଦ୍ଧି କଥା କେ କହିପାରେ ମୁଖେ ।
ସନ୍ତାପ ବିପତ୍ତି ରୋଗ ନ ପଶେ ତା ଗୃହେ
ଚଳିଯାନ୍ତି ବୈକୁଣ୍ଠକୁ ଶ୍ରୋତାବକ୍ତା ଦୁହେଁ ।
ଶୁଣ ହେ ନାରଦ ଏହି ଯୁଦ୍ଧର ବାରତା
କହିବାକୁ ଅଲୋକିତ ଏହି ଗ୍ରନ୍ଥ କଥା ।
ସର୍ବତୋମୁଖି ପ୍ରଭୁ ଯେ ମାରି ଚାରିଦୈତ୍ୟ
ତାଙ୍କ ମୂଳେ ସୈନ୍ୟ ଥିଲେ ଚାଳିଶ ମର୍ଭୂତ ।
ମାଇଲେ ନୃସିଂହଗଣ ଉଠି ଯେଝାମତେ
ଜଣେ ଜଣେ ଗଲେମାରି ଦୈତ୍ୟ ଶତେଶତେ ।
ସଂଗ୍ରାମ ମଧ୍ୟରେ ପଶି ପିଟନ୍ତେ ଦରାଣ୍ଡି
କାହାର ଝିଡ଼ଇ ଦେହ କାରେ ଛିଡ଼େ ଗଣ୍ଡି ।
କାହାର ଭାଜଇ କଟୀ କାର ଭାଙ୍ଗେ ବୁକୁ
କାହାର ବେକକୁ ମୋଡ଼ି ଫିଙ୍ଗନ୍ତି ଅବ୍‌ଧିକୁ ।
କାହାକୁ ମାରି ବିଧାଏ କାହାକୁଟି ମୁଥେ
ଉଡ଼ାନ୍ତି କାହାକୁ ଧୂଳି କରି ଗଦାଘାତେ ।
କାହାକୁ ଧରିଣ ଚିରି ଦ୍ୟନ୍ତି ବେନିଫାଳେ
କାହାକୁ ଛେଚି ଫିଙ୍ଗନ୍ତି କୋପେ ଅନ୍ତରାଳେ ।
କାହାର କାଢ଼ନ୍ତି ପେଟ ଚିରି ଅନ୍ତମାଳା
କାହାକୁ ଆଖି ତାଡ଼ିଣ ଛେଚନ୍ତି ସେ ଡୋଳ ।
କାହାକୁ ମୁଥ ମାରିଣ ପିଟନ୍ତି କା ମୁଣ୍ଡ
କାହା ଦାନ୍ତ ଉପାଡ଼ିଣ କରି ଖଣ୍ଡ ଖଣ୍ଡ ।
କାହାକୁ ମାଡ଼ିଣ ଛେଚିଦ୍ୟନ୍ତି ଧରି ଗୋଡେ
କାହାକୁ ବୁଲାଇ କେହୁ ଗିରିଖୋଲେ ମାଡ଼େ ।
ନୃସିଂହ ବୋଇଲେ ଏବେ ଦେଖିଲି କି ମାଏ
ଅସୁରମାନଙ୍କୁ ଦେଖି ଡରୁଥିବ ଦୁହେଁ ।
ଦେଖ ଏ ଅସୁର ମଡା ଛନ୍ତି ଯେତେ ପଡ଼ି
କୃତିହା ପୁରୁଷ ସମସ୍ତଙ୍କୁ ଦେବେ ପୋଡ଼ି ।
ଏ ରୂପେ କହି ଚିନ୍ତନ୍ତେ ପ୍ରଭୁ କୃତିହାକୁ
ତକ୍ଷଣେ ମିଳିଲେ ଆସି ଧରି ରୂପଯାଙ୍କୁ ।
କୃତିହା ଅଥର୍ବ ବେଦ ମଧ୍ୟରୁ ଜନମି
ନୃସିଂହ ଛାମୁରେ ଆସି ହେଲେ ପରଣାମି ।
ପ୍ରତ୍ୟକ୍ଷେ ବ୍ରହ୍ମଅଗ୍ନି ସେ ଅଟନ୍ତି କୃତିହା
କାଳାନଳ ରୂପଧରି ହେଲେ ଆଗେ ଠିଆ ।
ପଞ୍ଚଦଶ ରୂପଧରି ଟେକି ଅଗ୍ନିଶିଖା
ଆକାଶ ପର୍ଯ୍ୟନ୍ତ ବଢ଼ି ପ୍ରକାଶିଲେ ଏକା ।
ବେନିଶିର ତିନିଶିର ଚତୁଃଶିର ହୋଇ
ପଞ୍ଚ ଷଷ୍ଠ ସପ୍ତ ଅଷ୍ଟ ନବରୂପ ବହି ।
ଦଶ ଏକାଦଶ ଯେ ଦ୍ୱାଦଶ ତ୍ରୟୋଦଶେ
ଚତୁର୍ଦ୍ଦଶ ପଞ୍ଚଦଶ ଶିଖା ପରକାଶ ।

ଘୋର ଗର୍ଜନ କରିଣ ଫୁଫୁକାର ନାଦେ
କାଳାନଳ ରୂପଗୋଟି ପ୍ରକାଶିଲେ ହ୍ରଦେ ।
ନୃସିଂହ କହିଲେ ଶୁଣ ହେ ଅଥର୍ବବେଦୀ
ଏହି ସୈନ୍ୟ ମଡାଯାକ ପାଦେ ଦିଅ ମର୍ଦ୍ଦି ।
ଆମ୍ଭ ପିତା ମାତା ଦେଖୁଥାନ୍ତୁ ବେନିଡୋଳେ
ଅସୁର ଭସ୍ମ ହୁଅନ୍ତୁ ପଡ଼ି କ୍ରୋଟାନଳେ ।
ଶ୍ରୀଆଜ୍ଞା ପାଇ କୃତିହା ଗଲା କୋପେ ଗର୍ଜି
ଅସୁରଙ୍କ ମଡ଼ାଯାକ ପୋଡ଼େ ଖୋଜି ଖୋଜି
କୋଡ଼ିଏ ଯୁଣ ପର୍ଯ୍ୟନ୍ତେ ପଡ଼ିଥିଲେ ମଡ଼ା
ଘଡ଼ିକ ମଧ୍ୟେ ଅନଳେ ହୋଇଗଲେ ପୋଡ଼ା ।
ତାହା ଦେଖି ଭଗବତୀ ହେଲେ ଆଚମ୍ଭିତ
ବୋଇଲେ ଏ ନୃସିଂହର ମାୟା ବିପରୀତ ।
ପ୍ରତ୍ୟକ୍ଷରେ ଭଗବାନ ଜନ୍ମିଛି ମୋ କୋଳେ
ମୁଁ ମୂଢ଼ପାମରୀ ଯେ ନ ଚିହ୍ନି ବେନିଡୋଳେ ।
ବାଳୁତ ପରାୟେ ଧରି ଖେଳାଏ ମୁଁ ଗୋଡ଼େ
ଶେଯେ ଶୋଇଥିଲେ ଝୁଣ୍ଟି ଅଙ୍ଗକୁ ଆବୋଡେ ।
ଡ଼ାକଇ ତୁକାର କରି ଆରେ ଆରେ ବୋଲି
ପିଟିଥାଇ ଛାଟଧରି ଘରୁ ଗଲେ ବୁଲି ।
ବାଳକ ପ୍ରାୟେ ମଣି ମୁଁ ଥାଏ ଅନୁବ୍ରତେ
ଲାଟ ପ୍ରାୟେକ ଡିଆଇଁ ଗୋଡ଼ରେ ନିରତେ ।
ସାକ୍ଷାତରେ ସ୍ୱଂୟବ୍ରହ୍ମ ଯେଉଁ ନାରାୟଣ
ଯୁଝନ୍ତି ଯଦ୍ୟପି ହୋଇ ଶ୍ରୀନୃସିଂହଗଣ ।
ଏକା ଦେବଗୋଟି ବ୍ରହ୍ମ ସବୁଠାରେ ସାଜେ
ପାତ୍ରାନୁସାରେ ରହିଣ ଭିନ୍ନେ ଭିନ୍ନେ ବିଜେ ।
କୀଟରୁ ବ୍ରହ୍ମଯାଏ ଶ୍ରୀହରି ଆତ୍ମା ସଖା
ହକାରରୂପେ ବସି ସକାରଧାମେ ଟେକା ।
ସେ ହକାର ସକାର ଯେ ଜାଣ ପରଂବ୍ରହ୍ମ
କରନ୍ତି ଅନେକ ରୂପେ ଜନ୍ମି ନାନା କର୍ମ ।
ମୈଥୁନ ଯୋଗରେ ରୋଗ ଆଣିଥାନ୍ତି ଯାହା
ବୀର୍ଯ୍ୟରୁ ଜନମି ଖେଳେ ଲଭଇଟି ତାହା ।
ଖଞ୍ଜିଛି ବାସ୍ତରୀସସ୍ର ନାଡ଼ୀ ସର୍ବଦେହେ
ଶରୀର ଜଡ଼ିଛି ଉର୍ଦ୍ଧନାଭି ସୂତ୍ରପ୍ରାୟେ ।
ଶରୀରରେ ଷଡ଼ଚକ୍ର ଅଟଇ ବଇଠି
ଇଅଁଳା ପିଅଁଳା ଶିଶୁମୁନା ଧାରୀ ଫୁଟି ।
ତିନି ତିହୁଡ଼ି ତ୍ରିକୁଟ ତ୍ରିମୁନାର ସନ୍ଧି
ତହିଁ ମଧ୍ୟେ ସେ ଓଁକାର ବ୍ରହ୍ମଅଛି ବାନ୍ଧି ।
ଶଙ୍ଖାକ୍ଷି ନାମରେ କ୍ଷେପି ଜୀବ ବ୍ରହ୍ମଜ୍ଞାନ
ଦେଖିବ ଆତ୍ମା ଉଦୟ ସ୍ଥାନେ ହଂସବର୍ଣ୍ଣ ।
ତହିଁ ଶିଖେ ଧାରଣ ଅମର ସରୋବର
ରେଚକ ପୁରକ କୁମ୍ଭକ ଯେ ସୂତ୍ରଧାର ।

ତ୍ରିବେଣୀ ସଙ୍ଗମ ଗଙ୍ଗା ହୋଏ ନିତ୍ୟ ତହିଁ
ସେଠାରୁ ଉଚ୍ଛୁଳେ ଝରେ ମହାରସ ବହି ।
ସେ ଝର ଯଦ୍ୟପି ଟେକ ରଖିପାରେ ପ୍ରାଣୀ
ପୂର୍ବର ନଦୀ ପଶ୍ଚିମେ ବୁହାଇବ ଆଣି ।
ତେବେ ଯାଇ ସେ ଆତ୍ମାକୁ ଦେହ ଚିହ୍ନିପାରେ
ଜୀବ ପରମଲୀଳା ଯେ ପ୍ରକାଶ ସେଠାରେ ।
ସକଳ ଆତ୍ମାଯୋଗକୁ ମଣେ ଏକପ୍ରାୟେ
ଆତ୍ମାରୂପେ ରାମ ନାମ ସ୍ଥିର ସର୍ବଦେହେ ।
ଉଲଟ ପାଦପ ଏହୁ ବାୟୁ ସୂତ୍ର ଚଳି
କରନ୍ତି ହଂସ ହଂସିନୀ ବେନି ବୃକ୍ଷେ କେଳି ।
ହଂସ ଅଣ୍ଡିର ଅଟଇ ହଂସିନୀ ଯେ ମାଈ
ପାଦକୁ ପାଦ ଛନ୍ଦିଣ ଉଦେ ହେଉଥାଇ ।
ହଂସିନୀକି ଧରି ହଂସ କରେ ନିତ୍ୟ ଲୀଳା
ରାସେ ମତାଇ ଲଗାଇ ଥାଏ ପଞ୍ଚକଳା ।
ହଂସିନୀକି ଘେନି ହଂସ ଚାଲେ ଯେଉଁବାଟେ
ଜ୍ଞାନୀକି ସୁଗମ୍ୟ ଏକା ଅଟେ ସର୍ବଘଟେ ।
ଏହା ମୁଁ ଚିହ୍ନି ପାରନ୍ତେ ଯେବେ ସର୍ବପ୍ରାଣୀ
ଏହି ଏକା ବ୍ରହ୍ମା ବୋଲି ତରନ୍ତେ ସେ କ୍ଷଣି ।
ଅଣହେତୁ ସକାଶରୁ ଆତ୍ମାକୁ ନ ଚିହ୍ନି
ଗୁରୁ ନ କହନ୍ତେ ଏହା ନ ପାରେକେ ଚିହ୍ନି ।
ସାକ୍ଷାତରେ ବ୍ରହ୍ମରାଶି ଯେଉଁ ଭଗବାନ
ପୁତ୍ର କରି ତାହାକୁ ମୁଁ ପାଳେ ପ୍ରତିଦିନ ।
ଏମନ୍ତ ବୋଲି ଚିହ୍ନନ୍ତେ ମାଏ ହୃଦଗତେ
ସେ କଥାକୁ ଅନ୍ତର୍ଯ୍ୟାମୀ ଜାଣିଲେ ସାକ୍ଷାତେ ।
ଜନନୀ ଅଙ୍ଗେ ଲଗାଇ ଦେଲେ ମାୟା ଆଣି
କହନ୍ତି ବିଧାତା ଶୁଣ ହେ ନାରଦ ମୁନି ।
ଗୋବିନ୍ଦ ମାୟାରେ ପଡ଼ି ଭଗବତୀ ମାଏ
ଶେଷଦେବ ଲୋଡ଼ି କାନ୍ଦି କାନ୍ଦି ଅପ୍ରମୟେ ।
ବୋଇଲେ ମୁହିଁ ପାମର କଲି କେଉଁ ସଧ
ଅଖଡ଼େ ପୁତ୍ରଙ୍କୁ ଆସି ପଡ଼ିଲା ପ୍ରମାଦ ।
କି ରୂପେ କରିବେ ପାରି ଏଥୁ ଜଗନ୍ନାଥ
ମୋ ଶେଷଦେବଙ୍କୁ ଘେନି ଗଲା କେଉଁ ପଥ ।
ଶୁଣ ହେ ନାରଦ ଏହା ଗୋବିନ୍ଦର ମାୟା
ତହୁଁ ଉବୁରି ନାହାନ୍ତି ଧରି କେହି କାୟା ।
ଯେବେଣ ମାୟାରେ ଭ୍ରମିଛନ୍ତି ଉମାସାଇଁ
ଏ କିମ୍ପାଇଁ ନ ଭୁଲିବେ ନରଦେହ ବହି ।
ଜୟ ଜୟ ମାୟାଧର ସଂସାର ତୋ ଖେଳ
ବଡ଼କୁ ତୁ ସାନ କରୁ ସାନେ କରୁ ବଡ଼ ।
ମୁହିଁ ଯେ ଅଟଇ ମୂର୍ଖ ପୁଣି ଅପଣ୍ଡିତ
ଦୀନ ଦୁଃଖୀଯାକେ ଦୁଃଖ ଅଟେ ଅପ୍ରମିତ ।

ନ ଜାଣଇ ଜନ୍ମକାଳୁ ଅକ୍ଷର ଯେ ଲେଖି
ଏହୁ ପାରେ କି ପୁରାଣ ପଦମାନ ଦେଖି ।
ପଣ୍ଡିତ ସଭାରେ ମୁହିଁ ଦିନେ ନାହିଁ ବସି
କେବଳ ଯଜୁର୍ବେଦୀ ମୁଁ ଅଟେ ବିପ୍ରବଂଶୀ ।
ସନ୍ଧ୍ୟା ପଠନ ଆଚାରୀ ଯେବେଣ ବ୍ରାହ୍ମଣ
ସେହି ସୁବେଦୀ ବ୍ରାହ୍ମଣ ଅଟେ ମୁଁ ପ୍ରମାଣ ।
ଚାରି ବ୍ରାହ୍ମଣ ମଧ୍ୟରୁ ଅଟେ ଜଣେ ଲେଖା
ଚତୁଃସମ୍ପ୍ରଦା ଗାୟତ୍ରୀ ଭଜନ ମୋ ଏକା ।
ତ୍ରିପାଦ ଗାୟତ୍ରୀ ଭଜୁଥାନ୍ତି ବିପ୍ରେ ପୁଣି
ଚତୁଃସମ୍ପ୍ରଦା ଗାୟତ୍ରୀ ନ ପାରେ କେ ଜାଣି ।
ନୃସିଂହ ପୁରାଣ ପଞ୍ଚଦଶସସ୍ର ଶ୍ଲୋକ
ସେହି ଅର୍ଥ କହିବାକୁ ମୁହିଁ କିବା ଲୋକ ।
ମୁହିଁ ମୂର୍ଖ ଅପଣ୍ଡିତ ଅଟଇ ଅଜ୍ଞାନ
ଶାରଦା ରାତ୍ରରେ ମୋତେ ହୋଇଲେ ପ୍ରସନ୍ନ ।
ବୋଇଲେକ ଆରେ ପୁତ୍ର ଉଠ ତୁହି ବେଗେ
ନୃସିଂହ ପୁରାଣ ଅର୍ଥ ଲେଖ ଶାସ୍ତ୍ରମାର୍ଗେ ।
ଏ ରୂପେ କହୁ ଦେଖନ୍ତେ ମାତା ନିଜ ଗାତ୍ର
କଲି ମୁହିଁ ପ୍ରତିକ୍ଷଣ ଯୋଡ଼ି କରପତ୍ର ।
ବୋଇଲି ମାତା ମୋହର ନାହିଁ ଗ୍ରନ୍ଥପଢ଼ା
ପ୍ରଥମେ ସିଦ୍ଧରସ୍ତୁ ନ ଜାଣେ ଲେଖି ବେଢ଼ା ।
ଏ ଯେଉଁ ପୁରାଣ ସାମବେଦରୁ ଉକତ
କି ରୂପେ ଲେଖିବି ତାହା କରି ପରାକୃତ ।
ଶାରଦା ବୋଇଲେ ନକର ତୁ ମନଶଙ୍କା
ମୋ ଆଜ୍ଞା ପ୍ରମାଣେ ଲେଖ ଏ ଗ୍ରନ୍ଥ ତୁ ଏକା ।
ତୁହି ମୋହର ପ୍ରତ୍ୟକ୍ଷେ ପୁତ୍ର ଅଟୁ ଜାଣ
ଆଜକୁ ହେଲାଣି ଷଷ୍ଠଜନ୍ମ ତୋର ପୁଣ ।
ଜନ୍ମେକ ପୁରାଣେ ଯାଉଅଛୁ ଜାଣ ଦେଖି
ଏଥକୁ ନ ଡର ହେଉଅଛୁ ଆମ୍ଭେ ସାକ୍ଷୀ ।
ତୋ ଜନ୍ମଯାକ ସମସ୍ତ ଆମ୍ଭେ ଜାଣିଅଛୁ
ଶତେ ଜନ୍ମଯାଏ ଆମ୍ଭ ଗର୍ଭୁ ପ୍ରକାଶିଛୁ ।
ସେହିଠାରୁ ତୋର ନାମ ହେଲା କାଳିଦାସ
ରଘୁ ମହାବାକ୍ୟ ତୁହି କରିଛୁ ପ୍ରକାଶ ।
ନରଜନ୍ମ ହେବାରୁ ତୁ ଦେଉଛୁ ପାଶୋରି
ଆମ୍ଭେ ଏକା କହୁଅଛୁ ପ୍ରଘଟ ଯେ କରି ।
ଆମ୍ଭ କୃପାରୁ କାରେଣି ତୋର ସିନା ଏଡ଼େ
ଏ ଜନ୍ମେ ମୂର୍ଖ କିମ୍ପାଇ ହୁଅନ୍ତୁ ସମ୍ଭୂଢ଼େ ।
ତୁ ନାହିଁ ବୋଇଲେ ମୁହିଁ ଛାଡ଼ିବି କି ତୋତେ
ଯହିଁ ବସିଲେ ଲେଖାଉ ଥିବି ତୋର ହସ୍ତେ ।
ଏ କଥାକୁ ଶୁଣି ହାସ କରିବେ ଯେ ଜନ
ବୁଝିବେ ତାହାର ଅଭିପ୍ରାୟ ଭଗବାନ ।

ଜୀବର ଜନମ ପଥ ଶୁଣ ଅନୁକ୍ରମେ
ଜନ୍ମ ହୋଇଲେ ମରଇ ଯେତି ପୁଣି ଜନ୍ମେ ।
ବେନି ପଥ ସାଧଇ ଯେ ଜୀବ ଅନୁବ୍ରତେ
ଜୀବନ ସାଧନା ଜାଣ କହିଲୁଟି ତୋତେ ।
ଏହିରୂପେ କହିଗଲେ ମୋତେ ସେହି ଦେବୀ
ତେଣୁ ମୁହିଁ ପଦ ବାନ୍ଧି ଲେଖେ ଭାବି ଭାବି ।
ଏଣୁ ସାଧୁଜନେ ମୋତେ ବୋଲୁଛନ୍ତି କବି
ଜନମକେ ଲୀଳାଟିଏ ଲେଖେ ବିଷ୍ଣୁ ଭାବି ।
ଅଭିସାରିକା ଜ୍ଞାନ ମୁଁ ଅର୍ଜି ପୂର୍ବ ଜନ୍ମେ
ଜନ୍ମିଲି ଭାରତ ଖଣ୍ଡେ ଏହି ଜମ୍ବୁଦ୍ୱୀପେ ।
ଋଷିକୁଲ୍ୟା ନଦୀତୀରେ ଅଟେ ମୋର ମଠ
ପିତୃ ପିତାମାତା ଗଲେ ଏଥି ସାତପାଟ ।
ସୁଜନ ସାଧୁଙ୍କୁ ସେବି ମୁହିଁ ତହିଁ ରହି
ବୁଝିଲେତ ମୋର କ୍ଷେତ୍ର ପ୍ରଭୁ ଭାବଗ୍ରାହୀ ।
ଦାତା ଦେଲେ ଅନ୍ନ ମୁହିଁ କରେ ଗ୍ରାସନିତ୍ୟେ
ଜୀବନକୁ ଭୁଞ୍ଜାଇ ଭୁଞ୍ଜୁଥାଇ ଅନୁବ୍ରତେ ।
ଏକୋଇଶସହସ୍ର ଛଅଶତ ଭଜେ ନିତି
କ୍ଷଣେନାହିଁ ଅବସରେ ଦିବା ଘୋରରାତି ।
ସବୁଜୀବ ହୃଦେ ଏହିପରି ଜପ ହୁଏ
ଏହା ନ ଚିହ୍ନି ବିଷୟ ପ୍ରାଣୀ କରୁଥାଏ ।
ଏ ଜପ ଯାର ଛିଡ଼େ ସେ କରେ ପ୍ରାଣତ୍ୟାଗ
ତାହାକୁ ରଖି କେହୁ ନ ପାରେ ତିନିସ୍ୱର୍ଗ ।
ଏ ରୂପେ ହୃଦରେ ନାରାୟଣ ଜପକରି
ସକଳ ଘଟେ ବ୍ରାହ୍ମଣଯାକେ ଛନ୍ତି ପୂରି ।
ହେ ସାଧୁଜନେ ଶୁଣ ନକର ମୋତେ ହାସ୍ୟ
ତୁମ୍ଭର ପାଦେ ଶରଣ ପୀତାମ୍ବର ଦାସ ।



## ଦାରୁଣ ବଧ

ଏଥିଉତ୍ତାରେଟି ପୁଣି ନାରଦ ଯେ ମୁନି
ପିତାଙ୍କ ପାଦେ ନମିଣ କରନ୍ତି ଦଇନୀ ।
ବୋଲନ୍ତି କହନ୍ତୁ ଶେଷଦେବଙ୍କର କଥା
ଦାରୁଣଙ୍କ ବ୍ରହ୍ମଶକ୍ତି ଗଲା ଯେବେ ବୃଥା ।
ତହିଁ ଉତ୍ତାରେ କି ରୂପେ ଶେଷ କଲେ ଯୁଦ୍ଧ
ଅସୁର ସୈନ୍ୟଙ୍କୁ କଲେ କି ରୂପେ ସେ ବଧ ।
ସେଠାରୁ ପ୍ରସଙ୍ଗ ମୋତେ କହିବା ଯେ ହେଉ
ଶୁଣିଣ ହସି କହନ୍ତି ତାଙ୍କ ଅଷ୍ଟବାହୁ ।
ବ୍ରହ୍ମା ବୋଇଲେକ ତେବେ ଶୁଣ ହେ ନାରଦ
ଦଶଅବତାରୁ ଏ ନୃସିଂହ ଜନ୍ମ ଆଦ୍ୟ ।
ନୃସିଂହ ପୁରାଣ ସବୁ ଗ୍ରନ୍ଥ ପ୍ରକାଶିଲା
ଆଦ୍ୟ ସତ୍ୟଯୁଗର ଏ ଅଟେ ଗ୍ରନ୍ଥଲୀଳା ।

ଅଦୃଷ୍ଟ ଅଶ୍ରୁତ ଏ ଅପୂର୍ବ ରସବାଣୀ
ନାରଦ ଋଷିଙ୍କୁ କହୁଛନ୍ତି କୁଶପାଣି ।
ଯେ କାଳେ ଦାରୁଣ ପେଷିଦେଲା ବ୍ରହ୍ମଶକ୍ତି
ସେହିଠାରୁ ପ୍ରାଣ ତାର ହେଲା ବିନଶ୍ୟତି ।
ଯେତେ ବେଳେ ରଥୁ ଝିଙ୍କି ନେଲେ ଦାରୁଣକୁ
କେଶଧରି ଶେଷେ ଫିଙ୍ଗି ଦେଲେ ଉପରକୁ ।
ଅର୍ଦ୍ଧ ଆକାଶ ପର୍ଯ୍ୟନ୍ତ ଗଲା ଦୈତ୍ୟ କ୍ଷେପି
ଶୂନ୍ୟରେ ଧାଇଁ ଧରନ୍ତେ ଦେବତାଙ୍କୁ ଝିଙ୍କି ।
ତାହାକୁ ଧରିଣ କେହି ନ ପାରିଲେ ତହିଁ
କରକା ବୃଷ୍ଟି ପ୍ରାୟେ ସେ ପାଡ଼ିଲାକ ମହୀ ।
ଭୂମିରେ ପଡ଼ନ୍ତେ ପଡ଼ିଲାକ ଘୋର ରଡ଼ି
ସେ ରଡ଼ିଘାତେ ସବୁରି ହେତୁ ଗଲା ବୁଡ଼ି ।
ଯୋଗୀନ୍ଦ୍ରମାନଙ୍କ ଯୋଗ ତପୀଙ୍କର ତପ
ଦୟାଳୁ ଜନର ଦୟା ଦୁର୍ଜ୍ଜନଙ୍କ କୋପ ।
ବିପ୍ରଙ୍କର କର୍ମ ଧର୍ମ ଋଷି ଜପ ସିଦ୍ଧି
କ୍ଷତ୍ରୀଙ୍କର କ୍ଷତ୍ରୀବୃତ୍ତି ମନ୍ତ୍ରୀ ମନ୍ତ୍ରୀବୁଦ୍ଧି ।
ସିଦ୍ଧାନ୍ତ ଲୋକର ସତ୍ୟ ବ୍ରାହ୍ମଣର ଜ୍ଞାନ
ସାଧୁଙ୍କର ନିତ୍ୟାଚାର ପତିବ୍ରତାମନ ।
ଯୁବତୀଙ୍କ ମତି ଦେବଙ୍କର ଦୟାଚିତ୍ତ
ସାଧୁତା ଲୋକ ବ୍ୟାପାର ଆଉ କରାମତ ।
ମହୀରେ ପଡ଼ି ଛାଡ଼ନ୍ତେ ଦୈତ୍ୟ ଘୋରରଡ଼ି
ଯେ ଯାହାର ବାଣିଜ୍ୟଟି ହସ୍ତୁଁ ଗଲା ପଡ଼ି ।
ଜୀବ ଜନ୍ତୁ ଆଦି ଗଲେ ସମସ୍ତେ ଯେ କମ୍ପି
କେବଳ ନୃସିଂହଗଣ ରହିଲେ ଯେ କମ୍ପି ।
ସୁଜାଣ ମନ୍ତ୍ରୀ ଆବର କର୍ଣ୍ଣାଟେଶ ରାଜା
କରନ୍ତି ସମର ବିଷମ୍ଭରେ ବାଇ ବାଜା ।
ବିନତାର ସତ ଅଛି ଶେଷଦେବ ପାଶେ
ବିନ୍ଧନ୍ତେ ଅସୁର ଶର ପକ୍ଷୀ ଆଡ଼ି ବସେ ।
ଏଥିଉତ୍ତାରୁ ଧାଇଁଲା ଦୈତ୍ୟ କୋପାନଳେ
ଶେଷଦେବ ଆଗେ ଯାଇଁ ମିଳିଲା ତତ୍କାଳେ ।
ମଲୁ ଆରେ ଶେଷଦେବ ବୋଲି ଡାକଦେଲା
ଅନନ୍ତ ପରେ ନାରାଚ ଆଣି ବରଷିଲା ।
ଦୂରହୁଁ ଦେଖିଣ ତାହା ନିବାରିଲେ ଶେଷ
ପୁଣିହିଁ ଦାରୁଣ ନେଇ ପିଟିଲା କୁଳିଶ ।
ଦେଖି ଆଡ଼ ହେଲେ ନୃସିଂହଙ୍କ ସାନଭାଇ
ପୁଣି ହିଁ ପିଟିଲା ଲୁହାଗଦା ଦୈତ୍ୟ ନେଇ ।
ଏଥର ଗଦାକୁ ଯେବେ ତୁ ସମ୍ଭାଳିପାରୁ
ତେବେ ମୁଁ ତୋତେ ଜାଣିବି ଅଟୁ ମହାମେରୁ ।
ନ କହି ମାଇଲେ ଧର୍ମ ନାଶ ହେବ ସିନା
ବାଜିଲାକ୍ଷଣି ଯେ ଦେହ ହେବ ତୋର ଚୂନା ।

ଏ ରୂପେ ବୋଲି ପିଟନ୍ତି ଦୈତ୍ୟ ଗଦାକାଢ଼ି
ଦେଖିଣ ଗରୁଡ଼ ଚାହା ଦେଲା ଖଗ ଆଡ଼ି ।
ବାଜନ୍ତେ ଝଲକି ଉଠି ପଡ଼ିଲାକ କ୍ଷିତି
ଶୂନ୍ୟରେ ଚା ଦେଖି ଦେବେ କଲେ କେତେ ସ୍ତୁତି
ବୋଲନ୍ତି ଧନ୍ୟ ଧନ୍ୟ ତୁ ବିନତାର ପୁଅ
ସମ୍ଭାଳି ରଖିଲା କେଡ଼େ ଗଦା ତୋର ଦେହ ।
ସାକ୍ଷାତେ ଏ ଶେଷଦେବ ଶେଷବିଷ୍ଣୁ ପରା
ତେଣୁ ସହିଲୁ ଗଦାରେ ତୁହି କେଡ଼େ ଭାରା ।
ଜୟ ଜୟ ଶେଷଦେବ ଅଣାକାର ଜ୍ୟୋତି
ଦାରୁଣ ଦୈତ୍ୟର ତୁଲେ ଯୁଦ୍ଧେ ଲାଗିଅଛି ।
ତୁମ୍ଭେ ଯେ ମାରି ପାରିବ ଏକା ଦଇତ୍ୟକୁ
ଆନକେ ସଂହାରିଣ ନ ପାରେ ଦାନବକୁ ।
ଏ ରୂପେ ସ୍ତୁତି କରନ୍ତେ ଶୂନ୍ୟେ ଦେବେ ରହି
ଦାରୁଣ ଶୁଣିଣ ତାହା ନ ପାରିଲା ସହି ।
ଗଦା ଭାଙ୍ଗିବାର ଦେଖି ଧାଇଁଲା ଦଇତ୍ୟ
ହସ୍ତରେ ଅଛି ଖଡ଼ଗ ଫଳା ଅସି କୁନ୍ତ ।
ଆସଇ ଅସୁର ଶୂନ୍ୟେ ଘୋଟି କାମରୂପୀ
ମଞ୍ଚରେ ପାଦ ଆକାଶେ ଶିର ଅଛି ବ୍ୟାପି ।
ଅସୁରର ବିଶ୍ୱରୂପ ଦେଖି ଶେଷଦେବେ
ବୋଇଲେ ଯେ ମାୟାକରି ରହିବାକୁ ଏବେ ।
ନ ଦେଖି ଦଇତ୍ୟ କାଉଳି ହେଉଥାଇ ବସି
ଏ ରୂପେ ପାଞ୍ଚ ନାସାରେ ଗଲେ ତାର ପଶି ।
ସୁଜାଣ ଏକା ଜାଣଇ କର୍ଣ୍ଣାଟେଶ ଜାଣେ
ଗରୁଡ଼ ଜାଣି ଅଛଇ ଥାଇ ଘୋର ରଣେ ।
ଆବର ଜାଣନ୍ତି ବୃନ୍ଦାରକେ ସ୍ୱର୍ଗେ ଥାଇ
ସଂସାରଯାକେ କାହାକୁ ତାହା ଜାଣାନାହିଁ ।
ହୁଙ୍କାର ନାଦେ ଆସନ୍ତେ ଧାଇଁ ଦୈତ୍ୟବୀର
ନାସା ବିବରେ ପଶିଲେ ଶେଷ ଯାଇ ତାର ।
ଯେଉଁ ପ୍ରଭୁ ଅଛି କୋଟି ବ୍ରହ୍ମାଣ୍ଡେ ଯେ ଘୋଟେ
ସେ ଯାଇ ଲୁଚିଲେ ଅସୁରର ନାସାପୁଟେ ।
ପ୍ରଭୁ ଅଦୃଶ୍ୟ ହୁଅନ୍ତେ ଦଇତ୍ୟ ଲୋଡ଼ିଲୋଡ଼ି
ଗରୁଆରେ କେଣେ ବୋଲି ଖୋଜେ ନିଶ ମୋଡ଼ି
ଲୁଚି ଏଠାରେ ରହିଲା କାହିଁ ପୁଣି ଗୁପ୍ତେ
ପଳାଇଗଲା ପ୍ରାୟେ ନ ଦିଶେ ହେଲେ ମୋତେ
ଏ ରୂପେ ପାଞ୍ଚ ଖୋଜଇ ଦୈତ୍ୟ ଚାରିଆଡ଼େ
ଅଶେଷ ସଂସାରଯାକ ବୁଲି ବୁଲି ଲୋଡ଼େ ।
ମଞ୍ଚମଣ୍ଡଳଯାକ ସେ ଗଲା ସବୁ ଲୋଡ଼ି
ପାଟଣାପୁର ନଗର କନ୍ଦି ମାଡ଼ି ମାଡ଼ି ।
ନ ଦେଖି ସେ କାହିଁ ପୁଣି ଲୋଡ଼େ ଜଳସ୍ଥଳେ
ବୁଲଇ ଶୂନ୍ୟରେ କ୍ଷେପି ଆକାଶ ମଣ୍ଡଳେ ।
ବାସବ ଯମ ପବନ ଅଗ୍ନି ନଇର୍ଋତ
ମରୁତ କୁବେର ଘେନି ଈଶାନ ଅନନ୍ତ ।
ଏ ରୂପେ ଦିଗ ବୁଲିଣ ଆସିଲା ବାହୁଡ଼ି
ଭୂଲୋକ ଯେ ଭୁବଲୋକ ସ୍ୱଲୋକକୁ ଲୋଡ଼ି ।
ମହାଲୋକ ଜନଲୋକ ସତ୍ୟ ତପଲୋକ
ପୁଣିହିଁ ଖୋଜିଲା ଯାଇ ହିମାଳୟଯାକ ।
ଉଦେଗିରି ଅସ୍ତଗିରି ଲୋକାଲୋକ ଗିରି
ଗ୍ରହଙ୍କପୁରେ ଖୋଜିଲା ପଶି ଅମରାରି ।
ଗନ୍ଧର୍ବ ଯକ୍ଷ ରକ୍ଷର ପୁର ଆସେ ଲୋଡ଼ି
ଆନନ୍ଦବନେ ଛାଡ଼ିଲା ଯାଇ ଘୋର ରଡ଼ି ।
ଅସୁରର ରଡ଼ିଘାତେ କମ୍ପେ ଦେବଲୋକେ
ଶୂନ୍ୟରୁ ସ୍ତୁତି କରନ୍ତି ମିଳି ବୃନ୍ଦାରକେ ।
ଜୟ ଜୟ ଅନନ୍ତ ଶ୍ରୀବିଶ୍ୱଦେବ ସ୍ୱାମୀ
ଦାରୁଣ ଦଇତ୍ୟକୁ ମାରି ରଖ ମଞ୍ଚଭୂମି ।
ଏକ୍ଷଣି ଦେଖା ଯେବେ ନ ଦେବେ ଅସୁରକୁ
ପୃଥ୍ୱୀକୁ ଫିଙ୍ଗିବ ଟେଳା ପ୍ରାୟେ ସମୁଦ୍ରକୁ ।
ଏଥକୁ କରୁଣା ନାବେ ବେଗେ ପାରିକର
ନିଜରୂପ ଦେଖାଇଣ ଅସୁରକୁ ମାର ।
ଦୈତ୍ୟର ନାସାପୁଟରୁ ପଡ଼ ବେଗେ ଖସି
ନୋହିଲେଟି ଦେବକୁଳ ଗଲୁ ଆମ୍ଭେ ଭାସି ।
ଭୋଦେବ ଅନନ୍ତ ଅଣାକାର ବିଶ୍ୱରୂପ
କୋଟି ବ୍ରହ୍ମାଣ୍ଡ ବିରାଜେ ତୋର ଲୋମକୂପ ।
ମାରିବା ପାଇଁ ଖୋଜୁଛି ଦୈତ୍ୟ ଛଟପଟେ
ତୁ ନାଥ ଦେଖିଛୁ ତାହା ବସି ନାସାପୁଟେ ।
ଯେଣେ ଚାହିଁଲେ ସେ ତୁହି ଆଗେ ଅଛୁତାର
ଏକଥା ଜାଣି ନ ବୁଝିପାରେ ଦୈତ୍ୟଛାର ।
ସୃଷ୍ଟିରକର୍ତ୍ତା ବୋଲି ନପାରେ ଦୈତ୍ୟଜାଣି
ଆସିଅଛି ଲୋଭେ ପଡ଼ି ମରିବାକୁ ପୁଣି ।
ଆୟୁଷ ଅଧେକ ତୁଟି ଗଲାଣି ଯେ ଘଟ
ଆବର ଯେ ଅବତାର ହୁଅ ନାସାପୁଟ ।
ତୁଣ୍ଡେ ନିରାକାର ଶୁଭ୍ର ବ୍ରହ୍ମମୟ ଅଟ
କୀଟୁ ବ୍ରହ୍ମଯାଏ ପୂରିଅଛି ସର୍ବଘଟ ।
ଏହି ପାପୀ ଅସୁରକୁ ପକା ବେଗେ ମାରି
ମଣୁ ଅଛି ତିଳପ୍ରାୟ ଏହି ବସୁନ୍ଧରୀ ।
ଆମ୍ଭଙ୍କୁ ଦେଲାଣି କେତେ କଷ୍ଟ ଦୈତ୍ୟବଳ
ଆପଣ ରଖିଲେ ଏବେ ବହୁ ଦେବକୁଳ ।
ଏ ରୂପେ ଶୂନ୍ୟେ କରନ୍ତେ ଦେବେ ସ୍ତୁତି ଏକା
ଖସିଲେ ଶୁଣି ଅନନ୍ତ ବିଷ୍ଣୁ ଛାଡ଼ି ଚକା ।
ଦୈତ୍ୟର ନାସା ପୁଟରେ ଗରଜନ କରି
ଖସି ପଡ଼ିଲେ ଅସୁର ଆଗେ ରୂପ ଧରି ।

କୋଟି ସୂର୍ଯ୍ୟ ପ୍ରାୟେ ଦିଶିଲେକ ତେଜୋମୟେ
ଚନ୍ଦ୍ରରୁ ଲକ୍ଷେକ ଗୁଣେ ଶୁକ୍ଳବର୍ଣ୍ଣ କାୟେ ।
ଅଚଳ ମେରୁରୁ ବଳି ଦିଶେ ବପୁପ୍ରଭା
ଦେବଙ୍କ ଆକୁଳ ଶୁଣି ହେଲେ ପ୍ରଭୁ ଉଭା ।
ଶେଷଙ୍କୁ ନ ଦେଖି ଦଇତ୍ୟ ମରୁଥିଲା ଖୋଜି
ଅନନ୍ତ ବିଷ୍ଣୁଙ୍କୁ ଦେଖି ଧାଏଁ ଗଳଗାଜି ।
ବୋଇଲା ତୁହିକି ଆହେ ଭଗବତୀ ବଳା
ବୁଝିବି ମହିମା ଆଜ ତୋର ଅନର୍ଗଳା ।
ସାକ୍ଷାତେ ତୁ ସ୍ୱୟଂ ବ୍ରହ୍ମରୂପେ ଦେଖାଦେଲୁ
ଏଡ଼େ ସ୍ୱରୂପ ହୋଇ ତୁ କିମ୍ପା ଲୁଚିଥିଲୁ ।
ତଥାପି ଲୁଚି ରହିଲୁ ମୋତେ ଯେବେ ଡରି
ଲେଉଟି ତୁ କିସ ପାଇଁ ଆସୁ ବିଜେ କରି ।
ଅନନ୍ତ ବୋଇଲେ ଏହି କଥା ହେଲେ ସତ୍ୟ
ଲୁଚିବା କଥା କହୁଛି ତୋତେ ଶୁଣ ଗୁପ୍ତ ।
ତୋହର ଦେହରେ ଆଗୁ ପୁରୁଷ ଯେ ଅଛି
ତାହାକୁ ଗୋଟିଏ କଥା ଆସିଲି ମୁଁ ପୁଛି ।
ବୋଇଲିରେ ମୃତ୍ୟୁ ତୁହି କେତେବେଳେ ହେବୁ
ସେ ବୋଇଲା ଷଠିଲିତା ଆମ୍ଭେ ଆଉ ଥିବୁ ।
ଆମ୍ଭେ ଯେ ବୋଇଲୁ ଏହା ଅଟେ ଯେବେ ସତ
ଆଉ କଥାଏ ପୁଛିବା କହ ଦେବତତ୍ତ୍ୱ ।
ଦାରୁଣ ଦୈତ୍ୟ ତ ବ୍ରହ୍ମାଙ୍କର ଅଟେ ପୁଅ
ମାଇଲେ ବ୍ରାହ୍ମଣ ହତ୍ୟା ଲାଗିବ କି କହ ।
ତୋହର ଆତ୍ମା କହିଲା ମୋତେ ଯାହା ଏବେ
ବୋଇଲା ମାଇଲେ ନରଦେହ ଦୋଷ ଦେବେ
ସହସ୍ରେକ ଫଣା ଧରି ମାରିବ ଯେ ତାକୁ
ନ ଲାଗିବ ବ୍ରହ୍ମହତ୍ୟା ଦୋଷ ଆପଣଙ୍କୁ ।
ଏ କଥା ତୋର ଆତ୍ମାକୁ ଆମ୍ଭେ ଗଲୁ ପୁଛି
ତୁ ଏବେ ବୋଲି ରହିଲୁ ମୋତେ କିମ୍ପା ଲୁଚି ।
ଆମ୍ଭେ ଲୁଚିଲେ କି ରୂପେ ପୃଥ୍ୱୀ ରକ୍ଷା ହେବ
ତୋତେ ଯେ ମାରିବା ପାଇଁ ଆମ୍ଭ ଜନ୍ମଧ୍ରୁବ ।
ପୁଣି ହସିଲା ଦାରୁଣ ଦୈତ୍ୟ ଅଲୋକିତେ
ବୋଲେ ଏ ଦେହେଁ ନ ମରିପାରୁ କଦାଚିତେ
ସହସ୍ରେକ ଫଣା ହେଲେ ପାରିବ ସେ ମାରି
ଏ ରୂପେ ସଂସାରେ କେ ନ ପାରେ ଦେହ ଧରି ।
ବୁଝିଲେକ ବଜ୍ରଅଙ୍ଗ ଅଟେ ମୋର କାୟ
ବ୍ରହ୍ମା ବିଷ୍ଣୁ ରୁଦ୍ରଙ୍କୁ ନ ଥାଇ ମୋର ଭୟ ।
ଆବର ଲୋକଙ୍କୁ ମୁଁ କି ଆଣେ ହୃଦଗତେ
ଏ ରୂପେ ବୋଲି ଧଇଲା ଦୈତ୍ୟ ଧନୁହାତେ ।
ବିନ୍ଧିଲା ସହସ୍ର ଶର ଯୋଚି କୋପ ହୋଇ
ଦେଖିଣ ଧଇଲେ ଶେଷଦେବ ଧନୁ ଯାଇ ।

ମନେ କୋପବହି ବିନ୍ଧିଦ୍ୟନ୍ତେ ସୂର୍ଯ୍ୟାବଳୀ
ଦୈତ୍ୟର ସେ ଶରାଯାକ ଗଲା ହୋଇ ଧୂଳି ।
ତା ଦେଖି ଦାରୁଣ ବିନ୍ଧେ ପୁଣି ନାଗଫାଶ
ଆସନ୍ତେ ସେ ସର୍ପମାନେ ଘୋଟି ଦଶଦିଗ ।
ଇତର ପ୍ରାୟେକ ମଣି ଟେକିଥିଲେ ଫଣା
ଦେଖିକରି ଗରୁଡ଼କୁ ହୋଇଗଲେ ବଣା ।
ବୁଝିଲେ ତ ଶେଷଦେବ ଅଟେ ସପ୍ତଫଣା
ଗରୁଡ଼ ଦେଖି ଭାଜିଲେ ସର୍ପ ଅକଳନା ।
ପାତାଳେ ପଶିଲେ କେହୁ ବିଳେ ଗଲା ପଶି
ପର୍ବତ ବନ ମଧ୍ୟେ ରହିଲେକ କେ ଆସି ।
ଦେଖିଣ ଦାରୁଣ ତାହା ହେଲା ଚମତ୍କାର
ବୋଇଲାକ ଶେଷପଣ୍ଡା ଭଲ ବିପ୍ରବର ।
ବ୍ରାହ୍ମଣ ନୁହଇ ଏହୁ ଅଟେ ବିଷ୍ଣୁ ମୂର୍ତ୍ତି
ଏହାକୁ ପାରିଲେ ମାରି ରହିବ ମୋ ମୂର୍ତ୍ତି ।
ନୋହିଲେ ମୁହିଁ ମରିବି ଯେବେ ଏହା ହାତେ
ବୈକୁଣ୍ଠପୁରେ ରହିବି ଯାଇ ଦେହ ଅନ୍ତେ ।
ଏ ରୂପେ ପାଞ୍ଚ ପର୍ବତ ଶର ଦେଲା ଛାଡ଼ି
କ୍ଷେପିଲେ ସେ ପର୍ବତେ ଯେ ଆକାଶକୁ ମାଡ଼ି ।
ଦେଖିଣ ତା ପ୍ରତିଅସ୍ତ୍ର କଲେ ଶେଷଦେବ
ପେଷି ବଜ୍ରଶର ନିବାରିଲେ ଗିରିସର୍ବ ।
ଶୂନ୍ୟରେ ସେ ଗିରିମାନ ଗଲେ ସର୍ବେ ଭାଜି
ପଡ଼ିଲେ ତହୁଁ ଯାଇ ଜମ୍ବୁଦ୍ୱୀପେ ଗର୍ଜି ।
ଭାଜନ୍ତେ ସେ ଗିରିଦେଖି ମୁରଦୈତ୍ୟ ଭାଇ
ବିନ୍ଧିଲେକ ଜଳପାଶ ଉଠି କୋପ ହୋଇ ।
ଆସନ୍ତି ଯେ ଜଳମାନେ ସିନ୍ଧୁପ୍ରାୟ ମାଡ଼ି
ଦେଖି ଅନନ୍ତ ପବନଶର ଦେଲେ ଛାଡ଼ି ।
ପବନଘାତେ ଭାଜିଲା ସେହି ଜଳପାଶ
ରହିଲେ ସମୁଦ୍ରପୂରି ଦେଖିଲେ ତା ଶେଷ ।
ଦେଖିକରି ଦୈତ୍ୟ ତାହା ଉଠି କୋପବହି
ବୋଇଲେ ଏଥର ଘେନିବି ତୋର ପ୍ରାଣ ମୁହିଁ ।
ସବୁ ନାରାଚ ପ୍ରାୟେ ନମଣ ଇଳାବର
ଈଶ୍ୱରଙ୍କ ପାଶୁପତ ଅଟେ ଏହୁ ଶର ।
ମାରୁଛି ନିଦାଘକାଳ ଦେଖି ଏବେ ମୁହିଁ
ଏଥର ପାରିଲେ ରଖ ସମ୍ଭାଳି ତୋ ଦେହୀ ।
ଏ ରୂପେ କହିଣ ପାଶୁପତ ଦେଲା ପେଷି
ଆସଇ ସେ ପାଶୁପତ ରାହୁପ୍ରାୟ ଗ୍ରାସି ।
ଦେଖିଲେକ ବିଜେ କରିଛନ୍ତି ଶେଷଦେବ
ଅଣବା ହୁଡ଼ା ଶର ସେ ମାରେ ବ୍ରହ୍ମା ଶିବ ।
ଶେଷକୁ ବୋଇଲେ ତୁମ୍ଭେ ଅଟ ଇଳାକାନ୍ତ
ଇଳା ଯେ ଦ୍ୱିତୀୟ ଲକ୍ଷ୍ମୀ ମଞ୍ଚପୁରେ ଜାତ ।

ଏ ଜନ୍ମଯାକେ ବିଧବା ଯୋଗ ତାକୁ ନାହିଁ
ଅନନ୍ତମୂର୍ତ୍ତି ପ୍ରତ୍ୟକ୍ଷ ତୁମ୍ଭେ ବିଷ୍ଣୁ ଦେହୀ ।
ଇଙ୍କାକୁ ବିଧବା ଯୋଗ ଧାତା ଲେଖିନାହିଁ
କି ବୋଲି ପାମର ମୋତେ ଝିଙ୍କିଣ ବିନ୍ଧଇ ।
ଏହାର କାରଣ ମୋତେ କହ ବେଗେ ବୋଧି
ତୁମ୍ଭର ବଚନପାଳି ରହି ହେବି ସିଦ୍ଧି ।
ଆପଣ ତ ବ୍ରହ୍ମମୂର୍ତ୍ତି ମୁହିଁ ବ୍ରହ୍ମଶକ୍ତି
ଶୁଣିଲେ ତ ତୁମ୍ଭ ବାକ୍ୟ ବଳିଯିବ କ୍ଷିତି ।
ଏରୂପେ କହନ୍ତେ ଶେଷ ଆଗେ ବ୍ରହ୍ମଶର
ଅନନ୍ତ ବୋଇଲେ ଯେବେ ତୁମ୍ଭେ ବିଜେକର ।
ଏ ଅବତାରେ ତୁମ୍ଭେ ନ ପାର ମୋତେ ମାରି
ସେ ଅର୍ଥ କହୁଛି ଏବେ ଶୁଣ ଆଗକରି ।
ତ୍ରେତୟାଯୁଗେ ଯେ ଆମ୍ଭେ ହେବୁ ଅବତାର
ସେ ଯୁଗେ ମାରିବ ତୁମ୍ଭେ ମୋତେ ବେନିଥର ।
ଶୁଣିଣ ସେ ଦେବଶର ଯୋଡ଼ି ବେନିପାଣି
ବୋଇଲା ଫେଡ଼ି କହିବା ଏହା ସପ୍ତଫଣୀ ।
ଶୁଣିଣ କହନ୍ତି ଶେଷଦେବ ହସି ପୁଣ
ବୋଇଲି କହିବା ଆମ୍ଭ ଜନ୍ମ ତୋତେ ଶୁଣ ।
ଏହି ଅବତାର ଅନ୍ତେ ସୂର୍ଯ୍ୟବଂଶେ ଯାଇ
ଜନ୍ମିବୁ ରାମ ଲକ୍ଷ୍ମଣ ରୂପେ ବେନିଭାଇ ।
ମୁର ଦାରୁଣ ଯେ ବିଂଶବାହୁ କୁମ୍ଭକର୍ଣ୍ଣ
ହୋଇଣ ଲଙ୍କାରେ ଜନ୍ମ ହେବ ଯାଇ ପୁଣ ।
ପିତାଙ୍କ ସତ୍ୟ ପାଳିଣ ବନେ ଆମ୍ଭେ ଯିବୁ
ଜନକ ଦୁହିତାକୁ ଯେ ସଙ୍ଗେ ନେଇଥିବୁ ।
ଦଣ୍ଡକାରଣ୍ୟେ ରହିବୁ ଯାଇ ବାସକରି
ଦଇବୀ ମାୟାରେ ପଡ଼ି ଯିବୁ ମୃଗମାରି ।
ଏଥିଉତ୍ତାରେ ରାବଣେଶ୍ୱର ପୁଣି ଆସି
ସୀତାଙ୍କୁ ହରିନେବ ସେ ପୁଷ୍ପକରେ ବସି ।
ବାନରବଳ ଧରିଣ ଘେନିଯିବୁ ଲଙ୍କା
ମାରିଣ ରାବଣ ବଂଶଯାକ ଆମ୍ଭେ ଏକା ।
କ୍ରୋଧେ ସେ ରାବଣେଶ୍ୱର ଧରି ବ୍ରହ୍ମଶକ୍ତି
ମାରିବ ଯେ ତୋତେ ଆସି ହୋଇ କୋପ ମୂର୍ତ୍ତି ।
ସେ ଶକ୍ତିକୁ ହନୁମାନ ଧରି ଉପାଡ଼ିବ
ସୁବଳଗିରି ପର୍ଯ୍ୟନ୍ତେ ବହି ମୋତେ ନେବ ।
ଜାମ୍ବବର ଔଷଧିରେ ବର୍ତ୍ତିବି ମୁଁ ଜାଣ
ଲେଉଟି ରାବଣ ମାରିଯିବ ଶକ୍ତି ପୁଣ ।
ସେ ଯୁଗେ ତୁ ପାଶୁପତ ହେବୁ ଏକଘନି
ରାବଣ ମାଇଲେ ମୋର ଯିବୁ ପ୍ରାଣ ଘେନି ।
ସେଠାରେ ପଡ଼ିବି ମୁହିଁ ଉତ୍ତାନ ଯେ ହୋଇ
ଜାମ୍ବବ ଯେ ଜୀଆଇବ ଅଉଷଧି ଦେଇ ।

ଏ ରୂପେ ଅନନ୍ତ କହିଦ୍ୟନ୍ତେ ଭେଦସୂତ୍ର
ଶୁଣିଣ ସନ୍ତୋଷ ହୋଇଗଲେ ପାଶୁପତ ।
କଇଳାସ କନ୍ଦରରେ ପ୍ରବେଶିଲେ ଯାଇ
ଦେଖିଣ ତୂଣେ ରଖିଲେ ତାକୁ ଉମାସାଇଁ ।
ଏଥୁଅନ୍ତେ ସେ ଦାରୁଣ ଦୈତ୍ୟ ମହାବୀର
ଶେଷଦେବ ଯୁଦ୍ଧ ଦେଖି କମ୍ପେ ଥରହର ।
ବୋଇଲ ଏହି ମାନବ ନୁହେଁ କଦାଚିତେ
ଅଣବାହୁଡ଼ା ଶରୁ ସେ ବଞ୍ଚିଲା କେମନ୍ତେ ।
ପେଷିଲେ ବ୍ରହ୍ମାଙ୍କୁ ହେଳେ ପଡ଼ନ୍ତେ ସେ ଢଳି
ନ ପାରି ସେ ବ୍ରହ୍ମଶର ଗଲା କାହିଁ ଚଳି ।
ଭଲା ଅର୍ଜିଛୁରେ ଶେଷପଣ୍ଡା ଏଡ଼େ ଭାଗ୍ୟ
ତେଡ଼େ ବ୍ରହ୍ମଶକ୍ତି ମେଣ୍ଟି ରଖିଲୁ ତୋ ଅଙ୍ଗ ।
ଏ ରୂପେ ବୋଲି ଦାରୁଣ ପ୍ରଜ୍ୱଳିତ ହୋଇ
ଲୁହାର ଯେ ଲକ୍ଷେଶର ରୁନ୍ଧିଲେକ ନେଇ ।
ଦେଖିଣ ଅନନ୍ତସ୍ୱାମୀ ଉଠି କୋପାନଳେ
ତୀକ୍ଷ୍ଣଶର ପେଶିତାହା ଛେଦିଲେ ତତ୍କାଳେ ।
ବିନ୍ଧିବା ଧନୁକୁ ତାର ଧରି ବେନିଭୁଜେ
ଭାଙ୍ଗିଣ ତା ବେନିଖଣ୍ଡ କଲେ ଦେବରାଜେ ।
କୌମୋଦକୀ ଗଦା ପୁଣି ଧଇରେ କରରେ
ଗର୍ଜିଣକୋପେ ପିଟିଲେ ନେଇ ଦୈତ୍ୟଶିରେ ।
ଅସୁର ମୁଣ୍ଡେ ତା ପଡ଼ି ହେଲା ବେନିଖଣ୍ଡ
ଗଦାରୁ ଉଭାରି ଦୈତ୍ୟ ହେଲା ପରଚଣ୍ଡ ।
ଧାଇଁଣ ମାଇଲା ମୁଥେ ନେଇ ଶେଷଅଙ୍ଗେ
ସେ ମୁଥ ବଥାଇଣ ସେ ଉଠିଲେ ଉଦ୍‌ବେଗେ ।
ଦରାଣ୍ଡି ବେନି ଭୁଜରେ ଧଇଲେ ଦୈତ୍ୟକୁ
ବୁଲାଇଣ ଚକ୍ରପ୍ରାୟ ଫିଙ୍ଗିଲେ ସିନ୍ଧୁକୁ ।
ଚୌରାଶୀ କାଠି ଗଭୀର ଯେବେଣ ସମୁଦ୍ର
ନ ମଲା ତହିଁ ପଡ଼ିସେ ଦୁଷ୍ଟ ଦୈତ୍ୟଇନ୍ଦ୍ର ।
ଘରୁ ଆସିଲା ପରାୟ ଧାଇଁଲା ଯୁଦ୍ଧକୁ
ଉପାଡ଼ି ପିଟିଲା ଶାଳବୃକ୍ଷ ଅନନ୍ତଙ୍କୁ ।
ଦେଖି ଅନନ୍ତ ଧଇଲେ ତାହା ବାମହସ୍ତେ
ଦୈତ୍ୟକୁ ପିଟିଲେ ଲେଉଟାଇ କୋପଚିତ୍ତେ ।
ଦେଖିଣ ଦାରୁଣ ଆଡ଼ିଲାକ ଭୁଜ ଦୁଇ
ଭାଜିଣ ପଡ଼ିଲେ ସେହି ତରୁ ଲୋଟି ମହୀ ।
ଲେଉଟି ଧାଇଁଲା ସମରକୁ କୋପେ ଦୈତ୍ୟ
ଧାମନ୍ତେ ବିଶ୍ୱରୂପେ ଅଦୃଶ୍ୟ ଛାୟାକାନ୍ତ ।
ମେଘ ଅନ୍ଧାର ପ୍ରାୟେକ ଦିଶେ ପୃଥ୍ୱୀଯାକେ
ଅସୁର ମାୟା କଥା ଯେ ଜାଣେ ତିନିଲୋକେ ।
ମାୟା ଅନ୍ଧକାର କରି କରିଲା ଆହାବ
ତା ଦେଖି କହିଲେ ଗରୁଡ଼କୁ ଶେଷଦେବ ।

ବୋଇଲେଟି ଗରୁଡ଼ ହେ ଦୈତ୍ୟକଲା ମାୟା
ଏଥକୁ ଯେ ବେଳେ ତୁହି ବଢ଼ା ବେଗେ କାୟା ।
ଶୁଣିଣ ତା ଗରୁଡ଼ ଯେ ବିସ୍ତାରିଣ ଡେଣା
ଲକ୍ଷେ ଯୋଜନ ବଢ଼ିଲା ହୋଇ ଅକଳନା ।
ବଦ୍ରିକାନଗ୍ର ଆନନ୍ଦବନ ଆଦି ତୋଟା
ସମସ୍ତଙ୍କୁ ଆଚ୍ଛାଦିଲା କଶ୍ୟପର ବେଟା ।
ଚକ୍ଷୁର ଯେ ଦିବ୍ୟଜ୍ୟୋତି ପ୍ରକାଶ କରିଲା
ସୂର୍ଯ୍ୟ ଉଦୟ ପରାୟ ଉଜ୍ଜ୍ୱଳ ଦିଶିଲା ।
ଅସୁର କରିବା ମାୟା ଅସୁର ତା ଜାଣେ
ଗରୁଡ଼ ଉପରେ ରହିଅଛି ଘୋଷ ଏଣେ ।
ସୁଜାଣ ମନ୍ତ୍ରୀ କର୍ଣ୍ଣାଟେଶ୍ୱର ମହୀପାଳେ
ନୃସିଂହଗଣ ଯେ ବସିଛନ୍ତି ସୁଖେ ତଳେ ।
ଛତ୍ର ଆକାରେ ଗରୁଡ଼ ଅଛି ପକ୍ଷ ଢାଙ୍କି
ତାହା ଜାଣନ୍ତେ ନୃସିଂହ ପ୍ରଭୁ ପଦ୍ମଆଖି ।
ମାତା ପିତାଙ୍କୁ ଏକଥା ନୁହଇ ଯେ ଜଣା
ଉପରେ ବିସ୍ତାରି ପକ୍ଷ ଟେକିଅଛି ଡେଣା ।
ଏଥିଉତ୍ତାରେ ଦାରୁଣ ଦୈତ୍ୟ ମହାବୀର
ପାଷାଣ ବୃଷ୍ଟି କରିଲା ଆଣି ଅଗୋଚର ।
ପବନ ଯେ ଅଣଚାଶ ବତାସ ଛାଡ଼ିଲା
ପ୍ରଳୟକାଳ ପରାୟ ଜଳ ବୃଷ୍ଟି କଲା ।
ଏଥିଉତ୍ତାରେ ଅନନ୍ତ ପୁଣି ବିଜେ କଲେ
ମାତାଙ୍କୁ ଦୃଶ୍ୟ ନ ହୋଇ ନୃସିଂହେ କହିଲେ ।
ବୋଇଲେ ମୁଁ ଦାରୁଣକୁ ଏବେ ମାରିବି କି
ନୃସିଂହ ବୋଇଲେ ଆଉ ବିଳମ୍ବ କାହିଁକି ।
ଶୁଣିଣ ସେ ଶେଷଦେବ ଗଲେ ସେହିଭାଗେ
ଗରୁଡ଼ ଯେ ସଂହାରିଲା ନିଜ ପକ୍ଷ ଅଙ୍ଗେ ।
ଅସୁରର ମାୟା ଛନ୍ଦ ସବୁ ହେଲା ଭଙ୍ଗ
ଧଇଲେ ଅନନ୍ତ ବିଷ୍ଣୁରୂପ ବ୍ରହ୍ମଅଙ୍ଗ ।
ସୂର୍ଯ୍ୟର କୋଟିଏ ଗୁଣେ ପ୍ରକାଶିଲେ ତେଜେ
ଭାଜିଲା ଅନ୍ଧାର ଦୃଶ୍ୟ ଉଦେ ଶୂନ୍ୟେ ସୂର୍ଯ୍ୟେ ।
ଦୈତ୍ୟକୁ ଦେଖି ଧାଇଁଲେ ଶେଷକୋପ କରି
ବୁଲାଇ ଚକ୍ର ଆକାର ଉଠି ବାଳ ଧରି ।
କଚାଡ଼ିଲେ ଯେ ମନ୍ଦର ପର୍ବତ ଉପର
ନ ମଲା ଦଇତ୍ୟ ଗିରି ଶତେ ହେଲା ଚୂର ।
ଦାରୁଣ ଉଠିଲା ତହୁଁ ହସି ଟହ ଟହ
ବୋଲଇ ଭଲାରେ ଶେଷ ଛେଚିଲୁ ମୋ ଦେହ
ଏ ରୂପେ ଛେଚିଲୁ ତୁ ନ ଭାଜେ ମୋର ଟାଣ
ତୁହି ମାତ୍ର ଛେଚି ଛେଚି ହୋଇଯିବୁ କ୍ଷୀଣ ।
ମୋତେ ତ ଅମର ବର ହରି ଛନ୍ତି ଦେଇ
ନ ବୁଝି କରୁଛୁ ବ୍ୟର୍ଥେ ଯୁଦ୍ଧ ଜାଣ ତୁହି ।

ଅଗ୍ନିରେ ମୁଁ ନ ପୋଡ଼ଇ ଜଳେ ନ ବୁଡ଼ଇ
ପବନରେ ନ ଉଡ଼ଇ ଖଡ଼ଗେ ନ ଛିଡ଼ଇ ।
ଏଥକୁ ଯେ ବୁଦ୍ଧିବଳ ଅଛି ତୋର କହ
ନୋହିଲେ ତ ଯୁଦ୍ଧଛାଡ଼ି ଗୃହେ ବେଗେ ଯାଅ ।
ଶୁଣିଣ ବିସ୍ମିତ ହେଲେ ତହୁଁ ଶେଷଦେବ
ବୋଇଲେ କି ରୂପେ ଚଣ୍ଡାଳର ଜୀବ ଯିବ ।
ଛାଡ଼ିଦେବି ଏବେ ପଛେ ପଳାଉ ଏ ପାପୀ
ରହୁ ଅମର ହୋଇଣ ଦୈତ୍ୟ କାମରୂପୀ ।
ଏ ରୂପେ ଶେଷ ପାଞ୍ଚନ୍ତେ ମନ ମଧ୍ୟେ ବାଣୀ
ଶୂନ୍ୟରେ ଥାଇ ଡାକିଲେ ଦେବ ସେହିକ୍ଷଣି ।
ବୋଇଲେ ହୋଇଛୁ ଭୃତ୍ୟଛଳେ ପ୍ରଭୁ ଜାତ
ମାର ଏହି ପାମରକୁ ମରୁ ବ୍ୟଗ୍ରେ ଦୈତ୍ୟ ।
ଯେ ରୂପେ ଏ ଚଣ୍ଡାଳର ହେବ ମୃତ୍ୟୁ ଜାଣ
ସେ କଥା କହିବୁ ଆମ୍ଭେ ସାବଧାନେ ଶୁଣ ।
ଅମର ବର ମାଗିଲା ଏହୁ ଯେତେବେଳେ
ଭୋଳରେ ବର ତାହାକୁ ଦେଲେ ଚନ୍ଦ୍ରଚୂଳେ ।
ଈଶ୍ୱର ବୋଇଲେ ପଛେ ଅମର ତୁ ହୁଅ
ଯେ ରୂପେ ହେବ ମୃତ୍ୟୁ ସେ କଥା ଶୁଣିଥାଅ ।
ସହସ୍ରେକ ଫଣା ତୁହି ଦେଖିବୁ ଯାହାର
ସେହି ଏକା ଘେନିଯିବ ପରାଣ ତୋହର ।
ଆବର ସଂସାରେ ଯେତେ ଛନ୍ତି ଦେହଧାରୀ
କୀଟରୁ ବ୍ରହ୍ମଯାଏ ନ ପାରେ କେହୁ ମାରି ।
ଶୁଣିଣ ଦାରୁଣ ଦୈତ୍ୟ ହେଲା ବଡ଼ ତୋଷ
ବୋଲେ ଏଡ଼େ ପ୍ରପଞ୍ଚେ କି ଜନ୍ମିବେ ମନୁଷ୍ୟ ।
କି ରୂପେ ଏକ ଦେହରେ ସହସ୍ରେକ ଫଣା
ଏକଥା ବ୍ରହ୍ମାଣ୍ଡେ ନାହିଁ ଚାରିଯୁଗେ ଜଣା ।
ଏଡ଼େ ପ୍ରପଞ୍ଚ କରିଣ ଯେବଣ ଜନନୀ
ଗର୍ଭରୁ ଜାତ କରିଣ ଅଛିଏ ମେଦିନୀ ।
ଜଠରେ ବହିଲେ ଯିବ ଉଦର ତ ଫାଟି
ଦୁର୍ଗମ କଥା ଅଟଇ ଏହି ଜନ୍ମଗୋଟି ।
ଏଡ଼େ ପୁରୁଷକୁ ଗର୍ଭେ କି ରୂପେ ଯେ ସ୍ତିରୀ
ସଂସାରେ ପ୍ରସବ କରି ନାହିଁ ତିନିପୁରୀ ।
ବୁଝିଲେ ବାରଅଙ୍ଗୁଳ ସବୁ ଗର୍ଭ ଅଟେ
ସହସ୍ରେ ଫଣାକୁ ସ୍ଥାନ କାହିଁ ମାତା ପେଟେ ।
ଏ ରୂପେ ପାଞ୍ଚି ଅନେକ ଦୈତ୍ୟ ଚିନ୍ତାକଲା
ଅପର କାଳର କଥା ବୋଲି ବିଚାରିଲା ।
ଶୁଣେ ଏ ରୂପେ କହନ୍ତି ଦେବେ ଶୂନ୍ୟବାଣୀ
ଶୁଣିଣ ପାଞ୍ଚନ୍ତି ହୃଦେ ଶେଷଦେବ ପୁଣି ।
ବୋଲନ୍ତି ତ ଭଲବର ମାଗିଥିଲା ଦୈତ୍ୟ
ମାନବ ଦେହେ କରିବ ଫଣା କେମନ୍ତେ ଜାତ ।

ନୋହିଲେ ଚ ନ ମରିବ ହେଲେ ଅସୁନ୍ଦର
କି ରୂପେ ଧରିବା ଏଡ଼େ ଫଣା କଳେବର ।
ସହସ୍ରେକ ଫଣା ହେବ ଦୁଇସସ୍ର ଆଖି
ଏକଥା ଚ କହିଥିଲା ଆମ୍ଭଙ୍କୁ ଯେ ଲେଖି ।
ମନ୍ତ୍ର ଏହି ଦୈତ୍ୟ ଆଗ ଧରିବ ସେ ଅଙ୍ଗ
ତହିଁ ଉତାରୁ ବୁଝିବା ପଛେ ପରସଙ୍ଗ ।
ସହସ୍ର ଫଣା ପ୍ରକାଶ ହେବା ତେବେ କରି
ଏ ରୂପେ ପାଞ୍ଚି ବସିଲେ ସ୍ୱାମୀ ଯୋଗଧରି ।
ସହସ୍ରେ ନିଃଶ୍ୱାସ ଟେକି ଦେଲେ ନାସାଅଗ୍ରେ
ତାହାଦେଖି ଚମତ୍କାର ହେଲେ ପ୍ରାଣୀ ବେଗେ ।
ରେଚକ ପୁରକ ପୁଣି କୁମ୍ଭକ ଯେ ଯାହା
ଯେ ରୂପେ ସାଧନ କରି ପ୍ରକାଶିଲେ ଦେହା ।
ଏ ରୂପେ ଅନନ୍ତ ପ୍ରଭୁ ଦେଲେ ସସ୍ରଫଣା
ସହସ୍ରେକ ସୂର୍ଯ୍ୟପ୍ରାୟ ଦିଶେ ଜ୍ୟୋତିଜିଣା ।
ସଂସାର ରକ୍ଷା ପାଇଁକି ଦେଲେ ଶେଷମୂର୍ତ୍ତି
ଫଣାଙ୍କେ ଯେ ବେନି ବେନି ନେତ୍ର ପ୍ରକାଶନ୍ତି ।
ସହସ୍ରେକ ଫଣାଯାକ ସସ୍ର ପଦ୍ମମୁଖ
ଶ୍ରବଣ ବେନି ସହସ୍ର ସସ୍ର ଗୋଟି ନାକ ।
ବେନିସହସ୍ର ବାହୁ ହେ ବେନିସସ୍ର ପାଦ
ଏ ରୂପେ ଅନନ୍ତ ବିଷ୍ଣୁ ସସ୍ରେଫଣା ହୃଦ ।
ଫଣା ଗୋଟିକ ଦିଶଇ ଗିରିରାଜ ପ୍ରାୟ
ଦେଖିଣ ଲାଗିଲା ଦାରୁଣକୁ ମହାଭୟ ।
ପାଞ୍ଚିଲା ଏବେ ମୋହର ହେଲା ନିଶ୍ଚେ ମୃତ୍ୟୁ
ଶିବଙ୍କ କହିବା କଥା ଫଳିଲାକ ତତ୍ତ୍ୱ ।
ପୁଣି ମୁଁ ନ ଥିଲି ଯାହା ଦେଖିଲି ଯେ ରୂପ
ବ୍ରାହ୍ମଣ ନୁହଇ ଏହୁ ଅଟେ ବିଷ୍ଣୁ କଳ୍ପ ।
ଏ ରୂପେ ପାଞ୍ଚି କହନ୍ତେ ଦୈତ୍ୟ ଚକ୍ଷୁ ବୁଜି
ଉଠିଲେକ ଶେଷଦେବ ସସ୍ର ଫଣା ଗର୍ଜି ।
ଆକାଶକୁ ଢାଙ୍କି ବ୍ୟାପି ଟେକିଲେକ ଫଣୀ
ଗର୍ଜନ୍ତେ ଉଚ୍ଛୁଳେ ଫୁଫୁକାର ପୁର ତିନି ।
ସହସ୍ର ଲହରୀ ପ୍ରାୟ ଟେକି ବିଷଜ୍ୱାଳା
ସହସ୍ରେ ହାତ ଫୁଲାଇ ଦେଇ ଶଙ୍ଖକଳା ।
ସହସ୍ରେ ଫଣା ଫୁଲାଇ ଦେଇ ଏକାବେଳେ
ଦାରୁଣ ଉପରେ ମାଡ଼ି ବସିଲେ ତତ୍କାଳେ ।
ବ୍ରହ୍ମଲିଙ୍ଗରେ ବାଜିଲା ଯାଇ ଫଣାଦାଢ଼
ଛିଡ଼ିଲାକ ଆତ୍ମାଲିଙ୍ଗ ପଡ଼ି ଦୈତ୍ୟରାଢ଼ ।
ବିଷଘାତେ ଦାରୁଣର ପ୍ରାଣ ଗଲା ଛିଡ଼ି
ପଡ଼ିଲା ତିନିଯୋଜନ ଭୂମି ଦୈତ୍ୟମାଡ଼ି ।
ବାରୁଣଅନ୍ତେ ଯେ ଆଉ ଯେତେ ଦୈତ୍ୟ ଥିଲେ
ସମସ୍ତେ ବିଷଜ୍ୱାଳାରେ ଦହିର୍ଯ୍ୟ ହୋଇଲେ ।
ବାରତା ଦେବାକୁ ଦୈତ୍ୟ ଗୋଟିଏକ ନାହିଁ
ପଡ଼ିବା ଶବ କୃତିହା ଗଲେ ସବୁ ଦହି ।
ଦାରୁଣର ପିଣ୍ଡ ଆସି ସର୍ବ ଗଲେ ପୋଡ଼ି
ଗୁପତେ ଥିଲେ ଦାରୁଣ ଦୈତ୍ୟ ଚାରିଯୋଡ଼ି ।
କାଳ ବିକାଳ ଯେ ବୋଲିକରି ବେନିଦୂତେ
ଯୁଦ୍ଧକୁ ଅନ୍ତର ହୋଇଥିଲେ କ୍ରୋଶ ସାତେ ।
ମୁରର ପାଶକୁ ଧାଇଁଗଲେ କାନ୍ଦି କାନ୍ଦି
ପଳାନ୍ତି ଅସମ୍ଭାଳେ ନ ପାରି ଲୁଗା ପିନ୍ଧି ।
ରାଜାର ପାଶେ ମିଳିଣ ଯାଇ ବୁକୁ କୋଡ଼ି
ବୋଇଲେ ଭାଇ ତୁମ୍ଭର ଯୁଦ୍ଧେ ଗଲେ ପଡ଼ି ।
ଯେତେ ସେନାପତି ସୈନ୍ୟ ନେଇଥିଲେ ସଙ୍ଗେ
ସବୁଙ୍କୁ ଘେନି ପଡ଼ିଲେ ଆଜ ରଣରଙ୍ଗେ ।
ମୁର ବୋଇଲା ତୁମ୍ଭେ ରେ କହ ଆସି କିସ
ଭାଇ ମୋହର ମାରି କି ଆସିଲାରେ ଶେଷ ।
ଏ କଥା କହ ଶୁଣିବା ଆଗ ମନ ଦେଇ
ବଲ୍ଲଭ ପୁତ୍ରଙ୍କୁ ମାରି ଆସିଲା କି ଭାଇ ।
ରାଜାର ଏ ବାକ୍ୟ ଶୁଣି କହନ୍ତି ଯେ ଦୈତ୍ୟ
ବୋଇଲେକ ମିଥ୍ୟାଆମ୍ଭେ କହିପାରୁ ତୋତେ ।
ସୈନ୍ୟ ସହିତେ ଦାରୁଣ ଭାଇ ଯେ ତୁମ୍ଭର
ବିପ୍ରଙ୍କର ହସ୍ତେ ମରିଗଲେ ଯମପୁର ।
ଭୋ ଦେବ ଆମ୍ଭେ ମାୟାରେ ଥିଲୁ ଜାଣ ରହି
ତୁମ୍ଭଙ୍କୁ କହିବାପାଇଁ ଆସିଲୁ ଯେ ଧାଇଁ ।
ଶୁଣିଣ ମହୀରେ ଢଳି ପଡ଼ିଲାକ ରାୟେ
ଚକ୍ଷୁ ତରାଟି ଚାହିଁଲା ବେନିଦଣ୍ଡ ଯାଏ ।
ଜଗତୀ ଉପରୁ ପୁଣି ପଡ଼ିଲାକ ଢଳି
ସୁବିଜ୍ଞ ମନ୍ତ୍ରୀ ଧଇଲା ଉଠି ପୁଣି ତୋଳି ।
ମୁଖେ ସୁବାସିତ ଜଳ ସିଞ୍ଚିଲେକ ନେଇ
ଆଲଟ ଚାମର ଧୀରେ ଧୀରେ ଯେ ପକାଇ ।
ସ୍ତମ୍ଭରେ ବସାଇ ଆଉଜାଇ ନୃପନାଥ
ପିଣ୍ଡରୁ କି ପ୍ରାଣ ତାର ହେଲା କଣ୍ଠାଗ୍ରତ ।
ଘଡ଼ିକେ ଯାଇ ପଶିଲା ହୃଦେ ତାର ଚେତା
ପହରେ ଯାଏ ପୁଣି ନ ସ୍ଫୁରେ ତୁଣ୍ଡକଥା ।
ବିଭୋଳ ହୋଇଣ ରାଜା କାନ୍ଦେ ଲଟଗାଳି
ରାଜାବେଶଯାକ ପଡ଼ିଲା ହୃଦୁ ଗଳି ।
ଭାଇର ଗୁଣକୁ ବସି କାନ୍ଦଇ ବାହୁନି
ବୋଇଲା ଦିବସ ଏବେ ହୋଇଲା ରଜନୀ ।
କେତେକ୍ଷଣି ଭାଇ ମୋର ଭାଙ୍ଗି ଗଲା ବଳ
ତୋହର ଘେନି ମାନି ନ ଥିଲି ବିପ୍ରକୁଳ ।
ଜୀବ ପରମ ଅଟନ୍ତି ଯେହ୍ନେ ଏକଅଙ୍ଗ
ସେ ରୂପେ ଭାଇ ତୁହିରେ ଅଟୁ ମୋର ଅଙ୍ଗ ।

ଆରେ ଭାଇ ତୁହି ମୋର ପ୍ରାଣ ପଞ୍ଚଭୂତେ
ଶିବ ଦେଲା ଧନୁତୋର ନ ଥିଲା କି ହାତେ ।
ତୋହର ଘେନି ପୁତ୍ରଙ୍କୁ ଥିଲି ମୁହିଁ ମୂର୍ଚ୍ଛି
କାହାକୁ ଘେନି ବସିବି ଏବେ ବୁଦ୍ଧି ପାଞ୍ଚି ।
ଗଲା ମୋ ବୟସ ଏବେ ହେଲି ନିରିମାଖି
ସମସ୍ତଙ୍କୁ ଥିଲି ମୂର୍ଚ୍ଛି ଭାଇମୁଖ ଦେଖି ।
ଏ ରୂପେ ବୋଲି ତାଡ଼ଇ ଭାଲେ ଦେଇ ପାଣି
ଜଗତୀରୁ ଗଡ଼ିତହିଁ ପଡ଼ିଲା ଧରଣୀ ।
ସୁବିଜ୍ଞ ମନ୍ତ୍ରୀ ଉଠାଇ ଧଇଲା ବେଗରେ
ବସାଇଲା ନୃପେ ନେଇ ସୁବର୍ଣ୍ଣ ପୀଢ଼ାରେ ।
ଏଥୁଅନ୍ତରେ ମିଳିଲେ ଆସି ଶୁକ୍ରଗୁରୁ
ରାଜାଙ୍କୁ ବୋଧି କହନ୍ତି ବାକ୍ୟ ପୁରାଣରୁ ।
ବୋଲନ୍ତି ରାଜା ବସିଛୁ କିମ୍ପା ଶୋକଭରେ
କେ କାହାର ଭାଇ ବୋହୁ ତାର ପୁତ୍ର ନାରୀ ।
ଏ ତିନିଠାରେ ପ୍ରାଣୀ ଯେ ସ୍ନେହ କରିଥାଇ
ମଲେଣି ଯାନ୍ତି ଦେହକୁ ଏହୁ ପୀଡ଼ାଦେଇ ।
ଏ ତିନିଲୋକେ ଅଟନ୍ତି ଜାଣ ବଡ଼ ଶତ୍ରୁ
କ୍ଷଣକେ ପଳାନ୍ତି ସ୍ନେହ ଛାଡ଼ି କୁଳଗୋତ୍ରୁ ।
ପତ୍ନୀକି ଅଟଇ ମାୟା ପୁତ୍ର ବୈରୀ ଅଟେ
ଭାଇ ଭଗାରୀ ଉପୁଜେ ଜାଣ ମାତା ପେଟେ ।
ଜୀବନ ଥିବାଯାକ ସେ କଳି କରୁଥାନ୍ତି
ବିଯୋଡ଼ି ହେଲେ ସେ ଘରୁ ଅଧେ ବାଣ୍ଟନ୍ୟନ୍ତି ।
ଭାଇ ଭଗାରି ହୁଅନ୍ତି ଦୁହେଁ ଜାଣ ସରି
ଏ କଥା ନ ଜାଣି ଲୋକ ମରେ ଶୋକକରି ।
ଏ ତିନି କଥାରେ ବୁଝ ଆଉ ସାଧୁଜନେ
ସ୍ନେହ ନ କରି ଥାଆନ୍ତି ବିଷ୍ଣୁ ଚିନ୍ତି ମନେ ।
ତୁହି ତ ଜାଣିବା ରାଜା କରୁ କେତେ କୋହ
ଗଲା ମଲା କଥାରେ ନ କର କେବେ ସ୍ନେହ ।
ନୀରସ ଲୋକେ ଘେନିବେ ତେବେ ଅଳପକ
ବୋଲିବେ ଏ ରାଜା କରିଅଛି କେଡ଼େ ଶୋକ ।
କାହା ଭାଇ ଜାଣ କରୁ ନାହାନ୍ତି ବା କେତେ
ଥିଲାଲୋକ ନ ଛାଡ଼ନ୍ତି ଗୃହ କଦାଚିତେ ।
ଏ ରୂପେ ସଂସାରେ ହେଉଅଛି ଆତଯାତ
ଜୀଇ ଥିବା ଲୋକେ ମରୁଥାନ୍ତି ନାନାକୃତ୍ୟ ।
ଶତେ ବରଷର ବୃଦ୍ଧ ଥାନ୍ତି ଗୃହେ ବସି
ଯୁବା ପୁରୁଷମାନେ ତ ଘରୁ ଯାନ୍ତି ଖସି ।
ତେବେ ହେଁ ବୃଦ୍ଧ ଜାଣ ନ ଛାଡେ ଗୃହଲୋଭ
କୁଟୁମ୍ବ ଖାଇବେ ବୋଲି ସଞ୍ଚେ ଧନଦ୍ରବ୍ୟ ।
ଦାରୁଣ ମରିଲା ସିନା ତୁହି ଶୁଭେ ଅଛୁ
ଶୁଭ କଥାରେ ଅଶୁଭ କିମ୍ପା ଆଣି ପାଞ୍ଚୁ ।
ଜାଣିବା ଲୋକହୋଇ ତୁ କରୁ କେତେ ଶୋକ
ଚମକି ପଡୁଛି ତୋର ନାମେ ତିନିଲୋକ ।
ଆପେ ଯେବେ ଅଛୁ ତୁହି ସବୁ ତୋର ଅଛି
ଭାଇ ମରନ୍ତେ ଯେ ଦିଅ ଯିବା ଭାଇ ଲେଛି ।
ମଲା କଥାଟିକୁ ଶୋକ କରନ୍ତି ଯେସନେ
ବାତୁଳ ବୋଲି ଘେନନ୍ତି ତାକୁ ସାଧୁଜନେ ।
ଗଲା କଥାକୁ ହେ ତ୍ୟାଗ କରିଦେବ ମୂଳ
ଚିନ୍ତାର୍ଥୀ ଲୋକଙ୍କୁ ଜାଣ ମାଡ଼ିବସେ କାଳ ।
ସଂସାରେ ଜନ୍ମି କେହି ନ ରହେ ଦେହଧରି
କେ ଆଗ ମରଇ କେହୁ ପଛେ ଯାଏ ମରି ।
ତୋତେ ତ ବର ଦେଇଣ ଅଛନ୍ତି ଈଶ୍ୱର
କେଡ଼େ ବର ପାଇ ତୁହି ଭାଳୁ ନୃପବର ।
ବାଳକ ପ୍ରାୟ ତୋତେ କେ ବସି ବୋଧୁଥିବ
ବାଳକ ନୋହୁ ଏବେ ତ ତୁହି ଯୁବାଭାବ ।
ଏବେ ଯେ କହୁଛି ଆମ୍ଭେ କର ରାଜନୀତି
ଗୁରୁଙ୍କ ବଚନେ ମୁର କଲା କ୍ରୋଧ ଶାନ୍ତି ।
ଆସନ ତେଜ୍ୟା କରିଣ ବସି ନିଶମୋଡ଼ି
ବିସ୍ତାରିଣ ବେନିବାହୁ ଛାଡ଼ି ଘୋରରଡ଼ି ।
ଗୁରୁଙ୍କ ମୁଖକୁ ଚାହିଁ ଭୂମେ ହାତ ପିଟି
ଯୋଜନ ଯାଏ ତଳକୁ ଭୂମି ଗଲା ଫାଟି ।
ଦେଖିଣ ଲୋକେ ସେ କଥା ଚକିତ ହୋଇଲେ
ସେ ଖାତେ ଲକ୍ଷେ ଭରଣ ମାଟି ପୂରାଇଲେ ।
ତେବେ ଯାଇ ସେହି ଭୂମି ହେଲା ସମତୁଲ
ମୁର ବୋଇଲା ଗୁରୁଙ୍କ ବଚନ ନିର୍ମାଲ୍ୟ ।
ଶୁଣିଲାକ୍ଷଣି ହୋଇଲା ଶୋକ ମୋର ଶାନ୍ତି
ନିଶ୍ଚେ ମାରିବି ନୃସିଂହ ଶେଷଦେବ ମୂର୍ତ୍ତି ।
ବଲ୍ଲଭ ଶତ୍ରୁକୁ ଧରି ବସାଇବି ଶୂଳେ
ବିପ୍ରଙ୍କୁ ବୋଧିଣ ପେଷିଦେବି ଯମଆଳେ ।
ବଦ୍ରିକା ନଗ୍ର ସମୁଦ୍ରେ ପେଲିଦେବି ମେଲି
ଏତେକ ଜାଣ କରିବି ଗଲେ ମୁହିଁ କାଲି ।
ଶୁକ୍ର ବୋଇଲେ ରାଜା ଏ କଥା ସତ ସିନା
କଲେ ସେହୁ ଅଳପ କି ବେନି ବିପ୍ର ନନା ।
ଦାରୁଣ ପରା ଭାଇକି ଗଲେ ତୋର ମାରି
ଧଇର୍ଯ୍ୟ ଥିବାରୁ ରହିଅଛି ଦେହଧରି ।
ମୁର ବୋଇଲା ଗୁରୁ ହେ ବୁଝିବା ତା ପଛେ
ବ୍ରାହ୍ମଣ କୁଳ ଆଉ ନ ରଖେ ମୁହିଁ ମଞ୍ଚେ ।
ଭାଇର ଶବକୁ ଆଗ କରିବା ସଂସ୍କାର
ତହିଁର ଉତାରୁ ସବୁ କରିବା ବିଚାର ।
ଶୁକ୍ର ବୋଇଲେ ରାଜା ହେ ଏକଥା ପ୍ରମାଣ
ଦୂତକୁ ପଚାର କାହିଁ ପଡ଼ିଛି ଦାରୁଣ ।

ଛାଣିଲେ ସିନା ଆଣିବ ଶବ ଯାଇ ଲୋଡ଼ି
ଚନ୍ଦନ କାଠ ଅଗ୍ନିରେ ଲଦି ଦେବା ପୋଡ଼ି ।
ଶୁଣିଣ ସେ ମୁରାସୁର ଦୂତ ମୁଖ ଚାହିଁ
ବୋଇଲା କହରେ ଭ୍ରାତ ପଡ଼ିଅଛି କାହିଁ ।
ଶୁଣିଣ କହନ୍ତି ବେନିଦୂତେ କରଯୋଡ଼ି
ବୋଇଲନ୍ତି ସମରେ ଜାଣ ସର୍ବେ ଗଲେ ଗଡ଼ି ।
ନିମିଷ ମାତ୍ର ନୃସିଂହଗଣ କାହୁଁ ଆସି
ମାରିଲେ ସୈନ୍ୟମାନଙ୍କୁ ରାହୁ ପ୍ରାୟ ଆସି ।
ଦେଖି ତୁମ୍ଭଭାଇ ଧାଇଁଗଲେ ବାହୁଟୋଳି
ଲକ୍ଷେକ ଧରି ଗର୍ଭକୁ ତାଙ୍କୁ ଦେଲେ ଗିଳି ।
ବ୍ରାହ୍ମଣ ନୁହନ୍ତି ସେହୁ ହେବେ ଦିଗପାଳ
ଗିଳନ୍ତେ ପଡ଼ିଲେ ନାସା କର୍ଣ୍ଣ ଖସି ତଳ ।
କେତେହେଁ ରୂପେ ସେ ଯୁଝି ନ ପାରିଲେ ମରି
ବଦ୍ରିକା ଗଲେ ପୁଣ ସେ ତପୀ ରୂପ ଧରି ।
ମାୟାରେ ଏ ରୂପ ଧରି ପଶିଲେ ନଗରେ
ବଲ୍ଲଭ ରାଜାକୁ ଯାଇ ଭେଟିଲେ ତତ୍ପରେ ।
ଗୃହସ୍ଥ ପତ୍ନୀ ପୁତ୍ରକୁ ଆଣିଲେ ମଣାଇ
ବାଟରେ ଆସୁ ଧଇଲେ ପୁଣ ନିଜ ଦେହୀ ।
ଯେତେକ ମାୟାକଲେ ସେ ନୋହିଲେ ନିଉନ
ମାରିଣ ସୈନ୍ୟକୁ ଗଲେ ସେ ନୃସିଂହଗଣ ।
ଗୋଟିଏ ଅଛି ଗରୁଡ଼ ପକ୍ଷୀ ବୋହିକରି
ରହିଲା ସେ ଲକ୍ଷେଯୁଣ କାୟାକୁ ବିସ୍ତାରି ।
ଯେତେକ ବିନ୍ଧିଲେ ଶର ବାଜି ଅଙ୍ଗେ ତାର
ଧୂଳିପ୍ରାୟ ହୋଇ ଉଡ଼ିଗଲେ ଗଗନର ।
ଆବର ଜଣକେ ଅଛି କର୍ଣ୍ଣାଟେଶ ବୋଲି
ସେ ପୁଣି ମନକଲେ ଯେ ଗିରିପାରେ ପେଲି
ତଥାପି କରିବ ରଣେ ପଶି ଯେବେ ଯୁଦ୍ଧ
ତିନିଯୋଜନ ପର୍ଯ୍ୟନ୍ତେ ନାଚିବେ କବନ୍ଧ ।
ସୁଜାଣ ବୋଲିଣ କୃଷ୍ଣବଲ୍ଲଭର ମନ୍ତ୍ରୀ
ଚକ୍ଷୁ ପଲକେ ମାରିବ ଲକ୍ଷ ଲକ୍ଷ ଯନ୍ତ୍ରୀ ।
ଆବର ଶେଷଦେବଟି ଅଟେ ଜାଣ ଯେହୁ
କ୍ଷଣକେ ସହସ୍ର ଫଣା ହେଲା କହୁଁ କହୁଁ ।
ଶରୀରରୁ ଫଣାଯାକ ବାଢ଼ିଲା କି କରି
ଛତ୍ର ଆକାରେ ଢ଼ାଙ୍କିଣ ରଖିଲା ବିସ୍ତାରି ।
ତେତିଶକୋଟି ଦେବତା ଦଶଦିଗ ପାଳେ
ଫଣାମାନଙ୍କରେ ଆସି ବସିଲେ ସକଳେ ।
ଯେ ଯାହାର ଜ୍ୟୋତି ଧରି ପ୍ରକାଶି ଫଣାରେ
ଗର୍ଜନ୍ତି ଯେ ଫୁଫୁକାରେ ଅଗ୍ନିପ୍ରାୟ ବ୍ୟଗ୍ରେ ।
ସେ ଫଣାଯାକକୁ ଟେକି ନୃସିଂହର ଭାଇ
ଦାରୁଣ ଉପରେ ମାଡ଼ି ବସିଲାକ ଯାଇ ।
ସେ ଫଣାଯାକରେ ପଡ଼ି ଭାଇ ତୋର ମଲା
ତହିଁ ଉପରେ ଅନଳ ଶର ବିନ୍ଧିଦେଲା ।

ଦଶଯୋଜନ ପର୍ଯ୍ୟନ୍ତେ ପଡ଼ିଲାକ ମଡ଼ା
କ୍ଷଣକେ ଗଲେ ଅଗ୍ନିରେ ସବୁହୋଇ ପୋଡ଼ା ।
ଦାରୁଣ ଆଦି ସମସ୍ତ ସୈନ୍ୟ ଗଲେ ପୋଡ଼ି
ଆସିଛୁ ଦେଖି କହୁଛୁ ଆମ୍ଭେ କରଯୋଡ଼ି ।
ଶୁକ୍ର ବୋଇଲେ ଗଲାରୁ ଆଉ ହେବ କିସ
ଏଠାରେ ହୁଅନ୍ତି ଅଗ୍ନିଲାଗି ସ୍ଥିରୀହଂସ ।
ଦାରୁଣର ମହାଦେଈ ଯେତେ ଦେହଲାଗି
ସମସ୍ତେ କରନ୍ତୁ ସ୍ୱାମୀକାର୍ଯ୍ୟ ଯାଇ ବେଗି ।
ଶୁଣିଣ ସେ ମୁରାସୁର ମୁହୁସୁଲୀ ରାଇ
ବୋଲେ କହ ଆଲୋ ସାନବୋହୁଙ୍କୁ ତୁ ଯାଇ ।
ପଡ଼ନ୍ତୁ ସ୍ୱାମୀ ସନ୍ତକ ହରି ଅଗ୍ନିକୁଣ୍ଡେ
ଦେଖନ୍ତୁ ସମସ୍ତେ ଚାଲିଯାନ୍ତୁ ରାଜଦାଣ୍ଡେ ।
ରାଜାର ବୋଲେ ପୋଇଲୀ ଗଲା ଅନ୍ତପୁର
ଚନ୍ଦ୍ରାବତୀ ରାଣୀଆଗେ କହେ ଯୋଡ଼ିକର ।
ଗୃହସ୍ଥ ମରିବା ବାର୍ତ୍ତା ପାଇ ରାଜରାଣୀ
ଭୂମିରେ ପଡ଼ି ରୋଦନ କରେ ପୁଣି ପୁଣି ।
ଆହା ମୋର ସ୍ୱାମୀ ବୋଲିଶିରେମାରେକର
ପତିକାର୍ଯ୍ୟ କରିବାକୁ ଚଳିଲା ତତ୍ପର ।
ଚନ୍ଦ୍ରାବତୀ ତୁଲେ ଚଳିଗଲେ ଲକ୍ଷେ ନାରୀ
ସମସ୍ତେ ଅଟନ୍ତି ଦାରୁଣର ପରିବାରୀ ।
ଯେତେ ଚଳିଗଲେ ପଡ଼ିଗଲେ ଅଗ୍ନିଖାତେ
ତହିଁ ଉତ୍ତାରୁ ଦୁର୍ବଳ କର୍ମ କଲେ ଯେତେ ।
ବେଦମାର୍ଗ ଚାହିଁ କ୍ରିୟାକମ ସର୍ବ କଲେ
ଦଶ ଏକାଦଶ କରି ପିଣ୍ଡଦାନ ଦେଲେ
ପ୍ରେତକର୍ମ ସାରି ରାଜା ହେଲେ କୋପାନଳ
ଯିବାକୁ ଖୋଜିଲେ ବଦ୍ରିକାକୁ ଅନୁକୂଳ ।
ଏଥୁ ଅନନ୍ତରେ ପୁଣି ସେ ନାରଦ ଯତି
ବୋଇଲେ କହ ଯେ ଶେଷଦେବଙ୍କର କୀର୍ତ୍ତି
ଦାରୁଣକୁ ମାରି ପ୍ରଭୁ କଲେ ଆଉ କିସ
ଏ କଥା କହ ଶୁଣିମା ବଡ଼ ଏ ରହସ୍ୟ ।
ନାରଦ ଭକ୍ତିରେ ବ୍ରହ୍ମା ହୋଇଣ ପୂରିତ
କହନ୍ତି ଶେଷଦେବଙ୍କ ମହିମା ଚରିତ ।
ବୋଲନ୍ତି ହେ ସାବଧାନେ ଶୁଣ ଗ୍ରନ୍ଥବାଣୀ
ମନୁଷ୍ୟ ଦେହରେ ଶେଷ ହେଲେ ସସ୍ରଫଣୀ
ଦାରୁଣ ଦୈତ୍ୟକୁ ମାରି ମନେ କୋପହନ୍ତି
ଶୂନ୍ୟରେ ଥାଇ ନମନ୍ତି ଦେବେ ପାଦଗତେ
ବ୍ରହ୍ମା ଶଙ୍କର ବାସବ ଆଦି ଦଇବତ
ବରୁଣ ଯେ ଯମ ଧର୍ମ ମରୁତ ନୈର୍ଋତ ।
କୁବେର ଯେ ଅଗ୍ନିଚନ୍ଦ୍ର ଦେବ ଦିବାକର
ଅନନ୍ତ ପାଶେ ଆସି ଏ କଲେ ନମସ୍କାର ।
ବୋଇଲେ ପ୍ରଭୁ ଅନନ୍ତ ତୁମ୍ଭେ ବ୍ରହ୍ମରାଶି
ତୁମ୍ଭର ଘେନି ହୋଇଛୁ ଆମ୍ଭେ ସ୍ୱର୍ଗବାସୀ ।

ତୁମ୍ଭର ମୂରତି ତୁମ୍ଭ ଅଶେଷ ମହିମା
କେ ମୁଖରେ କହିପାରେ ତୁମ୍ଭ ଗୁଣସୀମା ।
ସସ୍ରଫଣାକୁ ତୁମ୍ଭ କିଦେବା ଆଣି ଲକ୍ଷ୍ୟ
କୋଟିରନ୍ଧ୍ରେ କରଣଟି ଯହିଁ ହେବ ତୁଚ୍ଛ ।
ସହସ୍ରେକ ସୂର୍ଯ୍ୟ ଜ୍ୟୋତି ଦିଶେ ଯହିଁ ଫୁଟି
ତହିଁକି ସଂସାର ଆଉ ଲକ୍ଷ୍ୟ ନ ମିଳେଟି ।
ଧାତା ରୁଦ୍ର ଇନ୍ଦ୍ରଙ୍କର ପ୍ରଳୟ ଯେ ହୁଏ
ତୋହର ନାଥ ପ୍ରଳୟ କେବେ ଜାଣ ନୁହେଁ
କୋଟି ସୂର୍ଯ୍ୟକୁ ଜିଣି ପ୍ରକାଶେ ତୋ ଜ୍ୟୋତି
ତେଣୁ ତୁମ୍ଭ ନାମ କୋଟି କାମପାଳ ମୂର୍ତ୍ତି ।
ଯାବତ ଜୀବମୁଖେ ତୋ ଜିହ୍ୱା ଖଞ୍ଜା ସିନା
ପ୍ରସବ କରି ପୁତ୍ରକୁ ଯେହ୍ନେ ଆଶ୍ୱାସନା ।
ତୋର ଫଣା ରସନାରେ ଜାଣ ପୃଥ୍ୱୀଯାକ
ଆପଣାର ଜିହ୍ୱା ରସୁ ବର୍ତ୍ତନ୍ତି ଯେ ଲୋକ ।
ବ୍ରହ୍ମା ବିଷ୍ଣୁ ହର ଆଦି ଦେବତା ଯେ ଅଛୁ
ତୋ ଜିହ୍ୱାର ସ୍ୱାଦୁ ପାଇ ସର୍ବେ ଆମ୍ଭେ ବଞ୍ଚୁ
ବୁଝିଲେ ତ ସର୍ବେ ଆମ୍ଭେ ତୋର ବାଳଶିଶୁ
ଲୀଳା ସରିଲେ ଅଙ୍ଗରେ ଯାଇ ତୋର ମିଶୁ ।
ଏଡ଼େହେଁ ପୃଥ୍ୱୀ କରିବୁ ସୃଜି ଯେବେ ନାଶ
ପିତା ଅବୋଧ ହୋଇଲେ କରେ ପୁତ୍ର କିସ
ସ୍ୱାମୀ ଅବୋଧ ହୋଇଲେ ଭାର୍ଯ୍ୟା ଦୁଃଖପାଇ
ଶିଶୁ ଅବୋଧ ହେଲେ ନପାରେ ବୋହୁରହି
ଗୁରୁଅବୋଧ ହେଲେ କି ପାରେଶିଷ୍ୟବୋଧି
ରୋଗୀ ଅବୋଧ ହେଲେ କି ହେବ ପଥ୍ୟରାନ୍ଧି
ମାତା ଅବୋଧ ହେଲେ ସେ ଝିଅପଣ ଊଣା
ଘର ସୁଖ ନ ପାଇ ସେ କରେ ମନେ ଘୃଣା
ଭାଇ ଭାଉଜ ଆଦର ତାକୁ ନ କରନ୍ତି
ମାତା ଅବୋଧ ହେଲେଯେ କନ୍ୟାଦୁଃଖପାନ୍ତି
ଜ୍ଞାନୀଅବୋଧ ହେଲେ ଅଜ୍ଞାନୀ ହୋଇ ଭ୍ରମ
ବ୍ରହ୍ମସ୍ୱରୂପେ ଚିହ୍ନି ନ ପାରେ ଆତ୍ମାରାମ ।
ସାହୁ ଅବୋଧ ହେଲେ ନ ପାରେ ଋଣଶୁଝି
ନିତି କଳହ ହୋଇଲେ ଘର ଯାଏ ଭାଜି ।
ପଣ୍ଡିତ ଅବୋଧ ହେଲେ ପୁରାଣ ନ କହି
ପ୍ରତିଗ୍ରାହୀ ଅବୋଧେ ନ ପାରେ ଦାନଦେଇ
ରାଜା ଅବୋଧ ହେଲେ ଯେ ପ୍ରଜା ବଡ଼ଦୁଃଖୀ
ସୁରତି ଅବୋଧ ହେଲେ ଭାର୍ଯ୍ୟାନୋହେସୁଖୀ
ସାମନ୍ତ ଅବୋଧରେ ନ ପାରେ ଭୃତ୍ୟ ରହି
ପତି ଅବୋଧେ ପତ୍ନୀର ଦ୍ଦିନ ନ ସରଇ ।
ବ୍ୟାଧି ଅବୋଧ ହେଲେ ଯେ ସରଇସେଗାତ୍ର
ସିନ୍ଧୁ ଅବୋଧ ହେଲେଯେ ପୃଥ୍ୱୀକେତେମାତ୍ର
ଆପେ ଅବୋଧ ହୋଇଲେ ପାରିବକେବୋଧି
ରଖ ବା ନ ରଖ କହୁଅଛୁ ଦେବେ ବନ୍ଦି ।

ଆବର ଶୁଣ ହେ ସ୍ୱାମୀ କହୁଛୁ ସନ୍ଦେଶ
ବିଧାତା ପୁତ୍ର ପରା ସେ ଦାରୁଣ ରାକ୍ଷସ ।
ବୁଝିଲେ ଦାରୁଣ ସେହି ବିପ୍ର ନୁହଇ କି
ମନୁଷ୍ୟ ହେଲେ ଆପଣ ମାରନ୍ତ କାହିଁକି ।
ସହସ୍ରେ ଫଣା ହେବାର ନ ଲାଗିଲା ଦୋଷ
ଆନ ମାରିଥିଲେ କରିଥାନ୍ତା ତୀର୍ଥବାସ ।
ବ୍ରାହ୍ମଣ ଭୋଜନ ଲକ୍ଷେ କରନ୍ତାଣି ଲୋଡ଼ି
ଆପଣଙ୍କ ମୂର୍ତ୍ତି ଦେଖି ଗଲା ଦୋଷ ଛାଡ଼ି ।
ଶୁଣିଣ ଅନନ୍ତସ୍ୱାମୀ କଲେ କୋପଶାନ୍ତି
ବୋଇଲେ ସତ୍ୟକଥାଏ ହ୍ୱନ୍ତା ଲୋକେଖ୍ୟାତି
ବୁଝିଲେ ସଂସାରେ ଜନମୁଖେ ନାହିଁ ଲାଜ
ଲାଗଇ ଦେହେ ସରନ୍ତା ସିନା ମୋର କାର୍ଯ୍ୟ
ଏମନ୍ତ ପାଞ୍ଚ ସହସ୍ରେ ଫଣାଧରି ରୂପ
ନେଇ କ୍ଷଣେମାତ୍ରେକଲେ ଶରୀରରେ ଗୋପ୍ୟ
ତତକ୍ଷଣେ ନିଜଦେହ ଧରି ଅନନ୍ତଟି
ଦେଖି ବ୍ରହ୍ମା ଇନ୍ଦ୍ର କଲେ କୁସୁମ ଯେ ବୃଷ୍ଟି
ପୁଷ୍ପକ ରଥରେ ବସାଇଲେ ଶେଷଦେବ
ଧବଳ ଛତ୍ରକୁ ଧରି ଟେକିଲେ ବାସବ ।
ବେଦପତି ବେଦପଢ଼ି ତହିଁ ହେଲେ ଉଭା
ଡମ୍ବରୁ ବଜାଇ ଆଗେ ହର କଲେ ସେବା
ଦେବସ୍ତିରୀମାନେ ଧରି ପୁଷ୍ପ ମାଳେ ମାଳେ
ଲମ୍ବାଇ ଦେଲେ ଯେ ଶେଷଦେବ କଣ୍ଠସ୍ଥଳେ
ପବନ ଦେବ ଚାଳନ୍ତି ଚାମରକୁ ଢାଳି
କରନ୍ତି କୁବେର ସେବା ଦେଇ ରତ୍ନମାଳି ।
ବରୁଣ ଦେବତା କରେ ଧରି ତୀର୍ଥପାଣି
ଅନନ୍ତଙ୍କ ପାଦପଦ୍ମେ ଢାଳିଦେଲେ ଆଣି ।
ଗନ୍ଧର୍ବ ଦେବତା ଆସି ଧରି ତାଳମାନ
ବଜାନ୍ତି ଅନନ୍ତ ଚାରିପାଶେ ଘନ ଘନ ।
ବୃହସ୍ପତିଙ୍କର ମୂଳେ ସର୍ବ ବିପ୍ରେ ଆସି
ପଢ଼ନ୍ତି ଅଷ୍ଟକମାନ ଯେଝାମୁଖେ ଘୋଷି ।
ସ୍ୱର୍ଗର ଯେ ଅପସରୀ ଆସି ଶେଷ ଆଗେ
ନାଚନ୍ତି କରଭଉଁରି ମାରି ନୃତ୍ୟ ରଙ୍ଗେ ।
ନାରଦ ବୀଣା ବଜାଇ ଗାନ୍ତି ଟେକି ନିଶ
ପୁରାଣ ପଢ଼ନ୍ତି ବ୍ୟାସଋଷି ଅଷ୍ଟାଦଶ ।
ଅଗ୍ନି ଦେବତା ଆସନ ଆଣି ଦେଲା ସାଜି
ପଢ଼ନ୍ତି ଯେ ନବଗ୍ରହ ଫେଡ଼ି ବାରେ ପାଞ୍ଜି
ରୋହିଣୀକାନ୍ତ ଯାଇଣ ଟେକେ ଶ୍ୱେତଛତ୍ରି
ବୀରକାହାଳୀ ଧରିଣ ଆଦିତ୍ୟ ବଜାନ୍ତି ।
ବସୁଧାସୁତ ବିଡ଼ିଆ ଆଣି କଲେ ଲାଗି
ନାଶକର ଗୁଆମାନ ଦିଏ ବେଳ ଜଗି ।
ରତ୍ନ ପାଦୁକା ଯେ ବେନି ଦେଲେ ନଇର୍ଋତ
ସାମଗାନ କଲେ ଆଗେ ସରସ୍ୱତୀ ମାତ ।

ଯୋଗ କରିଣ ଯେ ସାମଆଦି ସମସ୍ବର
ଏମାନେ ଲାଗିଲେ ସର୍ବେ ଖଞ୍ଜାରେ ଯେଝାର
ସକଳ ଦେବତା ସଜ ଏ ରୂପରେ ହୋଇ
ବିଞ୍ଚିଲେ କର୍ପୂର ଚୂର୍ଣ୍ଣ ଶେଷ ପରେ ନେଇ
ବଇଁଶୀ ବେଣୁ ବୀଣାଦି ଶବ୍ଦକରି ଘୋର
ନୃସିଂହଙ୍କ କରତାଳି ବାଜେ ଅଗୋଚର ।
ନାନା ଉତ୍ସବ କରିଣ ସର୍ବ ଦେବେ ବେଢ଼ି
ଚାଲନ୍ତି ଯେ ଆଗପଛ ଶେଷ ପାଦେ ପଡ଼ି
ମଣିମା ମଣିମା ବୋଲି ସର୍ବ ମୁଖେ ଭାଷେ
ଗ୍ରହଣେ ଅନନ୍ତ ପ୍ରଭୁ ମହୀପରି ଦିଶେ ।
ଭେଟିଲେ ଆନନ୍ଦ ବନେ ଆସି ନୃସିଂହଙ୍କୁ
ହସିଲେ ନୃସିଂହ ପ୍ରଭୁ ତହିଁ ଦେବତାଙ୍କୁ ।
ଧାତା ଋଷି ରୁଦ୍ର ଇନ୍ଦ୍ର ଆଦି ଦିଗପାଳ
ଏହାଙ୍କୁ ଦେଖି ସନ୍ତୋଷ ହେଲେ ଆଦିମୂଳ
ଅନନ୍ତ ଚାଳି ଗୁଣ୍ଡିଚାଯାତ୍ରା ବିଷ୍ଣୁପ୍ରାୟେ
ଶେଷଙ୍କୁ ଘେନି ମିଳିଲେ ଆଗେ ଦେବରାୟେ
ପୁତ୍ରକୁ ଦେଖି ଧଇଲେ ମାଏ କୋଳକରି
ବଦନ ଚୁମ୍ବିଣ କୃଷ୍ଣବଲ୍ଲଭର ନାରୀ ।
ଶେଷଙ୍କୁ ନ ଦେଖି ଭାଳୁଥିଲେ ବାପ ମାଏ
ଦେବତାମାନେ କରନ୍ତି ଦେଖି ଜୟେ ଜୟେ
ଏଥିଉତ୍ତାରେ ଯେ ଶୁଣ ନାରଦ ମହର୍ଷି
ନୃସିଂହଙ୍କୁ ପୂଜାକଲେ ଦେବତାଏ ଆସି ।
ବ୍ରହ୍ମାଏ ନୃସିଂହ ପାଦେ ହୋଇ ଗଦଗଦ
କହନ୍ତି ଯେ କରଯୋଡ଼ି ସେବି ପଦ୍ମପାଦ ।
ବୋଇନ୍ତି ଶୁଣ ନୃସିଂହ ପ୍ରଭୁ ନାରାୟଣ
ତୁମ୍ଭ କରୁଣାରୁ ମଲା ଏହି ଦୈତ୍ୟ ପୁଣ ।
କେହ୍ନେ ମୁରକୁ କରିବ ତୁମ୍ଭେ ଏବେ ନାଶ
ତୁମ୍ଭଙ୍କୁ ସିନା ଜଣା ଏ କଥା ହୃଷୀକେଶ ।
ଆନଲୋକ ପାରନ୍ତେ କି ଏହି ଦୈତ୍ୟମାରି
ଯେବଣ ଦଇତ୍ୟ ବେନି ପୃଥ୍ୱୀ ହନ୍ତାକାରୀ
କାଠିଏ ପରିଯନ୍ତେ ଯାହାର ସୈନ୍ୟ ଲେଖା
ତାହାଙ୍କୁ ନାଶିବାକୁ ହେ ତୁମ୍ଭେ ମୂଳ ଏକା
ବହୁତ ନୃସିଂହଗଣ ଅଙ୍ଗେ ଛନ୍ତି ପୂରି
ଦେବତାଯାକ ଦେଖିଲୁ ବସି ସଭା କରି ।
ବୃହସ୍ପତିଙ୍କର ହସ୍ତେ ଦେଇ ଖଡ଼ିରାଜି
ଅଙ୍ଗକୁ ଝାପିଣ ସର୍ବେ ନ ପାରିଲୁ ହେଜି ।
ଆଦ୍ୟ ଏକରୁ ଯେ ଦଶ ଦଶରୁ ଯେ ଶତେ
ଶତରୁ ସହସ୍ର କରି ଦେଖିଲୁ ଅୟୁତେ ।
ଅଇବ୍ରତରୁ ଯେ ଲକ୍ଷେ ଲକ୍ଷୁ ନିୟୁତଟି
ନିୟତରୁ ଖୋଜି ଲେଖି ବସାଇଲୁ କୋଟି
କୋଟିରୁ ମର୍ଭୁତେ ମର୍ଭୁତରୁ ମେବଛଟି
ଶୁଣ ନାରଦ କହନ୍ତି ଦେବ ପରମେଷ୍ଠି ।
ମେବଛରୁ ବୃନ୍ଦେ ବୃନ୍ଦେରୁ ଯେ ଖର୍ବେ କହି
ଖର୍ବରୁ ନିଖର୍ବ ନିଖର୍ବରୁ ଶଙ୍ଖ ହୋଇ ।
ଶଙ୍ଖ ପରେ ପଦ୍ମ ପଦ୍ମ ପରେ ସାଗରଟି
ସାଗରୁ ଯେ ମଧ୍ୟେ କହି ମଧ୍ୟୁ ପରାର୍ଦ୍ଧଟି ।
ପରାର୍ଦ୍ଧରୁ ଅକ୍ଷୌହିଣୀ ତହୁଁ ବିକ୍ଷୌଣୀଟି
ବିକ୍ଷୌଣୀରୁ ଅଙ୍କୁଶ ଯେ ତହୁଁ କନ୍ଦଳଟି ।
କନ୍ଦଳରୁ ଅନନ୍ତ ଯେ ତହୁଁ ଲେଖିକରି
ଏମନ୍ତେ ତୁମ୍ଭ ମହିମା ଗୋଟି ଅଛି ପୂରି ।
ଏଡ଼େ ମହିମା ନୁହନ୍ତା ହେବେ ପ୍ରଭୁଙ୍କର
ଆମ୍ଭେ କି ସଂସାରେ ରହିଥାନ୍ତୁ ବ୍ରହ୍ମାହର ।
ଶୁଣି ନୃସିଂହ ପ୍ରଭୁ ଶ୍ରୀମୁଖପଦ୍ମେ ହସି
ବ୍ରହ୍ମାଙ୍କୁ କହିଲେ କହ ମାତାମନ ତୋଷି
ଶୁଣିଣ କହିଲେ ଆଜ୍ଞା ପାଇ ପଦ୍ମ ଯୋନି
ବୋଇଲେ ଭଗବତୀ ଗୋ ଶୁଣ ପୁଣ୍ୟ ଧ୍ୱନି
କୃପିଟଯୋନି ଗର୍ଭରୁ ଜନ୍ମି ଜନହିତେ
ଅଯୋନି ସମ୍ଭୂତ ବିଷ୍ଣୁ ବହି ଗର୍ଭଗତେ ।
ସାକ୍ଷାତେ ସେ ମହାପ୍ରଭୁ ଆସି ବୈକୁଣ୍ଠରୁ
ସାଧୁଙ୍କ ହିତେ ଜନ୍ମିବେ ଆସି ତୋ ଜଠରୁ
ପୃଥ୍ୱୀର ଭାରା ସହି ନ ପାରି ଭଗବାନ
ତେଣୁ ତୋ ଗର୍ଭରେ ଆସିହେଲେଯୋନିଜନ୍ମ
ଅଛନ୍ତି କେବଣ ମହାପ୍ରଭୁ ନିଜ ଦେଖି
ପଚାଶକୋଟି ପୃଥ୍ୱୀରେ ପୂରିଛନ୍ତି ରହି ।
ସେ ହରିଙ୍କୁ ବହିଲୁ ତୁ ଯେଣୁ ଦଶମାସ
ଆମ୍ଭେ ଜାଣିଲୁ ସେ ଭାରା ହୋଇଲା ଉଶ୍ୱାସ
ଆପଣ ଘେନି ରହିଲୁ ଆମ୍ଭେ ଏବେ ଗତି
ସଂସାରେ ବିଷ୍ଣୁ ବୋଲି ନଥିଲା ଜନ୍ମକୀର୍ତ୍ତି ।
ପୃଥ୍ୱୀରେ ରହିଲା ଏହିଠାରୁ ନାମ ଆସି
ନୃସିଂହ ବାମନ ନାରାୟଣ ବ୍ରହ୍ମରାଶି ।
ଅନାଦି ଯେ ଆଦିକନ୍ଦ ଅଚ୍ୟୁତ ନୃହରି
ଗୋବିନ୍ଦ ଶ୍ରୀ ଗୋପୀନାଥ ମାଧବ ଦୈତ୍ୟାରି
ଶ୍ରୀଧର ଶ୍ରୀ ଦାମୋଦର ଦୟାମୟ ସିନ୍ଧୁ
ଶ୍ରୀବତ୍ସ କେଶବ ଚକ୍ରପାଣି ଦୀନବନ୍ଧୁ ।
କୃପାଳୁ ଶ୍ରୀ ବାସୁଦେବ କୃଷ୍ଣ ଶ୍ରୀନିବାସ
ମୁକୁନ୍ଦ ମୁରାରି ରାମ କମଳା ବିଳାସ ।
ପତିତପାବନ ହରି ଜଗନ୍ନାଥ ସ୍ୱାମୀ
ଭକତର ଭାବଗ୍ରାହୀ ଅଟୁ ଅନ୍ତର୍ଯ୍ୟାମୀ ।
ଶାରଦାବଲ୍ଲଭ ମଧୁସୂଦନ ଯେ ଗୁରୁ
ଏଡ଼େକ ନାମ ପଢ଼ିବେ ଯେହୁ ପ୍ରଭାତରୁ ।
ଯେ ପଢ଼ି ପାରିବ ପାପ ଖଣ୍ଡନ ତା ହେବ
ରଖିବେ ବୈକୁଣ୍ଠପୁରେ ନେଇ ବାସୁଦେବ
ସକଳ ନାମ ଅଟଇ ତୋହର ଯେ ବସ
ଆବର ଯେତେକ ନାମ ଅଟେ ସବୁ ମିଛ ।

ତୁମ୍ଭର ଗର୍ଭୁ ଜନ୍ମିଲେ ମାଗୋ ନୃସିଂହଟି
ଏ ନାମ ଭଜି ସଂସାରଲୋକେ ତରିବେଟି
ନିରାକାର ବ୍ରହ୍ମକୁ ଆକାର କଲ ଆଣି
ପ୍ରତ୍ୟକ୍ଷେ ଆଦିମାତା ତୁ ଭଗବତୀ ରାଣୀ ।
ଦ୍ୱିତୀୟ ଜନ୍ମେ ଅଦିତି ମାଗୋ ଅଟୁ ତୁହି
ଜନ୍ମିଲେ ନୃସିଂହଦେବ ବାମନ ଯେ ହୋଇ
ତୃତୀୟ ଜନ୍ମେ କୌଶଲ୍ୟା ଜାଣ ତୁହି ହେବୁ
ଶ୍ରୀରଘୁନାଥଙ୍କୁ ତୁହି ଗର୍ଭୁ ପ୍ରସବିବୁ ।
ଚତୁର୍ଥ ଜନ୍ମେ ଦେବକୀ ହେବୁ ପୁଣି ତୁହି
କରିବୁ ଶ୍ରୀକୃଷ୍ଣ ଅବତାର ଗର୍ଭେ ବହି ।
ଏ କୃଷ୍ଣବଲ୍ଲଭ ଜାଣ କଶ୍ୟପ ଯେ ହେବ
ତୃତୀୟେ ଦଶରଥ ଚତୁର୍ଥେ ବାସୁଦେବ ।
କାଳେ କାଳେ ତୁମ୍ଭେ ବେନି ଅଟ ପତିପତ୍ନୀ
ତୁମ୍ଭ ରଜ ବୀର୍ଯ୍ୟ ବିଷ୍ଣୁ ଜନ୍ମହେବେ ଘେନି ।
ଆଦ୍ୟ ଜନ୍ମଲୀଳା ଏହୁ ନୃସିଂହାବତାର
ବହିବେ ମୁରାରି ନାମ ମାରି ବ୍ରହ୍ମସୁର ।
ଏ ମୁର ଆହୁରି ଜନମିବ ତିନିବେଳ
ହିରଣ୍ୟ ରାବଣ ଅନ୍ତେ ହେବ ଶିଶୁପାଳ ।
ବୈକୁଣ୍ଠପୁରର ଦ୍ୱାରୀ ଏହି ଭାଇ ବେନି
ଶାପରୁ ଜନ୍ମିଅଛନ୍ତି ଦୈତ୍ୟ ଦେହ ଘେନି
ଏହାଙ୍କର ଭାରା ପୃଥ୍ୱୀ ନ ପାରନ୍ତେ ସହି
ତେଣୁକରି ଏ ନୃସିଂହ ଜନ୍ମିଲେ ତୋଦେହୀ
ଶେଷ ବୋଲି ଯାର ନାମ ଅଟେ ନିରାକାର
ନୃସିଂହର ବାଳଲୀଳା ଏହୁ ଅବତାର ।
ଏହି ନୃସିଂହଟି ଯାଇ ସ୍ତମ୍ଭେ ପ୍ରକାଶିବେ
ହିରଣ୍ୟକୁ ମାରି ପୁଣି ବୈକୁଣ୍ଠକୁ ଯିବେ ।
ବାମନ ରୂପରେ ପୁଣି ହେବେ ଅବତାର
ବଳିକୁ ପାତାଳେ ସ୍ଥାପି ରଖିବେ ତ୍ରିପୁର ।
ରାମ ଅବତାରେ ହେବେ ତ୍ରେତାଯୁଗେ ଯାଇ
ତୁମ୍ଭର ଗର୍ଭୁ ଜନ୍ମିବେ ଏହି ଭାବଗ୍ରାହୀ ।
ରାବଣକୁ ମାରିକରି ବୈକୁଣ୍ଠକୁ ଯିବେ
ଦ୍ୱାପରଯୁଗେ ପୁଣି ତୋ ଗର୍ଭେ ଜନମିବେ
ନାଶିବେ ଶ୍ରୀକୃଷ୍ଣରୂପେ ଜନ୍ମି କଂସ କେଶୀ
ଛେଦିବେ ଶିଶୁପାଳକୁ ପ୍ରଭୁ ଚକ୍ରପେଷି ।
ଏରୂପେ ଅସୁରେ ଯିବେ ତାରିଥର ମରି
ଲେଉଟି ବୈକୁଣ୍ଠପୁରେ ହେବେ ସିଂହଦ୍ୱାରୀ
ଏ ଘେନି ଏ ଭଗବାନ ହୁନ୍ତି ତୁମ୍ଭ ବଳା
ପ୍ରଭୁଙ୍କର ଆନଘରେ କହେଁ ଜନ୍ମଲୀଳା ।
ଶୁଣିଣ ହସିଲେ ତୋଷମନେ ଭଗବତୀ
ବୋଇଲେ ସବୁରି କର୍ତ୍ତା ତୁମ୍ଭେ ପ୍ରଜାପତି ।
ଏ ମୃତ ଦୈତ୍ୟ ନୁହନ୍ତା ଯେବେ ତୁମ୍ଭ ସୁତ
ମୁଁ କିମ୍ପାଇଁ ଅଗ୍ନି ଗର୍ଭୁ ହୁନ୍ତି ଆସି ଜାତ

ଗୋବିନ୍ଦ ହେଲେ ଜନ୍ମନ୍ତେ କିମ୍ପା ମଞ୍ଚପୁର
ଏହି ସବୁ ଖେଳ ବ୍ରହ୍ମା ଅଟେ ଜାଣ ତୋର
ବିଧାତା ବୋଇଲେ ମାତା କରିବି ମୁଁ କିସ
ଏ ଖେଳ ଆଗରୁ ସଞ୍ଚିଛନ୍ତି ଜଗଦୀଶ ।
କୋଟି କୋଟି ବ୍ରହ୍ମା ଜାତ ଯାରଲୋମମୂଳେ
କରନ୍ତି ପଚାଶକୋଟି ପୃଥ୍ୱୀ ଆଜ୍ଞା କଲେ ।
କୋଟିଏ ପୃଥ୍ୱୀରେ ମୁହିଁ ଅଟେ ବ୍ରହ୍ମା ଜଣେ
ବିଷ୍ଣୁଙ୍କ ଆଜ୍ଞା ପାଇଣ ପାଳେ ପ୍ରଜାଗଣେ ।
ଏରୂପେ ବ୍ରହ୍ମାଣ୍ଡେ କେତେ ବ୍ରହ୍ମା ଛନ୍ତି ପୂରି
ବୁଝନ୍ତି ସବୁରି ହାନିଲାଭ ଏକା ହରି ।
ଶତମୁଖ ବ୍ରହ୍ମା ଅଛି ସସ୍ରମୁଖ ବ୍ରହ୍ମା
କୋଟି ମୁଖ ବ୍ରହ୍ମା ଅଛି ଚତୁର୍ଦ୍ଦଶ ସୀମା
ଏ ଆଦି ବ୍ରହ୍ମା ପାଳନ୍ତି ଯେତେ ବସୁନ୍ଧରୀ
ସମସ୍ତେ ଅଟନ୍ତି ଏକା ବିଷ୍ଣୁ ସେବାକାରୀ ।
ଏହାଙ୍କ ସଙ୍ଗତେ ଲେଖା ଅଟେ ମୁହିଁ ଜଣେ
ଚତୁର୍ମୁଖ ବ୍ରହ୍ମା ବୋଲି ମୋର ନାମଭଣେ
କେଉଁଅବତାରେ ପ୍ରଭୁମାରେ ଦୈତ୍ୟକେତେ
କାହିଁ କେତେ ଖେଳ ରଚୁଛନ୍ତି ଜଗନ୍ନାଥେ
ବିଷ୍ଣୁଙ୍କର ସେବାକାରୀ ସଦା ଆମ୍ଭେ ଅଟୁ
ସବୁ ଅବତାରେ ଆମ୍ଭେ ବିଷ୍ଣୁଙ୍କୁ ଯେ ଖଟୁ
ଏ ଘେନି ମୁଁ ରଚିବାକୁ ଅଟେ କେତେମାତ୍ର
ଗୋବିନ୍ଦର ମାୟା ଜାଣ ଅଟେ ସବୁଯନ୍ତ୍ର ।
ଜାତହିଁ କରଇ ସେହି ନିପାତ କରଇ
ଏମନ୍ତ ବିଷ୍ଣୁ ତୁମ୍ଭର ଛନ୍ତି ପୁତ୍ର ହୋଇ ।
ତେଣୁକରି ମାତା ରହିଲ ଗୋ ରଥେ ଆସି
ନୋହିଲେ କି ଅନ୍ତର୍ଦ୍ଧାନେ ଯାନ୍ତା ରଥ ଖସି
ଦୈତ୍ୟ ତୁମ୍ଭଙ୍କୁ କପଟ ଥିଲା ସିନା କରି
ଶ୍ରୀନୃସିଂହ ଥିବା ଘେନି ନ ପାରିଲା ମାରି ।
ସେ ମାୟା ରଷି ଯେ ଆସି ପୁଷ୍ପଯାନେ ବସି
ନଗ୍ରକୁ ଗୋ ବିଜେ କଲେ ଘେନି ବାଳଶିଷି
ତୁମ୍ଭେ ଉଠନ୍ତେ ରଥ ନ ଥିବ ତାହାନ୍ତେଣ
ଶୁଣି ଭଗବତୀ ପୁଛେ ବ୍ରହ୍ମାଙ୍କୁ ଯେ ପୁଣ ।
ବୋଇଲେକ ଆହେ ପିତା ଶୁଣିବ ମୋବାଣୀ
ଏଠାକୁ ଗଲେ ରଥ କି ହେବ ସେହୁ ପୁଣି
ବ୍ରହ୍ମା ବୋଇଲେ ଅପାର କାଳର ଏ କଥା
କହିବାକୁ ସୂଚିମାତ୍ରେ ଶୁଣ ମାର୍ଗ ପନ୍ଥା ।
ଏଠାରୁ ଏ ମାୟାରଥ ଏଇଲାଗେ ଯିବ
ମୟଦୈତ୍ୟ ଭବନରେ ପରବେଶ ହେବ ।
ତହିଁ ଉତାରୁ ସେ ପୁଣି କେତେ ଦିନ ଅନ୍ତେ
ଦ୍ୱାପର ଯୁଗେ ମିଳିବ ଯାଇ ଇନ୍ଦ୍ରପ୍ରସ୍ଥେ ।
ପାଣ୍ଡବଟି ରାଜସୂୟ କରିବେ ଯେ କାଳେ
ଏ ରଥଟି ମାୟା ସଭା ହେବ ସେହିକାଳେ ।

ପାଣ୍ଡବ ଯୋଗେ ଅନନ୍ତ ହେବ ପଢ଼ିହାରୀ
ସଭାରେ ଦୁର୍ଯ୍ୟୋଧନଙ୍କୁ ବସାଇଲେ ହରି ।
ରତ୍ନ ଆସନକୁ ମାଡ଼ିବସି କୁରୁରାଜା
ଢଳିପଡ଼ି ସଭାରେ ପାଇବ ବଡ଼ ଲଜ୍ଜା ।
ସ୍ଫଟିକ ସ୍ତମ୍ଭେ ଆଉଜି ପୁଣି ବସନ୍ତେଣ
ଢଳି ପଡ଼ନ୍ତେ ହସିବେ ପ୍ରଭୁ ନାରାୟଣ ।
ଅନେକ ଲଜ୍ଜା ପାଇଣ ନୃପ ଯିବ ଉଠି
ଶକୁନି ତୁଲେ ଖେଳିବ ଧରି ପଶାକାଠି ।
ଯୁଧିଷ୍ଠିରପଶାରେ ହାରି ବନସ୍ତକୁ ଯିବେ
ଶୁଣନ୍ତି ନୃସିଂହମାତା କହେ ଧାତା ଭାବେ ।
ଏ ରଥ ଦାରୁଣ ସଦାଶିବ ସେବାକରି
ମାଗନ୍ତେ ଭୋଳେ ଦେଲେକ ତ୍ରିପୁର ଅଇରି
ତେଣୁ ସେହି ରଥେ ଜାଣ ଦୈତ୍ୟ ମିଳିଥିଲା
ତୁମ୍ଭଙ୍କୁ ବସାଇ ମାୟାରଥେ ଘେନିଗଲା ।
ନୃସିଂହ ଘେନି ରହିଲ ତୁମ୍ଭେ ଦେହ ଧରି
କହିଲ ପୁରାଣ ଭାଷା ଶାସ୍ତ୍ର ଅନୁସରି ।
ଶୁଣି ଭଗବତୀ ମନୁ ଛାଡ଼ିଲାକ ପ୍ରାସ
ବ୍ରହ୍ମାଙ୍କ ବାକ୍ୟେ ଚିହ୍ନିଲେ ପ୍ରଭୁ ଜଗଦୀଶ ।
ମନେ ପାଞ୍ଚିଲେ ଅଭାଗ୍ୟ ଥିଲା କେତେ ପଡ଼ି
କପଟ କରି ଆଣିଲା ଭଲା ଦୈତ୍ୟ ଲୋଡ଼ି
ଏରୁପେ ପାଞ୍ଚି ଉଠିଲେ ମାଏ ସେହି ସାଜେ
ସ୍ୱାମୀ କୁମରଙ୍କୁ ଘେନି ରଥେ କଲେ ବିଜେ
ବିଧାତା କହନ୍ତେ ଶୁଣି ହେଲେ ଆଚମ୍ବିତ
ଚାହାନ୍ତେ ଯେ ମାୟାରଥ ହୋଇଲାକ ଗୁପ୍ତ
କୁଆଡ଼େ ସେ ଗଲା ବୋଲି ସର୍ବେ ଛନ୍ତି ଚାହିଁ
ଦେଖିଲେ ଆଖି ପିଛଡ଼ା ମାତ୍ରେ କେହି ନାହିଁ
ଯିବାର ନ ଦେଖି ସର୍ବେ ହେବନ୍ତି ଆଚମ୍ବିତ
ବୋଲନ୍ତି ଅଟଇ ଭଲା ଦାରୁଣ ଦଇତ୍ୟ ।
କାହିଁ ଏ ରଥ ତୁହିରେ ଆଣିଥିଲୁ ପୁଣି
ଏଡ଼େହେଁ ମାୟାରଥ ନ ଥିଲୁ ଆମ୍ଭେ ଜାଣି
ପ୍ରଭୁ ନ ଥିଲେ ସମ୍ଭାଳି ଆମ୍ଭେ ପାରନ୍ତୁ କି
ଏ ରଥ ଦେଖି ଆନ ହେ ରହି ପାରନ୍ତେ କି
ଏ ରୂପେ ବୋଲି ସମସ୍ତେ ହେବନ୍ତି କୁହାକୁହି
ମିଳିଲେ ନୃସିଂହ ପାଶେ ଖଗେଶ୍ୱର ଯାଇ ।
ସୁଜାଣେଶ୍ୱର ମନ୍ତ୍ରୀ ଯେ କର୍ଣ୍ଣାଟେଶ ରାଜା
କରନ୍ତି ନୃସିଂହ ପାଶେ ମିଳି ପାଦପୂଜା ।
ଯେଯାହାର ସୈନ୍ୟଘେନି ପାଶେହେଲେଯାଇ
ଟମକ ଢୋଲ ମୃଦଙ୍ଗ ତାଳ ଦମା ବାଇ ।
ନୃସିଂହଗଣ ପ୍ରଭୁଙ୍କ ହୃଦେ ସମ୍ଭାଇଲେ
ଥୋକାଏ ଆନନ୍ଦବନେ ନେଇ ରଖାଇଲେ ।
ଏଥିଉତ୍ତାରେ ଯେ ବାଣୀ ନାରଦ ହୋ ଶୁଣ
ନଗ୍ରକୁ ବିଜେ କରନ୍ତେ ପ୍ରଭୁ ନାରାୟଣ ।

କହନ୍ତି ସର୍ବବେଦଙ୍କୁ ଚାହିଁ ହୃଷୀକେଶ
ଗହଣେ ଯେ ବାହନରେ ଚଢ଼ି ତୁମ୍ଭେ ଆସ ।
ଉଠିଲେ ଶ୍ରୀମୁଖ ଆଜ୍ଞା ଶୁଣି ବେଦବର
ମରାଳ ଯାନେ ଚଢ଼ିଣ ଗଲେ ବଦ୍ରିପୁର ।
ବୃଷଭ ଆରୋହି ବିଜେ କଲେ ପଶୁପତି
ବାସବ ଗଲେ ଚଢ଼ିଣ ଐରାବତ ହସ୍ତୀ ।
ଅଗ୍ନି ଦେବତା ଯେ ମେଷପୃଷ୍ଠେ ଆରୋହିଲେ
ଯମଦେବତା ମଇଁଷି ଚଢ଼ି ବିଜେ କଲେ ।
ମଗରଯାନେ ବରୁଣ ବସି କଲେ ବିଜେ
ଚଳିଲେ ସମ୍ପାତିଯାନେ ଚଢ଼ି ଦେବରାଜେ ।
ପବନ ଦେବତା ବିଜେ ମୃଗପୃଷ୍ଠେ ବସି
ଗାୟତ୍ରୀ ଚକ୍ର ରଥରେ ବସି ସୂର୍ଯ୍ୟ ଆସି ।
ନଉକାଯାନେ କୁବେର ବସି ବିଜେକଲେ
ଗଜବାହନେ ନୈର୍ଋତ ବସି ବିଜେକଲେ ।
ଚଳିଲେକ ବୃହସ୍ପତି ହଂସପୃଷ୍ଠେ ବସି
କାମଦେବ ଚଳିଗଲେ ମନଯାନେ ହସି ।
ଋଷିଙ୍କ ସଙ୍ଗେ ନାରଦ ବ୍ରହ୍ମାଙ୍କ କୁମର
ମନପବନ ଦଣ୍ଡରେ ଗଲେ ଧୀର ଧୀର ।
ମୟୂରବାହନ ଚଢ଼ି କାର୍ତ୍ତିକେୟ ବିଜେ
ଏମନ୍ତ ଦେବଙ୍କୁ ଘେନିଗଲେ ଦେବରାଜେ ।
ଶ୍ରୀନୃସିଂହଗଣ ଏହୁ ନୃସିଂହ ପୁରାଣ
ମାନବ ଲେଖି ଏହା ନପାରେ କେହିଜାଣ ।
ସେ ସାରଦା ମାତାଙ୍କର କୃପା ପରସାଦେ
ଏ ପଦ ପୂରଣ ହେଉଥାଏ ମୋର ହୃଦେ ।
ସାଧୁଙ୍କ ପାଦେ ଅଟଇ ନିତ୍ୟେ ସେବାମୋର
ତେଣୁ ଏ ଗ୍ରନ୍ଥକୁ ଲେଖେ ବିପ୍ର ପୀତାମ୍ବର
ମାତା ପିତାଙ୍କୁ ଘେନିଣ ବିଜେ ଦେବହରି
ମିଳିଲେ ବଦ୍ରିକାପୁରେ ଦେବସଙ୍ଗେ ଧରି ।
ଆଗରେ ଉଡ଼ଇ ଶ୍ୱେତଧ୍ୱଜ ପାଞ୍ଚଲକ୍ଷ
ବାଜଇ ବଇଁଶୀ ଶଙ୍ଖ ବୀଣା ଶତଲକ୍ଷ ।
ଆଗରେ ନୀଳଚାମର ପଡ଼େ କୋଟି କୋଟି
ରଙ୍ଗବର୍ଣ୍ଣର ଚିରାଳ ଉଡ଼େ ମେଂବଛଟି ।
ଅଇବ୍ରତେକ ଚାମର ପଡୁଥାଏ ପାଶେ
ମର୍ଭୁତେକ ନୀଳପିଞ୍ଛା ଉଡ଼େ ଶୂନ୍ୟଦେଶେ
ଗହଗହ ଶବ୍ଦ ଶୁଭେ ବଦରିକାପୁରୀ
ପଶିଲେକ ପୂର୍ବମୁଖେ ନଗ୍ରେ ଯାଇ ହରି ।
ସାକ୍ଷାତେ ବୈକୁଣ୍ଠ ପ୍ରାୟ ବଦ୍ରି ଦେଶଦିଶେ
ଯହିଁ ବିଜେ କରିଛନ୍ତି ପ୍ରଭୁ ଜଗଦୀଶେ ।
ମଞ୍ଚରେ ଜନ୍ମ ହୋଇବେ ଯେବେ ବିଷ୍ଣୁ ଆସି
ବୈକୁଣ୍ଠ ତେଜ ଯାକ ସେ ନଗ୍ରେ ପରକାଶି
ପ୍ରଥମେ ବଦରିକା ଦ୍ୱିତୀୟେ ସ୍ୱର୍ଗପୁର
ତୃତୀୟେ ଅଯୋଧ୍ୟା ଚତୁର୍ଥରେ ଗୋପପୁର

ବିଷ୍ଣୁ ବୈକୁଣ୍ଠକୁ ଗଲେ ନଗ୍ରତେଜ ହଜେ
ଚିହ୍ନଟି ମାତ୍ର ରହେ ନ ଥିଲେ ଦେବରାଜେ
ଏମନ୍ତ ମହିମା ଏହି ବଦ୍ରିକା ପୁରର
ସିଂହଦ୍ୱାରେ ମିଳିଲେକ ଯାଇ ଲକ୍ଷ୍ମୀବର ।
ରଥୁ ଉତୁରି ବସିଲେ ପ୍ରଭୁ ସିଂହାସନେ
ଶୁଣ ନାରଦ କହନ୍ତି ଚତୁର ଆନନେ ।
ଯାଇଣ ସେ ଭଗବତୀ ମିଳିଲେ ମନ୍ଦିରେ
ଆଵର ଯେ ଜନେ ଚଳିଗଲେ ଯେଝାପୁରେ
କମଳା ଇଳା ଶାଶୁଙ୍କୁ କଲେ ଯାଇ ସେବା
ଯୁଦ୍ଧର କଥା ଶୁଣନ୍ତି ଆଗେ ହୋଇ ଉଭା ।
ଚୌଷଠି ସହସ୍ର କନ୍ୟା ଦ୍ୟନ୍ତି ହୁଳହୁଳି
ନୃସିଂହ ହୃଦେ କର୍ପୂର ନେଇଦେଲେ ବୋଲି
ରହିଲେ ନୃସିଂହ ଚାରିଆଡ଼େ ଦେବେବେଢ଼ି
ଚରଣେ ସେବି କହନ୍ତି ବ୍ରହ୍ମା କରଯୋଡ଼ି ।
ବୋଲନ୍ତି ହେ ମହାପ୍ରଭୁ ଶୁଣ ନାରାୟଣ
ଅଠର ପ୍ରକାର ତୁମ୍ଭ ସର୍ଜନା ତ୍ରିପୁଣ ।
ସେ ତିନି ଗୁଣର କଥା ଛାମୁରେ କହିବି
ଶୁଣନ୍ତୁ ସୁଜନେ ବିଷ୍ଣୁ ମହିମା ଯେ ଭାବି ।
ବିବେକ ଦୟା ତପସ୍ୟା ଶାନ୍ତି କ୍ଷମା ଧୃତି
ଏ ଷଡ଼ କର୍ମେ ସାତ୍ତ୍ୱିକ ଲୋକ ରହିଥାନ୍ତି ।
ରାଜସ ପ୍ରାଣୀଙ୍କର ଯେ ଶୁଣିମା ଷଡ଼ଗୁଣ
ରାଜବ୍ରତ ପୂଣ୍ୟ କୀର୍ତ୍ତି ତୀର୍ଥ ଯଜ୍ଞଦାନ ।
ଏ ଷଡ଼ପ୍ରକାର ଗୁଣ ରାଜସର କୀର୍ତ୍ତି
ତାମସ ଲକ୍ଷଣ ଷଡ଼ ଶୁଣିମା ସଂପ୍ରତି ।
କାମ କ୍ରୋଧ ହିଂସା ଲୋଭ ମାୟାଦି କୁଟିଳ
ତାମସିକ ଲକ୍ଷଣ ଏ ଅଟେ ଷଡ଼ମୂଳ ।
ଏହିରୂପେ ଅଷ୍ଟାଦଶବିଧ ତିନିଗୁଣ
ସବୁ କଥାକୁ କର୍ତ୍ତାଟି ତୁମ୍ଭେ ନାରାୟଣ ।
ଦେବ ଦାନବ ପ୍ରଭୃତି କୀଟୁଁ ବ୍ରହ୍ମଯାଏ
ଯେ ଚିହ୍ନି ଭଜେ ପ୍ରଭୁଙ୍କୁ ସେହି ମୋକ୍ଷ ହୁଏ
ଏ ଅବତାରକୁ ଆମ୍ଭେ କିସ ଦେବା ଲକ୍ଷ୍ୟ
ବୁଝିଲେ ନାହିଁ ପାତାଳ ସ୍ୱର୍ଗ କିବା ମଞ୍ଚ ।
ଆଦ୍ୟ ଅବତାର ଏହା ଅଟେ ଅଗ୍ରଲେଖା
ପ୍ରକାଶେ ସକଳ ଘଟେ ନୃସିଂହଙ୍କ ଶିଖା ।
ଦଶ ଅବତାରେ ଚଉବିଂଶ ମୂର୍ତ୍ତିଯାଏ
ଆପଣ ନଜନ୍ମିଲେ ନ ଯାଆନ୍ତି ଦୈତ୍ୟକ୍ଷୟେ
ବ୍ରହ୍ମାଣ୍ଡଯାକେ ଅଛନ୍ତି ଯେତେ ଦେହବହି
ଟେକିନେଲେନୃସିଂହପ୍ରଭୋସର୍ବେକ୍ରୋଧହୋଇ
କୀଟରୁ ଯେ ବ୍ରହ୍ମଯାଏ ଯେତେଲୋକ,ଗଣି
ବିଜୟ ସବୁରି ଦେହେ ପ୍ରଭୁ ଚକ୍ରପାଣି ।
ଅନାଦି ଆଦି ବ୍ରହ୍ମାଦି ଘେନି ସୁରଲୋକ
ଏହାର ଉପରେ ସ୍ୱାମୀ ନୃସିଂହ ପାଳକ ।

ନୃସିଂହ ଉପରେ କେହି ଦେବତା ଯେ ନାହିଁ
ବୁଝିଲେ ସବୁରି ଆତ୍ମା ନୃସିଂହ ଗୋସାଇଁ
ଏରୂପେ ଯେଉଁ ନୃସିଂହ ଦେବ ଅବତାର
ଦେବତା ଯାକ ତ ଆମ୍ଭେ ତାଙ୍କ ପରିଚାର
ପାପୀ ମୁରାସୁର ଭାର ନ ପାରୁ ଯେ ସହି
କିରୂପେ ମାରି ଉଦ୍ଧାର ତୁମ୍ଭେ ତାଙ୍କୁ ମହୀ ।
ନୋହିଲେ ସ୍ୱର୍ଗେ ଦେବ ନପାରୁ ଆମ୍ଭେବସି
ଦୀନଦୁଃଖୀ ଲୋକ ପ୍ରାୟେ ଗଲୁ ଏବେ ଭାଷି
ନିର୍ମଳ ଲୋକର ତୁମ୍ଭେ ଅଟ ବନ୍ଧୁସେହ୍ନା
ଛାମୁରେ ଯେ ଆମ୍ଭେମାନେ ଜଣାଉଛୁ କିନା
ସଂସାରେ ନୁହନ୍ତି ଚାରିଲୋକ ସେବାକାରୀ
ସେ ଚାରି ଲୋକଙ୍କ କଥା ଶୁଣ ଦେବହରି ।
ଦେବତା ଆଗରେ ମୃଗ ମୀନ ସାଧୁଜନ
ଏ ଚାରି ଲୋକର ବୃତ୍ତି ଶୁଣ ଭଗବାନ ।
ଦେବତାମାନେ ପୃଥ୍ୱୀକୁ ପାଳନ୍ତି ସନ୍ତୋଷେ
ତାହାଙ୍କ ଶତ୍ରୁ ହୁଅନ୍ତି ଚଣ୍ଡାଳ ରାକ୍ଷସେ ।
ଏ ସଂସାରେ ମୃଗମାନେ ବନସ୍ତରେ ଥାଇ
ଦିନ ବଞ୍ଚୁଥାନ୍ତି ସୁଖେ ଡାଳପତ୍ର ଖାଇ ।
ପାପୀ ଲୁବ୍‌ଧକ ତାହାଙ୍କୁ ପେଷି ତୀକ୍ଷ୍ଣଶର
ବ୍ୟର୍ଥେ ମାରେ ବଇରୀ ଯେ ନୁହଇ କାହାର
ସଂସାରେ ନୁହନ୍ତି ମତ୍ସ୍ୟମାନେ କାହା ଅରି
ଜଳ ପଙ୍କ ଖାଇ ଥାନ୍ତି ସେହୁ ଦେହ ଧରି ।
ଚଣ୍ଡାଳ ଧୀବରଗଣ ଦେଖି ତାଙ୍କୁ ଆସି
ପକାଇ ମାରନ୍ତି ଜାଲ ଯନ୍ତା ଅହର୍ନିଶି ।
ସାଧୁଜନ ନୁହଁନ୍ତିଟି କାହାର ଅଇରି
ସବୁ ଲୋକଙ୍କୁ ଥାଆନ୍ତି ଆଶୀର୍ବାଦ କରି ।
ଅଳ୍ପ ବହୁତରେ ସେହୁ ହୁଅନ୍ତି ସନ୍ତୋଷ
ପ୍ରାଣୀଙ୍କୁ କଲ୍ୟାଣ କରି ଭଜେ ଜଗଦୀଶ ।
ତାହାଙ୍କୁ ଦେଖିଣ ଶତ୍ରୁ ହୁନ୍ତି ମୁଖ ଯେତେ
ଅନୁକ୍ଷଣେ ମନ୍ଦ ପାଞ୍ଚୁଥାନ୍ତି ନିଜଚିତ୍ତେ ।
ଏ ପାପୀମାନେ ରହିବେ ଯେବେ ଦେହଧରି
ଦେବଙ୍କ ଆକୁଳ ଆଉ ଶୁଣିବ କି କରି ।
ବ୍ରହ୍ମାଙ୍କ ବଚନ ଶୁଣି ସେହି ନରସିଂହ
ହୋଇଣ ଆନନ୍ଦ ମନ କହନ୍ତି ପ୍ରସଙ୍ଗ ।
ବୋଲନ୍ତି ଯେ ସାବଧାନେ ଶୁଣ ଚତୁର୍ମୁଖ
ଆଵର ଯେ ଦିନାକେତେ ସହିଥାଅ ଦୁଃଖ ।
ସଂସାରେ ତୁମ୍ଭର ଯେତେ ଲୋକ ହୁନ୍ତି ଶତ୍ରୁ
ସେମାନେ ଲଭନ୍ତି ନିଶ୍ଚେ ଆମ୍ଭହାତେ ମୃତ୍ୟୁ
ମୁରାସୁର ପାଇଁ ଆମ୍ଭେ ଅଛୁଁ ଅବତରି
ମୁରକୁ ମାରିଣ ନାମ ବହିବୁ ମୁରାରି ।
ଏ ମୁରର କଥା ଆଗ ଶୁଣ ପଦ୍ମଯୋନି
ବୈକୁଣ୍ଠ ଦ୍ୱାରୀ ଅଟନ୍ତି ଏହୁ ଭାଇ ବେନି ।

କେତେହେଁ ଭକ୍ତ ମୋହର ଏ ଅଟନ୍ତି ଦୁଇ
ଦୁର୍ଭାଗ୍ୟ ଛୁଇଁଲାରୁ ସେ ଜାତ ଦୈତ୍ୟ ସାଇଁ
ଜୟ ବିଜୟ ନାମ ଏ ବଦନ୍ତି ସର୍ବଦା
ଦ୍ୱାରକୁ ଜଗିଥାନ୍ତି ଏ କରି ପ୍ରାଣଛନ୍ଦା ।
ଅଚ୍ୟୁତ ପିତାଙ୍କ ବୀର୍ଯ୍ୟେ ହେବେ ଏ ସମ୍ଭୂତ
ଲୟସୂତ୍ରେ ମାତାଗର୍ଭୁ ହେଲେ ଆସି ଜାତ
ହଂସଗୋତ୍ରୀ ନିରାକାର ପ୍ରବର ଏହାର
ଦିବାରାତ୍ର ଏ ଜଗନ୍ତି ଆମ୍ଭର ଦୁଆର ।
କଳିକାଳେ ଅଟନ୍ତି ଏ ମୋହର ଦ୍ୱାରପାଳ
ଜଗନ୍ତି ଏ ଅନୁକ୍ଷଣେ ବାଣ୍ଟି ଦିନବେଳ ।
ପାଦେକ ଏ ଉଭା ହୋଇଥାନ୍ତି ଦ୍ୱାରମୁଣ୍ଡେ
ଜଣେ ଜଣେ ତିନିଦଣ୍ଡ ଜଣେ ପାଞ୍ଚଦଣ୍ଡେ ।
ଏରୂପେ ଜଗି ବାଣ୍ଟିଣ ଆହୋରାତ୍ର ଥାନ୍ତି
କ୍ଷଣେହେଁ ଦ୍ୱାର ମୋର ଏ ଦୁହେଁ ନଛାଡ଼ନ୍ତି
ବାରଯୁଣ ଭୂମି ଅଛୁ ଏହାଙ୍କୁ ଯେ ଦେଇ
ଜଗନ୍ତି ପ୍ରହରୀ ପ୍ରାୟେ ପାଦେ ଉଭାହୋଇ ।
ଜୟବୋଲି ଦ୍ୱାରୀ ଜଗେ ଦକ୍ଷିଣ ଯେ ଭାଗ
ବିଜୟ ବୋଲି ଯେ ଦ୍ୱାରୀ ଜଗେ ବାମଅଙ୍ଗ ।
ଷଡ଼ ରସରେ ମିଳିବ ଯେତେ ଦ୍ରବ୍ୟ ଆସି
ପ୍ରଥମ ବାସନା ଘେନି ଥାନ୍ତି ଦ୍ୱାରେ ବସି ।
ତହୁଁ ପୁଣି ମିଳେ ଯାଇ ଏ ଭିତର ପୁରେ
ଏଣୁ ସେ ଦ୍ୱାରୀ ଅଟନ୍ତି ମୂଳ ସିଂହଦ୍ୱାରେ ।
ଦ୍ୱାରେ ଦ୍ୱାରୀ ଥିଲେସିନା ରାଜା ରଖେ ଆଣ୍ଟ
ବାସବ ହେଲେ ପଶି ନ ପାରେ ସେହୁ ବାଟ
ଦ୍ୱାରରେ ଦ୍ୱାରପାଳ ନ ଥିବ ଯେବେ ବସି
ଜାଣିବ ତେବେ ସେ ରାଜା ଗଲା ନଗ୍ଣୁ ଖସି ।
ରାଜାଙ୍କୁ ଭେଟି ଆସନ୍ତି ଜାଣ ଯେତେ ଲୋକ
ବିଶୋଇ ଯେନା ନାୟକ ପରଜା ପାଟକ ।
ଦ୍ୱାରୀକୁ ନ କହିଲେ ଯେ ଭେଟି ପାରିବ କି
ଦ୍ୱାରପାଳର ମହିମା କହିଲେ ସରେ କି ।
ନ ଥିଲେଟି ଦ୍ୱାରପାଳ ବାଟ ଯାଏ ପଡ଼ି
ରାଜାକୁ ନ ପାଇ ଲୋକେ ଯାନ୍ତି ଦ୍ୱାର ଛୁଡ଼ି
ସେ ବେନିଦ୍ୱାରୀଙ୍କ କଥା ଶୁଣ ବେଦବର
ଆସନ୍ତେ ଯେ ଏକଦିନେ କମଳା ମୋ ପୁର
ଅପୂର୍ବ ବେଶ ଗୋଟିଏ ହୋଇ କମଳିନୀ
ବିଜେକଲେ ପଦ୍ମବନୁ ଆମ୍ଭ ପାଟରାଣୀ ।
ବୈକୁଣ୍ଠ ଦୁଆରେ ଆସି ପ୍ରବେଶ ହୁଅନ୍ତେ
ଦେଖିଣଯେକାମମୋହ ହେଲେ ବେନିଭ୍ରାତେ
ମହାଲକ୍ଷ୍ମୀଙ୍କୁ ମୋର ନ ଦେଲେ ଦ୍ୱାର ଛାଡ଼ି
ବିଭୋଳ ହୋଇ ପଡ଼ିଲେ ଦୁହେଁ ମୁଖମାଡ଼ି ।
କାମରେ ମୋହ ହୋଇଣ ଗୋଡ଼ାଇଲେଉଠି
ନ ଛୁଇଁ ଆଗୁଳି ଦେହେଁ ରହିଲେ ବିମ୍ବୋଷ୍ଠୀ

ଆଶ୍ଚର୍ଯ୍ୟ ମଣିଷ ଦୁହେଁ ହ୍ୱନ୍ତି କୁହାକୁହି
ବୋଲନ୍ତି ଲକ୍ଷ୍ମୀର ପ୍ରାୟ ଦିଶୁଛି ଯା ଦେହୀ
ମହାଲକ୍ଷ୍ମୀ ହେଲେ ସଙ୍ଗେ ଅଷ୍ଟସଖି ଥାନ୍ତେ
ଆଡ଼ୋ ଆଡ଼େ କହିଲେଯେ ଭିତରକୁଯାନ୍ତେ
ସେବାରେ ଯେ ପଟୁଆରୀ ଥାନ୍ତି ଲକ୍ଷେନାରୀ
ଚାମର ପୁଚ୍ଛକୁ ଢାଳୁଥାନ୍ତେ କରେ ଧରି ।
ଆଗରେ କର୍ପୂର ଗୁଣ୍ଡା ବିଞ୍ଚା ହେଉଥାନ୍ତା
ଲକ୍ଷ୍ମୀ ବିଜେକଲେ ବୋଲି ପୁର ଚହଟନ୍ତା
ଯୋଡ଼ି ଶଙ୍ଖରେ ଚମକୁ ଥାଆନ୍ତ ଏ ମହୀ
ଗହନେ ଡାକ ରଡ଼ନ୍ତା ଲକ୍ଷ୍ମୀ ତ୍ରାହି ତ୍ରାହି
ମହାଲକ୍ଷ୍ମୀ ନୋହେ ଏହୁ ଅଟେ ଦେବସ୍ତିରୀ
ନୋହିଲେ ଦିଶନ୍ତା ପଡ଼େ ଶୋଭାକେଉଁନାରୀ
କାହାର ଦୁହିତା ଏହୁ କାର ଅଟେ ପ୍ରିୟା
କ୍ଷଣକେ ବିଭୋଳ ଆସି କଲା ଆମ୍ଭ କାୟା
ବ୍ରହ୍ମା ଶିବ ଇନ୍ଦ୍ର ଦେବ ଆଦି ମୁନିତୁଲେ
ଏସବୁ ଲୋକ ଧ୍ୱଂସିବ ଏହି ମନ କଲେ ।
ଦେଖ ଏ ପଛେ କନ୍ଦର୍ପ ଅଛି ତାର ଚାଲି
ରାତ୍ରରେ ଦୁଲା ଦେଖିଣ ମୃଗ ଯେହ୍ନେ ଭୁଲି
ଯେତେ ଅଳଙ୍କାର ଲାଗି ହୋଇଅଛି କାୟେ
ଖୋଜିଲେ କୁବେର ପୁରେ ନଥିବେଗୋଟିଏ
ଆବର ପୀତବାସ୍‌କେ ପିନ୍ଧିଅଛି ଭିଡ଼ି
ସେ ଜ୍ୟୋତି ଚଉଦ ପୁରେ ନପାଇବାଲୋଡ଼ି
ହୋଇଅଛି ଉପରରାଣ ଯେଉଁ ସବୁ ଝୀନ
ଖୋଜିଲେ ତିନିପୁରେ ନ ମିଳେ ଲୁଗାମାନ
ଲମ୍ବିଛି କବରୀ ପରେ ଯେଉଁ ଫୁଲଗଭା
ଦେଖିଲାକ୍ଷଣି ଟେକୁଛି କାମଦେବ ପ୍ରଭା ।
ଅଳକାପନ୍ତି କୁଟିଳ କବରୀ ଯେ ନୀଳ
ନବୀନ ଘନ ଜ୍ୟୋତିକି ନିନ୍ଦେ ଅଳିକୁଳ ।
ନାସାରେ ସେ ସୁଘଟଣ ତିଳପୁଷ୍ପ ପ୍ରାୟେ
କୁନ୍ଦନ ହେମରେ ମିଶା ଅଷ୍ଟରତ୍ନ କିଏ ।
ନାସା ବାମପୁଟେ ବସଣି ଯେ ରତ୍ନଗୁଣା ।
ଝଟକ ଦିଶଇ ତେଜ ବିଦ୍ୟୁତକାନ୍ତିଜିଣା ।
ଲୁଚଇ ହୀରାର କାପ ବେନି ଶ୍ରବଣରେ
ଜୟକରେ ଅଗ୍ନି ଅର୍କତେଜ ମହିମାରେ ।
ନୟନ ବେନି ଅଟଇ କିବା କାମଦଣ୍ଡ
ତରଳି ପଡ଼େ କଟାକ୍ଷ ଚାହିଁଲେ କି ପିଣ୍ଡ ।
ଭାଜିବ ରିପୁର ଦର୍ପ ତେର୍ଛେ ଦେଲେ ଚାହିଁ
ପ୍ରହାର କଲେକି ଆଣି କାମ ତୀର ବହି ।
ଏହାର ଯେ ଶତ୍ରୁ ମିତ୍ର ଅଟେ ଜାଣ ଏକ
କିଞ୍ଚିତେ ଚାହିଁଲେ ମୋତେ ହୋଇବତ୍ରିଲୋକ
ରକ୍ତପଦ୍ମ ପ୍ରାୟ ଫୁଟି ଓଷ୍ଠ ଦୁଇ ଦିଶେ
ମୁକ୍ତାପନ୍ତି ପ୍ରାୟଦନ୍ତ ହସନ୍ତେ ପ୍ରକାଶେ ।

ବସନ୍ତ ଋତୁରେ ଯେହ୍ନେ କୋକିଳ ଭାଷଇ
ସେ ରୂପେ ଶୁଭଇ ବାକ୍ୟ ସବୁ ମନ ମୋହି
ଭଲା ଏହି କଣ୍ଠତଟେ ମାଳ ଅଛି ଖଞ୍ଜି
ପୋହଳା ଯେ ଅଷ୍ଟରତ୍ନ ଆଛି ପୁଞ୍ଜି ପୁଞ୍ଜି
ତରୁଣୀ କଣ୍ଠରେ ଖଞ୍ଜିଅଛି ଅତି ଘଞ୍ଚେ
ହୃଦଦେଶେ ଏ ବର୍ତ୍ତୁଳ କୁଚ ବେନି ସଞ୍ଚେ
ହସ୍ତୀଙ୍କର ଥୋରହସ୍ତ ପ୍ରାୟେ ଦିଶେ ଭୁଜ
ଯାଉଁଳି ସୁନା ସୂତାରେ ହୀରା ବଇଦୁର୍ଯ୍ୟ ।
ହେମ ତାଟକ କଙ୍କଣ ବାହେ ରତ୍ନ ଚୂଡ଼ୀ
ଅନନ୍ତ ଆବତଂଶ ଅନନ୍ତବ୍ରତ ଯୋଡ଼ି ।
ସବୁ ଅଳଙ୍କାରେ ଲାଗିଅଛି ଅଷ୍ଟରତ୍ନ
ବାଳ ଆଦିତ୍ୟ ପ୍ରାୟେକ ଦିଶେ ଜ୍ୟୋତିବର୍ଣ୍ଣ
ସୁବର୍ଣ୍ଣର ଚମ୍ପାକଢ଼ି ପ୍ରାୟେ ନଖପନ୍ତି
ପ୍ରଥମ ଚନ୍ଦ୍ର ସଦୃଶ ଦିଶେ ତାର ଜ୍ୟୋତି ।
କେ ବୋଲେ ଏହାକୁ ଦେଖି ହେଲାସିଂହ ବନ୍ଦୀ
ଗମନରେ ମତ୍ତଗଜ ଚାଲି ପାଦେ ଛନ୍ଦି ।
ଉଲଟ ରମ୍ଭା ପ୍ରାୟେକ ଦିଶେ ବେନି ଜାନୁ
କେତେହେଁ କାଳେ ଗଢ଼ିଲା ବିହି ତାର ତନୁ
ରକତ ପଦ୍ମ ପରାୟେ ଦିଶେ ପାଦତଳି
ଚମ୍ପା କଢ଼ ପରାୟେ ଯେ ଦିଶେ ଦଶାଙ୍ଗୁଳି ।
ରତନ ମଧ୍ୟରେ ଯେହ୍ନେ ଦିଶେ ଜ୍ୟୋତିହୀରା
ଅଙ୍ଗୁଳି ଅଗ୍ରରେ ନଖ ଦିଶେ ସେହ୍ନେ ତୋରା
ବୁଝିଲେ ଯୁବତୀନାଭୀ କେତେ ଗୁଣ ଅଛି
ଖୋଜିଲେ ତିନିପୁରେ ନ ମିଳେ ଏ ମୃଗାକ୍ଷୀ
ଏହାର ପ୍ରାୟ ସଂସାରେ ନାହିଁ ସ୍ତିରୀସତୀ
ପାର୍ବତୀ ପ୍ରାୟେ ଦିଶୁଛି ଏହା ଶୋଭାକାନ୍ତି
ପାର୍ବତୀ ଦେବୀ କିମ୍ପାଇଁ ଏଥେ ବିଜେହୋନ୍ତା
ଲକ୍ଷ୍ମୀହୋଇଲେ ଚମକି ପୃଥ୍ୱୀ ପଡ଼ିଥାନ୍ତା ।
ନୁହଇ କମଳା ଏହୁ ନୁହଇ ଯେ ଉମା
ଆମ୍ଭଙ୍କୁ ରତି ଦେବାକୁ ଆସିଛି ଏ ବାମା ।
ଏରୂପେ ବୋଲି ପଡ଼ିଲେ ଦୁହେଁ କାମେ ଢଳି
ଲକ୍ଷ୍ମୀଙ୍କି ନ ଚିହ୍ନି ଦ୍ୱାର ରଖିଲେ ଉଗାଳି
ବୋଇଲା ବଡ଼ଭାଇ ଶୁଣରେ ସାନଭ୍ରାତ
ଅଲଭ୍ୟେ ଆସି କନ୍ୟାଏ ହେଲା ପରାପତ ।
ଯେବଣ ଯୁବତୀ ବଳେ ଦିଏ ଅଙ୍ଗ ଯାଚି
କୁପୁରଷ ଛାଡ଼େ ତାକୁ ମନରୁ ମୁରୁଛି ।
ଆବର ମିଳିବ ଯେବେ ଅଲଭ୍ୟରେଧନ
ଶ୍ରଦ୍ଧାରେ ଯାଚିକେଯେବେ କରେକନ୍ୟାଦାନ
ନ କରି ତହିଁରେ ଗଣା ପୁଚ୍ଛା ଆଦି କିଛି
ଏ କଥାଟି ଦେବଶାସ୍ତ୍ର ପୁରାଣେ କହିଛି ।
ଆବର ଯେ ଭୂମିଦାନ ସୁଲକ୍ଷଣା ଭାର୍ଯ୍ୟା
ସୁପଣ୍ଡିତ ଜନେ ଏହା ନ କରିବେ ତେଜ୍ୟା

ଅଲଭ୍ୟେ ମିଳିବ ଏତେ ଦ୍ରବ୍ୟ ଯେବେ ଆସି
ପଣ୍ଡିତ ଜନେ କରନ୍ତି ଏହା ଭୋଗ ବସି ।
ଏରୂପେ କହି ଧାମନ୍ତି ଦୁହେଁ ଧରିବାକୁ
ତାହା ଦେଖି ପଛଘୁଞ୍ଚା ଦେଲେ ମାତା ତାଙ୍କୁ
କମଳା ଘୁଞ୍ଚିବା ଜାଣିପାରି ବେନିଭାଇ
ପାଞ୍ଚିଲେ ଦୁଷ୍ଟ ବୁଦ୍ଧି ନ କଲେ ନ ଡରଇ ।
ଅସୁର ରୂପ ଧରିଣ ଡରାଇବା ଆସ
ତେବେ ଆମ୍ଭର ହୋଇବ ଏହୁ ନିଶ୍ଚେ ବଶ
ଏରୂପେ ପାଞ୍ଚିଣ ଦ୍ୱାରୀ ହୋଇଲେ ଅସୁର
ଡକାଇଲେ ଲକ୍ଷ୍ମୀଙ୍କୁ ସେ ହୋଇ ଭୟଙ୍କର ।
ଦେଖିକରି ମହାଲକ୍ଷ୍ମୀ କଲେ ତାଙ୍କୁ କୋପ
ବୋଇଲେ ତୁମ୍ଭେ ଦୁହେଁରେ ହୁଅ କଉଣପ
ଲକ୍ଷ୍ମୀ ବୋଲିଣ ମୋତେ ଯେ ନପାରିଲଚିହ୍ନି
ବ୍ରହ୍ମାଣ୍ଡ ଠାକୁରାଣୀଙ୍କୁ ନ ପାରିଲ ଜାଣି ।
ପ୍ରଭୁଙ୍କ ମନ୍ଦ ପାଞ୍ଚିଣ କଲ ଅପ୍ରହୁତୀ
ପ୍ରଭୁଙ୍କ ପତ୍ନୀ ବୋଲିଣ ନ କଲେ ମନେଭ୍ରାନ୍ତି
ଏହି ସକାଶୁଁ ତୁମ୍ଭେରେ ଦୈତ୍ୟଜନ୍ମ ହୁଅ
ଅସୁର ଦେହରେ ଶତେ ଜନ୍ମଯାଏ ଥାଅ ।
ଏରୂପେ ଶାପ ଦେଇଣ ଯାନ୍ତେ ଲୋକମାତ
ସେହିଠାରେଦ୍ୱାରପାଳେ ହେଲେଜାଣଦୈତ୍ୟ
ଏମନ୍ତ ବେଳେ ଆସନ୍ତେ ଆମ୍ଭ ନଗ୍ରେ ହରି
ଦେଖିଲୁ ଯେ ଦୈତ୍ୟ ହୋଇଛନ୍ତି ସିଂହଦ୍ୱାରୀ
ତାଙ୍କୁ ପୁଛିଲୁ ତୁମ୍ଭଙ୍କୁ ଏହା କେହୁ କଲା
ସେ ବୋଇଲେ ଆମ୍ଭ ପ୍ରକୃତି ଯେ ମନ୍ଦହେଲା
ବିଷ୍ଣୁ ମନ୍ଦିରେ ପାଞ୍ଚିଲୁ ମନ୍ଦବାଣୀ ଶୁଣ
ଜଗତମାତାଙ୍କୁ ଦେଖି ମାଗିଲୁଁ ରମଣ ।
ତେଣୁ ଆମ୍ଭଙ୍କୁ କ୍ଷୀରାବ୍ଧି ସୁତା ଦେଲେ ଶାପ
ବୋଇଲେକ ଶତେ ଜନ୍ମ ହୁଅରେ କୌଣପ
ଏରୂପେ ଶାପ ଦେଇଣ ଗଲେ କମଳିନୀ
ସେଠାରୁ ରହିଛୁ ଦୈତ୍ୟହୋଇ ଆମ୍ଭବେନି ।
ଶୁଣିଣ ତାହା ମୁହୂର୍ତ୍ତେ ଆମ୍ଭେ ତୁନି ହୋଇ
ବୋଇଲୁ କେଡ଼େ କୃତ୍ୟରେ କଲ ବେନିଭାଇ
ପୂର୍ବେ ତ ଚଣ୍ଡ ପ୍ରଚଣ୍ଡ ରୂପେ ଜନ୍ମିଥିଲ
କିଛି ଭାଗ୍ୟ ଥିବାରୁ ଯେ ନୂଆ ଜନ୍ମ ହେଲ
ଧର୍ମରାଜା ସୁଦୟାରୁ ଆସିଲ ମୋ ପୁର
ଜୟ ବିଜୟ ହୋଇଣ ଲାଗିଲ ଦୁଆର ।
ବିଷ୍ଣୁ ମନ୍ଦିରେ ପଶି ଯେ କହେ ଚାରିକଥା
ବିଷ୍ଣୁଦଣ୍ଡ ପଡ଼େ ଆସି ତାହାଙ୍କର ମଥା ।
ସେ ଚାରି କଥାର ନାମ କହିବା ହେ ପୁଣ
ରମଣ ଚୋରି ମିଥ୍ୟାଯେ ଆବର ନିୟମ ।
ଏ ଚାରିକୁ ଦଣ୍ଡ କଥା ଶୁଣ ଗୋଟି ଗୋଟି
ବ୍ରହ୍ମା କହନ୍ତି ନାରଦେ ଶ୍ରୀମୁଖେ କଥାଟି ।

ଦେବତା ଆଳୟେ ପଶି ନିୟମ ଯେ କରେ
କାହାକୁ ତ ମନ୍ଦବ୍ୟାଧି ଘୋଟେ ତତପରେ ।
ଦେବତା ଆଳୟେ ପଶି କହନ୍ତି ଯେ ମିଥ୍ୟା
ତାହାଙ୍କୁ ନିଶ୍ଚୟ ଜାଣ ଘୋଟେ ପେଟବ୍ୟଥା
ଦେବତା ଆଳୟେ ପଶି କରଇ ଯେ ଚୋରି
ଅଳପକେ ମୁଣ୍ଡକାଟ ହୋଇଯାଏ ମରି ।
ଦେବତା ଆଳୟେ ପଶି ମରଣ ଯେ ଇଚ୍ଛେ
ଜନ୍ମନ୍ତି ସେମାନେ ଦୈତ୍ୟ ହୋଇଜାଣମଞ୍ଚେ
ଦେବଙ୍କର ଭୂମିବୃତ୍ତି ହରଣ ଯେ କରେ
ତା ପୁତ୍ର ନାତି ଦରିଦ୍ର ହୁଅଇ ସଂସାରେ ।
ଜଗତ ମାତାର ଶାପ ଅନ୍ୟଥା ହେବକି
ଜନ୍ମିଲେଟି ଶତଥର କେହି ରଖିବକି ।
ଏଥକୁ ଶୁଣ କହୁଛୁ ଆମ୍ଭେ ଆଜ୍ଞା ଦେଇ
ଚାରିଥର ଯାଏ ତୁମ୍ଭେ ଜନମିବ ଯାଇଁ ।
ମୂର ଦାରୁଣ ହିରଣ୍ୟ ପୁଣି ହିରଣ୍ୟାକ୍ଷ
ରାବଣ ଯେ କୁମ୍ଭକର୍ଣ୍ଣ ତଦୁତ୍ତାରେ ମୋକ୍ଷ ।
ଏତିକି ଜନମ ଅନ୍ତେ ମାନବ ଯେ ହୋଇ
ଜନମିବ ଶାଲୁ ଶିଶୁପାଳ ରୂପ ବହି ।
ପ୍ରଥମେ ଯାଇ ବ୍ରହ୍ମାର ବୀର୍ଯ୍ୟେ ଜାତ ହେବ
ଦ୍ୱିତୀୟେ କାଶ୍ୟପଋଷି ସୁତ ବୋଲାଇବ ।
ତୃତୀୟେ ହେବ ବିଶ୍ରବା ଋଷିର ଯେ ପୁଅ
ଚତୁର୍ଥରେ ଦମଘୋଷ ବୀର୍ଯ୍ୟେ ଜନ୍ମ ହୁଅ ।
ଆଦ୍ୟେ ମରିବ ନୃସିଂହ ପ୍ରଭୁ ପାଦଘାତେ
ଦ୍ୱିତୀୟେ ଜନ୍ମି ମରିବ ବିଷ୍ଣୁ ନଖକ୍ଷତେ ।
ମରିବ ତୃତୀୟ ଜନ୍ମେ ବ୍ରହ୍ମଶକ୍ତି ପଡ଼ି
ଆସିବ ଚତୁର୍ଥେ ମୋକ୍ଷ ହୋଇ ଚକ୍ରେ ଛିଡ଼ି ।
ତିନି ଜନ୍ମଯାଏ ତୁମ୍ଭେ ଅସୁର ଯେ ହେବ
ମାନବ ଜନ୍ମ ହୋଇଣ ବୈକୁଣ୍ଠେ ଆସିବ ।
ଏହିରୂପେ ଦୁଆରୀଙ୍କୁ ଆମ୍ଭେ ଆଜ୍ଞା ଦେଇ
ନିଜ ମନ୍ଦିରକୁ ଚଳିଗଲେ ବିଜେ ହୋଇ ।
କହନ୍ତି ଯେ ମହାପ୍ରଭୁ ଶୁଣ ବେଦବର
ତାହାଙ୍କ ପାଇଁ ହୋଇଛୁ ଆମ୍ଭେ ଅବତାର ।
କ୍ଳେଶକୁ ନ ପାଞ୍ଚ ଆଉ ଅଳ୍ପଦିନ ଥାଅ
ତୁମ୍ଭଙ୍କୁ ଜଣା ତ ସବୁ ଆମ୍ଭର ବିଷୟ ।
ଜାଣିଥିବାରୁ ପୁଚ୍ଛିଲ ସିନା ଏହା ତୁମ୍ଭେ
ଶୁଣିବ ବ୍ରହ୍ମା ପୁଚ୍ଛିଲେ ପୁଣି କଥା ଭାବେ ।
ନୃସିଂହ ବୋଇଲେ ଏବେ ବିଜେ କରିଯାଅ
ଦେବତାଙ୍କୁ ଘେନି ମୋତେ ଦୟା କରିଥାଅ ।
ଶୁଣିଣ ତା ବିଧାତା ଯେ ହେଲେ ହସ ହସ
ଦେବତାଙ୍କୁ ଘେନିଣ ସେ ଗଲେ ସ୍ୱର୍ଗବାସ ।
ଏଥିଉତ୍ତାରେ ନୃସିଂହ ସ୍ୱାମୀ ଆଦିମୂଳ
ମରୁତ ବସିଣ ସଜ୍ଞାକଲେ ତତକାଳ ।

କର୍ଣ୍ଣାଟେଶ୍ୱର ନୃପତି ସୁଜାଣ ଆବର
ଏହାଙ୍କୁ ବୋଲିଲେ ଚଳିଯାଅ ଯେଝାପୁର ।
ଶ୍ରୀଆଜ୍ଞା ପାଇଣ ସର୍ବେ ଗଲେ ସୈନ୍ୟଘେନି
ଶ୍ରୀନୃସିଂହ ବିଜେକଲେ କରି ଶଙ୍ଖଧ୍ୱନି ।
ବେନି ଭାଇ ଯେ ପହଣ୍ଡି ବିଜେକଲା ପ୍ରାୟେ
ମିଳନ୍ତେ ଗୃହରେ ଯାଇ ପୃଥ୍ୱୀ ଶୋଭା ପାଏ ।
ପୁତ୍ରଙ୍କୁ ଘେନିଣ କୃଷ୍ଣବଲ୍ଲଭ ନୃପମଣି
ଭିତରପୁରେ ଯାଇଣ ଦେହେ ଦେଇ ପାଣି ।
ଶ୍ରୀନୃସିଂହ ବେନିଭାଇ ସ୍ନାନବିଧି ସାରି
ନର ନାରାୟଣ ବସିଲେକ ପୂଜାକରି ।
ତହିଁ ଉତ୍ତାରେ ଶଙ୍କର ପୂଜି ପୁଣି ଆସି
ବ୍ରାହ୍ମଣ ଶମ୍ଭୁ ଘେନିଣ ଦେବାର୍ଚ୍ଚନେ ବସି ।
ବତିଶ କ୍ଷର ନୃସିଂହ ମହାମନ୍ତ୍ର ଯେହୁ
ଭଜନ କରି ବସିଲେ ତାହା ମହାବାହୁ ।
ତିଳକ ପୂଜା ସାରିଣ ବିପ୍ରହସ୍ତ ଧରି
ଘେନନ୍ତି ସେ ଆଶୀର୍ବାଦ ପୂଜା ନିର୍ଭାକରି ।
ଯାବତ ଜୀବପରେ ଯେ ପ୍ରଭୁ ମୋକ୍ଷପ୍ରଦ
ରାଜତ୍ୱ ଯୋଗୁଁ ଘେନନ୍ତି ସେହି ଆଶୀର୍ବାଦ ।
ସକଳ ପ୍ରାଣୀଙ୍କର ସେ ପ୍ରଭୁ ଅଟେ ଆୟୁ
ରାଜତ୍ୱ ଥିବାରୁ ଜନେ କଲ୍ୟାଣଟି ସେହୁ ।
ଏଥିଉତ୍ତାରେ ନାରଦ ଋଷି ପୁଣ ଏବେ
ମଣୋହି କୋଠାକୁ ବିଜେ କଲେ ଦେବଦେବେ
ରତ୍ନପୀଢ଼ାରେ ନୃସିଂହ ପ୍ରଭୁ ବିଜେକରି
ବିଷ୍ଣୁ ବିଷ୍ଣୁ କହି ନୀର ସିଞ୍ଚନ୍ତି ଶ୍ରୀହରି ।
କୃଷ୍ଣବଲ୍ଲଭ ରାଜା ଶ୍ରୀ ଭଗବତୀ ରାଣୀ
ବସିଲେ ଅନନ୍ତ ସହିତେଣ ସିଞ୍ଚପାଣି ।
ଯେଉଁ ଧର୍ମ ସାଂସାରିକ ଅଟେ ବିଧିମାନ
ପୁତ୍ର ପତ୍ନୀକି ଘେନିଣ ବସି ଭୁଞ୍ଜୁ ଅନ୍ନ ।
ସୁବୁଦ୍ଧି ସୁଲକ୍ଷଣା ଯା ଘରେ ବଧୂଥିବ
ସେ ଘରର ପୁଣ୍ୟ ଧର୍ମ କେ କହି ପାରିବ ।
ବରୁଣ ରାଜାର ଝିଅ ଯେଉଁ କମଳିନୀ
ସମ୍ପାଦି ଅଛନ୍ତି ପାକ ପ୍ରଭୁ ମନଜାଣି ।
ନୃସିଂହଙ୍କୁ ପରଷି ସୁବାସ ଶାଳୀଅନ୍ନ
ରନ୍ଧନ ଶତେକ ପ୍ରତି ହୋଇଛି ବ୍ୟଞ୍ଜନ ।
ନାନାଦି ବର୍ଣ୍ଣେ ପିଷ୍ଟକ ଭଜା ଶତେ ପ୍ରତି
ପୁଳୀ ନାଡୀ ମନୋହର ଅପମାଲୁ କାନ୍ତି ।
ଷଡ଼ରସ ନିର୍ଭାକରି ଅଛନ୍ତି ଯାବତ
ମଣୋହି ରାଜନୀତିରେ ଯେଉଁ ବିଧିମତ ।
ନୀଳଗିରି ଜଗନ୍ନାଥ ଭୋଗଲାଗି ପ୍ରାୟେ
ଦିଅନ୍ତି ବାଢ଼ି ସେ ଲକ୍ଷ୍ମୀ ଜଗଜନ ମାଏ ।
ସ୍ୱାମୀ ଦିଅର ଯେ ଶାଶୁ ଶ୍ୱଶୁର ଅଗ୍ରତେ
ପରଷନ୍ତି ମହାଲକ୍ଷ୍ମୀ ଭୁଞ୍ଜନ୍ତି ସମସ୍ତେ ।

ରତ୍ନ ସିଂହାସନେ ବଳଭଦ୍ର ଜଗନ୍ନାଥେ
ହୁଅନ୍ତି ଯେ ରୂପେ ଭୋଗଲାଗି ପ୍ରଭୁ ବିଜେ ।
ସେହି ରୂପେ ଶ୍ରୀନୃସିଂହ ପ୍ରଭୁ ଶେଷମୂର୍ତ୍ତି
ମଣୋହି ବିଧାନ ସାରି ଆଚମନ ହୁନ୍ତି ।
ସୁବାସ ଜଳେ ଶ୍ରୀମୁଖ ପ୍ରକ୍ଷାଳନ କରି
ସିଂହାସନେ ଯାଇ ବିଜେକଲେ ଦେବହରି ।
ଶ୍ରୀକରେ ବପନ ଧରି ମୁଖପଦ୍ମ ପୋଛି
ଗୁଆ ପାନ ଲାଗି ପ୍ରଭୁ ହୋଇଲେ ଶ୍ରୀବସ୍ଥି ।
ପିତା ମାତା ମଣୋହି ସାରିଲେ ମନତୋଷେ
ଭୁଞ୍ଜିଲେକ ମହାଲକ୍ଷ୍ମୀ ଦେବୀ ଅବଶେଷେ ।
ଭୁଞ୍ଜିଲେକ ଇଳାଦେବୀ ଅନନ୍ତଙ୍କ ଶେଷ
ମୁଖ ପଖାଳି ସାରିଣ ହୋଇଲେ ସୁବେଶ ।
ଲକ୍ଷ୍ମୀଙ୍କ ମଣୋହି ଅନ୍ତେ ଯେତେ ଥିଲା ବଳି
ଚୌଷଠି ସହସ୍ର କନ୍ୟା ଭୁଞ୍ଜିଲେ ତା ତୋଳି ।
ଆବର ଭୁଞ୍ଜିଲେ ଅଷ୍ଟସଖୀ ମନତୋଷେ
ସେବାରେ ଥିବାଜନେ ଯେ ଭୁଞ୍ଜିଲେ ସନ୍ତୋଷେ
ଲକ୍ଷ୍ମୀଙ୍କ କୃପାରୁ ସର୍ବେଭୁଞ୍ଜି ହେଲେ ତୋଷ
ଦିବସ ଯେ ଗଲା ଭୋଗ ନିଶି ପରବେଶ ।
ଏଥି ଉତ୍ତାରେ ଆସିଣ ହୁନ୍ତେ ସନ୍ଧ୍ୟାକାଳ
ଧୂପ ଦୀପ ଆଳତି ଯେ କଲେ ଦେବଆଳ ।
ବସିଲେକ ସନ୍ଧ୍ୟାକରି ପ୍ରଭୁ ଅନ୍ତର୍ଯ୍ୟାମୀ
ଜପିଲେ ଗାୟତ୍ରୀ ମନ୍ତ୍ର ମନେ ଦେବ ସ୍ୱାମୀ ।
ଶ୍ରୀଗାୟତ୍ରୀ ମାତାଙ୍କୁ ଯେ ଧ୍ୟାନ କରୁ ଚିତ୍ତେ
ଚାରି ପାଦରେ ପ୍ରବେଶ ହେଲେ ଆସିମୋତେ
ଗାୟତ୍ରୀର ଚାରିପାଦ ଅଟେ ଚାରିବେଦ
ଏ ଚାରିପାଦକୁ ଚିହ୍ନିଥାନ୍ତି ଋଷିବୃନ୍ଦ ।
ଚତୁଷ୍ପଦା ଗାୟତ୍ରୀ ଯେ ରୂପେ ହୋନ୍ତି ଜାଣ
ତହିଁର ଯେ ସନ୍ଧିଭେଦ କହିବା ତା ଶୁଣ ।
ଚାରିପାଦ ନୋହି କେବେ ଚାଲିବ କି ଗାଇ
ତ୍ରିପାଦ ଭଜନ୍ତି ବିପ୍ର ଭେଦ ଚିହ୍ନି ନୋହି ।
ଗାୟତ୍ରୀ ଷଷ୍ଟି ଅକ୍ଷର ତ୍ରିପାଦ ହେ ଜାଣ
ଚତୁଷ୍ପଦା ଗାୟତ୍ରୀ ଯେ କହିବା ତା ଶୁଣ ।
ଚଉଷଠି ବର୍ଣ୍ଣ ସ୍ଥାପି ଗାୟତ୍ରୀ କହିଲେ
ତେବେ ଚାରିପାଦେ ଦେବୀଗାୟତ୍ରୀ ଯେ ଚାଲେ
ତ୍ରିପଦା ଚାୟତିରୀକି ଜପ କରୁଥିଲେ
ତାଙ୍କ ବକ୍ରହୋଇ ଚାଲୁଥାନ୍ତି ଗେଲେ ଗେଲେ ।
ତ୍ରିପଦା ଭଳି ବିପ୍ରେ ଭଳି ଚତୁଷ୍ପଦା
ଗାୟତ୍ରୀ ବିଫଳ ଏଣୁ ହୁଅନ୍ତି ସର୍ବଦା ।
ଜପନ୍ତି ଗାୟତ୍ରୀ ଷାଠିକ୍ଷର ବିପ୍ର ଜଳେ
ଚୌଷଠିକ୍ଷର ଦିନ ନ ଭଜେ କେତେବେଳେ ।
ଗାୟତ୍ରୀ ଷଷ୍ଠି ବର୍ଣ୍ଣକୁ ଯେବେ ଯେ ଭଜନ୍ତି
ତେବେ ପ୍ରସନ୍ନ ତାହାଙ୍କୁ ଗାୟତ୍ରୀ ହୁଅନ୍ତି ।
ଚଉଷଠି ବର୍ଣ୍ଣ ଗାୟତିରୀ ଯେ ଚକ୍ରୋପାଧି
ଚତୁଷ୍ପଦେ ଜପକଲେ ଯାହା ଦୟାନିଧି ।
ବ୍ରହ୍ମାର ତ୍ରିଦଶ ବର୍ଣ୍ଣ ଆଦ୍ୟେ ଲେଖାହୋଇ
ଚବିଶ ଅକ୍ଷର ଜାଣ ତ୍ରିଦଶ ବୋଲାଇ ।
ଚୂଡ଼ା ଚତୁର୍ଦ୍ଦଶ ଶ୍ରବଣକୁ ଦଶ ବୁଝି
ବ୍ରହ୍ମା ଚାରିକ୍ଷର ଏଥି ଭିତରେ ଯେ ଖଞ୍ଜି ।
ଏତେକ ଅକ୍ଷରଯାକ ହେଲେ ଚଉଷଠି
ଜପିଲେ ଏହ୍ନେ ଗାୟତ୍ରୀ ମନ୍ତ୍ର ନୃସିଂହଟି ।
ଆସନ ମନ୍ତ୍ରରୁ ସୋଽହଂସ କାଣ୍ଡିଯାଏ
ସନ୍ଧ୍ୟାର ସନ୍ଧି ସାରିଣ ପ୍ରଭୁ କଲେ ଧ୍ୟାୟେ ।
ସେ ହଂସ ବେନି ଅକ୍ଷର ସର୍ବ ଆତ୍ମା ଜାଣ
ଗାୟତ୍ରୀର ହୃଦପଦ୍ମେ ବିଜେ ନାରାୟଣ ।
ସେହି ନାରାୟଣ ପ୍ରଭୁ ସବୁଙ୍କର ଆତ୍ମା
ଏ କଥା ବ୍ରାହ୍ମଣେ ଚିହ୍ନି ପାରନ୍ତି ଜାଣିମା ।
ସବୁ ଜୀବ ହୃଦପଦ୍ମେ ଗାୟତ୍ରୀ ମନ୍ତ୍ରଟି
ଭଜନ ହେଉଛି କେହି ଚିହ୍ନି ନ ପାରେଟି ।
କେବଳ ଗାୟତ୍ରୀ ମନ୍ତ୍ର ବ୍ରାହ୍ମଣ ଯେ ଚିହ୍ନି
ଭଜନ କରୁଅଛନ୍ତି ସନ୍ଧ୍ୟାକାଳେ ମାନି ।
ଗାୟତିରୀ ଚତୁଷ୍ପଦା ସ୍ୱୟଂ ବ୍ରହ୍ମ ଅଟେ
ଦିବାରାତ୍ରେ ଜପ ହେଉଅଛି ସର୍ବଘଟେ ।
ଏ ରୂପେ ନୃସିଂହ ପ୍ରଭୁ ସାରି ସନ୍ଧ୍ୟାକର୍ମ
ଶୟନ ମନ୍ଦିରେ ବିଜେ କଲେ ପରଂବ୍ରହ୍ମ ।
ଇଳାଠାକୁରାଣୀପୁରେ ଶେଷଦେବ ଯାଇ
ପଲ୍ୟଙ୍କରେ ବିଜେକଲେ ନିଦ୍ରାଯିବା ପାଇଁ ।
ଦେଖିଣ ଇଳାଦେବୀ ଶ୍ରୀପାଦ ସେବାକଲେ
ସେବାକାରୀଜନମାନେ ଅନ୍ତର ହୋଇଲେ ।
ଏଥିଉତ୍ତାରୁ ନୃସିଂହ ପ୍ରଭୁ ଦେବରାଜେ
ଶ୍ରୀମହାଲକ୍ଷ୍ମୀ ମନ୍ଦିରେ କଲେ ଯାଇଁ ବିଜେ ।
ଚୌଷଠି ସହସ୍ର କନ୍ୟା ଆଉ ଅଷ୍ଟସଖୀ
ସବୁରି ମଧ୍ୟରେ ବର୍ତ୍ତିଛନ୍ତି କମଳାକ୍ଷୀ ।
ଫୁଲେ ଭୂଷଣ ହୁଅନ୍ତେ ଦିଶିଲେ ସେ ଶୋଭା
ଲକ୍ଷ୍ମୀସେବା କରୁଛନ୍ତି ଆଗେ ହୋଇ ଉଭା ।
ସବୁରି ଶିରେ କେତକୀ ମଲ୍ଲୀ ଜାଇ ଯୁଇ
ଟଗର ତରାଟ କୁନ୍ଦ ବକୁଳ ମାଳତୀ ।
ଫୁଲର ଗଭା କିରଣେ ବାସନା ଚହଟେ
କର୍ପୂରଗୁଣ୍ଡି ପଡ଼ିଛି ଏଣେ ଶଯ୍ୟାଖଟେ ।
ଫୁଲରେ ଭୂଷଣ ହୋଇ ସକଳ ନାୟିକା
ଲକ୍ଷ୍ମୀଙ୍କି ସେବନ୍ତି ଘେନି ଚନ୍ଦନର ଟୀକା ।
ପଲ୍ୟଙ୍କରେ ବିଜେ କରିଛନ୍ତି କମଳିନୀ
ପ୍ରଦୀପେ ଜଳନ୍ତି ଧୀରେ ଧୀରେ ଶିଖାଘେନି ।
ଦିବସୁ ଅଧିକ ଦିଶେ ଉଜ୍ଜ୍ୱଳ ସେ ନିଶି
ଏମନ୍ତ ସମୟେ ହରି ବିଜେକଲେ ଆସି ।

ନାୟିକାଙ୍କ ଚାତୁରୀ ଯେ ଦେଖି ଚକ୍ରପାଣି
ବୋଇଲେ ଏ ବେଶକୁ ତ ରସଉଣା ପୁଣି ।
ନ ଜାଣି ଏ ରତିଶାସ୍ତ୍ର ସୁବେଶ ଯେ ହେଲେ
ଚାରଭାବ ମାର୍ଗଲେଖି ଚିତ୍ରରେଖା ତୁଲେ ।
ଶାସ୍ତ୍ର ଅର୍ଥ ନ ବୁଝି ଯେ ମରଣ କରଇ
ପଶୁ ଜନ୍ତୁ ରଚି ପ୍ରାୟ ତାହା ଲେଖା ହୋଇ ।



## ଚନ୍ଦ୍ରକଳା ସ୍ଥାନ ନିର୍ଣ୍ଣୟ ଓ ସ୍ତ୍ରୀ ପୁରୁଷଙ୍କର ଲକ୍ଷଣ

ଶୁଣିଣ ନାୟିକାଗଣ ଯୋଡ଼ି କରପତ୍ର
ବୋଇଲେ ଶୁଣିମା କହ ସ୍ୱାମୀ ରତିଶାସ୍ତ୍ର ।
ଶ୍ରୀମୁଖରେ ଶୁଣିଥିଲେ ସଂସାର ଲୋକଙ୍କୁ
ପ୍ରଚଳ ହୋଇବ କଥା ରହିବ ଯୁଗକୁ ।
ବୁଝିଲେ ଏଠାରେ ଆଉ ପୁରୁଷ କେ ନାହିଁ
ଶୁଣିବୁ ଶ୍ରୀମୁଖୁ କହି ଦେବ ଭାବଗ୍ରାହୀ ।
ଶ୍ରୀନୃସିଂହ ଆଜ୍ଞାକଲେ ଶୁଣ ସଖୀଗଣ
ଶ୍ରୀଚନ୍ଦ୍ରକଳା ଯେ ସ୍ତ୍ରୀ ପୁରୁଷ ଲକ୍ଷଣ ।
ପୁରୁଷ କଳା ଯେ ରବି ଚନ୍ଦ୍ରକଳା ସ୍ତିରୀ
ସେ ଚନ୍ଦ୍ରକଳାରୁ ମାର୍ଗ ହୁଏ ତିଥି ଧରି ।
କୃଷ୍ଣ ଶୁକ୍ଳପକ୍ଷେ ଯେହ୍ନେ ହୁଅନ୍ତି ଯେ ଉଦେ
ସେ କଥାମାନଙ୍କୁ ଚିହ୍ନି ଚାଲିବଟି ହାଦେ ।
ଚନ୍ଦ୍ରଙ୍କ ଉଦୟ ସ୍ଥାନ ଶୁଣ ଶାସ୍ତ୍ରମତେ
ଯେଉଁ ସ୍ଥାନରେ ବସନ୍ତି ଶଶୀ ସ୍ତିରୀ ଗାତ୍ରେ ।
ପ୍ରଥମରେ ଶୁକ୍ଳପକ୍ଷେ ଉଦେ ହୋଇ ଶଶୀ
ବୃଦ୍ଧ ଅଙ୍ଗୁଳିରେ ବସେ ପ୍ରତିପଦ ନିଶି ।
ଦ୍ୱିତୀୟା ଦିନ ସେ ଯାଇ ପାଦେ କଲେ ସ୍ଥିତି
ଚନ୍ଦ୍ରକୁ ନ ଚିହ୍ନି ଜନେ ମେଳେ ଶାନ୍ତମତି ।
ତୃତୀୟା ଦିନରେ ଚନ୍ଦ୍ର ଗୁଳ୍‌ଫେ କରେ ବାସ
ଚତୁର୍ଥୀ ତିଥିରେ ପାଏ ଜାନୁରେ ପ୍ରକାଶ ।
ପଞ୍ଚମୀ ତିଥିରେ ଶଶୀ ନୀବିବନ୍ଧେ ରହେ
ଷଷ୍ଠୀର ତିଥିରେ ସେ ନାଭିମଣ୍ଡଳରେ ଥାଏ ।
ସପ୍ତମୀ ତିଥିରେ ରହେ ହୃଦୟରେ ଆସି
ଅଷ୍ଟମୀ ତିଥିରେ ଥାଏ କୁକ୍ଷିଭାଗେ ବସି ।
ନବମୀ ତିଥିରେ ଥାଏ ପୟୋଧର ଅଗ୍ରେ
ପ୍ରବେଶ ହୁଅନ୍ତି ଚନ୍ଦ୍ର ଯାଇଁ ତହିଁ ବ୍ୟଗ୍ରେ ।
ଦଶମୀ ତିଥିରେ ଜାଣ ଗଣ୍ଡଯୁଗେ ରହେ
ଦିନକୁ ଦିନ ତା କଳାଗୋଟି ବଢୁଥାଏ ।
ଏକାଦଶୀର ଅଧରେ ଚନ୍ଦ୍ରକରେ ବାସ
ଦ୍ୱାଦଶୀ ତିଥିରେ ହୋଏ ନୟନେ ପ୍ରକାଶ ।
ତ୍ରୟୋଦଶୀ ତିଥିରେ ସେ ଶ୍ରବଣେ ରହଇ
ଚତୁର୍ଦ୍ଦଶୀ ତିଥିରେ ସେ ଭାଲେ ପୁଣ ଥାଇ ।
ପୂର୍ଣ୍ଣମୀ ତିଥିରେ ରହେ ଶଶୀ ମଥାପରେ
ଏହିରୂପେ ଶୁକ୍ଳପକ୍ଷ ପୂରିଲା ଉତ୍ତାରେ ।
ଖସନ୍ତି ଚନ୍ଦ୍ରମା ଜାଣ ସ୍ତିରୀଙ୍କ ମଥାରୁ
କୃଷ୍ଣପକ୍ଷର ସେ ସ୍ଥାନ ଶୁଣ ଏ ଉତ୍ତାରୁ ।
ଯୁବତୀ ଦକ୍ଷିଣ ଭାଗେ ଶଶୀ ଖସି ଆସେ
କୃଷ୍ଣ ପ୍ରତିପଦା ଦିନ ଲଲାଟରେ ବସେ ।
ଦ୍ୱିତୀୟା ଦିନ ସେ ନେତ୍ରେ ଉଦୟ ହୁଅନ୍ତି
ତୃତୀୟା ଦିନ ଅଧରେ ଯାଇଁ ପ୍ରକାଶନ୍ତି ।
ଚତୁର୍ଥୀ ଦିନ ବସଇ ଚନ୍ଦ୍ରକଳା କର୍ଣ୍ଣେ
ନୃସିଂହ ବୋଲନ୍ତି ଶୁଣ ଗୋ ନାୟିକାଗଣେ ।
ପଞ୍ଚମୀ ତିଥିରେ ଶଶୀରହେ କୁକ୍ଷିଭାଗେ
ଷଷ୍ଠୀ ଦିନରେ ରହଇ ଚନ୍ଦ୍ର ସ୍ତନଯୁଗେ ।
ସପ୍ତମୀ ତିଥିରେ ରହେ ଯାଇ ନାଭିଦେଶେ
ଅଷ୍ଟମୀ ତିଥିରେ ଚନ୍ଦ୍ର ନିତମ୍ବେ ପ୍ରକାଶେ ।
ନବମୀ ତିଥିରେ ଚନ୍ଦ୍ର ଜାନୁରେ ରହଇ
ଦଶମୀ ତିଥିରେ ଜଙ୍ଘେ ଚନ୍ଦ୍ର ପ୍ରକାଶଇ ।
ଏକାଦଶୀରେ ଚନ୍ଦ୍ରମା ଜାନୁମଧ୍ୟେ ଥାଏ
ବିଶ୍ରାମଇ ଚନ୍ଦ୍ର ରାତ୍ର ପାହିଯିବା ଯାଏ ।
ଦ୍ୱାଦଶୀରେ ପାଦଗଣ୍ଠି ଗୁଳ୍‌ଫରେ ଯେ ଚନ୍ଦ୍ର
ତ୍ରୟୋଦଶୀ ଦିନ ନଖ ଅଗ୍ରେ କଇଁବନ୍ଧ ।
ଚତୁର୍ଦ୍ଦଶୀରେ ରହଇ ପାଦ ଅଙ୍ଗୁଳିରେ
ଅମାବାସ୍ୟାରେ ସେ ଥାଇ ବୃଦ୍ଧ ଅଙ୍ଗୁଷ୍ଠିରେ ।
ଏ ରୂପେ ସ୍ତିରୀଙ୍କ ଦେହ ଚନ୍ଦ୍ରକଳା ସ୍ଥିତି
ଶୁଣ ଆଗୋ ନାୟିକାଏ ନୃସିଂହ କହନ୍ତି ।
ସଂସାରେ ଅଛନ୍ତି ଜାଣ ଚାରିଜାତି ସ୍ତିରୀ
ତାହାଙ୍କ ଲକ୍ଷଣମାନ କହୁଛୁଁ ବିସ୍ତାରି ।
ପଦ୍ମିନୀ ଚିତ୍ରିଣୀ ଆଉ ଶଙ୍ଖିନୀ ହସ୍ତିନୀ
ସୃଜିଅଛନ୍ତି ଏ ଚାରି ସ୍ତିରୀ ପଦ୍ମଯୋନି ।
ଏ ଚାରି ସ୍ତିରୀଙ୍କୁ ଚାରି ପୁରୁଷ ଯେ ଖଞ୍ଜେ
ପୁଣ ନାୟିକାଏ କହୁଛନ୍ତି ଦେବରାଜେ ।
ଶଶକ ହରିଣ ବୃଷ ଅଶ୍ୱ ଚାରିଜାତି
ପୁରୁଷମାନେଟି ଏହି ସଂସାରେ ଅଛନ୍ତି ।
ସ୍ତିରୀଜାତିଙ୍କି ଯେ ପୁଂସ ଛନ୍ତି ଚାରିଜାତି
ସେ ସ୍ତ୍ରୀ ପୁରୁଷ ଗୁଣ କହିବା ଯେ ରୀତି ।
ପ୍ରଥମେ ଶୁଣ ଗୋ ଶଶପୁରୁଷଙ୍କ କଥା
କନ୍ଧରୁ ଲକ୍ଷ୍ମୀ ତାହାର ନଛାଡ଼େ ସର୍ବଥା ।
ସୁଜ୍ଞାତି ସୁରସ ଭୋଗୀ ଦାତା ସତ୍ୟବନ୍ତ
ସୁବୁଦ୍ଧି ଯେ ସାଧୁଶୀଳ ଦୟାଳୁ ପଣ୍ଡିତ ।
ସକଳ ଆତ୍ମାରେ ସମଦରଶୀ ସେ ଅଟେ
ଆପଣାର ଆତ୍ମାକୁ ସେ ଚିହ୍ନେ ସର୍ବଘଟେ ।
ବତିଶ ଲକ୍ଷଣ ତାର ଅଙ୍ଗେ ବିରାଜଇ
ପଦ୍ମିନୀ ସ୍ତିରୀର ସଙ୍ଗେ ସଦା ବିରାଜଇ ।
ଲିଙ୍ଗଚକ୍ର ମାପ ତାର ଅଟେ ଷଡାଙ୍ଗୁଳ
ଶୁଣ ସଖୀଏ କହନ୍ତି ପ୍ରଭୁ ଆଦିମୂଳ ।

ମୃଗଜାତ ପୁରୁଷଙ୍କ କହୁଛୁଁ ଲକ୍ଷଣ
ଅତ୍ୟନ୍ତ ସୌନ୍ଦର୍ଯ୍ୟ ଦେହ ଅତ ସୁଗଠନ ।
ଧର୍ମରେ ସେ ସବୁଦିନେ ଚଳେ ଅବିରତେ
ପରମାର୍ଥ ତୀର୍ଥବ୍ରତ କରେ ତୋଷ ଚିତ୍ତେ ।
କୋମଳ ମଧୁରଭାଷୀ ଅଟେ ଶୁଦ୍ଧ ଅଙ୍ଗ
ଚିତ୍ରିଣୀ ସ୍ତିରୀ ତାହାର ଜାଣ ଅଟେ ଅଙ୍ଗ ।
ସପ୍ତାଙ୍ଗୁଳ ଅଟଇ ତା ମାପ ଚିତ୍ରଲିଙ୍ଗ
ଶୁଣ ଆଗୋ ନାୟିକାଏ କହନ୍ତି ନୃସିଂହ ।
ବୃଷଜାତି ପୁରୁଷର ଲକ୍ଷଣ ଗୋ ଶୁଣ
ଶଙ୍ଖିନୀଜାତି ସ୍ତିରୀଙ୍କି କରେ ଭୋଗ ପୁଣ ।
ରସରେ ରସିକ ତର୍କ ବହୁତ ଜାଣଇ
ଛତିଶ ରାଗିଣୀ ଛନ୍ଦ ଗୀତ ପାରେ ଗାଇ ।
ସିତାର ବଇଁଶୀ ବୀଣା ବାଇ ବେଶ୍ୟାସଙ୍ଗେ
ଶକଟାପଶା ଯେ ସୂତ ଖେଳେ ନାନାରଙ୍ଗେ ।
ଗଣିକାଙ୍କ ତୁଲେ ମାତି ରସେ ଚିତ୍ତଭ୍ରମି
ପୁରୁଷମାନଙ୍କ ମଧ୍ୟେ ଦ୍ୱିଗୁଣ ସେ କାମୀ ।
ଶଙ୍ଖିନୀ ସ୍ତ୍ରୀଜାତି ଯେ ଅଟେ ତାର ପ୍ରିୟା
ନବାଙ୍ଗୁଳ ମାପ ତାର ଲିଙ୍ଗଚକ୍ର କାୟା ।
ଅଶ୍ୱଜାତି ପୁଂସ କଥା କହିବା ଗୋ ଶୁଣ
ପାଷାଣ୍ଡ ହୃଦୟ ଦମ୍ଭ ଅଟଇ ସେ ପୁଣ ।
ମାୟା ଛନ୍ଦ କୂଟ କଥା ବହୁତ ଜାଣଇ
ହସ୍ତିନୀ ସ୍ତିରୀଙ୍କ ସଙ୍ଗେ ଭୋଗେ ବିଳସଇ ।
ଦଶାଙ୍ଗୁଳ ଅଟେ ତାର ଲିଙ୍ଗଚକ୍ର ମାପ
ଚାରିଜାତି ପୁରୁଷଙ୍କ ଲକ୍ଷଣ ଏ ରୂପ ।
ଏଥିଉତ୍ତାରେ ଯେ ପୁଣି ଶୁଣ ସଖିଗଣ
ଯୁବତୀ ଚାରିଜାତିଙ୍କ କହିବା ଲକ୍ଷଣ ।
ଆଦ୍ୟରେ ଯେ ପଦ୍ମିନୀର ଗୁଣ କହୁଥାଇ
ପୂର୍ଣ୍ଣଚନ୍ଦ୍ର ମୁଖୀ ପଦ୍ମପତ୍ର ନେତ୍ରା ସେହି ।
ପଦ୍ମିନୀର ପାଦଚିହ୍ନ ଚିତ୍ରିଣୀର ଶୋଭା
ଏ ଚାରି ସ୍ତିରୀଙ୍କ ଦେହ ବାସନା କହିବା ।
ପଦ୍ମିନୀ ସ୍ତିରୀଙ୍କ ଦେହ ବାସେ ପଦ୍ମପ୍ରାୟ
ଚିତ୍ରିଣୀ ସ୍ତିରୀର ବାସ କର୍ପୂର ପରାୟ ।
ଶଙ୍ଖିନୀ ସ୍ତିରୀର ଦେହ ବାସେ ଆଇଁସିଆ
ହସ୍ତିନୀ ସ୍ତିରୀର ଦେହ ବାସେ ମଇଁଷିଆ ।
ପଦ୍ମିନୀ ସ୍ତିରୀର ଚାଲି ହଂସଚାଲି ପ୍ରାୟେ
ଚିତ୍ରିଣୀ ସ୍ତିରୀର ଚାଲି ଗଜଗତି କିଏ ।
ଶଙ୍ଖିନୀ ସ୍ତିରୀର ଶୁଭେ ଚାଲି ଦମ ଦମ
ହସ୍ତିନୀ ସ୍ତିରୀର ଚାଲି ଫୁଟେ ଗଣ୍ଡିସମ ।
ପଦ୍ମିନୀ ସ୍ତିରୀର କ୍ରୋଧ କ୍ଷଣେ ହୋଏ ଶାନ୍ତି
ଚିତ୍ରିଣୀ ସ୍ତିରୀର କ୍ରୋଧ ଘଡ଼ିକେ ଯାଆନ୍ତି ।
ଶଙ୍ଖିନୀ ସ୍ତିରୀର କ୍ରୋଧ ପନ୍ଦର ଯେ ଦିନେ
ସକେଇ ହୋଇ କାନ୍ଦଇ ବସିଣ ଗୁମାନେ ।
ହସ୍ତିନୀ ସ୍ତିରୀର କ୍ରୋଧ ସପ୍ତଦଶ ଦିନ
ଶାନ୍ତି କରିବାକୁ କେହି ନୁହନ୍ତି ଭାଜନ ।
ପଦ୍ମିନୀ ସ୍ତିରୀ କହିବ ଟେକି ଯେବେ ମୁଖ
ପିକଭାଷିଲା ପରାୟେ ଶୁଭିବ ତା ବାକ୍ୟ ।
ଦର୍ପଣ ପ୍ରାୟ ତା ମୁଖ ସବୁବେଳେ ଦିଶେ
ଅଳ୍ପ ଆହାରେ ତା ଚିତ୍ତ ବଦନ ପ୍ରକାଶେ ।
ସୁଶୀଳ ଶୁଭ୍ରାଙ୍ଗୀ ଜାତ ପଦ୍ମିନୀ ଯେ ରାମା
ସ୍ୱରୂପା ସୁନ୍ଦରୀ ସର୍ବ ସୁଲକ୍ଷଣା ବାମା ।
ଚିତ୍ରଣୀ ସ୍ତିରୀର ଗୁଣ କହିବା ଗୋ ଶୁଣ
ପ୍ରଭାତୁ ଉଠି ଭଜଇ ନିତ୍ୟ ନାରାୟଣ ।
ବିକଚପଦ୍ମ ବଦନୀ କୁରଙ୍ଗୀନୟନୀ
ଶରୀର ଗଉରବର୍ଣ୍ଣ ଗଜେନ୍ଦ୍ର ଗାମିନୀ ।
କୃଷ୍ଣଗ୍ରିଂ କୁଟିଳ ବୃଷ୍ଟି କଠିନ ତା କୁଚ
କି ଅବା ସେ ନାରୀଗୋଟି କାମକେଳି ସଞ୍ଚ ।
ଏମନ୍ତ ଜାଣ ଚିତ୍ରିଣୀ ସ୍ତିରୀର ଲକ୍ଷଣ
ଶଙ୍ଖିନୀ ସ୍ତିରୀର ଗୁଣ କହିବା ଗୋ ଶୁଣ ।
ଦମ ଦମ ଚାଲି ତାର ଉଚ୍ଚବକ୍ଷ ଖଣ୍ଡ
ଯୁବା ପୁରୁଷଙ୍କୁ ଦେଖି ହସେ ପରଚଣ୍ଡ ।
ଉତ୍ତମ ପୀରତିକୁ ସେ ବହୁ ପ୍ରେମେ ଘେନେ
ହୃଷ୍ଟ ହୁଏ ବେନି ପୟୋଧର ମରଦନେ ।
ରତିରସ ଅଳପକେ ହେଲେ ଜାଣ ଊଣା
ସେ ଦିନ ଘାଣ୍ଟି ହୁଅଇ ମନ କରି ଘୃଣା ।
ହସ୍ତିନୀ ସ୍ତିରୀର ଗୁଣ କହିବା ଗୋ ପୁଣି
କାଳ ପ୍ରାୟ ଚାଲିବାର ଗତି ଠିଆ ଠାଣି ।
ବଚନ ସେ କହୁଥିଲେ କଳିପ୍ରାୟ ଶୁଭେ
ବକ୍ର ଚାହାଣିରେ ଯୁବା ପୁରୁଷଙ୍କୁ ଭାବେ ।
ପିଙ୍ଗଳ ଲୋମ ତା କେଶ ଦେହେ ଦିଶେବାରି
ଦୀର୍ଘ ପୁରୁଷକୁ ଦେଖି ହୁଏ କାମେ ଘାରି ।
ଗଉରକେଶୀ ପୃଥୁଳକଟି ଅଟେ ଭାର
ବହୁତ ଭୋଜନେ ଶାନ୍ତ ମନ ହୁଏ ତାର ।
ପୃଥୁଳ କପାଳ ଉଚ୍ଚ ବିକୃତ ତା ବାଣୀ
ଶୁଣ ନାୟିକାଏ କହନ୍ତି ଯେ ଚକ୍ରପାଣି ।
ଯେବଣ ତିଥିରେ ବଶ ହୁଏ ଯେଉଁ ନାରୀ
ତାହା କହୁଅଛି ଶୁଣ ତୁମ୍ଭେ ହେତୁକରି ।
ଦ୍ୱିତୀୟା ଯେ ଚତୁର୍ଦ୍ଦଶୀ ଚତୁର୍ଥୀ ପଞ୍ଚମୀ
ଏ ଚାରି ତିଥିରେ ବଶ ହୁଅନ୍ତି ପଦ୍ମିନୀ ।
ଷଷ୍ଠୀ ଦ୍ୱାଦଶୀ ଅଷ୍ଟମୀ ଏହୁ ତିନି ତିଥି
ଚିତ୍ରିଣୀ ସ୍ତିରୀଏ କାମେ ବିହ୍ୱଳ ହୁଅନ୍ତି ।
ଏକାଦଶୀ ତ୍ରୟୋଦଶୀ ପ୍ରତିପ ସପ୍ତମୀ
କାମଶରେ ବିହ୍ୱଳିତ ହୁଅନ୍ତି ଶଙ୍ଖିନୀ ।
ଚତୁର୍ଦ୍ଦଶୀ ଅମାବାସ୍ୟା ଆବର ପୌର୍ଣ୍ଣମୀ
ହସ୍ତିନୀ ସ୍ତିରୀଙ୍କି ବଶ କରିବେ ଯେ କାମୀ ।

ଯେଉଁ ଦିନ ଯେତେ କାଳ ଧରେ ଶଶଧର
ତାହା କହୁଅଛୁଁ ଶୁଣ ଆଗୋ ରାମାବର ।
ପ୍ରତିପଦେ ଏକକଳା ଉଦେ ହୁଏ ଶଶୀ
ବୃଦ୍ଧ ଅଙ୍ଗୁଳିରେ ରହି ଭୋଗକରେ ନିଶି ।
ଦ୍ୱିତୀୟା ଦିନ ତହିଁରୁ ଯାଇ ପାଦେ ବସେ
ଦୁଇଗୋଟି କଳା ରହି ଚନ୍ଦ୍ରମା ପ୍ରକାଶେ ।
ତୃତୀୟା ଦିନ ସେ ପୁଣି ତିନିକଳା ଘେନି
ଜଘନେ ଉଦୟ ହୁଏ ଶୁଣ ଗୋ କାମିନୀ ।
ଚତୁର୍ଥୀ ତିଥିରେ ଚନ୍ଦ୍ର ଚାରିକଳା ବହି
ସେ ରାତି ପୁହାଇ ଜାନୁ ଯୁଗଳରେ ରହି ।
ପଞ୍ଚମୀ ତିଥିରେ ଶଶୀ ପାଞ୍ଚ କଳାଧରି
କୁକ୍ଷରେ ରହି ପୁହାଏ ସେ ଦିନ ଶର୍ବରୀ ।
ଷଷ୍ଠୀ ତିଥିରେ ସେ ଷଷ୍ଠକଳା ବହି ଉଦେ
ନାଭିଦେଶେ ବିଜେ କରେ ତହୁଁ ଯାଏ ହୃଦେ ।
ସପ୍ତମୀ ତିଥିରେ ସାତକଳା ବହି ରହେ
ଅଷ୍ଟମୀ ତିଥିରେ ଆଠକଳାକୁ ଯେ ବହେ ।
ନିଶିଯାକ ରହିଥାଏ ନାରୀର ଉଦରେ
ନବମୀ ତିଥିରେ ଶଶୀ ନବକଳା ଧରେ ।
କଣ୍ଠରେ କରଇ ବାସ ରଜନୀ ଦିବସ
ଦଶମୀ ତିଥିରେ ଶଶୀ ବହେ କଳା ଦଶ ।
କକ୍ଷାକେ ସେ ଦିନରାତି ରହି ତହିଁ ଯାଏ
ଏକାଦଶୀରେ ଏଗାର କଳାରେ ଉଦୟେ ।
ଅଧରେ ରହଇ ଶଶୀ ସେ ଦିନ ଶର୍ବରୀ
ଦ୍ୱାଦଶୀରେ ନେତ୍ରେ ରହେ ବାରକଳା ଧରି ।
ତ୍ରୟୋଦଶୀରେ ସେ ତେରକଳା ପ୍ରକାଶଇ
ରଜନୀ ଦିବସ ବେନି କର୍ଣ୍ଣରେ ରହଇ ।
ଚତୁର୍ଦ୍ଦଶୀରେ ଚଉଦକଳା ଘେନି ଉଦେ
ରଜନୀ ଦିବସ ରହିଥାଏ ଓଷ୍ଠଛନ୍ଦେ ।
ଷୋଳ କଳାଯାକ ଧରି ରୋହିଣୀର କାନ୍ତ
ପୂର୍ଣ୍ଣମୀ ଦିନ ମସ୍ତକପରେ କରେ ସ୍ଥିତ ।
ଶୁଣ ସଖୀଗଣେ କହୁଛନ୍ତି ନାରାୟଣ
କୃଷ୍ଣପକ୍ଷ କଥା ଏବେ ପ୍ରତ୍ୟକ୍ଷରେ ଶୁଣ ।
ପ୍ରତିପଦ କୃଷ୍ଣପକ୍ଷେ ରୋହିଣୀର ସାଇଁ
ପନ୍ଦରକଳା ଘେନିଣ ଲଲାଟେ ରହଇ ।
ଦ୍ୱିତୀୟା ଦିବସେ ପୁଣ ଚୌଦକଳା ଧରି
ଲଲାଟେ ସ୍ଥାନରୁ ଖସି ନେତ୍ରେ ବାସକରି ।
ତୃତୀୟାଦିନ ଚନ୍ଦ୍ର ଯେ ତେରକଳା ଧରି
ଅଧରରେ କରେ ବାସ ତହୁଁ ବିଜେ କରି ।
ଚତୁର୍ଥୀ ତିଥିରେ ପୁଣି ବାର କଳା ଧରି
ଖସି ରହେ ଶଶୀକଳା ମଧ୍ୟେ ବାସକରି ।
ପଞ୍ଚମୀ ତିଥିରେ ଏକାଦଶ କଳାଯାଏ
କାଖରେ ବାସ କରନ୍ତି ଅତ୍ରିର ତନୟେ ।

ଷଷ୍ଠୀ ରଜନୀରେ ଦଶଗୋଟି କଳା ଧରି
ପ୍ରବେଶ ହୋଇଣ ଚନ୍ଦ୍ର ହୃଦେ ବିଜେକରି ।
ସପ୍ତମୀ ତିଥିରେ ପୁଣି ଧରି ନବକଳା
ହୁଅନ୍ତି ନାଭିରେ ଆସି ଅନୁସୂୟା ବଳା ।
ଅଷ୍ଟମୀ ଦିନରେ ଅଷ୍ଟ କଳାରେ ଯେ ଶଶୀ
କଟୀରେ ବାସ କରନ୍ତି ଆସି ସେହି ନିଶି ।
ଦିନକୁ ଦିନ ସେ କ୍ଷୀଣ ହୁନ୍ତି ଚନ୍ଦ୍ର ହୃଦେ
କଳାଏ କଳାଏ ଛାଡ଼ି ଆସେ ହୋଇ ଉଦେ ।
ନବମୀ ତିଥିରେ ପୁଣି ସାତକଳା ଧରି
ଯୁବତୀ ନଦୀ ବନ୍ଧରେ ରହେ ବାସ କରି ।
ଦଶମୀ ନିଶାକାଳରେ ଧରେ ଷଡ଼କଳା
ବସନ୍ତି ଯତନେ ଯାଇ ଅକ୍ରି ରଷିବଳା ।
ଆବର ଏକାଦଶୀରେ ପଞ୍ଚକଳା ରହି
କରଇ ଜାନୁରେ ବାସ ରୋହିଣୀର ସାଇଁ ।
ଦ୍ୱାଦଶୀ ଦିନରେ ପୁଣି ଚାରିକଳା ଧରି
ରହନ୍ତି ସେ ଶଶଧର ଗୁଳଫେ ବାସକରି ।
ଆବର ତ୍ରୟୋଦଶୀରେ ଘେନି ତିନିକଳା
ପାଦରେ ବାସ କରନ୍ତି ଅନୁସୂୟା ବଳା ।
ଚତୁର୍ଦ୍ଦଶୀରେ ପୁଣି ସେ ରୋହିଣୀର ସାଇଁ
ରହେ ବେନି କଳା ଘେନି ଅଙ୍ଗୁଳିରେ ଯାଇଁ ।
ଅମାବାସ୍ୟାରେ ଚନ୍ଦ୍ରମା କଳା ଏକ ଘେନି
ବୃଦ୍ଧ ଅଙ୍ଗୁଳି ଉପରେ ରହେ ଟେକି ଧ୍ୱନି ।
ବାମେ ଶୁକ୍ଳପକ୍ଷେ ଦକ୍ଷିଣରେ କୃଷ୍ଣପକ୍ଷେ
ଏହି ରୂପେ ଆତଯାତ ହୁନ୍ତି ଚନ୍ଦ୍ର ସୁଖେ ।
ଯାବତ ଦେହରେ ପୁଣ ଏହିରୂପେ ଶଶୀ
କ୍ଷୟ ବୃଦ୍ଧି ହୋଇଥାନ୍ତି ସୁଖେ ବାରମାସୀ ।
ଶୁଣ ଶୁଣ ଗୋ ନାୟିକା କହନ୍ତି ନୃସିଂହ
କହିଲେ ନ ସରେ ଚନ୍ଦ୍ର କଥା ପରସଙ୍ଗ ।
ସ୍ତୋକ ମନାଣେ ତୁମ୍ଭଙ୍କୁ କହିଲୁ ଯେ ଜାଣ
ଏହା ଶୁଣି ହସ ହସ ହେଲେ ସଖୀଗଣ ।
ବୋଇଲେ ଏତେକ କଥା ତ ଜାଣିବ କେସ୍ତିରୀ
ସୁପୁରୁଷ ବିନା ଏହା ନ ପାରେ କେ କରି ।
ଭୋ ପ୍ରଭୁ ଆମ୍ଭେ ତୁମ୍ଭର ପଦଚାରୀ ଯେଣୁ
ଶ୍ରୀମୁଖୁଁ ଶୁଣିଲୁ ଆମ୍ଭେ କଥା ଏକ ତେଣୁ ।
ଏ ରୂପେ ବୋଲି ଚୌଷଠି ସହସ୍ର ସୁନ୍ଦରୀ
ବୋଇଲେ ଏ ବିଦ୍ୟା ଆମ୍ଭେ ଜାଣିବୁ କିପରି ।
ଭୁଞ୍ଜିଲେ ସିନା ହେ ସ୍ୱାମୀ ହୃଦୁଁ ଯାଏ ଭୋଗ
ଶୋଇଲେ ସିନା ହେ ସ୍ୱାମୀ ଜାଣେ ନିଦ୍ରାସୁଖ ।
ଖାଇଲେ ସିନା ହେ ସ୍ୱାମୀ ସ୍ୱାଦ ବୋଲି ଜାଣି
ପାନକଲେ ତୃଷା ସିନା ହୃଦୁଁ ଯାଏ ପୁଣି ।
ନୟନେ ଦେଖିବା କଥା ଅଟେ ସନା ସତ
ନଥାଇ ଲୋଡ଼ିଲେ କେହି ଦେବ ଆଣି ଦତ୍ତ ।

କଳହ ସ୍ଥାନେ ଯେବେ ନ ଥିବ ଜଣେ ସାକ୍ଷୀ
କହିବ ତହିଁର ଯେଉଁ ନ୍ୟାୟ ମଥା ଯୋଖି ।
ଆମ୍ଭେ ତ ସ୍ତିରୀ ଅବଳା ଏକେ ସୁକୁମାରୀ
ସାତକୁ ସତର କହୁ ମିଛେ ଫାନ୍ଦିକରି ।
ଦୁଇଶତ ଦେଖିଲେ ନଅଶତ କହୁଁ
ତୁମ୍ଭଙ୍କୁ କିସ କହିବୁଁ ବଳି ମହାବାହୁ ।
ବୁଝିଲେ ପ୍ରଭୁଙ୍କୁଁ ଜନ୍ମକାଳୁ ଅଛୁଁ ସେବି
କି ରୂପେ ଚନ୍ଦ୍ରକଳା ନ ଜାଣୁ ଆମ୍ଭେ ଭାବି ।
ଆମ୍ଭର ଦେଶକୁ ପୁଣି ତୁମ୍ଭେ ଅଟ ଇନ୍ଦୁ
କନ୍ଦର୍ପ ସାୟକ କାଟିପକା ଆମ୍ଭ ହୃଦୁଁ ।
ଏହା ଶୁଣି ମହାପ୍ରଭୁ ହେଲେ ହସ ହସ
ଆତ୍ମା ଚାଲିବା ମାର୍ଗକୁ ଦେଖନ୍ତି ଲକ୍ଷ୍ମୀଶ ।
ଆତ୍ମା ଚଲିବା ସୂତ୍ରକୁ ପାରନ୍ତି ଯେ ଚିହ୍ନି
ଚନ୍ଦ୍ର ତୁଲ୍ୟ ଅଟେ ସେହୁ ସଂସାରରେ ଜ୍ଞାନୀ ।
ଆତ୍ମା ଚାଲିବା ସନ୍ଧିକୁ ଜାଣନ୍ତି ଯେ ଜନେ
ତାହାଙ୍କୁ ଚନ୍ଦ୍ର ସମାନେ ଘେନନ୍ତି ସୁଜନେ ।
ଦେଢ଼ଅଢ଼ାଇ ହୋଇଣ ଗଲେ ଆତ୍ମା ଘଟେ
ଏକୋଇସସ୍ର ଛଅଶତ ବଳି ଅଟେ ।
ସବୁରି ହୃଦରେ ଆତ୍ମା ଚାଲେ ମନସୁଖେ
ଏତେକ ପୁଛି କେହୁ ନ ପାରେ ଗୁରୁମୁଖେ ।
ସମସ୍ତ ଆତ୍ମା ହୃଦରେ ଚନ୍ଦ୍ର ଉଦେ ହୁନ୍ତି
ଶୁଣ ଆଗୋ ନାୟିକାଏ କହନ୍ତି ଶ୍ରୀପତି ।
ଷୋଳ ଚନ୍ଦ୍ରସ୍ଥିତି ହୁଏ ଯେଉଁଦିନ ଯହିଁ
ଯେ ସ୍ଥାନମାନ ଯେ ଦେଖାଅନ୍ତି ଭାବଗ୍ରାହୀ ।
ଶ୍ରୀନୃସିଂହ ସ୍ୱାମୀ ସବୁ ସ୍ତିରୀ ହୃଦସ୍ଥାନ
ଷୋଳକଳା ଚନ୍ଦ୍ର ଦେଖାଅଛି ଆତ୍ମଜ୍ଞାନେ ।
କପୋଳ ଶିର ଅଧର କଣ୍ଠ ନେତ୍ର କର୍ଣ୍ଣ
ଉର ନାଭିସ୍ଥାନ ଆଉ ଉରଜ ଜଘନ ।
ଅଙ୍ଗୁଳି ଜାନୁ ଯେ ଗୁଲ୍‌ଫ ପାଦଅଗ୍ରେ ଶଶୀ
କ୍ଷୟ ବୃଦ୍ଧି ହୋଇଣ ସେ ଚାଲେ ହୃଦୁ ଖସି ।
ଶ୍ରୀଆତ୍ମଜ୍ଞାନ ଯେ ଚନ୍ଦ୍ର ଚାଳକଟି ସେହି
ଏହି ରୂପେ ମହାପ୍ରଭୁ ନାୟିକାଙ୍କୁ କହି ।
କରନ୍ତି ଆତ୍ମର ସୂତ୍ର କହି ଜ୍ଞାନ ଉଦେ
ଚିହ୍ନିଣ ସ୍ତିରୀ ସେବିଲେ ପ୍ରଭୁ ପଦ୍ମପାଦେ ।
ଯାହାକୁ ଗୋବିନ୍ଦଙ୍କର ଦୟା ହୋଏ ଜାଣ
ସେ ଲୋକଟି ଚିହ୍ନି ଏକା ପାରେ ବ୍ରହ୍ମଜ୍ଞାନ ।
ଏହି ରୂପେ ଜ୍ଞାନ କହୁଁ ହେଲା ନିଶି ଶେଷ
ସେ ପାଦେ ଶରଣ ବିପ୍ର ପୀତାମ୍ବର ଦାଶ ।
ପାହାନ୍ତି ଅବକାଶରେ ଫିଟିଲା କବାଟ
ଯେ ଯାହାର ମତେ ଗଲେ ଓହ୍ଲାଇଣ ଖଟ ।

ଦେବତାଙ୍କ ଆଳୟରେ ବାଜେ ଯୋଡ଼ାଶଙ୍ଖ
ସୁବାସ ଜଳରେ ଲକ୍ଷ୍ମୀ ପଖାଳି ଶ୍ରୀମୁଖ ।
ନାନାଦି ଦେବ ଅର୍ଚ୍ଚନ ସାରି କମଳିନୀ
ଆସନେ ଯାଇ ବସିଲେ ପ୍ରଭୁ ଚକ୍ରପାଣି ।
ସାନ୍ଧ୍ୟ କରମ ସାରିଲେ ଯହୁଁ ବେନିଭାଇ
ଷାଠିଏ ସହସ୍ର କନ୍ୟା କଲେ ସେବା ଯାଇଁ ।
ପୁତ୍ରବଧୂଙ୍କୁ ଘେନିଣ ଭଗବତୀ ରାଣୀ
ସୁବେଶ କରାଇ ରୋଷ ମନ୍ଦିରେ ପ୍ରମାଣି ।
କରନ୍ତି ଯେ ଲୋକବର୍ଗ ଚର୍ଚ୍ଚା ଅନୁକ୍ଷଣେ
କୃଷ୍ଣବଲ୍ଲଭ ବସିଲେ ଯାଇଁ ସିଂହାସନେ ।
ସୁଜାଣ ମନ୍ତ୍ରୀବର ଯେ କର୍ଣ୍ଣାଟେଶ ରାଜା
ଗରୁଡ଼ ସହିତେ କଲେ ଶ୍ରୀ ନୃସିଂହ ପୂଜା ।
ସଭାରେ ବସି ସର୍ବେ ଯେ ଯାହା ମନେ ପାଞ୍ଚି
ଦାରୁଣ ଦୈତ୍ୟ ଏ କଥା ହୁନ୍ତି ପୁଛାପୁଛି ।
ବୋଲନ୍ତି ଧନ୍ୟ ଅଟଇ ଶେଷଦେବ ଯୁଦ୍ଧ
ତ୍ରୈଲୋକ୍ୟରେ ଅଗୋଚର ଯାର ମୃତ୍ୟୁଭେଦ ।
ତେଡେ ହେଁ ଦୈତ୍ୟକୁ ଜାଣ ତିଳପ୍ରାୟ କରି
ନାସା ବିବରେ ପଶିଣ ଦେଲେ ତାକୁ ମାରି ।
ସବୁରି ମୁଖରେ ପ୍ରଭୁ ଶୁଣିଣ ପ୍ରଶଂସା
ବୋଇଲେ ଏ ତୁମ୍ଭ ଘେନି ଆମ୍ଭର ଭରସା ।
କର୍ଣ୍ଣାଟେଶ୍ୱର ରାଜା ସୁଜାଣ ମନ୍ତ୍ରୀ ଲାଗି
ବଦରିକା ଲୋକେ ମୋର ହୋଇଛନ୍ତି ଭୋଗି ।
ବିନତା ସୁତର କଥା ବହିବି କି ମୁହିଁ
ମହାଘୋର ଯୁଦ୍ଧରେ ଏ ମୋତେ ଥାଏ ବହି ।
କେତେ ହେଁ କ କୋଶ ସତୁ ମୋତେ ଅଛି ସେବି
ତୁମ୍ଭ ଗୁଣ ସେ ଦିନର ପାରେ କେହୁ ଭାବି ।
ଦେଖିଣ ସେ ଭକ୍ତମାନେ ମନେ ହେଲେ ହୃଷ୍ଟ
ବୋଇଲେ ପ୍ରଭୁଙ୍କୁ ଘେନି ଆମ୍ଭର ଯେ ଆଣ୍ଟ ।
କର୍ଣ୍ଣାଟେଶ ପ୍ରାୟ ଲକ୍ଷେ ତାର୍କ୍ଷ୍ୟ ପ୍ରାଣଷାଠି
ସୁଜାଣ ମନ୍ତ୍ରୀର ପ୍ରାୟ ହେଉ କୋଟି କୋଟି ।
ଶେଷଦେବ ପରାୟେକ ରଣେ ଜଣେ ଥିଲେ
ଦାରୁଣ ପ୍ରାୟ କି ଦେବ ଲକ୍ଷେ ଯୁଦ୍ଧ କଲେ ।
ନୃସିଂହ ପ୍ରଭୁଙ୍କ କୃପାବଶୁଁ ଆମ୍ଭେ ପୁଣ
ମୁରକୁ ଚିତ୍ତେ ଆଉ ନ ଡରୁ କେବେ ଜାଣ ।
ସେ କଥା ଶୁଣିଣ ପ୍ରଭୁ ମନେ ହୋଇ ତୁନି
ଦକ୍ଷିଣେ ମୁଖ କରିଣ ଚାହିଁଣ ତକ୍ଷଣି ।
ହୃଦୟରେ ତାପ ବହି ଦନ୍ତପନ୍ତି ଭିଡ଼ି
ମୁର ଦଇତ୍ୟ ନଗ୍ରକୁ ଚାହିଁ ନିଶମୋଡ଼ି ।
ବୋଇଲେ ଆରେ ରେ ମୁର ପୂରିଲା ତୋ କାଳ
ନାତି ଆଦୁ ବଂଶ କ୍ଷୟ କଲୁରେ ଚଣ୍ଡାଳ ।

ତୋର ମୃତ୍ୟୁ ଆଉ ସପ୍ତଦଶ ଦିନ ଅଛି
ଏତେକ ଦିନ ସୁଖେ ତୁ ରହିଥାରେ ବଞ୍ଚି ।
ଶୁଣ ବାବୁ ହେ ନାରଦ କହନ୍ତି ବିଧାତା
ଏଠାରେ ପୂର୍ଣ୍ଣ ଚତୁର୍ଥ ସାଗରର କଥା ।
ପ୍ରଥମୁଁ ପୂର୍ଣ୍ଣ ଚତୁର୍ଥ ସାଗରର ଯାଏ
ପଞ୍ଚମ ସାଗରକୁ କରନ୍ତୁ ଏବେ ଲୟେ ।
ପଞ୍ଚମ ଖଣ୍ଡେ ଆସିବ ଦୈତ୍ୟ ଯୁଦ୍ଧକରି
ନୃସିଂହ ଶତ୍ରୁ ହୋଇଣ ନିଶ୍ଚେଁ ଯିବ ମରି ।
ଶତ୍ରୁ ହେବା ଲୋକଟିକୁ ଅଚ୍ଛେ ମହାପ୍ରଭୁ
ନିବାରଣ କରନ୍ତି ଯେ ତାର ବଂଶସବୁ ।
ଭକତବତ୍ସଳ ହରି ଅଟନ୍ତିଟି ଜାଣ
ଭକତ ଶତ୍ରୁକୁ ପ୍ରଭୁ କରନ୍ତି ନିଧନ ।
ତେଣୁ ତ ଡରନ୍ତି ଶୁଣି ସେ କଥାର ରସ
ଭକ୍ତଙ୍କର ଧନୁଶର ପ୍ରଭୁ ଜଗଦୀଶ ।
ସେ ଧନୁ ନାରାଚ ନାମଶୁଣ ହୋ ନାରଦେ
ଭକ୍ତିଶର ଯୁଦ୍ଧ କହୁଅଛି ପଦେ ପଦେ ।
ଯେତେକ ନାମ ଟନୁରେ ବିଜୀ ଯୋଚିଧର
ସ୍ନେହଶର ନାମମାନ ଶୁଣ ହେତୁକରି ।
ଶ୍ରୀଜଗନ୍ନାଥ ନାମକୁ କରି ଅନୁକୂଳ
ହେବ ଶତ୍ରୁକ୍ଷୟ ରଖିବେ ସେ ଆଦିମୂଳ ।
ଶ୍ରୀମଧୁସୂଦନ ନାମ କରି ପାଶୁପତ
ଶତ୍ରୁକୁ ଜୟ କରିଣ ନାଶିବ ତା ଗୋତ୍ର ।
ମନକୁ ଧନୁ କରିଣ ଆଗ ହୋଇଥିବ
ଗୋବିନ୍ଦ କୀର୍ତ୍ତନ କରି ସଳଖି ବିନ୍ଧିବ ।
ଶତ୍ରୁକୁ ଜୟ କରିଣ ଆସିବ ତକ୍ଷଣେ
ଏହିକଥା ଅଟେ ଧ୍ରୁବ ଶୁଣ ସାଧୁଜନେ ।
ଶ୍ରୀନୃସିଂହ ନାମଗୋଟି ମନେ ସ୍ମରି ରଖ
କରିଥିବା ଫରିଖଣ୍ଡା ହରି ପଦ୍ମମୁଖ ।
ଅଭୟ ପଞ୍ଜରବାନା ଅଙ୍ଗେ ଥିବ ଢାଙ୍କି
ମଥାକୁ ଟୋପର ଜାଣ ଅନନ୍ତ ପଦ୍ମାଖି ।
ଗୁରୁଜନର ବିଷ୍ଣୁ ପଞ୍ଜର ଆଶ୍ରେକରି
ଶ୍ରୀମହାବାହୁ ନଳିକୁ କରେ ଥିବ ଧରି ।
ଶ୍ରୀଚକ୍ରଧର ଚୋଟକୁ ପକାଇବେ ଆଣ୍ଟେ
ଶ୍ରୀନାରାୟଣ ଖୋଜାକୁ ପକା ନଳିବାଟେ ।
ଶ୍ରୀବାସୁଦେବ ନାମ ରଞ୍ଜକ କରି ଠୁଳ
କରିବ ଶ୍ରୀପୀତବାସ ବଳିତା ଅନଳ ।
ଦୈତ୍ୟାରି ଖଣାରେ ଲକ୍ଷ୍ୟ ସଳଖି ବିନ୍ଧିବ
ନାଶଯିବେ ଶତ୍ରୁମାନେ ଏ କଥାଟି ଧ୍ରୁବ ।
ଶ୍ରୀରଘୁନାଥ ନାମକୁ କରି ବ୍ରହ୍ମଶର
ଏ ଶର ଘାତରେ ଶତ୍ରୁ ମରିବେ ତତ୍ପର ।
କେଶବ ନାମ କର ଗିରିଜା ଶର ବାଡ଼ି
ଇକ୍ଷୁ ଦଣ୍ଡ ପ୍ରାୟେ ଦିଏ ଶତ୍ରୁଙ୍କୁ ଏ ପୋଡ଼ି ।
ଅନନ୍ତ ନାମ ଗୋଟିକୁ କରେଁ ଖଣ୍ଡ ଖଣ୍ଡ
ମାଇଲେ ପୁତ୍ରଙ୍କୁ ଛିଣ୍ଡି ପଡ଼ିଯିବ ମୁଣ୍ଡ ।
ଶ୍ରୀଚକ୍ରପାଣି ନାମକୁ କରିଥିବ ଗୁଳି
ଶ୍ରୀନୃସିଂହ ନାମ ଚିନ୍ତି ଫୁଟାଇବ ନଳି ।
ଶ୍ରୀ ନିରାକାର କାଣ୍ଡକୁ ଦେଖି ବେନି ନେତ୍ରେ
ତ୍ରୈଲୋକ୍ୟ କର୍ତ୍ତା ଢାଲକୁ ପକାଇବ ଗାତ୍ରେ ।
ଶ୍ରୀଧର ନାମଗୋଟିକୁ ଗନ୍ତାଇ ଯେ କରି
କଟାରି କରିଣ ଥିବ ମୁରାରି ସୁମରି ।
ଶ୍ରୀପୁରୁଷୋତ୍ତମ ନାମ କରି ଛେଲ କୁନ୍ତ
ଭୁଷିଲେ ଏତେକ ଶରେ ହୋଇ ଶତ୍ରୁ ହେବ ।
ପରମେଶ୍ୱର ନାମକୁ କର ବଡ଼ ଦଣ୍ଡ
ପେଷିଦେଲା ମାତ୍ରେ ଶତ୍ରୁ ହେବ ଖଣ୍ଡ ଖଣ୍ଡ ।
ଶ୍ରୀକୃଷ୍ଣ ନାମ ଗୋଟିକୁ କରି ବ୍ରହ୍ମଶକ୍ତି
ଶତ୍ରୁର ବୁକୁ ଯେ ପୋଡୁଥିବ ଦିବାରାତି ।
ଏହି ରୂପେ ବିଷ୍ଣୁଶର ଥିବ ଯା ହୃଦଗତେ
ତାହାକୁ ଶତ୍ରୁ ଲାଗି କି କରିପାରେ ନିତ୍ୟେ ।
ଏଣୁ ଭକ୍ତେ ଯେ ଶତ୍ରୁକୁ ଚିତ୍ତେ ନ ଡରନ୍ତି
ଶୁଣ ହେ ନାରଦ ବାବୁ ବିଧାତା କହନ୍ତି ।
ଚତୁର୍ଥ ସାଗର କଥା ଆସି ହେଲା ପୂର୍ଣ୍ଣ
ପ୍ରଥମ ଖଣ୍ଡକୁ ଏବେ କରିବି ଲିଖନ ।
ବିପ୍ର ପୀତାମ୍ବର ଦାସ ଅଜ୍ଞ ବାଳମତି
ଶ୍ରୀହରି ରାମକୃଷ୍ଣ ନ ପାରେ ଭଜି ନିତି ।
ହରିବୋଲିଲେକ ମୋତେ ଗିରିବସେ ମାଡ଼ି
ରାମ ବୋଇଲେ ଉଠିଣ ପଳାଏ ମୁଁ ଛାଡ଼ି ।
ଶ୍ରୀକୃଷ୍ଣ ବୋଇଲେ ମୁହିଁ କର୍ଣ୍ଣେ ଦିଏ ତୁଳା
କେ ଅବା ପଢ଼ିଲେ ନାମ ହୁଏ ମୁଁ ବାତୁଳା ।
ଏଣେ ପଣ୍ଡିତ ଜଣେ ମୁଁ କଳିଯୁଗେ ଅଛି
ଏଥକୁ ସୁଜନେ ନ ଘେନ ଦୋଷ କିଛି ।
ପଞ୍ଚମ ସାଗର ଏବେ କରିବି ଲିଖନ
ଏଥକୁ କୃପା କରିବେ ମୋତେ ସାଧୁଜନ ।
ପ୍ରଭୁ ଜଗନ୍ନାଥ ମୋତେ ଅନୁଗ୍ରହ କର
ଯେପରି ସମ୍ପୂର୍ଣ୍ଣ ହେବ ପଞ୍ଚମ ସାଗର ।

**ଇତି ଶ୍ରୀ ନୃସିଂହ ପୁରାଣ ଚତୁର୍ଥ ସାଗର**

**ସମାପ୍ତ**

ବିପ୍ର ପୀତାମ୍ବର ଦାସଙ୍କ ବିରଚିତ

# ନୃସିଂହ ପୁରାଣ

## ପଞ୍ଚମ ସାଗର

(ନୂତନ ମୁଦ୍ରଣ)






: ପ୍ରକାଶକ/ପ୍ରାପ୍ତିସ୍ଥାନ :

**ଧର୍ମଗ୍ରନ୍ଥ ଷ୍ଟୋର୍**

ପ୍ରତିଷ୍ଠାତା : ବିଦ୍ୟାଧର ସାହୁ

ଅଲିଶାବଜାର, କଟକ-୨  ଫୋନ୍ : ୨୫୦୮୨୯୬

www.dharmagranthastore.com

ମୂଲ୍ୟ : ପଇଁତିରିଶି ଟଙ୍କା ମାତ୍ର

# ସୂଚୀପତ୍ର



ସୂଚିପତ୍ର ସମାପ୍ତ

# ନୃସିଂହ ପୁରାଣ

# ପଞ୍ଚମ ସାଗର

ଶୁକ୍ଳାମ୍ବରଧରଂ ବିଷ୍ଣୁଂ ଶଶିବର୍ଣ୍ଣଂ ଚତୁର୍ଭୁଜଂ ।
ପ୍ରସନ୍ନବଦନଂ ଧ୍ୟାୟେତ୍ ସର୍ବବିଘ୍ନୋପଶାନ୍ତୟେ ।୧।
ନାରାୟଣଂ ନମସ୍କୃତ୍ୟଂ ନରଂ ଚୈବ ନରୋତ୍ତମଂ ।
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋଜୟମୁଦୀରୟେତ୍ ।୨।

ବସୁଦେବସୁତଂ ଦେବଂ କଂସ ଚାଣୁରମର୍ଦ୍ଦନଂ
ଦେବକୀ ପରମାନନ୍ଦଂ କୃଷ୍ଣଂ ବନ୍ଦେ ଜଗଦ୍‌ଗୁରୁଂ । ୩ ।
ମୂକଂ କରୋତି ବାଚାଳଂ ପଙ୍ଗୁଂ ଲଙ୍ଘୟତେ ଗିରିଂ ।
ଯତ୍କୃପା ତମହଂ ବନ୍ଦେ ପରମାନନ୍ଦ ମାଧବଂ । ୪ ।

ଯଂ ବ୍ରହ୍ମାବରୁଣେନ୍ଦ୍ର ରୁଦ୍ରମରୁତସ୍ତୁନ୍ୱନ୍ତି ଦିବେସ୍ତବୈ-
ର୍ବେଦୈଃସାଙ୍ଗପଦକ୍ରମୋପନିଷଦୈର୍ଗାୟନ୍ତି ଯଂ ସାମଗାଃ ।
ଧ୍ୟାନାବସ୍ଥିତ ତଦ୍‌ଗତେନ ମନସା ପଶ୍ୟନ୍ତି ଯଂ ଯୋଗିନୋ,
ଯସ୍ୟାନ୍ତଂ ନ ବିଦୁଃ ସୁରାସୁରଗଣା ଦେବାୟ ତସ୍ମୈ ନମଃ ।।

## ବନ୍ଦନା

ଜୟ ଜୟ କମଳାର ବର ପୀତବାସ
ଜୟ ଜୟ କମଳାର ବର ହୃଷୀକେଶ ।
ଜୟ ଜୟ କମଳାର ବର ପଦ୍ମନାଭ
ଜୟ ଜୟ କମଳାର ବର ବାସୁଦେବ ।
ଜୟ ଶ୍ରୀ ଲକ୍ଷ୍ମୀରମଣ ଜଗଜ୍ଜନବାସୀ
ଗଉରବର୍ଣ୍ଣ ଶ୍ରୀମୁଖ ଶରଚ୍ଚନ୍ଦ୍ର ଦିଶି ।
କମଳନେତ୍ରେ ଦିଶେ କି ଜାଣି ଚନ୍ଦ୍ର ସୂର୍ଯ୍ୟ
ସୁନ୍ଦର ଅଧର ଦିଶେ ଶୁକ୍ଳାମ୍ବର ତେଜ ।
ପ୍ରଚଣ୍ଡ ଭାବକୁ ଜିଣି ଦିଶଇ ସୁରେଖ
ସୁସଞ୍ଚ ଶୋଭାବନ ଯେ କପାଳ ତିଳକ ।
ମଳୟ ବସନ୍ତ ପ୍ରାୟ ବହେ ନାସାବାତ
ଯେ ଶ୍ରୀମୁଖ ଦେଖି ଭୃତ୍ୟେ ହୋନ୍ତି ପୁଲକିତ ।
ବିପ୍ର ପୀତାମ୍ବର ମୁହିଁ ସଦା ପ୍ରଭୁଙ୍କର
ଶ୍ରୀନୃସିଂହ ପିତା ଲକ୍ଷ୍ମୀ ଜନନୀ ମୋହର ।
ବନ୍ଦଇ କମଳା ମାଗୋ ବିଷ୍ଣୁ ପାଟରାଣୀ
ସକଳ ବ୍ରହ୍ମାଣ୍ଡର ତୁ ଅଟୁ ଯେ କାରେଣୀ ।
ଆନନ୍ଦ ଲକ୍ଷଣ ଘେନି ଲକ୍ଷ୍ମୀ ତୋର ନାମ
ସମସ୍ତଙ୍କ ଉପରେ ତୁ ବୋଲାଉ ଉତ୍ତମ ।
ଇନ୍ଦୀବର ହାର ସଦା ବକ୍ଷସ୍ଥଳେ ବହୁ
ଲୋକଙ୍କୁ ପାଳିଣ ଲୋକମାତା ଯେ ବୋଲାଉ
ଭୃଗୁ କୋଳେ ଉପୁଜିଣ ବୋଲାଉ ଭାର୍ଗବୀ
ବୈକୁଣ୍ଠେ ନିବାସ ବୋଲି ନାମ ତୋ ବୈଷ୍ଣବୀ
ନୃସିଂହଙ୍କୁ ରମନ୍ତେ ତୋ ନାମ ହେଲା ରମା
ଏଣୁ ତୋର ଗୁଣ ଲୟ ବୁଝିଲେକ ବ୍ରହ୍ମା ।
ତୁହି ଅଟୁ ମହାଲକ୍ଷ୍ମୀ ତୁହି ଦୁର୍ଗା ଅଟୁ
ତୁହି ପୁଣି ପୁରୁଷେକ ସ୍ତିରୀ ହୋଇ ଖଟୁ ।
ଶିବଙ୍କର ଘରେ ପୁଣି ଭବାନୀ ବୋଲାଉ
ବିଧାତାର ପ୍ରିୟା ହୋଇ ସାବିତ୍ରୀ କୁହାଉ ।
ଇନ୍ଦ୍ର ଘରେ ଆଗୋ ରମା ବୋଲାଉ ତୁ ଶଚୀ
ତୋତେ ନ ସେବି ଲୋକ ନ ପାରେ କାଳବଞ୍ଚି
ଏଣୁ ତୁ ପଦ୍ମାଳୟା ଗୋ ପରଲୋକ ବନ୍ଧୁ
ଯାବତ ପ୍ରାଣୀଙ୍କର ତୁ ଅଟୁ ପୂର୍ଣ୍ଣଇନ୍ଦୁ ।
ବେଦବିଦ୍ୟାଯାକରେ ତୁ ବୋଲାଉ ଯେ ଭ୍ରାନ୍ତ
ତୁହି ଯାହାକୁ ଚାହୁଁ ସେ ହୁଅଇ ଶ୍ରୀମନ୍ତ ।
ତୁ ମହା ଚଞ୍ଚଳ ମାଗୋ ଦେବୀ ଶିରୋମଣି
ଚତୁର୍ଦ୍ଦଶ ଭୁବନରେ ତୁହି ଠାକୁରାଣୀ ।

ଜୟ ତୁ କମଳା ମାଗୋ କମଳ ନିବାସୀ
ମନ କଲେ ବ୍ରହ୍ମାଣ୍ଡ ତୁ କ୍ଷଣେ ପାରୁ ଶୋଷି ।
କମଳ ଶିରେ ତୋହର ଶୋହେ ନିରନ୍ତର
ଲୋଳଇ ତୋ ହୃଦେ ମାଗୋ ଗଜ ମୋତିହାର ।
ବାହୁରେ ହୀରାର ତାଡ଼ କରେ ରତ୍ନଚୁଡ଼ୀ
କଟିଦେଶେ ସୁନାସୂତା ପାଦେ ବଳାଯୋଡ଼ି ।
ଏକାକ୍ଷରୀ ଅଟୁ ତୁହି ଭୁବନ ଈଶ୍ୱରୀ
ପ୍ରସନ୍ନ ହୁଅ ଗୋ ମାତ ମୋତେ ଦୟା କରି ।
କଷ୍ଟିଙ୍କର କଷ୍ଟ ମାଗୋ ତୁହି ପାରୁ ବହି
ତୋ ଆଜ୍ଞାକୁ ଲଙ୍ଘିପାରେ କେହୁ ଦେହ ଦହି ।
ବିପ୍ର ପୀତାମ୍ବର ମୁଁ ଯେ ତୋହର ସେବକ
କେମ୍ନେ ପୁରାଣ ଲେଖିବି ଭାବି ପଦଶ୍ଲୋକ ।
ତୋ ଅନୁରାଗ ନୋହିଲେ ନ ପାରେ ମୁଁ କହି
ପର୍ବତ ପ୍ରାୟ ପଦକ ଗରୁ ଲାଗୁଥାଇ ।
ତୋହ ଆହାଲାଦୁ ଇନ୍ଦ୍ର ହେଲା ସିନା ଏଡ଼େ
ଆଉ ଛାର କଥା ତୋତେ ଅଟଇ ବା କେଡ଼େ ।
ତୋ କରୁଣାରୁ ସଂସାର ସିନା ଖେଳଘର
ହୁଳହୁଳି ଶବଦରେ ପୂର୍ଣ୍ଣ ହୋଏ ପୁର ।
ତୋହର କରୁଣା ହେତୁ ସବୁ ପରିପୂର୍ଣ୍ଣ
ଜନ୍ମ ମରଣ ବିଭା ତୋ ହେତୁ ପରିପୂର୍ଣ୍ଣ ।
ଦୁର୍ଲ୍ଲଭ ମାନବ ଜନ୍ମ ଏ ସଂସାରେ ଦେଉ
ଶ୍ରୀ ନୃସିଂହ ଆଶ୍ରେ କରି ମନେ ସର୍ବ ହେଉ ।
ଅଭୟ ନୃସିଂହ ନାମ ଅଟେ କଳ୍ପଦ୍ରୁମ
ଭାବନ୍ତି ଭକତମାନେ ସଦା ସେହି ନାମ ।
ନୃସିଂହ ରାମ ଲକ୍ଷ୍ମଣ ଭରତ ଶତ୍ରୁଘ୍ନ
ଶ୍ରୀଜଗନ୍ନାଥ ଯେ ପ୍ରଭୁ ଦୟାମୟ ବ୍ରହ୍ମ ।
କଳିଯୁଗକୁ ଅଟନ୍ତି ସେହୁ ଗତି ମୁକ୍ତି
ଦେଉଛନ୍ତି ପଢ଼ି ଲେଖି ଜୀବନ୍ତ ପ୍ରାଣୀକି ।
ଅରକ୍ଷ ଜନେ ରଖନ୍ତି ସେହି ଦୀନବନ୍ଧୁ
ଆରତତ୍ରାଣ ଯେ ପରିପୂର୍ଣ୍ଣ କୃପାସିନ୍ଧୁ ।
ଗୋବିନ୍ଦ ଅଚ୍ୟୁତ ପ୍ରଭୁ ଶ୍ୟାମ ଦାମୋଦର
ଦୟଣା ଭୂଷଣ ହରି ପଦ୍ମ ଚକ୍ରଧର ।
ଦୟାଳୁ ଶ୍ରୀ ଦୀନବନ୍ଧୁ ଦୁରିତ ବିନାଶ
ମୁରାରି ମାଧବ ଦେବ ଦେବ ପୀତବାସ ।
କୃପାଳୁ ଭକ୍ତରକ୍ଷକ ପ୍ରଭୁ ଜଗନ୍ନାଥ
ନ ରଖିଲେ ଭାସିଯିବି ନାହିଁ ପୁରୁଷାର୍ଥ ।
ବିନତି ହୋଇ ବନ୍ଦଇ ପ୍ରଭୁ ଲମ୍ବୋଦର
ପାଶ ଅଙ୍କୁଶ ଶୋହଇ ବେନିକରେ ତୋର ।
ଅଭୟ ବରଦ ତୁମ୍ଭେ ଯାଚି ଦିଅ ବର
ଭକ୍ଷୁ ତୁ ଅମୃତ ନିତ୍ୟ ଅକ୍ଷମାଳା ତୋର ।

ତ୍ରିଲୋଚନ କୁମର ତୁ ମୂଷିକ ବାହନ
କ୍ଷଣକେ ଜଗତ ଭ୍ରମିପାରୁ ଗଜାନନ ।
ଗତି ଯେ ଚଞ୍ଚଳ ମନ ନିଶ୍ଚଳ ଯେ ଅତି
ଦିଅ ବର ବିଦ୍ୟା ମୂର୍ଖ କରେ ଯେହ୍ନୁ ସ୍ତୁତି ।
ଅଜ୍ଞାନ ଅଧମ ନରେ ଦିଅ ତୁମ୍ଭେ ଜ୍ଞାନ
ଲଭି ସେହି ଜ୍ଞାନ ନରେ ହୁଅନ୍ତି ବିଦ୍ୱାନ ।
ବିଶ୍ୱମୂର୍ତ୍ତି ଭୟଙ୍କର ତବ ଗଣନାଥ
ଏଣୁ ମାଗୁଅଛି ବର ବିଦ୍ୟା ଦିଅ ନାଥ ।
ସମସ୍ତ ଦେବଙ୍କୁ ମୁହିଁ କରୁଛି ବନ୍ଦନା
ଜୟ ଜୟ ଶାରଦା ଗୋ ବନ୍ଦଇ ମୁଁ ସିନା ।
ତୁ ମହାମାୟା ଗୋ ଯେବେ ହୋଇବୁ ପ୍ରସନ୍ନ
ଅଲୋକ୍ୟ ଅଦୃଶ୍ୟ ପଦ କରିବି ଲେଖନ ।
ଅକ୍ଷର ଗୋଟିକ ବ୍ରହ୍ମା ବେଦରୁ ଉତ୍ପତ୍ତି
ବେଦରେ ସର୍ବ ବ୍ରହ୍ମାଣ୍ଡ ହୋଇଅଛି ସ୍ଥିତି ।
ବ୍ରହ୍ମଜ୍ଞାନ ବେଦମନ୍ତ୍ର ସବୁ ଏକାକ୍ଷରୁ
କାହାର କର୍ତ୍ତବ୍ୟ ନୁହେ ମନେ ଲେଖକରୁ ।
ଶାରଦା ଦେବୀ ପ୍ରସନ୍ନ ନ ହୋଇବ ଯେବେ
ମୁହିଁ ଛାର ଲେଖି ଏହା ପାରିବି କି ତେବେ ।
ଏଣୁ ଶ୍ରୀଶାରଦାଙ୍କୁ ମୁଁ ବନ୍ଦନା କରଇ
ଏ ପଞ୍ଚମ ରତ୍ନାକର ଆଦ୍ୟରୁ ଲେଖଇ ।
ଜୟ ଜୟ ଶାରଦା ଗୋ ଦେବୀ ଭଗବତୀ
ବିମଳା ଅଭୟା ମାଗୋ ଲକ୍ଷ୍ମୀ ସରସ୍ୱତୀ ।
ଜୟ ଜୟ ନାରାୟଣୀ ପାର୍ବତୀ କମଳା
ଜୟ ଜୟ ଭଦ୍ରକାଳୀ ବୋଲାଉ ମଙ୍ଗଳା ।
ଜୟ ଜୟ ତ୍ରିପୁରା ଗୋ ଅଟ ମହାମାୟୀ
କାଳିକାଭୈରବୀ ହେଲୁ ଦୈତ୍ୟ ନାଶପାଇଁ ।
ଜୟ ଜୟ ଦୁର୍ଗା ମାଗୋ ଦୁର୍ଗତିତାରିଣୀ
ଦୈତ୍ୟଙ୍କୁ ସଂହାରି ପୃଥ୍ୱୀ ରକ୍ଷାକରୁ ପୁଣି ।
ବିଷ୍ଣୁ ତୋର ମାୟାର ନ ପାଇଛନ୍ତି ଅନ୍ତ
ବସୁମାତା ରୂପେ ତୁ ଯେ ପାଳୁଛୁ ଜଗତ ।
ଅନେକ ରୂପ ତୁ ମାଗୋ ଧରୁ ଅନୁକ୍ଷଣ
ତୁ ଅନାଦି ତୋର ରୂପରେଖ ନାହିଁ ଜାଣ ।
ସ୍ୱର୍ଗପୁରରେ ବୋଲାଉ ତୁହି ଶଚୀ ନାମ
ଅକ୍ଷୟ ଅଜରାମର ତୁ କାଳିକା ସମ ।
ଦେଖାଉ ତୁ ମାତ ଅତି ଅଲୋକିତ ମାୟା
ଘନେ ବିଜୁଳି ସମାନ ଦିଶେ ତୋର କାୟା ।
ଏମନ୍ତ ତୋ ରୂପ କେହି ମୁଖେ ବର୍ଣ୍ଣିପାରେ
ଯେତେକ ସ୍ୱରୂପ ନାମ ଏହି ତ୍ରୈଲୋକ୍ୟରେ ।
ସକଳ ରୂପ ଏକତ୍ର କରି ତୁହି ଜାଣ
ନ ଜାଣିବା ଲୋକେ ଡାକୁଥାନ୍ତି ଭିନ୍ନ ଭିନ୍ନ ।

ଏବେ ଦଇନୀ କରୁଛି ମାଗୋ ତୋର ପାଦେ
ସୁଦୟା କରିଣ କହିଦେବୁ ପଦେ ପଦେ ।
ବିପ୍ର ପୀତାମ୍ବର ଦାଶ ଶ୍ରୀନୃସିଂହ ପାଦେ
ଭାବନା କରି ପୁରାଣ ଲେଖେ ଅପ୍ରମାଦେ ।
ତୁମ୍ଭେ ଏବେ ଦୟା ମୋତେ କର ମହାମାୟେ
ଦିଶୁ ଏହି ଗ୍ରନ୍ଥଯାକ ଲାଗୁଥାଇ ଭୟେ ।
ନୃସିଂହ ପୁରାଣ ଏହି ଅଲୋକିତ ଗ୍ରନ୍ଥ
ସାମବେଦୁଁ ବ୍ୟାସ ଏହା କଲେଟି ସମ୍ମତ ।
ତାହା ମୁଁ ଶୁଣିଣ ସାଧୁଜନ ମୁଖାଗ୍ରତେ
ତେଣୁ ମୁହିଁ ପୁରାଣକୁ ଲେଖଇ ପ୍ରାକୃତେ ।
ଶ୍ରୀନୃସିଂହ ସ୍ୱାମୀଙ୍କର ଚରିତ ଆଖ୍ୟାନ
ତାହା ବାନ୍ଧିବାକୁ ପଦ ବଳିଲା ମୋ ମନ ।
ଆହେ ସାଧୁଜନେ ତୁମ୍ଭ ପାଦେ ନମସ୍କାର
ସୁପଣ୍ଡିତ ଜନମାନେ ଦୋଷ ମୋ ନ ଧର ।
ମୂର୍ଖକୁ ବହୁତ ମୁହିଁ କରୁଛି ଦଇନୀ
ଅଜ୍ଞକ କଥାରେ ସେହୁ କହେ ହୋଇ ଟାଣି ।
ତାହାକୁ ଏକା ଭରସି ନ ପାରେ ମୁଁ କହି
ଦେଖିବା ମାତ୍ରକେ ମନେ ଘୁଞ୍ଚେ ଆଡ଼ହୋଇ ।
ପଣ୍ଡିତଜନେ ଜାଣନ୍ତି ସିନା ବିଦ୍ୟାଶ୍ରମ
କବିଙ୍କ ପ୍ରବନ୍ଧ ଶୁଣି ବୋଲନ୍ତି ଉତ୍ତମ ।
ମୂର୍ଖଲୋକ ବୋଲଇ ଏ କରିଛି କେମନ୍ତେ
ନ ଜାଣନ୍ତି ଜ୍ଞାନ ବୁଝି ଅର୍ଥ ପରିଯନ୍ତେ ।
ଯେ ଯାହାର ହୃଦୟରେ ଯେତେ ଗୁଣ ଥାଇ
ଚଣ୍ଡାଳ ବଖାଣି ସଭାମଧ୍ୟେ ପୂଜା ପାଇ ।
ବିପ୍ରର ଅଭାଗ୍ୟ କର୍ମ ଯାଇ ମନ୍ଦବାଟେ
କରିବ ଆନ କେ ଯାହା ଥାଏ ଭାଲପଟେ ।
ମୋହ କର୍ମେ ଧାତା ହେଲେ ଅଛି ଏହାଲେଖି
ତେଣୁ ପୁରାଣକୁ ଗଲି ଏ ସଂସାରେ ରଖି ।
ଅସତ୍ୟ ବା ସତ୍ୟ ହେଉ ଲେଖିବା ମୋ ସତ୍ୟ
ଯହିଁରେ ବିଷ୍ଣୁଙ୍କ ଆଜ୍ଞା ହୋଇଛି ପ୍ରାପତ ।
ମୋହ ଛାରବଳେ ଏହା କରି ନୁହେ ଗୀତେ
ଶାରଦା କହିବାରୁ ମୁଁ ଲେଖିଲଇଁ ଗ୍ରନ୍ଥେ ।
ଅଛନ୍ତି ମହାପଣ୍ଡିତ ନରେ ବ୍ରହ୍ମାଣ୍ଡରେ
ନ ଗଲେ ପଦ ବିଚାରି ଦେବେ ହୃଦୟରେ ।
ଯେ ଜନ ପୂର୍ବଜନ୍ମରୁ ଆଣିଥାଏ ଯଶ
ତହିଁର ଫଳାଫଳ ସେ ଭୁଞ୍ଜଇ ଅବଶ୍ୟ ।
ମୋହର ଜନ୍ମବାସନା ମୋର ସତ୍ୟଦୀକ୍ଷା
ଗ୍ରନ୍ଥ ଲେଖିକରି କଲି ସଂସାରକୁ ରକ୍ଷା ।
ଶ୍ରୀନୃସିଂହ ଜନ୍ମ ସତ୍ୟଯୁଗର ଏ ଗ୍ରନ୍ଥ
କୋଟିଏ ଗ୍ରନ୍ଥ ବାଛିଣ ଲେଖିଲି କିଞ୍ଚିତ ।
ଏଣୁ ଏ ଗ୍ରନ୍ଥର ପୁଣ୍ୟ ସଂସାରେ ମୋ ରହି
ଯେଣୁ ମୋତେ ଦୟା କଲେ କମଳାର ସାଇଁ ।
ଏଡ଼େ ଲାଭ ଛାଡ଼ି କରିବଇଁ କେଉଁ ଯଶ
ଦେହଅନ୍ତେ ବୈକୁଣ୍ଠରେ ହେବି ବିଷ୍ଣୁଦାସ ।
ଶ୍ରୀନୃସିଂହ ସଙ୍ଗତରେ ରହିବ ମୋ ନାମ
ଭୃତ୍ୟରୂପେ ସଂସାରେ ମୁଁ ପାଇବି ଜନମ ।
ଭକ୍ତହେତୁ ପ୍ରଭୁ ହେବେ ଯୁଗେ ଯୁଗେ ଜନ୍ମ
ଏଣୁ ଯୋନିମାର୍ଗେ ପ୍ରଭୁ ହୁଅନ୍ତି ଉତପନ୍ନ ।
ଭକତବତ୍ସଳ ସ୍ୱାମୀ ଭକ୍ତ ଭାବଗ୍ରାହୀ
ଭକତ ଡାକ ଶୁଣନ୍ତି ସତ୍ୱରପୂଣେ ଥାଇ ।
ଭକ୍ତର କଥା ତୁ ଏବେ ଶୁଣ ପରୀକ୍ଷିତ
ବେଳେ ବେଳେ ଦେହଧରି ଜନ୍ମନ୍ତି ଅଚ୍ୟୁତ ।
ଭକ୍ତ ନିନ୍ଦା କରେ ଯେ ନ ସହି ତାକୁ କ୍ଷଣେ
ଗଞ୍ଜନ୍ତି ଗର୍ବ ତାହାର ଯେହ୍ନେ ଅଗ୍ନିତୃଣେ ।
ଶୁଣିଣ ପରୀକ୍ଷ ରାଜା ବିନୟେ ପୁଚ୍ଛଇ
ବୋଇଲେ କହ ଶୁଣିବା ତେବେ ଭାବ ବହି ।
ଭକତ ଜନଙ୍କୁ ନିନ୍ଦା କରନ୍ତି ଯେ ବଳେ
କିରୂପେ ଗର୍ବ ଗଞ୍ଜନ୍ତି ତାର ଆଦିମୂଳେ ।
ସେ କଥା ମୋତେ କହିବା ହେଉ ଆହେ ଋଷି
ଶୁଣିଣ ତବ ମୁଖରୁ ହେବି ସ୍ୱର୍ଗବାସୀ ।

* * *

## ଭକ୍ତ ମାହାତ୍ମ୍ୟ ଓ ଲକ୍ଷ୍ମୀଙ୍କର ଦର୍ପଦଳନ

ରାଜା ପଚାରନ୍ତେ ହସିକରି ଶୁକବ୍ରହ୍ମା
ବୋଇଲେ କହିବା ତେବେ ଶୁଣ ସେ ମହିମା ।
ନାରଦଙ୍କ ଆଗେ ବ୍ରହ୍ମା କହିଛନ୍ତି ଯାହା
ସେ କଥା ତୁ ସାବଧାନେ ଶୁଣ ନରନାହା ।
ପ୍ରତିଦିନ ପାଞ୍ଚମାଢ଼ ସ୍ୱର୍ଣ୍ଣ କରେ ଧରି
ବ୍ରହ୍ମାଙ୍କୁ ଦେଇ ପୁଚ୍ଛନ୍ତି ଗ୍ରନ୍ଥ ତପଚାରୀ ।
ବିଧାତା ଦକ୍ଷିଣା ପାଇ କହନ୍ତି ଏ ଗ୍ରନ୍ଥ
ଶ୍ରୀନୃସିଂହ ପୁରାଣର ଯେଉଁ ସତ୍ୟ ଅର୍ଥ ।
ନାରଦ କହିଲେ ପିତା କହ ଭକ୍ତିଭାବ
ଭକ୍ତକୁ ଦୟା କରନ୍ତି କେହ୍ନେ ବାସୁଦେବ ।
ଭକତକୁ ନିନ୍ଦା କଲେ ନ ସହନ୍ତି ପୁଣି
କିରୂପେ ତା ନ ସହନ୍ତି କହ କୁଶପାଣି ।
ବିଧାତା ବୋଇଲେ ବାବୁ ଶୁଣ ତେବେ ତାହା
ଗଞ୍ଜିଲେକ ନିଜ ପ୍ରିୟା ଗର୍ବ ଚଉବାହା ।
ସେ ଭକ୍ତର କଥା ଶୁଣ କହିବା ହେ ତୋତେ
ଯହିଁକି ଲକ୍ଷ୍ମୀଙ୍କ ଗର୍ବ ଗଞ୍ଜିଲେ ଅଚ୍ୟୁତେ ।

ସତ୍ୟଯୁଗେ ପୁଣି ଥିଲା ଏକ ବିପ୍ରବର
ବାରାଣସୀ କ୍ଷେତ୍ରରେ ଯେ ଅଟେ ତାର ଘର ।
ଇନ୍ଦ୍ରରୁ ସେ ଆତ୍ମଜ୍ଞାନୀ ଅଟେ ଦ୍ୱିଜ ଶୀଳ
ସମଦରଶୀ ହୋଇ ସେ କାଟେ ଦିନକାଳ ।
ସକଳ ଦିନ ବଞ୍ଚଇ କୁଟୁମ୍ବ ପୋଷଣେ
ବିଷ୍ଣୁଙ୍କର ନାମ ଚିନ୍ତା ନ ଛାଡ଼ଇ କ୍ଷଣେ ।
ଯେଣେ ଗଲେ କୃଷ୍ଣନାମ ବୋଲୁଥାଇ ମୁଖେ
ଗୃହକର୍ମ ବିଷୟକୁ ଚାଳେ ଦୁଃଖ ସୁଖେ ।
ସତ୍ୟବର ବୋଲିଣ ଯେ ଅଟେ ନାମ ତାର
ସତ୍ୟରେ ଚଳଇ ତାର ନାହିଁ ମାୟାଘୋର ।
ଯେତେବେଳେ ଉପଭୋଗ ମିଳେ ଘରେ ଯାହା
ବିଷ୍ଣୁଠାରେ ସମର୍ପଣ କରେ ନିତି ତାହା ।
ଦ୍ୱିତୀୟ ଷଡ଼ଗୁଣରେ ବ୍ରାହ୍ମଣର କର୍ମ
ସବୁ କରୁଥାଇ ବିପ୍ର ହୋଇଣ ନିର୍ମ୍ମମ ।
ସ୍ନାନ ଭୋଜନ ଶୟନ ଧ୍ୟାନ ଗମନରେ
ଶଉଚ ଅଶଉଚାଦି ସଙ୍କେତ ସ୍ଥାନରେ ।
ସବୁବେଳେ ଭଜଇ ଶ୍ରୀଗୋବିନ୍ଦର ନାମ
ଅଚ୍ୟୁତ ଅନାଦି ଆଦିକନ୍ଦ ପରଂବ୍ରହ୍ମ ।
ମାଧବ ମୁରାରି ମଧୁରିପୁ ଶ୍ରୀନିବାସ
ଶ୍ରୀଧର କୃପାଳୁ କୃପାସିନ୍ଧୁ ହୃଷୀକେଶ ।
ପଙ୍କଜ ଲୋଚନ ପରଂବ୍ରହ୍ମ ନିରାକାର
ଶ୍ରୀବତ୍ସ ଶ୍ରୀଶଙ୍ଖ ଚକ୍ରପାଣି ଦାମୋଦର ।
ବାମନ ବରାହ ବିଷ୍ଣୁ ବନମାଳୀ ହରି
ଶ୍ରୀଜଗନ୍ନାଥ ଜଗତଜୀବନ ମୁରାରି ।
ଦୁଃଖୀଙ୍କ ସୋଦର ସେହୁ ଦରିଦ୍ରଙ୍କ ବନ୍ଧୁ
ପତିତପାବନ ଶ୍ରୀକରୁଣାମୟ ସିନ୍ଧୁ ।
ନରହରି ନୃକେଶରୀ ଦେବ ନାରାୟଣ
କେଶବ ଶ୍ରୀକୃଷ୍ଣ ରାମ କମଳାରମଣ ।
ପଦ୍ମମୁଖ ପଦ୍ମନେତ୍ର ଦେବ ପୀତବାସ
ପରମାନନ୍ଦ ଶ୍ରୀପଦ୍ମାସନ ଜଗଦୀଶ ।
ଶ୍ରୀକର ଶ୍ରୀମଧୁସୂଦନ ଶ୍ରୀପଦ୍ମନାଭ
ନମସ୍ତେ କମଳାପତି ନମୋ ବାସୁଦେବ ।
ଶ୍ରୀମୁକୁନ୍ଦ ମୁରରିପୁ ଭକ୍ତ ଭାବଗ୍ରାହୀ
ନମସ୍ତେ ଶ୍ରୀନରସିଂହ ଅନନ୍ତ ତୋ ଦେହୀ ।
ଦୀନବନ୍ଧୁ କୃପାସିନ୍ଧୁ ପ୍ରଭୁ ଦାଶରଥି
ଶ୍ରୀଗୋପୀବଲ୍ଲଭ ଗୋପୀନାଥ ଶିରୀପତି ।
ଶ୍ରୀପୁରୁଷୋତ୍ତମ ଯେ କଉସ୍ତୁଭଧର
ଏ ରୂପରେ ନାମଧ୍ୟାୟି ଭଜେ ବିପ୍ରବର ।
ଶ୍ରୀଗୁରୁ ସାଧୁ ପାଦରେ ସେବେ ନିତି ନିତି
ଦେବତା ବିପ୍ରଙ୍କୁ ପୂଜାକରେ ଦିବା ରାତି ।
ସଗୋତ୍ର ଦୁହିତା ଦାରା ପୁତ୍ର ବନ୍ଧୁଗଣେ
ପରାପର ନାହିଁ କୀଟ ପକ୍ଷୀ ତରୁତୃଣେ ।
ଏମାନଙ୍କୁ ମନରେ ସେ ମଣେ ଏକ କରି
ସବୁରି ହୃଦରେ ଯେଣୁ ବିଜେ ନରହରି ।
ଅଛନ୍ତି ଚଣ୍ଡାଳୁ ବ୍ରହ୍ମଯାଏ ଯେତେ ଲୋକ
ସମସ୍ତଙ୍କୁ ଏ ସଂସାରେ ଘେନେ କରି ଏକ ।
ଏହିରୂପେ ଦିନ ବହିଯାନ୍ତେ ଦିନାକେତେ
ଚତୁର୍ଥକାଳ ତାହାର ହେଲା ଆସି ପ୍ରାନ୍ତେ ।
ଶୁଣ ହୋ ନାରଦ ଏଡ଼େ ଯେ ବିପ୍ରର ଭକ୍ତି
ବୈକୁଣ୍ଠରେ ଥାଇଁ ତାହା ଜାଣିଲେ ଶ୍ରୀପତି ।
ମନରେ ପାଞ୍ଚିଲେ ବିପ୍ର ଅଟେ କେଡ଼େ ଜ୍ଞାନୀ
ମୋ ନାମକୁ ଭଜୁଅଛି ମନେ ହୋଇ ତୁନି ।
ଏହାକୁ କେମନ୍ତେ ମୁହିଁ ନ କରିବି ଦୟା
ସବୁହୁଁ ଏ ଭକ୍ତ ମୋର ଅଟଇ ନିର୍ମାୟା ।
ଆଉ ଏହୁ ଦିନାକେତେ ମଞ୍ଚେ ଭଜୁ ମୋତେ
ଦେହ ଅନ୍ତେ ବୈକୁଣ୍ଠକୁ ଆଣେ ସିନାପ୍ରାନ୍ତେ ।
ଏଥୁଉତ୍ତାରେ ଯେ ବାଣୀ ଶୁଣ ହେ ନାରଦ
ନବଭକ୍ତିରୁ ଭକ୍ତିଏ ବୁଝିବା ସମ୍ବାଦ ।
ଶ୍ରୀ ମହାଲକ୍ଷ୍ମୀ ଯେ ପୁଣି ଗୋବିନ୍ଦର ପାଦେ
ପ୍ରତିଦିନ ସେବୁଥାନ୍ତି ମନର ଆନନ୍ଦେ ।
ଚରଣ ଭକତି ପୂଜାସାରି କମଳିନୀ
ବିଷ୍ଣୁଙ୍କର ହୃଦେ ଯାଇ ବିହରନ୍ତେ ପୁଣି ।
ରଞ୍ଜିଲେ ଶ୍ରୀହରି ପଞ୍ଚମନ ଲୋକମାତ
ମନେ ପାଞ୍ଚେ ମୋଠାରୁ କେ ଅଛି ଆଉ ଭକ୍ତ ।
ସଂସାରଯାକ ଭଜନ୍ତି ମୋର ପାଦତଳେ
ମୁହିଁ ବିହରଇ ହରି ହୃଦୟ-କମଳେ ।
ନବଭକ୍ତି ମଧ୍ୟରୁ ଏ ଭକ୍ତିଏ ଯେ ଲେଖା
ଅନ୍ୟାନ୍ୟ କଥାକୁ ମନେ ନ କରିବ ଶିକ୍ଷା ।
ଯହିଁରେ ଅଛନ୍ତି ମୋତେ ହରି ହୃଦେ ବହି
ବୁଝିଲେ ମୋ ସମାନରେ ଭକ୍ତ ଆଉ ନାହିଁ ।
ଏମନ୍ତେ ବହନ୍ତେ ଲକ୍ଷ୍ମୀ ମନ ମଧ୍ୟେ ଗର୍ବ
ସେ କଥା ଗୋଟି ଜାଣିଲେ ପ୍ରଭୁ ବାସୁଦେବ ।
ମନେ ପାଞ୍ଚିଲେ ଏ ଲକ୍ଷ୍ମୀ ଅଟେ କେଡ଼େ ବାଇ
ସବୁ ଭକ୍ତଙ୍କୁ ମୋହର ନିନ୍ଦେ ଉଚ୍ଚ ହୋଇ ।
ବୁଝିଲେ ଭକ୍ତ ମୋହର ତାହାଠାରୁ ବଡ଼
ଭକ୍ତଲାଗି ହୋଇଛି ମୁଁ ସିନା ଯୋଗାରୂଢ଼ ।
ମୋହର ନାମକୁ ଯେବେ ଭକ୍ତେ ନ ଭଜନ୍ତି
ମୋତେ ହେଲେ ଆଉ କିଏ ସଂସାରେ ଜାଣନ୍ତି
ଏଣୁଟି ଭକ୍ତର ମୁହିଁ ଅଟେ ବନ୍ଧାଦ୍ରବ୍ୟ
ସେ ଯାହା ବୋଲଇ ତାହା କରଇ ମୁଁ ଧ୍ରୁବ ।

କିଙ୍କର ପ୍ରାୟ ହୋଇ ମୁଁ ଚଳେ ତତକ୍ଷଣେ
ଭକ୍ତଙ୍କ କାର୍ଯ୍ୟ କରିଣ ଆସଇ ଆପଣେ ।
ଭକ୍ତଙ୍କ ପାଇଁ ସଂସାର ମୁହିଁ ସିନା କରି
ଭକ୍ତଙ୍କ ପାଇଁ ବହିଛି ଏକା ବସୁନ୍ଧରୀ ।
ଭକ୍ତଙ୍କୁ ପାଳି ଦୁଷ୍ଟଙ୍କୁ ମୁହିଁ ବିନାଶଇ
ଭକ୍ତ ହିଂସ୍ରକ ଲୋକଙ୍କୁ ପୃଥ୍ୱୀ ନ ସହଇ ।
ଲକ୍ଷ୍ମୀର ମନ ବିଡ଼ିବା କାଲି ତେବେ ଭଲେ
ଏମନ୍ତ ପାଞ୍ଚି ଅନନ୍ତ ଶଯ୍ୟା ହରି କଲେ ।
ପ୍ରଭାତ ହୁଅନ୍ତେ ପୁଣି ଶଙ୍ଖନାଦ ସ୍ଫୁରି
ଉଠିଲେ ତେଜିଣ ପ୍ରଭୁ ନିଦ୍ରା ତେଜ୍ୟାକରି ।
ଲକ୍ଷ୍ମୀଙ୍କ ମୁଁ କାର କଥା ନ ପାଶୋରି ମନେ
ଆସନ ତେଜିଣ ପ୍ରଭୁ ଉଠିଲେ ଯତନେ ।
ଯେ ବିଧିରେ ନିତ୍ୟକର୍ମ ସାରିଲେ ବହନ
କହନ୍ତି ଲକ୍ଷ୍ମୀଙ୍କି କୋଳେ ଧରି ଭଗବାନ ।
ବିଷ୍ଣୁ ବୋଇଲେ ସଖି ଗୋ ଯିବା ଦୁହେଁବୁଲି
ମର୍ତ୍ତ୍ୟପୁର ଭ୍ରମି ଭ୍ରମି ଆସିବା ଯେ ଚାଲି ।
ପୁଣି ବୋଇଲେ ଗରୁଡ଼ପୃଷ୍ଠେ ବସିଥିବା
ତେବେ ଯାଇ ସିନା ସର୍ବ ଜଗତ ଦେଖିବା ।
ଏମନ୍ତ ବୋଲିଣ ପ୍ରଭୁ କରନ୍ତେ ସ୍ମରଣ
ତତ୍‌କ୍ଷଣେ ମିଳିଲେ ଆସି ବିନତା ନନ୍ଦନ ।
ଦେଖିଣ ଗରୁଡ଼ କନ୍ଧେ ବସିଲେ ଶ୍ରୀହରି
ଭ୍ରମନ୍ତେ ଶୋଭାବନ ଯେ ଦିଶେ ତିନିପୁରୀ ।
ଆସୁ ଆସୁ କାଶୀ କ୍ଷେତ୍ରେ ହେଲେ ଉପଗତ
ଯେଉଁଠାରେ ସତ୍ୟବର ଭଜୁଛି ଅଚ୍ୟୁତ ।
ସେହିଠାରେ ଆସି ମିଳିଗଲେ ନାରାୟଣ
ଲକ୍ଷ୍ମୀଙ୍କି ଦେଖାଇ ଦେଲେ ବିପ୍ର ଭକ୍ତି ଗୁଣ ।
ଶୁଣ ହେ ନାରଦ ଏଥୁ ଉତ୍ତାରେ କାହାଣୀ
ଯେବଣ ରୂପେ ସେ ବିପ୍ର ଭଜେ ଚକ୍ରପାଣି ।
ସେହିଦିନ ଜାଣ ନଗ୍ର ବାହାରକୁ ଆସି
ପୁରୀଷ ବିସର୍ଜେ ପଦା ଭୂମିରେଣ ବସି ।
ଚତୁର୍ଥକାଳ ହେବାରୁ ଅତି ବୃଦ୍ଧତନୁ
ସଙ୍କୋଚ ଲଜ୍ଜା ଦୁଇ କି ଛାଡ଼ିଲାଣି ମନୁ ।
ହରି ଏଣେ ମାୟା କରିଛନ୍ତି ଲକ୍ଷ୍ମୀ ପାଇଁ
କୁସ୍ଥାନେ ବସିଣ ସେହୁ ମନେ ହରି ଧାୟି ।
କ୍ଷଣେ ନ ଛାଡ଼ିଣ ନାମ ଡାକେ ଘନ ଘନ
ଶ୍ରୀରାମ ଶ୍ରୀକୃଷ୍ଣ ହରି ପଙ୍କଜ ଲୋଚନ ।
ମାଧବ ମୁରାରି ମଧୁରିପୁ ଶ୍ରୀନିବାସ
ଗୋବିନ୍ଦ ଗୋପାଳ ଗଦାଧର ହୃଷୀକେଶ ।
ଏରୂପେ ନାମ ଭଜଇ ଅଶଉଚେ ବସି
ଚାହିଁଣ ଶ୍ରୀମହାଲକ୍ଷ୍ମୀ ଦେବୀ ମନେ ହସି ।
ମନେ ପାଞ୍ଚିଲେ ଏହା ତ ଦେଖା କେବେନାହିଁ
ଅଶଉଚ ଭାବେ ହରି ନାମ ଗାଉଥାଇ ।
ଏକେ ତ ବ୍ରାହ୍ମଣ ତେଣେ ବୟସରେ ବୃଦ୍ଧ
ମଉନେ ନ ରହି କେଡ଼େ କରୁଛି ଶବଦ ।
ପଣ୍ଡିତ ଲୋକଙ୍କର ତ ନୁହେଁ ଏହି ରୀତି
ସପ୍ତଗୋଟି କଥାରେ ସେ ସମସ୍ୟା ନ ଦ୍ୟନ୍ତି ।
ସ୍ନାହାନ ଜପ ମନ୍ତ୍ର ଯେ ଭୋଜନ ଶୃଙ୍ଗାରେ
ପ୍ରକୃତିସଙ୍ଗ ମୂତ୍ର ଯେ ଦନ୍ତଧାପନରେ ।
ଏ ସାତ କଥାରେ ତ ନ କହେ କେହୁ କଥା
କି ବୋଲିଣ ଏହି ବିପ୍ର ପଢ଼େ ନାମ ବୃଥା ।
ଏମନ୍ତ ବୋଲିଣ ଲକ୍ଷ୍ମୀ ମନେ ବିଚାରନ୍ତେ
ସେ କଥା ଜାଣିଲେ ମହାପ୍ରଭୁ ଅନ୍ତର୍ଗତେ ।
ଲକ୍ଷ୍ମୀଙ୍କି ଘେନିଣ ତହୁଁ ଗଲେ ମହାପ୍ରଭୁ
ସ୍ୱର୍ଗେ ପଶି ଦେଖିଲେ ସେ ବୁଲି ବୁଲି ସବୁ ।
କମଳାଙ୍କ ମନ ପୁଣି ବିଡ଼ିବାର ପାଇଁ
ଲେଉଟି ଅଇଲେ ସେହି ବାଟେ ଭାବଗ୍ରାହୀ ।
ଦେଖିଲେକ ସେହି ବିପ୍ର ବସିଛି ସେଠାର
କମଳାଙ୍କୁ ମାୟା କରିଛନ୍ତି ଦାମୋଦର ।
ମନେ ମନେ ହସି କରି ମିଳିଲେ ତା ପାଶେ
ଦେଖି ବିପ୍ରଙ୍କୁ କହିଲେ ଶିରୀ ମହାରୋଷେ ।
ବୋଇଲେ ପାପିଷ୍ଠ ଆରେ ବିପ୍ରଜନ୍ମ ହୋଇ
ଚଣ୍ଡାଳୁ ଅଧିକତର ଅଟେ ତୋର ଦେହୀ ।
ବସିଛୁ ଦିନଯାକ ନ ପାଇ ମନେ ଲାଜ
ଅଶୌଚେ କି ବୋଲି ଭଜୁଅଛି ଦେବରାଜ ।
ବିପ୍ର ହୋଇଣ ତୋହର କିଛି ନାହିଁ ନିଷ୍ଠା
ମୋହର ସ୍ୱାମୀ ନାମକୁ କରୁ ଅପ୍ରତିଷ୍ଠା ।
କାହିଁ ଦେଖିନାହୁଁ ଏଡ଼େ ବିଡ଼ମ୍ବନ କର୍ମ
ମଳ ମୂତ୍ର କରୁ କରୁ ଭଜୁଛୁ ଯେ ନାମ ।
ଶଉଚ ହୋଇଣ ସିନା ବିଷ୍ଣୁ ନାମ ଧରି
ତେବେ ସେ ପ୍ରାଣୀ ସଂସାରୁ ଯାଏ ସିନା ତରି ।
ନର୍କକୁଣ୍ଡରେ ବସିଛୁ ଆବୋରି ନରକ
ଅଶୁଦ୍ଧ କରୁଛୁ ମୋର ସ୍ୱାମୀ ନାମଯାକ ।
ସଂସାରଜନକୁ ଲଜ୍ଜା ନାହିଁ ତୋର ମୁଖେ
ଅଶୁଚି ହୋଇ ଭଜୁକି ବୋଲି ପୁଣ୍ୟଶ୍ଳୋକେ ।
ଜାଣିଥିବା ଲୋକର ତ ନୁହେଁ ଏହୁ ଗତି
ବୟସେ ଅଧିକ ହୋଇ କରୁଛୁ ଅନୀତି ।
ପ୍ରକୃତି ସକାଶେ ତୋର ଗଲା ଦିନଯାକ
ବ୍ରାହ୍ମଣକୁଳେ ତୋ ଜନ୍ମ ଏଡ଼େ ଅବିବେକ ।
ଅନେକ ଝିଙ୍ଗାସି ବୋଇଲେ ଯେ କମଳିନୀ
ଗୋବିନ୍ଦଙ୍କ ମାୟା ବୋଲି ନ ପାରନ୍ତି ଜାଣି ।

ମାୟାଧର ପୁରୁଷ ଯେ ସୃଷ୍ଟି ଅଛି ମୋହି
ବ୍ରହ୍ମା ଇନ୍ଦ୍ର ଶିବଙ୍କୁ ସେ ଭେଳିକି ଲଗାଇ ।
ସେ ମାୟାଧରଙ୍କ ମାୟା କେ ପାରିବ ଜାଣି
ଲକ୍ଷ୍ମୀ ହେତୁ ନ କରିଣ କଲେ କୋପ ପୁଣି ।
ମୃତ୍ତିକା ଖଣ୍ଡେ ଧଇଲେ ଯାଇ ଦେବୀ କରେ
ତାମସରେ ପିଙ୍ଗିଦେଲେ ବ୍ରାହ୍ମଣ ଉପରେ ।
ବିପ୍ରର ଦେହେ ବାଜିଲା ଯାଇ ଟେକାଗୋଟି
ବାଜନ୍ତେଣ ଦ୍ୱିଜବର ପଡ଼େ ମହୀ ଲୋଟି ।
ମୂର୍ଚ୍ଛାଗତେ ପଡ଼ିକରି ହୋଇଲା ନିର୍ଜୀବ
ଯେସନେକ ପ୍ରାଣତ୍ୟାଗେ ଦିଶେ ମୃତ ଶବ ।
ସେହିମତି ଭୂମିପରେ ଅଛି ବିପ୍ର ଢଳି
ତାହା ଦେଖି ମହାଲକ୍ଷ୍ମୀ ମନେ ମନେ ଭାଳି ।
ମନେ ପାଞ୍ଚନ୍ତି କରିବି ଏବେ ମୁହିଁ କିସ
ଟେକା ବାଜି ଅଖଡ଼େ ତ ବିପ୍ର ଗଲା ନାଶ ।
ବ୍ରହ୍ମହତ୍ୟା ଦୋଷ ନାହିଁ କାହାକୁ ଯେ ପାର
ଯହିଁରେ ଲାଗିଲା ଈଶ୍ୱରଙ୍କୁ ଅଗୋଚର ।
ମୋଠାରୁ ଏବେ କିରୂପେ ଛାଡ଼ିବ ଏ ଦୋଷ
ଏତେକ ବୋଲି କହନ୍ତି ଲକ୍ଷ୍ମୀ ବିଷ୍ଣୁ ପାଶ ।
ଏ ହେଲେ କର୍ମଫଳ କି କଲ ବ୍ରହ୍ମରାଶି
ପ୍ରକୃତି ତ୍ୟାଗ କରଇ ପଦାଟାରେ ବସି ।
ବଂଶ ବୁଦା ଉହାଡ଼ରେ ଗୁହା ଉଚକାନ୍ତେ
ତହିଁ ସିନା ଏହି କର୍ମ ଚଳେ ଜଗନ୍ନାଥେ ।
ବ୍ରାହ୍ମଣ ମଲା ଏବେ କି ହେବ କହିବାକୁ
ମୋତେ ନିନ୍ଦା ହୋଇଲେ କି ନ ଲାଗେ ତୁମ୍ଭଙ୍କୁ ।
ଜଣେହେଁ ଦୋଷ କରିଲେ କୁଟୁମ୍ବକୁ ଲାଗେ
ଏ କଥା ଶୁଣିଛି ମୁହିଁ ପୁରାଣ ପ୍ରସଙ୍ଗେ ।
ଭାରିଯା ଦୋଷ କଲେ ତ ଲାଗେ ଗୃହସ୍ଥକୁ
ବାଳକ ଦୋଷ କରିଲେ ଲାଗଇ ବାପକୁ ।
ବଂଶରୁ ଜଣେ ଯଦ୍ୟପି ହୁଏ ଜାଣ ନଷ୍ଟ
ତେବେ ସେହି ବଂଶଯାକ ହୁନ୍ତି କାଳଭ୍ରଷ୍ଟ ।
ଘରେକ ଦୋଷ କରିଲେ ଗ୍ରାମକୁ ଲାଗଇ
ଗ୍ରାମେକ ଦୋଷ କରିଲେ ରାଜ୍ୟ ନାଶ ଯାଇ ।
ରାଜାକୁ ରାଜ୍ୟର ଦୋଷ ଲାଗେ ସିନା ପୁଣି
ପୁରୋହିତ ରାଜା ଦୋଷଯାକ ଯାଏ ଘେନି ।
ଏମନ୍ତ ବୋଲି ଶୁଣିଛି ମୁହିଁ ପୁରାଣରେ
କହ ଏବେ ଜୀଇବ ଏ ବିପ୍ର କି ପ୍ରକାରେ ।
ଶୁଣିଣ ଶ୍ରୀ ନାରାୟଣ କମଳାଙ୍କ ବାଣୀ
ହୃଦଗତେ ବିଚାରନ୍ତି ପ୍ରଭୁ ଚକ୍ରପାଣି ।
ବୋଲନ୍ତି ଯେ କମଳାଙ୍କୁ ବାନ୍ଧେ ମୋରମାୟା
ମୁଁକାର ତେଜି ଭଜିଲେ ଶାନ୍ତି ମାତା ଶ୍ରୀୟା ।
ଭକ୍ତ ନିନ୍ଦାକୁ ବହିଣ କରିଥିଲି ରୋଷ
ଏବେ ଏହି କମଳାଙ୍କୁ କରିବା ସନ୍ତୋଷ ।
ଏମନ୍ତ ପାଞ୍ଚି କହନ୍ତି ହରି ମୃଦୁବାଣୀ
ବୋଲନ୍ତି ଗୋ ସାବଧାନେ ଶୁଣ ପ୍ରାଣମଣି ।
ଆଜ ତୁମ୍ଭେ ଯେଉଁ କର୍ମ କଲ ନ ବିଚାରି
ସେ କଥା କହିବା ଶୁଣ ଏବେ ହେତୁକରି ।
ଯେଉଁକାଳରୁ ସୃଷ୍ଟି ମୁଁ କରଇ ରଚନା
ତୁମ୍ଭେ ଲୋକମାତା ତାହା ଜାଣ ନାହିଁ କିନା ।
ଭକ୍ତର ପାଇଁକି ସିନା କଲଁ ସଂସାର
ଭକ୍ତର ନିମନ୍ତେ ମୁହିଁ ହୁଏ ଅବତାର ।
ଯହିଁ ପାଇଁ ଜନ୍ମଇ ମୁଁ କହେ ପୁଣ ସହି
ନବଧା ଭକ୍ତି ଅଷ୍ଟାଙ୍ଗ ଯୋଗ ତାକୁ ଦେଇ ।
ଏ ନବ ଭକ୍ତିର ନାମ କହିବା ଗୋ ଶୁଣ
ଶ୍ରବଣରେ ଶୁଣ ଏବେ ମୋର କର୍ମ ଗୁଣ ।
କେ ଅବା କୀର୍ତ୍ତନ କରି କାଟୁଥାଇ କାଳ
କେ ଅବା ସ୍ମରଣ କରେ ହୃଦୟ କମଳ ।
କେ ଅବା ପାଦ ସେବନେ ନେଉଥାଏ ଦିନ
କେହୁ ଅବା ପୂଜାବିଧି କରଇ ଅର୍ଚ୍ଚନ ।
କେ ଅବା ସ୍ତୁତି ବନ୍ଦନେ ହରଇ ମୋ ଚିତ୍ତ
କେ ଅବା ଦାସପଣରେ ହୋଇଥାଏ ଭୃତ୍ୟ ।
କେ ଅବା ସଖାଭାବେ ନ ଛାଡ଼େ ମୋତେକ୍ଷଣେ
ଆତ୍ମା ସମର୍ପି ଭଜନ୍ତି କେବା ଜଣେ ଜଣେ ।
ଏରୂପେ ଭକତେ ମୋତେ କରୁଥାନ୍ତି ଚିନ୍ତା
ଜାଣୁ ଜାଣୁ ଏଡ଼େ ଦୋଷ କଲୁ ଲୋକମାତା ।
ଏହି ସତ୍ୟବର ବିପ୍ର ବାଳକାଳୁ ମୋତେ
କୀର୍ତ୍ତନ ଭକତି କରି ସେବେ ଅବିରତେ ।
ଯେଣେହେଁ ଗଲେ ମୋ ନାମ ଭଜୁ ଥାଇ ମୁଖେ
ସ୍ନାନ ଭୋଜନ ଆସନ ଅଶଉଚ ଯାକେ ।
ନାମ ଭଜି ଭଜି ମୋର ନେଇଥାଇ ଦିନ
ହୀରା ନୀଳାରୁ ଅଧିକେ ଦେଇଥାଇ ମନ ।
ପ୍ରକୃତି ତ୍ୟାଗରେ ହେଲେ ନ ଛାଡେ ମୋ ଭାବ
ବ୍ରାହ୍ମଣ ଜନ୍ମକୁ ବହି ବ୍ରହ୍ମ କଲା ଠାବ ।
ପବିତ୍ର ସେ ହେଉ ଅବା ଅପବିତ୍ର ହେଉ
ସବୁ ଅବସ୍ଥାରେ ତାର ଦିନ ପଛେ ଯାଉ ।
ସେ ଯେବେ ଚିନ୍ତଇ ହୃଦେ ପୁଣ୍ଡରୀକାକ୍ଷକୁ
ଅବିରତେ ଭଜୁଥାଇ ଗୋବିନ୍ଦ ନାମକୁ ।
ସେହି ଜନର ଭିତର ବାହାର ଯେ କାୟା
ସବୁବେଳେ ଶୁଚି ତାର ଅଟଇରେ ପ୍ରିୟା ।
ସେ ଲୋକକୁ ଯେଉଁମାନେ କରନ୍ତି ସ୍ମରଣ
ବ୍ରହ୍ମହତ୍ୟା ପାତକ ଯେ ହୁଏ ତାର ନାଶ ।

ଏଣୁ ମୋର ନାମ ଗୋଟି ଅଟଇ ଅଲେଖା
ସହସ୍ର ମୁଖେ ଅନନ୍ତ ପାଇ ନାହିଁ ଲେଖା ।
ଭକତ ଭାବରେ ବିପ୍ର ଭଜୁ ଥାଇ ତୁଣ୍ଡେ
ତୁମ୍ଭେ ନ ଜାଣି ମାଇଲ ତାକୁ ଟେକାଖଣ୍ଡେ ।
ସଂସାର ଜନନୀ ତୁମ୍ଭେ ସର୍ବ ଲୋକମାତ
ଆମ୍ଭଙ୍କୁ ଭଜିଲେ କି ସେ ନୋହେ ତୁମ୍ଭଭୃତ୍ୟ ।
ଭୃତ୍ୟକୁ ଯେବେ ଆମ୍ଭର ହେଲା ଏଡ଼େ ମାନ
କାହିଁକି ସଂସାରେ ଆଉ ଭଜିବେଟି ଜନ ।
ବୋଲିବେ ହରିଙ୍କି ଜାଣ ଯେ ବସିବେ ଭଜି
ଅକ୍ଷକେ ମାରିବେ ଲକ୍ଷ୍ମୀ ତାକୁ ଖୋଜିଖୋଜି ।
ଆରେ ବାବୁ ହରିନାମ କେହି ନ ଧରଟି
ବାରତା ପାଇଲେ ଲକ୍ଷ୍ମୀ ସର୍ବେ ମାରିବେଟି ।
ଏରୂପେ ହୃଦରେ ଭୟକରି ଭକ୍ତମାନେ
ତୁମ୍ଭ ଆମ୍ଭ ନାମ ଆଉ ନ ଭଜିବେ ଦିନେ ।
ଏଣୁକରି କମଳା ଗୋ ମୋର କଥା କର
ବେଗ ହୋଇ ଯାଅ ଏବେ ବ୍ରାହ୍ମଣ ଛାମୁର ।
ମୁଖ ନାସିକା ଆବର କର୍ଣ୍ଣଦ୍ୱାର ଫୁଙ୍କ
ଜୀବରେ ପବନ ମିଶି ଚଳୁ ହୋଇ ଏକ ।
ତେବେ ଯାଇଣ ସେ ଦେହ ସଚେତ ହୋଇବ
ପାଞ୍ଚଇନ୍ଦ୍ରିୟ ଘେନିଣ ଅବା ବିହରିବ ।
ଏରୂପେ କଲେ ଉଠି ବା ପାରେ ବିପ୍ରବର
ଚଳ ବେଗେ କମଳା ଗୋ ବିଳମ୍ବ ନକର ।
ମହାଲକ୍ଷ୍ମୀ ବୋଇଲେ ହେ ଶୁଣ ଭାବଗ୍ରାହୀ
ତୁମ୍ଭଙ୍କୁ ଯେ ଭଜଇ ସେ ଅବଶ୍ୟ ମରଇ ।
ଏ କଥା ଯେବେଟି ମିଛ ଲୋକଙ୍କୁ ପଚାର
ମଲାବେଳେ ଫୁକାରନ୍ତି ଯେଉଁ ନାମ ସାର ।
ଅଟଇ ତୁମ୍ଭର ନାମ ପରା ନାରାୟଣ
ମୃତ୍ୟୁକାଳେ ଧଇଲେ ତା ହୁଅଇ ମରଣ ।
ତୁମ୍ଭଙ୍କୁ ଭଜିଣ ଯେବେ ମଲା ସିନା ସେହୁ
ମୋତେ ସେଠାକୁ ପେଷୁଛ କିମ୍ପା ମହାବାହୁ ।
ମୁଁ ହେଲେ ଏକା ହୋଇ ନ ପାରେ ତହିଁଯାଇ
ଦୁହେଁ ମିଶିଣ ଯିବା ହେ ଚାଲ ସଜ ହୋଇ ।
ଏଣୁକରି ନାରାୟଣ ହସ ହସ ହେଲେ
ସେ ହସ ଦେଖିଣ ଲକ୍ଷ୍ମୀ ଲେଉଟି କହିଲେ ।
ଲକ୍ଷ୍ମୀ ବୋଇଲେ ମୋତେଯେ ପେଷ ସେଠାବକୁ
ସଂସାର ଲୋକେ ଶୁଣି କି ବୋଲିବେ ତୁମ୍ଭଙ୍କୁ ।
ବୋଲିବେ ଶ୍ରୀ ଜଗନ୍ନାଥ ଅଳସୁଆ ଜାତି
ସଙ୍କଟ ପଡ଼ିଲେ ତାଙ୍କ ପତ୍ନୀକି ପେଷନ୍ତି ।
ଏମନ୍ତ ବୋଲନ୍ତେ ଲଜ୍ଜା ହେବ ସିନା ପ୍ରଭୁ
ତୁମ୍ଭେ ଥାଉଁ ଥାଉଁ ଆମ୍ଭେ ତହିଁ କେହ୍ନେ ଯିବୁ ।
ତଥାପିହିଁ ଆପଣ ତ ସବୁ ହୃଦେ ଥାଅ
ଯାବତ ଲୋକଙ୍କ ମନ କ୍ଷଣେ ଚିହ୍ନି ଥାଅ ।
ଏଡ଼େ ଭଳି ପୁରୁଷ ହେ ହୋଇଣ ଆମ୍ଭଙ୍କୁ
ଭୃତ୍ୟଠାକୁ କି ବୋଲିଣ ପେଷ ଭାରିଯାକୁ ।
ଏତେ କହି ମହାଲକ୍ଷ୍ମୀ ଧଇଲେ ସ୍ୱାମୀଙ୍କି
ଚଳିଲେ ସେ ବେନିମୂର୍ତ୍ତି ବିପ୍ରର ତହିଁକି ।
ବ୍ରାହ୍ମଣ ପାଶେ ମିଳିଲେ ଯାଇଁଣ ବହନ
ଲକ୍ଷ୍ମୀଙ୍କି ଯେ ମାୟା କରିଛନ୍ତି ଭଗବାନ ।
ହସ୍ତରେ ଧରିଲେ ଯାଇଁ ବିପ୍ର କର ଟେକି
ଲକ୍ଷ୍ମୀଙ୍କି ବୋଇଲେ ତାର କର୍ଣ୍ଣ ଦିଅ ଫୁଙ୍କି ।
ନୋହିଲେ ଯେ ବ୍ରହ୍ମହତ୍ୟା ଲଭିବ ଗୋତୁମ୍ଭେ
ଏତେବୋଲି ଡରାଇଣ ଦେଲେ ବାସୁଦେବେ ।
ଶୁଣିଣ ଉଠିଲେ ତହୁଁ ଲକ୍ଷ୍ମୀ ଭୟ ପାଇ
ଫୁଙ୍କିଲେ ବିପ୍ରର କର୍ଣ୍ଣଦ୍ୱାରେ ବେଗେ ଯାଇ ।
ସଚେତ ହୋଇଣ ବିପ୍ର ଉଠିଲା ତକ୍ଷଣ
ଦେଖିଲା ଆଗରେ ଛନ୍ତି ଲକ୍ଷ୍ମୀ ନାରାୟଣ ।
ନିଦ୍ରାରୁ ଉଠିଲା ପ୍ରାୟ ବସି ବିପ୍ରବର
ଲକ୍ଷ୍ମୀଙ୍କିତ ଏଣେ ମୋହିଛନ୍ତି ଦାମୋଦର ।
ଗୋବିନ୍ଦ ବୋଇଲେ ସଖି ଗଲା ଏବେ ଦୋଷ
ଆଉ କେଭେ ନ ବହିବ ଭୃତ୍ୟଠାରେ ରୋଷ ।
ନିଷ୍କାମ ମନେ ସିନା ସେ ଭଜୁଥିଲେ ମୋତେ
କୀର୍ତ୍ତନ କରେ ପରମହଂସ ଚିହ୍ନି ନିତ୍ୟେ ।
ଦେଖ ଏବେ ସଖି ଆରେ ବିପ୍ର ନିଜ କାୟେ
ଏତେବୋଲି ଦେଖାଇଣ ଦେଲେ ଦେବରାୟେ
ନବଧା ଭକ୍ତିରେ ମୁଁ ଯେ ବଳାଇଲି ମନ
ତେଣୁକରି ହରି ମୋତେ କଲେଟି ଏସନ ।
ମନେ ମନେ ସଙ୍କୋଚ ଯେ ପାଇ କମଳିନୀ
ବୋଇଲେକ ଧନ୍ୟ ଧନ୍ୟ ଶଙ୍ଖ ଚକ୍ରପାଣି ।
ଭକତ ଜନଙ୍କୁ ଏତେ ସମ୍ମାନ ଯାହାର
ଆପଣା ପ୍ରିୟାକୁ ଦେଖାଇଲେ ଏତେଦୂର ।
ଭକ୍ତଙ୍କୁ ପୁଣି ସୁହୃଦ ଯେତେ ଛନ୍ତିକରି
ଏଣୁ ଭକ୍ତ ସମାନ କେ ନାହିଁ ତିନିପୁରୀ ।
ଆମ୍ଭେ ଲକ୍ଷ୍ମୀବୋଲି ବଡ଼ ହୋଇଲେ କିହେବ
ବୁଝିଲେ ଭକ୍ତ ସରି ନ କଲେ ବାସୁଦେବ ।
ଏଣୁ କରି ସଂସାରରେ ଭକ୍ତ ସିନା ରାଜା
ପ୍ରତ୍ୟକ୍ଷେ ଭକ୍ତର ପାଦଧୂଳି ବିଷ୍ଣୁ ଦ୍ୱିଜା ।
ପୂଜିଲେ କୋଟିଏ ବ୍ରହ୍ମା ଶିବ ଯେତେ ଭକ୍ତି
ଏକା ଭକ୍ତକୁ ପୂଜିଲେ ତେତେ ଫଳ ଶ୍ରୁତି ।
ମୁଁ ଯେ ପାଞ୍ଚୁଥିଲି ମନେ ମୁହିଁ ଏକା ବଡ଼
ତେଣୁକରି ପ୍ରଭୁ ଚଢ଼ି ଅଇଲେ ଗରୁଡ଼ ।

ପୃଥ୍ୱୀଯାକ ବୁଲି ମୋତେ ଭକ୍ତ ଚିହ୍ନାଇଲେ
ଏମନ୍ତ ବୋଲିଣ ଲକ୍ଷ୍ମୀ ସନ୍ତୋଷ ହୋଇଲେ ।
ସ୍ୱାମୀ ସହିତେ ଗରୁଡ଼ ପୃଷ୍ଠେ କଲେ ବିଜେ
ଦେଖଇ ସେ ବିପ୍ର ତାହା ନୟନ ସରୋଜେ ।
ଶ୍ରୀବତ୍ସଲାଞ୍ଛନ ହୃଦେ କଉସ୍ତୁଭ ମଣି
କୋଳେ ଆଉଜି ଅଛନ୍ତି ବସି କମଳିନୀ ।
ବାହୁରେ ବୀର ନେତ ଯେ ବାହୁଟି କଙ୍କଣ
କଟିତଟେ ଘାଗୁଡ଼ି ଯେ ବାଜେ ରୁଣଝୁଣ ।
ରକ୍ତପଦ୍ମ ପ୍ରାୟ ଶୋଭା ପାଦ ବେନି ଦିଶେ
ଚାହିଁଣ ବିପ୍ର ତାହାଙ୍କୁ ନମଇଁ ହରଷେ ।
ହରିଙ୍କି ଦେଖି ଅଧିକ ହରଷ ହୋଇଲା
ହରି ହରି ବୋଲିଣ ସେ ବହୁ ସ୍ତୁତି କଲା ।
ପାଦରେ ଯାଇ ହୁଅନ୍ତେ ପୁଣି ପ୍ରଣମିତ
ଚାହା ଦେଖି ବିପ୍ର କର ଧଇଲେ ଅଚ୍ୟୁତ ।
ବୈକୁଣ୍ଠକୁ ବୋଲି ତାକୁ ନେଲେ ଦାମୋଦର
ସେ ପଦେ ଗୋଡ଼ାଇଅଛି ଦାଶ ପୀତାମ୍ବର ।
ଲକ୍ଷ୍ମୀ ହରିଙ୍କର ବିପ୍ର ସେବକ ହୋଇଲା
ବୈକୁଣ୍ଠପୁରରେ ଛାଡ଼ି ବାହୁଡ଼ି ଅଇଲା ।
ସେ ବ୍ରାହ୍ମଣ ରହିଲା ଶ୍ରୀ ଜଗନ୍ନାଥ ପାଶ
ଶୁଣ ହେ ନାରଦମୁନି କହନ୍ତି ଲୋକେଶ ।
ଭକ୍ତପାଇଁ ଗଞ୍ଜିଲେକ ଲକ୍ଷ୍ମୀ ଗର୍ବ ହରି
ମୃତ୍ୟୁଲୋକମାନେ ସିନା ଭକ୍ତନିନ୍ଦା କରି ।
ସେ ହରି ତ ଭକତକୁ ସର୍ବଦା ସଦୟ
ଜୟ ଜୟ ନାରାୟଣ ପୁରୁଷ ଅବ୍ୟୟ ।
ମୁଁ ନିତ୍ୟ ଭାବିଲି ସ୍ୱାମୀ ଆଜ୍ଞା ମୋତେ ଦିଅ
ତବ ପୟରେ ସଦା ମୋ ମନକୁ ରୁହାଅ ।
ଏହି ଯେ ନୃସିଂହ ଗ୍ରନ୍ଥ ଅଟେ ଆଦିଜନ୍ମ
ମୋତେ ଆଜ୍ଞାଦିଅ ସ୍ୱାମୀ ହୋଇଣ ପ୍ରସନ୍ନ ।
ଅଳଙ୍ଘିତ ସିନ୍ଧୁ ଏହୁ ଅଟେ ପୁଣ ଯାହା
ହସ୍ତରେ ଶୁଖାଇ କେବା ପାରିବଟି ତାହା ।
ଗଙ୍ଗାର ବାଲି ଗଣିବ କେହୁ ସଂଖ୍ୟାକରି
ଅଙ୍ଗୁଳି ଘେନି ମାପିବ କେହୁ ବସୁନ୍ଧରୀ ।
ହାତ ବଢ଼ାଇ ଧରିବ କେହୁ ଭାନୁଚନ୍ଦ୍ର
ନିଶୁଣି ଲଗାଇ ସ୍ୱର୍ଗେ ଦେଖିବ କେ ଇନ୍ଦ୍ର ।
ମୁଁ ଏବେ ମାନବଜାତି ଅଟେ ନରଦେହୀ
ଆଦ୍ୟ ପ୍ରାନ୍ତ କରି ଏହା ପାରିବ କି କହି ।
ଅନନ୍ତ ବାସୁକି ପୁଣି ସହସ୍ରମୁଖେ ଏହା
ଲକ୍ଷକୋଟି ଯୁଗେ କହି ନାହାନ୍ତି ଯେ ତାହା ।
କୋଟିଏ ମୁଖ ଘେନିଣ ଯେଉଁ ବ୍ରହ୍ମା ଥିଲେ
ଏ ଗ୍ରନ୍ଥ ମହିମା ସେହୁ କହି ନ ପାରିଲେ ।
ପାଞ୍ଚଗୋଟି ବଦନରେ ଈଶ୍ୱର ଦେବତା
ସେହି ପୁଣି କହିବାକୁ ନୋହିଲେ ଶକତା ।
ମୁଁ ଛାର ମାନବ ତାହା ପାରିବ କି କହି
ଅଲୋକିତ ଅଗୋଚର ଯେଉଁ ଗ୍ରନ୍ଥ ହୋଇ ।
ସାଧୁଙ୍କ କୃପାରେ ମୁହିଁ ସୁଜନଙ୍କ ବଳେ
ଆଜ୍ଞା ପାଇଣ ଲେଖଇ ସିନା ଭୂମଣ୍ଡଳେ ।
ଚତୁର୍ଥରେ କହିବଇଁ ପଞ୍ଚମର ଭାଷ
ଶ୍ରୀହରି କୃପାରୁ ମୋତେ ହେବ ପଦ ଦୃଶ୍ୟ ।
ଏଥିଉତ୍ତାରୁ ଯେ ବାଣୀ ଶୁଣ ହେ ପଣ୍ଡିତ
ଦାରୁଣର ଅନ୍ତେ ମୁର କଲା କେଉଁ କୃତ୍ୟ ।
ତାହା ପରୀକ୍ଷ ରାଜନ ଶୁକଦେବ ଆଗେ
ପ୍ରାଞ୍ଜଳ କରି ପୁଚ୍ଛନ୍ତି ସବୁ ଶାସ୍ତ୍ରମାର୍ଗେ ।
ପରୀକ୍ଷ ବୋଲଇ ମୁନି କହିବା ଯେ ହେଉ
ଭାଇ ମଲାରୁ ମୁର କି କଥା କଲା ଆଉ ।
ନୃସିଂହପୁରାଣ ନ୍ୟାୟ ହୋଇଲା ଉକତ
ଶୁଣ ଆହେ ସାଧୁଜନେ ଏଠାରୁ ବୃତ୍ତାନ୍ତ ।
ଆପଣ ତ ନିର୍ମାୟା ଯେ ନିର୍ବିକଳ୍ପ ମୁନି
ଶ୍ଳୋକରୁ ପାଦେ କହିଣ ମୂର୍ଖେ କର ଜ୍ଞାନୀ ।
ଯୋଗୀନ୍ଦ୍ର ପୁରୁଷଙ୍କର ପରେ ଅଟ ଶ୍ରେଷ୍ଠ
ଊର୍ଦ୍ଧ୍ୱନାଭି ସୂତାପ୍ରାୟେ ମୁଖରୁ ଯେ ପାଠ ।
ମୁନିମାନଙ୍କ ମଧ୍ୟରେ ଅଟ ତୁମ୍ଭେ ଲେଖା
କ୍ଷଣକେ କହି ପାରିବ ସବୁ ଶାସ୍ତ୍ର ଟୀକା ।
ଭୂତ ଭବିଷ୍ୟତ ଆଦି ବର୍ତ୍ତମାନ ଯେତେ
ଏ ତିନି କାଳର ଜ୍ଞାତା ଅଟ ତୁମ୍ଭେ ନିତ୍ୟେ ।
ଶ୍ରୀ ବ୍ୟାସମୁନିଙ୍କ ପାଦପଦ୍ମେ ମୋର ଆଶ
କହଇ ଅଧମ ବିପ୍ର ପୀତାମ୍ବର ଦାଶ ।

***

## ମୁରାସୁରର ଯୁଦ୍ଧଯାତ୍ରା ଓ ବିଜୟା ରଥର ଜନ୍ମ ବୃତ୍ତାନ୍ତ

ଏଥୁ ଅନନ୍ତରେ ସେହି ପରୀକ୍ଷ ରାଜନ
ଅପୂର୍ବ ବିଷୟମାନ ପଚାରଇ ପୁଣ ।
ନୃସିଂହ ଗ୍ରନ୍ଥ ପଞ୍ଚମ ଖଣ୍ଡର ଯେ ବାଣୀ
ଦାରୁଣ ଅନ୍ତେ ସେ ମୁର କଲା ଯାହା ପୁଣି ।
ଭାଇ ମଲାରୁ ଗର୍ଜିଣ ଉଠେ କୋପ ହୋଇ
ତାହା ଏବେ ବ୍ରହ୍ମଋଷି କହନ୍ତୁ ବୁଝାଇ ।
ଶ୍ରୀନୃସିଂହ ସ୍ୱାମୀଙ୍କର ଯେ ଅପୂର୍ବ ଲୀଳା
ପଢ଼ିବା ଶୁଣିବା ବେନି କୁଳକୁ ଯେ ଭେଳା ।
ନାରଦଙ୍କ ଆଗରେ ଯାହା କହିଲେ ବିଧାତା
ଶୁଣନ୍ତି ତାହା ପରୀକ୍ଷ ରାଜା ହୋଇ ଶ୍ରୋତା ।

ଶୁଣ ଆହେ ମହାରାଜା ଏ ଉତ୍ତାରୁ ବାଣୀ
ନାରଦ ପୁଚ୍ଛନ୍ତି କହୁଛନ୍ତି କୁଶପାଣି ।
ଧାତା ବୋଇଲେ ନିର୍ମଳ ହୋଇ ବାବୁ ଶୁଣ
ବ୍ୟାସଙ୍କର ଉକତ ଏ ନୃସିଂହ ପୁରାଣ ।
ଦୂତମୁଖୁଁ ଶୁଣି ମୁର ହୋଇଗଲା ରୁଷ୍ଟ
ଅବିଳମ୍ବେ ପେଷିଦେଲା ଅଗଣିତ ଥାଟ ।
ମନ୍ତ୍ରୀକି ବୋଇଲା ମୋର ସାଜ ସୈନ୍ୟଦଣ୍ଡ
ଗଲେ ବିପ୍ରମାନଙ୍କର ମୋଡ଼ିବଇଁ ମୁଣ୍ଡ ।
କେଉଁ ବାପ ଯେ ରଖିବ ତାଙ୍କୁ ରଣେ ଆଜ
ସମରେ ମହାକ୍ଷତ୍ରିକି ମାରେ ଛାର ଦ୍ୱିଜ ।
ଏ କଥା ସହି ରହିବ କେହ୍ନେ ମୁରାସୁର
ଅଟନ୍ତି ଯେଉଁ ମୁରର ବଂଶ ବ୍ରହ୍ମାହର ।
ବିଧାତା ଛାଡ଼ିଲାରୁ ଯେ ଅରଜିଲା ମନ୍ଦ
ଆଜି ବୁଝିବା ତାଙ୍କର କିପରି ସେ ଛନ୍ଦ ।
ମୁହିଁ ଜୀବନ୍ମୁତ ଥିଲି ପୁତ୍ରଙ୍କୁ ମୁରୁଛି
ଭାବଇ ଅନ୍ତେ ଜୀବନେ ଆଉ କିସ ଅଛି ।
ଗଲେ ବିପ୍ରକୁଳ ସବୁ ନିପାତିବି ହେଳେ
ବଲ୍ଲଭ ପୁତ୍ରଙ୍କୁ ପେଷିଦେବି ଯମଆଳେ ।
ଏ କଥାଟି ସତ୍ୟ ସତ୍ୟ ହେଲା ମୋର ଜାଣ
ଆଜିଠାରୁ ପକ୍ଷେ ଯାଏ ଆବୋରିବି ରଣ ।
ପନ୍ଦର ଦିନେ ପାରିବି ଯେବେ ମୁହିଁ ମାରି
ଲେଉଟି ରହିବି ପ୍ରଳୟାଏ ଦେହ ଧରି ।
ଶୁଣ ହେ ନାରଦ ମୁର କଲା ଏ ନିୟମ
ବିଷ୍ଣୁ ଯାହା ପାଞ୍ଚୁଥିଲେ ଘଟିଲା ସେମାନ ।
ସେ କଥାଟି ମୁରର ଯେ ଲାଗିଲାଣି ଭୟ
କର୍ମ ଲିଖନ କଥା କେ କରିପାରେ କ୍ଷୟ ।
କହିବା ମୁରର କଥା ଏବେ ତୁମ୍ଭେ ଶୁଣ
ମନ୍ତ୍ରୀକି ଚାହିଁଣ ଆଜ୍ଞାଦେଲା ଏ ପ୍ରମାଣ ।
ରାଜାର ବାକ୍ୟରେ ମନ୍ତ୍ରୀ କହେ କରଯୋଡ଼ି
ଆଗହୁଁ ଏ କଥା ଦେବ ଗଲୁ ତୁହି ହୁଡ଼ି ।
ଆପଣା ଅଧର୍ମପଣେ ହରାଇଲୁ ଶିରୀ
ଶତ୍ରୁକୁ ରଖିଲୁ ଘରେ ଆଣି ଗୁରୁକରି ।
ସେହିଠାରୁ ପୁତ୍ରେ ତୋର ହୋଇଲେ ଯେ କ୍ଷୟ
ଘଡ଼ିକ ମଧ୍ୟେ ବ୍ରାହ୍ମଣ କରିଲେକ ଜୟ ।
ଏ କଥାକୁ ଦେଖୁ ଦେଖୁ ନ କରିଲୁ କିଛି
ସେନାମାନଙ୍କୁ ପେଷିଲୁ ପୁଣି ତହିଁ ବାଛି ।
ବଦରୀ ଦେଶକୁ ଯାଇ ନଇଲେ ବାହୁଡ଼ି
ତୋତେ କି କହିବା ଆମ୍ଭ କର୍ମ ଅଛି ପଡ଼ି ।
ସେହିଦିନୁ ଜାଣିଲିଣି ନୁହନ୍ତି ସେ ଦ୍ୱିଜ
ସାକ୍ଷାତେ ଜନ୍ମିଲେ ବଦରିକେ ଦେବରାଜ ।
ଏ କଥାକୁ ଦେଖୁ ଦେଖୁ ମନେ ନ ପାଞ୍ଚିଲୁ
ପୁନରପି ମୃତ୍ୟୁଠାକୁ ଭାଇକି ପେଷିଲୁ ।
କାହାକୁ କହିବା କଲା କର୍ମ ଏ ତୋହର
ଏଡ଼େ ଭାଗ୍ୟବନ୍ତ ହୋଇ ନ କଲୁ ବିଚାର ।
ଦଣ୍ଡ ସାମ ଦାନ ଭେଦ ସବୁ ପାରୁ ଜାଣି
ଯାଙ୍କୁ ନ ପେଷି ରହିଲୁ ନିଶ୍ଚିନ୍ତରେ ପୁଣି ।
ଗଲେ ସିନା ହରା ଜିଣା ବୁଝିଥାନ୍ତୁ ସତ
ରହେ କି ସର୍ବଜ୍ଞ ଓଝା ଘରେ ଛାର ଭୂତ ।
ଚିହ୍ନିବା ଜନ ଚିହ୍ନଇ ସିନା ସାର ରସ
ପ୍ରକୃତ ବୈଦ୍ୟ ଜାଣଇ ରୋଗୀଙ୍କର କ୍ଳେଶ ।
ମାତା ଜାଣନ୍ତି ପୁତ୍ରର ସିନା କିଏ ବାପ
ମନ ସିନା ଜାଣିଥାଏ ନିଜକୃତ ପାପ ।
ରାଜା ସିନା ଜାଣନ୍ତି ଯେ ମନ୍ତ୍ରୀ ବୁଦ୍ଧିବଳ
ବିଦ୍ୟାବନ୍ତ ଜାଣେ ସିନା ପଣ୍ଡିତ କେବଳ ।
ଗୁରୁ ଜାଣନ୍ତି ଶିଷ୍ୟର କେତେ ଥାଏ ଗୁଣ
ସୌଭାଗ୍ୟ ଲୋକ ଚିହ୍ନନ୍ତି ସ୍ତିରୀଙ୍କ ଲକ୍ଷଣ ।
ମନୁଷ୍ୟ ଲକ୍ଷଣ ଦାନୀପଣରୁ ଯେ ଜାଣି
ବ୍ରାହ୍ମଣଙ୍କର ଆଚାର ଲକ୍ଷଣରୁ ଚିହ୍ନି ।
ଭାରିଯା ଗୁଣ ଚିହ୍ନିବ ପତିକି ସେବିଲେ
ରାଜାର ଗୁଣ ଚିହ୍ନିବ ଦାନଶୀଳ ହେଲେ ।
ଗୁଣିଲୋକକୁ ଚିହ୍ନିବ ବାକ୍ୟାଳାପ କଲେ
ବଚନ ସତ୍ୟ ଚିହ୍ନିବ ମିଥ୍ୟା ନ କହିଲେ ।
ରାଜାଙ୍କର ଗୁଣ ଚିହ୍ନି ପରଜା ପାଳନେ
ସୁସାଧୁଙ୍କୁ ଜାଣିବ ଯେ ସମଦର୍ଶୀ ଗୁଣେ ।
ତୁ ମହା ପଣ୍ଡିତ ସବୁ କଥା ପାରୁ ଚିହ୍ନି
ଏବେ କହୁଛୁ ଅଯୋଗ୍ୟ ଲୋକଙ୍କର ବାଣୀ ।
ଆଗହୁଁ ଯଦ୍ୟପି ସଜ ହୋଇଥାନ୍ତୁ ତୁହି
କାହିଁକି ବ୍ୟର୍ଥେ ତୋ ମରିଥାନ୍ତେ ପୁତ୍ର ଭାଇ ।
ସେନାପତିମାନେ ତୋର ରହିଥାନ୍ତେ ସୁଖେ
ସବୁଙ୍କୁ ମରାଇ ସିନା ସଜ ହେଉ ଦୁଃଖେ ।
ଏବେ ମୁଁ କହୁଛି ତୋତେ ନ କର ସମର
ବିପ୍ର ସଙ୍ଗେ ଲାଗିଲେଟି କେଭେ ନାହିଁ ପାର ।
ଅଳ୍ପକେ ଶାପ ଦିଅନ୍ତି ନ ବିଚାରି ଦୋଷ
କ୍ରୋଧ ହୋଇଣ ବୋଲନ୍ତି କ୍ଷୟ ଯାଉ ବଂଶ ।
ପନ୍ନଗ ପରାୟ ସିନା ବ୍ରାହ୍ମଣଙ୍କ କୋପ
ଭଲ ମନ୍ଦ ନ ବିଚାରି ବୃଥା ଦ୍ୟନ୍ତି ଶାପ ।
ମାର ବା ନ ମାର ନିଶ୍ଚେ ମରିବୁ ପ୍ରମାଣ
ସବୁରୂପେ କାଟଇଟି ବ୍ରାହ୍ମଣଙ୍କ ପଣ ।
ବ୍ରାହ୍ମଣଙ୍କ ସଙ୍ଗେ ଲାଗି ପୋଏ ତୋର ମଲେ
ଭାଇଆଦି ସେନାପତି ସର୍ବେ କ୍ଷୟ ଗଲେ ।

ତୁହି ଶୁଭେ ଥିଲେ ତୋର ସମସ୍ତ ତ ଅଛି
ସେ ବ୍ରାହ୍ମଣଙ୍କୁ ଭେଟିବା ଚାଲ ସର୍ବେ ମୂର୍ଚ୍ଛି
ପ୍ରୀତି ଉପୁଜାଇବା ଯେ ନ ବହିବା ରୋଷ
ତୁହି ଶୁଭେ ଥିଲେ ପଛେ ଉପୁଜିବ ବଂଶ ।
ଏହିରୂପେ ମନ୍ତ୍ରୀବର କହନ୍ତି ଆଶ୍ୱାସି
କର୍ଣ୍ଣ ଡେରି ମୁର ତାହା ଶୁଣୁଥିଲା ବସି ।
ଭେଟ ନାମ ଧରନ୍ତେ ସେ ଉଠେ ଶିର ଝୁଣି
ଚକ୍ଷୁଦୁଇ ତରାଟିଲା ନାସାପୁଡ଼ା ଟାଣି ।
ମନ୍ତ୍ରୀକୁ ବୋଇଲା ତୁରେ ହୋଇଲୁ କି ବାଇ
ସ୍ୱପନ ଦେଖିଲୁ କିରେ ରାତ୍ରି ଏ ନୁହଇ ।
କି ଅବା ଶିଖିଲୁ କାହାଠାରୁ ତୁରେ ମନ୍ତ୍ରୀ
ତେଣୁ ତୁ ଏ କଥା କହୁ ନ କରିଣ ଭୀତି ।
କାହୁଁ ଅବା ଅଉଷଧ ଖାଇ ହେଲୁ ବାଇ
ତେଣୁ ଏ କଥା କହିଲୁ ମୋତେ ଆଜି ତୁହି ।
କିପରି ବୋଇଲୁ କହ ଭେଟିବାକୁ ତାକୁ
ବିକନ୍ତି ଯଜ୍ଞସୂତ୍ର ଯେ କଉଡ଼ି ପଣକୁ ।
ବିପ୍ରଙ୍କୁ ମୁଁ ମଣେ ରଙ୍କ ଛାର ଭିକ୍ଷୁଜାତି
ପୋଷେକ ପାଇଲେ କୋଶେ ଯାଉଥାନ୍ତି ନିତି
ଏପରି ଲୋକକୁ କିହୋ ଭେଟ ମୁରାସୁର
ଏତେ ବୋଲିଣ କ୍ରୋଧରେ କମ୍ପେ ଥରହର ।
ଗଲେ ଗଲା ଭାଇ ପଛେ ଲୋଡ଼ା ତାକୁ କିସ
ତାହାକୁ ଭୁଲି ପାରିବି କଲେ ଶତ୍ରୁ ନାଶ ।
ଏତେ ବୋଲିକରି ବାହୁ ଟେକିଲା ଆକାଶେ
ସ୍ୱର୍ଗପୁରେ ଥାଇକରି କମ୍ପିଲେ ତ୍ରିଦଶେ ।
ରାଜାର କୋପ ଦେଖିଣ ସୈନ୍ୟ ହେଲେ ସଜ
ମନ୍ତ୍ରୀ ମଧ ମଣ୍ଡି ଆଣିଦେଲା ରଥଧ୍ୱଜ ।
ବିଜୟା ନାମେଣ ଅଟେ ସେହୁ ରହୁବର
ଚାରିପାଶେ ପତାକା ଯେ ଉଡେ ଫରହର ।
ବ୍ରହ୍ମଜାତି ହୀରା ଖଞ୍ଜିଅଛି ରଥଯାକେ
କଳାମେଘରେ ବିଜୁଳି ଯେସନେ ଝଟକେ ।
ରହୁବରେ ପ୍ରବାଳର ଶୋହେ ଖମ୍ଭ ଚାରି
ଲାଗିଛି ସ୍ୱର୍ଣ୍ଣ ମାରାଗ ମୁକ୍ତା ହେମ ଜରି ।
ଉପରରେ ପଡ଼ିଅଛି ବୈଦୁର୍ଯ୍ୟର ପଟି
ମାଣିକ୍ୟ ଧାଡ଼ି ଧାଡ଼ି ଯେ ଲମ୍ବେ ଗୋଟିଗୋଟି
ହୀରାକଡ଼ିରେ ମର୍କତ ହୋଇଅଛି ଗୁଛା
ଚଉକତିରେ ଲମ୍ବଇ ପ୍ରବାଳ ମୁକୁତା ।
ଚାହାନ୍ତେ ଝଟକି ଦିଶେ ଦର୍ପଣର ବାଡ଼
ରଥ ତଳରେ ଚମଡ଼ା କୁବିନ୍ଦ ଉହାଡ଼ ।
ତଳୁ ଉପର ପର୍ଯ୍ୟନ୍ତେ ହୋଇଅଛି ଖଞ୍ଜା
ନୀଳା ପାବଛେ ମାଣିକ୍ୟ ଅଛି ପୁଞ୍ଜା ପୁଞ୍ଜା ।
ସୁବର୍ଣ୍ଣ ପିତୁଳି ବସେ ତାର ଚାରିପାଖ
ଝରୋଝୁମ୍ପା ଶବଦରେ ହୀରା ଜକଜକ ।
ନେତର ପତାକା ତହିଁ ଉଡ଼େ ଲକ୍ଷେ ଲକ୍ଷେ
ରକ୍ତପଦ୍ମ ପ୍ରାୟ ଜ୍ୟୋତି ଦିଶଇ ପ୍ରତ୍ୟକ୍ଷେ ।
ସେ ରଥେ ଶୋଭା ପୁଣି ମୁଁ କହିବଇଁ କେତେ
ଶତ ସହସ୍ର ବିସ୍ତାର୍ ବ୍ରହ୍ମାଙ୍କର ହସ୍ତେ ।
ପୁଷ୍ପକ ବିମାନ ସେହି ବିଜୟା ବୋଲାଇ
କୁବେର ରତନଯାକ ଖଞ୍ଜିଅଛି ତହିଁ ।
ଯେତେ ମନାସିବ ତେତେ ଦୂରେ ଯାଏ ଚଳି
ଅଲଭ୍ୟରେ ମୁରକୁ ଏ ରଥ ଅଛି ମିଳି ।
ଧନ୍ୟ ଏହି ସଦାଶିବ ଦେଇଛନ୍ତି ଯାନ
ଆନକୁ ମିଳନ୍ତା କାହିଁ କଲେ କୋଟିପୁଣ୍ୟ ।
ନାରଦ ବୋଇଲେ ତେବେ ଶୁଣ କୁଶପାଣି
ଈଶ୍ୱର କାହୁଁ ଦେଲେ ସେ ରଥଗୋଟି ଆଣି ।
ଆପଣ ତ ପ୍ରତ୍ୟକ୍ଷରେ ଅଟ ମହାଜ୍ଞାତା
କହ ଏ ରଥର କଥା ଶୁଣିବା ଏ ବାର୍ତ୍ତା ।
ବିଧାତା ବୋଇଲେ ତେବେ ଶୁଣ ସେ ବୃତ୍ତାନ୍ତ
ଯେକାଳେ କଶ୍ୟପ କଲେ ପବନକୁ ଜାତ ।
ଆମ୍ଭର ଛାମୁରେ ଆଣି ସମର୍ପିଲେ ତାକୁ
ବୋଇଲେ ଯାନ ଗୋଟିଏ ଦିଅ ପବନକୁ ।
ତାହା ଶୁଣି ବସିଲୁ ଯେ ଆମ୍ଭେ କରି ଯାଗ
ଗାୟତ୍ରୀମନ୍ତ୍ର ପଢ଼ିଣ ଦେଲୁ ହବିର୍ଭାଗ ।
ଯେକାଳେ ଲକ୍ଷେ ପୂରିଲା ସେ ମନ୍ତର ଯାଇ
ଜନ୍ମିଲା ଏ ଯାନଗୋଟି ପ୍ରତାପୀ ସେ ହୋଇ ।
ସେ ରଥଗୋଟି ଯେ ଆମ୍ଭେ ପବନକୁ ଦେଲୁ
ଯାଗ ସମାପ୍ତ କରିଣ ଗୃହେ ଚଳିଗଲୁ ।
ସେହିଦିନୁ ସେ ରଥରେ ଚଢ଼ିଲା ମରୁତ
ନିମିଷକେ ରଥବର ଚଳଇ ଦିଗନ୍ତ ।
ପବନଠାରୁ ବେଗ ସେ ଚଳଇ ତୁରିତ
ନିମିଷକରେ ବୁଲିଣ ଆସଇ ଜଗତ ।
ଅଣଚାଶ ବଳ ସେହୁ ବିକାଶଇ ରଥେ
କ୍ଷଣକେ ବୁଲଇ ସେହୁ ତ୍ରିଭୁବନ ନିତ୍ୟେ ।
ପବନର ସବୁଦିଗ ହେଲେ ବଶବର୍ତ୍ତୀ
ବ୍ରହ୍ମା ବିଷ୍ଣୁଙ୍କର ମୂଳେ ଯେତେକ ଅଛନ୍ତି ।
ପବନ ଘେନିଣ ଜୀବ ସବୁଦେହେ ବହେ
ତେତିଶକୋଟି ଦେବତା କୀଟୁଁ ବ୍ରହ୍ମ ଯାଏ ।
ପବନ ଘେନିଣ ଜୀବ ସବୁଦେହେ ସ୍ଥିତି
ହକାର ପ୍ରକାର ମାର୍ଗେ ପ୍ରବର୍ତ୍ତଇ ମୂର୍ତ୍ତି ।
ପବନ ଓଁ କାର ବ୍ରହ୍ମ ଘେନି ଟେକି ରହେ
ପୃଥ୍ୱୀ ଆପ ତେଜ ବାୟୁ ଆକାଶକୁ ବହେ ।

ବୁଝିଲେ ପବନ ନାହିଁ କାହାକୁ ଯେ ଛାଡ଼ି
ଏଣୁ ପବନକୁ ଇନ୍ଦ୍ର ଥାଇ ହିଂସା ବଢ଼ି ।
ସାବତ ଭାଇ ବୋଲିଣ ନ ଛାଡ଼ଇ କୋପ
ଦିନେ ପାଞ୍ଚିଲା ଗିଳିବ ପବନର ରୂପ ।
ବଡ଼ପଣ ଧରି ସେହୁ ବହେ ଅନୁକ୍ଷଣେ
ଜ୍ୟେଷ୍ଠଭାଇ ବୋଲି ମୋତେ ନମାନିଲାଦିନେ
ରଥ ସହିତରେ ଗିଳି ଦେବି ଭସ୍ମକରି
ଏମନ୍ତ ପାଞ୍ଚିଣ ବାଟେ ଜଗେ ବଜ୍ରଧାରୀ ।
ଶୁଣ ହୋ ବାବୁ ନାରଦ ବିଧାତା କହନ୍ତି
ମିଥୁନ ମାସ ଯେ କୃଷ୍ଣ ପ୍ରତିପଦା ତିଥି ।
ପଣ୍ଡିତ ବାସର ମୂଳା ନକ୍ଷତ୍ର ସେ ଦିନ
ପବନକୁ ଧଇଲେ ସେ କୋପେ ମଘବାନ ।
ନାରଦ ବୋଇଲେ ଶୁଣ ଆହେ ପଦ୍ମଯୋନି
କିପାଇଁ ଇନ୍ଦ୍ର ପବନ ହେଲେ ଅନ୍ୟୋଅନି ।
ବିଧାତା ବୋଇଲେ ବାବୁ ତୋତେ କହିଥିଲୁ
ପ୍ରଥମ ଖଣ୍ଡ ଭାଷା କି ପାଶୋରିଣ ଦେଲୁ ।
ପବନ ଇନ୍ଦ୍ର ଅଟନ୍ତି ପରା ଦୁଇଭାଇ
ମାତା ସିନା ଭିନ୍ନ ତାଙ୍କ ପିତା ଏକା ହୋଇ ।
ଦିତିବଳା ପବନ ଅଦିତିବଳା ଇନ୍ଦ୍ର
ଏ ଦୁଇ ଭାଇଙ୍କ ବାଦ ଶୁଣ ହେ ନାରଦ ।
ଅଦିତିଙ୍କଠାରୁ ଆଦ୍ୟେ ଜନ୍ମିଲେ ବାସବ
ଦିତି ଯାଇ ପଛରେଟି ହେଲେ ଜାଣ ଗର୍ଭ ।
ଅଦିତି ତାହା ଦେଖିଣ ବହି ବଡ଼ହିଂସା
ପାଞ୍ଚିଲେ ମୋତେ ଆସି ଏ ହୋଇଲେ ସରିସା
ପୁତ୍ରକୁ ମୋହର ଦେଖି ବାଦେ ହେଲା ଗର୍ଭ
ଏଥକୁ ବୁଦ୍ଧି କଲେ ହୁଅନ୍ତା ମୋତେ ଶୁଭ ।
ବିଷଦେଇ ମାରନ୍ତିଣି ଜୀବେ ହେବ ତ୍ରାସ
କାଷ୍ଟେ ଛେଚି ମରାନ୍ତି ବା ହେବ ବଡ଼ଦୋଷ ।
ଆନ ଉପାୟ କରନ୍ତି ନାହିଁ ଆଉ କାଳ
ଆଜି କାଲି ଜନ୍ମପ୍ରାୟ ଦିଶିଲାକ ବାଳ ।
ତଥାପି ମୁହିଁ ମାରନ୍ତି ହେବ ମୋତେ ନିନ୍ଦା
ମରାଇବି ପୁତ୍ରହାତେ କହିଣ ଏ ଧନ୍ଦା ।
ଏତେ ପାଞ୍ଚି ମାତା ଚଳିଗଲେ ଇନ୍ଦ୍ର ପାଶ
ବୋଲେ ବାବୁ ରେ ତୋହର ଶତ୍ରୁ କର ନାଶ ।
ଆଜିକାଲି ଜନମିଲେ ନାହିଁଟି ବରତି
ବେଗେ ଯାଇଣ ଉପାୟ କର ଏହି ରାତି ।
ମୂଳ ନିବାରିଲେ ଯାଉ ଆମ୍ଭର ଯେ ଭୟେ
ଇନ୍ଦ୍ର ବୋଇଲେ କାହାକୁ ଡରୁଛୁ ଗୋ ମାଏ ।
ଅଦିତି ବୋଇଲେ ବାବୁ ମାର ବେଗେ ଦିତି
ତାର ପୁତ୍ର ଜନମିଲେ ତୁ କେବେ ନ ବର୍ତ୍ତି ।

ତୋତେ ଶତ୍ରୁ ହୋଇ ରହିଥିବ କାଳେ କାଳେ
ଏ ଭବିଷ୍ୟ କଥା ମୋତେ ଦିଶିଲାକ ବଳେ ।
ଇନ୍ଦ୍ର ବୋଇଲେ ଆଉ ନ ଭାଳ ତେବେ କିଛି
ଏହି ରାତ୍ରେ ଯାଇ ମୁହିଁ ଉପାୟ କରୁଛି ।
ଏତେ କହିଣ ବାସବ ହେଲେ ଜାଣ ସଜ
ରାତ୍ରି ହୁଅନ୍ତେ ଚଳିଲେ ଧରିଣ ନାରାଚ ।
ସେଦିନ ହୋଇଛି ଏଣେ ଅମାବାସ୍ୟା ରାତି
ମିଳିଲେ ଯାଇଣ ଇନ୍ଦ୍ର ଯହିଁ ସୁପ୍ତ ଦିତି ।
ବସିଲେ ଶଯ୍ୟାର ପାଶେ ଯାଇ ପୁରୁହୂତ
ମନେ ପାଞ୍ଚିଲେ କରିବି କେହ୍ନେ ୟାକୁ ହତ ।
ମାତୃହତ୍ୟା ଗର୍ଭହତ୍ୟା ସ୍ତିରୀହତ୍ୟା ତିନି
ଆବର ଯେ ନିଦ୍ରାଭଙ୍ଗ ହୋଇବେ ଜନନୀ ।
କିରୂପେ ଅର୍ଜିବି ଜାଣୁ ଜାଣୁ ଏଡ଼େ ଦୋଷ
ବାହୁଡ଼ିଣ ଯାନ୍ତି ମାତା କରିବେ ଯେ ରୋଷ ।
ରୋଷ ସେହି ନ କରନ୍ତୁ ମାତା ନ ମରନ୍ତୁ
ଶତ୍ରୁକୁ ନାଶି ଯିବଇଁ ଏହା ଗର୍ଭଗତୁ ।
ସ୍ତିରୀକି ବିନାଶ କଲେ କି ହେବ ମୋହର
ଗର୍ଭେ ପଶି ବାଳକର କାଟିଦେବି ଶିର ।
ଏମନ୍ତ ପାଞ୍ଚି ସେ ଇନ୍ଦ୍ର କରେ ଧରି କାତି
ଦେଖିଲେ ଶୋଇଛି ଦିତିମାତା ହୋଇ ଚିତି ।
ମୁଖ ମୁକୁଳା କରିଣ ମାରଇ ନିଃଶ୍ୱାସ
ନିଶ୍ଚେଷ୍ଟେ ଶୋଇଛି ଫିଟିଅଛି କେଶ ବାସ ।
ଇନ୍ଦ୍ର ବୋଇଲେ ଏ କାଳେ କରିବି ଏ କାର୍ଯ୍ୟ
ମୁଖବାଟେ ପଶି ଗର୍ଭେ ନାଶିବି ତନୁଜ ।
ପେଟଭିତରୁ ଯେ ମଲେ ଯାଉ ଆମ୍ଭ କଳି
ଏତେ ବୋଲି ଗଲେ ଇନ୍ଦ୍ର ମଶାରୂପେ ଗଳି ।
ଗର୍ଭରେ ପଶି ପୁତ୍ରକୁ କାଟିଲେ ବିକୋଟି
ଅଣଚାଶ ଖଣ୍ଡ କରି ଆସି ସୁରପତି ।
ମାତାର ଆଗେ କହିଲେ ଯାଇ ସବୁ ବସି
ବୋଇଲେ ଗର୍ଭର ଶିଷ୍ୟ ଅଇଲି ମୁଁ ନାଶି ।
କାଟିଲି ତିରଣ ପ୍ରାୟ କରି ତାର ପିଣ୍ଡ
ଦେଖୁ ଦେଖୁ ହୋଇଲା ସେ ଅଣଚାଶ ଖଣ୍ଡ ।
ପ୍ରାଣକୁ ତାର ବିନାଶି ଅଇଲି ବାହାରି
ମାତାରେ କି କାର୍ଯ୍ୟ ପୁତ୍ର ସିନା ମୋ ବଇରି ।
ଶୁଣିଣ ଅଦିତି ଦେବୀ ହୋଇଲେ ଆନନ୍ଦ
ଏଥୁ ଅନନ୍ତରେ ବାଣୀ ଶୁଣ ହେ ନାରଦ ।
ଇନ୍ଦ୍ର ଯେ କପଟେ ନାଶି ଗଲା ଦିତି ପୁଅ
ସେହି ଯେ ଅକ୍ଷୟ ବୀର୍ଯ୍ୟ ନୋହି କେବେ କ୍ଷୟ
ଯେତେ ଖଣ୍ଡ କରି ଗର୍ଭେ ଗଲା ଇନ୍ଦ୍ର କାଟି
ତେତେ ମୂର୍ତ୍ତି ହୋଇ ଜନମିବ ପବନଟି ।

ବୁଝିଲେ ପବନ ଅଟେ ସର୍ବଦା ସଜୀବ
କୋଟିଏ ଇନ୍ଦ୍ର କୋପିଲେ ତାର କିସ ଯିବ ।
ସେ ଯହିଁରେ ନ ବସଇ ମୃତ୍ୟୁରେ ସେ ଲେଖା
ଇନ୍ଦ୍ର କପଟେ ନୋହିଲା ଲୋମେ ତାର ବଙ୍କା ।
ଅଧିକ ମୂର୍ତ୍ତିମନ୍ତେ ସେ ହେଲା ଉତପତ୍ତି
କେବଳ ସଂଖ୍ୟା ବହିଲା ଅଣଚାଶ ମୂର୍ତ୍ତି ।
ଅଣଚାଶ ହୁଅନ୍ତେ ସେ ମାତାଙ୍କୁ ପୁଛିଲେ
କାହିଁକି ଏତେରୂପ ମୁଁ ହୋଇଲି ବୋଇଲେ ।
ଦିତି ବୋଇଲେ ବାବୁ ମୁଁ ନାହିଁ ଏହା ଜାଣି
ଯେହୁ ଏହା କଲା ହେଉ ସେ ସହସ୍ରଯୋନି ।
ଏ ମୋହର ଶାପ ତାକୁ ଅବଶ୍ୟ ଫଳିବ
ତୁ ହେଲୁ ଅଣଚାଶ ସେ ସସ୍ରଯୋନି ହେବ ।
ଦେହଯାକ ଫାଟିଣ ଦିଶିବ ଯୋନି କୋଳେ
ଧାତାହେଲେ ଶାପ ମୋର ନ ମେଣ୍ଟିବବେଳେ
ତୁହି ଥିବାଯାକ ତାର ରହୁ ଦେହେଁ ଚିହ୍ନ
ନିଷ୍ଟେ ଯା ଫଳୁ ଜାଣନ୍ତୁ ସଂସାରର ଜନ ।
ଶୁଣ ବାବୁରେ ନାରଦ କହେ ପିତାମହ
କହୁଁ କହୁଁ ବାସବର ହେଲା ଯୋନି ଦେହ ।
ଦିଶିଲା ଶରୀରଯାକ ହେଲା ସସ୍ରଯୋନି
ଅପୂର୍ବ ମଣିଲେ ଠାବେ ଠାବେ ଲୋକ ଚିହ୍ନି ।
ବୋଲନ୍ତି ପବନ ସଙ୍ଗେ ଇନ୍ଦ୍ର କଲା ବାଦ
ଦିତି ଶାପରୁ ଫଳିଲା ଏହା ଇନ୍ଦ୍ର ହୃଦ ।
ଏମନ୍ତ ବୋଲି ହୁଅନ୍ତି ସର୍ବେ କୁହାକୁହି
ସେ କଥା ଶୁଣିଣ ଇନ୍ଦ୍ର ବସେ ଈର୍ଷା ବହି ।
ମନରେ ପାଞ୍ଚିଲେ ଇନ୍ଦ୍ର ପବନକୁ ମନ୍ଦ
ବୋଲନ୍ତି ପବନ ବୁଝ ତୋହ ମାତା ହୃଦ ।
ମୋତେ ଏଡ଼େ ବଡ଼ ଶାପ ଦେଲା ନିଲକ୍ଷଣୀ
ପୁରୁଷ ଅଙ୍ଗ ସହସ୍ର ଗୋଟିକଲା ଯୋନି ।
ଏଡ଼େ ବଡ଼ ଲଜ୍ଜା ଦେଲା ହୋଇ ମାତା ମୋତେ
ଏହି ସକାଶୁ ପଡ଼ିବ ଦଣ୍ଡ କାଳେ ତୋତେ ।
ଅସନ ସହିତେ ତୋର ପଡ଼ିଲେ ଗିଳିବି
ଏ କଥାରେ ଅପରାଧ କେବେ ନ କରିବି ।
ଏତେ ବୋଲିକରି ଇନ୍ଦ୍ର ଧରେ ମନେ କିନ୍ତୁ
ଦିବା ରାତ୍ରେ ପାଞ୍ଚୁ ଥାଏ ପବନର ମୃତ୍ୟୁ ।
ତହିଁ ଉତ୍ତାରୁ ନାରଦ ଶୁଣ ସେ ବଚନ
ବୃଷ ଅନ୍ତେ ହେଲା ଜଗନ୍ନାଥ ଦେବସ୍ନାନ ।
ସେ ଦିନ ଆସନ୍ତି ସବୁ ଦେବ ସେବା ଲାଗି
ନୈର୍ଋତ କୋଣରେ ଇନ୍ଦ୍ର ବସେ ବାଟ ଜଗି ।
ସେ ଦିନ ପବନ ହୋଇ ଆସନ୍ତେଣ ସଜ
ଦେଖିଣ ଇନ୍ଦ୍ର ଧାଇଁଲେ କରେ ଧରି ବଜ୍ର ।
ବିଶ୍ୱରୂପେ ପବନର ଗିଳିଲାକ ରଥ
ଇନ୍ଦ୍ର ନ ଦେଖୁଣୁ ଘୁଞ୍ଚି ଗଲାଣି ମରୁତ ।
କ୍ଷୀର ସିନ୍ଧୁ ମଧ୍ୟରେ ସେ ରହେ ଯାଇ ଲୁଚି
ରଥ ଏକା ଗିଳିଦେଲା ବାସବ ଯେ ଘୁଞ୍ଚି ।
ତେଣୁ ପବନର ନୋହେ ପ୍ରତ୍ୟକ୍ଷରେ ବଳ
ମହା ଗ୍ରୀଷମ କରିଣ ବହେ ଶ୍ରମଝାଳ ।
ଆଉଟି ହୁଅନ୍ତି ଠାବେ ଠାବେ ନରମାନେ
ଇନ୍ଦ୍ରର କୋପ ସରଇ ପଞ୍ଚଦଶ ଦିନେ ।
ସେଠାରୁ ଶୀତଳ ହୋଇ ବହେ ପୃଥ୍ୱୀଯାକେ
ଏ କଥା ସିଦ୍ଧ ହୋଇଣ ରହିଲା ତ୍ରିଲୋକେ ।
ମରୁତ ବୋଲି ଯେ ରଥ ଦେଲା ଇନ୍ଦ୍ର ଗିଳି
ପବନ ନ ଥିବାରୁ ସେ ହୃଦେ ହୁଏ ଭାଳି ।
ପାଞ୍ଚଇ ଏବେ ସ୍ୱର୍ଗରୁ ଗଲା ତ ମରୁତ
ଏହା ବୋଲି ଝିଙ୍କିଣ ସେ ଦେଲା ତାର ରଥ ।
ଖୋଜିଲା ପନ୍ଦର ଦିନଯାଏ ଦିଗଭାଗେ
ନ ଦେଖିଣ ଇନ୍ଦ୍ର ପୁଣି ବସେ ଯାଇ ସ୍ୱର୍ଗେ ।
ତହିଁ ଉତ୍ତାରୁ ପବନ ବହିଲା ବ୍ରହ୍ମାଣ୍ଡେ
ମେରୁ ପଶ୍ଚିମେ ପଡ଼ିଛି ଦେଖେ ରଥ ଖଣ୍ଡେ ।
ଆପଣାର ରଥ ବୋଲି ଚିହ୍ନି ଖଣ୍ଡଦୂରୁ
ପାଶକୁ ଯାଇ ଦେଖିଲା ପଡ଼ିଛି ଓକାଳୁଁ ।
ଓକାଳିଁ ରଥ ବୋଲିଣ ନ ଚଢ଼ିଲା ତହିଁ
ସେଠାରୁ ବୁଲିଲା ମୃଗ ବାହନ ସେ ହୋଇ ।
ମରୁତ ନ ଚଳନ୍ତେ ସେ ରଥ ପଡ଼ିଥିଲା
ଏମନ୍ତେ ଲକ୍ଷେ ବରଷ ତହିଁ ବହିଗଲା ।
ଶମ୍ବର ବୋଲିଣ ଥିଲା ଏକ ମହାଦୈତ୍ୟେ
ବୁଲିଲା ସେ ରଥ ଚଢ଼ି ସେହୁ ଦିନାକେତେ ।
କାଳେ ମାଇଲେ ତାହାକୁ ପୁଣି ଶିରୀପତି
ରଥକୁ ନେଇ ରଖିଲେ ସେ ଅମରାବତୀ ।
ପବନର ଯାନ ବୋଲି ଚିହ୍ନି ସୁରସାଇଁ
ହରିଙ୍କି ବୋଲି ରଖିଲେ ଶ୍ରଦ୍ଧାବନ୍ତ ହୋଇ ।
ଏମନ୍ତେ କେତେହେଁ ଦିନ ତହିଁ ପୁଣ ଗଲା
ଶମ୍ବର ଦୈତ୍ୟର ପୁଅ ଡୁମ୍ବୁର ଯେ ଥିଲା ।
ଉଦିତ ସତ୍ୟଯୁଗେ ସେ ତୋଷି ସଦାଶିବ
ବର ପାଇଣ ବଳିଷ୍ଠ ହୋଇଲା ଦାନବ ।
ମନେ ଗର୍ବ ବହି ସେହୁ ବୁଲିଲା ଚୌଦିଗେ
ସମସ୍ତଙ୍କୁ ଜିଣି ପୁଣି ଧାଡ଼ି ଦେଲା ସ୍ୱର୍ଗେ ।
ତାହା ଦେଖି ପଳାଇଲା ଇନ୍ଦ୍ର ସ୍ୱର୍ଗ ଛାଡ଼ି
ଡୁମ୍ବୁର ଦୈତ୍ୟ ବସିଲା ଯାଇ ସ୍ୱର୍ଗ ମାଡ଼ି ।
ଅନେକ ରତନ ତହୁଁ ସେହୁ କଲା ଜୁର
ବିଜୟା ରଥକୁ ନେଇ ରଖିଲା ପାଶର ।

ଜୟ କରିଣ ଅସୁର ଗଲା ନିଜପୁରୀ
ଗୋମୁଖୀ କେଶବ ରୂପେ ମାରି ତାକୁ ହରି ।
ସେ ତୁମ୍ବୁର ଦୈତ୍ୟ ନାଶ କଲେ ନାରାୟଣ
ବିଜୟା ରଥକୁ ନେଇ ରଖିଲେ ସେ ପୁଣ ।
ତୁମ୍ବୁର ପୁଅ ଯେ ଜମ୍ଭଦୈତ୍ୟ ବୋଲି ଥିଲା
ବିଷ୍ଣୁଙ୍କୁ କାଳେ ଘେନି ସେ ରଥ ଘେନିଗଲା ।
ସେ ରଥରେ ବସି ସେହୁ ଜିଣିଲା ତ୍ରିପୁର
ସ୍ୱର୍ଗକୁ ଯାନ୍ତେ ମାଇଲେ ତାକୁ ସୁନାସୀର ।
ଜମ୍ଭ ଦୈତ୍ୟ ମାରି ନାମ ବହି ଜମ୍ଭଭେଦୀ
ଅମ୍ବରେ ରଖିଲେ ରଥ ନେଇ ବିବୁଧାଦି ।
ସେ ଜମ୍ଭର ପୁଅ ଧନୁ ଦାନବ ଏ ବେନି
ସ୍ୱର୍ଗକୁ ଯାଇ ଜିଣିଲେ ଦେବ ସସ୍ତ୍ରଯୋନି ।
ରଖିଲେ ବିଜୟା ରଥ ନେଇ ତାଙ୍କ ପୁର
କାଳେ ପୁଣି ପ୍ରଭୁ ତୁଲେ ଲାଗିଲା ସମର ।
ଦାମୋଦର ଅବତାରେ ମାରି ତାକୁ ହରି
ସେ ରଥ ନେଇ ରଖିଲେ ସଂଯମନୀପୁରୀ ।
ତାଙ୍କ ପୁତ୍ର ଥିଲେ ବକ୍ର ଅଙ୍ଗ କାଳାନଳ
ସେ ଯାଇଁ ଦେଲେକ ଧାଡ଼ି ସଂଯମନୀପୁର ।
ଯମକୁ ଜିଣିଣ ରଥ ଆସିଲେ ସେ ଘେନି
ସେ ରଥ ଚଢ଼ି ବୁଲିଲେ ସେହି ପୁର ତିନି ।
ତାହାଙ୍କ ଭୟରେ ଜାଣ ନ ରହିଲେ କେହି
ଅନୀତି ଦେଖି ଜନ୍ମିଲେ ପୁଣି ଭାବଗ୍ରାହୀ ।
ହୟଗ୍ରୀବ ରୂପ ଧରି ନାଶି ତାକୁ ଯୁଦ୍ଧେ
ସେ ରଥ ନେଇ ରଖିଲେ ପ୍ରଭୁ ସିନ୍ଧୁ ମଧ୍ୟେ ।
ତାହାଙ୍କ ନନ୍ଦନ ଜଳତରଙ୍ଗ ଯେ ହେଲେ
ତପବଳେ ଧବଳାଙ୍ଗ ଦେବଙ୍କୁ ତୋଷିଲେ ।
ଦିଗବିଜେ କରିଣ ସେ ଜିଣିଲେ ଜଗତ
ତାଙ୍କ ସଙ୍ଗତେ ଅଛନ୍ତି ବଳ ଅପ୍ରମିତ ।
ବରୁଣ ପୁରକୁ ସେହୁ ଦେଲେ ଦିନେ ଧାଡ଼ି
ଜମ୍ବୁବତୀ ନଗ୍ରଯାକ ଆଣିଲେ ଉପାଡ଼ି ।
ବିଦିତ ସତ୍ୟଯୁଗରେ ହରି ହେଲେ ଜାତ
ନୀଳାମ୍ବର ରୂପ ଧରି ଦୈତ୍ୟ କଲେ ହତ ।
ଜଳତରଙ୍ଗ ମାଇଲେ ଯୁଦ୍ଧେ କୁତୂହଳେ
ସେ ରଥକୁ ଘେନିଯାଇ ରଖିଲେ ସ୍ୱର୍ଗରେ ।
ଜଳତରଙ୍ଗର ପୁତ୍ର ଥିଲା ଶଙ୍ଖାସୁର
ବିରଞ୍ଚିଙ୍କି ସେବିଣ ସେ ପାଇଥିଲା ବର ।
ପ୍ରଥମରେ ଧାଡ଼ିଦେଲା ଅମରପୁରକୁ
ସଂଗ୍ରାମ କରିଣ ଇନ୍ଦ୍ର ନ ପାରିଲେ ତାକୁ ।
ଦୈତ୍ୟକୁ ଭୟ କରିଣ ସ୍ୱର୍ଗ କଲେ ତେଜ୍ୟା
ସେ ବିଜୟା ରଥ ଆଣି ଚଢ଼ିଲେ ଦନୁଜା ।
ରହୁବରେ ବସିଣ ସେ ଚୋରାଇଲା ବେଦ
ହରିତ ସତ୍ୟଯୁଗରେ ଜନ୍ମିଲେ ଗୋବିନ୍ଦ ।
ମତ୍ସ୍ୟ ଅବତାରେ ପ୍ରଭୁ ସଂହାରିଲେ ତାକୁ
ରଥଗୋଟି ନେଇଣ ସେ ଦେଲେ ବିଧାତାଙ୍କୁ ।
ସେ ରଥରେ ବେଦଯାକ ପୂରାଇ ବିଧାତା
ରହିଲେ ଯଶୋବନ୍ତୀରେ ହୋଇଣ ଅଚିନ୍ତା ।
ଏଥୁ ଅନନ୍ତରେ ତହିଁ ଗଲା କେତେଦିନ
ଶଙ୍ଖାର ପୁତ୍ର ତାରକା ନାମେ ଯାତୁଧାନ ।
ପିତାର ଅଭିମାନେ ସେ ହେଲା ନରପତି
ପଶିଲା ସମସ୍ତ ପୁର ଜିଣି ଯଶୋବନ୍ତୀ ।
ଧାତା କହିଲେ ତାହାର ସଙ୍ଗେ ଭେଟ କରି
ବୋଇଲେ ଏ ଦଣ୍ଡକୁ କି ହେବୁ ଆମ୍ଭେ ସରି ।
ସବୁରି ପ୍ରାୟ ବିହିବୁ କ୍ଲେଶ ଯେବେ ମୋତେ
ବ୍ରହ୍ମା ବୋଲି ଆଉ କେହୁ ମାନିବ ଜଗତେ ।
ଯେବେ ଅଇଲୁ ନିଷ୍ଫଳେ ନ ଯା ତୁହି ଚଳି
ଦେଉଛି ଏ ରଥ ନିଅ ଅଣଚାଶ ଗୁଳି ।
ଏ ରଥ ଚଢ଼ିଲେ ପୃଥ୍ୱୀ ପାରିବୁ ତୁ ଜିଣି
ଏହିରୂପେ କହି ବ୍ରହ୍ମା ଦେଲେ ରଥ ଆଣି ।
ବିଧାତାର ବୋଲ ମାନି ସେ ତାରକାସୁର
ବିଜୟା ରଥେ ଚଢ଼ିଣ ଜିଣିଲା ତ୍ରିପୁର ।
ଅତି ଅନୀତି କଲା ସେ ତ୍ରୈଲୋକ୍ୟ ମଣ୍ଡଳେ
ଯୁବତୀମାନଙ୍କୁ ଦେଖି ହରିନେଲା ବଳେ ।
ଏହି ରୂପରେ ଅନୀତି କରନ୍ତେ ଅନେକ
ଶୁକ୍ଳ ସତ୍ୟଯୁଗରେ ସେ ଜନ୍ମିଲେ କାର୍ତ୍ତିକ ।
ତାରକାସୁରକୁ ମାରି ନେଲେ ସେହି ଯାନ
କପିଳାସପୁରେ ପଶି କଲେକ ଗୋପନ ।
ଶୁଣ ହେ ବାବୁ ନାରଦ କହନ୍ତି ଯେ ବ୍ରହ୍ମା
ସେ ରଥକୁ ଦେଖି ଶ୍ରଦ୍ଧା କଲେ ହର ଉମା ।
ଅପୂର୍ବ ଯାନ ବୋଲିଣ ଥୋଇଲେ ଭଣ୍ଡାରେ
ଏଥିଉତ୍ତାରେ ସେ ମୁର ଗଲା ତପସ୍ୟାରେ ।
ଈଶ୍ୱରଙ୍କୁ ତୋଷି ପୁଣି ଆଣିଲା ଯେ ରଥ
ଚଉଦ ଭୁବନେ ହେଲା ସେହି ନରନାଥ ।
ତୁହି ଯେ ପୁଚ୍ଛିଲୁ କାହୁଁ ଆଣିଲେକ ଶିବ
ତେଣୁ ତୋତେ କହିଲଇଁ ଏ କଥା ଅପୂର୍ବ ।
ଏରୂପେ ମୁରକୁ ରଥ ଅଛି ପୁଣି ମିଳି
ଈଶ୍ୱର ପ୍ରସାଦୁଁ ହୋଇଅଛି ମହାବଳୀ ।
ଯେତେକାଳ ମୁରର ତ ଅଛଇ ବିଭୂତି
ତେତିଶକୋଟି ଦେବତା ତାର ବଶବର୍ତ୍ତୀ ।
ବ୍ରହ୍ମା ନିତି ଆସିକରି ଯାଉଛନ୍ତି ବୋଧି
ଆଗରେ ଉଭାରିଥାନ୍ତି ସର୍ବ ବିବୁଧାଦି ।

ଶିରରେ କର ଦେଇଣ କାଖେ ହସ୍ତ ନାଇ
ଆଜ୍ଞାକୁ ଯେ କର୍ଣ୍ଣଡେରି ଥାନ୍ତି ଉଭା ହୋଇ ।
ଯେତେବେଳେ ବିହି ବାମ ହୋଇବଟି ତାକୁ
ନୃସିଂହ ମାରିବେ କ୍ଷଣମାତ୍ରେ ଅସୁରକୁ ।
ଯାକୁ ଡରନ୍ତି ସଂସାରେ ସକଳ ପରାଣୀ
ତାହାକୁ ସହିବା ଅବା କେମନ୍ତେ ଧରଣୀ ।
ମୁର ତେଣୁ ବୋଲୁଅଛି ବିଷ୍ଣୁଙ୍କୁ ବ୍ରାହ୍ମଣ
ବ୍ରାହ୍ମଣ ରୂପେ ଜନ୍ମନ୍ତି ସିନା ନାରାୟଣ ।
ବ୍ରାହ୍ମଣ ସ୍ୱରୂପେ ବିଷ୍ଣୁ ଅଛନ୍ତି ଯେ ଜନ୍ମି
ଏଣୁ ବ୍ରାହ୍ମଣେ ଅଟନ୍ତି ଜାଣ ମହାବ୍ରହ୍ମୀ ।
ବୁଝିଲେ ତ ବ୍ରାହ୍ମଣେ ଯେ ସର୍ବ ବର୍ଣ୍ଣେ ରାଜା
ବ୍ରାହ୍ମଣଙ୍କୁ ମୂର୍ଖଟି ନ କରେ ଏକା ପୂଜା ।
ବ୍ରାହ୍ମଣଙ୍କୁ ନ ମାନିଲେ ବଂଶ ହୋଏ ଧ୍ୱଂସ
ମୁର ନ ମାନନ୍ତେ ତାର ବଂଶ ଯିବ ନାଶ ।
ଏ ମୁରାସୁରର କଥା କହିବା ହୋ ଶୁଣ
ଯେମନ୍ତ ହୋଇ ଯୁଦ୍ଧକୁ ଆସିଲା ଆପଣ ।
ବିଜେ କରିଲା ଅସୁର ବିଜୟା ରଥରେ
ରାଜା ବାହାରନ୍ତେ ସେନା ଧାଇଁଲେ ଆଗରେ
ଦିଶନ୍ତି ଦ୍ୱିତୀୟ ସିନ୍ଧୁ ତୁଲ୍ୟ ଦୈତ୍ୟବଳ
ଲେଉଟି ପଡ଼େ କି ପୃଥ୍ୱୀ ଜାଣି ପ୍ରଳେକାଳ ।
ଆଗୁଆଣି ଥାଟରେ ଯେ ଗଲା ମନ୍ତ୍ରୀବର
ଅଛନ୍ତି ଦଶ ନିଯୁତ ଯୋଦ୍ଧା ସଙ୍ଗତର ।
ରାଜା ଡାହାଣେ ପ୍ରତାପ ସିଂହ ଚଳିଯାଏ
ଚରଣ ଚାଳନ୍ତେ ମହୀ କମ୍ପମାନ ହୁଏ ।
କ୍ଷଣକେ ସେ ମନ କଲେ ପାରେ ଶୂନ୍ୟଘୋଟି
ଆବର ସଙ୍ଗେ ଅଛନ୍ତି ସୈନ୍ୟ ଶତକୋଟି ।
ବାମେ ଚଳନ୍ତି ମୁକୁନ୍ଦ ପ୍ରଳମ୍ବା ଅସୁର
ଚାଲନ୍ତେ କମ୍ପି ଉଠଇ ଚତୁର୍ଦ୍ଦଶପୁର ।
ଅଛନ୍ତି ତାହାଙ୍କ ତୁଲେ ସୈନ୍ୟ କୋଟିଲକ୍ଷ
ଆବର ଯେ ଦୁଇ ସେନା ଚଳିଲେ ପ୍ରତ୍ୟକ୍ଷ ।
ବିରାଜ ଯେ ମୃଢ଼ାସୁର ଘେନିଯାନ୍ତି ସେନା
ଉଡ଼ନ୍ତି ଯେ ପଛୁଆଣି ଦଣ୍ଡେ ବୀରବାନା ।
ସଙ୍ଗେ ସେ ଆଣିଅଛନ୍ତି ସୈନ୍ୟ ବାରକୋଟି
ଏକାବେଳକେ ଯୁଦ୍ଧକୁ ବାହାରିଲେ ଉଠି ।
ରାଜାର ଯେ ଅଙ୍ଗବଳ କହିବା ତା ଶୁଣ
ସାତପଦ୍ମ ତେରକୋଟି ଅଶୀଲକ୍ଷ ଜାଣ ।
ଆବର ଚଳନ୍ତି ସାତପଦ୍ମ ପାଟହସ୍ତୀ
ଅୟୁତେକ ଚାମର ଯେ ଢାଳନ୍ତି ଚୌକତି ।
ଶ୍ୱେତ ତରାସ ଚାମର ପଦ୍ମ ଲକ୍ଷ ଲକ୍ଷ
ଉପରେ ମୟୂର ପୁଚ୍ଛ ବୁଲଇ ମେଘଛ ।
ଅର୍ବୁଦେ ଧବଳ ଛତ୍ର ଉଡ଼ଇ ଉପରେ
ନୀଳଚାମର ବେଳକେ ପଡ଼େ ଲକ୍ଷଥରେ ।
ଅୟୁତେକ ଆଲଟ ସେ ସବୁ କାଳମୟେ
ରଙ୍ଗବର୍ଣ୍ଣ ଚିରାଳ ଯେ ଲମ୍ବଇ କୋଟିଏ ।
ଶ୍ୱେତବର୍ଣ୍ଣ ଚାମର ଯେ ଛତ୍ରଶତକୋଟି
ଆଲଟ ଦଣ୍ଡ ଉଡ଼ାଇ ଲକ୍ଷେ ଚଉଷଠି ।
ଆସନ୍ତି ସିନ୍ଧୁ ଲହରୀ ପ୍ରାୟ ସୈନ୍ୟ ମାଡ଼ି
ପଞ୍ଚସାଗର ଆଗରେ ଶୁଭେ ତୁରୀ ରଡ଼ି ।
ଦଶସାଗର ବାଦ୍ୟ ଯେ ବାଜଇ କଂସାଳ
ପନ୍ଦର ସାଗରେ ବାଦ୍ୟ ବାଜେ ମରଦଳ ।
କୋଡ଼ିଏ ସାଗର ପୁଣି ଉଡ଼ାଇ ନିଶାଣୀ
ପଚିଶ ସାଗର ଯାଏ ବାଜେ ଅଳାବେଣୀ ।
ତିରିଶ ସାଗର ତହିଁ ବାଜଇ ଝଞ୍ଜାଳ
ପଞ୍ଚତିରିଶ ସାଗର ବାଜଇ କାହାଳ ।
ଚାଳିଶ ସାଗର ଯାଏ ବାଜଇ ଟମକ
ପଞ୍ଚଚାଳିଶ ସାଗର ବାଜେ ଯୋଡ଼ା ଶଙ୍ଖ ।
ପଞ୍ଚାଶ ସାଗର ଯାର ବାଜେ ବୀଣା ଭେରୀ
ପଞ୍ଚାବନ ସାଗର ଯେ ବାଜଇ ମହୁରୀ ।
ଷାଠିଏ ସାଗର ଯାଏ ବାଜେ ଘଣ୍ଟନାଦ
ପଞ୍ଚଷଠି ସାଗର ଯେ ବାଜେ ଢୋଲ ବାଦ୍ୟ ।
ସତୁରି ସାଗର ବାଜେ ବୀର ଯେ କାହାଳୀ
ପଞ୍ଚସ୍ତରୀ ସାଗର ଯେ ବାଜେ କରତାଳି ।
ଅଶୀ ସାଗର ବାଜଇ ଆବର ଘୁମୁରା
ପଞ୍ଚାଶୀ ସାଗର ଯାଏ ବାଜଇ ନାଗରା ।
ନଉ ସାଗର ପର୍ଯ୍ୟନ୍ତ ବଜାଇ ଭୁଡ଼ଙ୍ଗ
ପଞ୍ଚାଣୋଇ ସାଗର ଯେ ବାଜେ ଚାହକଙ୍ଗ ।
ଶତେକ ସାଗର ବାଜେ ଶିଙ୍ଗା ବଂଶୀ ଧ୍ୱନି
ବାହାରିଲା ମୁରାସୁର ଏତେ ବାଦ୍ୟ ଘେନି ।
କେ ଅନ୍ତ କରିବ ସେହୁ ଥାଟର ବାଜଣା
ମୁର ଅସୁରର ବଳ ଅଟେ ଅକଳନା ।
ବାଦ୍ୟହିଁ ଏକା ଯେ ମୁର ଆଣିଅଛି ଯେତେ
ତିନିକୋଟି ଆଠଲକ୍ଷ ବାର ମରଭୁତେ ।
ଦଶପଦ୍ମ ସାତସିନ୍ଧୁ ଷୋଳ ଅଇବ୍ରତେ
ନବଖର୍ବ ତେରଲକ୍ଷ ଏଗାର ନିଯୁତେ ।
ଏରୂପେ ଯେ ନାନାବାଦ୍ୟ ଚଳେ ମୁରଆଗେ
କେ ଖର ବାହନେ କେହି ଆସେ ଚଢ଼ିସିଂହେ ।
କେ ଆଗୁଆଣି ଥାଟରେ ଭଲ୍ଲୁକ ବାହନେ
କେ ଷଣ୍ଢେ ଚଢ଼ଇ କେହୁ ଶୃଗାଳ ଆସନେ ।
କେହୁ ପୀତ ଲୋହିତ କେ ସାଜୁ ଲାଗି ଅଙ୍ଗେ
କେ ଚାଲି ଆସନ୍ତେ ଶିର ଆକାଶରେ ଲାଗେ ।

ଏରୂପେ ଅସୁର ବଳ ଏକମୁଖ ହୋଇ
ଆସନ୍ତେ ଆକାଶେ ସୂର୍ଯ୍ୟଦେବ ନ ଦିଶଇ ।

❋ ❋ ❋

## ବଦରିକା ନଗ୍ରେ ମୁରାସୁରର ପ୍ରବେଶ ଓ ପ୍ରତାପ ସିଂହ ଦ୍ୱାରା କୃଷ୍ଣବଲ୍ଲଭ ରାଜାର ବନ୍ଦୀ

ଏମନ୍ତ ସମ୍ଭର୍ବେ ଚଳି ଆସିଲେ ଅସୁର
ଶୁଣ ବାବୁ ନାରଦ ହେ କହେ ବେଦବର ।
ବଦରିକା ନଗ୍ର କଥା ବୁଝ ସର୍ବେ ଭଲେ
ଦୁଷ୍ଟ ମାରିବାକୁ ତହିଁ ବିଷ୍ଣୁ ଜନମିଲେ ।
ଯେବଣ ଶ୍ରୀ ନାରାୟଣ ଦେବ ଭାବଗ୍ରାହୀ
ମୁର ପାଇଁ ଅଛନ୍ତି ସେ ଆଦ୍ୟେ ଜନ୍ମ ବହି ।
ଏହି ଅବତାରଠାରୁ ବିଷ୍ଣୁ ଯୋନି ଜନ୍ମ
ଷଡ଼ଜୟନ୍ତେ ଲେଖନ୍ତି ଏହା ମୁନିଜନ ।
ନୃସିଂହ ବାମନ ରାମ କୃଷ୍ଣ ଏହି ଚାରି
ଷଡ଼ଜୟନ୍ତୀ ଏ ଚାରି ଜନ୍ମ ଲେଖା କରି ।
ଆବର ଯେତେକ ରୂପ ଲେଖା ନୋହେ କାହିଁ
କେବଳ ଲେଖି ଶ୍ରୀ ଶିବ ଦୁର୍ଗା ଜନ୍ମ ଦୁଇ ।
ଶ୍ରୀ ନୃସିଂହ ଜନ୍ମ ମେଷ ଶୁକ୍ଳ ଚତୁର୍ଦ୍ଦଶୀ
ବାମନ ଜନ୍ମିଲେ ସିଂହ ଦ୍ୱାଦଶୀରେ ଆସି ।
ରାମ ଜନ୍ମ ମୀନ ଶୁକ୍ଳ ନବମୀର ମଧେ
କୃଷ୍ଣ ଜନ୍ମ ସିଂହ କୃଷ୍ଣ ଅଷ୍ଟମୀର ଆଦ୍ୟେ ।
ଈଶ୍ୱରଙ୍କ ଜନ୍ମ କୁମ୍ଭ କୃଷ୍ଣ ଚତୁର୍ଦ୍ଦଶୀ
କନ୍ୟା ଶୁକ୍ଳ ଦଶମୀରେ ଦୁର୍ଗା ଜନ୍ମ ଭାଷି ।
ପାଳନ୍ତି ଏରୂପେ ଷଡ଼ବ୍ରତ ସାଧୁବାଣୀ
ଭଲା ସେ କୃଷ୍ଣବଲ୍ଲଭ ପ୍ରକାଶିଲେ ଆଣି ।
ପରଂବ୍ରହ୍ମ ପୁରୁଷ ଯେ ନିତ୍ୟ ନିରାକାର
ତାହାଙ୍କୁ ପାଳନ୍ତି ପୁତ୍ର କରି ବିପ୍ରବର ।
ସେଠାରୁ ସଂସାରେ ହେଲା ବିଷ୍ଣୁନାମ ଜଣା
ସୁଜନେ କରନ୍ତି ପଢ଼ି ଶୁଣି ବିକାକିଣା ।
କିଣିଲେ ନୁହଇ ଊଣା ବିକିଲେ ଅଶେଷ
ଏମନ୍ତ ମହିମା ତହିଁ ଅଛନ୍ତି ବିଶେଷ ।
ବିଷ୍ଣୁର ଜନ୍ମକୀର୍ତ୍ତି ନ ଥିଲା ଆଜଯାଏ
ଏଠାରେ ନୃସିଂହଲୀଳା ହୋଇଲା ଉଦୟେ ।
ଧନ୍ୟ ସେ କୃଷ୍ଣବଲ୍ଲଭ ଦ୍ୱିତୀୟ କଶ୍ୟପ
ତୃତୀୟରେ ଜନ୍ମ ହେବେ ଦଶରଥ ରୂପ ।
ଚତୁର୍ଥରେ ଦଶରଥ ରୂପେ ଅବତରି
ଯାଙ୍କ କୋଳେ ଜନ୍ମି ହରି ଦୈତ୍ୟ ନାଶକରି ।
ଏ ଯେ ମୁରାସୁର ଜନ୍ମି ଅଛି ହୋଇ ଦୁଷ୍ଟ
ଭାଇ ମରଣେ ଆସିଛି ବହି ମନେ ରୁଷ୍ଟ ।
ଏ କଥା ବଦରିଦେଶେ ଗୋଚର ନୁହଇ
ବଲ୍ଲଭ ନଦୀକି ସ୍ନାନ କରିବାକୁ ଯାଇ ।
ସ୍ନାନ କରିସାରି ପୁଣି ସେ ବଲ୍ଲଭ ରାଜା
ସନ୍ଧ୍ୟା ପଢ଼ିଣ ଆସନ୍ତି କରି ସୂର୍ଯ୍ୟପୂଜା ।
ହରଙ୍କୁ ସେ ସେବା କରି ଆସନ୍ତେ ବାହୁଡ଼ି
ଏଥି ଉତ୍ତାରେ ଦୈତ୍ୟଙ୍କ ଆଗେ ଗଲେ ପଡ଼ି ।
ଦେଖନ୍ତେ ଅସୁରଙ୍କୁ ନ ଦିଶେ ବୁଦ୍ଧି ବାଟ
ଚାହାନ୍ତି ଶ୍ୱାସ ଉଡ଼ିଲା ପ୍ରାୟେ ମଟ ମଟ ।
ମନରେ ପାଞ୍ଚନ୍ତି ରାଜ୍ୟ ଗଲା ମୋର ହୁଡ଼ି
ଦେଖୁ ଦେଖୁ ଦୈତ୍ୟ ଆସି ପଡ଼ିଲେକ ମାଡ଼ି ।
ଅଖଡ଼େ ମୋର ପୋଏ ଗଲେକ ଏବେ ନାଶ
ଏରୂପେ ପାଞ୍ଚୁ ରାଜାଙ୍କୁ ଧଇଲା ରାକ୍ଷସ ।
ପ୍ରତାପ ସିଂହ ବୋଲି ସେ ମୁର ବଡ଼ ସୈନ୍ୟ
କୃଷ୍ଣବଲ୍ଲଭଙ୍କୁ ଧରିନେଲା ସେ ଅଜ୍ଞାନ ।
ପାଟଡୋରେ ବାନ୍ଧି ରଥେ ରଖିଲାକ ନେଇ
ଏହା ଚାର କହିଲାକ ବଦ୍ରି ନଗ୍ରେ ଯାଇ ।
ବୋଇଲା ଭୋ ଦେବ ଏବେ ଶୁଣିମା ନୃସିଂହ
ଦୈତ୍ୟ ଆସି ବେଢ଼ିଲେଣି ବଦରିକା ସ୍ୱର୍ଗ ।
ସ୍ନାନସାରି ଆସୁ ଆସୁ ଦେଖିଲୁ ଯେ ବାଟେ
ଅପାର ସୈନ୍ୟ ଅଛନ୍ତି ସ୍ୱାମୀ ମୁର ଥାଟେ ।
ଅଲୋକିତ ପଡ଼ିଛନ୍ତି ବନଦେଶ ମାଡ଼ି
ଶୁଣି ଧାଇଁଲେକ ନରସିଂହ ନିଶ ମୋଡ଼ି ।
ପିତା ବନ୍ଧାହେବା ଶୁଣି ହେଲେ କୋପାନଳ
ଅଙ୍ଗୁ ଜାତକଲେ କୋଟି ନରସିଂହ ବଳ ।
ସମସ୍ତଙ୍କୁ ଆଜ୍ଞାଦେଲେ ଅସୁରଙ୍କୁ ମାର
ବାପକୁ ବେଗେ ଛଡାଇ ଘେନିଆସ ମୋର ।
ଶୁଣିଣ ଧାଇଁଲେ ଅନ୍ତରାଳେ ହରିଗଣ
ଅସୁର ଜାଣିଛନ୍ତି ଏ ଅଟନ୍ତି ବ୍ରାହ୍ମଣ ।
ସମରକୁ ପ୍ରତ୍ୟକ୍ଷ ସେ ଅଟନ୍ତି ଯେ ରାହୁ
ଦୈତ୍ୟଙ୍କୁ ବେଢ଼ିଲେ ଶତେଗୁଣ କହୁ କହୁ ।
ମିଳିଲେ ବିଷ୍ଣୁର କାର୍ଯ୍ୟ ଅର୍ଥେ ସର୍ବେ ଆସି
ଅସୁର ଥାଟକୁ ସେହି ଦୁଇଗୁଣ ଦିଶି ।
ଶୁଣିଣ ନାରଦ ତାହା ଆଚମ୍ବିତ ହେଲେ
ପିତାଙ୍କ ପାଦେ ଲୋଟିଣ ନମସ୍କାର କଲେ ।
ବୋଇଲା ସ୍ୱାମୀ ଲାଗିଲା ମୋତେ ଆଚମ୍ବିତ
ଶ୍ରୀନାରାୟଣ ପ୍ରଭୁ ଯେ କଲେ ଏତେ ଜାତ ।
ଜନ୍ମିଲେ ଅନେକ ନରଦେହୀ ବିଷ୍ଣୁ ଦେହୀ
କିରୂପେ ଯୁଝିଲେ ଯେହୁ ହୃଦେ ନାମ ବହି ।

ସେ ନାମମାନ ଶୁଣିବି କିଛି ମୋତେ କହ
ଶୁଣି ବିଧାତା ହସିଲେ ହୋଇ ଟହ ଟହ ।
ବ୍ରହ୍ମା ବୋଇଲେ କହିବା ଆଛା ସେହି ନାମ
ଉଚ୍ଚ ନୀଚ ବୋଲି ତହିଁ ନାହିଁ ପରିମାଣ ।
ପ୍ରଥମ ହୋଇଲେ ଜାଣ ଉଗ୍ର ନରସିଂହ
ଅଭୟ ନୃସିଂହ ଆଉ ସଭୟ ନୃସିଂହ ।
ସୋମହଂସ ନୃସିଂହ ଯେ ସୁକ୍ଷେଣ ନୃସିଂହ
ବୀର ନରସିଂହ ଆଉ ଉଗ୍ର ନରସିଂହ ।
ଧୀର ନରସିଂହ ବିକଟାଳ ନରସିଂହ
ବିକଟ ନୃସିଂହ ବିକରାଳ ନରସିଂହ ।
ବିଦାରଣ ନୃସିଂହ ଯେ କରାଳ ନୃସିଂହ
ଭୀଷଣ ନୃସିଂହ ଆଉ ବିରାଳ ନୃସିଂହ ।
ବିହଡ଼ା ନୃସିଂହ ପୁଣି ଭୈରବ ନୃସିଂହ
ଶ୍ରୀବରାହ ନରସିଂହ ବିହ୍ୱଳା ନୃସିଂହ ।
ବୀରବେତାଳ ଯେ ବୀରଭଦ୍ର ନରସିଂହ
ସଦୟ ନରସିଂହ ଯେ ସୁଭଟ ନୃସିଂହ ।
ଅଜଟ ନୃସିଂହ ପୁଣି ଉଭଟ ନୃସିଂହ
ଅଘୋଟ ନୃସିଂହ ଆଉ ସୁଭଦା ନୃସିଂହ ।
ବିଜୟ ନୃସିଂହ ଜାଣ ଜୟ ନରସିଂହ
ସାଧ ନରସିଂହ ଆଉ ସିଦ୍ଧ ନରସିଂହ ।
ମହେନ୍ଦ୍ର ନୃସିଂହ ପୁଣି ମୃଗେନ୍ଦ୍ର ନୃସିଂହ
ଶ୍ରୀବ୍ୟାଘ୍ର ନରସିଂହ ଯେ ଉଦ୍ଦଣ୍ଡ ନୃସିଂହ ।
ଶ୍ରୀକାଳ ନରସିଂହ ଯେ ଅକାଳ ନୃସିଂହ
ଘୋର ନରସିଂହ ପୁଣି ଅଘୋର ନୃସିଂହ ।
ମିତ୍ର ନରସିଂହ ପୁଣି ସୁମିତ୍ର ନୃସିଂହ
ଚଣ୍ଡ ନରସିଂହ ପୁଣି ପ୍ରଚଣ୍ଡ ନୃସିଂହ ।
ବ୍ରହ୍ମ ନୃସିଂହ ଆବର ଧର୍ମ ନରସିଂହ
ସୁକର୍ମ ନୃସିଂହ ଜାଣ ଅଚଳ ନୃସିଂହ ।
ନିଚଳ ନରସିଂହ ଯେ ଘଞ୍ଚାଳ ନୃସିଂହ
ପଞ୍ଚାକ ନରସିଂହ ଯେ ପିତୃ ନରସିଂହ ।
ମାତୃ ନରସିଂହ ଶିରୀବନ୍ତ ନରସିଂହ
ଧ୍ରୁବ ନରସିଂହ ପୁଣି ସର୍ବ ନରସିଂହ ।
ଶ୍ରୀଜ୍ଞାନ ନରସିଂହ ଯେ ଅଜ୍ଞାନ ନୃସିଂହ
କୁଜ୍ଞାନ ନରସିଂହ ଯେ ନେତ୍ର ନରସିଂହ ।
ସୁନେତ୍ର ନରସିଂହ ଯେ ସୁପାତ୍ର ନୃସିଂହ
ବେତ୍ର ନରସିଂହ ପୁଣି ଅହୋତ୍ର ନୃସିଂହ ।
ପୁରୋତ ନୃସିଂହ ଯତୋମିତ୍ର ନରସିଂହ
ଜନ୍ମିଲେ ଏ ଆଦି ନରସିଂହ ବିଷ୍ଣୁ ଅଙ୍କ ।
କଣ କଣକେ ପାରନ୍ତି ଏହି ମେରୁ ଟାଳି
କେହୁ ଟାଳି ଆସନ୍ତେଣ କର୍ମେ ମହୀସ୍ଥଳୀ ।

ଶୁଣ ହୋ ନାରଦ ଯେତେ ଜନ୍ମିଲେ ନୃସିଂହ
କେ ଅନ୍ତକରି ଲେଖିବ ବହି ନରଅଙ୍ଗ ।
ନୃସିଂହ ପୁରାଣ ଏହୁ ଅକଳନା ଗ୍ରନ୍ଥ
ଶ୍ରୁତି ପଢ଼ିଥିଲେ ଯେ ନ ପାଇ ଏହା ଅନ୍ତ ।
ଅସଂଖ୍ୟକ ଅଟେ ବହୁ ନୃସିଂହଙ୍କ ନାମ
ସଂକ୍ଷେପି ତା କହିବାକୁ ଅଛି କେହୁ କ୍ଷମ ।
ଯେତେ ଏହି ବ୍ରହ୍ମାଣ୍ଡରେ ଛନ୍ତି ନରଦେହୀ
ନୃସିଂହ ପୁରୁଷ ସର୍ବଘଟେ ବସିଥାଇ ।
ନୃସିଂହ ନ ବସିଲେଟି ନୁହେଁ କ୍ରୋଧ ଅଙ୍ଗ
ଯେତେ ନର ବ୍ରହ୍ମାଣ୍ଡରେ ସମସ୍ତେ ନୃସିଂହ ।
ଏ ନୃସିଂହଗଣ ସିନା ନରଅଂଶେ ଜନ୍ମି
ନୃସିଂହ ନାମ ବହିଲେ ତେଣୁ ଅନ୍ତର୍ଯ୍ୟାମୀ ।
ଯେତେ ନରସିଂହ ସର୍ବେ ଜାଣ ନରଦେହୀ
ତେଣୁଟି ନରେ କ୍ରୋଧକୁ ନ ପାରନ୍ତି ସହି ।
କୀଟଠାରୁ ବ୍ରହ୍ମଯାଏ ସବୁ ନରସିଂହ
ବ୍ରହ୍ମା ବିଷ୍ଣୁ ହର ଆଦି ଅଛନ୍ତି ଏ ଅଙ୍ଗ ।
ନୃସିଂହଙ୍କୁ ତେଜି କର୍ମ ଶଙ୍କା ନାହିଁ କାର
ନୃସିଂହ ବସନ୍ତି ସର୍ବ ଜୀବ ହୃଦୟର ।
ନୃସିଂହ ଛାଡ଼ି ସଂସାରେ କେହି ନାହିଁ ବଡ଼ି
ନ ଚିହ୍ନଇ ଭଲମନ୍ଦ ପ୍ରକୃତିରେ ପଡ଼ି ।
ତେଣୁ ଠିକେ ଠିକେ କହିଲଇଁ ଥୋକେ ନାମ
ଉଚ୍ଚ ନୀଚ ଦୁଇ ଏଥି ନାହିଁ ପରିଣାମ ।
ଏବେ ନୃସିଂହମାନଙ୍କ ବର୍ଣ୍ଣ ଭଲେ ଶୁଣ
ଶ୍ୱେତ ପୀତ ହରିତ ଯେ ଆରକତ ବର୍ଣ୍ଣ ।
ପୀତ ଗଉର ପାଣ୍ଡୁର ଧୂମ୍ର ନୀଳ କଳା
ଅମ୍ବୁଜଳ ମଧୁର ଯେ କୁଙ୍କୁମ ଶ୍ୟାମଳା ।
ପଚାବର୍ଣ୍ଣ କୃଷ୍ଣବର୍ଣ୍ଣ ଧଳାବର୍ଣ୍ଣ କରି
ଏତେ ବର୍ଣ୍ଣେ ହରିଗଣ ଛନ୍ତି ଅବତରି ।
ରବି ଶଶୀ ପ୍ରାୟ ଦିଶେ ତାର ବର୍ଣ୍ଣ ଜ୍ୟୋତି
କେ ଦିଶେ ବିଜୁଳି ପ୍ରାୟ ନବଗ୍ରହ କାନ୍ତି ।
ଏରୂପେ ନୃସିଂହଗଣ ହେଲେ ଅବତାର
ତାଙ୍କରୂପ ବର୍ଣ୍ଣିବାକୁ ମୁଁ କେତେ ମାତର ।
ଯେବଣ ଶ୍ରୀହରିଗଣ ସ୍ୱୟଂ ବ୍ରହ୍ମମୂର୍ତ୍ତି
ପଢ଼ିବ ଶୁଣିବ ଯେହୁ ଲଭିବ ସେ ଗତି ।
ହେଳାମାତ୍ରେ ଶୁଣିଲେଟି ନ ଘେନିବ ଯମ
ସଙ୍କଳପେ ଶୁଣିଲେ ତ ହେବ ପୂର୍ଣ୍ଣକାମ ।
ସୁଚିତ୍ତେ ଶୁଣିଲେ ଶିରୀ ସମ୍ପଦ ଯେ ବଢ଼େ
ରାଜଭୟ ଯାଇ ଶତ୍ରୁ ଆପଦ ନ ପଡ଼େ ।
ଚୋର ସର୍ପ ଜଳ ବ୍ୟାଘ୍ର ସବୁଠାରୁ ତରେ
ନାନା ଭୟରୁ ରଖନ୍ତି ତାକୁ ଚକ୍ରଧରେ ।

ଦେହ ଅନ୍ତେ ସେହି ଲୋକ ବସେ ଯାଇ ସ୍ୱର୍ଗେ
ଉଦ୍ଧରି ତାରନ୍ତି ତାକୁ ପ୍ରଭୁ ବାସୁଦେବେ ।
ସେ ନୃସିଂହ ସ୍ୱାମୀପାଦେ ମୋର ନିତ୍ୟସେବା
ବିପ୍ର ପୀତାମ୍ବରଙ୍କୁ ଯେ ଗତି ମୁକ୍ତି ଦେବା ।

❋ ❋ ❋

## ନୃସିଂହଗଣଙ୍କର ଯୁଦ୍ଧ ଓ କୃଷ୍ଣବଲ୍ଲଭ ରାଜାଙ୍କର ମୁକ୍ତି

ବଦୟନ୍ତି ବେଦବ୍ରହ୍ମା ଶୁଣ ହେ ନାରଦ
ଏହି ନୃସିଂହ ପୁରାଣ ଅଟେ ମୋକ୍ଷପ୍ରଦ ।
କହିବା କୃଷ୍ଣବଲ୍ଲଭ କଥା ଶୁଣ ଏବେ
ବିଷ୍ଣୁର ପିତାକୁ ଘେନିଗଲେ ଯେ ଦାନବେ ।
ସେ ଦୈତ୍ୟଙ୍କୁ ହରିଗଣେ ପଡ଼ିଲେ ଯେ ମାଡ଼ି
ବଲ୍ଲଭଙ୍କୁ ଛଡ଼ାଇଲେ ରାକ୍ଷସଙ୍କୁ ବେଢ଼ି ।
ଶ୍ୟେନପକ୍ଷୀ ପ୍ରାୟେ ଘୋଟିଗଲେ ଦେଖୁ ଦେଖୁ
ଜଣ ଜଣକରେ ମୋଡ଼ି ପକାନ୍ତି ଦୈତ୍ୟଙ୍କୁ ।
ପିଟିଲେ ସେ ଗିରିବର ସମ ଆଣ୍ଟେ ଶୂଳ
ତୁଳାଶେଯ ପ୍ରାୟ ପଡ଼ି ମଲେ ଦୈତ୍ୟବଳ ।
ପ୍ରତାପର ରଥେ ଏକ ନୃସିଂହ ଯେ ଉଠି
କୃଷ୍ଣବଲ୍ଲଭର ଦେଲେ ପାଟଡୋର କାଟି ।
ସେ ନୃସିଂହ ନାମ ଅଟେ ଜିଅର ନୃସିଂହ
କୃଷ୍ଣବଲ୍ଲଭଙ୍କୁ କନ୍ଧେ ବସାଇଲେ ବେଗ ।
ଦେଖି ସେ ପ୍ରତାପ ଦୈତ୍ୟ ଧଇଲାକ ଧନୁ
ବିନ୍ଧିଲାକ ଶତ୍ରେବାଣ ଜାଣି ଶତ୍ରୁଭାନୁ ।
ବାଣ ବାଜନ୍ତେ ନ ମାନେ ଜିଅର ନୃସିଂହ
ଲୋକମାନେ ନୃସିଂହର ଅଟେ ବଜ୍ରଅଙ୍ଗ ।
ଖଡଗ କୁନ୍ତକୁ ସେହୁ ନ କରନ୍ତି ଭୟ
ବାଜନ୍ତେ ହସନ୍ତି ଟହ ଟହ ଅପ୍ରମେୟ ।
ବିନ୍ଧଇ ପ୍ରତାପ ଦୈତ୍ୟ ଅନୁକ୍ଷଣେ ବାଣ
ଗଦା ଭୁଷଣ୍ଡି ମୁଦ୍‌ଗର ଗୁରୁଜ କୃପାଣ ।
ଶରମାନେ ପଡ଼ିକରି ହେଉଛନ୍ତି ଚୂର
ଯେଣୁ ନରସିଂହଗଣ ଅଜର ଅମର ।
ଯାଠି କୁନ୍ତ ଛେଲ ଆଉ ବାବଲ ଶାବେଳି
ହରିଗଣ ଦେହେ ପଡ଼ି ହେଉଛନ୍ତି ଧୂଳି ।
ଜିଅର ନୃସିଂହ ଘେନି ଆସେ ବଲ୍ଲଭଙ୍କୁ
ଦେଖିଣ ସେ ହରିଗଣେ ଶ୍ରଦ୍ଧା କଲେ ତାଙ୍କୁ ।
ମାଇଲେ ପ୍ରତାପ ଦୈତ୍ୟ ସୈନ୍ୟ ବେଢ଼ିକରି
ଘୋର ଗହ ଗହ ନାଦେ ଆସେ ଦିଗପୂରି ।
ଜିଅର ଯେ ଆଜ୍ଞାଦେଲେ ଶୁଣ ହରିବୀରେ
ଦୈତ୍ୟଙ୍କୁ ଓଗାଳ ମୁହିଁ ଯାଉଅଛି ଖରେ ।
କୃଷ୍ଣବଲ୍ଲଭଙ୍କୁ ଦେଇ ଆସି ବିଷ୍ଣୁ ପାଶେ
ତେବେ ସର୍ବେ ମିଶି ଯୁଦ୍ଧ କରିବା ସରୋଷେ ।
ଶୁଣି ବୀରମାନେ ଧାଇଁଗଲେ କୋଟି କୋଟି
ବାମକରେ ଶୂଳ ଧରି ଡାହାଣରେ ଯାଠି ।
ଧନୁ ତୂଣ ନାରାଚ ଯେ କୁଠାର ଖଡଗ
ମହାପ୍ରତାପ କରିଣ ଉଠିଲେ ନୃସିଂହ ।
ଲହଲହ ଜିହ୍ୱା କରି ଗହଗହ ନାଦେ
କିଳିକିଳା ରାବେ ଧାଇଁଗଲେ ଗଦଗଦେ ।
ମହାକୋପେ ସେ ବ୍ରହ୍ମାଣ୍ଡଯାକ ଗଲେ ଘୋଟି
ପାଷାଣ ବୃଷ୍ଟି ପରାୟେ ଗଲେ ସର୍ବେ ଉଠି ।
ମେରୁ ସମାନେ ଆଣିଣ ପହୁଡ଼ିଲେ ଶୂଳ
ରମ୍ଭାବୃକ୍ଷ ପ୍ରାୟେ ପଡ଼ିଗଲେ ଦୈତ୍ୟବଳ ।
ସେ ପ୍ରତାପ ସୈନ୍ୟ ସଙ୍ଗେ ଆଣିଥିଲା ଯେତେ
ଶତକୋଟି ବାରପଦ୍ମ ହୋଇବ ଲେଖନ୍ତେ ।
ଅନେକ ଶର ବିନ୍ଧନ୍ତେ ଧରି ଦୈତ୍ୟମାନେ
କିଞ୍ଚିତ ପ୍ରାୟ ମଣନ୍ତି ତାହା ହରିଗଣେ ।
ଅସୁର ବିନ୍ଧନ୍ତି ଶର ନ କରନ୍ତି ଭୟ
ବଜ୍ରେ ନିର୍ମିତ ନୃସିଂହଗଣଙ୍କର କାୟ ।
ଏହିରୂପେ ବେନିବଳ ଲାଗିଲେ ସମରେ
ନାନାବିଧ ଶରନେଇ ବିନ୍ଧନ୍ତି ଅସୁରେ ।
ସମର କରୁ ଯେ ଦିନ ହେଲା ବେନିଭାଗ
ମେଦଚ୍ଛେ ନାଶିଲେ ଏହା ଉଗ୍ର ନରସିଂହ ।
ସୂର୍ଯ୍ୟ ଚଳିଯାନ୍ତେ ହେଲା ଅଦୃଶ୍ୟ ଯେ ତେଜ
ପୁଣିହିଁ ଉଭା ନୃସିଂହ ଧରିଲେ ଦନୁଜ ।
ଯୋଜନେକ ଯାଏ ସ୍ୱାମୀ ବଢ଼ାଇଲେ କର
ପଞ୍ଚାଅଶୀ ଲକ୍ଷ ଯାଏ ଧାଇଁଲେ ଅସୁର ।
ବୁଲାଇ ଫିଙ୍ଗିଲେ ବାତଚକ୍ରେ ସିନ୍ଧୁଜଳେ
ସିନ୍ଧୁମଧ୍ୟେ ପଡ଼ିଲେ ଯେ ବଡ଼ବା ଅନଳେ ।
ଲେଉଟି ସେ ଅସୁରଙ୍କୁ ଧଇଲେ ନୃସିଂହ
ନାଶିଲେ ଅନଳେ ଫିଙ୍ଗି ତାହାଙ୍କର ଦେହ ।
ପଡ଼ି ସର୍ବେ ହୋଇଗଲେ ତହିଁରେ ଦହନ
ଏତେ ତୋତେ ବୋଲି କେହି କରିବ ପ୍ରମାଣ ।
ଏହିରୂପେ ହରିଗଣେ ଅସୁରଙ୍କୁ ମୋଡ଼ି
ବଡ଼ବାନଳେ ପକାଇ ଦେଲେ ସବୁପୋଡ଼ି ।
ଶୁଣ ହେ ନାରଦ ସେହି ବଡ଼ବାଗ୍ନି ଗର୍ଭେ
ଦେବତା ହେଲେ ତହିଁରେ ପଡ଼ି ଭସ୍ମ ଯିବ ।
ପଞ୍ଚଦେଶ ସ୍ୱରୂପକୁ ଧରି ବୈଶ୍ୱାନର
ଅଗ୍ନିକୁଣ୍ଡେ ଅଛନ୍ତି ସେ କରି ରହି ଘର ।
ଶୁଣ ସେ ଅଗ୍ନିମାନଙ୍କ କହିବା ଯେ ନାମ
ପ୍ରଥମେ କ୍ରୋଧ ଅନଳ ଅଟେ ଅଗ୍ନି ବ୍ରହ୍ମ ।

ଦ୍ୱିତୀୟେ ବର୍ଣ୍ଣାନଳ ତୃତୀୟେ କାଳାନଳ
ଚତୁର୍ଥେ ବଡ଼ବାନଳ ବୋଲାନ୍ତି ଅନଳ ।
ଜ୍ୱାଳାନଳ ପିଙ୍ଗଳ ଯେ ପ୍ରଚଣ୍ଡାଗ୍ନି ଜାଣ
ପ୍ରଳୟ ଅନଳ ରୁଦ୍ରାନଳ ଏବେ ଶୁଣ ।
ପବନ ଅନଳ ଦାବାନଳ ପ୍ରଜ୍ୱଳାଗ୍ନି
ଯୋଗାନଳ ବହ୍ନ୍ୟାନଳ ବୈଶ୍ୱାନର ଘେନି ।
ଏହିରୂପେ ଅଗ୍ନି ନାମ ଏକେ ଏକେ କହି
ଅଗ୍ନିକୋଣେ ଅଛନ୍ତି ସେ ସିନ୍ଧୁପାଖେ ରହି ।
ତହିଁରେ ପଡ଼ି ଦଇତ୍ୟେ ଯାଉଛନ୍ତି ଜଳି
କେବଳ ଫିଙ୍ଗିବା ଯାଏ ଥାନ୍ତି ଆଗେ ମିଳି ।
ଏରୂପେ ପନ୍ଦର ରୂପ ଅଗ୍ନିଙ୍କର ଜାଣ
ରହିଲେ ଚଉଦରୂପେ ଚଉଦ ଭୁବନ ।
ଆବର ରୂପେକ ଯାଇ ଭୁବନେ ମିଳନ୍ତେ
ସେହିଟି ଅଭକ୍ଷ୍ୟ ଦ୍ରବ୍ୟ ଭକ୍ଷନ୍ତେ ପଡ଼ନ୍ତେ ।
ଅମେଧ ମଧ ଅଶୁଦ୍ଧ କେହି ନ ବଞ୍ଚନ୍ତି
ମୁଖେ ପଡ଼ିଲେ ସମସ୍ତେ ଭସ୍ମ ହୋଇଯାନ୍ତି ।
ଧନ୍ୟ ସେହୁ ବ୍ରହ୍ମଅଗ୍ନି ବ୍ରହ୍ମାଙ୍କର ପୁଅ
ବ୍ରହ୍ମାଣ୍ଡେ ପୂରି ଅଛନ୍ତି ହୋଇ ଜ୍ୟୋତିର୍ମୟ ।
କୀଟୁଁ ବ୍ରହ୍ମ ପରିଯନ୍ତେ ଗର୍ଭେ ଛନ୍ତି ବହି
ସେ ଜଠରେ ଦେଖ ବୀର୍ଯ୍ୟ ପଡ଼ି ନାଶଯାଇ ।
ଏମନ୍ତ ଠାକୁରଙ୍କର ହୋଇଛି କରୁଣା
ତେଣୁ ନୃସିଂହ ମାରନ୍ତେ ଦୈତ୍ୟ ଅକଳନା ।
କେ ଶତେ କେ ପଚାଶ କେ ମାରନ୍ତି ସହସ୍ରେ
କେ ବିଧା ମାରିଣ ଲକ୍ଷେ ନାଶେ ମହାରୋଷେ
ଦ୍ୱାଦଶ ଖର୍ବ ଯେ ଯୋଦ୍ଧା ସୈନ୍ୟ ଶତକୋଟି
ଏକା ନିଃଶ୍ୱାସକେ ଗଲେ ନୃସିଂହ ଯେ ପିଟି ।
ସୈନ୍ୟର ମରୁଡ଼ି ଦେଖି ଧାଇଁଲେ ପ୍ରତାପ
ମହାରୋଷେ ବିନ୍ଧିଲାକ ଶର ଅନର୍ଯ୍ୟାପ ।
ମେରୁ ଭେଦିବା ସମର୍ଥ ଅର୍ଥେ ଯାର ବାନା
ପ୍ରଳୟ ଅନଳ ପ୍ରାୟେ ଜାଣ ତୀକ୍ଷ୍ଣ ମୁନା ।
ବିନ୍ଧିଲା ସହସ୍ର କୋଟି ବାଣ ଏକାବେଳେ
ଦେଖି ନୃସିଂହ ଦୈତ୍ୟଙ୍କୁ ପଶିଲେ ପାତାଳେ ।
ବାଣ ବ୍ୟର୍ଥହେତୁ ହେଲେ ଲେଉଟିଣ ଦୃଶ୍ୟ
ଗତରୁ ଶହେ ଗୁଣରେ ପୂରିଲେ ଆକାଶ ।
ତାହା ଦେଖିଣ ଦୈତ୍ୟଙ୍କୁ ନ ସ୍ଫୁରଇ କିଛି
ବୋଇଲା ଦ୍ୱିଜ ନୁହନ୍ତି ଏହି ବିପ୍ରବଞ୍ଚି ।
ଦେଖୁ ଦେଖୁ ସୈନ୍ୟ ମୋର ନାଶିଲେକ ଏହି
ଏହାଙ୍କୁ ନ ମାଇଲେଂତ ରକ୍ଷା ମୋତେ ନାହିଁ ।
ଏତେ ବୋଲି ଶୂଳ କରେ ଧରି ଦୈତ୍ୟବୀର
ବିଷ୍ଣୁର ସୈନ୍ୟ ଉପରେ ପଡ଼ିଲେ ଅସୁର ।

ଦରାଣ୍ଡି କରେ ଧରିଣ ଲକ୍ଷେ ଦେଲା ଗିଳି
ଲେଉଟି ଧଇଲା ସାତଲକ୍ଷ ପୁଣ ତୋଳି ।
ପର୍ବତେ ଛେଚି ଗିଳିଲା ତାକୁ ମୁଖବାଟେ
ବାହାରିଲେ ହରିଗଣ କର୍ଣ୍ଣ ନାସାପୁଟେ ।
ତାହା ଦେଖି ଦୈତ୍ୟବୀର ହେଲା ଆଚମ୍ବିତ
ପାଞ୍ଚିଲା ଏମାନେ କେବେ ନ ହୁଅନ୍ତି ହତ ।
ଗିଳିଲା ଗର୍ଭରୁ ଗିଳିଗଲେ ନାସା କର୍ଣ୍ଣେ
ଦ୍ୱିଜ ନୁହନ୍ତି ଅଟନ୍ତି ଏହୁ ଦେବଗଣେ ।
ବ୍ରାହ୍ମଣ ରୂପକୁ ଧରିଛନ୍ତି ଅବତରି
ହୁଅନ୍ତୁ ଦେବତା ପଛେ ଆଜି ଯିବି ମାରି ।
ଏତେକ ବିଚାରି ଦୈତ୍ୟ ହେଲା ପୁଣି କ୍ରୋଧ
ଦରାଣ୍ଡି ଧଇଲା ଯାଇ ସମସ୍ତଙ୍କ ପାଦ ।
ବୁଲାଇ ପିଙ୍ଗିଲା ବାତଚକ୍ର ଅନ୍ତରାଳେ
ଭୂମିରେ ସର୍ବେ ପଡ଼ିଲେ ଆସି ରବିତଳେ ।
ରହିଲେ ସେ ଠାବେ ଠାବେ ଦେବଗଣ ହୋଇ
ବୀରବେତାଳ ବୋଲିଣ ସେମାନଙ୍କୁ କହିଁ ।
ରହିଲେ ଅଷ୍ଟବେତାଳ ହୋଇ ଥୋକେ ପୁଣି
ଶୁଣ ବାବୁରେ ନାରଦ କହେ କୁଶପାଣି ।
ପୁଣିହିଁ ଦୈତ୍ୟ ଯାଇଣ ଧଇଲା ଥୋକାଏ
ଗଣିଲେ ଲେଖା ହୋଇବ ବାଷଠି ପଦ୍ମଏ ।
ତାହାଙ୍କୁ ଧରିଣ ଅନ୍ତରୀକ୍ଷେ ଦେଲା ଛାଟି
ସେମାନେ ରହିଲେ ତାରା ହୋଇ ଶୂନ୍ୟେଫୁଟି
ଯେ ଯାହାର ଜ୍ୟୋତି ଧରି ଦିଶିଲେ ଗଗନେ
ଆଜହିଁ ବସିଅଛନ୍ତି ତାରା ହୋଇ ଶୂନ୍ୟେ ।
ପୁଣିହିଁ ଧଇଲା ଶତେଖର୍ବ ଯାଇ ଦୈତ୍ୟ
ଉତ୍ତରକୁ ମୁଖକରି ଫିଙ୍ଗିଲା ବହୁତ ।
ସେ ସଂସାରେ ପଡ଼ି ହେଲେ ଛତିଶ ଯେ ଜାତି
ଯୁଗେ ଯୁଗେ ରହିଲେ ସେ ହୋଇ ନରମୂର୍ତ୍ତି ।
ଆବର ଯେତେ ଉବୁରି ଥିଲେ ହରିଗଣ
ଚକ୍ଷୁତରାଟି ସବୁରି ଧଇଲା ଚରଣ ।
ଚକ୍ରବୃତ୍ତେ ବୁଲାଇଣ ଫିଙ୍ଗିଲା କୌଣପ
ବିଞ୍ଚିହୋଇ ହରିଗଣେ ପଡ଼ି ଜମ୍ବୁଦ୍ୱୀପ ।
ଲତା ବୃକ୍ଷ ହେଲେ ଘନ ଘାସ ଦୁବ ଆଦି
ସଜୀବେ ରହିଲେ ସେହୁ ପୃଥିବୀକି ଭେଦି ।
ସମରେ ପଶିଣ ଦୈତ୍ୟ କଲା ଯେତେ ଯୁଦ୍ଧ
ଦହିଲା ରଣେ ପ୍ରତାପ ନୃସିଂହଙ୍କ ପଦ ।
ଯେତେକ ନରସିଂହଙ୍କୁ ଫିଙ୍ଗିଲା ସଂସାରେ
ପାତ୍ର ଅନୁସାରେ ପୂଜା ପାଇ ଯେ ଯାହାରେ ।
ଯେ ଯେଉଁସ୍ଥାନେ ପଡ଼ିଲେ ରହି ସେହିସ୍ଥାନେ
ନ ଉଠି ଭୁଞ୍ଜିଲେ ଚଣ୍ଡବଳୀ ଦେବ ଚିହ୍ନେ ।

ସେହି ଅଂଶ ଘେନି ସର୍ବେ ହେଲେ ଉତପତ୍ତି
କେହୁ ହେଲେ ଉଚ୍ଚ କେହୁ ହେଲେ ନୀଚଜାତି ।
କେହୁ ହେଲେ କାଲ କଣା କୁଜା ଜଡ଼ା ମନ୍ଦ
କେ ଅଷ୍ଟବକ୍ର ଟେରା କେ ମୂକ କେହୁ ଅନ୍ଧ ।
ଯେତେ ବୀରଗଣ ବିଷ୍ଣୁ ଜାତକଲେ ମହୀ
ସେମାନେ ପୁରୁଷ ରୂପେ ସବୁଘରେ ରହି ।
ଶଶକ ତୁରଙ୍ଗା ଆଉ ବଳଗା ହରିଣ
ଏ ଚାରି ବର୍ଣ୍ଣକୁ ଦେଖ ପୁରୁଷେ କହିଣ ।
ଏ ଚାରି ଜାତିରୁ ଦୁଇ ମିଳନ୍ତି ସଂସାରେ
ଯହୁଁ କଚା ତୁରଙ୍ଗା ବଳଗା ସବୁ ଘରେ ।
ଶଶକା ହରିଣୀ ଦୁଇ ନ ମିଳନ୍ତି କାହିଁ
ତଥାପି ହରିଣୀ ଜାତି ଲୋଡ଼ିଲେ ମିଳଇ ।
କୋଟିକେ ହେଲେ ଗୋଟିଏ ମାତ୍ର କାହିଁଥିବ
ଶଶକା ବର୍ଣ୍ଣେ ଜନ୍ମନ୍ତି ଏକା ବାସୁଦେବ ।
ଧନ୍ୟ ହେ ବିଷ୍ଣୁ ଅଙ୍ଗରୁ ଜନ୍ମ ହେଲେ ଯେତେ
ଭଲା ସେ ଦାନବ ଧରି ଫିଙ୍ଗିଲା ଜଗତେ ।
ଏରୂପେ ନୃସିଂହଗଣ ପଦା କରି ବୀର
ମୁରର ଛାମୁରେ ଯାଇ କହଇ ଅସୁର ।
ଅନେକ ପ୍ରତିଜ୍ଞା ତାର ଶୁଣି ଦୈତ୍ୟରାଜା
ପ୍ରତାପସିଂହକୁ ନେଇ କଲା ବହୁ ପୂଜା ।
ପ୍ରଶଂସା ଗୁଡ଼ିଏ ତାକୁ କରି ଦୈତ୍ୟମଣି
ଅନେକ ଧନ ଦ୍ରବ୍ୟ ଯେ ସମର୍ପିଲା ଆଣି ।
ବୋଇଲା ଧନ୍ୟ ପ୍ରତାପସିଂହ ବୀର ମୋର
କିରୂପେ ନାଶି ଅଇଲୁ ଏତେ ଦ୍ୱିଜବର ।
ଏତେକାଳେ ତୋର ଲାଗି ପାଇଲି ମୁଁ ଯଶ
ଏକା ହୋଇ ବିପ୍ରବରେ କେମ୍ନେ କଲୁ ନାଶ ।
କେଡ଼େ କେଡ଼େ କ୍ଷତ୍ରୀ ଯାଇ ନାହାନ୍ତି ବାହୁଡ଼ି
ଏବେ ଜାଣିଲି ସବୁରି ଶୋକ ଦେବି ଛାଡ଼ି ।
ଆଗହୁଁ ଯେବେ ପେଷିଣ ଥାନ୍ତି ତୋତେ ମୁହିଁ
ବ୍ରାହ୍ମଣ ଛାର ମାରନ୍ତା କିପାଁ ମୋର ଭାଇ ।
ତୋର ଲାଗି ହୃଦୁ ମୋର ଗଲା ଏବେ କିନ୍ତୁ
ପୁତ୍ରଙ୍କର ଶୋକ ମଧ୍ୟ ଛାଡ଼ିଲଇଁ ଚିତ୍ତୁ ।
କିସ ଦେଇ କରିବି ମୁଁ ତୋତେ ପୁରୁଷାର୍ଥ
ତୁ ମୋହର ପ୍ରାଣସଖା ଅଟୁ ପଞ୍ଚଭୂତ ।
ଏ ତିନିପୁରରେ ଭୋଗ ଅଛି ମୋର ଯେତେ
ନିଶ୍ଚିନ୍ତେ ତୁ ଭୁଞ୍ଜ ଏହା ଦେଲି ମୁହିଁତୋତେ ।
ଆବର ଏକ କଥାଏ ପଚାରୁଛୁ ଶୁଣ
କୃଷ୍ଣବଲ୍ଲଭ ପୁଅକୁ ମାରିଛୁ କି ପୁଣ ।
ପ୍ରତାପ ବୋଲେ ସ୍ୱାମୀ ଏ କଥା ନାହିଁ ଜାଣି
ସେହି ଯେବେ ରଣେ ଥିବେ ମରିଥିବେ ପୁଣି ।
କେ ଅନ୍ତ କରି କହିବ ବିପ୍ରେ ମରିବାର
ଖର୍ବ ଖର୍ବ କରି ଫିଙ୍ଗି ଦେଇଛି ଅପାର ।
କେ କାହିଁ ପଡ଼ିଲେ ଦେବ ଜଣାନାହିଁ ମୋତେ
ସପତ ଦିନେ ଅଇଲି ଯୁଝି ଅହୋରାତ୍ରେ ।
ତୁ ଯେ ଆସିଥିଲୁ ପଞ୍ଚଦଶ ଦିନ ମଧ୍ୟେ
ସବୁକୁହିଁ ରଣେ ମାରି ଆସିଲି ମୁଁ ଯୁଦ୍ଧେ ।
ସାତଦିନକୁ ମୋତେ ତ ନ ଅଣ୍ଟିଲେ କେହି
ଏବେ ତୁ ପ୍ରଳୟଯାଏ ସୁଖେ ଥାଅ ରହି ।
ଶୁଣିଣ ମୁର ଦୈତ୍ୟର ଉଲ୍ଲସିଲା କାୟେ
ଏଥୁଅନ୍ତେ ଚାର ମିଳି କରେ ଜୟେ ଜୟେ ।
ଦୂତକୁ ଦେଖିଣ ରାଜା ପଚାରଇ ବାଣୀ
ବୋଇଲା କହ ଆସିଲ କାହୁଁ ତୁମ୍ଭେ ପୁଣି ।
ଦୂତେ ବୋଇଲେ ଭୋଦେବ ଥିଲୁ ଯୁଦ୍ଧସ୍ଥାନେ
ଯେ ଯାହା ବିଷୟ ଦେଖି ଆସିଛୁ ନୟନେ ।
ମୁର ବୋଇଲାକ ତେବେ କହ କିନା ଦୁହେଁ
ଯୁଦ୍ଧରେ ମଲେ କି କୃଷ୍ଣବଲ୍ଲଭର ପୋଏ ।
ଏ କଥା ତୁ ଆଗ ମୋତେ କହ ତଥ୍ୟକରି
ଶୁଣିଲେ ଯିବି କନକାବତୀ ଯେ ନଗରୀ ।
ରାଜାର ମୁଖୁ ଏସନ କଥା ଦୂତେ ଶୁଣି
କହନ୍ତି ଯେ କରଯୋଡ଼ି ଶୁଣ ନୃପମଣି ।
ରଣେ ଅନେକ ବ୍ରାହ୍ମଣ ଗଲେ ଆଜି ପଡ଼ି
ମାରିଲା ତୋର ପ୍ରତାପସିଂହ ଆଗବଢ଼ି ।
ବଲ୍ଲଭପୁତ୍ରେ ଯେ ଏକା ଜୀଇଁଛନ୍ତି ଭଲେ
ଦେଖିଲୁ ଆନନ୍ଦବନେ ଦୁହେଁ ଆସିଥିଲେ ।
ଶୁଣିଣ ରାଜାର ଗଲା ସାହସ ଯେ ଭାଜି
ବିସ୍ମୟ ହେଲା ରାଜ୍ୟର ଆଶାକୁ ସେ ତେଜି ।
ବୋଇଲା ଜୀଇଛି ନିଜ ଶତ୍ରୁ ଯେବେ ମୋର
ସୈନ୍ୟ ଛାର ମଲାରୁ କି ହେଲା ଉପକାର ।
ରାଜାର ବିମନ ଦେଖି ଉଠିଲା ପ୍ରତାପ
ବୋଇଲା କାହିଁକି କିନା କରୁଛ ବିଳାପ ।
ସେ ବିପ୍ର ଛାର ଦୁହିଁକି କିପାଁ ଏଡ଼େ ଡର
ଆଜ ଏକା ଦେଖ କାଟି ଆଣିଦେବି ଶିର ।
ଏତେକ ଯଦ୍ୟପି ମୁହିଁ ନ କରଇ ଆଜ
କିପାଇଁ ବହିବି ଧନୁଶର ଆଉ ଭୁଜ ।
ତୁ ସିନା ପୃଥିବୀ ମଧ୍ୟେ ରାଜ ରାଜେଶ୍ୱର
ରହିବୁ ତୁ ଯୁଗେ ଯୁଗେ ହୋଇ ଅକ୍ରାମର ।
ଯଦି ମୁହିଁ ରଣେ ଯାଇ ନ ପାରିବି ମାରି
ବାହୁଡ଼ି ମୁଁ ନ ଆସିବି ଗଲି ସତ୍ୟ କରି ।
ଏତେକ କହି ପ୍ରତାପ ଉଠେ ଟେକି ଭୁଜ
ଧାଇଁଲା ପାଦଗତିରେ ନାହିଁ ଅଶ୍ୱ ଗଜ ।

ଲୁହାର ଗଦା ଧରିଣ ପଶେ ରଣେ ଯାଇଁ
ଶୁଣ ଆହେ ନାରଦ ଯେ କହୁଛନ୍ତି ବିହି ।
ଜିଅର ନୃସିଂହ ଆଣିଗଲେ ବଲ୍ଲଭକୁ
ଆନନ୍ଦବନେ ଭେଟିଲେ ଯାଇଁ ଗୋବିନ୍ଦଙ୍କୁ ।
କୃଷ୍ଣବଲ୍ଲଭକୁ ନେଇ ସମର୍ପନ୍ତେ ଆଗେ
ପୁତ୍ରକୁ ଦେଖି ଧଇଲେ କୋଳେ ପିତାବେଗେ ।
ହରଷ ହେବାର କଥା କେ ପାରିବ କହି
ଅମାବାସ୍ୟା ଚନ୍ଦ୍ରମା କି ଆସେ ଉଦେ ହୋଇ ।
ଦରିଦ୍ରର ଘରେ ନିଧି ମିଳିଲା କି ଆସି
ବନ୍ଧ୍ୟାର ଘରେ କି ଜନ୍ମ ହେଲା ବାଳଶିଷି ।
ତୃଷାର୍ତ୍ତ ଲୋକକୁ ଜଳପାନ କି ମିଳିଲା
ସେହିମତି କୃଷ୍ଣବଲ୍ଲଭର ମନ ହେଲା ।
ହୁଅନ୍ତି ବନ୍ଦୀ ଯିବାର କଥା କୁହାକୁହି
ପିଅର ଆଜ୍ଞାକଲେ ହେ ଶୁଣ ଭାବଗ୍ରାହୀ ।
ଅସୁର ଯେତେକ ସୈନ୍ୟ ଆଣିଥିଲା ସଙ୍ଗେ
ଶତେପଦ୍ମରୁ ଗଲେଣି ଦୈତ୍ୟ ବେନିଭାଗେ ।
ପ୍ରତାପ ସୈନ୍ୟ ମଲେଣି ପୁଣି ନଉକୋଟି
ସହି ନ ପାରି ଆସିଛି ଦୈତ୍ୟ ରଣେ ଉଠି ।
ଅସୁରର ବଳପଣ ଶୁଣ ନାରାୟଣ
ଚଉଦିଗେ ମୁଖକରି ଫିଙ୍ଗି ହରିଗଣ ।
ଯୁଦ୍ଧରେ ପଦାକରିଣ ଗଲା ରାଜା ପାଶ
ଲେଉଟି ଏବେ ସେ ଦେଖ ଆସୁଛି ରାକ୍ଷସ ।
ଶୁଣି କରି ହସ ହସ ହେଲେ ତହୁଁ ନାରାୟଣ
ବୋଇଲେ ମୋତେ କି ଆଉ ମିଳେ ହରିଗଣ ।
ମୁହିଁ ଯେବେ ଅଛି କେତେ ନୃସିଂହ ବା ନାହିଁ
ପିତା ଆଗ ଦେଖିଲି ମୁଁ ଭାଗ୍ୟ ମୋର ଏହି ।
ଆହେ ଜିଅର ନୃସିଂହ ଦେଖ ଏହିକ୍ଷଣି
ତୋତେ ସଙ୍ଗତରେ ଘେନିଯିବୁ ସୈନ୍ୟହାଣି ।
ଆବର ଅଛନ୍ତି ଯେତେ ହରିଗଣ ମୋର
ସମସ୍ତେ ହୁଅନ୍ତୁ ଏବେ ତୋର ପରିଚାର ।
ଏମନ୍ତ ବୋଲି ଚାହିଁଲେ ସ୍ୱାମୀ ପୁଣି ଅଙ୍ଗ
ତହୁଁ ଜନମିଲେ କେତେ ଭୈରବ ନୃସିଂହ ।
ସେ ଭୈରବମାନଙ୍କର ଶୁଣ ନାମ ଆଦ୍ୟେ,
ମହାକାଳ ଭୈରବ ଯେ ଜାତ ବିଷ୍ଣୁ ହୃଦେ ।
ପବନ ଭୈରବ ଆଉ ମୋହନ ଭୈରବ
ଦହନା ଭୈରବ ପୁଣି ଶୋଷଣ ଭୈରବ ।
ଉଶନ ଭଇରବ ଯେ ଭକ୍ଷଣା ଭୈରବ
ରହଣ ଭଇରବ ଯେ ସିହାଣ ଭୈରବ ।
ଆସ୍ୱାଦ ଭଇରବ ଯେ ଅଭୟ ଭୈରବ
ସୁଜୟ ଭଇରବ ଯେ ନିର୍ଗୁଣ ଭୈରବ ।

ତ୍ରିଗୁଣ ଭୈରବ ପୁଣି ଅଜପା ଭୈରବ
ସୁଜପା ଭଇରବ ଯେ ଜପ ଭଇରବ ।
ମାଧୁର୍ଯ୍ୟ ଭଇରବ ଯେ ଉଗ୍ର ଭଇରବ
ସୁବ୍ୟଗ୍ର ଭଇରବ ଯେ ଅଜ୍ଞାନ ଭଇରବ ।
ସୁଜ୍ଞାନ ଭଇରବ ଯେ ଅଜ୍ଞାନ ଭୈରବ
ଏରୂପେ ଭୈରବ ଜାତ କଲେ ବାସୁଦେବ ।
ରଣ ଭୟେ ନାଶିବାକୁ ହେଲେ ଏହୁ ଜାତ
କହିଲି ଠିକେ ଠିକେ ମୁଁ କେ କରିବି ଅନ୍ତ ।
ଯାହାକୁ ଅଛନ୍ତି ବିଷ୍ଣୁ ନାଥ ଜାତକରି
ତାହା ଲେଖିପାରେ କେହୁ ନରତନୁ ଧରି ।
ଏହା ଯେହୁ ସାବଧାନେ ପଢ଼ନ୍ତି ଶୁଣନ୍ତି
କୋଟିଏ ଜନ୍ମର ପାପ ସେ ଜନେ ହରନ୍ତି ।
ଅଜ୍ଞାନେ ପଢ଼ିଲେ କ୍ଳେଶ ଦୁଃଖ ନାଶଯାଇ
ଆୟୁଷ ଧନ ପୁତ୍ର ଯେ ସକଳ ବଢ଼ଇ ।
ଅଗୋଚର ପାପଯାକ ନ ରହଇ ପିଣ୍ଡେ
ଶୁଣିଲା ମାତ୍ରେ ଶରୀରୁ ସର୍ବ ଦୋଷ ଖଣ୍ଡେ ।
ଯମର ଯେ କାଳଦଣ୍ଡ ହୁଏ ଜାଣ ନାଶ
ଇହଲୋକ ଗତି ପରଲୋକ ମୁକ୍ତିବାସ ।
ଏ ନୃସିଂହ ପୁରାଣର ଏହି ଫଳଶ୍ରୁତି
ଫିଟେ ଦରିଦ୍ରବାଧା ନ ରହେ ମନେ ଭ୍ରାନ୍ତି ।
ରାଜଭୟ ଅପଚୟ ଆପଦହିଁ ନାଶେ
ମନୋବାଞ୍ଛା ସିଦ୍ଧକରି ବଞ୍ଚେ ସ୍ୱର୍ଗବାସେ ।
ସଂସାର ଲୋକଙ୍କୁ କରେ ଏ ପୁରାଣ ମୋକ୍ଷ
ଏ କଳିକାଳରୁ ସେହୁ ତାରଇ ପ୍ରତ୍ୟକ୍ଷ ।
ପ୍ରାଣୀଙ୍କି ମାୟା ବହୁତ ଯହୁଁ କଟାଳିଲା
ତେଣୁକରି ମହାପ୍ରଭୁଙ୍କର ଆଜ୍ଞା ହେଲା ।
ବୋଇଲେ ତୁ ବେଗେ କର ନୃସିଂହ ପୁରାଣ
ହୁଅନ୍ତୁ ଲୋକେ ଶୁଣିଣ ଭବୁ ପାର ପୁଣ ।
ଏ ରୂପେ ଆଜ୍ଞାରୁ ଲେଖୁଅଛି ମୁହିଁ ପଦ
ନ ପଢ଼ିଣ ପଣ୍ଡିତ ଯେ ଲୋଡ଼ୁ ମୋ ହୃଦ ।
ତଥାପି ମୁହିଁ ଲେଖି ନ ପାରେ ମୋର ମତେ
ଆପଣେ ସେ ପ୍ରଭୁ କହି ଲେଖାନ୍ତି ମୋ ହସ୍ତେ ।
ପ୍ରତ୍ୟକ୍ଷେ ରୂପ ଦେଖାନ୍ତି ମୋତେ ଭଗବାନ
ବସି ମୋ ହୃଦେ କହନ୍ତି ବଳେ ପଦମାନ ।
ସେହି ପ୍ରଭୁ ପାଦପଦ୍ମେ ମୋର ନମସ୍କାର
କହଇ ଶ୍ରୀ ପୀତାମ୍ବର ଯୋଡ଼ି ବେନିକର ।
ତୁମ୍ଭଙ୍କୁ ମୁଁ ସ୍ତୁତି କରୁଅଛି ନିରନ୍ତର
ଦୟାକରି ଦେବ ମୋତେ ନୃସିଂହ ପୟର ।
ତୁମ୍ଭ ଗୁଣଗାଥା କେହୁ ବର୍ଣ୍ଣିବ ହେ ହରି
ଦେଖି ନାହିଁ ମୁଁ ନୃସିଂହ ଚକ୍ଷୁ ଅଛି ଧରି ।

ତୁମ୍ଭର ଭକ୍ତଭାବରୁ ପ୍ରଭୁ ହେଲା ଦୃଶ୍ୟ
ଶାରଦା ଦେବୀ ଆଜ୍ଞାରେ ହେବ ପରା ଶେଷ
ପୂର୍ବଜନ୍ମ ଭାଗ୍ୟ ମୋର କହିବ କେ ତାହା
ତେଣୁକରି ଶାର୍ଦା ମୋ କଣ୍ଠେ ହେଲେସାହା ।
ଲଭିଲି ମୁଁ କୋଟି ମୁକ୍ତା ଜନ୍ମ କଲି ସାର
ବନ୍ଧୁବର୍ଗ କୁଟୁମ୍ବଙ୍କୁ ଭବୁଁ କଲି ପାର ।
ପାଇଲଇଁ ସେବା ପୂଜା ଜନମି ସଂସାରେ
ଯୁଗକୁ ଯୁଗ ଲେଖିଲି ସର୍ବଜ୍ଞ ପଣରେ ।
ଏଣୁକରି ମୋତେ ପ୍ରଭୁ ଦୟା କଲେ ବାରେ
ଦ୍ୱିତୀୟ ନୃସିଂହ ଗ୍ରନ୍ଥ ଲେଖିଲି ସଂସାରେ ।
ମହାପ୍ରଳୟେ ନ ପାଇ ପ୍ରଭୁ ନାମ ଅନ୍ତ
ଲେଖିଲି ପ୍ରଭୁଙ୍କ ନାମ ଗ୍ରନ୍ଥ ସାରସ୍ୱତ ।
ପଢ଼ିଲା ଲୋକ ଜ୍ଞାନରେ ହେବ ଜାଣ ତୋଷ
ଶୁଣିଲା ଲୋକଙ୍କୁ ବଇକୁଣ୍ଠେ ହେବ ବାସ ।
ନୃସିଂହ ପୁରାଣେ କରେ ଯେହୁ ଜନ ଲୟେ
ସେ ପ୍ରାଣୀଙ୍କି ଦିଅ ପ୍ରଭୁ ଧନ ରତ୍ନମୟେ ।
ଲେଖିବା ଲୋକମାନଙ୍କ କଣ୍ଠେ ଥାଅ ବସି
ଅଶେଷ ଜନ୍ମ କଲ୍ମଷ ଦିଅ ତାର ନାଶି ।
ଗ୍ରନ୍ଥର ମହିମା ମୁଖେ ପାରିବ କେ ଭାଷି
ପୀତାମ୍ବର ଦାଶ ସିନା ଲେଖିଲି ମୁଁ ବସି ।
ମୋହଠାରେ ମହାପ୍ରଭୁ ଅନୁଗ୍ରହ ରଖି
ତେତିଶକୋଟି ଦେବତା ହେଲେ ତହିଁ ସାକ୍ଷୀ ।
ଦେବଦେବୀ ଉଗ୍ରଚଣ୍ଡୀମାନେ ଯେ ପ୍ରକୃତି
ନରପତି ନାରାୟଣ ବ୍ରହ୍ମା ବୃହସ୍ପତି ।
ନାନା କ୍ଲେଶ ରୋଗ ଆଦି ନୁହନ୍ତି ଭାଜନ
ପ୍ରଭୁ ଦୟାକଲେ ହୋନ୍ତି ସମସ୍ତ ପ୍ରସନ୍ନ ।
ସମସ୍ତଙ୍କୁ ମନେ ଭାବି ଲୟ କଲି ଯେଣୁ
ସନ୍ତୋଷେ ଶାରଦା ଦେବୀ କହି ଦ୍ୟନ୍ତିତେଣୁ ।
ଏଣୁକରି ଲେଖିଲି ମୁଁ ଗ୍ରନ୍ଥ ସାରୋଦ୍ଧାର
ଏକ ଅକ୍ଷରେ ମାତ୍ରା ନ ଦେଲେ ନର ଛାର ।
ଲେଖିବା ଭାବ ନାମକୁ ତୁମ୍ଭେ ଯେ ପ୍ରକାରେ
ଲକ୍ଷ୍ମୀଙ୍କି ଶ୍ରୀ ବାସୁଦେବ ଦିଶନ୍ତି ନେତ୍ରରେ ।
ତାରାକୁ ଚନ୍ଦ୍ର କର୍ଣ୍ଣରେ ଶୋଭା ଯେହ୍ନେ ଦିଶେ
ବିନ୍ଧାଣୀ ଆଣି କୁନ୍ଦିବ ଆଉ କି ସଦୃଶେ ।
କୁମୁଦଙ୍କୁ ଯେ ପ୍ରକାରେ ଅଟନ୍ତି ଟି ଶଶୀ
ଦିବସରେ ଶୋଭା ଦିଶେ ସୂର୍ଯ୍ୟ ତେଜରାଶି ।
ପ୍ରମୋଦ ହୋଇ ଭ୍ରମର ତେଜ ଯେହ୍ନେଗଞ୍ଜେ
କୁମୁଦ ପ୍ରଭା ଆନନ୍ଦ ମନେ ରସ ଭୁଞ୍ଜେ ।
ଶ୍ରୀନୃସିଂହ ନାମେ ଗ୍ରନ୍ଥ ଭକ୍ତଙ୍କୁ ସେରୂପେ
ଅମୂଲ୍ୟ ପଦ ପୀୟୂଷ ରସ ମନ ତାପେ ।
ପଞ୍ଚମ ସାଗର ଗ୍ରନ୍ଥ ଲେଖିବଇଁ ଜାଣ
ତହିଁର ବୃତ୍ତାନ୍ତ ଏବେ ସୁଜ୍ଞଜନେ ଶୁଣ ।
ଭଜଇ ଅଧମ ପୀତାମ୍ବର ଦୁରାଚାର
ପଞ୍ଚାବନ ପଦ ଲେଖିଅଛି ଅଦୃଶ୍ୟର ।
ଏଣୁକରି ଗ୍ରନ୍ଥ ଲେଖୁଅଛି ଭାଷା ବନ୍ଧେ
କହୁଛି ପଞ୍ଚମ ଖଣ୍ଡ ଗୋବିନ୍ଦ ପ୍ରସାଦେ ।

* * *

## ପ୍ରତାପସିଂହଙ୍କର ଯୁଦ୍ଧ ଓ ମୃତ୍ୟୁ

କହନ୍ତି ଯେ ବେଦବ୍ରହ୍ମା ଶୁଣ ହେ ନାରଦ
ଏଥିପରେ ପ୍ରତାପ ଯେ କଲା ଘୋର ଯୁଦ୍ଧ ।
ଦେଖିଲା ଅଛନ୍ତି ଯେତେ ପୁଣି ବିପ୍ରଗଣେ
ବୋଇଲାକ କିସ ହେବ ଏହାଙ୍କ ମାରଣେ ।
ବ୍ରାହ୍ମଣଙ୍କୁ ମାଇଲେ ତ ନାହିଁ ମୋତେ ଯଶ
ମାରିବି ଦେଖିଲେ ଏକା ବଲ୍ଲଭର ଶିଷ୍ୟ ।
ଏହିକ୍ଷଣି ସମରରେ ଗଲି ପଦା କରି
ପିଠିଦେବା ମାତ୍ରକରେ ପୁଣି ଗଲେ ପୂରି ।
ଏମନ୍ତ ବୋଲି ସେ ସୈନ୍ୟ ମଧ୍ୟେ ଗଲା ପଶି
ଦେଖିଲା ଶ୍ରୀ ବିଷ୍ଣୁନାଥ ମଧ୍ୟେ ଛନ୍ତି ବସି ।
ମେରୁ ଗିରି ସମାନେ ଯେ ଦିଶେ ଦୈତ୍ୟକାୟ
ମିଳିଲା ପ୍ରଭୁର ପାଶେ ରାହୁ ତେଜ ପ୍ରାୟ ।
ଗଦା କରେ ବୁଲାଇଣ ଓଷ୍ଠେ ଦନ୍ତ ଚାପି
କରେ କୋପରେ ପହିଜ ଆଗେ ପାଦକ୍ଷେପି ।
ବୋଇଲା ରେ ରେ ପାମର ଭିକ୍ଷା ବିପ୍ର ଜାତି
କି ବୋଲି ମୁରାସୁରଙ୍କୁ ହୋଇଲ ଅପ୍ରୀତି ।
ମୂର୍ଖ ଦ୍ୱିଜ ବ୍ରାହ୍ମଣ କି ଜାଣ ତୁମ୍ଭେ କଥା
ଏଡ଼େ ବଦନାମି ହୋଇ ଲାଗିଲ ରେ ବୃଥା ।
ଯେ କାଳେ ତୁମ୍ଭ ଆମ୍ଭଙ୍କୁ ରାଜା ନେଲେ ହରି
ଘରେ ନେଇ ରଖିଲେ ସେ ଆପେ ଗୁରୁକରି ।
ତେଡ଼େ ସୁହୃଦ ମାଇଲ ତୁମ୍ଭେ ତାର ପୁତ୍ର
ଅବିଶ୍ୱାସେ ଭାବିଲ ରେ ହୋଇ ଛିନ୍ନଛତ୍ର ।
ତାହା ପୁଣ ସେହି ରାଜା ମନେ ନ ଘେନିଲା
ତୁମ୍ଭଙ୍କୁ ସେ ନେବାପାଇଁ ସେନା ବରଗିଲା ।
ତାହାକୁ ମାଇଲ ତୁମ୍ଭେ ପୁଣି ବାଟ ଜଗି
ଏଡ଼େ ଅବିଚାର କଲ ହୋଇ ଆମ୍ବାଭୋଗୀ ।
ସେ ରାଜା ମନରେ ପୁଣ ନ ଘେନିଲା ଦୁଃଖ
ଭାଇକି ପେଶିଦେଲା ତା ସୁହୃଦକୁ ଦେଖ ।
ତେଡ଼େ କଥାରେ ମାଇଲ ତୁମ୍ଭେ ତାର ଭାଇ
ତେବେ ସେ ରାଜାର ତୁମ୍ଭଠାରେ ଦୁଃଖନାହିଁ ।

ସବୁ କଥାକୁ ନ ଘେନି ଅଇଲେକ ଆପେ
ତୁମ୍ଭଙ୍କୁ ସଙ୍ଖୁଳା କରୁଛନ୍ତି କେତେ ରୂପେ ।
ଟା ସବୁ ନ ଘେନି ରାଜା ଗଲେ ନୋହି କ୍ରୁଦ୍ଧ
ଏବେ ମୋତେ ପେଷିଲେକ ବୁଝ ତା ସୁହୃଦ ।
ଆଉ କଥା ଏକ ତୁମ୍ଭେ ଶୁଣ ଦୁଇଭାଇ
ମୁହିଁ କହୁଛି ଆସିଛି ଏବେ ଯହିଁ ପାଇଁ ।
ରାଜାର ପୁତ୍ରଯାକ ତ ଗଲେ ସବୁ ମରି
ତେଣୁ ଆସିଲି ତୁମ୍ଭଙ୍କୁ ନେବାକୁ ମୁଁ ବରି ।
ଗଲେ ତୁମ୍ଭେ ସେ ରାଜାର ହେବ ପୋଷ୍ୟପୁଅ
ଶେଷ ନୃସିଂହ ହସିଲେ ହୋଇ ଟହଟହ ।
ବୋଇଲେ ରାଜାର ତୁହି ଭଲ ଦୂତ ଜଣେ
ନୋହିଲେ କି ମୂର୍ଖ କଥା ଆନ କହି ଜାଣେ ।
କେଡ଼େ ହିତକାରୀ ଅଟୁ ତୁ ରାଜାର ଦୂତ
ପରପାଇଁ ମରିବାକୁ ହୋଇଛୁ ତୁ ଜାତ ।
ପ୍ରମାଣ ତୁହି ମୂରର ଅଟୁ ହୋ ସୁହୃଦ
ନୋହିଲେ କହନ୍ତା କେହୁ ଆସି ଏଡ଼େ ଭେଦ ।
ଭଲା ତୁ ମଧ୍ୟସ୍ଥ ପଣେ ଆସିଛୁ ଏଠାକୁ
ତୋ ବାକ୍ୟ ଶୁଣି ଆମ୍ଭର ଉଲ୍ଲସଇ ବୁକୁ ।
ହେ ପ୍ରତାପ ଦୈତ୍ୟ ଶୁଣ କହିବା ଯେ ଏବେ
ରାଜା ହେଲେ ଆମ୍ଭଙ୍କୁ ତ ନେଇଥିଲା ପୂର୍ବେ ।
ନେଇ ଗୁରୁଦକ୍ଷିଣା ତ ଦେଇଛି ସେ ଯେତେ
ତାହା ଆମ୍ଭ ମନେ ପଡୁଅଛି ଅନୁବ୍ରତେ ।
ଏବେ ନେଇ କରିବ ସେ ଯେବେ ପୋଷାପୁଅ
ତେବେ ତୋ ରାଜାଙ୍କୁ ଯାଇ ପଠିଆଇ ଦିଅ ।
ସେ ଆସି ଆମ୍ଭ ପିତାଙ୍କୁ ଜଣାଇଲେ ଯିବୁ
ନୋହିଲେ କି ରୂପେ ତୋତେ ଆମ୍ଭେ ବୋଲି ଦେବୁ ।
ତୋହର ପରାୟ ଲୋକ ହେଲୁ ଯେବେ ଦୂତ
ରାଜା ନ ଆସିଲେ ଯେ ନ ଯାଉଁ ବେନିଭ୍ରାତ ।
ରାଜା ଯେବେ ଆସି ନେବେ ନିଶ୍ଚୟଟି ବରି
ତେବେ ଆମ୍ଭେ କହିଲୁ ଯେ ଯିବୁ ସତ୍ୟକରି ।
ତଥାପି ତୋତେ ଚିହ୍ନିବା ମଧ୍ୟ ଏହିଠାରୁ
ଜାଣିବା ରାଜା ବାହାର ନୋହେ ତୋ ବୋଲରୁ
ଶୁଣି ପ୍ରତାପ ଦଇତ୍ୟ ଉଠି କୋପ ବହି
ବେନି ନେତ୍ର ତରାଟିଣ ଏମନ୍ତ ବୋଲଇ ।
ବୋଇଲା ଆରେ ଦରିଦ୍ର ଭିକ୍ଷୁ ବିପ୍ରପୋଏ
ତୁମ୍ଭ ଛାର ବୋଲେ କିରେ ଆସିବେ ସେ ରାୟେ ।
ଯେଉଁ ମୁରାସୁର ଅଟେ ତିନିପୁର ରାଜା
ସେ ଆସି ବରିବେ କିରେ ଛାର ଭିକ୍ଷୁଦ୍ୱିଜା ।
ଯାହାର ଚାଲନ୍ତେ କମ୍ପେ ମେରୁ ବସୁନ୍ଧରୀ
ତୁ ଛାର ବିପ୍ର ବୋଲେ ସେ ଆସିବେ କି କରି ।
ତଣ୍ଡୁଳ ପୋଷକୁ ଯାହାଙ୍କର ନିତି ଆଶ
ପଣକ ନିମନ୍ତେ ଯେହୁ ଯାନ୍ତି ତିନି କ୍ରୋଶ ।
ଅନୁବ୍ରତେ ଯାହାଙ୍କର ପରଦ୍ରବ୍ୟେ ଆଶା
ସେ ଲୋକଙ୍କୁ ନ ବରିଲେ ରାଜାର ଦୁର୍ଦ୍ଦଶା ।
ଏମନ୍ତ ବୋଲି କହଇ ଦୈତ୍ୟ ପୁଣି ଗର୍ଜି
ଶୁଣିଣ ହସି କହନ୍ତି ବିଷ୍ଣୁ କଥା ତର୍ଜି ।
ଶ୍ରୀ ନାରାୟଣ ବୋଇଲେ ଶୁଣରେ ହନ୍ତକ
ମୂର୍ଖ ପାପୀ ଚଣ୍ଡାଳ କି କହେ ଭଲ ବାକ୍ୟ ।
ପାଷାଣ୍ଡ ସଭାରେ ପାଏ ପଣ୍ଡିତ କି ପୂଜା
ମୂଢ଼ଲୋକ କେବେ କିରେ ମାନେ ବ୍ରହ୍ମଦ୍ୱିଜା ।
ପଡ଼ିଲେ ଅଛବ ଲୋକହାତେ ଶାଳଗ୍ରାମ
ସେ କେବେ ତା ମାନଇକି ବୋଲି ପରଂବ୍ରହ୍ମ ।
ଶ୍ୱାନ କି ଚିହ୍ନଇ ତୁଳସୀର ଗଛପତ୍ର
ପ୍ରକୃତି ମନ୍ଦ ଘେନିଣ କରେ ମଳମୂତ୍ର ।
ଏତେକେ ତୁଳସୀଦେବୀ ହୋଇଲେକି ସାନ
ମୂର୍ଖ ନ ମାନିଲେ କି ରେ ଗଲା ବ୍ରହ୍ମଜ୍ଞାନ ।
ଅଜ୍ଞାନ ପ୍ରାଣୀ ଯେତେକ ନଷ୍ଟ ଦୁଷ୍ଟ ଥାନ୍ତି
ସେମାନେ ତ ବ୍ରାହ୍ମଣଙ୍କୁ କେବେ ନ ମାନନ୍ତି ।
ଏତେକେ କି ବିପ୍ରମାନେ ହୋଇଲେରେ ସାନ
ଅନ୍ଧ ନାହିଁ ବୋଇଲେ କି ଗଲେ ସୂର୍ଯ୍ୟ ଜହ୍ନ ।
କୁଟିଳ କପଟୀ ଲୋକେ ଚିହ୍ନନ୍ତି କି ସାଧୁ
ମୂର୍ଖ ନ ମାନୁ ଗଲା କି ଗୁଣ ବିପ୍ର ହୃଦୁଁ ।
ଦୁର୍ଜ୍ଜନ ନ ମାନନ୍ତେ କି ଗଲେ ସାଧୁଲୋକ
ଜଣକ ଲାଗି କି ମନ୍ଦ ହେବ ସଭାଯାକ ।
କୁଜ୍ଞାନୀ ହୋଇ ସଂସାରେ ଯେତେ ଲୋକଥାନ୍ତି
ସେ ପାପୀ ଚଣ୍ଡାଳ ଶୁଣି ପୁରାଣ ନିନ୍ଦନ୍ତି ।
ତେବେ ବିଷ୍ଣୁ ପୁରାଣ କି ହୋଇଯିବ ସାନ
ପୁରାଣ ନିନ୍ଦା କରନ୍ତି ଏ ଯେ ନୀଚ ଜନ ।
ନୀଚ ନ ମାନିଲେ ବଡ଼ ଲୋକର କି ଗଲା
ଦୈତ୍ୟ ଛାର ହେଲାରୁ ତୁ କହିଲୁ ଯେ ଭଲା ।
ଶୁଣିଣ ପ୍ରତାପ ଦୈତ୍ୟ ଉଠିଲା ପ୍ରଜ୍ୱଳି
ଧାଇଁଲା ଲୁହାର ଗଦା ଧରି ଯୁଦ୍ଧେ ତୋଳି ।
ଅସୁରର ଦୁଷ୍ଟ ବୁଦ୍ଧି ଦେଖି ନାରାୟଣ
ଆଜ୍ଞାଦେଲେ ଦେଖ ଆରେ ଭଇରବଗଣ ।
ପ୍ରତାପ ଦୈତ୍ୟ ଆସିଛି ମୋତେ ନେବାପାଇଁ
ତାହାକୁ ବୋଧିଣ ତୁମ୍ଭେ ଦିଅ ପଠିଆଇ ।
ଗଲେ ସେହି ଯମପୁରେ ହୋଇବେ ସଙ୍ଖାଳି
ଆମ୍ଭର ତ ଥୋକେ ଶଲ ଯିବ ଏହିଭଳି ।
ଶୁଣି ଭଇରବଗଣ ଧାଇଁଲେ ତକ୍ଷଣ
କରରେ ଧରିଣ ଧନୁ ପାଶୁପତ ବାଣ ।

ବେଢ଼ିଲେ ସେ ପ୍ରତାପକୁ ହୋଇ ଲକ୍ଷେ ପୁର
କେ ଚକ୍ର ପେଷିଲା କେହି ପେଷିଲା ମୁଦ୍‌ଗର ।
ଯେଣୁ ପ୍ରଭୁଙ୍କ ଆଜ୍ଞାରେ ହୋଇଲେ ବାହାର
ତେଣୁ ଦମ୍ଭ ତାହାଙ୍କର ଅଟେ ଅଗୋଚର ।
ଉଲୁସାଇ ବୁକୁମାନ ତରଳ ହୁଅନ୍ତି
ଛନ୍ନ ଛନ୍ନ ହୋଇ ଅନ୍ତରାଳ ସେ କମ୍ପାନ୍ତି ।
ଭୟ ପରିହରି ରଣଗୋଳ କଲେ ଯାଇ
ଆକାଶରୁ ବୃଷ୍ଟି ପ୍ରାୟ ଶର ବିନ୍ଧିଦେଇ ।
ହାଣ ହାଣ ମାର ମାର ଶୁଭେ ଉଚ୍ଚେ ଗୋଳ
କିଳେ କର୍ଣ୍ଣକଟାରୀ କେ ପେଷିଲା ତ୍ରିଶୂଳ ।
ମହାକାଳ ଭଇରବ ପେଷିଲେ ଗାଣ୍ଡିମ
ପବନା ଭଇରବ ଧାଇଁଲେ ହୋଇ ତମ ।
ନାଗପାଶ ବାଣ କେହି ବିନ୍ଧିଲେ ନିପ୍ରୋହି
ଚକ୍ର ପେଷିଲେ ମୋହନ ଭଇରବ ନେଇ ।
ସୂର୍ଯ୍ୟାବଳୀକି ଧରିଣ ଦହନା ଭୈରବ
ଆକର୍ଷି ହାଣିଲେ ପୁଣି ଦୈତ୍ୟ କଟିଗ୍ରୀବ ।
ମଦନା ଭୈରବ ଧରି ପିଟିଲେକ ଯଷ୍ଟି
ଅଜୟ ଭୈରବ ମାଇଲେକ ବଜ୍ର ମୁଷ୍ଟି ।
ଶୋଷଣା ଭୈରବ ହାଣିଦେଲେ ବାମଭୁଜ
ଉଶନା ଭୈରବ ଛେଚି କରି ଗ୍ରୀବା ମାଝ ।
ତୀକ୍ଷ୍ଣ ଭୈରବ ଦକ୍ଷିଣ ଭୁଜ ଦେଲେ ହାଣି
ହୃଦୟ ଭୈରବ କୋପେ କଟି ଧରି ଝୁଣି ।
ଉଗ୍ର ଭଇରବ ହାଣି ଦେଲେ ବେନିପାଦ
ସୁବେଗ ଭୈରବ କଲେ ତାର ଶିରଛେଦ ।
ସୁଜ୍ଞାନ ଭୈରବ ଧରି କାଟୁଛନ୍ତି ଶକ୍ତି
ବିଜ୍ଞାନ ଭୈରବ ଦେଲେ ବାବଲରେ ମନ୍ଥି ।
ଏରୂପେ ଭୈରବ ପ୍ରତାପର ମୁଣ୍ଡ ଛେଦି
କୁରାଳ ମୂର୍ତ୍ତି ପରାୟ କଲେ ମେଦାମେଦି ।
ବେନିପାଦରେ ଦୈତ୍ୟକୁ ପକାଇଲେ ଚିରି
ରକତରେ କର୍ଦ୍ଦମ ଯେ ହେଲା ବସୁନ୍ଧରୀ ।
ପିଶାଚୁଣୀଗଣ ପୁଣି କଲେ ଆସି କେଳି
ରକ୍ତ ମାଂସ ଖାଇକରି ଦେଲେ ହୁଳହୁଳି ।
ପ୍ରତାପକୁ ଭକ୍ଷିଲେ ଯେ ଲକ୍ଷେକ ଯୋଗିନୀ
କିଳିକିଳା ନାଦେ ଉଚ୍ଛୁଳାଇ ପୁର ତିନି ।
ପ୍ରତାପକୁ ମାରିଣ ସେ ଭୈରବ ନୃସିଂହ
ବିଷ୍ଣୁ ଛାମୁରେ କହନ୍ତି ମିଳି ଯାଇ ବେଗ ।
ବୋଲନ୍ତି ପ୍ରଭୁ ମାଇଲୁ ଆମ୍ଭେ ପ୍ରତାପକୁ
ଏବେ କି କରିବୁ ଆଜ୍ଞା ଦିଅନ୍ତୁ ଆମ୍ଭଙ୍କୁ ।
ନାରାୟଣ ବୋଇଲେ ରେ ଭଇରବଗଣେ
ତୁମ୍ଭେ ଯେ ଜନ୍ମିଲ ଆମ୍ଭ ଅଙ୍ଗୁ ଆସି ରଣେ ।
ତେଣୁ ତୁମ୍ଭେ ରେ ଭୈରବ ନୃସିଂହ ବୋଲାଅ
ଲୋକଙ୍କର ଭୟ ନାଶି ସଂସାରରେ ରହ ।
ଯେତେବେଳେ ମହାଭୟ ପଡ଼ିବ ପ୍ରାଣୀଙ୍କି
ତେତେବେଳେ ତୁମ୍ଭ ନାମ ସୁମରିବେ ଡାକି ।
ଭୈରବଙ୍କୁ ସୁମରନ୍ତେ ସର୍ବ ଭୟ ଯିବ
ପାପ ପ୍ରମାଦ ସେ କ୍ଲେଶ କିଛି ନ ରହିବ ।
ଭୈରବ ପ୍ରତିମା ଏକ ସ୍ଥାପିଥିଲେ ଦ୍ୱାରେ
ଚୋର ବ୍ୟାଘ୍ର ଡାହାଣୀ ଯେ ନ ପଶିବେ ଘରେ ।
ଭୈରବ ନୃସିଂହ ଚିନ୍ତି ଯାହା ସେ କରିବ
ସମସ୍ତ ସୁଲଭ ଲଭି ଗୃହକୁ ଆସିବ ।
ବଚନ ଭକତି ପାଇ ସତ୍ୟ କଲି ମନେ
ବନ୍ଦଇ ନୃସିଂହ ଭଇରବ ସନ୍ନିଧାନେ ।
ମୋହର ଦୁର୍ବୋଧେ ଯେତେ କରିବି ଅଶାନ୍ତି
ଏ ଘୋର ସଂକଟୁ ମୋତେ କରିବା ମୁକତି ।
ସଂସାରେ ଅଘୋର ମାୟାଜାଲେ ହେଲି ବଣା
ବୁଡ଼ି ମରୁଅଛି ପ୍ରଭୁ ନ ଗଲା କଳନା ।
ଶୁଭ ବାଞ୍ଛା କରଇ ମୁଁ ନୃସିଂହ ଭୈରବେ
ତେବେ ମୋ ଅଜ୍ଞାନ ଖଣ୍ଡି ଉଦ୍ଧାର କରିବେ ।
ଭଇରବ ନୃସିଂହଟି ତୁମ୍ଭେ ଏକା ଜାଣ
ଭୈରବ ନୃସିଂହ ସାକ୍ଷାତରେ ନାରାୟଣ ।
ଭୈରବ ସୁମରି ନରେ କର ଅନୁକୂଳ
ଭୈରବ ସୁମରି ନରେ ପକା ବୀଜ ଫଳ ।
ଭୈରବ ସୁମରି ନରେ କର ଶୁଭ କାର୍ଯ୍ୟ
ଭୈରବ ସୁମରି ନରେ ସର୍ବ ଭୟ ଗଞ୍ଜ ।
ଭୈରବ ନୃସିଂହ ଜାଣ ଯାର ଘରେ ଥାଇ
ବିପତ୍ତି ପ୍ରମାଦ ଭୟ ଭ୍ରାନ୍ତି ନ ରହଇ ।
ସେ ଭୈରବଙ୍କ ଚରଣେ ନିତ୍ୟେ ମୋରଆଶ
ଜନ୍ମେ ଜନ୍ମେ ଭାବେ ବିପ୍ର ପୀତାମ୍ବର ଦାଶ ।
ଭୈରବଙ୍କ ଚରଣରେ ମୋର ନିବେଦନ
କୋଟି ସଂଖ୍ୟାରେ ପ୍ରଣାମ କରୁଅଛି ଜାଣ ।
ଜନ୍ମେ ଜନ୍ମେ ଦାସ ପ୍ରାୟେ ରଖିବ ଚରଣେ
ନ ଭୁଲିବି ଅଣହେତୁ ନ ଭୁଲିବି କ୍ଷଣେ ।
କିଞ୍ଚିତରେ ଦୟା ମୋତେ ରଖିଥିବ ଚିତ୍ତେ
ଭାବୁଅଛି ଦୟାଅଛି ହୃଦପଦ୍ମ ଗତେ ।
ଏରୂପେ ଭୈରବ ନୃସିଂହଙ୍କ ଆଜ୍ଞାପାଇ
ରହିଲେ ବ୍ରହ୍ମାଣ୍ଡଯାକେ ପୃଥ୍ୱୀ ଭେଦି ତହିଁ ।
ଏମନ୍ତ ମହିମା ଯେହୁ ପୁରାଣ ଅପୂର୍ବ
ପ୍ରଭୁଙ୍କ ଆଜ୍ଞାରେ ମୋତେ ହେଲା ସେ ସୁଲଭ
ମୋତେ ହେଲେହେଁ ଅପୂର୍ବ ଅଟେ ଏହୁ ଭାଷା
ବିନା ତପରେ ପାଇଲି ଗୋବିନ୍ଦ ଭରସା ।

ତେଣୁ ଶାରଦା ଭଣ୍ଡାରେ ବିଳସିଲି ହେଳେ
ଅଜପା ଯୋଗବଳରୁ ଅଲଭ୍ୟ ଯେ ମିଳେ ।
ଅଦୃଶ୍ୟ କଥା ପଢ଼ିଲେ ହୋଏ ମୋତେ ଦୃଶ୍ୟ
ଜନ୍ମରୁ ମୂରୁଖ ଏଣୁ ଭକ୍ତି ନାହିଁ ଲେଶ ।
ନ ପଢ଼ିଛି ଜ୍ଞାନଶାସ୍ତ୍ର ନାହିଁ ମୋର ଦୃଷ୍ଟି
ଅପରାପର ଆଦି ମୁଁ ନ ପାରିଲି ମେଣ୍ଟି ।
ଏ ପୁରାଣର ଭାଷା କି ଅଳପ ଅଟଇ
କହିଲେ ସଂସାର ଜନହିତେ ମହାମାୟୀ ।
ଧନ ପୁତ୍ର ଯେ ବାଞ୍ଛିତ କର ସୁଜ୍ଞଜନେ
ଭୁଞ୍ଜିବ ବିପୁଳ ଭୋଗ ଯେ ଯା ଇଚ୍ଛାମନେ ।
ଅସ୍ତ୍ର ନ ଭେଦିବ ହେବ ସଂଗ୍ରାମରେ ଜୟ
ଘୋର ପ୍ରମାଦୁଁ ତାରିବେ ପ୍ରଭୁ ଦେବରାୟ ।
ଚୌର ବ୍ୟାଘ୍ର ସର୍ପ ଶତ୍ରୁ ଭୟଙ୍କର ତ୍ରାସ
ଶ୍ରବଣେ ଶୁଣିଲେ ଏହା ଖଣ୍ଡେ ନାମ କ୍ଳେଶ ।
ଅପୁତ୍ରୀ ପୁତ୍ରକ ହେବ ଦୁଃଖୀ ଧନବନ୍ତ
ଆୟୁଷ ବଳ ବପୁ ଯେ ହୋଇବ ବର୍ଦ୍ଧିତ ।
ଦେହ ଅନ୍ତେ ବିଷ୍ଣୁ ଲୋକ ବସିବେ ସେ ନର
ନୃସିଂହ ଶରଣ ମୁହିଁ ଦାଶ ପୀତାମ୍ବର ।

❋ ❋ ❋

## କନ୍ଧାସୁର ବଧ

ଏଥୁ ଉତ୍ତାରେ ଯେ ବାଣୀ ଶୁଣ ହେ ନାରଦ
ଦଇତ୍ୟ ମଲାରୁ ସ୍ୱର୍ଗେ ବସି ଦେବବୃନ୍ଦ ।
ଆକାଶୁଁ କୁସୁମ ବୃଷ୍ଟି କରିଲେ ଉସ୍ତୁକେ
ଅସୁର ମଲା ଉଶ୍ୱାସ ହେଲେ ତହିଁ ଥୋକେ ।
ମେରୁ ପୂର୍ବ ମଣ୍ଡପକୁ ଯାଇ ଦେବଗଣେ
ଆନନ୍ଦେ ବସିଲେ ସଭା କରି ହର୍ଷମନେ ।
ପ୍ରତାପ ମଲା ହୁଅନ୍ତି ଉସତ ଯେସନେ
ବୋଲନ୍ତି ଏବେ ଦିଶିଲା ସ୍ୱର୍ଗ ସୁସ୍ଥ ତେହ୍ନେ ।
ଏ ଚଣ୍ଡାଳ ଦଇତ୍ୟଙ୍କ ଯୋଗୁଁ ଆଜଯାଏ
ସ୍ୱର୍ଗ ସଭାରେ ବସି ନ ପାରୁଥିଲୁ ଭୟେ ।
ନବଲକ୍ଷ ଅଶୀସସ୍ର ଯୁଗ ତେୟାଅଶୀ
ଏତେକାଳେ ସଭାକରି ବସିଲୁ ଯେ ଆସି ।
ଆବର ମୁର ମଲେ ଯେ ଯିବ ସବୁପାପ
ଏତେ ବୋଲିଣ ଛାଡ଼ିଲେ ଦେବେ ମନୁ ତାପ ।
ଏଥୁ ଉତ୍ତାରେ ଶୁଣିବା କଥା ଆନରସ
ମିଳିଲେ ଅସୁର ଦୂତ ଆସି ମୁର ପାଶ ।
ଜୟ ବିଜୟ ବୋଲିଣ ସେହି ଦୂତ ଦୁଇ
ଯୁଦ୍ଧକୁ ରହିଣ ଥିଲେ କ୍ରୋଶେ ଛଡ଼ା ହୋଇ ।
ପାପୀ ପ୍ରତାପ ମରିବା ଦେଖିଣ ତ୍ୱରିତ
ମୁରାସୁର ଆଗେ ଆସି କହିଲେ ଯାବତ ।
ଭୋ ଦେବ ପ୍ରତାପ ରଣେ ପଡ଼ିଲା ଯେ ଆଜ
ବ୍ରାହ୍ମଣ ସମସ୍ତେ ବେଢ଼ି ପିଟିଲେ ନାରାଚ ।
ଲକ୍ଷେକ ବ୍ରାହ୍ମଣଙ୍କୁ ସେ ହେଲା ଏକା ଜଣେ
କେ ବାମେ ହାଣିଲା କେବା ହାଣିଲା ଡାହାଣେ
କେ କଟି ହାଣିଲା କେହୁ ହାଣିଲା କେ ପିଠି
କୁନ୍ତ ଖଡ଼ଗ ବାଜିଣ ଦେହ ଗଲା ଫାଟି ।
ସେହି ଠାବରେ ପଡ଼ିଲା ସେହୁ ପୁଣ ଢଳି
ଏରୂପେ ଦେଖି କହିଲୁ ତୁମ୍ଭ ଆଗେ ମିଳି ।
ଶୁଣିଲାକ୍ଷଣି ସେ ମୂର୍ଚ୍ଛା ଗଲା ମୁରରାୟେ
ବସିଲାଠାରେ ଢଳିଲା ମେରୁଗିରି ପ୍ରାୟେ ।
ଦେଖିଣ ସୁବିଜ୍ଞ ମନ୍ତ୍ରୀ ଧଇଲେକ ତୋଳି
ମୁଖରେ ସିଞ୍ଚିଲେ ନେଇ ସୁବାସିତ ବାରି ।
ସଚେତ ହୋଇଣ ରାଜା କହେ ବସି କ୍ରୋଧେ
ଆପଣାର ବେନିକର ତାଡ଼େ ବସି ହୃଦେ ।
ପ୍ରତାପ ଅସୁର ରଣ ସ୍ମରି ମନେ ଘେନି
କାନ୍ଦି କାନ୍ଦି ମୁରାସୁର ଲୋଟଇ ମେଦିନୀ ।
ବୋଲଇ ପ୍ରତାପ ମୋର ପ୍ରାଣ ଅଧିକାରୀ
ତୋର ଘେନି ଭାଇକୁ ମୁଁ ଥିଲଇଁ ପାସୋରି ।
ପୁତ୍ରକୁ ମୋର ପାସୋରି ଥିଲି ମୁହିଁ ପୁଣ
ପାସୋରି ମୁଁ ଦେଇଥିଲି ସେନାଙ୍କର ଗୁଣ ।
ନ ଯାଇ ଦେହ ରହିଲା ଆଜ ମୋର କେହ୍ନେ
କାହାକୁ ଘେନି ଧଇର୍ଯ୍ୟପଣ ମୁହିଁ ଘେନେ ।
ସବୁ ତ ଶୂନ୍ୟ ଦିଶିଲା ମୋତେ ଦଶଦିଶ
ଆବର ପାଳିବି କାହା ଘେନି ରାଜ୍ୟ ଘୋଷ ।
ଆରେ ପ୍ରଳମ୍ବା ମୁକୁନ୍ଦା ଯାଅ ବେଗେ ଘୁଞ୍ଚି
ସମୟେ ବରତ ବାବୁ ଅନ୍ୟଠାବେ ଲୁଚି ।
ମୁହିଁ ଏବେ ଯାଇ ତାଙ୍କୁ ମାରିବି ଯେ ଲେଛି
ନ ରଖିବି ଏ ସଂସାରେ ବିପ୍ରକୁଳ କିଛି ।
ଦେଖନ୍ତୁ ମଞ୍ଚର ଲୋକେ ଦଶଦିଗପାଳେ
ଏଡ଼େ ଯୋଦ୍ଧାମାନେ ମୋର ଥିଲେ ମହାକାଳେ ।
ମୁହିଁ ଥାଉଁ ବଳିଗଲା ଏମାନଙ୍କ ବ୍ୟଥା
କେହି ଜାଣି ନ ପାରିଲେ ଅସମ୍ଭବ କଥା ।
ଯେଉଁ ବ୍ରାହ୍ମଣେ ମାଗନ୍ତି ଦ୍ୱାରେ ଦ୍ୱାରେ ଭିକ୍ଷା
ସେ ମୋର ନାଶିଲେ କହୁଁ କହୁଁ ଏତେ ସଖା ।
ଦେବ ଦାନବ ଆଦି ମୁଁ ଜିଣିଲି ସମସ୍ତ
ନୀତିଗ୍ରାହୀ ହସ୍ତେ ଏବେ ହୋଇଲି ଅନାଥ ।
ତଥାପି ତ ଏଡ଼େ ଯଶ ଗଲା ମୋର ନାଶ
ସମ୍ମାନ ନୋହିଲେ ନାଶଗଲା ପଉରୁଷ ।
ଛାର ହୀନ ପାମର ସେ ଯେବଣ ବ୍ରାହ୍ମଣ
ଏହାଙ୍କରେ ହରାଇଲି ମୋର ବଡ଼ପଣ ।

ବିଷ୍ଣୁର ହାତରେ ମୃତ୍ୟୁ ମୋର ସିନା ଥିଲା
ନାରାୟଣ ମାରିଥିଲେ ମୋକ୍ଷ ହୁଅନ୍ତି ଭଲା ।
ଶଙ୍ଖ ଚକ୍ର ଗଦା ପଦ୍ମ ଚାରିଭୁଜେ ଧରି
ଶ୍ରୀମୁଖକୁ ଚାହୁଁଥାନ୍ତି ମାରନ୍ତା ଶ୍ରୀହରି ।
ତେବେ ଶମନ ଦଣ୍ଡରୁ ହୁଅନ୍ତି ଅବା ପାର
ସଂସାରେ ବୋଲନ୍ତେ ସାଧୁପ୍ରାଣୀ ସବୁ ନର ।
ଜିଣିଲେ ତ ଧନ୍ୟ ଧନ୍ୟ ମଲେ ହୁଅନ୍ତି ମୋକ୍ଷ
ଅନ୍ତଃକାଳେ ସାହା ହରି ହୁଅନ୍ତେ ପ୍ରତ୍ୟକ୍ଷ ।
ଏମନ୍ତ ହେଲେ ନୁହନ୍ତା ସିନା ଭୟ ଭୀତି
ହରି ନୋହିଲା ସେ ପୁଣ ନୋହିଲାକ କ୍ଷତ୍ରୀ ।
କ୍ଷତ୍ରୀ ହୋଇଲେ ନୁହନ୍ତା ମୋତେ ସିନା ଲାଜ
ମୁହିଁ ପୁଣି ମହାରାଜା ସେହି ଅଟେ ଦ୍ୱିଜ ।
ଦ୍ୱିଜ ତୁଲେ ଲାଗି କାର ହେଲାଣି କି ଯଶ
ଜିଣିଲେ ପ୍ରଶଂସା ନାହିଁ ନ ଜିଣିଲେ ହାସ୍ୟ ।
ସମାନ ତୁଲେ ଲାଗିଲେ ସିନା ଅଟେ ଧନ୍ୟ
କ୍ଷତ୍ରୀ ହୋଇ ନ ଲାଗିବ ଦେଖିଲେ ନିଊନ ।
ନୀଚକୁଳେ ନ ଲାଗଇ ସୁପଣ୍ଡିତ ପ୍ରାଣୀ
ଦ୍ୱିଜ ବ୍ରାହ୍ମଣଙ୍କ ସଙ୍ଗେ ଲାଗିଲି ନ ଜାଣି ।
ପଥକୁ ଘଟିଲା ଉପଲକ୍ଷ୍ୟ କଥା ଆସି
ନାରଦ ସଭାରେ ଯାହା କହୁଥିଲେ ବସି ।
ବୋଇଲେ ଯେ ମତ୍ତହସ୍ତୀ ଆସୁଥାଇ ମାଡ଼ି
ତା ପଛେ ମରନ୍ତି ଲକ୍ଷେଶ୍ୱାନ ବୋବି ପାଡ଼ି ।
ସେ ହସ୍ତୀ ଖେଦହୃଦେ ନ ଘେନେ ଅଭିମାନ
ମନେ ପାଞ୍ଚଇ ସେ ନୀଚ ଅଟେ ସିନା ଶ୍ୱାନ ।
ଯେବେ ଏକ୍ଷଣି ମାରିବି ମୁଁ ପାଲଟି ପଡ଼ି
ବୋଲିବେ ଯେ ଏଡ଼େ ଲୋକ ଶ୍ୱାନ ଗଲା ମାରି
ନ ମାଇଲେ ବୋଲିବେକ ଡରିଲା ଯେ ହସ୍ତୀ
ଶ୍ୱାନ ଛାରକୁ ମାନିଣ ଗଲା ମଥା ପୋତି ।
ମାଇଲେ ତ ଯଶ ନାହିଁ ନ ମାଇଲେ ଲାଜ
ଚଳଇ ଅଭିମାନେ ନ କରି ଲଜ୍ଜା ଗଜ ।
ସୁପଣ୍ଡିତ ଲୋକଙ୍କର ବିଚାର ଏ ପ୍ରାୟେ
ମୁଁ ହେଲି ସେ ମତ୍ତହସ୍ତୀ ଶ୍ୱାନ ସେହି ଦୁହେଁ ।
ରାଜାର ବଚନ ଶୁଣି ସୁବିଜ୍ଞ ଯେ କହି
ବୋଇଲା ବିପ୍ର ନିନ୍ଦା ନ କର ଦୈତ୍ୟସାଇଁ ।
ବିପ୍ରଠାରେ ଦ୍ରୋହ ଅର୍ଜି ନାହାନ୍ତି କେ ବର୍ତ୍ତି
ବିପ୍ରଙ୍କର ଘରେ ସିନା ହରି ଜନ୍ମ ହୁଅନ୍ତି ।
ତେଣୁ ସେହି ବିପ୍ରଙ୍କର ଅଟେ ଆଶୀର୍ବାଦ
କରି ପାରନ୍ତି ସେ ବିପ୍ରମାନେ ଭଲମନ୍ଦ ।
ସେ ବିପ୍ରଙ୍କ କଥା କହୁଅଛି ଶୁଣ ଏବେ
ଦୁର୍ବାସା ଋଷିଙ୍କ ମୁଖୁଁ ଶୁଣିଛି ମୁଁ ପୂର୍ବେ ।

କର୍ଦ୍ଦମ ଘରେ ଜନ୍ମିଲେ ପୁଣି ଭଗବାନ
କପିଳରୂପେ ମାତାଙ୍କୁ ଦେଲେ ବ୍ରହ୍ମଜ୍ଞାନ ।
ଲେଉଟି ପୁଣି ଜନ୍ମିବେ ବିଷ୍ଣୁ ବିପ୍ରକୁଳେ
ବାମନ ହୋଇ ବଳିକି ଚାପିବେ ପାତାଳେ ।
ତହିଁ ଉତ୍ତାରୁ ବ୍ରାହ୍ମଣ ଘରେ ବିଷ୍ଣୁ ପୁଣି
ପର୍ଶୁରାମ ହୋଇକରି ଜନ୍ମିବେ ଧରଣୀ ।
ଆବର ବିଷ୍ଣୁର ଜନ୍ମ କହିବା ହୋ ତୋତେ
ବେଦବ୍ୟାସ ଅଂଶେ ପ୍ରଭୁ ଜନ୍ମିବେ ଜଗତେ ।
ସକଳ ବେଦ ପୁରାଣ ସ୍ମୃତିମାନ କରି
ସକଳ କାଳେ ରହିବେ ସେହୁ ଦେହ ଧରି ।
ତହିଁ ଉତ୍ତାରୁ ଯେ ପୁଣି ଶୁଣ ମୁରାସୁର
ଲେଉଟି ଜନ୍ମିବେ ଜଗନ୍ନାଥେ ବିପ୍ର ଘର ।
ନରନାରାୟଣ ରୂପ ହେବେ ଭାବଗ୍ରାହୀ
ସେହି ପ୍ରସଙ୍ଗ ତୁ ଶୁଣ କହୁଛି ଯେ ମୁହିଁ ।
ଅବନ୍ତୀ ନାମେ ନଗରେ ମେଷ ମିଶ୍ର ଘରେ
ଜନମ ଲଭିଲେ ପ୍ରଭୁ ଇନ୍ଦ୍ରାକ୍ଷୀ ଉଦରେ ।
ସେହି ମେଷ ମିଶ୍ରଙ୍କର ଅଟେ କାଣ୍ୱଶାଖା
ବେଦ ଯଜୁର୍ବେଦ କଉଛସ ଗୋତ୍ର ଲେଖା ।
ସେ ବିପ୍ରଘରେ ଜନ୍ମିଲେ ଯାଇ ନାରାୟଣ
ଆବର ଅଛନ୍ତି ତିନିଭାଇ ସଙ୍ଗତେଣ ।
ସେ ତିନିମୂର୍ତ୍ତିର ନାମ ଶୁଣ ଏକେ ଏକେ
ଶଙ୍ଖ ଗଦା ପଦ୍ମନାମ ବହିଲେ ବାଳକେ ।
ଶ୍ରୀରାମ ନାରାୟଣ ଯେ ପଦ୍ମ ଚକ୍ର ଗଦା
ଏମନ୍ତେ ଚାରି ମୂରତି ଜନ୍ମିଲେ ଚତୁର୍ଦ୍ଧା ।
ଏ ଚାରିମୂର୍ତ୍ତି ଲେଉଟି ଜାଣ ସୂର୍ଯ୍ୟବଂଶେ
ଜନମ ହେବେ ଅଯୋଧ୍ୟା ନାମେ ମହାଦେଶେ
ରାବଣ ଦୈତ୍ୟକୁ ମାରି ନିତ୍ୟସ୍ଥଳେ ଯିବେ
ନାରାୟଣଙ୍କର କଥା କହୁ ଶୁଣ ଏବେ ।
ଅଛନ୍ତି ସକଳ କର୍ମକରି ଗୃହ ରଚି
ତପ ଆରମ୍ଭିଲେ ପ୍ରଭୁ ଷଡ଼ଋତୁ ବଞ୍ଚି ।
ନଇମିଷ ଅରଣ୍ୟରେ ରହିଲେ ନିର୍ଶ୍ଚିନ୍ତେ
ସାଧିଲେ ଯେ ବ୍ରହ୍ମବିଦ୍ୟା ଷଟକର୍ମ ଯେତେ ।
ଡାହାଣାବର୍ତ୍ତକ ଚିହ୍ନ ବାମକରେ ଶୋହେ
ବିରାଜେ ଦକ୍ଷିଣ କର ପଦ୍ମଦଳ ପ୍ରାୟେ ।
ଗୋଷ୍ପଦ ଚିହ୍ନ ଡ଼ାହାଣ କରମୂଳେ ଅଛି
ବାମକରେ ପାଶାଙ୍କୁଶ ଗୋଟି ବିରାଜୁଛି ।
ବିଷ୍ଣୁଙ୍କର ତେଜଯାକ ଦିଶେ ଫୁଟି କାୟେ
ବିରାଜଇ ଚକ୍ଷୁ ବେନି ରକ୍ତପଦ୍ମ ପ୍ରାୟେ ।
ହସ୍ତେ ପଦ୍ମ ପାଦେ ପଦ୍ମ ଦିଶୁଅଛି ଫୁଟି
ଚୌରାଶୀ ଲକ୍ଷଣେ ପ୍ରକାଶଇ ଦେହଗୋଟି ।

ଏତେ ଲକ୍ଷଣ ଘେନି ଶ୍ରୀନାରାୟଣ ସ୍ୱାମୀ
ସାଧୁଙ୍କ ହିତେ ଜନ୍ମିଲେ ଆସି ମର୍ତ୍ତ୍ୟଭୂମି ।
ପିତା ମାତାଙ୍କୁ ଘେନିଣ ରଚି ଗୃହବାସ
ବହୁ ଫଳମୂଳ ଆଣି କରିଲେକ ଗ୍ରାସ ।
ଆଶ୍ରମ ବେଢ଼ାରେ ପୁଣି ରୋପିଲେ କାନନ
ବିବିଧ ଦ୍ରୁମଲତା ଯେ ମଳୟ ଚନ୍ଦନ ।
କଞ୍ଚନ ମାଳତୀ ମଲ୍ଲୀ ପାରିଜାତ କୁନ୍ଦ
ମାଧବୀ ନାଗେଶ୍ୱର ଯେ ପାଟଳି କୁମୁଦ ।
ଦୟଣା ଯେ ଛୁରୀଅନା ବକୁଳ କେତକୀ
ମନ୍ଦାର ଯୂଈ ଚମ୍ପକ ପୁନ୍ନାଗ ଧାତକୀ ।
ରଙ୍ଗଣୀ ଗଙ୍ଗଶିଉଳି ତୁଳସୀ ସେବତୀ
ଶୁକଳ ଅପରାଜିତା ପଳାଶ ମାଳତୀ ।
ଢ଼ଗର ଟରାଟ ପୁଣି କଦମ୍ବ ଗଇଶ
ଆଶ୍ରମରେ ରୋପିଲେ ଏ ଆଦି ନାନାପୁଷ୍ପ ।
ବୃକ୍ଷେ ଫଳିଲେ ପବିତ୍ର ବର୍ଣ୍ଣେ ନାନାଫଳ
ଆମ୍ବ ଆୟଡା ପନସ ଟଭା ନାରିକେଳ ।
କେନ୍ଦୁ ତାଳସଜ ଗୁଆ ପାଚିଲା ଖଜୁରୀ
ନଡ଼କୋଳି କରମଙ୍ଗା କଇଥ ବଦରୀ ।
ବାତାପି କମଳା ଟଭା କରୁଣା ଆଇତ
ଅମୃତପାଣି କଦଳୀ ଅଗସ୍ତି ସହିତ ।
ତେନ୍ତୁଳି ଯେ କ୍ଷୀରକୋଳି ଜେଉଟ ନାରଙ୍ଗ
ଜମ୍ବିଳ ଲେମ୍ବୁ ଦାରାକ୍ଷ ସରପୋଳି ନିମ୍ବ ।
ଲବଙ୍ଗ ପିପ୍ପଳୀ ଜାଇଫଳ ଅଳାଇଚ
ଏ ବିଧିରେ ନାନାତରୁ ରୋପି ଉଚ୍ଚ ନୀଚ ।
ଆବର ରଚିଲେ ଦିବ୍ୟପୁର ତହିଁ ଆଣି
ରହିଲେ ଶ୍ରୀ ନାରାୟଣ ପିତାମାତା ଘେନି ।
ଯେସନେ ଶାସ୍ତ୍ରର ଧର୍ମ ଗୃହସ୍ଥ ଆଶ୍ରମ
ବିଷ୍ଣୁଭକ୍ତି ଅର୍ଥେ କରୁଥାନ୍ତି ନାନାକର୍ମ ।
ଚଳିଲେ ଶ୍ରୀ ନାରାୟଣ ନିତ୍ୟ ମନ୍ତ୍ର ଜପି
ବସନ୍ତି ନଦୀତୀରେ ବାଲୁକା ଲିଙ୍ଗ ସ୍ଥାପି ।
ଗନ୍ଧ ପୁଷ୍ପ ଧୂପ ଦୀପ ନଇବେଦ୍ୟ ଦେଇ
ବସିଲେ ପଦ୍ମ ଆସନେ ତତ୍ତ୍ୱଜ୍ଞାନ ଧାୟି ।
ଆତ୍ମକୁ ଏକ କରିଣ ସମଦୃଷ୍ଟି ଘେନି
ଆପଣା ନାମ ଭଜିଲେ ଆଗେ ହୋଇ ଜ୍ଞାନୀ ।
ଓଁ କାର ଧ୍ୱନିକି ବହିଅଛି ଯହିଁ ଜୀବ
ପଡ଼ିଛି ଶିକୁଳି ଛନ୍ଦ ଗଣ୍ଠି ଯେଉଁ ଠାବ ।
ସେହି ଠାବରୁ ସୋଽହଂସ ପ୍ରକାଶଇ ଜ୍ୟୋତି
ଅଜପା ସୂତ୍ର ଘେନିଣ ଜପେ ଦିବା ରାତ୍ରି ।
ସେ ଜପ ସୂତ୍ର ଛାଡ଼ିଲେ ଜୀବ ସ୍ଥାନ ତ୍ୟାଗେ
ପରମରେ ମିଶିଯାଇ ବସଇ ଅଲର୍ଗେ ।

ବିଧାତା ଲୟ ଯହିଁଟି ଈଶ୍ୱରଟି ଲୟେ
ସେଠାରୁ ଜୀବ ପରମ ଏକ ଜାଣ ହୁଏ ।
ବୋଇଲେ ସେ ଜୀବ ଏକ ହେଲେ ମହାବ୍ରହ୍ମ
ଦ୍ୱିତୀୟ ହେଲେ ସେ ଜୀବ ନାମଟି ପରମ ।
ବେନିପକ୍ଷୀ ହୁଏ ଏକା ବୃକ୍ଷେ ଯାଇଁ ବସେ
ପାଦକେ ଚାଲଇ ସେହୁ କାହାକୁ ନ ଦିଶେ ।
ବୃକ୍ଷରେ ପାଦେକ ଥୋଇ ପାଦେ ବୁଲେ ମହୀ
ଟେକିଲେ ବେନିପାଦେ ସେ ଉଡ଼ନ୍ତି ନ କହି ।
ଉଡ଼ିଲେ ସେ ଯାଇଁକରି ବ୍ରହ୍ମେ ମିଶିଯାନ୍ତି
ମିଶିଲେ ଅରୂପାନନ୍ଦ ନାମ ବୋଲାବନ୍ତି ।
ସେ ଅରୂପାନନ୍ଦେ ଚିତ୍ତ ରଖି ନାରାୟଣ
ଜାଗ୍ରତେ ବସିଣ ସ୍ଥିରେ ସାଧେ ବ୍ରହ୍ମଜ୍ଞାନ ।
ଏହିରୂପେ ତପ କରୁ ଯିବ କେତେ କାଳ
ଅସୁର ଲୋକେ ଆସିଣ ଡରାନ୍ତି କେବଳ ।
ମୂର୍ଖ ଲୋକମାନେ ଶୁଣିଥାନ୍ତି ଅବା ଦେଖି
ପାଷାଣ୍ଡ ପାପୀଲୋକ ଯେ ହ୍ୱନ୍ତି ହରି ଦୁଃଖୀ ।
କପଟୀ ଲୋକେ ମରନ୍ତି ସଦା ଚିନ୍ତା କରି
ବୋଲନ୍ତି କାହିଁକି ଏହି ଭଜୁଛନ୍ତି ହରି ।
ସଂସାରୁ ତରିଯିବ କି ହରି ଭଜିବାରୁ
ଏମନ୍ତେ ମୂର୍ଖେ ହୁଅନ୍ତି ତପୀଲୋକ ଗରୁ ।
ଶୁଣ ଆହେ ମୁରାସୁର ମନ୍ତ୍ରୀବର କହି
ତୋ ତହୁଁ ବଳିଷ୍ଠ ବଡ ଥିଲା ଦୈତ୍ୟ ହୋଇ ।
କଜ୍ଜାସୁର ବୋଲି ଅଟେ ତାହାର ଯେ ନାମ
ବଡ଼ ପ୍ରତାପୀ ପ୍ରଳୟ ଅନ୍ତେ ତାର ଜନ୍ମ ।
ତପସ୍ୱୀ ରାଜର୍ଷି ଆଉ ବ୍ରହ୍ମର୍ଷି ବିଜ୍ଞାନୀ
ସମସ୍ତ ଜିଣି ତ ଦୈତ୍ୟ ତିନିପୁର ଭ୍ରମି ।
କ୍ଷତ୍ରିୟବନ୍ତ ପଣରେ ଅଟେ ମହାବଳୀ
ବନସ୍ତରେ ପଶି ଗଜ ମୃଗ ସିଂହ ଦଳି ।
ନାରାୟଣ ତପ ସେହୁ ଶୁଣୁଥାଇ କର୍ଣ୍ଣେ
ଆଶ୍ରମ ଗୋଟିଏ ଆସୁ ଦେଖିଲା ବିପିନେ ।
ଲୋକଙ୍କୁ ପଚାରିଲା ଏ କେବଣ ନଗର
ଶୁଣିବା ଜନେ କହିଲେ ନାରାୟଣ ପୁର ।
ଅସୁର ବୋଇଲା ସେହୁ ଥିବେ ଏବେ କାହିଁ
ଲୋକେ ବୋଇଲେ ତପରେ ବସିଥିବେ ଯାଇଁ
କଜ୍ଜା ବୋଇଲା ପଶିବା ତେବେ ଏହିଲାଗେ
ଭଲ ଦ୍ରବ୍ୟ ପାଇଲେ ତ ଘେନିଯିବା ସଙ୍ଗେ ।
ଦେଖିବା ତପ ତାହାର କି କରିବ ଗୁଣ
ମୋତେ ଜିଣି ବହିବ ନା ନାମ ନାରାୟଣ ।
ମୁହିଁ କଜ୍ଜାସୁର ଅଟେ ମୋର କଜ୍ଜାଯୁଷ
ମୋତେ ସେ ଜିଣିଲେ ସିନା ଜାଣିବା ତା ଯଶ ।

ବୃହସ୍ପତି ଭାରିଯାକୁ ହରି ନକ୍ଷତ୍ରେଶ
ଏହି ଦୋଷୁ ବଢ଼େ ଛିଡ଼େ ପନ୍ଦର ଦିବସ ।
ମହିଷାସୁର ଦୁର୍ଗାଙ୍କ ଦେଖି ସ୍ତନ ଯୋନି
ଅଳ୍ପକେ ମରିଲା ଜାଣ ଆୟୁ ହେଲା ହାନି ।
ଇନ୍ଦ୍ର ଯେ ହରିଲା ପୁଣି ଗୌତମ ଭାରିଯା
କେତେ ପ୍ରାୟଶ୍ଚିତ୍ତ କରି ହେଲା ସ୍ୱର୍ଗେ ରାଜା ।
ତୋହର ପରାୟେ ଲୋକ କେହ୍ନେ ପରନାରୀ
ହରିବାକୁ ଆସିଅଛୁ ଅବିଚାର କରି ।
ତଥାପି ମୁହିଁ ପୁଣି ଯେ ବ୍ରାହ୍ମଣ ପ୍ରେୟସୀ
ପୁରୁଷ ଅଟନ୍ତି ମୋର ମେଷ ମିଶ୍ର ଋଷି ।
ନାରାୟଣ ପୁରୁଷ ଯେ ପ୍ରତ୍ୟକ୍ଷେ ମୋ ପୁତ୍ର
ତପସ୍ୟା କରୁଅଛନ୍ତି ବସି ଅହୋରାତ୍ର ।
ସ୍ତିରୀ ବାଳକ ମାତ୍ରକ ଅଛୁ ଘରେ ରହି
ଏ ସମୟେ ତୋହର ତ ଆସି ନ ଯୋଗାଇ ।
ସ୍ତିରୀ ପୁରେ ପୁରୁଷ କି ପଶେ ବଳାତ୍କାରେ
ତାହାଙ୍କ ମୋକ୍ଷ ନାହିଁ ଏ ସଂସାର ଭିତରେ ।
ଜନ୍ମଇ ଶତେବାର ସେ ଚଣ୍ଡାଳର ଯୋନି
ତୁ କେସନ ରାଜା ଏହା ଅଇଲୁ ନ ମାନି ।
ମୁଁ ଏବେ କହୁଛି ରାଜା ବହନ ତୁ ଚଳ
ସଂସାରେ ଧନ୍ୟ ଧନ୍ୟ ତୁ ହେବୁ ମହୀପାଳ ।
ଏକେ ମୁହିଁ ପତିବ୍ରତା ସର୍ବ ବର୍ଣ୍ଣ ଉଚ୍ଚେ
ମୋତେ ତୁ ଛୁଇଁଲେ ଜାଣ ମରିବୁଟି ନିଶ୍ଚେ ।
ଏ କଥା କହିଲି ଅସ୍ତୁ ହେବ ଜାଣ ସତ୍ୟ
ଶୁଣିଣ ପ୍ରଚଣ୍ଡ ହୋଇ ଉଠିଲା ସେ ଦୈତ୍ୟ ।
ବୋଇଲା ପାମରୀ ଆଲୋ ଛାର ସ୍ତିରୀ ହୋଇ
କେତେହେଁ ତୁ ଧର୍ମଶାସ୍ତ୍ର କହୁଛୁ ବତାଇ ।
ପୁତ୍ର ପତି ଥାଇ ତୋର କି କରନ୍ତେ ମୋତେ
ଅବଶ୍ୟ ନେଇ ଯିବଇଁ କିନା ଆଜ ତୋତେ ।
ଦେଖିବା ରଖିବ କେଉଁ ପୁତ୍ର ତୋର ଆଜ
ଏତେ ବୋଲି ଧଇଲା ସେ ସତୀର ଯେ ଭୁଜ ।
ରଥରେ ବସାଇ ଚଳିଯାନ୍ତେ ଧୀରେ ଧୀରେ
ବ୍ୟାକୁଳ ରୋଦନ ମହାସତୀ ଗୁରୁତରେ ।
ହେ ଦଇବ ପୁରୁଷ ମୁଁ ହୋଇଲି ଅନାଥ
ପୁତ୍ର ମୋର ନ ଦେଖିଲେ ନ ଦେଖିଲେ କାନ୍ତ ।
କି ବୁଦ୍ଧି କରିବି ଏବେ ହେଲା ସବୁ ବଣା
ଧର୍ମ ଯେବେ ସତ ହେଉ ମୋ ପୁତ୍ରକୁ ଜଣା ।
ତପସ୍ୟା କଲା ମାତ୍ରେ କି ହେଲା ସେହୁ ଏଡ଼େ
ଆଜ ଏକା ବୁଝିବା ନା ତାର ଆଣ୍ଟ କେଡ଼େ ।
ଏମନ୍ତ ପାଞ୍ଚି ପଶିଲା ଦୈତ୍ୟ ବିପ୍ରଘରେ
ସଙ୍ଗେ ନେବା ସଇନ୍ୟଙ୍କୁ ରଖି ସିଂହଦ୍ୱାରେ ।

ଖୋଜଇ ଭିତର ପୁରେ କମ୍ବାସୁର ପଶି
କାହିଁ ନାରାୟଣ ବୋଲି ଡାକଇ ଆକର୍ଷି ।
ଘରଯାକ ଖୋଜନ୍ତେ ସେ ନ ପାଇଲା କାହିଁ
ଦେଖିଲା ରହିଅଛନ୍ତି ଇନ୍ଦ୍ରାକ୍ଷୀ ଯେ ତହିଁ ।
ନାରାୟଣଙ୍କ ଜନନୀ ସେହି ଶଶୀମୁଖୀ
ଦେଖିଲାରୁ ଦୈତ୍ୟ ମନ ରହିଲାକ ଲାଖି ।
କାମରେ ବଶ ହୋଇଣ ଧରେ ଯାଇଁ କର
ବୋଇଲା ସୁନ୍ଦରୀ ମୋତେ ତୁହି ରକ୍ଷାକର ।
ତୋତେ ଦେଖିଲାରୁ ମୁଁ ଯେ ହେଲି ଅସାଷ୍ଟମ
ତୁ ଏବେ ସଖି ରଖିବୁ ମୋର ମତିଭ୍ରମ ।
ଅସୁର କୁଳରେ ମୁହିଁ ଅଟେ ନୃପମଣି
ମୋ ବୋଲ କଲେ କରିବି ତୋତେ ପାଟରାଣୀ
ଊନଶତ ପ୍ରିୟାରେ ତୁ ହେବୁ ପ୍ରିୟବତୀ
ତୋର ବୋଲେ ଥିବୁ ଆମ୍ଭେ ଖଟି ଦିବାରାତି ।
ତୋତେ ନ ପୁଚ୍ଛି ମଣୋହିଁ ମୁହିଁ ନ କରିବି
ଆଉ ଛାର କଥାରେ ସେ କିସ ବୋଧ ଦେବି ।
କେବଳ ଭାରିଯା ତୁହି ହେବୁ ଏକା ମୋର
କହଇ ସୁବିଜ୍ଞ ମନ୍ତ୍ରୀ ଶୁଣ ମୁରାସୁର ।
ଏମନ୍ତେ କହନ୍ତେ କମ୍ବାସୁର ମୃଦୁବାଣୀ
ଶୁଣି କୋପାନଳ ହେଲେ ବିପ୍ରର ଘରଣୀ ।
ପତି ପୁତ୍ରକୁ ନ ଦେଖି ଭାଳନ୍ତି ଯେ ମନେ
କହନ୍ତି କମ୍ବାସୁରକୁ ନିଷ୍ଠୁର ବଚନେ ।
ବୋଇଲେ ହେ ମହାରାଜା ଅଟୁ ପରା ତୁହି
ଧର୍ମଶାସ୍ତ୍ର ବାକ୍ୟ ତୋର ଶୁଣିଲା କି ନାହିଁ ।
କିରୂପେ ହରିବୁ ପରଦ୍ରବ୍ୟ ନରନାରୀ
ରାଜା ହୋଇ କରିଅଛୁ ଅବିଚାର ପୁରୀ ।
ରାଜ୍ୟ ନ୍ୟାୟ ଅନ୍ୟାୟକୁ ରାଜା ସିନା ବୁଝେ
ରାଜା ଅନ୍ୟାୟ କଲେଟି ଆନର କି କାର୍ଯ୍ୟେ ।
ରାଜାଙ୍କର ସର୍ବେ ଅଟନ୍ତି ତ ଝିଅ ପୁଅ
ଏ କଥା ବୁଝି ବାହୁଡ଼ି ବେଗେ ରାଜା ଯାଅ ।
ପରସ୍ତିରୀ ହରଣ କି କର୍ଣ୍ଣେ ନାହୁଁ ଶୁଣି
କେତେ ଲୋକ ମରି ଗଲେଣିଟି ନର୍କ ଖଣି ।
ଗଜ ଉଦ୍ଧରିଲା ପ୍ରାୟ ମୋତେ ରକ୍ଷାକରୁ
ଯେବେ ମୁହିଁ ନିଶ୍ଚେଁ ସତୀ ଶ୍ରୀହରି କୃପାରୁ ।
ଆତଙ୍କୁ ଯେହ୍ନେ ରଖିଲେ ହରିଣୀକି ହରି
ଧ୍ରୁବଙ୍କୁ ରଖି ଅଛନ୍ତି ସଙ୍କଟୁ ଯେ ତାରି ।
ପ୍ରଭୁର ସୁଦୟା ମୋତେ ସେହିମତି ହେଉ
ରଖ ରଖ ଚକ୍ରାୟୁଧ ମହତ ମୋ ଥାଉ ।
ଶୁଣ ଆହେ ମହାରାଜା ସାଧବୀର ବାଣୀ
ତପେ ବସି ନାରାୟଣ କର୍ଣ୍ଣେ ତାହା ଶୁଣି ।

କାବେରୀ ନଦୀ ତୀରରେ ବସିଥିଲେ ଜପେ.
ମାତାର ରୋଦନ ଶୁଣି ଉଠିଲେ ସେ ଧାପେ ।
କିରେ ତୁହି ବୋଲି ଡାକ ଦେଲେ ଖଣ୍ଡଦୂରୁ
ଚୋରାଇ ନେଉଛୁ ପରନାରୀ କାହା ଘରୁ ।
ପରସ୍ତିରୀଙ୍କି ହରଣ କରନ୍ତି ଯେ ଲୋକେ
ଇହଲୋକେ ନିନ୍ଦା ତାଙ୍କୁ ପରଲୋକେ ନର୍କେ ।
ବେନିକୁଳ ଲୋକଙ୍କୁ ଯେ ଅଟେ ମହାଶତ୍ରୁ
ଅପ୍ରଛନ୍ନ ହୋଇଣ ସେ ଯାଏ ଜାତି ଗୋତ୍ରୁ ।
ଜନ ମୁଖେ ଗଞ୍ଜଣା ସେ ରାଜାର ବଇରୀ
ମୁହିଁ ନାରାୟଣ ଏହା ସହିବି କିପରି ।
ମଲୁ ଆରେ ରତିଚୋର ସମ୍ଭାଳ ସମ୍ଭାଳ
ଏତେକ ବୋଲି ପେଷିଲେ ବାଣ ମହାକାଳ ।
ସୈନ୍ୟଯାକ ତାହାର ଯେ ପକାଇଲେ ଛେଦି
ଦିଶିଲାକ ମଡ଼ାମୟ ବହି ରକ୍ତନଦୀ ।
ଦେଖିଣ ପଳାଏ କଞ୍ଚାସୁର ରଥ ଟେକି
ରହରେ ଅସୁର ବୋଲି ନାରାୟଣ ଡାକି ।
ବ୍ରହ୍ମାଣ୍ଡ ଯାକ କମ୍ପିଲା ତାଙ୍କ ଏକ ଡାକେ
କମ୍ପିଲାକ ମେରୁଗିରି କମ୍ପେ ଦେବଲୋକେ ।
ରାହୁକୁ ଦେଖି କିଙ୍କର ଯେହ୍ନେ ଶଶଧର
ସେରୂପେ ପ୍ରଭୁଙ୍କୁ ଦେଖି କମ୍ପେ କଞ୍ଚାସୁର ।
ପାଞ୍ଚଇ ମାରୁଛି ଅବା ମାତା ଛଳେ ମୋତେ
ବାହୁଡ଼ାଇ ଦେବି ତାର ଦୟା ବସୁ ଚିତ୍ତେ ।
ମୁଁ ହେଲେ ଅନେକ ରାଜା ଜିଣିଛି ମେଦିନୀ
କେବଳ ଦୋଷେକ ଘେନି ଧର୍ମ ହେଲା ହାନି ।
ସର୍ବ ପାପରୁ ଯେ ପରନାରୀ ବଡ଼ ପାପ
ମାତାକୁ ମାଇଲେ କିବା ନ କରିବ କୋପ ।
କେବଳ ଆଣିଛି ମାତ୍ର ନାହିଁ ଭୋଗ କରି
ନୋହିଲେ ପାରନ୍ତା କାହୁଁ ନାରାୟଣ ମାରି ।
ବାହୁଡାଇ ଦେବାରୁ ଏ ହେବ ଯେବେ ତମ
ତେବେ ତାହା ତୁଲେ ଯାଇ କରିବି ସଂଗ୍ରାମ ।
ଏତେ ପାଞ୍ଚଣ ଅସୁର ସାଧବୀକି ଧରି
ବୋଇଲା ହୋ ନାରାୟଣ ନିଅ ଗର୍ଭଧାରୀ ।
କଞ୍ଚାସୁର ବୋଇଲା ନ ଜାଣୁ ମୋତେ ତୁହି
କୋଟି କଳପ ଆୟୁଷ ହେଲାଣି ମୋ ଦେହୀ ।
ମୋ ଆଗେ ଜନ୍ମି ହିରଣ୍ୟ ଦୈତ୍ୟ ଗଲାମରି
ରାବଣହିଁ ମଲାଣି ମୁଁ ଅଛି ଦେହ ଧରି ।
ଚଣ୍ଡ ମୁଣ୍ଡ ଯେ ମହିମା ଦୈତ୍ୟପତି ଯାଏ
ଏହାଙ୍କ ଜନ୍ମ ଲାଗୁଛି ମୋତେ କାଲି ପ୍ରାୟେ ।
ଆବର କ୍ଷତ୍ରିମାନଙ୍କୁ ନ ମାନଇ ମୁହିଁ
ତୋ ମାତାଙ୍କୁ ତୁହି ଧରି ଯାଅ ଏବେ ତୁହି ।
ମୁଁ ହେଲେ ଜାଣ ଅନେକ କାଳର ଯେ ବୃଦ୍ଧ
ନ ଗଲେ କରିବି ତୋତେ ଆଜ ପ୍ରାଣେ ବଧ ।
ମୋହର କ୍ଷତ୍ରୀ କର୍ମ କି ନାହିଁ ତୋତେ ବୁଝା
କେବଳ ବିପ୍ର ବୋଲିଣ ଡରୁଛି ମୋ ମଜ୍ଜା ।
ସାମାନ୍ୟ କ୍ଷତ୍ରୀ ହୋଇଲେ ପାଆନ୍ତୁଣି ଦଣ୍ଡ
ଏକବାଣେ ପେଷିକରି ଛେଦିବି ତୋ ମୁଣ୍ଡ ।
ମାତାଙ୍କୁ ଘେନି ତୋହର ଯାଅ ଏବେ ଚଳି
ଶୁଣିଣ ଶ୍ରୀ ନାରାୟଣ ଉଠିଲେ ପ୍ରଜ୍ୱଳି ।
ଅକ୍ଷୟ ନାରାଚକୁ ଯେ ଧରି ବେନି କରେ
ବୋଇଲେ ଦୈତ୍ୟକୁ ଆଜ ମାରିବଇଁ ଶରେ ।
ଆପଣା ମାତା ବୋଲି ନ ଥିଲେ ପ୍ରଭୁ ଜାଣି
କହୁଁ କହୁଁ ଉଠିଲେ ଯେ କୋପେ ଶିରଝୁଣି ।
ବୋଇଲେ ଶୁଣ ତୁ ଆରେ ପାପିଷ୍ଠ ଚଣ୍ଡାଳ
ମୋ ମାତାର ଲାଗି ଆଜି ପୂରିଲା ତୋ କାଳ ।
କ୍ଷତ୍ରିୟ ନୋହୁ ବୋଲି ତୁ ନିନ୍ଦିଲୁ ଯେ ମୋତେ
ଆଜ ମୋର କ୍ଷତ୍ରୀପଣ ଦେଖାଇବି ତୋତେ ।
ମୋତେ ନିନ୍ଦିଲୁ ମାତାଙ୍କୁ ନେଲୁ ପୁଣି ମୋର
ଏଣୁ ଯମ ଜାଣ ପାଞ୍ଜି ପୋଛିଲା ତୋହର ।
ନିଜ ନିନ୍ଦା ଗୁରୁ ନିନ୍ଦା ସହଇ ଯେ ପ୍ରାଣୀ
ମାତୃହରଣ ଲୋକକୁ ନ ଦିଏ ଯେ ହାଣି ।
ପତ୍ନୀ ହରିବା ଲୋକକୁ ରଖଇ ଯେ ନର
ପଡ଼ନ୍ତି ଶତେ ପୁରୁଷ ଯାକେ ନର୍କେ ତାର ।
ଶୁଣି କଞ୍ଚାସୁର ହସେ ହୋଇ କର କର
ବୋଇଲା ଦେଖିବା ଆଗ ବିନ୍ଧ ତୋର ଶର ।
ମୁହିଁ ଅଟେ ଦୈତ୍ୟରାଜା କ୍ଷତ୍ରୀ ଶିରୋମଣି
ତୁ କେହ୍ନେ କହୁଛୁ ବିପ୍ର ହୋଇ କଥା ଟାଣି ।
ମିଛେହେଁ ମରୁ ବଡ଼ିମାପଣେ ମାତ୍ର ବହି
ବ୍ରାହ୍ମଣ ସ୍ୱଭାବ ତୁମ୍ଭେ କେଭେ ଛାଡ଼ ନାହିଁ ।
କଞ୍ଚାର ବାଣୀ ଶୁଣି ଶ୍ରୀ ନାରାୟଣ ଉଠି
ଖଡ଼ଗ ବୁଲାଇ ପିଟିଲେକ ନେଇ ଯଷ୍ଟି ।
ସେ ରଥରେ ଅସୁର ସେ ସମ୍ଭାଳିଲା ରହି
ନାରାୟଣଙ୍କ ଉପରେ ବିନ୍ଧେ ଶର ନେଇ ।
ସହସ୍ରେକ ଶର ଏକାବେଳେ ଦେଲା ଛାଡ଼ି
ଆସୁ ଆସୁ ବାଟେ ଗଲେ ତରୁତୃଣ ଛିଡ଼ି ।
ନାରାୟଣଙ୍କୁ ଦେଖିଣ ପଳାଇଲେ ଶର
ପଶିଲେ ଡରେ ଯାଇଣ ପାତାଳ ବିବର ।
ପୁଣିହିଁ ପେଷିଲା ଲକ୍ଷେ ଶର କଞ୍ଚା ଜାଣ
ଦୂରୁଁ ଦେଖି ତାହା ଛେଦିଲେକ ନାରାୟଣ ।
ପୁଣିହିଁ କୋଟି ନାରାଚ କଞ୍ଚାସୁର ବିନ୍ଧି
ମନର ବ୍ୟଗ୍ରରେ ତାହା ନାରାୟଣ ଛେଦି ।

ପୁଣିହିଁ ମର୍ଭୂତେ ଶର ପେଷିଲା ଦଇତ୍ୟ
ଚକ୍ର ପେଷି ନାରାୟଣ ଛେଦିଲେ ତ୍ୱରିତ ।
ଦେଖିକରି କଜ୍ଜାସୁର ମହାକୋପ କଲା
ବ୍ରହ୍ମାର ଦେଲା ନାରାଚ ମନେ ସୁମରିଲା ।
ତକ୍ଷଣେ ମିଳିଲେ ନୀଳଭୁଜ ବାଣ ଆସି
ଧନୁରେ ଯୋଚି ନାରାଚ ଦୈତ୍ୟଦେଲା ପେଷି
ପେଷନ୍ତେ ଆସନ୍ତେ ବେନି ଶର ଶୂନ୍ୟେଗର୍ଜି
ଦେଖିଣ ନାରାୟଣ ରହିଲେ ଚକ୍ଷୁ ବୁଜି ।
ପାଞ୍ଚନ୍ତି ଏହି ବାଣ ଯେ ଅଟେ ଅପାଲଟ
ବ୍ରହ୍ମା ବିଷ୍ଣୁ ହର ହେଲେ ସରଇ ତା ନଟ ।
ପାପିଷ୍ଠ ଅସୁର ହସ୍ତୁ ଦେଲାଣି ତ ଛାଡ଼ି
ଏମନ୍ତ ପାଞ୍ଚିଣ ପ୍ରଭୁ ଦେଲେ ଏକ ରଡ଼ି ।
ଓଁ କାରକୁ ଜପି କଲେ ବ୍ରହ୍ମକୁ ଯେ ଲୟେ
ଲୟକରୁ ଯେ ଆଲୋକ ଦିଶେ ଜ୍ୟୋତିର୍ମୟେ
ସେ ଜ୍ୟୋତିର ଅଗ୍ରଭାଗ ଦିଶଇ ଶୁକଳ
ମଧ୍ୟଭାଗ ଦିଶଇ ତା ଆରକ୍ତେ ଉଜ୍ଜ୍ୱଳ ।
ତଳଭାଗଯାକ ଦିଶେ ଶୁକଳ ଯେ ଶ୍ୟାମ
ଏମନ୍ତ ଜଳଇ ତ୍ରିଗୁଣରେ ଜ୍ୟୋତିଧାମ ।
ଦୀପ ଅନଳ ଜଳଇ ଯେହ୍ନେ ତିନିରୂପେ
ସେ ଲିଭି ରହିଲା ସ୍ଥାନ ନ ଦେଖେ କେ ଆପେ
ଏମନ୍ତ ବ୍ରହ୍ମେ ରଖନ୍ତେ ଚିତ୍ତ ନେଇ ସ୍ୱାମୀ
ଆସନ୍ତି ସେ ବେନି ବାଣ ଶାନ୍ତି ଚିତ୍ତେ ଗମି ।
ନାରାୟଣ ଧ୍ୟାନେ ଦେଖି ଚଳିଲେ ବୈକୁଣ୍ଠ
ଶୁଣ ଆହୋ ମହାରାଜା ଜ୍ଞାନ ଏଡ଼େ ଆଣ୍ଟ ।
ନାରାୟଣ ଯେବେ ବ୍ରହ୍ମେ ଲୟ ନ କରନ୍ତେ
ତତକ୍ଷଣେ ବେନି ବାଣ ମୃତ୍ୟୁ ଦେଇ ଯାନ୍ତେ ।
ଏଥି ଉତ୍ତାରୁ ଦଇତ ଚାହେଁ ରଣଭୂଇଁ
ଦେଖିଲା ଶ୍ରୀନାରାୟଣ ଛନ୍ତି ଉଭା ହୋଇ ।
ପାଞ୍ଚିଲାକ ତେଡ଼େ ବାଣ ମେଣ୍ଟିଲା ଏ କେହ୍ନେ
ବ୍ରହ୍ମା ଇନ୍ଦ୍ର ହେଲେ ତ ନ ଥାନ୍ତେ ରହିପ୍ରାଣେ ।
କେଡ଼େହେଁ ଲୋକ ଏ ଜଣେ ବୋଲି ବିଚାରିଲା
ପୁଣିହିଁ ମର୍ଭୂତେ ବାଣ ଲେଉଟି ବିନ୍ଧିଲା ।
ଆସନ୍ତି ସେ ଶରେ ପବନହୁଁ ବେଗେ ଉଡ଼ି
ଦେଖି ନାରାୟଣ ଦେଲେ ତୀକ୍ଷ୍ଣ ଶର ଛାଡ଼ି ।
ବାଜିଣ ନାରାଚମାନେ ହେଲେ ଖଣ୍ଡ ଖଣ୍ଡ
ଦେଖି ଦଇତ୍ୟ ଧାଇଁଲା ଟେକି ଭୁଜଦଣ୍ଡ ।
ଚାହିଁଣ ପ୍ରଭୁ ତାକୁ ଯେ ହେଲେ ଚତୁର୍ଭୁଜ
ଚାରି କରେ ଧନୁ ଧରି ବିନ୍ଧିଲେ ନାରାଜ ।
ଶଙ୍ଖ ଚକ୍ର ଗଦା ପଦ୍ମ ବିରାଜଇ କରେ
ଛେଦିଲେ ଶର ତାହାର ପେଷି ବାବଲରେ ।
ଚରଣ ବେନିକି ହାଣି ପକାଇଲେ ପୁଣ
ମୁଣ୍ଡାବୃକ୍ଷ ପ୍ରାୟେ ରହିଲାକ କଜ୍ଜା ଜାଣ ।
ଗଣ୍ଡିମୁଣ୍ଡକୁ ଧରିଣ ଡିଅଇଁ ସେ ଶୂନ୍ୟେ
ତାହାକୁ ଦେଖି ଚକିତ ହୋନ୍ତି ନାରାୟଣେ ।
ବୈଷ୍ଣବୀ ନାରାଚ କରେ ଧରି ପୁଣି ହରି
ହାଣିଲେ ବେକ ତାହାର ବେନି ଖଣ୍ଡ କରି ।
ପକ୍ୱଫଳ ପ୍ରାୟେ ଶିର ପଡ଼ିଲାକ ଛିଡ଼ି
ମଉଳି ଛିଡ଼ନ୍ତେ ଦେହ ଭୂମିରେ ଯେ ପଡ଼ି ।
ଦଇତ୍ୟର ପ୍ରାଣ ଗୋଟି ନାଶି ଚକ୍ରପାଣି
ତାହାର ନଗ୍ରକୁ ଚଳିଗଲେ ସେହିକ୍ଷଣି ।
ସେ ନଗ୍ରର ନାମ ଗୋଟି ଶୋଣିତ ଯେ ପୁର
ପଶିଣ ତହିଁରେ ହରି କଲେ ନାରଖାର ।
ନାଶିଲେ ପୁତ୍ରକୁ ତାର ଧରି ମହାକୋପେ
ହାଣିଲେ ଦୁଷ୍ଟମାନଙ୍କୁ ଖୋଜି ଯାଇଁ ଆପେ ।
ସ୍ତିରୀ ବାଳକଙ୍କୁ ଧରି ଧ୍ୱଂସିଲେ ସକଳ
କି ଜାଣି ପଶିଲା ତାର ପୁରେ ଆସି କାଳ ।
ତୁଚ୍ଛା କଟକ ରଖିଣ ଚଳିଲେ ଏକାକେ
ସପତ ଦ୍ୱୀପ ବୁଲି ସେ ଅଇଲେ କ୍ଷଣକେ ।
ଦୁଷ୍ଟଙ୍କୁ ସଂହାରି କରି ଅଇଲେକ ଧାଇଁ
ସ୍ତୁତି କରନ୍ତି ଦେବତାମାନେ ଶୂନ୍ୟେ ଚାହିଁ ।
ନାରାୟଣଙ୍କର ତେଜ ମତ୍ତସିଂହ ଜିଣି
ସ୍ୱୟଂ ଅବତାରେ ହୋଇଛନ୍ତି ଚକ୍ରପାଣି ।
ଦୁଷ୍ଟଲୋକ କରି ଆଉ ନ ଥୋଇଲେ ଜଣେ
କଜ୍ଜାକୁ ମାରି ମିଳିଲେ ଆସି ମାତା ସ୍ଥାନେ ।
ପୁଚ୍ଛିଲେ ବିକ୍ରମଭାବ ହୋଇ ନାରାୟଣ
ବୋଇଲେ ମାତ କେମନ୍ତେ ତୁମ୍ଭର ଏ ଗୁଣ ।
ଆମ୍ଭ ପିତୃଦେବ ଆଜ ନ ଥିଲେ କି ଘରେ
କିବା ଇଚ୍ଛା କରି ଯାଇ ବରିଲ ଅସୁରେ ।
ଏଥକୁ ଇଷ୍ଟଦେବତା ସୁମର ଗୋ ମାଏ
କୁଳକୁ କଳଙ୍କ ଆଣି ଲଗାଇଲ କାୟେ ।
ମାତା ବୋଇଲେ ବାବୁରେ ନାହିଁ ମୋର ଦୋଷ
ବାପ ଭାଇ ନ ଥିବାରୁ ପଶିଲା ରାକ୍ଷସ ।
ଏକାକୀ ଦେଖିଣ ସେହୁ ଆଣେ ମୋତେ ଧରି
ରଥରେ ବସାଇ ଯାଇଅଛି ଏଣେ ମରି ।
ଏଥକୁ କହୁଛି ଇଷ୍ଟ ମୋର ତେବେ ଶୁଣ
ସାକ୍ଷାତେ ଅଟନ୍ତି ପତି ଇଷ୍ଟ ମୋର ଜାଣ ।
ମୁହିଁ ଯେବେ ପତିବ୍ରତା ନଷ୍ଟ କରିଥାନ୍ତି
ନାରାୟଣ ପ୍ରାୟ ପୁତ୍ର କାହିଁକି ପାଆନ୍ତି ।
ଆନରେ ଯେବେ ମୋହର ଚିତ୍ତ ଥିବ ଜାଣ
ନିଶ୍ଚୟ ତୋହର ବାଣେ ଯିବ ମୋର ପ୍ରାଣ ।

ନୋହିଲେ ପତିଭକ୍ତିରେ ଥିବି ଯେବେ ଦୃଢ଼
ତୁ ନାରାୟଣ ହାଣିଲେ ହେବି ମୁଁ ଅଛିଡ଼ ।
ନାରାୟଣ ପାଶୁପତ ବାବଲ ବୈଷ୍ଣବୀ
ଏ ଶରରେ ହାଣ ମୁହିଁ ଏହିରୂପେ ଥିବି ।
ଏହି କଥା ସତ୍ୟବ୍ରତ ହେଲା ମୋ ପ୍ରମାଣ
ମାର ତୁ ବେଗେ ହେଳା ନ କର ନାରାୟଣ ।
ଶୁଣିଣ ସେ ନାରାୟଣ ମାତା ମନ ବିଡ଼ି
ବ୍ରହ୍ମଶର ପେଷନ୍ତେ ନ ଗଲା ବେକ ଛିଡ଼ି ।
ଆନନ୍ଦ ମନରେ ଦେବୀ ଛନ୍ତି ତହିଁ ବସି
ଦେଖି ନାରାୟଣ ମନେ ରହିଲେ ଯେ ତ୍ରାସି ।
ପାଞ୍ଚିଲେ ସେ ଶର ବାଜି ଫୁଟେ ମେରୁଗିରି
ଖଣ୍ଡ ଖଣ୍ଡ ହୋଇ ଭାଜିପଡ଼େ ବସୁନ୍ଧରୀ ।
ନିଶ୍ଚୟ ଏ ପତିବ୍ରତା ଅଟଇ ପ୍ରମାଣ
ଏତେ ବୋଲି ହସ୍ତୁଁ ଶର ତେଜି ନାରାୟଣ ।
ଲଜ୍ଜାପାଇ ଶୁତିଲେକ ମାତାପାଦେ ପଡ଼ି
ଉଠି ସ୍ତୁତି କରନ୍ତି ସେ ଶିରେ କରଯୋଡ଼ି ।
ନମସ୍ତେ ନମସ୍ତେ ମାଗୋ ଅନାଦି ଅପର୍ଣ୍ଣା
ଯାବତ ଜୀବ ଗୋ ତୁମ୍ଭ ଗର୍ଭୁ ଜାତ ସିନା ।
ବୁଝିଲେ ତ ସବୁଙ୍କର ମାତା ଅଟ ତୁମ୍ଭେ
ବ୍ରହ୍ମା ବିଷ୍ଣୁ ହରଙ୍କୁ ଯେ ଜାତ କଲ ଗର୍ଭେ ।
କୀଟରୁ ଯେ ବ୍ରହ୍ମଯାଏ ଗର୍ଭେ ସବୁ ଧରି
ଯେ ଯାହାର ଅନୁରୂପେ ପ୍ରସବ ଯେ କରି ।
ସମସ୍ତେ ଜନ୍ମନ୍ତି ତୁମ୍ଭ ଗର୍ଭୁ ବହି ଗାତ୍ର
ତେଣୁ ଦେହେ ଗା ଶବଦ କହନ୍ତି ଜଗତ ।
ଗାତ୍ର ଏହି ଶରୀରକୁ ଦେବେ ପୁଣି କହି
ଗା ଶବଦ ଗୋଟିକ ଯେ ସ୍ତିରୀ ଅଙ୍ଗେ ବହି ।
ଏଣୁ ସବୁରି ଦେହ ଯେ ଗାତ୍ରରେ ପ୍ରବର୍ତ୍ତି
ସ୍ତିରୀ ପୁରୁଷ ପତଙ୍ଗ କୀଟ ଯେତେ ଛନ୍ତି ।
ତ୍ରିଖଣ୍ଡି ନୋହି ସଂସାରେ ନାହିଁ କେହି ଲୋକ
ସ୍ତିରୀ ପୁରୁଷଙ୍କ ଗାତ୍ର ବିଚାରିଲେ ଏକ ।
ପୁଂଲିଙ୍ଗ ଗାତ୍ରଯାକ ଯେ ପୁରୁଷେ ପ୍ରବର୍ତ୍ତି
ସ୍ତ୍ରୀଲିଙ୍ଗ ଗାତ୍ରଯାକ ଯେ ବୋଲାନ୍ତି ଗାୟତ୍ରୀ ।
ତୁମ୍ଭର ଗର୍ଭୁ ମାତା ଗୋ ଜନ୍ମ ହୋଇ ମୁହିଁ
ତୁମ୍ଭଙ୍କୁ ନ ଚିହ୍ନି ଅପରାଧ ଅର୍ଜିଲଇଁ ।
ଏଥକୁ ଜନନୀ ଗୋ ନ ଧର ମୋର ଦୋଷ
ମୂର୍ତ୍ତିମଧ୍ୟେ ଶ୍ରେଷ୍ଠ ତୁମ୍ଭେ ତହିଁ ତୁମ୍ଭ ଶିଷ୍ୟ ।
ନ ଜାଣିଣ ପୁତ୍ର ଯେବେ ଅର୍ଜେ ଅପରାଧ
ତହିଁକି ମାଏ କରିବେ ଯଦ୍ୟପି ଗୋ କ୍ରୋଧ ।
ସେ କ୍ରୋଧ ପଡ଼ିବ ନିଶ୍ଚେଁ ବାଳକ ଉପର
ତହୁଁ ବର୍ତ୍ତି ପାରିବେ କି କାହାର କୁମର ।
ଅଙ୍କକରେ ମାତାଏ ତ ଦେଉଥିବେ ଗାଳି
ବୋଲିବେ ଯେ ପାପିଷ୍ଠରେ ଯାଅ ତୁମ୍ଭେ ଜଳି ।
ଏମନ୍ତ କ୍ରୋଧ କଲେ କି ବରତିବେ ପୋଏ
ଏହା ବୁଝି ଦୟାକର ମୋହ ପ୍ରତି ମାଏ ।
ଶୁଣିଣ ହସିଲେ ମାତ ହୋଇ କର କର .
ବୋଇଲେ ନ ପଡୁ ଅଭିଶାପ ତୋ ଉପର ।
ସଂସାର ପାଇଁ ଲାଗିଲା ଚିନ୍ତା ଯେବେ ତୋତେ
ମାତାଙ୍କ ଗାଳି ଆଜ୍ଞୁ ନ ପଡୁ ପୁତ୍ର ଗାତ୍ରେ ।
ଯେତେ ଗାଳିଦେବ ତେତେ ବଢ଼ିବ ଶରୀର
ତୋ ନାମେ ଜପନ୍ତୁ ନରେ ମନ୍ତ୍ର ଅଷ୍ଟାକ୍ଷର ।
ଶ୍ରୀ ନାରାୟଣ ବୋଲିଣ ସେହି ଯେ ଭଜନ୍ତୁ
ଭଜନମାନ କରିଣ ଭବୁ ତରିଯାନ୍ତୁ ।
ଆବର ଅନ୍ତଃକାଳରେ ତୋ ନାମ ଗୋଟିକି
ନାରାୟଣ ବୋଲିଣ ଯେ ଉଚ୍ଚେ ଥିବେ ଡାକି ।
ତାଙ୍କୁ ଜାଣ ନାଶକର ଭୟ ନ ଲାଗିବ
ଯେତେ ପାପ ଥିବ ତାର ସବୁ କ୍ଷୟ ଯିବ ।
ତୁହି ଯେଉଁପରି ମୋତେ ଉଦ୍ଧାରିଲୁ ଆସି
ଏହା ମିଳଇ ପ୍ରୟାଗେ ଥିଲେ ଦେହ ଝାସି ।
ଏ ଲୋକ ଅପବାଦରୁ କର ମୋତେ ପାରି
ତୁ ପରୀକ୍ଷି ନ ବୁଝିଲେ ବୋଲନ୍ତେ ଦୋଚାରୀ ।
ମୋର ପତିବ୍ରତା ଫଳ ହୁଅନ୍ତା ବିଫଳ
ତୁ ଏବେ ରଖିଲୁ ମୋର ଯଶ ଚିରକାଳ ।
ମୁଁ କୋପ ହେଲେ ଚନ୍ଦନପରି ହେଉ ତୋତେ
ବାଳୁତ ଇନ୍ଦୁ ପରାୟେ ପ୍ରକାଶୁ ଜଗତେ ।
ମାତାଏ କହି ସମ୍ପିବେ ଆଜ୍ଞୁ ଯେତେ ଢୁଡ଼ି
ଗୋରଜ ରେଣୁ ପରାୟେ ଶୂନ୍ୟେ ଯାଉ ଉଡ଼ି ।
ଏମନ୍ତ ବୋଲି ଦିଅନ୍ତେ ମାତା ବର ପୁଣ
ଶୁଣିଣ ସେ ଶ୍ରଦ୍ଧାଯୁକ୍ତ ହେଲେ ନାରାୟଣ ।
ମାତାଙ୍କୁ ଘେନି ସଙ୍ଗରେ ଗୃହେ ଗଲେ ଚଳି
ବିପ୍ର ପୀତାମ୍ବରଙ୍କୁ ଯେ ରଖ ବନମାଳୀ ।

❋ ❋ ❋

## ମୁର ଦ୍ୱାରା ଆନନ୍ଦବନ ତାଡ଼ନ ଓ ସିନ୍ଧୁମଧ୍ୟେ ପ୍ରକ୍ଷେପଣ

ସୁବିଜ୍ଞ ମନ୍ତ୍ରୀ କହେ ଯେ ଶୁଣ ମୁରାସୁର
ଏହିରୂପେ ବିପ୍ରକୁଳେ ଜାତ ଚକ୍ରଧର ।
କୃଷ୍ଣବଲ୍ଲଭ ରାଜା ତ ପ୍ରତ୍ୟକ୍ଷେ ବ୍ରାହ୍ମଣ
ତା ଘରେ ନୃସିଂହ ସ୍ୱାମୀ ଜନ୍ମିଲେ ଆସିଣ ।
ଅନନ୍ତ ମୂରତି ହୋଇ ଶେଷ ଜାତ ହୋଇ
ଦାରୁଣ ଭାଇକି ତୋର ମାରିଲେଟି ସେହି ।

ପୁତ୍ର ଯେ ତୋହର ପୁଣ ଶତଲକ୍ଷ ଥିଲେ
ଜଣକେ ପାରନ୍ତି ପୃଥ୍ୱୀ ଟାଳି ମନ କଲେ ।
ତାହାଙ୍କୁ ମାରିଲା ଦିନୁ ନ ପାରିଲୁ ଜାଣି
ସୈନ୍ୟଗୁଡ଼ାଙ୍କୁ ପେଷିଣ ମରାଇଲୁ ପୁଣି ।
ସମସ୍ତେ ତ ଦେଖୁ ଦେଖୁ ମଲେ ଯାଇ ହସ୍ତେ
ବିପ୍ରବୋଲି ତାହାଙ୍କୁ ଯେ ବୋଲୁ କେଉଁମତେ ।
ତୋହରି ନିମନ୍ତେ ବିଷ୍ଣୁ ଭବେ ଅବତରି
କ୍ଷୟକଲେ ବଂଶ ଏବେ ଯିବ ତୋତେ ମାରି ।
ଏ କଥା କହିଲି ଧ୍ରୁବ ତୋତେ ରାଜା ଜାଣ
ନ ପାରିବୁ ମାରି ତାଙ୍କୁ ସେହି ନାରାୟଣ ।
ମାଇଲା ପ୍ରାୟ ଦିଶିଲା ଆସି ଜାଣ ମୋତେ
ମରିଲେ ତରିବୁ ମାତ୍ର ନାରାୟଣ ହାତେ ।
ଏ ସଂସାରୁ ତୁହି କିଛି ନେଇଯିବୁ ନାହିଁ
କୀର୍ତ୍ତିମାତ୍ର ରହିଯିବ ଯିବୁ ମୋକ୍ଷ ହୋଇ ।
ନୋହିଲେ ଭେଟି ରହନ୍ତୁ ଯେବେ ତାଙ୍କୁ ଏବେ
ଐଶ୍ୱର୍ଯ୍ୟ ଭୋଗାଦି ଭୁଞ୍ଜୁଥାନ୍ତୁ ଠାବେ ଠାବେ ।
ଶୁଣିକରି ମୁରାସୁର ଉଠେ କୋପ କରି
ରଡ଼ିଏ ଛାଡ଼ିଲା କମ୍ପିଗଲା ତିନିପୁରୀ ।
ମନ୍ତ୍ରୀକି ବୋଇଲା ଏହା ବୋଇଲୁ କି ବୋଲି
ଦେହ ତ କମ୍ପିଲା ମୋର ତାଳୁକାକୁ ବୋଲି ।
ମୋହର ବଳ ବୀର୍ଯ୍ୟ କି ଜଣାନାହିଁ ତୋତେ
ବ୍ରହ୍ମାଙ୍କର ପୁତ୍ର ମୁହିଁ ଅଟଇ ଜଗତେ ।
ଈଶ୍ୱର ଆସିଣ ବଳେ ଯହୁଁ ଦେଲେ ବର
ଦେବତାମାନେ ଆସିଣ ହେଲେ ପରିଚାର ।
ଦଶଦିଗପାଳେ ମୋର ଜାଣ ସେବାକାରୀ
ମନ କଲେ କ୍ଷଣକରେ ଆଣିପାରେ ଧରି ।
ଇନ୍ଦ୍ରକୁ ଯହିଁରେ ମୁହିଁ ରଖିଥିଲି ବନ୍ଦୀ
କୋଣକେ ପଡ଼ିଲା ଶାଙ୍କୋଳିରେ ଗୋଡ଼ ଛନ୍ଦି
ଆବର କଥାମାନ ମୁଁ କହିବି ଯେ କେତେ
ସାତଦ୍ୱୀପଯାକ ଜିଣି ଅଛଇ ଜଗତେ ।
ସକଳ ରାଜ୍ୟେ ଅଟଇ ମୁହିଁ ରାଜେଶ୍ୱର
ଭାଇ ମଲାରୁ କି ବଳ ଗଲା ରେ ମୋହର ।
କହିଲୁ ତୋହର ପରା ମନ୍ତ୍ରୀ ଏହା ଜାଣି
ମୁହିଁ ଶୁଭେ ଥିଲେ କେତେ ନାହାନ୍ତି କି ପୁଣି ।
ଆହେ ସୁବିଜ୍ଞ ବୁଝିବ ଏବେ ମୋ ପ୍ରତିଜ୍ଞା
ଆଜି ଏକା ବୁଡ଼ାଇବି ବିପ୍ରଙ୍କର ସଂଜ୍ଞା ।
ମୋହର କ୍ଷତ୍ରିୟପଣ ଅଛି ମୁହିଁ ଜାଣି
ସେ ନୃସିଂହ ବଳେ ମୋତେ ପାରେ କିରେ ଜିଣି
ଏ ଚଉଦପୁରେ ମୋତେ ଅଛି କେ ସମାନ
ଦେବତା ଯହିଁ ଅଟନ୍ତି ମୋର ଭୃତ୍ୟଜନ ।

ଏ ଛାର ମନୁଷ୍ୟ କୃଷ୍ଣବଲ୍ଲଭର ପୋଏ
ବୁଝିଲେ ବ୍ରହ୍ମାଣ୍ଡେ ନାହିଁ କାହାକୁ ମୋ ଭୟେ ।
ମୁହିଁ ସେ ମହାକ୍ଷତ୍ରିୟ ଅଟେ ବଳବନ୍ତା
ଏ ତିନିପୁରେ କେ ମୋତେ ଅଛଇ ଜିଣନ୍ତା ।
ଏମନ୍ତ ବୋଲି ସେ ରଡ଼ି ଛାଡ଼େ ଘନ ଘନ
ମନ୍ତ୍ରୀକି ବୋଇଲେ ଦେଖ ମୋ ବଳବୀର୍ଯ୍ୟମାନ ।
ଆନନ୍ଦବନ ଖଣ୍ଡକ ଦେବଇଁ ଉପାଡ଼ି
ମରନ୍ତୁ ଯେ ଦୁଇ ଭାଇ ସିନ୍ଧୁ ମଧ୍ୟେ ପଡ଼ି ।
ଏମନ୍ତ ବୋଲି ଉଠିଲା ମୁର କୋପଭରେ
ବିଜୟା ରଥରୁ ଡେଇଁ ପଡ଼ିଲା ଭୂମିରେ ।
ମହାକୋପ ହୋଇଣ ସେ ଗର୍ଜେ ଘନ ଘନ
ହୁଁ କାର ନାଦେ ଟେକିଣ ଧଇଲାକ ବନ ।
କ୍ଷଣକରେ କାମରୂପୀ ହେଲା ଦୈତ୍ୟରାୟେ
ବେନି ହସ୍ତ ବିସ୍ତାରିଲା କୋଟି ଯୂଣ ଯାଏ ।
ମେରୁ ଗିରି ସମାନ ତା କାୟା ଗଲା ବଢ଼ି
ମାରି ଦନ୍ତ ଆଣ୍ଟେ ବନ ଧଇଲାକ ଭିଡ଼ି ।
ବିକରାଳ ସ୍ୱରୂପ ଯେ ହୋଇ ଦୈତ୍ୟବଳୀ
ତେଡ଼େବଡ଼ ତୋଟାକୁ ସେ ଦେଲା ଦନ୍ତେ ଟାଳି
ଚାରି ସହସ୍ର ଉପରେ ଆଉ ତେରଯୂଣ
ଏଡ଼େ ଆକ୍ରାନ୍ତ ତୋଟାକୁ ଧରି ଦୈତ୍ୟରାଣ ।
ତିଳପୁଷ୍ପ ପ୍ରାୟେ ଟେକିଦେଲା ଦନ୍ତ ଅଗ୍ରେ
କାହାରିକୁ ନାହିଁ ଜଣା ଟେକେ କେଡ଼େ ବ୍ୟଗ୍ରେ
ଭୂମି ଖୋଳିଲେ ଯେମନ୍ତେ ଶୃଙ୍ଗେ ଲାଗେ ମାଟି
ସେହିମତ ଦନ୍ତଅଗ୍ରେ ଦିଶେ ବନଗୋଟି ।
ଦେଖ ସେହି ଅସୁରର ବଳ ଆଣ୍ଟ କାୟେ
ଟେକିଲାକ ତେଡ଼େ ତୋଟା ମାଟିଖଣ୍ଡ ପ୍ରାୟେ
ଶୁଣ ହେ ନାରଦ କହନ୍ତି ଯେ ବେଦବର
ବନରେ ପଶି ପାଞ୍ଚନ୍ତି ଦେବ ଦାମୋଦର ।
ବୋଲନ୍ତି ଏ ବନ ନେଇ ଯିବା ପରା ସ୍ୱର୍ଗେ
ଦେବଇନ୍ଦ୍ର ମାଗିଥିଲା ଆସି ମୋତେ ଆଗେ ।
ଏ ତୋଟାଗୋଟି ମଞ୍ଚେ ନ ଥିଲେ ଭଲ ଏକା
ସ୍ୱର୍ଗେ ଚଳିଲେ ନନ୍ଦନବନେ ହେବ ଲେଖା ।
ମାନବଙ୍କୁ ନୋହେ ଭୋଗ ଏ ତୋଟାର ଫଳ
ଆମ୍ଭେ ତ ନ ଥିବା ସବୁଦିନେ ରବିତଳ ।
ଅସୁର ମଲାକୁ ତେଜି ଯିବା ନିଜପୁରୀ
ଫିଙ୍ଗୁ ଏ ବନକୁ ଦୈତ୍ୟ ସ୍ୱର୍ଗେ ହେବ ଶିରୀ ।
ଦିତି ମଧ ଶାପ ଦେଇଅଛି ବାସବକୁ
ଶରୀରରେ ସହସ୍ରେକ ଯୋନି ହୋଇବାକୁ ।
ସେହି ଯୋନିମାନ ଏବେ ଯିବ ଭଲ ହୋଇ
ଚିହ୍ନମାନ ରହିବଟି ଶାପ ଦୋଷ ଯାଇଁ ।

ଏ ଆନନ୍ଦବନ ହେବ ଯେ ନନ୍ଦନବନ
ଯଜ୍ଞବେଦୀ ପଡ଼ୁ ଯାଇ ନୀଳଗିରି ସ୍ଥାନ ।
ଗୁଣ୍ଡିଚାନଗ୍ରେ ପୁରୁଷୋତ୍ତମେ ଯାଇ ପଡ଼ି
ରହିବେ ତହିଁରେ ପ୍ରଭୁ ନୀଳଗିରି ଛାଡ଼ି ।
ବସିବେ ବାହୁଡ଼ା ବିଜେ ସାରି ନୀଳାଚଳ
ଏ କଥା କଳିଯୁଗରେ ଦେଖିବେ ସକଳ ।
ତୀର୍ଥମାନ ଯାଇଣ ସେ ହୁଅନ୍ତୁ ପୋଖରୀ
ତହିଁରେ ବୁଡ଼ି ସଂସାରୁ ଜୀବେ ଯିବେ ତରି ।
ଆଡ଼ପ ମଣ୍ଡପ ଯାଇ ହେଉ ଯଜ୍ଞବେଦୀ
ଏତେକ ପାଞ୍ଚି ଆନନ୍ଦ ହେଲେ ଦୟାନିଧି ।
ରହିଲେ ଶେଷ ଅନନ୍ତଶଯ୍ୟା ରୂପ ହୋଇ
ତହିଁ ପିତା ଘେନି ବିଜେ କଲେ ଭାବଗ୍ରାହୀ ।
କୃଷ୍ଣବଲ୍ଲଭକୁ ଏହା ନାହିଁ ଜଣା କିଛି
ପୁତ୍ର କୋଳେ ଧରି ବସିଥିଲା ପ୍ରାୟ ଅଛି ।
ଏଥି ଉତ୍ତାରେ ସେ ଦୈତ୍ୟ ଗର୍ଜି ଅନ୍ତରାଳେ
ଚକ୍ର ପରାୟ ବୁଲାଇ ଫିଙ୍ଗେ ସିନ୍ଧୁ ଜଳେ ।
ଛତ୍ର ଆକାରେ ଛାଡ଼ନ୍ତେ ଟେକି ଅନ୍ତରୀକ୍ଷେ
ପବନେ ଉଡ଼ାଇ ପ୍ରଭୁ ଦେଲେ ତା ପ୍ରତ୍ୟକ୍ଷେ ।
ସ୍ୱର୍ଗର ପାଖେ ପଡ଼ିଲା ଯାଇ ବନପତି
ନ ଟଳି ରହିଲେ ବୃକ୍ଷମାନ ଯଥା ରୀତି ।
ଯେ ଯେଉଁ ସ୍ଥାନରେ ଯେଉଁରୂପରେ ସେ ଥିଲେ
ସେହିରୂପେ ସେଠାବରେ ଯାଇ ବିଶ୍ରାମିଲେ ।
ଗୋଟିଏ ବୃକ୍ଷ ହୀନ ନ କରି ନାରାୟଣ
ବଦ୍ରିକାରେ ଥିଲା ପ୍ରାୟ ସ୍ଥାପିଲେ ନେଇଣ ।
ରୋପିଲେ ମେରୁ ପଶ୍ଚିମଭାଗେ ନେଇ ତୋଟା
ନନ୍ଦନବନ ବୋଲିଣ ଦେଲେ ନାମଗୋଟା ।
ପୃଥ୍ୱୀ କି ସ୍ୱର୍ଗ ଯେ ଉଚ୍ଚ ଛଲକ୍ଷ ଯୋଜନ
ପଡ଼ିଲାକ ଏତେଦୂରେ ଆସି ସେହୁ ବନ ।
ନୃସିଂହ ଯେଣୁ ବିଶ୍ରାମ ତହିଁ କରିଥିଲେ
ତେଣୁ ସେ ନନ୍ଦନବନ ତୋଟା ନାମ ଦେଲେ ।
ଶ୍ରୀ ଯଜ୍ଞବେଦୀ ପୁରୁଷୋତ୍ତମେ ଦେଲେ ସଞ୍ଚି
ନୃସିଂହ ବିହାର କରନ୍ତି ଯେ କାଳ ବଞ୍ଚି ।
ଆଡ଼ପମଣ୍ଡପ ଯଜ୍ଞବେଦୀକି ଯେ କହି
ଏ କଥା ପୁରାଣେ ସିଦ୍ଧ ହୋଇଅଛି ରହି ।

***

## ମୁର ଓ ମଦନାବତୀର କଥୋପକଥନ ଏବଂ ସ୍ୱପ୍ନ ଦର୍ଶନ

ଶୁଣ ବାବୁରେ ନାରଦ କହେ ବେଦବର
ସମୁଦ୍ରେ ପଡ଼ିଲା ବୋଲି ଜାଣିଲା ଅସୁର ।
ତେଡ଼େବଡ଼ ତୋଟାକୁ ଯେ ଫିଙ୍ଗି ମୁରଦୈତ୍ୟ
ବିଜୟା ରଥରେ ଯାଇ ଚଢ଼ିଲା ତୁରିତ ।
ପାଞ୍ଚିଲା ନ ରହି କ୍ଷଣେ ଜୟ କଲାଠାରେ
ମନ୍ତ୍ରୀକି ଆପଣେ ଘେନି ଚଳିଲା ରାଜ୍ୟରେ ।
ଆପଣା ପୁରେ ପ୍ରବେଶ ହେଲା ଯାଇଁ ଶୀଘ୍ରେ
ସ୍ନାନ ଦେବାର୍ଚ୍ଚନ କଲା ଯାଇଁ ଅତି ବ୍ୟଗ୍ରେ ।
ଶିବ ଆଳୟକୁ ଯାଇ ଦରଶନ କଲା
ଲକ୍ଷେ ଚମ୍ପା ଲକ୍ଷେ ବିଲ୍ୱ ପତ୍ର ଚଢ଼ାଇଲା ।
ଅରଖ ଗଇଶ ପୁଣି ଦୁଦୁରା ତୁଳସୀ
ଗନ୍ଧ ପୁଷ୍ପ ଧୂପ ଦୀପ ଦେଲା ପୁଣି ବସି ।
ରୁଦ୍ରାଭିଷେକ କରି ତାଣ୍ଡବ ନୃତ୍ୟ କଲା
ଅନେକ ବ୍ରାହ୍ମଣଙ୍କୁ ଯେ ବହୁ ଦାନ ଦେଲା ।।
ଦେବୀଙ୍କି ଯେ ଚର୍ଣ୍ଣବଳୀ ଦୁଃଖିଙ୍କି ଯେ ଅନ୍ନ
ସନ୍ନ୍ୟାସୀ ବରିଣ ବହୁ ଦେଲା ପୁଣି ଧନ ।
ହାଟ ଜୁର ବାଟ ଜୁର ପେଣ୍ଠ ଜୁର କଲା
ଖଣ୍ଡ ଶାକରେ ପିଲାଙ୍କ ମନ ତୋଷିଦେଲା ।
ରାଣୀହଂସପୁରେ ଦେଲା ଅପୂର୍ବ ଯେ ଦ୍ରବ୍ୟ
ନଟ ଭାଟ ଲୋକେ ଧନ ଦେଲା ଖର୍ବ ଖର୍ବ ।
ବିଶୋଇ ନାୟକଙ୍କୁ ଯେ ଦେଲା ଖଡୁ ଶାଢ଼ୀ
ବୋଇଲା ବିପ୍ରଙ୍କୁ ଦିଅ ଯେଝା ବୃତ୍ତି ବାଡ଼ି ।
ପାଇକ ରାଉତ ବର୍ତ୍ତନକୁ ଡକାଇଲା
ଦ୍ୱିଗୁଣ ପ୍ରମାଣେ ଭୂମି ସମସ୍ତଙ୍କୁ ଦେଲା ।
ପ୍ରଜାଙ୍କୁ ବୋଇଲା ଖନ୍ଦା ଏ ବରଷ ଖାଅ
ଯେତେ ପାରିବ ଘରକୁ ଚଷି ବହି ନିଅ ।
ଉପୁରି ଚଷିଲେ ପଛେ ମୋତେ ଭାଗ ଦେବ
ବେଠି ହଳ ବିନା ଦଣ୍ଡ ଛାଡ଼ିଲି ଜାଣିବ ।
ପ୍ରଧାନ ଆୟ ମୂଳ ସେ ବର୍ଷ ଦେଲା ଛାଡ଼ି
କରଣ ଶେଠ ନେଲେକ ଧନ ରତ୍ନ କାଢ଼ି ।
ବାଟୁଆ ପରଜା ଜାଣ ବଣିଜାର ଯେତେ
ଏହାଙ୍କୁ ଯେ କରଛାଡ଼ କଲା ତୋଷଚିତ୍ତେ ।
ଋଣ ବ୍ରହ୍ମସ୍ୱ ନେବାର ଲୋକଙ୍କୁ ରାଇଲା
ଗୋଜା ଚିରି ମୂଳ ବଳନ୍ତର ଛାଡ଼ିଦେଲା ।
ରାଜ୍ୟରେ ଯେ ଠାବେ ଠାବେ ଦେଲାକ ଘୋଷଣ
କୃଷ୍ଣବଲ୍ଲଭର ପୋଏ ମଲେ ଆଜ ଜାଣ ।
ଅଚିନ୍ତା ହୋଇଣ ଭୋଗ ଭୁଞ୍ଜ ଏବେ ଲୋକେ
ଆଜହୁଁ କଳଙ୍କ ମୋର ଗଲା ଥିବା ଯାକେ ।
ଏରୂପେ କହି ଘୋଷଣା ରାଜ୍ୟେ ଦିଆଇଲା
ଆପେ ତ ସଭାରେ ବସି ସବୁ ନିଯୋଗିଲା ।
ଆସ୍ଥାନରେ ବସି ପୁଣ କଲା ରାଜନୀତି
ତିନିପୁର ଲୋକଯାକ ଅଇଲେ ତଡ଼ତି ।

ପାତାଳରୁ ଅଇଲେ ଯେ ନାଗରାଜା ଦୂତେ
ମଞ୍ଚ ସାତ ଦିଗରୁ ଯେ ଅଇଲେ ରାଜୁତେ ।
ସ୍ୱର୍ଗରୁ ଯେ ଦେବଲୋକେ ପ୍ରବେଶିଲେ ଆସି
ମୁର ରାଜାଙ୍କୁ ଖଟନ୍ତି ଭୃତ୍ୟେ ଦିବାନିଶି ।
ସଭାରେ ବସାଇ ସମସ୍ତଙ୍କୁ ଦୈତ୍ୟରାଣ
ବୋଇଲା ଶତ୍ରୁକୁ ମୋର ମାଇଲି ହୋ ଜାଣ ।
ଯେଉଁରୂପେ ମାଇଲି ତା କହୁଅଛି ଶୁଣ
ବଦରି ଦେଶକୁ ମୁଁ ଯେ ଯାଇଥିଲି ପୁଣ ।
ବଲ୍ଲଭର ପୋଏ ଆସି ବନେ ଥିଲେ ବସି
ସେ ବନକୁ ଉପାଡ଼ି ମୁଁ ଫିଙ୍ଗିଲି ଆକର୍ଷି ।
ସିନ୍ଧୁ ମଧରେ ପକାଇ ନାଶିଲି ତାହାଙ୍କୁ
ଶୁଣ ଆହେ ସଭାଜନେ କହୁଛି ତୁମ୍ଭଙ୍କୁ ।
ସେହିଠାରୁ ଭୟଭ୍ରାନ୍ତି ସବୁ ଗଲା ମୋର
ସ୍ତୁତି କଲେ ଦେବତାଏ ଯୋଡ଼ି ବେନିକର ।
ବିଷ୍ଣୁ ମରିବାର ସବୁଙ୍କୁ ତ ଜଣାଅଛି
ଆୟୁଷକୁ ବୁଝି ତାର ନ କହିଲେ କିଛି ।
ବୋଲକୁ ଚାହିଁ ବୋଇଲେ ମାତ୍ର ହୋଇହୋଇ
ଆପଣ ପ୍ରତାପୀ ବୋଲି କିଏ ନ ଜାଣଇ ।
କୃଷ୍ଣବଲ୍ଲଭର ପୋଏ ନରଜନ୍ମ ସିନା
ତୁମ୍ଭଙ୍କୁ ସେ କିସ ଯୁଦ୍ଧ ଭଳି ହେବେ କିନା ।
ଏକେତ ବ୍ରାହ୍ମଣ ସେହୁ ଦେହ ସୁକୁମାର
ଏ ଛନ୍ଦତର୍କମାନ କି ତାହାଙ୍କୁ ଗୋଚର ।
ତୁମ୍ଭେ ତ ମହାବୀର ଯେ ଅଟ ବ୍ରହ୍ମାଣ୍ଡକୁ
ହୋଇଛ ରାଜାଧିରାଜେଶ୍ୱର ସଂସାରକୁ ।
ଦେବ ଦାନବ ସମସ୍ତେ ସେବା କରୁଛନ୍ତି
ରବିତଳେ ଏପରି କେ ଅଛି ନରପତି ।
ତୁମ୍ଭଙ୍କୁ ବି ଆଉ କେହୁ ଅଛି ସମସରି
ପ୍ରଶଂସା କରନ୍ତି ଏତେ ବୋଲି ଡରି ଡରି ।
ଶୁଣିକରି ମୁରାସୁର ହେଲା ହସ ହସ
ସବୁଙ୍କୁ ବୋଇଲା ଏବେ ସୁଖେ ରାଜ୍ୟେ ବସ ।
ଶୁଣିଣ ସେ ସଭାଜନ ଗଲେ ଯେଝାପୁର
ବୁଝ ବାବୁ ହେ ନାରଦ କହେ ଦେବଦର ।
ମୁରକୁ ତ ସେବା କରୁଥିଲେ ଯେତେ ଲୋକେ
ତାହାଙ୍କ ନାମ କହିବା ଶୁଣ ଏକେ ଏକେ ।
ଏ ତିନିପୁରେ ଅଛନ୍ତି ଯେତେ ଦେହଧାରୀ
ସମସ୍ତେ ଆସି ଅଛନ୍ତି ତାକୁ ସେବା କରି ।
ଖଟଣୀକାର ହୋଇଣ ଥାନ୍ତି ଦେବଲୋକେ
ମନ ଜାଣି ପବନ ଯେ ବହେ ମୁରବାକ୍ୟେ ।
ଆଜ୍ଞାରେ ଯେ ନିଶାଚର ହୁଏ ଆତଯାତ
ବାକ୍ୟ ପ୍ରତିପାଳେ ସୂର୍ଯ୍ୟ ହୋଇ ଯୋଡ଼ହସ୍ତ ।

କାଳକୁ ଜଗି କରନ୍ତି ଭୋଗ ଷଡ଼ଋତୁ
ନବଗ୍ରହେ ଥାନ୍ତି ବୁଝି ତାର ମନ ତତ୍ତ୍ୱ ।
କ୍ଷେତକୁ ଚାହିଁଣ ମେଘେ ବରଷନ୍ତି ଜଳ
ଧୀରେ ଧୀରେ ପବନ ଯେ ବହେ ସଦାକାଳ ।
ଯାବତ ସୁସ୍ୱାଦୁ ରସ ଘେନିଣ ଅନଳ
ପାକ ଜାଣିଣ ଯେ ଶିଖା ଟେକନ୍ତି ତତ୍କାଳ ।
ପୃଥ୍ୱୀରେ କୃଷି ନିରସେ ଯେବେ ଉପୁଜିବ
ଇନ୍ଦ୍ରଙ୍କୁ କୋପ କରିଣ ଗର୍ଜଇ ଦାନବ ।
ପଦାର୍ଥ ଯେ ବ୍ୟୟ କରୁ ଭଣ୍ଡାରୁ ସରିଲେ
କୁବେର ପୂରାଇ ଦିଏ ଧନ ବଳେ ବଳେ ।
ଗାବ ହସ୍ତୀ ଅଶ୍ୱଙ୍କୁଟି ଧଇଲେକ ବ୍ୟାଧି
ଅଶ୍ୱିନୀକୁମାର ଭଲ କରନ୍ତି ଅବଧି ।
ନକ୍ଷତ୍ର କରଣ ତାର ତିଥି ଯୋଗମୂଳେ
ଏମାନେ ବାକ୍ୟ କରନ୍ତି ଆସି ସୁମଙ୍ଗଳେ ।
ସାଧକଗଣେ ବଜାନ୍ତି ବାଦ୍ୟ ନୃତ୍ୟକାରୀ
ପୁରକୁ ଆସିଣ ଚିତ୍ର କରନ୍ତି କିନ୍ନରୀ ।
ଚଳନ୍ତି ଗୁହ୍ୟକ ଗଣେ ଦୂତ ହୋଇ ବେଗେ
ଦିଗଭାଗ କଥା କହୁଥାନ୍ତି ମୁର ଆଗେ ।
ବ୍ରହ୍ମଚାରୀମାନେ ଆସି ହବିର୍ଭାଗ ଦ୍ୟନ୍ତି
ପିତୃଗଣ ତହିଁ ଆସି ମଣୋହି କରନ୍ତି ।
ନାଟିକା ଦେଖନ୍ତି କାଳଗଣେ ବୈଦ୍ୟ ହୋଇ
ବ୍ୟାଧି ଚିହ୍ନି ଧନ୍ୱନ୍ତରୀ ଔଷଧ ଯୋଗାଇ ।
କଟ୍ୱାଳ ହୋଇ କିନ୍ନରଗଣେ ରହିଥାନ୍ତି
ଯକ୍ଷଗଣ ତାହାଙ୍କର ବିମାନ ବହନ୍ତି ।
କହନ୍ତି ବୃହସ୍ପତି ଯେ ସପତାଙ୍ଗ ଯୋଗ
ବିଶ୍ୱଦେବାଏ ବାନ୍ଧନ୍ତି ଆସି ଶିରେ ପାଗ ।
ବ୍ରହ୍ମା ରୁଦ୍ର ଆଦିକରି ଋଷିଗଣ ଯେତେ
ଦେବାର୍ଚ୍ଚନ ବେଳ ଜାଣି ଆସନ୍ତି ଏ ନିତ୍ୟେ ।
ତଣ୍ଡୁଳ ଦେଇଣ ଶିରେ କରନ୍ତି ଆଶିଷ
ବରୁଣ ନେଇଣ ରତ୍ନ ଦିଅନ୍ତି ତ ଶେଷ ।
ଯାହାପରେ କ୍ରୋଧ ମୁର ହୁଅଇ ପ୍ରଚଣ୍ଡ
ନାଶକର ତାଙ୍କୁ ଯାଇଁ ଦିଏ ବେଗେ ଦଣ୍ଡ ।
ଯେତେବେଳେ ମନମଧେ ପାଞ୍ଚେ ମହାରାଜା
ଜାଣି ବ୍ରାହ୍ମଣେ କରନ୍ତି ଆସି ତାକୁ ପୂଜା ।
ଭିତର ଅବକାଶରେ ଥାଏ ଯେବେ ବସି
ସେବି ଅପସରୀ ଚଳିଯାନ୍ତି ଅର୍ଦ୍ଧନିଶି ।
ବାସୁକି ନବରୁ ଆସିକରି ନାଗ କନ୍ୟା
ଫୁଲ ଚନ୍ଦନ ଦେଇଣ ଯାନ୍ତି ବରାଙ୍ଗନା ।
ଯେତେବେଳରେ ପୋଡ଼ନ୍ତି ଭୂମିରେ ସେ ଶଯ୍ୟା
ବହନ୍ତି ତା ବସୁମତୀ କରି ସବୁ ତେଜ୍ୟା ।

ଭୂତ ପ୍ରେତ ପିଶାଚାଦି ନିଶାଚର ଯେତେ
ଏମାନେ ଜଗନ୍ତି ଆସି ମୁର ନିଦ୍ରା ଯାନ୍ତେ ।
ବିଦ୍ୟାଧରୀମାନେ ଆସି ନୃତ୍ୟ ଗୀତ ଗାନ୍ତି
ଏମନ୍ତ ମୁରକୁ ଜାଣ ସକଳେ ଖଟନ୍ତି ।
ଚଉଦ ପୁରଯାକରେ ଯେତେକ ସଂଯୋଗ
ସମସ୍ତ ଆଣିଣ ମୁର କରଇ ବୈଭୋଗ ।
ଏରୂପେ ଯେ ପ୍ରତିଦିନ ଆସି ଦେବତାଏ
ଯାର ଯେଉଁ ସେବା ସାରି ଚଳନ୍ତି ଇଚ୍ଛାଏ ।
ଏବେ ସେ ମୁରର କଥା ଶୁଣହେ ନାରଦ
ବିଷ୍ଣୁଙ୍କୁ ନାଶିଲା ବୋଲି ହୋଇଲା ଆନନ୍ଦ ।
ଏ ସବୁଙ୍କୁ ଡକାଇଣ ଖଞ୍ଜା ଖଞ୍ଜିଦେଲା
ଆସ୍ଥାନରୁ ଉଠିଯାଇ ମଣୋହିକି ଗଲା ।
ମଣିମା ମଣିମା ଯେ ଖୁଣ୍ଟିଆ ଦେଲା ଡାକ
ପହଣ୍ଡ ମଣାଇ ନେଲେ ମୁଦୁସୁଲୀଯାକ ।
ବାହାଭରା ଦେଇ ଚାଲେ ରାଜା ଧୀରେ ଧୀରେ
ପ୍ରବେଶ ହେଲା ଯାଇଁ ସେ ଭିତର ନବରେ ।
ଅଷ୍ଟରତନ ଘଟଣ ହୋଇଛି ଯେ ଘର
ମଣୋହି କୋଠା ଗୋଟି ଯେ ଅଟଇ ମୁରର ।
ରତ୍ନ ପାଦୁକା ମାଡ଼ିଣ ତହିଁ ବିଜେ କଲା
ପାଣି ପଖାଳ ଆଦି ଯେ ବେଗେ ଲାଗି ହେଲା
ନୀଳ ରତ୍ନ ପୀଢ଼ା ବସିଲାକ ଯାଇ ମାଡ଼ି
ଅନ୍ତର ହୋଇଲେ ଲୋକେ ଟେରାବାଡ଼ ପାଡ଼ି
ବିଶାଶଏ ସ୍ତିରୀ ଲୋକ ରହିଲେ ପାରୁଶେ
ଏଥୁ ଅନନ୍ତରେ ମୁର ଭୋଜନରେ ବସେ ।
ସ୍ୱର୍ଣ୍ଣ ପଲମେ ପୂରାଇ ଆଣି ଶାଳି ଅନ୍ନ
ସୂପକାରେ ଆଗେ ଥୋଇ ଦିଅନ୍ତି ବହନ ।
ନାନା ବର୍ଣ୍ଣରେ ଉପନ ପରଷନ୍ତି ଆଣି
ଛତୁଆ ନବାତ ମନୋହାର ରସ ଚିନି ।
ଖଜା ଭଜା ମୁରାରି ଯେ ଡାଲି ଅଟକାଳି
ଶାକର ଦଧି ଦୁଗ୍ଧ ଯେ ମନୋହର ପୁଳି ।
ଆବର ସୁପକ୍ୱଦ୍ରବ୍ୟ ଛେନାପଣା ଯେତେ
ବାଢ଼ିଲେ ସବୁ ଆଣିଣ ରାଜାର ଅଗ୍ରତେ ।
ଭୋଜନରେ ଦୀପାବଳୀ ଜଳେ ଚଉପାଶ
ଶିବଙ୍କୁ ସୁମରି ରାଜା କଲା ପୁଣ ଗ୍ରାସ ।
ମଣୋହିରେ ସନ୍ତୋଷ ଯେ ହେଲା ମୁରାସୁର
ମୁଖ ପଖାଳିବାକୁ ଯେ ଉଠେ ଧାତିକାର ।
ଭୋଜନ ସ୍ଥାନରୁ ଉଠି ତତକ୍ଷଣେ ଗଲା
ସୁବର୍ଣ୍ଣ ପୀଢ଼ାରେ ବସି ଆଚମନ କଲା ।
ଶୀତଳ ଜଳରେ ମୁଖ ଧୋଇ ମୁରାସୁର
ସୁଗନ୍ଧ ଚତୁଃସମ ଯେ କସ୍ତୁରୀ କର୍ପୂର ।
ଚରଣ ପଖାଳି ମୁଖ ଝୀନବାସେ ପୋଛି
ଉଠିଣ ପିନ୍ଧିଲା ବାସ ହୋଇ ଦିବ୍ୟରୁଚି ।
ଗୁଆପାନ ବସି ପୁଣ ଭୁଞ୍ଜେ ଦଣ୍ଡଧାରୀ
ମଣିମା ମଣିମା ଡାକ ଦ୍ୟନ୍ତି ପରିବାରୀ ।
ବୋଲନ୍ତି ଶଯ୍ୟାକୁ ଏବେ ବିଜେ କର ରାଜା
ନିଶି ଆସି ହୋଇଲାଣି ଚୌଦଘୁରି ବଜା ।
ଶୁଣିଣ ଉଠିଲା ରାଜା ନିଃଶ୍ୱାସକୁ ବାରି
ହୀରା କଠାଉ ମାଡ଼ିଣ ଚାଲେ ଥିରି ଥିରି ।
ମୁର ନିଦ୍ରାଘର ତିନିଯୂଣ ଯେ ଓସାର
ଉପରକୁ ଯୂଣେ ଉଚ୍ଚ ଅଟଇ ତାହାର ।
ଖଞ୍ଜା ଖଞ୍ଜି ହୋଇଣ ଯେ ଖମ୍ୱମାନ ବସେ
ହୀରା ମାଳା ମାଣିକ୍ୟ ଯେ ଲମ୍ୱେ ଚଉପାଶେ
ରୂପାରେ ବସିଛି କମ ନବରତ୍ନମୟେ
ବ୍ରହ୍ମଜାତି ହୀରା କମ ଯୁକ୍ତ ପିତୁଳାଏ ।
ପଦ୍ମରାଗ ପଗଡ଼ିରେ ପ୍ରତିମା ଯେ ଖଞ୍ଜା
ବସିଛି ମାଣିକ୍ୟ ଝରାମାନ ପୁଞ୍ଜା ପୁଞ୍ଜା ।
ମର୍କତ ଖମ୍ୱରେ ଅଛି ଖଟ ଦୋଳି ଖଞ୍ଜି
ବେଲୁରି ଉପରେ ଅଛି ପାଟ ଖଦି ରଞ୍ଜି ।
ପାଟ ଶେଯେ ବିଞ୍ଚିଅଛି କର୍ପୂରର ଗୁଣ୍ଡି
ନବରତ୍ନ ଚାନ୍ଦୁଆ ତା ପରେ ଅଛି ମଣ୍ଡି ।
ନିର୍ମିତ ହୋଇଛି ମୁକୁତାରେ ଘର ସଞ୍ଜା
ହୀରାଲାଗି ଡାଙ୍ଗିଆରେ ଖଞ୍ଜିଅଛି ମଞ୍ଜା ।
ଚନ୍ଦ୍ର ସୂର୍ଯ୍ୟ ମଣିରେ ଯେ ଘର ରୁଅ ବତା
ଲଇ କରି ବାନ୍ଧିଅଛି ଛନ୍ଦି ପାଟ ସୂତା ।
ତହିଁପରେ ଛାଆଣୀ ଯେ ପଚାପତ୍ର ଶେଯ
ରତ୍ନ ଲେପ ଦେଇଛି ଯେ ସୂର୍ଯ୍ୟ ପ୍ରାୟ ତେଜ ।
ସେ ଘରେ ବାଙ୍କିଆ ଖଟ ଦୋଳି ଅଛି ଲମ୍ୱି
ତହିଁ ବିଜେ କଲା ମୁର ନିଦ୍ରାମନେ ଭାବି ।
ପାଦରେ କଠାଉ ଫେଇ ବସେ ଶେଯେ ଯାଇ
ସେବାକାରୀମାନେ ଗଲେ ଅନ୍ତର ଯେ ହୋଇ
ସୁବେଶ ହୋଇ ମଦନାବତୀ ପାଟରାଣୀ
ସ୍ୱାମୀର ପାଶେ ଆସିଣ ମିଳିଲା ତରୁଣୀ ।
ତେତିଶକୋଟି ରାଣୀରେ ଅଟଇ ସେ ପାଟ
କେଶରୀ ରାଜାର ସେ ଯେ ଦୁହିତା ଗରିଷ୍ଠ ।
ଜନ୍ମେ ଜନ୍ମେ ଅଟଇ ସେ ମୁରାସୁର ନାରୀ
ଦ୍ୱିତୀୟେ ଶୁଦ୍ଧାଙ୍ଗନା ତୃତୀୟେ ମନ୍ଦୋଦରୀ ।
କାଳେ କାଳେ ସେ ସୁନ୍ଦରୀ ଉପୁଜଇ ଏକା
ସ୍ତିରୀକୁଳେ ଅଗ୍ରଣୀ ଯେ ପଣ୍ଡିତାରେ ଲେଖା ।
ପତିବ୍ରତାପଣକୁ ସେ ଅଟେ ମହାସତୀ
ବେଦ ସ୍ତୁତି କରେ ଜାଣ ମନେ ହୋଇ ଶାନ୍ତି ।

ସ୍ୱାମୀର ବାକ୍ୟଗୋଟି ସେ ନ ଲଙ୍ଘଇ କ୍ଷଣେ
ବଚନରେ କର୍ଣ୍ଣ ଡ଼େରି ସେବେ ଦାସୀପଣେ ।
ଗୃହକୁ ଲକ୍ଷ୍ମୀ ଅଟଇ ସେହି ପଦ୍ମାଳୟା
ସହଣିପଣେ ବସୁଧା ପ୍ରାୟେ ତାର କାୟା ।
ହିତରେ ହୋଏ ପତିଙ୍କି ମାତା ପ୍ରାୟ ପୁଣି
ମନରୁଚି ଭୋଜନ ଯେ ଦିଏ ବେଳ ଜାଣି ।
ବିବିଧ ପ୍ରକାରେ ଷଡ଼ରସ ଅଛି ଯେତେ
ଜନନୀ ସମାନ ଦିଏ ସ୍ୱାମୀଙ୍କୁ ସେ ନିତ୍ୟେ ।
ଏକେ ତ ଅତି ସୁନ୍ଦରୀ ପୁଣି ନବଯୁବା
ସାୟଂକାଳୁଁ ଅଙ୍ଗ ସାଜି ଆସି ହେଲା ଉଭା ।
ଖୋଷା ପାରି ସୁଥାଣି ସେ ଆଗେ ଅଛି ରଖି
ସରି ସରି ଝଲକା ଯେ ଲମ୍ବେ ଚାରିପାଖି ।
ନାସେ ଲମ୍ବଇ ବସଣି ମୁକ୍ତା ପୁଞ୍ଜି ପୁଞ୍ଜି
କର୍ଣ୍ଣମୂଳରେ ହାଟକ ତାଟଙ୍କ ଯେ ଖଞ୍ଜି ।
ଅଳକା ପଟଳେ ମଣି ଯୋଡ଼ି ଯୋଡ଼ି ଲମ୍ବେ
କଣ୍ଠେ ପାଟଦଶୀ ହେମ କଣ୍ଠି ପରିରମ୍ଭେ ।
ହୃଦରେ ପଦକ ବାହୁମୂଳେ ତାଡ଼ ସାଜେ
କରମୂଳେ ହେମ ଖଡୁ ରୁଣୁଝୁଣୁ ବାଜେ ।
କଟିରେ ଘଣ୍ଟିକା ନାଦ ଶୁଭେ କିଣିକିଣି
ଚାଲିଲେ ହେମ ଝୁଣ୍ଟିଆ ବାଜେ ଗିଣିଗିଣି ।
ମୁଦି ଶୁଭଇ ଖେମଟା ନାଦଧ୍ୱନି ପ୍ରାୟେ
ଏମନ୍ତେ ବେଶ ହୋଇଣ ଗଲା ଶଯ୍ୟା ଯାଏ ।
କର୍ପୂର ମିଶା କୁଙ୍କୁମ ହୋଇଅଛି ବୋଲି
ଫୁଟି ଦିଶୁଅଛି ତାହା ଦେହଯାକେ ଝଲି ।
ଆବର ଯେ ସରୁବାସ ପିନ୍ଧି ଯାହା ଆସେ
ଯେ ଯା ସ୍ଥାନବାରି ପାଦୁଁ ଶିର ଯାଏ ଦିଶେ ।
ଭାରିଯାକୁ ଚାହିଁ ମୁର ହସିଲା ନିରେକ୍ଷୀ
କାମରେ ତରଳ ହେଲା ପ୍ରିୟାରୂପ ଦେଖି ।
ଆପଣେ ଧଇଲା ଉଠିଯାଇ କୋଳକରି
ପଲ୍ୟଙ୍କରେ ବସାଇଲା ଅତିଶ୍ରଦ୍ଧା କରି ।
ନାନାରସେ ନୃପତିର ବଢ଼ିଲା ବିହାର
ତଦନ୍ତେ ରାଣୀକି କହେ ହସି ମୁରାସୁର ।
ବୋଇଲା କାଲି ସଖି ରେ ଗଲି ଯୁଦ୍ଧକରି
ବଦ୍ରିକାଶ୍ରମେ ଅଇଲି ବିଷ୍ଣୁଙ୍କୁ ଯେ ମାରି ।
ହରି ସିନା ବଇରି ଗୋ ମୋତେ ହୋଇଥିଲା
ତାକୁ ମାଇଲି ପ୍ରମାଦ ଏବେ ମୋର ଗଲା ।
ଅକ୍ଷୟ ଅଜରାମର ହେଲି ଏବେ ମୁହିଁ
ଭାଇଙ୍କି ଲୋଡ଼ିଲେ ଏକା ପାଇବି ମୁଁ ନାହିଁ ।
ବଲ୍ଲଭ ପୁତ୍ରକୁ ମୋର ଥିଲା ସିନା ଡର
ମଲେ ତ ସେ ହୋଇଲି ମୁଁ ଅଜର ଅମର ।
ରାଜାର ବାକ୍ୟେ ସେ ରାଣୀ ହସି ଗଦଗଦ
ବୋଇଲା କିରୂପେ ସ୍ୱାମୀ ମାଇଲ ଗୋବିନ୍ଦ ।
ମୁର ବୋଇଲା ସଖି ରେ ନାହୁଁ କି ତୁ ଜାଣି
ନଗ୍ନ ଆସିଥିଲେ ସେ ଆନନ୍ଦବନେ ପୁଣି ।
ସେ ବନ ଉପାଡ଼ି ଫିଙ୍ଗି ଦେଲି ଅନ୍ତରୀକ୍ଷେ
ପଡିଲେ ସେ ଦୁହେଁ ଯାଇ ସିନ୍ଧୁ ଆର ପାଖେ ।
ବଡ଼ବା ଅନଳେ ପୋଡ଼ି ମଲେ ବିପ୍ର ବୁଡ଼ି
ତହିଁ ଉପ୍ରେ ରହିଲା ଜାଣ ବନ ମାଡ଼ି ।
ସୁବିଜ୍ଞ ମନ୍ତ୍ରୀ ପ୍ରତ୍ୟକ୍ଷେ ଅଛି ତାହା ଦେଖି
ପ୍ରତେ ନ ଗଲେ ତାକୁ ପଚାର ଆଗୋ ସଖି ।
ମହାଦେଈ ବୋଇଲା ହେ ଶୁଣ ଦୈତ୍ୟସାଇଁ
ବିଷ୍ଣୁ ମଲା ବୋଇଲେ ତ ପ୍ରତେ ଲାଗୁ ନାହିଁ ।
ବ୍ରହ୍ମାଣ୍ଡେ ଅଛନ୍ତି ଯେଉଁ ଭାବଗ୍ରାହୀ ପୂରି
କୀଟୁ ବ୍ରହ୍ମଯାଏ ଜାଣ ସର୍ବତନୁ ଧରି ।
ନାରାୟଣ ନାମେ ଯେହୁ ଯେବଣ ପୁରୁଷ
ସବୁଙ୍କର ଶରୀରେ ତ ତାଙ୍କ ନିଜ ବାସ ।
ଶଙ୍ଖ ଚକ୍ର ଗଦା ପଦ୍ମ ଧରି ଚାରିକରେ
କଉସ୍ତୁଭ ମଣିଗୋଟି ଲୁଳେ ହୃଦୟରେ ।
ସେ ହୃଦ ମଧ୍ୟେ ଲମ୍ବଇ ପୁଣି ବନମାଳା
ବିରାଜଇ ଚନ୍ଦ୍ର ସୂର୍ଯ୍ୟପ୍ରାୟ ବେନି ଡ଼ୋଳା ।
ଶ୍ରୀବତ୍ସ ଲାଞ୍ଛନ ଗୋଟି ଶ୍ରୀଅଙ୍ଗରେ ସାଜେ
ଅନ୍ଧାର ଘର ଆଲୋକ ଦିଶେ ତାଙ୍କ ତେଜେ ।
ଯେବଣ ଶ୍ରୀନାରାୟଣ ନର୍କ ନିସ୍ତାରଣ
ପାପୀମାନେ ସୁମରିଲେ ତରନ୍ତି ତକ୍ଷଣ ।
ସେହି ମହାପ୍ରଭୁ ପୁଣି ପଞ୍ଚଭୂତ ଘେନି
ଅରୂପରୁ ରୂପ ଘେନି ଉପୁଜନ୍ତି ଯୋନି ।
ରୂପ ଭାଜିଲେ ହୁଅନ୍ତି ସେ ଅରୂପାନନ୍ଦ
କୋଟି ପ୍ରଳୟରେ ନୁହନ୍ତି ସେ ବାଳବୃଦ୍ଧ ।
ଖେଳନ୍ତି ସେ ଆତ୍ମା ହୋଇ ସବୁ ଅଙ୍ଗେ ବସି
ଜୀବ ପରମ ରୂପରେ ମୃଦୁବାକ୍ୟ ଭାଷି ।
ବସନ୍ତି ମନୁଷ୍ୟ ରୂପ ହୋଇ ନାମ ବେନି
ବହନ୍ତି ସେ ବୃକ୍ଷଶିଖେ ଟେକି ହଂସଧ୍ୱନି ।
ସେ ଧ୍ୱନିକି ଯେତେବେଳେ ବୃକ୍ଷ ନ ରଟଇ
ରା ଜୀବଗୋଟି ପରମେ ଜାଣ ମିଶିଯାଇ ।
ଅଟନ୍ତି ତ ସେ ପରମ ସ୍ୱାମୀ ଅଗୋଚର
ତିଳେହେଁ ନାହାନ୍ତି ପୃଥ୍ୱୀ ଛାଡ଼ି ନିରାକାର ।
ପ୍ରଭୁଙ୍କୁ ଅନ୍ତର ହୋଇ ଦ୍ରବ୍ୟ ନାହିଁ ଏକ
ଅଛନ୍ତି ଅଛିଦ୍ରେ ପୂରି ସର୍ବ ପୃଥ୍ୱୀ ଯାକ ।
ଅଟନ୍ତି ଅକ୍ଷୟ ଅବିନାଶୀ ଯେଉଁ ହରି
ତାହାଙ୍କୁ କେହ୍ନେ ଅଇଲ ତୁମ୍ଭେ ଯାଇ ମାରି ।

ମୁର ବୋଇଲା ହୋଇଲୁ କିଗୋ ସଖି ବାଇ
ମୋର ବଳବୀର୍ଯ୍ୟ ତୋତେ ଗୋଚର କି ନାହିଁ
କହିଲୁ ଅଜ୍ଞାନ ମୂର୍ଖପ୍ରାୟ କିପାଁ ବାକ୍ୟ
ମୋହନାମେ ତିନିପୁରେ ପଡୁଛି ଚମକ ।
ଯାବତ ଦେବତାଯାକ ଅଟନ୍ତି କିଙ୍କର
ଚଉଦ ଭୁବନେ ମୁହିଁ ଅଟେ କ୍ଷତ୍ରୀବର ।
ମୋତେ ସେହୁ କେଉଁ ଗୁଣେ ହୋଇବ ସମାନ
ଏମନ୍ତ ବୋଲି ଗର୍ଜଇ ରାଜା ଘନଘନ ।
ବେନି ଚକ୍ଷୁକୁ ତରାଟି ରାଣୀକି ଯେ ଚାହିଁ
ବୋଇଲା ତୁମ୍ଭେ ସ୍ତିରୀ ଲୋ କିସ ଜାଣ କହି ।
ବୁଝୁ ବୁଝୁ ମୋତେ କଥା କହୁଅଛୁ ହୁଡ଼ି
ଆନ ହେଲେ ଶିର ତାର ଦିଅନ୍ତିଣି ମୋଡ଼ି ।
ଭାରିଯା ହେଲାରୁ ତୁହି ଅଛୁ ସିନା ବସି
ସ୍ୱପ୍ନ କି ଦେଖିଲୁ କିଗୋ ଜାଗ୍ରତରେ ବସି ।
ଭୂତ ପ୍ରେତ ଡାହାଣୀ କି ଲାଗିଲା ଲୋ ରାଣୀ
ସେହିପରି ବାକ୍ୟ ଏବେ କହୁଛୁ ତ ପୁଣି ।
ତାହା ଶୁଣି ମହାଦେଈ ଯୋଡ଼ି ବେନିକର
ବୋଇଲା ଶୁଣ ପ୍ରତାପୀ ସ୍ୱାମୀ ମୁରାସୁର ।
ନିଦ୍ରାହିଁ ନାହିଁ ମୋତେ ତ ଭୂତ ନାହିଁ ଲାଗି
ଅଜ୍ଞାନ ବାଇ ମୂରୁଖ ନୁହଇ ମୁଁ ରାଗୀ ।
ଆପଣ ଅଟନ୍ତି ପୁଣି ମୋର ଆତ୍ମା ସର୍ବ
ତୁମ୍ଭଠାରୁ ବଡ଼ ହୋଇଅଛି କେ ମୋ ଦେବ ।
ପତିସିନା ସ୍ତିରୀଙ୍କର ଅଙ୍ଗ ଆଭରଣ
ପତିଅନ୍ତେ ସ୍ତିରୀଙ୍କର ସବୁ ଅକାରଣ ।
ପତିସିନା ପତ୍ନୀଙ୍କର ଅଟେ ସବୁ ସୁଖ
ପତିବିନା ନାରୀଙ୍କୁ କେ ନାହିଁ ଆଉ ରକ୍ଷ ।
ପତିସିନା ପତ୍ନୀଙ୍କର ନାନା ଅଳଙ୍କାର
ଶୋଭା ଦିଶୁଥାଇ ଘେନୁଥିଲେ ସେ ସିନ୍ଦୂର ।
ନେତ୍ରରେ ସେ ଘନସାର ଲଗାଇଲେ ଆଣି
ସେହି ଦିଶୁଥାଇ ଶୋଭା ସ୍ୱାମୀହେତୁ ପୁଣି ।
ହଳଦୀ ଅଳତା ପୁଣି ଦିବ୍ୟ ରଙ୍ଗବାସ
ପତି ନ ଥିବା ସ୍ତିରୀଙ୍କ ଅଟଇ ଏ ବିଷ ।
ଏଣୁକରି ତୁମ୍ଭଙ୍କୁ ମୁଁ କହୁଅଛି ଶୁଣ
ଆପଣ ବୋଇଲେ ମାଇଲି ଯେ ନାରାୟଣ ।
ପୂର୍ବକାଳେ କଲ ତୁମ୍ଭେ ଯେଉଁ ଦିଗବିଜେ
ବୈକୁଣ୍ଠେ ପରା ଭେଟିଲ ଯାଇ ଦେବରାଜେ ।
ସେହି ମହାପ୍ରଭୁ ପରା ବାଳକ ରୂପେଣ
ଠକାରରେ ନିଦ୍ରା ଯାଇଥିଲେ ପଲ୍ୟଙ୍କେଣ ।
ଟେକିଲେ ତୁମ୍ଭର ସୈନ୍ୟଯାକ ପରା ଯାଇ
ତିଳେହେଁ ଉଠାଇ ପରା ନ ପାରିଲେ କେହି ।
ଘୁଞ୍ଚାଇ ନ ପାରି କହନ୍ତି ଯେ ଆସିଛି ମୁଁ
ତୁମ୍ଭେ ମଧ ପରା ଯାଇ ଟେକିଣ ପ୍ରଥମୁଁ ।
ପୁତ୍ର କରିବି ବୋଲି ଯେ ଆଣୁଥିଲ ବହି
ଗରୁ ହେଲାରୁ ଛେଚିଲ ପରା ଟେକି ମହୀ ।
ତେଡ଼େ ଶୂନ୍ୟରୁ ପଡ଼ି ନ ମଲେ ମହାପ୍ରଭୁ
ଗୋଡ଼ାନ୍ତେ ସେ ପଳାଇଲେ ଉଠି ସେହିଠାବୁ ।
ନଗ୍ର ଭିତରେ ପଶନ୍ତେ ଯାଇ ନାରାୟଣ
ସୈନ୍ୟଯାକ ଧରି ପରା ବେଢ଼ିଲ ଆପଣ ।
ପୁରଯାକ ଖୋଜିଲ ଯେ ଜଗି ଚଉକତି
ବିଷ୍ଣୁ ନ ପାଇ ପୋଡ଼ିଲ ନଗର ବସତି ।
ସେହି ବିଷ୍ଣୁ ନାଥ ଏବେ ନୁହନ୍ତି କି ସେହି
ଆବର କିଛି କହୁଛି ମଧ ଶୁଣ ମୁହିଁ ।
ନାରଦ ଅଇଲେ ଯେଉଁଦିନ ଆମ୍ଭ ପୁର
ବୋଇଲେ ବିଷ୍ଣୁ ଜନ୍ମିଲେ ବଲ୍ଲଭର ପୁର ।
ସେହି ଦିନୁ ଶୁଣି କପଟ ତୁମ୍ଭେ ଯେତେ କଲ
ବିଦ୍ୟାଗୁରୁ କରିବାକୁ ବୋଲିଣ ଆଣିଲ ।
ପୁତ୍ରକୁ ସମର୍ପିଲ ଯେ ଚାଟଶାଳୀ କରି
ଆତ୍ମାକୁଶଳ ବିଦ୍ୟା ପଢ଼ାଉଥିଲେ ହରି ।
ତା ତ ପଢ଼ାଇ ପାଞ୍ଚିଲ ଯେତେ ଯେତେ ଭଳି
ଶୟନକାଳରେ ପୋଡ଼ିଦେଲ ଚାଟଶାଳୀ ।
ଅଗ୍ନି ଲଗାଇ ଅଚିନ୍ତେ ଥାଅ ଏବେ ଶୋଇ
ପ୍ରଭାତେ ଦେଖିଲ ପରା ସେ ଘରକୁ ଯାଇ ।
ସେହି ବିଷ୍ଣୁ ସେହି ପୁର ସେହି ଚାଟଶାଳୀ
ଖଡ଼ି ବାଡ଼ି ଧରି ବସିଥାନ୍ତି ବନମାଳୀ ।
ତୁମ୍ଭ ପାପବୁଦ୍ଧିକି ସେ ମନେ ନ ଘେନନ୍ତି
ପଢ଼ରେ ପୋଏ ବୋଲିଣ ବେଳେ ଡାକୁଥାନ୍ତି ।
କେଡ଼େ ସମଦରଶୀ ସେ ପ୍ରଭୁ ଦାମୋଦର
ପଛକୁ ବୁଝିଲେ ପୁତ୍ର ମଲେଟି ଆମ୍ଭର ।
ଏହି କଥାକୁ ତ ସ୍ୱାମୀ ନ ପାରିଲ ଜାଣି
ସେନାଗୁଡ଼ାକ ପେଷିଣ ମରାଇଲ ପୁଣି ।
ଆବର ଥିଲା ତୁମ୍ଭର ଯେଉଁ ସାନଭାଇ
ବଳିଷ୍ଠପଣ କହିଲେ ତାର ନ ସରଇ ।
ଚାଲନ୍ତେ ପୃଥିବୀଯାକ କମ୍ପେ ଯାର ପାଦେ
ତ୍ରାସନ୍ତି ଯେ ଦିଗପାଳେ ଯାହା ରଡ଼ି ନାଦେ ।
ସେ ପୁଣି ରଣେ ଯାଇ ନ ଅଇଲା ବାହୁଡ଼ି
ତୁମ୍ଭଙ୍କୁ କି ବୋଲିଣ ବିଧାତା ଅଛି ଛାଡ଼ି ।
ବିଧାତା ନ ଛାଡ଼ିଲେ କି ହରି ତୁଳେ ଲାଗ
ଗୋବିନ୍ଦେ ମନ୍ଦ ପାଞ୍ଚିଣ ହେଲ ମନ୍ଦ ଭାଗ୍ୟ ।
ଆପଣ କିସ ବୋଲି ସେ ହରି ତୁଳେ ଲାଗି
ମୋତେ ଆସି କହୁଅଛ ଆସିଲି ମୁଁ ଫିଙ୍ଗି ।

ଜଳରେ ସେ ନ ବୁଡ଼ଇ ଖଡ୍‌ଗେ ନ ଛିଡ଼ଇ
ଅଗ୍ନିରେ ନ ପୋଡ଼ଇ ସେ ବାତେ ନ ଉଡ଼ଇ ।
ଫିଙ୍ଗିଲେଣ ତାହାର ବା ଯିବ କିସ କ୍ଷୟେ
ମେରୁ ପଡ଼ିଲେକ ଧୂଳି ହେବ ଯାର ଦେହେ ।
ଛେଚିଲେ ତାଡ଼ିଲେ ପୁଣି ବାଟିଲେ ପୋଡ଼ିଲେ
ବିଷ୍ଣୁର କି ଯିବଟି ହୋ ଏରୂପରେ କଲେ ।
ଦଧିକି ମନ୍ଥୁ ଥିଲେ କି ଘୃତ ହୋଏ ନାଶ
ପୁଷ୍ପକୁ ଛିଡ଼ାଉଥିଲେ ଛାଡ଼େ କି ତା ବାସ ।
ପାଷାଣ ପରେ ମଳୟ ଚନ୍ଦନ ଘୋରିଲେ
ସେହି ସଉରଭ କି ନ ବାସେ ସମତୁଲେ ।
ଆକାଶକୁ ମାପି ମାପି କେହୁ କଳିଛି କି
ଏହି ପରକାରେ ହରି ଅଟନ୍ତି ପୃଥ୍ୱୀକି ।
ଦୁଷ୍ଟଙ୍କ ଗଞ୍ଜଣାକୁ ସେ ନ କରନ୍ତି ଛଳ
ନିନ୍ଦୁଥିଲେ ହସି ଦେଉଥାନ୍ତି ଆଦିମୂଳ ।
ପରମ ଦୟାଳୁ ସେହି ଅଟନ୍ତି ଶ୍ରୀନାଥ
ଚାଲ ଶରଣ ପଶିବା ଭାରିଯା ଗୃହସ୍ଥ ।
ସେ ପ୍ରଭୁ ଦୟା କଲେ ଯେ ହେବା ଅକ୍ରାମର
ଭୁଞ୍ଜିବା ଐଶ୍ୱର୍ଯ୍ୟଭୋଗ ଆଦି ବ୍ରହ୍ମାଙ୍କର ।
ଭକତବତ୍ସଳ ସେହି ଭାବକୁ ଯେ ବଶ
ଭାବିଣ ଜାଣିଲେ ଫଳ ଦିଅନ୍ତି ଅବଶ୍ୟ ।
ସେ ପ୍ରଭୁଙ୍କଠାରେ ନାହିଁ ଶତ୍ରୁ ମିତ୍ର ଦୁଇ
ଶରଣ ପଶିଲେ ରଖନ୍ତି ସେ ଦୟାବହି ।
ନୋହିଲେ ବିନାଶ ସ୍ୱାମୀ ହେବା ତତକାଳେ
ଶ୍ରୀହରି ତୁଲେ ଲାଗି କେ ନାହିଁ ରବିତଳେ ।
ଏରୂପେ କହନ୍ତେ ମହାଦେଈ ଯୋଡ଼ି କର
ଶୁଣିଣ ସେ ହସ ହସ ହେଲା ମୁରାସୁର ।
ବୋଇଲା କହିଲୁ ଏହି ଛାର କଥା ମୋତେ
ମୋହ କରାମତ ନୁହେ ଗୋଚର କି ତୋତେ ।
ସେ କାଳ ପରାୟ ବଳ କାହିଁ ଅଛି ତାର
ମୋର ତୁଲେ ଲାଗିଲା ଯେ ମଲା ଦାମୋଦର
ଦିଗବିଜେ କାଳେ ହେଲେ ଦେଖିଥିଲି ତୋଳେ
ଧରୁ ଧରୁ ହାତୁ ଖସି ଗଲା ତତକାଳେ ।
ବଡ଼ ମାୟାବୀ ଅଟଇ ସେହି ଜଗନ୍ନାଥ
ଜିଣୁଥିଲା ମହାଖଳ ବିଦ୍ୟାରୁ ତେମନ୍ତ ।
କଟକ ପୋଡୁ ପୋଡୁ କୁହୁକମନ୍ତ୍ର କଲା
କେଉଁ ଭାଗ୍ୟରୁ କିରୂପେ ତହୁଁ ତରିଗଲା ।
ତେବେକେ ଜନ୍ମିଲା ବିପ୍ରଘରେ ଆସି ହରି
ଗୁରୁ ହୋଇ ଆସି ଗଲା ପୁତ୍ରଙ୍କୁ ମୋ ମାରି ।
ସେଠାରୁ ତାକୁ ଲାଗିଲି ମୁହିଁଟି ବିବାଦେ
କର୍ମକୁ ଆଦରି ସେହୁ ରହିଲେ ନିଶବ୍ଦେ ।
ଭିକ୍ଷା ସିନା ମାଗି ସେହୁ ବଞ୍ଚୁ ଥିଲେ କାଳ
ପଣେ ମାଣେ ଅର୍ଜି ପେଟ ପୋଷନ୍ତି ସେ ବାଳ ।
ବୁଲି ମାଗି ଆଣୁଥାନ୍ତି ଯାହା ଦିନଯାକେ
ଘରଯାକ ବାଣ୍ଟି ତାହା ଭୁଞ୍ଜନ୍ତି ବେଳକେ ।
ରାନ୍ଧିଲେ ତା ମାତା ରାଣ୍ଡୀ ଭୁଞ୍ଜେ ଆଗ ଅଧେ
ପେଟ ନ ପୂରିଲେ ପିତା ବସେ ରୁଷି କ୍ରୋଧେ ।
ପୋଏ ଗୋଳ କରନ୍ତି ଯେ ନ ପାଇଲେ ଅନ୍ନ
ଏହିରୂପେ ସଖିରେ ସେ ବଞ୍ଚୁଥିଲେ ଦିନ ।
ପୁଣି ଯୁଦ୍ଧ ଲାଗିଲା ମୋ ତୁଲେ ଅହର୍ନିଶି
ମାଗି ଖାଇ ନ ପାରି ସେ ଥିଲେ ଘରେ ବସି ।
ସେହିଠାରୁ ନିର୍ବଳ ଯେ ହେଲା ତାଙ୍କ କାୟେ
ଆନନ୍ଦ ବନରେ ମାତ୍ର ବସିଥିଲେ ଦୁହେଁ ।
ଏହି ସମୟରେ ମୁହିଁ ଗଲି ଜାଣ ଚଳି
କିଞ୍ଚିତ ମାତ୍ରେ ବନକୁ ଦନ୍ତେ ଦେଲି ଟାଳି ।
ସମୁଦ୍ରକୁ ବୋଲି ଫିଙ୍ଗି ଦେଲି ଅନ୍ତରୀକ୍ଷେ
ପଡ଼ିଲେ ସେ ଜଳେ ଯାଇ ଦେଖିଲି ପ୍ରତ୍ୟକ୍ଷେ ।
ତାହାଙ୍କୁ ସିନା ଗୋ ଭୟ ଥିଲା ମୋର ମନେ
ହର କହିଥିଲେ ବର ଦେଇଗଲା ଦିନେ ।
ବୋଇଲେକ ଆରେ ବାବୁ ଶୁଣ ମୁରାସୁର
ଗୋବିନ୍ଦର ତୁଲେ ତୁ ନ କରିବୁ ସମର ।
ଲାଗିଲେ ଏକା ପାରିବୁ ଯେବେ ତାକୁ ମାରି
ତେବେ ବସି ଅଇଶ୍ୱର୍ଯ୍ୟ ଭୁଞ୍ଜିବୁ ତୁ ଶିରୀ ।
ନୋହିଲେ ମାରିବେ ନିଶ୍ଚେ ତୋତେ ନାରାୟଣ
ତାଙ୍କଠାରୁ ଶୁଣି ମୋର ନ ସରଇ ଦିନ ।
ଭାଳୁ ଭାଳୁ କାଳ ମୋର ଗଲା ଆଜଯାଏ
ଏବେ ଜାଣ ମଲେ କୃଷ୍ଣବଲ୍ଲଭର ପୋଏ ।
ଏହି ହରିଙ୍କି ସିନା ଗୋ ବିଷ୍ଣୁ ବୋଲୁଥାଅ
ପ୍ରାଣୀ ଶରଣ ପଶିବେ କାହାଠାରେ କହ ।
ମୋତେ ଶରଣ ନ ପଶି ପୃଥ୍ୱୀରେ କେ ଅଛି
ଦଶଦିଗପାଳ ଘେନି ସେବୁଛି ବିରଞ୍ଚି ।
ଗୋବିନ୍ଦ ଶରଣ ଯେବେ ମୋତେ ପଶିଥାନ୍ତା
କୃଷ୍ଣବଲ୍ଲଭ କାହିଁକି ଅପୁତ୍ରକ ହୋନ୍ତା ।
ବିଷ୍ଣୁ ହେଲେ କାହିଁପାଇଁ ମରନ୍ତେ ଅଖଡ଼େ
ଦ୍ୱିଜ ମୂର୍ଖବୁଦ୍ଧି ସିନା ଦେଖ ଅଟେ କେଡ଼େ ।
ଏମନ୍ତ କରନ୍ତେ ବିଷ୍ଣୁ ନିନ୍ଦା ଦଣ୍ଡଧାରୀ
ବାକ୍ୟ ନ କହି ବସିଲା ରାଣୀ ଚିନ୍ତାକରି ।
ମନେ ପାଞ୍ଚିଲା ଅଟଇ ରାଜା କେଡ଼େ ମନ୍ଦ
ବିପ୍ର ବୋଲି ନିନ୍ଦୁଅଛି ସାକ୍ଷାତେ ଗୋବିନ୍ଦ ।
ଅଶେଷ ବ୍ରହ୍ମାଣ୍ଡର ଯେ ଅଟେ ହର୍ତ୍ତା କର୍ତ୍ତା
ସେ ପ୍ରଭୁଙ୍କୁ ବୋଲୁଛି ଏ ଅଟଇ ମାଗନ୍ତା ।

ଯାର ନାମ ଧରି ସର୍ବେ ପାନ୍ତି ପରିତ୍ରାଣ
ସେ ପ୍ରଭୁଙ୍କୁ ଭୁଲିଛି ଏ ନ ପଶି ଶରଣ ।
ସମସ୍ତଙ୍କୁ ପଡ଼ି ଯେହୁ ଦ୍ୟନ୍ତି ଅନୁକ୍ଷଣେ
ବୋଲୁଛି ତାହାଙ୍କୁ ମାଗୁଅଛି ପଣେ ପଣେ ।
ଯେବଣ ପ୍ରଭୁ ଭାରିଯା ଦେବୀ କମଳିନୀ
ତାହାଙ୍କୁ ମଣୋହି ଅଟେ ଅପୂର୍ବ କି ପୁଣି ।
ଯାହାର ବାଉନ କୋଟି ପୂରିଛି ଭଣ୍ଡାର
ସେ ପ୍ରଭୁ ଭିକ୍ଷା ମାଗନ୍ତି ପୁଣି ଦ୍ୱାର ଦ୍ୱାର ।
ଯା ଉଚ୍ଛିଷ୍ଟ ପାଇ ଚତୁର୍ଦ୍ଦଶ ଲୋକ ମୋକ୍ଷ
ସେ ପ୍ରଭୁଙ୍କୁ ବୋଲୁଅଛି ରଙ୍କ ଯେ ଅରକ୍ଷ ।
ଶାରଦା କମଳା ଯାର ବେନି ପାଟରାଣୀ
ବିପୁଳ ଭୋଗ କରନ୍ତି ସଦା ମନ ଜାଣି ।
ସେ ମହାପ୍ରଭୁ କି ତହିଁ ତଣ୍ଡୁଳ ମାଣକୁ
ଭିକ୍ଷା କରିଣ ପୋଷନ୍ତି ନିଜ କୁଟୁମ୍ବକୁ ।
ପେଟ ନ ପୂରିଲେ ପୁଣି ଲଗାନ୍ତି କନ୍ଦଳ
ରାଜାକୁ କି ବୋଲିବା ଯେ ପୂରିଲାଣି କାଳ ।
ନିସତ କାଳକୁ ଘୋଟେ ବିପରୀତ ବୁଦ୍ଧି
ପାଦେ ଭକ୍ତି ନ କରିଣ ନିନ୍ଦେ ଦୟାନିଧି ।
ଲାଗିଲେ ବିଷ୍ଣୁ ତୁଳେ ନ ରହେ ଚିର ହୋଇ
ଅଳପଦିନେ ବିଧବା ହେବି ନିଶ୍ଚେ ମୁହିଁ ।
ଏଥକୁ କରିବେ ଜଗନ୍ନାଥେ ମୋତେ ପାରି
ପତି ଅନ୍ତେ ଯିବି ମୁହିଁ ସ୍ୱାମୀକାର୍ଯ୍ୟ କରି ।
ସ୍ତିରୀକୁଳେ ସ୍ୱାମୀକାର୍ଯ୍ୟ ହୋଇ ବେଦେ ଶ୍ରେଷ୍ଠ
କେବଳ ଏକା ଲଭିଲି ମୁହିଁ ପୁତ୍ର କଷ୍ଟ ।
ଶ୍ରୀ ଗୋବିନ୍ଦ ଦୟା ଯାହା ହୋଇଅଛି ମୋତେ
ତାହା କେହୁ ଆନ କରି ପାରିବ ଜଗତେ ।
ଏରୂପେ ଚିନ୍ତିଣ ନିଦ୍ରାଯାନ୍ତେ ମହାଦେଇ
ସେ କଥା ଜାଣିଲେ ଅନ୍ତର୍ଯ୍ୟାମୀ ଭାବଗ୍ରାହୀ ।
ବୋଇଲେ ରାଣୀକି ସ୍ୱପ୍ନେ ହେବା ଆମ୍ଭେ ଦୃଶ୍ୟ
ମନ ତୋଷକରି ତାର ଯିବା ନିଜ ଦେଶ ।
ଏତେ ପାଞ୍ଚି ଗରୁଡ଼ରେ ଚଢ଼ି ଜଗଜ୍ୟୋତି
ରାଣୀଙ୍କି ମଧୁରବାକ୍ୟ କରି ପ୍ରବୋଧନ୍ତି ।
ବୋଲନ୍ତି ଏ ଜନ୍ମେ ତୋତେ କାହିଁ ପୁତ୍ର ଚିନ୍ତା
ପ୍ରତ୍ୟକ୍ଷେ ଅନ୍ନପୂର୍ଣ୍ଣା ତୁ ଅଟୁ ପତିବ୍ରତା ।
ଯେ ପତିବ୍ରତା ସ୍ତିରୀ ସେ ଅଟେ ଲକ୍ଷ୍ମୀସମ
ପୁତ୍ର ନାହିଁ ବୋଲି କିପାଁ ହେଉ ମନେ ଭ୍ରମ ।
ମନ ଭ୍ରମ ତୁ ନ କର ଆଗୋ ମହାଦେଇ
ପୁତ୍ରର କଥା ଯାଉଛୁ ଆମ୍ଭେ ତୋତେ କହି ।
କେବଳ ଆମ୍ଭର ଆଜ୍ଞା ରଖିଥାଅ ମନେ
ତୋହର ପୁତ୍ର ପ୍ରହ୍ଲାଦ ହେବ ଆରଜନ୍ମେ ।
ଯେଉଁ ମୁରାସୁର ମୋତେ କରୁଅଛି ନିନ୍ଦା
ସେ ଜନ୍ମେ କରିବ ପୁତ୍ର ତୋର ବିଷ୍ଣୁ ବନ୍ଦା ।
ଏ ମୁର ଅସୁର ମରି ହିରଣ୍ୟ ଯେ ହେବ
ତାହା ବୀର୍ଯ୍ୟେ ପୁତ୍ର ଜନ୍ମି ବିଷ୍ଣୁଙ୍କୁ ସେବିବ ।
ଏ ବିଷ୍ଣୁଙ୍କୁ ସେବୁ ଦୈତ୍ୟ ଉଠି କୋପକରି
ଏକା ଆମ୍ଭେ ସ୍ତମ୍ଭୁ ଜନ୍ମ ହେବୁ ତାକୁ ମାରି ।
ମାରନ୍ତେ ହିରଣ୍ୟ ମରି ଯିବ ମୋକ୍ଷ ହୋଇ
ତୁହି ମଧ ମୁକ୍ତ ହେବୁ ବ୍ରହ୍ମଜ୍ଞାନ ପାଇ ।
ନାରଦେ ଆସି କହିବେ ତୋତେ ବ୍ରହ୍ମଦୀକ୍ଷା
ଲଭିବୁ ତୁ ବିଷ୍ଣୁ ଗତି ପାଇ ଗୁରୁଶିକ୍ଷା ।
ଏରୂପେ କହିଲେ ରାଣୀ ଆଗେ ଭଗବାନ
ଗରୁଡ଼ କାନ୍ଧେ ବସିଣ ଗଲେ ନିଜସ୍ଥାନ ।
ରାଣୀ ତାହା ହେତୁ ରଖି ସୁଖେ ନିଦ୍ରାଗଲା
ବିଷ୍ଣୁ କହିବା କଥା ତ ମୁର ନ ଜାଣିଲା ।
ରାଣୀର ନିଦ୍ରାକୁ ଦେଖି ଶୁତିଲାକ ମୁର
ଶୁଣ ବାବୁରେ ନାରଦ କହେ ବେଦବର ।
ସୁପାତି ଶଯ୍ୟାରେ ପଡ଼ିଅଛି ପାଟ ଶଯ୍ୟା
ତହିଁପରେ ପହୁଡ଼ିଲେ ରାଣୀ ମହାରାଜା ।
ପଡ଼ିଅଛି ଶଯ୍ୟାପରେ ପତନୀ ଦୋଷଡ଼ା
ଦୋଷଡ଼ାରେ ପଡ଼ିଅଛି ନେତର ପାଛୁଡ଼ା ।
ଉପରେ ଚାନ୍ଦୁଆ ଟାଣିଅଛି ରତ୍ନାବଳୀ
ମାଣ୍ଡି ମୁଚୁଳାରେ ଅପସରେ ମଥା ଢାଳି ।
ସୁବର୍ଣ୍ଣ ରୁଖାରେ ଦୀପ ଜଳେ ଚଉକତି
ନିଦ୍ରାଗଲେ ରାଜାରାଣୀ ହୋଇଲା ପାହାନ୍ତି ।
ରାଣୀକି ଉଠାଇ ରାଜା ବସାଇଲା ପାଖେ
ହସି ହସି ଚୁମ୍ବନ ଯେ ଦେଲା ନେଇ ମୁଖେ ।
ବୋଇଲା ସୁନ୍ଦରୀ ଶୁଣ ଆରେ ପ୍ରାଣସହି
କେଡ଼େ ସ୍ୱପନ ଦେଖିଲି ଆଜରାତ୍ରେ ମୁହିଁ ।
ତୋ ସଙ୍ଗେ ପ୍ରୀତି କରିଣ ନିଦ୍ରାଯାନ୍ତେ ହୃଷ୍ଟେ
ଦେଖିଲି ସେ ନାରାୟଣ ଛନ୍ତି ବଇକୁଣ୍ଠେ ।
ମୁଁ ପୁଣି ସ୍ୱପ୍ନରେ ସେହି ବୈକୁଣ୍ଠକୁ ଗଲି
ଅନନ୍ତଶଯ୍ୟାରେ ଯାଇଁ ବିଷ୍ଣୁଙ୍କୁ ଦେଖିଲି ।
ମହାଲକ୍ଷ୍ମୀଙ୍କି ଜାନୁରେ ଘେନି ଦାଶରଥି
ଯାବତ ପ୍ରାଣୀ ପ୍ରାଣକୁ ମାଳା କରି ଗୁନ୍ଥି ।
ଯୋଗାରୂଢ଼େ ବସିଣ ଯେ ଭଜୁଛନ୍ତି ମାଳା
ପରମହଂସେ ଚିତ୍ତକୁ ନେଇ କରି ମେଳା ।
ଶବଦ ଟେକିଣ ଆତ୍ମା ଦେହେ ଯାହା ପଶେ
ଓଁ କାର ମାତ୍ରା ଘେନିଣ ବ୍ରହ୍ମ ପରକାଶେ ।
ଜୀବ ପରମ ହୋଇଣ ଅଙ୍ଗେ କ୍ରୀଡ଼ା କରେ
କ୍ଷଣେ ନ ପାସୋରି ବସିଥାନ୍ତି ଆସନରେ ।

ଆସନରେ ବସି ଏଣେ ନୁହେଁ ଦେଖାଦେଖି
ଜୀବ ଭୁଞ୍ଜାଇ ସର୍ବଦା ଜାଣ ଅଟେ ଭୋଖୀ ।
ଜୀବ ଆତ୍ମା ହୋଇକରି ଦେହେ ପ୍ରକାଶନ୍ତି
ପରମ ବ୍ୟତୀତ ଆନ ସଙ୍ଗ ନ କରନ୍ତି ।
ସମୀର ବାହନେ ବସି ପରମକୁ ଆସେ
ପରମରେ ମେଳ ହୋଇ ସମୀରେ ସେ ବସେ
ସମୀର ସେ ଜୀବ ପରମର ବାହନଟି
ପରମେ ଆସ ଯା ହୋଇ ନ ଛାଡ଼େ ବଇଠି ।
ଜୀବ ଆତ୍ମାର ବାହନ ସମୀରଟି ଏକା
ପରମକୁ ଘେନି ମାଡ଼ି ବସି ଥାଏ ଚକା ।
ଚକା ଆସନରେ ବସି ତ୍ରିକୂଟ ସ୍ଥାନରେ
ମାଳଗୋଟି ଧରି ଭଜୁଥାନ୍ତି ପଦ୍ମକରେ ।
ଦିନକରେ ଏକୋଇଶ ସହସ୍ର ଛଅଶ
ଅରିଷ୍ଟି କରି ଭଜନ୍ତି ନିତ୍ୟେ ଜଗଦୀଶ ।
ସେ ଜଗଦୀଶ କରନ୍ତି ସବୁ ହୃଦେ ସ୍ଥିତି
ସମସ୍ତଙ୍କ ଦେହ ଭଜେ ହୋଇ ଏହିମତି ।
ସେ ଭଜନ ଚିହ୍ନ କେହି ନ ପାରନ୍ତି ଜାଣି
ବିଷୟାବନ୍ଧେ ପଡ଼ିଣ ମରୁଥାନ୍ତି ପ୍ରାଣୀ ।
ଜପ ଛାଡ଼ିଲା ଦିନ ସେ ପ୍ରାଣୀ ହୋଏ ଶବ
ଅନଳେ ପୋଡ଼ନ୍ତି ଥିବା ଲୋକେ କରିଠାବ ।
ଏଣୁ ଏ ପିଣ୍ଡକୁ ଏକା ଭଜନଟି ପ୍ରାଣ
ଭଜନ ଗୋଚର କାହାକୁଟି ନୋହେ ଜାଣ ।
ବ୍ରହ୍ମା ମୁଖୁଁ ଶୁଣିଛି ମୁଁ ବ୍ରତହେବା କାଳେ
ଗାୟନ୍ତ୍ରୀମନ୍ତ୍ର କହିଲେ କର୍ଣ୍ଣେ ଯେତେବେଳେ ।
ତେତେବେଳେ ଏହିଯୋଗ କହିଥିଲେ ମୋତେ
ତାହା ମୁଁ ହେତୁ କରି ନ ଥିଲି ହୃଦଗତେ ।
ସ୍ୱପନେ ବସିଲି ଯାଇଁ ଏବେ ବିଷ୍ଣୁ ପାଖେ
ଦେଖିଲି ସେହି ଜପକୁ ଗୋବିନ୍ଦ ଶ୍ରୀମୁଖେ ।
ଜୀବରୁ ସେ ଉଦେ ହୋଇ ପରମେ ମିଳନ୍ତି
ତେଣୁ ସେ ପରମବ୍ରହ୍ମ ଦୟାଳୁ ବୋଲାନ୍ତି ।
ପ୍ରକୃତି ମନ୍ଦରୁ ସିନା ହେଲି ମୁଁ ଅସୁର
ଶୁଣ ଆରେ ସଖି ଏବେ ସ୍ୱପନ ବିଚାର ।
ବ୍ରହ୍ମାଙ୍କର ପୁତ୍ର ମୁହିଁ ଅଟଇ କି ସାନ
ତେଣୁ ବୈକୁଣ୍ଠେ ଦେଖିଲି ଯାଇ ଭଗବାନ ।
ମୁହିଁ ପୁଣି ଉଠି ଗଲି ଜଗତୀର ତଳେ
ନ ଦେଖିଲି ସେ ପ୍ରଭୁର ଭୟ ବେନିଡୋଳେ ।
ଆବର ଦେଖିଲି ମଧ୍ୟ ମହାଲକ୍ଷ୍ମୀ ମୁଖ
ମଳିନ ଦିଶଇ ଚନ୍ଦ୍ର ଚାହିଁ ରୂପ ରେଖ ।
ସେ ବିଷ୍ଣୁ ଜପ କରନ୍ତି ଯେତେ ଦିବା ନିଶି
ଖଡ଼ୀ ଧରି ଲେଖନ୍ତି ତା ଲକ୍ଷ୍ମୀ ଅହର୍ନିଶି ।
ଲକ୍ଷ୍ମୀ ତ ପରମ ଅଟେ ବିଷ୍ଣୁ ଜୀବରୂପୀ
ଜୀବ ପରମ ହୁଅନ୍ତି ଲେଖା ନିତ୍ୟେ ଜପି ।
ଏ ଜପ ସବୁରି ହୃଦେ ହେଉଛି ଗୋ ସଖି
ତାହା କେହି ଚିହ୍ନି ବୁଝି ନ ଜାଣନ୍ତି ଲେଖି ।
ସୁବୁଦ୍ଧି ସୁସାଧୁ ଜନ ଯେତେକ ପରାଣୀ
ସେ ଅବା ଜାଣନ୍ତି ଜପ ଗୁରୁ ମୁଖୁଁ ଶୁଣି ।
ଆତ୍ମାକୁ ଆତ୍ମା ଗୋଚର ଯେବେ କରିପାରେ
ତେବେ ସେ ପ୍ରାଣୀ ପରମ ଆନନ୍ଦେ ବିହରେ ।
ଜୀବ ପରମ ଜପ ନ ଚିହ୍ନି ଯେବେ ଜପେ
ସେ ଜପଯାକ ଧୀବର ଖେଳ ଇଚ୍ଛାରୂପେ ।
ଯେଉଁ ଜପ ଥିବାରୁ ତୁ ଜୟ ମାଳା ଗଣି
ସେ ଜପ ଜାଣି ଜପିଲେ ଲଭେ ଚକ୍ରପାଣି ।
ନୋହିଲେ ଗୋଦରା ଇକ୍ଷୁ କୋଡ଼ା ପ୍ରାୟ ଜାଣ
ଯେତେ କୋଡ଼ଇ ମାଡ଼ଇ ତେତେ ଅକାରଣ ।
ମାଳା ହାତେ ଧରିଣ ଯେ ଜନ ଜପୁଥାଇ
ମାଳା ଥୋଇଦେଲେ ଜପ କାହିଁ ପୁଣହୋଇ ।
ଜପରେ ଜପ ରହିଲା ମାଳା ଗଲା ଛିଡ଼ି
ସେ ଜପ କେହି ନ ଜାଣେ ମାୟାଜାଲେ ପଡ଼ି ।
ପ୍ରାଣୀ ଯେଉଁଠାରେ ଉଇଁ ପ୍ରକାଶିଲା ସୃଷ୍ଟି
ସେହିଠାରୁ ଜପ ପୁଣି ରହିଲା ପାଲଟି ।
ଏମନ୍ତ ଭଜୁଁ ଖସିଲା ମାଳା ବିଷ୍ଣୁ କରୁ
ଜଗତୀତଳେ ପଡ଼ିଲା ଆସି ଖଣ୍ଡେ ଦୂରୁ ।
କରରୁ ପଡ଼ିଲା ମାଳା ଗୋଟି ଯେତେବେଳେ
ଯୋଗରେ ବସି ଚାହିଁଲେ ସ୍ୱାମୀ ମୋତେ ଡୋଳେ ।
ବୋଇଲେ ମୁର ତୁ ଆସିଲୁଣି କେତେବେଳୁ
ଭଜନମାଳାକୁ ଟେକି ଆଣ ତେବେ ତଳୁ ।
ପ୍ରଭୁ ଆଜ୍ଞା ହୋଇବାରୁ ଗଲି ଆରେ ସଖି
ସେହି ମାଳାକୁ ଧରନ୍ତେ ନ ପାରିଲି ଟେକି ।
ବେନିଭୁଜେ ତୋଳି ପୁଣି ଧଇଲି ମୁଁ ଆଣ୍ଠେ
ମାଳା ନ ଚଳିଲା ଝାଳ କଣ୍ଢିଲା ଲଲାଟେ ।
ପୃଥିବୀ କମ୍ପିଲା ମାଳା ନ ପାରିଲି ଟେକି
ତାହା ଦେଖି ଆଚମ୍ଭିତ ଲାଗିଲା ଗୋ ସଖି ।
ହସିଲେ ସେ ଲକ୍ଷ୍ମୀନାରାୟଣ ମୋତେ ଚାହିଁ
ଆଖିଠାରି ଦେଲେ କଥା କାନେ କୁହା କୁହି ।
ତାହା ଦେଖିଣ ସଖିରେ ଲାଗେ ଲଜ୍ଜାମୋତେ
ବୋଇଲି ମାଳା ଭଲା କେ ନେବ ଦେଖିହସ୍ତେ ।
ଏଡ଼େ ମହାରଥୀ ମୁହିଁ ନ ପାରିଲି ଟେକି
ଆନ କେହୁ ନେବ ବହି ବୁଝିବା ନା ଦେଖି ।
ଏମନ୍ତ ବିଚାରି ଜାଣ ବସିଲି ମୁଁ ଜଗି
ଦେଖିଲି ଆସୁଛି ପୂର୍ବଦିଗୁଁ ଏକ ରୋଗୀ ।

ପିଠିରେ ତା ତିନି କୁଜ ବେକେ ଗଳଗଣ୍ଡ
ପେଟରେ ପିଳୋହୀ ପୁଣି ମୁଖରେ ବେରଣ୍ଡ ।
ପାଦ ବେନି ଗୋଦର ତା ମୁଖେ ବ୍ରଣବ୍ୟାଧି
ଚାଲୁଛି ସେ ଅଷ୍ଟବାଙ୍କେ ଝୁଣ୍ଟି ପଡ଼େ ଛନ୍ଦି ।
ଦଣ୍ଡକେ ଯାଇଁ ଚାଲଇ ପହରେ କୁଛାଇ
ନିଃଶ୍ୱାସମାତ୍ର ବହୁଛି ନାକେ ଦେଖିଲଇଁ ।
ଏହିରୂପେ ସଖି ସେହି ରୋଗୀ ଆସେ ଚଳି
ତାହାକୁ ଦେଖି ଡାକିଲେ ପ୍ରଭୁ ବନମାଳୀ ।
ବୋଇଲେ ଭୋ ପଥିକି ସେ ମାଳା ଘେନିଆସ
ହାତୁ ଗଲାବେଳୁ ମୋତେ ଲାଗୁଅଛି ବିଷ ।
ସେ ରୋଗୀ ଲୋକର କଥା ଶୁଣରେ ବିମ୍ବୋଷ୍ଠି
ନାରାୟଣେ ଡାକନ୍ତେ ସେ ଟେକେ ମାଳାଗୋଟି
ଯେମନ୍ତେ ଟେକିଲା ତାହା କହୁଛି ଗୋ ଶୁଣ
ବାମଭୁଜ ଅଙ୍ଗୁଳିରେ ଧଇଲା ଯାକିଣ ।
ତରଜନୀ ବୃଦ୍ଧାଙ୍ଗୁଳି ଦୁଇ ପରବାଢ଼େ
ଫିଙ୍ଗିଲା ସେ ଜଗତୀକି ତେହ୍ନେ ତୃଣନାଢ଼େ ।
ତାହା ଦେଖି ଲାଗିଲା ଗୋ ମୋତେ ଆଚମ୍ବିତ
ଚମତ୍କୃତ ହୋଇ ମୁହିଁ ପୁଛଇ ଉଦନ୍ତ ।
ବୋଇଲି ମୋଠାରୁ କେହୁ ଅଛି ବଳିୟାର
ମୁହିଁ ନ ପାରିଲି ଟେକି ଟେକେ ରୋଗୀ ଛାର ।
ଚାଲିଲେ ଯେ ଲୋଚା ହୋଇଯାଏ ପହଣ୍ଡକେ
ସେ କେହ୍ନେ ଆଣିଲା ମାଳା ବହି ଅଙ୍ଗୁଳିକେ ।
ନାରାୟଣ ବୋଇଲେ ରେ ଶୁଣ ତେବେ ବୀର
ଶ୍ରୀ ବୈକୁଣ୍ଠର କଥା କି କରିବୁ ଗୋଚର ।
ତୁ ଯେ ବୋଲୁଅଛୁ ମୁହିଁ ଅଟେ ମହାବଳୀ
ରୋଗୀର ନିଃଶ୍ୱାସ ବେଳେ ରହ ତ ସମ୍ଭାଳି ।
ଏରୂପେ ବୋଲୁ ନିଃଶ୍ୱାସ ଦେଲା ସେହୁ ଛାଡ଼ି
ପଡ଼ିଲି ମୁଁ ଉଡ଼ି ସପ୍ତହାତେ ମୁଖମାଡ଼ି ।
ମୁଖମାଡ଼ି ମୁଁ ପଡ଼ନ୍ତେ ହସି ନାରାୟଣ
ଆଶ୍ୱାସିଣ ଆସି ମୋତେ ବସାଇଲେ ପୁଣ ।
ବସାଇଣ ପୁଛିଲେ ରେ ତୁହି ପରା ମୁର
ନିଃଶ୍ୱାସକେ ପଡ଼ିଲୁ ତୁ ଆସି ଏତେ ଦୂର ।
ବଡ଼ପଣ ବହିଣ ଯେ କହୁଥାଉ ତୁଣ୍ଡେ
ନିଃଶ୍ୱାସ ଧକାରେ ପଡ଼ିଗଲୁ ମହୀଖଣ୍ଡେ ।
ରୋଗୀ ବୋଲି ମନେ ତୁହି ପାଞ୍ଚିଲୁ ଯାହାକୁ
ସାକ୍ଷାତେ ଅନନ୍ତ ସେହି ଦେଖ ତୋ ମନକୁ ।
ଏରୂପେ ବୋଲନ୍ତେ ଦେଲି ମୁଁ ତାହାଙ୍କୁ ଚାହିଁ
ଦେଖିଲି ରୋଗୀ ସହସ୍ରେ ଫଣା ଅଛି ବହି ।
ଆବର ଦେଖିଲି ଦୁଇ ସହସ୍ର ଯେ ଚକ୍ଷୁ
ସହସ୍ର ନାସା ଗୋ ପୁଣ ହେଲେ ଦେଖୁଦେଖୁ ।
ଏରୂପେ ରୋଗୀ ହୁଅନ୍ତେ ଦିବ୍ୟ ଅବତାର
ପ୍ରଭୁ ବୋଇଲେ ଦେଖିଲୁ ଏବେ କିରେ ମୁର ।
ରୋଗୀ ବୋଲି ଯାହାକୁ ତୁ ବିଚାରିଲୁ ମନେ
ପ୍ରତ୍ୟକ୍ଷ ଅନନ୍ତ ସେହୁ ଦେଖ ତା ନୟନେ ।
ଏହି ମୂର୍ତ୍ତି ଯାଇ ତୋର ଦାରୁଣ ଭାଇକି
ବଦ୍ରିକାରେ ଜନ୍ମି ମାରି ଅଇଲେ ଏଥିକି ।
ସିଂହଦ୍ୱାରେ ବସିଅଛି ପାରିଲେ ଯା ଦେଖ
ଗଲାବେଳେ ଯିବୁ ଚାହିଁ ଭାଇର ଯେ ମୁଖ ।
ତୁ ଏଥୁ ଗଲେ ଆଣିବୁ ଆମ୍ଭେ ତୋତେ ମାରି
ଆମ୍ଭେ ସିନା ବଦ୍ରିକାରେ ଅଛୁ ଅବତରି ।
ନୃସିଂହ ବୋଲିବାର ଯେ ଆମ୍ଭେ ଏକା ଜାଣ
ଶେଷ ନାମ ଅନନ୍ତ ଯେ ଅଟେ ପ୍ରତ୍ୟକ୍ଷେଣ ।
ତୁମ୍ଭଙ୍କୁ ଘେନି ମଞ୍ଚରେ ଆମ୍ଭେ ଜନ୍ମ ହେଉ
ତହିଁ ମାରି ଏଥେ ଆଣି ଦୁଆରୀ କରାଉ ।
ତୁହି ନ ଥିଲାରୁ ମୋର ସିଂହଦ୍ୱାର ଗୋଟି
ଅଶୀଗଣ୍ଡା ଯୁଗୁ ଏବେ ହେଲା ଅଲଗାଟି ।
ଏବେ ତୋତେ କହୁଅଛି ଯାଅ ନିଜ ଦେଶ
ଶୁଣିଲାରୁ ଉଠିଗଲି ସଖି ତାଙ୍କ ପାଶ ।
ଆସୁ ଆସୁ ସିଂହଦ୍ୱାରେ ଦେଖିଲି ଭାଇକି
ବସିଅଛି ପଲ୍ୟଙ୍କରେ ବେତବାଡ଼ି ଟେକି ।
ଯେବଣ ଶବକୁ ମୋର ଆସିଥିଲି ଛାଡ଼ି
ତାହା ଦେଖାଇଲା ମୋତେ ବସ୍ତ୍ରଟିକୁ କାଢ଼ି ।
ବୋଇଲା ଆସିଲେ ଏହି ଶବେ ପଶିବୁଟି
ଦୁହେଁ ମିଶି ଜଗିବାଟି ସିଂହଦ୍ୱାର ଗୋଟି ।
ମୁହିଁ ଆସିବାରୁ ଭାଇ ପଶିଲି ମୋ ଶବେ
ବିପୁଳ ଭୋଗକୁ ମୋତେ ଦେଲେ ବାସୁଦେବେ
ତୁହି କିପାଇଁ ସେଠାରେ ରହିଛୁ ନ ଆସି
ହରି ସେବା ଛାଡ଼ି ହୋଇଅଛୁ ଦୈତ୍ୟବଂଶୀ ।
ସେଠାରେ ଥାଇ କିପାଇଁ ଗର୍ଜି ହେଉଅଛୁ
ବିଷୟ ବନ୍ଦୀରେ ପଡି କି କର୍ମ କରୁଛୁ ।
ଏହି ଦ୍ୱାରେ ଯଦ୍ୟପିରେ ଜଗିଥିବା ଭାଇ
ସକଳ ବାସନାଯାକ ଆମ୍ଭେ ଆଗ ପାଇ ।
ଆମ୍ଭେ ନ ଜାଣି ଦ୍ରବ୍ୟ ନ ଯାଏ ଭିତରକୁ
ବୁଝିଲେ ଆମ୍ଭେ ମୂଳ ଏ ସିଂହ ଦୁଆରକୁ ।
ଏ ସୁଖ ଛାଡ଼ି କିପାଇଁ ତହିଁ ଅଛୁ ପଡ଼ି
କପଟ କୂଟ ହିଂସାରେ କ୍ରୋଧେ ମନ ଜଡ଼ି ।
ନୁହଇ ଲୋଭେ ଛାଡ଼ି ସେ ସ୍ଥାନ ବଡ଼ପାପୀ
ନାମରେ ମୋହ ହୋଇଣ ମରଇ ଅଦ୍ୟାପି ।
ପରକୁ ଉପକାର ନ ପାରି ତହିଁ କରି
କୁଟୁମ୍ବ ପୋଷା ଅର୍ଥରେ ଅନୁକ୍ଷଣେ ମରି ।

ତହିଁ ଯେତେ ପୁରୁଷ ଯେ ସ୍ତିରୀ ବେଠିଆଟି
ଯୁବତୀ ବୋଲି ପାଳିଣ ପୋଷେ ହୋଇ ନଷ୍ଟୀ
ପତ୍ନୀର ବଚନ କେହୁ ନ ଭାଙ୍ଗନ୍ତି ବେଳେ
ଦିବସେ ପୋଷି ଶୁଅନ୍ତି ରାତ୍ରେ ଘେନି କୋଳେ
ଗୋବିନ୍ଦରେ ଲୟ ପ୍ରାୟ ପ୍ରେମେ ଯାନ୍ତି ମଜ୍ଜି
ପାପରେ ପୀଡ଼ିତ ହୋଇ ହରିଙ୍କୁ ନ ଭଜି ।
ହରିଙ୍କୁ ଭଜିଲେ ସିନା ଜୀବ ଗତି ହୋଇ
ହରିଙ୍କୁ ନ ଭଜି ରହିଅଛୁ କିସପାଇଁ ।
ଏବେ ଆସ ଭାଇ ଆସିବାରେ ହୋଇ ସଙ୍ଗ
ମୁହିଁ ବାମଭାଗେ ଜଗେ ତୁହି ଦକ୍ଷଭାଗ ।
ଜଗିବା ଯେବଣ ସିଂହଦ୍ୱାର ଆମ୍ଭେ ଭାଇ
ପ୍ରାଣୀଙ୍କର ପ୍ରାଣ ଛନ୍ଦା ସେ ସ୍ଥାନେ ଅଟଇ ।
ସେହିଠାରୁ ଉତ୍ପତ୍ତିଟି ସେଠାରେ ବିଲୟ
ସେହି ଠାବରୁ ସମସ୍ତ ହୁଅନ୍ତି ଉଦୟ ।
ମତ୍ସ୍ୟ କଚ୍ଛ ବରାହ ଯେ ନୃସିଂହ ବାମନ
ସେହିଠାରୁ ପ୍ରକାଶିଣ ବହନ୍ତି ଏ ନାମ ।
ଲୀଳା ସରିଲେ ଆସନ୍ତି ପୁଣି ସେହି ଦ୍ୱାରେ
ବୈକୁଣ୍ଠେ ରହନ୍ତି ଆସି ଆମ୍ଭର ଗୋଚରେ ।
ଏମନ୍ତ ବୋଲି କହିଲା ସଖି ମୋତେ ଭାଇ
ସେହି ବିଷ୍ଣୁ ପରା ଆସିଛନ୍ତି ଜନ୍ମ ହୋଇ ।
କୃଷ୍ଣବଲ୍ଲଭର ଘରେ ଜନ୍ମିଛନ୍ତି ଆସି
ତାଙ୍କ ହାତେ ମଲେ ହେବା ବଇକୁଣ୍ଠବାସୀ ।
ଏ ଭକ୍ତି ଛାଡ଼ି ଅର୍ଜିବି ଆଉ କେଉଁ ଲାଭ
ମୋତେ ସଖିରେ ଏ ଜନ୍ମ ହୋଇଲା ଦୁର୍ଲ୍ଲଭ ।
ବ୍ରହ୍ମା ଜାତ କଲା ଦେଲା ଈଶ୍ୱର ଯେ ବର
ବିଷ୍ଣୁହାତେ ମଲେ ଯିବି ବଇକୁଣ୍ଠପୁର ।
ବିଷ୍ଣୁ ବିନା ଆନ ମୋତେ ନ ପାରଇ ମାରି
କେବଳ ବିଷ୍ଣୁଙ୍କୁ ଥାଇ ସର୍ବଦା ମୁଁ ଡରି ।
ଅଥବା ବିଷ୍ଣୁ ଯେବେ ସେ ନୋହିବେଟି ଜାଣ
ବଲ୍ଲଭପୁଅକୁ ନିଶ୍ଚେ କରିବି ନିଧନ ।
ଏ ଯେବେ ବିଷ୍ଣୁ ସାକ୍ଷାତେ ଜାଣ ହୋଇଥାନ୍ତା
ଆଜିଯାଏ ମୋତେ କି ସେ ପ୍ରାଣେ ନ ମାରନ୍ତା
ନାରାଚ ଗୋଟିକରେ ମୁଁ ଛେଦିବି ତା ଶିର
ଏଣୁ ବଲ୍ଲଭ ପୁଅକୁ ନାହିଁ ମୋର ଡର ।
ନ ମାଇଲା ଯାଏ ତାକୁ ପୁରେ ନ ଆସିବି
ଶୁଣିକରି ହସ ହସ ହେଲା ମହାଦେବୀ ।
ରାଜାର ପାଶୁଁ ଉଠିଣ ଭିତରକୁ ଗଲା
ତହିଁ ଉତ୍ତାରୁ ଆସ୍ଥାନେ ମୁର ବିଜେ କଲା ।
ସର୍ବ ସେନାପତି ମିଳିଗଲେ ଆସି ପାଶ
ଲକ୍ଷ୍ମୀ ନୃସିଂହ ଶରଣ ପୀତାମ୍ବର ଦାଶ ।

ଶ୍ରୀବିଷ୍ଣୁ ପୁରାଣ ଏହି ଅପୂର୍ବ ଚରିତ
ଶୁଣିଲେ ସଂସାର ଜନେ ହୋଇବେ ମୁକତ ।
ପୀତାମ୍ବର ଦାଶ ମୁହିଁ ବିଚାରେ ସେ କଥା
ଶ୍ରୀନୃସିଂହ ପୁରାଣକୁ ବାନ୍ଧିକରି ପୋଥା ।
ମହାପବିତ୍ର ମହିମା ବଖାଣଇ ଆଣି
ମନରେ ଭୟ କରିଣ ଲେଖଇ ମୁଁ ଜାଣି ।
ଜାତିରେ ବ୍ରାହ୍ମଣ ମୁହିଁ ଅଟେ ସଦା ମୂର୍ଖ
କୁଟୁମ୍ବ ଜଞ୍ଜାଳରେ ନ ଭଜେ ପଦ୍ମମୁଖ ।
ଶାସ୍ତ୍ରହିଁ ମୁଁ ଶୁଣିନାହିଁ ଧର୍ମ କରିନାହିଁ
ବିନା ତପେ ଶ୍ରୀଗୋବିନ୍ଦ କରିବେ ବା ତ୍ରାହି ।
ଦେବତା ବ୍ରାହ୍ମଣଙ୍କୁ ମୁଁ ଦିନେ ନାହିଁ ସେବି
ସୁଜ୍ଞାନୀ ବ୍ରହ୍ମଦୀକ୍ଷା ମୁଁ କାହୁଁ ପ୍ରକାଶିବି ।
ସୁଜନ ସାଧୁଙ୍କ ସଙ୍ଗେ ନାହିଁ ଦିନେ ବସି
ବିଦ୍ୟା ପଢ଼ି ନାହିଁ ମୁହିଁ ନୁହେ ତୀର୍ଥବାସୀ ।
ଲୋଭ କାମ କ୍ରୋଧେ ପଡ଼ିଅଛି ମୋହ ଜଡ଼ି
ବିନାଜଳେ ଅଥଳେ ମୁଁ ମରୁଅଛି ବୁଡ଼ି ।
ନାହିଁ ତପ ସତ୍ୟ ମୋର ଶୁଭ ଧର୍ମକର୍ମ
ଦେବା ଦୟା ଦୁଇ ନାହିଁ ଅଟଇ ଅଧର୍ମ ।
ଯେତେ ମୁହିଁ କର୍ମ କରେ ସବୁ ଅପକୀର୍ତ୍ତି
ଗୋବିନ୍ଦ ନାମ ଭଜି ନ ପାରେ ଯେଣୁ ନିତି ।
ଶୁଖିଲା ନଦୀରେ ମୋର ବୁଡ଼ିଲାକ ନାବ
ଏଥକୁ କଥାଏ ମୁହିଁ କଲି ଜାଣ ଠାବ ।
ଶ୍ରୀନୃସିଂହ ପ୍ରଭୁଙ୍କର ପୁରାଣ ଚରିତ
ସଂସାର ଲୋକଙ୍କ ହିତେ କରୁଛି ତା ଗୀତ ।
ପ୍ରାକୃତବନ୍ଧେ ରଚି ମୁଁ ଲେଖିଲି ଜଗତେ
ଭବସାଗରୁ କିପରି ତରିବା ନିମନ୍ତେ ।
ଏଥକୁ ସୁପଣ୍ଡିତ ହେ ସାଧୁ ସଜ୍ଜନେ
ଶୁଣିବା କିଞ୍ଚିତ ଭକ୍ତି ମୋର ସାବଧାନେ ।
ଶ୍ରୀନୃସିଂହ ପୁରାଣ ଯେ କରୁଛି ନ ଜାଣି
ତୁମ୍ଭ ସୁଦୟାରୁ ଯିବି ପ୍ରକୃତରେ ଭଣି ।
ସୁସାଧୁ ସୁପଣ୍ଡିତ ସୁଜନ ଯେତେ ଲୋକ
ସେମାନେ ଶୁଣିବେ ଏହି ପୁରାଣର ବାକ୍ୟ ।
ତୁମ୍ଭ ପାରୁଶେ ସଭାରେ ଥିବି ମୁହିଁ ବସି
ଏ ପୁରାଣ ଶୁଣୁଥିବି ବସି ଅହର୍ନିଶି ।
ଏ ଗ୍ରନ୍ଥ ଶୁଣିବାକୁ ବସିଛ ଯେ ବାବା
ମୋତେ ଦିଶୁଛି ସୁଧର୍ମାସଭା ପ୍ରାୟେ ଶୋଭା ।
ଏ ସଭାରେ ବସିଅଛ ପୁଣି ଯେତେ ଜନ
ସମସ୍ତେ ତ ତୁମ୍ଭେ ଅଟ ଗୋବିନ୍ଦ ସମାନ ।
ତେଣୁ ଏହି ସଭାଗୋଟି ଅଟେ ବାରାଣସୀ
ବିପ୍ର ପୀତାମ୍ବର ଦାଶ କହିଲା ଭରସି ।

## ଆନନ୍ଦବନ ମାହାତ୍ମ୍ୟ

ଏଥୁ ଅନନ୍ତରେ ପରୀକ୍ଷିତ ନାମେ ରାଜା
ଶୁକମୁନି ପାଦତଳେ କଲେ ଦିବ୍ୟପୂଜା ।
ଲକ୍ଷେମାଢ଼ ସୁବର୍ଣ୍ଣ ଯେ ତାଙ୍କ ପାଦେ ଥୋଇ
ଆନନ୍ଦେ ନୃସିଂହ ଶେଷ ଲୀଳା ପଚାରଇ ।
ବୋଲଇ ମୁର ଫିଙ୍ଗିଲା ତେଡ଼େବଡ଼ ବନ
ତହିଁ ଉତ୍ତାରୁ କହ କି କଲେ ଭଗବାନ ।
ଏଡ଼େ ତୋଟା ମହାପ୍ରଭୁ ମଞ୍ଚରେ କି ରଖି
ମୁର ହାତରେ ସ୍ୱର୍ଗକୁ କିପାଁ ଦେଲେ ଟେକି ।
ଦେବତାଙ୍କୁ କିସ ସେହୁ ଦେଲା ଉପଯୋଗ
ମଞ୍ଚରେ ଥିଲେ କରନ୍ତେ ସିନା ନରେ ଭୋଗ ।
ପରୀକ୍ଷ ରାଜା ପୁଚ୍ଛନ୍ତେ ଶୁକ ଯେ କହନ୍ତି
ବୋଲନ୍ତି ହୋ ସାବଧାନେ ଶୁଣ ମହୀପତି ।
ସଭାରେ ବସି କହନ୍ତି ଧାତା ଏହି ଅର୍ଥ
ନାରଦ ଶ୍ରୋତା ହୋଇଣ ଶୁଣନ୍ତି ଏ ଗ୍ରନ୍ଥ ।
ତୁମ୍ଭେ ଶୁଣିବାର କଥା ନାରଦ ଶୁଣନ୍ତି
ସବୁ ପ୍ରାଞ୍ଜଳ କରିଣ ବିଧାତା କୁହନ୍ତି ।
ବିଧାତା ବୋଇଲେ ବାବୁ ଶୁଣରେ ଆତ୍ମଜ
ସେ ବନ ମଞ୍ଚରେ ଥିଲେ ହୁଅନ୍ତାଟି ପୂଜ୍ୟ ।
ମନୁଷ୍ୟଙ୍କୁ ହୁଅନ୍ତା ସେ ତୋଟା କାହୁଁ ଯୋଗ୍ୟ
ପଶିଲେ ସେ ବୃଦ୍ଧତନୁ ହୁଅନ୍ତେ ଯୁବା ଅଙ୍ଗ ।
ତହିଁରେ ଔଷଧ ଅଛି ଯାହା ଏକେ ଏକେ
ରେଣୁମାତ୍ରେ ଖାଇ ହୁଅନ୍ତେ ଅମର ଯେ ଲୋକେ
ଚଉଷଠି ରୋଗଯାକ ରହନ୍ତା କି ମଞ୍ଚେ
କ୍ଷୁଧା ପିପାସା ନିଦ୍ରା ଯେ ହଜିଯାନ୍ତା ପଛେ ।
ଏକା ରାତ୍ରକରେ ଜାଣ ସ୍ତିରୀଙ୍କର ଗାତ୍ରେ
ରମିଲେ କୋଟିବାର ନ ଯାନ୍ତା ବପୁମାତ୍ରେ ।
ପାଅନ୍ତେ ବଳିଷ୍ଠ ହେବୁ ବୋଲି ଯେବେ ମନେ
ରହନ୍ତେ ମହା ବଳିଷ୍ଠ ହୋଇ ସବୁଦିନେ ।
କରନ୍ତେ ଅମର ପଦ ବାଞ୍ଛା ଯେବେ ପୁଣି
ଅମର ହୋଇ ରହନ୍ତେ ଜାଣ ସବୁ ପ୍ରାଣୀ ।
ଅସମ୍ଭବ ନାରୀ ସମ୍ଭବଇଁ ମନେ କଲେ
ବାଳକେ ଯୁବା ହୁଅନ୍ତେ ମନେ ବିଚାରିଲେ ।
ପାଅିଲେ ମିଳନ୍ତା ଇନ୍ଦ୍ର ଶିରୀ ଚଉବର୍ଗ
ଏରୂପେ ଅଟଇ ସେହି ତୋଟାର ଯେ ମାର୍ଗ ।
ସକଳ ବନ୍ଧ୍ୟା ସ୍ତିରୀଏ ହୁଅନ୍ତେ ପୁତ୍ରବତୀ
ସତୀ ପ୍ରୀତି କରୁଥିଲେ ନ ଅଣ୍ଟନ୍ତା ରାତି ।
ଏମନ୍ତ ତୋଟା ରହନ୍ତା ଯେବେ ମଞ୍ଚପୁରେ
ନରେ ଆଉ କାହାକୁ କି ମାନନ୍ତେ ସଂସାରେ ।
ଏ ଘେନି ମନେ ବିଚାରି ପ୍ରଭୁ ଜନାର୍ଦ୍ଦନ
ମୁରର ଲାଗି ପଡ଼ିଲେ ସ୍ୱର୍ଗେ ଘେନି ବନ ।
ସ୍ୱର୍ଗକୁ ଯେଡ଼େ ସେ ଗୁଣ ହେଲା ତୋଟାଠାରୁ
ତାହା ଶୁଣ ନାରଦ ସେ ଆମ୍ଭ ଶ୍ରୀମୁଖରୁ ।
ସେ ବନ କଥା କହିବା ଏବେ ତୋତେ ରାଜା
ଦିନେ ବଇରୀ ଦେଶକୁ ଗଲା ଯେ ବିଡ଼ୋଜା ।
କହିଲା ନୃସିଂହ ସ୍ୱାମୀ ଆଗେ ବସିକରି
ବୋଇଲା ଦେହ ଆଉ ନ ପାରେ ସ୍ୱାମୀ ଧରି ।
ଦିତିର ଶାପରୁ ମୁଁ ଯେ ହେଲି ସସ୍ରଯୋନି
କି ରୂପେ ଚାଲିବି ଦେଖ ଦାଣ୍ଡେ ଦେହଘେନି ।
ମାତାର ଭଗିନୀ ହୋଇ କଲା ଏଡ଼େ କୋପ
ସପତଣୀ ହିଂସା ବହି ଦେଲା ମୋତେ ଶାପ ।
ଦିତିଙ୍କୁ ହେଲେ ଦୋଷ ନ ଥିଲି ମୁହିଁ କରି
ଅଦିତି ବୋଲେ ପୁତ୍ରକୁ ଗର୍ଭୁ ଦେଲି ଚିରି ।
କାଟିଲି ଉଦର ମଧ୍ୟେ ପଶି ବାଳପିଣ୍ଡ
କାଟନ୍ତେ ଲେଖା ହେଲା ସେ ଅଣଚାଶ ଖଣ୍ଡ ।
ଅଣଚାଶ ଖଣ୍ଡ ହେଲେ ଅଣଚାଶ ମୂର୍ତ୍ତି
ପୁତ୍ର ଜନ୍ମ ଦେଖି ଶାପ ଦେଲେ ମୋତେ ଦିତି ।
ଏ ଛାର ଦୋଷକୁ ଦେଖଦେଲା ଏଡ଼େ ଶାପ
ତୁମ୍ଭେ ନ ରଖିଲେ ସ୍ୱର୍ଗେ କେମ୍ନେ ହେବି ନୃପ ।
ଦେଖ ଦେଖ ହରି ସବୁ ଦେହଯାକ ଭଗ
ବସ୍ତ୍ର ଫେଡ଼ିଣ ଦେଖାଏ କାଢ଼ି ନିଜ ଅଙ୍ଗ ।
ବୋଇଲା ସର୍ବଦା କେତେ ଦେହେ ଦେବି ବାସ
ଠାବେ ଘୋଡ଼ାଇଲେ ଠାବେ ଦିଶଇ ଅବଶ୍ୟ ।
ପବନ ବହିଣ ଯେବେ ଯାଏ ବାସ ଉଡ଼ି
ତହୁଁ ଲଜ୍ଜାରେ ରହଇ ମୁହିଁ ମୁହଁ ମାଡ଼ି ।
ଏକାଯୋନି ଭାର ତ ନ ବହି ପାରେ ସ୍ତିରୀ
କାମ ପୀଡ଼ିଲେ ଯେ କୋଟି ପୁଂସେ ମନ କରି ।
ବିପୁଳ ଲକ୍ଷ୍ମୀ ହେଲେହେଁ ଲାଗେ ତାକୁ ପିତା
ଝୁରଇ ଅନୁବ୍ରତେ ନ ଦେଖି ଘରେ ଭର୍ତ୍ତା ।
ନୋହିଲେ ସେ ରସିକର ସଙ୍ଗେ କରେ ପ୍ରୀତି
ପ୍ରୀତି ସରିଲେ ପୁଣି ସେ ରହଇ ନିବର୍ତ୍ତି ।
ତଥାପି ଯୁବତୀଙ୍କୁ ଏ କଥା ସିନା ସାଜେ
ପୁରୁଷଙ୍କୁ ଏହା ବିଡ଼ମ୍ବନ ଦେବରାଜେ ।
ଏକା ଯୋନି ଗୋଟିକୁ ଏରୂପେ ହୋନ୍ତି ସ୍ତିରୀ
ମୁହିଁ ଏ ସହସ୍ରଯୋନି ବହିବି କିପରି ।
ନପୁଂସକରୁ ମୁଁ ହୀନ ହେଲି ନାରାୟଣ
ସ୍ତିରୀ ହୋଇଲି ପୁରୁଷ ନୋହି ପ୍ରତ୍ୟକ୍ଷେଣ ।
ବିଡ଼ୋଜା କହିବା କଥା ଜାଣି ପୀତବାସ
ବୋଇଲେ ଇନ୍ଦ୍ର ହେ ତେବେ ସଙ୍ଗେ ମୋର ଆସ ।

ଆନନ୍ଦ ବନରୁ ଖୋଜି ଦେବା ଅଉଷଧି
ଖାଇବା ମାତ୍ରକେ ଭଲ ହେବ ତୋର ବ୍ୟାଧି ।
କେବଳ ଯେ ଦିତି ଶାପ ଆନ ନୁହେଁ ଜାଣ
ଲିଭିବ ଯେ ଭଗଛିଦ୍ର ରହିବ ତା ଚିହ୍ନ ।
ଶାପଦେଲା ଦୋଷରୁ ତ ନୁହଇ ଅନ୍ୟଥା
ଯେଉଁ ମାର୍ଗେ ରହିବଟି ଶୁଣିଥା ସେ କଥା ।
ଯେମନ୍ତେ ମାଇପେ ଦୁଇ ତିନି ବସି ଏକା
ବେନି ଭୁଜ ଦଣ୍ଡେ ଘେନୁଥାନ୍ତି କଳାରେଖା ।
ସୂଚିମୁନ ବସାଇ ଘେନନ୍ତି ଯେହ୍ନେ ଚିତ୍ର
ସେହି ପ୍ରକାରେ ଦିଶିବ ତୋହର ଯେ ଗାତ୍ର ।
ସେ ଚିତ୍ରଶୁଖିଲେ ଗାତ୍ରେ ଯେହ୍ନେ ରହେଚିହ୍ନ
ବୁଝ ସେହିରୂପେ ତୋର ଦିଶୁଥିବ ବର୍ଣ୍ଣ ।
ଶୁଣିକରି ପୁରନ୍ଦର ହୋଇଲା ଆନନ୍ଦ
ବୋଇଲାକ ଚିହ୍ନମାନ ରହୁ ହେ ଗୋବିନ୍ଦ ।
ଶୀଘ୍ର ଯାଅ ଆହେ ପ୍ରଭୁ ବିଜେ ବେଗେ କର
ଏ ଯୋନି ଭାରା ସହି ନ ପାରେ ଦାମୋଦର ।
କେଡ଼େ ଅଭାଗ୍ୟ ଘେନିଣ ଉପୁଜିଲି ମୁହିଁ
ଏହି ଦେହ ଗଲେ ଭଲ ହ୍ୱନ୍ତା ଭାବଗ୍ରାହୀ ।
ବାସବର କଥା ଶୁଣି ଉଠି ବନମାଳୀ
ଇନ୍ଦ୍ରଙ୍କୁ ସଙ୍ଗେ ଘେନିଣ ବନେ ଯାଇଁ ମିଳି ।
ସେ ବନର କଥା କିସ କହିବା ନାରଦ
ପଦାକୁ ନବଯୂଣରେ ବାସ ବାସେ ଆଦ୍ୟ ।
ଅନେକ ଜୀବ ଅଛନ୍ତି ବହୁ ଖାଦ୍ୟ ମୂଳ
ଅନେକ ଔଷଧି ଅଛି ବହୁ ଫୁଲ ଫଳ ।
ଅନେକ ଔଷଧି ଅଛି ନାନାରୂପେ ତରୁ
ଶ୍ୱେତ ପୀତ ଲୋହିତ ଶ୍ୟାମଳ ଦେବଦାରୁ ।
ଏକା ବୃକ୍ଷ ଗୋଟିକ ଯେ ଦୀର୍ଘ ସସ୍ର କୋଶ
ସବୁ ବ୍ୟାଧିକି ଲୋଡ଼ା ତା ନାମ ଜୀବନ୍ୟାସ ।
ଡାଳେ ରଙ୍ଗ ଡାଳେ ଶ୍ୱେତ ଡାଳେପୀତ ତାର
ବିଶଲ୍ୟକରଣୀ ଅଟେ ମୂଳ ପୋତା ଚେର ।
ଆବର ପତ୍ର ଛେଚିଣ ଘେନିଲେ ମୃତ୍‌ପିଣ୍ଡେ
ତକ୍ଷଣେ ପାଲଟି ଜୀବ ଚାଲେ ରାଜଦାଣ୍ଡେ ।
ପୁଷ୍ପର ବାସନା ତାର ଘେନିବ ଯେ ନାସେ
ବୃଦ୍ଧ ହେଲେ ନବଯୁବା ଦିଶିବେ ମନୁଷ୍ୟେ ।
ବୃକ୍ଷର ବକଳଯାକ ଅଟେ ମହୌଷଧି
ବ୍ୟାଧି ଗୋଟିକେ ପରୀକ୍ଷା କଲେ ହୁଏ ସିଦ୍ଧି ।
ଏମନ୍ତ ବୃକ୍ଷ ସେ ଯେ ତା ନାମ ଜୀବନ୍ୟାସ
ସେ ବୃକ୍ଷ ଫଳ ଭୁଞ୍ଜିଣ ସ୍ତିରୀ ହ୍ୱନ୍ତି ପୁଂସ ।
ଯୁବତୀ ସ୍ୱରୂପ ତେଜି ପୁଂସ ହୋଇ ଚାଲେ
ସ୍ତିରୀଙ୍କୁ ଘେନି ମାତଇ ସେହି ପୁଣି ଗେଲେ ।
ଶୃଙ୍ଗାର ସୁଖ ପାଇଣ କରଇ ରମଣ
ଏରୂପେ ସେହି ବୃକ୍ଷର ଚମତ୍କାର ଗୁଣ ।
ସେ ତରୁ ମୂଳକୁ ନେଲେ ଇନ୍ଦ୍ରକୁ ଶ୍ରୀହରି
ଆପଣେ ଚିହ୍ନାଇଦେଲେ ପ୍ରତ୍ୟକ୍ଷେ ଯେ ହରି ।
ବୋଇଲେ ଇନ୍ଦ୍ର ହୋ ଭୁଞ୍ଜ ଏ ବୃକ୍ଷର ଫଳ
ଭୁଞ୍ଜିଲେ ଶୁଖିବ ତୋର ସସ୍ର ଯୋନି ମୂଳ ।
ରମିବୁ ସ୍ତିରୀଙ୍କୁ ଏହିକ୍ଷଣି ମନେ କଲେ
ଶୁଣିଣ ବାସବ ହସ ହସ ଯେ ହୋଇଲେ ।
ନାରାୟଣଙ୍କ ବଚନେ ତୋଳି ବୃକ୍ଷଫଳ
ପାଷାଣେ ମର୍ଦ୍ଦି ତାହାକୁ ଧରି ଆଖଣ୍ଡଳ ।
ଶ୍ରୀହରିଙ୍କ ନାମ ଧରି ତାହା ଦେଲେ ଗିଳି
ଶୁଖିଲା ଯୋନି ଦିଶିଲା ଚିହ୍ନମାନ ଝଳି ।
ଅରୁଣ ଉଦୟ ହୋନ୍ତେ ଯେସନେ କୁମୁଦ
ସେହିପରି ମୁଦ୍ରିତ ଯେ ଇନ୍ଦ୍ର ଭଗରନ୍ଧ୍ର ।
କହୁଁ କହୁଁ ଦିଶିଲା ଯେ ଅପୂର୍ବ ସୁନ୍ଦର
ଅତି ଆନନ୍ଦ ହୋଇଣ ହସେ ପୁରନ୍ଦର ।
ନବୀନ ଯୁବା ପରାୟେ ଦିଶିଲେକ ଯହୁଁ
ବାସବ ନାମକୁ ଇନ୍ଦ୍ର ବହିଲେକ ତହୁଁ ।
ସୁବର୍ଣ୍ଣ ତେଜ ପରାୟେ ଦିଶେ ରୂପ କାନ୍ତି
ଆନନ୍ଦ ହୋଇ ବିଷ୍ଣୁଙ୍କୁ କଲେ ଇନ୍ଦ୍ର ସ୍ତୁତି ।
ବୋଇଲେ ନମସ୍ତେ ପ୍ରଭୁ ଶଙ୍ଖ ଚକ୍ରପାଣି
ନମସ୍ତେ ହେ ନାରାୟଣ ନମୋ ଦିନମଣି ।
ନମସ୍ତେ ହେ ଜଗନ୍ନାଥ ଜଗଜ୍ଜନ ନାହା
ଦନୁଜ ଦଳନେ ପ୍ରଭୁ ଶଙ୍ଖଚକ୍ରବାହା ।
ନମସ୍ତେ ହେ ବିଷ୍ଣୁରୂପୀ ପରଂବ୍ରହ୍ମମୟ
ତୁମ୍ଭର ପ୍ରସନ୍ନେ ଗଲା ମୋର ଦୁଃଖକ୍ଷୟ ।
ହେ ପରମ ନିରଞ୍ଜନ ପ୍ରାଣୀଙ୍କର ପ୍ରାଣ
ଅରୂପକୁ ରୂପ କରିପାରୁ ତତକ୍ଷଣ ।
ପୃଥ୍ୱୀର କାରଣେ ପ୍ରକାଶଇ ତୁମ୍ଭ ଦେହୀ
ଅନେକ ପ୍ରକାରେ ରୂପ ଅଛ ତୁମ୍ଭେ ବହି ।
ତାହା କେ ଅନ୍ତକରି ନ ପାରେ କହି ମୁଖେ
ଦେବଙ୍କର ହିତେ ତୁମ୍ଭ ଜନ୍ମ ମର୍ତ୍ତ୍ୟଲୋକେ ।
ତ୍ରିଦଶ ଉଦ୍ଧାରଣେ ତୋ ନାମ ତ୍ରିବିକ୍ରମ
ନମୋ ନମୋ ପଙ୍କଜାକ୍ଷ ନମୋ କୃଷ୍ଣ ଶ୍ୟାମ ।
ସକଳ ଲୋକଙ୍କ ହୃଦେ ତୁମ୍ଭ ନିଜ ବାସ
ବ୍ରହ୍ମାଦି ଦେବ ସମସ୍ତେ ତୁମ୍ଭ ନିଜ ଦାସ ।
ପରମ ମଙ୍ଗଳ ଅଟେ ତୁମ୍ଭ ପାଦ ବେନି
ଚିନ୍ତନ୍ତି ଯେ ଯୋଗୀଜନେ ହୃଦମଧ୍ୟେ ଘେନି ।
ସେ ପାଦର ଦରଶନେ ଆସି ଅଛି ମୁହିଁ
ଅଲଭ୍ୟେ ଆପଣଙ୍କୁ ଏ ବନ ମଧ୍ୟେ ପାଇ ।

ସହସ୍ର ଯୋନିକି ପ୍ରଭୁ ନାଶିଲଟି ହେଳେ
ଏଣୁ ସହସ୍ରେକ ନାମ ବହି ବକ୍ଷ ସ୍ଥଳେ ।
ତୁମ୍ଭର ସହସ୍ରେ ନାମ ପୁରାଣରେ ଥାନ୍ତୁ
ବ୍ରାହ୍ମଣେ ଯେ ସ୍ନାନସାରି ସର୍ବଦା ପଢ଼ନ୍ତୁ ।
ଏମନ୍ତ ବୋଲି ବାସବ ନମିଲାକ ଯାଇଁ
ଲେଉଟି ପୁଣି ଛାମୁରେ କଥାଏ ଜଣାଇ ।
ବାସବେ ବୋଇଲେ ପ୍ରଭୁ ଶୁଣ ଜଗନ୍ନାଥ
ସ୍ୱର୍ଗ ବୋଲିବାକୁ ମାତ୍ର ରଚିଲେକ ବ୍ୟର୍ଥ ।
ମଞ୍ଚକୁ ଆସି ମୁଁ ଯାହା ଦେଖିଲି ଅପୂର୍ବ
ଧନ୍ୟ ଏହି ମାନବଙ୍କ ଜୀବନ ତ ଶୁଭ ।
ଦିନେ ଜୀଇଥିଲେ ଏଥି ସାଫଲ୍ୟ ସେ ଅଟେ
ଅଚିନ୍ତାରେ ଭୋଗ ଭୁଞ୍ଜୁଛନ୍ତି ସର୍ବ ଘଟେ ।
ଆବର ଅଛି ଅପୂର୍ବ ଲୀଳା ପୁଣି ପୂରି
ତାହା କହିବା ଯେ ଏକେ ଏକେ ନାମ ଧରି ।
ପ୍ରଥମେ ଜାଗ୍ରତ ଅଛି ଦ୍ୱିତୀୟେ ସୁଷୁପ୍ତି
ତୃତୀୟେ ପ୍ରସନ୍ନେ ବଞ୍ଚନ୍ତି ଯେ ନିତି ପ୍ରତି ।
ଚତୁର୍ଥେ ଜାଗ୍ରତ ହୋଇ ବଞ୍ଚନ୍ତି ସନ୍ମାର୍ଗେ
ଦେବା ଦୟା କ୍ଷୁଧା ତୃଷା କାର୍ଯ୍ୟକାମ ମାର୍ଗେ ।
ଆବର ବିଷ୍ଣୁର ନାମ କୀର୍ତ୍ତନ କରନ୍ତି
ଜପ ଯାଗକରି ସର୍ବ ତୀର୍ଥରେ ଭ୍ରମନ୍ତି ।
ପିନ୍ଧନ୍ତି ସେ ନାନା ଅଳଙ୍କାର ନାନା ବାସ
କର୍ପୂର ଗନ୍ଧ ଘେନନ୍ତି ମଣ୍ଡିହୋଇ ପୁଷ୍ପ ।
ସ୍ୱପତ୍ନୀକାମେ ରସନ୍ତି ଶୁଣି ଆନ କଥା
ସୁଖେ ନିଦ୍ରା ଯାନ୍ତି ଦକ୍ଷିଣକୁ କରି ମଥା ।
ନିଦ୍ରାଭୋଗ ସକାଶରୁ ନ ଜାଣନ୍ତି କିଛି
ନିର୍ଗୁଣ ଦେହ ପରାୟେ ରହି ସର୍ବ ମୂର୍ଚ୍ଛି ।
ଆଦ୍ୟେ ସୁବାସ ଆଘ୍ରାଣ କରନ୍ତି ସେ ନାସେ
ସମ୍ପୂର୍ଣ୍ଣ ଆନନ୍ଦେ ମଜ୍ଜି ରହନ୍ତି ଉଦାସେ ।
ସଂସାରେ ଯେ ତର୍କ ଭାବ କିଛି ନ ଜାଣନ୍ତି
ଆନନ୍ଦରେ ନିଦ୍ରା ଯାଇ ସର୍ବ ପାସୋରନ୍ତି ।
ଧନ ଦ୍ରବ୍ୟ ଋଣ ବାଢ଼ି ଦେଇଥାନ୍ତି ଯେତେ
ଗୃହେ ତାହା ସଞ୍ଚି ରଖିଥାନ୍ତି ଯେଝାମତେ ।
କ୍ରୟ ବିକ୍ରୟ ଆଦି ଯେ ହାନି ଲାଭଠାରୁ
ସବୁ ପାସୋରନ୍ତି ଦେଖ ଆନନ୍ଦ ମନରୁ ।
ଆଦ୍ୟେ ଆପଣାର ଭାରିଯାକୁ ପାଶେ ଆଣି
ଶଯ୍ୟାରେ ବାମ ଦକ୍ଷିଣେ ଅବା ଶୋଏ ଘେନି
ତହିଁ ପାସୋରେ ଆପଣା ଦେହ କଷ୍ଟ ଆଦି
ଏମନ୍ତ ଦେଖୁ ସମ୍ପତ୍ତି କାଳେ ହୋଏ ବୃଦ୍ଧି ।
ଧନ୍ୟ ଧନ୍ୟ ପୁଣ୍ୟାତ୍ମା ଏ ମର୍ତ୍ତ୍ୟରେ ମନୁଷ୍ୟ
ପିଣ୍ଡେ ପ୍ରାଣ ଥାଉଁ ସର୍ବେ ଏମନ୍ତ ଉଦାସ ।

ସ୍ୱପନ କାଳରେ ପ୍ରାଣୀ ଭୁଞ୍ଜେ ଯାହା ଦେହେ
ବୁଲଇ ଅଗମ୍ୟ ସ୍ଥାନଯାକ ମାୟା ମୋହେ ।
ସମ୍ପତ୍ତିକି ଦେଖଇ ସେ ବିପତ୍ତି ଦେଖଇ
କାହିଁ ବିଭା ହୋଇ ନାହିଁ ବନ୍ଧାପନା ହୋଇ ।
ନ ଦେଖିବା ସ୍ଥାନରେ ସେ ମିଳେ ଯାଇ ଆଗ
ଯୁବତୀଗଣଙ୍କୁ କାହିଁ କରଇ ଯେ ଭୋଗ ।
କାହିଁ ହାସୋଲ୍ଲାସ କରେ କାହିଁ ରତିଶାଳା
ଏ ବିଧି କହିବି କେତେ ସ୍ୱପନର ମେଳା ।
ଏରୂପେ ଜାଗ୍ରତ ଯେତେ ସମ୍ପତ୍ତି ସ୍ୱପନେ
ଭୁଞ୍ଜନ୍ତି ସେ ଭୋଗଯାକ ସୁଖେ ମଞ୍ଚଜନେ ।
ଆଉ ବିଷ୍ଣୁଲୀଳା ଯେହୁ ପଢ଼ନ୍ତି ଶୁଣନ୍ତି
ଅନ୍ତକେ ସଂସାରୁ ଗତି ମୁକ୍ତି ଲଭିଯାନ୍ତି ।
ଦେବା ଦୟା ପ୍ରସଙ୍ଗେ ଯେ ଥାନ୍ତି ଅନୁସରି
କରନ୍ତି ଉତ୍ତମ ଭୋଗମାନ ନରନାରୀ ।
ଉତ୍ତମ ବସ୍ତ୍ର ଉତ୍ତମ ଅଳଙ୍କାର କାୟେ
ଉତ୍ତମ ନାରୀଙ୍କ ସଙ୍ଗେ ସଙ୍ଗୀ ଯେଝାଠାଏ ।
ଉତ୍ତମ ଖଟ ଶେଯ ଯେ ଉତ୍ତମ ପଲ୍ୟଙ୍କେ
ଉତ୍ତମ ବିଚାର କରୁଥାନ୍ତି ସଭାଲୋକେ ।
ଏଡ଼େକ ଉତ୍ତମ ସୁଖ ଆଉ ଅଛି କିସ
ଆନନ୍ଦବନେ ସବୁରି ଅଛି ଜୀବନ୍ୟାସ ।
ଏହି ବନରୁ ଚିନାଏ ଖାଇଲେ ମୌଷଧି
ମୃତ୍ୟୁ ନ ପଶିବ ତାଙ୍କୁ ନ ଘୋଟିବ ବ୍ୟାଧି ।
ବୃଦ୍ଧ ହୋଇ ଭୁଞ୍ଜିଲେ ସେ ହେବ ନବଯୁବା
ଏରୂପେ ମଞ୍ଚରେ ଆଉ କି ଗୁଣ କହିବା ।
ଏମନ୍ତ ପୁରେ ସ୍ୱାମୀ ନ କଲେ ମୋତେ ଜାତ
ସ୍ୱର୍ଗରେ କିସ ଦେଇଟି କଲ ପୁରୁହୂତ ।
କହିବାକୁ ମାତ୍ର ଅଛି ସ୍ୱର୍ଗ ବୋଲିବାକୁ
ମଞ୍ଚର ସୁଖ ହେଲେ ନ ମିଳେ ଦେବତାଙ୍କୁ ।
ମେରୁ ଖଣ୍ଡେ ରହିଅଛୁଁ ମାତ୍ର ସିନା ଆମ୍ଭେ
ଦଶଦିଗପାଳେ ଯେ ତେତିଶକୋଟି ଦେବେ ।
ଏଡ଼େ ଶୂନ୍ୟପଦରେ ହେ ପ୍ରଭୁ କଲ ସ୍ୱର୍ଗ
ତହିଁକି ବୋଲି ହେ ରାଜା କଲ ମୋତେ ଆଗ ।
ରାଜାହିଁ ଯଦ୍ୟପି କଲ ଆଚ୍ଛା ହେଲା ତେବେ
ରାଜାଙ୍କୁ ଯେ ରାଜଛବି ଥିଲେ ସିନା ଶୋଭେ ।
ରାଜଛବି ନ ଥିଲେ ତ ରାଜାର କି ସିଦ୍ଧି
ରାଜାଙ୍କୁ ନୁହଇ ଶୋଭା ନ ଥିଲେ ପାରିଧି ।
କି ପାରିଧି କରିବା ତ ସବୁ ଶୂନ୍ୟଭୂଇଁ
ମୁହିଁ ବୋଲିବାକୁ ମାତ୍ର ଅଛି ତହିଁ ରହି ।
ସ୍ୱର୍ଗ ବୋଇଲେକ ଯହିଁ ନ ଥାଇ ସମ୍ପଦ
ତହିଁ ଦେଖ ପ୍ରଥମେ ନ ମିଳେ ଅଉଷଧ ।

କି ମିଳିବ ଔଷଧ ନ ଥିଲେ ଦାନ୍ତକାଠି
କେବଳ ପାପୀଙ୍କି ମୋକ୍ଷ ହେଲା ସ୍ୱର୍ଗଗୋଟି ।
ଏତିକି ମାତ୍ରକ ପୁଣ୍ୟ ବୋଲିବାକୁ ସ୍ୱର୍ଗ
ପାପୀ ମଲେ ଏଥି ଆସି ହୋଏ ମୋକ୍ଷଅଙ୍ଗ ।
ଦୁଇଠାବରେ ରଖିଲ ସ୍ୱାମୀ ପ୍ରାଣପୂଜା
ମୋତେ କି ଦେଲେ ହେ ସୁଖ ସ୍ୱର୍ଗେ କରି ରାଜା
ରାଜାଙ୍କୁ ଆଠକଥା ନ ଥିଲେ ଅସୁନ୍ଦର
ପ୍ରଥମେ ବଳ ନ ଥିଲେ ରାଜ୍ୟ ଯାଇ କ୍ରୁର ।
ପୁଷ୍ପତୋଟା ନ ଥିଲେ ତ ନୁହେ ଗଭା ଗୁଛି
ବୃକ୍ଷ ରୋପି ନ ଫଳିଲେ ମର୍ନ ଅଦୃପତି ।
ପଣ୍ଡିତ ଲୋକ ନ ଥିଲେ ସଭା ନୋହେ ଶୋଭା
ବୈଦ୍ୟ ନ ଥିବାରୁ ଦେଶ ମୃତ୍ୟୁରେ ଲେଖିବା ।
ଆବର ମଉଷଧି ନ ଥିବାର ଯେ ଭୂମି
ତହିଁ ଲୋକ ନ ଥିବାର ନ ଯୋଗାଏ ସ୍ୱାମୀ ।
ଯେବଣ ଦେଶର ରାଜା ନ ପାଳନ୍ତି ପ୍ରଜା
ସେ ଦେଶ ଶିରୀ ଜାଣ ନ ରହେ ଦେବ ରାଜା ।
ତୋଟା ପେଣ୍ଢ ପାଟଣା ନ ଥାଇ ଯେଉଁ ଭୂଇଁ
କୁଜନ ଲୋକ ରହନ୍ତି ତହିଁ ସିନା ଯାଇ ।
ହସିଲେ ଇନ୍ଦ୍ରର କଥା ଶୁଣି ଜଗନ୍ନାଥ
ବୋଇଲେ ତୋଟା ତୋର କି ନାହିଁ ପୁରୁହୂତ ।
ନ ଥିଲେ ଏହି ତୋଟାକୁ ସଙ୍ଗେ ଘେନିଯାଅ
ନନ୍ଦନବନ ବୋଲିଣ ସ୍ୱର୍ଗେ ନାମ ଦିଅ ।
ଇନ୍ଦ୍ର ବୋଇଲେ ଶୁଣିମା ତେବେ ଦେବରାଜ
ମୁହିଁ ସହସ୍ରେ କହିଲେ ହେବ କେଉଁ କାର୍ଯ୍ୟ ।
ମନୋଦତ୍ତ ଦାନ ସିନା ସୁଖଦତ୍ତ ଗୃହ
ରାଜଦତ୍ତ ପୃଥ୍ୱୀ ପୁଣି ପିତୃଦତ୍ତ ଝିଅ ।
ନାମଦତ୍ତ ଭକ୍ତି କହି ପୁଣ୍ୟଦତ୍ତ ମୋକ୍ଷ
ଜ୍ଞାନଦତ୍ତ ଗତି ସିନା ସେବାଦତ୍ତ ରକ୍ଷ ।
ବିଦ୍ୟାଦତ୍ତ ଗୁଣ ସିନା ପିଣ୍ଡଦତ୍ତ ଆୟୁ
ଦେହଦତ୍ତ ଆରୋଗ୍ୟ ଯେ ନାସା ଦତ୍ତ ବାୟୁ ।
ତୁମ୍ଭର ଦତ୍ତ ନୋହିଲେ ପାରିବି କି ନେଇ
ଶୁଣି ହସି କହୁଛନ୍ତି ପ୍ରଭୁ ଲକ୍ଷ୍ମୀସାଇଁ ।
ଇନ୍ଦ୍ରଙ୍କୁ ବୋଇଲେ ତେବେ ଥାଉକିନା କେତେ
ମୁର ଯେ ଆସିବ ସୈନ୍ୟ ଘେନି ଯୁଝି ମୋତେ
ଆମ୍ଭେ ସେହି ସମୟକୁ ବନେ ଥିବୁ ବସି
ଏ ବନକୁ ମୁରାସୁର ଉପାଡ଼ିବ ଆସି ।
ଆମ୍ଭଙ୍କୁ ସେ ଅପଘାତ ଚିନ୍ତି ହୃଦଗତେ
ଦନ୍ତ ଅଗ୍ରେ ଟାଳି ଫିଙ୍ଗିଦେବ ଶୂନ୍ୟପଥେ ।
ତେତିକି ବେଳରେ ବନ ଦେବୁ ଆମ୍ଭେ ନେଇ
ସେ ବନରେ ବିଳସିବୁ ସେହିଠାରୁ ତୁହି ।
ଶୁଣିଣ ସେ ପୁରୁହୂତ ଯୋଡ଼ି ବେନିକର
ଆଜ୍ଞା ପାଇଣ ସ୍ୱର୍ଗକୁ ଗଲେ ପୁରନ୍ଦର ।
ଅମରପୁରେ ବାସବ ଯାଇଁ ପରବେଶ
ଶ୍ରୀହରି ଶରଣ ବିପ୍ର ପୀତାମ୍ବର ଦାଶ ।
ଶୁଣ ସୁଜ୍ଞଜନ ମାନେ ନୃସିଂହ ପୁରାଣ
ଏହାକୁ ଶୁଣି ରୌରବ ନରକକୁ ଜିଣ ।
ନୃସିଂହ ପୁରାଣ ଏହୁ ଗୀତ ପୁଣ୍ୟଗ୍ରନ୍ଥ
ପଦ ପଦକରେ ସୁଧା ପୂରିଅଛି ଏଥ ।
ଅପ୍ରକଟ ଅବତାର ଯେବଣ ନୃସିଂହ
ସେ ଆସିଣ ନରଦେହେ ହେଲେ ନରସିଂହ ।
ମାନବ ଜନମ ହେଲେ ଯେହୁ ନାରାୟଣ
କଲେ ନୃସିଂହ ପୁରାଣ ସନ୍ଦେହ ନ ମଣ ।
ତାହା ପଦ୍ୟ କରିବାକୁ ବଳିଲା ମୋ ବୁଦ୍ଧି
ପ୍ରାକୃତ ଭାଷା ପ୍ରବନ୍ଧେ ବାକ୍ୟ ଦିଏ ଛନ୍ଦି ।
ଜନ୍ମରୁ ମୂର୍ଖ ମୁହିଁ ନ ଜାଣେ ପୁଣ ଏହା
ବ୍ରହ୍ମା ନନ୍ଦିନୀ ଶାରଳା ହେଲେ ମୋତେ ସାହା
ପ୍ରତ୍ୟକ୍ଷେ ମୋହର କଣ୍ଠେ ବସି ମହାମାଇ
କହୁଛନ୍ତି ପଦ ମୋତେ ମୂର୍ତ୍ତିମତୀ ହୋଇ ।
ତାହାଙ୍କ ଆଜ୍ଞା ଘେନିଣ ଲେଖୁଛି ମୁଁ ପତ୍ର
ପଚିଶି ପଞ୍ଚାଶ ପଦ ଠିକେ ଠିକେ ମାତ୍ର ।
ଅଲୋକ୍ୟ ମହାଗ୍ରନ୍ଥ ଏ ନୃସିଂହ ପୁରାଣ
ଶୁଣନ୍ତେ ମହାପାତକ ହୁଅଇ ଖଣ୍ଡନ ।
ସବୁ ଗ୍ରନ୍ଥଠାରୁ ସାର ଏ ଅଟେ ମୁଖ୍ୟାର୍ଥ
ବ୍ରହ୍ମା ବିଞ୍ଚ ପଣେ କହିବାକୁ ସାମରଥ ।
ଗଙ୍ଗା ଗୟା ଗୋଦାବରୀ ନର୍ମଦା କାବେରୀ
ରେଣୁକା ଯମୁନା ପୁଣ୍ୟତୋୟା ଆଶାବରୀ ।
ଗୋମତୀ ସୁମତୀ ଚନ୍ଦ୍ରଭାଗା ସରସ୍ୱତୀ
ଗଣ୍ଡକୀ ସରଯୂ କୃଷ୍ଣ ।ବେଣୀ ଭାନୁମତୀ ।
ବୈତରଣୀ ତୁଙ୍ଗଭଦ୍ରା ବିମଳା ଗୌତମୀ
କୌଶିକୀ ସୁକାନ୍ତି ମଣିକର୍ଣ୍ଣିକା ଯେ ବ୍ରାହ୍ମୀ ।
ଏହିରୂପେ କୋଟି ତୀର୍ଥ କରିବ ମନକୁ
କେହି ସମାନ ନୁହନ୍ତି ଏହି ପୁରାଣକୁ ।
ଭାଗବତ ହରିବଂଶ ଗ୍ରନ୍ଥ ରାମାୟଣ
ଭାରତ ଆଗୁଁ ହେଲା ଏ ନୃସିଂହ ପୁରାଣ ।
କଳିକାଳର ପାତକ ଖଣ୍ଡିବା ନିମନ୍ତେ
ଅପ୍ରକଟ ଅବତାର ଲେଖିବଇଁ ଗୀତେ ।
ମୁକତି ପସରା ନରସିଂହ ଅବତାର
ଯେ ଯାହା ମନରେ କହି ଶୁଣି ହେବ ପାର ।
ଏକ ମନେ ବସି ଶୁଣୁଥିବେ ସାଧୁ ପ୍ରାଣୀ
ପାପୀଲୋକ ଏ ନୃସିଂହ ପୁରାଣ ନ ଶୁଣି ।

ବେଦଶାସ୍ତ୍ର ପୁରାଣ ଯେ ନାହିଁ ମୋର ପଢ଼ା
କେବଳ ହରିନାମକୁ କରିଛି ଦୋଷଢ଼ା ।
ତେଣୁ ମୋର ପୂର୍ବ ହେତୁ ହୋଇଲା ପୁରାଣ
ପ୍ରତ୍ୟକ୍ଷେ ପୁଣି ଯେ ଆଜ୍ଞା ଦେଲେ ନାରାୟଣ
ବୋଇଲେ ଆମ୍ଭର ନରସିଂହ ଅବତାର
ଅପ୍ରକଟ ଲୀଳା ଏହି ଅଟେ ଗୁପ୍ତ ସାର ।
ସଂସାରେ ତାହା ପୁରାଣ କରି ଯାଅ ରଖି
ଏମନ୍ତ ଆଜ୍ଞା ଦ୍ୟନ୍ତେ ମୁଁ ତାହା ଗଲି ଲେଖି ।
ମୁହିଁ ମାନବ ପାମର ମୋର ମୂର୍ଖ ବୁଦ୍ଧି
ଆଜ୍ଞା ନୋହିଲେ ପୁରାଣ ପାରନ୍ତି କି ବାନ୍ଧି ।
ଏଣୁ କରି ସାଧୁଙ୍କର ଚରଣେ ମୁଁ ସେବେ
ବିପ୍ର ପୀତାମ୍ବରକୁ ଯେ ପ୍ରଭୁ ଉଦ୍ଧାରିବେ ।



## ନନ୍ଦନବନ ବର୍ଣ୍ଣନା

ଶୁଣ ବାବୁ ହେ ନାରଦ କହେ ଅବ୍‌ଜଯୋନି
ଶୁଣି ଇନ୍ଦ୍ର ଗଲା ବିଷ୍ଣୁଙ୍କର ବୋଲ ଘେନି ।
ଏମନ୍ତ ହୋଇଲା ଜାଣ ସେ ନନ୍ଦନବନ
ଇନ୍ଦ୍ର ମାଗିଲାରୁ ଦେଇଗଲେ ଭଗବାନ ।
ସେହିଘେନି ମୁରଦୈତ୍ୟ ଫିଙ୍ଗି ଦେଲା ଧରି
ବନକୁ ଘେନି ସ୍ୱର୍ଗରେ ପଡ଼ିଲେକ ହରି ।
ସ୍ୱର୍ଗର ପଶ୍ଚିମ ଦିଗ ବାୟବ୍ୟ କୋଣକୁ
ବେନି ଯୁଣ ଛଡ଼ା ହୋଇ ପଡ଼ିଲେ ସ୍ୱର୍ଗକୁ ।
ସୁଧର୍ମା ସଭାରେ ଥିଲେ ଯେତେ ଦେବେ ବସି
ଏସନ ସମୟେ ଗନ୍ଧ ଆମୋଦିଲା ଆସି ।
ସମୀର ବହନ୍ତେ ଧୀରେ ବାସିଲା ପରାଗ
ଏଣେ ତ ଅଛଡ଼ା ବନମଧ୍ୟେ ଶିରୀରଙ୍ଗ ।
ସ୍ୱର୍ଗଯାକରେ ସୁବାସ ବାସନ୍ତେ ଚହଟି
ସଭାରୁ ଚାହିଁଲେ ଇନ୍ଦ୍ର ଆଦି ଦେବ ଉଠି ।
ଦେଖିଲେ ଯେ ପଶ୍ଚିମରେ ଦିଶେ ଦିବ୍ୟବନ
ସବୁ ବୃକ୍ଷଙ୍କର ଜ୍ୟୋତି ଦିଶେ ଶୋଭାବନ ।
ଦେବତାମାନେ ଯେ ଦେଖି ହୁଅନ୍ତି ଆଚମ୍ବିତ
ବୋଲନ୍ତି କେ ଏଥେ ଆଣି ରୋପିଲା ବନସ୍ତ ।
କି ଅବା ଗଗନରୁ ଏ ପଡ଼ିଲାକ ଖସି
କି ଅବା ଦଇବ ମାୟା ହୋଇଲାକ ଆସି ।
ସ୍ୱର୍ଗ ମାଡ଼ି ପଡ଼ିଥିଲେ ମରନ୍ତେଇ ପରା
କେହୁ ସହି ପାରନ୍ତା ଏ ବୃକ୍ଷଙ୍କର ଭାରା ।
ଏକ ଦୁଇ ନୁହେଁ ତରୁ ଅଛି କୋଟି କୋଟି
ଚାରି ସହସ୍ର ଯୋଜନ ନ ଦିଶଇ ମାଟି ।
ସ୍ୱର୍ଗ ମାଡ଼ି ପଡ଼ିଥିଲେ ମରନ୍ତେଇ ସର୍ବେ
ଦେବତାଙ୍କୁ ରକ୍ଷା କଲେ ଭଲା ବାସୁଦେବେ ।

ଏମନ୍ତ ବୋଲିଣ ଦେବେ ହୁଅନ୍ତି କୁହାକୁହି
ଇନ୍ଦ୍ର ବୋଇଲେ ଆହେ ନ ଭାଳ ତୁମ୍ଭେ କେହି ।
ଗୋବିନ୍ଦ ଯେ ଅନୁଗ୍ରହ କରିଛନ୍ତି ମୋତେ
କାହିଁକି ସ୍ୱର୍ଗ ମାଡ଼ିଣ ପଡ଼ନ୍ତା ବନସ୍ତେ ।
ବାସୁକି ଧରିଛି ଯାର ବାକ୍ୟେ ନବସୃଷ୍ଟି
ବିଧାତା ଜନ୍ମିଲେ ଯାର ବାକ୍ୟେ କୋଟିକୋଟି
ବାସବ ପାଳିବ ଯାର ବାକ୍ୟେ ଲକ୍ଷ ଲକ୍ଷ
ସେ ସ୍ୱର୍ଗରେ ରୋପିବାକୁ କେତେ ମାତ୍ର ବୃକ୍ଷ ।
ଆମ୍ଭେ ଏବେ ଯାହାଙ୍କର ବୋଲେ ଥାଇ ସ୍ୱର୍ଗେ
ମିଳିଲା ସେ ପ୍ରଭୁ କରୁଣାରୁ ତୋଟା ଭାଗ୍ୟେ ।
ଏ ବିଷୟକୁ କେହିଁ ନ ଭାଳ ତୁମ୍ଭେ ମନେ
ପାରିଲେକ ବୁଲି ଆସ ଯିବା ସେ ବିପିନେ ।
ଅପୂର୍ବ ଦ୍ରବ୍ୟ ଦେଖିବା ଚାଲ ଯାଇକରି
ଖାଇବା ସୁପକ୍ୱ ଫଳ ଥିଲେ ଗର୍ଭଭରି ।
ଆମ୍ଭର କରିଣ ତୋଟା ରଖିବା ଅଟକି
ଜଗାଇବା ତୋଟାଳିୟା ଜଗିବେ ତହିଁକି ।
ଇନ୍ଦ୍ରର ଏ ତୋଟା ବୋଲି ଜାଣିବେ ଅମରେ
କେହି ପଶିବାକୁ କ୍ଷମ ନୋହିବେ ତହିଁରେ ।
ଶୁଣ ଆହେ ନାରଦ ଯେ ଏସନକ ବାଣୀ
ଇନ୍ଦ୍ର କହନ୍ତେ ସଭାରୁ ଉଠି ଜଣେ ପୁଣି ।
ଶଚୀର ଯେ ସାନଭାଇ ନାମ ଦେବଲୀଳା
ବାସବ ପୁତ୍ରଙ୍କର ସେ ଅଟଇ ମଉଳା ।
ଇନ୍ଦ୍ର ଦେବତାଙ୍କୁ ସିନା ଲାଗଇ ଶାଳକ
ଭିଣୋଇଙ୍କି ପରିହାସ କଲା ସେ ଅନେକ ।
ବୋଇଲା ଦେବାକୁ ଲୋଡୁଅଛ ଆହେ ଇନ୍ଦ୍ର
ସେ ବନକୁ ଗଲେ ତୁମ୍ଭେ କରିବ ଯେ ଦ୍ୱନ୍ଦ୍ୱ ।
ତୋଟାଯାକ ଅଟକାଇ ଖାଇବ ସେ ଫଳ
ଆମ୍ଭଙ୍କୁ ଯେ ଲୋଡୁଅଛ ଦେବ ଆଖଣ୍ଡଳ ।
କେବଳ ଯାଇ ଦେଖଣାହାରୀ ତହିଁ ହେବୁ
ଏତିକି ମାତ୍ରକ ଅଛି ଫଳଶ୍ରୁତି ସବୁ ।
ତଥାପି ଆମ୍ଭେଟି ଚାଲିଯିବୁ ତୁମ୍ଭ ପଛେ
ଆମ୍ଭର ଶ୍ରମକୁ ବୁଝି ଦେବ କିସ ପଛେ ।
ନ ଭୁଞ୍ଜିଲେ ପୂରିଛି କି କାର ପେଟ ପାଟି
ଶୁଣିକରି ଦେବତାଏ ହସିଲେ ଚହଟି ।
ବୁକୁ ଛିଆଁଡ଼ି ବୋଇଲେ ହସିକରି ତାଳ
ତାହା ଦେଖି ମନେ ଲଜ୍ଜା ପାଇ ଆଖଣ୍ଡଳ ।
ବାସବ ବୋଇଲେ ଆହେ ଶୁଣ ଦେବଲୀଳା
ଭିଣୋଇର ଭଲଦ୍ରବ୍ୟ ଭୁଞ୍ଜେ ହେଲେ ଶଳା ।
ଏଣୁ ଶାଳକ ସଂସାରଯାକେ ଅଟେ ସାର
ମଳେଣ ଗୋତ୍ର ପ୍ରବରୁ ହୁଅନ୍ତି ବାହାର ।

ଆବର ଭାବ କହିବା କିଛି ଥାଅ ଶୁଣି
ତୁ ଦୁଷ୍ଟ ପୋଡା ବୋଲି ନ ଥିଲି ମୁହିଁ ଜାଣି ।
ଗତଦିନେ ପତ୍ନୀ ତୋର କହିଲା ଯେ ମୋତେ
ବୋଇଲା ଶଳାର ଗୁଣ ଶୁଣ ପୁରୁହୂତେ ।
ଦିନଯାକ ତଣ୍ଡୁଳ ଯେ ଆଣେ ମାଣେ ଅର୍ଜି
ରନ୍ଧନ କରିଣ ବେଳେ ଦମ୍ପନ୍ତି ସବୁ ଭୁଞ୍ଜି ।
ନ ଦେଲେକ ରୋଷଶାଳୁ ନ୍ୟନ୍ତି ଆପେ ବାଢ଼ି
ଭୁଞ୍ଜନ୍ତି କ୍ଷୁଧାର୍ତ୍ତୀ ଲୋକ ପ୍ରାୟେ ତଡ଼ବଡ଼ି ।
ଏମନ୍ତ ବୋଲି ବୋଇଲା ତୋର ଭାବିନୀଟି
ଦେବି ଗଛେ ଗଛେ ତୁମ୍ଭେ ନ କର ଯେ ଦୃଷ୍ଟି ।
ଏମନ୍ତ କରନ୍ତି କଉତୁକେ ପରିହାସ
ଶୁଣିଣ ଦେବଲୀଳା ଯେ ହେଲେ ହସ ହସ ।
ସଭାରୁ ସମସ୍ତେ ଉଠିଗଲେ ହସି ହସି
ଆଗରେ ଚାଲନ୍ତି ଇନ୍ଦ୍ର ପଛେ ଦେବେ ମିଶି ।
ସବୁଙ୍କୁ ଘେନି ମିଳିଲେ ବନେ ସହସ୍ରାକ୍ଷ
ଦେଖିଲେ ବନରେ ପୂରିଅଛି ନାନାବୃକ୍ଷ ।
ସବୁ ଗଛଙ୍କର ମୂଳେ ସୁବର୍ଣ୍ଣର ବେଦୀ
ପନିର ପାଣି ଢାଳିଣ କୃଷ୍ଣାଗୁରୁ ମର୍ଦ୍ଦି ।
ଅମୂଲ୍ୟ ଶୀତଳ ହୋଇ ବହଇ ପବନ
ରାବନ୍ତି କୋକିଳ ଶୁକ ଶାରୀ ଘନ ଘନ ।
ଡାହୁକ ପକ୍ଷୀର ଶୁଭେ ଦିବ୍ୟ ରସବାଣୀ
ରାବୁଛନ୍ତି କୁମ୍ଭାଟୁଆ ବେଳକାଳ ଜାଣି ।
ଝିଙ୍କାରିଙ୍କ ଶବଦ ଯେ ଶୁଭେ ଅଲୋକିତ
ବୁଲନ୍ତି ମୟୂରମାନେ ହୋଇ ଯୂଥ ଯୂଥ ।
କୁକ୍‌କୁଟ ଯେ ଶୁଆ ଶାରୀ କାକ ପଲ ପଲ
ଚକୁଆ ଚ଼କୋଇ ପକ୍ଷୀ ଆଉ ଶଙ୍ଖଚିଲ ।
କୁଜିହଂସ ରାଜହଂସ ବଣି ରାଜବଣି
ତିତ୍ତିରି ଯେ ଚିମୁଣିଆ ଡାକ କିଣିକିଣି ।
କପୋତ ଟିଟ୍ଟିଭ ପାରାବତ ଗେଣ୍ଡାଳିଆ
ବଗି ରାମ ବଗି ମିଶି କେଶର ପାଣ୍ଡିଆ ।
ସେ ତୋଟାରେ ଏକଗୋଟି ପୋଖରୀଯେ ଅଛି
ମହା ପବିତ୍ର ଜଳରେ ପୂରି ପ୍ରକାଶୁଛି ।
ଗଙ୍ଗାରୁ ଫୁଟିଣ ତହିଁ ବହୁଛି କି ଝର
ପ୍ରତ୍ୟକ୍ଷରେ ଖସେ ସୁଧା ହୋଇ ତିନିଧାର ।
ଚାହିଁଲେ ଯେ କ୍ଷୁଧା ତୃଷା ଯାଉଅଛି ଭାଜି
ବୁଡ଼ିକରି ଅନାଇଲେ ଦିଶେ ରୋମରାଜି ।
ସେ ପୋଖରୀ ମଧ୍ୟେ ଅଛି ମଣ୍ଡପେକ ପୁଣି
ତହିଁ ଯିବାକୁ ପଡ଼ିଛି ରୂପାର ସରଣୀ ।
ଉପରେ କାଚ କଳଶ ଲମ୍ବେ ଗୋଟି ଗୋଟି
ଷ୍ଫଟିକ ଚାଳେ ହାଟକ ରୂପ ପରିପାଟୀ ।

ପ୍ରବାଳେ ମଣ୍ଡଣି ହୋଇଅଛି ଉରାତୁଣ୍ଡ
ତୁଣ୍ଡିଆ ଶ୍ରେଣୀରେ ମରକତ ଖଣ୍ଡ ଖଣ୍ଡ ।
ନୀଳାର ଖମ୍ବ ପୋତିଣ କରିଛି ନିର୍ମାଣ
ସୁବର୍ଣ୍ଣ ପାଚେରୀ ତହିଁ ଥାପିଛି ଯେ ପୁଣ ।
ପାଟସୂତାରେ ବାନ୍ଧିଛି ବତା ଗଣ୍ଠି ଗଣ୍ଠି
ମୁକୁତା ଯେ କେରି କେରି ଲମ୍ବେ କୋଟିକୋଟି
ପାଣି ପାଟିଆ ପଟାରେ ହୀରାଲଗା ଶ୍ରେଣୀ
ପଞ୍ଚବର୍ଣ୍ଣି ଚାନ୍ଦୁଆ ଯେ ଅଛି ତହିଁ ଟାଣି ।
ଚୌପାଖେ ବେଷ୍ଟିତ ଦର୍ପଣର ବଡ଼ ଟେରା
ଧାଡ଼ି ଧାଡ଼ି ଗଜମୋତି ଲମ୍ବିଅଛି ଝରା ।
ଆବର ଯେ ମନ୍ଦିରକୁ ବୈଦୁର୍ଯ୍ୟ ପାବଚ୍ଛ
ବ୍ରହ୍ମଜାତି ହୀରାକମ ରେଖା ରୋହିମାଛ ।
ସୁବର୍ଣ୍ଣର ସଙ୍ଗେ ଗୁଛିଅଛି ନାନା ମଣି
ଘୋର ତିମିର ଭିତରେ ଚନ୍ଦ୍ର ଉଦେ ଜାଣି ।
ଏମନ୍ତ ସେ ପୋଖରୀର ଭିତରେ ମଣ୍ଡପ
ଅନେକ ଜୀବ ଅଛନ୍ତି ବହି ନାନା ରୂପ ।
ଗଙ୍ଗାଇ ଡୁବାଇ ହଂସ ତିତ୍ତିରି ଡାହୁକ
ନେଉଳ ନେପାଳି ଆଉ ବାୟସ ମୂଷିକ ।
ଆବର ବନ ମଧ୍ୟେ କେ ଜୀବ ଅନ୍ତକରି
ହରିଣ ଶମ୍ବର ଗଣ୍ଡା ଗୟଳ ଘୁଷୁରି ।
ଶାର୍ଦ୍ଦୂଳ କୁରଙ୍ଗ ସିଂହ ଶ୍ୱାନ ବାହୁଟିଆ
ଖୁରାଣ୍ଟି ଭଲ୍ଲୁକ ବଣହାତୀ ବଣଭୁଆ ।
ଭ୍ରମର ପୁଷ୍ପକ ଖୋଜି ଖୋଜି ଚୁମ୍ବିଯାନ୍ତେ
ବଳିୟା ଧାଇଁଣ ଜୀବ ଧରଇ ବନସ୍ତେ ।
ଶୁଣ ହେ ନାରଦ କହୁଅଛନ୍ତି ଆତ୍ମଭୂ
ଅପୂର୍ବ ତୋଟା ରୋପିଲେ ସ୍ୱର୍ଗେ ମହାପ୍ରଭୁ ।
ସେ ବନରେ ଅଛି ଆମ୍ବ ଜାମୁ ନିମ୍ବ ଗଛ
ପଣସ ନାରିକେଳ ଯେ ଗୁଆ ତାଳବୃକ୍ଷ ।
ଟଭା ନାରଙ୍ଗ ଲେମ୍ବୁ ଯେ ଜେଉଟ ମୁନିଙ୍ଗା
କପିତ୍ଥ ଜମ୍ବିଲ ବରକୋଳି କରମଙ୍ଗା ।
କମଳା ଅଁଳା ପିତାଫଳ ନରକୋଳି
ଉଆଉ ପାଳଧୂଆ ଯେ ସଜନା ତେନ୍ତୁଳି ।
କଦଳୀ ଖଜୁରୀ ଆଉ ଅଗସ୍ତି ମହୁଲ
କରଞ୍ଜ କ୍ଷୀରକୋଳି ଯେ ବେଲ ବଡ଼ ଗିଲ ।
ହେନ୍ତାଳ ତାଳସଜ ଯେ ଭାଲିଆଦି ଫଳେ
ବୃକ୍ଷମାନେ ଫାଟି ଫୁଟି ପଡୁଛନ୍ତି ତଳେ ।
ଔଷଧି ତରୁମାନ ଯେ କହିବା ତା କେତେ
ଲବଙ୍ଗ ମରିଚ ଜାଇଫଳ ଆଦି ଯେତେ ।
ପିପ୍‌ପଳି ବିଡ଼ଙ୍ଗ କଳାଜୀରା ଆଦି ଗଛ
ବଡ଼ଜୀରା ଯଷ୍ଟି ମଧୁ ଚିରାଇତା ବୃକ୍ଷ ।

ଫୁଲ ମଧ୍ୟେ ଚମ୍ପା ଅଛି କରୁଣା କେତକୀ
ମରୁଆ ଦୟଣା କୁନ୍ଦ କୋମଳ ଧାତୁକୀ ।
ଅଶୋକ ମନ୍ଦାର ନାଗେଶ୍ୱର ଜାଇ ଯୂଇ
କାଞ୍ଚନ ଟଗରାଟ ମଲ୍ଲି କନିଅର କଇଁ ।
ସେବତୀ ଯେ ଛୁରୀଅନା ମାଳତୀ ଉତ୍ପଳ
ଟଗର ତୁଳସୀ ନିଆଳୀ ଯେ ମାଳ ମାଳ ।
କିଂଶୁକ ପଦ୍ମ ଆବର ପାରିଜାତ ଗଛ
ସ୍ୱର୍ଗରେ ଯତ୍ନେ ରୋପିଲେ ନେଇ ଶିରୀବତ୍ସ ।
ଏରୂପେ ବନ ଦେବେ ଯେ ପୂର୍ବେ ଥିଲେ ଦେଖି
ଦେଖିଲେ ସେ ଫୁଲ ଫଳ ଲାଖି ରହେ ଆଖି ।
ଯାବତ ଫଳ ଭୁଞ୍ଜିଣ ତହୁଁ ହୋନ୍ତି ତୋଷି
ଫୁଲ ତୋଳିଣ ମଣ୍ଡଣି ହେଉଥାନ୍ତି ବସି ।
ନମସ୍ତେ ଶାରଳା ମାଗୋ ଝଙ୍କଡ଼ ବାସିନୀ
ବିପ୍ର ପୀତାମ୍ବର କରେ ତୋ ପାଦେ ଦଇନୀ ।



## ଜୀବ ପରମ ବିଚାର

ଇନ୍ଦ୍ର ବୋଇଲେ ଦେବତାମାନେ ତୁମ୍ଭେ ଶୁଣ
ଅମର ଅଉଷଧି ଏ ବନେ ଅଛି ଜାଣ ।
ତହିଁରୁ ଯେ ଦୁଇ ଏକ ଯିବା ଆସ ଚିହ୍ନି
ଏ ବନ ଔଷଧେ ଗଲା ମୋ ସହସ୍ର ଯୋନି ।
ବ୍ୟାଧି ଗଲାବେଳେ ବିଷ୍ଣୁ ଥିଲେ ମୋତେ କହି
ତହିଁରୁ ଦୁଇ ତିନି ଦେଖିବା ଚାଲ ଯାଇ ।
ଏତେ କହି ଦେବତାଙ୍କୁ ଦେବ ସହସ୍ରାକ୍ଷ
ବୋଇଲେ ଲେଉଟି ଏହି ବୃକ୍ଷ ଏବେ ଦେଖ ।
ପ୍ରଥମ ଏକ ବୃକ୍ଷର ଆନନ୍ଦ ଯେ ମୂଳ
ଗୁଣଯୋଗେ ପଲ୍ଲବଇ ହୃଦୟ କମଳ ।
ତହିଁ ଯାବତ ତରୁରୁ ଅଟେ ଜାଣ ଶିଖା
ଏ ବୃକ୍ଷରେ ଫୁଷ୍ପଫୁଟେ ଚାରିବେଦ ଟୀକା ।
ଧର୍ମ ଅର୍ଥ କାମ ମୋକ୍ଷ ଅଟଇ ସେ ଫଳ
ପୁଣ୍ୟଯାକ ଅଟେ ରସ କହେ ଆଖଣ୍ଡଳ ।
ଏ ବୃକ୍ଷ ଶିଖେ ବସିଛି ଦେବ ଚେତା ପକ୍ଷୀ
ଦିବା ରାତ୍ରରେ କୋମଳ କରି ତରୁ ରଖି ।
କରୁଣା ଜଳ ବାହିଣ ସିଞ୍ଚି ବୃକ୍ଷମୂଳେ
ପୁଷ୍ପରୂପେ ସ୍ରବି ରଜ ବର୍ଷି ବୃକ୍ଷ ଫଳେ ।
ସେହି ଫଳକୁ ଯେ କହି ଜୀବ ମହୌଷଧି
ସେହି ଔଷଧ ଚିହ୍ନିଲେ ପଣ୍ଡିତେ ସୁବୁଦ୍ଧି ।
ଏ ବୃକ୍ଷମଞ୍ଜି ଜାଣ ନ ଯାଇ ନାଶ କେବେ
ବୃକ୍ଷୁ ଅଙ୍କୁରି ପାଳଟି ମଞ୍ଜି ରହେ ଜୀବେ ।
ଏ ମଞ୍ଜି ଚିହ୍ନିଣ ଯେହୁ ବୁଣେ ଯୋଗ ଘେନି
ତାହାର ଫଳ ଅଗାଡ଼ି ନୁହଇ ମେଦିନୀ ।

ଏ ତରୁରେ ମଞ୍ଜିପୂରି ଅଛଇ ବିଶେଷ
ମଞ୍ଜି ଚିହ୍ନିଲା ଲୋକକୁ ନାହିଁ ରୋଗ କ୍ଳେଶ ।
ମଞ୍ଜି ଏକା ଏ ସଂସାରେ ଅଟେ ଜାଣ ବୀଜ
ଶୁଣ ଆହେ ଦେବେ କହୁଅଛନ୍ତି ବାସ୍ୱବ ।
ଆବର ବୃକ୍ଷେକ ମଧ୍ୟେ କହିବା ହୋ ଶୁଣ
ଅମୃତ ମଣ୍ଡା ତରୁଟି ଅଟେ ଏହି ଜାଣ ।
ସେ ବୃକ୍ଷ ମୂଳରୁ ନିତ୍ୟେ ସ୍ରବେ ସୁଧା ବାରି
ଏହି ବାରି ଶୁଖିଗଲେ ପଡ଼େ ବୃକ୍ଷ ମରି ।
ଏହି ବାରି ଏ ବୃକ୍ଷର ଅଟେ ସୁଧାପାନ
ବାରି ଝରୁଥିଲେ ତରୁ ବଢ଼େ ପ୍ରତିଦିନ ।
ଊଣା ହୋଇ ଝରିଲେ ଯେ ତରୁ ହୁଏ ରୋଗୀ
ସରସେ ଝରିଲେ ସନ୍ନିପାତ କରେ ବେଗି ।
ସମଭାବେ ଝରିଲେ ଯେ ବୃକ୍ଷ ସୁଖେ ଥାଇ
ଉଛନାଦେ ଝରିଲେ ତ ବୃକ୍ଷ ନାଶ ଯାଇ ।
ଏଣୁ ଏ ବୃକ୍ଷର ନୀର ପାରେ ଯେହୁ ଚିହ୍ନି
ସେ ଲୋକକୁ ଏ ସଂସାରେ ବୋଲି ବ୍ରହ୍ମଜ୍ଞାନୀ
ସେ ଜ୍ଞାନୀ କେତେବେଳେ ନ ପଡ଼େ କାଳମୁଖେ
ଅହୋରାତ୍ର ଭ୍ରମି ଆତ୍ମା ବଞ୍ଚେ ମହାସୁଖେ ।
ଆବର ବୃକ୍ଷ କହିବା ଶୁଣ ଦେବତାଏ
ପ୍ରତ୍ୟକ୍ଷେ ଏହି ବୃକ୍ଷଟି ତ୍ରିପୁର ବୋଲାଏ ।
ଏ ବୃକ୍ଷର ମୂଳଟି ଯେ ସଦା ଉପରକୁ
ମୂଳେ ରସ ଦେଲେ ଡାଳ ପଲ୍ଲବେ ତଳକୁ ।
ଜଳ ଅଗ୍ନି ପବନ ଏ ବୃକ୍ଷମଧ୍ୟେ ଥାନ୍ତି
ଶବ୍ଦ ସ୍ପର୍ଶରସ ଗନ୍ଧ ରୂପ ଘେନି ନିତି ।
ଏ ବୃକ୍ଷର ଦେହଗୋଟି ଅଟଇ ତ୍ରିଖଣ୍ଡି
ସପତ ବକଳ ଘେନି ଦେହେ ଅଛି ମଣ୍ଡି ।
ପଞ୍ଚ ଇନ୍ଦ୍ରିୟ ମୁଖେ ଯେ ବୃକ୍ଷର ଭୋଗାଦି
ଷଡ଼ ଋତୁରେ ବଢ଼ଇ ଘେନି ଆତ୍ମାଶୁଦ୍ଧି ।
ସ୍ୱେଦ ମେଦ ଶ୍ରେଣୀ ଘେନି ମଜ୍ଜା ଚର୍ମହାଡ଼େ
ଷଡ଼ଗୋଟି ବୃକ୍ଷରେ ସେ ଗଣ୍ଠି ଗୋଟି ପଡ଼େ ।
ଏ ବୃକ୍ଷର ଫଳଗୋଟି ଅଟେ ବେନି ହେତୁ
ଅସ୍ଥି ମଜ୍ଜାରେ ଏ ଛନ୍ଦ ଏହା ନିଜ ଧାତୁ ।
ପୁଣ୍ୟବଳ ଥିଲେ ଏହି ବୃକ୍ଷ ପଲ୍ଲବଇ
ପାପ ଉପୁଜିଲେ ଅଳପକେ ନାଶ ଯାଇ ।
ପାପ ଯେ ଧରମ ବେନି ଏ ବୃକ୍ଷର ଫଳ
ଏ ଫଳ ଚିନ୍ତଇ ଏକ ସୁବୁଦ୍ଧି ସୁଶୀଳ ।
ଆବର କହିବା ତେବେ ଶୁଣ ତରୁ ଏକ
ଏ ତରୁର ନାମଗୋଟି ଅଟେ ପିଣ୍ଡାରକ ।
ଦଶଗୋଟି କ୍ରୋଟପରେ ବଢ଼େ ତରୁ ଜାଣ
ପଚିଶ ପକ୍ଷୀ ଯେ କେଳି କରନ୍ତି ବୃକ୍ଷେଣ ।

ସେ ବୃକ୍ଷରେ ଫୁଲ ଫୁଟେ ପଞ୍ଚାଶ ପାଖୁଡ଼ା
ତହୁଁ ବାସନା ଘେନଇ ଅଣଞ୍ଚାଶ ପୁଡ଼ା ।
ସାତବାର ଦିବାରାତ୍ରି ଚନ୍ଦ୍ର ସୂର୍ଯ୍ୟ ଆସି
ପାଳିକରି ଜଗନ୍ତି ଏ ବୃକ୍ଷ ଅହର୍ନିଶି ।
ଏ ବୃକ୍ଷେ ବସନ୍ତି ହଂସ ନାମେ ବେନି ପକ୍ଷୀ
ଜଣେ ନିଦ୍ରାଗଲେ ଜଣେ ଦେଖଇ ନିରେଖି ।
ମହା ଶୁକ୍ଳବର୍ଣ୍ଣ ରୂପେ ଦିଶନ୍ତି ସେ ହଂସ
ନିରାହାରେ ରହେ ଜଣେ କରେ ଜଣେ ଗ୍ରାସ ।
ଗ୍ରାସକଲା ପକ୍ଷୀଗୋଟି ଲଭେ ମୃତ୍ୟୁ ଜାଣ
ନିରାହାରେ ଥିବା ପକ୍ଷୀ ନିଶ୍ଚେ ନାରାୟଣ ।
ଏ ବୃକ୍ଷର ଫଳ ରସ ଯେଉଁ ପକ୍ଷୀ ଭୁଞ୍ଜେ
ଏହାକୁ ଜୀବ ବୋଲିଟି ଲେଖି ହୃଦକଞ୍ଜେ ।
ନିରାହାରେ ଥିବା ପକ୍ଷୀ ପରମ ବୋଲାଇ
ଶୁଣ ଶୁଣ ଦେବତାଏ କହେ ଶଚୀସାଇଁ ।
ଏଣୁ ଜୀବ ପରମ ଯେ ଜାଣ ବେନି ପକ୍ଷୀ
ଏକ ଡେଣାରେ ଉଡ଼ନ୍ତି ବ୍ରହ୍ମାଣ୍ଡକୁ ଟେକି ।
ଆର ଡେଣାରେ ଏ ବୃକ୍ଷ ଧରିଥାନ୍ତି ଭିଡ଼ି
ଡେଣାରେ ସେ ଉଠା ବସା ହୁଅନ୍ତି ଉଡ଼ି ଉଡ଼ି ।
ବେନି ଡେଣା ଟେକିଲେ ସେ ଯାନ୍ତି ବୃକ୍ଷୁଁଖସି
ଜୀବଙ୍କୁ ଘେନି ଉଡ଼ନ୍ତି ପରମରେ ମିଶି ।
ପକ୍ଷୀ ଗଲାରୁ ସେ ବୃକ୍ଷ ପଡ଼େ ତଳେ ଭାଙ୍ଗି
ଗ୍ରାମଲୋକେ କରନ୍ତି ଯେ ତାକୁ ଅଗ୍ନି ଲାଗି ।
ଏଣୁ ଏ ବୃକ୍ଷ ମଧ୍ୟରେ ପକ୍ଷୀ ଏକା ମୂଳ
ପକ୍ଷୀ ଗଲେ ଉଡ଼ି ବୃକ୍ଷେ ଲାଗଇ ଅନଳ ।
ଏ ପକ୍ଷୀକି ମନାଇ ଯେ ବୃକ୍ଷକୁ ପାଳଇ
ସେ ବୃକ୍ଷକୁ କେତେବେଳେ ବାଧା ନ ଲାଗଇ ।
ଆବର ଦେବେ ହୋ ଶୁଣ କହିବା କଥାଏ
ଚେତା ନାମେ ତରୁ ଏଥେ ସର୍ବଦା ଯେ ଥାଏ ।
ସେ ବୃକ୍ଷର ମନ ଗୋଟି ଅଟେ ମତ୍ତହସ୍ତୀ
ବୃକ୍ଷେ ବୁଲୁଥାଇ ଘେନି ପଚିଶ ପ୍ରକୃତି ।
ଜୀବ ପରମ ଲଗାନ୍ତି ଏ ବୃକ୍ଷରେ ଗୋଳ
ଜୀବ ବୋଇଲା ଯେ ମୁହିଁ ବୃକ୍ଷେ ଏକା ମୂଳ ।
ମୁଁ ବସିଥିଲେ ଏ ବୃକ୍ଷ ଅମର ଯେ ହୋଇ
ମୁହିଁ ଚଳିଗଲେ ବୃକ୍ଷ ନ ରହିବ କାହିଁ ।
ଚାହଁନ୍ତା ବହନ୍ତା ଆଉ ରହନ୍ତା ଶୁଣନ୍ତା
ମୁଁ ବୃକ୍ଷରୁ ଗଲେ କେହୁ ନୁହନ୍ତି ରଖନ୍ତା ।
ପବନେ ପବନ ମିଶେ ଜଳେ ମିଶେ ଜଳ
ଶବଦ ଶୂନ୍ୟରେ ଯାଇ ଅନଳେ ଅନଳ ।
ଏଣୁ ଏ ବୃକ୍ଷ ମଧ୍ୟରେ ମୁହିଁ ଏକା ରାଜା
ଆଉମାନେ ସେବକ ଯେ ଅଟନ୍ତି ମୋ ପ୍ରଜା ।
ମୋତେ ଆଶ୍ରେ କରୁଥାନ୍ତି ସମସ୍ତେ ଯେ ରହି
ଜୀବ କହିବାର ଶୁଣି ପରମ ହସଇ ।
ଜୀବକୁ ବୋଇଲା ତୁହି କହିଲୁ ଯେତେଟି
ତୋର ମୋର ଆସନ ତ ଏକଇ ବଇଠି ।
ତୁହି ମୋତେ ନଦେଖୁ ମୁଁ ନ ଦେଖଇ ତୋତେ
ବିଚାରିଲୁ ବୃକ୍ଷକୁ ତ ଦୁହେଁ ସରି ନିତ୍ୟେ ।
ଯେତେକ ବିଷୟ ତୁହି କହିଲୁ ମନରୁ
ମୋର ଆଶ୍ରା ନ କଲେ କି ବୃକ୍ଷେ ବସିପାରୁ ।
ଆହୋ ଜୀବ ବୃକ୍ଷରେ ତୁ ଯେବେ ଭ୍ରମୁଥାଉ
ମୋତେ ନ ଭେଟିଣ କ୍ଷଣେ ଜୀଇଁବୁ କି ଆଉ ।
ମୁଁ ରାଜା ବୋଲି ତୁହି ଯେ କହୁଅଛି ଟେକି
ତୁ ଆସି ଭେଟିଲେ ମୁହିଁ ରାଜା ନୋହିଲି କି ।
ଏଣୁ ମୁଁ ରାଜା ତୁ ମୋର ବିଚାରିଲେ ସଖା
ଜୀବ ବୋଇଲା ତେବେ ତୁ ଆତ୍ମଜ୍ଞାନ ଦେଖା ।
ପରମ ବୋଇଲା ଆହୋ ଶୁଣ ତେବେ ଜ୍ଞାନ
ନିଜକୁ ଚିହ୍ନିଲେ ନିଜେ ହୁଏ ମହାଜନ ।
ମାତା ପିତା ସଂଯୋଗରେ ଯେଉଁ ରେତ ରହି
ଯେ ଯାହାର ଅନୁକ୍ରମେ ଆସେ ଜନ୍ମ ହୋଇ ।
ଆତ୍ମାର ପଛେ ହେଲେ ନ ଯାଇ ଛାଡ଼ି ପିଣ୍ଡ
ଆତ୍ମା ନ ଚିହ୍ନିଲା ଲୋକ ଅଟଇ ପାଷଣ୍ଡ ।
ମୂର୍ଖ ଅଧମ ଯେହୁ ନ ଜାଣେ ଚିହ୍ନି ଆତ୍ମା
ଶୁଣ ଆହେ ଦେବତାଏ କହନ୍ତି ସୁତ୍ରାତ୍ମା ।
ଆତ୍ମା ପୁଣି ଅକ୍ଷୟ ଯେ ମହାଶୂନ୍ୟ କାୟେ
ଦିଶେ ଢଳ ଢଳ ଶୁଦ୍ଧସ୍ଫଟିକ ପରାୟେ ।
ଆବର କଥାଏ ଜାଣିଥାଅ ଦେବତାଏ
ଅଣହେତୁରୁ ପ୍ରାଣୀ ଯେ ଅଳ୍ପେ ମରିଯାଏ ।
ସେ ଅଣହେତୁ କହିବା ଶୁଣ ଏବେ ତୋତେ
ଅତି ରତିଭୋଗ କଲା ପ୍ରାଣୀକୁ ଯେ ନିତ୍ୟେ ।
ରତି ଘେନି ପବନ ଯେ ଚଳେ ଉର୍ଦ୍ଧ୍ୱେ ତୋଳି
କରଇ ରସ ଉଣା ସେ ରଖାଇ ହାନ୍ଦୋଳି ।
ରସଟି ବିନ୍ଦୁ କହି ଯେ ବିନ୍ଦୁ ମହାବ୍ରହ୍ମ
ବ୍ରହ୍ମ ସକାଶୁ ଯାବନ୍ତ ଜନ୍ତୁ ହୁଅନ୍ତି ଜନ୍ମ ।
ରସ ନୀରସ ହୁଅନ୍ତେ ହଜାର ବିଶେଷ
ହାନି ଲାଭରେ ତାହାର କିଛି ନୁହେ ନାଶ ।
ହକାର ଆଧାର ଚକ୍ରୁ ଉଚ୍ଚେ ନେଇ ଟେକେ
ଉର୍ଦ୍ଧ୍ୱଚକ୍ରରୁ ବାହାରି ମିଶେ ହୋଇ ଏକେ ।
ଏକ ହେଲେ ନିଶ୍ଚଳେ ନ ପାରେ ରଖି ତନୁ
ଅନୁକ୍ଷଣେ ପବନ ଯେ ବହେ ବିନ୍ଦୁ ହୀନୁ ।
ଖର ହୋଇଣ ବହଇ ଶୁଖିଗଲେ ଧାତୁ
ତେଣୁକରି ସେ ଜ୍ଞାନର ନ ରହଇ ହେତୁ ।

ବିନ୍ଦୁ ବ୍ରହ୍ମାଣ୍ଡରେ ଏକା ପାରେ ଯେହୁ ଜିଣି
ହେଠକରି ତୋଳିବ ଯେ ଟେକିବ ଉଜାଣି ।
ତାହାଙ୍କୁ କେତେବେଳେଟି ଜାଣ ନୁହେ ମୃତ୍ୟୁ
ଅଷ୍ଟାଙ୍ଗ ଯୋଗ ଉପରେ ଅଟଇ ଏ ହେତୁ ।
ଆଉ ଯେ କେତେ ପ୍ରକାର ସାଧନାଟି କରି
ଊର୍ଣ୍ଣନାଭି ସୂତାରେ କି ବନ୍ଧନ କେଶରୀ ।
ଏମନ୍ତ ପ୍ରାଣୀଙ୍କୁ ଆତ୍ମା ଗୋଚର କି ହୋଇ
ଜୀବକୁ ନ ଚିହ୍ନି ତୁଚ୍ଛା ମରୁଥାଇ ଦହି ।
ଅଜପାଜପକୁ ଜାଣି ଚିହ୍ନଇ ଯେ ବ୍ରହ୍ମ
ମନ ପବନ ବିନ୍ଦୁକୁ କରେ ହୃଦେ ସମ ।
ଇନ୍ଦ୍ରିମୁଖେ ଧାତୁକୁ ଯେ ଉର୍ଦ୍ଧ୍ୱେ ଟେକିପାରେ
ଆତ୍ମାକୁ ଜାଗ୍ରତ କରି ରଖେ ବିନ୍ଦୁଘରେ ।
ମଞ୍ଚପାଣି ନେଇ ଯେବେ ଆକାଶକୁ ଧୋଇ
ତେବେ ସେ ପ୍ରକୃତି ତାର ଅଙ୍ଗେ ନ ବାଧଇ ।
ଦୃଷ୍ଟିରେ ପଡ଼ିଲେ ନେଇ ପାରଇ କି ଚୋର
ସେହିରୂପେ ଜୀବ ଆତ୍ମା ଜ୍ଞାନୀଙ୍କୁ ଗୋଚର ।
ଆତ୍ମା ପରଚେ ହେଲେ ନ ପାରେ ପଶି କାଳ
ତାଙ୍କୁ ବୋଲି ଏ ସଂସାରେ ସୁବୁଦ୍ଧି ସୁଶୀଳ ।
ଶୁଣ ଆହେ ଜୀବ ଏହା ପରମ କହଇ
ବୁଝିଲେ ବୃକ୍ଷ ସମାନ ଅଟୁ ଆମ୍ଭେ ଦୁଇ ।
ମୋତେ ନ ଧଇଲେ ତୁ କି ବୃକ୍ଷେ ପାରୁ ବସି
କ୍ଷଣେ ନ ଭେଟିଲେ ଜୀବ ବ୍ରହ୍ମେ ଯାଏ ମିଶି ।
ଏଣୁକରି ବୁଝିଲେ ତ ଆମ୍ଭେ ଦୁହେଁ ଏକ
ନ ଚିହ୍ନି ଭିନ୍ନ କରନ୍ତି ନ ଜାଣିବା ଲୋକ ।
ଜୀବ ବୋଇଲା ତେବେ ହୋ କହ ମୋର ଜନ୍ମ
କିରୂପେ ପ୍ରାଣୀ ହୃଦେ ମୁଁ କରଇ ବିଶ୍ରାମ ।
ଜନନୀ ଉଦରକୁ ମୁଁ ଆସେ ଯେଉଁ ମାର୍ଗେ
ଏହି କଥା ସଂକ୍ଷେପି ତୁ କହ ମୋର ଆଗେ ।
ଜୀବର ବଚନ ଶୁଣି ବୋଇଲା ପରମ
ଜନ୍ମ ମୃତ୍ୟୁଯାଏ ବୁଝ ତୋର ଜନ୍ମକର୍ମ ।
ପ୍ରଥମରେ ଶୁଣ ଧାତା ଗର୍ଭର ବିଚାର
ଯେମନ୍ତେଟି ସଞ୍ଚରଇ ଶରୀରୁଁ ଶରୀର ।
ନାରାୟଣ ସ୍ୱାମୀ ପୁଣି ଜୀବରୂପ ଧରେ
ପୁରୁଷଙ୍କଠାରେ ଆସି ବୀର୍ଯ୍ୟେ ଆଶ୍ରେ କରେ ।
ଯେ ଯାହାର ପ୍ରାରବ୍ଧରେ ଘେନି ଶରୀରକୁ
ଆଶ୍ରୟ କରଇ ଜନନୀର ଉଦରକୁ ।
ରେତରୂପେ ଖସି ମାତା ଶୋଣିତରେ ମିଶେ
କଲ୍ଲୋଳ ପ୍ରାୟେ ଜନନୀ ଜଠରେ ସେ ପଶେ ।
ପାଞ୍ଚଦିନଅନ୍ତରେ ସେ ହୁଏ ଏକଠୁଳ
ବେନିପଞ୍ଚେ ହୁଅଇ ସେ କଠିନ ବର୍ତ୍ତୁଳ ।
ତିନିପାଞ୍ଚରେ ହୁଅଇ ଶରୀର ଆକୃତି
ଷଷ୍ଠପାଞ୍ଚ ଦିନେ ମସ୍ତକରେ ଲୋମପନ୍ତି ।
ଦ୍ୱାଦଶ ପାଞ୍ଚଦିନରେ ହୁଏ କର ଜାନୁ
ଚଉବିଂଶ ପାଞ୍ଚଦିନେ ନଖାଙ୍ଗୁଳି ତନୁ ।
ତିରିଶ ପାଞ୍ଚରେ ହୁଏ ମୁଖ କର୍ଣ୍ଣ ନାସା
ଅସ୍ଥି ଲିଙ୍ଗ ଇନ୍ଦ୍ରିୟାଦି ସପ୍ତଧାତୁ ମିଶା ।
ଛତିଶ ପାଞ୍ଚରେ ଲାଳ ସ୍ୱେଦ ଜାତ ହୋଇ
ବୟାଳିଶ ପାଞ୍ଚ କ୍ଷୁଧା ତୃଷା ପ୍ରକାଶଇ ।
ଅଠଚାଳିଶ ପାଞ୍ଚରେ ଲାଗେ ଲୋଭ ମୋହ
ଚଉବନ ପାଞ୍ଚଦିନେ ସମ୍ପୂର୍ଣ୍ଣ ଏ ଦେହ ।
ଯନ୍ତିହୋଇ ପଡ଼ଇ ନ ପାଇ ଗର୍ଭେ ସ୍ଥାନ
ଆକୁଳ ହୋଇଣ ଗର୍ଭେ ବୁଲଇ ନନ୍ଦନ ।
ମୂତ୍ର ପୁରୀଷ ରକତ ଜଳ ଦୁର୍ଗନ୍ଧରେ
ପଡ଼ି ଘାଣ୍ଟି ହୁଏ ତହିଁ ରାତ୍ର ଦିବସରେ ।
କୃମି କୀଟପୋକ କାଟୁଥାନ୍ତି ଅଙ୍ଗ ଆସି
ପଡ଼ଇ ସେ ମୂର୍ଚ୍ଛାଗତେ ଗର୍ଭେ ବାଳଶିଷି ।
କରିଲେ ଜନନୀ ଗ୍ରାସ ଡରେ ପୁତ୍ର ଏଣେ
ବୋଲଇ ପଶିବ ଜଳ ଅନ୍ନ ପରା କର୍ଣ୍ଣେ ।
ଭୁଞ୍ଜିଲେ କଷାୟ ତିକ୍ତ କଟୁ ପୁଣି ମାତ
ତହିଁକି ଯେ ମହାଭୟ କରଇ ବାଳୁତ ।
ରନ୍ଧ୍ରେ ପଶିଲେ ସେ ବୋଲେ ମରିବ ନା ଗଞ୍ଜି
ଏତେ ପାଞ୍ଚି ଭୟ ମନେ ରହେ ଦୁଃଖେ ମଜ୍ଜି ।
ଚାଲୁଥିଲେ ଜନନୀ ସେ ବାଳକଟି ଭାଳେ
ବୋଲଇ ନ ପୁଣ ମାତା ପଡ଼େ ଝୁଣ୍ଟି ତଳେ ।
ତଳେ ପଡ଼ିବା ମାତ୍ରକେ ମରେ ଯେବେ ମାତା
ମୋତେ ରଖି ପାରିବେ କି ତହିଁରେ ବିଧାତା ।
ମାତା ଯେବେ ମରିବ ମୁଁ ଜୀଇଁବି କେସନେ
ଏତେକ ପାଞ୍ଚି ତରସ୍ତ ହୁଏ ବାଳ ମନେ ।
ମାତା ପୁଣ ଶୋଇଲେ ଯେ ହୋଇ ଉର୍ଦ୍ଧ୍ୱମୁଖ
ତହିଁ ପୁଣି କେତେ ଚିନ୍ତା କରଇ ବାଳକ ।
ପାଞ୍ଚଇ ତ ଜନନୀ ଯେ ଶୋଇଲା ନିଶ୍ଚେଷ୍ଟେ
ନ ପୁଣି ଗର୍ଭରେ ଆସି ପଡ଼େ କିସ ଆଷ୍ଟେ ।
ପଡ଼ିଲେ ମରିବୁ ପେଟ ଫାଟି ଦୁହେଁ ଆଜ
ଏତେ ପାଞ୍ଚି ଗର୍ଭେ ପାଦ ହଲାଏ ତନୁଜ ।
ଖୁରି ହାଣନ୍ତେ ଭୟରେ ଉଠଇ ଜନନୀ
ଚେତାପାଇ ପେଟ ଆଉଁଷଇ କର ଘେନି ।
ବୋଲଇ କିରୂପେ ମୋର ପୋଡ଼ିଲା ଉଦର
ଆଜ ମୁଁ ଭୁଞ୍ଜିଲି ଯେଣୁ ବିଷମ ଆହାର ।
ଶୁଣ ଆହେ ଜୀବଆତ୍ମା ପରମ ଯେ କହେ
ନବମ ଉତାରୁ ଦଶମାସ ଯହୁଁ ହୁଏ ।

ସେ ମାସେ ପୁଷ୍ଟ ହୁଅଇ ପୁଣି କଳେବର
ମାତା କୁକ୍ଷିକୁ ଆଉଁଷି ପଡ଼ିଥାଇ ଶିର ।
ଶରୀର ଚଳାଇ କ୍ଷଣେ ନ ପାରଇ ଠିକେ
ବନ୍ଦୀ ପଡ଼ଇ ପିଞ୍ଜରେ ପକ୍ଷୀ ଯେହ୍ନେ ଏକେ ।
ଗତ ଆଗତ ପୂର୍ବରୁ ଜନ୍ମକଥା ଯେତେ
ସବୁ ମନରେ ସୁମରି ବିଚାରଇ ଚିତ୍ତେ ।
ଶତେ ଜନମରୁ ଯେତେ କରିଥାଇ ଯାହା
ମାତା ଉଦରରେ ସବୁ ସୁମରଇ ତାହା ।
ଗର୍ଭରେ ସେ ସାତମାସ ହୁଏ ଯେଉଁଠାରୁ
ଜ୍ଞାନ ଗୋଚର କରିଣ ଜାଣେ ହୃଦୟରୁ ।
ଜଠରେ ପଡ଼ି ଆପଣା ଆତ୍ମାକୁ ଚିହ୍ନଇ
ଆତ୍ମା ଚିହ୍ନନ୍ତେ ପରମବ୍ରହ୍ମ ପ୍ରକାଶଇ ।
ବ୍ରହ୍ମ ପ୍ରକାଶ ହୁଅନ୍ତେ ହୁଅଇ ନିର୍ଭୟେ
ଗର୍ଭକଷ୍ଟ ତେଣୁ କରି ନ ଲାଗଇ କାୟେ ।
ନାରାୟଣ ସ୍ୱାମୀଙ୍କୁ ସେ ଚିନ୍ତେ ଅନୁବ୍ରତେ
ବୋଲଇ ଗର୍ଭ ଉଦ୍ଧରି ଧର ପ୍ରଭୁ ମୋତେ ।
ଏ ଗର୍ଭ ଯାତନାରେ ନ ପକା ମୋତେ ଆଉ
ଉଦରୁ ଖସିଲେ ଘୋଟିଯିବ ମାୟା କାହୁଁ ।
ଆବର ଯେ କ୍ଷୁଧା ତୃଷା ହିଂସା ଲୋଭ ମୋହ
ଭୂମିରେ ପଡ଼ିଲେ ଘୋଟିଯିବ ଆସି ଦେହ ।
ଏଠାରେ ଆହୁରି ଚିହ୍ନିଲଇଁ ଭଗବାନେ
ଶ୍ରୀପ୍ରଭୁଙ୍କର ସ୍ୱରୂପ ଦେଖିଲି ନୟନେ ।
ଏତେ ବୋଲିଣ ଅନେକ ସ୍ତୁତି ଜୀବ କରେ
ଉତ୍ପତ୍ତି ଦ୍ୱାର ଲୋଡ଼ିଣ ଭ୍ରମଇ ଗର୍ଭରେ ।
ଶୁଣ ଆହେ ଜୀବ କହେ ପରମ ପୁରୁଷ
ଏମନ୍ତେ ଯେ ଭଜୁ ଭଜୁ ପୁରେ ଦଶମାସ ।
ପ୍ରସବର ସମୟ ସେ ହୁଏ ଯେତେବେଳେ
ଅଧୋମୁଖେ ଖସିଣ ସେ ପଡ଼େ ନାଭିତଳେ ।
ପବନ ସୂତ୍ରରେ ଶୂଳ ଆସେ ଘନ ଘନ
ତେତେବେଳେ ଯେଉଁ ଦୁଃଖ କହିବି କି ପୁଣ ।
ଅତ୍ୟନ୍ତ ସଂକୀର୍ଣ୍ଣ ଯେଣୁ ଅଟେ ଯୋନିଦ୍ୱାର
ଅତି କଷ୍ଟେ ତହୁଁ ପୁଣ ହୁଅଇ ବାହାର ।
ପଦାରେ ପଡ଼ି ରୋଦନ ଉଚ୍ଚରେ ସେ କରେ
ଗର୍ଭର କଥାମାନ ସେ ତକ୍ଷଣେ ପାସୋରେ ।
ଖାଇବା ପାଇଁ ଆହାର କରଇ ରୋଦନ
ତାର ସେ କଥା ବୁଝି ନ ପାରେ କେହୁ ଜନ ।
ବୋଲନ୍ତି ବଥାଉଥିବ ଏହାର ଯେ ଦେହ
ତେଣୁ ରୋଦନ କରଇ ଏହି ବାଳପୁଅ ।
ଏତେକ ପାଞ୍ଚ୍ ମୁଖେ ଦିଅନ୍ତି ନିମ୍ବରସ
ବାଳକ ସେ କି ଜାଣିଛି କରଇ ଯେ ଗ୍ରାସ ।
ଯେ ଯାହା ତୁଣ୍ଡରେ ଦେଲେ ଭୁଞ୍ଜଇ ନ ଜାଣି
ଅହୋରାତ୍ରେ ପଡ଼ଇ ଅଶୁଚି ଶଯ୍ୟା ଘେନି ।
ସେହି ଶେଯେ ଖାଏ ସେହି ଶେଯେଥାଏ ଶୋଇ
ସେହି ଶେଯେ ପଡ଼ି ମଳମୂତ୍ରେ ଘାଣ୍ଟିହୋଇ ।
ଉଠି ଚଳିବା କର୍ତ୍ତବ୍ୟ ନୁହେ ତେତେବେଳେ
ପିମ୍ପୁଡ଼ି ଜୀବେ ଚୋବାନ୍ତି ଆସି କଳେ କଳେ ।
ବନ୍ଧନ ଜୀବ ପରାୟେ ପଡ଼ିଥାଇ ଘରେ
ମାଛି ମଶା କାମୁଡ଼ିଲେ କାନ୍ଦେ ଥରେ ଥରେ ।
ତୁଣ୍ଡ ଫିଟିଛି କି ତାର କହିବ ବଚନ
ଏମନ୍ତେ ସେ ଦୁଇ ଚାରିବର୍ଷ ବଞ୍ଚେ ଦିନ ।
ବାଳକ ମତିରେ ଏହିରୂପେ ଦିନ ଯାଏ
ତଦନ୍ତେ କରନ୍ତି କର୍ଣ୍ଣବେଧ ବାପମାଏ ।
ସପ୍ତବରଷେ ଦିଅନ୍ତି ନେଇ ଚାଟଶାଳେ
କହିଲେ ଦୁଃଖ ତହିଁ ନ ସରେ ତେତେବେଳେ ।
ଗୁରୁଙ୍କ ପାଶରେ ଦେଇ ଛୁଆଁନ୍ତେ ସେ ଖଡ଼ି
ଅକ୍ଷରେକ ନ ଆସିଲେ ମାରୁଥାନ୍ତି ବାଡ଼ି ।
ସେ ଦିନ କଲବଲରେ ପଡ଼ଇ ବାଳକ
ଆରଦିନ ଭୟରେ ନ ଯାଏ ଦିନଯାକ ।
ପାଠପଢ଼ା ବୋଇଲେ ସେ ଲୁଚେ ଏଣେତେଣେ
କାହିଁ ତୋଟାଯାକ କାହିଁ ବୁଲେ ଗ୍ରାମ କୋଣେ
ଏରୂପେ ବାଲୁତ କାଳେ ଲଭେ ବହୁ କ୍ଲେଶ
ଯୁବା ଅବସ୍ଥା ହୋଇଲେ ହୁନ୍ତି ସ୍ତିରୀବଶ ।
କାମେ ବଶ ହୋଇ ଜାତି ଅଜାତି ଯେ ହରେ
ନୀଚ ଛାର ସ୍ତିରୀକି ସେ ଇଚ୍ଛେ ନିରନ୍ତରେ ।
ତହିଁର କଷ୍ଟ କହିବି ଜୀବ କିସ ତୋତେ
ନ ରୁଚଇ ଅନ୍ନ ପାଣି ଝୁରେ ଅବିରତେ ।
ସର୍ବ ସ୍ତିରୀଙ୍କି କରଇ ବେଳେ ସେ ଭରସା
କେବଳ ହୋଏ ଦହନ ନ ପୂରଇ ଆଶା ।
ସୁନ୍ଦରୀ ଯୁବତୀକି ସେ ଲୋଡ଼େ ଅନୁକ୍ଷଣେ
ସେ ଯେବେ ନ ମିଳଇ ସେ ଝୁରେ ପ୍ରତିଦିନେ ।
ଚିନ୍ତା ହୃଦରେ ଧରିଣ ହୋଇ କ୍ଷୀଣ କାୟେ
ବିଭା କରନ୍ତି ଯେ ପୁଣ ତାକୁ ବାପମାଏ ।
ସେ କନ୍ୟାଟି ଯେତେବେଳେ ହୁଏ ବର୍ଦ୍ଧମାନ
ତାହାର ତୁଲେ ସେ ମାତି କରେ ବପୁ କ୍ଷୀଣ ।
ବିଷ୍ଣୁଠାରୁ ଅଧିକରେ ରଖେ ତାର ସତ୍ତ୍ୱ
ଅମୃତ ସିନ୍ଧୁ ପରାୟେ ମଣେ ମୂଢ଼ ହେତୁ ।
ନାରୀବଶ ହୋଇଣ ସେ କ୍ଷୀଣ କରେ କାୟ
ସେହି ନାରୀର ଅନ୍ତ ଯେ ଅଟେ ଅପ୍ରମେୟ ।
ସେ ନାରୀରେ ବଶହୋଇ କହଇ ଯେ ପ୍ରାଣୀ
ଅଳପକେ ରୋଗୀ ହୋଇ ହୋଏ ଆୟୁହାନୀ ।

ପୁଣି ସେହି ନାରୀ ଗର୍ଭୁ ବୃକ୍ଷ ଅଙ୍କୁରଇ
କାଳେ ସେ ତହିଁ ପଡ଼ିଣ ସେହି ନାଶଯାଇ ।
ସେ ନାରୀମାନଙ୍କୁ ଆଶା ନ କରେ ଯେ ଜ୍ଞାନୀ
ନୋହିଲେ ପଡ଼ନ୍ତି ଆଉ ସବୁ ଚାରିଖାନୀ ।
କେବଳ ଆଦ୍ୟରେ ମାତା ଅଟଇ ଯେ କୂପ
ଗୃହସ୍ଥକୁ ଉପେକ୍ଷିଣ ଧରେ ମନେ କୋପ ।
ଅଙ୍ଗୁ ଅଳଙ୍କାରେ କାଢ଼ି ଭାଙ୍ଗେ କାଚମୁଦି
ନ ଘେନି ସିନ୍ଦୂର କଳା ଅଳତା ଏ ଆଦି ।
ପୁରୁଷ ପ୍ରାୟେ ଦିଶଇ ପିନ୍ଧି ଶୁକ୍ଳଶାଢ଼ୀ
ପୁତ୍ର ପୁତ୍ରୀ ପାଳିଣ ସେ ବସେ ଘରମାଡ଼ି ।
ଏରୂପେ ଭୁଲନ୍ତି ସ୍ତିରୀମାନେ ପୁରୁଷଙ୍କୁ
ପୁରୁଷ ଜନ୍ମ କେବଳ ସ୍ତିରୀ ପୋଷିବାକୁ ।
ସ୍ତିରୀଙ୍କି ପୋଷିବା କଥା ଶୁଣ ଆହେ ଜୀବ
ବିଷୟାବନ୍ଧେ ପଡ଼ିଣ ପୋଷଇ କୁଟୁମ୍ବ ।
କୁଟୁମ୍ବ ସକାଶରୁ ଯେ ସଦା ଲୋଭ କରେ
କୃଷି ବାଣିଜ୍ୟ କରିଣ ଦିନଯାକ ମରେ ।
ଭାରିଯାର ବଚନକୁ ନ ଲଙ୍ଘଇ କ୍ଷଣେ
ସେବକ ପ୍ରାୟେ ହୋଇଣ ପାଳେ ପ୍ରତିଦିନେ ।
ନିଶି ଦିବସେ ତାହାର ବାକ୍ୟେ ବଶହୋଇ
ବେଠିଆ ପ୍ରାୟେ ତାହାର ବାକ୍ୟେ ଚଳୁଥାଇ ।
ଯହିଁରେ ସେ ନ ପାରିବ ତହିଁ ଥାଇ ଲାଗି
ବିଷୟାକୁ କରେ ମୂଳ ନାମ ପରିତ୍ୟାଗୀ ।
କୃଷି ବାଣିଜ୍ୟ କରିଣ ଆଣେ ବହୁ ଧନ
ଆପଣା ଦୁଃଖ ସୁଖ ନ ଘେନେ କେବେ ମନ ।
ଅଥବା କୁଟୁମ୍ବକୁ ସେ ଧନ ନ ଅଣ୍ଟିଲେ
ପୁଣି ଜୀବିକାଏ ଯାଇ ଆବୋରଇ ଭଳେ ।
ସେହି ଜୀବିକାଟି ଯେବେ ଦଇବ କଷଣେ
ବିନାଶ ହୋଇଣ ଯିବ ନିଜ କର୍ମହୀନେ ।
ପୁଣି ଲେଉଟି ଜୀବିକା ସେହି ଆବୋରଇ
କର୍ମ ଅବଳରୁ ପୁଣି ସେହି ନାଶଯାଇ ।
ଲେଉଟି ସେହି ଆରମ୍ଭେ କୃଷି ବାରମ୍ବାର
ସହନ୍ତି କୁଟୁମ୍ବ ପାଇଁ କଷ୍ଟ ସର୍ବ ନର ।
ସମର୍ଥପଣ ଶରୀରେ ତାର ଥିବାଯାଏ
ପଦାର୍ଥ ଅରଜୁଥାଇ କରିଣ ଉପାୟେ ।
ତହିଁ ଉତ୍ତାରୁ ଶରୀର ହୋଇଲେ ନିର୍ବଳ
ସେହିଠାରୁ ବୃଦ୍ଧ ହୋଇ ରହେ କେତେକାଳ ।
ସେ ବୃଦ୍ଧ ଜୀବର କଷ୍ଟ କହିବା ହୋ ଏବେ
ଚକ୍ଷୁକୁ ନ ଦିଶେ କେବେ କର୍ଣ୍ଣକୁ ନ ଶୁଭେ ।
ଚର୍ମ ଓହଳଇ ଶିରା ବାରିହୋଇ ଦିଶେ
ବଥାଇ ଚାଲିଲେ ନାଡ଼ ଗଣ୍ଠି ଫୁଟି ବସେ ।
ତହିଁପରେ ଖରଖର ବହଇ ନିଃଶ୍ୱାସ
ଅତ୍ୟନ୍ତ ବୃଦ୍ଧ ହୋଇଣ ପାଏ ବହୁ କ୍ଳେଶ ।
କୁଟୁମ୍ବ ପୋଷିଣ ଆଉ ନ ପାରଇ ଜାଣ
ଅତିଥି ପ୍ରାୟ ହୋଇଣ ଘରେ ବସେ ପୁଣ ।
ସେଠାରୁ କେହି ନଜରେ ତାକୁ ନ ଆଣନ୍ତି
ଦେଖିଲେ ନାନା ରୂପରେ ଭର୍ତ୍ସନା କରନ୍ତି ।
ଚଉର୍ଯ୍ୟ ପ୍ରାୟେ ସହଇ ସବୁରି ଝିଙ୍ଗାସ
ଦାରା ତନୟ ଆଦର ନ କରନ୍ତି ଲେଶ ।
କୃଷିକାରି ଲୋକମାନେ ଯେହ୍ନେ ବଳଦଙ୍କୁ
ବୟସ ଥିଲାଯାକେ ସେ ପୋଷୁଥାନ୍ତି ତାକୁ ।
ଦୁର୍ବଳ ହେଲେ ତାଙ୍କୁ ନ କରନ୍ତି ସଙ୍ଖୋଳା
ସେହିମତି ସେ ବୃଦ୍ଧଟି ହୁଏ ଘରେ ହେଳା ।
ପୁତ୍ର ନାତି ଭାରିଯାଏ ସର୍ବେ ଏକ ହୋନ୍ତି
ବୃଦ୍ଧଠାରେ ଆଦର ସେ କେହି ନ କରନ୍ତି ।
ସେ ବୃଦ୍ଧ ପୁଣିସ୍ନେହ ନ ଛାଡ଼େ କେତେବେଳେ
ଗୃହର ବାର୍ତ୍ତାମାନ ଯେ ପୁଛଇ ତତ୍କାଳେ ।
ସେ ବୃଦ୍ଧର ବାକ୍ୟଗୋଟି କେହି ନ ଶୁଣନ୍ତି
କେଡ଼େ ଡ଼କା ପାଡୁ ବୋଲି ଚକ୍ଷୁ ତରାଟନ୍ତି ।
ବୋଲନ୍ତି ଏଥକୁ ତୋତେ କିସ ଲଗା ଅଟେ
ସୁଖେ ମୁଠାଏ ଭୁଞ୍ଜିଣ ପଡ଼ିଥା ତୋ ବାଟେ ।
ଏରୂପେ ହେଳା କରନ୍ତି ତାକୁ ସୁତ ପତ୍ନୀ
ପଛକୁ ରହଇ ଶ୍ୱାନ ପ୍ରାୟେ ବୃଦ୍ଧ ମାନି ।
ଗ୍ରାସ କରି ନ ପାରଇ ଲୋଡ଼େ ଭଲ ଦ୍ରବ୍ୟ
ତହିଁ ପୁଣି କେତେ ହାସ କରନ୍ତି କୁଟୁମ୍ବ ।
ବେଳକାଳ ବୁଝିକରି ନ ଦିଅନ୍ତି କେହି
କହୁଁ କହୁଁ କ୍ଷୀଣ ହୁଏ ସେ ବୃଦ୍ଧର ଦେହୀ ।
ଦୁର୍ବଳ ହୋଇଣ ଉଠି ନ ପାରଇ କାୟେ
ମଳମୂତ୍ର ବହୁଥିଲେ ନ ଜାଣଇ ଦେହେ ।
ପବନ ଖର ହୋଇଣ ବହେ ନାସା ଦ୍ୱାରେ
ବଚନ ଉଚ୍ଚେ ନ କହି ପାରଇ ମୁଖରେ ।
ଯହିଁ ବସିଲେ ଶୁଭଇ କଣ୍ଠ ଘଡ଼ଘଡ଼
କଫ ମାଡ଼ିବସେ ନାଡ଼ି ନ ରହଇ ସ୍ଥିର ।
ବିଭୋଳ ହୋଇ କହଇ କଥା ସବୁବେଳେ
ଗୃହରୁ ଯାଇଣ ବସେ ବାଳକର ମେଳେ ।
ଦିନୁ ଦିନୁ ରୋଗ ତାର ଦେହେ ହୁଏ ଜାତ
କଣ୍ଠରେ ମାଡ଼ି ବସଇ କଫ ବାତ ପିତ୍ତ ।
ବଚନ କହି ନୁହଇ ଅଙ୍ଗୁଳି ନ ଚଳେ
ଡାକିଲେ ସେ ନ ଶୁଣଇ ଠାରିଲେ ନ ବୋଲେ ।
ପଲକ ନ ପଡ଼ଇ ଯେ ମୁଖୁଁ ବହେ ନାଳ
କେ କାହିଁ ଡାକିଲେ ଚାହୁଁଥାଇ ଜଳଜଳ ।

ତାହା ଦେଖି ପୁତ୍ର ନେଇ କରେ ବାଲିଶଯ୍ୟା
ନାତିଏ ଥିଲେ କାନ୍ଦନ୍ତି ଡାକି ଅଜା ଅଜା ।
ଭାରିଯା ତା ବାହୁନିଣ ବସେ ପାଶେ କାନ୍ଦି
ଆହା ମୋର ସ୍ୱାମୀ ବୋଲି ଡାକେ କର ମୁଦି ।
ବୋଲଇ ଭୋ ସ୍ୱାମୀ ମୋତେ କାହିଁ ଛାଡ଼ିଗଲ
ଶିରୋମଣିପଣ ମୋର କ୍ଷଣେ ସାରିଦେଲ ।
ସିନ୍ଦୂର କଜ୍ଜଳରେଖା ଅଳତା ଯେ ମୋର
ସବୁ ଘେନିଗଲ ସ୍ୱାମୀ ସଙ୍ଗତେ ତୁମ୍ଭର ।
ଭାଇର ରୋଦନ ଶବ୍ଦ କହି ନ ସରଇ
କାହିଁଗଲା ସଖା ମୋର ବୋଲି କାନ୍ଦୁଥାଇ ।
ପୁତ୍ରର ରୋଦନ ପୁଣି କହିବିଂକି ଆଉ
ଦାଣ୍ଡରେ ସେ ଗଡ଼ି ଗଡ଼ି ତାଡ଼େ ନିଜ ବାହୁ ।
ବୋଲଇ ଭୋ ପିଅର ଏକାଳେ କାହିଁ ଗଲ
ଆଉ ଦିନାକେତେ ଥିଲେ ହୋନ୍ତାମୋର ଭଲ ।
ଶୁଦ୍ଧ ହୋଇବାକୁ ଦ୍ରବ୍ୟ ପାଇବି ବା କାହୁଁ
କୃଷି ନ ଦେଖିଲେ ଆଉ ଦେବ କିବା ସାହୁ ।
ଏମନ୍ତ ବୋଲି କାନ୍ଦନ୍ତି ତାର ଘରଯାକ
ସେ ବୃଦ୍ଧର ସେହିଠାରୁ ହୁଏ ପରଲୋକ ।
ଯମର କାଳପାଶରେ ବନ୍ଧା ହୋଇ ଯାଇ
ଆସନ୍ତେ ଶ୍ମଶାନେ ଲୋକମାନେ ଶବ ବହି ।
ଦ୍ୱାଦଶ ଦିନରେ ଶୁଦ୍ଧ ହୁନ୍ତି କର୍ମ କରି
ତହିଁ ଉତ୍ତାରେ ବୃଦ୍ଧକୁ ଦିଅନ୍ତି ପାସୋରି ।
ସମସ୍ତେ ପାସୋରି ତହୁଁ କହନ୍ତି ଏମନ୍ତ
ସର୍ବେ ମରନ୍ତି ମୂର୍ଚ୍ଛିବା କଥା ମାତ୍ର ସତ୍ୟ ।
ମୂର୍ଚ୍ଛିବା ଲୋକେ ପ୍ରସଙ୍ଗ ମାତ୍ର ନ ଜାଣନ୍ତି
ମଲାଲୋକମାନଙ୍କୁ ସେ କ୍ଷଣେ ପାସୋରନ୍ତି ।
ଦେଖିଲେକ ଯେ ଯାହାର ବୋଲୁଥାନ୍ତି ତୁଣ୍ଡେ
ନ ପାଞ୍ଚେ ସେ ଏହି ମୃତ୍ୟୁ ଅଛି ଆମ୍ଭ ପିଣ୍ଡେ ।
ଆମ୍ଭେ ମଲେ ଏହିମତି ଘରୁ ସିନା ଯିବା
ଥିବା ଲୋକେ ମୂର୍ଚ୍ଛି ଦେବେ କିଛି ନ ଜାଣିବା ।
ଏହା ନ ପାଞ୍ଚି ବୋଇଲେ ଖାଇବି ଜୀଇଁବି
ଅଛି ବୋଲି ମଲାବେଳେ ନୁହେଁ କେହି ଭାବି ।
ଏତେ ନ ପାଞ୍ଚିଣ ନର ଆପେ ବଡ଼ପଣେ
ପରସ୍ତିରୀ ପରଦ୍ରବ୍ୟ ହରେ ଅନୁକ୍ଷଣେ ।
ପରେ ହିଂସା କରି ବଡ଼ପଣ ଆବୋରଇ
ପଞ୍ଚାଶ କୋଶ ଆବୋରେ ରାଜ ଦ୍ୱାରେ ଯାଇଁ
ଶାଢ଼ୀ ମୁଣ୍ଡେ ବାନ୍ଧିଣ ଯେ ଧରେ ହାତେ ନିଶ
ବୋଲଇ କରିବେ ଆଉ ଲୋକେ ମୋତେକିସ
ଦେଶ ଘୋଷ ପରଜା ଯେ ବିଶୋଇ ନାୟକ
ସବୁ ତ ଏବେ ଆସିଣ ହୋଇଲେ ମୋଲୋକ ।

ମହା ଉଗ୍ର ହୋଇଣ ସେ ଜୀବେ ହିଂସାବହେ
ସବୁ ଆତ୍ମା ଏକ ବୋଲି ନ ପାଞ୍ଚଇ ଦେହେ ।
ଆପଣା ଶକ୍ୟେ କୁଟୁମ୍ବ ପାଇଁ ହୋଏ ଘାଣ୍ଟି
ଶ୍ରୀ ବିଷ୍ଣୁଙ୍କୁ ନ ଭଜି ସେ ହେଲେ ମରଇଟି ।
ଆହୁରି କହିବା ଶୁଣ ଜୀବ କିଛି ତୋତେ
ପୁତ୍ରକୁ ପାଳନ୍ତି ଅତି ସ୍ନେହେ ପିତା ମାତେ ।
ପୁତ୍ରର ଯେତେବେଳେ ନ ଥାଏ ପରିବାର
ମାତା ପିତାଙ୍କୁ ସେ ସେବା କରେ ନିରନ୍ତର ।
ଯେତେବେଳେ ପୁଣି ତାକୁ ମିଳଇ ଭାରିଯା
ପିତା ଜନନୀଙ୍କୁ ସେହୁ କରେ ପରିତେଜ୍ୟା ।
ମାତା ପିତା କହିଲେ ସେ କରେ ଉପହାସ
ଆପଣାର ଭାରିଯାକୁ କରଇ ମୁହାଁସ ।
ପିତା ମାତାଙ୍କୁ ସେ ଛାଡ଼ି ପତ୍ନୀ ଧରି ରହେ
ଧନଯାକ ସମର୍ପିଣ କହେ ଅତି ସ୍ନେହେ ।
ଭାରିଯାର ଦେହଗୋଟି ମଣେ ପ୍ରାଣ ସମ
ଦେହ ସମର୍ପଇ ତାରେ ଛାଡ଼ି ସର୍ବ କାମ ।
ମାତା ପିତା ତେଜି ହୁଏ ପତ୍ନୀରେ ସେ ବଶ
କ୍ଷଣେମାତ୍ରେ ନ ଦେଖିଲେ ନ କରେ ସେ ଗ୍ରାସ
ଘରଯାକ ତେଜି କରେ ପତ୍ନୀଠାରେ ଭକ୍ତି
ନିମିଷେକ ନ ଛାଡ଼ଇ ଭାରିଯାର କତି ।
କାଳେ ସେହି ଯୁବତୀର ହେଲେ ପୁଣ ପୁଅ
କହୁ କହୁ ତେଜଇ ସେ ଗୃହସ୍ଥର ସ୍ନେହ ।
ଦେଇଥାଏ ସ୍ୱାମୀକିଟି ସେ ଉରଜ ବେନି
କ୍ଷୀରପାଇଁ ପୁତ୍ରମୁଖେ ଦିଏ ତାକୁ ପୁଣି ।
କାହିଁ ପାସୋରଇ ତେଡ଼େ ସ୍ୱାମୀ ସ୍ନେହଗୋଟି
ପୁତ୍ରକୁ କୋଳେ ଘେନିଣ ଶୁଏ ଦେଇ ପିଠି ।
ବାଳକ କୋଳେ ଦେଖିଣ ଭର୍ତ୍ତା ନ ପାଳଇ
ପୂର୍ବର ପୀରତିଯାକ ସବୁ ପାସୋରଇ ।
ଆବର ଯେ ଗୃହସ୍ଥକୁ ଉଠେ ପୁଣ ଚଳି
ବୋଲଇ ମୋ ପୁତ୍ରକୁ ନ ଦେଲେ କଣ୍ଠ ମାଳି ।
ଦରିଦ୍ରର ପିଲା ପ୍ରାୟେ ଦିଶିଲା ମୋ ପୁଅ
ଆୟ ଅଳଙ୍କାର କିଛି ନ ଦେଖିଲା ଦେହ ।
ଶୁଣ ଆହେ ଜୀବ ଆତ୍ମା ପରମ ଯେ କହେ
ନବୀନ ପଦାର୍ଥେ ସ୍ନେହ ସବୁରି ଯେ ହୁଏ ।
ପୁରାତନ ଦ୍ରବ୍ୟକୁ ଯେ ସର୍ବେ ପାସୋରନ୍ତି
ଏ କଥାକୁ ବୁଝି ଏକା ପଣ୍ଡିତେ ଜାଣନ୍ତି ।
ବିଷ୍ଣୁଙ୍କର ପାଦାମ୍ବୁଜେ ପଶନ୍ତି ଶରଣ
ନାମ ଭଜିଣ କାଟନ୍ତି ଅକାଳ ମରଣ ।
ସମ୍ପତ୍ତି ବିତ୍ତ ପଦାର୍ଥ ବନ୍ଧୁ ଦାରା ସୁତ
ଏ ସମସ୍ତ ମିଥ୍ୟା ମଣି ଭଜନ୍ତି ଅଚ୍ୟୁତ ।

ଜୀବ ପରମକୁ ଚିହ୍ନି ବ୍ରହ୍ମେ ହୋନ୍ତି ମେଳା
ତେଣୁ ତୀର୍ଥବ୍ରତ କରୁଥାନ୍ତି ଅଶୃଙ୍ଖଳା ।
ଶୁଣ ଆହେ ଜୀବ ଆତ୍ମା ପରମ ଯେ କହେ
ବୁଝିଲେ ଆସନ ତୋର ମୋର ଏକା ଦେହେଁ ।
ଦେହ ମଧ୍ୟେ ବସି ଦୋଳି ପହଞ୍ଚାଇ ହୁଏ
ଦୋଳି ଛିଡ଼ିଗଲେ କହ କାହିଁ ପୁଣି ରହେ ।
ରହିଲେ ଦୋଳିକି ଯାଇ ପାରୁ ତୁ କି ବେଳେ
ଜାଣୁ କି ଦୋଳିଟି ଖଞ୍ଜା ଦଦରା ଦେଉଳେ ।
ଦୋଳିକି ନିରାଟ କରି ଦେଉଳେ ନ ବାନ୍ଧ
ଛିଡ଼ିଲେ ଦୋଳିକି ଯେ ନ ପାଇ ବସି କାନ୍ଦ ।
ସେ ଦୋଳିର ଶାଙ୍ଖୋଳିକୁ ଯୋଡ଼ିବ କେ ପୁଣି
ଯହିଁରେ ଖୋଜିଲେ ସବୁ ଏକଇ ବିନ୍ଧାଣି ।
ତଥାପି ଦୋଳି ଛିଡ଼ଇ ଅବା କେଉଁରୂପେ
ତହିଁକି ଦେଉଳୁ ଖସୁ ନ ରହି ସେ ଧାପେ ।
କଥା ନ ବୁଝିଣ ସ୍ଥାନ ଛାଡ଼ି ହୁଏ ହାରି
ହାରିଲେ ସେ ବଡ଼ପଣ ଯାଏ ସବୁ ସରି ।
ଲେଉଟି ଯିବି ବୋଇଲେ ନ ପାଇବ ସ୍ଥାନ
ନାନା ଜଟିଆ ଲଗାନ୍ତି ତହିଁ ଥିବା ଜନ ।
ଏଣୁ ତୁହି ଦେଉଳ ନ ଥିବୁଟିକି ଛାଡ଼ି
ଦେଉଳେଥିଲେ ତୋତେ ନପାରେ କେହୁକାଢ଼ି
ଏଣୁକରି ଜୀବ ଅଟେ ଦେଉଳ ତୋ ମୂଳ
ଦେଉଳକୁ ଛାଡ଼ିଲେ ନ ଖଟେ ତୋରବଳ ।
ତୁହି ଦେଉଳରେ ଥିଲେ ସବୁରି ଯେ ଆଣ୍ଟ
ଦେଉଳକୁ ଛାଡ଼ିଲେ ତୋ ସରେ ସବୁ ନଟ ।
ଦୁହେଁ ଯେ ଏକା ହୋଇଣ ବ୍ରହ୍ମେ ମିଶିଯାଇ
ଏତେ କଥା ଶୁଣ ତୋତେ କହିଲି ବତାଇ ।
ଶୁଣିକରି ଜୀବଆତ୍ମା ହୋଇଲା ସନ୍ତୋଷ
ଆପଣା ଜନମ ବୁଝି କାଟିଲା କଲ୍ମଷ ।
ପରମକୁ ଘେନିଣ ସେ ବୃକ୍ଷେ ବାସକଲା
ତେଣୁ ସେ ଜୀବ ପରମହଂସ ବୋଲାଇଲା ।
ଜୀବ ପରମ ଅଶେଷ ଲୋକଙ୍କର ବାସ
କହନ୍ତି ବାସବ ଶୁଣୁ ଅଛନ୍ତି ତ୍ରିଦଶ ।
ବିପ୍ର ପୀତାମ୍ବର ଦାଶ ମୂର୍ଖ ନରାଧମ
ଜୀବ ପରମ ନ ଚିହ୍ନି ଲେଖେ କରି ଶ୍ରମ ।
ଏ ସଂସାରେ ହରି ତ ପରମହଂସ ରୂପେ
ବିହାର କରୁଅଛନ୍ତି ଜୀବନ ସ୍ୱରୂପେ ।
ଏଣୁ ସାଧୁଙ୍କ ଚରଣେ ନିତ୍ୟେ ନମସ୍କାର
କହିଦେବା ମୋତେ ଜୀବ ପରମ ବିଚାର ।
ଜୀବ କେତେ ଅକ୍ଷୟ ଯେ ପରମ ବୋଲାଇ
ଏ ଦୁଇ କଥା ନ ଜାଣି ସଂସାରେ ଭ୍ରମଇ ।

ନୃସିଂହ ପୁରାଣ ଏହୁ ଅଟେ ମୋକ୍ଷ କଥା
ଭକ୍ତିର ଏ ଜ୍ଞାନ ଦ୍ୱାର ମୁକ୍ତି ପୁଣ୍ୟପନ୍ଥା ।
ଶୁଣିଲେ ଯେ ଧନ ଧର୍ମ ବାଞ୍ଛା ହୋଏ ସିଦ୍ଧି
ଲଭଇ ତନୟ ଦାରା ଆବର ସୁବୁଦ୍ଧି ।
କୋଟିଏ ପଦ୍ମ ତପସ୍ୟା ଯେବେ କରିଥିବ
ବାଞ୍ଛାବଟେ ଉଠି ମଣିକର୍ଣ୍ଣିକା ଝାସିବ ।
ନାନା ତୀର୍ଥ କରି ଅନ୍ନ ବସ୍ତ୍ର ଦାନ ଦେଲେ
କେହି ନୁହେଁ ସମାନ ନୃସିଂହଗ୍ରନ୍ଥ ତୁଲେ ।
ଗୋହତ୍ୟା ବ୍ରହ୍ମହତ୍ୟାଦି ସ୍ତିରୀହତ୍ୟା ପାପ
ଗୁରୁଦ୍ରୋହୀ ମାତୃହରଣାଦି ପାଏ ଲୋପ ।
ଗୋହତ୍ୟା ବୃଷଳୀପତି ସୁରାପାନ୍ ପାଏ
ଏ ପୁରାଣ ଶୁଣିଲେ ଯେ ସବୁ ଯାଇ କ୍ଷୟେ ।
ଲକ୍ଷେ ମାଢ଼ ସୁବର୍ଣ୍ଣକୁ ଦାନ ଯେବେ କରି
ନୃସିଂହ ଗ୍ରନ୍ଥ ପଦକୁ ନୁହଇ ସେ ସରି ।
ଜୟ ଜୟ ମହାମାୟା ପଞ୍ଚାସ୍ୟ ବାହିନୀ
ପୀତାମ୍ବର ତୋର ପାଦେ କରଇ ଦଇନୀ ।



## ବାସବର ନନ୍ଦନବନ ଭ୍ରମଣ

ଶୁଣ ବାବୁ ହେ ନାରଦ କହନ୍ତି ଯେ ବ୍ରହ୍ମା
ପିଣ୍ଡକୁ ପରିତ୍ରାଣ ଏ ନୃସିଂହ ମହିମା ।
ଏ ରୂପେ ସେ ତୋଟାଯାକ ବୁଲିଣ ବାସବ
ଦେବତାଙ୍କୁ ଚିହ୍ନାଇଣ ଗଲେ ବୃକ୍ଷ ସର୍ବ ।
ବୁଲି ବୁଲି ଦେଖିଲେ ସେ ବନେ ନାରାୟଣ
ମଧ୍ୟରେ ଅନାଦି ପ୍ରଭୁ ବସିଛନ୍ତି ଜାଣ ।
ଆପଣେ ଯେ ବିଶ୍ୱକର୍ମା ହୋଇ ମୂର୍ତ୍ତିମନ୍ତ
ନୃସିଂହ ନିମନ୍ତେ କରିଅଛି ସଭା ଜାତ ।
ସଭା ଚାରିପାଖେ ଲମ୍ବିଅଛି ନାନା କମ
ହୀରାଜାତିଆ ଝଲକି ଦିଶେ ଶୁଦ୍ଧ ହେମ ।
ହରିତ ବର୍ଣ୍ଣେ ହିଙ୍ଗୁଳ ବିଚିତ୍ର ଯେ ଦିଶେ
କନକ ଝଟକେ ଅଷ୍ଟରତ୍ନେ ଚଉପାଶେ ।
ହୀରାର ଖଟ ଉପରେ ଶେଯାଇଛି ଶଯ୍ୟା
ତହିଁପରେ ବିଜେ କରିଛନ୍ତି ଦେବରାଜା ।
କର୍ପୂର କସ୍ତୁରୀ ଚୂଆ ଚନ୍ଦନର ପାଣି
ସେ ସଭାରେ ସିଞ୍ଚିଅଛି ବିଶ୍ୱକର୍ମା ଆଣି ।
କୃଷ୍ଣବଲ୍ଲଭ ରାଜା ଯେ ହୋଇ ବୀରବେଶ
ମଣ୍ଡିହୋଇ ଅଛନ୍ତି ଯେ ନାନାବର୍ଣ୍ଣ ପୁଷ୍ପ ।
ଆଗ ହୋଇଅଛି ଯମଦାଢ଼ ଛୁରୀଖଣ୍ଡି
ଅପସର ଦେଇ ବସିଛନ୍ତି ଫୁଲମଣ୍ଡି ।
ବାମ ଦକ୍ଷିଣେ ବସାଇଛନ୍ତି ବେନି ପୁତ୍ର
ଏମନ୍ତ ବେଳେ ମିଳିଲେ ଆସି ପୁରୁହୂତ ।

ଦେବଙ୍କୁ ଧରି ରହିଲେ ଆଗେ ପଟୁଆରି
ମଣିମା ମଣିମା ବୋଲି ଡାକେ ପଡ଼ିହାରୀ ।
ଆସ୍ଥାନ ତଳେ ପାଏଡ଼ା ପକାନ୍ତି ରମଣୀ
ବଜାନ୍ତି ମୃଦଙ୍ଗ ବାଦ୍ୟ ଆଦି ଅଳାବେଣୀ ।
ଅପସରୀ ନାୟିକାଏ ଦ୍ୟନ୍ତି ହୁଳହୁଳି
ଏରୂପେ ଇନ୍ଦ୍ର ବିଷ୍ଣୁଙ୍କ ପାଶେ ଯାଇ ମିଳି ।
ସେ ନୃସିଂହ ସ୍ୱାମୀ କୃଷ୍ଣବଲ୍ଲଭର କୋଳେ
ବସିଛନ୍ତି ଦେବଙ୍କୁ ସେ ଚାହିଁ ବେନି ଡୋଳେ ।
ଅପୂର୍ବ ରୂପେ ଅଛନ୍ତି ଶ୍ରୀ ନୃସିଂହ ନାଥେ
ଶଙ୍ଖ ଚକ୍ର ଗଦା ପଦ୍ମ ବିରାଜଇ ହସ୍ତେ
ଷୋଡ଼ଶ ଚନ୍ଦ୍ରମା ଜିଣି ଦିଶେ ହୃଦେ ଜ୍ୟୋତି
ନିର୍ମଳ ରୁଚିର ମହା ଶୁକ୍ଳତନୁ କାନ୍ତି ।
ମଥାରେ ଦିଶଇ ଶୋଭା ମୁକୁଟ କିରୀଟି
ଲଲାଟରେ ବିରାଜଇ ଚନ୍ଦନର ପାଟି ।
କଣ୍ଠେ କଉସ୍ତୁଭ ବେନି କର୍ଣ୍ଣରେ କୁଣ୍ଡଳ
ବିକଚପଦ୍ମ ଜିଣିଣ ଦିଶେ ବେନି ଡୋଳ ।
ନାସାର ତଳେ ଲୁଳଇ ସୁଲଳିତ ମୋତି
ମୁକୁତାପନ୍ତି ପ୍ରାୟେକ ଦିଶେ ଦନ୍ତପନ୍ତି ।
ଦେହରେ କର୍ପୂର କଟିତଟେ ପୀତାମ୍ବର
ରତ୍ନ ଓଡ଼ିଆଣି ତହିଁ ଖଞ୍ଜା ନିରନ୍ତର ।
ତହିଁପରେ ପୁଞ୍ଜି ପୁଞ୍ଜି ହୀରା ନୀଳା କମ
କଟଟୀ ବାହୁଟି ଶୋହେ ମୁଦି ଅନୁପମ ।
ହୃଦେ ଉତରୀ ପଇତା ଦିଶେ ଅତି ଶୋଭା
ଅପ୍ରକଟ ମୂର୍ତ୍ତିରୁ ଯେ ପ୍ରକଟଇ ପ୍ରଭା ।
ଏହି ଅବତାର ସର୍ବ ଅବତାର ସଞ୍ଚେ
କ୍ଷୀରାବ୍ଧିରୁ ଜଗନ୍ନାଥେ ଜନ୍ମିଲେ ଏ ମଞ୍ଚେ ।
ଜାଜ୍ୱଲ୍ୟମାନ ସେ ଜ୍ୟୋତି ସର୍ବ ମନ ରଞ୍ଜେ
କ୍ଷୀରଶାୟୀ ବିଷ୍ଣୁ ପ୍ରାୟେ ଶ୍ରୀମୁଖ ବିରାଜେ ।
ରତ୍ନ ଆସନ ପକାଇ ଅନନ୍ତ ଉପରେ
ବିଜେ କରିଛନ୍ତି ପ୍ରଭୁ ଜଗତ ଠାକୁରେ ।
ଦେଖି ଦେବତାଏ ତାଙ୍କୁ କଲେ ଜୟେ ଜୟେ
ସର୍ବେ ନମିଲେ ନୃସିଂହ ସ୍ୱାମୀ ପଦ୍ମପାୟେ ।
ଆଗେ ଉଭା ହେଲେ ତାଳ ମୃଦଙ୍ଗ ଯେ ବାଇ
ତୋଟା ମଧରେ ଦର୍ଶନ କଲେ ଭାବଗ୍ରାହୀ ।
ନମସ୍ତେ ଶ୍ରୀ ବିଷ୍ଣୁ ବୋଲି ଶ୍ରୁତି ପାଏ ପଡ଼ି
ଦେବଙ୍କୁ ଘେନି ଉଠିଲେ ଇନ୍ଦ୍ର କରଯୋଡ଼ି ।
ନୃସିଂହ ଆଜ୍ଞା କରିଲେ ଶୁଣ ସୁରସାଇଁ
ବନ ଲୋଡୁଥିଲୁ ସ୍ୱର୍ଗେ ରଖିବାର ପାଇଁ ।
ଆନନ୍ଦବନ ଦେଲଇଁ ତୋତେ ଏବେ ମୋର
ନନ୍ଦନବନ ହୋଇଣ ରହୁ ସ୍ୱର୍ଗେ ତୋର ।
ଯାବଚ୍ଚନ୍ଦ୍ର ସୂର୍ଯ୍ୟେ ତୁହି ବିଳସ ଏ ଭୋଗ
ଜାଣନ୍ତୁ ନନ୍ଦନବନ ବୋଲି ଲୋକବର୍ଗ ।
ପଦା ସ୍ୱର୍ଗ ହେଲା ବୋଲି ଭାଳୁଥିଲୁ ପରା
ତେଣୁ ତୋତେ ଉପକାର ଜାଣ କଲା ମୁରା ।
ଏତେ ହିତକାରୀ ଅଟେ ଏ ପୁରୁଷ ତୋତେ
ତାକୁ ନ ମାଇଲ ବୋଲି ବୋଲୁ ପରା ମୋତେ
ମୁଁ ମାରିଥିଲେ ଯେ ତୋତେ କେ ଦିଅନ୍ତା ଏହା
ଶୁଣିଣ କର ଯୋଡ଼ିଣ କହେ ଶଚୀନାହା ।
ଇନ୍ଦ୍ର ବୋଲେ ଶୁଣିବା ହୋ ଦେବ ଭାବଗ୍ରାହୀ
ତୁମ୍ଭର ସଞ୍ଜିଲା ସିନା ଚରାଚର ମହୀ ।
ଏ ସ୍ୱର୍ଗ ମଞ୍ଚ ତୁମ୍ଭର ସବୁ ଖେଳଘର
ବୁଝିଲେ ତୁମ୍ଭର ଦ୍ୱାରୀ ଅଟେ ମୁରାସୁର ।
ବ୍ରହ୍ମାଙ୍କୁ ସ୍ଥାପି ସ୍ଥାପିଛ ତୁମ୍ଭେ ସଦାଶିବ
ତୁମ୍ଭ ରଚନ ଛପନକୋଟି ସିନା ଜୀବ ।
ଇନ୍ଦ୍ରଙ୍କୁ ସ୍ଥାପିଛ ତୁମ୍ଭେ ସ୍ଥାପିଛ ବାସୁକି
ଏମାନ କରିବାକୁ କେ ଆନ ଭାଜନ କି ।
ପ୍ରଭୁ ନ ଦେଲେ ଦିଅନ୍ତା କେହୁ ବନଗୋଟି
ମୁର ଛାର ଟେକନ୍ତା କି ଏହି କାନନଟି ।
ଯହିଁର କି ବୃକ୍ଷ ଦୀର୍ଘ ପଞ୍ଚାଶତ ଯୁଣ
ଡାଳେକ ଆକାଶଯାକ ରହିଛି ଛାଇଣ ।
ମୂଳ ଅଛି ଯାର ବାସୁକିର ଶିର କଣ୍ଟି
ଆବର ଡାଳେକ ଅଛି ମଞ୍ଚଯାକେ ଘୋଟି ।
ଆପଣ ଯହିଁରେ ପୁଣ ଅଛ ବିଜେକରି
କୋଟି କୋଟି ବ୍ରହ୍ମାଣ୍ଡ ଯା ଗର୍ଭେ ଅଛି ପୂରି ।
ପୃଥ୍ୱୀ ଆପ ତେଜ ବାୟୁ ଆବର ଆକାଶ
ବନସ୍ତ ନଦୀ ସମୁଦ୍ର ଗିରି ଦଶଦିଶ ।
ଚନ୍ଦ୍ର ସୂର୍ଯ୍ୟ ଗ୍ରହଗଣ ନକ୍ଷତ୍ର ସହିତେ
ଏ ସର୍ବ ପୂରିଅଛନ୍ତି ଯାର ଗର୍ଭଗତେ ।
ଏ ଗର୍ଭ ଗଲାଣି ଯାର ଛସ୍ତରି ଭାରତ
ତେସ୍ତରି ଯେ ରାମାୟଣ ଅଶୀ ଭାଗବତ ।
ତେପନ ବିଷ୍ଣୁଲୀଳା ଛପନ ହରିବଂଶ
ନୃସିଂହ ପୁରାଣ ଗଲା ଲେଖନ୍ତେ ଛତିଶ ।
ଦଶଅବତାର ଚଉବିଂଶ ମୂର୍ତ୍ତି ମୂଳେ
ଯେବେଣ ଗର୍ଭରେ ପୂରିଛନ୍ତି ଏ ସକଳେ ।
ଚାରିଯୁଗ ଷଡ଼ଋତୁ ସାତବାର ମାସ
ଏ ସବୁ ଯାର ଉଦରେ ପୂରିଛି ଅଶେଷ ।
ମୁର ଛାର ବଳେ କି ଏ କଥା ପାରେ କରି
ତୁମ୍ଭକୃପା ନୋହିଲେ କେ ଦ୍ୟନ୍ତା ଏଡ଼େ ଶିରୀ ।
ଯାହାର ବାକ୍ୟେ ପାଳିବେ ପୃଥ୍ୱୀ ଲକ୍ଷେ ବ୍ରହ୍ମ
ସେ ପ୍ରଭୁ ବୋଲେ ମୋତେ କି ନମିଲେ ଆରାମ ।

ଶୁଣିଣ ଶ୍ରୀ ନାରାୟଣ ଅଛକରି ହସି
ଏଥୁ ଅନନ୍ତରେ ବାଣୀ ଶୁଣ ନାରଦର୍ଷି ।
ବ୍ରହ୍ମା ବାରତା ପାଇଣ ଅଇଲେ ତକ୍ଷଣ
ଅଠାଶୀ ସହସ୍ର ଯାଏ ଛନ୍ତି ଋଷିଗଣ ।
ନନ୍ଦନବନେ ମିଳିଲେ ଆସି ବିଷ୍ଣୁ ଆଗେ
ଆବର ମିଳିଲେ ସଦାଶିବ ସେହି ଲାଗେ ।
ଅଇଲେ ହର୍ଷେ ମୂଷିକଯାନେ ଲମ୍ବୋଦର
ନର ବାହାନ ଆରୋହି ମିଳିଲେ କୁବେର ।
ମଗର ଉପରେ ବସି ମିଳିଲେ ବରୁଣ
ମୃଗର ବାହନ ଚଢ଼ି ଅଇଲେ ପବନ ।
କାର୍ତ୍ତିକ ମିଳିଲେ ଆସି ମୟୂରରେ ବସି
ନାଶକର ଦେବ ଚଢ଼ି ଅଇଲେ ମହିଷି ।
ଏ ବିଧିରେ ସୁରଲୋକ ସଙ୍ଗେ ସବୁ ଘେନି
ବିଷ୍ଣୁଙ୍କୁ ଯାଇଁ ଦର୍ଶନ କଲେ ପଦ୍ମଯୋନି ।
ଗହ ଗହ ଯେ ଶବଦ ଶୁଭେ ବନଯାକେ
ପ୍ରଶଂସା କରନ୍ତି ବ୍ରହ୍ମା ରୁଦ୍ର ଏକେ ଏକେ ।
ବୋଲନ୍ତି ଏ ଧନ୍ୟ ଧନ୍ୟ ବିଡ଼ୋଜାର ପୁର
ପ୍ରତ୍ୟକ୍ଷେ ସ୍ୱର୍ଗରେ ମିଳିଛନ୍ତି ଦାମୋଦର ।
ଆବର ଏଡ଼େକ ତୋଟା ଦେଲେ ପୁଣ ହରି
ବୁଝିଲେ ଯାକୁ ବୈକୁଣ୍ଠେ ନୋହେ ସମସରି ।
ଏଣୁ ଇନ୍ଦ୍ର ଶିରୀ ନାହିଁ କାହାକୁ ଯେ ଭୋଗ
କୀଟୁ ବ୍ରହ୍ମଯାଏ ଛନ୍ତି ଯେତେ ଜୀବ ଅଙ୍ଗ ।
ପଶୁଜୀବ ତପସ୍ୟା ଯେ କରୁଥାନ୍ତି ଯେତେ
ସିଂହ ହେଲେ ତାହାର ଯେସନେ ଭୋଗପ୍ରାପ୍ତେ
ଦିନ ହରନ୍ତି ମାନବ ଲୋକେ ତପକରୁ
ନୃପତି ହେଲେହେଁ ଭୋଗ ସରେ ସେହିଠାରୁ ।
ଯୁବତୀକୁଳ ତପସ୍ୟା ଯେତେ ଥାନ୍ତି କରି
ଗଣିକା ହେଲେ ତାହାର ସରେ ଭୋଗଶିରୀ ।
ଦେବତାମାନେ କରନ୍ତି ଯେତେ ତପ ବସି
ଇନ୍ଦ୍ର ହେଲାରୁ ତାହାର ସରେ ଲୀଳା ରାଶି ।
ଏ ଚାରି ଭୋଗରୁ ନାହିଁ ସଂସାରେ ଯେ ସୁଖ
ଚାରିଙ୍କି ଚାରି ଅଟନ୍ତି ଜାଣ ଏକୁ ଏକ ।
ଜନ୍ତୁଯାକେ ସିଂହ ନରମାନଙ୍କେ ଯେ ରାଜା
ସ୍ତିରୀଯାକେ ବେଶ୍ୟା ଦେବେ ସାର ଯେ ବିଡ଼ୋଜା ।
ଇନ୍ଦ୍ର ସମ୍ପତ୍ତିକି ନାହିଁ ସଂସାରେ ଯେ ଭୋଗ
ଯହିଁ କଟକ ହୋଇଛି ପୁଣି ମୋକ୍ଷ ସ୍ୱର୍ଗ ।
ତହିଁ ପୁଣି ମିଳିଅଛି ନନ୍ଦନକାନନ
କେତେ ଭୋଗ ଭୁଞ୍ଜିଲାକ ଅଦିତିନନ୍ଦନ ।
ଏହିରୂପେ ପ୍ରଶଂସନ୍ତି ତାକୁ ବ୍ରହ୍ମା ଶିବ
ଶୁଣିକରି କରଯୋଡ଼ି କହଇ ବାସବ ।

ଇନ୍ଦ୍ର ବୋଇଲେ ମୁହିଁ ତ ରୋପିଲା ତୁମ୍ଭର
ଯେ ହେଲେ ବୋଲଇ ବ୍ରହ୍ମା ଇନ୍ଦ୍ର ହରିହର ।
ତୁମ୍ଭେ ସ୍ଥାପିଲାରୁ ସିନା ହେଲି ମୁଁ ଏଡ଼େକ
ବଡ଼କୁ ଆଶ୍ରେକରି ଯେ ହୋଇ ବଡ଼ଲୋକ ।
ପାପୀ ଚଣ୍ଡାଳ ହୋଇଣ ଯେତେ ଲୋକ ଥାନ୍ତି
ତାହାକୁ ଆଶ୍ରେ କଲେ ସେ କାଳେ ପ୍ରାଣ ନ୍ୟନ୍ତି
ମୂର୍ଖକୁ ଆଶ୍ରେ କଲେ ଯେ ଲୋକ ହୁଏ ମୂର୍ଖ
ହୀନକୁ ଆଶ୍ରେ କଲେ ଯେ ହୋଇ ହୀନଲୋକ
କୁମତି ଲୋକକୁ ଯେହୁ ଆଶ୍ରେ କରେ ନିତି
ସେହି ଚଣ୍ଡାଳ ସମୂଳେ ହୋଏ ବିନଶ୍ୟତି ।
କୁଟିଳ ହିଂସ୍ରକ ପରପୀଡ଼କ ଯେ ଲୋକ
ତାହାଙ୍କୁ ଆଶ୍ରେ କଲେ ସେ ହୁଅନ୍ତି କଣ୍ଟକ ।
ସାଧୁକୁ ଆଶ୍ରେ କଲେ ସୁଗତି ଲଭେ ପ୍ରାଣୀ
ମହତକୁ ଆଶ୍ରେ କଲେ ମହତେ ସେ ଗଣି ।
ଯହିଁରେ ହର ବ୍ରହ୍ମାର ଅଛଇ ଆହ୍ଲାଦ
ମୋତେ କେତେ ଅଟଇ ଏ ଛାର ଇନ୍ଦ୍ର ପଦ ।
ଶୁଣିଣ ସେ ହସ ହସ ହୋଇ ବ୍ରହ୍ମା ହର
ସମସ୍ତେ ଭେଟିଲେ ଏକହୋଇ ପଦ୍ମକର ।
କୃତାଞ୍ଜଳି ହୋଇ ବ୍ରହ୍ମା ରହିଛନ୍ତି ଆଗେ
ଦେବେ ବିଷ୍ଣୁଙ୍କୁ ଚାହାନ୍ତି ରହି ଚଉଦିଗେ ।
ଋଷିଏ କରନ୍ତି ବେଦଧ୍ୱନି ପାଶେ ବସି
ହରହିଁ ଡମ୍ବରୁ ବାଦ୍ୟ ନାଦ ଘୋଷି ଘୋଷି ।
ବେଦବର ବୋଇଲେ ଯେ ଶୁଣ ମହାପ୍ରଭୁ
ମୁରକୁ ନ ମାରି ଶିରୀଦେଇ ଇନ୍ଦ୍ରେ ସବୁ ।
ପୃଥିବୀରେ ଅସୁରଙ୍କୁ ଆସିଲ ତ ଛାଡ଼ି
ସୃଷ୍ଟି ଲେଉଟି ପଡ଼ିଲା ନିର୍ଦ୍ଦେ ଜାଣ ମାଡ଼ି ।
ପୃଥ୍ୱୀ ଜାଣ ରସାତଳ ହେଲା ଆଜିଠାରୁ
ସ୍ୱର୍ଗପୁରରୁ ଖସିଣ ପଡ଼ିବ ଯେ ମେରୁ ।
ଦୈତ୍ୟଙ୍କୁ ଛାଡ଼ି ଆସିଲ ଯେବେ ପୀତବାସ
ଆମ୍ଭେ ଦେବତାଏ ତେବେ ଗଲୁ ଏବେ ନାଶ ।
ଅସୁର ସଙ୍ଗରେ ଯୁଝୁଥିଲାରୁ ଯେ ଥିଲୁ
ଏଠାରୁ ଭୋ ସ୍ୱାମୀ ଆମ୍ଭେ ଅରକ୍ଷିତ ହେଲୁ ।
ଏମନ୍ତ ବୋଲି ଜଣାନ୍ତେ ପିତା ବିଷ୍ଣୁ ଆଗେ
ଶୁଣିଣ କହନ୍ତି ହସି ହସି ଶିରୀରଙ୍ଗେ ।
ହରି ବୋଇଲେ ଯେ ତୁମ୍ଭେ ଶୁଣ ପିତାମହ
ଆମ୍ଭେ ନ ମାଇଲେ ଦୈତ୍ୟ ମାରନ୍ତା କେ କହ ।
ମୁର ଆବର ଅଛଇ ସିନା ଏକା ରହି
ତାହାକୁ ମାଇଲେ ପରମାଦ କ୍ଷୟ ଯାଇ ।
ତଥାପି ମୁର ମଲେ କେ ଦେଖନ୍ତା ଏ ଶିରୀ
ଏଣୁକରି ଇନ୍ଦ୍ରଭୋଗ ଦେଲି ଆଗକରି ।

ଦେବଙ୍କ ଶତ୍ରୁ ଅଟନ୍ତି ପରା ଯାତୁଧାନେ
ଝୁରି ମରନ୍ତୁ ଇନ୍ଦ୍ରର ଶିରୀ ଦେଖି ମନେ ।
ଶିରୀ ହେଲେହେଁ ଶତ୍ରୁକୁ ଆଗ ଦେବ ଟାଳି
ତେବେ ସିନା ଶତ୍ରୁ ମୁଖେ ଲଗାଇବା କାଳି ।
ଏମନ୍ତ ବୋଲି କହିଲେ ଯହୁଁ ବିଷ୍ଣୁ କଥା
ଶୁଣି ଦେବତାଙ୍କର ଯେ ଗଲା ମନୋବ୍ୟଥା ।
ଏଥି ଉତ୍ତାରେ କହନ୍ତି ପୁଣି ପଦ୍ମଯୋନି
ସମସ୍ତେ ଅଛନ୍ତି ବନେ ନାହାନ୍ତି ତ ଅଗ୍ନି ।
ତେତିଶକୋଟି ଦେବତା ବ୍ରହ୍ମାଦି ସୁଦ୍ଧଳେ
ସମସ୍ତେ ସେବାରେ ଲାଗିଥାନ୍ତି ଆଦିମୂଳେ ।
ଏମନ୍ତେ ଶୁଣି ନାରଦ ପଚାରିଲେ ପୁଣି
କାହିଁକି ଆସି ନାହାନ୍ତି କହ ଏଥେ ଅଗ୍ନି ।
ବୁଝିଲେ ବହ୍ନିତ ଦଶଦିଗପାଳୁ ଜଣେ
ସେ କାହିଁକି ନ ଆସିଲେ କେଉଁ ବଡ଼ପଣେ ।
ଶ୍ରୀହରିଙ୍କ ଛାମୁରେ ତ ସର୍ବେ ପରିଚାର
ଅଟନ୍ତି କୀଟରୁ ବ୍ରହ୍ମଯାଏ ଯେତେ ନର ।
ଅଗ୍ନି ଏକା ଦରଶନ କାହିଁକି ନ କଲେ
ଏ କଥା ଶୁଣିମା କହ ପିତା ଆଗେ ଭଲେ ।
ନମସ୍ତେ ହେ ଜଗନ୍ନାଥ ନୀଳଗିରିବାସୀ
ପୀତାମ୍ବର ତୁମ୍ଭ ପାଦ ଇଚ୍ଛେ ଅହର୍ନିଶି ।



## ଶ୍ୱେତରାଜାର ଯଜ୍ଞ ଓ ଅଗ୍ନି ଦେହରେ ଲୁଦୁବୁଦୁ ବ୍ୟାଧି ଜାତ ଏବଂ ଧନ୍ୱନ୍ତରୀ ଜନ୍ମ

ନାରଦଙ୍କ ବଚନେ ଯେ ହସି ପିତାମହ
ବୋଲନ୍ତି ଶୁଣ କହିବା ଫିଟାଇ ସନ୍ଦେହ ।
ଯେତେବେଳେ ତୋଟା ଆଣିଦେଲେ ପ୍ରଭୁ ସ୍ୱର୍ଗେ
ଆସୁଥିଲେ ମଧ୍ୟ ଅଗ୍ନିପାଇ ବାର୍ତ୍ତା ବେଗେ ।
ଆସୁ ଆସୁ ବାଟେ ସେହୁ ନ ପାରନ୍ତି ଚାଲି
ବସନ୍ତି ସେ ପହଣ୍ଡକେ ପଦ୍ମ ଫୁଟେ ବୋଲି ।
କାସ ଶ୍ୱାସ ହିକ୍‌କା ପୁଣି ଅଜୀର୍ଣ୍ଣ ଧଗାଡ଼ି
ପେଟବ୍ୟଥା ଜ୍ୱାଳା ମୁଣ୍ଡବ୍ୟଥା ଯେ ଉଦରୀ ।
ଲୁଦୁବୁଦୁ ବ୍ୟାଧିଯୋଗେ ନ ପାରନ୍ତି ଉଠି
ବେଳେ ଗ୍ରାସ କଲେ ଦିନ ଲାଗଇ ଯୁଗେଟି ।
ଏରୂପେ ସେ ମହାକ୍ଳେଶୀ ହୋଇ ବୈଶ୍ୱାନର
ଆସନ୍ତି ବିଷ୍ଣୁଙ୍କଠାକୁ ହୋଇ ଧୀର ଧୀର ।
ଯେ ଦିନୁ ଭଲ ହୋଇଲା ଇନ୍ଦ୍ରର ଯେ ଯୋନି
ସେହିଦିନୁ ବାର୍ତ୍ତାପାଇ ବିଚାରନ୍ତି ବହ୍ନି ।
ନନ୍ଦନବନେ ଗଲେ ନିରୋଗୀ ହେବି ବୋଲି
ଏମନ୍ତ ପାଞ୍ଚିଣ ସେହୁ ଆସୁଛନ୍ତି ଚାଲି ।
ନାରଦ ବୋଇଲେ ଅଗ୍ନି କିପାଁ ହେଲା ରୋଗୀ
ସଂସାରେ ସମସ୍ତେ ଯାହା ଘେନି ହୁନ୍ତି ଭୋଗୀ
ଭୁଞ୍ଜିବାର ଗ୍ରାସଯାକ କ୍ଷଣକରେ ପାକ
ସେ ଜନକୁ ଏଡ଼େ କ୍ଳେଶ ଦେଲା କେଉଁ ଲୋକ
ବ୍ରହ୍ମାଏ ବୋଇଲେ ତେବେ ଶୁଣ ସେ ପ୍ରସଙ୍ଗ
ପ୍ରଥମଖଣ୍ଡେ କହୁଛୁ ସୂଚୀ ତୋତେ ଆଗ ।
ଶ୍ୱେତ ରାଜାଙ୍କର ଯଜ୍ଞ ଶୁଣ ଏବେ ପୁଣି
ଢାଳିଲେ ସେ ଶତବର୍ଷ ଯାଏ ଘୃତ ଆଣି ।
ସେ ଘୃତକୁ ଅଗ୍ନି କରି ନ ପାରିଲେ ପାକ
ତେଣୁକରି ଦେହେ ଘୋଟିଲାକ ରୋଗଯାକ ।
ଅଗ୍ନି ଜନ୍ମ ପୁଣି ତୋତେ କହିବା ହେ ଶୁଣ
ତେଣୁ ଯେଣୁ ହେତୁକରି ନ ପାରିଲୁ ଜାଣ ।
ଯେତେବେଳେ ପିତା ଜାତ କଲେଟି ଦୋହରା
ତେତେବେଳେ ଗ୍ରାସଦେଇ ନ ପାରିଲେ ପୂରା
ଅଗ୍ନିଙ୍କର ତେଜ ଦେହେ ଲାଗିବାରୁ କରି
ଅନ୍ୟ ହୋଇକରି ଧାତା ପଳାଇଲେ ଡରି ।
ସେହିଠାରୁ କ୍ଷୁଧାର୍ତ୍ତୀ ଯେ ହେଲେ ବୈଶ୍ୱାନର
ବୁଲିଲେ ଜଗତଯାକ ନ ପାଇ ଆହାର ।
ଏଥିଉତ୍ତାରେ ଯେ ପୁଣ ଗଲା ଦିନାକେତେ
ଭ୍ରମୁ ଭ୍ରମୁ ବିଧାତାକୁ ଦେଖିଲେ ଜଗତେ ।
ଲେଉଟି ବ୍ରହ୍ମାଙ୍କୁ ଯାଇ ବୈଶ୍ୱାନର ବନ୍ଦୀ
ଅନେକ ଶୋକ କରିଣ କହେ ଆଗେ କାନ୍ଦି ।
ବୋଇଲେ କାହିଁକି ଧାତା ଜନ୍ମ କଲ ମୋତେ
କ୍ଷୀର ନୀର ଆହାର ନ ଦେଇ ପୁଣ ପ୍ରାନ୍ତେ ।
ନ ଦେଲ ତ ନାହିଁ ଗଲ ଆବର ଯେ ଲେଛି
ପୁରାଣେ କି ପିତାଙ୍କର ଏହି ଧର୍ମ ଅଛି ।
ଜାତ କରିଣ ଜନନୀ ପୁତ୍ରକୁ କି ତେଜି
କୁଟୁମ୍ବ ନ ପୋଷେ ସେହି ଭାର୍ଯ୍ୟା ପୁତ୍ର ଅର୍ଜି ।
ବୃକ୍ଷକୁ ରୋପି ଯେହ୍ନୁ ନ ସମ୍ଭାଳଇ ତାକୁ
ଆହାର ନ ଦେଇଣ ଯେ ମାରଇ ଜନ୍ତୁଙ୍କୁ ।
ନୃପତି ହୋଇ ଯେ କରେ ନ୍ୟାୟରେ ଅନ୍ତର
ପତି ତେଜି ପତ୍ନୀ ଯେବେ ଲଭେ ଅନ୍ୟ ନର ।
ଯତି ହୋଇଣ ନାରୀକି କରେ ଯେବେ ଆଶ
ପଣ୍ଡିତ ହୋଇ ଯେବେ ନ କହେ ସତ୍ୟଭାଷ ।
ଜ୍ଞାନୀ ହୋଇଣ ଯଦ୍ୟପି କରେ ଜୀବ ବଧ
ପୁତ୍ର ହୋଇଣ ଯେବେ ନ କରେ ପିତୃଶ୍ରାଦ୍ଧ ।
ଶୂଦ୍ର ହୋଇଣ ଯଦ୍ୟପି ହରେ ବିପ୍ରନାରୀ
ସଭାରେ ବସିଣ ଯେହ୍ନୁ କହେ ପକ୍ଷକରି ।

ବ୍ରତାଚାରୀ ହୋଇ ଚୋରିକରେ ପରଦ୍ରବ୍ୟ
ଶ୍ରୀଗୁରୁ ଆଗରେ ଯେହୁ ଚାଲେ କରି ଗର୍ବ ।
ଦେବତା ବିପ୍ରର ଯେହୁ ହରେ ଦାନବୃତ୍ତି
ସାଧୁଙ୍କୁ ନ ସେବି ଯେହୁ ଅର୍ଜେ ଅପକୀର୍ତ୍ତି ।
ଗୁରୁକରି ଶିଷ୍ୟ ଯେବେ ଲୁଚଇ ଦେଖିଲେ
ଏତେ ଲୋକ ପଡ଼ନ୍ତିଟି ନର୍କେ ଜାଣ ଭଲେ ।
ତୁମ୍ଭେ ଯେବେ ଜାତକରି ତେଜିଗଲ ମୋତେ
କିରୂପେ ବର୍ତ୍ତଇ ମୁହିଁ ବୁଝ ତୁମ୍ଭେ ଚିତ୍ତେ ।
ବିଧାତା ବୋଇଲେ ଶୁଣ ହେ ଅଗ୍ନିଦେବତା
ବିଚାରିଲେ ତୁହି ଜୀବ ଜନ୍ତୁଙ୍କର ପିତା ।
ତୋହର ତେଜଲାଗି ନ ପାରେ ଜାଣ ରହି
ରହୁଥିଲେ ଦିନେକ ତ ନ ବର୍ତ୍ତଇ ମୁହିଁ ।
ଯେବେ ଜନ୍ମହୋଇ କ୍ଷୁଧାର୍ତ୍ତୀ ତୁ ହେଲୁଆଦ୍ୟେ
ତେବେ ବସ ଯାଇ ଏବେ ସବୁ ଗର୍ଭମଧ୍ୟେ ।
ଭଜା କଞ୍ଚା ସିଝାଫଳ ନେବୁ ସବୁଙ୍କର
ଆଉ କଥାଏ କହିବା ଶୁଣ ବୈଶ୍ୱାନର ।
ଶ୍ୱେତନାମେ ମହାରାଜା କରିବ ଯେ ଯଜ୍ଞ
ଆପଣଙ୍କୁ ବରିଣ ସେ ଦେବ ହବିର୍ଭାଗ ।
ସେହି କରିପାରିବ ତୋ କ୍ଷୁଧାକୁ ବିନାଶ
ଆନ ଦେଇ ନ ପାରିବେ ତୋତେ ପୂରାଗ୍ରାସ ।
କେବଳ ତା ଯଜ୍ଞେ ଦିନେ ରହିବୁ ତୁ ଲୁଚି
ସେହି ଏକାବେଳେ ଗ୍ରାସଦେବ ତୋତେ ଯାଚି
ଯେବେ ଖାଇ ପାରିବୁ ତୁ ଏକା ତାକୁ ମାଗି
ଅବଶ୍ୟ ସେ ଶ୍ୱେତରାଜା ଦେବ ତୋତେବେଗି
ଆଉ କଥାଏ କହିବା ଶୁଣ ବାବୁ ତୋତେ -
ଚାରି ବେଦରେ ଲେଖା ତୁ ହୁଅ ପଞ୍ଚଭୂତେ ।
ଦଶ ଦିଗପାଳ ମଧ୍ୟେ ରହ ହୋଇ ଜଣେ
ଯମ ଇନ୍ଦ୍ର ମଧ୍ୟରେ ତୁ ରହ ଅଗ୍ନିକୋଣେ ।
ବ୍ରାହ୍ମଣ କୁଳଯାକେ ତୁ ବୋଲା ଇଷ୍ଟଗୁରୁ
ତୋ ନାମରେ ମନ୍ତ୍ରକାଣ୍ଡି ଆଦ୍ୟେ ବିପ୍ର କରୁ ।
କେବଳ ତୋହର ପୁଣି ଅଟେ ତେଜଦୃଷ୍ଟି
ବସନ୍ତୁ ତୋର ଘରକୁ ବିପ୍ରେ ଦେଇ ପିଠି ।
ତେବେ ତୋର ତେଜଦୃଷ୍ଟି ନ ପଡ଼ିବ ହୋମେ
ତରିବେ ଯେ ପ୍ରାଣୀମାନେ କରି ଶୁଭକର୍ମେ ।
ଚବିଶ ନେତ୍ରରୁ ତୋର ଚାରିଚକ୍ଷୁ ଖର
ସେ ଚାରିଦୃଷ୍ଟିକି ଘରେ ରଖିବୁ ଯେ ତୋର ।
ଆବର ଯେ ବିଂଶଆଖି ଦଶଦିଗେ ବସୁ
ତୋର କିରଣ ସବୁରି ଚକ୍ଷୁରେ ପ୍ରକାଶୁ ।
ଚକ୍ଷୁରେ ବସିଲେ ସବୁ ଭକ୍ଷିବୁ ତୁ ଦେଖି
ଏଣୁ ବିକାର ନୋହିବୁ ଅଭକ୍ଷକୁ ଭକ୍ଷି ।

ଏକ ରସନା ମୁଖେ ତୋ ଦୁଇ ଦୁଇ ଚକ୍ଷୁ
ତେଣୁ ନେତ୍ର ଚବିଶ ଯେ ହେଲା ଦେଖୁ ଦେଖୁ ।
ଦ୍ୱାଦଶ ଶରୀର ତୋର ବହୁତ ଯେ ନାମ
କାଳାନଳ କ୍ରୋଧାନଳ ଅଟଇ ଶୋଷଣ ।
ଜ୍ୱାଳାନଳ ପିଙ୍ଗଳ ଯେ ବର୍ଣ୍ଣାନଳ କହି
ବହନ ଦହନ ଆଉ ବାଡ଼ବାଗ୍ନି ହୋଇ ।
ତ୍ରିଶାଖା ଯେ ନବଶାଖା ସପ୍ତଶାଖାନଳ
ଏତେ ରୂପରେ ଦ୍ୱାଦଶ ତୋର ଜିହ୍ୱାମୂଳ ।
କେଉଁ ଜିହ୍ୱାରେ ପଡ଼ିଲେ ଘୃତ କେଉଁ ଶିରୀ
ଏ କଥାକୁ ବ୍ରହ୍ମାଣ୍ଡେ ତ ନ ପାରିବେ ବାରି ।
ତେଣୁ ହୋମକୁଣ୍ଡରେ ନ ବୁଡ଼ାଇଲେ ଶ୍ରୁବ
ଯେତେ ଧରି ଶ୍ରୁବେ ଏକାବେଳକେ ପଡ଼ିବ ।
ତେବେ ଏକା ରସନା ତୋ କରେ ତାହା ଗ୍ରାସ
ବହିପଡ଼ିଲେ ବିପ୍ରକୁ ନ ଲାଗଇ ଦୋଷ ।
ଅଗ୍ନିକୋଣେ ପ୍ରୋହିତେ ବସିବେ ଦେଇ ପିଠି
ତେବେ ତୋହର ଜାଣ ନ ପଡ଼େ ଚାରି ଦୃଷ୍ଟି ।
ଏତେ କହି ବ୍ରହ୍ମା ଚଳିଗଲେ ଯଶୋବନ୍ତୀ
ଶୁଣ ବାବୁ ହେ ନାରଦ ବିଧାତା କହନ୍ତି ।
ଏଣୁଟି ବ୍ରାହ୍ମଣ ଅଗ୍ନିକୋଣ ପାଖ ମାଡ଼ି
ହୋମରେ ଘୃତ ପକାନ୍ତି ଧରି ଶ୍ରୁବ ବାଡ଼ି ।
ଯେତେକଟି ଶୁଭକାର୍ଯ୍ୟ କରନ୍ତି ବ୍ରହ୍ମାଣ୍ଡେ
ବିପ୍ର ଘେନି ଅଗ୍ନି ଦୃଷ୍ଟି ନ ପଡ଼ଇ କୁଣ୍ଡେ ।
ବିପ୍ର ବ୍ରତ ବନ୍ଧାପନା ମଙ୍ଗଳ ବିଧାନେ
ବିପ୍ର ଲାଗି ଅଗ୍ନି ଦୃଷ୍ଟି ରଖି ଅଗ୍ନିକୋଣେ ।
ଏଣୁ ପୁରୋହିତ୍ ବରି ଦିଏ ଯେ ଦକ୍ଷିଣା
ଚିରଂଜୀବୀ ହୋଇ ବଢ଼େ ତାର ବରକନ୍ୟା ।
ପୁଂସବନ କାର୍ଯ୍ୟକରି ଦେବ ବିପ୍ରେ ଦାନ
ତେବେ ତାର ଯଶ ଶିରୀ ହୁଅଇ ବର୍ଦ୍ଧନ ।
ଗୃହ ପ୍ରତିଷ୍ଠାରେ ତୋଷିଲେକ ଅଗ୍ନି ଦ୍ୱିଜ
ବର୍ଦ୍ଧିତ ତାହାର ବଂଶେ ଲଭେ ଅଇଶ୍ୱର୍ଯ୍ୟ ।
ଯାଗ ଯଜ୍ଞ କରିଣ ଯେ ସନ୍ତୋଷେ ଦିଏଟି
ଏତେ ଲୋକ ଠାବରେ ନ ପଡ଼େ ଅଗ୍ନି ଦୃଷ୍ଟି ।
ଯେ ଜନ ଦାନ ଧ୍ୟାନ ନ କରେ ଶୁଭକାର୍ଯ୍ୟେ
ସେ ଲୋକର ମଙ୍ଗଳ ଯେ କେବେ ନ ଉପୁଜେ
ଆହେ ନାରଦ କହିବା ତୋତେ ଏବେ ଶୁଣ
ସେହି ଶ୍ୱେତ ରାଜା ଯଜ୍ଞ କଲା ଯେମନ୍ତେଣ ।
ତହିଁରେ ଯେତେକ କଥା ବୁଝିବା ସେ ମାର୍ଗ
ଚାରିବେଦୁ ବିପ୍ର ବରି ଦେଲା ହବିର୍ଭାଗ ।
ଅଗ୍ନିଦେବତାଙ୍କୁ ନେଇ ସ୍ଥାପନ୍ତେ ସେ କୁଣ୍ଡେ
ଲିଭିଲେ ତା ଅଗ୍ନି ଦେଖି ଅଛ ଘୃତ ଭାଣ୍ଡେ ।

ପୁଣିହିଁ ପଢ଼ିଲେ ବିପ୍ରମାନେ ମନ୍ତ୍ରକାଣ୍ଡି
ଇନ୍ଧନ ଲଦିଲେ ଯଜ୍ଞକୁଣ୍ଡେ ଖଣ୍ଡି ଖଣ୍ଡି ।
ଲେଉଟି ଅଗ୍ନି ଲଗାନ୍ତେ ଘୃତ ଢାଳିଦେଇ
ଲିଭି ବୈଶ୍ୱାନର ତହିଁ ରହେ ଗୋପ୍ୟହୋଇ ।
ପିଅର କହିଲା ଦିନୁ ଅଛି ଅଗ୍ନି ମନେ
ବିପ୍ରେ ମନ୍ତ୍ର ପଢ଼ିଲେ ସେ ଜାଳିବ କେସନେ ।
ଏହିମତି ଶତେବାର ବ୍ରାହ୍ମଣେ ସ୍ଥାପନ୍ତି
ଯଜ୍ଞକୁଣ୍ଡରେ ଅନଳ ଦେବ ଯେ ଲୁଚନ୍ତି ।
ଅନଳ ନ ଲାଗନ୍ତେ ଯେ ବିପ୍ରମାନେ ଭାଳି
ଯେ ଯାହାର ଭୁବନକୁ ଗଲେ ସର୍ବେ ଚଳି ।
ବିପ୍ରଙ୍କ ଯିବାର ଦେଖି ଶ୍ୱେତ ରାଜା ଉଠି
ଅଗ୍ନି ଦେବତାଙ୍କୁ ନମିଲେ ସେ କୋଟିକୋଟି ।
ଯଜ୍ଞକୁଣ୍ଡକୁ ଚାହିଁଣ ଶ୍ରୁତି ପାଏ ପଢ଼ି
ନମସ୍କାର କରିଣ ସେ ବସେ କରଯୋଡ଼ି ।
ବହୁତ ବିନୟ ହୋଇ ଶ୍ୱେତରାଜା ଭଜି
ବୋଇଲେ ଅଗ୍ନିରେ ଯେବେ ନାହିଁ ଦ୍ରୋହ ଅର୍ଜି
ଯାହାର ତେଜ ବ୍ୟାପଇ ଚଉଦ ବ୍ରହ୍ମାଣ୍ଡେ
ସେ କିପାଇଁ ଘୃତ ଦେଲେ ଲୁଚେ ଯଜ୍ଞକୁଣ୍ଡେ ।
ଯାହାର କଣିକା ମାତ୍ରେ ପ୍ରଳେ ହେବ ମହୀ
ପଲକମାତ୍ରେ ସଂସାରଯାକ ଯିବ ଦହି ।
ସେ ସ୍ୱାମୀ ଉପରେ ଦେଖ ଘୃତ ନିଉଡ଼ିଲେ
କଞ୍ଚା ପାଲଟଇ ପଡ଼ି ଇନ୍ଧନ ଯେ ଦେଲେ ।
ଯାହାର ଜ୍ୟୋତିରେ ପୂରିଅଛି ଦଶଦିଶ
ବ୍ରହ୍ମଠାରୁ କୀଟଯାଏ ସବୁ କରେ ଗ୍ରାସ ।
ଏଡ଼େ ପୁରୁଷ ହୋଇଣ ଦୟା ନାହିଁ ଚିତ୍ତେ
ତୁ ଲୁଚି ରହିଲେ ଲଜ୍ଜା ହେବ ସିନା ମୋତେ ।
ଯୁଗ ଅନୁସାରେ ନିନ୍ଦା ଉପୁଜିବ ଆଗ
ବୋଲିବେକ ଶ୍ୱେତରାଜା କଲା ଭଲା ଯାଗ ।
ଏଡ଼େକ ସମ୍ପର୍ବ କରି ହୋଇଲା ଅପାଣ୍ଡୁ
ଏହା ବୋଇଲେ ମୋ ପ୍ରାଣ ଛାଡ଼ିଯିବ ପିଣ୍ଡୁ ।
ଏଥକୁ ଚାହିଁ କରନ୍ତୁ ମୋତେ ପ୍ରତିକାର
କହନ୍ତି ରାଜାର ବାକ୍ୟ ଶୁଣି ବୈଶ୍ୱାନର ।
ଅଗ୍ନି ବୋଇଲେ ହୋ ତେବେ ଶୁଣ ଶ୍ୱେତରାଜା
ମୋତେ ଏବେ ତୁ କରିବୁ ନିଷ୍ଟେ ଯଜ୍ଞେ ପୂଜା ।
ତେବେ ସଂସାରେ ବୋଲିବେ ତୋତେ ବଡ଼ ଭାଗ୍ୟ
ମହାବାକ୍ୟେ ଧରିବେ ତୋ ନାମ ବିପ୍ରେ ଆଗ
ଶ୍ୱେତବାରାହ କଳ୍ପ ଯେ ବୋଲି ଉଚ୍ଚାରିବେ
ବିବାହ କାଳରେ ବେଦବାକ୍ୟ ସଂକଳ୍ପିବେ ।
ମୁଁ ଯେବେ ଜନ୍ମ ହୋଇଛି ନିଷ୍ଟେ ବ୍ରହ୍ମାଦେହୁ
ସର୍ବକାଳେ ଏ ମୋହର ବାକ୍ୟ ତୋତେ ହେଉ

ମୁଁ ପୁଣି ଆଦ୍ୟରେ ଅଗ୍ନି ଦ୍ୱିତୀୟେ ଅନଳ
ତୃତୀୟେ ବିପ୍ରଗୁରୁ ଚତୁର୍ଥେ କାଳାନଳ ।
ପଞ୍ଚମରେ କ୍ଷୁଧାର୍ତ୍ତୀ ମୁଁ ଷଷ୍ଠେ ଶୂନ୍ୟଗାମୀ
ସପ୍ତମରେ ଦାବାନଳ ଆଉ ଜଠରାଗ୍ନି ।
ଅଷ୍ଟମରେ ଅଣାକାର ଅଟେ ମୋର କାୟେ
ନବମେ ମୋ ରୂପ ବ୍ୟାପେ ଶ୍ରୀନୃସିଂହ ପାୟେ
ଦଶମରେ ଦଶଦିଗ ପରେ କ୍ଷଣେ ବ୍ୟାପୀ
ଗଣନା ହୁଅଇ ଏକାଦଶେ ବ୍ରହ୍ମରୂପୀ ।
ଦ୍ୱାଦଶରେ ଯେ ପ୍ରଳାପ ଅଟେ ମୋର ଦେହୀ
ତୁ କେହ୍ନେ କରିଛୁ ଅଳ୍ପ ଘୃତ ନୃପ ହୋଇ ।
ଆହେ ଶ୍ୱେତରାଜା ତୋତେ କହିବାକ ଶୁଣ
କ୍ଷୁଧାର୍ତ୍ତୀରେ ଦାନ ଦେଲେ ଅଟେ ବଡ଼ ପୁଣ୍ୟ ।
ଦରିଦ୍ର ଛାଡ଼ି ଧନାଢ଼୍ୟେ ଦିଏ ଯେହୁ ଦାନ
ବିଫଳ ହୁଅଇ ତାର ସେହି ଦାନ ଜାଣ ।
ଦଗଧ ଭୂମିକି ସିନା ଶୀତଳ କରିବ
ପାଣିରେ ପାଣି ଇଡ଼ି କି ପୁଣ୍ୟ ଅରଜିବ ।
ଅନ୍ନ ଯେବେ ଦାନ ଦେବ କ୍ଷୁଧାର୍ତ୍ତୀ ଯେ ଥାଉ
ଭୋଜନେ ଅନ୍ନଦେଲେ କି ପୁଣ୍ୟ ଅଛି ଆଉ ।
ଏଥକୁ ବୁଝି କରନ୍ତୁ ରାଜା ମୋତେ ତୋଷ
ଯେତେ ଭୁଞ୍ଜିବିଟି ତେତେଦେବୁ ମୋତେ ଗ୍ରାସ
ଶ୍ୱେତ ରାଜା ବୋଇଲେ ଏ ଛାର କେଉଁକଥା
ଲୁଚିଲୁ ଏଡ଼େ ଯଜ୍ଞରେ ତୋ ପରା ଦେବତା ।
ଏବେ ମୁଁ କହୁଛି ଆଜ୍ଞାକର ମୋତେ ବୋଲି
ଯେତେ ଇଚ୍ଛା ମାଗ ତୋତେ ଦେବି ସତ୍ୟକଲି
ଅଗ୍ନି ବୋଇଲେ ତୋହର ଦେବା ଯେବେସତ
ହାତୀଶୁଣ୍ଢ ମୋଟା ପଡୁ ଯଜ୍ଞରେ ଯେ ଘୃତ ।
ତୁ ଯେତେ ଦିନ ବର୍ତ୍ତିବୁ କର ଯାଗ ବସି
କ୍ଷୀଣଛିଦ୍ର ନୋହି ଧାରା ପଡୁଥିବ ଖସି ।
ଶ୍ୱେତରାଜା ବୋଇଲେ ଯେ ଶତେ ସମ୍ୱତ୍ସର
କରିବି ମୁଁ ଯଜ୍ଞ ବସି ଶୁଣ ବୈଶ୍ୱାନର ।
ଅଗ୍ନି ବୋଇଲେକ ଆଚ୍ଛା ହେଲା ତେବେ ମୋତେ
ବିଧାତା କହୁଅଛନ୍ତି ନାରଦ ଅଗ୍ରତେ ।
ଅଗ୍ନି ଯେ ଭୁଞ୍ଜିବା ପାଇଁ କଲେ ଏଡ଼େ ଲୋଭ
ଏହିଠାରୁ ତେଜ ଜାଣ ଅର୍ଦ୍ଧେ ଶୀର୍ଣ୍ଣ ହେବ ।
ଅତି ଲୋଭ କଲେ ନ ରହଇ ଚିରକାଳ
ଅତି ରସ ଭୁଞ୍ଜିଲେଟି ବ୍ୟାଧି ହୁଏ ମୂଳ ।
ଅତି ସ୍ନେହ କଲେ ଦୁଃଖ ଅବଶ୍ୟଟି ପାଇ
ଅତି ଲୋଭ ବାଣିଜ୍ୟରେ ପାପ ଜାତ ହୋଇ ।
ଅତି ବୁଦ୍ଧି ହେଲେ ବୁଡ଼େ ଅଳପକେ ହେତୁ
ଅତି ଶୋଭାବନକୁ ଯେ ଅନ୍ତେ ହୁଏ ମୃତ୍ୟୁ ।

ଅଛି ସଚ କହିଲେଟି ଶତ୍ରୁର ଯେ ହିତ
ଅଛି ପାପ କରଇ ଯେ ଅତି ଶୁଚିମନ୍ତ ।
ଅଛିହିଁ ଧର୍ମ କଲେ ନ ସହେ ମଧ୍ୟସ୍ଥଳୀ
ଅଛିହିଁ ବଳବନ୍ତ ଯେ ଅଟେ ଯାଏ ଟଳି ।
ଅଛିହିଁ ଜ୍ଞାନବନ୍ତ ଯେ କରେ ମହାପାପ
ଅଛିହିଁ ଦୟାଳୁ ମଧ୍ୟ କରେ ମହାତାପ ।
ଅଛିହିଁ କଷିଲେ ସୁନା ହୁଅଇ ପିତ୍ତଳ
କହନ୍ତି ଯେ ବେଦବ୍ରହ୍ମା ଶୁଣ ତପଶୀଳ ।
ଅଗ୍ନି ଦେବତା ଭୁଞ୍ଜିଲେ କରି ଯେଣୁ ଲୋଭ
ସେହିଠାରୁ ତେଜ ଜାଣ ଅର୍ଦ୍ଧେ ଶୀର୍ଣ୍ଣହେବ ।
ଧଇର୍ଯ୍ୟର ତେଜ ଜାଣ ଅଟେ ଷୋଳବିଶ୍ୱା
ଏଠାରୁ ଅର୍ଦ୍ଧେକ ତେଜ ହେବ ବ୍ୟାଧିମିଶା ।
ଆବର ଯେମନ୍ତ ହେଲା ଆଠବିଶ୍ୱା ପୁଣି
ଦ୍ୱିବିଶ୍ୱା ରଖିବେ ଗୃହେ ଜାଣ ସୁଲକ୍ଷଣୀ ।
ଦ୍ୱିବିଶ୍ୱା ଦେବେ ସ୍ୱର୍ଗରେ ଦ୍ୱିବିଶ୍ୱା ପାତାଳେ
ଦ୍ୱିବିଶ୍ୱା ମଞ୍ଚେ ନେଇଣ ରଖିବେ ଅନଳେ ।
ଏହି ସକାଶୁଁ ଅଗ୍ନିର ରୋଗ ହେଲା ଅଙ୍ଗେ
ତାହା ନାରଦ କହିବା ଶୁଣ ସଦମାର୍ଗେ ।
ସିନ୍ଧୁକୂଳେ ଶ୍ୱେତରାଜା ଗଲେ ତପ କରି
ଅଇଲେ ଦେଖି ବରୁଣ ସେହି ତପଚାରୀ ।
ବୋଇଲେ ଶ୍ୱେତ କରୁଛ କିପାଁ ତପ ଏତେ
କିସ ଅଛି ଲୋଡ଼ା ତୋର ମାଗିନିଅ ମୋତେ ।
ଶ୍ୱେତରାଜା ବୋଇଲେକ ସତ୍ୟ ତେବେ କର
ବରୁଣ ବୋଇଲେ ସତ୍ୟ ଦେଲି ନିଶ୍ଚେ ବର ।
ଶ୍ୱେତରାଜା ବୋଲେ ତୁମ୍ଭେ କଲ ଯେବେ ସତ୍ୟ
ଆନ ଇଚ୍ଛା ନାହିଁ ମୋର ଦେବ କିଛି ଘୃତ ।
ଶତେ ସମ୍ବସର ଯଜ୍ଞ କରିବି ମୁଁ ବସି
ତରିଯିବି ତୋ ପ୍ରସାଦୁଁ ଅଗ୍ନିଦେବ ତୋଷି ।
ବରୁଣ ବୋଇଲେ ଯେବେ ମାଗିଲୁ ତୁ ମୋତେ
ଯେତେପାରୁ ତେତେ ବହିନିଅ ଦେଲିତୋତେ ।
ଶ୍ୱେତରାଜା ବୋଇଲେ କିରୂପେ ନେବି ବହି
ବରୁଣ ବୋଇଲେ ତେବେ ଇନ୍ଦ୍ରେ କହ ଯାଇଁ ।
ତାରବୋଲ ପାଳି ମେଘେ ବହି ନେଇଦେବେ
ଯାଗରେ ତୋତେ ଦେଇଣ ପୁଣି ଆସୁଥିବେ ।
ଶୁଣିଣ ସେ ଶ୍ୱେତରାଜା ଗଲେ ତହୁଁ ଚଳି
କହିଲେକ ସ୍ୱର୍ଗପୁରେ ଇନ୍ଦ୍ର ଆଗେ ମିଳି ।
ବୋଇଲେ ଭୋ ଶଚୀନାଥ ଶୁଣିମା ବିଡ଼ୋଜା
ତୁମ୍ଭେ ଆଜ୍ଞା କଲେ ମୁଁ କରିବି ଅଗ୍ନିପୂଜା ।
ଇନ୍ଦ୍ର ବୋଇଲେ ରାଜା କି ଲୋଡ଼ାହେବ ତୋତେ
ଯାହା ଇଚ୍ଛା ହେବ ଆଜ ମାଗିନିଅ ମୋତେ ।
ସେ ଅଗ୍ନିକୁ ଯେବେ ଆହେ ପାରିବୁ ତୁ ତୋଷି
ସବୁରି ଭାଗ୍ୟ ପ୍ରକାଶ ହେବ ଏବେ ଆସି ।
ଶ୍ୱେତ ବୋଇଲେ ଶୁଣିମା ହେଉ ପୁରୁହୂତ
ତୁମ୍ଭ ଆଜ୍ଞା ହେଲେ ମେଘେ ଦେବେ ଆଣି ଘୃତ
ରତ୍ନାକରକୁ ତୋଷିଣ ମାଗିଅଛି ବର
ତୁମ୍ଭେ କୃପାକଲେ ତୋଷିବଇଁ ବୈଶ୍ୱାନର ।
ଶତେ ବରଷକୁ ଅଛି କଳ୍ପନା ମୁଁ କରି
ଅଳ୍ପ ଘୃତ ଦେଖି ଅଗ୍ନି ଗଲେ ଅପସରି ।
ଯଜ୍ଞକୁଣ୍ଡେ ରହିଲେକ ଲୁଚି ବୈଶ୍ୱାନର
ଯେତେ ଘୃତ ଦେଲେ ମାୟା କଲେ ତତପର ।
ବିରକତ ହୋଇ ବିପ୍ରେ ଗଲେ ଯଜ୍ଞ ଛାଡ଼ି
ସେହିଠାରୁ ଶୁଚିଲି ମୁଁ ଅଗ୍ନି ପାଏ ପଡ଼ି ।
ମୋର ସେବାଦେଖି ଅଗ୍ନି ହେଲେ ମହାତୋଷ
ମାଗିଲେ ପୁରା କରିଣ ଭୁଞ୍ଜିବାକୁ ଗ୍ରାସ ।
ହସ୍ତୀଶୁଣ୍ଢ ମୋଟେ ଧାରା ପଡ଼ିବ ଯେ ଖସି
କ୍ଷଣେ କ୍ଷୁଦ୍ର ନୋହି ବହୁଥାଇ ଅହର୍ନିଶି ।
ଏରୂପେ ମାଗି ଅଛନ୍ତି ଅଗ୍ନି ଏହି ଲାଗେ
ଆଜ୍ଞାଦେଲେ ଚଳିଯିବେ ଏଥୁଁ ଚାରିମେଘେ ।
ରାଜାର ବାକ୍ୟେ ସନ୍ତୋଷ ହୋଇ ପୁରନ୍ଦର
ବୋଇଲେ ଏବେ ଯାଇଣ କର ଯଜ୍ଞ ତୋର ।
ମୋର ଚାରିମେଘେ ଯାଇ ବର୍ଷୁଥିବେ ଘୃତ
ତୋର ବ୍ରତ ସିଦ୍ଧି ହେଉ କହିଲି ମୁଁ ସତ୍ୟ ।
ଶୁଣି ଶ୍ୱେତ ରାଜା ଚଳିଗଲେ ସେହିଲାଗେ
ଚାରିବେଦୁଁ ବିପ୍ରବର ଦେଲେ ହବିର୍ଭାଗେ ।
ଇନ୍ଦ୍ର ଆଜ୍ଞାରେ ଆଣିଲେ ମେଘ ଘୃତ ବହି
ସେ ରାଜ୍ୟର ଯଜ୍ଞକୁଣ୍ଡେ ବରଷନ୍ତି ନେଇ ।
ହସ୍ତୀଶୁଣ୍ଢ ମୋଟେ ଧାରା ପଡ଼ିଲାକ ଖସି
ଭୁଞ୍ଜିଲେ ଅଗ୍ନି ବଡ଼ବା ଅନଳରେ ଶୋଷି ।
ଶତେବର୍ଷେ ଅଗ୍ନିଦେବ ହୋଇଲେ ସନ୍ତୋଷ
ଶ୍ୱେତରାଜାକୁ କଲ୍ୟାଣ କରନ୍ତି ଅଶେଷ ।
ବୋଲନ୍ତି ହୋ ରାଜା ମୋତେ କଲୁ ଯେ ସନ୍ତୁଷ୍ଟ
ଦ୍ୱାପର ଯୁଗରେ ତୁହି ହୋଇବୁ ବିରାଟ ।
ମଘ ମତ୍ସ୍ୟ ଦେଶରେ ତୁ ବସି ରାଜପଦେ
ଅନେକ ଘୃତ ଭୋଗିବୁ ମୋହର ପ୍ରସାଦେ ।
ତିନିଲକ୍ଷ ବରଡ଼ ଯେ ବାରଲକ୍ଷ ଗାଈ
ଅବଶ୍ୟ ଆର ଜନ୍ମରେ ମିଳୁ ତୋତେ ଏହି ।
ଯେ ଲୋକ ପୂଜନ୍ତି ମୋର ମୁଖେ ଦେଇ ଘୃତ
ଅବଶ୍ୟ କାଳେ ବଢ଼ଇ ତାର ଧନ ପୁତ୍ର ।
ଘୃତେ ପଡ଼ିଲେ ଟେକଇ ଯେହ୍ନେ ଅଗ୍ନିଶିଖା
ସେହିମତି ବଂଶ ତାର ବଢ଼ନ୍ତି ଅଲେଖା ।

ଆହେ ଶ୍ୱେତରାଜା ହେଉ ତୋର ଶିରୀପୂର୍ଣ୍ଣ
ଏତେ ବୋଲି ପୁରେ ଗଲେ ସେ ହବ୍ୟବାହନ ।
ଗଲେ ଅଗ୍ନିଦେବ ମହାସନ୍ତୋଷ ଯେ ହୋଇ
ଚଳିଗଲେ ବିପ୍ରେ ସୁଖେ ଦକ୍ଷିଣା ଯେ ପାଇ ।
ରାଜା କରିବାର ଯଜ୍ଞ ହେଲା ସମାପତ
ଶୁଣ ହେ ନାରଦ କହୁଛନ୍ତି ଲୋକତାତ ।
କ୍ଷୁଧାର୍ତ୍ତ ହୋଇ ଭୁଞ୍ଜିଲେ ସିନା ଅଗ୍ନି ଲୋଭେ
ଜୀର୍ଣ୍ଣକରି ନ ପାରିଲେ ବ୍ୟାଧି ହେଲା ଗର୍ଭେ ।
ଲୁଦୁବୁଦୁ ହୋଇ ଶିର ନ ପାରିଲେ ଟାଳି
କେ କାହିଁ ହୋମ କରିଲେ ପକାନ୍ତି ଓକାଳି ।
ଗର୍ଭେ ପଡ଼ିଲେ ଓକାଳି ବାନ୍ତି କରୁଥାନ୍ତି
ମନ୍ଦ ଅଗ୍ନି ହୋଇ ଉଠି ଚଳି ନ ପାରନ୍ତି ।
ଆଶ୍ରା କରିବାରୁ ଅଗ୍ନି ଅଙ୍ଗେ ପୀଡ଼ାମାନେ
ମନ୍ଦାଗ୍ନି ହୋଇଲେ ସର୍ବଜୀବ ତ୍ରିଭୁବନେ ।
ଅଗ୍ନି ମନ୍ଦ ହେବାରୁ ଭୋଜନ ହେଲା ବିଷ
ଜନ୍ତୁମାନେ ତିନିଦିନେ କଲେ ବେଳେ ଗ୍ରାସ ।
ଗ୍ରାସ କଲେ କଠେରେ ସେ ହେଲା ପରିପାକ
ଘୋଟିଲା ଯାବତ ବ୍ୟାଧି ତିନିପୁରଯାକ ।
ସ୍ୱର୍ଗପୁରେ ଦେବକୁଳ ଇନ୍ଦ୍ରଆଦି ଯେତେ
ଯମ ଐଶାନ୍ୟେ ବରୁଣ ମରୁତ ନୈର୍ଋତେ ।
ବ୍ରହ୍ମା ହରିହର ଆଦି ତଳେ ନାଗରାଜ
ତାରା ବାର ଚନ୍ଦ୍ର ସୂର୍ଯ୍ୟ ଗ୍ରହଗଣ ଦ୍ୱିଜ ।
ସବୁରି ଜଠରେ ଅଗ୍ନି ହୋନ୍ତେ ମନ୍ଦ ଜାଣ
ବ୍ୟାଧିମନ୍ତ ହେଲେ କୀଟୁ ବ୍ରହ୍ମ ପର୍ଯ୍ୟନ୍ତେଣ ।
ଯୁବତୀମାନେ ପ୍ରସୂତି ଯେବେ ନିକି ହୋଇ
ତାଙ୍କ ସ୍ତନୁ ପୁତ୍ରେ କ୍ଷୀର ନ ପାରନ୍ତି ଖାଇ ।
ସ୍ତିରୀ ବାଳକ ବୃଦ୍ଧହିଁ ସବୁ ରୋଗମୟେ
ଶୁଣନ୍ତି ନାରଦ କହନ୍ତି ଯେ ବିଧାତାଏ ।
ମର୍ତ୍ତ୍ୟମଣ୍ଡଳ ଯାକରେ ରୋଗ ଘୋଟିଗଲେ
ଆକୁଳେ ଦେବଙ୍କୁ ନରେ ଯାଇଣ କହିଲେ ।
ମାନବ କହନ୍ତେ କ୍ଲେଶପାଇ ଦେବ ଲୋକେ
ଦେବତା କହିଲେ ଦୁଃଖ ଯାଇ ଇନ୍ଦ୍ର ପାଖେ ।
ବାସବ ବୋଇଲେ ମୁହିଁ କହିବି କାହାକୁ
ଭୁଞ୍ଜିଲେ ସୁଧା ଟିକିଏ ନ ଯାଏ ପେଟକୁ ।
ତୁମ୍ଭେ ଯେବେ ଅଇଲ ହେ ଯିବା ଯଶୋବନ୍ତୀ
ବ୍ରହ୍ମାଙ୍କୁ କହିଲେ ହୋଇଯିବ କଷ୍ଟ ଶାନ୍ତି ।
ଏତେ କହିଣ ବାସବ ଗଲେ ତାଙ୍କୁ ଘେନି
ପିତାଙ୍କ ପୁରେ ଭେଟିଲେ ଯାଇ ପଦ୍ମଯୋନି ।
ବ୍ରହ୍ମାଙ୍କୁ ଦେଖି ଶୁତିଲେ ଇନ୍ଦ୍ର ପାୟେ ପଡ଼ି
ଦେବତାମାନେ ରହିଲେ ପାଶେ କରଯୋଡ଼ି ।
ବାସବ ବୋଇଲେ ସ୍ୱାମୀ ଶୁଣିମା ବିଧାତ
ମର୍ତ୍ତ୍ୟଲୋକମାନେ ସବୁ ହେଲେ ରୋଗଗ୍ରସ୍ତ ।
ଦେବତାଙ୍କ ବେଦନା ତ ଆପଣ ଦେଖୁଛ
ଏଥକୁ ଚାହିଁ କହିବା ବୁଦ୍ଧି ବିଷ୍ଟୁ ବସ୍ତ ।
ବିଧାତା ବୋଇଲେ ମୁହିଁ କହିବି କି ତୋତେ
ମୋ ଦେହତ ନ ଲାଗଇ ଦିନେ ଭଲ ମୋତେ ।
ଯେବେ ତୁମ୍ଭେ କହିଲ ହେ କଇଳାସେ ଯିବା
ହରଙ୍କୁ କହିଲେ ଅବା ସର୍ବେ ଭଲ ହେବା ।
ଏତେ କହିଣ ଦେବଙ୍କୁ ବ୍ରହ୍ମା ସଙ୍ଗେ ଘେନି
ରୁଦ୍ରଙ୍କ ପୁରେ ମିଳିଲେ ଯାଇ ପଦ୍ମଯୋନି ।
ଦେଖିଲେ ଯେ ମହାଦେବ ଶେଯେ ଶୋଇଛନ୍ତି
ଭୂମିରେ ପିତ୍ତ ପାଙ୍ଗୁଳା ପ୍ରାୟେ ଗଡୁଛନ୍ତି ।
ବ୍ରହ୍ମା ବୋଇଲେକ ଆମ୍ଭଠାରୁ ଏ ବଳନ୍ତି
ଦେହଯାକ ଫୁଲାଇଣ ତଳେ ପଡ଼ିଛନ୍ତି ।
ଆଜି କାଲି ଭିତରେ ତ ଛୁଟିବେ ଏ ପରା
ଏ କିସ ଭଲ କରିବେ ହେଲା ମାତ୍ର ତୋରା ।
ଏତେ ବୋଲି ହର ଆଗେ ମିଳି ପଦ୍ମଯୋନି
ଶୁତିଲେ ପାୟେ ପଡ଼ିଣ ଦେବତାଙ୍କୁ ଘେନି ।
ଉଠି କହିଲେକ ପୁଣ ଶୁଣ ତ୍ରୟ ନେତ୍ରେ
ଆସିଛୁ ସର୍ବେ ବେଦନା ହୋଇବାରୁ ଗାତ୍ରେ ।
ଏଥକୁ ସ୍ୱାମୀ କରିବ ତୁମ୍ଭେ ଭଲ ବୋଲି
ସମସ୍ତେ ମିଶି ଆସିଛୁ ଦେଖ ଆମ୍ଭେ ଚାଲି ।
ହର ବୋଇଲେ ବ୍ରହ୍ମା ହୋ କହିବି କି ତୋତେ
ଜଳୋଦରୀ ରୋଗ ଦେଖ ହୋଇଅଛି ମୋତେ
ତୁମ୍ଭେ ଯେବେ ଅଇଲ ହେ ଘେନି ମୋତେ ଚାଲ
ବୈକୁଣ୍ଠେ କରିବେ ବିଷ୍ଣୁ ଏକା ସିନା ଭଲ ।
ଏମନ୍ତେ କହନ୍ତେ ହର ହେଲେ ସର୍ବେ ସଜ
ବୈକୁଣ୍ଠ ପୁରେ ଭେଟିଲେ ଯାଇଁ ଦେବରାଜ ।
ଅଗ୍ନି ମନ୍ଦ ହେବାରୁ ଶ୍ରୀହରି ଛନ୍ତି ଶୋଇ
କରିଛି ଅରୁଚି ତାଙ୍କୁ ଓକାଳ ହୁଅଇ ।
ବିଷ୍ଣୁ କଥାରେ ତାଟକା ହେଲେ ଦେବବ୍ରହ୍ମା
ବୋଇଲେ ଯେ କେହ୍ନେ ଘାତକଲା କୃଷ୍ଣବର୍ମା ।
ବିଷ୍ଣୁର ଶରୀର ଯହିଁ ଧରିଅଛି ରୋଗ
ଆଉ ଛାର ଏ ସଂସାରେ ଅଛି କାର ଅଙ୍ଗ ।
ଏମନ୍ତ ପାଞ୍ଚି ଶୁତିଲେ ଧାତା ପାଏ ପଡ଼ି
ବିଷ୍ଣୁର ଆଗେ କହନ୍ତି ଉଠି କରଯୋଡ଼ି ।
ବ୍ରହ୍ମା ବୋଇଲେ ଭୋସ୍ୱାମୀ ତୋର ଏଡ଼େଛଟା
କେମନ୍ତେ ପାଳିବ କହ ଏଡ଼େ ପୃଥ୍ୱୀଗୋଟା ।
ହରି ବୋଇଲେ କହିବା ଶୁଣ ତେବେ ପିତା
ଅଗ୍ନିକି ବଳିଣ ଅଛି ଆଉ କେ ଦେବତା ।

ସେ ଅଗ୍ନି ମନ୍ଦ ହୋଇଛି ଦେଖ ମୋର ହୃଦେ
ବ୍ୟାଧି ଲାଗି ଚଳି ମୁଁ ନ ପାରଇଟି ପାଦେ ।
ଆବର କହୁଛି ମୁହିଁ ଶୁଣ ବ୍ରହ୍ମା ରୁଦ୍ର
ସଂସାରେ ତୋତେ ଦିଅନ୍ତି ଯାହା ନଇବେଦ୍ୟ ।
ବାସନାକୁ ଭୁଞ୍ଜେ ସମର୍ପଇ ଫଳ ରସ
ସେମାନ ଦେଖ ହେଉଛି ଏବେ ମୋତେ ବିଷ ।
ଅଗ୍ନି ମନ୍ଦ ହେବାରୁ ନ ପାରେ ମୁହିଁ ଉଠି
କହିଲ ଯଦ୍ୟପି ଯିବା ନିରଞ୍ଜନ ଭେଟି ।
ଏତେ ବୋଲି ଗଲେ ହରି ନିରଞ୍ଜନ ସୀମା
ତାହାଙ୍କ ସଙ୍ଗରେ ଚଳିଗଲେ ହରବ୍ରହ୍ମା ।
ତହିଁ ପଛେ ଇନ୍ଦ୍ର ଚଳେ ତହିଁ ପଛେ ଦେବେ
ସମସ୍ତେ ମିଳିଲେ ଯାଇ ନିରଞ୍ଜନ ଠାବେ ।
ପାୟେ ପଡ଼ିଣ ଉଠିଲେ ଯୋଡ଼ି ବେନିକର
ହରି ବୋଇଲେ ଭୋ ନିରଞ୍ଜନ ହେ ଠାକୁର ।
ରୋଗୀ ହୋଇକରି ଆମ୍ଭେ ଆସିଛୁ ସମସ୍ତେ
ଆପଣ ଭଲ କଲେ ତ ଯିବୁ ଯେଝାମତେ ।
ନୋହିଲେ ସମସ୍ତେ ରୋଗୀ ହୋଇଥିବୁ ପଡ଼ି
ଏଥକୁ ଚାହିଁଣ ଦିଅ ଅଉଷଧି ବଡ଼ି ।
ନିରଞ୍ଜନ ବୋଇଲେ ମୁଁ ଦେବି ଅବା କିସ
ମୋତେ ତୁମ୍ଭଠାରୁ ହୋଇଅଛି ବଡ଼ କ୍ଳେଶ ।
ଈଠରେ ହୋଇଛି ଦେଖ ଅଗ୍ନି ମୋର ମନ୍ଦ
ଯେବେ କହିଲ ସେବିବା ଚାଲ ନିରାଲମ୍ବ ।
ବିଷ୍ଣୁ କହିଲେ ତେଣିକି ନ ଜାଣେ ମୁଁ ବାଟ
ନିରଞ୍ଜନ ବୋଇଲେ ମୁଁ ଯିବି ତେବେ ଉଠ ।
ଶୁଣି ହର ବ୍ରହ୍ମା ବିଷ୍ଣୁ ଉଠି ତାଙ୍କ ସଙ୍ଗେ
ଭେଟିଲେ ସମସ୍ତେ ଯାଇ ନିରାକାର ଆଗେ ।
ଦେଖିଲେ ଶଯ୍ୟାରେ ନିରାକାର ଛନ୍ତି ପଡ଼ି
ଉଦରରେ ରୋଗ ଘେନି ପେଟ ହୁଏ ତାଡ଼ି ।
କୁନ୍ଥାନ୍ତି କରରେ କୁକ୍ଷି ଧରି ତହିଁ ବସି
ଏମନ୍ତବେଳେ ମିଳିଲେ ସର୍ବେ ପାଶେ ଆସି ।
ନିରଞ୍ଜନ ସହିତେ ଯେ ବ୍ରହ୍ମା ହରି ହର
ସେହି ନିରାକାରଙ୍କୁ ଯେ କଲେ ନମସ୍କାର ।
ନିରାକାର ଆଜ୍ଞାଦେଲେ ଉଠ ଉଠ ବୋଲି
ପୁଚ୍ଛିଲେ ଶୁତିଲ କାହିଁପାଇଁ ଗଡ଼ଘାଲି ।
ନିରଞ୍ଜନ ବୋଇଲେ ହୋ କହିବି ଯେ ତାହା
ସମସ୍ତେ ରୋଗୀ ହୋଇଣ ଅଛୁ ଦେଖ ଏହା ।
ଛାମୁକୁ ଯେ ଆସିଅଛୁ ଭଲ ହେବୁ ବୋଲି
ନିରାକାର ବୋଇଲେ ହୋ ଚାଲ ତେବେ କାଲି
ଶ୍ରୀ ନିଦାବିଷ୍ଣୁଙ୍କଠାରେ କହିବା ଏ ଦୁଃଖ
ଶୁଣିଲେ ସେ ମହାପ୍ରଭୁ କରିବେ ଯେ ସୁଖ ।
ଆନ ଛାର ବଳେ କି ତା ପାରେ ଭଲକରି
ଭଲ କରିବେ ସମ୍ପୂର୍ଣ୍ଣରୂପେ ନରହରି ।
ଶୁଣ ଆହେ ନିରଞ୍ଜନ ବ୍ରହ୍ମା ହରିହର
କିଛି ନ ପାଞ୍ଚ ମୋହର ତୁଲେ ବିଜେକର ।
ସେହି ବିଷ୍ଣୁ ଆମ୍ଭରଟି ଫେଡ଼ିବେ ଯେ ଦୁଃଖ
ଏତେ ବୋଲି ନିରାକାର ଗଲେ ବିଷ୍ଣୁ ପାଖ ।
ଶ୍ରୀବିଷ୍ଣୁ ପାଶେ ଯାଇଣ ସର୍ବେ ହେଲେ ଉଭା
ଦେଖିଲେ ଅଛିଦ୍ର ବ୍ରହ୍ମ ଗୋବିନ୍ଦର ପ୍ରଭା ।
ଆଜାନୁଲମ୍ବିତ ଦୀର୍ଘ ବାହୁ ବେନି ଘେନି
ଅଲୋକିତ ଦେହ ଧରି ଅଛନ୍ତି ମୂର୍ଦ୍ଧନୀ ।
କାହିଁ କେତେ ମୁଖ କାହିଁ ଦିଶେ କେତେ ପିଠି
କାହିଁ ନାସା ଶ୍ରବଣ ଯେ କାହିଁ କେତେ ଦୃଷ୍ଟି ।
ବିରାଜେ ଶରୀରଯାକେ ବହୁ ଶ୍ରୋତ୍ର ନେତ୍ର
ଶରୀରଯାକରେ କେତେ ନାସା କେତେଗାତ୍ର ।
ଶରୀରଯାକରେ କେତେ ଶିର କେତେ ନାମ
ଶରୀରଯାକରେ କେତେ ଆତ୍ମା କେତେ ବ୍ରହ୍ମ ।
ଶରୀରଯାକରେ କେତେ ମୁଖ କେତେ ମନ
ଶରୀରଯାକରେ ପୂର୍ଣ୍ଣ ଦୟା ବୁଦ୍ଧିଜ୍ଞାନ ।
ଶରୀରଯାକରେ ଫୁଟି ଦିଶେ ଚକ୍ଷୁ ଶିର
ସହସ୍ରଶୀର୍ଷା ବୋଲାନ୍ତି ତେଣୁ ଦାମୋଦର ।
ଆକାଶ ପ୍ରତି ତୁଲରେ ନୁହେ ଦେହ କଳି
ପ୍ରକାଶ ହୁଅନ୍ତେ ସେହି ଦେହୁ ବନମାଳୀ ।
ଦଶ ଅବତାର ହୋଇ ହରି ଚଳୁଥାନ୍ତି
ଶୁଣ ହେ ନାରଦ କହନ୍ତି ଯେ ବେଦପତି ।
ଅତି ଅଗୋଚର ଅଟେ ଶ୍ରୀବିଷ୍ଣୁଙ୍କ ହୃଦ
ଯେଣେ ଚାହିଁଲେ ଯେ ତେଣେ ଦିଶେ ଚକ୍ରାୟୁଧ
କୋଟି କୋଟି ଧରଣୀ ଯେ ଦିଶେ ଲୋମମୂଳେ
ନକ୍ଷତ୍ର ଗ୍ରହଗଣ କେ ତହିଁ କଳିପାରେ ।
ସେରୂପେ ବସୁଧା ସଂଖ୍ୟା କେ କରୁ ବା ତାହିଁ
ପୃଥ୍ୱୀରେ ଯାବତ ଜନ୍ତୁ ତହିଁ ଛନ୍ତି ରହି ।
କରନ୍ତି ଯେ ଯାହା ଜାତି ଘେନି କ୍ରିୟାବିଧି
ଏରୂପେ ଦିଶନ୍ତି ଦେବତାଙ୍କୁ ଦୟାନିଧି ।
ଅଲୋକିତ ବ୍ରହ୍ମରାଶି ଦେଖି ଦେବତାଏ
ସମସ୍ତେ କର ଯୋଡ଼ିଣ କହନ୍ତି ବିନୟେ ।
ବୋଲନ୍ତି ଯେ ଆହେ ପ୍ରଭୁ ଶୁକ୍ଳ ଅଭ୍ର ଜ୍ୟୋତି
ଏ ତୁମ୍ଭ ମହିମା ସଂସାରେ କେ ନ ଜାଣନ୍ତି ।
ଆପଣ ଯେ ମହାଭୂତ ଭୂତ ସର୍ବଭୂତ
ତିଳେଖୋଜିଲେ ଯେ ନାହିଁ ଛିଦ୍ରେ ତୋର ଚିତ୍ତ
ପୁରୁଷ ଉତ୍ତମ ତୁମ୍ଭେ ପ୍ରାଣୀଙ୍କ ସୁଗତି
ନମୋ ନମଃ ପୂର୍ଣ୍ଣବ୍ରହ୍ମ ନମୋ ପ୍ରାଣପତି ।

ଏ ପୃଥ୍ୱୀ ମଧ୍ୟେ ଦୁର୍ଗମ ପଥେ ଜନ ଥାଇ
ଆପଣଙ୍କୁ ଭଜିଲେ ସେ ସଦଗତି ପାଇ ।
ଏ ତୁମ୍ଭର ପାଦପଦ୍ମ ସୁଗନ୍ଧ ବିକାଶେ
ସଦା ସୁଖପାଇ ଘେନେ ନିଶି ଯେ ଦିବସେ ।
ସଂସାରେ ବୋଲନ୍ତି ସେମାନଙ୍କୁ ମହାଜନ
ସମସ୍ତ ଲୋକଙ୍କୁ ଯେହୁ ଅଟଇ ବ୍ରହ୍ମଣ୍ୟ ।
ଯେ ଜନ ତୁମ୍ଭର ଭକ୍ତଭାବେ ନିତ୍ୟେ ଆଶ
ପିଅଇ ନିର୍ମଳ କଇବଲ୍ୟ ମୁକ୍ତିରସ ।
ନିଷ୍କାମେ ତୁମ୍ଭଙ୍କୁ ଭଜନ୍ତିଟି ଯେଉଁ ପ୍ରାଣୀ
ସେହି ସେ ଈଷିତେ ପାରେ ମାୟା ମୋହ ଜିଣି
ଯେ ତୁମ୍ଭ ନାମକୁ କରେ ଧରି ଅସ୍ତ୍ର କରି
ସେମାନେଟି ପାପ ନାଶି ଯାନ୍ତି ହେଲେ ତରି ।
ଯେ ତୁମ୍ଭଙ୍କୁ ନ ଚିହ୍ନନ୍ତି ମଜ୍ଜି ଗୃହରସେ
ପତ୍ନୀ ପୁତ୍ର ବେଠିଆ ସେ ଅଟେ ଗୃହବାସେ ।
ଭାରିଯା ବୋଲ ଘେନି ଯେ ଚଳେ ଶିରାଗ୍ରତେ
ଯହିଁ ବସିଲେ ତହିଁ ସେ ଅର୍ଜେ ନାନାମତେ ।
ପୁତ୍ର ପତ୍ନୀ ନିମନ୍ତେ ସେ ସଞ୍ଚେ ଆଣି ଘରେ
ମନ ଯାଇ ରହିଥାଏ ଯୁବତୀ ହୃଦରେ ।
ଗୃହମଧ୍ୟେ ପଡ଼ିଣ ସେ ଲୋଡେ ନାନା ସୁଖ
ଭଜିଲେ ତୁମ୍ଭର ନାମ ଚାଲିଯାଏ ଦୁଃଖ ।
ପର ସେବା ବାଣିଜ୍ୟ କେ କରଇ ବା କୃଷି
ବେଶ୍ୟାଙ୍କୁ ରମଇ ଯେହୁ ନଟ କୂଟେ ରସି ।
ସେ ମାୟାରେ ପଡ଼ି କେହୁ ମଜ୍ଜେ ଅନୁକ୍ଷଣେ
ତାର ଜୀବ ଅକାରଣ ଲେଖା ପଶୁଗଣେ ।
ଫଳକୁ ଯେ ମୂଳକରି ବୃଥା ହୁଏ ଶ୍ରମି
ଧର୍ମର ପଥ ହୁଡ଼ିଣ ମରୁଥାଇ ଭ୍ରମି ।
ତୁମ୍ଭଙ୍କୁ ଯେଉଁ ପ୍ରାଣୀ ନ ଚିହ୍ନେ ଶରୀରାର୍ଥେ
କୋଟି ଜପ କଲେ ତାର ହୁଅଇ ବିଅର୍ଥେ ।
ଜପକୁ ସେ ଜାଣେ ଏକା ତୁମ୍ଭଙ୍କୁ ନ ଜାଣେ
ବସିଛ ତୁମ୍ଭେ ସବୁରି ହୃଦେ ରହି ପୂର୍ଣ୍ଣେ ।
ଜନ୍ତୁଙ୍କ ହୃଦୟ ମଧ୍ୟେ ପ୍ରାଣ ରୂପେ ବସ
ମୂଢ଼ଙ୍କୁ ନୁହଇ ଜଣା ଜ୍ଞାନୀଙ୍କୁ ଯେ ଦୃଶ୍ୟ ।
ଅବ୍ୟକତ ମହାବାହୁ ନିତ୍ୟେ ଜୀବରୂପୀ
ଜପୁଛି ଜୀବହୃଦେ ଜଗତଯାକ ବ୍ୟାପୀ ।
ସେ ଜପ ଉପୁଜିଲାରୁ ଶରୀର ରହିଛି
ନାନା ବିଷୟେ କୁଟୁମ୍ବମାନ ପୋଷୁଅଛି ।
କହୁଛି ଚାହୁଁଛି ଶୁଣୁଅଛି ନାନା ବାଣୀ
ଜପୁଛି ନାମ ଦକ୍ଷିଣା ଦାନ ଦେଇ ଗଣି ।
ତୀର୍ଥାଦି ଯେ ବାରବ୍ରତ କରିଛି ଯେ କର୍ମ
ଏ ଜପ ନ ଚିହ୍ନି କଲେ ହୁଏ ବ୍ୟର୍ଥ ଶ୍ରମ ।

ଏ ଜପ ଚିହ୍ନି ଜପିଲା ଲୋକ ହୁଏ ସାଧୁ
ନୋହିଲେ ସେ ମନବୋଧ ହୁଏ କର୍ମପଦୁ ।
ଆବର ତୁମ୍ଭ ନାମଟି ଅଟେ ତତ୍ତ୍ୱସାର
ହେଳାରେ ଶ୍ରଦ୍ଧାରେ ଶୁଣିଲେ ସେ ହୁଏ ପାର ।
ତୁମ୍ଭେ ସେ ଜଗତଜ୍ୟୋତି ଅଶେଷ ଯେ ଦେହୀ
ସର୍ବ ଦେହେ ଅଛ ପ୍ରାଣ ସ୍ୱରୂପକୁ ବହି ।
କାହିଁ କେତେଦୂର ଅଛ ଆପଣ ଯେ ବ୍ୟାପୀ
କେ ଅନ୍ତ କରି ତୁମ୍ଭଙ୍କୁ ନ ପାରନ୍ତି କଳ୍ପି ।
ଆକାଶରେ ପ୍ରତିତୁଲେ ଦିଶେ ତୁମ୍ଭ ମୂର୍ତ୍ତି
ଡାକିଲା ମାତ୍ରେ କ୍ଷଣକେ ଶୁଣ ଡେରି ଶ୍ରୁତି ।
ଦୂରେ ଡାକିଲେ ଯେ ରଖ ପାଖେ ଥିଲା ପ୍ରାୟେ
ଏଣୁକରି ଅଟେ ପୂର୍ଣ୍ଣାନନ୍ଦ ତୁମ୍ଭ କାୟେ ।
ଶରୀର ପ୍ରତ୍ୟକ୍ଷ ଅଟେ ଶୁକ୍ଳମେଘ ବର୍ଣ୍ଣ
ସବୁରି ହୃଦେ ବସିଣ ଶବ୍ଦ ଧ୍ୱନି ଘେନ ।
ସେହି ଧ୍ୱନି ଶବଦକୁ ଅନାହତ କହି
ସେ ଶବଦ ଥିବାରୁ ଯେ ରହିଛି ଏ ଦେହୀ ।
ଗୋବିନ୍ଦ ସେହି ଶବଦ ଘେନି ଜାତ ହୋନ୍ତି
ଦଶ ଅବତାର ହୋଇ ବଇକୁଣ୍ଠେ ଯାନ୍ତି ।
ବ୍ରହ୍ମା ଆଦି ସେହି ଅଂଶେ ହୁଅନ୍ତି ଉତ୍ପନ୍ନ
ସେହି ଶବଦୁ ଜନମ ହୋନ୍ତି ସର୍ବଜନ ।
ସେହି ଶବଦରୁ ଋଷି ଦେବ ଚନ୍ଦ୍ର ସୂର୍ଯ୍ୟ
ସେ ଶବଦରୁ ବାନର ନରସିଂହ ଗଜ ।
ସ୍ତିରୀ ପୁରୁଷ ସେ ଶବଦରୁ ଜାତ ହୋଇ
ଶୁଣନ୍ତି ନାରଦ ଋଷି ବିଧାତା ଯେ କହି ।
କାହିଁ ମତ୍ସ୍ୟ ହୋଇକରି ମାରୁଛନ୍ତି ଶଙ୍ଖା
କାହିଁ କୂର୍ମରୂପେ ପୃଥ୍ୱୀ ହୋଇଅଛି ଟେକା ।
କାହିଁ ମୁର ଦୈତ୍ୟଙ୍କୁ ଯେ ନିବାରନ୍ତି ହରି
କାହିଁ ବରାହ ହୋଇଣ ଦନ୍ତେ ପୃଥ୍ୱୀ ଧରି ।
କାହିଁ ସ୍ତମ୍ଭରୁ ଜନମି ହିରଣ୍ୟକୁ କୋପେ
କାହିଁ ବାମନ ପାତାଳେ ବଳିକି ଯେ ଚାପେ ।
କାହିଁ ପର୍ଶୁରାମ ସଙ୍ଗେ ଅର୍ଜୁନର ବାଦ
କାହିଁ ରାମ ରାବଣର ହୁଏ ଘୋର ଯୁଦ୍ଧ ।
କୃଷ୍ଣ ଅବତାର କାହିଁ ଦ୍ୱାରକା ବିଜୟେ
କାହିଁ ନୀଳଗିରି ବୌଦ୍ଧରୂପ ହୋଇଥାଏ ।
କାହିଁ ଲାଗିଅଛି କୁରୁ ପାଣ୍ଡବଙ୍କ ଯୁଦ୍ଧ
କାହିଁ ଗୋପଲୀଳା କାହିଁ ବାଳ ଯେ ମୁକୁନ୍ଦ ।
କାହିଁ କୋଟି ବ୍ରହ୍ମା କାହିଁ ଛନ୍ତି କୋଟି ରୁଦ୍ର
କାହିଁ କୋଟି ବିଷ୍ଣୁ ଛନ୍ତି କାହିଁ କୋଟି ଇନ୍ଦ୍ର ।
କାହିଁ କୋଟି ବ୍ରହ୍ମା ଲାଗିଅଛି ଆୟବ୍ୟୟ
ଯହିଁ ଚାହିଁଲେ ଦିଶନ୍ତି ତହିଁ ଦେବରାୟ ।

କାହିଁ କିପରି ବସିଛି କାହିଁ ଗୋଲାହାଟ
କାହିଁ ପାର୍ଟଣା ବସିଛି କାହିଁ ପୁର ପେଣ୍ଠ ।
କାହିଁରେ ଯେ ବିକା କିଣା ଲାଗିଛି ବଣିଜ
ଦେଖିକରି ବ୍ରହ୍ମା ଇନ୍ଦ୍ର ହୋଇଲେ ଆଶ୍ଚର୍ଯ୍ୟ ।
ବ୍ରହ୍ମା ବୋଇଲେ ମୁଁ ଏକା ବୋଲି ଜାଣିଥିଲି
ଏଠାରେ ଦେଖିଲି ବ୍ରହ୍ମା ଅନ୍ତ ନ ପାଇଲି ।
ରୁଦ୍ର ପାଞ୍ଚିଲେ ବିଚାରୁଥିଲି ମୁହିଁ ଏକ
ଏଠାରେ ଦେଖିଲି ଶମ୍ଭୁ ଅଛନ୍ତି ଅଲେଖ ।
କୃଷ୍ଣ ପାଞ୍ଚନ୍ତି ଯେ ଆଉ କିରୂପେ ମୁଁ ବଡ଼
ଏଠାରେ ଦେଖିଲି ଅଗୋଚର ହରି ଖେଡ଼ ।
ଇନ୍ଦ୍ର ପାଞ୍ଚିଲେ ଏଥକୁ ମୁହିଁ କିସ କ୍ଷମ
ଯହିଁ ଲକ୍ଷେ ଇନ୍ଦ୍ର ସେବୁଛନ୍ତି ପରଂବ୍ରହ୍ମ ।
ଚନ୍ଦ୍ର ସୂର୍ଯ୍ୟ ଅଗ୍ନି ଯମ ବରୁଣ ଅନନ୍ତ
ବାୟବ୍ୟ କୁବେର ମିଶି ଆବର ନୈର୍ଋତ ।
ଯାବତ ଜୀବ ଅଛନ୍ତି ଏଥେ ଯେଣୁ ପୂରି
କେ ଏହା ସଂସାରେ କହିବଟି ଅନ୍ତକରି ।
ନିର୍ମୋହ ନିର୍ମାୟା ଅହିଂସାଟି ଯେଉଁ ଦେହୀ
ପଞ୍ଚାଶ କୋଟି ପୃଥ୍ୱୀ ଯା ହୃଦେ ଛନ୍ତି ରହି ।
ଜଳ ସ୍ଥଳ ଆକାଶ ଯେ ସର୍ବ ଚର ସ୍ଥିତି
ବ୍ରହ୍ମା ମୂର୍ତ୍ତି ସେହି ଏକା ରୁଦ୍ରହିଁ ସେ ମୂର୍ତ୍ତି ।
ବିଷ୍ଣୁହିଁ ସେହିରୂପେ ଯେ ହ୍ୱନ୍ତି ଆପେ ଆପେ
ସବୁରି ହୃଦେ ବସନ୍ତି ପାତ୍ର ଅନୁରୂପେ ।
ଭଲଙ୍କୁ ଘେନି ଯଦ୍ୟପି ତେଜନ୍ତେ ମଧମ
ସେ କାହିଁ ବୋଲାନ୍ତେ ସଂସାରରେ ପରଂବ୍ରହ୍ମ ।
ଏମନ୍ତେ ବ୍ରହ୍ମାଙ୍କୁ ଯାଇ ଭେଟିଲେକ ସର୍ବେ
କୋଟିକୋଟି ଓଳଗି ଯେ ପଡ଼େ ଠାବେଠାବେ
ନିରାକାର ଉଭା ହୋଇ ଜଣାଇଲେ ଆଗ
ବୋଇଲେ ହେ ସ୍ୱାମୀ ପ୍ରାଣୀଙ୍କର ଦେଖରୋଗ
ତୁମ୍ଭେ ନ ରଖିଲେ ଏବେ ନ ରହେ ସଂସାର
ଦେଖ ଆସିଛନ୍ତି ଏଥି ବ୍ରହ୍ମା ଇନ୍ଦ୍ର ହର ।
ସମସ୍ତେ ଉଦର ରୋଗେ ନ ପାରନ୍ତି ଉଠି
ମୁହିଁ ମଧ ହୋଇଅଛି ଦେଖ କେଡ଼େ କଷ୍ଟି ।
ନିରଞ୍ଜନ ଦୁଃଖ କହିଲେ ତ ନ ସରଇ
ଏ ସବୁ ଲୋକଙ୍କ କଷ୍ଟ ଫେଡ଼ ଭାବଗ୍ରାହୀ ।
ଜୀବଜନ୍ତୁଙ୍କ ଦୁଃଖ କି କହିବି ତୁମ୍ଭରେ
ଯହିଁରେ ଦେବେ ପଡ଼ିଣ ଅଛନ୍ତି ରୋଗରେ ।
ଏ କଥା ବୁଝିଣ ସ୍ୱାମୀ ଆଜ୍ଞା ବେଗେ କର
ବଚନ ଫିଟିଲେ ଆମ୍ଭେ ଯିବୁ ଯେଝାପୁର ।
ଶୁଣିଣ ନିଶ୍ଚଳ ବିଷ୍ଣୁ ଆଜ୍ଞା ଦେଲେ ମୁଖୁ
ବୋଇଲେ ହେ ଦେବ ଜଣେ ନିଅ ଆମ୍ଭପାଖୁ ।
ତୁମ୍ଭର ଦେହେ ହୋଇଛି ସିନା ଅଗ୍ନି ମନ୍ଦ
ନିଅ ବୈଦ୍ୟ ଜଣେ ଭଲକରୁ ତୁମ୍ଭ ହୃଦ ।
ଅଗ୍ନି ଭଲ ନୋହିଲେ ନ ଯାଇ ତୁମ୍ଭ ବ୍ୟାଧି
ଅଗ୍ନି ରୂପେ ସିନା ମୁହିଁ ଲଭିଛି ପ୍ରସିଦ୍ଧି ।
ଅଗ୍ନିକି ବଳିଣ ଆଉ ଦେବ ଅଛି କାହିଁ
ସାକ୍ଷାତେ ସେ ବ୍ରହ୍ମଅଗ୍ନି ଅଟେ ସିନା ମୁହିଁ ।
କରଇ ଅଗ୍ନିକି ପୂଜା ଜାଣୁ ଯେହୁ ନିତି
ସେହିମାନଙ୍କୁ ସଂସାରେ ବୋଲି ଅଗ୍ନି ହୋତ୍ରୀ ।
ଅଗ୍ନି ହୋତ୍ରୀ ଲୋକଙ୍କର ଫଳ ନୁହେ ଅନ୍ତ
କୋଟି ଗଙ୍ଗାସ୍ନାନ କଲେ ନୁହେ ସରିବ୍ରତ ।
ଅଗ୍ନି ହୋତ୍ର ଲୋକ ଜାଣ କେଉଁସ୍ଥାନେ ଥାଏ
ତାହାକୁଟି ଶାଳଗ୍ରାମ କୋଟି ସରି ନୋହେ ।
ଅଗ୍ନିକି ଯେବଣ ସ୍ତିରୀ ପାକସିଦ୍ଧି ବେଳେ
ନିତ୍ୟେଜଳ ଦେଇ ନଇବେଦ୍ୟ କରେ ଭଲେ ।
ସେ ସ୍ତିରୀଙ୍କି ସଂସାରେଟି ଅନ୍ନପୂର୍ଣ୍ଣା କହି
ସର୍ବଦା ଏକ ପତିରେ ତାର ଦିନ ଯାଇ ।
ସ୍ୱାମୀରେ ଯେ ସଉଭାଗୀ ବୋଲାଇ ସେ ନାରୀ
ସେହୁ ଯହିଁ ଥାଇ କୋଟିଯଜ୍ଞ ନୁହେ ସରି ।
ଅଗ୍ନି ଦେବତାଙ୍କୁ ଯେହୁ ପୂଜଇ ଆରୋଗ୍ୟେ
ଧନ ସନ୍ତାନ ବହୁତ ହୁଏ ତାର ଭାଗ୍ୟେ ।
ରୋଷାଇଶାଳୁ ଅଗ୍ନିକି ପାକସିଦ୍ଧି ଯାଏଁ
ଗୃହରୁ ନ କାଢ଼ିଣ ଯେ ପରକୁ ନ ଦିଏ ।
ଇଷ୍ଟଦେବତା ମଣୋହି ଶେଷଯାଏ ଘରୁ
ପରଲୋକ ମାଗିଲେ ଯେ ନ ଦେବ ଚୁଲ୍ଲୀରୁ ।
ଆନ ପରକାରେ ଅଗ୍ନିଥିବା ଯେ ଗୃହରେ
ସେ ଅଗ୍ନିକି ପଛେ ଦେବ ଅନ୍ୟ ଜାତିଠାରେ ।
ନୋହିଲେ ଯେ ଇଷ୍ଟପୂଜା ସାରି ଦେବଅଗ୍ନି
ସେହି ଲୋକରଟି କେଭେ ନୁହେଁ ଶିରୀହାନି ।
ଏରୂପେ ଯେ ଆଜ୍ଞାଗୋଟି ଦେଇ ମହାପ୍ରଭୁ
ଧ୍ୟାନେ ବସି ପୁରୁଷେକ ପ୍ରକାଶିଲେ ଗର୍ଭୁ ।
ତାହାଙ୍କୁ ଯେ ଆଜ୍ଞାଦେଲେ ଯାଙ୍କ ସଙ୍ଗେ ଯାଅ
ବ୍ରହ୍ମାର ଯିବାଯାଏ ଯେ ବୈଦ୍ୟ ହୋଇ ରହ ।
ଦେବଙ୍କର ବୈଦ୍ୟ ହୋଇ ଥାଅ ଯୁଗେ ଯୁଗେ
ଆବର ଦେଉଛୁ ଲକ୍ଷେ ଗ୍ରନ୍ଥ ନିଅ ସଙ୍ଗେ ।
ସେହି ଲକ୍ଷେ ଗ୍ରନ୍ଥଯାକ ବେନିଭାଗ କର
ତହିଁରୁ ଅର୍ଦ୍ଧେ ନେଇଣ ରଖ ସ୍ୱର୍ଗପୁର ।
ଆବର ଅର୍ଦ୍ଧେକ ପୁଣ କରିବ ଯେ ଦୁଇ
ଅଧେ ମର୍ତ୍ତ୍ୟେ ଅଧେ ଦେବ ପାତାଳରେ ନେଇ
ପ୍ରଥମରେ ଅଗ୍ନି ଯାଇ କରିବୁ ଯେ ଭଲ
ତେବେ ଯାଇ ସର୍ବଜୀବେ ହେବେ ସମତୁଲ ।

ଏତେକ କହି ବିଷ୍ଣୁ ସେ ପୁରୁଷକୁ ଆଣି
ଦେବତାଙ୍କ ଆଗେ ନେଇ ଦେଲେ ଚକ୍ରପାଣି ।
ଅପୂର୍ବ ଦେଖିଣ ଦେବେ ଧନ୍ୟ ଧନ୍ୟ କଲେ
ଶୁଣ ହେ ନାରଦ ଏଥୁଅନ୍ତେ କଥା ଭଲେ ।
ସର୍ବମୁଖେ ଧନ୍ୟ ଧନ୍ୟ ପଦ ଯାନ୍ତେ ସ୍ଫୁରି
ତେଣୁ ସେ ତାହାର ନାମ ହେଲା ଧନ୍ୱନ୍ତରି ।
ଧନ୍ୱନ୍ତରି ଅବତାର ବିଷ୍ଣୁ ଏକା ହେଲେ
ବ୍ରହ୍ମାଣ୍ଡଯାକର ସେହୁ କଳଙ୍କ ଖଣ୍ଡିଲେ ।
ଧନ୍ୱନ୍ତରି ଜନମନ୍ତେ ସବୁ ଗଲା ରୋଗ
ଚାରିଆଡ଼େ କୋଟି କୋଟି ପଡ଼ଇ ଓଳଗ ।
ହରିବୋଲ ଶବଦ ଶ୍ରୀରାମ ନାମ ଧ୍ୱନି
କୃଷ୍ଣ କୃଷ୍ଣ ବୋଲି ଚଳିଗଲେ ପୁର ତିନି ।
ବ୍ରହ୍ମା ମେଲାଣି ମାଗିଣ ଗଲେ ଯଶୋବନ୍ତୀ
ଈଶ୍ୱର ଚଳିଗଲେକ କଇଳାସ କତି ।
ଆବର ଦେବେ ଚଳିଲେ ମେଲାଣି ଯେ ମାଗି
ଇନ୍ଦ୍ରହିଁ ଚଳିଲେ ଧନ୍ୱନ୍ତରି ଘେନି ବେଗି ।
ଶ୍ରୀହରି ବିଜେ କରିଲେ ବଇକୁଣ୍ଠପୁରୀ
ବ୍ରହ୍ମାଣ୍ଡ ପାଳିଲେ ଧନ୍ୱନ୍ତରି ଜାତ କରି ।
ନିରଞ୍ଜନ ସ୍ୱାମୀ ଚଳିଗଲେ ନିତ୍ୟସ୍ଥଳେ
ନିରାକାର ଚଳିଗଲେ ଗୋଲକମଣ୍ଡଳେ ।
ଯେ ଯାହାର ପୁରେ ଯାଇ ହୋଇଲେ ପ୍ରବେଶ
ଶ୍ରୀହରି ଶରଣ ବିପ୍ରେ ପୀତାମ୍ବର ଦାଶ ।
ଶ୍ରୀ ନୃସିଂହ ପୁରାଣୁ ଏ ଅମୃତ ସାଗର
ତରିବଇଁ ଭେଳା ବାନ୍ଧି ଭରସା ଯେ ମୋର ।
କରିଛି ଏମନ୍ତ ପ୍ରତିଆଶା ମୂଢ଼ମନ
ଏଥକୁ ଯେ କୃପା ବାରେ କର ସାଧୁଜନ ।
ପରୀକ୍ଷିତ ମହାରାଜା ବସିଣ ଯେ ସୁଖେ
ପୁରାଣ ଶୁଣୁଅଛନ୍ତି ଶୁକଙ୍କର ମୁଖେ ।
ଆନନ୍ଦଭାବେ କହନ୍ତି ମୁନି ବ୍ୟାସସୁତ
ବୋଲନ୍ତି ହେ ସାବଧାନେ ଶୁଣ ପରୀକ୍ଷିତ ।
ପୂର୍ବେ ଯେ ନାରଦ ବ୍ରହ୍ମାଙ୍କର ବେହରଣେ
ବେଦବର ମୁଖରୁ ଯେ ପୁରାଣକୁ ଶୁଣେ ।
ତାହା ତୋତେ କହୁଅଛି ଶୁଣ ନୃପମଣି
ଶ୍ରୀ ନୃସିଂହ ଚରିତ ଏ ସୁଧାରସ ବାଣୀ ।



## ଧନ୍ୱନ୍ତରୀ ବୃତ୍ତାନ୍ତ ଓ ଅଗ୍ନିଙ୍କର ଇନ୍ଦ୍ରଙ୍କୁ ଖାଣ୍ଡବବନ ପ୍ରାର୍ଥନା

ନାରଦ ପଚାରନ୍ତେ ଯେ ତାଙ୍କୁ ବେଦବର
ବୋଲନ୍ତି ହୋ ଶୁଣ ଧନ୍ୱନ୍ତରୀ ସମାଚାର ।
ଦେବଙ୍କର ସଙ୍ଗେ ବିଷ୍ଣୁ ଦେଲେ ପଠିଆଇ
ଅଗ୍ନିପୁରେ ଧନ୍ୱନ୍ତରୀ ମିଳିଲେକ ଯାଇ ।
ଦେଖିଲେ ସେ ଅଗ୍ନିଙ୍କର ନାହିଁ ତେଜ ଭାବ
ଶେଯେ ପଡ଼ିଛନ୍ତି ଶୋଇ ହୋଇ ଅକର୍ତ୍ତବ୍ୟ ।
ଚଳ ପ୍ରଚଳ ଲୋଡ଼ିଲେ ନାହିଁ ତାଙ୍କ ଟିକେ
କେବଳ ନିଃଶ୍ୱାସ ମାତ୍ର ବହୁଅଛି ନାକେ ।
ଏମନ୍ତବେଳେ ଯେ ଧନ୍ୱନ୍ତରୀ ଗଲେ ଏକା
ଅଗ୍ନିଙ୍କର ହସ୍ତ ଧରି ଚିପିଲେ ନାଟିକା ।
ଦେହରେ ଗୁଣ ବୁଝିଣ କହିଲେ ପ୍ରୟୋଗ
ବୋଇଲେ ଯେ ଅଜୀର୍ଣ୍ଣରୁ ହେଲା ପେଟରୋଗ
କାଶ ଶ୍ୱାସ ହିକ୍କା ଆଉ ଅଜୀର୍ଣ୍ଣ ଧୁଗଡ଼ି
ପେଟଫୁଲା ଟାଣିବା ଏ ବ୍ୟାଧି ଯେତେ ନାଡ଼ୀ
ଉଷାଜଳ ପିଅନ୍ତେ ସେ ହୋଇଯିବ ଭଲ
ଭୁଞ୍ଜିବ ଜୀରା ଲବଙ୍ଗ ତୁଳେ ଜାଇଫଳ ।
ଯେଉଁରୂପେ ଭୁଞ୍ଜିବ ଶୁଣ ଆହେ ବିଧିପୂର୍ବ
ବେନି ଗୋଟି କୁଞ୍ଚା କରିବ ଯେ ଏକଭାବ ।
ତହିଁରୁ କୁଞ୍ଚା ଗୋଟିଏ ତତାଇବ ଆଣି
ବାଲିରେ ଥୋଇ ଗୋଳିବ ଜଳ ତହିଁ ପୁଣି ।
ଔଷଧ ପୂରାଇ କୁଞ୍ଚାକୁ ଯେ ଘୋଡ଼ାଇବ
ସେ କୁଞ୍ଚାର କଣ୍ଠଯାଏ ବାଲି ଟେକିଦେବ ।
ତପତ ଲାଗି କେତେକ ଜଳ ଯିବ ଶୁଖି
ପ୍ରଭାତରୁ ଉଠି ତାହା ଆଣିବଟି ଦେଖି ।
ଭୁଞ୍ଜିବ ଅରୁଣ ଉଦେକାଳେ ଦନ୍ତ ମାଜି
ତେବେ ଜଠରେ ଉଠିବ ଜାଣ ଅଗ୍ନି ତେଜି ।
ଏରୂପେ ତିନିସପ୍ତାହ କଲେ ଭଲ ହେବ
ଉଦର ରୋଗ ଛାଡ଼ିଣ କ୍ଳେଶ କ୍ଷୟ ଯିବ ।
କ୍ଷୁଧା ତୃଷା କରିବ ଯେ ହୋଇ ମହାତେଜ
ଏହି ପ୍ରୟୋଗ ଅଗ୍ନିକି କହି ଦେଲେ ଆଜ ।
ଏତେ କହି ଧନ୍ୱନ୍ତରି ଦେଲେ ଉଷାଜଳ
ଭୁଞ୍ଜିଲେକ ବ୍ରହ୍ମଅଗ୍ନି ଟେକି ଦାବାନଳ ।
ଷୋଳବିଶ୍ୱା ଯେ ରୋଗରୁ ଅର୍ଦ୍ଧେ ଭଲ ହେଲା
ଆବର ଅର୍ଦ୍ଧେ ଶରୀରୁ ରୋଗ ନ ଛାଡ଼ିଲା ।
ଅଗ୍ନିର ଅର୍ଦ୍ଧେକ ତେଜ ଉଠିଲା ପ୍ରଚଣ୍ଡେ
ଜୀବ ଜନ୍ତୁମାନେ ଭଲ ହୋଇଲେ ବ୍ରହ୍ମାଣ୍ଡେ ।
କୀଟରୁ ଯେ ବ୍ରହ୍ମଯାଏ ଗଲେ ଭଲ ହୋଇ
ଶୁଣ ହେ ନାରଦ ଋଷି ବେଦବର କହି ।
ଯେତେକ ତେଜ ଅଗ୍ନିର ଲାଗେ ତିନିପୁରେ
ତେତେ ଭଲ ହେଲେ ଧନ୍ୱନ୍ତରୀ ଔଷଧରେ ।
ଆବର ଅଧେ ନୁହନ୍ତେ ଅଗ୍ନି ଜାଣ ଭଲ
ଧନ୍ୱନ୍ତରୀ ବୋଲେ ମୁଁ ନ ପାରେ କରି ତୁଲ ।

ଅଗ୍ନି ବୋଇଲେ କିରୂପେ ଭଲ ହେବ ତେଜ
ତୁମ୍ଭଙ୍କୁ ପେଷିଲେ ଆମ୍ଭହିତେ ଦେବରାଜ ।
ଏଡ଼େ ଯୋଗ୍ୟହୋଇ କିରୂପେ ଯେ ଯିବ ଛାଡ଼ି
କହିଛି ଶାସ୍ତ୍ରରେ ରଣ ଥିଲେ ଶେଷେ ବଢ଼ି ।
ବ୍ୟାଧି ଶେଷ ନ ରଖି ନ ରଖି ଶତ୍ରୁ ଶେଷ
ଏମାନେ ରହିଲେ କାଳେ ବଢ଼ଇ ଅବଶ୍ୟ ।
ଧନ୍ୱନ୍ତରି ବୋଲେ ଶୁଣ ଅନଳଦେବତା
ଆତୁର ମଳୁକୁ ବୈଦ୍ୟ ନ ଲାଗଇ ପିତା ।
ଅଳପ ଉଶ୍ୱାସ ହେଲେ ବନ୍ଧୁ ମଧ୍ୟେ ଲେଖେ
ଆରୋଗ୍ୟ ହେଲେ ଶରୀର ହୋଇ ଆଡ଼ବାଙ୍କେ ।
ପୁଣ ପୁଣ ଦେଖିଲେ ସେ ମଣେ ଶତ୍ରୁ ପ୍ରାୟେ
ପାଞ୍ଚଇ ନ ପୁଣଦ୍ରବ୍ୟ ମାଗି ଆସିଥାଏ ।
ଦେହ ଆରୋଗ୍ୟ ହେଲେ ସେ ଏହା ବିଚାରଇ
ଏଣୁ ବୈଦ୍ୟର ଜୀବିକା ଅଧମ ଅଟଇ ।
ଭଲ ହେଲେ ବୋଲନ୍ତି ଯେ ଆୟୁ ମୋର ଥିଲା
ମୃତ୍ୟୁ ହୋଇଲେ ବୋଲନ୍ତି ବୈଦ୍ୟନାଶ କଲା
ବୈଦ୍ୟକୁ ଜାଣ ହେ ଅଗ୍ନି ସବୁକାଳେ ନିନ୍ଦା
ନୀଚଲୋକ ବୈଦ୍ୟକୁ ନ ଚିହ୍ନଇ ସର୍ବଦା ।
ବୈଦ୍ୟର ଯେତେକ ଶ୍ରମ କେହି ନ ଜାଣନ୍ତି
ଅଣବିଶ୍ୱାସରୁ ଏଣେ ବ୍ୟର୍ଥେ ମରିଯାନ୍ତି ।
ଏଣୁକରି ଔଷଧ ନ କାଟେ ତାକୁ ଜାଣ
ତୁମ୍ଭେ ଆତୁର ହେଲେହେଁ ହେବ କେଉଁଗୁଣ ।
ଆପଣ ଅର୍ଜିଛ ଏହା ପୂର୍ବ କର୍ମ ଅଙ୍ଗେ
ଭୋଗ ନୋହିଲେ ବ୍ୟାଧି ନ ଯାଏ ଏହିଯୁଗେ ।
ଏ କଥା ବିଚାରିଥାଅ ଅଗ୍ନି ଦିନାକେତେ
କଥା ଏକ କହିବା ହୋ ଶୁଣ ଭବିଷ୍ୟତେ ।
ବଦରିକା ଦେଶେ ହରି ହେବେ ଅବତାର
ଯୁଝିବ ସେ ସ୍ୱାମୀତୁଲେ ଆସି ମୁରାସୁର ।
ଆନନ୍ଦ ବନକୁ କ୍ରୋଧେ ଦେବ ସେହି ଟାଳି
ସ୍ୱର୍ଗକୁ ବୋଲିଣ ଫିଙ୍ଗି ଦେବ ଦୈତ୍ୟତୋଳି ।
ସେ ବନରେ ବିଜେ କରିଥିବେ ନରହରି
ଦେବେ ଦେଖୁଥିବେ ଆସି ତୋଟାଯାକ ପୂରି ।
ଏମନ୍ତ ବେଳେ ମିଳିବ ତହିଁ ଯାଇଁ ତୁମ୍ଭେ
ବିଷ୍ଣୁଙ୍କୁ ବୋଲିବ ଭଲକର ମୋତେ ଏବେ ।
ଇନ୍ଦ୍ରଙ୍କୁ ଯେ ଭଲ କରିଥିଲେ ହରି ଏଣେ
ତୁମ୍ଭେ କହିଲେ ସୁଦୟା କରିବେ ଆପଣେ ।
ଏତେ କହି ଧନ୍ୱନ୍ତରୀ ଗଲେ ସ୍ୱର୍ଗପୁର
ଶୁଣନ୍ତି ନାରଦ କହୁଛନ୍ତି ବେଦବର ।
ଏହି ସକାଶରୁ ଅଗ୍ନି ହୋଇଛନ୍ତି କ୍ଲେଶୀ
ବାଟ ଚାଲି ନ ପାରି ଆସନ୍ତି ଉଠି ବସି ।
ବହୁ କଷ୍ଟ ସହି ମିଳିଲେକ ଆସି ବନେ
ରୋଗୀ ହୋଇ ବସିଲେ ସେ ବିଷ୍ଣୁ ସନ୍ନିଧାନେ
ବିନୀତ ହୋଇ ଛାମୁରେ ଜଣାନ୍ତି ଅନଳ
ଶୁଣନ୍ତି ଶ୍ରୀ ନାରାୟଣ ପ୍ରଭୁ ଆଦିମୂଳ ।
ବୋଲନ୍ତି ହେ ପ୍ରଭୁ ପାରି କର ମୋର କଷ୍ଟ
ଲୁଦୁବୁଦୁ ବ୍ୟାଧିରେ ଯେ ଫୁଲିଛି ମୋ ପେଟ ।
ଲକ୍ଷେ ବରଷ ହୋଇଲା ପାଇଲିଣି ଦୁଃଖ
ଏବେ ନିସ୍ତରିଲି ମୁହିଁ ଦେଖି ପଦ୍ମମୁଖ ।
ଇନ୍ଦ୍ରର ସହସ୍ରଯୋନି କରିଛ ଯେ ଭଲ
ସେହି ବନଖଣ୍ଡ ଦିଅ ଭକ୍ଷି ହେବି ତୁଲ ।
ଅପାରକାଳୁ ପ୍ରଭୁଙ୍କୁ ଅଛି ଅନୁସରି
ଔଷଧ କିଛି ଦେଲେ ଯେ ହେବି ରୋଗୁ ପାରି ।
ଇନ୍ଦ୍ରଙ୍କୁ ଦେଲେ ଯେ ବନ ଦିଅ ଏବେ ମୋତେ
ଭୁଞ୍ଜିଲେ ଭଲ ହୋଇଣ ରହିବି ଜଗତେ ।
ଏମନ୍ତ ବନ ମାଗନ୍ତେ ଆସି ବ୍ରହ୍ମଅଗ୍ନି
ସଭାରେ ବସିଣ ଇନ୍ଦ୍ର କମ୍ପେ ତାହା ଶୁଣି ।
ବୋଲଇ ଅଗ୍ନି ମାଗଇ ବନ କେଉଁ ଲାଜେ
ମୋତେ ଦେଇଛନ୍ତି ତାହା ପୂର୍ବୁ ଦେବରାଜେ ।
ତାହା କି ବୋଲି ମାଗଇ ଆସି ଏହୁ ତୁଣ୍ଡେ
କାହାକୁ ନ କରେ ନଷ୍ଟ ଏ ଅଗ୍ନି ବ୍ରହ୍ମାଣ୍ଡେ ।
ମୋତେ ଦେବା ପଦାର୍ଥକୁ ମାଗୁଛି କିବୋଲି
ଏଡ଼େ ନାସ୍ତିକ ବୋଲିଣ ଏବେ ସେ ଜାଣିଲି ।
ପତ୍ନୀ ଉଚ୍ଛିଷ୍ଟ ହେଲାରୁ ଭୁଞ୍ଜେ ଏଡ଼େ ଲୋଭୀ
ପାପହେଲେ ସ୍ୱାହାବୋଲି ଦେଇ ହୋମେହବି
ପତ୍ନୀ ଉଚ୍ଛିଷ୍ଟ ଭକ୍ଷିବା ଲୋକର କି ବୁଦ୍ଧି
ଏମନ୍ତ ବୋଲିଣ କଳିକଲେ ଜମ୍ଭଭେଦୀ ।
ଏଥି ଉତ୍ତାରୁ ଜାଣିଲେ ବିଷ୍ଣୁ ଇନ୍ଦ୍ର ମନ
ଅଗ୍ନିକି ବୋଇଲେ ତେବେ ଶୁଣ ହୋ ଜ୍ୱଳନ ।
ମହୌଷଧି ବୋଲି ମୋତେ ମାଗିଲଟି ଯାହା
ଇନ୍ଦ୍ରତ ମାଗି ନେଇଛି ପୂର୍ବରୁଟି ତାହା ।
ଦେଇଣ ତାକୁ କେମନ୍ତେ ମାଗିବି ଯେ ଆଉ
ତୁମ୍ଭେ ଯାଇ ମାଗି ପାରିଲେ ସେ ଅବା ଦେଉ ।
ଆମ୍ଭ ଦେଲାର ସୁକୃତ କରିବୁ ଯେ ନାଶ
ଦେଇଣ ହରଣ କଲେ ହୋଏ ନର୍କେ ବାସ ।
ଦାନ ଯେ ହରଇ କାଳେ ନିବଂଶ ସେ ହୋଇ
ଦେଇ ହରିଲେ ସୁକୃତଯାକ ନାଶ ଯାଇ ।
ଯେହୁ ଯାହାକୁ ଦିଅଇ ଯାହା ସତ୍ୟବାକ୍ୟେ
ତାହା ପୁଣ ହରିଲେଟି ପଡ଼େ ଜାଣ ନର୍କେ ।
ଦେଇଣ ପଦାର୍ଥ ଲୋଭେ ହରେ ଯେଉଁ ପ୍ରାଣୀ
ପାପୀ ମହାପାପୀ ତାକୁ ଚଣ୍ଡାଳରେ ଗଣି ।

ଏଡ଼େ ବଡ଼ ଦୋଷ ଯହୁଁ ଲେଖଇ ପୁରାଣେ
ମୁହିଁ ତା କି ବୋଲି ମାଗିବିଟି ଦେଇ ଏଣେ ।
ଯେ ଯହିଁକି ଆଶା କରିଥାଇ ଅନୁବ୍ରତେ
ତାହାକୁ ଭାଙ୍ଗିଲେ ଦୋଷ ନୁହଇ କି ସତେ ।
ପାରିଲେ ତୁମ୍ଭେ ହୋ ଯାଇ ମାଗ ବାସବକୁ
ଏ କ୍ଳେଶ ଦେଖି ସେ ଦୟା କରିବେ ତୁମ୍ଭଙ୍କୁ ।
ତଥାପି ତ ତୁମ୍ଭ ପରା ଲୋକ ମାଗିଲାରୁ
ନ ଦେଲେ ତ ଚିହ୍ନାଯିବେ ମାଗନି ଏଠାରୁ ।
ଯାହା ଥିବ ପ୍ରାରବଧେ ସେ ଅବଶ୍ୟ ହେବ
ଏଥକୁ ଚାହିଁଣ ଅଗ୍ନି ମାଗ ଯା ବାସବ ।
ନ ଦେଲେ ଉପାୟ ତେତେବେଳେ କରିପୁଣ
ଏମନ୍ତ ବୋଲିଣ ଆଜ୍ଞାଦେଲେ ଜନାର୍ଦ୍ଦନ ।
ଗୋବିନ୍ଦ କହିବା କଥା ଶୁଣି ବୈଶ୍ୱାନର
ଚଳିଗଲେ ବହନ ଯେ ଇନ୍ଦ୍ର ଥିବା ପୁର ।
ଇନ୍ଦ୍ର ପୁର ଚାହିଁ ବସିଲେକ ବ୍ରହ୍ମଅଗ୍ନି
ଦେହ ଆରୋଗ୍ୟ ନିମନ୍ତେ କଲେ ବେଦଧ୍ୱନି ।
ଯଜୁର୍ବେଦର ଭିତରୁ ପଢୁ ବସି କାଣ୍ଡେ
ଇନ୍ଦ୍ର ତାହା ଶୁଣି ପୁଚ୍ଛା କଲେ ବସି ଦଣ୍ଡେ ।
ବୋଇଲେ ହେ ଅଗ୍ନି ତୁମ୍ଭେ କାହିଁକି ଯେ ଆସି
ପ୍ରାର୍ଥନା କରୁଛ ଏତେ ବେଦକୁ ଯେ ଘୋଷି ।
ବିଳମ୍ବ ନ କରି ଆହେ ତାହା ବେଗେ କହ
ତୁମ୍ଭର ବେଦ ଶୁଣିଣ କମ୍ପୁଛି ମୋ ଦେହ ।
ଅଗ୍ନି ବୋଇଲେ ହୋ ତେବେ ଶୁଣ ମଘବାନ
ଆପଣଙ୍କୁ ମାଗୁଅଛି ଆସି ବନଦାନ ।
ତୁମ୍ଭର କୃପା ହେଲେହେଁ ଭୁଞ୍ଜିବି ଔଷଧି
ଖଣ୍ଡନ କରିବି ଲକ୍ଷେ ବରଷର ବ୍ୟାଧି ।
ତୁମ୍ଭେ ବଡ଼ ଦାତା ବୋଲି ମାଗୁଛି ଆସିଣ
ଯାହାଙ୍କୁ ନ ମାଗିବ ସେ ଲୋକଗୁଣ ଶୁଣ ।
ପର ଯୁବତୀ ଉପରେ ଯାର ନିତି ଆଶା
ପରକୁ ତ ଅନୁକ୍ଷଣେ କରେ ଯେହୁ ହିଂସା ।
ପର ପ୍ରମାଦ ଶ୍ରବଣେ ମନେ ଯାର ସଧ
ଜୀବ ମାରିବାକୁ ଯେହୁ ହୁଏ ବଡ଼ ଲୁବ୍ଧ ।
କନ୍ଦଳ ଦ୍ୱନ୍ଦ୍ୱ କୁହୁକ ବାଦ ନଟକାରୀ
ପାଷାଣ ବାକ୍ୟ ଶ୍ରବଣେ ଥାଏ କର୍ଣ୍ଣ ଡେରି ।
ଭୁଜଙ୍ଗ ଖେଳ ଯେ ଦ୍ୟୂତ ବେଶ୍ୟାଠାରେ ରତି
କୁଧର୍ମ କର୍ମକୁ ଯେହୁ କରେ ନିତି ନିତି ।
ଆପେ ଆପେ ବନ୍ଦି ଯେହୁ ପରେ ନିନ୍ଦାକରେ
ଏ ଲୋକମାନଙ୍କୁ ଦାନ ନ ମାଗିବ ଥରେ ।

ଆପଣ ତ ରାଜାବୋଲି ମାଗୁଛି ଯେ ଆସି
ଏ ରୋଗୁଁ ଉଦ୍ଧର ହେଲିଣି ମୁଁ ବହୁକ୍ଳେଶୀ ।
ପର ଦୁଃଖ ଦେଖି ରଖନ୍ତି ଯେ ଦୟାବହି
ସେ ଲୋକଠାରୁ ସଂସାରେ ଜ୍ଞାନୀ ନାହିଁ କେହି
ଆହେ ଇନ୍ଦ୍ର ଦେଖ ଏହି ଅନିତ୍ୟ ସଂସାର
ଜନମ ଲଭିଣ କେହି ହୋଇନାହିଁ ଚିର ।
କାଳର ଆୟତ୍ତେ ପ୍ରାଣୀ କର୍ମ କରୁଥାଏ
କର୍ମ ସରିଲେ ଶରୀର ପୁଣି ଛାଡ଼ିଯାଏ ।
ପାପ ଅବା ପୁଣ୍ୟକରି ଅର୍ଜିଥାଇ ଯାହା
ଆନକୁ ନୁହଇ ଭୋଗ ଆପେ ଭୁଞ୍ଜେ ତାହା ।
ପାପରେ ନରକଗତି ପୁଣ୍ୟେ ସ୍ୱର୍ଗଯାଇ
ପର ଉପକାରୀ ଜନେ ପୁଣ୍ୟବନ୍ତ କହି ।
ପଣ୍ଡିତ ଧାର୍ମିକ ବୋଲି ଖ୍ୟାତ ଯେଉଁ ପ୍ରାଣୀ
ସଂସାରେ ରଖନ୍ତି ସେହି ଯଶ କୀର୍ତ୍ତି ପୁଣି ।
ଦୟା ଧର୍ମ କଥାରେ ନ ଥାନ୍ତି ଅନୁକ୍ଷଣେ
ପରେ ପୁଣି କରି ମୋକ୍ଷ ହୁଅଇ ଆପଣେ ।
ପୁଣ୍ୟ କାହାକୁ କହି ହେ ଶୁଣ ପୁରନ୍ଦର
ପର ରକ୍ଷାକାରୀକି ଯେ ବୋଲନ୍ତି ଈଶ୍ୱର ।
ପରର ପ୍ରାସ ଦୁଃଖ ଯେ ନ ଘେନେ କଦାପି
ତାହାକୁ ପରପୀଡ଼କ ବୋଲି ମହାପାପୀ ।
ଯେ ପ୍ରାଣୀ ପରର ହିତେ ଅନୁବ୍ରତେ ଥାଇ
ତାଠାରୁ ପଣ୍ଡିତ ଏ ସଂସାରେ କେହି ନାହିଁ ।
ପଣ୍ଡିତ ଲୋକର ହୁଏ ସଦା ଧର୍ମ ଉଦେ
ଯଶ ଶିରୀ ବଂଶ ତାର ବଢ଼େ ଅପ୍ରମାଦେ ।
ବାସବ ବୋଇଲେ ଅଗ୍ନି କହୁଛ ଯେ ଏତେ
ଅତି ଲୋଭ କଲେ ଏହା ଦେବ କେ ଜଗତେ ।
ନୁହଇ ତ ଏକ ଦୁଇ ଲୋଡ଼ା ତୋଟାଯାକ
ଏତେ କଥା ମାଗୁଛ ଯେ ଦେବ କେଉଁ ଲୋକ ।
ଇନ୍ଦ୍ର ବାକ୍ୟ ଶୁଣି କହନ୍ତି ଯେ ବୀତିହୋତ୍ର
ଭୋ ଇନ୍ଦ୍ର ତୋତେ ଅଟଇ ଏହା କେତେମାତ୍ର ।
ବୋଲନ୍ତି ହୋ ଇନ୍ଦ୍ର ପୁଣି କହିବା ଯେ ତୋତେ
ଉତ୍ତମ ଲୋକଙ୍କ କଥା ଅଛି ଯେତେ ଯେତେ ।
ଦଧୀଚି ପରା ଋଷି ଯେ ପରପାଇଁ ଦେଖ
ଆପେ ପ୍ରାଣ ଛାଡ଼ିଲେ ନ ରଖି ଦେହେ ସୁଖ ।
ତାହାଙ୍କର ଅସ୍ଥିଯାକ ହେଲା ବ୍ରହ୍ମଶର
ଏଡେ ବଡ଼ କଥା ପୁଣି ନୁହଇ ତୋହର ।
ଆବର ଦେଖିଲେ ସାଧୁଜନେ ଲୋକ କ୍ଳେଶ
ଆପଣା ଧନ ଦେଇଣ କରନ୍ତି ସନ୍ତୋଷ ।

ପଣ୍ଡିତ ଲୋକ କ୍ଳେଶୀକୁ ବାକ୍ୟେ ତୋଷକରି
ପର ହେଲେ ସୁଦ୍ଧା ଦୁଃଖ ହରନ୍ତି ତାହାରି ।
ତାହାହିଁ ତୋର ନୁହଇ ଖଣ୍ଡେ ସିନା ବନ
ତହିଁକି ବୋଲୁଛ ପୁଣି ଦେବ କେଉଁ ଜନ ।
ତଥାପି ତ ତୋହର ଯେ ନୁହଇ ଏ ବନ
ଗୋବିନ୍ଦ ସିନା ଦେଇଣ ଅଛନ୍ତି ବିପିନ ।
ଏଥକୁ କିପାଁ କରୁଛୁ ତୁହିଁ ନାହିଁ ନାହିଁ
ଦେଖୁଛୁ ଏଡ଼େକ କ୍ଳେଶ ଭୋଗୁଛି ଯେ ମୁହିଁ ।
ଇନ୍ଦ୍ର ବୋଇଲେ କହିଲ ସତ ହେଲେ ତୁମ୍ଭେ
ଦେଇଛି କି ପ୍ରତିଗ୍ରାହୀ ଲୋକ ଦାନ କେବେ ।
ଅଗ୍ନି ବୋଇଲେ ତୁମ୍ଭେ କି ଶୁଣିନାହଁ ବେଦେ
କହିଛି ଶାସ୍ତ୍ରରେ ଦାନ ଘେନି ଦେବ ଅଧେ ।
ତେବେ ସେ ଲୋକ ସଂସାରୁ ଜାଣ ତରିଯାଇ
ଆଉ କଥାଏ କହିବା ମଧ ଶୁଣ ତୁହି ।
ବେଦ ପଢ଼ିଣ ଯେ ଜନ ନ ପଢ଼ାଏ ପରେ
ମଲେ ତ ବ୍ରହ୍ମରାକ୍ଷସ ହୁଅନ୍ତି ସେ ନରେ ।
ଏଣୁ ବେଦ ପୁରାଣାଦି ପଢ଼ିବଟି ଯେତେ
ଲୋକେ ଗୁପତ ନ କରି କହିବ ଜଗତେ ।
ତେବେ ଗତି ତିନିପୁରେ ଲଭଇ ସେ ଜନ
ଆପେ ପାରିଲେ ମାଗି ପରେ ଦେବ ଦାନ ।
ଟଙ୍କାଏ ଅର୍ଜିଲେ ଦେବ ଅଣାଏ ଯେ ଦାନ
ପଣେ ମିଳିଲେ ଗଣ୍ଡାଏ କରିବ ବଣ୍ଟନ ।
ଶତେ ଭରଣ ଯଦ୍ୟପି ଅର୍ଜିବ ମାନବ
ତହିଁରୁ ପାଞ୍ଚଭରଣ ଧର୍ମେ ଦାନ ଦେବ ।
ଦେବତାଙ୍କୁ ପ୍ରାପତ ଯେ ହୁଅଇ ସେ ଧନ
ନୋହିଲେ ତାହାର ହୁଏ ନରକେ ପତନ ।
ଏମନ୍ତ ଧର୍ମପୁରାଣ ଅଛଇ ଯେ କହି
ମାଗିଲାରୁ ନ ଦେଲେ ସୁକୃତ ହାନିହୋଇ ।
ପୁରାଣ ବାକ୍ୟରେ ଯେହୁ ଧର୍ମ ବିଚାରଇ
ଅର୍ଜିବା ଧନରୁ କିଛି ବିଷ୍ଣୁ କାର୍ଯ୍ୟେ ଦେଇ ।
ଦାତା ଭକ୍ତି ଦାନ ପୁଣ୍ୟ କରୁଥାଇ ଯେତେ
ଅଲକ୍ଷିତେ ପ୍ରଭୁ ତାଙ୍କୁ ଦେଉଥାନ୍ତି ତେତେ ।
ସେହି ଦ୍ରବ୍ୟ ଚୋରି ହାନି ଅଗ୍ନି ଭୀତି ନାହିଁ
ଖଣ୍ଡ ମାରଣା ଇନ୍ଦ୍ରର ନେବେ ଅବା କାହିଁ ।
କାହାକୁ ପ୍ରାପତ ନ କରାନ୍ତି ସେହି ଧନ
ଧର୍ମ କରୁଥିଲେ ଧର୍ମ ହୁଅଇ ପ୍ରସନ୍ନ ।
ଏମନ୍ତ ବାକ୍ୟ ଯେ ପ୍ରଭୁ ଲିହିଛନ୍ତି ଗ୍ରନ୍ଥେ
ଏଥକୁ ଯେ ଉପଲକ୍ଷ ଶୁଣ ପୁରୁହୂତେ ।
ପ୍ରତିଗ୍ରାହୀ ଅଙ୍ଗେ ଥାଏ କଲମଷ ଯେତେ
ଭିକ୍ଷା ନ ଦେଲା ଘରକୁ ଗଲେ ଛାଡ଼ି ଯାନ୍ତେ ।
ଦୁଷ୍କୃତ ରଖି ସୁକୃତ ତାର ଘେନିଯାଏ
ଅଦାତା ଦୋଷେ ଦରିଦ୍ର ସେହି ପ୍ରାଣୀ ହୁଏ ।
ଦରିଦ୍ର ହୋଇଲେ ସେହୁ ପାପେ ହୁଏ ଘାଣ୍ଟି
ପାପରୁ ଜାଣ ସେ ଲୋକ ନରକେ ପଡ଼େଟି ।
ଏଣୁକରି ଅତିଥିଙ୍କୁ ନ କରି ନିରାଶ
ବିଶ୍ଳେଷ ନ ଦେଇ ତାକୁ ସାମାନ୍ୟରେ ତୋଷ ।
ଅଲପ ଦେଇଣ କହେ କୋମଳ ଯେ ବାଣୀ
ତାଠାରୁ ପଣ୍ଡିତ ନାହିଁ ସଂସାରେ କେ ପ୍ରାଣୀ ।
ଯେତେ ଦେଉ ଦାନ ପଛେ ମେରୁ ସମତୁଲେ
ବିଫଳ ହୁଏ ସମସ୍ତ ଅଶ୍ରଦ୍ଧାରେ ଦେଲେ ।
ପାପ ପୁଣ୍ୟ ଦୁଇରେ ଯେ ଚଳୁଥାଇ ମହୀ
ତହିଁରୁ ବାହାର ହେବୁ କି ହୋ ଇନ୍ଦ୍ର ତୁହି ।
ବୁଝିଲେ ତ ପାପ ପୁଣ୍ୟ ଦୁହେଁ ବେନିଭାଇ
ପୁଣ୍ୟ ଯେ ଅଗ୍ରଜ ପାପ କନିଷ୍ଠ ଅଟଇ ।
ପାପରେ ଯେ ପ୍ରାଣୀ କ୍ଷୟ ପୁଣ୍ୟରେ ଉଦୟ
ଏ କଥାଗୋଟି ଅଟଇ ଜାଣ ସତ୍ୟମୟ ।
ଇନ୍ଦ୍ର ବୋଇଲେ କହିଲୁ ଯେବେ ମୋତେ ଏହା
ବୁଝାଅ ତୁମ୍ଭେ ଏହାଙ୍କ ପାପ ପୁଣ୍ୟ ଯାହା ।
ପୃଥିବୀରେ ଅଧିକାର କେ ଦେଲା ତାହାଙ୍କୁ
ପୁଣ୍ୟ ସଙ୍ଗରେ ରଖିଲା କାହିଁକି ପାପକୁ ।
ଅଗ୍ନି ବୋଇଲେ କହିବା ତେବେ ତାହା ତୋତେ
ସୃଷ୍ଟି ଆରମ୍ଭରୁ ଯାହା ହୋଇଲା ଜଗତେ ।
ମହାଜଳ ଘୋଟନ୍ତେ ସ୍ୱୟମ୍ଭୁ ଆଦିମୂଳ
ବଟପୁଟ ଉପରେ ଯେ ଯାଇ ହେଲେ ଠୁଳ ।
ଅଙ୍ଗୁଳି ଯବ ପ୍ରମାଣେ କଳେବର ରହି
ଅକଳିତ ଜଳେ ଛନ୍ତି ବଟପୁଟେ ଶୋଇ ।
ଏଥିଉତ୍ତାରୁ ସେ ପ୍ରଭୁଙ୍କର ନାସାପୁଟେ
ସୁଲଳିତ ହୋଇକରି ସମୀର ପ୍ରକଟେ ।
ସମୀର ସଂଯୋଗୁ ହେଲା ପ୍ରକୃତି ଯେ ଜାତ
ପ୍ରକୃତିରୁ ବୁଦ୍ଧି ବୁଦ୍ଧିରୁ ଯେ ହଂସ ଜାତ ।
ହଂସରୁ ପରମ ପରମରୁ ହେଲା ଫେନ
ଫେନରୁ ସେ ବୁଦୁବୁଦୁ ତହୁଁ ଅଣ୍ଡ ଜନ୍ମ ।
ସେ ଅଣ୍ଡ ଭାସେ ପ୍ରଳୟ ଜଳେ ପୁଣ ପଡ଼ି
କାଳେ ସେହି ଯୋଗେ ଗଲା ବେନି ଖଣ୍ଡେ ଛିଡ଼ି
ସହସ୍ର ବରଷ ଜଳ ମଧ୍ୟେ ଭାସୁଥିଲା
ବିରାଟ ପୁରୁଷ ତାହା ତହୁଁ ଜାତ ହେଲା ।

ସେହି ମହାପୁରୁଷ ମହିମା ନୁହେ କହି
ଯେବଣ ଅଣ୍ଡଦୋଷରୁ ପ୍ରକାଶିଲା ଦେହୀ ।
ସେ ଅଣ୍ଡ ସକାଶୁଁ ହେଲା ସର୍ଜନା ବ୍ରହ୍ମାଣ୍ଡ
ବ୍ରହ୍ମାଣ୍ଡ ଗୋଟି ପ୍ରତ୍ୟକ୍ଷେ ହେଲା ତିନିଖଣ୍ଡ ।
ସେହି ତିନିଖଣ୍ଡ ସ୍ୱର୍ଗ ମଞ୍ଚ ଯେ ପାତାଳ
ଷଡଚକ୍ରେ ଭେଦନ୍ତେ ଯେ ବ୍ରହ୍ମାଣ୍ଡ ଉଜ୍ୱଳ ।
ପିଣ୍ଡ ବ୍ରହ୍ମାଣ୍ଡ ବେନିଟି ବିଚାରିଲେ ଏକ
ଏ କଥା ବୁଝିପାରନ୍ତି ଜାଣ ଜ୍ଞାନୀଲୋକ ।
ଏହି ପୃଥ୍ୱୀରେ ଥାଇଣ ବିରାଟ ପୁରୁଷ
ଶ୍ରୀଅଙ୍ଗରୁ ଜାତ କଲେ ପ୍ରକୃତି ପଚିଶ ।
ଶୁଣିବାକୁ କର୍ଣ୍ଣ କଲେ ଚାହିଁବାକୁ ଦୃଷ୍ଟି
ଭୁଞ୍ଜିବାକୁ ମୁଖ କଲେ ଆଘ୍ରାଣେ ନାସାଟି ।
ଦେବାପାଇଁ ହସ୍ତ କଲେ ଚାଲିବାକୁ ପଦ
ପ୍ରଣାମ ନିମନ୍ତେ ଶିର ଭକ୍ତିପାଇଁ ହୃଦ ।
ଅସ୍ଥି ମଜ୍ଜା ଧାତୁ ଚର୍ମ ରକ୍ତ ମାଂସ କଲେ
ପୂଜ ନାଳ ମଳମୂତ୍ର ଲୋଭ ମୋହ ଦେଲେ ।
କପଟ କାମ କ୍ରୋଧ ଯେ ହିଂସା ଅପବାଦ
ଲକ୍ଷଣ ଯେ ଅଲକ୍ଷଣ ଚେତା ବିନ୍ଦୁ ନାଦ ।
ଇଅଁଳା ପିଅଁଳା ଷଡ଼ଗଣ୍ଠି ଉର୍ମ ଧୂର୍ମ
ଅନ୍ତ ଦନ୍ତ ବାତ ପିତ୍ତ ପୀଳୋହି ଗୁଲୁମ ।
ଦେବା ଦୟା ସତ ମିଛ କର୍ମ ଧର୍ମ ଯେତେ
ପାପ ପୁଣ୍ୟ ଦୁହେଁ ପୁଣି ଉପୁଜିଲେ ପ୍ରାନ୍ତେ ।
ପୁଣ୍ୟଜାତ କଲେ ସେହୁ ଶ୍ରୀମୁଖ ପଦ୍ମରୁ
ପାପର ଜନ୍ମ ଶୁଣ ହୋ ହୋଇଲା ପିଠିରୁ ।
ଏମନ୍ତେ ଶରୀରୁ ଜନମିଲେ ଜଣେ ଜଣେ
ଲେଖା ହୋଇଅଛି ଏହା ସକଳ ପୁରାଣେ ।
ପୁଣ୍ୟ ଯେ ଶୁକ୍ଳ ଅଟଇ ପାପ କଳାଦେହ
ବିରାଟର ଶ୍ରୀଅଙ୍ଗରୁ ହୋଇଲେ ଉଦୟ ।
ପ୍ରାଣୀଙ୍କର ହାନି ଲାଭ ବୁଝିବାର ପାଇଁ
ପାପ ପୁଣ୍ୟ ଦୁହିଁଙ୍କି ଯେ ଦେଲେ ଉପୁଜାଇ ।
ସେହି ପାପ ପୁଣ୍ୟ ଦୁହେଁ ବେଲୁ ଦିଅ ପଣ
ପ୍ରାଣୀଙ୍କର ହାନି ଲାଭ ବୁଝିବୁ ଯେ ଜାଣ ।
ଶୁଣି ବିରାଟ ପୁରୁଷ ଉତ୍ତମ ବୋଇଲେ
ଯାବତ ଲୋକଙ୍କୁ ସେହି ଅଧିକାର ଦେଲେ ।
ବୋଇଲେକ ତୁମ୍ଭେ ଦୁହେଁ ସଂସାରକୁ ପାଳ
ପ୍ରାଣୀଙ୍କର ଭଲମନ୍ଦ ବୁଝି ଦିଅ ଫଳ ।
ଶୁଣିକରି ପାପ ପୁଣ୍ୟ ଚଳିଲେ ମେଦିନୀ
ପ୍ରାଣୀଙ୍କି ବୁଲାଇଲେ ଯେ ଯାହା ଗୁଣ ଘେନି ।
ଏଥୁଅନ୍ତେ ପାପ ପୁଣ୍ୟେ ଜଣାଇଣ ଦେଲେ
ମୁହିଁ ଆଗ ପୃଥିବୀକୁ ପାଳିବି ବୋଇଲେ ।
ପୁଣ୍ୟ ବୋଇଲା କାହିଁକି ମୁହିଁ ଥାଉଁ ଥାଉଁ
ତୁ ଆଗ ପାଳିଲେ ଥିବ ସଂସାର କି ଆଉ ।
ପାପ ବୋଇଲାକ ଭଲା ବୁଝିବା ନା ଆଜ
ଦୁହେଁ ମିଶିଣ ପାଳିବା କାର କେତେ କାର୍ଯ୍ୟ ।
ପୁଣ୍ୟ ବୋଲେ ତାହା ନୁହେଁ ଆଗ ମୁଁ ପାଳିବି
ମୁଁ ପାଳିଲା ଉତ୍ତାରୁ ତୁ ଦେଖୁ ସିନା ଭୁବି ।
ଏରୂପେ କହିଣ ପୁଣ୍ୟ ଗଲା ସଂସାରକୁ
ପରମାର୍ଥ ବତାଇଲା ଯାଇଣ ଜୀବଙ୍କୁ ।
ବୋଇଲାକ ଆହେ ଜୀବେ ଶୁଣ ମୋର ବାଣୀ
ସବୁରି ହୃଦରେ ଦେଖ ବିଜେ ଚକ୍ରପାଣି ।
ଶରୀର ବହି ଯେତେକ ଅଛ ଦେହଧାରୀ
ପରାପର ବୋଲି କେହି ନ ବୋଲ ବିଚାରି ।
କୀଟରୁ ଯେ ବ୍ରହ୍ମଯାଏ ବିଷ୍ଣୁ ବୋଲି ଚିହ୍ନ
ଦେଖ ଦେଖ ସବୁଦେହେ ଏକାଜ୍ୟୋତିଜ୍ଞାନ ।
ସ୍ତିରୀ ପୁରୁଷ ଏ ଦୁଇଗୋଟି ଜାତି ସିନା
ଦୁଇରୁ ଯେ ତିନି ଆଉ ବ୍ରହ୍ମାଣ୍ଡେ ନାହିଁ ନା ।
ଯେତେ ଏ ବ୍ରହ୍ମାଣ୍ଡ ମଧ୍ୟେ ଛନ୍ତି ଦେହଧାରୀ
ସେ ସମସ୍ତେ ଦୁହେଁ ଜାଣ ମନକୁ ବିଚାରି ।
ଏହି ଦେହ ବେନି ମଧ୍ୟେ ଗୋବିନ୍ଦହିଁ ଜାଣ
ବିଜେ କରିଛନ୍ତି ସ୍ୱାମୀ ପ୍ରଭୁ ନାରାୟଣ ।
ତଥାପି ସବୁରି ଆତ୍ମା ବିଷ୍ଣୁ ଯେ ଅନନ୍ତ
ତହିଁର ମାର୍ଗ କହିବା ଶୁଣ ସେ ବୃତ୍ତାନ୍ତ ।
ପୁରୁଷମାନଙ୍କ ନେତ୍ରେ କିଏ ଯେ କାହାରି
ଉଦେ ହୋଇ ଚାହିଁଛନ୍ତି ଜ୍ୟୋତିରୂପ ଧରି ।
ସ୍ତିରୀମାନଙ୍କ ନେତ୍ରରେ ନାହାନ୍ତି କି ସେହୁ
ଏ କଥାକୁ ଭିନ୍ନ ବୁଝିପାରିଛି କି କେହୁ ।
ଋଷିମାନଙ୍କର କର୍ଣ୍ଣବିଳେ ଏକା ପ୍ରଭୁ
ଶବଦଯାକ ବସିଣ ଘେନୁଛନ୍ତି ସବୁ ।
ପୁରୁଷ ଏକା ନାସାରେ ଘେନନ୍ତି କି ବାସ
ସ୍ତିରୀ ନ ଜାଣେ ବୋଲି କେ କହୁ ମୋର ପାଶ
କଷା ତିକ୍ତ ମଧୁର ଲବଣ କଟୁଆଦି
ପୁରୁଷେ ଏକା କି ଏହା କରନ୍ତି ଭୋଗାଦି ।
ସ୍ତିରୀମାନେ ତାହା କିବା ନ ଜାଣନ୍ତି କହ
ଏଣୁ ବୁଝିଲେ ପୁରୁଷ ସ୍ତିରୀ ଏକା ଦେହ ।
ଆହେ ଆହେ ନରେ କହିବାକ ଏବେ ଶୁଣ
ସଂସାରେ ଥାନ୍ତି ଯେତେକ ସର୍ବେ ସରି ଜାଣ ।

ଜୀବ ଯେତେକ ଗୋବିନ୍ଦ ବୋଲି ଜାଣ ଏକା
ଶତ୍ରୁ ମିତ୍ର ବୋଲିଣ ନ ଘେନି ମନେ ଶଙ୍କା ।
ଜୀବ ଆଗେ ଦେଖିଲେ ଏ ବିଷ୍ଣୁ ବୋଲି ଘେନ
ଆପଣାର ଦୁଃଖ ସୁଖ ପରଲୋକେ ଚିହ୍ନ ।
ଦେବତା ବୈଷ୍ଣବ ବିପ୍ର ଗୁରୁ କରି ପୂଜା
ଚଣ୍ଡାଳରୁ ବ୍ରହ୍ମଯାଏ ଆତ୍ମା ନାହିଁ ଦୁଜା ।
ଦେବତା ବ୍ରାହ୍ମଣଙ୍କୁ ଯେ ସେବେ ଅନୁବ୍ରତେ
ପାଇବ ସେ ଗତି ମୁକ୍ତି ଜଗଜ୍ଜନ ହିତେ ।
ଦୟା ଧର୍ମ କରି ସାଧୁ ସଙ୍ଗ ପଛ କର
ପରଦ୍ରବ୍ୟ ପରସ୍ତିରୀ କେବେହେଁ ନ ହର ।
ପରକୁ ଅହଙ୍କାର ନ କର କେତେବେଳେ
ଅନୁକ୍ଷଣେ ସେବ ବିଷ୍ଣୁ ପାଦପଦ୍ମ ତଳେ ।
ଗୁରୁଙ୍କ ଚରଣ ସେବି ପାଦ ଧୋଇ ପିଅ
ଯେ ଯାହା ମାଗଇ ତାହା ଆନନ୍ଦରେ ଦିଅ ।
ଜୀବ ପରମକୁ ଆପଣାର ହୃଦେ ଚିହ୍ନ
ଏରୂପେ କହିଲା ସବୁ ବୁଲି ବୁଲି ପୁଣ୍ୟ ।
ଶୁଣିକରି ପ୍ରାଣୀମାନେ ସନ୍ତୋଷ ହୋଇଲେ
ଆଶା ଏକ କରିଣ ଶ୍ରୀ ଗୋବିନ୍ଦ ଭଜିଲେ ।
ଗୋବିନ୍ଦଙ୍କୁ ଭଜୁ ଭଜୁ ସାଧୁ ବୁଦ୍ଧି ହେଲା
ଯେ ଯହିଁ ଦେଖିଲେ ଜୀବ ଠାକୁର ମଣିଲା ।
ସମସ୍ତଙ୍କୁ ସମସ୍ତେ ଠାକୁର ଡାକ ଦେଲେ
ଠାକୁର ଅଇଲେ ବୋଲି ଦେଖିଲେ ବୋଇଲେ
ବୋଲନ୍ତି ପ୍ରଭୁ ଅଇଲେ କିପାଁ ଏତେ ଶ୍ରମି
ତୁମ୍ଭେ ଲୋଡ଼ିଥିଲେ ମୁଁ ତ ଯାଇଥାନ୍ତି ଗମି ।
ଏତେ ବୋଲିଣ ଲୋକଙ୍କୁ ଦେଖି ସେବୁଥାନ୍ତି
ଚଣ୍ଡାଳରୁ ବ୍ରହ୍ମଯାଏ ସବୁ ଏକମତି ।
ସମସ୍ତେ ବ୍ରହ୍ମ ଚିହ୍ନିଣ ହୋଇଲେ ନିର୍ଗୁଣ
ସାଧୁ ଜନରେ ସେ ଲେଖା ହେଲେ ଜଣଜଣ ।
ରାଜାଏ ଦଣ୍ଡ ତଣ୍ଡ ନ କଲେ ଲୋକଠାରେ
ଏଣୁ ତ ଅଚଳାଲକ୍ଷ୍ମୀ ହେଲେ ସବୁ ଘରେ ।
ଭକ୍ତି ମୁକ୍ତି ସମ୍ପତ୍ତି ଯେ ଆବର ସନ୍ତତି
ଏ ଚାରିଙ୍କି ଭୋଗକଲେ ପୁଣ୍ୟବଳୁ ନିତି ।
ଘେନି ଦାରା ସୁତ ପ୍ରାଣୀ ରହିଲେକ ସୁଖେ
ଦେହ ଅନ୍ତେ ମିଳିଲେକ ପାଇ ବିଷ୍ଣୁପାଖେ ।
ହରି ପୁରେ ଗଲାରୁ କେ ନୋହିଲେ ପାପାତ୍ମା
ଶୁଣନ୍ତି ନାରଦ କହୁଅଛନ୍ତି ବିଧାତା ।
ପୁଣ୍ୟବଳୁ ସଂସାରରୁ ସର୍ବେ ତରିଯାନ୍ତେ
ତାହା ଦେଖି ପାପ ଧାଇଁଲାକ କ୍ରୋଧଚିତ୍ତେ ।

ପୁଣ୍ୟକୁ ବୋଇଲା ତୁହି କେଡ଼େ କର୍ମ କଲୁ
ସଂସାରେ ଗୋଟିଏ ମନ୍ଦ କରି ନ ରଖିଲୁ ।
ସମସ୍ତେ ମୋକ୍ଷ ପାଇଲେ ହୋଇ ଦେବଦେହ
ପାପକୁ ତେବେ ଯେ ଭୋଗ କରିବ କେ କହ ।
ଏମନ୍ତ ବୋଲି ପୁଣ୍ୟକୁ ପାପ କୋପକଲା
ଆପେ ସଜ ହୋଇ ସେହି ରାଜ୍ୟେ ବାହାରିଲା
ପାପ ବାହାରନ୍ତେ ପୁଣ୍ୟ ଓଗାଳିଲା ତାକୁ
ବୋଇଲା ତୁ ରଖିବୁ କି ଗଲେ ସଂସାରକୁ ।
ହାଡ଼ମାଳ କଙ୍କାଳ କରିବୁ ସିନା ପୃଥ୍ୱୀ
ଏଣୁ ବୋଲେ ତୋତେ ମୁହିଁ ରହ ତୁ ନିବର୍ତ୍ତି ।
ପାପ ବୋଇଲାକ ତେବେ ଶୁଣ ତୁହୋ ପୁଣ୍ୟ
କଥାଏ ମାଗୁଛି ତୁହି ମୋର ଭିକ୍ଷା ଘେନ ।
ପୃଥ୍ୱୀରେ ଥୋକେଲୋକ ଚଳନ୍ତୁ ମୋବୋଲେ
ପାପୀ କୃପଣ ପାଷାଣ୍ଡ ହୋଇଯାନ୍ତୁ କାଳେ ।
କେତେକ ଲୋକହିଁ ତହୁଁ ହୁଅନ୍ତୁ ଦାମ୍ଭିକ
ଦୟାକଲେ ଦେଖି ନାସ୍ତି କରୁ କେହିଲୋକ ।
କେହୁ ପାପୀ କେହୁ ପୁଣ ହୁଅନ୍ତୁ ନାରକୀ
କେହି ଲାଜ ତେଜି ହରୁ ମାନିତା ସ୍ତିରୀଙ୍କି ।
କେବା ଚୋରି କରୁ କେବା ହରୁ ପରନାରୀ
କେହୁ ବା ନରକେ ପଡୁ ମେଷ ମୀନ ମାରି ।
ଏହି ପାପ ଅର୍ଜି ନାଶ ହୁଅନ୍ତୁ ଥୋକେ ଜନ
ଯେ ଚତୁର ସେହି ତୋତେ ଲୋଡ଼ିବେକ ପୁଣ ।
ପ୍ରାୟଶ୍ଚିତ୍ତ କଲେ ମୋର ନୋହିବ ଯେ ବଳ
ନିଶ୍ଚେଁ ଶୁଣିଥାଅ ତୋତେ କହିଲି କେବଳ ।
ଏତେ କହିଣ ଯେ ପାପ ବ୍ୟାପିଲା ବ୍ରହ୍ମାଣ୍ଡେ
ଅନର୍ଥ କରିଲା ପଶି ଜନ୍ତୁଙ୍କର ପିଣ୍ଡେ ।
ବୁଲିଲା ସେ ପୁରେ ପୁରେ ଠାବେ ଠାବେ ପଶି
ପୃଥ୍ୱୀ ଲୋକମାନଙ୍କୁ ସେ କହିଲା ଆଶ୍ୱାସି ।
ବୋଇଲା ମାନବେ ତୁମ୍ଭେ ବଡ଼ ଅବିବେକ
ପୁଣ୍ୟକରି କେବା କିହୋ ତରିଲେଣି ଲୋକ ।
ଏକଥା ମୋ ମନକୁ ନପାଇ କଦାଚିତେ
ଦାନ ଦେଇ ମୋକ୍ଷ କେହୁ ହେଲାଣି ଜଗତେ ।
ସାଧୁ ସେବା କାହିଁପାଇଁ କର ଅକାରଣେ
ବୁଝିଲେ ଏ ସଂସାରେ ତ ସର୍ବେ ଜଣେ ଜଣେ ।
ବ୍ରାହ୍ମଣକୁ ବରିଣ ଯେ ଦାନ କିପାଁ ଦିଅ
ଦାନ ଦେଇଣ ଅମର ହେଲେ କିଏ କହ ।
ଦେବତା ବ୍ରାହ୍ମଣଙ୍କୁ କିମ୍ବା ଯେ କର ପୂଜା
ପୁଛିଲା ମାତ୍ରକେ ସେହୁ କରିବେ କି ରାଜା ।

ସଭାରେ ବସିଲେ ଯେ ନ କହେ ଜାଣ ମିଛ
ସେହି ପ୍ରାଣୀଙ୍କି ସଂସାରେ ନ ମିଳଇ ଲାଞ୍ଛ ।
ସର୍ବଦାହିଁ ସୁଖ ଯେବେ ଲୋଡ଼ିବେକ ପ୍ରାଣୀ
ଚଉର୍ଯ୍ୟ ବିଦ୍ୟାକୁ କର ମିଳିବ ସେକ୍ଷଣି ।
ରସିକପଣେ ହୋଇବ ଯେବେ ଅଧିକାରୀ
ରତି ସୁଖକୁ ପାଞ୍ଚିଲେ ପରସ୍ତିରୀ ହରି ।
କୁଳୀନ ସ୍ତିରୀମାନେ ତ ନ ଜାଣନ୍ତି କିଛି
ବସନ୍ତି ଆପଣାପତି ତୁଲେ ଦିନ ବଞ୍ଚି ।
ଗଙ୍ଗା ଗୟା ଗଲେ କିଛି ଅଛି କିହୋ ପୁଣ୍ୟ
ଦେହରେ କ୍ଳେଶକୁ ପାଇ ମଲେ ଅକାରଣ ।
ଗଣିକାର ଭବନକୁ ଚଳ ସର୍ବ ପ୍ରାଣୀ
ମାଦକ ଦ୍ରବ୍ୟ ଖାଇଣ ରମ ହୋ ରମଣୀ ।
ଏମନ୍ତ ରମଣେ ଉପୁଜଇ ବଡ଼ ସୁଖ
ଏହି ସୁଖ ନ ଜାଣଇ ଏକା ଅବିବେକ ।
ଭାରିଯା ଥିବା ଲୋକ ନ ଯିବ ଅବା କରି
ପତ୍ନୀ ନ ଥିବା ଲୋକ ହୋ ହରୁ ପରନାରୀ ।
ଯୁବତୀ ନ ମଙ୍ଗିଲେ ଯେ ଟଙ୍କା ଗଣିଦିଅ
ପର ମନ ମୋହି ସୁଖେ ପ୍ରୀତି ଉପୁଜାଅ ।
ତୁଳସୀ କାଠରେ କିପାଁ ହରିଙ୍କି ଯେ ଭଜ
କଉଡ଼ି ମାତ୍ରକ ସରେ ତହିଁ ନାହିଁ କାର୍ଯ୍ୟ ।
ହସ୍ତେ ଖଲି ପଶଇ ଅଙ୍ଗୁଷ୍ଠି ହୁଏ ମୋଞ୍ଚି
ନଖମାନ ଖୁଣ ହୁଏ ଚକ୍ଷୁ ହୁଏ ଖୁଞ୍ଚି ।
ବ୍ୟଥା ହୁଏ କଟି ଗ୍ରୀବା ତୁଣ୍ଡ ହୁଏ ଖନି
ଶ୍ରୀହରି ନାମକୁ ଜପି ହେଲାଣି କେ ଜ୍ଞାନୀ ।
ଆବର ହବିଷ୍ୟ ଏକାଦଶୀ କିପାଁ କର
କି ପୁଣ୍ୟ ଅଛି ଏଥିରେ ବ୍ୟର୍ଥେ ଶୁଖି ମର ।
ଏହି ଦିନମାନଙ୍କରେ ଆମିଷ ନ ଖାଏ
ନ ଜାଣିବା ଲୋକ ନିରାହାରୀ ହୋଇ ରହେ ।
ଦିବସା ପିତୃଶ୍ରାଦ୍ଧ ଯେ ତୁଚ୍ଛା କିପାଁ କର
ପଦାର୍ଥ ମାତ୍ରକ ସାର ହୋଇ ହରବର ।
ଯୁବା ଯୁବତୀଏ କିଛି ନ ଜାଣନ୍ତି ଦେଖ
ପର ପୀରତିକି ସେହୁ ମଣୁଥାନ୍ତି ସୁଖ ।
ଏକଥା ନାଗରୀମାନେ ଜାଣନ୍ତି ଯେ ପୁଣ
ଏମନ୍ତ ବୁଲି କହିଲା ପାପ ସଂସାରେଣ ।
ଗୁଡ଼ପ୍ରାୟେ ମଣି ତାହା ଘେନିଲେ ତ ଜନେ
ମାନିତା ସ୍ତିରୀ ରମିଲେ ଧରି ଯେଝାସ୍ଥାନେ ।
କୁଳବଧୂକୁ ଘେନିଣ ଗୁପ୍ତେ ରତି କଲେ
ପଥଶ୍ରାନ୍ତେ ଘରେ ରଖି ଦ୍ରବ୍ୟକୁ ହରିଲେ ।
କେହି ଲଜ୍ଜା ଦୂର କରି ପର ପତ୍ନୀ ତୁଲେ
ଲୋକିତ ଶାଶୁ ଲେଖିଣ ଗୁପ୍ତେ ରତି କଲେ ।
ଭଉଣୀ ହରିଲା କେହୁ ହରିଲା ମାଉସୀ
ମାଇଁକି ହରିଲା କେହୁ ହରିଲା ପିଉସୀ ।
କର୍ମ ଧର୍ମ ଦାନ ପୁଣ୍ୟ କରୁଥିଲେ ଯେତେ
ସେ ସବୁକୁ ତ୍ୟାଗ କରି ଗଲେ ପାପପଥେ ।
ପାପେ ପଡ଼ିଲେ ଯେ ନରେ ହୋଇ ବିମୋହିତ
ତା ଦେଖି କୋପିଲା ପୁଣ୍ୟ ଜାଣ ଅପ୍ରମିତ ।
ସଂସାରେ ଯାଇ ସେ ପରମାର୍ଥ ବଢ଼ାଇଲା
କାହିଁକିରେ ଏଡ଼େ ପାପ କରୁଛ ବୋଇଲା ।
ଯାହାକୁ ଏହି ସଂସାରେ ଛୁଇଁ ନ ଯୋଗାଇ
ତାହାକୁ ହରୁଛ ପତ୍ନୀ ପ୍ରାୟେ କରେ ଛୁଇଁ ।
ଏହି ଦୋଷରୁ ଯେ ତୁମ୍ଭେ ଅଚ୍ଛେ ନାଶଯିବ
ପାପ ଖଣ୍ଡିପାରି ନାହାନ୍ତି ଯେ ମହାଦେବ ।
ଶତେ ଆଠ ବରଷ ଯେ ବଢ଼ା ପରମାୟୁ
ତାହା ମାତ୍ର କ୍ଷୟ କର କି କହିବା ଆଉ ।
ଧର୍ମ ନ କରିଣ ଅଳପକେ ନାଶଯିବ
ତିରିଶ ଜୀଇଲେ ବଡ଼ ଜୀଇଲି ବୋଲିବ ।
ରୋଗୀ ଦରିଦ୍ର ହୋଇବେ ରାଜା ନ ପାଳିବେ
ପାଷାଣ୍ଡ ଲୋକ ସଂସାରେ ବଡ଼ ଜାଣ ହେବେ
ଯେବଣ ଲୋକ ସଂସାର ମଧ୍ୟେ ଥିବେ ରହି
ତାଙ୍କୁ ନାଶିବାରେ କପଟ ଯେ ହିଂସା ବହି ।
ଯୁବତୀ ସ୍ତିରୀମାନେ ଯେ ପୁରୁଷଙ୍କ ପ୍ରାୟେ
ମୁଖେ ମୁଖେ କରିବେ ଯେ ରତି ଅପ୍ରମେୟେ ।
କୁଳୀନ ସ୍ତିରୀମାନେ ଯେ ନିଜ ପତି ତେଜି
ରତି କରାଇବେ ପରପୁରୁଷରେ ମଜ୍ଜି ।
ଗୃହସ୍ଥମାନେ ଯେ ନିଜ ଭାରିଯାକୁ ଛାଡ଼ି
ବେଶ୍ୟା ଛାରକୁ ରମିବେ ତାର ପାଦେ ପଡ଼ି ।
ଦୋଚାରୀ ସ୍ତିରୀମାନେ ଆଚାରୁ ବାହାରିବେ
କୁଳସ୍ତିରୀମାନଙ୍କୁ ଯେ ଅଚ୍ଛେ ନିନ୍ଦୁଥିବେ ।
ସାଧୁ ସନ୍ଥମାନଙ୍କୁ ଯେ ନ ମାନିବେ କେହି
ସଂସାରେ ଉଚ୍ଚ ହେବେ ଭାରଦା ଗୁରୁଦ୍ରୋହୀ ।
ତଳେ ଗୁରୁଥିବେ ଶିଷ୍ୟ ଆସନେ ବସିବେ
ଅଜଣା ବିପ୍ର ପରାୟେ ଓଳଗି ହୋଇବେ ।
ମାତା ପିତାଙ୍କୁ ଗଞ୍ଜିବେ ଭାର୍ଯ୍ୟା ବୋଲ ଶୁଣି
ବିଷ୍ଣୁଙ୍କୁ ନ ପୂଜିଣ ସେ ପୂଜିବେ ମାଲୁଣୀ ।
ଜାତି ଧର୍ମ ବିଚାର ସେ କିଛି ନ କରିବେ
ବ୍ରାହ୍ମଣେ ଅନୀତି କରି ଶୂଦ୍ରଙ୍କୁ ହରିବେ ।

ଶୂଦ୍ର ଛାର ହୋଇ କରି ହରିବେ ବ୍ରାହ୍ମଣୀ
ସଂସାରରେ ନାନା ପାପ ଅର୍ଜିବେ ନା ପ୍ରାଣୀ ।
ବିପ୍ର ବୋଲିବାର ନାମ ଅଟେ ଯେ ଶବଦ
ଯାବତ ଜାତିଙ୍କି ଅଟନ୍ତି ଯେ ଶ୍ରେଷ୍ଠ ପଦ ।
ୟଜ୍ଞସୂତ୍ର ବିକି ବୋଲାଇବେ ଆମ୍ଭେ ବ୍ରହ୍ମ
ଦ୍ୱାଦଶ ଗୁଣ ତେଜିବେ ନାଶି କ୍ରିୟାକର୍ମ ।
ଶୂଦ୍ରଙ୍କୁ ସେବା କରିଣ କୁଟୁମ୍ବ ପୋଷିବେ
ନାମ ମାତ୍ରକ ବ୍ରାହ୍ମଣ ବୋଲି ବୋଲାଇବେ ।
ଶୂଦ୍ରମାନେ ବାହାରିବେ ବ୍ରହ୍ମଚାରୀ ହୋଇ
ନିନ୍ଦିବେ ବେଦଶାସ୍ତ୍ର ଢମାଳି ଗୀତ ଗାଇ ।
ପୁଣ୍ୟରେ ଥିଲେ ତୁମ୍ଭେ ତ କି ସୁଖ ହୁଅନ୍ତା
ପାପକୁ ପାଳିଣ ଏଡ଼େ ହେଲ ବଡ଼ ଦାତା ।
ଏରୂପେ ପୁଣ୍ୟ ଦିଅନ୍ତେ ଆସି ଉପଦେଶ
ଶୁଣିଣ ସେ ପ୍ରାଣୀମାନେ କଲେ ଉପହାସ ।
ବୋଇଲେକ ପୁଣ୍ୟ ତୁମ୍ଭେ କହିଲ ଯେ ବାଣୀ
କାହିଁକି ସ୍ତିରୀଙ୍କି ରତି ନ କରନ୍ତୁ ପୁଣି ।
ଯୁବତୀମାନଙ୍କୁ ସଂସାରେ କି ନ ହରନ୍ତୁ
ବିଭା ହୋଇଣ ତାହାକୁ ବ୍ୟର୍ଥେ କି ପୋଷନ୍ତୁ ।
ଏତେ ବୋଲି ପାଷାଣ୍ଡେ ହସିଲେ ଟହ ଟହ
ତାହା ଶୁଣିଣ ପୁଣ୍ୟର କମ୍ପିଲା ଯେ ଦେହ ।
ପ୍ରାଣୀଙ୍କର କଟୁକଥା ସହି ନ ପାରିଲା
ପ୍ରଭୁଙ୍କ ଛାମୁକୁ ବୋଲି ଶୀଘ୍ରେ ଚଳିଗଲା ।
ବୋଇଲା ଯେ ପାପ ନାଶ କଲା ସବୁ ପୃଥ୍ୱୀ
ସଂସାରେ ନ ରଖିଲା ସେ ଏକ ପରମାର୍ଥୀ ।
ଏଥକୁ ଚାହିଁ ଉପାୟ ବେଗେ ପ୍ରଭୁ କର
ନୋହିଲେ ବିନାଶ ଯିବ ପୃଥ୍ୱୀଟି ତୁମ୍ଭର ।
ବିଷ୍ଣୁ ବୋଇଲେ କାହିଁକି ନାଶକଲା ପାପ
ତୁ ଏବେ ଯମକୁ ଘେନି ସଂସାରକୁ କ୍ଷେପ ।
ସେ ଯମ ଅଟଇ ମୋର ଜନ୍ତୁଙ୍କର ରାଜା
ତାହାଙ୍କୁ ସଙ୍ଗେ ଘେନିଣ ବେଗେ ତୁ ଯାଅଯା ।
ଯମର ବୋଲ ଶୁଣିଣ ଡରିବେ ଯେ ଲୋକେ
କେହି ନ ଚଳିବେ ଆଉ ପାପ ଛାର ବାକ୍ୟେ ।
ଏମନ୍ତ ବୋଲି ଯମକୁ ଦେଲେ ସ୍ୱାମୀ ଆଜ୍ଞା
ବୋଇଲେ ପୁଣ୍ୟର ଏବେ ଦେଖା ତୁ ପ୍ରତିଜ୍ଞା ।
ଶୁଣିଣ ସେ ଯମ ଗଲା ବିଷ୍ଣୁ ଆଜ୍ଞା ପାଇ
ପୁଣ୍ୟକୁ ଧରି ମିଳିଲା ମର୍ତ୍ତ୍ୟଲୋକେ ଯାଇ ।
ବୋଇଲାକ ପ୍ରାଣୀମାନେ କହିବା ଯେ ଶୁଣ
ଅତିହିଁ ପାପ କରୁଛ କିପାଁ ଅକାରଣ ।
ସେ କଥା ଛାଡ଼ି ପୁଣ୍ୟକୁ ବେଗେ ଏବେ ପାଳ
ନୋହିଲେ ନରକରେଟି ପଡ଼ିବ କେବଳ ।
ମୋର ବୋଲ ନ କଲେଟି ସର୍ବେ ନାଶଯିବ
ମୁହିଁ ସିନା ବୁଝୁଅଛି ତୁମ୍ଭ ହାନି ଲାଭ ।
ଏ କଥାକୁ ଚାହିଁ ଏକା ବିଚାରୁ ଯେ ଥାଅ
ନୋହିଲେ ମରିବ ନିଶ୍ଚେଁ ଛାଡ଼ି ଏହି ଦେହ ।
ଜଣକୁ ତ କହୁନାହୁଁ କହୁଛୁ ସଭିଙ୍କୁ
ଧର୍ମ କଲେ ସରି ସିନା ସବୁରି ଦେହକୁ ।
ସବୁ ଦେହଯାକ ଚାହଁ ଏକା ପରି ଅଟେ
ପୂଜ ନାଳ ମଳ ମୂତ୍ର ଅସ୍ଥି ଚର୍ମ ଫୁଟେ ।
ଏଡ଼େ ଯେ ପାପ ଦୁର୍ଗନ୍ଧ ଦେହଗୋଟି ବହି
ଧର୍ମ କିପାଇଁ ନ କର ଧରି ଦେହ ପାଇ ।
ପୂଜ ଦେହ ଗୋଟାକୁ ଯେ ପୁଣ୍ୟ ଏକା ମୋକ୍ଷ
ତାହା ନ ପାଳିଲେ ନର୍କେ ପଡ଼ିବ ପ୍ରତ୍ୟକ୍ଷ ।
ବୁଝିଲେ ତ ଦେହଯାକ ସବୁ ଏକ କାୟେ
ପୁଣ୍ୟକଲା ଶରୀରୁ ଦୁର୍ଗନ୍ଧ ଧୋଇଯାଏ ।
ଦୁର୍ଗନ୍ଧ ଧୁଆଲୋକ ସାକ୍ଷାତେ ବିଷ୍ଣୁଦେହୀ
ଦେବା ଦୟା କଲା ଲୋକ ନର୍କୁ ତରିଯାଇ ।
ହେ ନରେ ନରକ ଆଉ ଅଛି କେଉଁଠାରେ
ଏଥୁ ବେଶୀ ନରକ କି ଅଛି ଯମପୁରେ ।
ପ୍ରତ୍ୟକ୍ଷେ ତୁମ୍ଭ ଶରୀରୁ ନର୍କ ଦେଖ ଖସେ
ରକତ ଖଙ୍କାର ପୂଜ ନାଳ ମୂତ୍ର ଭାସେ ।
ଆବର ଲୋଡ଼ିଲା ମାଏ କୃମି ପୋକ ନାହିଁ
ଦେହକୁ ଖାଇଲେ ଆରଦିନେ ଗନ୍ଧ ହୋଇ ।
ଏ ପୂତିଦେହ ଧରିଣ ସମସ୍ତେ ତ ଅଛ
ଶ୍ରୀହରିଙ୍କି ଭଜିଲାରୁ ସଂସାରେ ଜୀଇଛ ।
ନୋହିଲେ ଯାଆନ୍ତାଣିଟି ଏ ଦେହ ମିଳାଇ
ଏମନ୍ତେ କୃତାନ୍ତ ଦିଏ ଧର୍ମକୁ ବତାଇ ।
ଶୁଣି ବୀରମାନେ ଯୋଡ଼ିଲେକ ବେନିକର
ଶମନକୁ ଚାହିଁକରି କହନ୍ତି ଉତ୍ତର ।
ବୋଲନ୍ତି ହେ ଯମରାଜା ଶୁଣ ଆମ୍ଭ ବାଣୀ
ସବୁବେଳେ ନାମକୁ କେ ପାରିଛି କି ଜିଣି ।
ଏମନ୍ତ ଲୋକ ସଂସାରେ ଅଛି କେହୁ କହ
ଶୁଣିଣ ଯମଦେବତା ହସି ଟହ ଟହ ।
ବୋଇଲେ ଶୁଣ କହିବା ତେବେ ଆହେ ନରେ
ଯେତେ ଜୀବ ଅଛନ୍ତିଟି ବ୍ରହ୍ମାଣ୍ଡ ଭିତରେ ।
ସବୁରି ମୁଖେ ଯାଉଛି ଜାଣ ନାମ ସ୍ଫୁରି
କେ ଉଚ୍ଚେ ଡାକିଲେ କେହୁ ବୋଲେ ଥିରିଥିରି ।

କେ କର୍ଣ୍ଣେ ଶୁଣୁଛି କେହୁ ବୋଲୁଛି ଯେମୁଖେ
କେ ବେଳାରେ ବୋଲୁଅଛି କେହୁ ଅବା ଦୁଃଖେ
କେହୁ ଅବା ଘରେ କଳିକରି ମୁଣ୍ଡ କୋଡ଼େ
ଆହେ ଜଗନ୍ନାଥ ରଖ ବୋଲି ଡକାପାଡ଼େ ।
ଏରୂପେ ମୁଖେ ଅବଶ୍ୟ ନାମ ବାହାରଇ
ଦିନଯାକରେ କେ ଥରେ ହେଲେହେଁ ବୋଲଇ
ଏଣୁକରି ପୂତିଦେହ ନ ଯାଇ ଯେ ପୋକ
ଯମପୁର ଖୋଜିଲେ ଯେ ଦେହ ଅଛି ଏକ ।
ଏତେ ନର୍କ ଧରି ଦେହ ଯମକୁ ଯେ ଡରେ
ଆପଣା ହୃଦେ ନ ଚିହ୍ନ ବ୍ୟର୍ଥେ ଭ୍ରମି ମରେ ।
ଏହି ନରକ ଦେହକୁ ରୋଗରୂପେ ଆସେ
ଦାନ ଧର୍ମ ନ ଥିଲେ ଶରୀରେ ମାଡ଼ିବସେ ।
ନାନା ବିକାର କରିଣ ପ୍ରାଣଘାତ କରେ
ଧର୍ମ କଲା ଲୋକ ଏକା ରହଇ ସଂସାରେ ।
କ୍ଳେଶ ପାଇଲେ ହେଲେହେଁ ରହେ ବଞ୍ଚିସୁଖେ
ପାପୀଙ୍କି ହୁଅଇ ଭୋଗ ଦୁଇପୁର ନର୍କେ ।
ଜୀବନ୍ତେ ନରକ ଭୋଗ ମଲେ ନର୍କେ ଥାଇ
ଭାଗ୍ୟବନ୍ତ ଲୋକ ଯମକୁ ଯେ ନ ଡରଇ ।
ଏ ଦେହରେ ପୁଣ୍ୟ ଯେତେ ଅର୍ଜିଥିବ ପ୍ରାଣୀ
ସେହୁ କିପାଁ ଶମନକୁ ଡରିବଟି ପୁଣି ।
ଏତେ ବୋଲିଣ କୃତାନ୍ତ ପ୍ରାଣୀଙ୍କୁ ତିଆରି
ଶୁଣିଣ ଲୋକେ ରହିଲେ ପୁଣ୍ୟ ଆଶ୍ରା କରି ।
ପାଞ୍ଚନ୍ତି ଯେ ଯମ ନେଇ ପକାନ୍ତିଟି ନର୍କେ
ସେ ଆସିଣ ଦେଖ ଜ୍ଞାନ ବତାଉଛି ଲୋକେ ।
ତାଙ୍କ ବୋଲ ନ କଲେ କି ଅଛି ଆଉ ଗତି
ଏତେ ବିଚାରିଣ ଲୋକେ କଲେ ବିଷ୍ଣୁ ଭକ୍ତି ।
ପଢ଼ିଲେକ ଘରେ ଘରେ ଶାସ୍ତ୍ର ଯେ ପୁରାଣ
ଦେବା ଦୟା କରିଣ ସେ କଲେ ଦାନ ପୁଣ୍ୟ ।
ଜପ ବାର ବ୍ରତ ଆଦି କଲେ ବିଷ୍ଣୁ ପୂଜା
କେହି କାହାକୁଟି ସାନ ନ ମଣିଲେ ଦୁଜା ।
ବୋଇଲା କିରେ ନରେ ତ କଲ ବିଷ୍ଣୁ ଜପ
ଲୋକଙ୍କର ଭକ୍ତିପନ୍ଥା ଦେଖି ନେତ୍ରେ ପାପ ।
ଲୋକେ ବୋଇଲେ କେସନେ ନ ଭଜନ୍ତୁ ହରି
ଯହିଁରେ ଶମନ ଆସି କହିଲେ ତିଆରି ।
ତା ବୋଲକୁ ନ ମାନିଲେ କାହିଁ ନାହିଁ ବାସ
ତା ବୋଲ ନ ପାଳିଲେ ଯେ ହେବୁ ପାପେଧ୍ୱଂସ
ଶୁଣିଣ ପାପ ମନକୁ କଲା ଉଦବେଗ
ସେହିଲାଗେ କହିଲାକ ଯାଇ ଯମ ଆଗ ।

ବୋଇଲା ଶୁଣିମା ହେଉ ଆହେ ନାଶକର
ଲୋକଯାକେ ପୁଣ୍ୟକୁ କି ଦେଲ ଅଧିକାର ।
ମୋତେ ତେବେ କାହିଁ ନେଇ ରଖିବ ତା କହ
ଆମ୍ଭେ ପାପ ପୁଣ୍ୟ ବସୁ ସବୁଙ୍କରି ଦେହ ।
ଯମ ବୋଇଲେ କହିଲୁ ହେଲେ ତୁହୋ ସତ୍ୟ
କେବଳ କଥାଏ ତୋର ହୋଇଲା ଅସତ୍ୟ ।
ପିଉସୀ ମାଉସୀ ଯାହା କରାଇଲୁ ରତି
ଭଉଣୀ ଜେଠାଇଙ୍କର ନ ରଖିଲୁ ଜାତି ।
ଯେ ଯାହା ଇଚ୍ଛାରେ କଲେ ଲାଗନ୍ତା ନା ପାପ
ତୁହି ଥାଆନ୍ତେ ଆମ୍ଭର ନ କାଟିଲା ଚୋପ ।
ଏଣୁକରି ତୋତେ ଏବେ କହିବା ହେ ଶୁଣ
ଯେ ଲୋକଠାରେ କରିବୁ ତୁହି ବେହରଣ ।
ସେମାନଙ୍କ ନାମ ଶୁଣିଥାଅ ଭଲେ ତୁହି
ନଟ ଯୁତ ଭାରଦା ଯେ ବେଶ୍ୟା ଗୁରୁଦ୍ରୋହୀ ।
ପରଠାରେ ଅହଙ୍କାର ଯାର ଅନୁବ୍ରତେ
ମାନିତା ସ୍ତିରୀକୁ ଯେହୁ ହରେ ବଳାତ୍‌କୃତେ ।
ବ୍ରାହ୍ମଣମାନଙ୍କୁ ଅବମାନନା ଯେ କରେ
ବୈଷ୍ଣବ ସାଧୁ ଦ୍ରବ୍ୟକୁ ଯେଉଁ ପାପୀ ହରେ ।
ଗୃହସ୍ଥର ବଚନକୁ ଭାଙ୍ଗେ ଯେଉଁ ନାରୀ
ରତି କରାଇବା ପରଠାରେ ଅନୁସରି ।
ଗୋବିନ୍ଦର ନାମକୁ ନ ଭଜେ ଯେହୁ ନିତି
ବିଷ୍ଣୁ ପୁରାଣ ଶୁଣି ଯେ ବିଷ ପ୍ରାୟ ହ୍ୱନ୍ତି ।
ହରିନାମ ସଂକୀର୍ତ୍ତନ ଯେଉଁ ସ୍ଥାନେ ନୁହେଁ
ନିତି ନିତି କନ୍ଦଳଟି ଲାଗେ ଯେଉଁ ଗୃହେ ।
ଦେବୋର ଦ୍ରବ୍ୟ ହରଣ କରଇ ଯେ ପାପୀ
ତୁଳସୀ ବୃକ୍ଷକୁ ଯେ ନ ଥାଇ ଗୃହେ ସ୍ଥାପି ।
ଜାର ଚଉର୍ଯ୍ୟ ଅସତ୍ୟ କରେ ଯେଉଁ ଲୋକ
ପ୍ରାଣୀଙ୍କୁ ହିଂସାକରି ଯେ କହେ କଟୁବାକ୍ୟ ।
ବାଳକ ଦେହରୁ ନିଏ ପଦାର୍ଥ ଯେ ଫେଇ
ଗୁରୁଙ୍କୁ ନ ସେବି ସେ ଦକ୍ଷିଣା ନ ଦିଅଇ ।
ପରର ପଦାର୍ଥମାନ କରନ୍ତି ଯେ ଚୋରି
ବିଶ୍ୱାସୀଲୋକଙ୍କୁ ଯେହୁ ଅବିଶ୍ୱାସ କରି ।
ବ୍ରାହ୍ମଣ ହୋଇଣ ସେବା କରେ ଯେହୁ ଶୂଦ୍ରେ
କଉଡ଼ି ଘେନିଣ ମଞ୍ଜି ମାପଇ ଯେ ଛିଦ୍ରେ ।
ବିଷ୍ଣୁର ଶାଳଗ୍ରାମ ନ ଥାଇ ଯାର ପୂଜା
ତୁଣ୍ଡେ କୃଷ୍ଣ ନ ବୋଲିଣ ଭୁଞ୍ଜଇ ଯେ ଦ୍ୱିଜା ।
ଗୋବିନ୍ଦେ ଚଳୁ ନ ଦେଇ କରେ ଯେହୁଗ୍ରାସ
ଅମେଧ ଭୋଜନ ତାହା ଅଟଇ ଅବଶ୍ୟ ।

ଆଉ ଯେଉଁ ଲୋକମାନେ ନ ଭଜିବେ ହରି
ସେତେ ଲୋକଠାରେ ପାପ ଥାଏ ବାସକରି ।
ଆହୁରି କଥାଏ ଶୁଣ କହିବାକ ତୋତେ
ସାଧୁଙ୍କ ପାଶକୁ ଯେ ନ ଯିବୁ କଦାଚିତେ ।
ବିଷ୍ଣୁ ସ୍ମରଣ ଭଜିବ ଯେ ନିଶି ଦିବସେ
ତୁ ପାପପୁରୁଷ ହୋ ନ ଯିବୁ ତାର ପାଶେ ।
ସତ୍ୟବାଦୀ ଲୋକଙ୍କୁ ଯେ ନ ପୀଡ଼ିବୁ ପାପ
ତୁ ପୀଡ଼ିଲେ ପୁଣ୍ୟର ଯେ ହେବ ତୋତେ କୋପ ।
ଯେ କୋପ ହେଲେ ତୁ ଭସ୍ମ ହେବୁଟି ଦୁର୍ଜନ
ଏତେ କହିଣ ପୁରକୁ ଚଳିଲେ ଶମନ ।
ଶୁଣ ଆହେ ପୁରୁହୁତ କହେ ବୈଶ୍ୱାନର
ଏହି ପୁଣ୍ୟଲାଗି ଜାଣ ରହିଛି ସଂସାର ।
ପୁଣ୍ୟ ନ ଥିଲେ ନିର୍ବଂଶ ହୁଅନ୍ତି ଲୋକ କାଳେ
ସାଧୁଙ୍କ ତୁଲେ ତାଙ୍କୁ ନ ଲେଖି କେତେବେଳେ ।
ତଥାପି କାଳର ବଳେ ସମସ୍ତେ ଅଜ୍ଞାନ
ଏହି ବ୍ରହ୍ମାଣ୍ଡରେ ଯେତେ ଛନ୍ତି ଜନେ ଜାଣ ।
ଅନ୍ତଃକାଳକୁ ଆୟତ୍ତ ନ ଥାଏ ତାହାରି
ଏଣୁ ଏହି ଦୁଇକାଳ ବ୍ୟର୍ଥେ ଯାଏ ସରି ।
ତରୁଣକାଳେ ପ୍ରାଣୀର ହୁଏ ଏକା ଜ୍ଞାନ
ସେ ସମୟତକ ଯେ କରଇ ଦାନପୁଣ୍ୟ ।
ତାହାକୁ କେତେବେଳେ ନ ପୀଡ଼େ ଜାଣ ବ୍ୟାଧି
କହନ୍ତି ଯେ ବୈଶ୍ୱାନର ଶୁଣ ଜମ୍ଭଭେଦୀ ।
ଦେହ ଚଳୁ ଚଳୁ ଅଧର୍ମ ଯେ ଆଶ୍ରେ କରେ
ସେହୁ ପ୍ରାଣୀ ସଂସାରରୁ କେବେହେଁ ନ ତରେ ।
ଜନ୍ମରୁ ମରଣ ଯାଏ ବ୍ୟର୍ଥ ତାର ଦେହୀ
ଆବର ମଧ କହିବା ଇନ୍ଦ୍ର ଶୁଣ ତୁହି ।
ପ୍ରାଣୀର ଆୟୁ ଲେଖିଲେ ଶତେବର୍ଷ ଆଗ
ତହିଁରୁ ନିଦ୍ରାରେ ଅଧେ ଗଲା ହୋଇ ଭୋଗ ।
ଆବର ଅଧେକ ବେନିଭାଗ ସେ ହୋଇଲା
ତହୁଁ ଭାଗେ ବାଳ ବୃଦ୍ଧକାଳେ ଦିନ ଗଲା ।
ଆଉ ବଳି ରହିଲାକ ବର୍ଷ ପଚିଶଟି
ତହିଁକି ଲୋଭ କରୁଛି ଏତେ ହୋଇ ଘାଣ୍ଟି ।
ଏ କଥା ଏକା ଜାଣଇ ସୁବୁଦ୍ଧି ସୁଶୀଳ
ଦେବା ଦୟା କଥାରେ ଯେ ନ କରଇ ହେଳ ।
ଅନୁବ୍ରତେ ଗୋବିନ୍ଦର ପାଦେ ଚିତ୍ତ ଥାଇ
ସବୁଙ୍କୁ ସମ ମଣଇ ସମଦର୍ଶୀ ହୋଇ ।
ସାଧୁଜନମାନଙ୍କର ଏସନକ ଗତି
ପାପୀର କଥା ଯେ ଏବେ ଶୁଣ ସୁରପତି ।

ସାଧୁଙ୍କୁ ନ ମାନି ଦିନ ପାଷାଣ୍ଡ ଯେ ହରେ
ମିଥ୍ୟାଭାଷୀ ହୋଇକରି ଶାସ୍ତ୍ର ନିନ୍ଦା କରେ ।
ଅତିଥି ପଡ଼ିଲେ ଘରେ କରଇ ନିରାଶ
ବେଶ୍ୟାକୁ ଯେ ଟଙ୍କା ଦିଏ ହୋଇ ହସ ହସ ।
ପରସ୍ତିରୀ ହରଣେ ଯେ ଦିଏ ତଣ୍ଡ ପୁଣି
ଛଅଣ ପଡ଼ିଲେ ଦିଏ ଚାରିଶ ଯେ ଗଣି ।
ଦୁଇଶ କାଟିବେ ବୋଲି ହର୍ଷ ହୋଇ ଆସେ
ଚନ୍ଦନଚିତା କାଟିଣ ବସେ ଲୋକ ପାଶେ ।
ନ ବୋଲଇ ଚାରିଶ ମୋ ବ୍ୟର୍ଥ ଗଲେ ଘେନି
ଛାଡ଼ିଲେ ବୋଲିଣ ହୃଷ୍ଟେ ଦ୍ୟନ୍ତି ଟଙ୍କା ଗଣି ।
ତହିଁ ଉତ୍ତାରୁ ବୁଲଇ ଦାଣ୍ଡେ ମାଳି ଭଜି
ପାଞ୍ଚଲୋକ ବସିଲେ ତା ଦିଏ ମନ ତେଜି ।
ବାଳକ ଥିଲେ ତାହାର ନିଏ ହସ୍ତ ଧରି
କଥାରେ ଭୁଲାଇ ମାଳା ନିଏ ଚୋରିକରି ।
ପରନାରୀ ପରଦ୍ରବ୍ୟ ହରେ ଅନୁକ୍ଷଣେ
ଆୟୁ ଥାଉଁ ଥାଉଁ ମୃତ୍ୟୁ ପାଏ ସେହୁ ଏଣେ ।
ଦେହ ଅନ୍ତେ ମଲେ ସେହି ପଡ଼େ ଯାଇ ନର୍କେ
ତିନିକଳ୍ପ ଯାଏ ପଡ଼ଇ ସେ କୁମ୍ଭୀପାକେ ।
ତହିଁ ଆସିଲେ ଚଣ୍ଡାଳ ଘରେ ହୁଏ ଜାତ
ରୋଗ ତନୁ ଧରିଣ ସେ କରେ ନାନାକୃତ୍ୟ ।
ପୁରୀଷ ହସ୍ତରେ କାଢ଼ି ପିଏ ସୁରା ତୁଣ୍ଡେ
ଗୋମାଂସକୁ ଭକ୍ଷିବାକୁ ଆଣେ ବହି ମୁଣ୍ଡେ ।
ଶରୀର ତା ଅପ୍ରଚ୍ଛନ୍ନ ଅଶୋଭା ତା ତନୁ
ଭୋଜନ ଅନ୍ତେ ଉଚ୍ଛିଷ୍ଟ ଭୁଞ୍ଜେ ନାନାବର୍ଣ୍ଣୁ ।
ଶତେଜନ୍ମ ଯାଏ ଏହିରୂପେ ଜନ୍ମୁ ଥାନ୍ତି
ଅନ୍ଧ ଜଡ଼ ପଙ୍ଗୁ କଣା ବଧିର ହୁଅନ୍ତି ।
ଆଉ ପାପର କହିବା ଶୁଣ ଦୁରାପଦ
ଯେଉଁ ଶିଷ୍ୟ କରଇ ଶ୍ରୀଗୁରୁ ମନେ ଖେଦ ।
ଦେଖିଲାକ୍ଷଣି ପ୍ରଣାମ ଯେହୁ ନ କରଇ
କୁଟୁମ୍ବଲୋକଙ୍କ ପ୍ରାୟେ ମନେ ଆଚରଇ ।
ଶକ୍ତିକୁ ଚାହିଁଣ ଯେହୁ ଦକ୍ଷିଣା ନ ଦେବ
ଗୁରୁଙ୍କ ବାକ୍ୟ ତେଜିଣ ପ୍ରଳାପୀ ଯେ ହେବ ।
ଆବର ଶୃଙ୍ଗାର ହେତୁ ଇଚ୍ଛେ ଗୁରୁପୁରେ
ସେ ଲୋକ ମଲେ ପଡ଼ଇ ଯାଇ ନରକରେ ।
ଶତେଜନ୍ମ ଯାଏ କୀଟ କୃମି ହୋଇଥାଇ
ତଦନ୍ତରେ ଯାଇଣ ସେ ପଶୁ ଦେହ ପାଇ ।
ଆବର ଶ୍ୱାନ ମଞ୍ଜାରୀ ହୁଅଇ ଭଲ୍ଲୁକ
ଶୂକର ହୋଇ ପୁରୀଷ ଭକ୍ଷଇ ଅନେକ ।

ଏହିମତି ତାହାର ଯେ କେତେଦିନ ଯାଇ
ତହିଁ ଉତ୍ତାରୁ ପୁଣି ସେ ମନୁଷ୍ୟ ହୁଅଇ ।
ଗୁରୁଦ୍ରୋହୀ ହେବାରୁ ନ ଯାଇ କେବେଦୋଷ
ବାଲୁତ ମୂର୍ଖ ହୋଇଣ ବୁଲଇ ଅବଶ୍ୟ ।
ସେ ଦେହ ଗଲେ ଉତ୍ତମ ଦେହ ପୁଣ ପାଇ
ଧର୍ମକୁ ଆଶ୍ରେ କଲେ ସେ ତରେ ଗୁରୁଦ୍ରୋହୀ ।
ଜୀବରେ ଦୟା ବହିଣ ଭଜେ ହରିନାମ
ତେବେ ଯାଇଣ ସେ ପ୍ରାଣୀ ଲଭିବ ସୁଜନ ।
ପିତୃଦ୍ରୋହୀ ଦୋଷ ଶୁଣ କହିବା ଯେ ଏବେ
ମାତା ପିତା ନ ପୋଷିଣ ଆପେ ସୁଖ ଲଭେ ।
ନୋହିଲେ ଶିରୀ ସମ୍ପଦ ଜାଣ ମନେ ଇଚ୍ଛି
କାରଣ ହେବ ବାପକୁ ମନ୍ଦ ମନେ ପାଞ୍ଚି ।
ସେ ଲୋକର ମୁଖ କେଭେ ପ୍ରଭାତୁ ନ ଚାହିଁ
ତାକୁ ଛୁଇଁଲେ ଗୋବଧ ଦୋଷ ଜାଣ ପାଇ ।
ସେହି ମହାପାପୀ ମଲେ ନର୍କେ ହୁଏ ଜାତ
ପୂତିଗନ୍ଧେ ପଡ଼ିଣ ସେ ପିଅଇ ଶୋଣିତ ।
ସହସ୍ର ଯୁଗେ ପତଙ୍ଗ ତନୁ ପୁଣି ଧରେ
ଗୃଧ୍ରପକ୍ଷୀ ହୋଇ ନାନାଜୀବ ଭୋଗ କରେ ।
ତଦନ୍ତରେ ସେହି ପୁଣି ଜନ୍ମେ ନରକୁଳେ
ବିଷ୍ଣୁ ସେବିଲେ ତରଇ ଯାଇ ତତକାଳେ ।
ବ୍ରାହ୍ମଣ ନିନ୍ଦା ଯେ ପାପ କହିବା ହୋ ଶୁଣ
ଦକ୍ଷିଣା ନ ଦେଇ ଯେହୁ ଶୁଣନ୍ତି ପୁରାଣ ।
ସହସ୍ର ନାମ ଶୁଣଇ ନ ଦିଏ ଯେ ମୂଲ
ଦକ୍ଷିଣା ମାଗିଲେ କଳି କରେ ବିପ୍ର ତୁଲ ।
ବିପ୍ର ଆଗେ ଗର୍ବକରି ଚାଲେ ଯେଉଁ ପ୍ରାଣୀ
ନିନ୍ଦଇ ଯେ ଅନୁବ୍ରତେ ବିପ୍ର କଥା ଶୁଣି ।
ବିପ୍ରଙ୍କର ଦାନ ବୃତ୍ତେ ହରେ ଯେଉଁ ନଷ୍ଟ
କିଛି ପଣ ପାଇଲେ ସେ ବୋଲଇ ମୁଁ ଶ୍ରେଷ୍ଠ ।
ଏହି ଛାର କେଡ଼େ ଲୋକ ଅଟେ ଭିକ୍ଷୁଜାତି
ଆମ୍ଭେ ଦେଲେ ସିନା ଏହୁ ନେବ ଦାନବୃତ୍ତି ।
ଏମନ୍ତ ସେ ବଡ଼ପଣ ବହି ବିପ୍ରଠାରେ
ଗ୍ରାମଣୀ ହେଲାରୁ ଅବମାନନା ଯେ କରେ ।
ଆମ୍ଭେ ବଡ଼ ବୋଲି ଯେଣୁ ଆପେ ହୁଏ ଟେକି
ତେଣୁକରି ମଲେ ସେହୁ ହୁଅଇ ନାରକୀ ।
ଦୁଃସହ ପୂତି ଗନ୍ଧରେ ପଡ଼େ ମୁଖମାଡ଼ି
ଶତେଯୁଗ ଗଲେ ପଶୁ ହୁଅଇ ବାଦୁଡ଼ି ।
ଆନ ସୃଷ୍ଟି ଯେତେବେଳେ ରଚେ ପରମେଷ୍ଠୀ
ତେବେ ଯାଇ ଉପୁଜଇ ମନୁଷ୍ୟ ହୋଇଟି ।

ତଥାପି ହୋଇଲେ ନରେ ନାହିଁ ପ୍ରତିକାର
ଖଡ଼ଗେ ବାଜିଣ ମୁଣ୍ଡ ଛିଡ଼ଇ ତାହାର ।
ତଥାପି ମାନବ ଯେବେ ଲେଉଟି ହୁଅଇ
ଦରିଦ୍ର ହୋଇଣ ବଞ୍ଚେ ଅନ୍ନ ନ ମିଳଇ ।
ରଣଯାଗ କଲେ ପୁଣ ତରଇ ସେ ଲୋକ
ଏମନ୍ତ ଦଶା ଲଭଇ ବ୍ରାହ୍ମଣ କଣ୍ଟକ ।
ତହିଁ ଉତ୍ତାରୁ ପାପୀଙ୍କ କଥା ଆଉ ପୁଣ
ଜଣେ ଜଣକର ସରି ଅଟେ ଜଗତେଣ ।
ସେ ପାପୀମାନଙ୍କ କଥା ଶୁଣ ଏକେ ଏକେ
ବିଧବା ସ୍ତିରୀର ତୁଲେ ବଢ଼ନ୍ତି ଯେ ଲୋକେ ।
ବିନା ଅପରାଧେ ଯେହୁ ପ୍ରଜାକୁଳ ନାଶେ
ପ୍ରାଣୀଙ୍କୁ ବିଷ ଦେଇଣ ମାରନ୍ତି ଯେ ଗ୍ରାସେ ।
ଗର୍ଭସ୍ଥିତ ବାଳକକୁ ନାଶନ୍ତି ଯେ ପ୍ରାଣୀ
ଗୁପ୍ତକଥା ଶୁଣି କରେ ପ୍ରଘଟ ଯେ ଆଣି ।
କ୍ଷତ୍ରିୟ ହୋଇଣ ଯେହୁ ଶରଣ ନ ରଖେ
ଅଶୁଦ୍ଧ ସ୍ତିରୀର ଯେହୁ ଭଗଦ୍ୱାର ଦେଖେ ।
ରାଜା ହୋଇଣ ଲାଞ୍ଚକୁ ଯେହୁ ମନ କରେ
ଅତିଥି ଯାହାର ଘରୁ ଚଳେ ନିରାଶରେ ।
ନିର୍ଦ୍ଦୋଷୀ ପ୍ରାଣୀଙ୍କୁ ଯେହୁ ଦିଏ ଅପବାଦ
ପରସ୍ତିରୀ ହରଇ ଯେ ପଢ଼ି ଚାରିବେଦ ।
ଦୋଷ ଅର୍ଜିଣ ସାହସେ ନିୟମ ଯେ କରେ
ଥେଣ୍ଟବୁଦ୍ଧି ଘେନି ଯେହୁ ପରବିତ୍ତ ହରେ ।
ଭାରିଯା ପାଳି ମାତାଙ୍କୁ ଯେହୁ ଦଣ୍ଡ ଦିଏ
ବିପ୍ରକୁ ନ ମାନି ଦାନଭୂମି ହରିନିଏ ।
ଉଲଗ୍ନେ ଚାଲଇ ଯେହୁ ଜନମଧେ ପଶି
ମତ୍ତଗର୍ବ ହୋଇ ଯେହୁ ସାଧୁଜନ ନାଶି ।
ସାଧୁନିନ୍ଦା କରି ଯେହୁ ମୂର୍ଖଜନେ ବନ୍ଦେ
ନ ମାନି ପୁରାଣ ଯେହୁ ଶ୍ରୀହରିଙ୍କୁ ନିନ୍ଦେ ।
ଗୋବିନ୍ଦ ଭକତଙ୍କୁ ଯେ ଦେଖି ହାସ୍ୟ କରେ
ବଇଷ୍ଣବ ମଠକୁ ଯେ ଭାଙ୍ଗଇ ଗର୍ବରେ ।
ଖଚ ମିଛ ଶୁଣି ଯେହୁ ହରେ ବିପ୍ର ବୃତ୍ତି
ମାନିତା ସ୍ତିରୀସହ ଯେ କରେ ବଳେ ରତି ।
ପରସ୍ତିରୀ ହରିଣ ଯେ ଯାନ୍ତି ତୀର୍ଥକରି
ସୁହୃଦ କରିଣ ଯେହୁ ମିତ୍ରପତ୍ନୀ ହରି ।
ସଭାରେ କହନ୍ତି ପକ୍ଷକରି ଯେତେ ଲୋକ
ମୀନ ମେଷ ମାରି ଯେହୁ ଭୁଞ୍ଜେ କରି ପାକ ।
ଯେଉଁଲୋକ ଅଜ୍ଞାନରେ ଗୁରୁପତ୍ନୀ ହରେ
ଇଷ୍ଟଜନ ନିଦ୍ରା ଯେହୁ ଭାଙ୍ଗେ ଅକାର୍ଯ୍ୟରେ ।

ଗୁରୁଙ୍କର ଦ୍ରବ୍ୟ ଜାଣ କରନ୍ତି ଯେ ଚୋରି
ଶୂଦ୍ର ହୋଇଣ ବ୍ରାହ୍ମଣ ପତ୍ନୀ ଯେବେ ହରି ।
ଭାରିଯା ଦେହ ବିକି ଯେ ପ୍ରାଣୀ ହୁଏ ପୋଷି
ସାହୁଙ୍କୁ ନ ଶୁଝି ଯେହୁ ହୁଅଇ ବ୍ରହ୍ମର୍ଷି ।
ବିଶ୍ୱାସ କଥା ପ୍ରଘଟ କରେ ଯେହୁ ଆଣି
ବ୍ରାହ୍ମଣ ହୋଇଣ ଯେବେ ହରଇ ଶୂଦ୍ରାଣୀ ।
ଶ୍ରୀଗୁରୁ ବାକ୍ୟ ଶୁଣିଣ କରଇ ଯେ ତମ
ଆପେ ଅଦାତା ହୋଇଣ ଭାଙ୍ଗେ ପରଧର୍ମ ।
ଏ ପାପୀମାନଙ୍କୁ ଲେଖି ବ୍ରହ୍ମଦ୍ରୋହୀ ତୁଲେ
କେବଳ ମୋକ୍ଷ ନୁହନ୍ତି ଏ କୋଟିଜନ୍ମ ଗଲେ ।
ଯେତେବେଳେ ଅନ୍ୟ ସୃଷ୍ଟି କରେ ପିତାମହ
ତେବେଯାଇ ସେହି ଲୋକ ଲଭେ ପୁଣ୍ୟଦେହ
ଶଚୀସାଇଁ କହୁଛନ୍ତି ଶୁଣ ବୈଶ୍ୱାନର
ପଣ୍ଡିତ ଲୋକର ଏକା ପାପକୁ ଯେ ଡର ।
ଧର୍ମାର୍ଥ କଥା କରିଣ ତରନ୍ତୁ ସଂସାରୁ
ଯେଉଁ ଧର୍ମ ନ କରେ ସେ ଜୀଉଁ ଜୀଉଁ ମରୁ ।
ସବୁ ଜନ୍ମରୁ ମାନବ ଜନ୍ମ ଅଟେ ସାର
ସାରଦେହ ବହି ଯେ ନ ଜାଣେ ଧର୍ମ ପର ।
ତାହାଙ୍କୁ ଗ୍ରାମ୍ୟପଶୁରେ ଜାଣ ଲେଖାକରି
ଖର ଯେହ୍ନେ ନ ଜାଣଇ ଗୁରୁବୋଝ ଧରି ।
ଏହିପରି ସଂସାରରେ ତାହାଙ୍କୁ ଯେ ଲେଖି
ଆତଯାତ କଥାରେ ସେ ନୁହଇଟି ସୁଖୀ ।
କେବଳ ଧର୍ମରେ ବର୍ତ୍ତେ ଯେହୁ ଅନୁବ୍ରତେ
ତାହାର ଜନମ ଧନ୍ୟ ଅଟେ ଏ ଜଗତେ ।
ସଂସାର ଜନଙ୍କ ମଧେ ପବିତ୍ର ତା ଅଙ୍ଗ
ଆଚ୍ଛା ବୋଲାଇଣ ସେହୁ କରେ ସର୍ବଭୋଗ ।
କାଳେ ଗୋବିନ୍ଦ କରନ୍ତି ତାକୁ ପରିତ୍ରାଣ
ଏକଥା ଧର୍ମଶାସ୍ତ୍ରରେ ଅଟଇ ପ୍ରମାଣ ।
ଆହେ ଇନ୍ଦ୍ର ବିଚାରିଣ ଏହି କାର୍ଯ୍ୟକର
ମୋତେ ଭଲ କଲେ ହେବ ସୁକୃତ ତୋହର ।
ସବୁଯୁଗେ ରହିଥିବ ତୋର ପୁଣ୍ୟଧ୍ୱନି
ବୋଲିବେ ବ୍ରହ୍ମାଣ୍ଡେ ନାହିଁ ଇନ୍ଦ୍ରପରା ଦାନୀ ।
ବିଷ୍ଣୁ ତହୁଁ ମାଗିଦେଲା ଅଗ୍ନିକୁ ତା ମୂର୍ଚ୍ଛି
ଏଡ଼େ ନିର୍ଲ୍ଲୋଭୀ ହୋଇଣ ପୁରୁଷେକ ଅଛି ।
ଏମନ୍ତ ବୋଇଲେ ଯଶ ନୋହିଲେକ ତୋର
ମୁହିଁ ଏ କ୍ଳେଶୁଁ ତରିଲେ ପାଇବି ସଂସାର ।
ଏମନ୍ତ ବୋଲୁ କହିଲେ ଯହୁଁ ବ୍ରହ୍ମଅଗ୍ନି
ଚଳିଲେ ବନକୁ ଇନ୍ଦ୍ର ଶସ୍ତ୍ର କରେ ଘେନି ।
ଅମୃତବାଞ୍ଛା ବୃକ୍ଷର ମୂଳକୁ ସେ ଗଲେ
ଗଛ ଚାରିପାଖେ ବୁଲି ବକଳ ଛେଦିଲେ ।
ତଉଲ ପ୍ରମାଣେ ତହୁଁ ଦେଲେ ତୋଳାଦଶ
ଯାହା ବଳିଲା ରଖିଲେ ନେଇ ନିଜ କୋଷ ।
ତଥାପି ତା ଦେଇ ଇନ୍ଦ୍ର ଭାଳଇ ଯେ ମନେ
ଫେଡ଼ି ନ କହଇ ମାତ୍ର ଆମ୍ଭର ବଚନେ ।
ଲୋକାୟିତେ ଲଜ୍ଜାକରି ଝୁରେ ମନେ ପଡ଼ି
ବୋଲଇ ଯେ କାହିଁପାଇଁ ଦେଲଇଁ ମୁଁ ହୁଡ଼ି ।
ବ୍ୟର୍ଥରେ ଦେଲି ବୋଲିଣ ପାଞ୍ଚଇ ଅଦ୍ୟାପି
ତା ପାଞ୍ଚ ଜାଣିଣ ଅଗ୍ନି ହେଲେ ମହାକୋପୀ ।
ଜାଣନ୍ତି ସେ ସବୁହୃଦେ ଥାଇ ସବୁ ମନ
ଇନ୍ଦ୍ରକୁ ବୋଇଲେ ଆହୋ ଦେଲୁ କେଡେ ଦାନ
ଏତେ ଧର୍ମଶାସ୍ତ୍ର ମୁହିଁ କହିଲି ଯେ ପାଞ୍ଚି
ତେଣୁ ଏତେ ମହୌଷଧି ଦେଲୁ ପରା ମୂର୍ଚ୍ଛି ।
ତଥାପି ତୁ ଯାହା ଦେଲୁ ଶୁଣ ହେ ସ୍ୱରୂପ
ଦୃଶ୍ୟ ବ୍ୟାଧି ଥିଲେ ତହିଁ ଦିଅନ୍ତି ଯେ ଲେପ ।
ଅଥବା ଯେବେ ଶରୀରେ କଣ୍ଡୁ ହୋଇଥାନ୍ତା
ତେବେ ତାର ମହୌଷଧି ତହିଁ ଲୋଡ଼ାହୁନ୍ତା ।
ଏହୁ ଆମ୍ଭ ଆଶାପ୍ରତି ନୁହଇ ଯେ ଯୋଗ୍ୟ
ରଖ ତୋ ଭଣ୍ଡାରେ ନେଇ ମହୌଷଧି ବେଗ ।
ଇନ୍ଦ୍ର ବୋଇଲେକ ଅଗ୍ନି ତୁମ୍ଭେ ବୋଲି ଦେଲି
ଆନ ମାଗିଥିଲେ କିଛି ଲଭନ୍ତା କି ଛେଲି ।
ଏମନ୍ତ ମହୌଷଧିକୁ ଦିଅନ୍ତା କେ ମୂର୍ଚ୍ଛି
ବନମାନ ଲୋଡ଼ି ଦେଇଅଛି ସାର ବାଛି ।
ଅଗ୍ନି ବୋଲେ ତୁମ୍ଭପରା ଦାତା ମିଳଇ କି
ବକପ୍ରାୟ ଜ୍ଞାନୀ ତୁହି କାଳ ପ୍ରାୟ ତର୍କୀ ।
ଗଜ ପ୍ରାୟ ଯୋଦ୍ଧା ଜମ୍ବୁକର ପ୍ରାୟ ବୁଦ୍ଧି
ମଣ୍ଡୂକ ପ୍ରାୟ ତୋ ବାକ୍ୟ ଅଟଇ ପ୍ରସିଦ୍ଧି ।
ଗୃଧ୍ରପ୍ରାୟ ଦୃଷ୍ଟି ଖରପ୍ରାୟ ତୋ ସ୍ୱଭାବ
ଦୁର୍ଜ୍ଜନ ପ୍ରାୟ ଶାନ୍ତ ତୁ ଅଟୁ ହୋ ବାସବ ।
ଆବର କୃପଣ ପ୍ରାୟ ଅଟୁ ତୁ ଦୟାଳୁ
ନୋହିଲେ ଏ ଛେଲି କି ତୁ ଦ୍ୟନ୍ତୁ ବୃକ୍ଷମୂଳୁ ।
ସଂସାରଯାକେ ଯେତେକ ଅଛନ୍ତି ବିଜାତି
ତାହାଙ୍କଠାରୁ ଯେ ତୁହି ଅଟୁ ବଡ଼ମୂର୍ତ୍ତି ।
ଶୁଣ ହେ ନାରଦ କହନ୍ତି ଯେ ବେଦବର
ଏତେ ବୋଲି ନିରାଶରେ ଗଲେ ବୈଶ୍ୱାନର ।
ବିଷ୍ଣୁର ପାଶେ ମିଳିଲେ ଯାଇ ମନତାପେ
ବାସବର ନାସ୍ତିପଣ କହିଲେ ଯେ ଆପେ ।

ବୋଲନ୍ତି ଶୁଣିମା ଆହେ ପ୍ରଭୁ ଭାବଗ୍ରାହୀ
ତୁମ୍ଭଙ୍କୁ ସେବାକରି କି ହେବ ଦେହ ବହି ।
ଜଣକୁ ମନ୍ଦ ଜଣକୁ କର ପୁଣି ଭଲ
ଜଣଙ୍କୁ ଦୁଃଖୀ ଜଣକୁ ରାଜା ପୁଣି କଲ ।
ମୋର ସଙ୍ଗଲୋକ ସୂର୍ଯ୍ୟ କରେ ସୁଖ ଭୋଗ
ରହିଲାକ ଇନ୍ଦ୍ର ପୁଣି ଭୁଞ୍ଜି ପୁର ସ୍ୱର୍ଗ ।
ଚନ୍ଦ୍ର ସେବାକରି ହେଲା ଗଗନରେ ଉଦେ
ଯମ ସେବାକରି ରାଜା ଜନ୍ତୁପତି ପଦେ ।
ଆବର ମାରକଣ୍ଡେୟ ତୁମ୍ଭ ସେବାକରି
କାଟିଲେକ କାଳମୃତ୍ୟୁ ପ୍ରଳେ ତନୁ ଧରି ।
ଆଜହିଁ ତ ଆପଣଙ୍କୁ ସେବି ବାରାନିଧି
ରହିଅଛି ଦିବା ରାତ୍ର ଘେନି ସପ୍ତ ଅବଧି ।
ଶୁକ ସନକ ବଶିଷ୍ଠ ଭୃଗୁ ବିଶ୍ୱାମିତ୍ର
ଏମାନେ ତ ସେବାକରି ହୋଇଲେ ପବିତ୍ର ।
ମାନବ ଜନ୍ମେ ତୁମ୍ଭଙ୍କୁ ଯେହୁ ପୁଣ ସେବେ
ସର୍ବଦା ସମ୍ପୂର୍ଣ୍ଣ ଭୋଗ ଭୁଞ୍ଜେ ସେ ଦୁର୍ଲ୍ଲଭେ ।
ଶୁଭେ ଅଶୁଭେ ଧରନ୍ତି ଯେହୁ ତୁମ୍ଭ ନାମ
ନିଶ୍ଚେ ଉତ୍ତମ ହୁଅଇ ତାର କଲା କର୍ମ ।
ତୁମ୍ଭଙ୍କୁ ନ ଚିହ୍ନି କରନ୍ତି ଯେ ତୀର୍ଥ ବ୍ରତ
ଶ୍ରମହିଁ ଲଭଇଫଳ ତାର ହୁଏ ବ୍ୟର୍ଥ ।
ତୁମ୍ଭ ଆଶ୍ରେ କଲା ଲୋକ ରହଇ ନିର୍ଭୟେ
ମୋତେ କାହିଁକି ପେଷିଲ ପ୍ରଭୁ ଇନ୍ଦ୍ରଯାଏ ।
ଯେବଣ ଚରଣ ରେଣୁ ଅଟେ ଏହୁ ଇନ୍ଦ୍ର
ସେବାରେ ଲାଗିଣ ଥିବ ହୋଇଣ ଉନିଦ୍ର ।
ଆପଣଙ୍କୁ ମାଗି ସେହି ନେଇଛି ଯେ ବନ
ମାଗିବା ଲୋକ କେବେହେଁ ଦେଇଛିକି ଦାନ ।
ତାର କି ଗାରିମା କଲ ଆପଣ ଯେ ଏହା
ନୋହିଲେ କି ଇନ୍ଦ୍ର ମୋର ଆଗେ ହୁନ୍ତା ଠିଆ ।
ଆପଣଙ୍କୁ ସେବି ଆଉ କି କହିବି ହରି
ଇଚ୍ଛାକଲେ ତୁମ୍ଭେ କର୍ମ ପାର ଆନକରି ।
ଆପଣ ପାରନ୍ତି ଯେବେ ଆନ କରି ଅଛ
ଗରୁଡ଼ ସେବି ତୁମ୍ଭଙ୍କୁ ଭୁଞ୍ଜନ୍ତା କି ସର୍ପ ।
ତୁମ୍ଭେ ଦେବି ବୋଇଲେ କି ନ ମିଳନ୍ତା ତାକୁ
ବୁଝିଲେଟି ଏଣୁ କର୍ମମୂଳ ସଂସାରକୁ ।
ନାରାୟଣ ବୋଇଲେକ କର୍ମ ସିନା ମୁହିଁ
ମୁହିଁ ସିନା କର୍ମରୂପେ ଫଳାଫଳ ଦେଇ ।
ଜନ୍ତୁମାନଙ୍କର ମୁହିଁ ଜନ୍ମ ବେଳ ବୁଝି
ତହିଁକି ଚାହିଁଣ ଭୋଗ ଦିଏ ହୋଇ ରାଜି ।

ପୂର୍ବଜନ୍ମ ଲଗ୍ନରୁ ଯେ ଯାହା ଆଣିଥାଇ
ତାହା ସେ ଭୋଗ କରଇ କଷି କଷି ହୋଇ ।
ଗରୁଡ଼ ମୋତେ ହୋ ଭକ୍ତିବଳରେ ବହିଲା
ପୂର୍ବରୁ ଏ ଭୋଗ ସେହୁ ଲେଖି ଆଣିଥିଲା ।
ତୁମ୍ଭେ ଯାହା ଲେଖି ଆଣିଅଛ ପୂର୍ବେ ଭାଗ୍ୟେ
ତାହା ସିନା ଭୋଗ ପୁଣି ହୋଇବ ଏ ଯୁଗେ ।
ସେ କଥା ନ ବୁଝି ବୋଲୁଅଛ ବନ ଦିଅ
ଏ ସମୟେ ଭୋଗ ତୋର ନୁହେଁ ଜାଣିଥାଅ ।
ଆଉ ଦିନାକେତେ ଭୋଗ କରୁଥାଅ ବ୍ୟାଧି
ଅବଶ୍ୟ କରିବା ତୁମ୍ଭ କାର୍ଯ୍ୟ କାଳେ ସିଦ୍ଧି ।
ଆମ୍ଭେ ପୁଣି ଲେଉଟି ଯେ ହେବୁ ଅବତାର
ସତ୍ୟ ତ୍ରେତା ଉତ୍ତାରେ ଯେ ଜନ୍ମିବୁ ଦ୍ୱାପର ।
ଦେବକୀ ଗର୍ଭରୁ ଜନ୍ମି ଗୋପପୁରେ ଥିବୁ
କଂସ ନାଶିବୁ ବୋଲି ସେ ମଥୁରାକୁ ଯିବୁ ।
ସେହି ଯୁଗେ ହେବେ ପୁଣି ପାଣ୍ଡବେ ଯେ ଜନ୍ମ
ଧର୍ମପୁତ୍ର ଯୁଧିଷ୍ଠିର ବାୟୁ ପୁତ୍ର ଭୀମ ।
ଇନ୍ଦ୍ର ବୀର୍ଯ୍ୟେ ଅର୍ଜ୍ଜୁନ ଯେ କୁନ୍ତୀ ଗର୍ଭୁ ଜାତ
ସେ ମୋହର ହେବ ସଖା ପ୍ରାଣ ପଞ୍ଚଭୂତ ।
ଭାଇ ବୋଲ ପାଳି ସେହୁ ବନବାସ ଯିବ
ଏହି ବନରେ ଭ୍ରମଣ ଆସି କରୁଥିବ ।
କିରାତ ରୂପ ଧରିଣ ବନେ ଥିବ ବସି
ଏମନ୍ତ ବେଳେ ଭେଟିବ ତୁମ୍ଭେ ତାଙ୍କୁ ଆସି ।
ବ୍ରାହ୍ମଣ ରୂପେ ଭେଟିବ ଯାଇ ଆଗେ ତାର
ସତ୍ୟ କରାଇ ମାଗିବ ବନ ବୈଶ୍ୱାନର ।
ମାଗିଲେ ତୁମ୍ଭଙ୍କୁ ନିଶ୍ଚେ ଦେବ ଫାଲଗୁନି
ସେହି ଦେଲେ ରଖି କେ ନ ପାରେ ପୁରତିନି ।
ତେବେ ଯାଇ ତୁମ୍ଭର ଯେ ହେବ ବ୍ୟାଧିକ୍ଷୟ
ତହିଁ ବହିବଟି ପାର୍ଥ ନାମ ଧନଞ୍ଜୟ ।
ତୁମ୍ଭର ଷୋଳ ବିଶ୍ୱାରୁ ଆଠବିଶ୍ୱା ଅଗ୍ନି
ଉତ୍ତରାୟଣରେ ରହୁ ସୂର୍ଯ୍ୟ ଅଙ୍ଗେ ଜନ୍ମି ।
ମକରୁ ମିଥୁନ ଯାଏ ସୂର୍ଯ୍ୟ ହୃଦେ ରହ
ରବି କିରଣେ ପ୍ରଖର ଜ୍ୱଳା ବସି ବହ ।
ଏ ଷଡ଼ମାସ ଦ୍ୱିଗୁଣ ହେଉ ରବି ତେଜ
ବୈକୁଣ୍ଠ ପାଇବ ଏଥି ମଲେଟି ମନୁଜ ।
ଏହି ଷଡ଼ମାସ ମଧ୍ୟେ ବ୍ରହ୍ମଯୋଗୀମାନେ
ସ୍ଥାନ ଜାଗିଣ ପ୍ରୟାଣ ହେବେ ଦିନେ ଦିନେ ।
ତଥାପି ଗଲେ ଯାନ୍ତି ଯେ ସୂର୍ଯ୍ୟକଳା ବାରି
ଚନ୍ଦ୍ରକଳାରେ ଆବର ଲୋକ ଜାଣ ମରି ।

ସୂର୍ଯ୍ୟକଳାରେ ଯେ ପ୍ରାଣୀ ମିଶେ ପୂର୍ଣ୍ଣବ୍ରହ୍ମେ
ଚନ୍ଦ୍ରକଳାରେ ପ୍ରକାଶ ହୁଏ ଯୋନି ଜନ୍ମେ ।
ଉତ୍ତରାୟଣେ ମଲେ ନ ଲାଗେ ଯମଦଣ୍ଡ
ଦାନଦେଲେ ନ ଦେଲେହେଁ ମୋକ୍ଷ ହୁଏ ପିଣ୍ଡ ।
ଦକ୍ଷିଣାୟନରେ ହୁଏ ପରମ ଯେ ଗତି
ଦାନ ଧ୍ୟାନ କଲେ ତେବେ ସେହୁ ତରିଯାନ୍ତି ।
ନୋହିଲେ ବ୍ରହ୍ମକୁ ଯେହୁ ଚିହ୍ନିଥିବ ହେଜି
ସେ ଏକ'ମଲେ ନୁହଇ ନରକରେ ଗଞ୍ଜି ।
ଅନ୍ୟ ଲୋକ ମଲେ ପୁଣ ଦାନ ଦେଲେ ତରେ
ପୁନରପି ଲେଉଟିଣ ଜନ୍ମଇ ସଂସାରେ ।
ଉତ୍ତମ କୁଳରେ ଜନ୍ମି ଭୁଞ୍ଜେ ଭୋଗଶିରୀ
ଏଣୁ ସୁକୁମାର ଥିଲେ ଦାନପୁଣ୍ୟ କରି ।
ପାବକ ଏକ ଆସନ ଏକ ହେବାଠାରୁ
ମକର ମିଥୁନ ଯେ ଉତ୍ତରାୟଣ କରୁ ।
ଶୁଣ ସୋମଗୋତ୍ର କହନ୍ତି ଯେ ଶକ୍ତିବଂଶ
ବ୍ରହ୍ମା ନାରଦ ସମ୍ବାଦ ଅଟେ ଦିବ୍ୟରସ ।
ବିଷ୍ଣୁଙ୍କ ବୋଲେ ରହିଲେ ଅଗ୍ନି ବଞ୍ଚି କାଳ
କେ ଆନ କରି ପାରଇ କର୍ମ ବନ୍ଧ ଫଳ ।
କର୍ମେ ନ ଥିବାରୁ ଅଗ୍ନି ପରାୟେ ପୁରୁଷ
ବିଷ୍ଣୁଙ୍କୁ ଜଣାଇ ତାର କି ଗଲାକ କ୍ଳେଶ ।
ଯାହାକୁଟି ଯେଉଁ ଯୋଗ ଥାଇ ଯେତେବେଳେ
ଅବଶ୍ୟ ତାହାକୁ ଭୋଗ ହୁଏ ହେଲେ କାଳେ ।
ଏଣୁକରି ସୁଜନେ ହେ କର୍ମ ଏକା ମୂଳ
କର୍ମରେ ଥିଲେହେଁ ବିଷ୍ଣୁ ଦିଏ ଫଳାଫଳ ।
କର୍ମ ଆନ ହେଲେ ଉଦଯୋଗ ନ ଫଳଇ
ଭଲ ମନାସୁ ଥିଲେହେଁ ମନ୍ଦ ଉପୁଜଇ ।
କର୍ମକୁ କଦାପି ଗାଳି ନ ଦେବଟି ପୁଣି
ସବୁ ଦେହେ କର୍ମରୂପେ ବିଜେ ଚକ୍ରପାଣି ।
ସେ କର୍ମ ଚକ୍ରପାଣିର ଚରଣେ ମୋ ଆଶ
କହଇ ଯେ ବିପ୍ର ମୁହିଁ ପୀତାମ୍ବର ଦାଶ ।
ଶ୍ରୀବିଷ୍ଣୁ ପୁରାଣ ଏହୁ ସୁଧାରସମୟ
ଏକମନେ ଶୁଣିଲେ ଯେ ପାପ ହୁଏ କ୍ଷୟ ।
ଯାହା ବାଞ୍ଛା କରିବଟି ତାହା ହୁଏ ସିଦ୍ଧି
ପବିତ୍ର ପୁଣ୍ୟଗ୍ରନ୍ଥ ଏ ଅମୃତ ପୟୋଧି ।
ବିପ୍ର ପିତାମ୍ବର ଦାଶ ବହୁ ଜନ୍ମ ପୁଣ୍ୟେ
ଅଲୋକିତ ଗ୍ରନ୍ଥ ଠୁଳ କରେ ଆସି ଶୂନ୍ୟେ ।
ସଂସାର ଜନେ ଶୁଣିଣ ଲଭିବେ କାରଣ
ମୂର୍ଖ ଏକା ନିନ୍ଦାକରେ ନ ବୁଝି ପୁରାଣ ।
ଜନ୍ମରୁ ମୋ ଦିନ ବିଷ୍ଣୁ ପୁରାଣରେ ଗଲା
ଗୋବିନ୍ଦ ନାମ ବିନୁ ନ ଜାଣେ ଆନ ଭଲା ।
ବାଲି ବିଦାରିଲେ ଯେହ୍ନେ ଉପୁଜଇ ଜଳ
ସେହିମତି ପଦ ମୋର ହୃଦେ ହୁଏ ଠୁଳ ।
ଠୁଳହେଲେ ଗର୍ଭରେ ନ ପାରେ ମୁହିଁ ରଖି
ପୁସ୍ତକରେ ଆଣି ତାହା ଦେଉଥାଏ ଲେଖି ।
ହେ ସାଧୁଜନେ ଶୁଣିବା ଏହା ମନଦେଇ
ତୁମ୍ଭ ଚରଣ ତଳେ ମୁଁ ଶରଣ ପଶଇ ।
ସର୍ବଦା ସେବା ମୋହର ସାଧୁଙ୍କ ଚରଣ
ବିପ୍ର ପୀତାମ୍ବର ଦାଶ ପଶିଲା ଶରଣ ।



## ନନ୍ଦନବନକୁ ଆସିଥିବା ଦେବତାମାନଙ୍କ ପ୍ରତି ଶ୍ରୀନୃସିଂହଙ୍କର ଆଶ୍ୱାସନା

ଏଥୁ ଉତ୍ତାରେ ପରୀକ୍ଷ ନାମେ ମହୀପାଳ
ଶୁକମୁନିଙ୍କୁ ବୋଇଲେ କହ ତପଶୀଳ ।
ନନ୍ଦନବନରେ ବିଷ୍ଣୁ ବିଜେ କରିଥିଲେ
ସେ ପ୍ରସଙ୍ଗ କହ ଏବେ ଶୁଣିବି ମୁଁ ଭଲେ ।
ଅଗ୍ନିଙ୍କ ବିଧାନ ହେଲେ ବୁଝିଲି ଅନେକ
କହନ୍ତୁ ଶୁଣିମା ଏବେ ବିଷ୍ଣୁ କଉତୁକ ।
ରାଜାର ବାକ୍ୟ ଶୁଣିଣ ହସିଲେକ ମୁନି
କହନ୍ତି ନୃସିଂହ ଗ୍ରନ୍ଥ ଫେଡ଼ି ମନୁ ଗ୍ଲାନି ।
ବୋଲନ୍ତି ଶୁଣ ହେ ତେବେ ବିଷ୍ଣୁର ମହିମା
ନାରଦ ଆଗରେ ଯାହା କହିଥିଲେ ବ୍ରହ୍ମା ।
ତାହା ତୁମ୍ଭ ଆଗେ କହୁଅଛି ଶୁଣି ଥାଅ
ନାରଦ କହନ୍ତି ପୁଚ୍ଛନ୍ତି ଯେ ପିତାମହ ।
ବିଧାତାଏ କହୁଛନ୍ତି ଶୁଣ ହେ ନାରଦ
ସ୍ୱର୍ଗରେ ସେ ବିଜେ କରିଅଛନ୍ତି ଗୋବିନ୍ଦ ।
ଦେବତାଏ ହୋଇଛନ୍ତି ତହିଁ ସେବାକାରୀ
ବ୍ରହ୍ମା ଚାମର ଢାଳନ୍ତି ବେଦପାଠ କରି ।
ଇନ୍ଦ୍ର ଛତ୍ର ଟେକି ଜୟଜୟ ଯେ କରନ୍ତି
ଅପସରାଗଣେ ବେଢ଼ି ହୁଳହୁଳି ଦ୍ୟନ୍ତି ।
କୁବେର ଦିଅଇ ପାନ ଯମ ପାଦ ଚାପେ
ପବନ ରତ୍ନପାଦୁକା ଯୋଗାଉଛି ଆପେ ।
ଈଶ୍ୱର ଯେ ସେବା ଲାଗି ଡମ୍ବରୁ ବଜାନ୍ତି
ନୈର୍ଋତେ ତାଳ ଘେନିଣ ଆଗେ ଗୀତଗାନ୍ତି ।

ଅଗ୍ନି ହୋଇଛନ୍ତି ସଭା ମଧ୍ୟେ ପଢ଼ିହାରୀ
ବରୁଣ ବାନ୍ଧଇ କେଶ ଗଭା ସାଜି କରି ।
ଋଷିମାନେ ପଢ଼ନ୍ତି ଯେ ବେଢ଼ି ମନ୍ତ୍ରଭାଗ
ଚନ୍ଦ୍ର ସୂର୍ଯ୍ୟ ଚାପନ୍ତି ସେ ବସି ପାଦଯୁଗ ।
ବସୁଧାମାତା ଆସିଣ କହେ ଆଗେ ଦୁଃଖ
ବୋଲନ୍ତି ଏ ଆପଦରୁ ଆମ୍ଭଙ୍କୁ ଯେ ରଖ ।
ମୁର ଦଇତ୍ୟର ଲାଗି ସର୍ବେ ହେଲୁ ଦୁଃଖୀ
ସ୍ୱର୍ଗ ମର୍ତ୍ତ୍ୟ ଲୋକଙ୍କୁ ନ ଦିଏ ଦୈତ୍ୟ ରଖି ।
ଚଉଦ ଭୁବନେ ଆମ୍ଭେ ଥିଲୁଁ ଯେତେ ଦେବା
ସମସ୍ତଙ୍କୁ ଦୈତ୍ୟ ଆଣି କରାଇଲା ସେବା ।
ବୈଦ୍ୟପଣେ ଯମ ଯାଇ ଦେଖିଲା ତା ହାତ
ଚନ୍ଦ୍ରପରା ପୁରୁଷ ଯେ ରାନ୍ଧେ ଯାଇ ଭାତ ।
ଅଗ୍ନି ଯାଇଣ ଧୁଅନ୍ତି ନିତି ତାର ଲୁଗା
ରମ୍ଭା ଗୀତ ଗାଏ ଧୀରେ ତୁମ୍ବୁର ଯେ ଶିଙ୍ଘା ।
ନାଚନ୍ତି ଅପ୍‌ସରା ବୀଣା ନାରଦ ବଜାଇ
ବୃହସ୍ପତି ଯାଇ ତାର ଆଗେ ପାଞ୍ଜି କହି ।
ଇନ୍ଦ୍ର ତା ଆଜ୍ଞାକୁ ଚାହିଁ ବରଷଇ ପାଣି
ପବନ ଚାମର ଧରି ହୋଇଲା ଖଟଣୀ ।
କୁବେର ସେବାରେ ଲାଗି ରତ୍ନଯାକ ଦେଲା
ତେବେହେଁ ତାର ମନକୁ କିଛି ନ ପାଇଲା ।
କହିଲେ ସରିବ ନାହିଁ ମୋର ଯେତେ ଦୁଃଖ
ଏଥକୁ ଚାହିଁ ଆମ୍ଭଙ୍କୁ ବାରେ ସ୍ୱାମୀ ରଖ ।
ଏ କଥା ନ ବୁଝି ଯେବେ ନ ରଖିବ ହରି
ନିଶ୍ଚେ ଦେବକୁଳକୁ ସେ ଦୈତ୍ୟ ଯିବ ମାରି ।
ଦେବଙ୍କ ପାଇଁ ଜନ୍ମିବ ତୁମ୍ଭେ ଯେ ପ୍ରତ୍ୟକ୍ଷ
ଆମ୍ଭେ ଅଟୁ ପଲ୍ଲବ ଯେ ତୁମ୍ଭେ ମୂଳବୃକ୍ଷ ।
ମୂଳ ଥାଉଁ ଥାଉଁ ପତ୍ର ଯେବେ ନ କଅଁଳେ
ଅଶୋଭା ଦିଶଇ ସିନା ବୃକ୍ଷକୁ ଚାହିଁଲେ ।
ବୃକ୍ଷ ଘେନି ପତ୍ର ସିନା ପତ୍ର ଘେନି ବୃକ୍ଷ
ଏଣୁ ଆପଣ ଆମ୍ଭର ଅଟ ଏକା ପକ୍ଷ ।
ବୃକ୍ଷ ଥାଉଁ ଥାଉଁ ଆମ୍ଭେ ଅନାଥ ଯେ ହେଲୁଁ
ଆମ୍ଭଙ୍କୁ କିପାଁ ସଂସାରେ ତେବେ ସରଜିଲୁ ।
ସର୍ଜିଲା ଉତ୍ତାରୁ ଯେବେ ନ କରିବ ଦୟା
ପିଅର ହୋଇ ପୁତ୍ରକୁ ଯେବେ କରେ ମାୟା ।
ପତି ଯଦ୍ୟପି ପତ୍ନୀକି ନ କରିବ ସ୍ନେହ
ଶାଶୁ ଯଦ୍ୟପି ବଧୂକୁ କରିବଟି କୋହ ।
ମିତ୍ର ଯଦ୍ୟପି ମିତ୍ରରେ ହୋଇବ କପଟୀ
ସୁଜ୍ଞାନୀ ହୋଇଣ ଯେବେ ହୋଇବ ଲମ୍ପଟୀ ।
ଗୁରୁ ହୋଇଣ ଶିଷ୍ୟକୁ କରିବଟି କ୍ରୋଧ
ମାତା ଯେବେ କୁମରକୁ ନ କରିବ ବୋଧ ।
ବନ୍ଧୁ ଯଦ୍ୟପି ବନ୍ଧୁକୁ କରିବ ଅନ୍ତର
ରାଜା ଯେବେ ପରଜାକୁ ନ କରେ ଆଦର ।
ଦୟାବନ୍ତ ହୋଇ ଯେ ନ ଦିଏ ଅନ୍ନପାଣି
ବେନି କଥା ହେଉ ଯେବେ ଆଉ ଜଣେ ଶୁଣି ।
ଅଯାଚିତ ହୋଇ ଯେବେ ମଧ୍ୟସ୍ଥ ହୁଅନ୍ତି
ସଙ୍ଖାଳି ନ ଥାଇ ସେହୁ ବାଣିଜ୍ୟକୁ ଯାନ୍ତି ।
ଗୁରୁଙ୍କ ଘରକୁ ଯେହୁ ଚଳେ ଋଣ କରି
ପରର ପଦାର୍ଥେ ସେହୁ ହୁଏ ଲଗାହାରି ।
ଭଣ୍ଡର ଭୃତ୍ୟ ହୋଇଣ ଚଳନ୍ତି ଯେମାନେ
ଦୂରଦେଶ ବାର୍ତ୍ତା ଯେ କହନ୍ତି ଅନୁମାନେ ।
ଅସମ୍ମାନରେ ରହନ୍ତି ଯେହୁ ବାସକରି
ବାପଘରେ ଛାଡ଼ନ୍ତି ଯେ ନେଇ ଯୁବାନାରୀ ।
ଶ୍ୱଶୁର ଘରେ ଯାଇଣ ରହେ ଯେ ଜୁଆଇଁ
ଏତେ ଲୋକଙ୍କୁ ଯେ ସ୍ୱାମୀ ମୂର୍ଖ ବୋଲି କହି ।
ଆପଣ ଦୟାଳୁ ଅଛ କିଛି ଜ୍ଞାନକଳା
ସାଧୁଙ୍କୁ ଯେ ସୁଧା ଅଟ ମୂର୍ଖେ ଅନର୍ଗଳା ।
ଯାବତ ଜୀବକୁ ତୁମ୍ଭେ ମୋକ୍ଷଦାତା ଅଟ
ଅସୁର କୁଳକୁ କାଳସ୍ୱରୂପେ ଯେ ଘୋଟ ।
ଯୋଗୀନ୍ଦ୍ର ମାନଙ୍କର ଯେ ଅଟ ଜ୍ଞାନତତ୍ତ୍ୱ
ଦେବକୁଳ ଯାକରେ ଯେ ଅଟ ସାରସ୍ୱତ ।
ସାରସ୍ୱତ ପାଇ ରହିଲେ ଯେ ଦୈତ୍ୟମାନି
ଆମ୍ଭେ ମାନି ରହିଲେ କି ନୁହେ ତୁମ୍ଭ ହାନି ।
ଆହେ ପ୍ରଭୁ ନାରାୟଣ ଶୁଣିମା ଅନାଦି
ସମସ୍ତେ ଛାମୁରେ ଆସି କହୁଛୁ ଯେ କାନ୍ଦି ।
ଆବର ଏଣିକି ଯେ ନ ପାରୁ ଦୁଃଖ ସହି
ପ୍ରଭୁ ଦୟାଳୁ ନୃସିଂହ କର ତ୍ରାହି ତ୍ରାହି ।
ଏତେ ବୋଲି ଛାମୁରେ ଯେ କହେ ପୃଥ୍ୱୀଦେବୀ
ବିଷ୍ଣୁ କହିଲେ ବିକଳ ନୁହ ଗୋ ପୃଥିବୀ ।
ନିଶ୍ଚେ ତୁମ୍ଭର ଫେଡ଼ିବା ଏବେ କଷ୍ଟମାନ
ଅବଶ୍ୟ ମାରିବି ଏଥୁ ଗଲେ ଯାତୁଧାନ ।
ପୃଥ୍ୱୀ ଆଦି ଦେବତା ନ ଭାଳ ତୁମ୍ଭେ କେହି
ସ୍ୱର୍ଗରୁ ଗଲେ ମାରିବି ଜାଣ ମୁର ମୁହିଁ ।
କହିଲି ତ୍ରିବାର ସତ୍ୟ କରି ତୁମ୍ଭ ଆଗେ
ଶୁଣିଣ ସନ୍ତୋଷ ହେଲେ ଦେବତାଏ ସ୍ୱର୍ଗେ ।
ନୃସିଂହ ଗହଣେ ରହିଲେକ ସେବା କରି
ବିପ୍ର ପୀତାମ୍ବର ତାହା ନ ପାରିଲା ସ୍ମରି ।

ସାଧୁଙ୍କ ସଙ୍ଗରେ ଗଲେ ଶ୍ରୀଛାମୁକୁ ଯାନ୍ତି
ସେବା ନ ପାଇଲେ ମଧ ପରତେ ହୁଅନ୍ତି ।
ପରତେ ହୋଇଲେ ଦୟା କରନ୍ତେ ସେ ପ୍ରଭୁ
ପ୍ରଭୁଙ୍କ ଦୟାରୁ ଯାନ୍ତା ମୋ ଦାରିଦ୍ର୍ୟ ସବୁ ।
ଦରିଦ୍ରତା ଗଲେ ଯଶ ଶିରୀ ହୋନ୍ତା ଉଦେ
ଏଣୁ ଛାମୁରେ ଦର୍ଶନ ନୁହ ନିରାପଦେ ।
ଅଟିହିଁ ଭାଗ୍ୟ ଥିଲେ ଏ କଥାମାନ ମିଳେ
ଅଯୋଗ୍ୟ ହେବାରୁ ବିପ୍ର ପୀତାମ୍ବର ଭାଳେ ।
ତୁମ୍ଭ ସୁଦୟାରୁ ହୁଏ ସ୍ମରଣ ଯେ ମୋତେ
ନୃସିଂହ ସପ୍ତସାଗରେ ଲେଖୁଅଛି ହସ୍ତେ ।
ଦିନେ ପ୍ରଭୁଙ୍କ ଦୟା ନଗଲା ଜଣା କିଛି
ପାପୀଙ୍କି ବୋଲନ୍ତି ମୋର ନାମ ନିଅ ବାଛି ।
ତୁମ୍ଭେ ପାପୀରେ ଲଭିବ ଅବା ପରା ଗତି
ତୁମ୍ଭ କଥା ହୃଦରୁ ନ ଯାଏ ମୋର ନିତି ।
ଅଭୟ ପଞ୍ଚର ଶ୍ରୀନୃସିଂହ ନାମ ଅଟେ
କର୍ଣ୍ଣରନ୍ଧ୍ରେ ବାଜୁଥିଲେ ମନେ ଭ୍ରାନ୍ତି ଫିଟେ ।
ଅନାଥର ନାଥ ପ୍ରଭୁ କୃପାଜଳରାଶି
କେମନ୍ତରୂପେ ସେ ପ୍ରଭୁ ଜନ୍ମିଥିଲେ ଆସି ।
କେମନ୍ତେ ଯେ ବର୍ଣ୍ଣ ଚିହ୍ନ ତାଙ୍କ ଶୋଭାସାର
ଦୈତ୍ୟ ନିମନ୍ତେ କେମନ୍ତେ ହେଲେ ଅବତାର ।
ବାରିଧିସମ ଅଗାଧ ମେରୁଠାରୁ ଗରୁ
କ୍ଷଣକରେ ହୋଇପାରେ ସେହୁ ମହାମେରୁ ।
ଏହି ମହିମାରୁ ନାମ ହେଲା ଅଗୋଚର
ଦେଖିଲି ପଦ ଯେତେ ମୁଁ ଅପାରୁ ଅପାର ।
ଅବୋଧ ଜୀବକୁ ବୋଧ କରେ ଯେଉଁ ଭାବେ
ଶ୍ରବଣରେ ନାମ ଶୁଣି ଅନ୍ତରାଳ ଜୀବେ ।
ସାର ଗୁଣାନୁବାଦର ମହିମା ଏ ଅଟେ
ସେ ପଦ୍ମପାଦେ ଅଧମ କିପରି ଯେ ଖଟେ ।
ସବୁ ହୀନ କର୍ମରୁ ମୋ ହୋଇଅଛି ଜନ୍ମ
ଜୀବ ମୋର ଭାବୁଅଛି କେହ୍ନେ ରୂପବର୍ଣ୍ଣ ।
ଏଡ଼େକ ପାପୀ ଜୀବର ବୁଦ୍ଧି କେଡ଼େ ଦେଖ
ଦୈତ୍ୟ ପାଇଁ ଶ୍ରୀନୃସିଂହ ହେଲେ ବ୍ୟାଘ୍ର ନଖ ।
ଏମନ୍ତ ପ୍ରଭୁର ରୂପ ଦେଖିବି ନୟନେ
ସକଳ ଛାଡ଼ିଣ ଆଶ୍ରା ଶ୍ରୀହରି ଭଜନେ ।
ସତେ ପ୍ରଭୁ କରୁଣାରୁ ହେବ କି ପ୍ରାପତ
କୌଣସିରୂପେ ନୋହିଲା ମୋର ଦୃଷ୍ଟିଗତ ।
ଆହେ ସୁଜ୍ଞଜନେ ମୋର ନ ଘେନିବ ଦୋଷ
ସେ ପରମପଦ ଭଜେ ପୀତାମ୍ବର ଦାଶ ।

000

# ଦେବଗଣଙ୍କ ସହ ଶ୍ରୀ ନୃସିଂହଙ୍କର ବଦରିକାରେ ପ୍ରବେଶ

ହେ ପଣ୍ଡିତ ଜନମାନେ ଏକମନେ ଶୁଣ
ନୃସିଂହ ଗହଣେ ଚାଲୁଛନ୍ତି ଦେବଗଣ ।
ବଦରୀଦେଶକୁ ବିଜେ କଲେ ଭାବଗ୍ରାହୀ
ପିତାବୋଲେ ଅଛନ୍ତି ସେ ବାଳରୂପ ବହି ।
ପିତା ନ ଜାଣନ୍ତି ତାହାଙ୍କର ଦେବମାୟା
ସର୍ବରୂପ ଧରି ନ ଦେଖାଇ ନିଜ କାୟା ।
ଆଦ୍ୟ ଯୋନିଜନ୍ମ ଏ ନୃସିଂହ ଅବତାର
ମୁରାରି ନାମ ବହିବେ ମାରି ମୁରାସୁର ।
ଅଲକ୍ଷିତ ତନୁ ବହିଛନ୍ତି ଦେବକାର୍ଯ୍ୟେ
କଟିରେ ରତ୍ନମେଖଳା ପୀତାମ୍ବର ସାଜେ ।
ଶଙ୍ଖ ଚକ୍ର ଗଦା ପଦ୍ମ ଶୋହେ ଜାଣ କରେ
ବିରାଜଇ କଉସ୍ତୁଭ ପଦ୍ମ ମାଳା ଉରେ ।
ଶ୍ରୀବତ୍ସ ଚିହ୍ନଗୋଟି ଯେ ହୃଦେ ଦିଶେ ଶୋଭା
ସୁରଙ୍ଗ ଅଧର ଫୁଟି ଦିଶେ ଜ୍ୟୋତି ପ୍ରଭା ।
କିରୀଟ କୁଣ୍ଡଳ ଶୋହେ ମୁକୁଟ ଯେ ଶିରେ
ଅପୂର୍ବ ରୂପ ତାଙ୍କର କେହି କହିପାରେ ।
ସୂର୍ଯ୍ୟଙ୍କଠାରୁ ଅଧିକ ତେଜ ବିତପନ
ଚନ୍ଦ୍ରମାଠାରୁ ଅଧିକ ଅଟନ୍ତି ଶୋଭନ ।
ଅନେକ ରତ୍ନମାଣିକ୍ୟହାର ଘେନି ତୁଳେ
ନକ୍ଷତ୍ର ପରାୟ ଶୋଭା ହୃଦପଦ୍ମେ ଲୁଳେ ।
ଏମନ୍ତ ଚାଲନ୍ତି ମିଶି ବିଷ୍ଣୁ ତୁଳେ ଦେବେ
ନିଜ କୁଳର ସମ୍ପଦ ପାସୋରନ୍ତି ଭାବେ ।
ଚନ୍ଦ୍ରରୂପ ଦେଖି ମନେ ଚକୋରର ଶ୍ରଦ୍ଧା
ଆନନ୍ଦେ ପାନ କରଇ ପାଇକରି ସୁଧା ।
ସେହିରୂପେ ଦେବତାଏ ବିଷ୍ଣୁ ସେବାପାଇଁ
ଚାଲନ୍ତି ଯେ ଚଉପାଶେ ଯୋଡ଼ି କର ଦୁଇ ।
ଗହଣରେ ଆସୁ ଆସୁ କରେ ବ୍ରହ୍ମା ସ୍ତୁତି
ନମସ୍ତେ ହେ ଯୋଗେଶ୍ୱର ପରଂବ୍ରହ୍ମ ମୂର୍ତ୍ତି ।
ତୋର ଅମୃତ ପଙ୍କଜ ପାଦେ ସର୍ବତୀର୍ଥ
ସେ ତୀର୍ଥେ ବୁଡ଼ି ପାରିଲେ ମିଳି ମୁକ୍ତିପଥ ।
ଅନୁକୂଳକୁ ପ୍ରଧାନ ଅଟେ ତୁମ୍ଭ ନାମ
ନମୋ ନମୋ ଶ୍ରୀନୃସିଂହ ନମୋ ପରଂବ୍ରହ୍ମ ।
ଶରଣ ଗଲେ ଯେ ରଖ ତାକୁ ପ୍ରତିତୁଳେ
ପାଷାଣ୍ଡ ନ ଜାଣେ ଏକା ତୁମ୍ଭ ଭକ୍ତି ଭଲେ ।

ଏମନ୍ତ ବୋଲିଣ ବ୍ରହ୍ମା କୃତାଞ୍ଜଳି ହୋଇ
ସର୍ବ ଦେବ ଗହଣରେ ଅଛନ୍ତି ଯେ ଧାଇଁ ।
ମଙ୍ଗଳ ଉତ୍ସବ ନୃତ୍ୟ ଗୀତେ ଇତିହାସ
ଚନ୍ଦ୍ର ଇନ୍ଦ୍ର ବରୁଣ ପବନ ମୁଖେ ଭାଷ ।
ଆଦିତ୍ୟ ଅନଙ୍ଗ ଯମ ଅଗ୍ନି ବୈଶ୍ରବଣ
ଗନ୍ଧର୍ବ ନୈର୍ଋତ ବିଶ୍ୱକର୍ମା ଗୁହ୍ୟଗଣ ।
ଧର୍ମକୁ ଯେ ଆଦିକରି ଦେବଗଣ ଯେତେ
ବିଷ୍ଣୁର ସେବାରେ ଲାଗିଅଛନ୍ତି ସମସ୍ତେ ।
ଏରୂପେ ଆସନ୍ତେ ବଦରିକା ଦେବଗଣେ
ଆବର ଋଷି ଅଛନ୍ତି ପାଶେ ଜଣେ ଜଣେ ।
ବଶିଷ୍ଠ ଯାବାଳି ବାମଦେବ ବାଲମୀକ
ଦୁର୍ବାସା ଗର୍ଗ ଯେ ତପୋଧନ ବିଭାଣ୍ଡକ ।
ଅନନ୍ତ ନାରଦ ତପୋଧନ ତପଶୀଳ
ଗାଲବ ଯେ ବେଦବ୍ୟାସ ଶକତି କପିଳ ।
ଲୋମାଞ୍ଚ ଯେ ପଞ୍ଚଶିଖ ମରୀଚି ପୌଲସ୍ତି
ଉଦ୍ଦାଳକ ମାରକଣ୍ଡ ଜନକ ଅଗସ୍ତି ।
କଣ୍ଣୁ ବେଦଗର୍ଭ ଆଉ ବଇଶମ୍ପାୟନ
ଲୋମଶ ଅଗ୍ନିକା ଋଷି ଶମିକ ଚ୍ୟବନ ।
ଅଙ୍ଗିରା ପୁଲହ ଯତି କୋକିଳ ବାରୁଣୀ
ପରାଶର ନିରାକାର ପ୍ରଜାପତି ପୁଣି ।
ଅଷ୍ଟାବକ୍ର କାଳିଞ୍ଜନ କପାଳି ଆତ୍ରେୟ
ଉଶନା ଗୋମନ୍ଥ ପୁଣି ଆସୁରି ମୈତ୍ରେୟ ।
ସତ୍ୟାନନ୍ଦ ଶରଭଙ୍ଗ ସୁନନ୍ଦ ଜୈମିନି
ପବିତ୍ର ପୂର୍ଣ୍ଣାନନ୍ଦ ଯେ ବିଶ୍ୱାମିତ୍ର ମୁନି ।
ଏମ୍ନାନେ ଉତ୍ସବ ନାଦେ ଉଚ୍ଚାରନ୍ତି ବେଦ
ଦେଉଛନ୍ତି ହୁଳହୁଳି ଅପସରା ବୃନ୍ଦ ।
ନାଚନ୍ତି କିନ୍ନରୀଗଣେ ବିଷ୍ଣୁ ଆଗ ପଛେ
ଗନ୍ଧର୍ବେ ଯେ ଘୋଷୁଛନ୍ତି ବାଦ୍ୟନାଦ ଉଛେ ।
ବାଜଇ ଦମାଲୁ ବୀଣା ମହୁରୀ ବଇଁଶୀ
ଶଙ୍ଖ ଭେରୀ କାହାଳୀ ଯେ ଝାଞ୍ଜ ତାଳ ମିଶି ।
ଏ ବିଧି ଆସନ୍ତେ ବିଷ୍ଣୁ ତୁଳେ ଦେବଶିଶି
ଚାଲୁଛନ୍ତି ଶ୍ରୀନୃସିଂହ ମଧ୍ୟେ ହସି ହସି ।
ଯେ ଯାହାର ଅନୁରୂପ କରନ୍ତି ଯେ ସ୍ତୁତି
ଏଥି ଉତ୍ତାରେ ଯେ ଶୁଣ ବିଷ୍ଣୁ ଲୀଳା ଗତି ।
ଖବର ପାଇଲେ ଯହୁଁ ଭଗବତୀ ମାଏ
ବହନ ଧାଇଁ ଆସିଲେ ସିଂହଦ୍ୱାର ଯାଏ ।
ଦେଖିଲେ ବିଷ୍ଣୁ ପଛରେ ଛନ୍ତି ଦେବଗଣ
ବଲ୍ଲଭ କୋଳରେ ରହିଛନ୍ତି ପୋଏ ପୁଣ ।

ଶରଦଚନ୍ଦ୍ରମା ପ୍ରାୟ ପୁତ୍ର ମୁଖ ଦିଶେ
ପିତା ବେନିପାଶେ ବସିଛନ୍ତି ବେନି ଶିଷ୍ୟେ ।
ବଦରିକା ଆଶ୍ରମରେ ପଡ଼େ ହୁଳହୁଳି
ପଢ଼ନ୍ତି ମଙ୍ଗଳାଷ୍ଟକ ବିପ୍ରମାନେ ମିଳି ।
ଦ୍ୱାରେ ଦ୍ୱାରେ ପୂର୍ଣ୍ଣକୁମ୍ଭ ସ୍ଥାପିଣ ଅଛନ୍ତି
ଠାବେ ଠାବେ ନରନାରୀ ରହିଣ ଚାହାନ୍ତି ।
କେ ବୋଲଇ ଧନ୍ୟ ଏହୁ ବଦରୀକା ପୁରୀ
ସାକ୍ଷାତେ ବିଷ୍ଣୁ ଅଛନ୍ତି ଏଥେଁ ଅବତରି ।
କେ ବୋଲଇ ଦେଖ ପଛେ ଧାଇଁଛନ୍ତି ଯେତେ
କାହାକୁ କିସ ଉପମା ଦେବା ଏ ଜଗତେ ।
କେ ବୋଲେ ଶେଷ ନୃସିଂହ ଏହି ବେନିଭାଇ
କଳା ଧଳା ମେଘ ପ୍ରାୟ ଦିଶେ ତନୁ ଦୁଇ ।
ଭାରା ନାଶିବାକୁ ହୋଇଅଛନ୍ତି ଏ ଜାତ
ବଡ଼ ଭାଇ ଶ୍ରୀନୃସିଂହ ସାନ ଯେ ଅନନ୍ତ ।
ଏହାଙ୍କୁ ଯେ ମୁରାସୁର ଦେଇଥିଲେ ଫିଙ୍ଗି
ସ୍ୱର୍ଗୁ ଆସୁଅଛି ହୋଇ ଏ ଅମର ଭୋଗୀ ।
କେ ବୋଲଇ ଏହାଙ୍କର ରୂପ ଚାହିଁବାକୁ
ଚକ୍ଷୁ ତ ଅଣ୍ଟିଲା ନାହିଁ କହିବା କାହାକୁ ।
ଜିହ୍ୱାରେ ନୋହିଲେ ଅବା ପୂରନ୍ତା ଯେ ତୃଷା
ନାସାରେ ଆଘ୍ରାଣ କଲେ ଯାନ୍ତା ଅବା ଆଶା ।
ଦେହ ବିସ୍ତାରି ଧରିବା ଚାଲ ବେଳେ ବେଳେ
କାଖ କରି ନେଇ ଦେବା ଭଗବତୀ କୋଳେ ।
ଏ ରୂପେ ଶ୍ରୀନୃସିଂହଙ୍କ ଦେଖି ଦିବ୍ୟମୂର୍ତ୍ତି
ଅଙ୍ଗୁଳି ଦେଖାଇ କେହୁ କୁହାକୁହି ହୋନ୍ତି ।
ବୋଲନ୍ତି ଏହି ପ୍ରଭୁଙ୍କୁ ମୁର ପରା ନେଲା
ବିଦ୍ୟାଗୁରୁ କରିଣ ଯେ ପୁତ୍ରେ ମରାଇଲା ।
ଆବର ପେଷିଲା ସେନାଯାକ ଗୋଟି ଗୋଟି
ଏ ନୃସିଂହ ପରା ଚିପିଥିଲେ ତାଙ୍କ ତୋଟି ।
ଏ ଶେଷ ନୃସିଂହ ପରା ବ୍ରହ୍ମ ପୁରେ ଗଲେ
ବିଦ୍ୟା ଶିଖିଣ ବଦରିପୁରକୁ ଅଇଲେ ।
ଏହି ପରା ମାଇଲେ ଗୋ ଦାରୁଣ ଦୈତ୍ୟକୁ
ସେ ଆପଦରୁ ଉଦ୍ଧରି ରଖିଲେ ଆମ୍ଭଙ୍କୁ ।
କେ ବୋଲଇ ଆମ୍ଭର ଗୋ ଅଟେ କେଡ଼େଭାଗ୍ୟ
ଅନୁକ୍ଷଣେ ଦରଶନ ପାଉଛୁ ଶ୍ରୀଅଙ୍ଗ ।
କେ ବୋଲଇ ଭଗବତୀ ମାତା ପରସାଦେ
ଦେଖି ଆମ୍ଭମାନଙ୍କର ପୁଣ୍ୟ ହେଲା ଉଦେ ।
ଦରଶନ ପାଉଅଛୁ ଆମ୍ଭେ ଅନୁଦିନେ
ଏତେ ବୋଲି ପ୍ରଶଂସନ୍ତି ଯାଇ ଜଣେ ଜଣେ ।

ଏଥି ଉତ୍ତାରେ ନୃସିଂହ ଶେଷ ବେନିଭାଇ
ଦେବଙ୍କ ସଙ୍ଗେ ମିଳିଲେ ପୁରଦ୍ୱାରେ ଯାଇ ।
ପୁତ୍ରଙ୍କର ସୁଖ ଦେଖି ଭଗବତୀ ରାଣୀ
କୁମରଙ୍କ ଶିରେ ଅର୍ଘ୍ୟ ବନ୍ଦାଇଲେ ଆଣି ।
ହରଷ ହୋଇବା କଥା କହି ତ କେ ପାରି
ବହୁତ ଉତ୍ସବ କଲେ ବଦରିକା ପୁରୀ ।
ଶୀତଳ ମଣୋହିମାନ ଦେବଆଳେ କଲେ
ବିପ୍ର ବଇଷ୍ଣବ ବରି ଅନ୍ନଦାନ ଦେଲେ ।
ସୁବେଦୀ ବିପ୍ରେ କରନ୍ତି ଆସି ଜୟେ ଜୟେ
ମନ୍ତ୍ରି ଚଣ୍ଡୁଳ ଦିଅନ୍ତେ ହୁଏ ରିଷ୍ଟ କ୍ଷୟେ ।
ଭଗବତୀ ବୋଇଲେ ହେ ଶୁଣ ବିପ୍ରମାନେ
ତୁମ୍ଭ କଲ୍ୟାଣେ ଦେଖିଲି ପୁତ୍ର ସପ୍ତ ଦିନେ ।
ଦୈତ୍ୟ ମୁଖୁଁ ଉବୁରି ଅଇଲେ ବାପ ପୋଏ
ଏତିକି ଭାଗ୍ୟେ ମୋହର ହୋଇଲା ଉଦୟେ ।
ବିପ୍ରେ ବୋଇଲେ ମାତା ଗୋ ପ୍ରମାଣ ଏ କଥା
ତୁମ୍ଭେ କି ସାମାନ୍ୟ ଅଟ ବିଷ୍ଣୁଙ୍କର ମାତା ।
ଅଯୋନି ସମ୍ଭୂତା ତୁ ଗୋ ଅଦିତି ସ୍ୱରୂପ
ଯେ କୃଷ୍ଣବଲ୍ଲଭ ସେହି ପ୍ରତ୍ୟକ୍ଷେ କଶ୍ୟପ ।
ସାକ୍ଷାତରେ ଭଗବାନ ଜାତ ତୁମ୍ଭ କୋଳେ
ତାଙ୍କୁ କି ଆପଦ ପଡ଼ନ୍ତା ଗୋ ରବିତଳେ ।
କୋଟିଏ ବ୍ରହ୍ମାଣ୍ଡ ଯା ଶ୍ରୀଅଙ୍ଗୁ ହେବ ଜାତ
ମନେ କଲେ ମାରିବେ ସେ କୋଟିକୋଟି ଦୈତ୍ୟ
ତାଙ୍କୁ ଏବେ ପୁତ୍ର କରି ମଣିଛ କି ମାୟେ
ଆମ୍ଭେ ହେଲେ ଚିହ୍ନିଲୁ ସେ ସ୍ୱୟଂ ଦେବରାୟେ
ଅପ୍ରକଟ ରୂପ ଆଣି ପ୍ରକଟ ଯେ କଲ
ସଂସାର ଲୋକଯାକଙ୍କୁ ଗତି ମୁକ୍ତି ଦେଲ ।
ଏହି ଅବତାରୁ ସର୍ବ ଅବତାର ହେବେ
ଶ୍ରୀବାମନ ଶ୍ରୀରାମ ଶ୍ରୀବିଷ୍ଣୁ ଉପୁଜିବେ ।
ଏ ଚାରି ଅବତାର ଯେ ମାତା ତୁମ୍ଭେ ନିକି
ଭଗବତୀ ଅଦିତି ଯେ କୌଶଲ୍ୟା ଦେବକୀ ।
ଶୁଣିକରି ଭଗବତୀ ହୋଇଲେ ସନ୍ତୋଷ
ଏଥି ଉତ୍ତାରେ ଯେ ଶୁଣ ଶ୍ରୀହରିର ରସ ।
ନୃସିଂହ ଗହଣେ ଚାଲୁଥିଲେ ଯେତେ ଦେବ
ସମସ୍ତଙ୍କୁ ଚାହିଁ ଆଜ୍ଞା ଦେଲେ ବାସୁଦେବ ।
ବିଧାତାଙ୍କୁ ବୋଇଲେ ଯେ ତୁମ୍ଭେ ଏବେ ଚଳ
ସବୁ କଥା ବିଚାରିଣ ସଂସାରକୁ ପାଳ ।
ହରଙ୍କୁ ବୋଇଲେ ତୁମ୍ଭେ କଇଲାସେ ରହ
ଠାବେ ଠାବେ ଲିଙ୍ଗ ହୋଇ ସଦା ପୂଜାପାଅ ।

ଇନ୍ଦ୍ରଙ୍କୁ ବୋଇଲେ ତୁମ୍ଭେ ଯାଅ ଯା ବିଡ଼ୋଜା
ଦେବଙ୍କୁ ସଙ୍ଗେ ଘେନିଣ ସୁଖେ ହୁଅ ରାଜା ।
ଋଷିମାନଙ୍କୁ ବୋଇଲେ ବିଜେ ଏବେ କର
ଏଥର ଅବଶ୍ୟ ମୁହିଁ ମାରିବଇଁ ମୁର ।
ଆଜଯାଏ କଷ୍ଟ ଦେଲେ ସହିଲି ଅନେକ
କଷ୍ଟ ନ ସହିଲେ ବର ନୁହଇ ଦାୟକ ।
ଯେତେ କଷ୍ଟ ସହିଲେଟି ତେତେ ଫଳସିଦ୍ଧି
ସିଦ୍ଧି ହେଲେ ମିଳେ ତାକୁ ଯାବତ ସମୃଦ୍ଧି ।
ସମ୍ପତ୍ତିରୁ ଦୟା ତନୁ ଧର୍ମ ହୁଏ ଜାତ
ଧର୍ମରୁ ମିଳଇ ଜାଣ ସଂସାରେ ଯାବତ ।
ଯାବତ ମିଳିଲେ ହୁଏ ପ୍ରକାଶ ଯେ ଯଶ
ଏଣୁ ତୁମ୍ଭ ଦୁଃଖ ଏବେ ଫେଡ଼ିବା ଅବଶ୍ୟ ।
ଶୁଣି ପିତାମହ ଦେଲେ ମସ୍ତକରେ କର
ବୋଇଲେ ଆମ୍ଭେ ଯେତେକ ସମସ୍ତେ ତୁମ୍ଭର ।
ତୁମ୍ଭ କୀର୍ତ୍ତି ତୁମ୍ଭେ ଯେବେ ନ ରଖିବ ହରି
ଅନାଥ ହୋଇବୁ ଆମ୍ଭେ କରୁଛୁ ଗୁହାରି ।
କହିବାକୁ ପାରୁ ଆମ୍ଭେ କରିପାରୁ କାହୁଁ
କରିବା କର୍ତ୍ତା ଯେ ତୁମ୍ଭେ ଅଟ ମହାବାହୁ ।
କରନ୍ତେ ଯାବଚ୍ଚନ୍ଦ୍ରାର୍କେ ରହିବ ଯେ କୀର୍ତ୍ତି
ସେହି ଲୋକମାନେ ବାକ୍ୟରଙ୍କ ଯେ ନୁହନ୍ତି ।
ହେଉ ବୋଲନ୍ତେ ହୋଇବ ଯାର ନାମ ସୃଷ୍ଟି
ତେତେକ ନ କହେ ଯେ ବଚନ ଅଳପଟି ।
ଆବର କହିବା କିଛି ମଧ ଦେବରାଜ
ପାଇଲା ପ୍ରାଣୀ ଯେବେ ନ କରେ ପରକାର୍ଯ୍ୟ ।
ପଣ ପାଇଲାରୁ ଯେବେ ନୁହେଁ ପଣ୍ଡିତହିଁ
ପଦାର୍ଥ ଅର୍ଜିଣ ଯେବେ ଦାନଶୀଳ ନୋହି ।
ତପୀ ହୋଇଣ ଯେବେ ନ କହେ ସତ୍ୟବାକ୍ୟ
ପ୍ରଭୁ ହୋଇକରି ଯେବେ ନ ଥାଇ ବିବେକ ।
ଗୁଣି ହୋଇ ଯେ ନ ଥାଏ ପଣ୍ଡିତର ବୁଦ୍ଧି
ଜ୍ଞାନୀ ହୋଇଣ ହୁଅଇ ଯେବେ ଅଳ୍ପକ୍ରୋଧୀ ।
ମାତା ଜାତକରି ଯେବେ ମାରିବ ପୁତ୍ରଙ୍କୁ
ଶିଷ୍ୟ ନ ମାନଇ ଯେବେ ଦେଖିଲେ ଗୁରୁଙ୍କୁ ।
ରାଜା ହୋଇଣ ଯଦ୍ୟପି ହରେ ପରଧନ
ମେଘ ହୋଇଣ ଯେବେ ନ କରେ ବରଷଣ ।
ଉଦଯୋଗ ନ କରି ଯେ ବସି ଗ୍ରାସ ଲୋଡ଼େ
ଧର୍ମ କଥା କହି ଯେହୁ ଅଧର୍ମରେ ବଢ଼େ ।
ଆପଣା ସ୍ତିରୀ ଥାଉ ଯେ ହରେ ପରସ୍ତିରୀ
ସଭାରେ ବସି କହନ୍ତି ଯେହୁ ପକ୍ଷ କରି ।

ଜାତି ତେଜ୍ୟା କରି ବନ୍ଧୁ ଅଜାତିକି କରେ
ବାପର ନାମକୁ ଯେହୁ ବୁଡ଼ାଏ ସଂସାରେ ।
ନରଦେହ ବହି ଯେ ନ କରେ ଦାନପୁଣ୍ୟ
ପିତାମାତା ନ ପୋଷି ଯେ ପୋଷଇଟି ଶ୍ୱାନ ।
ଅସତୀ ହୋଇଣ ଯେହୁ ବୋଲେ ମୁହିଁ ସତୀ
କୁଟୁମ୍ବ ଅର୍ଜି ଯେହୁ ନ ପୋଷି ଛାଡ଼ିଦ୍ୟନ୍ତି ।
ବୃକ୍ଷ ଲଗାଇ ଯେହୁ ନ ଦିଏ ମୂଳେ ପାଣି
ଏତେ ଲୋକଙ୍କୁ ଭୋ ସ୍ୱାମୀ ମୂର୍ଖ ତୁଲେ ଗଣି ।
ପ୍ରଭୁ ହୋଇ ତୁମ୍ଭେ ଯେବେ ନ ପାଳିବ ମହୀ
ଆମ୍ଭେ କିସ କହିବୁ ଯେ ସସ୍ତ୍ରଲୋକ ହୋଇ ।
ଆପଣ ତ ପରମ ଦୟାଳୁ ନରସିଂହ
ଯାଉଅଛୁ କହି ଆମ୍ଭେ ତୁମ୍ଭ ଲୋକବର୍ଗ ।
ଶୁଣି ନାରାୟଣ ସ୍ୱାମୀ ହସ ହସ ହେଲେ
ଯାଅ ବୋଲି ଆଜ୍ଞା ଦେଇ ଭିତରକୁ ଗଲେ ।
ନୃସିଂହ ଚଳନ୍ତେ ଚଳିଗଲେ ହର ଧାତା
ବାସବ ଆଦି ଗଲେକ ବସୁମତୀ ମାତା ।
ଯେ ଯାହାର ପୁରେ ଯାଇ ହୋଇଲେ ପ୍ରବେଶ
ଶ୍ରୀହରି ଶରଣ ବିପ୍ର ପୀତାମ୍ବର ଦାଶ ।
ଜୟ ଜୟ ନାରାୟଣ ଜୟ ଦାଶରଥି
ଜୟ ଶ୍ରୀରାମ ଅଯୋଧ୍ୟାବାସୀ ଲକ୍ଷ୍ମୀପତି ।
ଜୟ ଶ୍ରୀକୃଷ୍ଣ ଚୈତନ୍ୟ ନିତ୍ୟାନନ୍ଦ ପ୍ରଭୁ
ଜୟ ଜୟ ଦୀନଜନବାନ୍ଧବ ହେ ଶମ୍ଭୁ ।
ଜୟ ଭକତ ବତ୍ସଳ ଜୟ ଭାବଗ୍ରାହୀ
ଜୟ ଜୟ ଯଦୁବଂଶ ଦଇତ୍ୟାରି ତୁହି ।
ଜୟ ଜୟ ଦାନବଙ୍କ କୁଳ ସଂହରଣ
ବିଶ୍ୱରୂପେ ଜନ୍ମି ପୃଥ୍ୱୀ କରୁ ତୁ ପାଳନ ।
ଜୟ ଜୟ ଜଗନ୍ନାଥ ଜଗଜ୍ଜନବାସୀ
ପୃଥ୍ୱୀ ପରିଚାଳକ ତୁ ପରଂବ୍ରହ୍ମରାଶି ।
ଅନନ୍ତ ଶଯ୍ୟା ଉପରେ ଯୋଗାସନେ ବସ
ମୁଁ ଛାର ପାମର ତାହା କରିବି ବା କିସ ।
ନାରଦ ଆଗେ ଯାହା କହନ୍ତି ବେଦବର
ସେ ଗ୍ରନ୍ଥ ଶୁଣେ ପରୀକ୍ଷ ନାମେ ଦଣ୍ଡଧର ।
ପଞ୍ଚମ ରତ୍ନାକରର ବାଣୀ ହେଲା ଶେଷ
ଷଷ୍ଠ ଖଣ୍ଡରେ ଯେ ମୁର ହେବ ଏବେ ନାଶ ।
ଏ ଗ୍ରନ୍ଥ ଗୋଟିକ ଶୁଣେ ଯେହୁ ପୁରାକରି
ଧନ ଜନ ସମ୍ପଦ ଯେ ବଢ଼େ ଭୋଗ ଶିରୀ ।
ଭକତି ସୁଜ୍ଞାନ ଦୟା ଧର୍ମ ଉପୁଜିବ
ସମୟେ ସମ୍ପତ୍ତି ଦାରା ପୁତ୍ର ବିଳସିବ ।

ଦେହ ଅନ୍ତେ ବଇକୁଣ୍ଠ ହେବ ପରାପତ
ଏମନ୍ତ ଅଟେ ନୃସିଂହ ପୁରାଣ ଚରିତ ।
ସାଧୁଜନମାନେ ମୋତେ କରିବାକୁ ଦୟା
ତୁମ୍ଭର ଚରଣ ତଳେ ନିମଜ୍ଜୁ ମୋ କାୟା ।
ସାଧୁସେବା ମୁହିଁ କରି ନାହିଁ ଦିନେ ବସି
ପୁଣି କରିନାହିଁ ତୀର୍ଥବ୍ରତ ଏକାଦଶୀ ।
କହି ତ ନୁହଇ ଯୋଗ୍ୟ ଅଟେ ମୁଁ ଅକ୍ଷମ
ସ୍ୱଭାବେ ମୁଁ ଅପଣ୍ଡିତ ଅଟେ ଯେ ଅଧମ ।
ଜନ୍ମରୁ ମୁଁ ବହୁକ୍ଳେଶୀ ଭକ୍ତି ଜାଣେ ନାହିଁ
ମୂର୍ଖ ଗୋଷ୍ଠୀରେ ମୋହର ସଦା ଦିନ ଯାଇ ।
କେବଳ ଏତିକି ମାତ୍ର ଭରସା ମୋ ଚିତ୍ତେ
ଅଟନ୍ତି ସବୁରି ପ୍ରାଣପତି ଜଗନ୍ନାଥେ ।
ନାନାଦି ଦୁରିତ ପ୍ରଭୁ ନାଶନ୍ତି ଯେ ଏଣେ
ତେଣୁ ଅନୁସରି ଅଛି ସମୁଦ୍ର ପ୍ରମାଣେ ।
ଚଣ୍ଡାଳ ଉଦ୍‌ଯୋଗୁ ହୁଏ କର୍ପୂର ଯେ ଜାତ
ମୁଁ ଉଦଯୋଗ କଲେ କି ନୋହିବ ଏ ଗ୍ରନ୍ଥ ।
ଏଣୁ ଆହେ ସୁଜନେ ନ ଘେନ ମୋର ଦୋଷ
ଶ୍ରୀହରି ଶରଣ ବିପ୍ର ପୀତାମ୍ବର ଦାଶ ।
ମୁହିଁ ସିନା ଅଧମ ମୋ ବୁଦ୍ଧି ଅଜ୍ଞ ହୋଇ
ସଦା ମୋତେ ସାହା ଜଗନ୍ନାଥ ଭାବଗ୍ରାହୀ ।
ଶୁଣ ହେ ସୁଜନେ ଏହୁ ନୃସିଂହ ପୁରାଣ
ସମସ୍ତେ ବସି କରିବ ମୋତେ ସୁକଲ୍ୟାଣ ।
କେବଳ ଏତିକି ମୁହିଁ କହୁଛି ତୁମ୍ଭଙ୍କୁ
ଯେତେବେଳେ ବସି ଶୁଣିବ ଏ ପୁରାଣକୁ ।
ତୁମ୍ଭର ଛାମୁରେ ଏକା ମୋତେ ବସାଇବ
ଗ୍ରନ୍ଥ ଶୁଣିଣ ଅନ୍ତର କେଭେ ନ କରିବ ।
ଅର୍ଥ ବୁଝି ନ ପାରିଲେ ଶୁଣୁଥିବ ବସି
ଅକଳନା ଅଟନ୍ତି ତ ବିଷ୍ଣୁ ବ୍ରହ୍ମରାଶି ।
ତୁମ୍ଭ ସଙ୍ଗତରେ ମୋତେ ଥିବ ଜଣେ କରି
ଏତିକି ମାଗୁଛି ସମସ୍ତଙ୍କୁ ଅନୁସରି ।
ସମସ୍ତେ ତୋଷ ହୋଇଣ ଆଶୀର୍ବାଦ କର
ବିପ୍ର ପୀତାମ୍ବର ଦାଶ ସର୍ବଦା ତୁମ୍ଭର ।
ଅମୃତମୟ ନୃସିଂହ ପୁରାଣ ଏ ରସ
ପ୍ରଭୁଙ୍କ ଦୟାରୁ କରୁଅଛି ମୁଁ ପ୍ରକାଶ ।
ହରି ରାମକୃଷ୍ଣ ମୋତେ କରିବେ ସୁଦୟା
ଶ୍ରୀ ପାଦପଦ୍ମେ ନିମଜ୍ଜି ରହୁ ମୋର କାୟା ।
ଶ୍ରୀଲକ୍ଷ୍ମୀ ନୃସିଂହ ଶେଷ ଚରଣେ ମୋ ଆଶ
ଜନ୍ମେ ଜନ୍ମେ ସେବେ ବିପ୍ର ପୀତାମ୍ବର ଦାଶ ।

ସଦା ଶ୍ରୀଲକ୍ଷ୍ମୀ ନୃସିଂହ ଚରଣେ ଶରଣ
ଅଧମ ଦୀନଜନଙ୍କୁ କରିବେ ତାରଣ ।
ବରଜବନ୍ଧୁ ଦାସ ଯେ ପୀତାମ୍ବର ଦାଶ
ଦୟାନିଧି ଚରଣେ ଶରଣ ପ୍ରତି ଆଶ ।
ଜ୍ଞାନସାର ପଣ୍ଡିତ ଯେ ଅଟେ ଭାବବଶେ
ନୃସିଂହ ଆଶାରେ ତୁମ୍ଭେ କହିଲ ବିଶେଷେ ।
ତେଣୁ ନରାଧମ ମୁଁ ଯେ ନ ଜାଣଇ କିଛି
ତୁମ୍ଭ ସଙ୍ଗେ ପାପୀ ମୁଁ ଯେ ଗୋଳାଇ ହେଉଛି ।
ନୃସିଂହ ନାମରୁ ଜାତ କଲି ଏହି ଗ୍ରନ୍ଥ
ସପ୍ତ ରତ୍ନାକର ଗ୍ରନ୍ଥ ହୋଇଛି ନିର୍ମିତ ।
ନୃସିଂହ ପୁରାଣ ନାମେ ହେଲା ସେ ବଖାଣ
ସଂସାରକୁ ସାର ହେଲା କୁଳ ଉଦ୍ଧାରଣ ।
ହରିନାମ ବୋଲି ପଦ କର ଉଚ୍ଚାରଣ
ମୁରାସୁର ବିଚାରିଲା ମନେ ଆସି ପୁଣ ।
ଯାହା ସେ ଲିହିଥିଲା ମୋ କପାଳରେ ବିଧି
ଭାଇ ପୁତ୍ର ନାତି ପକ୍ଷୀବର ଦେଲା ଛେଦି ।
ଆପଣାର କଥା ଆପେ ଜାଣିଅଛି ବୁଝି
ତେଣୁକରି ମାଗେ ସେ ଶ୍ରୀହସ୍ତେ ଦେବେ ଶୁଝି
କ୍ଷତ୍ରୀ ହୋଇ କ୍ଷତ୍ରୀ ସଙ୍ଗେ କଲେ ରଣେ ଯଶ
ପ୍ରାଣ ଯିବାବେଳେ ଯେବେ ଶ୍ରୀକୃଷ୍ଣ ସୁଦୃଶ ।
ତେବେ ସିନା ବ୍ରହ୍ମାଣ୍ଡକୁ ଯଶ ଥିବ ଅଡ଼ି
ହରି ହରି ବୋଲୁ ମୁଖେ ପ୍ରାଣ ଯିବ ଛାଡ଼ି ।
ଦୈତ୍ୟ ହସ୍ତରେ ପ୍ରଭୁ ନ ଦେବ ପରାଭବ
ମୁଁ ଜାଣୁଅଛି ନୃସିଂହ ହସ୍ତେ ଜୀବ ଯିବ ।
ହଇ ହେ ଶ୍ରୀ ପୀତାମ୍ବର ଦାଶେ ଏବେ ଶୁଣ
ମୁରାସୁର ଭାବେ ଭକ୍ତ ଦାସ ହେଲା ପୁଣ ।
ସ୍ୱୟଂ ଅବଧାନ କରି ଦେଲେ ତାକୁ ବର
ଧନ୍ୟ ଧନ୍ୟ ବିପୁଳ ସମ୍ପତ୍ତି ଘେନ ବୀର ।
ଆବର ଯେତେ ତେତିଶକୋଟି ଦେବେ ଆଦି
ଅଇଶ୍ୱର୍ଯ୍ୟ ଭୁଞ୍ଜିବାକୁ ଦେଲେ ହରି ବିଧି ।
ସେମାନେ ଏଡ଼େ କ୍ଷତ୍ରୀ ଥିବାରୁ ଚାରି କଥା
ଦୟା ଧର୍ମ ଦାନ ଭକ୍ତି ରାଜ୍ୟଶ୍ରୀ ବ୍ୟବସ୍ଥା ।
ଏହି ଦାନ ଭକତିରୁ ଦେଲେ ପ୍ରଭୁ ବର
ସୁହୃଦେ ଦେଲେ ବଳିକି ପାତାଳେ ଯେ ପୁର ।
ତୁମ୍ଭ ଭକ୍ତି ଦେଖି ପ୍ରଭୁ ହେଲେ ଭାବେ ବଶ
ତାଙ୍କ ନାମ ତୁମ୍ଭ ମୁଖେ କରିଲି ପ୍ରକାଶ ।
ଜଗତପାଳନ ସେ ଯେ କଲେ ସୃଷ୍ଟି ସ୍ଥିତି
ଅନ୍ତଃକାଳେ ତୁମ୍ଭଙ୍କୁ ଯେ ଦେଲେ ଗତି ମୁକ୍ତି ।

ପୂର୍ବର ଭାଗ୍ୟରୁ ଜନ୍ମେ ଜନ୍ମେ ହେଲ ଦାସ
ନାମ ଖ୍ୟାତ କରଣେ ସଂସାରେ ହୁଅ ଦୃଶ୍ୟ ।
ସ୍ୱୟଂ ନାରାୟଣ ପ୍ରଭୁ ଭକ୍ତ ଭାବଗ୍ରାହୀ
ଗୋଲିଗାଲି ହେଉଅଛି କର ମୋତେ ତ୍ରାହି ।
ନାରାୟଣ ନାମଗୋଟି ଅଧମ ତାରଣ
ହରିନାମ ଅଟଇ ହେ ପିଣ୍ଡକୁ କାରଣ ।
ବାସୁଦେବ ନାମଗୋଟି ଅଟଇଟି ଯେହୁ
ଆକଣ୍ଠ କାଳରେ ଆସି ସାହା ହୋନ୍ତି ସେହୁ ।
ଶ୍ରୀରାମ ଲକ୍ଷ୍ମଣ ବୋଲି କରେ ଉଚ୍ଚାରଣ
ଦଶରଥ ନନ୍ଦନ ସେ ଧରି ଧନୁର୍ବାଣ ।
ଚୌଷଠି ରୋଗୁ ଶତ୍ରୁକୁ କରନ୍ତି ରକ୍ଷଣ
ସୀତାର ନାମ ଗୋଟିକ ସକଳ ସମାନ ।
ସେପରି ଏବେ ପ୍ରଭୁ ଯେ ହେବ ସାହାପକ୍ଷ
ଜୀବ ଉଦ୍ଧାରି ପିଣ୍ଡକୁ କରିଦେବ ମୋକ୍ଷ ।
ଦାରୁବ୍ରହ୍ମ ଦାମୋଦର ପ୍ରଭୁ ଦାଶରଥି
ସନ୍ତାନବର୍ଗ ଘେନିଣ ଦେବେ ଗତି ମୁକ୍ତି ।
ଅଧମ ପୀତାମ୍ବର ଯେ ଭାବୁଅଛି ନିତି
ଲକ୍ଷ୍ମୀ ନୃସିଂହ ଭଜିଲେ ମିଳେ ସଦଗତି ।
ସଦାଶିବ ବୋଲେ ମୁଁ ଯେ ମନେ ସଦା ପାଞ୍ଚି
ସବୁ ବଳ ପରାକ୍ରମ ଦ୍ୟନ୍ତି ପ୍ରଭୁ ଯାଚି ।
ଅକ୍ଷୟ ଅମର ବର ପ୍ରଭୁ ଆଣି ଦ୍ୟନ୍ତି
କ୍ଷୁଧା ତୃଷା ଦେଖି ସେହୁ ସହି ନ ପାରନ୍ତି ।
ବରଦାୟକ ସୁଫଳ ଦେଇଛନ୍ତି ହରି
ଭୋଳେ ସଦାଶିବ ପ୍ରଭୁ ହୃଷ୍ଟେ ଦ୍ୟନ୍ତି ଭରି ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଆନ ନୋହେ କରି
ଅଚଳ ହୋଇ ସେ ବର ଦେବା ଦ୍ରବ୍ୟ ଶିରୀ ।
ସମସ୍ତ ପ୍ରସନ୍ନେ ବର ଶିବ ଦେଲେ ଭରି
ମୁରରାଜା ଘେନି ମନ ମଧ୍ୟେ ନାହିଁ ଡରି ।
ପୂର୍ବରେ ସେବକ ସେହୁ ପ୍ରଭୁଙ୍କର ଜାଣ
ତେଣୁ ସିନା ପ୍ରଭୁ ହାତେ ଲଭିବ ମରଣ ।
ପଞ୍ଚମ ରତ୍ନାକର ଏ ଗ୍ରନ୍ଥ ହେଲା ଶେଷ
ଷଷ୍ଠରେ ମୁର ଦଇତ୍ୟ ହୋଇବ ନିର୍ବଂଶ ।
ମୁଣ୍ଡା ହୋଇ ବସିଛି ତା ପୁତ୍ର ନାତି ଯାକ
ସବୁ ଦେଇ ଗରୁଡ଼କୁ ହୋଇଛି ଉତ୍ସୁକ ।
ପତ୍ନୀ ଆଗରେ ଯାଇଣ କହେ ସମ୍ଭାଷଣେ
ମୋ ପରା କ୍ଷତ୍ରୀ ଥାଉ ସେ କି କରିବେ ରଣେ ।
ଶୁଣ ଆରେ ମୁରଦୈତ୍ୟ କହୁଅଛି ପଦେ
ପ୍ରଭୁ ଭକତିରୁ ସିନା ଶରଣ ସେ ପାଦେ ।

ଭକ୍ତିଭାବରୁ ତୋହର ରଜ ବୀର୍ଯ୍ୟେ ଜାଣ
ଯେତେକ ପୁତ୍ର ନାତିଏ ସର୍ବେ ଗଲେ ପୁଣ ।
ତୋହର ନିର୍ମଳ ଭକ୍ତି ଦେଖିକରି ଆସି
ଗରୁଡ଼ ଯେ ପ୍ରଭୁଭକ୍ତ ମାଇଲା ଆକର୍ଷି ।
ତୋଠାରୁ ଜାତ ସିନା ତୋପରି ହେବେକେହି
ତେଣୁ ଗରୁଡ଼ ପେଷିଲା ତାଙ୍କୁ ସ୍ୱର୍ଗ ଭୂଇଁ ।
ଗରୁଡ଼ ହସ୍ତରେ ତୋର ମଲେ ଯେତେ ଆସି
ସ୍ୱର୍ଗପୁରେ ବାସ ତାଙ୍କୁ ହୋଇଲା ବିଶେଷି ।
ତାହାଙ୍କର ପିତା ତୁ ଯେ ହୋଇବାରୁ ପୁଣ
ରାଜ୍ୟରେ ବଳିଷ୍ଠ ପୁଣି ମୁର ରାଜପଣ ।
ଧନୁ ଶସ୍ତ୍ର ଚାରିବେଦ ଅଙ୍ଗେ ଅଛୁ ସାଜି
ଅମୋହ ସଞ୍ଜୀବନୀ ଯେ ଶିବ ସେବି ଭଜି ।
ତେଣୁକରି ଗରିଷ୍ଠ ଯେ ଗର୍ବ ମନେ ବହୁ
ଦୈତ୍ୟଛାର ହସ୍ତେ ଆଜ ମୋ ମରଣ ନୋହୁ ।
ତୋହଠାରେ ସର୍ବଦେବେ ଦେଇଛନ୍ତି କେତେ
କେତେ ବର୍ଣ୍ଣେ ଧନୁଶସ୍ତ୍ର ବହିଅଛୁ ହସ୍ତେ ।
ତାହା ଅନ୍ତର୍ଯ୍ୟାମୀ ପ୍ରଭୁ ଜାଣନ୍ତି ସମ୍ପୂର୍ଣ୍ଣେ
ତାଙ୍କ ବ୍ୟତିରେକେ ରଣ କେ କରିବ କେହ୍ନେ ।
ପୂର୍ବଭାଗ୍ୟବଳେ ତାଙ୍କ ହସ୍ତେ ହେବୁ ନାଶ
ତାଙ୍କ ପାଶେ ରହିବୁ ଯେ ବୋଲାଇଣ ଦାସ ।
ପୂର୍ବ ଭାଗ୍ୟରୁ ବୈକୁଣ୍ଠେ ଦେଲେ ତୋତେ ବାସ
ଜନ୍ମେ ଜନ୍ମେ ଦାସ ହୋଇଥାଉ ତାଙ୍କ ପାଶ ।
ପୀତାମ୍ବର ଦାଶଙ୍କର ଏହି ଭକ୍ତିବାଣୀ
ପୃଥିବୀରେ ଜାତ ଯେହୁ ହେଲେ ନର ପୁଣି ।
ଧନ ଜନ ସମ୍ପଦ ଯେ ଭୋଗ ଆଦିକରି
ଯଶ ଶ୍ରୀ ଆୟୁଷ ଭୋଗ କଲେ ନାମ ଧରି ।
ଯେଉଁ ପ୍ରଭୁ କରୁଣାରୁ ଏତେ ହେଲା ଆସି
ସେହି ପ୍ରଭୁ କରୁଣାରେ ତାଙ୍କ ନାମ ଘୋଷି ।
ତାଙ୍କ ନାମ ଘୋଷୁ ଘୋଷୁ ସେ ହେଲେ ପ୍ରସନ୍ନ
ଶାରଦାଙ୍କୁ ଆଜ୍ଞା ଦେଲେ ଯାଅ ଗୋ ବହନ ।
ବିପ୍ର ପୀତାମ୍ବର କଣ୍ଠେ ହୋଇଲେ ପ୍ରସନ୍ନ
ମୋ ନାମ ଗୁଣାନୁବାଦ କରୁଥିବ ଗାନ ।
ଯାହା ମନେ ବିଚାରିବ ହେବ ତାର ବଶ
ନ ଆସିବାଠାରେ ପଦ କରିବେକ ଦୃଶ୍ୟ ।
ଏମନ୍ତ ହୋଇ ସେ ଜନ ମନକୁ ହରିବ
ନୃସିଂହ ପୁରାଣ ନାମ ବ୍ୟାଖ୍ୟାନ କରିବ ।
ଅନେକ ଅନେକ ଶାସ୍ତ୍ର ଆଉ ବିଦ୍ୟା ଯେତେ
ନାଟ ଗୀତ ରଙ୍ଗଆଦି ଚୌପଦୀ ସହିତେ ।
ସକଳ ହୋଇବ ଦୃଶ୍ୟ କଣ୍ଠେ ଦେବୁ କହି
ମୋହଠାରେ ଅହଂଗୁଣ କାଳହେଁ ନ ବହି ।
ଏଥିପରେ ମୋ ନାମ ଶାକର ଖଣ୍ଡସାର
ବ୍ରାହ୍ମଣ ସଞ୍ଜିବ ଶ୍ରୀନୃସିଂହ ନାମାକ୍ଷର ।
ଲେଖି ପଢ଼ି ଶୁଣି କର୍ଣ୍ଣେ ନୟନରେ ଦେଖି
ଯେତେକ ଫଳଶ୍ରୁତି ମୁଁ ଆଦ୍ୟେ ଅଛି ଲେଖି ।
ତହିଁକି ସାବଧାନ ଯେ ପୀତାମ୍ବର ବୋଲେ
ରଖ ରଖ ଶାରଦା ହେ ଚିତ୍ତେ ମୋର ହେଲେ ।
ସଦାବେଳେ ନାମକୁ ଯେ କଲା ଆପ୍ୟାୟନ
ଅମୃତ ପାନେ ହୁଅଇ ଯେହ୍ନେ ତୋଷ ମନ ।
ଅମୃତ ପ୍ରାୟ ମୋହର ନାମ କଲା ଭକ୍ଷ
ଗର୍ଭ ସମ୍ପୂର୍ଣ୍ଣ ହୋଇ ମୋ ସୁଖେ ନାହିଁ ଲକ୍ଷ୍ୟ ।
ଏବେ ମୋର ମନ ଆଣି କରିଲଇଁ ତୋଷ
ପ୍ରଭୁ ବୋଇଲେ ଚରଣେ ହୁଏ ଆସି ଦାସ ।
ତାହା ଶୁଣି ବିପ୍ର ପୀତାମ୍ବର ଦାଶ ମନ
ହରି ହରି ତୁଣ୍ଡେ ଘୋଷି ପଶିଲେ ଶରଣ ।
ହରି ହରି ଶବଦ ସେ ଶୁଭଇ ତ୍ରିଦଶେ
ଲକ୍ଷ୍ମୀ ନୃସିଂହଙ୍କ ପାଦ ପଙ୍କଜର ଆଶେ ।
ସଦା ମନେ ମନେ ମୁଁ ଯେ ଡାକେ ଦାରୁବ୍ରହ୍ମ
ଉଦ୍ଧାର କରିବେ ମୋତେ ଲକ୍ଷ୍ମୀ ନାରାୟଣ ।
ଅଭୟ ଭୈରବଙ୍କର ପଦ୍ମପାଦ ସତେ
ମନୋବାଞ୍ଛା ପୂର୍ଣ୍ଣ ମୋର କରିବେ ଜଗତେ ।
ନୃସିଂହ ଗ୍ରନ୍ଥ ଶୁଣିଲି କର୍ଣ୍ଣେ ପୁଣି ଯେତେ
ଦେଖି ନାହିଁ ନେତ୍ର ମୋର ଜ୍ଞାନେ ଦୃଢ଼ବ୍ରତେ ।
ଶାରଦା ଦେବୀଙ୍କ କୃପା ସତେ ହେବ ଆସି
ପୁରାଣ ଲେଖିଛି ମୁଖେ ଜୟ ଜୟ ଭାଷି ।
ଅଧମ ଅରକ୍ଷ ପୁଣି ବୟସରେ ସାନ
ଲେଖିବାକୁ ସମର୍ଥ କି ଅଟେ ମୋର ମନ ।
ସେ ଦେବୀଙ୍କ ସୁଦୟାରୁ କଲି ମୁଁ ଲିଖନ
ଦୋଷ ନ ଧରିବ ମୋର ସାଧୁ ସୁଜ୍ଞଜନ ।
ଶୁଣ ସୁଜନେ ପଞ୍ଚମ ରତ୍ନାକର ବସି
ଏଠାରେ ସମ୍ପୂର୍ଣ୍ଣ କରି ହରିନାମ ଘୋଷି ।
ପଞ୍ଚମ ସମ୍ପୂର୍ଣ୍ଣ ହେଲା ଷଷ୍ଠେ କର ଲୟ
ଶୁଣି କୃତାର୍ଥ ହୋଇବ ମୁରାସୁର କ୍ଷୟ ।
ଅଭୟ ଶାରଦାଙ୍କର ପଙ୍କଜ ପୟର
ଅଧମ ପୀତାମ୍ବରକୁ କରିବେ ଉଦ୍ଧାର ।
ଶ୍ରୀଲକ୍ଷ୍ମୀ ନୃସିଂହ ଲୀଳା ଶେଷଦେବ ପାଦେ
ବିପ୍ର ପୀତାମ୍ବର ଚିତ୍ତ ରହୁ ଅପ୍ରମାଦେ ।

ଇତି ଶ୍ରୀ ନୃସିଂହ ପୁରାଣ ପଞ୍ଚମ ସାଗର
— ସମାପ୍ତ —

## ପୁସ୍ତକ ତାଲିକା

| | |
|---|---|
| ସୂର୍ଯ୍ୟ ପୁରାଣ | ଆଦିବାସୀ ହରିଜନ ପୁରାଣ |
| ଚନ୍ଦ୍ର ପୁରାଣ | କୈବର୍ତ୍ତ ପୁରାଣ ୧ମ ଓ ୨ୟ |
| ପର୍ଶୁରାମ ପୁରାଣ ୧ମ ଓ ୨ୟ | ଇତିହାସ ପୁରାଣ |
| ଚଣ୍ଡୀ ପୁରାଣ (ଶାରଳା) | ନୃସିଂହ ପୁରାଣ ସେଟ୍ (୭ ଖଣ୍ଡ) |
| ସପ୍ତଶତୀ ଚଣ୍ଡୀ ପୁରାଣ | ହରିବଂଶ ପୁରାଣ ସେଟ୍ (୭ ଖଣ୍ଡ) |
| କଳ୍କୀ ପୁରାଣ | ଦାମୋଦର ପୁରାଣ ସେଟ୍ (୨ ଖଣ୍ଡ) |
| ସନ୍ତୋଷୀ ମାତା ପୁରାଣ | ଚିତ୍ତବୋଧ ସେଟ୍ (୪ ଖଣ୍ଡ) |
| ତ୍ରିନାଥ ପୁରାଣ | ବିଚିତ୍ର ହରିବଂଶ |
| ଗଣେଶ ପୁରାଣ | କାର୍ତ୍ତିକ ପୁରାଣ |
| ଜଗନ୍ନାଥ ପୁରାଣ | ଦେବୀ ଭାଗବତ ମହାପୁରାଣ (୧ମ, ୨ୟ) |
| କାଳିକା ପୁରାଣ | ମା' ତାରିଣୀ ଭାଗବତ |
| ବୃହଦ୍ ଗଙ୍ଗା ପୁରାଣ | ସଭାବିନୋଦ |
| ଦାର୍ଢ୍ୟତା ଭକ୍ତି ପୁରାଣ | ନାମରତ୍ନ ଗୀତା |
| ତାରାତାରିଣୀ ପୁରାଣ | ଶ୍ରୀ ଶାରଳା ପୁରାଣ |
| ଆଦିଶକ୍ତି ପୁରାଣ | ସରସ୍ୱତୀ ପୁରାଣ |
| ଅଲେଖ ପୁରାଣ | ଦୁର୍ଗା ପୁରାଣ |
| ବିଷ୍ଣୁଗର୍ଭ ପୁରାଣ | ମଙ୍ଗଳା ପୁରାଣ |
| ମୋକ୍ଷ ପୁରାଣ | ତାରିଣୀ ପୁରାଣ |
| ଯମ ପୁରାଣ | ଟୀକା ଶିବ ପୁରାଣ |
| ଧର୍ମ ପୁରାଣ | ଟୀକା ତୁଳସୀ ରାମାୟଣ |
| ଦେବଦର୍ଶନ ପୁରାଣ | ଚୈତନ୍ୟ ମହାପୁରାଣ |
| କୁରାନ୍ ପୁରାଣ | ଟୀକା ନୃସିଂହ ପୁରାଣ |
| ଗାନ୍ଧୀ ପୁରାଣ | ଖୁଲଣା ସୁନ୍ଦରୀ ପୁରାଣ |
| କ୍ଷତିବଂଶ ପୁରାଣ | ଦାରୁବ୍ରହ୍ମ ପୁରାଣ |
| ବିଶ୍ୱାମିତ୍ର ପୁରାଣ | ବୃହଦ୍ ଗୋବିନ୍ଦ ଚନ୍ଦ୍ର ପୁରାଣ |
| ଏକାମ୍ର ପୁରାଣ | ଖୁଦୁରୁକୁଣୀ ପୁରାଣ |


ପ୍ରକାଶକ ଓ ପ୍ରାପ୍ତିସ୍ଥାନ : **ଧର୍ମଗ୍ରନ୍ଥ ଷ୍ଟୋର**

ପରିଚାଳକ : ଶ୍ରୀ ବିଦ୍ୟାଧର ସାହୁ

ଅଲିଶାବଜାର, କଟକ- ୭୫୩ ୦୦୨, ଫୋନ୍ : ୨୬୦୮୨୯୬

ଅକ୍ଷରସଜ୍ଜା : ସୋମନାଥ ଡି.ଟି.ପି. ସେଣ୍ଟର, ଫୋନ୍ : ୨୩୦୨୫୯୬

ମୁଦ୍ରଣ: କେ.କେ.ପି. ପ୍ରିଣ୍ଟର୍ସ, ଅଲିଶାବଜାର, ଫୋନ୍ : ୨୬୦୭୯୨୨

ବିପ୍ର ପୀତାମ୍ବର ଦାସଙ୍କ ବିରଚିତ

# ନୃସିଂହ ପୁରାଣ

## ଷଷ୍ଠ ସାଗର

(ନୂତନ ମୁଦ୍ରଣ)



ପ୍ରକାଶକ ଓ ପ୍ରାପ୍ତିସ୍ଥାନ :

**ଧର୍ମଗ୍ରନ୍ଥ ଷ୍ଟୋର**

ପ୍ରତିଷ୍ଠାତା- ଶ୍ରୀ ବିଦ୍ୟାଧର ସାହୁ

ପରିଚାଳକ- ଶ୍ରୀ ମହିମା ପ୍ରସାଦ ସାହୁ

ଅଲିଶା ବଜାର, କଟକ-୨,

ଫୋନ୍ : ୦୬୭୧-୨୫୦୮୨୯୬

ମୂଲ୍ୟ : ପଚିଶି ଟଙ୍କା ମାତ୍ର

## ନୃସିଂହ ପୁରାଣ ଷଷ୍ଠ ସାଗରର

# ସୂଚୀପତ୍ର



ନୃସିଂହ ପୁରାଣ ଷଷ୍ଠସାଗରର ସୂଚିପତ୍ର ସମାପ୍ତ

# ନୃସିଂହ ପୁରାଣ

## ଷଷ୍ଠ ସାଗର

ଆସୀନଂ କମଲାସନେ କମଲୟା ବକ୍ଷସ୍ଥଳାସୀନୟା,
ବିଦ୍ୟୁଦ୍ଧ୍ୟୋତସଟାସମୂହବିଲସତ୍ ସୌମ୍ୟାନନାମ୍ଭୋରୁହଂ।
ଜାନ୍ୱୋରର୍ପିତୟୋଗପଟ୍ଟମୁଭୟୋର୍ବାହୂ ଦୃଢ଼ବାୟତୌ,
ହସ୍ତାଭ୍ୟାଂ ଧୃତଶଙ୍ଖଚକ୍ରମନିଶଂ ଲକ୍ଷ୍ମୀନୃସିଂହଂ ଭଜେ।୧।
ନାରାୟଣଂ ନମସ୍କୃତ୍ୟ ନରଂ ଚୈବ ନରୋତ୍ତମଂ।
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋଜୟମୁଦୀରୟେତ୍।୨।
ବେଦେ ରାମାୟଣେ ଚୈବ ପୁରାଣେ ଭାରତେ ତଥା
ଆଦୌପ୍ରାନ୍ତେ ଚ ମଧ୍ୟେ ଚ ହରିଃ ସର୍ବତ୍ର ଗୀୟତେ।୩।
ତଂ ବେଦଶାସ୍ତ୍ରପରିନିଷ୍ଠିତଶୁଦ୍ଧବୁଦ୍ଧିଂ ଚର୍ମାମ୍ବରଂ ସୁରମୁନୀନ୍ଦ୍ରନୁତଂ କବୀନ୍ଦ୍ରଂ।
କୃଷ୍ଣତ୍ୱିଷଂ କନକପିଙ୍ଗଜଟାକଳାପଂ ବ୍ୟାସଂ ନମାମି ଶିରସା ତିଳକଂ ମୁନୀନାଂ।୪।
ନାହଂ ତିଷ୍ଠାମି ବୈକୁଣ୍ଠେ ଯୋଗୀନାଂ ହୃଦୟେ ନ ଚ।
ମଦ୍ଭକ୍ତା ଯତ୍ର ଗାୟନ୍ତି ତତ୍ର ତିଷ୍ଠାମି ନାରଦ।୫।

### ଶ୍ରୀ ଦୁର୍ଗାସ୍ତୁତି

ବନ୍ଦଇ ଶ୍ରୀଦୁର୍ଗା ମାଗୋ ରତ୍ନଗିରିବାସୀ
ନିଶାଅର୍ଦ୍ଧରେ ଜନ୍ମିଲୁ ବ୍ରହ୍ମରୁ ପ୍ରକାଶି।
ତେତିଶକୋଟି ଦେବତା ଧାତା ସହିତେଣ
ମହାଆତଙ୍କେ କଲେକ ତୋତେ ସୁମରଣ।
ସବୁରି ଦୁଃଖ ବେଦନା ଘେନି ମହାମାୟୀ
ବ୍ରହ୍ମଅଗ୍ନି ଗର୍ଭୁ ଜନମିଲୁ ଦେହବହି।
ଶୁଦ୍ଧ ସୁବର୍ଣ୍ଣ ପ୍ରାୟେକ ତୋ ରୂପ ବିରାଜି
ସକଳଦେବେ ହେଲେ ତୋ ଦେହ ଲୋମରାଜି।
ସହସ୍ର ଭୁଜରେ ତୋର ସହସ୍ର ଆୟୁଧ
ମିଳିଲୁ ଖେଚରୀ ବିମାନରେ ଗିରିମଧ।
ମହିଷାସୁର ବିନାଶେ ବିଜେକଲୁ ଆସି
ରତ୍ନଗିରି ଉପରେଣ ସ୍ୱରୂପ ପ୍ରକାଶି।
ତହିଁ ବିକାଶିଲୁ ମାଗୋ ଯେତେ ଯେତେ ରୂପ
ଦେବଙ୍କୁ ତ ଅଗୋଚର ମାନବେ ଅମାପ।
ତହୁଁ କିଛି ନାମ ମୁହିଁ ଲେଖିବି ପ୍ରାକୃତେ
ଭୋ ଦେବୀ ମହାମାୟା ଗୋ ଦୟାକରମୋତେ।
ମୁହିଁ ତ ମାନବ ଜନ କିସ ମୋର ବୁଦ୍ଧି
ତୁ ଯେ ମାହେଶ୍ୱରୀ ମାଗୋ କରିବୁ ତା ସିଦ୍ଧି।
ବନ୍ଦଇ ଶ୍ରୀଦୁର୍ଗା ମାଗୋ କୃପାକର ମୋତେ
କ ଅକ୍ଷରୁ କ୍ଷ ଯାଏ ତୋ ନାମ ଅଛି ଯେତେ।
ତୋର କୃପା ନ ହେଲେ ନ ପାରେ ମୁହିଁ କହି
ଆଜ୍ଞା ଦିଅ ଜନନୀ ଗୋ କଣ୍ଠେ ମୋରଥାଇ।
ପ୍ରଥମେ ନାମ କମଳା ପୁଣି କମଳାକ୍ଷୀ
କାଳିକା କାଳରାତ୍ରୀ ଯେ କଙ୍କାଳୀ କାମାକ୍ଷୀ।
ଖାଙ୍କରାମୁଖୀ ଖେଚରୀ ମାଗୋ ଖଗେଶ୍ୱରୀ
ଖର୍ପରହସ୍ତା ଗୋ ଖଞ୍ଜନାକ୍ଷୀ ଖଣ୍ଡାଧାରୀ।
ଗିରିରାଜ ନିବାସିନୀ ଗଜେନ୍ଦ୍ର-ଗମନୀ
ଗିରିଜା ଗଉରୀ ଗଙ୍ଗାଧରଙ୍କ ଭାବିନୀ।
ଘଟହସ୍ତା ଘଟେଶ୍ୱରୀ ଘୂର୍ଣ୍ଣିତ ଲୋଚନା
ଘୋରଶକ୍ତି ଘୋରମୂର୍ତ୍ତି ଘର୍ଘର ଘୋଷଣା।
ଅମ୍ବୁବତୀ ଅମ୍ବୁମାଳୀ ଅମ୍ବାଳୀ ଅମ୍ବିକା
ଅରୁଣା ତୁ ଅନ୍ନପୂର୍ଣ୍ଣା ଅମ୍ବା ଅମ୍ବାଳିକା।
ଚର୍ଚ୍ଚିକା ଚାମୁଣ୍ଡା ଚଣ୍ଡଘଣ୍ଟ ଚନ୍ଦ୍ରକାନ୍ତି
ଚଣ୍ଡିକା ଚାମରକେଶୀ ଚାରୁ ଚମ୍ପାବତୀ।
ଛଦ୍ମବେଶୀ ଛିନ୍ନକେଶୀ ଛିନ୍ନମସ୍ତା ଛାୟା
ଛନ୍ଦରୂପା ଛନୟନା ଚନ୍ଦ୍ରମୌଳିକାୟା।
ଜାଗୁଳାଇ ଜଗନ୍ମାତା ଜୟପ୍ରଦା ଜୟା
ଜଗତଜନନୀ ଜଗଦ୍ଧାତ୍ରୀ ଯୋଗମାୟା।
ଝାଡ଼େଶ୍ୱରୀ ଝଟକରୀ ଝାଡ଼ ନିବାସିନୀ
ଝଟଗାତ୍ରୀ ଝଟନେତ୍ରୀ ଝଟକ ଦଶନୀ।
ନିର୍ଲ୍ଲୋଭିନୀ ନିରାକୁଳା ନିତ୍ୟ ନାରାୟଣି
ନିମା ନିମାଞ୍ଚଇ ନିତ୍ୟରୂପା ନୀଳା ପୁଣି।
ଟହଟହ ହାସିନୀ ତୋ ଟାକ ଟେକ ଭାଷା
ଟାହି ଟାପରାରେ ଟାଣି ନାଶିଲୁ ମହିଷା।

ଠଠିକା ଠୁଳବରନୀ ଠୁଳ ପୀନସ୍ତନୀ
ଠୁଳକାୟା ଠୁଳମାୟା ଠୁଳଶୂନ୍ୟ ଘେନି।
ଡଗର ବାସିନୀ ଡାକିନୀ ଯେ ଡାକେଶ୍ୱରୀ
ଡାକି ଡମ୍ବରୁ ଧାରିଣୀ ଡାଳିମ୍ବ ଅଧରୀ।
ଢୋଲ ଢଙ୍କବାହିନୀ ଢମାନୀ ଢାଳନେତ୍ରୀ
ଢଳହଳମୁଖୀ ଢମବତୀ ଢାଳଗାତ୍ରୀ।
ଅନାଦି ଈଶ୍ୱରୀ ଅପର୍ଣ୍ଣା ଯେ ଆଦିମାତା
ଆଦିଶକ୍ତି ଅକ୍ଷୟା ଯେ ଅଜୟା ଅନନ୍ତା।
ତ୍ରିଅୟିକା ତ୍ରିନୟନା ତ୍ରିଲୋକ ମା ତାରା
ତ୍ରିଲୋଚନୀ ତ୍ରିମୋହିନୀ ତାରିଣୀ ତ୍ରିପୁରା।
ସ୍ଥାବରା ସ୍ଥାନସ୍ଥାପିନୀ ସ୍ଥାବରୀ ତୋ ନାମ
ସ୍ଥାବରବାସିନୀ ସ୍ଥାଣୁପ୍ରିୟା ନମୋନମଃ।
ଦୁଲାଇ ଦୁର୍ଗେଶ୍ୱରୀ ଗୋ ଦୁର୍ଗାନାମ ବହୁ
ଦୁର୍ଦ୍ଧଂସିନୀ ଦାହିନୀ ଦୁର୍ଗତି ଦୁଃଖ ଦହୁ।
ଧାରିଣୀ ଧରିତ୍ରୀ ଧନଞ୍ଜୟ ଧନେଶ୍ୱରୀ
ଧର୍ମାଣି ଧର୍ମିଷ୍ଠା ଧର୍ମବତୀ ଧନ୍ୱନ୍ତରୀ।
ନୀଳବର୍ଣ୍ଣା ନିରାମୟା ନିର୍ଦ୍ଧୟା ମୋହିନୀ
ନିବୃତ୍ତି ନିକସା ନୀରବତୀ ନିତ୍ୟସ୍ଥାନୀ।
ପାର୍ବତୀ ପାଟଳୀ ପଦ୍ମାବତୀ ପୁଣ୍ୟତୋୟା
ପିଙ୍ଗଳା ପଦ୍ମତୋଳା ଗୋ ପଶୁପତିପ୍ରିୟା।
ଫୁଲନେତ୍ରୀ ଫଣୀଞ୍ଜୟ ଫୁତ୍ଫୁକାର ଧ୍ୱନି
ଫୁଲ୍ଲାନନୀ ଫଳଦାନୀ ଫୁଲ୍ଲେନ୍ଦୀବରନୀ।
ବୈଷ୍ଣବୀ ବିଷ୍ଣୁ ହୃଦୟା ବିମଳା ବିରୋଜା
ବ୍ରହ୍ମାଣୀ ବାକେଶ୍ୱରୀ ଯେ ବିନତା ବିରଜା।
ଭବାନୀ ଭୈରବୀ ଭୁବନେଶୀ ଭଗବତୀ
ଭାଗେଶ୍ୱରୀ ଭଦ୍ରକାଳୀ ଭୂଚରୀ ଭାରତୀ।
ମୃଡ଼ାନୀ ମୋହିନୀ ମହାମାୟୀ ମାତଙ୍ଗିନୀ
ମାହେଶ୍ୱରୀ ମୃତ୍ୟୁଞ୍ଜୟୀ ମୃହଙ୍ଗୀ ମାନିନୀ।
ଯୋଗେଶୀ ଯୋଗିନୀ ଯମେଶ୍ୱରୀ ଯୋଗରୂପା
ଯୋଗୀଶ୍ୱରଜାୟା ଯୋଗମୟୀ ଯୁଗରୂପା।
ରୂପାଇ ଯେ ରତନାଇ ରକ୍ତାକ୍ଷୀ ରୁଦ୍ରାଣୀ
ରୁଦ୍ରାକ୍ଷୀ ରଜତମୁଖୀ ରମା ରାମାୟଣୀ।
ଲଳିତା ଲାଙ୍କିନୀ ଲୋହିତାକ୍ଷୀ ଲାଲେଶ୍ୱରୀ
ଲୋକମାତା ଲୋକକର୍ତ୍ତୀ ଲଜ୍ଜା ଲମ୍ବୋଦରୀ।
ବରୁଣାଇ ବୀରଭଦ୍ରା ବାହୁଡି ବାସେଲୀ
ବାରିଜା ବ୍ରାହ୍ମଣୀ ବିକଟାଳୀ ବିକରାଳୀ।
ସର୍ବାଙ୍ଗୀ ସର୍ବମଙ୍ଗଳା ସର୍ବ ସର୍ବଜୟା
ଶ୍ରୀକଣ୍ଠିନୀ ସର୍ବଜୟା ଶ୍ରୀୟା ଶତଶ୍ରୀୟା।
ଶିବାନୀ ଯେ ଶାକମ୍ଭରୀ ଶାରଳା ସାବିତ୍ରୀ
ଶ୍ୟାମଳା ସାରଙ୍ଗୀ ସତ୍ୟରୂପା ସ୍ୱର୍ଣ୍ଣଗାତ୍ରୀ।
ସ୍ୱପନା ସୁନ୍ଦରୀ ସତ୍ୟବତୀ ସୁକୁନ୍ତଳା
ସିଦ୍ଧେଶ୍ୱରୀ ସୁରେଶ୍ୱରୀ ସରଳା ଶାରଳା।
ହିଙ୍ଗୁଳା ହାକିନୀ ହୈମବତୀ ହରିଣାକ୍ଷୀ
ହରପ୍ରିୟା ହଟେଶ୍ୱରୀ ହଂସିନୀ ହର୍ଯ୍ୟାକ୍ଷୀ।

କ୍ଷମାବତୀ କ୍ଷେତ୍ରପାଳୀ କ୍ଷତିକା କ୍ଷମାଳୀ
ପୀତାମ୍ବର ଦାଣ ତବ ପାଦେ କରେ ଅଳି।
ବିପ୍ରକୁଳେ ଜନ୍ମ ମାଗୋ ଅଟଇ ମୋହର
ତବପାଦେ ସେବିବାକୁ ମୁଁ କେତେ ମାତର।
ଶ୍ରୀଦୁର୍ଗାପୁରାଣ ମୁହିଁ କେବେ ଦେଖିନାହିଁ
ତୋର ମହିମା ପାରିବି ମୁଖେ କେତେ କହି।
ନ ଜାଣେ ଶାସ୍ତ୍ର ମାଗୋ ମୁଁ ନୁହଇ ପଣ୍ଡିତ
ତବ ନାମ ସଂଖ୍ୟା କରିପାରେ କି ଜଗତ।
କେବଳ ମହିମା ତୋର ସୁପଣ୍ଡିତ ଜନେ
ପୁରାଣେ କହିବାରୁ ତା ଶୁଣିଥିଲି କର୍ଣ୍ଣେ।
ତେଣୁ ଲେଖିଲି କେତେକ ମାତ୍ର ତବ ନାମ
ତୁ ଗୋ ଜଗଦ୍ଧାତ୍ରି ପ୍ରତ୍ୟକ୍ଷରେ ପରଂବ୍ରହ୍ମ।
ଅଯୋନି ସମ୍ଭୂତା ତୁ ଗୋ ଜନ୍ମ ତୋର ନାହିଁ
ପୃଥ୍ୱୀରକ୍ଷା ନିମନ୍ତେ ଗୋ ବହୁ ବିଶ୍ୱଦେହୀ।
ପ୍ରଥମରୁ ଜନ୍ମ ତୋର ପ୍ରଜାପତି ଘରେ
ଦୁର୍ଗା ସ୍ୱରୂପେ ଜନ୍ମିଲୁ ମେରୁର ଶିଖରେ।
ହିମବନ୍ତୁ ଜନମି ତୋ ନାମ ହୈମବତୀ
ପାର୍ବତୀ ନାମ ଦେଲେକ ଦକ୍ଷ ପ୍ରଜାପତି।
ନିର୍ଘାତର ଘରେ ମାଗୋ ଗଙ୍ଗାରୂପେ ଜନ୍ମ
କାଳରାତ୍ରିରେ ଜନମି କାଳିକା ତୋ ନାମ।
ମହିଷାସୁର ବିନାଶେ ଚାମୁଣ୍ଡା ବୋଲାଉ
ଶିବଭାବିନୀ ହୋଇଣ ସବୁକାଳେ ଥାଉ।
କେ ତୋହର ମହିମା କେ ଆଦିଅନ୍ତ କରି
ସଂସାରେ କହିବ କେଉଁ ନରଦେହ ଧରି।
ଦେବ ଦାନବ ମାନବ ନାଗ ବ୍ରହ୍ମଗଣ
ଯେ ତୋତେ ସେବନ୍ତି ସେହୁ ବୋଲାନ୍ତି ବ୍ରାହ୍ମଣ।
ପ୍ରଭାତ ସନ୍ଧ୍ୟାକାଳରେ ବସି ଶୁଦ୍ଧଚିତ୍ତେ
ଏହି ସ୍ତୁତି ସର୍ବଦା ଯେ ଗୁଣିବ ହୃଦ୍‌ଗତେ।
ଯେ ଅବା ଶୁଣିବ ଯେହୁ ମୁଖରେ ପଢ଼ିବ
ଯମ ଦଣ୍ଡୁ ତରି ନିଶ୍ଚେ ସ୍ୱର୍ଗେ ସେହି ଯିବ।
ଜଳ ଅନଳ ପବନ ଖଡ୍‌ଗ ସର୍ପ ବାଧୁଁ
ନିରନ୍ତରେ ଘୋଷିବ ସେ ତରିବ ପ୍ରମାଦୁଁ।
ଜ୍ୱରଭୟ ପ୍ରମାଦ ଯେ ରାଜା ଦଣ୍ଡଦେବା
ଏଥିରୁ ତରନ୍ତି ନରେ ଦୁର୍ଗା କରି ସେବା।
ଯେଉଁ ଦୁର୍ଗା ସୁମରିଣ ପ୍ରଭୁ ରାମଚନ୍ଦ୍ର
ଲଙ୍କା ଜୟ କରି ନାଶିଥିଲେ ଦୈତ୍ୟ ଇନ୍ଦ୍ର।
ଯେ ଦୁର୍ଗାଙ୍କୁ ସୁମରିଣ ଦେବ ପଶୁପତି
ବରମାଗି ଦୁର୍ଗାଙ୍କର ହେଲେ ନିଜପତି।
ସ୍ୱୟଂ କମଳିନୀ ଦେବୀ ଜନକ ଦୂଲଣୀ
ଶ୍ରୀଦୁର୍ଗାଙ୍କୁ ସ୍ମରି ପ୍ରାପ୍ତ ହେଲେ ରଘୁମଣି।
ଶ୍ରୀଦୁର୍ଗା ସ୍ମରି ଦେବକୀ ଦେବୀ ବନ୍ଦିଘରେ
ଅନାଦି ବିଷ୍ଣୁନାଥଙ୍କୁ ବହିଲେ ଉଦରେ।
ଶ୍ରୀଦୁର୍ଗାଙ୍କୁ ସୁମରିଣ ଭୀଷ୍ମକ ଦୁହିତା
ପତିପଣେ ଭୋଗ କଲେ ବିଷ୍ଣୁ ଜଗନ୍ନିତା।

ଶ୍ରୀଦୁର୍ଗାଙ୍କୁ ସୁମରିଣ ପଞ୍ଚାଳ ନନ୍ଦିନୀ
ଲଭିଲେ ସେ ପାଞ୍ଚବର ସୁଖେ ଯାଜ୍ଞସେନୀ।
ଶ୍ରୀଦୁର୍ଗାଦେବୀଙ୍କୁ ସ୍ମରି ସୁଭଦ୍ରା ଯେ ଦେବୀ
ଅର୍ଜ୍ଜୁନଙ୍କୁ ଲଭିଲେ ସେ ପରମ ବୈଷ୍ଣବୀ।
ଶ୍ରୀଦୁର୍ଗାଙ୍କୁ ସୁମରିଣ ମନ୍ଦୋଦରୀ ରାଣୀ
ଅମର ହୋଇ ଲଙ୍କାରେ ରହିଲା ତରୁଣୀ।
ଏହିରୂପେ ସଂସାରେ ଶ୍ରୀଦୁର୍ଗା କରି ସେବା
ତରିଥିଲେ ଘୋର ଭୟ ଦୁର୍ଗତିରୁ ଯେବା।
ମୁହିଁ ଯେ ଅଳପ ବୁଦ୍ଧି ବୟସେ ବାଳକ
ଦୁର୍ଗା ନାମ ଲେଖିବାକୁ କିସ ମୋର ଶକ୍ୟ।
ଶ୍ରୀହରି ମନ୍ଦିର ବ୍ରହ୍ମ ସମ୍ପ୍ରଦାଧିକାରୀ
ବିପ୍ର ଲକ୍ଷ୍ମୀଧର ପିତାମହ ଯେ ମୋହରି।
ତାଙ୍କ ଜ୍ୟେଷ୍ଠ ନନ୍ଦନ ବାଲୁକେଶ୍ୱର ଦାଶ
ନାମ ମୋର ପୀତାମ୍ବର ମୁହିଁ ତାଙ୍କ ଶିଷ୍ୟ।
ଭୋ ସାଧୁଜନମାନେ ମୋ ଦୋଷ ନ ଧରିବା
ଶ୍ରୀଦୁର୍ଗା ମାଧବଙ୍କୁ ଯେ ନିତ୍ୟ କର ସେବା।
ସେ ଦୁର୍ଗା ମାଧବଙ୍କର ପାଦେ ଆଶ ମୋର
ସ୍ତୁତିରେ ଭଣିଲା ବିପ୍ର ଦାଶ ପୀତାମ୍ବର।
ଜୟ ଜୟ ଶ୍ରୀନୃସିଂହ ସାଧୁ ପଦ୍ମମୁଖ
ଜୟ ଜୟ ଶ୍ରୀନୃସିଂହ ହର ସର୍ବ ଦୁଃଖ।
ଜୟ ଜୟ ଶ୍ରୀନୃସିଂହ ପଙ୍କଜ ନୟନ
ଜୟ ଜୟ ଶ୍ରୀନୃସିଂହ ଦୁରିତ ନାଶନ।
ଜୟ ଜୟ ଶ୍ରୀନୃସିଂହ ସର୍ବ ଗୁଣଗ୍ରାହୀ
ଜୟ ଜୟ ଶ୍ରୀନୃସିଂହ କର ମୋତେ ତ୍ରାହି।
ଜୟ ଜୟ ଶ୍ରୀନୃସିଂହ ମୁଁ ତୁମ୍ଭର ଦାସ
ବିପ୍ର ପୀତାମ୍ବରର ଯେ ପୂର୍ଣ୍ଣକର ଆଶ।



## ସୁବିଜ୍ଞ ମନ୍ତ୍ରୀର ପ୍ରାଣତ୍ୟାଗ ଓ ମଦନାବତୀ ରାଣୀ ସହିତ ମୁରର ପରାମର୍ଶ

ଏଥୁ ଅନନ୍ତରେ କଥା ଶୁଣ ସୁପଣ୍ଡିତେ
ମୁରାସୁର ଫିଙ୍ଗି ବନ ଆଦି ଗୃହାଗତେ।
ଅଚିନ୍ତା ହୋଇ ବସନ୍ତେ ନଗ୍ରେ ସଭାକରି
ସେ କଥା ବ୍ରହ୍ମାଙ୍କ ଆଗେ ନାରଦ ପଚାରି।
ବ୍ରହ୍ମା କହୁଅଛନ୍ତି ନ ହୁଡ଼ି ଟିକେ ଅର୍ଥ
ଷଷ୍ଠ ରତ୍ନାକର ବାଣୀ ଅଟେ ଏ ଯଥାର୍ଥ।
ଏଥୁ ଅନନ୍ତରେ ପୁଣି ପରୀକ୍ଷିତ ରାଜା
ଶୁକମୁନି ଶ୍ରୀଚରଣେ କଲେ ଦିବ୍ୟପୂଜା।
କୃତକୃତ୍ୟ ହୋଇଣ ଯେ ପୁଚ୍ଛେ ନୃପମଣି
ବୋଇଲେକ କହ ଆଗ ମୁରଦୈତ୍ୟ ବାଣୀ।
ତେଡ଼େ କାନନ ଟାଳି ଯେ ବିଷ୍ଣୁ ଫିଙ୍ଗିଦେଲା
ରାଜ୍ୟକୁ ଆସିଣ ରାଜା କେଉଁ କୃତ୍ୟ କଲା।
ସେହି ବିଷୟକୁ ଏବେ କହିବା ମୋ କତି
ଆପଣଙ୍କ ମୁଖୁଁ ଶୁଣି ଲଭିବି ଦୃପତି।

ଏହିରୂପେ ମୁନିଙ୍କି ସେ ପୁଚ୍ଛି ସୋମଗୋତ୍ର
ସୁବର୍ଣ୍ଣ ଲକ୍ଷେ ଦେଇଣ ଯୋଡ଼ିଲେକ ହସ୍ତ।
ଲକ୍ଷେହୀରା ଲକ୍ଷେ ନୀଳା ଲକ୍ଷେ ମୋତିଦେଲେ
ଲକ୍ଷେକ ଧେନୁ ଦେଇଣ ପାଦସେବା କଲେ।
ବୋଇଲେ ସେବିପାରେ କେ ଚରଣ ତୁମ୍ଭର
ଶୁଣିଣ ହସିଲେ ମନେ ଶୁକ ମୁନିବର।
ପରୀକ୍ଷିତ ରାଜାଙ୍କୁ ସେ ବହୁଶ୍ରଦ୍ଧା କଲେ
ଗ୍ରନ୍ଥ ଶୁଣି ତର ବୋଲି ଆଶୀର୍ବାଦ କଲେ।
ବୋଇଲେ ଶୁଣ ହେ ରାଜା ଏଥୁଅନ୍ତେ ବାଣୀ
ନାରଦଙ୍କୁ କହିଥିଲେ ପୂର୍ବେ କୁଶପାଣି।
ଯେତେବେଳେ ମୁରାସୁର ବନ ଦେଲେ ଫିଙ୍ଗି
ନଗ୍ରକୁ ଆସିଣ ରାଜା ସ୍ନାନ କଲେ ବେଗି।
ଦେବାର୍ଚ୍ଚନା ସାରିଣ ସେ ମଣୋହିକି ଗଲା
ଆଚମନ ସାରି ପୁଣି ପଲ୍ୟଙ୍କେ ଶୋଇଲା।
ରଜନୀ ଭୋଗ ଯାଇଣ ହୁଅନ୍ତେ ପାହାନ୍ତି
ନିଦ୍ରା ତେଜିଣ ପଲ୍ୟଙ୍କେ ବସିଲା ନୃପତି।
ହୃଦପଦ୍ମେ ଭାଳି ମନେ କରଇ ବିଚାର
ବୋଲଇ ଆଗହୁଁ କିମ୍ପା ନ କଲି ସମର।
କର୍ମର ଅବଳୁ ମୋର ନ ସ୍ଫୁରିଲା ବୁଦ୍ଧି
ସାନ ଭାଇ କି ମରନ୍ତା ତେଡ଼େ ବଡ଼ ଯୋଧୀ।
ସେନାମାନେ କାହିଁପାଇଁ ଅକ୍ଳେ ଯାନ୍ତେ ନାଶ
ମରନ୍ତେ ପୁଣି ସତରଲକ୍ଷ କିମ୍ପା ଶିଷ୍ୟ।
କାହାକୁ ସଭାରେ ଘେନି ବସିବଇଁ ଏବେ
ତ୍ରିଲୋକ ବୁଡ଼ିଗଲେ କେ ମୋରସଙ୍ଗେ ଯିବେ।
ଏହିରୂବେ ପାଞ୍ଚୁ ମୁର ରାତ୍ର ପାହିଗଲା
ଦେବତା ଆଳୟେ ଶଙ୍ଖ ଶବଦ ଶୁଭିଲା।
ଏଥୁ ଅନନ୍ତରେ ପୁଣି ମୁର ଦଣ୍ଡଧାରୀ
ସଭାକୁ ବିଜୟ କଲା ମଣୋହି ଯେ ସାରି।
ପାତ୍ର ମନ୍ତ୍ରୀଏ ବସିଲେ ଆସି ରାଜା ତୁଲେ
ଦେଖୁ ଦେଖୁ କ୍ଷଣକରେ ସଭା ପୂରିଗଲେ।
ପାଇକ ରାଉତ ଯୋଦ୍ଧା ପଣ୍ଡା ଖଣ୍ଡାଇତ
ଖୁଣ୍ଟିଆ ସେବକ ବଡ଼ଜେନା ସେବାୟିତ।
ବିଶୋଇ ଶେଠ ମାଝୀ ଯେ ନାୟକ ପଧାନ
ମୁଦୀକୋଠକରଣହିଁ ଯେ ଛାମୁକରଣ।
ଷୋଳ ନିଯୋଗ ସାଆନ୍ତ ଷୋଳ ପ୍ରତିହାରୀ
ଲେଙ୍କା ଲମ୍ବହତା ମୂଳେ ଦାସୀ ପରିବାରୀ।
ଅଷ୍ଟାଦଶ ପାଟକ ଛତିଶ କୁଳ ଯେତେ
ବାଳକ ତରୁଣ ବୃଦ୍ଧ ମିଳିଲେ ସମସ୍ତେ।
ଭାଟ ପାଟ ଜଉତିଷ ପରଜା ପାଟକ
ସମସ୍ତେ ବସିଲେ ପୂରି ରାଜା ସଭାଯାକ।
ଏଥୁଅନନ୍ତରେ ବାଣୀ ଶୁଣିମା ସମ୍ବାଦ
ଅସୁର ସଭାରେ ଆସି ମିଳିଲେ ନାରଦ।
ମୁରାସୁର ଆଗେ ଯାଇଁ ବସନ୍ତେଣ ଋଷି
ମୁନିଙ୍କି ଦେଖିଣ ମୁର ମନେ ମନେ ହସି।

ଆସନ ଦେଇଣ ପାଦେ ନମସ୍କାର କଲା
ବିଷ୍ଣୁଙ୍କୁ ମାଇଲି ବୋଲି ଋଷିଙ୍କି କହିଲା।
ବୋଇଲା ହେ ମୁନି ତୁମ୍ଭେ ଥିଲ କେଉଁଆଲ
ମୁଁ ହେଲେ ବିଷ୍ଣୁନାଥର ପୂରାଇଲି କାଳ।
ବଦ୍ରିକା ଯାନ୍ତେ ଆନନ୍ଦବନେ ରହିଥିଲେ
ସେ ବନ ଉପାଡ଼ି ଫିଙ୍ଗିଦ୍ୟନ୍ତେ ପଡ଼ି ମଲେ।
ସମୁଦ୍ର ମଧ୍ୟକୁ ତହିଁ ବୁଲାଇ ଫିଙ୍ଗିଲି
ଜଳେ ପଡ଼ି ବୁଡ଼ିମଲେ ଦେଖିଣ ଆସିଲି।
ବିଷ୍ଣୁର ନାମ ବୋଲିବା ଗଲା ହେଲେ ସରି
ତୁମ୍ଭେ ଆଉ କାହିଁପାଇଁ ଭଜିବ ଶ୍ରୀହରି।
ନିତ୍ୟ ମାଳା ଗଡ଼ାଇଣ ଧନ୍ଦି ହେଉଥିଲ
ଏହିଠାରୁ ଏବେ ଜାଣ ଗଲା ତୁମ୍ଭ ଶଲ।
ତାହାକୁ ଅନୁସରିଣ ବ୍ୟର୍ଥେ ମର ଭଜି
ଏହିଠାରୁ ହରିନାମ ଗଲା ଜାଣ ହଜି।
ଆଗହୁଁ ଏହା ଯେବେ ମୁଁ କରିଥାନ୍ତି ଯାଇଁ
କାହିଁକି ମରନ୍ତା ମୋର ତେଡ଼େବଡ଼ ଭାଇ।
ସେନାମାନେ କାହିଁକି ମୋ ହୁଅନ୍ତେ ବିନାଶ
ଏହିକଥା ଗୋଟି ମୋତେ ଲାଗେ ଏକ ରୋଷ।
ଆଉ ହେଲେ କାହାକୁ ଯେ ନାହିଁ ମୋର ଡର
ତୁମ୍ଭେ ଏହା ବୁଲି ଏବେ କହ ସବୁ ପୁର।
ଏତେକ ଆଜ୍ଞା ମୋହର ଘେନି ତୁମ୍ଭେ ଯାଅ
ଶ୍ରୀହରି ମଲା ବୋଲିଣ ସବୁଠାରେ କହ।
ସବୁ ରାଜ୍ୟରେ ଜାଣନ୍ତୁ ହରି ମଲା ବୋଲି
ଏତେକ କହିବ ତୁମ୍ଭେ ବୁଲି ବୁଲି କାଲି।
ମୁରାସୁର ବାକ୍ୟ ଶୁଣି ନାରଦ ହସିଲେ
କେହ୍ନେଯାଇ ଲୋକେ ମିଥ୍ୟା କହିବାବୋଇଲେ।
ସତ୍ୟ କହି ତ ଲଗାଉଁ ଆମ୍ଭେ ସବୁ କଳି
କି ବୋଲି କହିବା ମଲେ ବୋଲି ବନମାଳୀ।
ଜଳରେ ଯେ ନ ବୁଡ଼ଇ ପବନେ ନ ଉଡ଼େ
ଖଡ଼ଗେ ଯେ ନ ଛିଡ଼ଇ ଅଗ୍ନିରେ ନ ପୋଡ଼େ
ସେ ବିଷ୍ଣୁ ମରିଲେ ବୋଲି କହିବା କି ମିଛ
ଆଜହିଁ ଦେଖି ଆସିଛୁ ଅଛନ୍ତି ପ୍ରତ୍ୟକ୍ଷ।
ସେହି କଥା ରାଜା ତୋତେ କହୁଥାଇଁ ଶୁଣ
କହୁ କହୁ କୋପ ଯେ ନ କର ମୋତେ ପୁଣ।
ବଦରିକା ନଗ୍ରରେ ସେ ପ୍ରଭୁ ଥିଲେ ବସି
ଦେବତାଯାକ ଗୁହାରି କରୁଥିଲେ ଆସି।
ବିଷ୍ଣୁ ବୋଲୁଥିଲେ ମୁହିଁ ମାରିବଇଁ ମୁର
ତୁହି ବୋଲୁଅଛୁ ମଲେ କୁହ ସବୁ ପୁର।
ଆବର ଯେତେକ କଥା କହୁଅଛି ଶୁଣ
ତାହାଶୁଣି ରାଜା ମୋତେ ନ ଚଳିବୁ ପୁଣ।
ଦେବତାଙ୍କ ଆଗେ ବିଷ୍ଣୁ କରୁଥିଲେ ସତ୍ୟ
ବୋଲୁଥିଲେ ମାରିବି ମୁଁ ନିଶ୍ଚେଁ ମୁରଦୈତ୍ୟ।
ଏରୂପେ ଉଚ୍ଚରେ ପ୍ରଭୁ କହୁଥିଲେ ବସି
ତୋ ଜାଣିବା ପାଇଁ ଆମ୍ଭେ କହିଦେଲୁଆସି।
ମଲେଣି ବୋଲିବାରୁ ତୁ କହିଗଲୁ ତୋତେ
ଏହିକଥା ମହାରାଜା ଥିବଟି ତୋ ଚିତ୍ତେ।
ଏତେ କହିଣ ନାରଦ ହେଲେ ଅନ୍ତର୍ଦ୍ଧାନ
ସେ କଥା ଶୁଣିଣ ମୁର ତରାଟେ ନୟନ।
ବେନିକରେ ଗଦା ଧରି ମାରେ ବାହାସ୍ଫୋଟ
କ୍ରୁଦ୍ଧ ହୋଇଣ ଫୁଲାଏ ବେନି ନାସାପୁଟ।
ଘନ ଘନ ନିଶ୍ୱାସ ଯେ ଛାଡ଼େ ଖରତରେ
ଦନ୍ତ ରଟ ମଟ କରି ଚାପେ ତମଭରେ।
ମହାକ୍ରୋଧେ ଦଶନରେ ବିଦାରଇ ବୁକୁ
ଛାଡ଼ିଲାକ ମହାରଡ଼ି ଚାହିଁ ଉପରକୁ।
ଶବଦ ଘାତରେ ତିନିପୁର ଗଲା କମ୍ପି
ନାରଦ ଋଷିକି ଚାହିଁ କହେ ପୁନରପି।
ବୋଇଲା ନାରଦ ଶୁଣ କହୁଛି ପ୍ରତ୍ୟକ୍ଷେ
ଫିଙ୍ଗିଲି ବିଷ୍ଣୁ ସହିତ ବନ ଅନ୍ତରୀକ୍ଷେ।
ସମୁଦ୍ରେ ପଡ଼ିଲେ ବୋଲି ଜାଣିଥିଲି ମୁହିଁ
ଜୀଇଛି ଯେବେ ମାରିବି ନିଶ୍ଚେଁ ତାକୁ ଯାଇ।
ବଦରିକା ନଗ୍ରେ ଆସିଲ କି କହ କହ
ଶୁଣିଣ ସୁବିଜ୍ଞ ମନ୍ତ୍ରୀ ହସି ଟହ ଟହ।
ବୋଲେ ରାଜା ଏଡ଼େ କିପାଁ ବିହ୍ୱଳ ତୁ ହେଉ
ଏଠାରେ ନାରଦ ମୁନି କାହିଁଛନ୍ତି ଆଉ।
ସେହିଲାଗେ କହିଣ ସେ ଗଲେ ତୋତେ ପଦେ
ତାହା ଶୁଣି ଚିତ୍ତ ତୋର ଭ୍ରମେ ଅପ୍ରମାଦେ।
ଧୈର୍ଯ୍ୟଧରି ନ ପାରିଣ ଉଠିଲୁ ଗରଜି
ନାରଦ ଋଷିଙ୍କ କଥା ନ ପାରିଲୁ ହେଜି।
ନ ଦେଖିଲା କଥା ସେହୁ ନ କହନ୍ତି କେବେ
ସତ୍ୟ କହିଣ ଲଗାନ୍ତି ତୁଚ୍ଛା କଳି ସର୍ବେ।
ବୁଝିଲେ ତ ଶ୍ରୀହରି ଯେ ଅଟେ ଅଜ୍ରାମର
ତୁ ମାଇଲୁ ବୋଇଲେ କେ ପ୍ରତେ ଯିବବୀର।
ମୁହିଁ ଆଜରାତ୍ରେ ଯାହା ଦେଖିଲି ସ୍ୱପନ
କହିବି ତାହା ରାଜା ହୋ ସାବଧାନେ ଶୁଣ।
ତୁମ୍ଭେ ପୁଣ ବଦରିକା ଗଲ ଯୁଦ୍ଧ କରି
ନୃସିଂହ ସ୍ୱାମୀର ତୁଳେ ହେଲ ମରାମରି।
ସେ ପ୍ରଭୁ ପୁଣ ତୁମ୍ଭଙ୍କୁ ଧଇଲେ ନିରାଟେ
ନେଇଣ କଚାଡ଼ି ଦେଲେ ସୁମେରୁର କ୍ରୋଟେ।
ତହିଁରେ ବାଜି ତୋର ନ ହେଲା ଲୋମବାଙ୍କ
ଲେଉଟି ଧରି ବୁଲାଇ ତୋତେ ପୃଥ୍ୱୀଯାକ।

ହିମ ପର୍ବତେ ପିଟିଲେ ନେଇ ପୁଣ ତୋଳି
ତହିଁ ବାଜି ତୋ ଦେହରୁ ଉଠେ ଅଗ୍ନି ଜଳି।
ତେବେହେଁ ରାଜା ତୁହି ହୋ ନୋହିଲୁ ବିନାଶ
ବିନ୍ଧ୍ୟଗିରିରେ ପିଟିଲେ ନେଇ ହୃଷୀକେଶ।
ତହିଁରେ ବାଜି ଜାଣ ନ ଗଲା ତୋର ପ୍ରାଣ
ସମୁଦ୍ର ଜଳେ ମାଡ଼ିଲେ ପୁଣି ନାରାୟଣ।
ତିନିଦିନ ଯାଏ ତୋତେ ଜଳେ ଦେଲେ ମାଡ଼ି
ତେବେ ତୋ ଅଙ୍ଗୁ ଜାଣ ନ ଗଲା ପ୍ରାଣଛାଡ଼ି।
ଅଗାଧ ଜଳରେ ତୁହି ଛାଡ଼ନ୍ତେ ନିଃଶ୍ୱାସ
ଲହରୀ ହୋଇ ଜଳରେ ବହେ ବାରମାସ।
ଆଦ୍ୟରୁ ସ୍ଥିର ମାର୍ଗରେ ପରକାଶୁ ଥିଲା
ତୋହର ନିଃଶ୍ୱାସ ଘାତୁ ପ୍ରଗଳ୍‌ଭେ ବହିଲା।
ଦିନକରେ ଏକୋଇଶ ସହସ୍ର ଛଅଶ
ଏରୂପେଣ ଦେଖିବ ହେ ରଜନୀ ଦିବସ।
ଆବର ଏହି ରୂପରେ ସବୁ ଜୀବଯାକେ
ଅହୋରାତ୍ରରେ ନିଃଶ୍ୱାସ ବହୁଛି ତ୍ରିଲୋକେ।
ସେ ଜଳେ ପଡ଼ି ନୁହନ୍ତେ ତୋର ପ୍ରାଣକିଛି
ଷଡ଼ଦିନ ଅନ୍ତେ ଯାଇ କାଢ଼ିଲେ ଶ୍ରୀବସି।
ପଦାରେ ଆଣିଣ ତୋତେ ଧଇଲେକ ଯାକି
ଫିଙ୍ଗିଦେଲେ ଅନ୍ତରୀକ୍ଷେ ଶୂନ୍ୟେମାର୍ଗେ ଟେକି।
ଆକାଶରୁ ଆସିଲୁ ତୁ ବିଶ୍ୱରୂପେ ଘୋଟି
ପୃଥ୍ୱୀରେ ପଡ଼ନ୍ତେ ଏକ ରନ୍ଧ୍ର ଗଲା ଫୁଟି।
ସେ ରନ୍ଧ୍ରର କରାମତି ସକଳ କାଳକୁ
ବୈକୁଣ୍ଠକୁ ବାଟ ଫିଟିଅଛି ପାତାଳକୁ।
ତ୍ରେତାଯୁଗେ ସେହିବାଟେ ବୀର ହନୁମାନ
ଲଙ୍କାକୁ ଗଲା ବେଳରେ ପଶିବ ସେ ସ୍ଥାନ।
ପାତାଳ ବୈକୁଣ୍ଠେ ପଶି ଖୋଜିଣ ଆସିବ
ସୀତାଙ୍କୁ ନ ପାଇ ଅଷ୍ଟସେନାଙ୍କୁ କହିବ।
ସେ ରନ୍ଧ୍ରେ ଯାଇ ଜାମ୍ବବ ତୁଲେ ନରହରି
ଜମ୍ବୁବତୀ ବିଭା ହେବେ ମହାଯୁଦ୍ଧ କରି।
ଦ୍ୱାପର ଯୁଗେ ଏ କଥାମାନ ଜାଣ ହେବ
ସକଳ କାଳକୁ ସେହି ରନ୍ଧ୍ର ରହିଥିବ।
ରହିଲା ଏ କରଣୀ ତୋ ସକଳ କାଳକୁ
ସ୍ୱପ୍ନକଥା ଶୁଣି କହୁଅଛି ଆପଣଙ୍କୁ।
ପଡ଼ିବା ମାତ୍ରକେ ଗଲୁ ପାତାଳକୁ ଗଳି
ବୈକୁଣ୍ଠେ ଦେଖିଲୁ ଯାଇ ପୁଣି ବନମାଳି।
ଦେଖିଲା ମାତ୍ରକେ ତୋର ହେତୁ ହଜିଗଲା
ଦୁଷ୍ଟ ବୁଦ୍ଧି ଯାଇଣ ତୋ ଜ୍ଞାନ ପ୍ରକାଶିଲା।
ନିତ୍ୟ ସ୍ଥଳରେ ବିଷ୍ଣୁଙ୍କୁ ଦେଖି ନେତ୍ର ଯୁଗେ
ନିର୍ମୋହ ହୋଇଣ ବସି ଜଣାଇଲୁ ଆଗେ।
ବୋଇଲୁ ହେ ପ୍ରଭୁ ମୋତେ ଅନ୍ତର କରିଲ
ଜୟ ବିଜୟ ପଦକୁ କାହାକୁ ଯେ ଦେଲ।
ଏହା ଶୁଣି ନାରାୟଣ ହସି ତୋତେ ଚାହିଁ
ବୋଇଲେ ତୁ ଗଲାଦିନୁ ନାହିଁ ଏଥେ କେହି।
କର୍ମ ଅବଳରୁ ସିନା ଗଲୁ ଦେହ ଛାଡ଼ି
ସେ ଦେହ ଏବେତୋର ମୋ ପୁରେ ଅଛି ପଡ଼ି।
ମୃତ୍ୟୁ ଲଭିଲେ ଆସିଣ ପଶିବୁ ତହିଁରେ
ଲେଉଟି ତୃତୀୟ ଥର ଜନ୍ମିବୁ ମଞ୍ଚରେ।
ତାହା ଶୁଣି ତୁହି ପୁଣ ପୁଚ୍ଛିଲୁ ପ୍ରଭୁଙ୍କୁ
ବୋଇଲୁ କି ରୂପେ ମୋର ରଖ ଏ ଶବକୁ।
ଶ୍ରୀହରି ବୋଇଲେ ତେବେ ଶୁଣ ମୁରାସୁର
ଯେ ରୂପରେ ରଖୁ ଆମ୍ଭେ ଶବଗୋଟି ତୋର।
କରୁଣା ନାମେ ଅଛି ମୋ ଏକଇ ଖପରା
ତହିଁ ତୋର ଶବ ରଖି ଜଗାଉଁ ପହରା।
ସେ ପ୍ରହରୀ ଦୁହେଁ ଆମ୍ଭ ବୋଲ କରି ଘେନି
ସୋଽହଂସ ବିଞ୍ଚଣା ବିଞ୍ଚେ ଅହନି ଅହନି।
ସେ ପବନ ବାଜି ତୋର ଶବ ହୋଏ କଞ୍ଚା
ନ ଶୁଖଇ ନ ଗନ୍ଧାଇ ନୁହେଁ ଜାଣ ଲୋଚା।
ସେ ଶବ ମଧ୍ୟରେ ଆମ୍ଭ ମନ ଅଛୁ ଥୋଇ
ତେଣୁ ତୋର ଶବ ଅଛି ସେହି ରୂପେ ରହି।
ଏହି ଜନ୍ମ ଏବେ ତୋର ଆସି ହେଲା ଶେଷ
ନୃସିଂହ ହାତରେ ମରି ବଇକୁଣ୍ଠେ ଆସ।
ଏ ମୋହର ଭାବନା ତୁ ନ ଜାଣିଲୁ କିଛି
ମଞ୍ଚରେ ଦେହ ଧରି କି ଫଳ କହ ଅଛି।
ସମତା ଦୃଷ୍ଟିରେ ଏକଗୋଟି ଲୋକ ନାହିଁ
ଦେହ ଧଇଲେ ମରନ୍ତି ସର୍ବେ ହିଂସା ବହି।
ମୋତେ ନ ଚିହ୍ନିଣ ଲୋକେ ମରନ୍ତି ଯେ ଭୁଲି
ଲୋଭରେ ମରନ୍ତି ଧନଜନ ମୋର ବୋଲି।
ବିଷୟାବନ୍ଧେ ପଡ଼ିଣ ନ ଭଜନ୍ତି ହରି
କାମରେ ଭୁଲିଣ ଥାନ୍ତି ପତ୍ନୀ ସ୍ନେହ କରି।
ପ୍ରିୟା ବଚନ ଗୋଟିକ ସୁଧାପ୍ରାୟ ମଣେ
ଯାହା ସେ ବୋଲିବ ତାହା କରେ ଅନୁକ୍ଷଣେ।
କାୟାର ନୀବିବନ୍ଧକୁ ମଣେ ସ୍ୱର୍ଗ ତୁଲ୍ୟ
ବିଷ୍ଣୁର ଭଜନ ପ୍ରାୟ ମଣଇ ଅମୂଲ୍ୟ।
ଗୋବିନ୍ଦ ଲୟ ପରାୟେ ପ୍ରିୟା ପାଦତଳେ
ଆଲିଙ୍ଗନ କରେ ଆଣି ଆଶ୍ୱାସିଣ କୋଳେ।
ସୁରତି ରସରେ ପଡ଼ି ଚାଟୁ ଯେତେ କରେ
ଏହି ହେତୁ ଯେବେ ପ୍ରାଣ ରଖନ୍ତା ମୋଠାରେ।
ସେ କାହିଁପାଇଁ ସଂସାର ଯାତନାରେ ପଡ଼ି
ଜନ୍ମୁଥାନ୍ତା ମରୁଥାନ୍ତା ବାହୁଡ଼ି ବାହୁଡ଼ି।

ଏହି କଥା ମୃତ୍ୟୁଲୋକ ସୁଧାପ୍ରାୟ ମଣେ
ମାୟାମୋହବନ୍ଧେ ପଡ଼ି ମୋ ନାମ ନ ଜାଣେ।
ସୂକ୍ଷ୍ମରେଣୁ ପ୍ରମାଣରେ ପ୍ରାଣୀ ହୃଦଗତେ
ଜୀବନ ହୋଇ ଦେହେ ମୁଁ ବସିଛି ସାକ୍ଷାତେ।
ଏହା ହୃଦୟେ ନ ଚିହ୍ନି ମୂଢ଼ ନରାଧମ
ଭୁଲି ମରୁଥାଇ କରି ବେଦୁ ନାନା କର୍ମ।
ମୂର୍ଖ ଲୋକଙ୍କୁ ବେଦ ତ ଭଣ୍ଡାଇ ଜଗତେ
ନାନାରୂପେ ଦେଖାଇଣ କହେ ଶାସ୍ତ୍ରମତେ।
ବେଦର ତତ୍ତ୍ୱ ଗୋଟି ଯେ ନ ଜାଣନ୍ତି ମୂର୍ଖେ
ଫଳ ଆଦରି କରନ୍ତି କର୍ମ ନାନା ସୁଖେ।
ରୋଗ ବିନାଶନ ପାଇଁ ପୁତ୍ରେ ମାତା ଯେହ୍ନେ
ଔଷଧ ଦେଇ ବସଇ ବୈଦ୍ୟର ବଚନେ।
ଖଣ୍ଡ ଆଗରେ ଦେଖାଇ ପୁତ୍ରେ ତୋଳି ପୁଚ୍ଛେ
ଔଷଧ ଖାଇଲେ ଏହା ଦେବି ତୋତେନିଶ୍ଚେ।
ନୋହିଲେ ଖଣ୍ଡଶାକର ତୋତେ ଦେବିନାହିଁ
ଏରୂପେ ମାତା ପୁତ୍ରକୁ ଅଉଷଧ ଦେଇ।
ସଂସାରକୁ ସେହିରୂପେ ବେଦ ଭଣ୍ଡୁଅଛି
ଏଣୁ ମୋ ନାମ ତତ୍ତ୍ୱ ନ ଜାଣେ ପ୍ରାଣୀ କିଛି।
ପଦାର୍ଥ ଦାରା ତନୟ ଘେନି ଭ୍ରମିଗଲା
ଆତ୍ମାର ଗତି ମୋହର କିଛି ନ ଜାଣିଲା।
ବେଦର ତତ୍ତ୍ୱ ଗୋଟିକୁ ଜାଣନ୍ତି ଯେ ପ୍ରାଣୀ
ସଭା ମଧ୍ୟେ ତାଙ୍କୁ ମହାପଣ୍ଡିତ ବଖାଣି।
ସେ ମୋହର ଭାବ ଘେନି ଭଜନ୍ତିଟି ମୋତେ
ସର୍ବଘଟେ ହରି ବୋଲି ପାଅନ୍ତି ହୃଦ୍‌ଗତେ।
ଏକ ଦୃଷ୍ଟି ରଖିକରି ସର୍ବ ଲୋକଯାକେ
ଜୀବ ପରମ ଚିହ୍ନିଣ ଭଜନ୍ତି ଯେ ଏକେ।
ଏମନ୍ତ ବୋଲିଣ ହରି କହିଲେଟି ତୋତେ
ଶରୀରର କଥାଯାକ ବୁଝି ନାନା ମତେ।
ସୁଜ୍ଞାନ ଉଦୟ ହେଲେ ଭ୍ରାନ୍ତି ଦେହୁଁ ଦହେ
ତେବେ ପବନ ପଶ୍ଚିମ ମାର୍ଗେ ଯାଇ ବହେ।
ଶଙ୍ଖିନୀ ନାମରେ ଟେକି ଭେଦିବ ଷଟ୍ ଚକ୍ରେ
ତିନି ଡିହୁଡ଼ି ରନ୍ଧ୍ରେ ଓଁ କାର ନାଳ ବକ୍ରେ।
କାଉଁରୀ ମଣ୍ଡଳପରେ ଗୋଲାହାଟ ବାସ
ଅମର ସରୋବରେ ସେ ହଂସ ପରକାଶ।
ତ୍ରିବେଣୀ ସଙ୍ଗମ ଗଙ୍ଗା ହୋଇଅଛି ଯହିଁ
ସେଠାରୁ ମହାରସ ଯେ ଝରୁଥାଇ ବହି।
ଝରିଗଲେ ଲେଉଟିଣ ପୂରେ ସେହିଠାରେ
ତେଣୁଟି ଅଚିନ୍ତେ ମନ ଖେଳଇ ଶରୀରେ।
ସେ ଝର ଯେବେ ସାଇତି ରଖିପାରେ ପ୍ରାଣୀ
ପୂର୍ବରୁ ଟେକି ପଶ୍ଚିମେ ବୁହାଇବ ଆଣି।
ତ୍ରିବେଣୀ ହ୍ରଦରେ ନେଇ ରଖିବ ପୁରାଇ
ହ୍ରଦ ପୁରିଗଲେ ହଂସ ସରୋବରେ ଥାଇ।
ଏ ଠୁଠରୁ ଗମେ ହଂସ ସେ ଠୁଠକୁ ବୋଲି
ହ୍ରଦ ଶୁଖିଲେ ଏକା ନ ପାରେ ଜାଣ ଚାଲି।
ହଂସ ନ ଚାଲିଲେ ପୁଣି ପିଣ୍ଡୁ ଆତ୍ମା ଖସେ
ଜୀବକୁ ଛାଡ଼ି ପରମ ଘରେ ଯାଇଁ ମିଶେ।
ସେହିଠାବରୁ ପିଣ୍ଡକୁ ଶୁଭେ ମଲା ଧ୍ୱନି
ମଲା ମଲା ଶବ୍ଦ ଏକା ନ ବୋଲଇ ଜ୍ଞାନୀ।
ଜୀବରୁ ଗଲେ ସେ ଯେବେ ପରମେ ରହିଲା
ସେ କାହିଁକି ଏ ସଂସାରେ ହୋଇବଟି ମଲା।
ଜନ୍ମ ହୋଇଲେ ଅବଶ୍ୟ ମୃତ୍ୟୁ ଲଭେ ପ୍ରାଣୀ
ମୃତ୍ୟୁ ହେଲାପରେ ଜୀବ ଜନ୍ମଇ ସେକ୍ଷଣି।
ପିଣ୍ଡୁ ଛାଡ଼ିଲେ ପରମେ ଆତ୍ମା ଅବତରି
ସେ କଥା ଗୋଚର କେହି ନ ପାରନ୍ତି କରି।
ଜ୍ଞାନୀ ଏକା ପରମକୁ ଚିହ୍ନି କରି ଖେଳେ
ଆବର ଜନେ ହେତୁ ନ ପଶେ କେତେବେଳେ।
ଦେଖ ଆହେ ମୁରାସୁର ତୋର ମୋର ମଧ୍ୟେ
ବିଜେ କରିଛନ୍ତି ପ୍ରଭୁ ଶୁକ୍ଳାମ୍ବର ହୃଦେ।
ବୁଝିଲେ ତ ଘରେ ସେହି ବାହ୍ୟେବିଜେସେହି
ତିଳାର୍ଦ୍ଧେ ସ୍ଥାନ ଛାଡ଼ି ନ ଥାନ୍ତି ଭାବଗ୍ରାହୀ।
ସୂକ୍ଷ୍ମ ରେଣୁ ପ୍ରମାଣରେ ଛନ୍ତି ହୃଦେ ବସି
ସୂର୍ଯ୍ୟରୁ ଶତ ଗୁଣରେ ତେଜ ପରକାଶି।
ଦିଶଇ ଯେବଣ ଜ୍ୟୋତି ଅନ୍ତରୀକ୍ଷ ମଧ୍ୟେ
ଦେହ ମଧ୍ୟେ ଥାଇ ପଞ୍ଚଇନ୍ଦ୍ରି ଭୋଗପାଏ।
ଏହି ପଞ୍ଚ ଇନ୍ଦ୍ରିୟ ଯେ ଗୋଟି ଗୋଟି ଶୁଣ
ସବୁରି ଆତ୍ମା ଅଟନ୍ତି ଏକା ନାରାୟଣ।
ନୟନେ ଶ୍ରବଣ ନାସା ଜିହ୍ୱା କାମ ଇନ୍ଦ୍ରି
ଏକର ଭାବ ଆନ ନ ଜାଣେ ହୃଦେ ଭେଦି।
ମୁଖରେ ପିଇଲେ ସିନା ତୃଷା ହୁଏ ନାଶ
ନାସିକାରେ ପିଇଲେ କି ହେବ ମନ ତୋଷ।
ବୁଝିଲେ ତ ପବନ ନ ବହେ ମୁଖ ବାଟେ
ପୁଷ୍ପକୁ ଆଘ୍ରାଣ କଲେ ବାସଟି ପ୍ରକଟେ।
ଦେହଯାକ ଇକ୍ଷୁରସ ଯେବେ ବୋଲି ହେବ
ମୁଖରେ ନ ଖାଇଲେ କି ସୁଆଦ ଜାଣିବ।
କର୍ଣ୍ଣ ବାଟରେ ଚାହିଁବ ନେତ୍ରେ ଯେବେ ଶୁଣି
ଏ ଦୁଇ କଥାରେ ଭାବ ପାରିବ କି ଜାଣି।
ବିଚାରିଲେ ଏ ଦେହରେ ସବୁ ହୋଇଅଛି
ବିଷୟା ଗୁଣ ସକାଶୁଁ ନ ଜାଣଇ କିଛି।
ଆବରହିଁ ଶୟନ ଯେ ଭୋଜନ ମୈଥୁନ
ଜ୍ଞାନକୁ ଖଡ଼୍ଗ ରୂପୀ ଅଟନ୍ତି ଏମାନ।

ବୁଝିଲେ ଏ ଦେହ ହେଲା ମୈଥୁନରୁ ଜାତ
ପୁଣିହିଁ ମୈଥୁନେ ପଡ଼ି ହୋଇଲା ମୋହିତ।
ଭୋଜନ ରତି ଶୟନ ପାରେ ଯେହୁ ଜଗି
ବ୍ରହ୍ମାଣ୍ଡ ମଧ୍ୟରେ ତାକୁ ବୋଲି ମହାଯୋଗୀ।
ବେଳ ଜାଣିଣ ଆହାର ଯେବେ କରୁଥିବ
କାଳକୁ ଜଗିଣ ବସି ନିଦ୍ରା କରାଇବ।
ଯୁଗଳ ମୈଥୁନ ବେଳା ଯେବେ ଥିବ ଜଗି
ତାହା ଦେହକୁ ଏକା ନ ପାରେ ମୃତ୍ୟୁଲଙ୍ଘି।
ନାନା ଅରିଷ୍ଟଯାକ ଏ ଶରୀରକୁ ଲାଗେ
ଦେହ ମାଡ଼ଖାଏ ଆତ୍ମା ରହଇ ଅଲଗେ।
ତପନ ଲୋହ ପିଟିଲେ ଯେବେ ଲାଗୁଥାଇ
ଅଗ୍ନିଦେବ ରୋମ ଗୋଟିଏକ ନାଶ ନୋହି।
ସେହିରୂପେ ଆତ୍ମାଟି ସବୁରି ଅଙ୍ଗେ ରହେ
ନାନାଦି ମାଡ଼ଗାଳି ଏ ଦେହଗୋଟି ସହେ।
ଏ ଦେହ ଯହିଁରୁ ପୁଣ ହୋଇଲା ନିର୍ମାଣ
ସେ କଥା କହିବା ରାଜା ସାବଧାନେ ଶୁଣ।
ଲିଙ୍ଗଚକ୍ରେ ବସେ ଯେଉଁ ଷଡ଼ଦଳ ଜ୍ୟୋତି
ତହିଁର ଉପର ଯାକ ଦିଶେ ରକ୍ତ କାନ୍ତି।
ସେହି କାନ୍ତି ଶକ୍ତି ଯେବେ ହୁଅନ୍ତି ଏକଠାରେ
ତେବେ ରଜ ବୀର୍ଯ୍ୟ ଜାଣ ଫେନରୂପ ଧରେ
ସେ ଫେନ ମଧ୍ୟରୁ ପ୍ରାଣ ବାୟୁ ବାହାରଇ
ଶରୀର ସଞ୍ଜ୍ଞା ଧରିଣ ତହୁଁ ପ୍ରକାଶଇ।
ଶିବଶକ୍ତି ଏକଯୋଗୁଁ ସମବୃଦ୍ଧି ଘେନି
ମିଶ୍ରିତ ହୁଅନ୍ତି ତହୁଁ ରଜ ବୀର୍ଯ୍ୟ ବେନି।
ଜଠରରେ ଜୀବ ହୋଇ ବୁଦ୍ଧି ଆଚ୍ଛାଦଇ
ନୟନ ନାସାକର୍ଣ୍ଣ ଯେ ଜିହ୍ୱା ପଲ୍ଲବଇ।
ଧାତୁ ଚର୍ମ ରକ୍ତ ଆଦି ମାଂସ ନୀର ସ୍ୱେଦ
ପାୟୁପସ୍ଥ ପାଦ ପାଣି ଅସ୍ଥି ମଜ୍ଜା ମେଦ।
ଲୋଭ ମୋହ କାମ କ୍ରୋଧ ମଦ ମାତ୍ସର୍ଯ୍ୟଟି
ବାସ୍ତରି ସମ ନାଡ଼ୀ ତେସ୍ତରିପଦ କୋଠି।
ପଚିଶ ପ୍ରକୃତି ମିଶି ପଞ୍ଚଭୂତ ଆତ୍ମା
ପଞ୍ଚାଶ ପାଖୁଡା ଷଡ଼ଚକ୍ର ଜ୍ୟୋତି ସୀମା।
ଚାହାଁନ୍ତା କହନ୍ତା ଆଉ ଶୁଣନ୍ତା ବହନ୍ତା
ଦେହକୁ ଅଟନ୍ତି ଏହି ଚାରି ଜ୍ଞାନ କଥା।
ଇଅଁଳା ପିଅଳା ପୁଣି ଆଉ ବୁଦ୍ଧିମାନ
ସୋଽହଂସ ପୁରୁଷ ନାଦ ବିନ୍ଦୁ ନିରଞ୍ଜନ।
କାଳ କମଳ ଯେ ଉର୍ମ ଧୂର୍ମ ଜ୍ୟୋତି ଜ୍ୱାଳା
ଷୋଳ ଡମ୍ବରୁ ସହିତେ ଚଉଦ ମଣ୍ଡଳା।
ମନ ଚଇତନ ମିଶି ସ୍ୱରୂପ ପ୍ରକାଶ
ଗଳା ଲୋହା ଚୋବା ପିଆ ଏ ଚାରି ବିଶେଷ।

ଏ ଦେହରୁ ଦଶଦ୍ୱାର ଫିଟିଅଛି ଆଉ
ଏରୂପେ ଶରୀରାର୍ଥ ନ ସରେ ଜାଣ କହୁ।
ଦେହ ସାରସ୍ୱତ ଜୀବ ପରମ ଏ ଦୁଇ
ଆସନ୍ତି ଜଠରୁ ଜନ୍ମି ଦଶମାସ ରହି।
ହସ୍ତ ଶିର ମୁଖ ଚକ୍ଷୁ ନାସିକା ଶ୍ରବଣ
କେହି କାହାର ବୋଲେ ଏ ନ ଚିହ୍ନନ୍ତି ଜାଣ।
ଯେଝାସ୍ଥାନେ ବସି ଯେଝା କରଣୀ ଦେଖାନ୍ତି
ଏକାଦେହରେ କରନ୍ତି ଏତେ ଗୁଣ ପ୍ରୀତି।
କୁସୁମ ଭିତରେ ବାସ ଯେହ୍ନେ ଅଛି ଗୋପ୍ୟେ
ଶରୀର ଭିତରେ ଆତ୍ମା ପ୍ରକାଶ ସେ ରୂପେ।
ଇକ୍ଷୁ ଭିତରେ ଯେସନ ଗୁଡ଼ ଥାଇ ଲୁଚି
ଉପାୟମାନ କରିଲେ ପ୍ରକାଶଇ ଶାଚି।
କ୍ଷୀର ଭିତରେ ଯେ ରୂପେ ଘୃତ ରହିଥାଇ
ଜଳ ଭିତରେ ଲବଣ ଯେହ୍ନେ ଅଛି ରହି।
ଏ ଦେହ ଭିତରେ ଆତ୍ମା ସେହିରୂପେ ଜାଣ
ଶିବଶକ୍ତି ସଂଯୋଗରୁ ଦେହ ଧରେ ପୁଣ।
ଗର୍ଭରୁ ଜନ୍ମିଲେ ସେହୁ ପଡ଼େ ମାୟା ବନ୍ଧେ
ବାଳୁତ ହୋଇଣ ଦେଖେ ବାରବର୍ଷ ଆଦ୍ୟେ।
ପନ୍ଦର ବରଷ ହେଲେ ଇଚ୍ଛଇ ରମଣୀ
ବିଂଶ ବରଷ ହୋଇଲେ ରଞ୍ଜେ ନିଶ ପୁଣି।
ପଚିଶବରଷ ହେଲେ ଦିବ୍ୟରୂପ ଧରେ
ତିରିଶବରଷ ଯୁବା ସ୍ତିରୀ ମନ କରେ।
ପଞ୍ଚତିରିଶ ହୋଇଲେ ନ ମାନଇ କାହିଁ
ମାନ୍ୟସ୍ତିରୀ ହେଲେ ମନ ବଳାଉ ଯେ ଥାଇ।
ଚାଳିଶ ହେଲେ ତନୟ ଲୋଡେ ଅନୁବ୍ରତେ
ପଞ୍ଚଚାଳିଶ ହୋଇଲେ ପାଞ୍ଚେ ବୁଦ୍ଧି କେତେ।
ଶଏ ବରଷ ହୋଇଲେ ପୂରେ କାଳ ଆସି
ଆହୁରି ଶୁଣ ହୋ ରାଜ ବ୍ରହ୍ମଜ୍ଞାନେ ରସି।
କାଳ ଗ୍ରାସୁ ଗ୍ରାସୁ ଜାଣ ପ୍ରାଣ ପବନକୁ
ବ୍ରହ୍ମେ ହେତୁ ରଖିଣ ଯେ ଛାଡ଼ିବ ଜୀବକୁ।
ଆଧାରଚକ୍ରେ ଟେକିଣ ଲିଙ୍ଗଚକ୍ରେ ଧରି
ଲିଙ୍ଗଚକ୍ରୁ ନେଇ ପୁଣି ନାଭିଚକ୍ର ଭରି।
ନାଭିରୁ ହୃଦୟେ ଭରି ହୃଦୁ କଣ୍ଠେ ନେବ
କଣ୍ଠୁ ନେଇଣ ଲଲାଟଚକ୍ରେ ପୂରାଇବ।
ଆଣିବ ମୂଳକମଳୁ ହୃଦଚକ୍ରେ ଚାପି
ମନ ମରୁତକୁ ଦେବ ଅନ୍ତର୍ଗତେ କ୍ଷେପି।
ରସନାକୁ ରୁନ୍ଧିବ ଯେ କଣ୍ଠଚକ୍ରେ ଭରି
ଅଷ୍ଟଦଳ କମଳରେ ଟେକିବ ଲହରୀ।
ଷୋଳ ଡମ୍ବରୁ ଲମ୍ବିକା ତଳେ ଟେକିନେବ
ପଞ୍ଚାଶ ପାଖୁଡ଼ା ଷଡ଼ପଦ୍ମେ ପୂରାଇବ।
ବଙ୍କୁନାଳ ଜିଣି ତିନି ତିହୁଡ଼ିକୁ ବଳି
ପରମକୁ ଟେକିବ ଯେ ଊର୍ଦ୍ଧ୍ୱଗତି ଟୋଳି।

ଭୁଲତା ମଧରେ ନେଇ ପ୍ରାଣ ପୂରାଇବ
ପରମ ସୂତ୍ରରେ ମଜ୍ଜି ଜୀବନ ଛାଡ଼ିବ।
ତେବେ ସେହିପ୍ରାଣୀ ନିଶ୍ଚେ ପଶେବିଷ୍ଣୁ ଦେହେ
ଅଣହେତୁରୁ ମରଣ ଅଗାଡ଼ିର ପ୍ରାୟେ।
ଏହ୍ନେ ଛାଡ଼ିଲେ ପ୍ରାଣ ଯେ ଅଗ୍ନି ବୋଲି ତାଙ୍କୁ
ପ୍ରତ୍ୟକ୍ଷରେ ବ୍ରହ୍ମଣ୍ୟ ଯେ ବୋଲି ସେ ଲୋକଙ୍କୁ।
ଏତେକ କହି ସୁବିଜ୍ଞ ମୁରାସୁର ଆଗେ
ହା ହା କୃଷ୍ଣ ବୋଲି ପ୍ରାଣଛାଡ଼େ ସେହୁଲାଗେ।
କହୁଁ କହୁଁ ସଭା ମଧ୍ୟେ ପଡ଼େ ମନ୍ତ୍ରୀ ଢଳି
ପୁଷ୍ପକଯାନେ ବସାଇ ନେଲେ ଦେବେ ମିଳି।
ଖୋଳ କୀର୍ତ୍ତନ କରିଣ ବୈକୁଣ୍ଠକୁ ନେଲେ
ଶ୍ରୀ ନାରାୟଣ ଛାମୁରେ ଉଭା କରାଇଲେ।
ଗୋବିନ୍ଦ ଆଜ୍ଞା କହିଲେ ଆସିଲୁ କି ବାବୁ
ଅଚିନ୍ତାରେ ଏବେ ମୋର ହୃଦେ ସମ୍ଭାଇବୁ।
ଦିନାକେତେ ଗଲେ ପୁଣି ହୋଇବୁ ଜନମ
ପ୍ରସନ୍ନ ହୋଇ ବହିବୁ ପ୍ରହଲାଦ ନାମ।
ଏହି ମୁରାସୁର ମଲେ ହିରଣ୍ୟ ହୋଇବ
ତାହାର ବୀର୍ଯ୍ୟରେ ଜନ୍ମି ପ୍ରହଲାଦ୍ ହେବ।
ସ୍ମରଣ ଶକ୍ତିରେ ମହା ବୈଷ୍ଣବ ହୋଇବୁ
ଅନୁକ୍ଷଣେ ହରି ଭଜି ବୈକୁଣ୍ଠରେ ଥିବୁ।
ଏବେ ଆସି ସୁବିଜ୍ଞ ମୋ ଅଙ୍ଗେ ହୁଅ ଲୀନ
ଏତେ କହି ହୃଦପଦ୍ମେ ରଖି ଭଗବାନ।
ଆଜ୍ଞାପାଇ ସୁବିଜ୍ଞ ଶ୍ରୀଅଙ୍ଗେ ଲୀନ ହେଲା
ତାହା ଦେଖିଣ ମୁରର ସାହସ ଉଡ଼ିଲା।
ସଭାରେ ଜ୍ଞାନ କହିଣ ପଡେ ମନ୍ତ୍ରୀ ଢଳି
ତତ୍କାଳେ ଉଠିଣ ରାଜା ଧରି କର ତୋଳି।
ଆଶ୍ୱାସିଣ ବସାଇଲେ ହୃଦେ ଆଉଜାଇ
ଲୋକଙ୍କୁ ବୋଇଲା ଆରେ ଆସ ବେଗେ ଧାଇଁ।
ନାସିକାଦ୍ୱାର ରୁନ୍ଧିଣ କର୍ଣ୍ଣଦ୍ୱାର ଫୁଙ୍କ
ଚୈତନ୍ୟ ପଶିଲେ ଉଠି କହିବ ସେ ବାକ୍ୟ।
ଜ୍ଞାନବଳରେ ମନ୍ତ୍ରୀର ଫୁଲିଅଛି ପେଟ
ଫୁଙ୍କିଲେ ଏହିକ୍ଷଣି ସେ ହେବ ଛଟପଟ।
ଏହା ଶୁଣି ଲୋକବର୍ଗ ଉଠି ଧାଡିକାରେ
ନାସିକା ଚିପିଣ ତାର ଫୁଙ୍କିଲେ କର୍ଣ୍ଣରେ।
ଫୁଙ୍କିବା ଲୋକର ଝାଳ ପଡ଼େ ହୁହୁଁ ବହି
ମନ୍ତ୍ରୀ ତ ଜାଣିଣ ପ୍ରାଣ ଛାଡ଼େ ଜ୍ଞାନ କହି।
ଫୁଙ୍କି ଫୁଙ୍କି ଲୋକ ଛାଡ଼ି ଉଠିଲେ ଆଶଙ୍କେ
ରାଜାଙ୍କୁ ବୋଇଲେ ଏ ନ ଜୀଏଁ କଦାଚିତେ।
ହରଷରେ ଯାଉ ଅବା ବିରସରେ ଯାଉ
ସ୍ଥାନ ଛାଡ଼ିଗଲେ କେହୁ ଆସିଛି କି ଆଉ।

ଏରୂପେ କହନ୍ତେ ଲୋକମାନେ ସଭା ମଧ୍ୟେ
ଶୁଣି ମୁରାସୁର ବସି ଉଚ୍ଚନାଦେ କାନ୍ଦେ।
ଶବ ଛାଡ଼ି ଖଣ୍ଡଦୂରେ ବସି ନୃପବର
ଆହା ମନ୍ତ୍ରୀ ବୋଲିକରି କାନ୍ଦେ ମୁରାସୁର।
ମନ୍ତ୍ରୀ ଗୁଣ ବାହୁନିଣ କାନ୍ଦେ ଭୂମିଲୋଟି
ବୋଲଇ କିଅର୍ଥେ ଗଲୁ ତେଜି ଏଡ଼େସୃଷ୍ଟି।
କାହାକୁ ସର୍ବାଧିକାର ପଣ ଗଲୁ ଦେଇ
ପୁତ୍ରଙ୍କୁ ମୂର୍ଛିଣଥିଲି ତୋର ମୁଖ ଚାହିଁ।
କେଡ଼େ ଜ୍ଞାନ ସାଧି ମନ୍ତ୍ରୀ ଅଜ୍ଞାନ ହୋଇଲୁ
ପବନ ରୁନ୍ଧି ମଲାରୁ କେଉଁ ସ୍ୱର୍ଗେ ଗଲୁ।
କେଉଁ ନର ତୋତେ ରେ ଏ ବୁଦ୍ଧି ଶିଖାଇଲା
ଷଡ଼ଚକ୍ର ରୁନ୍ଧି ବସ ବୋଲି ଆଜ୍ଞା ଦେଲା।
ବାପ ଅଜା କାଳେ ତାର ନାହିଁ ଜ୍ଞାନ ସାଧି
ତୋତେ ମାରିବାକୁ ମାତ୍ର କହିଲା ଏ ବୁଦ୍ଧି।
ଜ୍ଞାନ କହିବା ଲୋକ କି ମଲା ତୋର ସଙ୍ଗେ
ଏତିକି କଥା ତ ବୁଝି ନ ପାରିଲୁ ଅଙ୍ଗେ।
ପାପିଷ୍ଠ ଲୋକ ବସନ୍ତି ଜ୍ଞାନ ସିନା ସାଧି
ପଞ୍ଚେନ୍ଦ୍ରି ନିବାରି ବସିଥାନ୍ତି ନାକ ରୁନ୍ଧି।
ପୂର୍ବରୁ କେତେ ପାପ ସେ ଅର୍ଜିଥାନ୍ତି ଅଙ୍ଗେ
ତେଣୁ ସେ ବସନ୍ତି ମରି ଅପ୍ରଚ୍ଛନ୍ନ ଯୋଗେ।
ସେ ପାପିଷ୍ଠ ପ୍ରାୟ ମନ୍ତ୍ରୀ କାହିଁକି ତୁ ହେଲୁ
ଏତେ ଶିରୀ କାହାକୁ ଯେ ପୁଣି ଦେଇଗଲୁ।
ନାସା ରୁନ୍ଧି ମଲେ ପ୍ରାଣୀ ସ୍ୱର୍ଗେ ଯେବେଯାନ୍ତା
କାହିଁକି ଲୋକଙ୍କୁ ଆଉ ରୋଗ ଘୋଟୁଥାନ୍ତା।
ପବନ ହୃଦେ ରୁନ୍ଧି କେ ଅର୍ଜିଲାଣି ଯଶ
ସାହସ୍ ଉଡ଼ଇ ମାତ୍ର ଜ୍ଞାନ ହେଲେ ଶେଷ।
ତୋ ପରା ମନ୍ତ୍ରୀ ହୋଇ ତୁ ନ ଜାଣିଲୁ ଏହା
ଆୟୁଷ ଥାଉଁ ବାପରେ ହରାଇଲୁ କାୟା।
ଯୁବାକାଳେ କାହିଁକି ଏ କଥା ବିଚାରିଲୁ
ସ୍ୱର୍ଗଠାରୁ ବଳି ଭୋଗ କାହାକୁ ତୁ ଦେଲୁ।
ଅଥବା ଯୁଦ୍ଧକୁ ଯାଇ ମରିଥାନ୍ତୁ ଯେବେ
ତେବେ ଅବା ମୂର୍ଚ୍ଛି ମୁହିଁ ଦ୍ୟନ୍ତି ତୋତେ ଏବେ।
ନୋହିଲେ ଯଦ୍ୟପି ତହିଁ ରୋଗେ ମରିଥାନ୍ତୁ
ତେବେ ଅବା ବାପ ଆରେ ମୂର୍ଚ୍ଛି ତୋତେଦ୍ୟନ୍ତୁ।
ଏବେ ଆସି ବୁଦ୍ଧି ବାଟ ହେଲା ମୋତେ ବଣା
ରାଜ୍ୟ ହାନି ଲାଭ ଏବେ କରିବ କେ ଜଣା।
କାହାକୁ ଘେନିଣ ଏବେ ନ୍ୟାୟ ପାଞ୍ଚିବିରେ
କେ ମୋହର ମନ ଜାଣି ଖଟିବ ପାଦରେ।
ଭାଷାକୁ କର୍ଣ୍ଣ ଡେରିଣ କହିବ କେ ପାଞ୍ଚି
ଶ୍ରୀମୁଖ ଆଜ୍ଞା ଚିଟାଉ ଲେଖିବ କେ ବୁଝି।

କେହୁ ମୋତେ ରାଜଛବି କରାଇବ ବସି
ଚିତ୍ତ ଜାଣି କେ କହିବ ମୋତେ କଥା ଆସି ।
ଆହା ମନ୍ତ୍ରୀ ମୋହର ତୁ ସଭା ମୁଖ୍ୟଜନ
ଉଠି ବେଳେ କହିବୁ କି ଶୁଣିବି ବଚନ ।
ଚକ୍ଷୁ ମେଲି ନିମିଷକେ ଚାହିଁବୁ କି ମୋତେ
ଖଣ୍ଡିବି ହୃଦରୁ ତାପ ସନ୍ତୋଷିତ ଚିତ୍ତେ ।
ଆନନ୍ଦରେ ବସି ତୋତେ ଘେନି ସଭାକରି
ତୋତେ ଦେଖୁଥିଲେ ଦୁଃଖଦେବି ମୁଁ ପାସୋରି ।
ନିଦ୍ରାରୁ ଉଠିଲା ପ୍ରାୟ ବସିବୁ କି ବେଳେ
ତୋତେ ଘେନି ବୁଲନ୍ତି ମୁଁ ଏ ପୃଥ୍ୱୀକିହେଳେ ।
ଭାଇ ପୁତ୍ର ସେନା ଆଦି ମଲେ ମୋର ଯେତେ
ତୋର ଘେନି ମୁଁ ପାସୋରିଥିଲି ତାଙ୍କୁ ଚିତ୍ତେ ।
ଏବେ ଉଠ ମନ୍ତ୍ରୀ ହୋ ନ କର ମୋତେ ଚିଟା
ଏତେ ବୋଲିଣ ଅସୁର ଟେକି ଦେହ ଗୋଟା
ଚକ୍ଷୁ ମୁଖ ନାସିକାକୁ ଚାହିଁଲା ନିରୋଳି
ଦେଖିଲା ମନ୍ତ୍ରୀ ହୃଦରୁ ଗଲା ପ୍ରାଣ ଚଳି ।
ନାସିକାରେ ହସ୍ତ ଦେଇ ବାରେ ନିଃଶ୍ୱାସକୁ
ଥଣ୍ଡା ହୋଇଲାଣି ଦେଖି ଅଷ୍ଟାଙ୍ଗ ଶିରକୁ ।
ସେଠାରୁ ଶବକୁ ଛାଡ଼ି ଉଠି ମୁରାସୁର
ଯାଇଣ ସିଂହାସନରେ ବସିଲା ତତ୍ପର ।
ଲୋହାସୁରକୁ ବୋଇଲା ଶବ ନିଅ ବହି
ଶ୍ମଶାନ ସ୍ଥାନେ ଚନ୍ଦନକାଷ୍ଠେ ଦେବ ଦହି ।
ରାଜାର ଆଜ୍ଞା ପାଇଣ ଉଠିଲା ଦାନବ
ସଙ୍ଗ ହୋଇ ଦଶବିଂଶ ବହିନେଲେ ଶବ ।
ବେଦମାର୍ଗକୁ ଚାହିଁଣ ଅନଳରେ ପୋଡ଼ି
ସଂସ୍କାର କରି ପୁରକୁ ଅଇଲେ ବାହୁଡ଼ି ।
ଲୌକିକ କର୍ମକୁ ଚାହିଁ ଦଶକ୍ରିୟା କଲେ
ଦ୍ୱାଦଶରେ ପିଣ୍ଡ ଦେଇ ପ୍ରେତ ଉଦ୍ଧାରିଲେ ।
ଏଥୁଅନ୍ତେ ନାରଦ ହେ ଶୁଣ ମୁର ବାଣୀ
ମନରେ ଚିତୋଇ ପୁଣି ଉଠେ ଶିର ଝୁଣି ।
ବୋଲେ ଛନ୍ତି ଯେବେ କୃଷ୍ଣବଲ୍ଲଭର ପୋଏ
ଆଜି ତାହାଙ୍କୁ ପଠାଇ ଦେବି ଯମାଳୟେ ।
ସେ ପାପିଷ୍ଠମାନେ ଯେବେ ନ ଥାନ୍ତେ ଏ ପୃଥ୍ୱୀ
କାହିଁପାଇଁ ଜ୍ଞାନ ସାଧି ମରନ୍ତା ମୋ ମନ୍ତ୍ରୀ ।
ବିଷ୍ଣୁଙ୍କୁ ସେ ସୁମରିଣ ମରେ ରୁନ୍ଧି ନାକ
ଏରୂପେ ମଲେ ତାହାଙ୍କୁ ବୋଲି ଅବିବେକ ।
ଅଭବ୍ୟ ଲୋକ ମରନ୍ତି ସିନା ବିଷ୍ଣୁ ଭଜି
ବିଷ୍ଣୁ ଭଜି ବ୍ୟର୍ଥେ ଗଲା ମୋର ମନ୍ତ୍ରୀ ହଜି ।
ଶ୍ରୀହରିଙ୍କି ସୁମରନ୍ତେ ପ୍ରାଣ ଯେବେ ଯାଇ
ସେ ହରି ସଂସାରେ ଥିଲେ ଭଲ କେବେ ନାହିଁ ।

ହରି ନାମ ସୁମରି ଯେ ମନ୍ତ୍ରୀ ମୋର ଗଲା
ଏ ମଲେ ଏହାକୁ ଆସି ହରି କି ରଖିଲା ।
ଆମ୍ଭେ ତ ପୋଡ଼ିଦେଲୁହିଁ ଶବ ବହିନେଇ
ହରିକି ଯେ ସୁମରେ ସେ ମରେ ନିଶ୍ଚେ ଯାଇ ।
ଏଣୁ ଯେହୁ ଅଧର୍ମୀ ସେ ଭଜଇ ହରିକି
ତାହାଠାରୁ ଜଗତରେ ନାହିଁ କେ ପାତକୀ ।
ଯେହୁ ଅଟେ ଅଧମ ସେ ହରି ଭଜି ମରେ
ମହାମୂର୍ଖରେ ଲେଖା ସେ ହୁଅଇ ତ୍ରିପୁରେ ।
ଆବର ମାଳାକୁ ଭଜି ହୁଅନ୍ତି ଯେ ବନ୍ଦୀ
ହରିକି ଧ୍ୟାନ କରିଣ ବାୟୁ ଦ୍ୟନ୍ତି ରୁନ୍ଧି ।
ଅଙ୍ଗୁଷ୍ଠିରେ ଖସାଏ ତା ମୁଖ ହୁଏ କାଢ଼
କଟି ଗ୍ରୀବା ଲାଗି ବ୍ୟଥା ପାଏ ମେରୁ ହାଡ଼ ।
ଜିହ୍ୱାରେ ନାମକୁ ଗୁଣି ମରେ ଶୁଖି କଣ୍ଠ
ଚକ୍ଷୁ ପରଳ ଫାଟଇ ଚାହିଁ ନାସାପୁଟ ।
ହସ୍ତେ ମାଳା ଗଡ଼ାଇଣ ନଖ ଯାଏ ଛିଡ଼ି
ପଦ୍ମାସନେ ବସି ବସି ଅଣ୍ଟୁ ଯାଏ ପଡ଼ି ।
କର ମସ୍ତକ ଚରଣ ସବୁ ହୁଏ ପୀଡ଼ା
ଆହାର ନିଦ୍ରା ରତି ନ କରେ ପୁଣି ଲୋଡ଼ା ।
ସମସ୍ତ ସୁଖ ଛାଡ଼ିଣ ଦେହ କ୍ଷୀଣ କରେ
ଏଡ଼େ ପାପ ହରି ଧ୍ୟାନ ଅଟେ ଏ ସଂସାରେ ।
ସେ ହରିଙ୍କୁ ଯେବେ ମୁଁ ନ ଯିବି ଆଜୁଁ ମାରି
ଏହିରୂପେ ଭଜି ସିନା ଲୋକେ ଯିବେ ମରି ।
ଜ୍ଞାନ ସାଧିବୁ ବୋଲିଣ ବାୟୁ ରୁନ୍ଧି କେବେ
ଆୟୁଷ ଥାଉଁ ଥାଉଁ ସେ ଅଖଡ଼େ ମରିବେ ।
ଏତେ ବୋଲି ଦଇତ୍ୟ ଯେ ଗର୍ଜେ ଘନ ଘନ
ସେନାକୁ ବୋଲେ ରେ ସାଜ ମୋହର ସଇନ ।
କୃଷ୍ଣବଲ୍ଲଭ ପୁତ୍ରଙ୍କୁ ସଂହାରିବି ଯାଇ
ତେବେ ସିନା ପାସୋରିବି ପୁତ୍ର ମନ୍ତ୍ରୀ ଭାଇ ।
ଛାର ରଙ୍କ ଭିକ୍ଷୁ ହୋଇ ଯେବଣ ବ୍ରାହ୍ମଣ
ଦ୍ୱାରେ ଦ୍ୱାରେ ମାଗି ବୁଲି କରନ୍ତି କଲ୍ୟାଣ ।
ପଣେ ମାଣେ ପାଇଁ ବୁଲୁଥାନ୍ତି ଅବିଚ୍ଛନ୍ନ
ଯଜ୍ଞୋପବୀତ ବିକି ଯେ ପୋଷନ୍ତି ଜୀବନ ।
ଏମନ୍ତ ବ୍ରାହ୍ମଣ ଯେବେ ଲାଗେ ମୋର ସଙ୍ଗେ
ସହିବି କି ତାହା ମୁହିଁ ପ୍ରାଣ ଥାଉଁ ଅଙ୍ଗେ ।
ବୁଝିଲେ ବିଧାତାର ମୁଁ ଅଟେ ପୁତ୍ର ପୁଣି
ଋଷିଯାକ ଭାଇ ମୋର ପୁଣି କୁଳଶ୍ରେଣୀ ।
ଋଷିଏ ନ ମରନ୍ତି ମୁଁ ଜାଣି ନ ମରଇ
ଅମର ହୋଇଲି ମୁହିଁ ହର ବର ପାଇ ।
ନାଶକର ଦେବତାର ଯେତେ ଜାଣ ଆୟୁ
ତହିଁରୁ ଦ୍ୱିଗୁଣ ଅଟେ ମୋର ପରମାୟୁ ।

ବୁଝିଲେ ତ ନବଗ୍ରହେ ସବୁଙ୍କୁ ପୀଡ଼ନ୍ତି
ସେମାନେ ଅଟନ୍ତି ମୋର ପୁଣି ବଶବର୍ତ୍ତୀ ।
ମୋ ଦେହେ ଥିବାରୁ କ୍ଲେଶ କହୁଛି ସଭିଙ୍କି
କିରୂପରେ କେତେବେଳେ କିଏ ଦିଏ ଛିଙ୍କି ।
ଆବର ଯେତେକ ରୋମ ସଂସାରେ ଅଛନ୍ତି
ସମସ୍ତେ ଆସି ମୋହର ପାଦେ ସେବିଥାନ୍ତି ।
ଦଶଦିଗପାଳମାନେ ମୋର ସେବାକାରୀ
ଆଜ୍ଞାକୁ ଚାହିଁଣ ଇନ୍ଦ୍ର ବର୍ଷୁ ଥାଏ ବାରି ।
ନିମ୍ନରେ ଥାଏ ବାସୁକୀ ମୋ ଆସନ ବହି
ଦେବଗଣେ ଆସି ମୋତେ ଭେଟନ୍ତି ନିତିହିଁ ।
ବରୁଣକୁ ଆଜ୍ଞାକଲି ସେ ମୋ ବୋଲ କଲା
କ୍ଷୀର ସମୁଦ୍ର ଜଳ ସେ ନିତ୍ୟ ମୋତେ ଦେଲା ।
ତାହାର ନଗରଠାରୁ ମୋ ନଗ୍ରକୁ ଜାଣ
ସୁବର୍ଣ୍ଣ ନଳା ବସାଇ ଦେଲାକ ବରୁଣ ।
ଯେତେ ଜଳ ଲାଗଇ ମୋ ନଗରଲୋକଙ୍କୁ
ତେତେକ ନାଳରେ ଛାଡ଼ି ଦିଅଇ ଆମ୍ଭଙ୍କୁ ।
ଖଞ୍ଜାପ୍ରମାଣେ କପାଟ ଦିଏ ନେଇ ପାରି
ଏରୂପେ ଆଜ୍ଞା ମୋହର ଅଟେ ଅବଧାରି ।
ଏହା ଶୁଣି ସଭାଯାକ ବୋଇଲେ ଏ ସତ୍ୟ
ଖୋଜିଲେ ତୁମ୍ଭ ସମାନେ ଅଛି କେ ଜଗତ ।
ବୀରଙ୍କ ଉପରେ ତୁମ୍ଭେ ଅଟ ମହାବୀର
ଯାହାର ଚରଣ ସେବୁ ଅଛନ୍ତି ତ୍ରିପୁର ।
ତେତିଶକୋଟି ଦେବତା ବ୍ରହ୍ମାଦି ସହିତେ
ପ୍ରତ୍ୟହ କଲ୍ୟାଣ କରି ଯାଆନ୍ତି ସମସ୍ତେ ।
ଦେବାର୍ଚ୍ଚନ ବେଳେ ଅଠାଅଶୀ ସସ୍ର ଋଷି
ସଭାମଧ୍ୟେ ଆଶୀର୍ବାଦ କରନ୍ତି ସେ ବସି ।
ବ୍ରହ୍ମା ସଦାଶିବ ପ୍ରତିଦିନ ଆସି ବେଳେ
ଦରଶନ ଦେଇ ଚଳି ଯାଆନ୍ତି ତତ୍କାଳେ ।
ସ୍ୱର୍ଗରୁ ଅପସରାଏ ନିତି ବେଳେ ଆସି
କରନ୍ତି ଯେ ନୃତ୍ୟ ଗୀତ ଗାନ୍ଧାରରେ ଭାଷି ।
ତୁମ୍ଭ ସଭା ପ୍ରାୟ ସଭା ନାହିଁ ବ୍ରହ୍ମାଣ୍ଡରେ
ସୁଧର୍ମା ସଭାକୁ ବଳେ ପ୍ରଭା ଦ୍ୱିଗୁଣରେ ।
ବୀରାଧିବୀରବର ଯେ ପ୍ରତାପ ତୋ ବାନା
ରାଜାଙ୍କ ଉପରେ ରାଜା ଅଟୁ ତୁ ମୂର୍ଦ୍ଧନା ।
ଦେହ ଧରି ଜନମିଲେ ମରିବା ତା ସତ
ନ ଜନ୍ମିଲା ଲୋକଙ୍କୁ ଯେ ନାହିଁଟି ନିୟତ ।
ଜନମ ହୋଇଲାଠାରୁ ମଲା ପରିଯନ୍ତେ
ଏ କଥା କାହାକୁ ଜଣା ନାହିଁ ଏ ଜଗତେ ।
ସୁବିଜ୍ଞ ମନ୍ତ୍ରୀ ସଂସାରେ ଯେବେ ନ ଜନ୍ମନ୍ତା
ଶରୀର ଧରିଲାରୁ ସେ କିମ୍ପା ନ ମରନ୍ତା ।
ସମସ୍ତ କଥା ତ ମିଛ ମୃତ୍ୟୁ କଥା ସତ
ଏହା ଯେ ବୁଝିପାରନ୍ତି ଏକା ସେ ପଣ୍ଡିତ ।
କେହୁ ଅବା ଝୁଣ୍ଟି ପଡି ସଂସାରେ ମରଇ
କେହି ହାଇ ମାରୁ ମାରୁ ପ୍ରାଣ ବିସର୍ଜଇ ।
କେବା ଅନ୍ନ ଭୁଞ୍ଜୁ କଣ୍ଠତଟେ ଲାଗି ମରେ
କେହୁ ଅବା ଜ୍ୱରରୋଗେ ପଡ଼ି ପ୍ରାଣ ହାରେ ।
କେହୁ ଅବା ସ୍ଥାନେ ବସି ପ୍ରାଣ ଦିଏ ଛାଡ଼ି
ଏହିରୂପେ ବିହି ଖଞ୍ଜି ଛନ୍ତି ଆତ୍ମା ଗଢ଼ି ।
କେ ଅବା ଆଜିକାଲି କେ ଅବାକେତେବେଳେ
ଏହିରୂପେ ଜୀବଯାକ ମରନ୍ତି ସକଳେ ।
ଶୁଣି ମୁରାସୁର ଏହା ସତ୍ୟ ବୋଲି ପାଞ୍ଚି
ବୋଇଲା ତ ମଲା କଥା ସମସ୍ତଙ୍କୁ ଅଛି ।
ଆମ୍ଭେ କେବଳ ଅମର ବର ପାଇବାରୁ
କେହି ମାରି ପାରୁନାହିଁ ଈଶ୍ୱର ଦୟାରୁ ।
ଏଣୁକରି ମୋର ନାହିଁ କାହାକୁ ଯେ ଡର
ମୋତେ ମାରିବାକୁ କେହୁ ନାହିଁ ଏ ତ୍ରିପୁର ।
ମାନବ ବିଷ୍ଣୁ ବିନା ସେ ବଲ୍ଲଭର ପୁଅ
ବିପ୍ରଙ୍କର କୁଳେ ଜନ୍ମିଅଛି ଧରି ଦେହ ।
କ୍ଷତ୍ରିକୁଳେ ଜନ୍ମିଥିଲେ ଡରନ୍ତି ବା ମୁହିଁ
ସନ୍ଧ୍ୟାକର୍ମରେ ଅଟନ୍ତି ସିଂହ ପୁଣି ସେହି ।
ଯୁଦ୍ଧ ଭଳି ଲୋକ ନୁହନ୍ତି ତ ବିପ୍ରଗଣ
ଆଜ ସର୍ବେ ଚାଲ ଯାଇ କରିବା କାରଣ ।
ଏହା ଶୁଣି ଚାରିସେନା ଉଠି ଶିରଝୁଣି
ବୋଇଲେକ ଆଜ୍ଞାକଲେ ଯାନ୍ତୁ ଆମ୍ଭେ ପୁଣି ।
ଗଲେ ବଦ୍ରିକା ନଗର ଦ୍ୟନ୍ତୁ ଭୁଷୁଡାଇ
ବ୍ରାହ୍ମଣ କୁଳକୁ ଆଉ ରଖନ୍ତୁ କି ତହିଁ ।
ଏହା ଶୁଣି ମୁରାସୁର ହେଲା ମନେ ହୃଷ୍ଟ
ବୋଇଲାକ ଆମ୍ଭେ ମଧ ଧରିଯିବା ଥାଟ ।
ବିରାଜ ଯେ ମୂଢ଼ାସୁର ମୁକୁନ୍ଦା ପ୍ରଳମ୍ଭା
ଚାରିବ୍ୟୂହ କରି ଉଠ ସମର କରିବା ।
ଏହିଲାଗେ ଚାଲ ଯିବା ଘେନି ସୈନ୍ୟବର୍ଗ
କୃଷ୍ଣବଲ୍ଲଭ ପୁଅଙ୍କୁ ପେଷ ଯମଆଳ ।
ମାତା ରାଣ୍ଡୀକୁ ଆଣିଣ ବସାଇବା ଶୂଳେ
କୃଷ୍ଣବଲ୍ଲଭକୁ ମାରି ଫିଙ୍ଗିଦେବା ଜଳେ ।
ସୁଜାଣ ମନ୍ତ୍ରୀକି କାଟି ବିକୋଡି ମାରିବା
କର୍ଣ୍ଣାଟେଶଙ୍କୁ ସମୁଦ୍ରେ ନେଇ ବୁଡାଇବା ।
କରିଦେବା ଗରୁଡ଼ଙ୍କୁ ଛେଦି ବେନିଫାଳ
ନୃସିଂହ ସେନାକୁ ପେଷି ଦେବା ଯମଆଳ ।
ବିପ୍ର ଲୋଚାଏ ଯୁଦ୍ଧକୁ ଥିବେ ସିନା ଆସି
ଆମ୍ଭର ଆଗେ ରହି କି ପାରିବେ ଭରସି ।

କ୍ଷତ୍ରିଲୋକ ଜାଣନ୍ତି ନା ସମରର ଭଙ୍ଗି
କେବଳ ବିପ୍ର ପାରନ୍ତି ଏକା ଦାନ ମାଗି ।
କାଲି ପ୍ରଭାତରୁ ଉଠି ବଦରିକା ଯିବା
ତୁମ୍ଭ ଚାରିଅଙ୍ଗ ବଜ୍ର ସମାନ କରିବା ।
ଏବେ ଯେଝା ପୁରକୁ ଯେ ସର୍ବେ ଯାଅ ଚଳି
ସୈନ୍ୟ ଅଦ୍ଭଳନା ମୋର ଏକେ ମହାବଳୀ ।
ଶୁଣିଣ ସେ ସେନାମାନେ ରାଜା ଆଜ୍ଞା ପାଇ
ଯେ ଯାହା ଘର ମନ୍ଦିରେ ପ୍ରବେଶିଲେ ଯାଇ ।
ସଭାମଧ୍ଯୁ ମୁରାସୁର ଉଠି ସେହିଲାଗେ
ଭିତର ପୁରରେ ଯାଇ ମିଳେ ରାଣୀ ଆଗେ ।
ଦେଖିଣ ମଦନାବତୀ ବାସଜଳ ଆଣି
ପାଦ ପଖାଳି ପିଢ଼ାରେ ବସାଇଲେ ପୁଣି ।
ବେନି ଚରଣ ପୋଛିଣ ପଙ୍ଖା ଧରି କରେ
ଆଗରେ ଉଭା ହୋଇଣ ବିଞ୍ଚେ ଧୀରେ ଧୀରେ ।
ଷଡ଼ ରସରେ ସମ୍ପାଦି ଅନ୍ନ ରାନ୍ଧିଥିଲା
ରାଜାର ମନକୁ ମୋହି ତାହା ଭୁଞ୍ଜାଇଲା ।
ଆଚମନ ସାରି ରତ୍ନ ପୀଢ଼ାରେ ବସିଲେ
ଏଥୁଅନ୍ତେ ସବୁ ରାଣୀ ଆସି ମିଳିଗଲେ ।
କେ ପାନଦେଇଣ କେହୁ ଗୁଆଦେଇ ଭେଟେ
କେହୁ ଚନ୍ଦନ ଲେପଇ ନେଇ ଭାଲପଟେ ।
କେ ଫୁଲମାଳ ନେଇଣ ଖଞ୍ଜେ ମଥାପରେ
କେ ସୁବର୍ଣ୍ଣମାଳା ନେଇ ଲମ୍ବାଏ କଣ୍ଠରେ ।
ଚନ୍ଦ୍ରହାର ପଦ୍ମହାର ଇନ୍ଦ୍ରନୀଳମଣି
ପତିକି ଭେଟି ଦେଇଣ ମଣାନ୍ତି ତରୁଣୀ ।
ଏ ବିଧି ତେତିଶକୋଟି ମହାଦେଇ ଯାଇ
ସ୍ୱାମୀସେବା ସାରି ପାନକଲେ ପାଦଧୋଇ ।
କେ ଓଷ୍ଠ ଧରିଣ କେହୁ ମୁଖେ ଦିଏ ଚୁମ୍ଭ
କେହି କେହି ବୋଲନ୍ତି ଯେ ତୁମ୍ଭେ ଆମ୍ଭ ଜୀବ ।
କେହି ଚରଣ ଅଙ୍ଗୁଷ୍ଠି ଧରିଣ ଚାପଇ
କେହି ବା ଇଙ୍ଗିତ ଭଙ୍ଗୀ ବଚନ ଭାଷଇ ।
ରାଣୀଙ୍କର ଦେଖିଣ ଏ କୌତୁକ ପ୍ରସଙ୍ଗ
ତେତିଶକୋଟି ସ୍ୱରୂପ ଧରି ଦୈତ୍ୟଅଙ୍ଗ ।
ପତ୍ନୀ ଗୋଟିକରେ ପତି ଗୋଟି ଗୋଟି ହେଲା
ତେତିଶକୋଟି ରାଣୀଙ୍କ ସଙ୍ଗେ କ୍ରୀଡ଼ା କଲା ।
ମାୟାରେ ବହୁତ ମୁର ହେଲା ମୁରଦୈତ୍ୟ
ରାଣୀଏ ଯେଣୁ ତାହାର ଅଟେ ଅପ୍ରମିତ ।
ନିଜେ ମୁର ଯେ ମଦନାବତୀ ରାଣୀତୁଲେ
ଚଉଷଠି ପରିବନ୍ଧେ ଜଡ଼ିତ ହୋଇଲେ ।
ପୁନରପି ସେ ଦଇତ ହେଲା ଏକରୂପ
କାହାକୁ ଜଣା ନାହିଁ ସେ ମୁରର ସ୍ୱରୂପ ।

ଏକା ଜଣକେ ହୋଇଲା ଅନେକ ମୂରତି
ଅସୁରେ ତ କାମରୂପୀ କିସ ନ ଜାଣନ୍ତି ।
ଈଶ୍ୱର ବର ଘେନିଣ ପାଞ୍ଚେ ଯାହା ମନେ
ସେ କଥା ସିଦ୍ଧ କରନ୍ତି ତାର ତ୍ରିଲୋଚନେ ।
ମୁର ଦୈତ୍ୟ ପ୍ରାୟ କାର ପ୍ରତିଜ୍ଞା ଯେ ନାହିଁ
ବ୍ରହ୍ମାଙ୍କ ବୀର୍ଯ୍ୟରୁ ସେହି ଅଛି ଜନ୍ମ ହୋଇ ।
ଦୈତ୍ୟ ନୋହିଥିଲେ ଋଷିମଧ୍ୟେ ଲେଖାହନ୍ତା
ବିଧାତା ସର୍ଜିବା କଥା କେ ଆନ କରନ୍ତା ।
ସ୍ୱଭାବେ ତ କାମରୂପୀ ଅଟନ୍ତି ଅସୁର
ମନମଧ୍ୟେ ଘୋଟି ବ୍ୟାପି ବସେ ମୁରାସୁର ।
ମନ ମତ୍ତହସ୍ତୀ ପାରେ ବ୍ରହ୍ମାଣ୍ଡକୁ ଘୋଟି
କ୍ଷଣକରେ ବୁଲି ଆସିପାରେ ନବସୃଷ୍ଟି ।
ପାଟମହାଦେଈ ଯେ ମଦନାବତୀ ରାଣୀ
ତା ତୁଲେ ବହୁ ରହସ୍ୟେ କାଟିଲା ରଜନୀ ।
ଅଳପ ରଜନୀ ଥାଉଁ ବସେ ପଲ୍ୟଙ୍କରେ
ଶୟନ ସ୍ଥାନରେ ରାଣୀ ଉଠିଲେ ତତ୍ପରେ ।
ସୁବେଶ ବେଶ ହୋଇଣ ସ୍ୱାମୀ ଆଗେ ବସି
ବେନି ଚରଣକୁ ଧରି ପୁଚ୍ଛେ ଶୁଭ୍ରକେଶୀ ।
ବୋଲଇ ସ୍ୱାମୀ ଆଜ ଯେ ସଭା କରିଥିଲ
ସେଠାରେ ରୋଦନ କେତେ କାହିଁପାଇଁ କଲ ।
ତହୁଁ ଆସି ଏଠାବରେ କଲ ଯେତେ କର୍ମ
ଅସୁରକୁଳର ତାହା ନୁହଇ ତ ଧର୍ମ ।
ମହାଖଳା ବିଦ୍ୟା ସାଧିଥିବି ଏ ବୋଲନ୍ତି
ଯେତେ ରୂପ ହେଲେ ତାକୁ କେହି ନ ମାନନ୍ତି ।
ତଥାପି ଦେବକୁଳେ କେ ନାହିଁ ଏହାକରି
କେବଳ ବିଷ୍ଣୁ ପାରନ୍ତି ଏହିରୂପ ଧରି ।
ଦଶଅବତାର ହୋଇ ସଂସାରେ ଜନ୍ମନ୍ତି
ନାନାଦି ସ୍ୱରୂପ ଧରି ଦୁଷ୍ଟ ନିବାରନ୍ତି ।
ଯାବତ ବହୁତ ରୂପ ବିଷ୍ଣୁଙ୍କୁ ଯେ ସାଜେ
ଆନ ଲୋକ କଲେ ତାକୁ ମନ୍ଦଟି ଉପୁଜେ ।
ବିପରୀତ କଲ ବୋଲି ସମସ୍ତେ ବୋଲନ୍ତି
ସେହିଠାରୁ ସେ ପ୍ରାଣୀଟି ହୁଏ ବିନଶ୍ୟତି ।
ଚକ୍ରବର୍ତ୍ତୀ ରାଜା ହୋଇ କେଡ଼େ କଥା କଲ
ମୋତେ ହେଲେ ଏ କଥା ତ ନ ବିଶଇ ଭଲ ।
ଏହା ଶୁଣି ମୁରାସୁର ଅଳ୍ପ ମନେ ହସି
ବୋଲେ ଏଥକୁ ଚିନ୍ତା ନ କର ଶୁଭ୍ରକେଶୀ ।
ମୋର ପରମାୟୁ ତୁମ୍ଭଙ୍କୁ ପୁଣି ଜଣାଉଛି
ପ୍ରଳୟକାଳ ପର୍ଯ୍ୟନ୍ତ ଥିବି ମୁହିଁ ବଞ୍ଚି ।
ମାନବ ଦେହେ ମୋତେ ନ ପାରେକେହିମାରି
କେବଳ ଶ୍ରୀକୃଷ୍ଣଙ୍କୁ ମୁଁ ଏକା ଥାଏ ଡରି ।

ସେହି ବିଷ୍ଣୁ ତ ବୈକୁଣ୍ଠେ ରହେମୋତେଲୁଚି
ଚିହ୍ନବର୍ଣ୍ଣ ଦୁଇ ତା ନ ଦେଖେ ମୁହିଁ କିଛି।
କୃଷ୍ଣବଲ୍ଲଭ ପୁଅଙ୍କୁ ବିଷ୍ଣୁ ବୋଲୁଛନ୍ତି
କାଲି ଗଲେ ତାହାଙ୍କୁ ମୁଁ ଆସିବି ନିପାତି।
ମାନବ ବିଷ୍ଣୁ ତ କୃଷ୍ଣବଲ୍ଲଭର ପୁଅ
ତାଙ୍କୁ ଜାଣ ସଖି ରେ ନ ଲାଗେ ମୋତେଭୟ।
ରାଜାର ମୁଖରୁ ରାଣୀ ଏ ବଚନ ଶୁଣି
ତୁନିହୋଇ ଟିକେ ରହି ପଚାରିଲା ପୁଣି।
ବୋଲେ ଶୁଣ ସ୍ୱାମୀ କହୁଅଛି ଯୋଡ଼ିହ
ପ୍ରତ୍ୟକ୍ଷେ କୃଷ୍ଣବଲ୍ଲଭ ପୁଅ ଜଗନ୍ନାଥ।
ବିପ୍ର କୁଳରେ ଜନମ ଆସି ହୋଇଛନ୍ତି
ତୁମ୍ଭଙ୍କୁ ମାରିବାକୁ ସେ ମନେ ବିଚାରନ୍ତି।
ମୋହର ବୋଲ ଘେନି ନ ଯାଅ ଆଜି ଯୁଝି
ଗଲେ ମୃତ୍ୟୁହେବ କହୁଅଛି ଲଗ୍ନ ବୁଝି।
ରାଣୀ ମୁଖୁଁ ଶୁଣି ରାଜା ଅନେକ ହସିଲା
ଏ ଛାର କଥା ରେ ସଖି କହିଲୁ ବୋଇଲା।
ଆନ କେହୁ ବୋଲିଥିଲେ ବୁଝି ଯାନ୍ତା ଏବେ
ପଦ୍ମିନୀ ସ୍ତିରୀ ବୋଲନ୍ତି ତୋତେ ତ ସରବେ।
ଏ ଘେନି ଏଥର କ୍ଷମା କଲି ମୁଁ ତୋଦୋଷ
ଆନ ହୋଇଥିଲେ ପେଷିଦ୍ୟନ୍ତି ଯମ ପାଶ।
ଏହା ଶୁଣି ମହାଦେଈ ପୁଣି ବଳେ କହି
ସ୍ୱାମୀର କୋପ ତାହାର ମନେ ନ ପଶଇ।
ବୋଲେ ଶୁଣ ସ୍ୱାମୀ କହୁଅଛି ଆଉ ପଦେ
ବିପ୍ରକୁଳେ ଜନ୍ମ ଆସି ହେଲେଟି ଗୋବିନ୍ଦେ।
ଅନେକ ସ୍ୱରୂପ ହୋଇ ପାରନ୍ତି ଶ୍ରୀହରି
ମତ୍ସ୍ୟ କୂର୍ମ ବରାହ ନୃସିଂହ ରୂପ ଧରି।
ବାମନ ପରଶୁରାମ ରାମକୃଷ୍ଣ ମୂର୍ତ୍ତି
ବଉଦ୍ଧ କଲକୀ ହୋଇ ଦୁଷ୍ଟ ନିବାରନ୍ତି।
ଏବେ ତ ନୃସିଂହ କୃଷ୍ଣବଲ୍ଲଭର ଘରେ
ଅଛନ୍ତି ଅବତରି ସେ ବ୍ରାହ୍ମଣକୁଳରେ।
ଏକ ନୃସିଂହ ଆସିଣ ହେଲେ ବିଦ୍ୟାଗୁରୁ
ସତରଲକ୍ଷ ପୁଅଙ୍କୁ ମାଇଲେ ମୋ ଘରୁ।
ବୃକା କାଳକେତୁ ମହୀଦାସ ଯେ ପ୍ରଳମ୍ବା
ମୁକୁନ୍ଦା ଯେ ବୀରଘଣ୍ଟ ମୃଢ଼ାସୁର ଅମ୍ବା।
ଅଲୋପି ସଲୋପି ଜଳଘଣ୍ଟ ମଦନାଶୀ
ଲୋହାସୁର ବଜ୍ରମାଳି ବୀର ରଣକେଶୀ।
ଚନ୍ଦ୍ରମାଳୀ ରଣଜିତ କାଙ୍କୋଳା ଅସୁର
ସ୍ୱର୍ଣ୍ଣକେଶୀ କୃତକେଶୀ ଯେ ଖଡ଼ିକାସୁର।
ବଟକେଶ୍ୱର ଯେ ବାରିନିଧି ଦୈତ୍ୟବୀର
ସୁନନ୍ଦା ବିରାଜ ଦୈତ୍ୟ ପୁଣି ଗୁଢ଼ାସୁର।
ବୀରବର ଶତ୍ରୁଜିତ ଆବର ହିରଣ୍ୟ
ରଣଜୟୀ ବୀରବାହୁ କାଳକେତୁ ଯମ।
ବଇରି ଦରପହାରି ଆଉ ବୀରଘଣ୍ଟ
ତିନିମୁଣ୍ଡା କୃତାକଣ୍ଠ ଆବର ବିକଣ୍ଠ।
ଲୋହଚଞ୍ଚୁ ମଦନା ଯେ ବିରାଜ ବିକ୍ଷର
ଏ ଆଦି ସେନା ଯେତେକ କେ କରୁ ଗୋଚର।
ସଇନ୍ୟଯାକ ମୋହର ମାଇଲେକ ସେହି
ସେନାପତି କରିବାକୁ ଗୋଟେ କେହି ନାହିଁ।
ଦାରୁଣ ଭାଇ ତୁମ୍ଭର ତେଡ଼େ ବଳୀ ଥିଲେ
ଏହି କୃଷ୍ଣବଲ୍ଲଭର ପୋଏଟି ମାଇଲେ।
ଦେଖୁ ଦେଖୁ ଜାଣୁ ଜାଣୁ ବୁଝୁ ବୁଝୁ ତୁମ୍ଭେ
ପୁଣି ଯୁଝିବାକୁ ବୋଲୁଅଛ ଯିବି ଏବେ।
ଏହା ଶୁଣି ମୁରାସୁର ଉଠି ନିଶମୋଡ଼ି
ବୋଇଲା ସଖି କହୁଛ ଶୁଣ ବାହୁ କୋଡ଼ି।
କୃଷ୍ଣବଲ୍ଲଭର ପୋଏ ମାରନ୍ତେ କି ମୋତେ
ମାନବ ବିଷ୍ଣୁ ସିନା ସେ ଅଟଇ ଜଗତେ।
ଯେ ମୋତେ ମାରିବ ତାହା କହୁଛି ତୁ ଶୁଣ
ସଦାଶିବ ଯାହା ମୋତେ କହିଛନ୍ତି ପୁଣ।
ମହାଗୁପ୍ତ କଥା କହୁଅଛି ତୋତେ ଏକ
ତୁ ଅଟୁ ମୋ ପ୍ରାଣମଣି ସ୍ତିରୀଙ୍କ ନାୟକ।
ଆନକୁ ମୁହିଁ କି ତାହା କହନ୍ତି ରେ ସଖି
ଶୁଣିଲେ ଗୁପତେ ଏକା ଥିବୁ ତାହା ରଖି।
ଯେତେବେଳେ ସଦାଶିବ ଦେଲେ ମୋତେ ବର
ବୋଇଲେ ବିଷ୍ଣୁ ହାତରେ ମରିବୁଟି ମୁର।
ତଥାପି ମାନବଦେହେ ବିଷ୍ଣୁ ହେଲେ ଜାଣ
ସେ ମୋତେମାରି କେବେ ନ ପାରିବେଟି ପୁଣ।
ସମ୍ବେ ପାଦଧରି ଯେବେ ଜନମିବେ ହରି
ସେହି ଏକା ମୋତେ ଜାଣ ପକାଇବେ ମାରି।
ସଂସାର ଯାକରେ ଯେତେ ଛନ୍ତି ଜୀବଜନ୍ତୁ
କେବେହେଁ କେହି ମୋର କି କରିପାରେ ମୃତ୍ୟୁ।
ତେତିଶ କୋଟି ଦେବତା ବ୍ରହ୍ମା ସହିତେଣ
ମୋତେ ମାରିବାକୁ କେହି ନାହିଁ ସଂସାରେଣ।
କୃଷ୍ଣବଲ୍ଲଭ ପୁତ୍ରଙ୍କୁ ତେଣୁ ନାହିଁ ଡର
ବିପ୍ରହସ୍ତେ ମୃତ୍ୟୁ ଲେଖିନାହାନ୍ତି ମୋହର।
ଏହା ଶୁଣି ମହାଦେଈ ରହେ ତୁନି ହୋଇ
ବୋଇଲା ମୂର୍ଖ ଲୋକଙ୍କୁ ପାରିବ କେ କହି।
ଯାହା ବୁଝିଥାଇ ସେହି କଥା ଏକା ମୂଳ
ମଲା ପର୍ଯ୍ୟନ୍ତ ହୃଦରୁ ନ ଛାଡ଼େ କନ୍ଦଳ।
ଏଥର ଯୁଦ୍ଧକୁ ଗଲେ ଏ ଆସିବେ ନାହିଁ
ଏଥକୁ ପଚାରିଥିବି କଥାଟିଏ ମୁହିଁ।

ଏ ରୂପେ ମନରେ ପାଞ୍ଚି ସେ ମଦନାବତୀ
ବୋଲେ ଶୁଣ ସ୍ୱାମୀ ଏବେ ଦୈତ୍ୟକୁଳପତି ।
ଏଥକୁ କଥା ଏକ ମୁଁ ପଚାରିବି ପରା
ସମର କରିବାକୁ ତ ହେଲ ଏତେ ତ୍ୱରା ।
ତହିଁକି ପଚାରିଥିବି କଥା ଏକ ସ୍ୱାମୀ
ଜୀବ କେ ଚିର ହୋଇଣ ନାହିଁଟି ଜନମି ।
ଭଲ ମନ୍ଦ ଦୁଇ କଥା ପ୍ରାଣୀକି ଯେ ଭୋଗ
ଭଲ ଲୋଡୁଥିଲେ ମନ୍ଦ ପଣ ଆସି ଆଗ ।
ଏତେକ ଦିନ ହୋଇଲା ଭଲ ଭୋଗ କଲ
ଶ୍ରୀନୃସିଂହ ପ୍ରଭୁଠାରେ ଦୋରେହା ନ ଥିଲ ।
ନୃସିଂହ ଛାମୁକୁ ଯାଉଅଛ ଯୁଦ୍ଧ କରି
ଏକା ହୋଇଥିବୁଁ ସିନା ତୁମ୍ଭ ଯେତେ ନାରୀ ।
ଭଲ ହେଲେ ଆଚ୍ଛା ମନ୍ଦ ହେଲେ କି କରିବୁଁ
ଆପଣତ କହିଥିଲେ ସର୍ବେ ଶୁଣିଥିବୁ ।
ମୁରାସୁର ବୋଇଲାକ ଶୁଣ ମହାଦେଈ
ଏଥର ଗଲେ ବଲ୍ଲଭପୁତ୍ର କି ରଖଇ ।
ସେ ଅବା ମୋତେ ମାରୁ ମୁଁ ତାଙ୍କୁ ନିଶ୍ଚେ ମାରି
ଏ କଥା କହି ମୁଁ ଯାଉଅଛି ସତ୍ୟ କରି ।
ଏଥକୁ ପ୍ରମାଣ କହୁଅଛି ଶୁଣ ତୋତେ
ମୃତ୍ୟୁକାଳ ହେଲେ ରଡ଼ି ଛାଡ଼ିବି ଜଗତେ ।
ବିଷ୍ଣୁର ସହସ୍ର ପାଦ ଦେଖିବି ଯେ କାଳେ
ସେହିକ୍ଷଣି ଘୋରରଡ଼ି ଛାଡ଼ିବି ତତ୍କାଳେ ।
ଶୂନ୍ୟରେ ମେଘ ଯେସନେ ମାରେ ଘଡ଼ଘଡ଼ି
ସେହିରୂପେ ଚମକିଣ ପ୍ରାଣୀ ଯିବେ ପଡ଼ି ।
ଶୁଭିବ ସହସ୍ର ଯୂଣ ଯାଏ ରଡ଼ି ମୋର
ଏ କଥାଟି ହେତୁ ରଖିଥିବୁ ମନେ ତୋର ।
ତେତେବେଳରେ ଜାଣିବୁ ସ୍ୱାମୀ ମୃତ ହେଲା
ବିଷ୍ଣୁଙ୍କର ହସ୍ତେ ମରି ବୈକୁଣ୍ଠକୁ ଗଲା ।
ସେହିଠାରୁ ଦଶକ୍ରିୟା କରିବୁ ତୁ ମୋର
ତୋ ହସ୍ତେ ପିଣ୍ଡ ପାଇ ମୁଁ ହେବି ଅଜ୍ରାମର ।
ତୋତେ ମୁହିଁ ଅକ୍ଷମାଳା ସନ୍ତକ ଦେଉଛି
ଏ ମାଳା ଘେନି ସତି ଗୋ ମରିବୁ ମୃଗାକ୍ଷୀ ।
ତେତିଶକୋଟି ରାଣୀଏ ସର୍ବେ ମରିବେଟି
ଏତେକ କଥା ତୋତେ ତ କହେ ସଙ୍କେତଟି ।
ଏତେ କହି ମୁର ଶେଯୁଁ ଉଠେ ଧାତିକାରେ
ରାଣୀମାନେ ଉଠି ଚଳିଗଲେ ଯେଝାପୁରେ ।
ଏହିରୂପେ କହି ସୁର ପଲ୍ୟଙ୍କେ ଶୋଇଲା
ସେହିଠାରୁ ରାଣୀମାନେ ଗୋବିନ୍ଦ ସ୍ମରିଲା ।
ତେତିଶକୋଟି ରାଣୀଏ ପହୁଡ଼ିଲେ ଯାଇଁ
ବିଷ୍ଣୁ ଭଜନ କରିଣ ଶୁଏ ମହାଦେଈ ।

ମଦନାବତୀର ଚିତ୍ତ ଜାଣି ନାରାୟଣ
ଗରୁଡ଼ ଆସନେ ଆସି ମିଳିଲେ ତକ୍ଷଣ ।
ଶଙ୍ଖ ଚକ୍ର ଗଦାପଦ୍ମ ଚତୁର୍ଭୁଜେ ଧରି
ସ୍ୱପନେ ପ୍ରବୋଧ କରି କହନ୍ତି ମୁରାରି ।
ବୋଇଲେ ରେ ସାଧବି ତୁ ଶୁଣ ଶୁଲକ୍ଷଣୀ
ସ୍ୱାମୀର କଥା ଜଣା ତ ହେଲା ତ୍ୱତୋତେ ପୁଣି ।
ଏଥକୁ ଶୋଚନା ତୁହି କେବେ ନ କରିବୁ
ଆର ଜନମେ ଯାଇ ତୁ ଶୁଦ୍ଧାଙ୍ଗନା ହେବୁ ।
ତୋର ପରାୟେ ସାଧବୀ ବ୍ରହ୍ମାଣ୍ଡେ କେ ନାହିଁ
ଦରଶନ ପାଇ ମୋତେ ଶୁଦ୍ଧ ହେବୁ ତୁହି ।
ଖୋଜିଲେ ତୋହର ଦେହେ ତିଳେନାହିଁମାୟା
ମୋତେ ନିନ୍ଦାକଲେ ତୋର କର୍ମେ ନିଜକାୟା ।
ସ୍ୱାମୀ ତୋହରଯେ ନିନ୍ଦାକରେଯେତେମୋତେ
ତାହାକୁ ତିଆରି ତୁହି କହୁଥାଉ ନିକତେ ।
ସେ କଥାଯାକ ତାହାର କର୍ଣ୍ଣେ ନ ପଶଇ
ମାନବ ବିଷ୍ଣୁ ବୋଲି ସେ ମୋତେ ନିନ୍ଦୁଥାଇ ।
ତୋହର ଧର୍ମ କର୍ମୁ ସେ ଆଜିଯାଏ ଥିଲା
ଏବେ ତ କନ୍ଧରୁ ତାର ଶିରୀ ଛାଡ଼ିଗଲା ।
ଅନେକ ସ୍ୱରୂପ ବହି କ୍ରୀଡ଼ା କଲା ଯେଣୁ
ମରିବ ତିନି ଦିନରେ କହିଲିଟି ତେଣୁ ।
ଏଥକୁ ମନେ ଶଙ୍କା ନ କର ଏବେ ତୁହି
ଦେହାନ୍ତେ ବୈକୁଣ୍ଠେ ତୋତେ ରଖିବଇଁନେଇ ।
ଶୁଣିଣ ମଦନାବତୀ ଯୋଡ଼େ ବେନିକର
ବୋଲେ ବିଧବା ବୋଲିଣ କହିବେଟି ନର ।
ନାରାୟଣ ବୋଇଲେକ ଶୁଣ ମହାଦେଈ
ଏକଦଶାହ ମଧ୍ୟେ ଯେ ସ୍ତିରୀ ମରିଯାଇ ।
ବିଧବାଦୋଷ ତାହାକୁ କେବେହେଁ ନ ଲାଗେ
ଏହିକଥା ବିହି ଲେଖାଅଛି ବେଦମାର୍ଗେ ।
ପ୍ରଥମଦିନୁ ଏଗାରଦିନ ପରିଯନ୍ତେ
ମୃତାହରେ ପିଣ୍ଡଦାନ ଦିଅନ୍ତି ଜଗତେ ।
ଏଣୁ ସେହି ଏକାଦଶ ଦିନଯାକ ସରି
ବିଧବା ଦୋଷ ନାହିଁଟି ଏଥେଁ ଗଲେ ମରି ।
ସୁଲଭ ସ୍ତିରୀ ତୁଲେ ସେ ସ୍ତିରୀ ଲେଖାହୁଏ
ଯୋଗାଗ୍ନି ବଳରେ ଏକା ଛାଡ଼ିଯିବ କାୟେ ।
ଶ୍ରୀମୁଖ ବଚନ ଆଜ୍ଞା ଏରୂପରେ ଶୁଣି
କରପଦ୍ମ ଯୋଡ଼ିଣ ଯେ ପୁଚ୍ଛେ ପୁଣି ରାଣୀ ।
ବୋଇଲେକ ସାବଧାନେ ଶୁଣ ନାରାୟଣ
ବିଧବା ନୋହୁଣୁ ତେବେ ଛାଡ଼ିବି ମୋ ପ୍ରାଣ ।
ନାରାୟଣ ବୋଇଲେ ଗୋ ଏମନ୍ତ ନୁହଇ
ସ୍ୱାମୀ ନିମନ୍ତେ ତୋହର କଥାଏ କହଇ ।

ବଡଲୋକ ଜଣେ ସେହୁ ନୁହଇ କି ହେଲେ
କାହିଁପାଇଁ ଅମେଧ ସେ ହେବି ମରିଗଲେ ।
ପୁତ୍ର ହୋଇଣ ଜଣେ କେ ଥାନ୍ତା ଯେବେ ତାର
କରନ୍ତାଟି ଦଶକ୍ରିୟା କର୍ମ ସେ କୁମର ।
ବୁଝିଲେ ତାହାର ତୁହି ଅଟୁ ଅର୍ଦ୍ଧଅଙ୍ଗ
ତୁହି ପିଣ୍ଡଦାନ ଦେଲେ ବସିବ ସେ ସ୍ୱର୍ଗ ।
ତହିଁ ଉତ୍ତାରୁ ତୁହି ଯେ ଏକାଦଶ ଦିନେ
ଆନନ୍ଦମନା ହୋଇଣ ଯିବୁ ନିଜସ୍ଥାନେ ।
ପୁଷ୍ପକ ବିମାନେ ବସି ମୋ ବୈକୁଣ୍ଠଯିବୁ
ଏହିରୂପେ ଆଜ୍ଞା ଦେଇ ଗଲେ ମହାପ୍ରଭୁ ।
ଶ୍ରୀନୃସିଂହ ଚରଣରେ ସଦା ମୋର ଆଶ
ଦିନରାତି ଭଜେ ହରି ପୀତାମ୍ବର ଦାଶ ।



## ସୈନ୍ୟମାନଙ୍କ ସହିତ ମୁରାସୁରର ଯୁଦ୍ଧଯାତ୍ରା

ଏଥୁଅନନ୍ତରେ ରାତ୍ରି ହେଲା ଆସି ଶେଷ
ଦେବଆଳମାନଙ୍କରେ ଶୁଭେ ଶଙ୍ଖ ଘୋଷ ।
ଶଯ୍ୟା ତେଜି ମୁରାସୁର ଉଠେ ଧାଡିକାରେ
ମହାଦେଣମାନେ ଉଠି ଗଲେ ଯେଝାପୁରେ ।
ଯାବତ ନିତ୍ୟକର୍ମ ସାରିଣ ଦୈତ୍ୟରାଜା
ଦ୍ୱାରୀକି ଆଜ୍ଞା ଦେଲାକ ଟମକ ତୁ ବଜା ।
ବଦରିକା ଦେଶଯାଏ ଯିବା ଯୁଦ୍ଧକରି
କୃଷ୍ଣବଲ୍ଲଭ ପୁତ୍ରଙ୍କୁ ଆସିବା ଯେ ମାରି ।
ଏହା ଶୁଣି ଦ୍ୱାରପାଳ ଟମକିଆ ରାଇ
ବୋଇଲାକ ଟମକକୁ ବଜା ବେଗେ ରହି ।
ଶୁଣି ଟମକିଆ ବେଗେ ବଜାଏ ଯେ ବାଦ୍ୟ
ତିନିପୁରଯାଏ କମ୍ପିଗଲା ସେ ଶବଦ ।
ସେହି ଟମକର ନାମ ବୈରି ଅନ୍ତକାରି
ଶୁଣିଲେ ତରସ୍ତ ହୋଇ ଯାଆନ୍ତି ବଇରୀ ।
କନକାବତୀ ନଗରେ ଥିଲେ ଯେତେ ଥାଟ
ସଜ ହୋଇ ଆସି କଲେ ରାଜାଙ୍କୁ ସେ ଭେଟ ।
ଦରଶନମାନ କରି ଅଗ୍ରେ ହେଲେ ଉଭା
ସଭା ପୂର୍ଣ୍ଣ ହୋଇବାରୁ ଦିଶିଲାକ ଶୋଭା ।
ମୁରାସୁର ବୋଇଲାକ ସର୍ବେ ଆସିଲକି
ଗଲେ ନରସିଂହ ସଙ୍ଗେ ଯୁଝିବା ନାହିଁ କି ।
ବୁଝିବା କିରୂପେ ମୋର ଆଗୁ ଯିବ ବଞ୍ଚି
ଦାରୁଣ ପ୍ରାୟ ସେ ମୋତେ ମନରେ ପାଞ୍ଚିଛି ।
ଦାରୁଣ ଭାଇକି ମୋର ମାରେ କରି କୂଟ
ସେହିରୂପେ ପାଞ୍ଚିଅଛି ବୁଝିବା ତା ଆଣ୍ଟ ।
ସତରଲକ୍ଷ ପୁତ୍ର ମୋ ମାରିଗଲା କୂଟେ
ସେହିରୂପେ ପାଞ୍ଚିଅଛି ଯୁଝିବା ନା ଆଣ୍ଟେ ।
ସତରଲକ୍ଷ ପୁତ୍ର ମୋ ମରିଗଲା ପ୍ରାୟ
ସେହିରୂପେ ମୋତେ ବୁଝିଅଛି ଖଗରାୟ ।
ତଥାପି ଦେବତା ମୋତେ କୂଟ ବିଚାରିଲେ
ବଲ୍ଲଭର ଘରେ ଆଣି ବିଷ୍ଣୁ ଜାତ କଲେ ।
ସବଂଶଯାକ ମୋର ଯେ ବ୍ୟର୍ଥେ ଗଲେ ମାରି
ସୁବିଜ୍ଞ ମନ୍ତ୍ରୀ ମରିଲା ବିଷ୍ଣୁ ଧ୍ୟାନ କରି ।
ସେନାପତିମାନଙ୍କର କହିବି କି ଗୁଣ
ସେମାନେ ତ ମରିଗଲେ ଫେରି ନ ଆସିଣ ।
ଏତେ ବୋଲି ମୁରାସୁର ସିଂହାସନ ଛାଡ଼ି
ସୁବର୍ଣ୍ଣ ପୀଢ଼ା ଉପରେ ବସେ ନିଶମୋଡ଼ି ।
ମୁକୁନ୍ଦା ପ୍ରଲମ୍ବା ଯେ ବିରାଡି ମୂଢ଼ାସୁର
ମୁରକୁ ଦର୍ଶନ କଲେ ଯୋଡ଼ି ବେନିକର ।
ରାଜା ବୋଇଲାକ ତୁମ୍ଭେ ଶୁଣ ଚାରିସେନା
ତୁମ୍ଭର ଯେ କରାମତି ସବୁ ମୋତେ ଜଣା ।
ପରବତ ଟାଳିପାର ଅବ୍‌ଧି ଶୋଷି ପାର
ତୁମ୍ଭ ପ୍ରାୟ ଯୋଦ୍ଧା କେ ନ ମିଳେ ତିନିପୁର ।
ବଳରେ ବଡ଼ ବଳିଷ୍ଠ ଅଟ ତୁମ୍ଭେ ଚାରି
ତୁମ୍ଭ ଆଗେ ଇନ୍ଦ୍ର ତ ନ ପାରେ ଯୁଦ୍ଧକରି ।
ଷୋଳପଦ୍ମ ସୈନ୍ୟ ମୋର ଛନ୍ତି ଏବେ ଥାଟ
ଚାରିଭାଗ କରି ତୁମ୍ଭେ ଚାରିଜଣ ବାଣ୍ଟ ।
ଷୋଳପଦ୍ମଯାଏ ମୋର ଛନ୍ତି ମତ୍ତହସ୍ତୀ
ଗଜ ବାହନରେ ବସ ହୋଇ ବୀରମୂର୍ତ୍ତି ।
ମହାସମର ଘେନିଣ ସର୍ବେ ହୁଅ ସଜ
ବଦ୍ରିକାନଗର ଖଣ୍ଡ ଭାଙ୍ଗିଦେବା ଆଜ ।
ସ୍ରୋତେ ଫିଟା ଡଙ୍ଗା ପ୍ରାୟ ସର୍ବେ ଚଳିଯାନ୍ତୁ
ପୁରୁଷ ହୋଇ ଜଣେ କେ ନଗ୍ରେ ନ ରହନ୍ତୁ ।
କେବଳ ତା ଦ୍ୱାରୀମାନେ ଥାନ୍ତି ଦ୍ୱାର ଜଗି
ମୁଁ ନ ଥିଲେ ପୁରେ ମୋ ନ ପାରେ ପଶି ଯୋଗୀ ।
ମାଛି ଉଡ଼ିଗଲେ ଯହିଁ ହେବ ନବଖଣ୍ଡ
ମୋ ନାମ ମହିମା ଏଡ଼େ ଅଟଇ ପ୍ରଚଣ୍ଡ ।
ଆଜି ଗଲେ କାଲିକି ତ ଆସିବା ବାହାରି
କୃଷ୍ଣବଲ୍ଲଭ ପୁଅଙ୍କୁ ପେଷି ଯମପୁରୀ ।
ବଦ୍ରିକାନଗର ଟାଳି ଗଙ୍ଗାରେ ଫିଙ୍ଗିବା
ନଗ୍ରଲୋକଙ୍କୁ ମାରିଣ ଅନଳେ ପୋଡ଼ିବା ।
ଚାରିପଦ୍ମ ସୈନ୍ୟ ଯାନ୍ତୁ ସେନାପତି ପଣେ
ଚାରିପଦ୍ମ ଅଶ୍ୱ ଚଢ଼ି ଚାଲ ଜଣେ ଜଣେ ।
ଚାରିପଦ୍ମ କରିବର ମଣ୍ଡି କରି ଆଗେ
ଚାରିପଦ୍ମ ରଥ ଚଢ଼ି ଚାଲ ଯେଝା ମାର୍ଗେ ।

ଘଣ୍ଟି ଘାଗୁଡ଼ିମାନଙ୍କୁ ହସ୍ତୀ ଅଙ୍ଗେ ମଣ୍ଡି
ଚାରିପାଖେ ବେଢ଼ିଯାଇଁ ବଦରିକା ଖଣ୍ଡି।
ରାଜାବାକ୍ୟେ ହସ୍ତୀଯାକ ମଣ୍ଡିଲେ ସୁବର୍ଣ୍ଣେ
ଘଣ୍ଟି ଘଣ୍ଟା ଘାଗୁଡ଼ି ଯେ ଖଞ୍ଜିଲେ ଯତନେ।
ରଙ୍ଗ ଶୁକ୍ଳ କଳାବର୍ଣ୍ଣେ ଚିରାଳ ଉଡ଼ଇ
ଚିରାଳ ଛାଇରେ ସୂର୍ଯ୍ୟ ତେଜ ନ ପଡ଼ଇ।
ସୁବର୍ଣ୍ଣର ଛତିମାନ ଟେକି ହସ୍ତୀପରେ
ଷୋଳପଦ୍ମଯାଏ ଛତ୍ର ହୋଇଲା ଲେଖାରେ।
ମୁକୁତା ହୀରା ଝରା ଯେ ସ୍ୱର୍ଣ୍ଣ କେରା କେରା
ଛତ୍ର ଚାରିପାଖେ ଲମ୍ବେ ଦିଶେ ହୋଇ ତୋରା।
ସୁବର୍ଣ୍ଣ ସୂତାରେ ଗୁନ୍ଥି ମୁକ୍ତା ପୁଞ୍ଜି ପୁଞ୍ଜି
ଛତ୍ର ଚୌପାଶେ ଲମ୍ବାଇ ଅଛନ୍ତି ସେ ଖଞ୍ଜି।
ହୀରା ନୀଳା ମୁକୁତା ଯେ ମାଣିକ୍ୟ ବୈଦୁର୍ଯ୍ୟ
ଛତ୍ର ମଣ୍ଡି କରି ମଣ୍ଡି ଦେଲେ ଅଶ୍ୱଗଜ।
ନୀଳବର୍ଣ୍ଣ ଶୁକ୍ଳ କଳାବର୍ଣ୍ଣ ରଙ୍ଗଶାଢ଼ୀ
ପଦ୍ମ ପୁଷ୍ପ ପ୍ରାୟ ଗଢ଼ି କାଢ଼ିଲେ ପାଖୁଡ଼ି।
ସାକ୍ଷାତରେ ପଦ୍ମପ୍ରାୟ ଦିଶେ ଫୁଟି ପ୍ରଭା
କି ଉପମା ଦେବେ ଏଡ଼େ ପ୍ରକାଶଇ ଶୋଭା।
ଷୋଳପଦ୍ମ ଗଜକୁ ଯେ ମଣ୍ଡଣି କରିଲେ
ସମୁଦ୍ରେ ବୋଇତେ ପ୍ରାୟ ସମସ୍ତେ ପଶିଲେ।
ଷୋଳପଦ୍ମ ଯାଏ ହୀରା କମରେ ନିର୍ମାଣି
ଦେଲେ ହସ୍ତୀ କପୋଳରେ ଚିତା ପ୍ରାୟେ ଆଣି।
ହୀରାମୟ ହେତୁ ପୃଥ୍ୱୀ ଦିଶେ ତେଜୋମୟ
ଏରୂପେ ବେଶ କରି କେ ନାହିଁ ନା ପରାୟ।
କେଡ଼େ କେଡ଼େ ରାଜାମାନେ ସଂସାରରେଥିଲେ
ଏଡ଼େସମ୍ଭାରେ ବାହାରି ନାହିଁ ଜଣେ ହେଲେ।
ଖଣ୍ଡାଶାବେଳୀ ଚଢ଼କ ଛୁରୀ ବଜ୍ରବାଣ
ବାଟୁଳି କାଣ୍ଡ ଗୁଳିରେ ପୂରାଇଣ ତୂଣ।
ଖଡ୍‌ଗ ଗଦା ଚକ୍ର ପୁଣି ମହା ବଜ୍ରଶର
ବ୍ରହ୍ମଶର ରୁଦ୍ରଶର କାଳ ମୁଦ୍‌ଗର।
ମାଲବିନ୍ଧାଣ ଆଦି ଯେ ଧରଣୀ କୁଳିଶ
କାଳପାଶ ଯମପାଶ ଆଉ ନାଗପାଶ।
ମନଭେଦୀ ଶବ୍ଦଭେଦୀ ଦୃଷ୍ଟିଭେଦୀ ଯାଏ
ମଞ୍ଚଭେଦୀ ଶୂନ୍ୟଭେଦୀ ପାତାଳ ଯେ ଲୟେ
ବାବଲ ପାଶୁପତ ଯେ ଏକଘନୀ ଶର
କାଳଚକ୍ର ପର୍ଶୁ ଚକ୍ର ଧଇଲେ ଅସୁର।
କାଇକାଛି ଲାଙ୍ଗଟାକୁ ପିନ୍ଧି ହେଲେ ସଜ
ରାଜା ଛାମୁରେ ଉଭାରି ରହିଲେ ଦନୁଜ।
ତାହା ଦେଖି ମୁରାସୁର କଲା ବଡ଼ ଶ୍ରଦ୍ଧା
ବୋଇଲା ଏ ସମୟକୁ ଥିଲେ ଭଲ ଯୋଦ୍ଧା।

କାକୋଳା ଅସୁର ଆଦି ଯେତେ ସୈନ୍ୟଥିଲେ
ଏଡ଼େ ସମ୍ଭାର କାହାର ଦେଖିନାହିଁ ଭଲେ।
ଏବେ ମୋତେ ବେନି ତୁମ୍ଭେ ସାହାପକ୍ଷ ହୋଇ
କୃଷ୍ଣବଲ୍ଲଭ ପୁଅଙ୍କୁ ମାରି ଆସ ଯାଇଁ।
ମୁକୁନ୍ଦା ବରଜା ମୂଢ଼ା ପ୍ରଳମ୍ବା ଅସୁର
ବେଢ଼ିବ ବଦ୍ରିକାନଗ୍ର ଯାଇ ଗଡ଼ଦ୍ୱାର।
କବାଟ ନ ଫିଟୁଣୁ ଯେ ଥିବ ବୁଢ଼ାହୋଇ
ପାହାନ୍ତି ଅବକାଶରେ ପଶିବ ଧସାଇ।
ଯେ ଆଗ ପଡ଼ିବ ତାକୁ ମାରି ପକାଇବ
ବଳ ନ ପାଇଲେ ଆସି ମୋତେ ବାର୍ତ୍ତାଦେବ।
ମୁଁ ତୁମ୍ଭର ପଛେ ଥିବି ହୋଇ ପଛିଆଣି
ସଙ୍ଗେ ଥିବେ ବଳ ମୋର ବାଇଶ କ୍ଷଉଣୀ।
ଲକ୍ଷେକ ବିମଳ ଥିବ ଲକ୍ଷେ ପାଟଛତ୍ରୀ
ଲକ୍ଷେକ ଆଲମ୍ବ ଉଡୁଥିବ ଚଉକତି।
ଲକ୍ଷେକ ମର୍ଦ୍ଦଳ ଘଣ୍ଟା ବାଜୁଥିବ ଆଗେ
ଲକ୍ଷେ ସ୍ତିରୀ ଗାଉଥିବେ ଯେ ଗାନ୍ଧାର ରାଗେ।
ଲକ୍ଷେକ ଦାସୀ ସେବାରେ ସଦା ଥିବେ ଲାଗି
ଲକ୍ଷେକ ବୀର କାହାଳୀ ବାଜୁଥିବ ବେଗି।
ଲକ୍ଷେକ ଶଙ୍ଖ ଲକ୍ଷେକ ମହୁରୀ ବାଜିବ
ଲକ୍ଷେକ ଟମକ ବାଦ୍ୟ ଆଗେ ବାଜୁଥିବ।
ଲକ୍ଷେକ ଘୁମୁରା ବାଜୁଥିବ ଲକ୍ଷେ ଢୋଲ
ଲକ୍ଷେକ ଦମାଲୁ ବାଜୁଥିବ ଦଳ ଦଳ।
ଲକ୍ଷେ ସ୍ୱର୍ଣ୍ଣବଂଶୀ ଲକ୍ଷେ ବାଜିବ ଘୁମୁରା
ଲକ୍ଷେକ ଡିଣ୍ଡିମ ଲକ୍ଷେ ବାଜିବ ନାଗରା।
ଯୁଦ୍ଧକୁ ଯାଇଣ ମୋର ମଲେ ଯେତେ ସୈନ୍ୟ
ଲକ୍ଷେକ ପଦ୍ମ ଯାଏ ସେ ହୋଇଲେ ଲିଖନ।
ଏବେ ତ ସୈନ୍ୟ ମୋହର ଛନ୍ତି କେତେ ପୂରି
ଦଶ ଯୂଣ ମାଡ଼ି ଚଳିଯିବେ ବସୁନ୍ଧରୀ।
ବାଟରେ ଚାଲନ୍ତେ ବଣ ଡିଙ୍ଗର ଭାଙ୍ଗିବ
ନିଃଶ୍ୱାସର ଘାତେ ବୃକ୍ଷେ ଭାଙ୍ଗିଣ ପଡ଼ିବ।
ବଲ୍ଲଭ ପୁତ୍ରେ ନାହାନ୍ତି ସଇନ୍ୟ ଅରଜି
ଥୋକାଏ ବ୍ରାହ୍ମଣ ଘେନି ଆସିଛନ୍ତି ଯୁଝି।
ଶତେ ବା ବିଶାଶତେ ସେ ଥିବେ ସିନା ଆସି
ନିପ୍ରୋହି ମାର ତାହାଙ୍କୁ ରଣେ ତୁମ୍ଭେ ପଶି।
ସୁଲକ୍ଷେ ସେ ବୋଲି ଦେଲା ସମସ୍ତଙ୍କୁ ଆଜ୍ଞା
ଶତ୍ରୁଙ୍କୁ ମାରିଣ ସେ ଯେ ରଖିବେ ପ୍ରତିଜ୍ଞା।
ଏତେ ବୋଲି ମୁରାସୁର ଚିନ୍ତେ ରଘୁବର
ମିଳିଲା ବିଜୟାରଥ ଆସି ତତପର।
ସୂର୍ଯ୍ୟଜ୍ୟୋତି ପ୍ରାୟେ ଦିଶେ ତାହାର ସ୍ୱରୂପ
ପୃଥିବୀ ଆଲୋକମୟ ପ୍ରକାଶଇ ରୂପ।

ସ୍ୱର୍ଗଦେବତା ଶସ୍ତ୍ରରେ ମଣ୍ଡଣି ଯେ ହୋଇ
ସଂସାର ଜିଣି ପାରଇ ତହିଁ ଯେ ବସଇ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳକୁ କ୍ଷଣେ ପାରେ ବୁଲି
ତହିଁରେ ବସିଥିଲେ ନ ଲାଗେ ଶତ୍ରୁଜାଲି।
ଆଚଳକାଳେ ପୁଣି ସେ ରଥେ ବସିଥିଲେ
ତେତେବେଳେ ଭୟ ତାକୁ ନ ଲାଗେ ଯୁଝିଲେ।
ତେଣୁ ସେହି ରଥ ଚିନ୍ତି ବସେ ମୁରଦୈତ୍ୟ
ଦିଗ ବିଦ୍ଦିକକଲେ ବସି ବୁଲଇ ଜଗତ।
ପଞ୍ଚମ ଖଣ୍ଡରେ ବସି ଯୁଦ୍ଧକୁ ସେ ଗଲା
ଆନନ୍ଦବନ ଟାଳିଣ ସ୍ୱର୍ଗେ ଫିଙ୍ଗି ଦେଲା।
ତତ୍କାଳେ ସିଦ୍ଧି କରିଣ ଆସିଲା ବାହାରି
ଏହାର ପ୍ରାୟ ରଥ ନ ମିଳେ ତିନିପୁରୀ।
ଚିନ୍ତିଲାକ୍ଷଣି ଆସିଣ ମିଳେ ରହୁବର
ଶ୍ରୀ ନୃସିଂହ ଶରଣ ମୁଁ ବିପ୍ର ପୀତାମ୍ବର।



## ମୁରାସୁରର ଯୁଦ୍ଧଯାତ୍ରା

ବନ୍ଦଇ ଶ୍ରୀ ନରସିଂହ କମଳା ବିଳାସ
ନୃସିଂହ ଗ୍ରନ୍ଥର ପଦ ହେବ ମୋତେ ଦୃଶ୍ୟ।
ତବ ଆଜ୍ଞାରୁ ମୁଁ ପାରୁଅଛି ପଦ କରି
ପଦ୍ମକଳ୍ପ ପୁରାଣର ମହିମା ବିସ୍ତାରି।
ଏ ଗ୍ରନ୍ଥଯାକ ନାରଦ ସବୁ ଶୁଣିବାରୁ
ପ୍ରଚ୍ଛିନ୍ନ କରି ବିଧାତା କହେ ପୁରାଣରୁ।
ନାରଦ ଶୁଣିଣ ଅର୍ଥ ପରୀକ୍ଷିତ ଆଗେ
ପଦେ ନ ଛାଡ଼ି କହନ୍ତି ଶୁକ ଶାସ୍ତ୍ରମାର୍ଗେ।
ଅଶେଷ କୋଟି ବ୍ରହ୍ମାଣ୍ଡ ନୃସିଂହ ଠାକୁର
ମୁରର ସମାନ ଯୁଦ୍ଧ କରିବେ ଅପାର।
ନୃସିଂହ ପୁରାଣ ଏହା ଷଷ୍ଠଖଣ୍ଡ ବାଣୀ
ଧାତାଙ୍କ ମୁଖୁ ନାରଦ ଯାଇଛନ୍ତି ଶୁଣି।
ପ୍ରତି ପଦକେ ଅମୃତ ଅଟେ ଏହୁ ରସ
ଶୁଣେ କର୍ଣ୍ଣପଥେ ଯେହି ବଢ଼େ ତାର ବଂଶ।
ଏ ସଂସାରେ ଯେତେ ଲୋକ ବିଷ୍ଣୁ ଅଂଶେ ଜାତ
ତାହାଙ୍କୁ ପଣ୍ଡିତେ ବୋଲିଛନ୍ତି ଭାଗ୍ୟବନ୍ତ।
ଭାଗ୍ୟବନ୍ତ ଲୋକ ଏକା ପୁରାଣକୁ ଶୁଣେ
ଶ୍ରୀଜଗନ୍ନାଥଙ୍କ ସେବା କରେ ଅନୁକ୍ଷଣେ।
ପଦାର୍ଥ ସର୍ଜିବା ଲୋକ ଭାଗ୍ୟବନ୍ତ ନୋହି
ବିଷ୍ଣୁ ଭଜନ ଲୋକଙ୍କୁ ଭାଗ୍ୟବନ୍ତ କହି।
ଦେବ ଦୟା ଧର୍ମ ଯାର ଅଛଇ ସଂସାରେ
ସେହି ଭାଗ୍ୟବନ୍ତ ବୋଲି ବୋଲାଏ ଲୋକରେ।
ଭାଗ୍ୟବନ୍ତ ପ୍ରାଣୀ ଯେଉଁ ଗ୍ରାମ ମଧ୍ୟେ ଥାଇ
ସେ ଗ୍ରାମ-ଲୋକର ପୁଣ୍ୟ କହି ନ ହୁଅଇ।

ବୁଝିଲେ ତ ଦ୍ରବ୍ୟଯାକ ବିଷ୍ଣୁ ଭଣ୍ଡାରଟି
ଭାଗ୍ୟବନ୍ତ ଲୋକ ବ୍ୟୟ କରେ ତାହା ବାଣ୍ଟି।
ଆସିଲା ବେଳରେ ମାତା ଗର୍ଭୁ ଆସେ ଏକା
ଗଲାବେଳେ ଧରିଥାଏ ବହୁତ ସେ ଟଙ୍କା।
ଶ୍ରୀବିଷ୍ଣୁଙ୍କୁ ଭଜୁଥିଲେ ସଙ୍ଗେ ତାହା ନିଏ
ଏଣୁ ତାଙ୍କୁ ଭାଗ୍ୟବନ୍ତ ବୋଲି ସର୍ବଦାଏ।
ମହା ପୁଣ୍ୟଗ୍ରନ୍ଥ ଏହି ନୃସିଂହ ପୁରାଣ
ମୁରାସୁର ଯୁଦ୍ଧ ଏବେ ପରିମାଣି ଶୁଣ।
ଚାରିଭାଗ କରିଣ ସେ ସୈନ୍ୟ ଦେଲା ବାଣ୍ଟି
ଚଳିଗଲେ ଚାରିସେନା ପୃଥ୍ୱୀଯାକ ଘୋଟି।
ଲେଖାରେ ଯେ ଚାରିପଦ୍ମ ଜଣଙ୍କର ସୈନ୍ୟ
ଷୋଳପଦ୍ମ ସୈନ୍ୟ ଉଠି ଚଳିଲେ ବହନ।
ଘୁମୁ ଘୁମୁ ହୋଇ ଆଗେ ବାଜଇ ଘୁମୁରା
ଢୋଲ ଦମା ଟମକ ଯେ ଶୁଭେ ଆଗେ ତ୍ୱରା।
ଶଙ୍ଖ ଘିଡ଼ି ଘିଡ଼ି ଦୁଲୁ ଦୁଲୁ ଯେ ଦମାଲୁ
ମେଦିନୀ କମ୍ପୁ ଅଛଇ ଦୈତ୍ୟବଳ ଚାଲୁଁ।
କନକାବତୀ ନଗରେ ଯେତେ ସ୍ତିରୀ ଥିଲେ
ମୁରାସୁର ଥାଟ ଦେଖି ଚମତ୍କାର ହେଲେ।
ବୋଇଲେ ଏତେ ସୈନ୍ୟ ଏ ରଖିଥିଲା କାହିଁ
ଗଣ୍ଡମାଳା ପୋକ ପ୍ରାୟ ବାହାରିଲେ ଏହି।
କେତେ ଅଶ୍ୱ କେତେ ହସ୍ତୀ କେତେ ସୈନ୍ୟଅଛି
କେତେ ଆବା ମରିଛନ୍ତି କେ ତାହା ଗଣିଛି।
ଭଲା ସେ ନୃସିଂହ ପ୍ରଭୁ ପକାନ୍ତି ଯେ ମାରି
ଗଲା ଲୋକ ଆସୁନାହିଁ ଗୋଟାଏ ଉବୁରି।
ବିଷ୍ଣୁ ନୋହିଲେ ଆନ କେ ତୋତେ ସଂହାରନ୍ତା
ଦେବତା ହୋଇଲେ ଦେଖି ଡରିଣ ପଳାନ୍ତା।
ମୁର ଦୈତ୍ୟ ପ୍ରାୟ ରାଜା ନାହିଁ କେ ତ୍ରିପୁରେ
ଏଡ଼େହେଁ ପ୍ରତିଜ୍ଞାବନ୍ତ ହେବ କେ ସଂସାରେ।
ଆଜିଠାରୁ ଯେତେ ରାଜା ଥିଲେ ପୂର୍ବକାଳେ
ଏଡ଼େ ପ୍ରତିଜ୍ଞା କରି କେ ନାହିଁ ରବିତଳେ।
ଈଶ୍ୱର ବର ପାଇ ଏ ଏତେ ଭୋଗ କଲା
ବ୍ରହ୍ମାଙ୍କ ବୀର୍ଯ୍ୟରୁ ପୁଣି ଜନ୍ମିଛି ଏ ଭଲା।
ମନ୍ଦଲଗ୍ନ ସକାଶରୁ ହେଲା ଦୈତ୍ୟବୁଦ୍ଧି
ଦୁଷ୍ଟପଣରୁ ଗଲା ଏ ତିନିପୁର ସାଧି।
ତଥାପି ଦୁଷ୍ଟଲୋକକୁ ପୃଥ୍ୱୀ ନ ସହଇ
ବୁଦ୍ଧିବଳ ପରାୟ ସେ କାଳେ ଛିଡ଼ିଯାଇ।
ଲୋକ ଯାହାକୁ ଡରନ୍ତି ଚିତ୍ତେ ଅନୁକ୍ଷଣେ
ଅକାଳ ଚଢ଼କ ତାକୁ ପଡ଼େ ତତକ୍ଷଣେ।
ଏ କଥା ଗୋଟିକ ଧ୍ରୁବ ଅଟଇ ପ୍ରମାଣ
ସବୁରି ଅସନ୍ତୁଷ୍ଟରେ ଲଭେ ମୃତ୍ୟୁ ଜାଣ।

ବଡ଼ପଣ ପାଇ ଭଲ ମନ୍ଦ ନ ଚିହ୍ନଇ
ବୟସ ମତ୍ତଗର୍ବରେ ପ୍ରାଣୀକି ଦଣ୍ଡଇ ।
ଯାହାକୁ ସଂସାରେ ଡରୁଥାନ୍ତି ଜନପୁଟ
ତାହାକୁ ନିଶ୍ଚେଁ ପ୍ରମାଦ ପଡ଼ଇ ସଙ୍କଟ ।
ଏହିପରି ନଗ୍ରଲୋକେ ହୁନ୍ତି କୁହାକୁହି
ବୋଲନ୍ତି ବ୍ୟର୍ଥରେ ମୁର ଯାଏ ଯୁଦ୍ଧପାଇଁ ।
ନୃସିଂହ ପ୍ରଭୁ ଅଟନ୍ତି ଯେବଣ ଶ୍ରୀହରି
ଦୁଃଖୀ ଲୋକର ଆଗେ ସେ ଶୁଣନ୍ତି ଗୁହାରି ।
ସେ ପ୍ରଭୁ ପୁଣି ଆସିଣ ବଦରିକା ଦେଶେ
ମାନବକୁଳରେ ଜନ୍ମିଛନ୍ତି ଜଗଦୀଶେ ।
ସେ ପ୍ରଭୁଙ୍କୁ ଦେଖି ଏହୁ ସବୁବେଳେ ନିନ୍ଦି
କେସନେ ମାରିବି ବୋଲି ମରେ ହୋଇ ଧନ୍ଦି ।
ମାନବବିଷ୍ଣୁ ବୋଲିଣ କେବେ ମାନୁନାହିଁ
ଯୁଝୁ ଅଛି ବଳେ ପଶି ବିଷ୍ଣୁ ସଙ୍ଗେ ଯାଇ ।
ଦେଖୁ ଦେଖୁ ତେଡ଼େ ସଙ୍ଗସରି ଭାଇ ମଲା
ପୁତ୍ର ନାତି ସେନା ସୈନ୍ୟ ସବୁ କ୍ଷୟ ଗଲା ।
ସେହି କଥା ଜାଣୁ ଜାଣୁଟି କି ଏବେ ଦେଖ
ମୃତ୍ୟୁକୁ ଯାଉଅଛି ନ ମାନି ପଦ୍ମମୁଖ ।
ବୁଝିଲେ ତ ପ୍ରଭୁଙ୍କର ତିଳେ ଦୋଷ ନାହିଁ
ଏ ସିନା ସମର କରି ଯାଏ ବଳେ ଧାଇଁ ।
ବୁଝିଲେ ତ ମୁରାସୁର ନୁହଇ ଆୟତ୍ତ
ଦେବତାଙ୍କ ଭିଆଣ ଏ ଅଟେ ପୂର୍ବ ଉକ୍ତ ।
ମରିବା ଲୋକର ପୁଣି ସପ୍ତଦିନଠାରୁ
ସନ୍ନିପାତ ହୋଏ ବାତ ନିଜ ଶରୀରରୁ ।
ଅଳ୍ପ ଅଳ୍ପ ହୋଇ ସାତଦିନେ ବସେ ମାଡ଼ି
ସେହିଠାରୁ ପ୍ରାଣୀର ଯେ ନାଡ଼ୀ ଯାଏ ଛାଡ଼ି ।
ଏହା କେ ବୁଝିଣ କହି ନ ପାରେ ଭରସି
ମୁରକୁ ସନ୍ନିପାତ ଯେ ଘୋଟେ ଏବେ ଆସି ।
ମଦନାବତୀ ତାହାର କହେ କେତେ ବୋଧି
ଯାଉଅଛି ଯୁଦ୍ଧକୁ ଏ ବିଷ୍ଣୁ ନିନ୍ଦି ନିନ୍ଦି ।
ଏ ଅବା ମରିବ କି ସେ ଅବା ଯିବେ ମରି
ଏହି କଥା ବୁଝିବା ତ କାଲି ତଥ୍ୟକରି ।
ଏହିରୂପେ ନଗ୍ରଲୋକ ହୁନ୍ତେ କଥା ମାନ
କହିଲା ଚାର ଆସିଣ ରାଜା ସନ୍ନିଧାନ ।
ବୋଇଲାକ ସାବଧାନେ ଶୁଣ ନୃପମଣି
ତୁମ୍ଭର ଆଜ୍ଞାରେ ଥାଟ ଚଳିଲେ ଏକ୍ଷଣି ।
ତିନି ଯୋଜନ ପର୍ଯ୍ୟନ୍ତ ଗଲେଣି ବାହାରି
ବୀରମୂର୍ତ୍ତି ପ୍ରାୟେ ଚାଲି ଦେଖିଲି ସବୁରି ।
ଏହା ଶୁଣି ମୁରାସୁର କଲା ବଡ଼ ଶ୍ରଦ୍ଧା
ଆପଣେ ସଜ ହୋଇଣ ପିନ୍ଧେ ପାଟ ପିନ୍ଧା ।
ସୁବର୍ଣ୍ଣ ପୀଢ଼ାରେ ଯାଇଁ ବସେ ମୁରାସୁର
ହୀରାଝରି ପାଗ ଶିରେ ବାନ୍ଧେ ନୃପବର ।
ନବ ରତନ କ୍ରମରେ ପାତିଆ ସଜାଡ଼ି
ପାଗର ଚାରିପାଶରେ ବାନ୍ଧେ ତାକୁ ଭିଡ଼ି ।
ହୀରା ନୀଳା ମାଣିକ୍ୟରେ କନକ ପାଖୁଡ଼ି
ଦେହଯାକରେ ଭୂଷଣ ହେଲା ଅଙ୍ଗେ ଭିଡ଼ି ।
ବ୍ରହ୍ମଜାତିର ହୀରାରେ କମ ଯେତେ ଥିଲା
ସବୁ ଆଣି ଶରୀରରେ ଭୂଷଣ ହୋଇଲା ।
ଅଭେଦ କବଚ ଆଣି ଖଞ୍ଜି ଦେହଯାକେ
ସେ କମରେ ହୀରା ନୀଳା ମାଣିକ୍ୟ ଝଟକେ ।
କଣ୍ଠତଟେ ପଦ୍ମରାଗ ମାଣିକ୍ୟର ମାଳା
ହସ୍ତରେ ଧରିଣ ତାହା ଭୂଷଣ ହୋଇଲା ।
ଲଲାଟରେ କସ୍ତୁରୀର ତିଳକକୁ ଘେନି
ବାହୁରେ ବାହୁବନ୍ଧକୁ ଖଞ୍ଜେ କରେ ଆଣି ।
ପାଗ ଚାରିପାଶେ ଲମ୍ବେ ମୁକ୍ତା କେରା କେରା
ଅଷ୍ଟରତନ ମୁକୁଟ ବାନ୍ଧେ କରି ତ୍ୱରା ।
କରରେ ନବରତନ କଙ୍କଣ ଭରିଲା
କର୍ଣ୍ଣରେ କୁଣ୍ଡଳ ବେନି ନେଇ ଲମ୍ବାଇଲା ।
ହୃଦୟରେ ହୀରା ପଦ୍ମ ଲମ୍ବାଇଣ ପୁଣି
ସୂର୍ଯ୍ୟ ଶତେ ଜ୍ୟୋତି ତାର ପରକାଶେ ଠାଣି ।
ବାହୁରେ ବାହୁଟି ଖଞ୍ଜେ ଅଣ୍ଟାରେ ଯେ ସୂତା
ପୟରେ ତୋଡ଼ର ଲାଗି ହେଲା ଜଗଜ୍ଜିତା ।
ସଜ ହୁଅନ୍ତେ ରାଜାର ବାଜେ ଆଗେ ଶଙ୍ଖ
ହୁଳହୁଳି ଶବଦରେ କମ୍ପେ ପୁରଯାକ ।
ଦାଣ୍ଡଯାକେ ପୂର୍ଣ୍ଣକୁମ୍ଭ ସର୍ବଦ୍ୱାରେ ଅଛି
ନକୁଳାଦି ରାଜହଂସ ଶଙ୍ଖଚିଲ ପକ୍ଷୀ ।
ଶ୍ୱେତ ଚାମରମାନ ଯେ ଉଡ଼େ ଚଉକତି
ବିଦ୍ୱଜ୍ଜନମାନେ ଶୁଭ ମଙ୍ଗଳ ବାଞ୍ଛନ୍ତି ।
ଦେବାର୍ଚ୍ଚନ ସାରି ରାଜା ବସିଲା ସଭାରେ
ଆଶୀର୍ବାଦ କରି ବିପ୍ରେ ଦ୍ୟନ୍ତି ଅର୍ଘ୍ୟ ଶିରେ ।
ପାଞ୍ଜି ଦେଖି ଜଉତିଷେ କହନ୍ତି ଲଗନ
ଆଗରେ ଶଙ୍ଖ ମହୁରି ବାଜେ ଘନ ଘନ ।
ହସି ପୁଣି ମୁରାସୁର ଉଠି ଉଭାହେଲା
ନାସା ଅଗ୍ରକୁ ଚାହିଁଣ ନିଃଶ୍ୱାସ ବାରିଲା ।
ପାଞ୍ଚିଲା ଦୂରକୁ ଗଲେ ଚନ୍ଦ୍ର ହୋଏ ଜୟେ
ଏହି କଥା ମୋତେ କହିଅଛନ୍ତି ଧାତାଏ ।
ନିକଟକୁ ଗଲେ ସୂର୍ଯ୍ୟବେଳେ ହୁଏ ସିଦ୍ଧି
ଏ କଥା ନିଶ୍ଚେଁ ପ୍ରମାଣ ଅଟେ ଯୋଗବିଧି ।
ବାର ଲଗ୍ନ ବୁଝି ପରବାସ କରିଯିବ
ତେବେ ସେ ସଫଳ ହୋଇ ଗୃହକୁ ଆସିବ ।

ଏରୂପେ ମନରେ ପାଞ୍ଚି ରାଜା ମୁରାସୁର
ବିଜୟା ରଥରେ ଯାଇଁ ବସିଲା ଉପର।
ଶୂନ୍ୟେ ଦେବଗଣେ ତାକୁ ଚାହୁଁଥିଲେ ଗୁପ୍ତେ
ମୁରର ସମ୍ଭାର ଦେଖି ବିଚାରନ୍ତି ଚିତ୍ତେ।
ବୋଲନ୍ତି ପୂର୍ବରେ ଯେତେ ଦିଗ୍‌ବିଜୟ କଲା
ସେ କି ରୂପରେ ଲେଉଟି ଏବେ ସଜହେଲା।
ଏହାର ନିମନ୍ତେ ସିନା ଶ୍ରୀନୃସିଂହ ପ୍ରଭୁ
ଅବତାର ହେଲେ ଆସି ଭଗବତୀ ଗର୍ଭୁ।
ଏ ମହା ଦୁଷ୍ଟ ଦୈତ୍ୟକୁ ସଂହାରିବା ପାଇଁ
ବଦ୍ରିକାନଗରେ ପ୍ରଭୁ ଛନ୍ତି ରାଜାହୋଇ।
ଏହା ସମ୍ଭାର ଦେଖିଣ ହାରିଯିବେ ଯେବେ
ସ୍ୱର୍ଗମର୍ତ୍ତ୍ୟ ପାତାଳ ଏ ନ ରଖିବ ତେବେ।
ବୁଝିଲେ ଅସୁରେ ବଡ଼ ମାୟାବି ଅଟନ୍ତି
କପଟରେ ଯୁଦ୍ଧକରି ତ୍ରିଜୀବୀ ନୁହନ୍ତି।
ବୁଝିଲେ ନୃସିଂହ ମହାପ୍ରଭୁ ସତ୍ୟବ୍ରହ୍ମ
ମୁରାସୁର ନିମନ୍ତେ ସେ ହୋଇଛନ୍ତି ଜନ୍ମ।
ତାଙ୍କ ଆଗେ କୂଟ କରୁଥାନ୍ତି ଯେତେ ଲୋକ
ସେ କଥା କାଳେ ଜାଣନ୍ତି ପ୍ରଭୁ ପୁଣ୍ୟଶ୍ଳୋକ।
ନିଶ୍ଚେ ନୃସିଂହଙ୍କ ହାତେ ମରିବଟି ମୁର
ଏ କଥା ବିଧାତା ଲେଖିଅଛନ୍ତି ନିକର।
ଏହିରୂପେ ମନେ ପାଞ୍ଚି ରହିଲେ ଅମରେ
ମୁରାସୁର କଥା ଶୁଣ ଏଥୁ ଅନନ୍ତରେ।
ଯାଇ ବିଜୟା ରଥରେ ଆପେ ବିଜେ କଲା
ଲକ୍ଷକୋଟି ଅଶ୍ୱ ନେଇ ତହିଁରେ ଯୋଚିଲା।
ଆଗେ ଲକ୍ଷ ଲକ୍ଷ ଶଙ୍ଖ ବାଜେ ଅପ୍ରମିତ
ଚଳିଯାଏ ଧୀରେ ଧୀରେ ବିଜୟା ଯେ ରଥ।
ଗାନ୍ଧାରେ ଗୀତ ଗାଆନ୍ତି ଲକ୍ଷ ଲକ୍ଷ ସ୍ତିରୀ
ଲକ୍ଷେକ ଟମକ ଲକ୍ଷେ ବାଜଇ ମହୁରୀ।
ଧରିଅଛି ବାମକରେ ଦୃଢ଼େ ବଜ୍ର ଧନୁ
ବର ଦେଲାକାଳେ ଦେଇଥିଲେକ କୃଶାନୁ।
ସେ ଧରିଥିଲେ ହସ୍ତରେ ସୃଷ୍ଟି ପାରେ ଜିଣି
ଦଶଦିଗପାଳ ହାରି ପଳାନ୍ତି ସେକ୍ଷଣି।
ଦିଗବିଜେ କାଳରେ ସେ ଧନୁ ଧରିଥିଲା
ସପତ ଦ୍ୱୀପ ଜିଣିଣ ଶାକଲ୍ୟକୁ ଗଲା।
କେଶରୀ ରାଜାଙ୍କ ଲାଖ ବିନ୍ଧିବାରବେଳେ
ମଦନାବତୀକୁ ଜିଣି ଆଣିଲା ତତ୍କାଳେ।
ଏହି ଧନୁକୁ ଧରିଣ ଟାଳେ ମେରୁଗିରି
ଶୁକ୍ରମୁନି ଥିବାରୁ ଯେ ରଖିଲେ ନିବାରି।
ଏହି ଧନୁକୁ ଧରିଣ ସ୍ୱର୍ଗେ ଯୁଝିଥିଲା
ଇନ୍ଦ୍ରକୁ ଧରି ଆଣିଣ ବେଢ଼ି ପକାଇଲା।
ବନ୍ଦିରେ ନେଇ ରଖିଲା ତାଙ୍କୁ ତେରଦିନି
ସେହି ଧନୁ ଧରି ଏବେ ଯାଏ ରଥେ ଘେନି।
ମୁରାସୁର ଚଳନ୍ତେ ଯେ କମ୍ପେ ପୃଥ୍ୱୀଦେବୀ
ଦଲଦଲ ହୋଇ ହାତେ ପଶିଯାଏ ଭୁବି।
ନଟ ଭାଟ କଏବାର ଗଲେ ଆଗେ ଚାଲି
ଉତ୍ତରକୁ ମୁଖକରି ଚାଲେ ରଥ ପେଲି।
ରଥର ଗର୍ଜନ ଶୁଣି କମ୍ପନ୍ତି ତ୍ରିଦଶ
ଘିଡ଼ିଘିଡ଼ି ଘୁମୁଘୁମୁ ବାଜେ ବାଦ୍ୟ ଘୋଷ।
ମାଳଶ୍ରୀ ରାଗେ ମହୁରୀ ବାଜେ ଆଗେ ପଛେ
ଥାଟ ଚାଲନ୍ତେଣ ରେଣୁ ଉଡ଼େ ସ୍ୱର୍ଗ ମଞ୍ଚେ।
ସହସ୍ରେକ ପନ୍ତି ହୋଇ ବାଜେ ବାଦ୍ୟଧାଡ଼ି
ଶୁଭେ ନିର୍ଘାତ ପରାୟ ଯେହ୍ନେ ଘଡ଼ଘଡ଼ି।
ଧାଡ଼ି ଧାଡ଼ି ପନ୍ତି ପନ୍ତି ଦଲଦଲ ହୋଇ
ବାଜଇ ଯେ ନାନାବାଦ୍ୟ ସୃଷ୍ଟି ଚମକଇ।
କନକାବତୀରେ ଏକାଦଶ କୋଡ଼ି ଦାଣ୍ଡ
ବାଇଶି କୋଡ଼ି ପର୍ଯ୍ୟନ୍ତ ବସେ ସାହି ମୁଣ୍ଡ।
ବିଶାଶଏ ଯୋଜନ ସେ ଅଟଇ କଟକ
ଦାଣ୍ଡେ ଚାଲନ୍ତି ଏଗାର କୋଟି ଥାଟଯାକ।
ରାଜାର ବିଜୟ ଦେଖି ନଗରର ସ୍ତିରୀ
ଦିଅନ୍ତି ହୁଳହୁଳି ସେ ଆଗରେ ଉଭାରି।
ଲକ୍ଷେକ ବୀର କାହାଳି ଶୁଭେ ଘନଘନ
ଉତ୍ତର ଦ୍ୱାରେ ବାହାର ହୋଇଲା ରାଜନ।
ଏଥୁ ଅନନ୍ତରେ ବାଣୀ ଶୁଣ ହେ ନାରଦ
ଶୂନ୍ୟରେ ଥାଇଣ ତାହା ଦେଖି ଦେବବୃନ୍ଦ।
ମୁରାସୁର ସୈନ୍ୟ ଦେଖି ତ୍ରସ୍ତ ବଡ଼ ହେଲେ
ସ୍ୱର୍ଗପୁରକୁ ବୋଲିଣ ତତ୍କାଳେ ଧାଇଁଲେ।
ସୁଧର୍ମା ସଭାରେ ଯାଇ ହୋଇଲେ ପ୍ରବେଶ
ଦେଖିଲେ ଯେ ବସିଛନ୍ତି ସକଳ ତ୍ରିଦଶ।
ସଦାଶିବ ବ୍ରହ୍ମା ଇନ୍ଦ୍ର ଦଶଦିଗପାଳ
ପାଞ୍ଚନ୍ତି ମୁର ମାରିବେ ନିଶ୍ଚେ ଆଦିମୂଳ।
ସତର ଲକ୍ଷ ପୁତ୍ର ଯେ ନବଲକ୍ଷ ନାତି
ଦାରୁଣ ଭାଇ ପ୍ରଭୃତି ସର୍ବ ସେନାପତି।
ଆଜକୁ ଲକ୍ଷେକ ପଦ୍ମ ମଲେ ସୈନ୍ୟ ତାର
ଏକାହୋଇ ରହି ଏବେ ଅଛି ମୁରାସୁର।
ସେ ମଲେ ପୃଥ୍ୱୀ କଳଙ୍କ ଛାଡ଼ିଯିବ ଏବେ
ଏମନ୍ତେ ସେ ବୋଲାବୋଲି ହୁନ୍ତେ ବସି ସର୍ବେ।
ଶୂନ୍ୟେ ଦେବବୃନ୍ଦ ଖସି ବାର୍ତ୍ତାଦେଲେ ଆସି
ବୋଇଲେ ତୁମ୍ଭେ ସଭାରେ ଶୁଣ ସର୍ବେ ବସି।
ମୁରାସୁର ଥାଟ ଏବେ ବାହେ ବଦ୍ରିକାକୁ
ଆଜ ରଜନୀ ପାହିଲେ ବେଢ଼ିବେ ଗଡ଼କୁ।

ଚାରିଭାଗ କରିଣ ଯେ ସୈନ୍ୟ ଦେଲା କାଢ଼ି
ପଛରେ ଆସେ ବିଜୟା ରଥପରେ ଚଢ଼ି ।
ଇନ୍ଦ୍ର ବୋଇଲେକ ତେବେ ଶୁଣ ବୃନ୍ଦାରକେ
ମୁରର ଥାଟ ଯେତେକ ଥିଲେ ନଗ୍ରଯାକେ ।
ପୁତ୍ର ନାତି ସେନାପତି ଭାଇଆଦି ଯେତେ
ସବୁଙ୍କୁ ତ ମାରି ପ୍ରଭୁ ଥିଲେ ଅସ୍ତ୍ରଘାତେ ।
ଏକା ଅଛି ମୁର ବୋଲି ଆମ୍ଭେ ଜାଣିଥିଲୁ
ତୁମ୍ଭ ମୁଖୁଁ ଶୁଣିଲାରୁ ତ୍ରସ୍ତ ଆମ୍ଭେ ହେଲୁ ।
କେତେ ସୈନ୍ୟ ଧରି ଆସୁଅଛି ଏବେ କହ
ବୃନ୍ଦାରକେ ବୋଇଲେ ଯେ ଶୁଣ ହରିହୟ ।
ତିନି ଯୋଜନ ଓସାରେ ଅଛନ୍ତି ଅସୁରେ
ଷୋଳପଦ୍ମ ଗଜ ଚାଲୁଛନ୍ତି ସମ୍ଭ୍ରମରେ ।
ଷୋଳପଦ୍ମ ଅଶ୍ୱ ଅଛି ଷୋଳପଦ୍ମ ସୈନ୍ୟ
ଚାରିଭାଗ ହୋଇ ଆସୁଛନ୍ତି ପୃଥ୍ୱୀରେଣ ।
ମୁରାସୁର ସଙ୍ଗେ ଛନ୍ତି ବାଇଶି କ୍ଷଉଣୀ
ରହିବେ ବୁଢ଼ି ଜଗିଣ ବଦ୍ରିକାରେ ପୁଣି ।
ଆଜରାତ୍ରେ ଚାରିଦ୍ୱାରେ ଜଗି ବସିଥିବେ
ପାହାନ୍ତିବେଳେ କବାଟ ଫିଟିଲେ ପଶିବେ ।
ଏରୂପେ ବିଚାରି ଆସୁଅଛି ମୁରାସୁର
ଶ୍ରୀନୃସିଂହଙ୍କୁ ଏ କଥା ନାହିଁଟି ଗୋଚର ।
ଏରୂପେ କହି ସଭାରେ ଗଲେ ବୃନ୍ଦାରକେ
ବାସବ ଜଣାଇଲେ ଯେ ଶୁଣ ବିଶ୍ୱସୃକେ ।
ନୃସିଂହ ଛାମୁକୁ ଯାଇ ବାର୍ତ୍ତା ବେଗେ କର
ଶୀଘ୍ର ଚାଲ ଯିବା ଲୋକ ପେଷିବା ତତ୍ପର ।
ଶୁଣିକରି ବେଦବ୍ରହ୍ମା ନାରଦଙ୍କୁ ରାଇ
ବୋଇଲେକ ନୃସିଂହଙ୍କୁ ଜଣା ତୁମ୍ଭେ ଯାଇ ।
ଯୁଦ୍ଧେ ମୁରାସୁର ଆସୁଛନ୍ତି ଯେତେ ମାର୍ଗେ
ତାହା ଏବେ ଶୁଣାଇଣ ଆସ ଏହିଲାଗେ ।
ଶୁଣିଣ ନାରଦ ମନ ପବନରେ ବସି
ବଦରିକାପୁରେ ଯାଇ ମିଳିଲେ ମହର୍ଷି ।
ନାରଦ ମୁନିଙ୍କୁ ଦେଖି ଶ୍ରୀନୃସିଂହ ସ୍ୱାମୀ
ଆସନେ ବସାଇ ପୂଜା କଲେ ଅନ୍ତର୍ଯ୍ୟାମୀ ।
ନାରଦ ବୋଇଲେ ସ୍ୱାମୀ ଶୁଣ ଆଦିମୂଳ
କଥାହୋଇ ବସିବାକୁ ନାହିଁ ଆଉ କାଳ ।
ଆଜ ରାତ୍ରଅର୍ଦ୍ଧେ ଦେବ କବାଟ କିଳିବେ
କବାଟ ଫିଟିଲେ ସୈନ୍ୟ ଗଡ଼େ ପଶିଯିବେ ।
ଚାରିଦ୍ୱାରେ ବୁଢ଼ା ପଡ଼ି ଜଗି ରହିଥିବେ
ଅର୍ଗଳି ଫିଟିଲେ ସର୍ବେ ଧସାଇ ପଶିବେ ।
ଏଥକୁ କି ତାତପର୍ଯ୍ୟ କର ନାରାୟଣ
ଦଇତେ ବଡ଼ ମାୟାବୀ ଅଟନ୍ତି ହେ ପୁଣ ।
ନୃସିଂହବୋଇଲେ କେତେ ଆଣିଛି ସେ ସୈନ୍ୟ
ଏହି କଥା ଗୋଚର କି ଅଛି ତପୋଧନ ।
ନାରଦ ବୋଇଲେ ବ୍ରହ୍ମା ଇନ୍ଦ୍ରଙ୍କ ଆଗରେ
କହୁଥିଲେ ବୃନ୍ଦାରକେ ଶୁଣିଛୁ ସଭାରେ ।
ଷୋଳପଦ୍ମ ଯାଏ ଅଶ୍ୱ ଷୋଳପଦ୍ମ ଗଜ
ଷୋଳପଦ୍ମ ସୈନ୍ୟ ଚାରି ସେନାପତି ସଜ ।
ଆବର ତ ମୁରାସୁର ମହାଗର୍ବ ବହି
ପଛେ ରଥ ଚଢ଼ି ଆସୁଅଛି ସୈନ୍ୟ ବାହି ।
ବାଇଶି କ୍ଷଉଣୀ ତାର ଛନ୍ତି ସୈନ୍ୟ ଥାଟ
ବନ୍ଧାଇଛି ସର୍ବ ଶିରେ ସୁବର୍ଣ୍ଣ ମୁକୁଟ ।
ଶୁଣିକରି ନାରାୟଣ ଅଳ୍ପ ମନେ ହସି
ବୋଇଲେ ଦୟା କରିବେ ପ୍ରଭୁ ବ୍ରହ୍ମରାଶି ।
ଆପଣ ତ କେତେ ଶ୍ରମେ କହିଲେଟି ମୋତେ
ତୁମ୍ଭ ପ୍ରାୟ ଉପକାରୀ ନାହିଁ କେ ଜଗତେ ।
ପରହିତେ ଥିବା ଲୋକ ନିଶ୍ଚେ ନାରାୟଣ
ତାଠାରୁ ବଡ଼ ହୋଇ କେ ନାହିଁ ସଂସାରେଣ ।
ପରୋପକାରୀ ହୋଇଣ ବ୍ରହ୍ମାଣ୍ଡେ ଯେ ଛନ୍ତି
ବରଷକେ ଲକ୍ଷେ ଗଙ୍ଗାସ୍ନାନ ଫଳ ପାନ୍ତି ।
ପର ଉପକାରୀକୁଟି ବୋଲି ମହାଜନ
ଆପଣ ତ ପ୍ରତ୍ୟକ୍ଷରେ ବୁଝିଲେ ବ୍ରହ୍ମଣ୍ୟ ।
ପରହିତେ ଆସି କହିଗଲେ କେତେ ଶ୍ରମୀ
ମାରିବି ଦୈତ୍ୟ ବୋଲିଣ କହି ଅନ୍ତର୍ଯ୍ୟାମୀ ।
ନାରଦଙ୍କୁ ବୋଇଲେକ ଏବେ ବିଜେକର
ଆମ୍ଭର ବିଚାର ଆମ୍ଭେ କରିବା ଏଥର ।
ଶୁଣି ନାରଦ ଗୋସାଇଁ ହେଲେ ଅନ୍ତର୍ଦ୍ଧାନ
ଏଥୁ ଅନନ୍ତରେ ବାଣୀ କହିବାକ ଶୁଣ ।
ନୃସିଂହ ତ ସଭାକରି ବିଜେ କରିଥିଲେ
ଶେଷଦେବଙ୍କୁ ଘେନିଣ ସୁଜାଣର ତୁଲେ ।
କର୍ଣ୍ଣାଟେଶ୍ୱର ରାଜନ ଗରୁଡ଼ ଆବର
ସଖାଗଣ ସଙ୍ଗେ ଘେନି ବିଜେ ଚକ୍ରଧର ।
ସମସ୍ତଙ୍କୁ ଚାହିଁଣ ଯେ କହନ୍ତି ତିଆରି
ବୋଲନ୍ତି ମୁରଅସୁର ଆସେ ଯୁଦ୍ଧକରି ।
ଆମ୍ଭ ରାଜ୍ୟର ନିକଟେ ହେଲେଣି ଏକ୍ଷଣି
ଆଜ ରାତ୍ରେ ନଗରକୁ ବେଢ଼ିବ ସେ ପୁଣି ।
ଏଥକୁ ତାତପର୍ଯ୍ୟରେ ସର୍ବେ ରହିଥିବ
ଗଡ଼ ବାହାରେ କାହାକୁ ଦେଖା ଯେ ନ ଦେବ ।
ଲୁଚି ଲୁଚି ଆସି ପଶିଯିବେ ଗଡ଼େ ପୁଣି
ଆମ୍ଭଙ୍କୁ ଦେଖିଲେ ତାର ଭାଙ୍ଗିବ ପାଞ୍ଝୁଣି ।
ଯେଝା ଇଚ୍ଛାରେ ଆମ୍ଭେ ଯେ କରିବା ସମର
ଏଥକୁ କହ କାର କି ଅଛଇ ବିଚାର ।

ଷୋଳପଦ୍ମ ଯାଏ ସୈନ୍ୟ ଦେଇଛି ସେ ପେଷି
ତହିଁରେ ଯେ ମୁରାସୁର ଆସେ ରଣେ ଧ୍ୱଂସି ।
ଷୋଳପଦ୍ମ ଯାଏ ଅଶ୍ୱ ଷୋଳପଦ୍ମ ଗଜ
ଆବର ବାଇଶୀକ୍ଷୌଣୀ ଅଛନ୍ତି ଦନୁଜ ।
କିରୂପେ ତାହାଙ୍କୁ କହ ମାରିଦେବା ପୋଛି
ତୁମ୍ଭ ଚାରିଜଣ ହେତୁ ମହତ ମୋ ଅଛି ।
ମନ୍ତ୍ରୀ ବୋଇଲା ତୁମ୍ଭ ଶ୍ରୀ ଆଜ୍ଞା ପରମାଣେ
ଆମ୍ଭେ ଚାରିହେଁ ପଶିଣ ମାରିବୁଟି ରଣେ ।
କର୍ଣ୍ଣାଟେଶ୍ୱର ବୋଇଲେ ଏ କଥା ପ୍ରମାଣ
ମୋର ଭାଗେ ଚାରିପଦ୍ମ ରହିଲେ ସଇନ୍ୟ ।
ଶେଷଦେବ ବୋଇଲେ ମୁଁ କେତେକ ମାରିବି
ଏତେ ଏତେ ବୋଲି କେହ୍ନେ ଗଣନାକରିବି ।
ଖଗେଶ୍ୱର ବୋଇଲେକ ଶୁଣ ମହାପ୍ରଭୁ
ତୁମ୍ଭ ଆଜ୍ଞା ପ୍ରମାଣରେ ମାରିବି ମୁଁ ସବୁ ।
ନୃସିଂହ ବୋଇଲେ ମୋର ଅବତାର ଯାକୁ
ତୋର ଘେନି ମୁହିଁ ହେଲେ ନମାନେଦୈତ୍ୟଙ୍କୁ
ଗରୁଡ଼ ବୋଲେ ମୋ ଆଗେ ପଡ଼ିବେଟିଯେତେ
ତୁମ୍ଭରି କୃପାରୁ ମୁହିଁ ମାରି ପଦାଘାତେ ।
ଚଞ୍ଚୁ ମାରି ପାଦେ କରିଦେବି ବେନିଫାଳ
ଖଗରେ ଉଡ଼ାଇ ଫିଙ୍ଗିଦେବି ସିନ୍ଧୁ ଜଳ ।
ଶତେପଦ୍ମଯାଏ ମାଡ଼ି ଆସିଲେ ଦଇତ୍ୟେ
ଦିନକ ମଧ୍ୟେ ଦେଖାଇ ଦେବି ଜଗନ୍ନାଥେ ।
ଶୁଣିଣ ନୃସିଂହ ସ୍ୱାମୀ କଲେ ବଡ଼ ଶ୍ରଦ୍ଧା
ବୋଇଲେ ଏ ଅବତାରେ ତୁହି ମୋର ଗଦା ।
ଗଦାରେ ମଛିଲେ ଜାଣ ସର୍ବେ ହୁନ୍ତି ଧୂଳି
ନୃସିଂହ ଅବତାରେ ତୁ ଅଟୁ ମହାବଳୀ ।
ଏହିଠାରୁ ଯେତେ କ୍ଷତ୍ରି ସଂସାରେ ଜନ୍ମିବେ
ତୋ ବଳିଷ୍ଠପଣକୁ ସେ ଅଧେ ଊଣାହେବେ ।
ସତ୍ୟ ତ୍ରେତା ଆବର ଦ୍ୱାପର ଯୁଗଯାଏ
ତୋର ସମାନ ବଳି କେ ନୋହିବେ ଗୋଟିଏ ।
ମୋହର ଦେହରେ ବଳ ଯେତେ ରହିଅଛି
ତହିଁ ସମାନେ ଜଣେ ତୁ ଅଟୁ ମୋର ପକ୍ଷୀ ।
ଅନନ୍ତକୋଟିବଳ ଯେ ପ୍ରକାଶେ ମୋ ଦେହେ
ସେ ବଳ ମୋତେ ଦେଇଣ ଅଛନ୍ତି ଧାତାଏ ।
ଏହା ଶୁଣି ଖଗବର ମନେ ମନେ ହସି
ବୋଇଲା ମୋହର ବଳ ତୁମ୍ଭେ ବ୍ରହ୍ମରାଶି ।
ଦାଣ୍ଡକୁ ଦିଶଇ ହେଲେ ପକ୍ଷୀଗୋଟି ମୁହିଁ
ମୋ ଚଞ୍ଚୁ ଘାତ କାହାକୁ ଜଣା କେବେ ନୋହି ।
ତୁମ୍ଭର ଆଜ୍ଞାରେ ମୁହିଁ ସପ୍ତପଦ୍ମ ଦୈତ୍ୟ
ଘଡ଼ିକ ଭିତରେ କରିପାରେ ଚୂର୍ଣ୍ଣିଭୂତ ।
ଶୁଣି ମହାପ୍ରଭୁ ବଡ଼ ଆନନ୍ଦ ହୋଇଲେ
ଏଥୁଅନ୍ତେ ବାଣୀ ପୁଣ କହୁଥାଇ ଭଲେ ।
ଶ୍ରୀନୃସିଂହ ମହାପ୍ରଭୁ ମନେ ବିଚାରିଲେ
ଦୈତ୍ୟଙ୍କୁ ଦ୍ୱିଗୁଣ ଦିଶୁ ଆମ୍ଭ ସୈନ୍ୟ ଭଲେ ।
ଦେଖିବା ଗଡ଼େ ଆମ୍ଭର କିରୂପେ ପଶିବ
ଆମ୍ଭର ସୈନ୍ୟ ଦେଖି ସେ ଆସି ନ ପାରିବ ।
ଏତେ ପାଞ୍ଚିଣ ନୃସିଂହ ହେଲେ ବିଶ୍ୱମୂର୍ତ୍ତି
କରିଲେ ବତିଶପଦ୍ମ ନୃସିଂହ ଉତ୍ପତ୍ତି ।
ଜଣ ଜଣକରେ ମେରୁ ପାରନ୍ତି ସେ ଟାଳି
ନୃସିଂହ ଆଜ୍ଞାରେ ଏକୁ ଏକ ମହାବଳୀ ।
ଶ୍ରୀଅଙ୍ଗୁ ନୃସିଂହଗଣ ହୁଅନ୍ତେ ଯେ ଜାତ
ତାହାଙ୍କୁ ଆଜ୍ଞାଦେଲେକ ଲକ୍ଷ୍ମୀଦେବୀ କାନ୍ତ ।
ବୋଇଲେ ଆମ୍ଭ ଗଡ଼କୁ ଯୁଣେ ଛାଡ଼ି ରହ
ଚାରିପାଶେ ରହି ଦଇତ୍ୟଙ୍କୁ ଦେଖାଦିଅ ।
ଶୁଣିଣ ନୃସିଂହଗଣ ଆଜ୍ଞା ପରମାଣେ
ଗଡ଼ ଚାରିକୋଣେ ବେଢ଼ି ରହିଲେ ତକ୍ଷଣେ ।
ବାବଲ ପାଶୁପତ ଯେ ଅକ୍ଷୟ ତୁଣୀର
ଧରିବାରୁ ଶୋଭାପାଇ ସମସ୍ତଙ୍କ କର ।
ସୁବର୍ଣ୍ଣ ଜ୍ୟୋତି ପରାୟ ଦିଶେ ସର୍ବ ଦେହ
ଅଗ୍ନି ଅର୍କ ପରାୟେକ ଦିଶେ କାନ୍ତିମୟ ।
ଗୁରୁ ଶୁକ୍ର ଉଦେ ପ୍ରାୟ ଜ୍ୟୋସ୍ନା ବିରାଜଇ
ତଡ଼ିତ ଜ୍ୟୋତି ପରାୟ ଦିଶେ ସବୁ ଦେହୀ ।
ଶାନ୍ତିକି ଅଟନ୍ତି ଯେହ୍ନୁ ସର୍ବେ ଗଙ୍ଗାଜଳ
କୋମଳ ବଚନେ କିବା ନିଜେ ଆଦିମୂଳ ।
ତୀକ୍ଷ୍ଣପଣକୁ ଅଟନ୍ତି କିବା କାଳରାହୁ
ଏରୂପେ ନୃସିଂହଗଣ ଜନ୍ମ ବିଷ୍ଣୁ ଦେହୁ ।
ଶ୍ରୀନୃସିଂହଗଣ ପାଦେ ନିତ୍ୟ ମୋର ସେବା
ବିପ୍ର ଶ୍ରୀ ପୀତାମ୍ବରକୁ ସଂସାରୁ ତାରିବା ।

■ ■ ■

## ନୃସିଂହ ସ୍ତବ

ଏଥୁଅନନ୍ତରେ ପୁଣି ନାରଦ ମହର୍ଷି
ବ୍ରହ୍ମାଙ୍କ ପାଦରେ ନମି ବିନୟରେ ଭାଷି ।
ବୋଲନ୍ତି ଯେ ସାବଧାନେ ଶୁଣ ପିତାମହ
ନୃସିଂହଗଣ ନାମ କିରୂପେ ହେଲା କହ ।
ଏତେକ ନୃସିଂହଗଣ କଲେ ପ୍ରଭୁ ଜାତ
ସଭାରେ ଶୁଣିଣ ଆମ୍ଭେ ହେବୁ ସର୍ବେ ମୁକ୍ତ ।
ଗୋଟିଏ ନାମ ଶୁଣିଲେ କୋଟି ପାପ ଯିବ
ଶୁଣିଥିଲେ ତୁମ୍ଭ ମୁଖୁ ଭ୍ରାନ୍ତି ନ ରହିବ ।
ତାହା ଶୁଣିଣ ବିଧାତା ବୋଇଲେ ଉତ୍ତମ
କହିବା ଥୋକେ ନୃସିଂହଗଣଙ୍କର ନାମ ।

ଅଭୟ ନରସିଂହ ଯେ ସଭୟ ନୃସିଂହ
ଗୋହଂସ ନରସିଂହ ଯେ ଉଗ୍ର ନରସିଂହ।
ଭଦ୍ର ନରସିଂହ ଆଉ ବୀର ନରସିଂହ
ବିକରାଳ ନରସିଂହ ବିକଟ ନୃସିଂହ।
କୁରାଳ ନରସିଂହ ଯେ ବିରାଜ ନୃସିଂହ
ବିହଡ଼ ନୃସିଂହ ପୁଣି ଭୀଷଣ ନୃସିଂହ।
ଭଇରବ ନରସିଂହ ବିକଳ ନୃସିଂହ
ବୀର ବେତାଳ ନୃସିଂହ ବରାହ ନୃସିଂହ।
କରାଳ ନରସିଂହ ଯେ ନିରାଳ ନୃସିଂହ
ବିଦାରଣ ନରସିଂହ ଦାରୁଣ ନୃସିଂହ।
ଭୀଷଣ ନୃସିଂହ ମହାରଶ୍ମି ନରସିଂହ
ଶାନ୍ତି ନରସିଂହ ଆଉ ଭଦ୍ର ନରସିଂହ।
ସୁହୃଦ ନୃସିଂହ ପୁଣି ସୁଭଟ ନୃସିଂହ
ଅଜଟ ନରସିଂହ ଯେ ଉଦ୍‌ଘଟ ନୃସିଂହ।
ସୁଘୋଟ ନୃସିଂହ ପୁଣି ବିନୟ ନୃସିଂହ
ସୁଭଦ୍ର ନୃସିଂହ ପୁଣି ବିଜୟ ନୃସିଂହ।
ଅଜୟ ନରସିଂହ ଶ୍ରୀସିଦ୍ଧ ନରସିଂହ
ସାଧନ ନରସିଂହ ଶ୍ରୀଲକ୍ଷ୍ମୀ ନରସିଂହ।
ମହତ ନରସିଂହ ଯେ ପରମ ନୃସିଂହ
ଯତୋ ଯତୋ ଯାମି ତତୋ ତତୋ ନରସିଂହ।
ନମସ୍ତେ ଶ୍ରୀ ନାରାୟଣ ପୂର୍ଣ୍ଣ ନରସିଂହ
ନମସ୍ତେ ଶ୍ରୀ ନାରାୟଣ ରୁଦ୍ର ନରସିଂହ।
ନମୋ ନମୋ ଭୀଷଣ ହେ ଭଦ୍ର ନରସିଂହ
ନମୋ ନମସ୍ତେ କାଳାଗ୍ନି ରୁଦ୍ର ନରସିଂହ।
ନମୋ ନମୋ ହେ ଜ୍ୱଳନ୍ତନେତ୍ର ନରସିଂହ
ନମୋ ନମୋ ତ୍ରାହି ତତ୍ତ୍ୱଭୂତ ନରସିଂହ।
ନମୋ ନମୋ ନିର୍ଜିତ ଶ୍ରୀବାଳା ନରସିଂହ
ନମୋ ନମୋ କଳ୍ପିତ ହେ କାଳ ନରସିଂହ।
ନମୋ ନମସ୍ତେ କାମଦ କାଳ ଶ୍ରୀ ନୃସିଂହ
ନମୋ ନମସ୍ତେ କାଳାଗ୍ନି ରୁଦ୍ର ନରସିଂହ।
ନମସ୍ତେ ନମସ୍ତେ ଜୟ ନରସିଂହ ଭୂପ
ନମସ୍ତେ ନମସ୍ତେ ଜୟ ନରସିଂହ ରୂପ।
ନମସ୍ତେ ନମସ୍ତେ ଉଗ୍ର ନରସିଂହ ରୂପ
ନମସ୍ତେ ନମସ୍ତେ ନରସିଂହ ବିଶ୍ୱରୂପ।
ନମୋ ନମସ୍ତେ ଭୀଷଣ ନରସିଂହ ରୂପ
ନମସ୍ତେ ନମସ୍ତେ ନରସିଂହ କାଳରୂପ।
ଶୁଣ ହେ ବାବୁ ନାରଦ ବିଧାତା କହନ୍ତି
ଏରୂପେ ନୃସିଂହଗଣ ହେଲେ ଉତପତ୍ତି।
ଏହାଙ୍କୁ ଯେ ପ୍ରାଣୀ ସଦା ସ୍ମରଣ କରିବେ
ଧର୍ମାର୍ଥ କାମ ମୋକ୍ଷକୁ ନିଶ୍ଚୟ ଲଭିବେ।
ଯଶ ଶିରୀ ଆୟୁଷ ଯେ ବଢ଼ିବ ତାହାର
ମନୋବାଞ୍ଛା ସିଦ୍ଧଫଳ ଲଭିବ ସେ ନର।
ଇହ ଲୋକରେ ଭକତି ଅନ୍ତେ ମୋକ୍ଷଗତି
ଦେବଙ୍କ ସଙ୍ଗରେ ବସି ଭୁଞ୍ଜିବ ବିଭୂତି।
ଗ୍ରହଙ୍କ ଗରିଷ୍ଠ ପୀଡ଼ା ନ ଲାଗିବ କାୟ
ଜଳ ସ୍ଥଳ ଅନଳରେ ହୋଇବ ନିର୍ଭୟ।
ପିଶାଚ ଡାକିନୀ ଭୂତ ପ୍ରେତ ଦୁଷ୍ଟଗଣ
ନୃସିଂହ ସ୍ମରଣେ ହୋଏ ସର୍ବ ନିବାରଣ।
ଯେତେକ ନୃସିଂହ ନରସିଂହ କଲେ ଜାତ
ଯେବଣ ନର ଏହାଙ୍କୁ ପଢ଼ିବେ ସତତ।
ଏ ଭବସାଗରୁ ସେହି ନିଶ୍ଚେ ହେବ ପାର
ପଦ୍ମ ପତ୍ରେ ପଡ଼ି ଯେହ୍ନେ ନ ଲାଗଇ ନୀର।
ଅସ୍ତ୍ରରେ ଅଭେଦ୍ୟ ହୋଏ ଯୁଦ୍ଧେ କରେ ଜୟ
ଘୋର ବିପଦେ ତାହାଙ୍କୁ ନୃସିଂହ ସହାୟ।
ନୃସିଂହ ସୁମରିଲେ ଯେ ଖଣ୍ଡେ ନାନା ଦୋଷ
ଚୌର ବ୍ୟାଘ୍ର ସର୍ପାଘାତ ସର୍ବ ହୋଏ ଧ୍ୱଂସ।
ଅପୁତ୍ର ପୁତ୍ରବନ୍ତ ଯେ ଦୁଃଖୀ ଧନୀ ହୋଇ
ତ୍ରିସନ୍ଧ୍ୟାରେ ସୁମରିଲେ ସର୍ବ ରିଷ୍ଟ ଯାଇ।
କେବଳ ଭକ୍ତିଭାବରେ ଭଜିବ ପ୍ରଭୁଙ୍କୁ
ହୃଦୟରେ ଧ୍ୟାନକରି ଚିନ୍ତିବ ତାହାଙ୍କୁ।
ସମତା ବୁଦ୍ଧିରେ ସର୍ବ ଜୀବଠାରେ ଦୟା
ସତ୍ୟେ ରହିଥିବ ସଦା ହୋଇଣ ନିର୍ମାୟା।
ଶୁଚିମନ୍ତ ହୋଇ ଭଜୁଥିବ ଶୁଦ୍ଧଚିତ୍ତେ
ମନୋବାଞ୍ଛା ଫଳ ତାକୁ ହେବ ପରାପତେ।
ବଜ୍ରଠାରୁ ଆଣ୍ଟ ଜାଣ ହେବ ତାର କାୟେ
ଗ୍ରହରୋଗ ନ ପୀଡ଼ିବ ଥିବ ସର୍ବଦାୟେ।
ସଲିଳରେ ନ ବୁଡ଼ିବ ଖଡ୍‌ଗେ ନ ଛିଡ଼ିବ
ପବନେ ନ ଉଡ଼ିବ ଅଗ୍ନିରେ ନ ପୋଡ଼ିବ।
ଧନ ଜନ ପରମାୟୁ ବୃଦ୍ଧି ହେବ ତାର
ଶ୍ରୀନୃସିଂହ ଶରଣ ମୁଁ ବିପ୍ର ପୀତାମ୍ବର।
ବର୍ଣ୍ଣରେ ବ୍ରାହ୍ମଣ ମୁହିଁ ଅଟେ ସଦା ମୂର୍ଖ
ଜଣାଇଲି ନୃସିଂହଙ୍କୁ ବସି ପାଞ୍ଚପକ୍ଷ।
ଭଜିଲି ଅହୋରାତ୍ରରେ ନିମିଷେ ନ ଛାଡ଼ି
ବହଇ ଯେତେ ନିଃଶ୍ୱାସ ତେତେ ମନ୍ତ୍ର ପଢ଼ି।
ଏକୋଇଶ ସହସ୍ର ଛତିଶ ଭଜେ ନିତି
ଏତେମତେ ଦୟାକଲେ ନରସିଂହ ମୂର୍ତ୍ତି।
ତେଣୁ ଏହି ପଦ ଛନ୍ଦି ବାନ୍ଧେ ପୁରାଣରୁ
ନୃସିଂହଗଣଙ୍କ ନାମ ଲେଖିଲି ଦୟାରୁ।



## ନୃସିଂହଙ୍କର ଯୁଦ୍ଧସଜ୍ଜା

ଏବେ ମୁରର ସମର ଲେଖେ ପଦବନ୍ଧେ
କହନ୍ତି ଶ୍ରୀ ବେଦବର ଶୁଣ ହେ ନାରଦେ
ଏଥିଉତ୍ତାରେ ଦଇତ୍ୟ ଆସି କୋଟି କୋଟି
ଦେଖିଲେ ନୃସିଂହଗଣ ଛନ୍ତି ପୃଥ୍ୱୀ ଘୋଟି।
ଦୈତ୍ୟମାନଙ୍କୁ ଦିଶନ୍ତି ଦୁଇଗୁଣ ହୋଇ
ଗଡ଼ର ବାହାରେ ପୁରିଛନ୍ତି ସର୍ବେ ରହି।
ଅଷ୍ଟରଙ୍ଗେ ବେଶ ହୋଇ ନରସିଂହ ଜାଣ
ଆଗେ କୋଟି କୋଟି ଉଡ଼େ ବୀରନେତମାନ।
ସୁବର୍ଣ୍ଣ ଅଳଙ୍କାର ସେ ହୋଇଛନ୍ତି ଖଞ୍ଜି
ହୀରା ନୀଳା ମାଣିକ୍ୟ ଯେ ମୁକ୍ତା ପୁଞ୍ଜି ପୁଞ୍ଜି।
ଦିଶନ୍ତି ସୁବର୍ଣ୍ଣମୟ ନରସିଂହ ବୀରେ
ନୃସିଂହଗଣ ବେଶ କେ ମୁଖେ କହିପାରେ।
ଛତ୍ର ତରାସ ଚାମର ସତ୍ରେ ଧରିଛନ୍ତି
ଅସୁର ଥାଟେ ସେ ଦୁଇଗୁଣ ଶୋଭାପାନ୍ତି।
ରଙ୍ଗ ଶ୍ୱେତ କଳାବର୍ଣ୍ଣେ ଉଡ଼ଇ ଚିରାଳ
ସମୁଦ୍ର ଉଲ୍ଲୋଳ' ପ୍ରାୟ ଶ୍ରୀନୃସିଂହ ବଳ।
ନୃସିଂହ ଗଣଙ୍କ ବେଶ ଦେଖି ଜଗତ୍‌ସ୍ୱାମୀ
ଆପଣେ ସେ ବୀରବେଶ ହେଲେ ଅନ୍ତର୍ଯ୍ୟାମୀ।
ସ୍ନାନ ଶୁଚି ହୋଇ କର୍ପୂରର ଗୁଣ୍ଡ ଆଣି
ଶରୀରଯାକରେ ବୋଳି ହୁନ୍ତି ଚକ୍ରପାଣି।
ଲବଙ୍ଗ କର୍ପୂର ଜାଇଫଳ ଯାକି ତଳେ
କର୍ଣ୍ଣରେ ହୀରାକୁଣ୍ଡଳ ଲମ୍ବାଇ ସୁଢ଼ଳେ।
ଦେହଯାକ ଅଳଙ୍କାରେ ହୋଇଲେ ଭୂଷଣ
ନାନାଦି କୁସୁମ ଆଣି ମଣ୍ଡିଲେ ଶିରେଣ।
ଶ୍ୱେତପଦ୍ମ ମାଳା ପୁଣି ଗଳାରେ ଲମ୍ବାଇ
ଅଙ୍ଗେ ଖଞ୍ଜିଲେ ଦୟଣା ପଞ୍ଚମାଳା ନେଇ।
ଅଣାଇ କୃଷ୍ଣ ତୁଳସୀ କୋମଳ ମଞ୍ଜରୀ
ସପ୍ତସରି କରି ହୃଦେ ଲମ୍ବାଇଲେ ହରି।
ଆବର ପାଞ୍ଚମାଳା ସେ କଣ୍ଠରେ ଲମ୍ବାଇ
ଲଲାଟେ କସ୍ତୁରୀଚିତା ଘେନି ଭାବଗ୍ରାହୀ।
କସ୍ତୁରୀରେ ଦିଶନ୍ତି ସେ ପୁଣି ଶୋଭାକର
ମହା ଶାନ୍ତମୂର୍ତ୍ତି ପ୍ରଭୁ ନୃସିଂହାବତାର।
ମଧୁର କୋମଳବାଣୀ ପ୍ରକାଶଇ ମୁଖ
ଯାବତ ପ୍ରାଣୀଙ୍କର ସେ ହରନ୍ତି ଯେ ଦୁଃଖ।
ବିଧାତା ଯେ ଧନୁର୍ବିଦ୍ୟା ଯେତେଥିଲେ ଦେଇ
ଅକ୍ଷୟ ତୂଣ କନ୍ଧରେ ଭିଡ଼ି ଭାବଗ୍ରାହୀ।
ଗୁଣରେ ବାବଲଶର ବସାଇ ନୃସିଂହ
ବେଳ ସାତପାଞ୍ଚ ଯାଏ ଆମଞ୍ଚିଲେ ବେଗ।
ବୃଦ୍ଧ ଅଙ୍ଗୁଳି ଉପରେ କଷଣୀକି ଦେଲେ
ଅକଳିତ ବଳ ବୁଝି ଗୁଣେ ପ୍ରକାଶିଲେ।
ଗୁଣରେ ଶର ଛାଟେଣି କରି ବ୍ରହ୍ମଶର
ବୋଲନ୍ତି ଏବେ କେଣେ ତୁ ଯିବୁ ମୁରାସୁର।
ଆଜିଯାଏ ଈଶ୍ୱରଙ୍କ ବରରେ ନ ମଲୁ
ଏତେ ନିନ୍ଦି ନିନ୍ଦି ମୋର ମଳି ଧୋଉଥିଲୁ।
ତୁ ମଲେ ମଳି ମୋହର ଧୋଇବ କେ ଆଉ
ତେଣୁ ଏତେଦିନ ତୋତେ ନ ମାରି ଯେ ଥାଉ।
ତୁ ମଳି ନ ଧୁଅ ପଛେ ଆଉ ଏବେ ମୋର
ଏବେ ମାରିବାକୁ ତୋତେ ଖଞ୍ଜିଲେ ଈଶ୍ୱର।
ଏତେ ବୋଲି ଯଜ୍ଞ ସୂତ୍ର ପିନ୍ଧିଲେକ ଭିଡ଼ି
ଛନ୍ଦି ହୃଦପଦ୍ମେ ବାନ୍ଧି ଦେଲେ ଗଣ୍ଠି ପାଡ଼ି।
ନିଶେ ହସ୍ତଦେଇ ବୋଲୁଛନ୍ତି ଆଚ୍ଛା ଆଚ୍ଛା
ଏବେ ତୋତେ ମାରିବାକୁ ମୋର ହେଲାଇଚ୍ଛା।
ଏତେ ବୋଲିଣ ନୃସିଂହ ରତ୍ନପିଠେ ବସି
ସୁଜାଣ ମନ୍ତ୍ରୀକି ଚାହିଁ ଅଜ୍ଞା ଦେଲେ ହସି।
ଦେଖିକରି ମନ୍ତ୍ରୀବର ହସ୍ତେ ଅର୍ଘ୍ୟଧରି
ନୃସିଂହ ପାଦପଦ୍ମରେ ବସେ ସେବାକରି।
କ୍ଷତ୍ରିବର ମୂର୍ତ୍ତି ଧରିଛନ୍ତି ପ୍ରଭୁ ବସି
ଦେଲେ ଯେ ସିନ୍ଦୂର ଟୋପି ଶେଷଦେବ ଆସି।
ଶ୍ୱେତ ଦୁବମାଳା ଦେଲେ ଗରୁତ୍ମାନ ଆଣି
କରିବେ ଶତ୍ରୁଏ ଭୟ ଦେଖି ଚୂଡ଼ାମଣି।
କର୍ଣ୍ଣାଟଈଶ୍ୱର ଦେଲେ ବୈଜୟନ୍ତି ମାଳା
ନେଇଣ ନୃସିଂହ ତାହା ଲମ୍ବାଇଲେ ଗଳା।
ବ୍ରାହ୍ମଣ ଯେ ଚାରିବେଦ ପଢ଼ନ୍ତି ଚୌପାଶେ
ନାୟିକାଏ ହୁଳହୁଳି ଦିଅନ୍ତି ସୁବେଶେ।
କୃଷ୍ଣବଲ୍ଲଭ ରାଜନ ମାତା ଭଗବତୀ
ଏହାଙ୍କ ପାଦେ ନୃସିଂହ ଉଠିଣ ନମନ୍ତି।
ମାତା ବୋଇଲେକ ବାପ କିପାଁ ଏଡ଼େ ବେଶ
ବୀରମୂର୍ତ୍ତି ପ୍ରାୟ ଆଜ ହୋଇଛୁ ପ୍ରକାଶ।
ନୃସିଂହ ବୋଇଲେ ମାତ କହୁଁ ତେବେ ଶୁଣ
ଦାରୁଣ ମଲା କାଳରେ ରଥେ ଥିଲ ପୁଣ।
ଯେତେ ମାୟା କରିଣ ସେ ଆମ୍ଭଙ୍କୁ ଯୁଝିଲା
ନିଦାନ ବେଳକୁ ଶେଷଦେବ ହାତେ ମଲା।
ଏବେଟି ତାହାର ଭାଇ ଯେଉଁ ମୁରାସୁର
ଯୁଦ୍ଧକୁ ବାହାରିଅଛି ଧରି ସୈନ୍ୟ ତାର।
ଆମ୍ଭର ଗଡ଼ ପାଖରେ ଆସି ହୋଇଲେଣି
ଆମ୍ଭେ ଯୁଝି ନ ଗଲେଟି ନିନ୍ଦାହେବ ପୁଣି।
ଦେବତାମାନଙ୍କୁ ସେହି ଅଟେ କାଳକୂଟ
ଏଥର ଆସିଲେ ନିଶ୍ଚେ ମରିବ ପାପିଷ୍ଠ।

ଭାଇର ଛଳରେ ସିନା ଯୁଦ୍ଧେ ଆସୁଅଛି
ଏବେ ସେ ମଲେ ସବୁରି କଳଙ୍କ ଯାଉଛି।
ଭଗବତୀ ବୋଇଲେକ ଶୁଣ ମୋର ବାପ
ଅସୁର ଛାରକୁ ଆଉ ନ କର ତୁ କୋପ।
ଅଦୋଷେ ଦୈତ୍ୟ ତୁମ୍ଭଙ୍କୁ କଲେଯେବେବାଦ
ଏଥକୁ ରକ୍ଷା ତୁମ୍ଭଙ୍କୁ କରିବେ ଗୋବିନ୍ଦ।
ନିର୍ବଳ ଲୋକକୁ ଯେହୁ ଅଦୋଷେ ପ୍ରାଭବି
ତାହାର ଜନ ସମ୍ପଦ ଅନ୍ତେ ଯାଏ ଡୁବି।
ବୟସ ଗର୍ବରୁ ସେହି ରହି ନ ପାରନ୍ତି
ଆମ୍ଭେ ବଡ଼ ବୋଲିକରି ପ୍ରାଣୀକି ଦଣ୍ଡନ୍ତି।
ବଡ଼ଲୋକ ଯେତେ କଳି କରେ ଉଚ୍ଚକରି
ସାନଲୋକ ସେହି କଳି କରେ ଧରି ଧରି।
ବଡ଼ଲୋକର କଳିକୁ ଶୁଣନ୍ତି ଯେ ଜନେ
ସାନଲୋକ ସେହି କଳି କରେ ମନେ ମନେ।
ଏଣୁକରି ସାନଲୋକ ସଙ୍ଗେ ନ ଲାଗିବ
ତୁମ୍ଭେ ତ ସର୍ବଜ୍ଞ ଶ୍ରୀନୃସିଂହ ଶେଷଦେବ।
ଅସୁର ସଙ୍ଗେ ବାପ ନ ଯାଅ ତୁମ୍ଭେ ଲାଗି
ତାର ଇଚ୍ଛାରେ ଆସି ଯେ ପଳାଇବ ଭାଙ୍ଗି।
ନୃସିଂହ ବୋଇଲେ ମାଗୋ କହୁଅଛି ଶୁଣ
ମାନବଙ୍କ ପ୍ରାୟ ତୁମ୍ଭେ ଆମ୍ଭଙ୍କୁ ନ ମଣ।
ଆମ୍ଭେତ ସୃଷ୍ଟି କରତା ସର୍ବ ଶିରୋମଣି
ତୁମ୍ଭେ ତ ଆମ୍ଭର କଥା ପୂର୍ବୁଁ ଅଛ ଜାଣି।
ଯେତେବେଳେ ଆମ୍ଭେ ତୋରଗର୍ଭେବିଜେକଲୁ
ସେହି ସମୟେ ତୁମ୍ଭଙ୍କୁ ଆମ୍ଭେ ଚିହ୍ନାଦେଲୁ।
ଶଙ୍ଖ ଚକ୍ର ଗଦା ପଦ୍ମ ଚାରିରୂପ ଧରି
ତୁମ୍ଭ ଗର୍ଭୁ ଆମ୍ଭେ ଆସୁ ଅଛୁ ଅବତରି।
ଶୁଣି ଭଗବତୀ ଏହା ସତ୍ୟ ବୋଲି ପାଞ୍ଚି
ସ୍ତିରୀଲୋକ ବୁଝି ତାକୁ ମାୟା ପ୍ରକାଶୁଛି।
ପତି ତନୟ ସମ୍ପତ୍ତି ଦେଖି ଭୋଳ ହେଉ
ଦେହକୁ ଲାଗିଲେ ଦୁଃଖ ଅନ୍ତେ କ୍ରୋଧ ବହୁ।
ସଂସାରଯାକ ଏ ପ୍ରଭୁ ଅଟନ୍ତି ଧାରଣା
ଶୁଣୁ ଶୁଣୁ ବୁଝୁ ବୁଝୁ ହେଲି ମୁହିଁ ବଣା।
ଦୈତ୍ୟଙ୍କୁ ମାରିବା ପାଇଁ ପ୍ରଭୁ ଛନ୍ତି ଜନ୍ମି
ଆମ୍ଭେ ତାଙ୍କୁ ମଣିଥାଉଁ ପୁତ୍ର ପ୍ରାୟ ଜାଣି।
ଏହିରୂପେ ବୋଲି ମାଏ ମନେ ପାଞ୍ଚିଭୋଳେ
ବୋଇଲେ ନୃସିଂହଗଣ ଦେଖନ୍ତି ମୁଁ ବେଳେ।
ଜନନୀର ମନକଥା ଜାଣି ନାରାୟଣ
ଗରୁଡ଼କୁ ଆଜ୍ଞାକଲେ ଉଠ ପକ୍ଷୀରାଣ।
ମାତା ପିତାଙ୍କୁ ଘେନି ତୋ ଉପରେ ବସିବି
ନୃସିଂହଗଣ ଦେଖାଇ ବହନ ଆସିବି।

ଶୁଣିକରି ପକ୍ଷିବର ବିସ୍ତାରିଲା ପକ୍ଷୀ
ପଦ୍ମାକାର କରି ପିଠିପରେ ଦେଲା ରଖି।
ଶକଟ ଗୁଳି ପରାୟ ଚକାସନ କରି
ଗରୁଡ଼ ଆସନ ଦେଖି ହସି ନରହରି।
ବୋଇଲେକ କେତେ ବୁଦ୍ଧି ଜାଣେ ଗରୁଡ଼ଟି
ମାତା ଡରିବେ ବୋଲିଣ ବିସ୍ତାରିଲେ ପିଠି।
ଯୋଜନ ଆକ୍ରାନ୍ତେ ପୁଣି ଦୀର୍ଘ ଅଛି କରି
ଚାରିବେଢ଼େ ଅଷ୍ଟରତ୍ନ ବାନ୍ଧିଛି ପାଚେରୀ।
ବସିଲେ ସ୍ତ୍ରୀ ଲୋକେ ପଡ଼ିଯିବେ ବୋଲି ଖସି
ତେଣୁ ଏପରି କରିଲା ବିନତାର ଶିଷି।
ତହୁଁ ନୃସିଂହ ଜନନୀ ଜନକଙ୍କୁ ଧରି
ଗରୁଡ଼ ଉପରେ ଯାଇଁ ବସିଲେ ଶ୍ରୀହରି।
ଅଦିତି କୋଳରୁ ଯେହ୍ନେ ଜାତ ମଘବାନ
ସେହିରୂପେ ଭଗବତୀ ଦିଶିଲେ ଶୋଭନ।
ମାତାଙ୍କୁ ଘେନିଣ ପ୍ରଭୁ ଗରୁଡ଼ ଆସନେ
ବଦ୍ରିକାପୁରରୁ ଉଠି ଚଳିଲେ ଗଗନେ।
ସମୁଦ୍ର ଭିତରୁ ସୂର୍ଯ୍ୟ ଉଦେକାଳେ ଯେହ୍ନେ
ମୃଗ ଡେଇଁଲା ପରାୟ ଉଠନ୍ତି ଗଗନେ।
ସେହିରୂପରେ ଗରୁଡ଼ ଉଠେ ଶୂନ୍ୟ ମାର୍ଗେ
ନନ୍ଦିଘୋଷ ରଥ ପ୍ରାୟ ଦିଶେ ଦଶଦିଗେ।
ଦିଶନ୍ତି ଶ୍ରୀଜଗନ୍ନାଥ ଯେହ୍ନେ ନନ୍ଦିଘୋଷେ
ସେହିରୂପେ ନୃସିଂହର ମହିମା ପ୍ରକାଶେ।
ଏଥୁଅନନ୍ତରେ ସ୍ୱାମୀ କମଳାରମଣ
ଜନନୀଙ୍କି ଦେଖାଇଲେ ନରସିଂହଗଣ।
ବୋଇଲେ ଦେଖ ମା ନରସିଂହଗଣ ପ୍ରଭୁ
ପ୍ରତ୍ୟକ୍ଷେ ଦଶାବତାର ଅଟନ୍ତି ଏ ସବୁ।
ବଦ୍ରିକାଗଡ଼ ବାହାରେ ଛନ୍ତି ବିଜେକରି
ଶଙ୍ଖ ଚକ୍ର ଗଦା ପଦ୍ମ ଚାରିଭୁଜେ ଧରି।
ଧନୁ ତୀର ବାଣ ଅଛି ସମସ୍ତଙ୍କ ହସ୍ତେ
ବେଣୁ ପାଶ ଅଙ୍କୁଶ ଯେ କୋଦଣ୍ଡ ସହିତେ।
ଗଡ଼ ବାହାରଯାକରେ ପୂରିଛନ୍ତି ଦେଖ
ବତିଶ ପଦ୍ମ ପର୍ଯ୍ୟନ୍ତେ ସର୍ବେ ପଦ୍ମ ମୁଖ।
ଅସୁର ମାରିବାପାଇଁ ଏଥେ ଅବତରି
ଶାଳଗ୍ରାମ ଶିଳା ଏହି ହେବେ ମଞ୍ଚପୁରୀ।
ଗଣ୍ଡକୀତୀର୍ଥେ ରହି ଏ ହେବେ ଅବତାର
ଶ୍ରୀନୃସିଂହ ଶାଳଗ୍ରାମ ଶ୍ରୀବିଷ୍ଣୁ ପଞ୍ଜର।
ଆବର ହିରଣ୍ୟଗର୍ଭ ଦାମୋଦର ନାମ
ଶ୍ରୀଅନନ୍ତ ଶେଷମୂର୍ତ୍ତି ଶ୍ରୀପୁରୁଷୋତ୍ତମ।
ରଘୁନାଥ ଜନାର୍ଦ୍ଦନ ଲକ୍ଷ୍ମୀ ନାରାୟଣ
ଜନ୍ମିବେ ଏରୂପେ ଗଣ୍ଡକୀରୁ ଶାଳଗ୍ରାମ।

ଏହି ମୂର୍ତ୍ତିମାନେ ଜଗିଛନ୍ତି ଆମ୍ଭ ପୁର
ତେଣୁ ଆମ୍ଭଙ୍କୁ ନ ଲାଗେ ଅସୁରଙ୍କ ଡର ।
ଶୁଣିଣ ନିର୍ଭର ହେଲା ଭଗବତୀ ମନ
ବୋଇଲେକ ବେଗେ ଯାଇ ମାର ଦୁଷ୍ଟଜନ ।
ଆଜ ଯେବେ ମୁର ଆସିଥିବ ଏ ଯୁଦ୍ଧକୁ
ଅବଶ୍ୟ ମରିବ ସେହି ଶାପ ଦେଲି ତାକୁ ।
ଏଥର ପଡ଼ିଲେ ଆଗେ ନ ଯିବ ବାହୁଡ଼ି
ମୁହିଁ ତୋତେ ଦେଲି ଏହି ଅଯୋନିଜାଶାଢ଼ୀ ।
ଏହି ଶାଢ଼ୀ ଅଙ୍ଗେ ଭିଡ଼ି ଯୁଦ୍ଧେ ପଶିଥିବୁ
ମନେ ଯା ପାଞ୍ଚିବୁ ତାହା ପ୍ରାପ୍ତ ହେବ ସବୁ ।
ଶ୍ରୀ ବ୍ରହ୍ମା ଅଗ୍ନିଙ୍କର ଏ ଅମଳାନ ଶାଢ଼ୀ
ଏତେ କହି ପୁତ୍ର ଅଙ୍ଗେ ଦେଲେ ମାଏ ଭିଡ଼ି ।
ଅମଳାନ ବସ୍ତ୍ର ଏ ଶ୍ରୀବ୍ରହ୍ମା ଅଗ୍ନିଙ୍କର
ମୋତେ ପିନ୍ଧାଇ ଅଗ୍ନିରୁ କାଢ଼ି ବେଦବର ।
ବୋଇଲେ ଏହି ଶାଢ଼ୀକି ସାଇତି ଯେ ଥିବୁ
ମୁରାସୁର ଯୁଦ୍ଧ କାଳେ ନୃସିଂହକୁ ଦେବୁ ।
ଏ ବସ୍ତ୍ର କରିବ ତେତେବେଳେ ବଡ଼ ଗୁଣ
ସତ୍ତ୍ୱେପାଦ ଧରି ଜାତ ହେବେ ନାରାୟଣ ।
ତେତେବେଳେ ଯାଇ ନାଶ ହେବ ମୁରାସୁର
ଏହିରୂପେ କହିଛନ୍ତି ମୋତେ ବେଦବର ।
ଶୁଣିଣ ନୃସିଂହ ସ୍ୱାମୀ ଆନନ୍ଦିତ ହେଲେ
ମାତାଙ୍କୁ ଘେନି ଯାଇଣ ଗୃହେ ବିଜେ କଲେ ।
ମାତା ପିତାଙ୍କର ଭୟ ଛଡ଼ାଇ ଶ୍ରୀହରି
ଗରୁଡ଼କୁ ଘେନି ସଭା ମଧ୍ୟେ ବିଜେ କରି ।
ଶେଷଦେବଙ୍କୁ ଚାହିଁଣ କହନ୍ତି ନୃସିଂହ
ବୋଲନ୍ତି ମୁର ତୁଲେ ତୁ ନ ଲାଗିବୁ ଆଗ ।
ବଇନତେୟ ପାଖ ତୁ କେବେ ନ ଛାଡ଼ିବୁ
ସେ ଆଗରେ ଥିଲେ ତୁହି ପଛେ ତାର ଥିବୁ ।
ସମର ଛନ୍ଦ ତର୍କ ସେ ଜାଣେ କେତେ ମାର୍ଗ
ବ୍ରହ୍ମଶକତିକି ତାର ଦ୍ୱିଗୁଣ ବଜ୍ରାଙ୍ଗ ।
ଶ୍ରୀମୁଖ ବଚନ ଶୁଣି ହସେ ଖଗେଶ୍ୱର
ବୋଲଇ ମୋ ବଳ ସବୁ ନୃସିଂହଠାକୁର ।
ବୁଝିଲେ ପ୍ରତ୍ୟକ୍ଷ ଶେଷଦେବ ବ୍ରହ୍ମମୂର୍ତ୍ତି
ବ୍ରହ୍ମପାଖରେ ଥାଆନ୍ତେ କାହାକୁ ମୋ ଭୀତି ।
ଏହା ଶୁଣି ଶେଷଦେବ ଆନନ୍ଦିତ ହେଲେ
ଗରୁଡ଼ ମହାଯତିଙ୍କି ବହୁ ପ୍ରଶଂସିଲେ ।
ନୃସିଂହ ବୋଇଲେ ମୋର କର୍ଣ୍ଣାଟେଶ ରାଜା
ଆମ୍ଭ ସୂର୍ଯ୍ୟବଂଶର ସେ ଅଟନ୍ତି ଯେ ଅଜା ।
ଜନ୍ମକାଳୁଁ ସେ ଅମରବର ଛନ୍ତି ପାଇ
ଏବେ ତିନିଭାଗ ଆୟୁ ଭୋଗିଲେଣି ସେହି ।
ଆବର ସେ ଭାଗେ ଭୋଗ କରିବେ ଏଣିକି
ଯୁଦ୍ଧରେ ପଡ଼ିଲେ ସେହି ଡ଼ରିବେ କାହିଁକି ।
ଶୁଣିଣ କର୍ଣ୍ଣାଟେଶ୍ୱର ବୋଲେ ହୋଇ ହୋଇ
ନୃସିଂହ ହେତୁ କାହାକୁ ମୋର ଭୟ ନାହିଁ ।
ସୁଜାଣ ମନ୍ତ୍ରୀକି ପୁଣି ଚାହିଁ ପଦ୍ମନେତ୍ର
ବୋଇଲେ ତୋହର ଘେନି ରକ୍ଷା ବଦ୍ରି କ୍ଷେତ୍ର ।
ଏ ବଦ୍ରିକା କ୍ଷେତ୍ରକୁ ତୁ ଅଟୁ ରକ୍ଷାକାରୀ
ତୁମ୍ଭର ପ୍ରାୟ ମନ୍ତ୍ରୀ କେ ନାହିଁ ତିନିପୁରୀ ।
ତୋର ଆଦ୍ୟ ଅକ୍ଷରଟି ଚାରିଯୁଗ ଯାକୁ
ଯେତେ ମନ୍ତ୍ରୀ ହୋଇବେ ସେ ବହିବେ ତାହାକୁ ।
ପୁରାଣ ଶାସ୍ତ୍ର ଗ୍ରନ୍ଥରେ ବସିବେ ଯେ ମନ୍ତ୍ରୀ
ତୋର ଆଦ୍ୟ ଅକ୍ଷରରେ ହେବେ ସର୍ବେଯନ୍ତ୍ରି ।
ଏହି କଥା ସୁପଣ୍ଡିତେ ବିଶେଷି ବୁଝିବେ
ମନରେ ଧନ୍ଦି ହୋଇଲେ ଆମ୍ଭଙ୍କୁ ପୁଚ୍ଛିବେ ।
ଏତେ ବୋଲି ମହାପ୍ରଭୁ ସୁଜାଣ ମନ୍ତ୍ରୀକି
କଥାର ମାର୍ଗେ କହିଣ ବୋଧିଲେ ସଭିଙ୍କି ।
ନୃସିଂହ ପ୍ରଭୁ ଯାହାକୁ କହିଲେ ଯେ ରୂପେ
ବୁଝିଲେ ତ ପ୍ରତାପୀ ସେ ଅଟନ୍ତି ସେ ରୂପେ ।
ଶୁଣିଣ ସୁଜାଣ ମନ୍ତ୍ରୀ ଯୋଡ଼ି କରପତ୍ର
ବୋଲେ ତୁମ୍ଭ କୃପାରୁ ମୁଁ ଜାଣେ ସବୁ ଯନ୍ତ୍ର ।
ଏଥର ଦୈତ୍ୟ ଆସି କି ଯିବ ଦେହ ଧରି
ସବୁକୁ ପ୍ରାଣାୟନମଃ ସ୍ୱାହା ଦେବୁ କରି ।
ମନ୍ତ୍ରୀର ମୁଖରୁ ଶୁଣି ହସି ଭାବଗ୍ରାହୀ
ବୋଲନ୍ତି ରେ ମୁରାସୁର ଯିବୁ ଆଜ କାହିଁ ।
ଏକା ଗରୁଡ଼ ମୋହର ସୈନ୍ୟଯାକ ତୋର
ନିଃଶ୍ୱାସକେ ମାରି ପେଷିଦେବ ଯମପୁର ।
ଏରୂପେ ବୋଲିଣ ବାମହସ୍ତେ ନିଶମୋଡ଼ି
ମାରନ୍ତି ଶସ୍ତ୍ରମାନ ଯେ ତୂଣୀରରୁ କାଢ଼ି ।



## ପ୍ରଳମ୍ବା, ବିରାଜ, ମୁକୁନ୍ଦା ଓ ମୂଢ଼ାସୁରର ଯୁଦ୍ଧ ଏବଂ ମୃତ୍ୟୁ

ଏଥୁଅନନ୍ତରେ ଚାର ଆସେ ଶୀଘ୍ରଧାଇଁ
ଦୈତ୍ୟ ଆସିଲେକ ବୋଲି ଅଗ୍ରେ ଦେଲା କହି ।
ବୋଇଲା ଶୁଣ ସ୍ୱାମି ଭୋ ଦେବ ଲକ୍ଷ୍ମୀକାନ୍ତ
ମାଡ଼ି ଆସିଲେ ମୁରର ସୈନ୍ୟ ଅପ୍ରମିତ ।
ନୃସିଂହଗଣ ତୁମ୍ଭର ବାଟ ଜଗିବାରୁ
ଗଡ଼ରେ ପଶି ଦଇତ୍ୟେ ନ ପାରିଲେ ଦୂରୁ ।
ଶୁଣିଣ ନୃସିଂହ ସ୍ୱାମୀ ହେଲେ ଆଗୁସାର
ନିଃଶ୍ୱାସ ବାରି ଚରଣ କାଢ଼ିଲେ ତତ୍ପର ।

ବାଜଇ ଶଙ୍ଖ ବୀଣା ଯେ ଶୁଭନ୍ନାଦ ସ୍ଫୁରି
ଘଣ୍ଟା ଘଣ୍ଟିର ନାଦରେ ଉଛୁଳେ ତ୍ରିପୁରୀ।
ଉଡ଼ନ୍ତି ଶ୍ୱେତ ପାରୁଆମାନେ ପନ୍ତି ପନ୍ତି
ଶଙ୍ଖଚିଲମାନେ ଉଡ଼ି କୋମଳ ରାବନ୍ତି।
ଦକ୍ଷିଣେ ମୃଗେ ସୁବେଦୀ ବିପ୍ର ଯେତେ ଦେଖି
ନକୁଳ ଗରୁଡ଼ ରାଜହଂସ ଶୁକପକ୍ଷୀ।
ଅହିୟ ଯୁବତୀମାନେ ଧରି ପୂର୍ଣ୍ଣକୁମ୍ଭ
କାଖେ ମଥାରେ ପ୍ରସନ୍ନମୁଖେ ବହିଥିବ।
ଏହାକୁ ଦେଖଇ ଯେହୁ ଅନୁକୂଳ ବେଳେ
ଯାବତ କଥା ତାହାରି ଶୁଭ ହୁଏ ଭଲେ।
ଏମନ୍ତ ଲଗ୍ନରେ ପ୍ରଭୁ ଗୃହୁଁ ଯାନ୍ତେ ଚଳି
ଚୌଷଠି ସହସ୍ର କନ୍ୟା ଦ୍ୟନ୍ତି ହୁଳହୁଳି।
ବୀର କାହାଳୀ ଲକ୍ଷେକ ବାଜେ ଆଗେ ଆଗେ
ନୃସିଂହଙ୍କ ମଧ୍ୟେ ମିଳିଲେକ ପ୍ରଭୁ ବେଗେ।
ଧାମନ୍ତି ନୃସିଂହଗଣେ ଦେଖି ପଦ୍ମନେତ୍ର
ଦରଶନ କଲେ ସର୍ବେ ଯୋଡ଼ି କରପତ୍ର।
ଗରୁଡ଼ ଯେ ଶେଷଦେବ କର୍ଣ୍ଣାଟେଶ ରାଜେ
ସୁଜାଣ ମନ୍ତ୍ରୀକି ଘେନି କରିଛନ୍ତି ବିଜେ।
ଦେଖିଲେ ଦଇତ୍ୟେ ପୃଥ୍ୱୀମଧ୍ୟେ ଛନ୍ତି ପୂରି
ପଛରେ ମୁର ଅସୁର ଆସେ ସୈନ୍ୟ ଧରି।
କୋଳାହଳ ହୋଇ ପୃଥ୍ୱୀ ପଡୁଛି ଧମକି
ଘୁମୁଘୁମୁ ଘୁମୁରା ଯେ ବାଜୁଛି ଚମକି।
ଡବି ଡବି ଡମ୍ବରୁ ଯେ ଶୁଭେ ଘିଡ଼ି ଘିଡ଼ି
ଦମାଲୁ ଯେ ଦୁଲୁ ଦୁଲୁ ଶୁଭେ କାନ ଖିଡ଼ି।
ବାଜେ ଢୋଲ ଦମା ଘୋର ଗରଜନ କରି
ତୁରୀର ଶବ୍ଦେ ଉଛୁଳି ପଡ଼େ ତିନିପୁରୀ।
ବୀର କାହାଳୀ ନାଦରେ ଆସେ ଚମକାଇ
ଚାରିଦିଗେ ସୈନ୍ୟ ଛନ୍ତି ରାଜା ମଧ୍ୟ ଥାଇ।
ନୃସିଂହ ଦେଖିଣ ତାହା ଅଳ୍ପ ମନେ ହସି
ନୃସିଂହ ଗଣକୁ ଚାହିଁ କହନ୍ତି ବିଶେଷି।
ବୋଇଲେ ଦୈତ୍ୟମାନଙ୍କୁ ବେଗେ ଯାଇ ମାର
ଯେ ଯାହା ମୁଖେ ପଡ଼ିବ ଉପ୍ରୋଧ ନ କର।
ଏହା ଶୁଣି ହରିଗଣେ ଦେଲେ ଘୋର ରଡ଼ି
ଶୁଭଇ ଶୂନ୍ୟରେ ଯେହ୍ନେ ମେଘ ଘଡ଼ଘଡ଼ି।
ରାତ୍ର ପହରେକ ଥାଉଁ ଦୈତ୍ୟ ଆସିଥିଲେ
ହରିଗଣଙ୍କ ଚହଳ ଦେଖି ଲୁଚା ଦେଲେ।
ଗଡ଼ମଧ୍ୟେ ପଶିବାର ପାଞ୍ଚ ଗଲା ଭାଜି
ପଛେଇ ରହିଲେ ସବୁ ହୋଇ ଖୋଜାଖୋଜି।
ଯେତେକ କଥା ପାଞ୍ଚିଣ ନଗ୍ରୁ ଆସିଥିଲେ
ନୃସିଂହଗଣ ମଧ୍ୟରେ ପଶି ନ ପାରିଲେ।

ଏଥୁ ଅନନ୍ତରେ ରାତ୍ର ହେଲା ଆସି ଶେଷ
ପୂର୍ବ ଦିଗଗୁ ଆଦିତ୍ୟ ହୋଇଲେ ପ୍ରକାଶ।
ନୃସିଂହଗଣ ମଧ୍ୟରେ ବିଜେ ବ୍ରହ୍ମରାଶି
ମୁରାସୁର ସୈନ୍ୟ ଦେଖି ମନେ ହୋନ୍ତି ତୋଷି।
ବୋଲନ୍ତି କେଡ଼େ ପ୍ରତାପି ଅଟେ ମୁରାସୁର
ଏଡେ ବିଭବବନ୍ତ କେ ନାହିଁ ତିନିପୁର।
କେତେ ଗୁଡ଼ାଏ ସଇନ୍ୟ ପୋଷିଥିଲା ଘରେ
ଆଜକୁ ବୟାଳୀଶ ପଦ୍ମ ମଲେଣି ଅସୁରେ।
ତେତିଶକୋଟି ଯୁବତୀ ଅଟେ ଯାର ରାଣୀ
ଏଡ଼େ ସମ୍ପତି ଭୋଗୀ ନ ପାରେ କେଉଁ ପ୍ରାଣୀ।
ବିଶାଶଏ ଯୋଜନ ଯେ ଅଟେ ଯାର ପୃଥ୍ୱୀ
ଯାର ନଗ୍ରଯାକ ହୀରା ପାଚେରୀର କାନ୍ଥି।
ଏଡ଼େ ରାଜ ଛବି କାର ନାହିଁ ଦୈତ୍ୟକୁଳେ
ଷୋଳପଦ୍ମ ଗଜ ଆଣିଅଛି ଏକାବେଳେ।
ଷୋଳପଦ୍ମ ଅଶ୍ୱ ପୁଣି ଉଚ୍ଚୈଶ୍ରବା ବଂଶୀ
ଷୋଳପଦ୍ମ ସୈନ୍ୟ ବସି ଯୁଝିବାକୁ ଆସି।
ଷୋଳପଦ୍ମ ଗଜ ଯାକୁ ଦେବଗଡ଼ ବାନ୍ଧି
ତହିଁ ମଧ୍ୟରେ ଆମ୍ଭଙ୍କୁ ରଖିବ ସେ ରୁନ୍ଧି।
ଏହିରୂପେ ମୁର ପାଞ୍ଚି ଆସେ ମନେ ମନେ
ଆମ୍ଭର ବିଚାର କହ ଶୁଣିବା ବଚନେ।
ସୁଜାଣ ମନ୍ତ୍ରୀ ବୋଇଲେ ଆମ୍ଭ ପ୍ରଭୁ ଥାନ୍ତେ
ଦୈତ୍ୟଛାରକୁ ଆମ୍ଭେ ନ ମାନୁ କଦାଚିତେ।
କର୍ଣ୍ଣାଟେଶ୍ୱର ରାଜନ ବହୁ ମନେ ତ୍ରାସି
ବୋଲେ ପାଖରେ ଶରଣ ମୁହିଁ ଅଛି ପଶି।
ଏହା ବୁଝି ବାସୁଦେବ ସୁଦୟା କରିବେ
ମୁରକୁ ମାରି କର୍ଣ୍ଣାଟ ଦେଶ ମୋତେ ଦେବେ।
ମୋହର ପାଇଁ ଭୋ ପ୍ରଭୁ ହେଲେ ଅବତାର
ନୃସିଂହ ନାମ ବହିଣ ମାରିବ ଯେ ମୁର।
ଶାଢ଼ୀ ଯେବେ ଘେନିବି ମୁଁ ନୃସିଂହଙ୍କ ହସ୍ତେ
କେତେକାଳକୁ ଏ କଥା ରହିବ ଜଗତେ।
ଏରୂପେ ବୋଲି ତୂଣୀରୁ ବାଣମାନ କାଢ଼ି
ଧନୁରେ ଶର ଯୋଚିଣ ହସ୍ତେ ନିଶ ମୋଡ଼ି।
ଠିଆହେବା ଦେଖି ମନେ ଶେଷଦେବ ଭାଳି
ବୋଇଲେ କର୍ଣ୍ଣାଟ ପାଇଁ ପ୍ରଭୁ ଛନ୍ତି ଛଳି।
ମୁରକୁ ମାରି କର୍ଣ୍ଣାଟ ଈଶ୍ୱରକୁ ନେଇ
ଆସିବେ କନକାବତୀ ନଗ୍ରେ ଶାଢ଼ୀ ଦେଇ।
ଗରୁଡ଼ ବୋଇଲେ ମୋତେ ହ୍ୱନ୍ତା ଯେବେଆଜ୍ଞା
ଘଡ଼ିକ ମଧ୍ୟରେ ଭାଙ୍ଗିଦ୍ୟନ୍ତି ଦୈତ୍ୟ ପ୍ରଜ୍ଞା।
ହାତୀ ଦନ୍ତ ଯେତେ ଆଣିଅଛି ଦୈତ୍ୟରାଜ
ମାରି ସମୁଦ୍ରେ ପକାଇଦେବି ତାଙ୍କୁ ଆଜ।

ଅଶ୍ୱମାନଙ୍କୁ ଧରିଣ ଫିଙ୍ଗିବି ଶୂନ୍ୟକୁ
ଛେଚି ହୋଇ ପଡ଼ି ମରିଯିବେ ଫାଟି ବୁକୁ।
ନୃସିଂହ ବୋଇଲେ ମୁହିଁ ତୋର ବଡ଼ପଣେ
ମୁର ନିଧନ ସାହସ ବାନ୍ଧିଅଛି ରଣେ।
ଏହା ଶୁଣି ଖଗେଶ୍ୱର ଯୋଡ଼ି କରପତ୍ର
ବୋଇଲା ତୁମ୍ଭ ବୈରିକି ଅଟେ ବୈରିନେତ୍ର।
ତୁମ୍ଭ ବୈରି ନେତ୍ରେ ମୋର ପଡ଼ିଣ ମରନ୍ତେ
ତେଣୁ ବୈରିନେତ୍ର ନାମ ଦେଲେପ୍ରଭୁ ମୋତେ।
ଗରୁଡ଼ ବଚନ ଶୁଣି ହସନ୍ତି ନୃସିଂହ
ଏଥୁଅନନ୍ତରେ ଶୁଣ ଅସୁର ପ୍ରସଙ୍ଗ।
ଯେତେ ବିଚାର କରିଣ ନଗ୍ରୁଁ ଆସିଥିଲା
ପ୍ରଭୁ ସୈନ୍ୟ ଦେଖି ଗଡ଼େ ପଶି ନ ପାରିଲା।
ବଦ୍ରିକାଶ୍ରମୁ ଯୋଜନ ଯାଏ ଛାଡ଼ ହୋଇ
ତହିଁରେ ବିଚାର କରି ବସେ ନୃପସାଇଁ।
ବୋଲେ ହସ୍ତୀରେ ବାନ୍ଧିବି ଏଥେଁ ମୁହିଁ ଗଡ଼
ଓସାର କରିବି ଦଶଯୂଣ ପ୍ରତିବେଢ଼।
ତହିଁ ଭିତରେ ମୋହର ସୈନ୍ୟ ପୂରାଇବି
ଉତ୍ତରକୁ ଦ୍ୱାର କରି ବାଟ ଛାଡ଼ିଦେବି।
ଷୋଳପଦ୍ମ ଅଶ୍ୱ ପୁଣି ସାଜେଣି କରିବି
ମୁକା ମୁକା ହୋଇ ଯୁଦ୍ଧ କରିଲେ ଦେଖିବି।
ବଲ୍ଲଭର ପୁତ୍ରେ ଭଲ ଥିଲେ ବିପ୍ରେ ପୋଷି
ଆମ୍ଭ ସୈନ୍ୟକୁ ଦ୍ୱିଗୁଣ ହେଲା ପ୍ରାୟ ଦିଶି।
ମୁଁ ପାଞ୍ଚୁଥିଲି ଆସିବେ ଶଏ ବିଶାଶତେ
ଦେଖିଲି ନୃସିଂହଗଣ ଛନ୍ତି ଅପ୍ରମିତେ।
ଏତେ ପାଞ୍ଚିକରି ଚାରିସେନା ଡକାଇଲା
ଗଡ଼କରି ହସ୍ତୀଯାକ ରଖ ହୋ ବୋଇଲା।
ଶୁଣି ପ୍ରଳମ୍ବା ମୁକୁନ୍ଦାସୁର ସେନାପତି
ବିରାଜ ମୂଢ଼ା ମିଳିଲେ ଆସି ରାଜା କତି।
ମୁରାସୁର ବୋଇଲା ହେ ସର୍ବେ ତୁମ୍ଭେ ଶୁଣ
ଘରୁ ଆସିଲା ବିଚାର ହେଲା ଅକାରଣ।
ଏବେ ମୋହର କଥାଏ ତୁମ୍ଭେ ସର୍ବେ କର
ଗଡ଼ ଗୋଟାଏ ବାନ୍ଧିଣ ରହିବା ଏଠାର।
ଯେତେକ ଆମ୍ଭର ଆସିଛନ୍ତି ମତ୍ତହସ୍ତୀ
ଏହାଙ୍କୁ ବେଢ଼ାଇ ରଖ କରି ଗଡ଼ପ୍ରତି।
ସେ ଗଡ଼େ ଥାଇଁ ବିପ୍ରଙ୍କ ସଙ୍ଗରେ ଯୁଝିବା
ନୃସିଂହ ସୈନ୍ୟଯାକକୁ ମାରିପକାଇବା।
କୃଷ୍ଣବଲ୍ଲଭ ପୁତ୍ରକୁ ପେଷି ଯମପୁର
ଶୁଣି ସେନାଏ ବୋଇଲେ ଆଛା ଏ ବିଚାର।
ରାଜା ଆଜ୍ଞା ପାଇ କରି ଆଣିଲେ ହସ୍ତୀଙ୍କୁ
ସାକ୍ଷାତେ ଗଡ଼ପରାୟେ ବାନ୍ଧିଲେ ତାହାଙ୍କୁ।
ରାଜା ଆଜ୍ଞା ପାଇ ଗଡ଼ ନିର୍ମାଣ କରିଲେ
ଦଶଯୂଣ ବିସ୍ତାର ଯେ ଗଡ଼ଗର୍ଭ କଲେ।
ହସ୍ତୀର ପରେ ମଣ୍ଡଣି ଯେତେଥିଲେ କରି
ଦିଶଇ ଦୂରକୁ ସେହୁ ପ୍ରତ୍ୟକ୍ଷେ ପାଚେରୀ।
ଗଡ଼ର ପ୍ରତିବନ୍ଧେ ସେ ଗଡ଼ କଲେ ଉଭା
ଦେଖିବା ଲୋକମାନଙ୍କୁ ଦିଶେ ମହାଶୋଭା।
ରାଜା ଆଜ୍ଞା ପ୍ରମାଣେ ସେ ଗଡ଼ ହେଲା ଉଚ୍ଚ
ଚାରି କୋଣେ ବସାଇଣ ଅଛନ୍ତି ଗୁରୁଜ।
ଦେଖି ମୁରାସୁର ବଡ଼ ଆନନ୍ଦିତ ହେଲା
ଚାରି ସେନାପତିଙ୍କି ସେ ଗଉରବ କଲା।
ବୋଇଲା ସମର ଏବେ କର ମନ ଇଚ୍ଛା
ନୃସିଂହ ସୈନ୍ୟଙ୍କୁ ମାର ନ କରିଣ ରକ୍ଷା।
ବାଇଶୀ କ୍ଷଉଣୀ ମୋର ଅଙ୍ଗବଳ ଯେତେ
ଏହାଙ୍କୁ ଘେନି ଗଡ଼େ ମୁଁ ଅଛଇ ନିଷ୍ଟିନ୍ତେ।
ଆବର ଷୋଳପଦ୍ମ ମୋ ସୈନ୍ୟ ଯେତେ ଅଛି
ଅଶ୍ୱ ଗଜ ମୋର କିଏ କହିବ ତା ବାଛି।
ତୁମ୍ଭ ପଛରେ ରହି ମୁଁ ରଥେ ଚଢ଼ିଥିବି
ତୁମ୍ଭ ଅସମୟ ଦେଖି ମାଡ଼ିଣ ପଡ଼ିବି।
ସବୁ ସଂହାରି ଆସିବି ମୁହିଁ ଏକାବେଳେ
କୃଷ୍ଣବଲ୍ଲଭ ପୁତ୍ରଙ୍କୁ ପେଷି ଯମଆଳେ।
ଶୁଣି ସେନାଏ ଯୋଡ଼ିଲେ ବେନି କରପତ୍ର
ଅଶ୍ୱଲାଗି ହୋଇ ଧରି ଯେ ଯାହାର ଶସ୍ତ୍ର।
ଏକମୁଖ ହୋଇ ସର୍ବେ ଯୁଦ୍ଧେ ଗଲେ ଚଳି
ପଡ଼ିଲେ ନୃସିଂହଗଣ ଆଗେ ଦୈତ୍ୟବଳି।
ଦେଖିଣ ନୃସିଂହଗଣେ ଛାଡ଼ିଲେକ ରଡ଼ି
ଦୈତ୍ୟଙ୍କ ଉପରେ ବୀର ପଡ଼ିଲେକ ମାଡ଼ି।
ବିନ୍ଧିଲେ ତୂଣୀରୁ ଶର କାଢ଼ି ଅନର୍ଯ୍ୟାପ
ଫୁଫୁକାର ନାଦେ ଯେହ୍ନେ ଗର୍ଜେ କାଳସର୍ପ।
ପଦ୍ମେ ଅଶ୍ୱ ପଦ୍ମେ ଦୈତ୍ୟ ଶୀଘ୍ରେ ଯାନ୍ତେମାଡ଼ି
ଦେଖି ପ୍ରଳମ୍ବା ଅସୁର ଧାଏଁ ତଡ଼ବଡ଼ି।
ନୃସିଂହଗଣ ଉପରେ ବିନ୍ଧେ ଲକ୍ଷ ଶର
ସେ ଶରକୁ ବିନାଶିଲେ ନରସିଂହବୀର।
ପୁଣିହିଁ ବିନ୍ଧିଲେ ଲକ୍ଷେ ଶର ଦୈତ୍ୟ ଆଣି
ସୋହଂସ ନୃସିଂହ ଦେଖି ଉଠି ଶିରଝୁଣି।
ଦୈତ୍ୟର ଶରମାନଙ୍କୁ ପ୍ରତିଅସ୍ତ୍ର କଲେ
ଆସୁ ଆସୁ ଖଣ୍ଡେ ଦୂରୁଁ ତାହା ନିବାରିଲେ।
ତାହା ଦେଖିଣ ଅସୁର ମନେ କଲା କୋପ
ବୋଲେ ମାରିବି ନୃସିଂହଗଣ ଅନର୍ଯ୍ୟାପ।
ଏକାବେଳକେ ସବୁଙ୍କୁ ଶର ପେଷିଦେବି
ଧନୁରେ ଶର ଯୋଚିଣ ଛେଦି ପକାଇବି।

ଏତେ ବୋଲି ତୁଳନା ସେ କଲା ନୃସିଂହଙ୍କୁ
ବତିଶପଦ୍ମ ବୋଲି ସେ ଜାଣିଲା ମନକୁ ।
ବତିଶ ପଦ୍ମ ଧନୁରେ କେତେ ପଦ୍ମ ଶର
ମନ୍ତ୍ରବଳେ ନାରାଚକୁ ଯୋଚିଲା ଅସୁର ।
ବୋଇଲା ନୃସିଂହଗଣୁ ଯେତେ ଛନ୍ତି ରଣେ
ସମସ୍ତଙ୍କ ବେକ ହାଣି ପକାଅ ହେ ବାଣେ ।
ତୁମ୍ଭର ନାମଗୋଟି ଯେ ଅଟେ ଅଧାଚନ୍ଦ୍ର
ତୁମ୍ଭଙ୍କୁ ଦେଇଥିଲେଟି ମୋତେ ଦେବଇନ୍ଦ୍ର ।
ଏତେ ବୋଲିଣ ପ୍ରଳମ୍ବା ବିନ୍ଧନ୍ତେ ନାରାଚ
ଦେଖି ସୋହଂସ ନୃସିଂହ ଟେକି ବେନି ଭୁଜ ।
କତୁରୀ ନାରାଚେ ସବୁ ପକାଇଲେ ହାଣି
ଧନୁରେ ଯୋଚିଲେ ବ୍ରହ୍ମଶର ନେଇ ପୁଣି ।
ପ୍ରଳମ୍ବାକୁ ମାର ବୋଲି ବିନ୍ଧିଲେ ସଲଖି
ପଡ଼ିଲା ଶର ଯାଇଣ ଦୈତ୍ୟ କଣ୍ଠେ ଯୋଖି ।
ବେକରେ ପଡ଼ନ୍ତେ ଦୈତ୍ୟ ହେଲା ବେନିଖଣ୍ଡ
ଉତ୍ତାନଶାୟୀ ହୋଇଣ ପଡ଼େ ଦୈତ୍ୟପିଣ୍ଡ ।
ଚାରିପଦ୍ମ ଅଶ୍ୱ ଚାରିପଦ୍ମ ସଇନକୁ
ମାରିଣ ନୃସିଂହଗଣ ଫିଙ୍ଗିଲେ ସିନ୍ଧୁକୁ ।
ପ୍ରଳମ୍ବାସୁର ଭାଗରେ ଯେତେ ସୈନ୍ୟଥିଲେ
ସମସ୍ତେ ସମରେ ପଡ଼ି ଯମାଳୟେ ଗଲେ ।
ଶୂନ୍ୟରେ ଦେବ କରନ୍ତି ଉଚ୍ଚେ ସାଧୁ ସାଧୁ
ବୋଲନ୍ତି ତରିଲୁ ଏବେ ମୁରର ପ୍ରମାଦୁ ।
ଧନ୍ୟ ଧନ୍ୟ ହେ ସୋହଂସ ନରସିଂହ ପ୍ରଭୁ
ପରଂହଂସ ରୂପେ ବିଜେ ହୃଦୟରୁ ସବୁ ।
ହଂସ ବୋଲି ଦ୍ୱିଅକ୍ଷର ମାର୍ଗରେ ଥାଆନ୍ତି
ସବୁ ହୃଦପଦ୍ମ ମଧ୍ୟେ ବିହାର କରନ୍ତି ।
ଏମନ୍ତ ବୋଲିଣ ଦେବ ପୁଷ୍ପବୃଷ୍ଟି କରି
କର୍ପୂର ଗୁଣ୍ଡ ପକାନ୍ତି ପ୍ରଭୁ ଶିରେ ଚୂରି ।
ଏଥୁଅନନ୍ତରେ ବାଣୀ ଶୁଣ ହେ ନାରଦ
ମୁରର ଆଗେ କହିଲେ ଯାଇ ଚାରବୃନ୍ଦ ।
ବୋଇଲେ ଶୁଣ ଆହେ ଭୋ ଦେବ ନୃପମଣି
ପ୍ରଳମ୍ବାସୁରକୁ ରଣେ ପକାଇଲେ ହାଣି ।
ଚାରିପଦ୍ମ ଅଶ୍ୱ ଆଉ ଚାରିପଦ୍ମ ସୈନ୍ୟ
ସବୁ ମାରି ଭସ୍ମ କଲେ ନରସିଂହଗଣ ।
ଦେଖିଲୁ ରକତନଦୀ ବହେ ରଣଭୂଇଁ
ଚଉଷଠି ଯୋଗିଣି ଗଣ ଭକ୍ଷନ୍ତି ତା ପାଇ ।
ଶୁଣି ମୁରାସୁର କ୍ଷଣେ ବିସ୍ମୟ ହୋଇଲା
ପାଞ୍ଚିଲା କ୍ଷୋଭେ କି ରହି ଏବେ ଏଥେ ଭଲା ।
ମରିବା କିବା ମାରିବା ବୋଲି ପାଞ୍ଚି ଥାଇ
ଅଧୈର୍ଯ୍ୟ ହେଲେ ଯୁଦ୍ଧକୁ ମାରିବା କି ଯାଇ ।
ଆମ୍ଭେ ମଲେ ତାଙ୍କୁ ଭଲ ସେ ତ ଆମ୍ଭ ସଲ
ଏହା କଲେ ଆମ୍ଭା ହେବ ମୋହର ସାଫଲ୍ୟ ।
ଏଥର ବିଷ୍ଣୁଙ୍କୁ ମାରି ରାଜ୍ୟେ ଯେବେ ଯିବି
ମଦନାବତୀ ରାଣୀକି ବହୁ ପ୍ରବୋଧିବି ।
ଲେଉଟି ତା ଗର୍ଭେ ପୁଣି ପୁତ୍ର ଜନ୍ମାଇବି
ଅନ୍ୟ ମହାଦେଈଙ୍କର ସଙ୍ଗେ ବିହରିବି ।
ପୁଣିହିଁ ସତରଲକ୍ଷ ଦେବି ଉପୁଜାଇ
ନିଶ୍ଚେ ମୁଁ କରିବି ଏହା ବ୍ରହ୍ମା ଆଗେ କହି ।
ଏତେ ପାଞ୍ଚି ମୁରାସୁର ସେନାଙ୍କୁ ଡକାଇ
ଆଜ୍ଞାଦେଲାକ ନୃସିଂହଗଣ ମାର ଯାଇ ।
କୃଷ୍ଣବଲ୍ଲଭ ପୁତ୍ରଙ୍କୁ ପେଷ ଯମପୁର
ଏହା ଶୁଣି ସେନାମାନେ ଉଠିଲେ ସତ୍ୱର ।
ବିରାଜ ମୁକୁନ୍ଦାସୁର ମୂଢ଼ାସୁର ତିନି
ଧାଇଁଲେ ସକଳେ ଧନୁ ଶର କେତେ ଘେନି ।
ତିନି ଭାଗ ହୋଇକରି ଦୈତ୍ୟଗଣେ ଗଲେ
ଜଣକରେ ଚାରିପଦ୍ମ କରି ସୈନ୍ୟ ନେଲେ ।
ଅଶ୍ୱଲାଗି ହୋଇଣ ଯେ ସର୍ବେ ବାହାରିଲେ
ପ୍ରତିଦଳେ ଏକ ଏକ ସେନାପତି ଥିଲେ ।
ତିନିଭାଗ ହୋଇ ତିନି ଦିଗେ ଗଲେ ଚଳି
ଗଣ୍ଡମାଳା ପୋକ ପ୍ରାୟ ଯାନ୍ତି ଦୈତ୍ୟେ ଚଳି ।
କିଳିକିଳା ରାବ ଦେଇ ଆସନ୍ତେ ଅସୁରେ
ଢୋଲଦମାଟମକ ଯେ ବାଜେ ବାଦ୍ୟଘୋରେ ।
ବୀର ମହାବୀର ଯେତେ ମଲ୍ଲ ମହାମଲ୍ଲ
ଦଇତ ଆସନ୍ତେ ପୃଥ୍ୱୀ କମ୍ପେ ଦଲ ଦଲ ।
ପ୍ରଳୟାଗ୍ନି ପ୍ରାୟ ଘୋଟିଗଲେ ସର୍ବେ ଆସି
ଚରଣ ରେଣୁ ଘାତରେ ଗଗନ ନ ଦିଶି ।
ବାଦ୍ୟ ଶବଦ ଘାତରେ ଶୁଭେ କୋଳାହଳ
ଉଦଣ୍ଡ ଆଲମ୍ବ ଉଡ଼େ ଯେହ୍ନେ ମେଘମାଳ ।
ଶୁଭଇ କୋଳାହଳରେ ଘଣ୍ଟି ଘଣ୍ଟା ଧ୍ୱନି
ମୁଖରାବ ଶବଦରେ କମ୍ପଇ ମେଦିନୀ ।
ଆଲମ୍ବ ପାଟଛତ୍ର ଯେ ଉଡ଼େ ପନ୍ତି ପନ୍ତି
ଅସୁରେ ପୂରି ଚାଲୁ ନ ଦିଶେ ବସୁମତୀ ।
ଗମନ କରୁ କରୁ ଫୁଟାଉଛନ୍ତି ବାଣ
ଦେଖନ୍ତେଣ ଛିଟିକୁଣି ପଡ଼ିଛି ଥାଟେଣ ।
ବାଟୁଳି ଗୁଳା ଲେଛିଣ ବାନ୍ଧନ୍ତି କେ ଆଣ୍ଟେ
ଗଗନରେ ତାରାଗଣ ରାତ୍ରେ ଯେହ୍ନେ ଫୁଟେ ।
ସେରୂପେ ନାରାଚ ବାୟୁଠାରୁ ବେଗହୋଇ
ଲକ୍ଷ ଲକ୍ଷ କରି କାଣ୍ଡ ବିନ୍ଧନ୍ତି ତୁହାଇ ।
ତଡ଼ତି ହାବେଳି ବାଣ ଫୁଟେ ଅନର୍ଯ୍ୟାପ
କୋଳାହଳ ଧ୍ୱନି କରି ଆସନ୍ତି କୌଣପ ।

ଆସନ୍ତି କକଡ଼ା ବୃଷ୍ଟି ପ୍ରାୟ ସୈନ୍ୟ ଖେଦି
ମଞ୍ଚପୁର ଯାକେ ପେଷିଦ୍ୟନ୍ତି ଶରସନ୍ଧି।
ନୃସିଂହଗଣଙ୍କୁ ଏକାବେଳକରେ ମାରି
ରାଜାଙ୍କୁ ଆମ୍ଭର କହିଦେବା ଅପସରି।
ଏତେ ବୋଲିକରି ଧାଇଁଯାନ୍ତେ ଦୈତ୍ୟବଳ
ଦେଖିଣ ନୃସିଂହଗଣ ହୋଇଲେ ପ୍ରବଳ।
ଅସୁର ବଳକୁ ଦୁଇଗୁଣ ଛନ୍ତି ହୋଇ
ରହିଲେ ବେଢ଼ ବାନ୍ଧିଣ ଚାରିଦିଗେ ଯାଇ।
ନୃସିଂହ ଆଜ୍ଞା କରିଲେ ଦେଖ ମନ୍ତ୍ରୀବର
କେତେ ସୈନ୍ୟ ପେଷିଥିଲା ଏହି ମୁରାସୁର।
ସୁଜାଣ ବୋଲେ ହେ ସ୍ୱାମି ଆମ୍ଭଙ୍କୁ ଏ କେତେ
ଆଖି ପିଛଡ଼ାକେ ମାରି ଆସିବୁ ଦଇତ୍ୟେ।
ନୃସିଂହଗଣ ଆମ୍ଭର ଦେଲେ ବେଢ଼ ବାନ୍ଧି
ତିନିଭାଗ ହୋଇ ଦୈତ୍ୟ ଆସୁଥିଲେ ରୁନ୍ଧି।
ନୃସିଂହଗଣଙ୍କୁ ଦେଖି ନ ପାରିଲେ ପଶି
ଦଇତ୍ୟେ ବେଢ଼ରେ ପଡ଼ିଛନ୍ତି ଏବେ ଆସି।
ନୃସିଂହଗଣଙ୍କୁ ତୁମ୍ଭେ ଅଟ ସେନାପତି
ଏଣୁ ଦୈତ୍ୟଙ୍କୁ ଆମ୍ଭର ନାହିଁ କିଛି ଭୀତି।
ଏତେକ ଦୈତ୍ୟରେ ଆସିଛନ୍ତି ସେନା ତିନି
ବିରାଜ ମୂଢ଼ା ମୁକୁନ୍ଦା ଅସୁରକୁ ଘେନି।
ନୃସିଂହ ଆଜ୍ଞା କଲେ ଏ ମୁର ଦୈତ୍ୟଗଣ
ଯେ ଆଗେ ପଡ଼ିବ ତାକୁ ସେହିଠାରେ ହାଣ।
ଏମନ୍ତ ନୃସିଂହଙ୍କର ଆଜ୍ଞା ଫିଟିଯାନ୍ତେ
ଯୁଦ୍ଧରେ ପଶିଲେ ଯାଇ ଧରି ଧନୁ ହସ୍ତେ।
ସୁଜାଣ ମନ୍ତ୍ରୀବର ଯେ କର୍ଣ୍ଣାଟେଶ ରାଜ
ଶେଷଦେବ ସହିତରେ କଶ୍ୟପ ଆତ୍ମଜ।
ଧର ଧର ମାର ମାର ବୋଲି ଗଲେ ଉଠି
ନୃସିଂହଗଣ ବୁଲାଇ କରେ ମହାଯଷ୍ଟି।
ଦୈତ୍ୟଙ୍କପରେ ବସିଲେ ବୀରଗଣ ମାଡ଼ି
ଶ୍ୟେନ ପକ୍ଷୀପ୍ରାୟ ଝାମ୍ପି ଦ୍ୟନ୍ତି ଅଶ୍ୱମୋଡ଼ି।
କେହୁ କାର ବାଳଧରି ଝିଙ୍କିଣ ପକାନ୍ତି
କେ କାହାକୁ ଧରି ଶିଳା ପରେ କଚାଡ଼ନ୍ତି।
କେହୁ ଗଦା ଖଡ଼ଗ କେ ଶକ୍ତି ଧରି ପିଟି
କେହୁ ନଖେ ବିଦାରି କେ ଚିପେ କାର ତୋଟି।
କେହୁ କୋପେ ଧରି କରେ ମାରେ ବଜ୍ର ଗଦା
କେ ଚାପୋଡ଼େ ମାରି କେହୁ ମାରଇ ଗୁରୁଦା।
କେହୁ ବିଧା ମାରି କେହୁ ବୁକୁ ବିଦାରଇ
କେହୁ ମୁଣ୍ଡେ ମାରି ଛେଚେ ଭୂମିରେ ପକାଇ।
କେହୁ ଆଇ ଆଇ ବୋଲି ଡକାପାରି ମରେ
କେ ମଲି ବୋଲି ପଳାଇ ଯାଏ ଖଣ୍ଡେଦୂରେ।
କେହୁ କାହାକୁ କଚାଡ଼ି ବସେ ହୃଦେ ମାଡ଼ି
ଅଶ୍ୱ ଅସୁର ଦୁହିଙ୍କି ମାରି କେ କଚାଡ଼ି।
କେ ଧନୁ ଧରିଣ କେହୁ ବଜ୍ରବାଣ ମାରି
ପଛଘୁଞ୍ଚା ଦେଇଣ କେ ଯାଏ ଅପସରି।
ଭୃଷଣ୍ଡି ଭାଲ ଧରି କେ ଭୂଷି ପକାଅନ୍ତି
କେ ପଦାଘାତ ମାରିଣ ଅଣ୍ଟା ଭାଙ୍ଗିଦ୍ୟନ୍ତି।
ଦେବତାଏ ସାଗରକୁ ମନ୍ଥିଲେ ଯେପରି
ମନ୍ଥନ୍ତି ନୃସିଂହଗଣେ ଦୈତ୍ୟଙ୍କୁ ସେପରି।
ଏରୂପେ ଅଟେ ନୃସିଂହ ପୁରାଣ ସାଗର
ଏ ଗ୍ରନ୍ଥ ଶୁଣିଲେ ନ ଦେଖିବ ଯମପୁର।
ସିନ୍ଧୁ ମନ୍ଥିବା ପରାୟେ ଦୈତ୍ୟଙ୍କୁ ମନ୍ଥନ୍ତି
ଯହିଁରେ ନୃସିଂହ ହୋଇଛନ୍ତି ସେନାପତି।
କେବଳ ଶୂନ୍ୟରେ ଥାଇ ସର୍ବ ଦେବ ପୁଣ
ଦେଖନ୍ତି ସେ ନୃସିଂହଙ୍କ ଯୁଦ୍ଧ ଆଚରଣ।
ଅଷ୍ଟ ଅପସରା ଆଦି ଶଚୀ ଯେ ଇନ୍ଦ୍ରାଣୀ
ଦେଖନ୍ତି ନୃସିଂହ ଯୁଦ୍ଧ ଶୂନ୍ୟେ ଥାଇ ପୁଣି।
ବୋଲନ୍ତି ସାଧୁ ସାଧୁ ଏ ନୃସିଂହ ମହିମା
ଦିଅନ୍ତି ଯେ ହୁଳହୁଳି ଶୂନ୍ୟେ ଥାଇ ବାମା।
ଅଠାଶୀ ସହସ୍ର ଋଷି ଗଗନରେ ଥାଇ
ଦେଖନ୍ତି ନୃସିଂହଗଣ ଯୁଦ୍ଧ ତୋଷ ହୋଇ।
ମନେ ପାଞ୍ଚନ୍ତି ଅସୁରଗଣଙ୍କୁ ଦେଖିଣ
ନୃସିଂହଗଣ ହାରି ନ ଯାନ୍ତି ଏଠାରେଣ।
ଏ ଯୁଦ୍ଧ ଦେଖି ଆମ୍ଭଙ୍କୁ ଲାଗେ ମହାଭୟ
ଇନ୍ଦ୍ରଙ୍କୁ ବନ୍ଦିରେ ରଖିଥିଲା ଦୈତ୍ୟରାୟ।
ଦିଗ୍‌ବିଜୟକାଳେ କେତେଲୋକଙ୍କୁ ପୀଡ଼ିଲା
ତେଣୁ କରି ପ୍ରଭୁ ସହି ନ ପାରିଲେ ଭଲା।
ମୁରାସୁର ମାରିବାକୁ ହେଲେ ଅବତାର
ନୋହିଲେ କିରୂପେ ଏତେ ମାରନ୍ତେ ଅସୁର।
ଏଡ଼େକ ସମର ଆମ୍ଭେ କେବେ ନାହୁଁ ଦେଖି
ନୃସିଂହଗଣ ଏକା ଯେ ଅଟନ୍ତି ପଦ୍ମାକ୍ଷି।
ବିଜେ କରିଛନ୍ତି ପ୍ରଭୁ ନୃସିଂହଙ୍କ ମଧ୍ୟେ
ଧନୁକୁ ଧରି ଅଛନ୍ତି କରେ ଚକ୍ରାୟୁଧେ।
ତହିଁ ସଙ୍ଗେ ଶେଷଦେବ କର୍ଣ୍ଣାଟେଶ ରାଜେ
ଧନୁଶର ଧରିଛନ୍ତି ସେହି ଯେଝା ଭୂଜେ।
ସୁଜାଣ ମହାମନ୍ତ୍ରୀ ଯେ ଆଉ ଖଗେଶ୍ୱର
ମନକଲେ ଦଣ୍ଡକେ ଏ ମାରିବେ ଅସୁର।
ମୁରାସୁର ସୈନ୍ୟ ଯେତେ ଆମ୍ଭଙ୍କୁ ତ ଜଣା
ନୃସିଂହଙ୍କୁ ଦେଖି ଛାଡ଼ିଦେଲୁ ମନୁ ଘୃଣା।
ଏଥିଅନ୍ତେ ବାଣୀ ଶୁଣ ହେ ନାରଦ ମୁନି
ନୃସିଂହଗଣ ନାଶନ୍ତି ଦଇତ ସଇନି।

ଦଣ୍ଡେ ପରିଯନ୍ତେ ଘୋର ସମର କରିଲେ
ରକ୍ତେ ଜର ଜର ନରସିଂହଗଣ ହେଲେ ।
ଅସୁରଙ୍କ ମଡ଼ାପରେ ପଡୁଅଛି ମଡ଼ା
ରକତ ନଦୀରେ ଭାସିଯାନ୍ତି ଯୋଡ଼ା ଯୋଡ଼ା ।
ହାତୀଗଡେ ରହି ମୁର ସୈନ୍ୟ ଥିଲା ପେଷି
ତିନିଭାଗ ହୋଇଣ ସେ ଯୁଦ୍ଧେ ଥିଲେ ଆସି ।
ଶ୍ରୀନୃସିଂହଗଣଯାକ ଅସୁର ସୈନ୍ୟକୁ
ଦ୍ୱିଗୁଣ ହେବାରୁ ବେଢ଼ି ପକାଇଲେ ତାଙ୍କୁ ।
ଚାରି ପଦ୍ମଯାଏ ଅଶ୍ୱ ସୈନ୍ୟ ମାରିଦେଲେ
ମୁର ସେନାପତି ଦେଖି ସହି ନ ପାରିଲେ ।
ତିନି ସେନାପତି ପୁଣ ହେଲେ ଆଗୁସାର
ମୁକୁନ୍ଦ ବିରାଜ ଦୈତ୍ୟ ପୁଣି ମୃଢ଼ାସୁର ।
ଏ ତିନି ସେନାପତିଏ ଆଗୁଁ ଧାଇଁଗଲେ
ସୈନ୍ୟଙ୍କୁ ପଛ କରିଣ ଶର ବୃଷ୍ଟି କଲେ ।
କକଡ଼ା ମାସରେ ଯେହ୍ନେ ବର୍ଷାକରେ ପାଣି
ସେରୂପେ ଶର ବିନ୍ଧିଲେ ଦୈତ୍ୟମାନେ ଆଣି ।
ଦେଖିଣ ନୃପତିଗଣେ ପଛକୁ ଘୁଞ୍ଚିଲେ
ଶେଷଦେବ ଶର ବୃଷ୍ଟି ଚକ୍ଷୁରେ ଦେଖିଲେ ।
ବିନ୍ଧିଲେ କତୁରୀ ଶର ଧରି ଈଳାସାଇଁ
ଆସନ୍ତେ ଦୈତ୍ୟ ନାରାଚ ଦେଲେକ ଛିଣ୍ଡାଇ ।
ମୁକୁନ୍ଦା ବୋଲେ ତୁମ୍ଭେ କି ଅଟ ଶେଷଦେବେ
ସହସ୍ରଫଣା କାହିଁ ଥୋଇଅଛ ନେଇ ଏବେ ।
ଦାରୁଣ ମଲାକାଳେ ମୁଁ ଦେଖିଥିଲି ବେଳେ
ନାହିଁ ତ ସେ ରୂପ ଏବେ ହୃଦୟ କମଳେ ।
ଶୁଣି ଶେଷ ଦେବ ହସିକରି ମନେ ମନେ
ବୋଲେ ବୃଦ୍ଧକାଳେ ରହିଥାନ୍ତା ରୂପ କେହ୍ନେ ।
ଯୁବାକାଳରେ ସିନା ଏ ରୂପ ହୋଇଥିଲୁଁ
ବୃଦ୍ଧକାଳକୁ ଏବେ ତ ସେରୂପ ଛାଡ଼ିଲୁଁ ।
ମାନବ ଦେହରେ ଜାଣ ତିନିରୂପ ଚଳି
ବାଳକ ଭାବରେ ବାର ବର୍ଷ ମତେ ଖେଳି ।
ଯୁବା ହୋଇଲେ ଶରୀର ଧରେ ଆନ ବର୍ଣ୍ଣ
ସୌନ୍ଦର୍ଯ୍ୟ ସ୍ୱରୂପ ହୋଇ ଖେଳେ କେତେଦିନ
ବୃଦ୍ଧକାଳ ହେଲେ ଅଙ୍ଗୁ ଚର୍ମମାନ ଖସେ
ଶୋଭାହେବି ବୋଇଲେ ସେ ସୁନ୍ଦର ନ ଦିଶେ ।
ଯୁବାକାଳରେ ସହସ୍ର ଫଣା ବହିଥିଲୁଁ
ବ୍ରହ୍ମସ୍ୱରୂପ ଧରିଣ ଦାରୁଣ ବଧିଲୁଁ ।
ଏବେ ତୁ ଆଗେ ଆସିଣ ପଡ଼ିଲୁରେ ମୋର
ଏହିକ୍ଷଣି ତୋତେ ପେଷିଦେବି ଯମପୁର ।
ମୁକୁନ୍ଦା ଯେ ବୋଲେ ବୃଦ୍ଧ ବୋଲି କହିଲୁଣି
କାହିଁକି ଏଡ଼େ ସମରେ ପଶୁ ଦେହଘେନି ।
ପିତାମାତା ହେଲେ କାହିଁପାଇଁ ଦେଲେ ଛାଡ଼ି
ଧନୁ ଧରିଲେ ପଡ଼ିବୁ ଏବେ ମୁଖ ମାଡ଼ି ।
ଏହା ଶୁଣି ଶେଷଦେବ ବୋଲେ ହୋଇ ହୋଇ
ଆମ୍ଭର ମହିମା ତୋତେ କିଛି ଥିବା କହି ।
ଆମ୍ଭ ନାମ ଗୋଟି ଶେଷ ଅନନ୍ତଟି ଜାଣ
ପୃଥ୍ୱୀଯାକ ବହି ରହିଅଛୁ ସଂସାରେଣ ।
ଦୁଷ୍ଟଜନଙ୍କୁ ଯେ ବ୍ରହ୍ମବାଣ ଆମ୍ଭେ ଅଟୁ
ଶର ପେଷି କ୍ଷଣକରେ ତାଙ୍କ ମୁଣ୍ଡ କାଟୁ ।
ସାଧୁ ଲୋକମାନଙ୍କୁ ଟି ଯଶ ଆୟୁ ଦେଉ
ବିପୁଳ ଭୋଗ ଦେଇଣ ସୁଖେ ରଖିଥାଉ ।
ସର୍ବକାଳରେ ଆମ୍ଭେ ତ ଅଟୁ ବ୍ରହ୍ମରୂପ
ତୋ ଆଖି ଜଳକା ହେତୁ ଦିଶୁଛି କୁରୂପ ।
ଅସୁରଙ୍କ ଆଖି ହେଲେ ଅଟେ ଖର ଦୃଷ୍ଟି
ତାଳଫଳ ପ୍ରାୟ ଡୋଳା ଦିଶୁଥାଇ ଫୁଟି ।
ଶୁଣିଣ ମୁକୁନ୍ଦାସୁର ମନେ କୋପ କଲା
ଶେଷଦେବ ଉପରକୁ ଶର ବରଷିଲା ।
ତୀକ୍ଷ୍ଣ ଶରେ ତାକୁ ଛେଦିଦେଲେ ଈଳାସାଇଁ
ପୁଣିହିଁ ଲକ୍ଷେକ ଶର ବିନ୍ଧେ ଦୈତ୍ୟ ନେଇ ।
ସେ ଶର ଆସୁଣୁ ଚାହିଁ ଦେଲେ ଶେଷଦେବ
ଆଖି ପିଛଡାକେ ଛେଦି ପକାଇଲେ ସର୍ବ ।
ମୁକୁନ୍ଦା ଦେଖିଣ ତାହା ମନେ କରି ଘୃଣା
ଲେଉଟି ବିନ୍ଧିଲା ଶର କେତେ ଅକଳନା ।
ଅପର୍ଯ୍ୟାପ୍ତ ହୋଇ ଶର ଆସନ୍ତେଣ ମାଡ଼ି
ହସିଲେକ ଶେଷଦେବ ତୂଣୁ ଶର କାଢ଼ି ।
କତୁରୀ ନାମେ ନାରାଚ ଅଟଇ ସେ ଜାଣ
ବେଗେଛେଦ ବୋଇଲେ ଏ ଆସେ ଯେତେବାଣ ।
ଏତେ କହି ଶର ପେଷିଦ୍ୟନ୍ତେ ଈଳାସାଇଁ
ପଡ଼ିଲା କତୁରୀ ଶର ଦୈତ୍ୟେ ଶିରେ ଯାଇଁ ।
ଖଣ୍ଡ ଖଣ୍ଡ କରି ସବୁ ଛେଦି ପକାଇଲା
ବାହୁଡ଼ି ଆସିଣ ସେହୁ ତୂଣୀରେ ରହିଲା ।
ମୁକୁନ୍ଦା ବୋଇଲା କେଡ଼େ ଲୋକ ଶେଷଦେବ
ଯେତେ ଶର ପେଷିଲେ ଏ ନୁହଇ ମାନବ ।
ମାନବ ହୋଇଲେ ଏକ ଶରେ ଯାନ୍ତା ମରି
ଏତେବେଳଯାଏ କିପାଁ ଥାନ୍ତା ଦେହ ଧରି ।
ଦେବଦେହୀ ନୋହିଲେ କି ସହେ ଏତେ ଶର
ଏବେ ନାଗପାଶ ପେଷିଦେବି ନାହିଁ ଡର ।
ସାନଲୋକ ଜଣେ ବୋଲି ମୁହିଁ ଜାଣିଥିଲି
ଏବେ ନାରାଚ ଯାକ ମୁଁ ବ୍ୟର୍ଥେ ବିନ୍ଧିଦେଲି ।
ଯେ ଯେଡ଼େ ଅଟେ କରିବା ତାଙ୍କୁ ତେଡ଼େଭିଡ଼
ସେ ଲଇଁ ପଡ଼ିଲେ ହୋଏ ଏ ଲୋକ ଯେ ବଡ଼ ।

ସାନଙ୍କୁ ମାଇଲେ ଯେ କି କାର୍ଯ୍ୟ ଅଛି ତହିଁ
ବଡ଼ଙ୍କୁ ମାରି ପାରିଲେ ବଡ଼ ବୋଲାବଇଁ ।
ନୀଚବୁଦ୍ଧି ଲୋକମାନେ ସାନଙ୍କୁ ମାରନ୍ତି
ବଡ଼ଙ୍କୁ ସେ ନ ପାରିଣ ଲୁଚିଣ ପଳାନ୍ତି ।
ଏହୁତ ବଡ଼ ପରାୟ ଲାଗେ ଆସି ମୋତେ
ୟାଙ୍କୁ ମାଇଲେ ଦୋଷ ନ ଲାଗେ କଦାଚିତେ
ନାଗପାଶ ବୋଲିକରି ଅଟେ ଦେବ ଶର
ଏ ମଲେ ପ୍ରଶଂସା ମୋତେ ହୋଇବ ଅପାର
ଏହାର ସଇନ୍ୟଯାକ ଛନ୍ତି ଯେତେ ଆସି
ମରିଯିବେ ନାଗପାଶ ବାଣେ ହୋଇ ଧ୍ୱଂସି ।
ଏତେ ପାଞ୍ଚି ଆସନଙ୍କୁ ଦୈତ୍ୟ ଶୁଦ୍ଧ କଲା
ମନ୍ତ୍ର ପଢ଼ି ଧନୁ ମଧ୍ୟେ ବାଣ ବସାଇଲା ।
ବୋଇଲା ବତିଶ ପଦ୍ମ ହରିଗଣ ଛନ୍ତି
ତହିଁ ଉତ୍ତାରୁ ଆବର ଛନ୍ତି ପାଞ୍ଚମୂର୍ତ୍ତି ।
ସେହି ପାଞ୍ଚମୂର୍ତ୍ତି ନାମ କହିଦେବା ତୋତେ
ନୃସିଂହ ଶେଷ ଯେ କୃଷ୍ଣବଲ୍ଲଭର ସୁତେ ।
କର୍ଣ୍ଣାଟ ରାଜା ସୁଜାଣ ନାମେ ମନ୍ତ୍ରୀବର
ପକ୍ଷୀଏକ ପୋଷି ରଖିଅଛି ପାଖେ ତାର ।
ଏତେ ଜନମାନଙ୍କୁ ତୁ ବାନ୍ଧିପକା ଯାଇଁ
ତେବେ ମୋ ବଡ଼ିମା ଜ୍ଞାତହେବେ ଦୈତ୍ୟସାଇଁ ।
ଏତେ ବୋଲି ଦେବଶର ପେଷନ୍ତେ ଅସୁର
ଆସଇ ଶୂନ୍ୟରେ କ୍ଷେପି ବ୍ୟାପି ମଞ୍ଚପୁର ।
ଶେଷଦେବ ପାଶେ ପାଶେ ତାର୍କ୍ଷ୍ୟ ପୁଣି ରହି
ଆଗୁଁ ଗରୁଡ଼େ ନୃସିଂହଦେବ ଛନ୍ତି କହି ।
ଯୁଦ୍ଧକାଳେ ଭାଇକି ମୋ ଜଗି ରହିଥିବୁ
ଏରୂପେ କହିଣ ଆଜ୍ଞା ଦେଲେ ମହାପ୍ରଭୁ ।
ତେଣୁ ଶେଷଦେବଙ୍କୁ ଯେ ନ ଛାଡ଼ଇ ପକ୍ଷୀ
ଯୁଦ୍ଧବେଳେ ସଙ୍ଗେ ରହିଥାଇ ହୋଇ ସାକ୍ଷୀ ।
ଏଥୁ ଅନନ୍ତରେ ଧାଇଁଆସି ନାଗପାଶ
ଦେଖିଲା ଗରୁଡ଼ପାଶେ ରହିଛନ୍ତି ଶେଷ ।
ବତିଶପଦ୍ମ ପର୍ଯ୍ୟନ୍ତେ ଅଛି ଚଞ୍ଚୁ କାଢ଼ି
ବିସ୍ତାରି ଥଣ୍ଟକୁ ଅତି ଆଗକୁ ଉହାଡ଼ି ।
ଆସିଲେ ଗିଳିବ ବୋଲି ଆକର୍ଷିଛି ରହି
ଯୋଜନେ ଆକ୍ରାନ୍ତେ ତୁଣ୍ଡ ବିସ୍ତାରି ଅଛଇ ।
ମୁଖରେ ପଡ଼ିଲେ ଚାପିଗର୍ଭେ ଦେବି ଭକ୍ଷି
ଏତେକ ପାଞ୍ଚି ନିରୀକ୍ଷି ରହିଛି ସେ ପକ୍ଷୀ ।
ମଞ୍ଚଯାକକୁ ଘୋଟିଣ ଆସେ ନାଗପାଶ
ଦେଖିଲା ତା ଖଣ୍ଡେ ଦୂରୁ ବିନତାର ଶିଷ୍ୟ ।
ଯୋଜନେ ଆକ୍ରାନ୍ତେ ପୁଣି ବିସ୍ତାରୁଛି ପାଟି
ବାତ ଚକ୍ରରେ ବୁଲାଇ ଚାହିଁ ବେନି ଦୃଷ୍ଟି ।
ଗରୁଡ଼ଙ୍କୁ ନାଗପାଶ ଖଣ୍ଡଦୂରୁଁ ଦେଖି
ଭାଜିଲେ ସେ ଅନ୍ତରାଳେ ହୋଇ ନିରୀମାଖି ।
କାହିଁ ନ ରହି ପାତାଳ ମଧ୍ୟେ ଗଲେ ପଶି
ଦେଖି ଶେଷ ତାଙ୍କୁ ମନ ମଧ୍ୟେ ବଡ଼ ହସି ।
ଗରୁଡ଼ଙ୍କୁ ବୋଇଲେ ହୋ କେମନ୍ତେ ଏକଥା
ତୋତେ ଦେଖି ବାଣ ଭାଜି ହୋଇଗଲା ବୃଥା ।
କେଡ଼େ ପୁରୁଷ ଜଣେ ତୁ ପୃଥ୍ୱୀଯାକେ ଅଟୁ
ଏଡ଼େ ଶର ଦେଖି ଭାଜିଗଲା ଅଧବାଟୁଁ ।
ବୁଝିଲେ ଆମ୍ଭ ସୈନ୍ୟକୁ ପକାନ୍ତା ସେ ମାରି
ତୋ ଘେନି ଏଥର ଆମ୍ଭେ ରହିଲୁ ଉବୁରି ।
ଶୁଣିକରି ଗରୁଡ଼ ଯେ ଯୋଡ଼େ ବେନିକର
ବୋଲେ ନୃସିଂହ ଘେନି ମୁଁ ଅଟେ ଅଜ୍ରାମର ।
ନୃସିଂହାନୁଜ ପ୍ରତ୍ୟକ୍ଷ ଅଟ ସପ୍ତଫଣୀ
ତୁମ୍ଭ ପାଖରେ ଥିଲେ ମୁଁ ସୃଷ୍ଟି ପାରେ ଜିଣି ।
ସହସ୍ରେକ ଫଣାରେ ତ ଦ୍ୱିସହସ୍ର ଚକ୍ଷୁ
ଏଣୁକରି ପଳାଇ ସେ ଗଲେ ତୁମ୍ଭ ପାଖୁଁ ।
ବୁଝିଲେତ ଲୋକଙ୍କର ବେନି ଗୋଟି ଆଖି
ତେଣୁ ସୃଷ୍ଟି କି କଳନା କରି ତୁମ୍ଭେ ଦେଖି ।
ପଞ୍ଚାଶ କୋଟି ପର୍ଯ୍ୟନ୍ତେ ଯେତେ ବସୁନ୍ଧରୀ
ବହିଣ ଅଛ ଆପଣ ଆଶ୍ୱସନା କରି ।
ପଶୁଗଣେ ତ କରନ୍ତି ଶିଶୁ ଯେହ୍ନେ ଜାତ
ଜିହ୍ୱାରେ ଘେନିଣ ତାକୁ କରନ୍ତି ଆବୃତ ।
ଓଷଧ ଓଖର ପଥି କେତେ ଦିଅନ୍ତିକି
ସେହିରୂପେ ପାଳ ତୁମ୍ଭେ ଯାବତ ପ୍ରାଣୀଙ୍କି ।
ଏହା ଶୁଣି ଶେଷଦେବ ବହୁ ତୋଷ ହେଲେ
ହସ୍ତରେ ଧନୁ ଧରିଣ ଗୁଣ ଆମଞ୍ଚିଲେ ।
ଏଥୁ ଅନନ୍ତେ ମୁକୁନ୍ଦା ଅସୁରଟି ଜାଣ
ନିରୀକ୍ଷି ରହିଥିଲା ସେ ଶରକୁ ଚାହିଁଣ ।
ଦେଖିଲା ଅଧବାଟରୁ ଭାଜି ଅନ୍ତରାଳେ
ଗରୁଡ଼ଙ୍କୁ ଦେଖି ଶର ପଶିଲା ପାତାଳେ ।
ସ୍ତବଧ ହୋଇ କ୍ଷଣେକ ରହିଲା ଅସୁର
ବୋଇଲା ଆସି ଆୟୁଷ ପୂରିଲା ଆମ୍ଭର ।
ଯେବଣ ଅସ୍ତ୍ର ମୁଁ ଏଥେ ପେଷିଥିଲି ଜାଣ
ବ୍ରହ୍ମା ବିଷ୍ଣୁ ହର ହେଲେ ହୁଅନ୍ତା ନିଧନ ।
ସଚରାଚରକୁ ଏହି ଅଟେ ଏକ ପ୍ରଭୁ
ନ ଜାଣିଣ ମୁରାସୁର ଗର୍ବି ହେଲା ପୂର୍ବୁ ।
ପୂର୍ବରୁ ଯଦ୍ୟପି ବିଷ୍ଣୁ ବୋଲି ଚିହ୍ନି ଥାନ୍ତା
କାହିଁକି ତନୟ ନାତି ଭାଇ ସେ ମରାନ୍ତା ।
ଏବେ ଆଉ ପାଞ୍ଚିଲେ କି କାର୍ଯ୍ୟ ଅଛି ତହିଁ
କାର୍ଯ୍ୟ ଏବେ କଣ୍ଠାଗ୍ରତ ଗଲାଣି ତ ହୋଇ ।

ଏଥିରୁ ପଳାଇ ଲୁଚି ରହିବା ବୋଇଲେ
କ୍ଷତ୍ରିୟ କୁଳକୁ ଲଜ୍ଜା ପାଇବା ଜୀଇଲେ ।
କେବେ ହୋଇଲେ ଅବଶ୍ୟ ମରିବା ନାହିଁକି
ବିଷ୍ଣୁ ହସ୍ତେ ମରିବାର ଛାଡ଼ିବା କାହିଁକି ।
ଏତେ ବୋଲି ଧନୁ କରେ ଧରି ଆମଞ୍ଚିଲା
ଲକ୍ଷେ ଶର ପୂରାଇଣ ଶେଷଙ୍କୁ ବିନ୍ଧିଲା ।
ଶରମାନେ ଆସିବାର ଦେଖି ଇଳାସାଇଁ
ତୀକ୍ଷ୍ଣ ନାରାଚରେ ଛେଦିଦେଲେ ଫୋପଡ଼ାଇ ।
ପୁଣି ଲକ୍ଷେ ଶର ଧରି ପେଷନ୍ତେ ଦନୁଜ
ଶେଷ ବୋଇଲେ ଏଥର ମଲୁରେ ନିର୍ଲ୍ଲଜ ।
କି ବୋଲିଣ ଏତେ ଶର ବିନ୍ଧୁ ବ୍ୟର୍ଥେ ଆଣି
ନ ଜାଣୁକି ମୋର ନାମ ଅଟେ ସପ୍ତଫଣୀ ।
ଏତେ ବୋଲି ଶର ପେଷିଦେଲେ ଶେଷଦେବ
ଆସିବା ଶର ଛେଦିଲେ ଅଧବାଟୁ ଜବ ।
ଧନୁକୁ କରେ ଧରିଣ ଚାହେଁ ନିଶମୋଡ଼ି
ବୋଇଲେ ଦୈତ୍ୟ ଏବେ ତୋ ଯିବପ୍ରାଣଛାଡ଼ି ।
ଏବେ ବଜ୍ରଶକ୍ତି ମାରୁଅଛି ତୋତେ ଜାଣ
ପାରିଲେ ସମ୍ଭାଳି ବେଳେ ରଖ ତୋ ଜୀବନ ।
ଏତେବୋଲି ଶକ୍ତି କୋପେ ମାରି ଶେଷଦେବ
ମୁଣ୍ଡଆଡ଼ି ସମ୍ଭାଳିଣ ରହିଲା ଦାନବ ।
ଗୁଣ୍ଡା ପ୍ରାୟ ହୋଇଣ ସେ ଭାଙ୍ଗିଗଲା ଶକ୍ତି
ଏହା ଦେଖି ଚମତ୍କାର ହେଲେ ଇଳାପତି ।
ଅର୍ଦ୍ଧଚନ୍ଦ୍ର ବାଣ ପେଷିଦେଲେ ସପ୍ତଫଣୀ
ହସ୍ତ ବଢ଼ାଇଣ ଦୈତ୍ୟ ଧଇଲା ତା ଆଣି ।
ବେନିଖଣ୍ଡ କରି ତାହା ଭାଙ୍ଗି ପକାଇଲା
ଦେଖିକରି ଶେଷଦେବ ମନେ ଲଜ୍ଜାହେଲା ।
ବୋଇଲେ ରେ ଧନ୍ୟ ତୋର ଜୀବନ ସାର୍ଥକ
କେତେ ଶର ମେଣ୍ଟି ମୋର ବଞ୍ଚିଲୁ ବେଳକ ।
ଏଥର ତୋ ପ୍ରାଣ ପେଷି ଦେବି ଯମପୁର
ପାରିଲେ ସମ୍ଭାଳିହୋଇ ରହରେ ଅସୁର ।
ଏତେବୋଲି ସେ ଧନୁରେ କସି ମୋଡ଼ାଦେଇ
ଗୁଣରେ ଚଢ଼ାଇଲେ ସେ ବାବଲାସ୍ତ୍ର ନେଇ ।
ବୋଇଲେ ପଡ଼ିବୁ ଗଲାକ୍ଷଣି ଦୈତ୍ୟକନ୍ଧେ
ଶିର ଛେଦି ପକାଇଣ ଆସିବୁ ଆନନ୍ଦେ ।
ତୂଣୀରେ ଆସି ମୋହର ନିଶ୍ଚିନ୍ତେ ରହିବୁ
ମରିବେ କେତେକ ଦୈତ୍ୟନୟନେ ଦେଖିବୁ ।
ଏତେ କହି ଶର ଧନୁ ମଧୁଁ ଦେଲେ ଛାଡ଼ି
ଚଳିଗଲା ଦେବଶର ଶୂନ୍ୟପଥେ ଉଡ଼ି ।
ଦୈତ୍ୟର କନ୍ଧରେ ଯାଇଁ ତକ୍ଷଣେ ପଡ଼ିଲା
ବେନିଖଣ୍ଡ କରି ଆସି ତୂଣୀରେ ରହିଲା ।
କରନ୍ତି ସ୍ୱର୍ଗରେ ଥାଇ ଦେବେ ସାଧୁ ସାଧୁ
ବୋଲୁଛି ତରିଲୁ ଶେଷଦେବଙ୍କ ପ୍ରସାଦୁଁ ।
ଏତେ ବୋଲି ଆକାଶରେ ପୁଷ୍ପବୃଷ୍ଟି କଲେ
ଶେଷଦେବଙ୍କର ଶିରେ କର୍ପୂର ବର୍ଷିଲେ ।
ଏଥୁଅନ୍ତେ ବାଣୀ ଶୁଣ କହିବାକ ଏବେ
ଗରୁଡ଼ ଦର୍ଶନ କରି ଭେଟି ବାସୁଦେବେ ।
ବୋଲେ ଶୁଣ ନରସିଂହ ସ୍ୱାମୀ ଦେବହରି
ଶେଷଦେବର ଏ କର୍ମ ନ ପାର କେ କରି ।
ମୁରର ସେନା ମୁକୁନ୍ଦାସୁର ନାମ୍ନେ ଦୈତ୍ୟ
କ୍ଷଣମାତ୍ରକେ ମାଇଲେ ତାକୁ ଇଳାକାନ୍ତ ।
ଏହା ଶୁଣି ମୁଖପଦ୍ମେ ହସି ଚକ୍ରପାଣି
ବୋଇଲେ ଜିଣିଲେ ତୋର ହେତୁ ସପ୍ତଫଣୀ ।
ଶୁଣିକରି ଗରୁଡ଼ ଯେ ଯୋଡ଼ି କରପଦ୍ମ
ବୋଇଲା ଅଟନ୍ତି ଶେଷଦେବ ବ୍ରହ୍ମଗାତ୍ର ।
ତୁମ୍ଭ ଅନୁଜ ପ୍ରତ୍ୟକ୍ଷେ ଦ୍ୱିତୀ ଚକ୍ରଧାରୀ
ତେଡ଼େ ନୋହିଲେ କି ବହିଥାନ୍ତେ ବସୁନ୍ଧରୀ ।
ବେନି ଚକ୍ଷୁରେ ପ୍ରାଣୀର ଅଟେ କେତେ ବୁଦ୍ଧି
ପାରିବାପଣ ହୋଇଲେ ସୃଷ୍ଟି ପାରେ ଭେଦି ।
ବୁଝିଲେ ବେନି ସହସ୍ର ଅଧେ ଚକ୍ଷୁ ଯାର
ସେ ପୁରୁଷ ବୁଦ୍ଧି ଜାଣ ଅଟେ ଅଗୋଚର ।
ଶେଷଦେବ ପ୍ରାୟ ନାହିଁ କେହି ବଳବନ୍ତ
ସାକ୍ଷାତେ ଅଟନ୍ତି ସେହୁ ମହାବିଷ୍ଣୁ ଗାତ୍ର ।
ପ୍ରଭୁ ଆଜ୍ଞାରୁ ଆମ୍ଭେ ତ ଅଗ୍ରେ ରହିଥାନ୍ତେ
ଆମ୍ଭର ବଳ କଳି କେ ପାରିବ ଜଗତେ ।
ଶୁଣିଣ ନୃସିଂହ ସ୍ୱାମୀ ହସି ମନେ ମନେ
ବୋଇଲେ ତୁମ୍ଭ ବଳ ମୁଁ ଜାଣେ ସବୁଦିନେ ।
ବୋଇଲେ ତ ମୁର ବାନ୍ଧିଅଛି ହାତୀଗଡ଼
ସେ ଗଡ଼ କଥାତ ତୋତେ ଲାଗିଲା ଗରୁଡ଼ ।
ଆଉ ମୁରର ଅଛନ୍ତି ସେନାପତି ବେନି
ମୁକୁନ୍ଦା ମଲାରୁ ସେହୁ ହେଲେଣି ଅଜ୍ଞାନୀ ।
ସୁଜାଣ ମନ୍ତ୍ରୀବର ଯେ କର୍ଣ୍ଣାଟେଶ ରାଜା
ସେ ଦୁହିଙ୍କୁ ମାରି ଏବେ ଦ୍ୟନ୍ତୁ ବଳିଭୋଜା ।
ମୁର ସୈନ୍ୟଙ୍କୁ ନୃସିଂହଗଣ ହୋଇ ଏକ
ପ୍ରାଣାୟ ସ୍ୱାହା କରିଣ ଦ୍ୟନ୍ତୁ କାଟି ବେକ ।
ଏରୂପେ ବୋଲୁ ବିରାଜ ମୂଢ଼ାସୁର ଯହିଁ
ମୁକୁନ୍ଦା ମୃତ୍ୟୁ ଦେଖିଣ ଧାଇଁଲେ ଆଗହିଁ ।
ବୋଇଲେ ଆମ୍ଭର ସେହି ଅଟେ ସାଙ୍ଗ ଭାଇ
ବ୍ୟର୍ଥରେ ଘଣ୍ଟିଗଲା ସେ ଆମ୍ଭ ଆଗେ ଥାଇ ।
ଏହା ଶୁଣିକରି ରାଜା ଆମ୍ଭଙ୍କୁ ନିନ୍ଦିବେ
ବୋଲିବେ ମୁକୁନ୍ଦା ଦେଇ ଆସିଲ କି ଏବେ ।

କେଡ଼େ ରଥୀକି ମୋହର ସଙ୍ଗେ ଘେନିଯାଇ
କି ବୋଲି ମରାଇ ତାଙ୍କୁ ଆସ ଦେହ ବହି।
ଆମ୍ଭେ ଜାଇଥିବାର କି କାର୍ଯ୍ୟ ଅଛି ଆଉ
ଏତେ ବୋଲି ସମରକୁ ଗଲା ରଣରାହୁ।
ବିରାଜ ସୁଜାଣମନ୍ତ୍ରୀ ତୁଳେ କଲେ ଯୁଦ୍ଧ
କର୍ଣ୍ଣାଟେଶ୍ୱର ମୂଢ଼ାର ଲାଗିଲା ବିବାଦ।
ବିରାଜ ବୋଲେ ସୁଜାଣ ମନ୍ତ୍ରୀ ତୁହି ପରା
ବୁଝିଲେ ତୋ ମନ୍ତ୍ରୀବୁଦ୍ଧି ଅଟେ ଅପନ୍ତରା।
ସଂସାରରେ ଯେତେ ମନ୍ତ୍ରୀ ରାଜା ଆଶ୍ରେ ଥାନ୍ତି
ବୃହସ୍ପତି ପ୍ରାୟ ବୁଦ୍ଧିମାନ ପ୍ରକାଶନ୍ତି।
ସବୁ ମନ ଘେନି କରୁଥାନ୍ତି ବୁଝାମଣା
ଧର୍ମନ୍ୟାୟ କରି ବୁଝୁଥାନ୍ତି ହରା କିଣା।
ଦେଖିଲେ ତୋ ମନ୍ତ୍ରୀପଣ ଅଟେ ଅବିବେକ
ତୋ ଘେନି ବଲ୍ଲଭ ପୋଏ ହେଲେ ଅପାତ୍ରକ
କ୍ଷତ୍ରିୟ କୁଳରେ ଯେବେ ଥାନ୍ତେ ହୋଇ ଜନ୍ମ
ତେବେ ସିନା ସାଜନ୍ତା ଏ କରିଲେ ସଂଗ୍ରାମ।
ବ୍ରାହ୍ମଣକୁଳେ ଜନମ ଏହି ଦୁଇ ଭାଇ
ଗଲେ କ୍ଷତ୍ରୀ କର୍ମେ ବର୍ଣ୍ଣ ଶଙ୍କରଟି ହୋଇ।
ବାପ ଅଜା କାଳରେ ନ ଥାଇ ଯାର ହୁଦା
ଅବାଟେ ଗଲେ ବୋଲନ୍ତି କଲା ଏ ଅବିଦ୍ୟା।
ବିପ୍ର ପୁତ୍ରଙ୍କୁ କ୍ଷତ୍ରିୟ ବିଦ୍ୟାରେ ଭରିଲୁ
ତେଣୁ ତୋ ମନ୍ତ୍ରୀ ବୁଦ୍ଧିକି ଆମ୍ଭେ ନିନ୍ଦାକଲୁ।
ତୋ ଲାଗି ବାତୁଳ ହେଲେ ସେହି ବେନିଭାଇ
ବିପ୍ରକର୍ମ ଛାଡ଼ି କ୍ଷତ୍ରୀକର୍ମ କଲେ ସେହି।
ଯେ ଯାହା ଜାତି ଧର୍ମରେ ଥିଲେ ପୂଜାପାଏ
ବିଜାତି ବର୍ଣ୍ଣଶଙ୍କର ମଧ୍ୟେ ଲେଖା ହୋଏ।
ନ ଜାଣିବା ଲୋକମାନେ ସ୍ୱଜାତି ହରାନ୍ତି
ଛାଡ଼ିଲେ ବେନିକୁଳ ସେ ଅଲଗା ହୁଅନ୍ତି।
କୃଷ୍ଣବଲ୍ଲଭର ପୋଏ ସ୍ୱପନ୍ଥା ଛାଡ଼ିଲେ
ବିପ୍ରହିଁ ନୋହିଲେ କିବା କ୍ଷତ୍ରିୟ ନୋହିଲେ।
ଶୁଣିଣ ସୁଜାଣ ମନ୍ତ୍ରୀ ବୋଲେ ହୋଇ ହୋଇ
ତୁମ୍ଭ ରଜାଙ୍କୁ ପଚାରି ଆସ ବେଗେ ଯାଇ।
ବ୍ରହ୍ମାଙ୍କ ବୀର୍ଯ୍ୟରୁ ପରା ଜନ୍ମି ଥିଲେ ସେହୁ
ବୁଝିଲେ ତ ବ୍ରାହ୍ମଣ ସେ ନୁହେଁ ଦୈତ୍ୟରାହୁ।
ଦୁଷ୍ଟ ପ୍ରପଞ୍ଚ ନଷ୍ଟ ତ ଯେଉଁ ବିପ୍ର ହୋଇ
ତାଙ୍କୁ ନାଶିଲେ ସଂସାର ମଧ୍ୟେ ପାପନାହିଁ।
ବିଧାତାର ସରଜନା ମୁହିଁ କି କହିବି
ରଖିଲେ କସ୍ତୁରୀକି ସେ ନେଇ ମୃଗନାଭି।
ସେ ମୃଗ ବୁଝିଲେ କାର ଅଟଇ ବଇରୀ
କସ୍ତୁରୀ ପାଇଁ ପକାଉଛନ୍ତି ତାଙ୍କୁ ମାରି।

ଏ କଥା ବିବେକପଣ ନୋହିଲା ଧାତାର
ରଖିଥାନ୍ତେ ଯେବେ ନେଇ ଖଟୁଆ ଜିହ୍ୱାର।
କସ୍ତୁରୀ ଲୋଡ଼ା ହୋଇଲେ ଖଟୁଆକୁ ଧରି
କାଟିଣ ଜିହ୍ୱା ତାହାର ଆଣନ୍ତେ କସ୍ତୁରୀ।
ସେହି ସ୍ଥାନରୁ ଖଟୁଆ ଶେଷ ହୋଇଯାନ୍ତେ
ଖଟ କହିବାକୁ ଆଉ ଗୋଟିଏ ନ ଥାନ୍ତେ।
ବିପ୍ରକୁଳରେ ନୃସିଂହ ଜନ୍ମ ହୋଇଅଛି
ବିପ୍ରକୁ ବିପ୍ର ମାଇଲେ ଦୋଷ ନାହିଁ କିଛି।
ବ୍ରହ୍ମାଙ୍କର ପୁତ୍ର ହୋଇ ମୁରାସୁର ପାପୀ
କ୍ଷତ୍ରିୟ ବିଦ୍ୟାରେ ପଶି ହେଲା ମହାକୋପୀ।
ଦେବତା ବ୍ରାହ୍ମଣ ଆଦି ବୈରିପକ୍ଷ ହେଲା
ଦିଗ ବିଜୟେ କରିଣ ସବୁ ସାଧ କଲା।
ତେଣୁ ତାର ଭାର ପ୍ରଭୁ ନ ପାରିଲେ ସହି
ଜନ୍ମିଲେ ବିପ୍ରକୁଳରେ ନରରୂପ ବହି।
ବିପ୍ରକୁ ଆନଲୋକେ ନ ପାରେ କେବେ ମାରି
ତେଣୁ ବାହାରିଲେ ପ୍ରଭୁ କ୍ଷତ୍ରୀ ବିଦ୍ୟା କରି।
ଏମନ୍ତ ପ୍ରଭୁଙ୍କୁ ମୁର ନରବିଷ୍ଣୁ ବୋଲି
ବଂଶ ମରାଇଣ ଆସିଅଛି ଏବେ ଚାଲି।
ସତରଲକ୍ଷ ପୁତ୍ର ଯେ ନବଲକ୍ଷ ନାତି
ନାତିଆଡୁ ମରାଇ ଯେ ଆଣିଲା ସବୁନ୍ତି।
ଆବର ଯେ ସେନାପତି ଯେତେ ଥିଲେ ତାର
ଏ ନୃସିଂହ ମାରି ପେଷି ଦେଲେ ଯମପୁର।
ଏବେ ତାଙ୍କ ସଙ୍ଗେ ତୁମ୍ଭେ ସଙ୍ଗ ହେବ ଯାଇ
ଶୁଣିକରି ବିରାଜର କମ୍ପେ ନିଜଦେହୀ।
ବେନି ହସ୍ତେ ଧନୁ ଧରି ବିନ୍ଧିଲା ନାରାଜ
ବୋଲେ ପ୍ରାଣ ତୋ ସମ୍ଭାଳି ରଖିଥାରେ ଆଜ।
ଦେଖିଣ ସୁଜାଣ ମନ୍ତ୍ରୀ ନାରାଚେକ ପେଷି
ଦୈତ୍ୟ ଶରକୁ ପକାଇ ଦେଲେ ବେଗେଧ୍ୱଂସି।
ଦେଖିଣ ବିରାଜ ଦୈତ୍ୟ ମନେ କୋପ କଲା
ସମ୍ଭାଳ ହୋ ମନ୍ତ୍ରୀ ବୋଲି ଉଚ୍ଚେ ଡାକଦେଲା।
ସେଥର ତ ବଞ୍ଚିଗଲୁ ଏବେ ବଞ୍ଚିବୁ କି
ଏତେ ବୋଲି ଧନୁଶର ଧରେ କରେ ଟେକି।
ପର୍ବତ ଶରକୁ ଧରି ବିନ୍ଧନ୍ତେ ଅସୁର
ବଜ୍ରଶର ପେଷି ଛେଦିଦେଲେ ମନ୍ତ୍ରୀବର।
ପୁଣି ଅଗ୍ନିଶର ବିନ୍ଧିଦ୍ୟନ୍ତେ ଦୈତ୍ୟ ଉଠି
ଆସୁଣୁ ବଡ଼ବାନଳ ସୃଷ୍ଟିଯାକ ଘୋଟି।
ଦେଖି ମନ୍ତ୍ରୀବର ବିନ୍ଧିଦେଲେ ଜଳପାଶ
ଲିଭିଣ ବ୍ରହ୍ମାଗ୍ନି ଘୁଞ୍ଚିଗଲେ ଶତେକ୍ରୋଶ।
ଦେଖିଣ ଅସୁରକୁ ନ ସ୍ପୁରେ ଆଉ କିଛି
ବୋଇଲା କେଡ଼େ ଶର ମୋ ବ୍ୟର୍ଥେ ଗଲାଘୁଞ୍ଚି।

ଏତେ ମନେ ପାଞ୍ଚି ପେଷିଦେଲା ଅହି ଶର
ଗରୁଡ଼ ଶରରେ ତାହା ନାଶେ ମନ୍ତ୍ରି ବର।
ଦେଖିଣ ବିରାଜ ଦୈତ୍ୟ ମନେ କୋପକଲା
ଧନୁର୍ଗୁଣରେ ବସାଇ ଶକତି ପେଷିଲା।
ବୋଇଲାକ ଶକତି ହୋ ଶୀଘ୍ରହୋଇ ଚ଼ଳ
ମନ୍ତ୍ରୀ ମଲେ ନୃସିଂହର ଭାଙ୍ଗୁ ବୁଦ୍ଧିବଳ।
ଏହା ଘେନି ବଳବନ୍ତ ସିନା ବେନିଭାଇ
ପଶିଛନ୍ତି କ୍ଷତ୍ରୀ କର୍ମେ ଅଲାଜୁକ ହୋଇ।
ଶୁଣିଣ ମହା ଶକତି ଆସନ୍ତେ ପ୍ରଖର
ଦେଖିଣ ଧଇଲା ବଜ୍ର ଶକ୍ତି ମନ୍ତ୍ରୀବର।
ବୋଇଲା ଦଇତ ଶର ବାଟୁ ପକା ଭାଙ୍ଗି
ଏଥର ଯମ ପୋଛଇ ସିନା ତୋର ପାଞ୍ଜି।
ଏତେ ବୋଲି ଶକ୍ତି ପେଷିଦ୍ୟନ୍ତେ ମନ୍ତ୍ରୀବର
ଦୁଇଶର ଭେଟ ହୋଇ ଲାଗିଲା ସମର।
ଗଡ଼ାଗଡ଼ି ମରାମରି ଧରାଧରି ହେଲେ
ଦୁହେଁ ସରିସମ ହୋନ୍ତେ ଉଚ୍ଚବାଚ କଲେ।
ବୋଇଲେ ଆମ୍ଭେ ଦୁହେଁତ ବୋଲାଇ ଏକଘ୍ନୀ
କାହିଁପାଇଁ ବ୍ୟର୍ଥେ ଦୁହେଁ ହେବା ଅନ୍ୟୋଅନି।
ତୁହି ନୋହୁ ସାନ ମୁହିଁ ନୁହେଁ ତେବେ ସାନ
ଅବାହୁଡ଼ ଶର ଆମ୍ଭେ ଅଟୁଁ ବେନିଜନ।
ଏବେ ଆସ ବଇକୁଣ୍ଠ ପୁରେ ଆମ୍ଭେ ଯିବା
ବିଷ୍ଣୁଙ୍କୁ ସେବା କରିଣ ନିଶ୍ଚିନ୍ତେ ରହିବା।
ଏରୂପେ ମରିଣ ଦୁହେଁ ଚଳିଲେ ବୈକୁଣ୍ଠ
ସେଠାରୁ ବିରାଜଙ୍କୁ ନ ଦିଶେ ବୁଦ୍ଧି ବାଟ।
ଧୈର୍ଯ୍ୟଧରି ପୁଣି ବିନ୍ଧିଦେଲା ଲକ୍ଷେ ଶର
ତୀକ୍ଷ୍ଣ ନାରାଚେ ଛେଦିଲେ ତାହା ମନ୍ତ୍ରିବର।
ଆବର ଲକ୍ଷେକ ଶର ଧରି ଦୈତ୍ୟମଣି
ଧନୁରେ ବସାଇ ବିନ୍ଧିଦେଲା ଗୁଣଟାଣି।
ନାରାଚ ଆସୁଣୁ ତାହା ନେତ୍ରେ ମନ୍ତ୍ରୀ ଦେଖି
ଚାହିଁଲେ ଶୂନ୍ୟେ ଆସନ୍ତି ଯେହ୍ନେ ଉଡ଼ି ପକ୍ଷୀ
କତୁରୀ ବାଣକୁ ଖରେ ଧଇଲେ ତତ୍‌କ୍ଷଣ
ବୋଲେ ଛେଦିପକା ଆସୁଛନ୍ତି ଯେତେବାଣ।
ଯା ବୋଲି ଧନୁରେ ଛାଡ଼ିଦ୍ୟନ୍ତେ ମନ୍ତ୍ରୀବର
ଅର୍ଦ୍ଧବାଟୁଁ ଛେଦି ତାକୁ ଦେଲା ତତପର।
ମନ୍ତ୍ରୀର ତୂଣୀରେ ଆସି ରହିଲା ନିବର୍ତ୍ତି
ଦେଖିକରି ବିରାଜର ଥରିଗଲା ଛାତି।
ବୋଇଲାକ କେତେଶର ମେଣ୍ଟିଲା ଏ ମୋର
ଏଥର ନିଶ୍ଚୟେ ମାରିଦେବି ବ୍ରହ୍ମଶର।
ଏ ଶର ମୋତେ ତ ସୂର୍ଯ୍ୟଦେବ ଛନ୍ତି ଦେଇ
ବୋଇଲେ ବିନ୍ଧିବୁ ପ୍ରାଣ ଯିବାକାଳେ ତୁହି।

ଏତେ ମୁଁ ଶର ବିନ୍ଧିଲି ଜାଣ ଆଲୋକିତ
ତହିଁରେ ଯାକୁ ନୋହିଲା କିଛି ଅପଘାତ।
ଏତେ ବୋଲି ଯୋଚି ବିନ୍ଧିଦେଲା ଧନୁ ଟାଣି
ବ୍ରହ୍ମାଣ୍ଡଯାକ ଘୋଟିଣ ଆସେ ଶର ପୁଣି।
ନୃସିଂହ ଦେଖିଣ ତାହା ଚମତ୍କାର ହେଲେ
ଏକଘନୀ ଶରନେଇ ମନ୍ତ୍ରୀ କରେ ଦେଲେ।
ବୋଇଲେ ଏ ଶରକୁ ହୋ ବିନ୍ଧିବେ ସେ ଟାଣି
ତାକୁ ବାହୁଡ଼ାଇ ଦେବ ଏହି ତତ୍‌କ୍ଷଣି।
ଶୁଣି ମନ୍ତ୍ରୀବର ନୃସିଂହଙ୍କ ଆଜ୍ଞାପାଇ
ଏକଘନୀ ଶର ପେଷିଦେଲା ଶୀଘ୍ର ନେଇ।
ତତକ୍ଷଣେ ଏକଘନୀ ଶୀଘ୍ର ଗଲା ଚଳି
ବାଟରେ ବ୍ରହ୍ମଶରକୁ ଦେଖିଲା ଉଗାଳି।
ବୋଇଲାକ କେତେ କୃତ୍ୟ କଲୁ ବ୍ରହ୍ମଶର
ଦେଖ ବିଜେ କରିଛନ୍ତି ନୃସିଂହ ଠାକୁର।
ମୋତେ ତୋହର ପାଶକୁ ଦେଲେ ପୁଣି ପେଷି
ବୋଇଲେକ ବ୍ରହ୍ମଶର ହୋଇଯାଉ ଧ୍ୱଂସି।
ତେଣୁକରି ତୋତେ ମୁହିଁ ବୋଲୁଛି ବାହୁଡ଼
ବୁଝିଲେକ ସବୁକଥା ହରିଙ୍କର ଖେଳ।
ତୋତେ ପେଷିଲାରୁ ପେଷିଦେଲେ ମୋତେହରି
ସୁଜାଣ ମନ୍ତ୍ରୀଙ୍କୁ ସେହି ରଖିବେ ଉଦ୍ଧାରି।
ହେ ବ୍ରହ୍ମଶର ମୁଁ ତୋତେ କହୁଅଛି ଶୁଣ
ସବୁଶର ଉପରେ ମୁଁ ଅଟେ ବଡ଼ ଜାଣ।
ମୋହର ଯେ ମହିମାକୁ ଥିବୁ ତୁହି ଚିହ୍ନି
ସବୁଶର ଉପରେ ମୁଁ ଅଟେ ଏକଘନୀ।
ଅନ୍ୟ ଶରମାନଙ୍କର ମହିମାଟି ଯେତେ
ତାକୁ ବଳି ଷୋଳବିଶ୍ୱା ପ୍ରାକ୍ରମ ମୋ ନିତ୍ୟେ।
ଅକ୍ଷୟ ପାଶୁପତ ଯେ ଅମୋଘ ଶକତି
ପରିଘ ଭୂଷଣ୍ଡି ଶୂଳ ଖର୍ପର ଯେ କାତି।
ବ୍ରହ୍ମାସ୍ତ୍ର ମୋହନ ବିଷ୍ଣୁ ଶର ଜଳପାଶୀ
ଦହନ ଶୋଷଣ ଅଗ୍ନି ଶର ବାଣ ମିଶି।
ମୋହପାଶ ଯମଦାଢ଼ ପରିଘ ଶାବେଳି
ମେଘ ବରୁଣ କୁବେର ଶର ରତ୍ନାବଳୀ।
ନାଗପାଶ କାଳପାଶ ବାୟୁ ଶଲ୍ୟଶର
ଗରୁଡ଼ ପର୍ବତ ମନଭେଦୀ ଅହିବର।
ବାବଲ ବ୍ରହ୍ମଶକତି ତ୍ରିଶୂଳ ଚୌକାନା
ଶୂନ୍ୟଭେଦୀ କାଳଭେଦୀ ଆଉ ଏକମୁନା।
କାଳ ବିକାଳଭେଦୀ ଯେ ସ୍ତମ୍ଭନ ମୋହନ
ଭଲ୍ଲ ତୋମର ଶକତି ବଶ୍ୟ ଉଚ୍ଚାଟନ।
ଅକାଳ ତ୍ରିକାଳ ମହାକାଳ ବଜ୍ର ବାଣ
ଉଡ଼ାଣ ବୁଡ଼ାଣ ମିଶି ତାରଣ ମାରଣ।

ମୁଗୁର ଅଧାଚନ୍ଦ୍ର ଯେ ବେତାଳ ହେତାଳ
ଜୟ ବିଜୟ ଭୈରବ ସୁତାଳ ଯେ ତାଳ।
କୁହୁକ ଅହିଶର ଯେ ସିଂହନାଦ ଧ୍ୱନି
ଶଙ୍କର ଗର୍ଜ୍ଜନାଅସ୍ତ ସୂର୍ଯ୍ୟାବଳୀ ଘେନି।
ସୂର୍ଯ୍ୟାବର୍ତ୍ତ ଶର ଆଉ ଚନ୍ଦ୍ରାବଳୀ ବାଣ
କୌମୋଦକୀ ଗଦା ନୀଳବାଣ ଭୁଜବାଣ।
ହତାଶ ବତାଶ ଶର ଆଉ ଜଳପାଶ
ବ୍ରହ୍ମ ରୁଦ୍ରପାଶ ନିରିଘାତ ବଜ୍ରଘୋଷ।
ବ୍ରହ୍ମ ରୁଦ୍ର ଶକତି ଅମୋଘ ଗଦାବର
ଯମପାଶ ମହାପାଶ ଜୀବନ୍ୟାସ ଶର।
ତେତିଶକୋଟି ଦେବଙ୍କ ଯେତେଗୋଟି ଶକ୍ତି
ଏରୂପେ ଥୋକେ କହିଲି ବାଛି ଶରମୂର୍ତ୍ତି।
ମୋ ନାମ ଏକଘନୀ ମୁଁ ଅଟେ ନିରାକାର
ମୋର ସମାନ ଜଣେ ତୁ ଅଟୁ ବ୍ରହ୍ମଶର।
ନୃସିଂହ ଆଜ୍ଞାରେ ମନ୍ତ୍ରି ଦେଲା ମୋତେ ପେଷି
ତୁହି ଏବେ ରହ ସୂର୍ଯ୍ୟମଣ୍ଡଳରେ ପଶି।
ବ୍ରହ୍ମଶର ଶୁଣି ତାହା ଚମତ୍କାର ହେଲା
ବୋଇଲା କହ ମୁହିଁ କିରୂପେ ଯିବି ଭଲା।
ଜାଣ ମୁହିଁ ଅବାହୁଡ଼ ଅଟେ ବ୍ରହ୍ମଶର
ପେଷିବା ଲୋକ କାର୍ଯ୍ୟ ନ କଲେ ନୁହେ ସ୍ଥିର।
ତୁହି ତ ମୋହର କଥା ଜାଣିଅଛୁ ସବୁ
ଏଥକୁ ବୁଦ୍ଧି କହ କିରୂପେ ଯିବି ବାବୁ।
ଶୁଣି ଏକଘନୀ ସତ ଏହା ବୋଲି ପାଞ୍ଚି
ବୋଲେ ପ୍ରଭୁଙ୍କ ପ୍ରସାଦ ଅଛଇ ଯେ କିଛି।
ପୃଥ୍ୱୀଯାକକୁ ସେ ମହା ନିରିମାଲ୍ୟ ଅଟେ
ତାହାର ସେବା କଲେ ନ ରହେ ପାପ ଘଟେ।
ତୁ ଯେବେ ପାଞ୍ଚିଲୁ ଏଡ଼େ କଥା ବ୍ରହ୍ମଶର
ତା ମୁଁ ଦେଉଅଛି ତୋତେ ଭୋଗ ଏବେ କର।
ଏହା ଶୁଣି ବ୍ରହ୍ମଶର ମନେ ଶାନ୍ତି ଭଜି
ବିଷ୍ଣୁ ନିର୍ମାଲ୍ୟ ପାଇଣ ବସେ ବେଗେ ଭୁଞ୍ଜି।
ଗ୍ରାସ ପୂରା କରିଣ ସେ ହେଲା ମହାଭୋଳ
ସେହିଠାରୁ ଗଲା ଚଳି ଆଦିତ୍ୟ ମଣ୍ଡଳ।
ସୂର୍ଯ୍ୟଦେବଙ୍କ ରଥରେ ଯାଇ ବିଜେ କଲା
ସେଠାରୁ ଦ୍ୱିଗୁଣ ସୂର୍ଯ୍ୟତେଜ ବିକାଶିଲା।
କୁମ୍ଭର ପରେ ମିଥୁନ ଯାଏ ରଶ୍ମି ଟେକି
ସେହିଠାରୁ ଶାନ୍ତି ଭଜି ରହଇ ପୃଥ୍ୱୀକି।
ଏରୂପେ ସେ ବ୍ରହ୍ମଶର ମହିମା ପ୍ରକାଶ
ଆସି ଏକଘନୀ ମିଳିଗଲା ବିଷ୍ଣୁ ପାଶ।
ଦେଖିଣ ନୃସିଂହ ତାକୁ ବହୁ ଶ୍ରଦ୍ଧା କଲେ
ମନେ ପ୍ରଶଂସି ତୂଣୀରେ ନେଇ ଠାବଦେଲେ।
ଏଥୁଅନନ୍ତରେ ଯୁଦ୍ଧ ସମାଚାର ଶୁଣ
ବିରାଜ ଦୈତ୍ୟ ଦେଖି ନ ବିନ୍ଧେ ଆଉ ବାଣ।
ବୋଲେ ଏତେଶର ବିନ୍ଧିଦେଲେ ବ୍ୟର୍ଥେ ଆଣି
ପାଣି ଫୋଟକା ପରାୟ ଗଲା ଭାଜି ପୁଣି।
ବୁଝିଲେ ମୁରାସୁରକୁ ଯଶ ନାହିଁ ଆଉ
ମୋ ପରା ରଥୀ ମରିବ ଏବେ ଚାହୁଁ ଚାହୁଁ।
ଏରୂପେ ଅସୁର ପୁଣି ହୃଦେ ପାଞ୍ଚି ଚେତେ
ବିନ୍ଧିଲା ସୁଜାଣ ମନ୍ତ୍ରୀ ବାଣ ଅପ୍ରମିତେ।
କରକାବୃଷ୍ଟି ପରାୟ ପଡ଼େ ଦୈତ୍ୟଅଙ୍ଗେ
ପୋଛିଣ ଫିଙ୍ଗି ତାହାକୁ ଦେଲା ଦଶଦିଗେ।
ପୁଣି ମନ୍ତ୍ରୀ ବିନ୍ଧନ୍ତେ ବିଜୟ ନାମେ ଶର
ହାତେ ଧରି ଭାଙ୍ଗି ତାହା ଦେଲାକ ଅସୁର।
ଦେଖି ପ୍ରଶଂସା ସୁଜାଣ ମନ୍ତ୍ରୀ ତାକୁ କଲା
ଏଥର ସମ୍ଭାଳ ବୋଲି ନାରାଚ ଯୋଚିଲା।
ସୂର୍ଯ୍ୟାବର୍ତ୍ତକ ଶରକୁ ଗୁଣରେ ବସାଇ
ବୋଇଲେ ଦୈତ୍ୟର ଶିର ଛେଦି ଆସ ଯାଇ।
ଶୁଣି ସୂର୍ଯ୍ୟାବର୍ତ୍ତ ଧନୁ ମଧ୍ୟୁ ଗଲ ଚଳି
ଗର୍ଜିଣ ଦୈତ୍ୟ କଣ୍ଠରେ ପଡ଼ି ମହାବଳୀ।
ବେନିଖଣ୍ଡ କରି ତାକୁ ଆସିଲା ବାହାରି
ତୂଣୀରେ ପଶିଲା ଅବ୍ଧି ମଧ୍ୟେ ସ୍ନାନକରି।
ବିରାଜ ଦୈତ୍ୟ ମରନ୍ତେ ମୂଢ଼ାସୁର ଦେଖି
ଧାଇଁଲା ଖଣ୍ଡଦୂରରୁ ସମର ଉପେକ୍ଷି।
ଆହା ସଖାବୋଲି କେତେ ରୋଦନ ସେ କଲା
ଧନୁରେ ଗୁଣ ଚଢ଼ାଇ ନାରାଚ ଯୋଚିଲା।
ମଲ ରେ ବିପ୍ରେ ଛାଡ଼ନ୍ତି ଏକ ଘୋରରଡ଼ି
ଦେଖି କର୍ଣ୍ଣାଟେଶ ଉଠି ଗଲେ ନିଶ ମୋଡ଼ି।
ବୋଇଲେ ପାମର ଆରେ କିପାଁ ଅଛୁ ଧାଇଁ
ଦେଖୁ ଦେଖୁ ପଶିଲୁ କି ବୋଲି ରଣଭୂଇଁ।
ବତିଶପଦ୍ମ ନୃସିଂହଗଣ ଯହିଁ ଛନ୍ତି
ତାଙ୍କ ମଧ୍ୟେ ବିଜେ କରିଛନ୍ତି ଲକ୍ଷ୍ମୀପତି।
ଗରୁଡ଼ ବାହନେ ବସିଛନ୍ତି ବିଜେକରି
ଶଙ୍ଖ ଚକ୍ର ଗଦା ପଦ୍ମ ଚାରିଭୁଜେ ଧରି।
ମୁରାସୁରର ନିମନ୍ତେ ଛନ୍ତି ଜନ୍ମ ହୋଇ
ତୁମ୍ଭେ ବୋଲୁଛ ବ୍ରାହ୍ମଣ ଭିକ୍ଷୁ ଏ ଅଟଇ।
ମାନବବିଷ୍ଣୁ ବୋଲିଣ ମନେ ପାଞ୍ଚୁ ଅଛ
ସାହସପଣ କରିଣ ଯୁଦ୍ଧରେ ପଶୁଛ।
ଏବେ ଚାରିସେନା ଆସି ଗଲ ଆଗ ହୋଇ
ମଲେଣି ତିନିସେନା ତୁ ଏକା ଅଛୁ ରହି।
ଏବେ ମୁରାସୁର ବାନ୍ଧିଅଛି ହାତୀଗଡ଼
ସେ ଗଡ଼ ଦେଖି ଆମ୍ଭର ହସୁଛି ଗରୁଡ଼।

ସତର ଲକ୍ଷେକ ପରା ମୁର ପୁତ୍ର ଥିଲେ
ଆଖଡ଼ାଶାଳେ ଗରୁଡ଼ ହାତରେ ମରିଲେ।
ଏବେ ଏ ହାତୀଗଡ଼କୁ ଜଗିଛି ଘରୁଡ଼
ତୁ ମଲାପରେ ପଡ଼ିବ ଜାଣ ତହିଁ ମାଡ଼।
ଶୁଣିଣ ମୂଢ଼ାସୁରର କର୍ଣ୍ଣେ ନିଜ ତନୁ
ବୋଇଲା ସେ ଗରୁଡ଼କୁ ଆମ୍ଭେ ତ ନ ମାନୁ।
ସତର ଲକ୍ଷ ତନୟ କଥା ଭାବୁ ଯେବେ
ଆମ୍ଭେମାନେ ପାଶେଥିଲେ ମରନ୍ତେ କି କେବେ।
ଅଣଦେଖା ଠାବେ ଥିବା ହେତୁ ମରିଗଲା
କ୍ଷତ୍ରୀଧର୍ମ କଥାକୁ ତ ଏହା ନ ପାଇଲା।
ଆମ୍ଭର ରାଜା ସଭାରେ ବସି ଏକଦିନେ
ବୋଲୁଥିଲେ ଗରୁଡ଼କୁ ଖୋଜ ଯେଝା ମନେ।
ପାଇଲେ ଥଣ୍ଟ ଉପାଡ଼ି ବେଗେ ଘେନିଆସ
ମାଦଳେ ପିଟିଣ ବଜାଇବ ବିଜିଘୋଷ।
ଥଣ୍ଟେ ବେଣ୍ଟ ବାଜି ଘୋର ଶବଦ କରନ୍ତା
ତିନିପୁରେ ଉଛୁଳି ସେ ନାଦ ପଡ଼ିଯାନ୍ତା।
ତୁମ୍ଭେ ବା କି ଦେଇ ପୋଷିଅଛ ପକ୍ଷୀଛାର
ଏକା ବଜ୍ର ଶକତିକେ ହେବ ଶତେଚୂର।
କର୍ଣ୍ଣାଟେଶ ବୋଲେ ହୋ ଏ କଥାହେଲେସତ
ଦେଖନ୍ତୁ ଜୀଇଁଥିଲେ ସେ ତାର୍କ୍ଷ୍ୟ ମହିମା ତ।
କୋକାଇରେ ରହି ଦେଇଅଛି ଗାଲମୋଡ଼ା
ବୁଝିଲେ ତୋହର ପ୍ରାୟ ନାହିଁ କେ ଥୋବଡ଼ା।
କହୁଛୁ ଲୋସଡ଼ା ଲୋକ ପ୍ରାୟ ପେଲି ପେଲି
ଅଲାଜୁକ ଗୁହ୍ୟଦ୍ୱାରେ ବଥ ହେଲେ ମେଲି।
ସେବୋଲଇ ଛାୟା ମୋତେ ହୋଇଲା ହୋଆସି
ତୋ ସ୍ୱଭାବ ସେହି ଲୋକପ୍ରାୟ ମୋତେ ଦିଶି।
ସେ କଥା ଶୁଣିଣ ମୂଢ଼ା ଉଠିଲା ଗରଜି
ମଲୁ ରେ କର୍ଣ୍ଣାଟ ବୋଲି ଧନୁ ଧରି ସାଜି।
ଲକ୍ଷେକ ନାରାଚ ଏକାବେଳେ ଦେଲା ବିନ୍ଧି
ଗର୍ଜିଣ ଆସନ୍ତି ଶର ଶୂନ୍ୟଯାକ ରୁନ୍ଧି।
ଦେଖି କର୍ଣ୍ଣାଟେଶ ତୀକ୍ଷ୍ଣ ନାରାଚେକ ପେଷି
ଖଣ୍ଡ ଖଣ୍ଡ କରି ତାହା ଛେଦିଲେ ବିନାଶି।
ଲେଉଟି ଲକ୍ଷେକ ଶର ବିନ୍ଧି ମୂଢ଼ାସୁର
ହାବୋଡା ଶରରେ ତାହା ଛେଦିଲେ ନୃପର।
ମହା ବଜ୍ରଶର ଆଣି ବିନ୍ଧନ୍ତେ ଦଇତ୍ୟ
ପେଷିଣ ପର୍ବତ ଶର ନାଶିଲେ ତୁରିତ।
ତାହା ଦେଖି ମୂଢ଼ାସୁର ବଡ଼ ପ୍ରଶଂସିଲା
ଶକତି ଗୋଟାଏ ଧରି ତକ୍ଷଣେ ପେଷିଲା।
ଦେଖିଣ କର୍ଣ୍ଣାଟେଶ୍ୱର ବଜ୍ରଶର ପେଷି
ଖଣ୍ଡ ଖଣ୍ଡ କରି ତାକୁ ପକାଇଲା ଧ୍ୱଂସି।

ମୂଢ଼ାସୁର ବୋଇଲା ହୋ ଏଥର ସମ୍ଭାଳ
ଧନୁରେ ଯୋଚିଲା ଆଣି ଗୋଟିଏ ତ୍ରିଶୂଳ।
ଅସୁର ବାକ୍ୟ ଶୁଣିଣ କର୍ଣ୍ଣାଟେଶ ରାଜା
କତୁରୀ ଶର ଯୋଚିଣ ମନ୍ତ୍ରେ କଲା ପୂଜା।
ବୋଇଲା ଅସୁର ଯୋଚୁଅଛଇ ତ୍ରିଶୂଳ
ଶର ନ ଆସୁଣୁ ଧନୁ ଛେଦ ତୁ ତତ୍କାଳ।
ଶୁଣିଣ କତୁରୀ ଶର ଶୀଘ୍ରେ ଚଳିଗଲା
ଅସୁର ହସ୍ତରୁ ଧନୁ ଛେଦି ପକାଇଲା।
ଧନୁ ଛିଡ଼ନ୍ତେ ତ୍ରିଶୂଳେ ହେଲା ଭୂମି ବିଦ୍ଧ
କତୁରୀଶର ତୂଣୀରେ ଆସି ହେଲା ବନ୍ଦ।
ମୂଢ଼ାର ହସ୍ତରୁ ଧନୁ ଛିଡ଼ିଣ ପଡ଼ନ୍ତେ
ଲେଉଟି ଆନ ଧନୁଏ ଧଇଲା ଦଇତ୍ୟେ।
ବୋଇଲା ଏ ରାଜା ଭଲା କର୍ମ ପୁଣି କଲା
ଆମ୍ଭ ଡାକ ଶୁଣି ଧନୁ ଛେଦି ପକାଇଲା।
ବିଶ୍ୱମ୍ଭର ନାମେ ପୁଣି ଧନୁ ଏକ ଧରି
ରଖିଲା ବତିଶପଦ୍ମ ଶର ପାଶେ ଭରି।
ବୋଇଲା ଯେତେ ଅଛନ୍ତି ନୃସିଂହର ଥାଟ
ସବୁରି ଉପରେ ପଡ଼ି ମୁଣ୍ଡମାନ କାଟ।
ଏତେ ବୋଲିଣ ଦଇତ୍ୟ ମନ୍ତ୍ର ତୁଣ୍ଡେ ପଢ଼ି
ସେ ଧନୁରେ ଯୋଚି ଶର ଦେଲା ସବୁ ଛାଡ଼ି।
ମୂଢ଼ାର କର୍ମ ନୃସିଂହ ପ୍ରଭୁ ମନେ ଜାଣି
ସୁଦର୍ଶନ ଚକ୍ର ପେଷିଦେଲେ ଚକ୍ରପାଣି।
ବୋଇଲେକ ଦୈତ୍ୟ ଯେତେ ପେଷି ଅଛି ଶର
ସେ ଶରଯାକ ଛେଦିଣ ଆସ ତତପର।
ଏହା ଶୁଣି ସୁଦର୍ଶନ ଗଲା ଅନ୍ତରାଳେ
ସେ ନାରାଚଯାକ ଛେଦି ଆସିଲା ତତ୍କାଳେ।
ତାହା ଦେଖି ମୂଢ଼ାସୁର ଚମତ୍କାର ହେଲା
ଧନ୍ୟ ହେ କର୍ଣ୍ଣାଟେଶ୍ୱର ବୋଲି ପ୍ରଶଂସିଲା।
ତେଡ଼ିକି ନୋହିଲେ ତୁ କି ନୃସିଂହ ପ୍ରଭୁଙ୍କୁ
ସେବାକରି ରହିଅଛ ରାଜା ହୋଇବାକୁ।
ନିଶ୍ଚେ ନୃସିଂହ କରିବେ ତୋତେ ରାଜା ଜାଣ
ଆଜୁ ମୁରର ସରିଲା ଏଡ଼େ ବଡ଼ପଣ।
ଏତେଦିନ ପରିଯନ୍ତେ ସୁଖ ଭୋଗ କଲା
ମୁହିଁ ମଲେ ଏଥର ସେ ନିରିମାକ୍ଷୀ ହେଲା।
ସତର ଲକ୍ଷ ପୁତ୍ର ଯେ ନବଲକ୍ଷ ନାତି
ତେତିଶକୋଟି ରାଣୀକିଭୋଗକରେ ନିତି।
ଆବର ଶ୍ରେଷ୍ଠ ଛବିଶ ସେନା ଆମ୍ଭେ ଥିଲୁ
ମୁରାସୁର ରାଜାଙ୍କୁ ଯେ ବହୁ ସେବା କଲୁ।
ପୁତ୍ର ପରାୟେ ଆମ୍ଭଙ୍କୁ ଥିଲା ଜାଣ ପାଳି
ଅଭାଗ୍ୟକାଳକୁ ଏବେ ସର୍ବେ ଗଲୁ ଚଳି।

କୁବେର ସମ୍ପତ୍ତିରୁ ଦ୍ୱିଗୁଣ କଲା ଭୋଗ
ତା ସୁଖ ଭୋଗ ପ୍ରାୟେକ ନାହିଁ ଚାରିଯୁଗ।
ଆବର ହୀରା ନୀଳା ଯେ ମାଣିକ୍ୟ ବୈଡୁର୍ଯ୍ୟ
କନକାବତୀ ନଗ୍ରରେ ପୂରିଛି ଐଶ୍ୱର୍ଯ୍ୟ।
ତେତିଶକୋଟି ଦେବତା ଦଶଦିଗପାଳେ
ବ୍ରହ୍ମାଦି ସହିତେ ସେବି ଥାଆନ୍ତି ସକଳେ।
ବଇକୁଣ୍ଠପୁର ପ୍ରାୟ ସବୁ ଥାନ୍ତି ପୂରି
ବସନ୍ତି ସୁଧର୍ମା ସଭା ପ୍ରାୟ ସଭାକରି।
ଗନ୍ଧର୍ବ ଭୋଗରୁ ବଳି ଭୋଗ ଆଉ ନାହିଁ
ତହିଁକି ଦ୍ୱିଗୁଣ ଭୋଗ ମୁର କରୁଥାଇ।
ମୁରର ସମ୍ପତ୍ତିକି ନ ପଡ଼େ ରତ୍ନାକର
ବୁଝିଲେ ଇନ୍ଦ୍ରସମ୍ପତ୍ତି କେତେକ ମାତର।
ତେଡ଼େକ ରାଜାର ଦେଖ ଧାତା ଛାଡ଼ିଲାରୁ
ହାତୀଗଡ଼ ବାନ୍ଧି ରହିଅଛି ଆସି ଘରୁ।
ତୁ ଏବେ କର୍ଣ୍ଣାଟ କଥା ଏକ ମୋର କର
ନାରାୟଣ ଅସ୍ତ୍ର ଧରି ବେଗେ ମୋତେ ମାର।
ପ୍ରତ୍ୟକ୍ଷେ ସେ ନାରାୟଣ ଅସ୍ତ୍ର ନାରାୟଣ
ସେ ଶର ବାଜିଲେ ଛାଡ଼ିଦେବି ନିଶ୍ଚେ ପ୍ରାଣ।
ନୋହିଲେ ଆନ ଶରେ ନ ପାରୁ ମୋତେ ମାରି
ବର ଦେଲାକାଳେ କହିଛନ୍ତି ତ୍ରିପୁରାରି।
ଆଉ ଲୋଚାଏ ସମର କଲେ ହେବ କିସ
ତୁହି ବିନ୍ଧୁ ଥିଲେ ମୁହିଁ ବିନ୍ଧିବି ଅଶେଷ।
ମରଣର ସନ୍ଧି ତୋତେ ଆଜି ଦେଲି କହି
ତୁହି ବିନ୍ଧୁ ଥିଲେ ମୁହିଁ ବିନ୍ଧୁ ଥିବି ରହି।
ବ୍ରହ୍ମଅସ୍ତ୍ର ମାଇଲେ ନ ମରେ ମୁହିଁ ଜାଣ
ନାରାୟଣ ଶରେ ଏକା ଯିବ ମୋର ପ୍ରାଣ।
ନାରାୟଣ ଶର ଏକା ଅଟେ ଭଗବାନ
ସେ ଶରେ ମଲେ ବିଷ୍ଣୁରେ ହେବି ଯାଇ ଲୀନ।
ଏତେ ବୋଲିଣ ଅସୁର ଧନୁ ଧରି କରେ
ବିନ୍ଧିଲା ଲକ୍ଷେକ ଶର କର୍ଣ୍ଣାଟ ଉପରେ।
ତୀକ୍ଷ୍ଣ ନାରାଚରେ ତାହା କର୍ଣ୍ଣାଟେଶ ଛେଦେ
ତାହା ଦେଖିଣ ଅସୁର ପୁଣି ବାଣ ବିନ୍ଧେ।
ଶତେଥର ଧନୁ ଧରି ଶତେ ଥରଯାଏ
ଅପର୍ଯ୍ୟାପ୍ତ ଶର ଧରି ବିନ୍ଧେ ଅପ୍ରମୟେ।
ଶତେ ଥରଯାଏ ଶର ପ୍ରତିକକ୍ଷ କରି
ପେଷିଣ କର୍ଣ୍ଣାଟେଶ୍ୱର ପକାନ୍ତି ନିବାରି।
ବୋଲନ୍ତି ଧନ୍ୟରେ ଦୈତ୍ୟ ଜୀବନ ତୋହର
ତିନିଦଣ୍ଡ ଯାଏ ଶର ବିନ୍ଧିଲୁ ଅପାର।
ଏବେ ଆସି ମୃତ୍ୟୁ ତୋର ପୂରିଲା ରେ ଜାଣ
ତେଣୁ ମଠ କରି ଆମ୍ଭେ ବିନ୍ଧିଥିଲୁଁ ବାଣ।

ଏତେ ବୋଲି ନାରାୟଣ ଶସ୍ତ୍ର କରେ ଧରି
ଗୁଣେ ଯୋଚି ଶର ଛାଡ଼ିଦେଲେ ଶୀଘ୍ର କରି।
ଗର୍ଜି ନାରାୟଣ ଶସ୍ତ୍ର ଅତି ବେଗେ ଯାଇ
ଅସୁର କନ୍ଧ ଛେଦିଣ ଆସି ଶୀଘ୍ର ହୋଇ।
ରାଜାଙ୍କୁ ଦେଖା ଦେଇଣ ତୂଣେ ଗଲା ପଶି
ଦେବତାଏ ସାଧୁ ସାଧୁ କଲେ ସ୍ୱର୍ଗେ ବସି।
ଏଥୁଅନନ୍ତରେ ଶ୍ରୀନୃସିଂହଗଣ ଧାଇଁ
ଦୈତ୍ୟସୈନଙ୍କୁ ମାଇଲେ ବେଢ଼ି ବଳେ ଯାଇଁ।
ନୃସିଂହ ବତିଶପଦ୍ମ ଶର ଥିଲେଥୋଇ
ନୃସିଂହଗଣଙ୍କୁ ପ୍ରଭୁ ଯାଚି ଦେଲେ ନେଇ।
ବୋଇଲେ ଏହି ଶସ୍ତ୍ରରେ ଦୈତ୍ୟବଳ ମାର
ମୋତେ ଏହି ଶସ୍ତ୍ର ଦେଇଥିଲେ ବେଦବର।
ଶ୍ରୀଆଜ୍ଞା ପାଇ ନୃସିଂହ ଗଣଯାକ ଉଠି
ସମରକୁ ବାହାରିଲେ ବାଣମାନ ବାଣ୍ଟି।
କିଳିକିଳା ରାବ ଦେଇ ଘୋରଯୁଦ୍ଧ କଲେ
ଶକତିରେ ପିଟି କାହା ମସ୍ତକ ଚୂରିଲେ।
କେହି ବଜ୍ରଶର ଧରି ସହସ୍ର ଦୈତ୍ୟଙ୍କୁ
ଏକ ବେଳକରେ ମାରି ପକାନ୍ତି ସଭିଙ୍କୁ।
ଆକୁଳେ ଛାଡ଼ନ୍ତି ମହାରଡ଼ି ଘନ ଘନ
ଅଲୋକିତ ଯୁଦ୍ଧ କରୁଛନ୍ତି ବେନି ସୈନ୍ୟ।
ପରିଘ ଭୂଷଣ୍ଡି ଖପର ଯେ ଛୁରୀ କାତି
କୋଦଣ୍ଡ ଘାତରେ ଦୈତ୍ୟ ତ୍ରସ୍ତରେ ମରନ୍ତି।
କେହି ଗଦା ପିଟନ୍ତେ କା ପାଦ ହୋଏ ଛୋଟା
ମୁଦ୍‌ଗର ପିଟନ୍ତେ କାର ଭାଙ୍ଗିଯାଏ ଅଣ୍ଟା।
କେ କୁନ୍ତ ପିଟି କେ ନେଲା ପରିଘରେ ପ୍ରାଣ
କେହି ବେକ ଛେଦଇ କେ ମାରେ ବଜ୍ରବାଣ।
କେ ମାଲବନ୍ଧେ କେ ବସେ ବୁକୁପରେ ମାଡ଼ି
କେ ପେଟ ବିଦାରି କେହୁ ଅନ୍ତଦିଏ କାଢ଼ି।
କେହୁ ବ୍ରହ୍ମଶକ୍ତି ତ୍ରାସ ଦେଖି ପଳାବନ୍ତି
ତ୍ରସ୍ତ ହୋଇ ବାଟେ କେହୁ କରେ ରକ୍ତ ବାନ୍ତି।
ଅସୁରେ ବିନ୍ଧନ୍ତି ଯେତେ ଶର ପରିଘାଇ
ନୃସିଂହଗଣ ତାହାକୁ ଦ୍ୟନ୍ତି ଫୋପଡାଇ।
ଧନୁର ଶର ଯେତେକ ଦ୍ୟନ୍ତି ଦୈତ୍ୟ ଛାଡ଼ି
ଭାଙ୍ଗନ୍ତି ନୃସିଂହଗଣ ବଜ୍ରଶକ୍ତି ଆଡ଼ି।
ଦୈତ୍ୟ ମରନ୍ତେ ପଳାନ୍ତି ତ୍ରସ୍ତେ ଅଶ୍ୱମାନେ
କରନ୍ତି ସେ ଅଶ୍ୱ ଚଢ଼ି ଯୁଦ୍ଧ ହରିଗଣେ।
ବାତୁଳ ହୋଇଣ ଗୋଡ଼ାଉଥାନ୍ତି ଦୈତ୍ୟଙ୍କୁ
କାହାରି ଛିଡ଼ିଣ ଅଣ୍ଟା ପଡ଼େ ଭାଜି ବୁକୁ।
ଲେଡ଼ା ଆଘାତ ପାଇ ନ ପାରଇ କେ ଉଠି
ଗୋଇଠାଘାତେ କାହାର ଭାଜିଯାଏ ପିଠି।

କେବଣ ଦଇତ୍ୟଙ୍କୁ ଯେ ହସ୍ତୀ ଗଲେ ମାଡ଼ି
ଘୋଡ଼ାର ନାତ ବାଜିଣ ପଡ଼େ ଜଙ୍ଘ ଛିଡି।
ପରଶୁବାଜି କାହାର ଛିଡ଼େ ଜାଣି ବେକ
କେ ରକ୍ତ ବାନ୍ତି କରେ କା ମୁହଁ ହୁଏ ବାଙ୍କ।
ବହଇ ରକତନଦୀ ସ୍ରୋତଜଳ ପ୍ରାୟେ
ମଗରଯୂଥ ଜାଣିଣ ଦିଶନ୍ତି ହସ୍ତୀଏ।
ଶୋଣିତ ନଦୀରେ ଶବଭାସେ ଯଥା ଭେଳା
ନୃସିଂହଗଣ ସମର ଲାଗେ ଅନର୍ଗଳା।
ଷୋଳପଦ୍ମ ଅଶ୍ୱ ଆଉ ପୋଳପଦ୍ମ ଦୈତ୍ୟ
ମାରିଣ ନୃସିଂହଗଣ କଲେ ଗୁଣ୍ଡାବାତ।
ରକ୍ତେ ଜରଜର ହୋଇ ଶ୍ରୀନୃସିଂହ ଗଣେ
ନୃସିଂହ ପାଶରେ ଆସି ମିଳିଲେ ତକ୍ଷଣେ।
ବୋଇଲେକ ଶୁଣ ସ୍ୱାମୀ ଲକ୍ଷ୍ମୀଦେବୀ ପତି
ମୁରାସୁର ସୈନ୍ୟଯାକ ଆସିଲୁ ନିପାତି।
ହାତୀଗଡ଼ ଏ ପାଖକୁ ଆସିଥିଲେ ଯେତେ
ଗୋଟିଏ ବର୍ତ୍ତି ଆଉ ନ ଗଲେ କଦାଚିତେ।
ଷୋଳପଦ୍ମ ଅଶ୍ୱ ଆଉ ଷୋଳପଦ୍ମ ସୈନ୍ୟ
ସମସ୍ତଙ୍କୁ ମାରି ଏବେ ଆସିଲୁଁ ବହନ।
ଶ୍ରୀମୁଖରୁ ଆଜ୍ଞା ଏବେ ହେବ ଯେଉଁ ବାଣୀ
ସେ ବାକ୍ୟପାଳି ସେବିବୁଁ ଆମ୍ଭେ ଚକ୍ରପାଣି।
ଶୁଣିଣ ନୃସିଂହ ସ୍ୱାମୀ ସନ୍ତୋଷିତ ହୋଇ
ମୁରାସୁର ମଲା ଯାଏ ଥାଅ ତୁମ୍ଭେ ରହି।
ତୁମ୍ଭେ ନୃସିଂହଗଣ ମୁଁ ଏକା ବୋଲି ଜାଣ
ନୃସିଂହରୁ ବିଶୁଦ୍ଧ କେ ନାହିଁ ପୃଥ୍ୱୀରେଣ।
ଆଉ ଶୁଚି ଯେତେ ଶୁଣ ଶ୍ରୀନୃସିଂହଗଣେ
ସେ ଦ୍ରବ୍ୟର ନାମ ଶୁଣ କହୁଛି ପୁରାଣେ।
ମାଛିଠାରୁ ଶୁଚିମନ୍ତ ସଂସାରେ କେ ନାହିଁ
ଅନ୍ନକୁଡ଼ରୁ ଉଡ଼ିଣ ଅନ୍ନେ ବସେ ଯାଇଁ।
ଶୂଦ୍ର ପାକରୁ ଆସିଣ ଦ୍ୱିଜ ପାକେ ବସେ
କଦଳୀ ଛେନା ଗୁଡ଼ ଯେ ଆବର ପନସେ।
ଅମୃତମଣୋହି ଦେବସରିଲା କକ୍ଷରୁ
ତହିଁରେ ଉଡ଼ି ଆସିଣ ବସେ ଖଣ୍ଡେଦୂରୁଁ।
ସେ ଦ୍ରବ୍ୟ ଦେବଗଣଙ୍କ ମଣୋହି ଯେ ହୁଏ
ମନ୍ତ୍ରରେ ନୈବେଦ୍ୟ କରି ଦ୍ୟନ୍ତି ସବୁଠାଏ।
ଏଣୁ ସେ ମାଛିଠାରୁ କେ ନାହିଁ ଶୁଚିମନ୍ତ
ତାକୁ ଅବା ବାରି କେହି ନ ପାରେ ଜଗତ।
ଆବର ପବନ ସୃଷ୍ଟି ମଧ୍ୟେ ଛନ୍ତି ପୂରି
କୀଟୁଁ ବ୍ରହ୍ମଯାଏ ନାସାଅଗ୍ରେ ବିଜେ କରି।
ଚାଣ୍ଡାଳୁଁ ବ୍ରହ୍ମ ପର୍ଯ୍ୟନ୍ତ ସବୁ ଦେହେ ବାଜେ
ଉଚ୍ଚ ନୀଚ ଦୁଇକି ସେ ତୁଲ୍ୟକରି ବୁଝେ।
ସଂସ୍କାର ଅସଂସ୍କାର ଦୁହିଙ୍କି ସମ ଘେନି
ଭ୍ରମଇ ପଞ୍ଚାଶକୋଟି ଯାବତ ମେଦିନୀ।
ଏଣୁକରି ମହାଶୁଚୀ ଅଟନ୍ତି ମରୁତ
ସବୁଜୀବ ନାସାରେ ସେ ହୋଏ ଆତଯାତ।
ସ୍ତିରୀମାନେ ମହାଶୁଚି ତେଣୁ ବୋଲାବନ୍ତି
ମାସକୁ ମାସ ଯେଣୁ ସେ ହୁନ୍ତି ପୁଷ୍ପବତୀ।
ଯେହ୍ନେ ଫୁଟିଲେ ଚମ୍ପକ ପୁଷ୍ପର ସୁଗନ୍ଧ
ସେହିରୂପେ ସ୍ତିରୀଙ୍କର ଅଟେ ନିବିବନ୍ଧ।
ଯୁବତୀଙ୍କର ଆଗକୁ ପୁରୁଷଙ୍କ ଆଗ
ଚାରି ଚକ୍ଷୁ ଏକତ୍ରରେ ପ୍ରେମରେ ସୁଆଗ।
ଏଣୁ ସ୍ତିରୀଏ ଅଟନ୍ତି ସର୍ବେ ପ୍ରେମଶୀଳା
ରତିରେ ପୁରୁଷ କରୁଥାନ୍ତି ମତି ଭୋଳା।
ସୁରତି ରସକୁ ଇନ୍ଦ୍ର ଭୋଗ ନୁହେ ସରି
ପକାନ୍ତି ପୁରୁଷଙ୍କୁ ସେ କାମେ ତନୁ ଘାରି।
ଅଶୁଚି ହେଲେ ପୁରୁଷେ ତାଙ୍କୁ ଛୁଅନ୍ତେ କି
ଏଣୁ ସେ ବୋଲାନ୍ତି ଶୁଚିମନ୍ତ ଯୁବତୀଙ୍କି।
ଆବର ଦେବଆଳରେ ଦେବ ଯେତେଠାରେ
ବିଜୟ କରାଇ ପୂଜା କରନ୍ତି ଯେ ନରେ।
ତାହାଙ୍କୁ ଦର୍ଶନ କରି ଯେତେ ଲୋକ ଯାନ୍ତି
ଶୁଚିମନ୍ତ ହୋଇ ଯାଇଁ ଦର୍ଶନ କରନ୍ତି।
ଦେବତାଏ ଶୁଚିମନ୍ତ ସଦାବେଳେ ସରି
ତାଙ୍କୁ ଅଶୁଦ୍ଧ କରି କେ ପାରେ ଦେହ ଧରି।
ବୁଝିଲେ ଅହୋରାତ୍ରରେ ଦେବଗୃହ ଶୁଚି
ସ୍ନାନ କରି ନ ପଶିଲେ ଅପ୍ରାଧ ପାଉଛି।
ଦରଶନ କଲା ଲୋକେ ଶୁଚିମନ୍ତେ ଯିବ
ମନୋବାଞ୍ଛା ସିଦ୍ଧ ତାର କରନ୍ତି ମାଧବ।
ଅଗ୍ନି ଦେବତାର କଥା କହୁଥାଇ ଶୁଣ
ମହାଶୁଦ୍ଧ ପୁରୁଷ ସେ ଅଟେ ସଂସାରେଣ।
ସେ ଅଗ୍ନିଠାରୁ ଜାଣି କେ ନାହିଁ ଶୁଚିମନ୍ତ
ବାଳକ ତରୁଣ ବୃଦ୍ଧ ଘେନନ୍ତି ଏକତ୍ର।
ନ ବୋଲନ୍ତି ବାଳକର ବୋଲେ କିପାଁ ଥିବି
ସେ ଜୁଇ ଲଗାଇଲେ ମୁଁ କାହିଁକି ଲାଗିବି।
ବାଳକ ତରୁଣ ବୃଦ୍ଧ ସବୁ ସମ ଘେନି
ଯହିଁ ଲଗାଇଲେ ତହିଁ ଲାଗନ୍ତି ବହନି।
ଭୁଞ୍ଜନ୍ତି ଅଭକ୍ଷ୍ୟ ଭକ୍ଷ ଦ୍ରବ୍ୟ ସବୁବେଳେ
ଅଶୁଦ୍ଧ ଲୋକଙ୍କୁ ଶୁଦ୍ଧ କରନ୍ତି ତତ୍କାଳେ।
ତହିଁରେ ମୃତ ଶବକୁ-ଦ୍ୟନ୍ତି ଭସ୍ମ କରି
ତାଙ୍କ ପ୍ରାୟ ପୁରୁଷ ନ ମିଳେ ତିନିପୁରୀ।
ସ୍ୱାହା ନାମେ ତାଙ୍କ ପତ୍ନୀ ଅଟନ୍ତି ଯେ ଜାଣ
ବିଷ୍ଣୁଙ୍କୁ ଦିଅନ୍ତି ଚଳୁ ଯେତେକ ବ୍ରାହ୍ମଣ।

ବୋଲନ୍ତି ଜଳ ତୁଳସୀ ଧରି ମନ୍ତ୍ରେ ସ୍ୱାହା
ସେ ସ୍ୱାହାବେନି ଅକ୍ଷର ଜାଣ ସର୍ବଦେହା ।
ବସନ୍ତି ଜୀବ ପରମ ହୋଇ ସର୍ବ ହୃଦେ
ଅଟନ୍ତି ସେ ନାରାୟଣ ସ୍ୱାମୀ ଆତ୍ମପାଦେ ।
ଜୀବ ପରମଙ୍କୁ ଏକା ବୋଲି ଆତ୍ମାରାମ
ସବୁରି ହୃଦରେ ବସି କରନ୍ତି ବିଶ୍ରାମ ।
ବିପ୍ରେ ହୋମ ସ୍ଥାନ ପଢୁଛନ୍ତି ମନ୍ତ୍ରଭାଗ
ସ୍ୱାହା ବୋଇଲେ କହନ୍ତି ପାନ୍ତି ଦେବ ଆଗ ।
ଏଣୁ ସେ ଅଗ୍ନି ଠାରୁ କେ ନାହିଁ ଶୁଚିମନ୍ତ
କହିବା ନଦୀର କଥା ଶୁଣ ବିଧିମତ ।
ନଦୀରେ ଯେବେ ସକଳ ବହି ଯାଉଥାଇ
ସେହି ଜଳ ମହାଶୁଦ୍ଧ ଦେବେଛନ୍ତି କହି ।
ବନ୍ଧ ପୋଖରୀ ଜଳରୁ ସସ୍ରେ ଗୁଣ ଉଚ୍ଚ
ମହା ଶୁଚିପବିତ୍ର ସେ ଜଳ ଅଟେ ସଞ୍ଚ ।
ନଦୀରେ ବହିବା ଜଳ ସବୁବେଳେ ଶୁଚି
ଏକଥା ପଣ୍ଡିତ ଜନେ ସତ୍ୟ ବୋଲି ପାଞ୍ଚି ।
ଜଳରେ ସ୍ନାନ କରିଣ ସର୍ବେ ହୋନ୍ତି ଶୁଦ୍ଧ
କହିବା ଆବର ଶୁଦ୍ଧ କଥା ଏବେ ମଧ୍ୟ ।
ତାହାର ଲୋମେ ତେତିଶକୋଟି ଛନ୍ତିଦେବେ
ଦେହଯାକ ଲୋମ ହୋଇ ବସିଛନ୍ତି ସର୍ବେ ।
ଯାହାର ଗୃହେ ଗୋଟିଏ ଗାବ ନ ଥିବଟି
କୁକୁରାଳୟ ତୁଲେ ସେ ଘର ଲେଖିବଟି ।
ଯେତେକ ଗୋରୁ ସଂସାରଯାକେ ଜାଣ ଛନ୍ତି
ତାହାଙ୍କର ମଳଲାଗି ସର୍ବେ ଶୁଦ୍ଧ ହ୍ୱନ୍ତି ।
ଦେବାଳୟାଦି ପ୍ରତିଷ୍ଠା ହୁଏ ତାଙ୍କ ଘେନି
ଘରେ ପୂରିଥିଲେ ଶୋଭା ଦିଶଇ ମେଦିନୀ ।
ପଦଧୂଳି ଯାହାରଟି ଶିରେ ପଡୁ ଥାଇ
ତାହାର କନ୍ଧରୁ ଲକ୍ଷ୍ମୀ କେବେ ନ ଛାଡ଼ଇ ।
ସବୁଜୀବ ଉପରେ ସେ ଅଟେ ସାରସ୍ୱତ
ପୃଥ୍ୱୀକି ତାହାର କ୍ଷୀର ଅଟଇ ଅମୃତ ।
ଅନ୍ନରେ ପଡ଼ିଲେ ଘୃତ ହୋଇଲା ମିଷ୍ଟାନ୍ନ
ଦେବତାମାନଙ୍କୁ ଲାଗି ହୁଏ ସବୁଦିନ ।
ଘୃତ ନ ପକାଇ ଅନ୍ନ ବିଷ୍ଣୁ ଲାଗି କଲେ
ରଜସ୍ୱଳା ସ୍ତିରୀ ପ୍ରାୟ ଅଶୁଦ୍ଧ ସେ ହେଲେ ।
ପୁରୁଷମାନଙ୍କୁ ଯେହ୍ନେ ରଜସ୍ୱଳା ସ୍ତିରୀ
ନ ଛୁଇଁ ସ୍ନାନ ପର୍ଯ୍ୟନ୍ତେ ଦ୍ୟନ୍ତି ତେଜ୍ୟାକରି ।
ଶୁଦ୍ଧସ୍ନାନ ହେଲେ ଯାଇଁ କରନ୍ତି ବିଭୋଗ
ଘୃତ ନ ପଡ଼ିଲେ ଅନ୍ନ ପୂଜାକୁ ସେ ମାର୍ଗ ।
ଘୃତ ନ ଥିଲେ ଲବଣେ ଅନ୍ନକୁ ଶୋଧିବ
ସେ ଅନ୍ନକୁ ଦେଇ ପୂଜା କରିବ ମାଧବ ।

ଲବଣ ଲବଣୀ ବେନି ଅଟେ ଏକାକ୍ଷର
ଦୁହେଁ ସଂସାରେ ଅଟନ୍ତି ମିତ୍ର ପରସ୍ପର ।
ଏଣୁ ଯେ ଅଟନ୍ତି ମହାଶୁଦ୍ଧ ଗାବମୂର୍ତ୍ତି
ଲୋମକେ ଦେବତା ଜଣେ ହେହେଁ ତାର ଛନ୍ତି ।
ଯେବେଣ ଜନ ଗାବକୁ ଅଦୋଷେ ପିଟଇ
ଦଶମାସ ଯାଏ ବ୍ରହ୍ମହତ୍ୟା ଦୋଷ ପାଇ ।
ସବୁ ଜନ୍ତୁରୁ ଅଟନ୍ତି ଶ୍ରେଷ୍ଠ ଜାଣ ଗାବ
ମହାଶୁଦ୍ଧ ଶୁଦ୍ଧ ସେହୁ ସଂସାରେ ଜାଣିବ ।
ଚାଲିବାର ପଥ କଥା କହୁଥାଇ ଶୁଣ
ପଥକୁ ଅଶୁଦ୍ଧ ଯେ ନ ବୋଲ କେବେ ଜାଣ ।
ଦୃଷ୍ଟିରେ ଚାହିଁଣ ଚାଲୁଥିବ ଯେବେ ବାଟ
ପଥକୁ ବଳି ବ୍ରହ୍ମାଣ୍ଡେ ନାହିଁ ଆଉ ଶ୍ରେଷ୍ଠ ।
କେବଳ ଯେ ଚାଲୁଥିବ ନେତ୍ରେ ଚାହିଁ ଚାହିଁ
ପଥ ବାଟଠାରୁ ଶୁଦ୍ଧ ସଂସାରେ କେ ନାହିଁ ।
ଉଦକର କଥା ଏବେ କହୁଅଛୁ ଶୁଣ
ବିଷ୍ଣୁଙ୍କର ପାଦୋଦକ ସଦା ଶୁଦ୍ଧ ଜାଣ ।
ଚରଣାମୃତକୁ ସେବା କରନ୍ତି ଯେ ନିତି
ତାହାକୁ ଅଶୁଦ୍ଧ କରି ନ ପାରେ କେ କ୍ଷିତି ।
ବିଷ୍ଣୁ ପାଦୋଦକ ମହାନିର୍ମାଲ୍ୟରୁ ବଳେ
ଯେଉଁରୂପେ ଲଭନ୍ତି ମୋକ୍ଷ ପଶି ଗଙ୍ଗାଜଳେ ।
ଏହିରୂପେ ଅଟଇ ଏ ବିଷ୍ଣୁ ପାଦୋଦକ
ସେ ଜଳ ଅଶୁଦ୍ଧ କରି ନ ପାରେ କେ ଲୋକ ।
ସେ ଜଳ ଭକ୍ଷିଲେ ଶୂଦ୍ର ହସ୍ତୁ ଦୋଷ ନାହିଁ
ଯେ ଅବ୍ୟୟ ଘେନେ ତାକୁ ମୂର୍ଖବୋଲି କହି ।
ବିଷ୍ଣୁଙ୍କର ପାଦୋଦକ ଗୁରୁ ପାଦୋଦକ
ଏ ଦୁହିଙ୍କି ସମ ଘେନୁଥିବେ ସର୍ବଲୋକ ।
ଧାନ୍ୟାଦି କଥା ଆବର କହୁଥାଇ ଶୁଣ
ସବୁ ଫଳରୁ ଶୁଦ୍ଧ ସେ ଅଟେ ସଂସାରେଣ ।
ଶୂଦ୍ରକୁଳ ଲୋକେ ଯେବେ ଧାନହିଁ ସିଝାନ୍ତି
ଚଉତା କରିଣ ପୁଣି ତଳେକ କୁଡ଼ାନ୍ତି ।
ଅନ୍ନର ସଦୃଶେ ଫାଟି ଦିଶୁଥାଇ ବର୍ଣ୍ଣ
ଶୁଖାଇ ତଣ୍ଡୁଳ କରି ପକାନ୍ତି ସେଦିନ ।
ସେହିଠାରୁ ତଣ୍ଡୁଳକୁ ସମସ୍ତେ ବିକନ୍ତି
ବିଷ୍ଣୁଙ୍କୁ ଚଳୁ ଦେଇଣ ପ୍ରସାଦ ଭୁଞ୍ଜନ୍ତି ।
ଏରୂପେ ତଣ୍ଡୁଳ ଶୂଦ୍ର ଲୋକେ ପ୍ରକାଶନ୍ତେ
ଯାବତ ଲୋକେ ଭୁଞ୍ଜନ୍ତି କିଣି ଶୁଦ୍ଧଚିତ୍ତେ ।
ଦେବତା ବିପ୍ରଙ୍କୁ ସବୁ ହୁଅଇଟି ଲାଗି
ଧାନରୁ ଶୁଦ୍ଧ ହୋଇଣ ନାହିଁ କେ ସଂଯୋଗୀ ।
ଚଣ୍ଡାଳ କରରେ ଧାନ ଥିବ ଯେବେ ପୁଣି
ଶୁଦ୍ଧମନେ ସେ ଧାନକୁ ପକାଇବ କିଣି ।

ସବୁଫଳ ମଧ୍ୟେ ଧାନ୍ୟ ସୃଷ୍ଟି ଯାକେ ଶୁଦ୍ଧ
ପ୍ରତ୍ୟକ୍ଷେ ମହାଲକ୍ଷ୍ମୀ ସେ ଅଟେ ପ୍ରାଣବୋଧ।
ସେ ଧାନ ଶୁଦ୍ଧର କଥା କହୁଅଛୁ ଶୁଣ
ଧାନର ପାଇଁ ବଶିଷ୍ଠ ବିଭାହେଲେ ଜାଣ।
ମହାଯତିରେ ଯେ ଲେଖା ଅଟନ୍ତି ବଶିଷ୍ଠ
ତାଙ୍କ ଘେନି ଧାନ ମିଳିଗଲା କ୍ରୋଟ କ୍ରୋଟ।
ଅମ୍ବିକା ନାମେ ଚଣ୍ଡାଳୀ ଧନ ରଖିଥିଲା
ବଶିଷ୍ଠ ଋଷିଙ୍କୁ ତାର କନ୍ୟା ବିଭାଦେଲା।
ଅରୁନ୍ଧତୀ ନାମେ ଜାଣ ଅଟନ୍ତି ସେ ମାତା
ପ୍ରତ୍ୟକ୍ଷେ ଲକ୍ଷ୍ମୀଅଂଶ ସେ ଅଟେ ବିଷ୍ଣୁ ଭକ୍ତା।
ଲକ୍ଷେକୋଟି ଭରଣ ସେ ରଖିଥିଲା ଧାନ
ବଶିଷ୍ଠଙ୍କୁ ଦେଇ ତାହା କଲା କନ୍ୟାଦାନ।
ସଂସାର ପାଇଁ ବଶିଷ୍ଠ ବିବାହ ହୋଇଲେ
ଯୌତୁକ ପାଇ ସଂସାରେ ଧାନ ବିହୁଡ଼ିଲେ।
ସାତବର୍ଷ ଯାଏ ପୃଥ୍ୱୀ ଇନ୍ଦ୍ର ନ ପାଳନ୍ତେ
ଅପାଳକ ସକାଶରୁ ଲୋକେ ଦୁଃଖ ପାନ୍ତେ।
ତେଣୁ ବିଭାହୋଇ ଧାନ ଆଣିଲେ ମହର୍ଷି
ପୃଥ୍ୱୀ ଯାକରେ ଦେଇଣ ବିହୁଡ଼ିଲେ ବସି।
ସେ ଦିନୁ ସେ ଧାନ ସୃଷ୍ଟି ମଧ୍ୟେ ଗଲା ସହି
ଆଜଯାଏ କୃଷି କରୁଛନ୍ତି ସର୍ବେ ମହୀ।
ଏଣୁ ଧାନ ପ୍ରାୟ ଶୁଦ୍ଧ ନାହିଁ କେ ଜଗତେ
ସୁବର୍ଣ୍ଣର କଥା ଏବେ ଶୁଣ ବିଧିମତେ।
ନୀଚଲୋକର ହାତରେ ରହିଥିଲେ ସ୍ୱର୍ଣ୍ଣ
ଅଶୁଦ୍ଧ କରି ତାହାକୁ ନ ପାରେ କେ ଜନ।
ଚଣ୍ଡାଳ ଘରେ ଯଦ୍ୟପି ସ୍ୱର୍ଣ୍ଣ ଚୂଡ଼ା ଥିବ
ସୁପଣ୍ଡିତ ଘେନି ତାହା ମୁଣ୍ଡ ଲଗାଇବ।
ପତ୍ନୀର ହୃଦେ ଭୂଷଣ ନେଇ ଦେବ କରି
ସବୁଠାରେ ଶୁଦ୍ଧ ଅଟେ ସୁବର୍ଣ୍ଣ ତ୍ରିପୁରୀ।
ବିପ୍ର ଗୋସାଇଁଙ୍କ କଥା କହିବା ଯେ ଶୁଣ
ସବୁ ଜାତିରୁ ଶ୍ରେଷ୍ଠ ଯେ ଅଟନ୍ତି ବ୍ରାହ୍ମଣ।
ଅଳିନ ମଳିନ ହୋଇ ବିପ୍ର ଯେବେ ଥିବ
ଶୂଦ୍ର ବ୍ରତାଚାରୀ ହେଲେ ତାଙ୍କୁ ନ ଲାଗିବ।
ନାନାଦି ତୀର୍ଥ ବ୍ରତ ସ୍ନେ ସ୍ନାନ ଜପକରି
ବିପ୍ରଙ୍କ ସଙ୍ଗରେ ସେ କି ହେବ କେବେ ସରି।
ବେଦ ଶାସ୍ତ୍ର ନ ପଢ଼ିଣ ଯେଉଁ ବିପ୍ର ଥିବ
ଯତି ହୋଇଲେ ଶୂଦ୍ର କି ବିପ୍ର ସରି ହେବ।
ଘୁଷୁରୀକି କୁଶାସନ ଦେଇ ଭୁଞ୍ଜାଇଲେ
ଗାବସଙ୍ଗେ ସରି ସେ କି ହେବ କେବେ ଭଲେ।
ଆବରଟି ମେଷ ଆଦି ଛେଳି ଯେତେ ଥାନ୍ତି
ବୃଦ୍ଧ ହୋଇଲେ ଦେବୀଙ୍କ ବଳିଭୋଗ ହୁନ୍ତି।
ଗୋବତ୍ସା ମାତା ଗର୍ଭରୁ ଉପୁଜିଲେ ସରି
ତାଙ୍କୁ କୋଟି ନମସ୍କାର ପୃଥ୍ୱୀଯାକେ କରି।
ବିପ୍ରଙ୍କ ସମାନେ ସେହି ଅଟେ ସଂସାରେଣ
ଗୋ ବ୍ରାହ୍ମଣ ଦୁଇ ଅଟେ ପୃଥ୍ୱୀକି ଧାରଣ।
ଦେବତାମାନଙ୍କର ଯେ ଶିରେ ପୂଜା କରି
ବ୍ରାହ୍ମଣର ପାଦରଜ ଦେହେ ଅଟେ ଶିରୀ।
ଏଣୁ ବିପ୍ରକୁଳ ସବୁଜାତି ମଧ୍ୟେ ଶ୍ରେଷ୍ଠ
ବ୍ରାହ୍ମଣଙ୍କ ସେବାକଲେ ଲଭେ ସେ ବୈକୁଣ୍ଠ।
ବ୍ରାହ୍ମଣ ଗୋସାଇଁମାନେ ସବୁବେଳେ ଶୁଚି
ଶୁଣ ହେ ନୃସିଂହଗଣେ କହନ୍ତି ଶ୍ରୀବତ୍ସି।
ଏ ବ୍ରାହ୍ମଣଙ୍କୁ ନ ଛୁଅଁ ବୋଲନ୍ତି ଯେ ଲୋକ
ଗୋହତ୍ୟା ବ୍ରହ୍ମହତ୍ୟା ସେ ଲଭନ୍ତି ପାତକ।
ବ୍ରାହ୍ମଣମାନେ ଯାହାର ଗୃହେ ମିଳିଥାନ୍ତି
ସେ ଘର ଭାଗ୍ୟ ପୁରାଣ ମଧ୍ୟେ ଲେଖା ହୁନ୍ତି।
ଆମ୍ଭେ ଯେଣୁଟି ବ୍ରାହ୍ମଣକୁଳେ ହେଲୁ ଜାତ
ତେଣୁ ସେ ବ୍ରାହ୍ମଣକୁଳେ ହେଲେ ଶୁଚିମନ୍ତ।
ବ୍ରାହ୍ମଣ ପାଦୋଦକ ଯେ ପ୍ରାଣୀ କରେ ସେବା
ତାଙ୍କୁ ସଂସାରେ ନୁହନ୍ତି ସରି ସୁରଦେବା।
ବ୍ରାହ୍ମଣ ପାକାନ୍ନ ନିରିମାଲ୍ୟ ପ୍ରାୟ ମଣି
ପବିତ୍ର ହୁଅଇ ଅଙ୍ଗ ଭୁଞ୍ଜିଲେ ଯେ ପ୍ରାଣୀ।
ଅଠର ବର୍ଣ୍ଣଯାକରେ ବ୍ରାହ୍ମଣ ଯେ ରାଜା
ଏଣୁ ବିପ୍ରଙ୍କୁ କରନ୍ତି ସର୍ବେ ପାଦପୂଜା।
ଶୁଣ ହେ ନୃସିଂହଗଣେ ତୁମ୍ଭେ ବିଷ୍ଣୁ ଅଂଶୀ
ମୁର ମରିବା ପର୍ଯ୍ୟନ୍ତେ ଯୁଦ୍ଧେ ଥାଅ ପଶି।
ମୁରର ବାଇଶିକ୍ଷୌଣୀ ବଳ ଅଛି ବାକୀ
ଏମାନେ ମଲାରୁ ତୁମ୍ଭେ ଯିବଟି ଗଣ୍ଡୁକୀ।
ଶାଳଗ୍ରାମ ହୋଇ ରହିଥିବ ଚାରିଯୁଗେ
ଦେବ ମାନବ ତୁମ୍ଭଙ୍କୁ ପୂଜିବେ ତ୍ରି ସ୍ୱର୍ଗେ।
କେବଳ ବ୍ରାହ୍ମଣେ କରୁଥିବେ ଏକା ପୂଜା
ତେଣୁ ବିପ୍ର ଅଟେ ଅଷ୍ଟାଦଶ ବର୍ଣ୍ଣେ ରାଜା।
ଯେଉଁ ବିପ୍ର ଘରେ ଶାଳଗ୍ରାମ ପୂଜା ନୋହି
ଶୂଦ୍ରର ପାକତୁଲେ ସେ ପାକ ଲେଖାଯାଇ।
ଯେବଣ ଘରରେ ଶାଳଗ୍ରାମ ହୁନ୍ତି ପୂଜା
ଦେବତା ମନ୍ଦିରେ ସେ ବୋଲନ୍ତି ବ୍ରହ୍ମଦ୍ୱିଜା।
ସ୍ନାନ ପୂଜା ସାରି ଯେହୁ ପାଦୋଦକ ପିବେ
ତାହାର ଜିହ୍ୱାରେ ବସିଥାନ୍ତି ବାସୁଦେବେ।
ଶାଳଗ୍ରାମ ଥିବା ଘର ବୈକୁଣ୍ଠରେ ଲେଖି
ସେ ଗୃହୀ ଅହୋରାତ୍ରରେ ଅଟେ ସଦା ସୁଖୀ।
ଶୁଣିଣ ନୃସିଂହଗଣେ ହୋଇଲେ ଆନନ୍ଦ
ଏଥୁଅନନ୍ତରେ ବାଣୀ ଶୁଣ ହେ ନାରଦ।

ଲୋଚାଏ ମୁରାସୁରର ସୈନ୍ୟ ଯାନ୍ତେ ମରି
ଶୂନ୍ୟରେ ଥାଇଣ ଦେବେ ପୁଷ୍ପବୃଷ୍ଟି କରି।
ବ୍ରହ୍ମା ବୋଇଲେକ ଏବେ ଶୁଣ ପୁରନ୍ଦର
ନୃସିଂହ ପାଇଁ ଯୋଗାଡ଼ ଏବେ ନିର୍ଭାକର।
ବେନିଦିନ ହେଲା ସ୍ନାନ ନାହାନ୍ତି ସେ କରି
ଅମୃତପାକ ମାତଳି ନେଉ ହସ୍ତେ ଧରି।
ଏଥର ବାହୁଡ଼ି ଯେବେ ମୁରାସୁର ଯିବ
ଜନପଦ କରି ଏକଗୋଟି ନ ରଖିବ।
ନୃସିଂହ ଫେରି ଆସିବେ ଯେବେ ବଦ୍ରିକାକୁ
ଅପାର ହୋଇବା ମଠ ମୁର ମାରିବାକୁ।
ଏଥକୁ ଯେ ତାତପର୍ଯ୍ୟ କର ପୁରନ୍ଦର
ଭୁଞ୍ଜିଣ ନୃସିଂହଗଣେ ହୁଅନ୍ତୁ ଅମର।
ଆଜଠାରୁ ମୁର ଆଉ ରାଜ୍ୟକୁ ନ ଯାଉ
ନୃସିଂହ ହାତରେ ମରି ବୈକୁଣ୍ଠକୁ ପାଉ।
ଏହା ଶୁଣି ପୁରନ୍ଦର ବ୍ରହ୍ମା ଆଜ୍ଞା ପାଇ
ଅମୃତଭାଣ୍ଡ ମାତଳି କରେ ଦେଲେ ନେଇ।
ବୋଇଲେକ ପ୍ରଭୁଙ୍କୁ ଏ ସୁଧା ନେଇ ଦେବୁ
ଛାମୁରେ ମଣୋହି କର ବୋଲି ଜଣାଇବୁ।
ବୋଲିବୁ ମୁରକୁ ଛାଡ଼ି ନ ଦିଅ ଏଥର
ରାଜ୍ୟକୁ ଗଲେ ପ୍ରମାଦ କରିବ ଅପାର।
ଦେବ ଜନପଦ ଆଦି ନ ରଖିବ କିଛି
କହ ଯାଇଁ ମୋତେ ପେଷି ଅଛନ୍ତି ବିରଞ୍ଚି।
ବୋଇଲେ ଅଟନ୍ତି ନୃସିଂହ ତ ବ୍ରହ୍ମରୂପ
ବ୍ରହ୍ମରୂପ ହେବାରୁ ସେ ମାରନ୍ତି କୌଣପ।
ଏଡ଼େ ଅସୁର ମାରି କେ ପାରନ୍ତା ସଂସାରେ
ଅମୃତ ମଣୋହି ପ୍ରଭୁ କରନ୍ତୁ ସେଠାରେ।
ନଗ୍ରେ ନ ପଶନ୍ତୁ ସୁର ମରିବାର ଯାଏ
ତିନି ଦିବସେ ମରିବ ଆଉ ଦୈତ୍ୟ ରାୟେ।
ସଇନ୍ୟ ସେନା ମଲାରୁ ହୋଇଲା କାଉଳି
ଏହିକ୍ଷଣି ଆସିବ ସେ ଯୁଦ୍ଧେ ମହାବଳୀ।
ସ୍ନାନ ସାରିଣ ଭୋଜନ ସୁଧା ବେଗେ କର
ନନ୍ଦିଘୋଷ ରଥେ ବସି ଅସୁରକୁ ମାର।
ରଥ ଚଢ଼ି ମୁରଦୈତ୍ୟ ଆସିଛି ଆରମ୍ଭେ
ପାଦଗତି ହୋଇ ଯୁଦ୍ଧ କରିବ କି ତୁମ୍ଭେ।
ଏହି କଥା ଦେବତାଙ୍କୁ ଲାଗେ ବଡ଼ ଚିନ୍ତା
ତେଣୁକରି ପେଷି ମୋତେ ଅଛନ୍ତି ବିଧାତା।
ନନ୍ଦିଘୋଷ ତୁମ୍ଭ ରଥ ଅଟେ ଚାରିଯୁଗେ
ଅବତାର ହୋଇ ବସୁଥିବ ଏହା ଅଙ୍ଗେ।
ମାତଳିର କଥା ଗୋଟି ଶୁଣି ଭାବଗ୍ରାହୀ
ଶ୍ରୀଛାମୁକୁ ଗରୁଡ଼କୁ ଆଣିଲେ ଡକାଇ।
ବୋଇଲେ ଅଟନ୍ତି ଦୈତ୍ୟମାନେ ମାୟାଯୋଗୀ
କପଟେ ଆସିଛି କି ହୋ ବୁଝ ତାହା ବେଗି।
ଶୁଣିଣ ଖଗେଶ୍ୱର ଯେ ଧ୍ୟାନରେ ବସିଲା
ଆତ୍ମାରେ ଆତ୍ମା ନେଇଣ ନିବେଦନ କଲା।
ମାତଳିର ଆତ୍ମା ଚିହ୍ନି ହୋଇଲେ ବାହାର
ପ୍ରଭୁଙ୍କ ଛାମୁରେ ବସି କହିଲା ତତ୍ପର।
ବୋଇଲା ହେ ପ୍ରଭୁ ସ୍ୱାମି ଶୁଣିମା ନୃସିଂହ
କପଟ ରଥ ଏହୁଟି ନୁହେଁ ଦୈତ୍ୟମାର୍ଗ।
ବ୍ରହ୍ମା ଇନ୍ଦ୍ର ତୁମ୍ଭଙ୍କୁ ସୁଦୟା କରି ମନେ
ଅମୃତ ରଥ ପେଷିଣ ଅଛନ୍ତି ଯତନେ।
ଅମୃତ ପାନ କରିଣ ରଥେ ବସ ଯାଇ
ମୁରର ତୁଲେ କରିବ ଯୁଦ୍ଧ ପରିଘାଇ।
ମୁରାସୁର ତ ରଥରେ ବସି ଆସିଥିବ
ତୁମ୍ଭେ କିପାଁ ଯୁଦ୍ଧ କରି ତଳେ ଉଭା ହେବ।
ଏହି କଥା ମନେ ମନେ ଦେବତାଏ ଭାଳି
ପଠିଆନ୍ତେ ରଥ ଘେନି ଆସିଲେ ମାତଳି।
ଶୁଣିକରି ମନେ ଶ୍ରଦ୍ଧା କଲେ ଜଗଦୀଶ
ସ୍ନାନ ଦେବାର୍ଚ୍ଚନ ସାରି ସୁଧା କଲେ ଗ୍ରାସ।
ନୃସିଂହଗଣ ଯାକଙ୍କୁ ଆପେ ଦେଲେ ବାଣ୍ଟି
ଭୁଞ୍ଜିଲେ ଶେଷଦେବର ସହ ଗରୁଡ଼ଟି।
କର୍ଣ୍ଣାଟେଶ୍ୱର ରାଜା ସୁଜାଣ ମନ୍ତ୍ରୀ ଆଦି
ମାତଳି ସହିତେ ଭୁଞ୍ଜି ବସିଲେ ପର୍ଯ୍ୟାଦି।
ତହୁଁ ମାତଳି ଯିବାକୁ ହ୍ୱନ୍ତେ ସଜବାଜ
ପ୍ରଭୁ ବୋଇଲେ ଗଲେ ତୁ ନ ଚଳେ ମୋ କାର୍ଯ୍ୟ।
ରଥ ଚଢ଼ିଲେ ବାହିବ ରଥ କେହୁ କହ
ମୁର ମଲାଯାଏ ଆମ୍ଭ ସଙ୍ଗେ ରହିଥାଅ।
ତହିଁ ଉତ୍ତାରୁ ତୋହର ରଥ ସଙ୍ଗେ ଘେନି
ସ୍ୱର୍ଗପୁରେ ଯିବୁ ଜାଣ ଆମ୍ଭ ଆଜ୍ଞା ମାନି।
ଏହା ଶୁଣି ମାତଳି ଯେ ଯୋଡ଼ି ବେନିକର
ବୋଇଲାକ ମହାଭାଗ୍ୟ ହେଲା ତେବେ ମୋର।
ବ୍ରହ୍ମାଣ୍ଡକର୍ତ୍ତା ହରିଙ୍କି ରଥରେ ବସାଇ
ମୁର ମଲାଯାଏ ରଥ ବାହୁଥିବି ମୁହିଁ।
ଏଥୁଅନନ୍ତରେ ବାଣୀ ଶୁଣ ହେ ନାରଦ
ମୁରର ମରନ୍ତେ ଷୋଳପଦ୍ମ ଦୈତ୍ୟବୃନ୍ଦ।
ଚାରିଗୋଟି ସେନାପତି ଆବର ମରନ୍ତେ
ଷୋଳପଦ୍ମ ଅଶ୍ୱ ଆଦି ମଲେ ଯେଝାମତେ।
ସୈନ୍ୟମାନଙ୍କ ମରୁଡ଼ି ଦେଖି ମୁରାସୁର
ବିଜୟା ରଥରେ ଚଢ଼ି ଦେଖେ ଦୈତ୍ୟବୀର।
ନଦୀପ୍ରାୟ ବହି ଯାଉଅଛି ରକ୍ତନଦୀ
ଭକ୍ଷନ୍ତି ଅନେକ ଯୋଗୀ ତହିଁ ମାଂସ ମେଦି।

କିଳିକିଳା ରାବ ଦେଇ ପିବନ୍ତି ଶୋଣିତ
ସେହି ଯୋଗ୍ନୀଗଣ ନାମ ଶୁଣ ବିଧିମତ।
ଶାକମ୍ଭରୀ ଘଟୋଦରୀ ଦୁର୍ଗେଶ୍ୱରୀ କାଳୀ
ଭଗବତୀ ରାମଚଣ୍ଡୀ କୁଠାରୀ ବାସେଳୀ।
ଚାମୁଣ୍ଡା ଯେ ହାଡ଼ବାଈ ବ୍ରାହ୍ମଣୀ ରୁଦ୍ରାଣୀ
ସାବିତ୍ରୀ ଯେ ଉଗ୍ରଚଣ୍ଡୀ ଶାରଳା ଡାକିନୀ।
ଚମ୍ପାଇ ଚାଚକାଈ ଯେ ରୂପାଇ ପିଙ୍ଗଳା
ସାରକମା ମାରକମା ବାହୁଡି ହିଙ୍ଗୁଳା।
କାଳିଯାଇ କାଳରାତ୍ରି କାଳିକା ବାଳିକା
ସିଦ୍ଧେଶ୍ୱରୀ କାଳମୁଖୀ ପାଟଳୀ ଚଣ୍ଡିକା।
ବିଜୟା କଙ୍କାଈ ଛାୟା ମାୟା କଙ୍କାଶୁଣୀ
କଞ୍ଚାଖାଇ ବକ୍ରଦନ୍ତୀ ପିଶାଚୀ ଶୋଷିଣୀ।
କାଗୁଳା ମୋହିନୀ ସର୍ପମୁଖୀ କଣ୍ଟାଖାଇ
ସଞ୍ଚାର ତାର ହିଙ୍ଗୁଳା ବିନ୍ଧ୍ୟ ହିଙ୍ଗୁଳାଇ।
ସ୍ୱରୂପାଇ କାଗୁଳାଇ ଜୟା ପ୍ରେମଲୀଳା
କାତ୍ୟାୟିନୀ କାମଚଣ୍ଡୀ ତାରିଣୀ ମଙ୍ଗଳା।
ଏ ବିଧିରେ ଚଉଷଠି ଯୋଗ୍ନୀଗଣ ଯାକ
ପିଇଣ ଶୋଣିତ ନଦୀ କରିଦେଲେ ପାକ।
ଦଣ୍ଡକ ମାତ୍ରରେ ରକ୍ତ ପିଇ ସବୁ ଗଲେ
ରକ୍ତଚିହ୍ନ ଟୋପାଏ ଯେ ତହିଁ ନ ରଖିଲେ।
ଦେଖି ମୁରଦୈତ୍ୟ ତାହା ଚମତ୍କାର ହେଲା
ଧନ୍ୟ ଲୋ ଯୋଗିନୀ ବୋଲି ବହୁ ପ୍ରଶଂସିଲା।
ସୈନ୍ୟ ସେନାପତି ମୋର ସବୁ ଗଲେ ଭକ୍ଷି
ଚିହ୍ନବର୍ଣ୍ଣ ତାହାଙ୍କର ଏକ ନାହିଁ ରଖି।
କି କାର୍ଯ୍ୟ ଅଛଇ ଆଉ ତାଙ୍କୁ କଲେ ଚିନ୍ତା
ପୂର୍ବିରୁ ତ ଲେଖି ଏହା ଅଛନ୍ତି ବିଧାତା।
ରୋଦନ କଲେ ଆଉ କି କାର୍ଯ୍ୟ ଏଥେ ଅଛି
ସବୁ ଛାଡ଼ି ମରିବାକୁ ଆସିଲିଣି ମୂର୍ଚ୍ଛି।
ଦିଗବିଜେ କାଳେ କି ମୋ ଥିଲେ ପୁତ୍ର ନାତି
ହେଲି ବ୍ରହ୍ମାଣ୍ଡରେ ପୁଣି ଏକ ଚକ୍ରବର୍ତ୍ତୀ।
ପୁତ୍ର ନାତିକି ମୋହର ଥିଲେ ସେତେବେଳେ
ମଦନାବତୀ ରାଣୀ ମୋ ଥିଲେ କି ସେକାଳେ।
ଚଉଦପୁରେ ପଣ କି ଥିଲା ଉଣାହୋଇ
ସେ ପଣ ଏବେ ମୋହର ଗଲା କି ପଳାଇ।
ପୁତ୍ର ନାତିକି ଲୋଡ଼ିଲେ ଆଉ ହେବ କିସ
ଏତେ ବୋଲି ମୁରାସୁର ଧରେ ହାତେ ନିଶ।
ବୋଇଲା ମାରିବାକୁ ବା ମରିବାକୁ ମୁହିଁ
ଆସିଅଛି ସବୁକଥା ରାଣୀକି ମୋ କହି।
ମୁଁ ମାରି ପାରିଲେ ହରି ହେବି ଅଜାମର
ହରି ମାଇଲେ ମୋକ୍ଷ ମୋ ହେବ କଳେବର

ସେ ନୃସିଂହ ନିଶ୍ଚେ ଯେବେ ହରି ହୋଇଥିବ
ଅବଶ୍ୟ ମୋତେ ଧରିଣ ପାଦେ ସଂହାରିବ।
ଶ୍ରୀପଦ୍ମପାଦ ଲାଗିଣ ହୋଇବି ମୁକତ
ଏ କଥା ପୂର୍ବରୁ କର୍ମେ ଲେଖିଛି ବିଧାତ।
ନୋହିଲେ ମୁହିଁ ପାରିବି ତାଙ୍କୁ ଯେବେ ମାରି
ସଂସାରଯାକରେ ମୁହିଁ ବୋଲାଇବି ହରି।
ତେତିଶକୋଟି ରାଣୀ ଅଛନ୍ତି ମୋର ଯେତେ
ତାଙ୍କଠାରୁ ପୁତ୍ର ଜନ୍ମ ହେବେ ପୁଣି କେତେ।
ଯା ବୋଲି ମୁର ସାରଥି ବଦନକୁ ଚାହିଁ
ବୋଇଲା ଏ ରଥ ମୋର ବାହୁଥିବୁ ତୁହି।
ନୃସିଂହ ଛାମୁରେ ନେଇ ଉଭା କରାଇବୁ
ତେବେ ବଡ଼ପଣ ମୋର ରଖିବୁ ତ ସବୁ।
ନୃସିଂହକୁ ମାରି ଯେବେ ପାରେ ଆଜ ମୁହିଁ
ତେବେ ପାସୋରିବି ପୁତ୍ର ନାତିଙ୍କି ସେ ଯାଇ।
ଭାଇ ସେନାପତି ସୈନ୍ୟ ସବୁ ପାସୋରିବି
ତେବେ ସିନା କଷ୍ଟ ମୋର ଗଲାଟି ବୋଲିବି।
ଗରୁଡ଼କୁ ଯେବେ ମାରି ପାରିବଇଁ ମୁହିଁ
ତେବେ ସିନା ମୂର୍ଚ୍ଛିବଇଁ ପୁତ୍ରନାତି ଯାଇଁ।
ଶେଷଦେବଙ୍କୁ ଯେବେ ମୁଁ ସଂହାରି ପାରିବି
ତେବେ ଦାରୁଣ ଭାଇକି ଯାଇଁ ମୂର୍ଚ୍ଛି ଦେବି।
କର୍ଣ୍ଣାଟେଶ ରାଜା ମୃତ୍ୟୁ ନୟନରେ ଦେଖି
ବସିବି କନକାବତୀ ନଗ୍ରେ ହୋଇ ସୁଖୀ।
ସୁଜାଣମନ୍ତ୍ରୀକି ଯେବେ ମୁଁ ପାରିବି ମାରି
ନୃସିଂହର ବଳବୁଦ୍ଧି ଯିବ ସବୁ ସରି।
ଆବର ନୃସିଂହଗଣ ସଂହାରିବି ଯେବେ
ସୈନ୍ୟର ମଗୁଡ଼ିଯାକ ପାସୋରିବି ତେବେ।
କୃଷ୍ଣବଲ୍ଲଭକୁ ନେଇ ବସାଇବି ଶୂଳେ
ମାତା ରାଣ୍ଡୀ ମାରି ପେଷିଦେବି ଯମଆଳେ।
ବଦ୍ରିକା ଗଡ଼ ଖଣ୍ଡକ ପକାଇବି ଟାଳି
ସମୁଦ୍ର ମଧ୍ୟେ ଆସିବି ତାକୁ ନେଇ ଢାଳି।
ଥିବାରୁ ବଦ୍ରିକା ପଲ୍ଲୀଖଣ୍ଡେ ମେଦିନୀରେ
ତହିଁ ଲୁଚି ରହିଅଛି ପଳାଇ ମୋ ଡରେ।
ବିପ୍ର ଲୁଚାଏ ଘେନିଣ ପୁଣି ବାହାରୁଛି
କେଉଁ ଭାଗ୍ୟରୁ ଆସି ମୋ ସୈନ୍ୟକୁ ମାରୁଛି।
ଏଥର ବୁଝା ଯିବଟି ପଡ଼ିଲେ ମୋ ମୁଖେ
ମାରିଣ ନୃସିଂହ ନାମ ଲୁଚାଇବି ସୁଖେ।
ନୃସିଂହ ନାମ ସଂସାରେ ଆଉ ରଖିବି କି
ଆଜିକାଲି ମଧ୍ୟେ କଥା ଜାଣିବା ନାହିଁକି।
ସେ ଅବା ମୋତେ ମାରୁ ମୁଁ ତାକୁ ଯିବି ମାରି
ଏ କଥା କହିଛି ମୋର ରାଣୀ ସତ୍ୟକରି।

ଆଜିକାଲି ଭିତରେ ତ ସବୁ ଜଣାଯିବ
ଏତେ ବୋଲି ଦେହ ପାଣି ହୋଇଲା ଦାନବ।
ସ୍ନାନ ସନ୍ଧ୍ୟା ସାରିଣ ସେ ଶିବପୂଜା କଲା
ମଣୋହିକି ବିଜେକରି ପ୍ରସାଦ ସାରିଲା।
ସୁପକାରମାନେ ରାନ୍ଧିଥିଲେ ଶାଳିଅନ୍ନ
ଭୋଜନ ସାରିଣ ରାଜା କଲା ଆଚମନ।
ଆଚମନ ସାରି ହସ୍ତ ମୁଖ ପଖାଳିଲା
ଗୁଆ ପାନ ଖାଇ ହୀରା ପୀଢ଼ାରେ ବସିଲା।
ଏଥୁ ଅନନ୍ତରେ ରାତ୍ର ହୋଇଲା ପ୍ରବେଶ
ସନ୍ଧ୍ୟାକର୍ମ କରିସାରି ବସିଲା ରାକ୍ଷସ।
ଗାୟତ୍ରୀ ପଢ଼ୁଁ ରଜନୀ ପ୍ରହରେ ହୋଇଲା
ଭୋଜନ ସାରି ରାଜନ ଶୋଇବାକୁ ଗଲା।
ଚାରିଦିଗରେ ପାହାରୀମାନଙ୍କୁ ଜଗାଇ
ବୋଇଲା ତାତପର୍ଯ୍ୟରେ ଥିବ ତୁମ୍ଭେ ରହି।
ବ୍ରାହ୍ମଣ ଯେ ମହାଚର୍କା ଅଟନ୍ତି ସଂସାରେ
ଅନୁବ୍ରତେ ଥାନ୍ତି ରହି ଛନ୍ଦ କପଟରେ।
ବିପ୍ରମାନଙ୍କର ଛନ୍ଦ ଅନ୍ତ ଅଟଇ କି
ଆପେ ଆପେ କହି ହୋନ୍ତି ଶାନ୍ତିପଣ ଟେକି।
ଆପେ ଅଠର ବର୍ଣ୍ଣରେ ହୋଇଥାନ୍ତି ରାଜା
ରାଜ୍ୟ ନ ଥାଇ ରାଜୁତିପଣେ ପାନ୍ତି ପୂଜା।
ଗଜ ଦ୍ୱିଜ ଶ୍ୱାନ ଏହି ତିନିଜାତି ଯାକ
ସ୍ୱଜାତିକୁଳଯାକୁ ଏ ଅଟନ୍ତି ହିଂସ୍ରକ।
ଏ ତିନି ଜାତିକି ପ୍ରତେ ନାହିଁ କେତେବେଳେ
ଆବର କେତେ ଜାତି ତ ନାହିଁ ରବିତଳେ।
କୁକ୍କୁଟ କାକ ଶାଗୁଣା ପକ୍ଷୀ ଜନ୍ତୁଯାଏ
ସ୍ୱଜାତି ଯାକୁ ପୋଷି ଏ ଥାନ୍ତି ସର୍ବଦାଏ।
ରଜନୀ ପାହିଲେ ଯୁଦ୍ଧ ହେବ ଅପ୍ରମିତ
ଏ ରାତିକି ଥାଅ ତୁମ୍ଭେ ହୋଇଣ ଜାଗ୍ରତ।
ଏତେ କହିଣ ପଲ୍ୟଙ୍କେ ଶୁଏ ମୁରାସୁର
ଶୁଣ ନାରଦ କହନ୍ତି ସାବିତ୍ରୀଙ୍କ ବର।
ପ୍ରଭୁଙ୍କ ଦର୍ଶନ ଆସି କଲେ ହରିଗଣ
ଗରୁଡ଼ ଜଣାଇଲେ ଯେ ଶୁଣ ନାରାୟଣ।
ରାତ୍ରର ଅର୍ଦ୍ଧ ଯେ ହୋଇଅଛି ଏତେବେଳେ
ହାତୀଗଡ଼େ ମୁରାସୁର ଶୋଇଛି ନିଶ୍ଚଳେ।
ନୃସିଂହଗଣେ ଦର୍ଶନ ଆସି କରୁଛନ୍ତି
ଏହିଲାଗେ ଚାଲ ଗଡ଼ ବେଢ଼ିବା ବୋଲନ୍ତି।
ଚାରି ସେନାପତି ସୈନ୍ୟ ମରିବାରୁ ଆଜ
ଶୋଇଛି ମନରେ ଚିନ୍ତାକରି ଦୈତ୍ୟରାଜ।
ଏହି ସମୟେ ବେଢ଼ିବା ଆସ ଗଡ ଯାଇ
ରାଜା ନ ଜାଣୁ ତ ଗଡ଼ ଦେବା ପୋପଡ଼ାଇ।
ସିନ୍ଧୁ ଭିତରେ ପକାଇଦେବା ହାତୀଗଡ଼
ଏରୂପେ ପ୍ରଭୁଙ୍କ ଆଗେ ଜଣାଏ ଗରୁଡ଼।
ବୀରବେଶ ହୋଇ ପ୍ରଭୁ ଆଗେ ଉଭାହେଲା
ଷୋଳପଦ୍ମ ଗରୁଡ଼ ଯେ ମନୁ ଜାତକଲା।
ଗରୁଡ଼ ଗୋଟିଏ ବେଶ ଭିନ୍ନେ ଭିନ୍ନେ କାଢ଼ି
ତିନିହାତ ଦିଶେ ଲମ୍ବ ଅଣ୍ଟମାନ ବଢ଼ି।
ବେନି ଖଗ ବେନି ପାଶେ ଗିରି ପ୍ରାୟ କଲା
ପାଦରେ ଉଭା ହୁଅନ୍ତେ ପୃଥ୍ୱୀ ନ ଦିଶିଲା।
ତଡ଼ିତ ଅନନ୍ତ ଅର୍କଗ୍ରହ ଜ୍ୟୋତି ପ୍ରାୟ
ଗରୁଡ଼ଙ୍କର ଥଣ୍ଟ ବିରାଜି ଦିଶେ କାୟ।
ନୃସିଂହଙ୍କ ପ୍ରଭାଯାକ କଣ୍ଠେ ମାଳାକରି
ମୁକୁତାମାଳା ପରାୟ ଦିଶେ ସରି ସରି।
ଗରୁଡ଼ ମୂର୍ତ୍ତିବନ୍ତ ନୃସିଂହ ପ୍ରଭୁ ଦେଖି
ବୋଇଲେ ମୁରପ୍ରାଣ ନ ପାରେ ଆଜ ରଖି।
ନୃସିଂହଗଣ ବତିଶପଦ୍ମ ରହିଛନ୍ତି
ତହିଁକି ଷୋଳମୂର୍ତ୍ତି ଯେ ଖଗେଶ୍ୱର ମୂର୍ତ୍ତି।
ତା ହାତୀଗଡ଼କୁ ମୋର ଭୟ କିଛି ନାହିଁ
ମାରି ଧ୍ୱଂସ୍ତ କରିଦେବି କ୍ଷଣକରେ ମୁହିଁ।
ଶୁଣି ଗରୁଡ଼ ଯତି ନୃସିଂହ ଆଜ୍ଞା ପାଇ
ମିଳିଲେ ନୃସିଂହଗଣ ଘେନି ଗଡ଼େ ଯାଇ।
ମୁରର ରକ୍ଷା ଲୋକଟି ଯେତେ ଥିଲେ ଜଗି
ସେମାନେ ନ ଜାଣୁ ପଶିଗଲେ ଗଡ଼େ ବେଗି।
ଧସାଇ ହୋଇଣ ପଶିଗଲେ ହାତୀଗଡ଼େ
ଧର ଧର ମାର ମାର ବୋଲି ହୁରି ପଡ଼େ।
ଏକଇ ହାତୀ ଉପରେ ଧରି ଆରେକକୁ
ମାରୁ ଗରୁଡ଼ ଫିଙ୍ଗିଣ ପକାଏ ଅବ୍ଧିକୁ।
ଷୋଳପଦ୍ମ ଗରୁଡ଼କୁ ଷୋଳପଦ୍ମ ହସ୍ତୀ
ଏକାବେଳେ ମାରି ଅବ୍ଧି ମଧ୍ୟେ ଦେଲା ପୋତି।
ମାରୁ ମାରୁ ହାତୀମାନେ ଗର୍ଜି ବୋବିଦ୍ୟନ୍ତେ
ଚହଳ ପାଇଣ ମୁର ଉଠେ ନିଦ୍ରାଗତେ।
ପହରା ଲୋକେ ଛାମୁରେ ବ୍ୟଗ୍ରେ ଉଭାହୋଇ
ବୋଇଲେ ନୃସିଂହ ଗଡ଼େ ପଶିଲେକ ଡେଇଁ।
ହାତୀଗଡ଼େ ପଶି ପକ୍ଷୀବର ଝାମ୍ପି ଦେଲା
ସବୁ ହାତୀକି ମାରିଣ ସମୁଦ୍ରେ ଫିଙ୍ଗିଲା।
ଡେଣାରୁ ଯେ ଅଣଚାଶ ପବନ ଉଦ୍‌ଗାରି
ସମସ୍ତଙ୍କୁ ଛେଚି ଛେଚି ଆଣ୍ଟେ ଦେଲା ଚିରି।
ପବନେ ଉଡ଼ାଇ ଅବ୍ଧି ମଧ୍ୟେ ଦେଲା ମାଡ଼ି
ନୃସିଂହଗଣ ଆମ୍ଭଙ୍କୁ ରହିଲେଣି ବେଢ଼ି।
କିଳିକିଳାରାବ ଦେଇ ବୋବି ପାରୁଛନ୍ତି
ଷୋଳପଦ୍ମ ଗରୁଡ଼ ଯେ ଜନମି ଅଛନ୍ତି।

ଗରୁଡ଼ ଗୋଟାକୁ ହସ୍ତୀ ଗୋଟିଏ ହେଲାକୁ
ସବୁଙ୍କୁ ମାରିଣ ଚିରି ଫିଙ୍ଗିଲେ ଅବ୍‌ଧିକୁ।
ଶୁଣି ମୁରାସୁର ମନେ ବିଚାର ଯେ କରେ
ବୋଲେ ଭଲାଛନ୍ତି କୃଷ୍ଣବଲ୍ଲଭ କୁମରେ।
ନୃସିଂହଗଣ ଯେତେକ ସଙ୍ଗରେ ଆଣିଛି
ବ୍ରାହ୍ମଣ ବୋଲିଣ ଆମ୍ଭେ ମନେ ଥାଉ ପାଞ୍ଚି।
ଏତେ ଗରୁଡ଼ ଏବେ କି ରୂପେ କଲା ଜାତ
ବଡ଼ ଲୋକ ଜଣେ କୃଷ୍ଣବଲ୍ଲଭର ସୁତ।
ବିଷ୍ଣୁ ପ୍ରାୟ ତ ଦିଶିଲା ମୋତେ ଏବେ ଆସି
ମରିବା କଥାରେ ଆଉ ଭାବିବା କି ବସି।
ହାତୀଗଡ଼ ଗଲା! ବୋଲି ପାଞ୍ଚିଲେ କି ହେବ
କେତେସେନା କେତେ ସୈନ୍ୟ ମଲେଣି ସରବ।
କେତେ ପୁତ୍ର କେତେ ନାତି ସାଙ୍ଗ ଭାଇ ମଲା
ବିଚାରିଲେ ତହିଁ ସଙ୍ଗେ ହାତୀଗଡ଼ ଗଲା।
ଏତେ ପାଞ୍ଚି ମୁରାସୁର ସାରଥିକି ରାଇ
ବୋଇଲାକ ନୃସିଂହକୁ ଦେଖା ମୋତେ ନେଇ
ଆନକୁ ମାରିବାରେ ମୋ ନାହିଁ କାର୍ଯ୍ୟ କିଛି
ସେ ଅବା ମୋତେ ମାରୁ ମୁଁ ତାଙ୍କୁ ବା ମାରୁଛି।
ଏତେ ବୋଲି ଅସୁର ବିଜୟା ରଥ ଚଢ଼ି
ଲାଗିଛନ୍ତି ସୈନ୍ୟବଳ ଆଗେ ପଛେ ଧାଡ଼ି।
ବାଇଶି କ୍ଷଉଣୀବଳ ଧରି ମୁରାସୁର
ସମରକୁ ବାହାରିଲା ହୋଇ କୋପଭର।
ସୈନ୍ୟଙ୍କୁ ବୋଇଲା ମାର ନରସିଂହଗଣ
ଉପ୍ରୋଧ ନ କରି ମାର ପ୍ରାଣ ନିଆଶିଣ।
ଏ ରୂପରେ ବୋଲୁ ବାଦ୍ୟ ବାଜେ ଆଗେ ଚାଲୁ
ଘୁମୁ ଘୁମୁ ଘୁମୁରା ଦମାଲୁ ଦୁଲୁ ଦୁଲୁ।
ପଟହ ମଞ୍ଜରୀ ବାଜେ ଶବ୍ଦ ଘିଡ଼ି ଘିଡ଼ି
ମହୁରା ଦୋପାଟିଆ ଯେ ବାଜେ ଯୋଡ଼ି ଯୋଡ଼ି।
ଦମାଦମା ଶୁଭେ ମେଘ ଗରଜନ ଜାଣି
ଢୋଲ ଶବଦ ନାଦରେ କମ୍ପେ ପୁର ତିନି।
ଶଙ୍ଖ କମ କାହାଳୀ ଯେ ବାଜେ ଅନର୍ଗଳ
ଆସନ୍ତି ଲହରୀ ପ୍ରାୟ ମାଡ଼ି ଦୈତ୍ୟବଳ।
ଏଥୁଅନନ୍ତରେ ଗରୁତ୍ମାନ ମହାଯତି
ବିଶ୍ୱରୂପକୁ ତେଜିଣ ଧରେ ନିଜମୂର୍ତ୍ତି।
ନୃସିଂହ ପାଦେ ଦର୍ଶନ ବେଗେ ଆସି କଲା
ହାତୀଗଡ଼ଯାକ ଭାଙ୍ଗି ଆସିଛି ବୋଇଲା।
ଶୁଣିଣ ନୃସିଂହସ୍ୱାମୀ ହେଲେ ହସ ହସ
ଗରୁଡ଼କୁ ବହୁତର କଲେ ପଉରୁଷ।
ଏଥୁଅନନ୍ତରେ ମୁର ଯୁଦ୍ଧେ ବାହାରନ୍ତେ
ମାତଳି ବୋଇଲା ପ୍ରଭୁ ଶୁଣ ଲକ୍ଷ୍ମୀକାନ୍ତେ।
ବିଜୟାରଥ ଉପରେ ଅଛି ଦୈତ୍ୟ ଚଢ଼ି
ବାଇଶି କ୍ଷଉଣୀ ସୈନ୍ୟ ଘେନି ଆସେ ମାଡ଼ି।
ନନ୍ଦିଘୋଷ ରଥପରେ ଶୀଘ୍ରେ ବିଜେ କର
ଗରୁଡ଼ରେ ବସି ଯୁଦ୍ଧ ଆଜକ ନ କର।
ତାହାପରେ ବସିଲେ ସେ ଯୁଦ୍ଧ ନ କରିବ
ଏକା ହୋଇ ତୁମ୍ଭେ କେତେ ମାରିବ ଦାନବ।
ନୃସିଂହ ଶୁଣି ବୋଇଲେ ଏ କଥାତ ସତ୍ୟ
ଗରୁଡ଼ ଘେନି ମୋର ଏ ଅବତାର ଖ୍ୟାତ।
ନୃସିଂହ ଅବତାରକୁ ଗରୁଡ଼ ମୋ ସଖା
ଲକ୍ଷେ ମୁରାସୁର ହେଲେ ମାରିବି ମୁଁ ଏକା।
ଆହୋ ମାତଳି ବେଗେ ତୁ ରଥ ସଜକର
ବାଦ୍ୟ କେତେ ବଜାଇଣ ଆସେ ମୁରାସୁର।
ମାତଳି ଯେ ନନ୍ଦିଘୋଷ ରଥ ସଜକରି
ନୃସିଂହ ଆଗରେ ଆଣି ରଖେ ରଥ ଡେରି।
ଯାବତ ଧନୁରେ ଶର ଦେଇ ବିଧିମତେ
ନନ୍ଦିଘୋଷେ ଥୋଇ ବିଜେ କଲେ ଜଗନ୍ନାଥେ।
ସେ ଶରଯାକଙ୍କ ନାମ କହୁଁ ଥୋକେ ଶୁଣ
ଥୋଇଲେ ନୃସିଂହ ପ୍ରଭୁ ଆଗେ ସାଇତିଣ।
ଧନୁଶର କମାଣ ଯେ କୋଦଣ୍ଡ ଶକତି
ପରିଘ ଖପର ଛୁରୀ ଭୂଷଣ୍ଡି ଯେ କାତି।
ମାଙ୍କେଡ଼ି ଯମଦାଢ଼ ଯେ ତ୍ରିଶୂଳ ଶାବେଳି
ମେଘା କୁବେରା ବରୁଣାଶର ରତ୍ନାବଳୀ।
ଗୁପତି ମରୁତା ନଇରତା ବ୍ରହ୍ମବେତ୍ତା
କାଳପାଶି ନାଗପାଶି ପବନ ପର୍ବତା।
ବିଷ୍ଣୁଶର ବ୍ରହ୍ମଶର ମୋକ୍ଷ ଜଳପାଶି
ଦହନା ଶୋଷଣା ଅଗ୍ନିଶର ବ୍ରହ୍ମରାଶି।
ବାବଲ ମୋହନା ମନଭେଦୀ ଅସିବର
ସ୍ୱର୍ଗ ପାତାଳଭେଦୀ ଯେ ମଞ୍ଚଭେଦୀ ଶର।
ଶୂନ୍ୟଭେଦୀ ଶବ୍ଦଭେଦୀ କାଳଭେଦୀ ମୁନ
ସ୍ତମ୍ଭନ ମୋହନ ଆଦି ବଶ ଉଚ୍ଚାଟନ।
ଶୂଳ ଶକତି ମୁଦ୍‌ଗର ଭାଲ ଖଣ୍ଡା ଗୁପ୍ତି
ପିନାକ ଯେ ପାଶୁପତ ଆଦି ବ୍ରହ୍ମଶକ୍ତି।
ତ୍ରିକନା ଆବର ଚଉକନା ପରକନା
ତାଳ ଯେ ବେତାଳ ଅଧାଚନ୍ଦ୍ର ପଞ୍ଚମୁନା।
ଅକାଳ ମହାକାଳ ଯେ ତ୍ରିକାଳ ଏକଘ୍ନି
ଗରୁଡ଼ା କୁହୁକ ଅହିଶର ବଜ୍ରଧ୍ୱନି।
ଉଡ଼ାଣ ବୁଡ଼ାଣ ଆଉ ତାଡ଼ଣ ମାରଣ
ବିଜୟା ଜୟା ଭୈରବୀ ସିଂହନାଦ ବାଣ।
ଶଙ୍କରା ଗର୍ଜ୍ଜନାକିତ ସୂର୍ଯ୍ୟବଳି ଶସ୍ତ୍ର
ଆବର ଯେ ନାରାୟଣ ଶର ସୂର୍ଯ୍ୟାବର୍ତ୍ତ।

କୁହୁଡ଼ି ଜଳ ପାଶ ଯେ ହୁତାଶ ବତାଶ
କାଳପାଶ ବ୍ରହ୍ମପାଶ ରୁଦ୍ରର କୁଳିଶ ।
ଅଜଗବ ଶାର୍ଙ୍ଗଧନୁ ସୁଦର୍ଶନ ଚକ୍ର
କୌମୋଦକୀ ଗଦା ଆଦି ପୁଣ୍ଡ୍ର ଧନୁ ଶକ୍ର ।
ନୀଳବାଣ ଭୁଜବାଣ ସୂର୍ଯ୍ୟାବଳି ଶର
ବ୍ରହ୍ମଶକ୍ତି ବଜ୍ରଶକ୍ତି ଆବର ତୋମର ।
ଜୀବନ୍ୟାସ ଶର ଆଦି ନୀଳଚକ୍ର ବାଣ
ନନ୍ଦିଘୋଷେ ଥୋଇ ବିଜେ କଲେ ନାରାୟଣ ।
ଗରୁଡ଼କୁ ବୋଇଲେକ ଶୁଣ ପକ୍ଷୀବର
ଶେଷଦେବଙ୍କୁ ଘେନିଣ ଥିବୁ ସଙ୍ଗେ ତୋର ।
ଦେଖ ଏ ମୁରର ବାଜୁଅଛି ବାଦ୍ୟ କେତେ
ଆଜର ଯୁଦ୍ଧ ଜାଣଟି ହେବ ଅପ୍ରମିତେ ।
ଏହା ଶୁଣି ବୈନତେୟ ଅଳ୍ପ ମନେ ହସି
ବୋଲେ ମୋ ପିଠିରେ ଶେଷଦେବ ଥାନ୍ତୁ ବସି ।
ସମରରେ ଯେତେ ମୋତେ ବିନ୍ଧୁ ଥିବେ ଦୈତ୍ୟ
ରଖିବି ମୁଁ ବେନି ଖଗ ଆଡ଼ି ତୁମ୍ଭ ଭ୍ରାତ ।
ଶୁଣିଣ ନୃସିଂହ ପ୍ରଭୁ ଆନନ୍ଦ ହୋଇଲେ
କର୍ଣ୍ଣାଟେଶ ସୁଜାଣ ମନ୍ତ୍ରୀଙ୍କୁ ଆଜ୍ଞା ଦେଲେ ।
ବୋଇଲେ ମନ ଇଚ୍ଛାଏ କର ଯାଇଁ ଯୁଦ୍ଧ
ମୁଁ ଏକା କରିବି ମୁରାସୁର ପ୍ରାଣ ବଧ ।
ମାତଳିକୁ ବୋଇଲେକ ଶୁଣ ହୋ ସାରଥି
ମୁରକୁ ଚାହିଁ ରଥ ମୋ ବାହୁଥିବୁ ମନ୍ତ୍ରି ।
ଅସୁରେ ମାୟାବୀଯୁଦ୍ଧ ଜାଣନ୍ତି ଯେ ଛନ୍ଦେ
ତହିଁକି ଡରକି ତୁହି ରହିଥିବୁ ହାଦେ ।
ଶୁଣିଣ ମାତଳି ତହୁଁ ଯୋଡ଼ି କରପଦ୍ମ
ବୋଲେ ତୁମ୍ଭଆଜ୍ଞାରେ ମୁଁ କାଣେ କେତେ ସୂତ୍ର ।
ଶୁଣିଣ ନୃସିଂହ ସ୍ୱାମୀ ଚାରିରୂପ ଧରି
ଶ୍ରୀଜଗନ୍ନାଥଙ୍କ ପ୍ରାୟେ ରଥେ ବିଜେକରି ।
ଶୂନ୍ୟମାର୍ଗରେ ମାତଳି ବାହେ ରଥ ଟେକି
ବିଜୟା ରଥକୁ ଦିଶେ ଦ୍ୱିଗୁଣ ଝଟତି ।
ନକ୍ଷତ୍ରପନ୍ତି ପ୍ରାୟ ନୃସିଂହଗଣଯାକ
ଦୈତ୍ୟମାନଙ୍କୁ ବେଢ଼ିଣ ରହିଲେ ଚୌପାଶ ।
ରଡ଼ି ଘନ ଘନ କରି ଖର ନିଶୁଆସେ
ନୃସିଂହଗଣଙ୍କୁ ମାଡ଼ି ପଡ଼ିଲେ ରାକ୍ଷସେ ।
ଧର ଧର ମାର ମାର ପିଟ ପିଟ ବୋଲି
ଯୁଝନ୍ତି ଅଙ୍ଗ ଛଳରେ ନାନାଶସ୍ତ୍ର ମେଲି ।
ପଛକୁ ନ ଘୁଞ୍ଚନ୍ତି ଯେ ଐରବଳ ଧ୍ୱଂସି
ଜଣକୁ ଧରି ଜଣକେ ପିଟି ପ୍ରାଣ ନାଶି ।
ଯେ ଯାହା ମୁଖେ ପଡ଼େ ସେ ତାକୁ ଯାଏ ମାରି
ଅଣଚାଶ ପବନ ପ୍ରଳୟେ ଯେହ୍ନେ କରି ।
ମୁଖ ଗୋଳରେ ପୃଥିବୀ ସ୍ତବ୍‌ଧେ ଅଛି ରହି
ଚତୁର୍ଦ୍ଦଶ ପୁର ଲୋକେ ଭୟେ ହୁନ୍ତି ଦହି ।
ଏକଦୃଷ୍ଟି ହୋଇକରି ଚାହିଁଛନ୍ତି ସର୍ବେ
ଶୁଣ ହେ ନାରଦ କହୁ ଅଛନ୍ତି ଦଇବେ ।



## ମୁର ନୃସିଂହ ଯୁଦ୍ଧ

ଏହିରୂପେ ଦୈତ୍ୟବଳ ଯୁଦ୍ଧେ ଯାନ୍ତି ପଶି
ନୃସିଂହଗଣ ବିସ୍ମୟେ ଯୁଝୁଥିଲେ ବସି ।
ହୁଂକାରେ ଉଠିଣ କିଳିକିଳା ରାବ ଦେଲେ
ଶ୍ୟେନପକ୍ଷୀ ପ୍ରାୟ ଯାଇ ମାଡ଼ିଣ ପଡ଼ିଲେ ।
କେ ଶସ୍ତ୍ର ଧରି ହାଣେ କେ ଗଦା ଧରି ପିଟେ
କାହାର ମୁଣ୍ଡ ଭୂମିରେ ଛିଡ଼ିପଡ଼ି ଲୁଟେ ।
କେହୁ ବିଧା ଗୁରୁଦା କେ ମାରନ୍ତି ଗୋଇଠା
କେ ବୁକୁ ବିଦାରି ଭାଙ୍ଗି ପକାନ୍ତି କେ ଅଣ୍ଟା ।
ସୈନ୍ୟ ମରୁଡ଼ି ଦେଖିଲା ଯହୁଁ ମୁରାସୁର
ରଥେ ଥାଇ ଧନୁଶର ଧରି ବେନି କର ।
ବୋଇଲା ଏତେ ସୈନ୍ୟ ଯେ ଆଣିଛି ନୃସିଂହ
ମୋତେ ଅଗୋଚର ଲାଗେ ଏହାର ପ୍ରସଙ୍ଗ ।
ବ୍ରାହ୍ମଣଗଣ କି ଏ ନୃସିଂହଗଣ ଅଟେ
ସବୁ ସୈନ୍ୟଙ୍କୁ ମାରିଣ ଆସି ମୋତେ ଭେଟେ ।
ସମସ୍ତଙ୍କୁ ମୁଁ କରିବି ଆଜ ଶରପୀଡ଼ା
ଦେଖୁ ଏ ମୋ କରାମତି ନୃସିଂହ ବାପୁଡ଼ା ।
ଏତେ ବୋଲିଣ ଧନୁରେ ଯୋଚି ଶର ଆଣି
ନୃସିଂହଙ୍କୁ ବିନ୍ଧିଲାକ ଲକ୍ଷେଶର ଟାଣି ।
ଶେଷଙ୍କୁ ଲକ୍ଷେ ଗରୁଡ଼େ ବିନ୍ଧେ ତିନିଲକ୍ଷ
କର୍ଣ୍ଣାଟେଶ୍ୱରଙ୍କୁ ବାଣ ବିନ୍ଧିଲା ଅସଂଖ୍ୟ ।
ସୁଜାଣ ମନ୍ତ୍ରୀଙ୍କୁ ଯେ ପଞ୍ଚାଶସହସ୍ର ବିନ୍ଧି
ମାତଳିକୁ ତିରିଶସହସ୍ର ଶର ସନ୍ଧି ।
ନୃସିଂହଗଣଙ୍କୁ ବିନ୍ଧେ କାଣ୍ଡେ କାଣ୍ଡେ କରି
ବିନ୍ଧିଲା ବତିଶପଦ୍ମ ଶର ଗଣିକରି ।
ଏରୂପରେ ଅପର୍ଯ୍ୟାପ୍ତ ଧରି ନାରାଚଙ୍କୁ
ଧନୁରେ ଯୋଚିଣ ଶର ବିନ୍ଧିଲା ସବୁଙ୍କୁ ।
ଦେଖିଣ ନୃସିଂହ ସ୍ୱାମୀ ମହାକୋପ କଲେ
ଏକ ନାରାଚ ପେଷିଣ କାଟି ପକାଇଲେ ।
କାହାରି ଅଙ୍ଗରେ କାଣ୍ଡ ନ ବାଜିଲା କିଛି
ନୃସିଂହଙ୍କର କୃପାରୁ ସର୍ବେ ଗଲେ ବଞ୍ଚି ।
ତାହା ଦେଖି ମୁରାସୁର ଚାହିଁଲା ନିରୀକ୍ଷି
ବୋଇଲା ନିଶ୍ଚୟ ଏହୁ ଅଟେ ପଦ୍ମ ଆଖି ।
ମାନବେ ଜନ୍ମିଲାରୁ ନ ମାନୁଥାଇ ଆମ୍ଭେ
ବୁଝିଲେ ପ୍ରତ୍ୟକ୍ଷରେ ଏ ଅଟେ ବାସୁଦେବେ ।

ବାସୁଦେବ ନୋହିଲେ କେ ମେଣ୍ଟନ୍ତା ମୋ ଶର
ବ୍ରହ୍ମା ହେଲେ ବଞ୍ଚି ନ ଯାନ୍ତି ତତପର।
ଏମନ୍ତେ ପାଞ୍ଚ ପ୍ରକୃତି ଗଲା ତାର ଭୂମି
ବୋଇଲା କିସ କଲା ଏ ଯେବେ ଅନ୍ତର୍ଯ୍ୟାମୀ
ସୋଲଭେଳା ପ୍ରାୟ ମୁଁ ଯେ ଶର ଥିବି ପେଷି
ଶୁଖି ଶୁଖି କେତେଦିନୁ ତୂଣେ ଥିଲେ ପଶି।
ତେଣୁ ନାରାଚ ଗୋଟିକେ ଭାଙ୍ଗି ପକାଇଲା
ଏ କଥାରେ ଚମତ୍କାର ଘେନିମା କି ଭଲା।
ଏତେ ବୋଲି ମୁରାସୁର ଦାଢ଼ି ଦୋହଲାଇ
ସାରଥିକୁ ବୋଇଲା ତୁ ରଥ ନିଅ ବାହି।
ନୃସିଂହଗଣଙ୍କୁ ଆଜ ପକାଇବି ମାରି
ପଛେ ମାରିବି ମାନବବିଷ୍ଣୁ ନରହରି।
ଗରୁଡ଼ ଛାରକୁ ଆଉ ରଖିବି କି ମୁହିଁ
ବ୍ରହ୍ମଶକ୍ତି ପେଷି ଛେଦିଦେବି ମୁଣ୍ଡ ଯାଇଁ।
କର୍ଣ୍ଣାଟେଶ୍ୱର ରାଜା ଯେ ସୁଜାଣ ମନ୍ତ୍ରୀକି
ଏମାନଙ୍କୁ ମାଇଲେ ମୋ କଳଙ୍କ ରହେ କି।
ଏହାଙ୍କୁ ମାରୁ ମାରୁ ଯେ ଶେଷଦେବ କାହିଁ
ପଳାଇବ ଲୁଚି ସେହୁ ବାଟବଣା ହୋଇ।
ଏତେ ବୋଲି ମୁରାସୁର ଦୋହଲାଇ ମଥା
ଧଇଲା ଧନୁଶର ନ କହି ଆଉ କଥା।
ଶ୍ରୀନୃସିଂହଗଣଯାକ ଦୈତ୍ୟ ଛନ୍ତି ବେଢ଼ି
ବିଜୟା ରଥରେ ମୁରାସୁର ଅଛି ଚଢ଼ି।
ଲକ୍ଷେକ ଶ୍ୱେତଛତ୍ରର ଉଡ଼େ ଫରଫର
ଲକ୍ଷେକ ଅଶ୍ୱ ଯୋଚି ସେ ଅଛଇ ରଥର।
ଲକ୍ଷ ଲକ୍ଷ ଚିରାଳ ଯେ ଉଡ଼େ ଚଉକତି
ସେ ରଥେ ବସି ସମର କରେ ଦୈତ୍ୟପତି।
ନୃସିଂହଗଣ ସମାନେ ଦୈତ୍ୟବଳଯାକ
ମରାମରି ହୋଇ ଧରି ଝିଙ୍କନ୍ତି କେ ବେକ।
ନୃସିଂହଗଣଙ୍କୁ କେହି କଳିତ ନ ପାରି
ମନ୍ଥନ୍ତି ଅସୁର ଥାଟେ ପଶି ମାରି ମାରି।
ପଡ଼ି ଉଠି ଡାକହାକ କରି କେହୁ ଯୁଝେ
ମଡ଼ା ଉପରେ ମଡ଼ା କେ ପକାଇ ଗରଜେ।
ବାଜେ ଟମକ ନିଶାଣ ବାଦ୍ୟ ଘଡ଼ଘଡ଼ି
ଦୁଇବଳ ମିଶିକରି ଦ୍ୟନ୍ତି ଘୋରରଡ଼ି।
କେ କାଣ୍ଡଘାତ ପାଇଣ ତରଛେ ପଳାଇ
ପର୍ବତ ଖୋଲେ ପଶିଣ ଲୁଚନ୍ତେ କେ ଯାଇ।
କେ କୁନ୍ତ ପିଟନ୍ତେ ମହୀପରେ ପଡ଼ି ରହେ
ଚକ୍ରରେ ବାଜି କାହାର ମୁଣ୍ଡ ଛିଡ଼ିଯାଏ।
ଲେଡ଼ା ଘାତ ପାଇଣ କେ ନ ପାରନ୍ତି ଉଠି
ଗୋଇଠା ଘାତେ କାହାର ଭାଜିଯାଏ ପିଠି।
ଏକା ବିଧାକେ କାହାର ଭାଜିଯାଏ ମୁଣ୍ଡ
ନଖେ ବିଦାରି ବୁକୁ କେ କରେ ଖଣ୍ଡ ଖଣ୍ଡ।
ଧରନ୍ତି ପଡ଼ନ୍ତି ହୃଦେ ବସନ୍ତି କେ ମାଡ଼ି
ମୁଖି ମାରିଣ ବେକେ କେ ଦିଅନ୍ତି କଚାଡ଼ି।
ଏ ରୂପରେ ଯୁଦ୍ଧକରୁ ବହେ ରକ୍ତନଦୀ
ଭାସନ୍ତି ବୋଇତ ପ୍ରାୟ ହସ୍ତୀ ଘୋଡ଼ା ଆଦି।
ଏଥୁଅନନ୍ତରେ ପୁଣି ଦୈତ୍ୟକୁଳ ନାହା
ସାରଥିକି ବୋଇଲା ହୋ ରଥ ମୋର ବାହା।
ବାଇଶି କ୍ଷଉଣୀ ସୈନ୍ୟ ମୁହିଁ ଥିଲି ଆଣି
ତିନିଚୌଠ ପରିଯନ୍ତେ ମଲେ ଏବେ ପୁଣି।
ବୁଝିଲେ ଚଉଠେ ମାତ୍ର ଛନ୍ତି ଆଉ ଜୀଇଁ
ଏହାଙ୍କୁ ଲକ୍ଷେକୋଟି ଯେ ସୈନ୍ୟ ସରିନୋହି।
ଶୁଣି ସାରଥି ବାହିଲା ଶୂନ୍ୟେ ରଥ ଟେକି
ଦେଖିଲା ନୃସିଂହଗଣେ ଦିଶନ୍ତି ଝଟକି।
ସୂର୍ଯ୍ୟ କିରଣ ପରାଯେ ସର୍ବେ ଛନ୍ତି ପୂରି
ଦିଶନ୍ତି ଦୁଷ୍ଟମାନଙ୍କୁ ଯେହ୍ନେ ମେରୁଗିରି।
ସଂସାରଯାକୁ ଦିଶନ୍ତି ସର୍ବେ ବିଷ୍ଣୁ ମୟ
ଦୁର୍ଜନକୁ ଦିଶନ୍ତି ସେ କାଳାନଳ ପ୍ରାୟ।
ଆବର ଲୋକଙ୍କୁ ଦିଶନ୍ତି ସେ ଦେବଦେହୀ
ମୁରକୁ ଦିଶନ୍ତି ସେହୁ କାଳମୂର୍ତ୍ତି ହୋଇ।
ପର ଉପକାରେ ଜନ୍ମି ଅଛନ୍ତି ପୃଥ୍ୱୀକି
ଅସୁରବଳ ନାଶନ୍ତି ଉଚ୍ଚେ ଡାକିହାକି।
ଦେଖି ମୁରାସୁର ତାହା ସହି ନ ପାରିଲା
କୋଟିଏ ନାରାଚ ଏକାବେଳକେ ଯୋଚିଲା।
ପଢ଼ି ଧନୁର୍ବେଦ ଛାଡ଼ିଦ୍ୟନ୍ତେ ଶସ୍ତ୍ରଯାକ
ଚାହିଁଲେ ନୃସିଂହ ସ୍ୱାମୀ ଗରୁଡ଼ର ମୁଖ।
ଚାହିଁବା ମାତ୍ରକେ ଜାଣିଗଲା ପକ୍ଷୀବର
ପବନହୁଁ ଶୀଘ୍ରେ ଧାଇଁ ଧରେ ସବୁ ଶର।
ଖଗରେ ଗୁଡ଼ିଆଇଣ ଭାଙ୍ଗି ପକାଇଲା
ଖଣ୍ଡ ଖଣ୍ଡ କରି ତାହା ଧୂଳି କରିଦେଲା।
ଦେଖି ମୁରାସୁର ତାକୁ ବହୁ ପ୍ରଶଂସିଲା
ତୋହର ପରି ବଳିଷ୍ଠ ନାହିଁ କେ ବୋଇଲା।
ବୋଇଲା ଧନ୍ୟରେ ପକ୍ଷୀ ତୋର କେଡ଼େପିଣ୍ଡ
ସବୁ ଶସ୍ତ୍ରଯାକ ମୋର କଲୁ ଖଣ୍ଡ ଖଣ୍ଡ।
ଏତେ ବୋଲି ନିଜ କରେ ବଜ୍ର ଶକ୍ତି ଧରି
ଗରୁଡ଼ ମଥାରେ ଆଣି ଦିଅନ୍ତେ ପ୍ରହାରି।
ଦେଖିଣ ଗରୁଡ଼ ତାହା ଡେଇଁ ପଳାଇଲା
ସେ ବଜ୍ରଶକତି ପଡ଼ି ଭୂମି ବିନ୍ଧହେଲା।
କୋପ କରିଣ ଗରୁଡ଼ ପୁଣି ଗଲା ଧାଇଁ
ରଥରେ ବସି ତାହାକୁ ହୋଇଲା ଖତାଇ।

ତାହା ଦେଖିଣ ମୁରର କମ୍ପଇ ଶରୀର
ବୋଇଲା ଏଥର ନିଶ୍ଚେଁ ମଲୁ ଖଗେଶ୍ୱର।
ଏତେ ବୋଲି ବ୍ରହ୍ମଶକ୍ତି ଧରୁ କରେ ନେଇ
ଝମ୍ପିଣ ହସ୍ତରୁ ଶର ନେଲାକ ଛଡ଼ାଇ।
ବେନିଖଣ୍ଡ କରିଣ ସେ ଭାଙ୍ଗି ପକାଇଲା
ନାରାଚେ ମାରି ମୋତେ ତୁ ନ ପାରୁ ବୋଇଲା।
ଯେ ନୃସିଂହ ପ୍ରଭୁ ସଙ୍ଗେ ଆସିଛୁ ତୁ ଯୁଝି
ସେ ନୃସିଂହ ମୋ ପିଠିରେ ବସେ ହୋଇ ରାଜି।
ସୃଷ୍ଟିକର୍ତ୍ତା ପ୍ରଭୁଙ୍କର ପାଦପଦ୍ମ ଲାଗି
ତେଣୁ ମୋର ବଜ୍ରଅଙ୍ଗ ହୋଇଛି ସୌଭାଗୀ।
ଯାବତ ଶରେ ମାରି ନ ପାରୁ ମୋତେ ତୁହି
ଏକା ଡିଆଁ ଗୋଟାକେ ମୁଁ ଶୂନ୍ୟେ ଥିବି ରହି।
ଏଥର ମୋ କରାମତ ଦେଖ କି କରିବି
ସମୁଦ୍ରକୁ ବୋଲି ତୋର ରଥ ଫିଙ୍ଗିଦେବି।
ଏତେ ବୋଲି ଖଗେଶ୍ୱର ରଥକୁ ଧରନ୍ତେ
ଉଠାଇ ନ ପାରି ପେଲିଦେଲା ଭଡାସାତେ।
ଘିଡ଼ି ଘିଡ଼ି ହୋଇଣ ଯେ ପହଣ୍ଡେକ ଗଲା
ଲଜ୍ଜାପାଇ ମୁରାସୁର ମନେ କୋପ କଲା।
ସାରଥିକି ବୋଇଲା ହୋ ବାହା ବେଗେ ରଥ
ପକ୍ଷୀ ଛାର ବଳେ ମୋତେ ହେବ କି ସମର୍ଥ।
ସହସ୍ରେ ଗୁଳି ମୋହର ରଥେ ଲାଗିବାରୁ
ତେଣୁ ରଥକୁ ତଡ଼ାଇ ଦେଲା ଖଣ୍ଡେଦୂରୁ।
ଶୁଣିଣ ସାରଥି ଛାଟ ଉଞ୍ଚାଇ ଅଶ୍ୱକୁ
ଲେଉଟାଇ ରଥଗୋଟି ବାହିଲା ଯୁଦ୍ଧକୁ।
ଦେଖିକରି ବୈନତେୟ ପୁଣି ଗଲା ଧାଇଁ
ବିଜୟା ରଥକୁ ପେଲେ ମସ୍ତକ ଲଗାଇ।
ଘିଡ଼ି ଘିଡ଼ି ହୋଇ ରଥ ଯୁଣେ ଘୁଞ୍ଚିଗଲା
ତାହା ଦେଖି ମୁରାସୁର ଆଚମ୍ଭିତ ହେଲା।
ବୋଇଲା ପକ୍ଷୀ ହୋଇଣ ଟେକିଲା ମୋ ରଥ
ଯହିଁ ସସ୍ର ଗୁଳି ଲାଗିଅଛି ବଜ୍ର କାନ୍ଥ।
ଯେତେ ପାଞ୍ଚିବି ବିସ୍ତାରେ ଉଭା ତେତେହେବ
ମାପିଲେ ସହସ୍ର ଯୁଣ ଅଟେ ତାର ଗର୍ଭ।
ପ୍ରତ୍ୟକ୍ଷେ ଦେବଯାନ ସେ ଯାଙ୍କୁ ଅଛି ଜନ୍ମି
ତେତିଶକୋଟି ଦେବତା ଅଛନ୍ତି ବିଶ୍ରାମି।
ସୁଧର୍ମା ସଭାରୁ ସେହି ସସ୍ରଗୁଣେ ଉଚ୍ଚ
ପୃଥ୍ୱୀ ତେଜ ଆପ ବାୟୁ ବସନ୍ତି ଏ ପାଞ୍ଚ।
ତୁଳାରୁ ଉଶ୍ୱାସ ମେରୁଠାରୁ ଅଟେ ଗରୁ
ମନରେ ଯେତେ କଳ୍ପିବ ଚଳେ ତେତେଦୂରୁ।
ବିଧାତାର ସର୍ଜିଲା ଏ ଅଟେ ରଥବର
ଦେଖି ତାକୁ ପେଲିଦେଲା ତାର୍କ୍ଷ୍ୟ ପକ୍ଷୀ ଛାର।

ଏତେ ବୋଲିସାରଥିକି ବୋଲେ ବାହା ବେଗେ
ଗଲେ ଖଗେଶ୍ୱରଙ୍କୁ ଯେ ମାରିବା ଏ ଲାଗେ।
ରାଜା ଆଜ୍ଞାରେ ସାରଥି ରଥ ନେଲା ବାହି
ସମର ଭୂମିରେ ବେଳେ ଉଭାକଲା ନେଇ।
ନୃସିଂହଗଣ ବେଢ଼ିଲେ ସେ ରଥକୁ ଆସି
ଦେଖିକରି ମୁରାସୁର ମନେ ବଡ଼ ହସି।
ବୋଇଲା କିସ ହୋଇବ ମାଇଲେ ଏହାଙ୍କୁ
ବରତନ ଖାଇ ସେବିଛନ୍ତି ନୃସିଂହଙ୍କୁ।
ମୁହିଁ ବର୍ତ୍ତନ ଦେଲେ ସେ ମୋତେ ଆଉଜିବେ
ଯାଙ୍କୁ ଧଇଲେ ଧର୍ମ ନ ଗଛେ ମୋତେ କେବେ।
ବେଦଶାସ୍ତ୍ର ସ୍ମୃତିଶାସ୍ତ୍ର ପଢ଼ିବା ବିପ୍ରଙ୍କୁ
ଯେ ମାରେ ଧର୍ମ ପ୍ରାପତ ନୁହଇ ତାହାକୁ।
ଶତେ ପୁରୁଷ ଯାଏ ତା ନର୍କରେ ପଡ଼ନ୍ତି
ବ୍ରାହ୍ମଣଙ୍କୁ ମାଇଲେ ଏରୂପେ ଦୋଷ ପାନ୍ତି।
ଗରୁଡ଼ ଦେଖିଲେ ଆଗ ମାରିବଇଁ ମୁହିଁ
ତେବେ ପାସୋରିବି ମୋର ପୁତ୍ର ନାତି ଭାଇ।
ବ୍ରହ୍ମାଭଳି ଲୋକଙ୍କୁଟି ମାଇଲେ ବ୍ରହ୍ମାସ୍ତ୍ର
ତେବେ ତାହାଙ୍କୁ ଧର୍ମ ଯେ ଅଛଇ ଜଗତ।
ସାନଲୋକଙ୍କୁ ଯେ ବ୍ରହ୍ମଶସ୍ତ୍ର ମାରେ ନେଇ
ତାହାଙ୍କୁ ଯେ ଲୋକେ ନିନ୍ଦା କରନ୍ତି ସଦାହିଁ।
ଏ ବ୍ରାହ୍ମଣଙ୍କୁ ମାଇଲେ ହେବ କି ମୋ ଯଶ
କାହିଁଗଲା ପକ୍ଷୀ ବୋଲି ଲୋଡ଼େ ଦଶଦିଶ।
ଏଥୁଅନନ୍ତରେ ପୁଣି ବିନତା କୁମର
ଗେଲେ ଗେଲେ ଶୂନ୍ୟ ଖସି ଆସେ ଧୀରଧୀର।
ମୁରାସୁରର ଆଗରେ ଆସି ଦେଖାଗଲା
ତୁ ପରା ଉର୍ବଶୀପୁଅ ବୋଲି ପଚାରିଲା।
ମୁର ବୋଇଲା ପକ୍ଷି ରେ ଏଥର ସମ୍ଭାଳ
ଏକଘନୀ ଶରେ ତୋର ପୂରାଇବି କାଳ।
ଏ ବ୍ରହ୍ମଶସ୍ତ୍ରକୁ ଯେବେ ମେଣ୍ଟିଣ ପାରିବୁ
ସବୁ କାଳକୁ ଅମର ତୁହି ହୋଇଥିବୁ।
ତୁ ଏଡ଼େ ଭଳି ବୋଲି ନ ଥିଲି ମୁହିଁ ଜାଣି
ତେଣୁ ଏ ବ୍ରହ୍ମାସ୍ତ୍ର ମାରୁଅଛି ତୋତେ ଆଣି।
ନିତାନ୍ତ ଲୋକକୁ ଯେ ଏ ଶସ୍ତ୍ର ମାରଇଟି
ତାଠାରୁ ପାପୀ ହୋଇ କେ ନାହିଁ ନବସୃଷ୍ଟି।
ସାରୁପତ୍ରକୁ ବିନ୍ଧିବ ଯେହ୍ନେ ଶରକାଣ୍ଡ
ଏତେକେ ତା କ୍ଷତ୍ରି ପଣ ଚିହ୍ନନ୍ତି ବ୍ରହ୍ମାଣ୍ଡ।
ଏତେ ବୋଲି ମୁରାସୁର ମନେ ବଡ଼ ପାଞ୍ଚି
ତୂଣୁ ଶର କାଢ଼ି ଧନୁ ମଧ୍ୟେ ଦେଲା ଯୋଚି।
ସୂର୍ଯ୍ୟ ଶତଗୁଣ ବଳି ଦେଖି ଶର ଜ୍ୟୋତି
ଗରୁଡ଼ ଅତ୍ୟନ୍ତ କୋପେ ହେଲା ବିଶ୍ୱମୂର୍ତ୍ତି।

ଧନୁ ମଧ୍ୟୁଁ ଶରଗୋଟି ଶୂନ୍ୟେ ଆସୁ ଆସୁ
ଏକା ନିଃଶ୍ୱାସକେ ଧାଇଁ ଧରିଲା ଆକାଶୁଁ।
ବେନିଖଣ୍ଡ କରି ତାକୁ ଭାଙ୍ଗି ପକାଇଲା
ଦେଖି ମୁରାସୁର ତାହା ଆଚମ୍ଭିତ ହେଲା।
ବୋଇଲା ରେ ଧନ୍ୟ ପକ୍ଷି ଧନ୍ୟ ତୋ ଜୀବନ
ତୁ ନ ଥିଲେ ନୃସିଂହ କି ଜିଣନ୍ତା ମୋ ସୈନ୍ୟ।
ତେଡ଼େକ ହେବାରୁ ମୋର ପୁତ୍ରେ ଗଲୁ ମାରି
ଧନ୍ୟ ତୋର ଜନକ ରେ ଧନ୍ୟ ଗର୍ଭଧାରୀ।
ନୃସିଂହ ପ୍ରଭୁ ମାରିବେ ମୋତେ ନିଷ୍ଟେ ଜାଣ
ଏବେ ଚିହ୍ନିଲି ପ୍ରତ୍ୟକ୍ଷେ ଅଟେ ନାରାୟଣ।
ନାରାୟଣ ବୋଲି ଯେବେ ରଣ ନ କରିବି
ଅନ୍ୟ ସଙ୍ଗେ ଲାଗି ମଲେ ଅମୋକ୍ଷ ଯେ ହେବି।
ହରି ମୋତେ ମାରିବେ କି ମୁଁ ବା ମାରିବିଟି
ମୁଁ ମଲେ ହେଲେ କୀର୍ତ୍ତିଟି ରହିବ ଏ ସୃଷ୍ଟି।
ଚାରିଯୁଗଯାଏ ଜାଣ କୀର୍ତ୍ତି ରଖିଯିବି
ମରିଲେ ମରିବି ପଛେ ବିଷ୍ଣୁ ନ ଛାଡ଼ିବି।
ନୃସିଂହ ତ ଅମର ସେ କେବେ ମରିବେ କି
ମୋତେ ତ ଅମର ବର ଦେଇଛି ପିନାକି।
ଏ କଥା ସଂସାରଯାକ ସମସ୍ତେ ଜାଣନ୍ତି
ମୁର ଅମର ବୋଲିଣ ଭୟ କରୁଥାନ୍ତି।
ମୋଠାରୁ କ୍ଷତ୍ରିବର କେ ବ୍ରହ୍ମାଣ୍ଡରେ ନାହିଁ
ଜାଣିବି ନୃସିଂହ କେଡ଼େ କ୍ଷତ୍ରୀ ଆଜ ମୁହିଁ।
ଏତେ ବୋଲି ଧନୁହୁଳେ ଗୁଣ ଚଢ଼ାଇଲା
ଅଙ୍ଗୁଳି ମୂଳେ କଷିଣ ମୋଡ଼ା ବସାଇଲା।
ବାହେ ବାଜୁବନ୍ଧ କଟିତଟେ ସୁନାସୂତା
ଶିରେ ପାଗ ବାନ୍ଧି କନ୍ଧେ ଛନ୍ଦିଲା ପଇତା।
ତୂଣୀମଧ୍ୟେ ଶରଯାକ ରଖି ଖଞ୍ଜାକରି
ପୂର୍ବକାଳେ ଯାହା ଦେଇଥିଲେ ମୁଖଚାରି।
ମସ୍ତକରେ ପାଟଶାଢ଼ୀ ବାନ୍ଧିବାରବେଳେ
ଯାବତ ନାରାଚ ଦେଇଥିଲେ ପିତା ବଳେ।
ମୁର ବୋଇଲା ମୁଁ ଚିନ୍ତୁଥିଲେ ମିଳୁଥିବ
ଏହି ଆଜ୍ଞା ହେଉ ବୋଲି ବୋଇଲା ଦାନବ।
ଏହା ଶୁଣି ପିତାମହ ବୋଲେ ତଥାଅସ୍ତୁ
ସେ କଥା ଘେନିଲା ମୁରାସୁର କରି ତତ୍ତ୍ୱ।
ଏବେ ସେ ନାରାଚଯାକ ଚିନ୍ତିଲା ମାତ୍ରକେ
ବିଜୟା ରଥେ ରହିଲେ ଆସି ତୂଣୀଯାକେ।
ନାରାଚଯାକ ରଥରେ ଦେଖି ମୁରାସୁର
ହସ ହସ ହୋଇକରି ଧରେ ଧନୁଶର।
ସାରଥିକୁ ବୋଇଲା ରେ ରଥ ମୋର ବାହା
ନୃସିଂହ ଛାମୁରେ ମୋତେ କର ନେଇ ଠିଆ।
ଆନ ତୁଳେ ଯୁଦ୍ଧ ମୋର ଆଉ ନାହିଁ ଲୋଡ଼ା
ଦେଖିବି କେଡ଼େ କ୍ଷତ୍ରୀ ସେ ନୃସିଂହ ବାପୁଡ଼ା।
ଶୁଣିଣ ସାରଥି ରଥ ବାହି ଘନ ଘନ
ମନାଇ ବୋଲି କରିଣ ଅଟେ ନିଜ ନାମ।
ସେ ବୋଇଲା ମୁରଲାଗି ଭାଗ୍ୟ ମୋର ହେଲା
ପ୍ରଭୁଙ୍କୁ ଦର୍ଶନ କରି ମରିବି ମୁଁ ଭଲା।
ଏତେ ବୋଲିଣ ରଥକୁ ଟେକି ଆକାଶରେ
ଦେଖିଲା ନନ୍ଦିଘୋଷରେ ଅଛନ୍ତି ଠାକୁରେ।
ଜଗୁଡ଼ ଯେ ଶେଷଦେବ କର୍ଣ୍ଣାଟେଶ ରାଜା
ସୁଜାଣ ମନ୍ତ୍ରୀ ବଜାଏ ଆଗେ ବୀରବାଜା।
ଦେବମନ୍ତ୍ରୀ ମାତଳି ଯେ ବାହୁଅଛି ରଥ
ଶଙ୍ଖ ଚକ୍ର ଗଦା ପଦ୍ମେ ବିଜେ ଜଗନ୍ନାଥ।
ଯେହୁ ଜଗନ୍ନାଥ ମୂର୍ତ୍ତି କୃଷ୍ଣମୂର୍ତ୍ତି ସେହି
ନୃସିଂହ ଅବତାର ସେ ସବୁ ଏକାଦେହୀ।
ଶ୍ରୀନୃସିଂହଗଣ ପୂରିଅଛନ୍ତି ଚୌପାଶେ
ଶଙ୍ଖ ଚକ୍ର ଗଦା ପଦ୍ମ ସର୍ବକରେ ଦିଶେ।
ଯେ ନୃସିଂହଗଣ ସେହୁ ପ୍ରତ୍ୟକ୍ଷେ ନୃସିଂହ
ତେଣୁ ଶଙ୍ଖ ଚକ୍ର ଗଦା ଦିଶେ ସର୍ବଅଙ୍ଗ।
ଏରୂପେ ନୃସିଂହ ମୂର୍ତ୍ତି ଦେଖି ମୁରାସୁର
ମନେ ପାଞ୍ଚେ କେମନ୍ତେ ଏ ଅଟେ ଅବତାର।
ଗୋଟିଏ ନୃସିଂହ ବୋଲି ମୁହିଁ ଜାଣିଥିଲି
ଏତେ ବିଷ୍ଣୁଗଣ କାହୁଁ ଜନ୍ମିଲେ ଦେଖିଲି।
ପୁନର୍ପି ସାରଥିକୁ ପୁଚ୍ଛେ ମୁରାସୁର
ନିଜ ମୂର୍ତ୍ତି ନୃସିଂହ କେ କହ ମୋତେ ସାର।
ସାରଥି ବୋଇଲା ତେବେ ଦେଖାଉଛି ଦେଖ
ନନ୍ଦିଘୋଷ ରଥେ ବସିଛନ୍ତି ପଦ୍ମମୁଖ।
ନିଜେ ଶ୍ରୀ ନୃସିଂହ ପ୍ରଭୁ ଅଟନ୍ତି ଯେ ଏକା
ସ୍ୱର୍ଗର ମାତଳି ଆସି ହୋଇଅଛି ସଖା।
ଅନୁଜ ଭାଇ ତାଙ୍କର ଶେଷଦେବ ଦେଖ
ଦେବତାଙ୍କ ରଥେ ବସିଛନ୍ତି ରହି ପାଖ।
ତହିଁ ପାଖରେ ଗରୁଡ଼ ରହିଛି ଉଭାରି
କଶ୍ୟପ ଋଷି ପୁତ୍ର ସେ ଅଟେ ବ୍ରହ୍ମଚାରୀ।
କର୍ଣ୍ଣାଟେଶ୍ୱର ବୋଲିଣ ଅଟେ ଯେଉଁ ରାଜା
ନୃସିଂହେ ଶରଣ ପଶିଅଛି କରି ପୂଜା।
କନକାବତୀ ପୁରରେ ରାଜା ହେବ ବୋଲି
କେତେକାଳ ପ୍ରଭୁଙ୍କର ସଙ୍ଗେ ଅଛି ବୁଲି।
ଦେବ ଯେକାଳେ ଘେନିଲ ତୁମ୍ଭେ ରାଜଶାଢ଼ୀ
ବସିଲ କନକାବତୀ ନଗ୍ର ଯାଇ ମାଡ଼ି।
ସେହି ଦିନରୁ ଏ ରାଜା ନୃସିଂହଙ୍କୁ ସେବି
ନୃସିଂହଙ୍କ ପାଶେ ଅଛି ଯୁଦ୍ଧକୁ ଆହବି।

ତହିଁର ପାଶେ ସୁଜାଣ ମନ୍ତ୍ରୀ ଅଛି ଜାଣ
ବଦ୍ରିକା ନଗର ଏହି ଅଟେ ମନ୍ତ୍ରୀ ପୁଣ।
ନୃସିଂହ ପ୍ରଭୁଙ୍କର ଏ ଅଟେ ମହାମନ୍ତ୍ରୀ
ଯାବତ ନ୍ୟାୟ କରିଣ କହେ କଥା ଯନ୍ତ୍ରି।
ନୀଚଲୋକର କଥାକୁ କରେ ଆଗେ ନ୍ୟାୟେ
ଏହି ରୂପେ ବୁଝାମଣା କରଇ ସଦାଏ।
ସମବରଶୀତାପଣ ସବୁ ଲୋକେ କରେ
ଏହାର ପରାୟେ କେହି ନାହିଁ ତିନିପୁରେ।
ନୃସିଂହଗଣଙ୍କୁ ଏହି ଦ୍ୱିଜ ବୋଲି ବୋଲୁ
ସମସ୍ତେ ଜନ୍ମିବେ ବିଷ୍ଣୁ ଅଂଶୁ ମାୟାଜାଲୁ।
ଏହା ଶୁଣି ମୁରାସୁର ରହେ କ୍ଷଣେ ଚାହିଁ
ବୋଇଲା ଏହାଙ୍କ ତୁଲେ ଯୁଦ୍ଧ ମୋର ନାହିଁ।
ଅଶ୍ୱ ବା ମରନ୍ତୁ ମୋର ସୈନ୍ୟ ବା ମରନ୍ତୁ
ନୃସିଂହ ସଙ୍ଗେ ଯୁଦ୍ଧ ମୋ ଅଛି ଏକା ହେତୁ।
ଆନକୁ ମାଇଲେ ମୋର ନ ହୋଇବ ତୋଷ
ନୃସିଂହେ ଦେଖିଲି ମୁହିଁ ମାରିବି ଅବଶ୍ୟ।
ଏରୂପରେ ବଚନ ସେ ରାଜାମୁଖୁ ଶୁଣି
ବାହିଲା ସ୍ୟନ୍ଦନ ଗୋଟି ଶୂନ୍ୟମାର୍ଗେ ଆଣି।
ଶ୍ରୀନନ୍ଦିଘୋଷ ପାଶରେ ନେଇ ଉଭାକଲା
ଶ୍ରୀନୃସିଂହ ଏହି ବୋଲି ଚିହ୍ନାଇଣ ଦେଲା।
ଦେଖିକରି ମୁରାସୁର ଚାହିଁ ଖଣ୍ଡେଦୂରୁଁ
ବୋଇଲା ତୁ ପରା ହେଲୁ ମୋ ପୁତ୍ରଙ୍କ ଗୁରୁ।
ସତର ଲକ୍ଷ କୁମର ନବଲକ୍ଷ ନାତି
ଏହାଙ୍କୁ ମାଇଲୁ ତୁହି ହୋଇ ଗୁରୁମୂର୍ତ୍ତି।
ପ୍ରଥମୁଁ ଅବିଶ୍ୱାସୀ ମୋ ହେଲୁ ଘରେ ଯାଇ
ବଳାଗଣଙ୍କୁ ବିନାଶି ହେଲୁ ବାଳଦ୍ରୋହୀ।
ପ୍ରତି ବାଳକେ ଅଟନ୍ତି ବଳେ ଇନ୍ଦ୍ରସରି
ଧନୁ ଧରିଥିଲେ ତାଙ୍କୁ ପାରନ୍ତା କେ ମାରି।
ବ୍ରହ୍ମଶକ୍ତି ବ୍ରହ୍ମଶର ଧରିଥାନ୍ତେ ଯେବେ
ବ୍ରହ୍ମାଶିବ ହେଲେ ଭାଜିଯାନ୍ତେ ଆଗୁ ସର୍ବେ।
ଆଦ୍ୟେ ଗୁରୁ ହୁଜେ ବିଷ୍ଣୁ ଅଟୁ ପରା ପ୍ରଭୁ
ଏଡ଼େ ଲୋକ ହୋଇ ବାଳହତ୍ୟା କଲୁ ସବୁ।
ତୋଠାରୁ ଅଧର୍ମୀହୋଇ ସଂସାରେ କେ ନାହିଁ
ଶୁଣି ନୃସିଂହ ହସନ୍ତି ମନେ ତୁନି ହୋଇ।
ମନେ ପାଞ୍ଚିଲେ ହୁଡ଼ି ନ ବୋଲେ କିସ ମୂର୍ଖ
ନ ଚିହ୍ନେ ଶ୍ୱାନ ଯେସନେ ବୃନ୍ଦାବତୀ ବୃକ୍ଷ।
ତହିଁ ଉପରେ ଚଢ଼ିଣ ପରିସ୍ରା କରଇ
ସେହିରୂପେ ମୁରର ତ ପ୍ରକୃତି ଅଟଇ।
ଏତେ ବୋଲି ମନ ମଧ୍ୟେ ଚିନ୍ତି ନାରାୟଣ
ବୋଇଲେ ପଦେ କହିବା ତୋତେ ଏବେଶୁଣ

ପୂର୍ବକାଳେ ଦିଗବିଜେ କଲୁ ପରା ତୁହି
ତୋର କଥା ଆଳେ କହୁଅଛି ସିନା ମୁହିଁ।
ତୁ ଯାଇ ଆମ୍ଭ ନଗ୍ରରେ ପଡ଼ନ୍ତେଣ ମାଡ଼ି
ତରଛି ହୋଇ ମୂର୍ଚ୍ଛାରେ ଗଲେ ମୋତେ ଛାଡ଼ି।
ଅଢ଼ାଇ ବର୍ଷର ପୁତ୍ର ମୁହିଁ ଥିଲି ହୋଇ
ପଲ୍ୟଙ୍କ ପରେ ଥିଲଇଁ ଅଚିନ୍ତାରେ ଶୋଇ।
ତୁ ପୁଣି ମୋତେ ଧରିଣ ଶୂନ୍ୟେ ଗଲୁ ଉଡ଼ି
ଶୂନ୍ୟେ ଟେକି ପୁଣି ଦେଲୁ ଭୂମିରେ କଚାଡ଼ି।
ବୁଝିଲେ ମୁଁ ବାଳକ ନ ଥିଲି କିହୋ ହୋଇ
ତୁ ବୋଲି କହୁ ଏହା ମୋ ଦେହ ସହୁ ନାହିଁ।
ତୋର ପୁତ୍ରେ ବାଳକ କି ମୁଁ ଥିଲି ବାଳକ
ଏ କଥା ନ ବୁଝି କହୁଅଛୁ ଅବିବେକ।
କେ ଶହେ ବରଷ କେହୁ ସତୁରି ବରଷ
ଏରୂପେ ଭୋଗକରି ତୋ ପୋଏ ଗଲେ ନାଶ।
ଅଢ଼ାଇ ବର୍ଷର ପୁତ୍ର ହୋଇଥିଲି ମୁହିଁ
ମୋତେ ଧରି ଛେଚିଲୁ ତୁ ଭୂମିରେ ପକାଇ।
କେଉଁ ଭାଗ୍ୟରୁ ତହିଁରୁ ରହିଲି ମୁଁ ବଞ୍ଚି
ତରଛି ହୋଇ ତୋହର ହାତୁଁ ଗଲି ଖସି।
ଭୟ କରି ତୋତେ ମୁଁ ନ ଗଲି ଆନଦେଶେ
ନଗର ଭିତରେ ଲୁଚି ରହିଲଇଁ କ୍ଳେଶେ।
ତେବେହେଁଖୋଜିଲୁ ତୁହି ମୋତେନଗ୍ରେଯାଇ
ନ ପାଇ ପୁର ପୋଡ଼ିଲୁ ତୁହି ଜଗି ରହି।
ତେବେ ପୁଣି ଯାଇ ମୋହର ରାଜ୍ୟେ ବାହୁଡ଼ିଲୁ
ଏରୂପେ ଆଗହୁଁ ତୁହି ଦୋଷୀ ହୋଇଥିଲୁ।
ଯତ୍ର କ୍ରରମ କୁରୁତେ ତତ୍କର୍ମ ଭୁଂକ୍ତେ
ଏରୂପେ ସଂସାର ବେଦ ଡାକୁଛି ନିରତେ।
ପରର ଦ୍ରବ୍ୟକୁ ଚୋରି କରନ୍ତି ଯେ ଲୋକେ
ତାହାରଟି ଦ୍ରବ୍ୟ ଚୋରି ହୁଏ ବେଦବାକ୍ୟେ।
ପରର ଭାରିଯାକୁଟି ହରନ୍ତି ଯେ ବଳେ
ତାହାର ପତ୍ନୀକୁ ଆନ ହରେ ଯଥାକାଳେ।
ପରର ଦୁହିତାକୁ ଯେ କରେ ମଇଥୁନ
ତାହାର ଦୁହିତାକୁଟି ହରେ ଆନ ଜନ।
ପରକୁ ମାଡ଼ ଯେହୁଟି ମାରେ ବଡ଼ପଣେ
ତାହାକୁ କାଳରେ ମାଡ଼ ହୁଏ ଅକାରଣେ।
ଏ କଥାମାନ ହେଜି ନ ପାରେ କେହି ଜାଣ
ତୁହି ଏବେ ମରୁଅଛୁ ବହି ବଡ଼ପଣ।
ତୋହର ହିଂସା କୂଟ ଯେ ତୋତେ ଅଛି ଜଗି
ତୋହ ଇଚ୍ଛାରେ ଆସିଛୁ ମୋତେ ମୃତ୍ୟୁ ମାଗି।
ଆମ୍ଭର ଇଚ୍ଛାରେ ଆମ୍ଭେ ସୁଖେ ରାଜ୍ୟେ ଅଛୁ
ତୋ ମୂର୍ଖପଣରୁ ଆମ୍ଭେ ତୋତେ ଯେ ଜଗିଛୁଁ।

ତୋହଠାରୁ ଗଜମୂର୍ଖ ସଂସାରେ କେ ଅଛି
ବିଧାତା ବୀର୍ଯ୍ୟରୁ ଜନ୍ମି ନ ଜାଣିଲୁ କିଛି।
ବିଧାତା ବାପ ତୋହର ଏବେ ରଖିବ କି
ସନ୍ନିପାତ ମଲୁ ପ୍ରାୟ ହେଉଛୁ କାହିଁକି।
ମୁରାସୁର ବୋଇଲା ଯେ ଏତେ ଗଲୁ କହି
ମୋ ଦେହକେ ପରଦାରା କେବେ ହରି ନାହିଁ।
ପରଦ୍ରବ୍ୟ ଚୋରି ମୁହିଁ କରି ନାହିଁ କେବେ
ତେଣୁ ଯେ ଅମର ବର ଦେଲେ ସଦାଶିବେ।
ବୋଇଲେ ଅକ୍ଷୟବର ପାଇଲୁ ଯେ ତୁହି
ଜଳ ସ୍ଥଳ ଅନଳରେ କାହିଁ ଭୟ ନାହିଁ।
ବ୍ରହ୍ମା ବିଷ୍ଣୁ ହର ହେଲେ ନ ପାରିବେ ମାରି
ବ୍ରହ୍ମପ୍ରଳୟ ଯାଏ ତୁ ଥିବୁ ଦେହ ଧରି।
ଆମ୍ଭାରୁ ଶରୀର ଧରି ସଂସାରେ ଯେ ଥିବେ
ଏହାଙ୍କ ହସ୍ତରେ ତୁହି ନ ମରିବୁ କେବେ।
ଯେବଣ ଲୋକ ହସ୍ତରେ ମରିବୁଟି ତୁହି
ସେ କଥାଟି ଗୁପ୍ତ କରିଥିବା ତୋତେ କହି।
ସେ କଥାକୁ ଶୁଣି ମୁହିଁ ବିଚାରଇ ଚିତ୍ତେ
ବୋଇଲି ଅପାର କାଳ କଥା ଏ ଜଗତେ।
ପାଞ୍ଚିଲି ନରବିଷ୍ଣୁ ନ ପାରେ ମୋତେ ମାରି
ତେଣୁ ମୁଁ ତୋତେ ଜାଣି ନ ଥାଇକେବେଡରି।
ମାନବବିଷ୍ଣୁ ପରା ତୁ ଅଟୁ ଭାବଗ୍ରାହୀ
ନ ପାରିବୁ ଯୁଦ୍ଧେ ଜିଣି ମୋତେ କେବେ ତୁହି।
ଏହା ଶୁଣି ନାରାୟଣ ମନେ ଅଳ୍ପ ହସି
ବୋଇଲେ କହିଲା ଭଲା ବର ମୋତେ ଆସି।
ବରର କଥା କହିତ ଗୁପ୍ତ ନ କହିଲା
ସେ ଗୁପ୍ତ କଥାଯାକ ତ ମୋତେ ଜଣାଗଲା।
ଏହି ଦୈତ୍ୟକୁ ଅବଶ୍ୟ ମାରିବି ଯେ ମୁହିଁ
ପ୍ରଳୟଯାଏ ରହିବ ଶୁଣି ଦେହ ବହି।
ଆମ୍ଭେ ତ ସଂସାରେ ପୁଣି ଅବତାର ହେଉ
ଦେହ ରଖି ନ ପାରି ବୈକୁଣ୍ଠେ ଯାଉଥାଉଁ।
ପ୍ରାଣୀମାନଙ୍କୁ ବିଧାତା ପୁଣି ଅଛି ସର୍ଜି
ଶତେକ ଉପରେ ଆଠବର୍ଷ ଅଛି ଖଞ୍ଜି।
ସେ ପୁଣି ପାପ ଅର୍ଜିଣ ଅଳ୍ପେ ନାଶ ଯାନ୍ତି
ଷାଠିଏ ବର୍ଷ ଭିତରେ ସର୍ବେ ମରୁଥାନ୍ତି।
ଶତବର୍ଷ ପୂର୍ଣ୍ଣ କରି ନ ପାରନ୍ତି କେହି
ଏ ବୋଲୁଛି ପ୍ରଳେଯାଏ ଥିବି ଦେହ ବହି।
ଏ ରୂପରେ ଉଚ୍ଚବାଚ ହୋଇଣ ନୃସିଂହ
ଦୈତ୍ୟକୁ ଦିଶିଲେ କାଳମୂର୍ତ୍ତି କରି ଅଙ୍ଗ।
ତା ଦେଖିଣ ମୁରାସୁର ଆଗୁଁ ଟିକେ ଘୁଞ୍ଚି
କରରେ ଧରିଣ ଧନୁ ଶର ଦେଲା ଯୋଚି।

ଧନୁର୍ବେଦ ପଢ଼ି ମନ୍ତ୍ର ମନେ ମନେ ଘୋଷି
ଲକ୍ଷେକ ନାରାଚ ଏକାବେଳେ ଦେଲା ପେଷି।
ଦେଖିଣ ନୃସିଂହ ତାହା ତୀକ୍ଷ୍ଣ ଶରେ ଛେଦି
ପୁଣିହିଁ ଲକ୍ଷେ ନାରାଚ ମୁରାସୁର ବିନ୍ଧି।
ତହିଁକି ଯେ ପ୍ରତିଅସ୍ତ୍ର କରି ଭାବଗ୍ରାହୀ
ଖଣ୍ଡ ଖଣ୍ଡ କରି ଛେଦି ପକାଇଲେ ମହୀ।
କୁବେରାଶର ପେଷିଲା ପୁଣି ମୁରାସୁର
ବାୟୁଶର ପେଷି ଛେଦିଦେଲେ ଚକ୍ରଧର।
ନୃସିଂହ ପାଶେ କର୍ଣ୍ଣାଟେଶ୍ୱର ରାଜା ଥିଲେ
ମୁରକୁ ରଥରେ ଦେଖି ଶର ବୃଷ୍ଟି କଲେ।
କର୍ଣ୍ଣାଟେଶ୍ୱରକୁ ମୁର ଦେଖି କୋପ କଲା
ବୋଇଲା ଯମ ତୋହର ଏବେ ପ୍ରାଣ ନେଲା।
ପଶିଲୁ କୃଷ୍ଣବଲ୍ଲଭ ଘରେ ଆସି ଗୋଡି
ନୃସିଂହକୁ ସେବି ରହିଅଛୁ ଦିବାରାତି।
ମୋତେ ମାରି ତୋତେ ରାଜା କରିବେକ ସେହୁ
ଭଲ ଏ କଥା ସଂସାରେ ତେବେ ଜଣାଯାଉ।
ମୋହର ସମ୍ପତ୍ତି ପୁଣି କରିବୁ ତୁ ଭୋଗ
ଏହା ଶୁଣିଲାରୁ ମୋର କମ୍ପୁଅଛି ଅଙ୍ଗ।
ନୃସିଂହ କି ରୂପେ ତୋତେ ରଖିବେ ଯେ ଆଜ
ମାରିବି ତୋତେ ତ ଆଜ ପ୍ରତିଜ୍ଞା ମୋ ବୁଝ।
ଏତେ ବୋଲି ଧନୁର୍ବେଦ ପଢ଼ି ମୁରାସୁର
ଧନୁରେ ନେଇ ଯୋଚିଣ ବିନ୍ଧେ ଲକ୍ଷେଶର।
ଏଥୁଅନନ୍ତରେ ଶ୍ରୀନୃସିଂହ ଭାବଗ୍ରାହୀ
ଗରୁଡ଼କୁ ଚାହାନ୍ତେ ସେ ଗଲା ଶୀଘ୍ର ଧାଇଁ।
ନାରାଚମାନ ଆସୁଣୁ ବାଟ ଓଗାଳିଲା
ବେନି ଖଗେ ଚୁଣ୍ଡିଆଇ ଭାଙ୍ଗି ପକାଇଲା।
ଦେଖିକରି ମୁରାସୁର ମନେ କଲା ଶଙ୍କା
ବୋଇଲା କର୍ଣ୍ଣାଟ ଆରେ ବଞ୍ଚିଲୁ ତୁ ଏକା।
ଶ୍ରୀବାବଲ ପାଶୁପତ ଅକ୍ଷୟ ନାରାଚ
ସବୁ ଶରଯାକ ବାଛି ପେଷିଥିଲୁ ଆଜ।
ବ୍ରହ୍ମା ଇନ୍ଦ୍ର ହେଲେ ପୁଣି ନ ବର୍ତ୍ତନ୍ତେ କେହି
ତୋତେ କେଡ଼େ ଦୟା କରିଅଛି ଭାବଗ୍ରାହୀ।
ନିଶ୍ଚେ ମୋ ନଗ୍ରେ କରିବେରାଜା ତୋତେହରି
ତୋ ପରା ଭାଗ୍ୟ କେ ମହୀମଧେ ନାହିଁ କରି।
କେତେ ଦ୍ରବ୍ୟ ରହିଅଛି ମୋର ଭଣ୍ଡାରରେ
ତାହା ସବୁ ଭୁଞ୍ଜିବୁ ତୁ ନୃସିଂହ କୃପାରେ।
ଯେତେ ନାରାଚ ବିନ୍ଧି ମୁଁ ଥିଲି ଆଜ ତୋତେ
ତହୁଁ ବଞ୍ଚିଲୁ ଆଉ ନ ମରୁ କଦାଚିତେ।
ବିନ୍ଧିଲି ଯେତେକ ଶର ରଖିଲେ ତ ହରି
ହରି ରଖିଲାରୁ ଆଜ ରହିଲୁ ନ ମରି।

ଏତେ ବୋଲି ମୁରାସୁର ଧନୁ ଆମଞ୍ଚିଲା
ନୃସିଂହଙ୍କୁ ଚାହିଁ ଲକ୍ଷେ ନାରାଚ ବିନ୍ଧିଲା ।
ତୀକ୍ଷ୍ଣଶର ପେଷି ଛେଦି ଦେଲେ ଭାବଗ୍ରାହୀ
ତାହା ଦେଖି ମୁରାସୁର ମନେ କୋପ ବହି ।
ବଜ୍ର ଶକତିଏ ଧରି ପେଷିଲା ବହନ
ତାହାନ୍ତେଣ ପ୍ରଭୁ ପକ୍ଷୀ ଜାଣେ ବିଷ୍ଣୁ ମନ ।
ତ୍କ୍ଷଣେ ଅଧବାଟରୁ ପକ୍ଷ ଦେଲା ଆଡ଼ି
ବାଜି ବଜ୍ରଶକ୍ତି ପଡ଼ିଗଲା ତଳେ ଝଡ଼ି ।
ଖଣ୍ଡ ଖଣ୍ଡ ହୋଇ ବଜ୍ରଶକ୍ତି ଗଲା ଭାଙ୍ଗି
ଦେଖିକରି ମୁରାସୁର ମନୁ ଲଜ୍ଜା ତେଜି ।
କୋପକରି ମୁରାସୁର ଚାହେଁ ଦଣ୍ଡେଯାଏ
ବୋଇଲା ଧନ୍ୟରେ ପକ୍ଷୀ ତୋର ବାପ ମାଏ ।
ଜନମ ଲଭି କେ ମାତା ଦୁଧ ଖାଉ ନାହିଁ
ତୋତେ ଯେ ଜନ୍ମକଲା ସେ ବଡ଼ ପୁଣ୍ୟଦେହୀ ।
ସଂସାରଯାକ ସମସ୍ତେ ଅନ୍ନ ନ ଖାନ୍ତି କି
ତୋହପରି କାହାକୁ ମୁଁ ନଜରେ ଆଣେ କି ।
ତୁହି ଅବା କିସ ଖାଉ ମୋତେ ନାହିଁ ଜଣା
ଅନ୍ନଭୁଞ୍ଜା ଲୋକଙ୍କୁ ତୁ ନୋହୁ ପକ୍ଷି ଊଣା ।
ତୁହି ଅନ୍ନଭୁଞ୍ଜା ଲୋକ ଯେବେ ହୋଇଥାନ୍ତୁ
ଏକା କାଣ୍ଡକେ ଘଟାନ୍ତି ଆଜ ତୋର ମୃତ୍ୟୁ ।
ଶୁଣିଣ ବଇନତେୟ ଆଡ଼ଚିରା ମାରି
ବସିଲା ମୁର ଆଗରେ ବେନି ଖଗ ଡେରି ।
ବୋଇଲା ମୋର ଭୋଜନ ଶୁଣିବୁ କି ତୁହି
ଗୋବିନ୍ଦ ମକରନ୍ଦ ମୁଁ ସଦା ଭୁଞ୍ଜୁଥାଇ ।
ସେ ମକରନ୍ଦ ଚିହ୍ନି କେ ନ ପାରଇ ଭୁଞ୍ଜି
ଶାସ୍ତ୍ର ପଢ଼ି ପଢ଼ି ସର୍ବେ ହେଉଥାନ୍ତି ଗଞ୍ଜି ।
ଶାସ୍ତ୍ର ମଧ୍ୟେ ସାରସ୍ୱତ ଅଟନ୍ତି ଗୋବିନ୍ଦ
ସେ ଗୋବିନ୍ଦ ପାଦପଦ୍ମୁ ଗଳେ ମକରନ୍ଦ ।
ସେ ମକରନ୍ଦ ଭୁଞ୍ଜି ମୁଁ ଅଟେ ବଳୀୟାର
ତେଣୁ ଏହି ଦେହ ମୋର ଅଟେ ଅଜ୍ରାମର ।
ଗୋବିନ୍ଦ ପାଦପଦ୍ମଟି ଅଟେ ସୁଧାରସ
ତାହା କେ ଚିହ୍ନିଣ ଭୁଞ୍ଜି ନ ଜାଣେ ମନୁଷ୍ୟ ।
ସବୁରି ନାସା ଅଗ୍ରେ କେ ବାସନା ଘେନୁଛି
ସେ କଥାମାନ ଚିହ୍ନି ନ ଜାଣେ ପ୍ରାଣୀକିଛି ।
ଗୋବିନ୍ଦ ପାଦ ପ୍ରକାଶିଅଛି ଚକ୍ରପ୍ରାୟେ
ଶୀତଳ ମଧୁ ଧାରା ତ ନାସାରନ୍ଧ୍ରେ ବହେ ।
ସୁଗନ୍ଧ ଗନ୍ଧ ଦୁଇଟି ଘେନେ ଆତ୍ମା ଆଗ
ପ୍ରକୃତିଗଣେ ବିକାର ପଛେ ହୋନ୍ତି ବେଗ ।
ଆତ୍ମା ପୁରୁଷ ବାସନା ଆଗ ଦିଏ ଖାଇ
ପ୍ରକୃତିଗଣେ କରନ୍ତି ତାକୁ ଛିଇ ଛିଇ ।

କିସ ବାସ ତା ବୋଲିଣ ବିକାର ହୁଅନ୍ତି
ଆତ୍ମା ବାସନା ଘେନିଲି ବୋଲି ନ ବୋଲନ୍ତି ।
ବାସନା ଦୁର୍ଗନ୍ଧ ନାକେ ପଶିଲା ଉତ୍ତାରୁ
ନାସାରେ ବସନ ଦେଇ ଚାଲେ ଖଣ୍ଡେ ଦୂରୁ ।
ଭଲଙ୍କୁ ଘେନି ତେଜନ୍ତେ ପ୍ରଭୁ ଯେବେ ମନ୍ଦ
କାହିଁକି ବୋଲନ୍ତି ସେହି ଅଟେ ପୂର୍ଣ୍ଣାନନ୍ଦ ।
ତୁହି ଯେବେ ପଦ୍ମପାଦୁଁ ସୁଧା ପାଉଥାନ୍ତୁ
କାହିଁକି ମରନ୍ତୁ ତୁହି ହୋଇ ଅପମୃତ୍ୟୁ ।
ଅପମୃତ୍ୟୁରେ ମରନ୍ତି ସିନା କେତେ ଲୋକ
ଏ କଥା ଗୋଚର କରି ନ ଜାଣେ କେତେକ ।
ଅନେକ ଲୋକ ସଂସାରେ କେତେ ଯାନ୍ତି ଏଡ଼ି
କଳ୍ପ କଳ୍ପରେ କେହୁ ବା ମରନ୍ତି ବାହୁଡ଼ି ।
ତୁହି ତ ପ୍ରଳୟ ଯାଏ ଅମର ହୋଇଲୁ
ଅପମୃତ୍ୟୁ ଯୋଗୁଁ ଏବେ ମରଣ ଲୋଡ଼ିଲୁ ।
ବୁଝିଲେ ତୋହର ଏହା ନୁହଇ ଆୟତ୍ତ
ତୋତେ ମାରିବାକୁ ଜନ୍ମିଛନ୍ତି ଲକ୍ଷ୍ମୀକାନ୍ତ ।
ଯେ ଦିନ ବରୁଣ ପୁରେ ଲାଖ ବିନ୍ଧି ଗଲୁ
ଲକ୍ଷ୍ମୀକି ହରିବୁ ବୋଲି ମନେ ବିଚାରିଲୁ ।
ଜଗତ ଜନନୀ ଅଟେ ସେ ସବୁରି ମାତା
ମାତାଙ୍କୁ ହରିବୁ ବୋଲି ମନେ କଲୁ ଚିନ୍ତା ।
କମଳା ମାତାଙ୍କ ଆଗେ ମନ ପ୍ରୋଢ଼ି କଲୁ
ମୁହିଁ ବିଷ୍ଣୁ ବୋଲି ଲକ୍ଷ୍ମୀ ଛାମୁକୁ ତୁ ଗଲୁ ।
ସେହିଠାରୁ ମୃତ୍ୟୁ ତୋତେ ଘୋଟିଲାଣି ଜାଣ
ହର ବ୍ରହ୍ମା ହେଲେ ରଖି ନ ପାରେ ତୋ ପ୍ରାଣ ।
ମୁର ବୋଇଲା ତୁହି ରେ କହିଲୁ ଏ ଛାର
ଏକା ବ୍ରହ୍ମଶରକରେ ନାଶିବି ଶ୍ରୀଧର ।
ମାନବ ବିଷ୍ଣୁ ସିନା ଏ ଅଟେ ବ୍ରହ୍ମରାଶି
ଦେଖିବା ରଖିବ କେଉଁ ବାପ ତାକୁ ଆସି ।
ଶ୍ରୀଲକ୍ଷ୍ମୀକାନ୍ତ ବୋଲି ଏ କାହିଁକି ବୋଇଲୁ
ନ ଜାଣିବାପଣେ ତୁହି ଏ କଥା କହିଲୁ ।
ମୋତେ ଡରି ବିଷ୍ଣୁଦେବ ମଞ୍ଚେ ନ ଜନ୍ମିଲା
କ୍ଷୀର ବଇକୁଣ୍ଠେ ପଶି ଲୁଚିଣ ରହିଲା ।
ତୁ ବୋଲୁ ମାରିବେ ଲକ୍ଷ୍ମୀକାନ୍ତ ତୋତେବୋଲି
ଅପାର କାଳ ଏ କଥା ତୋ ଆଗେ କହିଲି ।
କୃଷ୍ଣବଲ୍ଲଭର ପୁଅ ନରବିଷ୍ଣୁ ଜାଣ
ଯାକୁ ମାଇଲା ଯାଏ ମୁଁ ହୋଇଛି ଅଜ୍ଞାନ ।
ଏ ମଲେ ମୋହର ଯିବ ମନୁ ଭୟଭ୍ରାନ୍ତି
ସେ ଠାବରୁ ହେବି ମୁହିଁ ଏକଚକ୍ରବର୍ତ୍ତୀ ।
ଏତେ ବୋଲି ମୁରାସୁର ଧନୁ ଧରି କରେ
ବିନ୍ଧିଲା ଲକ୍ଷେ ନାରାଚ ନୃସିଂହ ଉପରେ ।

ଗରୁଡ଼ ଦେଖିଣ ତାହା ସହି ନ ପାରିଲା
ବେନି ଖଣ୍ଡେ ରୁଣ୍ଡିଆଇ ଭାଙ୍ଗି ପକାଇଲା ।
ମୁରାସୁର ବୋଇଲା ରେ ଧନ୍ୟ ଧନ୍ୟ ପକ୍ଷି
ଏରୂପେ ଭୃତ୍ୟ ଥିଲେଟି ସାଆନ୍ତ ସେ ସୁଖୀ ।
ରଣସ୍ଥଳେ ସାଆନ୍ତକୁ ରଖେ ଯେ ଆବୋରି
ତାହାର ପ୍ରାୟ ଭୃତ୍ୟ ନ ମିଳେ ତିନିପୁରୀ ।
ଭରତାକୁ ସୁଲକ୍ଷଣୀ ଭାର୍ଯ୍ୟା ଯେବେ ମିଳେ
ଶୁକ୍ଳପକ୍ଷ ଚନ୍ଦ୍ର ପ୍ରାୟ ବଢ଼େ ସେ ନିରୋଳେ ।
ପିତା ଥାଉ ପୁତ୍ର ଯେବେ କୁଳଶ୍ରେଷ୍ଠ ହୁଏ
ଚନ୍ଦ୍ର ଉଦେ ପ୍ରାୟ ସୃଷ୍ଟି ମଧେ ଶୋଭାପାଏ ।
ଶାଶୁ ବଚନଟି ଯେବେ ବୋହୁ ପ୍ରତିପାଳେ
ସେ ବୋହୁ ପ୍ରାୟ ବୋହୁ ନ ମିଳେ ଭୂମଣ୍ଡଳେ
ବୋହୁକୁ ଅଦୋଷେ ଶାଶୁ ଯେବେ ଦଣ୍ଡଦିଏ
ତାଠାରୁ ପାତକୀ ସୃଷ୍ଟି ମଧେ ନାହିଁ କିଏ ।
ସଭାରେ ବସି ସତ୍ୟେ ନ କଲେ ବୁଝାମଣା
ମହାପାତକୀ ଲୋକରେ ଅଟେ ସେହି ଗଣା
ପକ୍ଷପାତ କରି ଯେହୁ ନିଶାପ କରଇ
ତାହାଠାରୁ ମୂଢ଼ ପାପୀ ସଂସାରେ କେ ନାହିଁ ।
ପଣଥିବା ଲୋକେ ଯେବେ ନୋହେ କ୍ଷମାଶୀଳ
ସଂସାରେ ସେହି ପୁରୁଷ ଅଟଇ ଚାଣ୍ଡାଳ ।
ଭୃତ୍ୟ ହୋଇଣ ଉତ୍ତର ଦିଅନ୍ତି ଯେ ଜାଣ
ସେ ଲୋକକୁ ପାଖେ କେହି ନ ବସାଏ ପୁଣ ।
ଭାରିଯା ହୋଇଣ ଯେବେ ନୁହଇ ସୁଶୀଳା
ତାହାଠାରେ ସର୍ବକର୍ମ ହୁଏ ଅଶୃଙ୍ଖଳା ।
ବ୍ରାହ୍ମଣ ହୋଇ ଶୂଦ୍ରଙ୍କୁ ସେବା ଯେବେ କରେ
ତାର ପାଣି ପିତୃଗଣେ ନ ପାନ୍ତି ଶ୍ରାଦ୍ଧରେ ।
ଯୁବତୀ ହୋଇଣ ଯେବେ ସ୍ୱାମୀକି ଲୁଚାଇ
ପର ପୁରୁଷରେ ରତି କରେ ଶ୍ରଦ୍ଧା ବହି ।
ଶତେକ ଜନ୍ମଯାଏ ସେ ଜନ୍ମେ ଶ୍ୱାନ ମତେ
ତାହାର କ୍ରୀଡ଼ା ସଂସାରେ ଦେଖନ୍ତି ସମସ୍ତେ ।
ଯେଉଁଠାରେ ବେନିଜନେ ଲାଗିଥିବ ଯୁଦ୍ଧ
ଶସ୍ତ୍ର ମରାମରି ହୋଇ କରୁଥିଲେ ସାଧ ।
ସେଠାରେ ଆଉ ଜଣକେ ଲାଗେ ଯେବେ ଆସି
ଶତେକ ଜନ୍ମଯାଏ ସେ ହୁଏ ବ୍ରହ୍ମଦୋଷୀ ।
ନୃସିଂହ ସଙ୍ଗେ କରିବି ଆଜ ମୁହିଁ ଯୁଦ୍ଧ
ଚିହ୍ନିବି କେଡ଼େ କ୍ଷତ୍ରୀ ସେ ଅଟଇ ପ୍ରସିଦ୍ଧ ।
ଦେଖଣାହାରୀ ହୋଇଣ ରହ ତୁମ୍ଭେମାନେ
ସେ କେମ୍ନେ ବିନ୍ଧଇ ଶର ମୁଁ ବିନ୍ଧେ କେସନେ ।
ବୋଇଲେ ନୃସିଂହ ସ୍ୱାମୀ ହେଉ ଆଚ୍ଛା ଆଚ୍ଛା
ପାଞ୍ଚିଲେ ମୁରର ପୂରିଗଲା ମନୋବାଞ୍ଛା ।

ଶେଷଦେବଙ୍କୁ ଚାହିଁଣ ନୃସିଂହ କହିଲେ
ଆରେ ବାବୁ ଆଉ ଶସ୍ତ୍ର ନ ବିନ୍ଧ ବୋଇଲେ ।
ଗରୁଡ଼ କର୍ଣ୍ଣାଟେଶ୍ୱର ସୁଜାଣ ମନ୍ତ୍ରୀକି
ତାହାଙ୍କୁ ଚାହିଁଣ ଆଜ୍ଞା ଦେଲେ ମୁଖ ଟେକି ।
ବୋଇଲେ ହେ କ୍ଷଣେ ତୁମ୍ଭେ ଅପସରି ରହ
ମୁରାସୁର ତୁଲେ ଆମ୍ଭ ଯୁଦ୍ଧ ଦେଖୁଥାଅ ।
ଧର୍ମଶାସ୍ତ୍ରେ କହେ ଯୁଦ୍ଧେ ନ କରିବା ଶଙ୍କା
ଛଦ୍ମରେ ଯୁଝିଲେ ମୁଖ କରିବଟି ବଙ୍କା ।
ଏତେ ବୋଲି ଧନୁଶର ଧରି ଜଗନ୍ନାହା
ମାତଳିକୁ ବୋଇଲେ ହେ ରଥମୋର ବାହା ।
ମୁରର ଆମ୍ଭର ଯେମ୍ନେ ହେବ ଏକଦୃଷ୍ଟି
ସେରୂପେ ରଖିବୁ ନନ୍ଦିଘୋଷ ସଳଖିଟି ।
ତାହାର ଆମ୍ଭର କେଡ଼େ ହେବ ଶରବିନ୍ଧା
ଦେଖିବା ସେ ମୁରାସୁର ଅଟେ କେଡ଼େ ଯୋଦ୍ଧା ।
ମାତଳି ବୋଇଲା ସ୍ୱାମୀ ଶୁଣ ଲକ୍ଷ୍ମୀକାନ୍ତ
ତୁମ୍ଭ ପରିଚାର ନରଦୈତ୍ୟ ସର୍ବେ ଜାତ ।
ମୁର ପ୍ରାୟ ଲକ୍ଷେ କରି ପାରେ କି ତୁମ୍ଭଙ୍କୁ
ବାଜି ତୁମ୍ଭ ପାଦ ହୋଇଯିବ ଧୂଳିପଙ୍କୁ ।
ଯେବଣ ପାଦରୁ ଗଙ୍ଗା ବହୁଛି ପୃଥ୍ୱୀକି
ସେ ପାଦପଦ୍ମ ନ ଚିହ୍ନି କେ କାହିଁ ଅଛି କି ।
ପୂର୍ବକାଳେ ମୁରାସୁର ତପ କରୁଥିଲା
ସେ ପାଦ ପାଇବ ବୋଲି ଯୁଦ୍ଧକୁ ବାହିଲା ।
ଯୁଦ୍ଧକୁ ଆସିଲେ ହେଲେ ପ୍ରତେ କରୁନାହିଁ
ନଜରେ ମାନବ ବୋଲି ସେହି ନ ଆଣଇ ।
ଏକମୁଖ ହୋଇ ରଣ କରିବ ଯେ କାଳେ
ତୁମ୍ଭର ଦେଖିବ ସସ୍ତ୍ରେ ପାଦ ବେନି ଡୋଳେ ।
ତେବେ ଯାଇ ବିଷ୍ଣୁ ବୋଲି ତୁମ୍ଭଙ୍କୁ ଚିହ୍ନିବ
ଏତେକାଳେ ଆସି ମୋକ୍ଷ ହୋଇଲି ବୋଲିବ ।
ବୟାଶୀ ଗଣ୍ଡା ଯୁଗ ତ କଲା ଏବେ ଭୋଗ
କି ରୂପେ ମରିବ ବୋଲି ହେଉଛି ଉଦ୍‌ବେଗ ।
ଆୟୁଷ ଥାଉଁଣୁ ଜାଣ ପ୍ରାଣୀ ହେତୁ ବୁଡ଼େ
ମଲେ ଗଲେ ଭଲ ହୋନ୍ତା ବୋଲି ଡକାପାଡେ ।
ସୁଖ ପାଇବା ପାଇଁକି ଆଶା ଜନ୍ମୁଥାଇ
ଭଲ ଖାଇବା ବୋଲିଣ ଶରୀର ବହଇ ।
ସେହି ଆତ୍ମାକୁ କଦର୍ଯ୍ୟ କରନ୍ତି ଯେ ପ୍ରାଣୀ
ଆତ୍ମଘାତୀ ବୋଲି ତାଙ୍କୁ ପୁରାଣେ ବଖାଣି ।
ଆତ୍ମାକୁ କୁଶଳ ଯେ ନ କରେ ଦେହ ବହି
ସେ ପ୍ରାଣୀ ମହାପାପୀଟି ବ୍ରହ୍ମାଣ୍ଡେ ଅଟଇ ।
ଆତ୍ମାକୁ କୁଶଳ କଲେ ସର୍ବ ହୋଏ ସିଦ୍ଧି
ଏ ଭବସଂସାରୁ ସେହି ତରନ୍ତି ଅବଧି ।

ଆତ୍ମାକୁ କୁଶଳ କଲେ ଜ୍ଞାନ ସିଦ୍ଧିହୋଏ
ଆତ୍ମାକୁ କଦର୍ଯ୍ୟ କଲେ ରୋଗ ଘୋଟେ ଦେହେ ।
ଚଉଷଠି ରୋଗ ମଧ୍ଯୁ ଥୋକେ ରୋଗ ଆସି
ଆତ୍ମା ଦୁଃଖ ପାନ୍ତେ କରୁଥାନ୍ତି ଦେହ କ୍ଳେଶି ।
ଆତ୍ମା କୁଶଳ ପ୍ରାଣୀଏ ପୃଥ୍ୱୀକି ଅମୂଲ୍ୟ
ଅବିବେକ ଲୋକ ବୋଲେ ମଲେ ହୋନ୍ତା ଭଲ ।
ଆୟୁ ଥାଉଁ ଥାଉଁ ମୃତ୍ୟୁଠାରେ କରେ ମନ
ବେଶି ଜୀଇଁବା ଲୋକର ନ ସରଇ ଦିନ ।
ଚାରିବାହୁ ଚଳୁ ଚଳୁ ଗଲେ ଏକା ସୁଖ
ଏରୂପେ ଯେ ଆତ୍ମା ଘାତୀ ହୁଅନ୍ତି ବିମୁଖ ।
ଆୟୁଷ ଥାଉଁ ଥାଉଁ ସେ ବୋଲନ୍ତି ମରିବା
ସେହିରୂପେ ମୁରାସୁର ପ୍ରକୃତି ଜାଣିବା ।
ବ୍ରହ୍ମପ୍ରଳୟ ପର୍ଯ୍ୟନ୍ତେ ଅଛି ଆୟୁ ପାଇ
ଏରୂପେ ଜୀଇଁଲେ ଏ କି ପୃଥ୍ୱୀ ରଖିବଇଁ ।
ତେଣୁ ସେ ଦୁଷ୍ଟ ପଣରୁ ବିଷ୍ଣୁଙ୍କୁ ନ ମାନେ
ପ୍ରଭୁଙ୍କୁ ମାନବ ବିଷ୍ଣୁ ବୋଲି ମନେ ଘେନେ ।
ବିଷ୍ଣୁର ସହସ୍ରେ ପାଦ ନେତ୍ରେ ନ ଦେଖନ୍ତେ
ତେଣୁ ଏ ବିଷ୍ଣୁ ବୋଲି ନ ମାନେ କଦାଚିତେ ।
ତହିଁକି ସେ ନ ମାନଇ କହିବା ତା ଶୁଣ
ସନ୍ଧିଗଣ୍ଠି ପାଦ ଧରିଅଛି ମୁର ଜାଣ ।
ଜନନୀମାନେ ବାଳକ ଯେତେ ପ୍ରସବନ୍ତି
ବେନି ପାଦରେ କୁମାର ମାରି ଉପୁଜାନ୍ତି ।
ଏହିରୂପେ ପୁତ୍ର ଜନ୍ମ ମାତା ଦଶଶିର
ଲୋଚା ହୋଇ ପଡ଼ିଣ ଯେ ପଡ଼ନ୍ତି ଭୂମିର ।
ନିର୍ଜୀବେ ପଡ଼ି ଉଠନ୍ତି ପୁଣି କେତେବେଳେ
ବାସ ସମ୍ଭାଳି ଧରନ୍ତେ ତନୟକୁ କୋଳେ ।
ସବୁ ସ୍ତିରୀ ପ୍ରାୟ ବିଷ୍ଣୁ ମାତା ନୁହଇ କି
ସହସ୍ରେ ଚରଣ ଧରି ଗର୍ଭ ବହିବ କି ।
ତନୟ ଜନ୍ମ ନୋହୁଣୁ ଗର୍ଭ ଯିବ ଫାଟି
କି ରୂପେ ସହସ୍ର ପାଦେ ଜନ୍ମିବେ ବିଷ୍ଣୁଟି ।
ଜନ୍ମ ହୋଇ ମାତା ଗର୍ଭେ ପୁତ୍ର ମରିଯିବ
ପୁତ୍ର ମଲେ ମାତା ପଛେ ପ୍ରାଣ ବିସର୍ଜିବ ।
ଏହିରୂପେ ହେଲେ ବିଷ୍ଣୁ ଜନ୍ମେ କଦାଚିତେ
ମୁହିଁ ହେଲେ ନ ମରଇ ନର ବିଷ୍ଣୁ ହାତେ ।
ଏହିରୂପେ ସବୁବେଳେ ଦୈତ୍ୟ ମନେ ପାଞ୍ଚି
ମାନବ ବିଷ୍ଣୁ ବୋଲିଣ ହେୟ କରୁଅଛି ।
ତୁମ୍ଭେ ଅନ୍ତର୍ଯ୍ୟାମୀ ଜାଣ ସବୁରି ତ ମନ
ମୂର୍ଖ ଲୋକର ଚିତ୍ତକୁ ତତ୍କାଳରେ ଚିହ୍ନ ।
ଦୁଷ୍ଟ ପାପୀ ଲୋକକୁ ଯେ ନିବାରିବା ପାଇଁ
ମର୍ତ୍ତେ ଅବତାର ହୁଅ ନର ଦେହ ବହି ।
ବୈରି ଲୋକଙ୍କୁ ତ ଯାଅ ତତ୍କାଳରେ ଚିହ୍ନି
ଭୃତ୍ୟଙ୍କୁ ଯେ ରଖ ପ୍ରଭୁ ହୋଇ ଅନ୍ତୋଦାନୀ ।
ଏ ଦୁଇ ଲୋକର କଥା ତୁମ୍ଭେ ଜାଣ ସବୁ
ଆମ୍ଭପ୍ରାୟ ଲକ୍ଷ ଲୋକ କହି କି କରିବୁଁ ।
ତୁମ୍ଭ ପଦ୍ମପାଦ ଯେବେ ଆଗୁଁ ନ ଜନ୍ମାନ୍ତା
କି ରୂପେ ବୈକୁଣ୍ଠପୁର ବଳି ରାଜା ଯାନ୍ତା ।
ଏ କଥା ପୁରାଣେ ଶୁଣିଅଛି ମୁରାସୁର
ପ୍ରକୃତି ମନ୍ଦେ ତୁମ୍ଭଙ୍କୁ ନ ମାନେ ପାମର ।
ଏ କଥା ଶୁଣିଣ ପ୍ରଭୁ ମନେ ହୃଷ୍ଟ ହେଲେ
ମାତଳିକି ଚାହିଁ ମନେ ବହୁ ପ୍ରଶଂସିଲେ ।
ଦେବଦେହୀ ହେବାରୁ ତୁ ଚିହ୍ନିଲୁ ଆମ୍ଭଙ୍କୁ
ଆନ ଲୋକେ କେହି ଚିହ୍ନି ନ ପାରେ ବିଷ୍ଣୁଙ୍କୁ ।
ମୁର ଆୟୁ ଆଉ ତିନି ପ୍ରହରେକ ଅଛି
ଦେଖ ଯୁଦ୍ଧ ଆଜ ମୁହିଁ କିରୂପେ କରୁଛି ।
ଏତେ ବୋଲିଣ ନୃସିଂହ ଉଠି ନିଶ ମୋଡ଼ି
ଧନୁରେ ଶର ଯୋଚିଣ କଷି କରେ ଭିଡ଼ି ।
ମାତଳିକି ଆଜ୍ଞାଦେଲେ ରଥ ବେଗେ ବାହା
ମୁରାସୁର ଆଗେ ନେଇ ଅଶ୍ୱ କର ଠିଆ ।
ଶୁଣିଣ ମାତଳି ଶୀଘ୍ର ବାହେ ନନ୍ଦିଘୋଷ
ମୁରା ଆଗରେ ପ୍ରଭୁଙ୍କୁ ନେଇ କଲା ଦୃଶ୍ୟ ।
ଶ୍ରୀମୁଖ ଦେଖିଣ ମୁର ନିରେଖି ଚାହିଁଲା
ଦଣ୍ଡେକ ପର୍ଯ୍ୟନ୍ତେ ଚାହିଁ ମନେ ପାଞ୍ଚିଲା ।
ବୋଇଲା ଏହୁ ଅଟଇ ନିଶ୍ଚେଁ ଯେବେ ହରି
ଆଜଯାଏ ଥାଆନ୍ତା କି ଏ ମୋତେ ନ ମାରି ।
ହରିବିନା ମୁହିଁ ଜାଣ ଆନେ ନ ମରଇ
ବ୍ରହ୍ମ ପ୍ରଳୟ ପର୍ଯ୍ୟନ୍ତେ ଅଛି ବର ପାଇ ।
ଏତେ ବୋଲି ମୁରାସୁର ନିଶ କରେ ମୋଡ଼ି
ନୃସିଂହଙ୍କୁ ବୋଇଲାକ ଯାଆ ଯା ବାହୁଡ଼ି ।
ନିର୍ଲ୍ଲଜ ଗର୍ଭର ତୁମ୍ଭେ ଅଟ ବେନି ବଳା
ତୁମ୍ଭଙ୍କୁ ପିତା ତୁମ୍ଭର କଲା ଅସଙ୍ଖୋଳା ।
ତୁମ୍ଭଙ୍କୁ ସେହି କି ବୋଲି ଯୁଦ୍ଧେ ଦେଲା ପେଷି
ଅଖଡ଼େ ମରିଲ ଏବେ ମୋର ହସ୍ତେ ଆସି ।
ତୁମ୍ଭର ଏ କୂଟବୁଦ୍ଧି ଦେଖି ବାପ ମାଏ
ବୋଇଲେ ମରରେ ପଶି ଯୁଦ୍ଧେ ବେନି ପୋଏ ।
ଏ ଦୁହେଁ ମରିଲେ ଆମ୍ଭେ ମୁରାସୁର ଭେଟି
ସୁଖରେ ଭୋଗ କରିବା ଏହି ରାଜ୍ୟଗୋଟି ।
ଶୁଣିଣ ନୃସିଂହ ସ୍ୱାମୀ ମନେ ହସି ଅଳ୍ପ
ବୋଇଲେ ତୋ ବାପପ୍ରାୟ ହେବ କି ମୋ ବାପ ।
ବୁଝିଲେ ଅଟନ୍ତି ଆମ୍ଭ ବାପା ବେଦତତ୍ତ୍ୱ
ତୋତେ ମାରିବାପାଇଁକି ମୋତେ କଲେ ଜାତ ।

ତୋ ବାପ ଅଟନ୍ତି ହେଲେ ବେଦବ୍ରହ୍ମା ବିହି,
ତା ବୀର୍ଯ୍ୟରୁ ଜନ୍ମିଲୁ ତୁ ଦୈତ୍ୟଦେହ ବହି ।
ଅସୁର ହେବାରୁ ତୁହି ମୋତେ ନ ଚିହ୍ନିଲୁ
ମାନବ ବିଷ୍ଣୁ ବୋଲି ତୁ ମୋତେ ନ ମାନିଲୁ ।
ତୁ ବୋଲୁଥାଉ ମୋଠାରୁ ବଳି ନାହିଁ କ୍ଷତ୍ରୀ
ସବୁଙ୍କୁ ମାରିପାରେ ମୁଁ ଶରମୁନେ ଗୁନ୍ଥି ।
ରଥ ତେଜି ଏବେ ଭୂମିମଧ୍ୟେ ହୁଅ ଉଭା
ପଟୁଆର ଯୁଦ୍ଧ କରି ଧନୁ ଆମଞ୍ଚିବା ।
ଆମ୍ଭେ ତ ନୋହୁ କ୍ଷତ୍ରୀ ତୁ ସିନା ମହାକ୍ଷତ୍ରୀ
ବିନ୍ଧିବା ନାରାଚ ଉଭା ହୋଇଣ ଧରିତ୍ରୀ ।
ମୁର ବୋଇଲା ସତ୍ୟ ଏ କ୍ଷତ୍ରି ବୃତ୍ତି ଏହି
ଭୂମିରେ କରିବା ଯୁଦ୍ଧ ଆଷ୍ଟୁ ଭାର ଦେଇ ।
ରଥରୁ ତେବେ ଓହ୍ଲାଇ ଗ୍ଲିଲିଟି ଭୂମିକି
ତୁମ୍ଭେ ମଧ୍ୟ ରଥ ତେଜି ଆସିବ ନାହିଁକି ।
ନୃସିଂହ ବୋଇଲେ ଯେଣୁ ଧର୍ମେ ଆମ୍ଭେ ଅଛୁ
ତୁ ସିନା କ୍ଷତ୍ରିୟ ବୋଲି ମୋତେ ନ ମାନୁଛୁ ।
ଏତେ ବୋଲି ରଥୁ ଅବତରି ନାରାୟଣ
ପୃଥ୍ୱୀରେ ଉଭା ହୋଇଲେ ଯାଇ ତତକ୍ଷଣ ।
ଦେଖଣାହାରୀ ରହିଲେ ସର୍ବେ ତହିଁ ଚାହିଁ
ନୃସିଂହ ମୁର ଯୁଦ୍ଧ କିରୂପେ ହେବ ମହୀ ।
ଶୂନ୍ୟରେ ଥାଇଁଣ ଦେବେ ନିରୀକ୍ଷି ଚାହିଁଲେ
ନୃସିଂହ ଯୁଦ୍ଧ ଆରମ୍ଭ ଦେଖି ତୋଷ ହେଲେ ।
ବୋଇଲେ ଦୈତ୍ୟର ଏବେ ପୂରିଗଲା ମୃତ୍ୟୁ
ଏତେ କାଳକୁ ବିହି ଯେ ଲେଖିଥିଲା ତତ୍ତ୍ୱ ।
ଏଥୁ ଅନନ୍ତରେ ବାଣୀ ନାରଦର୍ଷି ଶୁଣ
ଥୋଇଲେ ଯାବତ ଶର କାଢ଼ି ନାରାୟଣ ।
ସେ ଶରର ଜ୍ୟୋତିଯାକ ଦେଖି ମୁରାସୁର
ପାଞ୍ଚିଲା କାହୁଁ ଆଣିଲା ଏହା ଚକ୍ରଧର ।
ସେ ନାରାଚ ମଧ୍ୟରୁ ଯେ ଥୋକେ ଗଲା ଗଣି
ଶୁଣ ହେ ନାରାଚ କହୁଛନ୍ତି କୁଶପାଣି ।
ଧନୁ ତୀର କମାଣ ଯେ କୋଦଣ୍ଡ ଶକତି
ଶୂଳ ପରିଘ ଖପର ଭୂଷା ଛୁରୀକାତି ।
କାଙ୍କ କୋଡ଼ି ଯମଦାଢ଼ ମୂଷଳ ଶାବେଳି
କୁବେର ବରୁଣ ମେଘାଶର ରତ୍ନାବଳୀ ।
କାଳପାଶ ନାଗପାଶ ପବନ ପର୍ବତା
ନିର୍ଘାତ ଯେ ବଜ୍ରାବଳି ଅମୋଘ ନୈର୍ଋତା ।
ବ୍ରହ୍ମଶର ବିଷ୍ଣୁଶର ଜୀବନ୍ୟାସ ଶର
ଦହନା ଶୋଷଣା ଅଗ୍ନିବାଣ ପ୍ରତ୍ୟାହାର ।
ବାବଲ ବେଲଙ୍କ ବ୍ରହ୍ମଭେଦୀ ଏକମୁନା
ମଞ୍ଚଭେଦୀ ସ୍ୱର୍ଗଭେଦୀ ଆଉ ଶିଶୁମୁନା ।
ଶୂନ୍ୟଭେଦୀ କାଳଭେଦୀ ସ୍ଥଳଭେଦୀ ଶର
ସ୍ତମ୍ଭନ ମୋହନ ବଶ ଉଚ୍ଚାଟ ଖର୍ପର ।
ଅକ୍ଷୟ ପିନାକ ପାଶୁପତ ବ୍ରହ୍ମଶକ୍ତି
ଦୁଆଢ଼ ପଶୁ କେଦାର ବଜ୍ରବାଣ ଲେନ୍ତି ।
ଦ୍ରିକନା ଚଉକନା ଯେ ବେତାଳ ଫର୍କନା
ମୁଗୁରି ଯେ ଅଧାଚନ୍ଦ୍ର ସପ୍ତଭେଦୀ ଜ୍ୟୋସ୍ନା ।
ଅକାଳ ତ୍ରିକାଳ ମହାକାଳ ଏକଘନୀ
ଗରୁଡ଼ କୁହୁକ ଅହିଶର ବଜ୍ରଧ୍ୱନି ।
ଉଡାଣ ବୁଡ଼ାଣ ଆଉ ମାରଣ ତାରଣ
ଜୟା ବିଜୟା ଭୈରବ ସିଂହନାଦ ବାଣ ।
ଶଙ୍କର ଗର୍ଜନା ସୂର୍ଯ୍ୟାବଳି ଧନୁଶସ୍ତ୍ର
ନାରାୟଣ ବିଷ୍ଣୁଶର ଆଉ ରୁଦ୍ରଅସ୍ତ୍ର ।
ବଜ୍ରାଙ୍ଗ ଯେ ବଜ୍ରଘୋଷ ହୁତାଶ ବତାଶ
ବ୍ରହ୍ମପାଶ ବିଷ୍ଣୁପାଶ ନିର୍ଘାତ କୁଳିଶ ।
ଅଜଗବ କୌମୋଦକୀ ସୁଦର୍ଶନ ଚକ୍ର
ନୀଳବାଣ ଭୁଜବାଣ ଇନ୍ଦ୍ରଧନୁ ନକ୍ର ।
ବ୍ରହ୍ମଶକ୍ତି ବିଷ୍ଣୁଶକ୍ତି ରୁଦ୍ରଶକ୍ତି ଜାଣ
ବଜ୍ରଶକ୍ତି ଇନ୍ଦ୍ରଶକ୍ତି ମୋହଶକ୍ତି ପୁଣ ।
ନୃସିଂହ ପାଖେ ଏରୂପେ ଶରଯାକ ଥୋନ୍ତେ
ଦେଖିଣ ମୁର ତାହାଙ୍କୁ ତ୍ରାସିଲା ହୃଦ୍‌ଗତେ ।
ବୋଇଲା ଏତେ ନାରାଚ ଆଣିଲା ଏ କାହୁଁ
କ୍ଷତ୍ରିୟ କୁଳେ ଜନ୍ମିତ ନାହିଁ ମହାବାହୁ ।
ବିପ୍ରକୁଳେ ଜନ୍ମି ସିନା ଅଛି ଏ ଶ୍ରୀପତି
ସୋଳଭେଳାପ୍ରାୟ ଶର ଅଛଇ ସାଇତି ।
ଏ ଯେତେ ନାରାଚ ଆଣି ଦେଖାଇଲା ମୋତେ
ତହିଁକି ଦ୍ୱିଗୁଣ ହୋଇଅଛି ମୋ ସଙ୍ଗତେ ।
ଏ ନାରାଚଯାକେ ମୋର ମୃତ୍ୟୁ ନାହିଁ ଲେଖି
ଆରମ୍ଭ କରୁ ଯୁଝିବା ବେଳକେ ଯେ ଦେଖି ।
ତାହାକୁ ମାଇଲେ ହେବି ଏକ ଚକ୍ରବର୍ତ୍ତି
ସେହୁ ମାଇଲେ ପାଇବି ମୁହିଁ ମୋକ୍ଷଗତି ।
ଏ ଦୁଇକଥା ସଂସାରେ ରହିବ ସେ ସିଦ୍ଧି
ଏତେ ବୋଲିକରି ଲକ୍ଷେଶର ଦେଲା ବିନ୍ଧି ।
ତୀକ୍ଷ୍ଣ ଶର ପେଷି ପ୍ରଭୁ ଦେଲେ ତାହା ଛେଦି
ଦେଖିକରି ମୁରାସୁର ହେଲା ମହାକ୍ରୋଧୀ ।
ପୁଣିହିଁ ଅସୁର ପେଷିଦେଲା ଅହୀଶର
ଗରୁଡ଼ ଶରେ ଛେଦିଲେ ତାହା ଚକ୍ରଧର ।
ଦେଖିଣ ତା ମୁରଦୈତ୍ୟ ବହୁ ପ୍ରଶଂସିଲା
ଏରୂପେ କ୍ଷତ୍ରୀ ସଂସାରେ ନ ମିଳେ ବୋଇଲା ।
ବିପ୍ର ଏ ବୋଲି ମୁହିଁ ତ ମନେ ପାଞ୍ଚୁ ଥାଇ
ଏହାର ପରାୟ କ୍ଷତ୍ରୀ ସୃଷ୍ଟିଯାକେ ନାହିଁ ।

ଏତେ ବୋଲିଣ ଅସୁର ହସ୍ତେ ଧନୁ ଧରି
ବିନ୍ଧିଦେଲା ନୃସିଂହଙ୍କୁ ଶର ଲକ୍ଷ ଚାରି।
ହାତରୁ ନ ଫିଟୁ ଶର ନୃସିଂହ ତା ନାଶି
ଭାଙ୍ଗି ପକାଇ ବାବଲ ଶର ଦେଲେ ପେଷି।
ହସି ବୋଇଲେ ରେ ମୂଢ଼ ମୁରାସୁର ବାଇ
ଏ ଅସ୍ତ୍ର କଲେ ଆମ୍ଭଙ୍କୁ ପାରିବୁ କି ତୁହି।
ଯେତେ ଶର ବିନ୍ଧିବୁ ତୁ ଆମ୍ଭର ସେ ସବୁ
ଅନ୍ୟ ଶର ଥିଲେ ଅବା ବିଷ୍ଣୁଙ୍କୁ ଜିଣିବୁ।
ଶୁଣି ମୁରାସୁର ବିନ୍ଧିଦେଲା ତୀକ୍ଷ୍ଣଶର
ପଡ଼ିଲା ଯାଇ ସେ ବାଣ ନୃସିଂହ ଜାନୁର।
ବାଜିଣ ନାରାଚ ଗଳି ଭୟେ ପଳାଇଲା
ବିଷ୍ଣୁରେ ଅପ୍ରାଧୀ ହେଲି ବୋଲି ଗଙ୍ଗାଗଲା।
ନୃସିଂହ ଆପେ ଦେଲେକ ତିନିଥର ଫୁଙ୍କି
ତତକ୍ଷଣେ କେଡ଼େବଡ଼ ଘାଆ ଗଲା ଶୁଖି।
ଅଙ୍ଗରେ ଘାତ ପାଇ ନୃସିଂହ କୋପ ବଢ଼ି
ଶରୀରକୁ କମ୍ପାଇଲେ ହସ୍ତେ ନିଶ ମୋଡ଼ି।
ଦେଖି ରିପୁବଳ ଗଲେ କାତର ଯେ ହୋଇ
ପ୍ରତ୍ୟକ୍ଷେ ଅବତାର ନୃସିଂହ ଭାବଗ୍ରାହୀ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଯେ ଗ୍ରାସିଲେ ତ୍ରିପୁର
ଉଛୁଳି ଟେକିଲେ ସାତସିନ୍ଧୁ ଜଳଧାର।
ପାଞ୍ଚନ୍ତି ଦେବତାମାନେ କି କରିବା ଏବେ
ନୃସିଂହଙ୍କୁ ବୋଧିବାକୁ ଭାଜନ କେ ହେବେ।
ମହା ବିଶ୍ୱମୂର୍ତ୍ତି ପୁଣି ହୋଇଛନ୍ତି ହରି
ସ୍ୱର୍ଗ ମଞ୍ଚ ପାତାଳକୁ ଦିଶେ ଜ୍ୟୋତି ପୂରି।
ନୃସିଂହ ସ୍ୱରୂପ ଦେଖି ଭାଳେ ମୁରଦୈତ୍ୟ
ମାନବ ବିଷ୍ଣୁ ବୋଲି ମୁଁ ଯାକୁ ବୋଲେ ନିତ୍ୟ।
ସାକ୍ଷାତରେ ପରଂବ୍ରହ୍ମ ଅଟେ ପରା ଏହି
ନୋହିଲେ କି ବିଶ୍ୱରୂପ ଆନ ଅଛି ହୋଇ।
ଭଲା ମୁଁ ପାଇଲି ରଣଯଜ୍ଞ ଏତେ କାଳେ
ଅବଶ୍ୟ ନୃସିଂହ ମୋତେ ମାରିବେଟି ବଳେ।
ଏତେ ପାଞ୍ଚି ଦୈତ୍ୟ ବିନ୍ଧିଦେଲା ଲକ୍ଷେଶର
ସସ୍ରକୋଟି ଶର ପେଷିଦେଲା ରହିଁପର।
ଲକ୍ଷେକ ବଜ୍ରଶକତି ମାଇଲା ତା ପରେ
ଗଦା ମୁଦ୍ଗର ଭାଲ ପିଟିଲା ଉପରେ।
କକଡ଼ା ମାସେ କରଇ ଯେହ୍ନେ ଜଳବୃଷ୍ଟି
ସେହିରୂପେ ଶର ବିନ୍ଧିଦେଲା ଲକ୍ଷକୋଟି।
ବାବଲ ଶରେ ଛେଦିଲେ ତାହା ଭାବଗ୍ରାହୀ
ଖଣ୍ଡ ଖଣ୍ଡ ହୋଇ ଛିଡ଼ି ପଡ଼ିଗଲେ ମହୀ।
ଥୋକାଏ ଶର ପଡ଼ନ୍ତେ ପ୍ରଭୁଙ୍କର ମାଥେ
କାଢ଼ି ପକାଇ ଫୁଙ୍କନ୍ତି ମନ୍ତ୍ରେ ଜଗନ୍ନାଥେ।
ଗତହୁଁ ଶତଗୁଣରେ ଦିଶେ ଦେହ ଶୋଭା
ଆଦିତ୍ୟ ପ୍ରାୟେ ପ୍ରକାଶେ ବଦନର ପ୍ରଭା।
ପ୍ରଭୁଙ୍କୁ ଦେଖିଣ ମୁର ପୁଣି କଲା କୋପ
ଧନୁରେ ନାରାଚ ଯୋଖି ଧରେ ଅନର୍ଯ୍ୟାପ।
ବୋଇଲା ମଲ ଆଜ ନୃସିଂହ ବେନି ଭାଇ
ନ ଜାଣ କି ମୁରାସୁର ସୃଷ୍ଟି ପାରେ ଦହି।
ଏତେ ବୋଲିଣ ପେଷିଲା ଲକ୍ଷେ ବ୍ରହ୍ମଶର
ସୁଦର୍ଶନ ଚକ୍ରେ ଛେଦି ଦେଲେ ଚକ୍ରଧର।
ବିଜୟା ରଥରେ ଲକ୍ଷେ ଅଶ୍ୱ ଲାଗିଥିଲେ
ଏକାଶରେ ପେଷି ତାହା ଛେଦି ପକାଇଲେ।
ସାରଥି ସହିତେ ଛେଦି ପକାଇଲେ ହାଣି
ତାହା ଦେଖି ମୁରାସୁର ଉଠେ ଶିରଝୁଣି।
ମେରୁଗିରି ସମାନରେ ବିନ୍ଧେ ପୁଣି ଶର
ମାଡ଼ି ଆସନ୍ତି ସେ ସବୁ ଯେହ୍ନେ ଗିରିବର।
ବଜ୍ରଶର ପେଷି ତାହା ନାଶିଲେ ନୃସିଂହ
ତାହା ଦେଖି ମୁରାସୁର ଧରେ ଧନୁ ବେଗ।
ବାରୁଣାଶର ଯୋଚିଣ ପେଷେ ତତକ୍ଷଣେ
ଚଳିଲା ନାରାଚ ଘୋରରଡ଼ି ଦେଇ ରଣେ।
ପ୍ରଭୁଙ୍କ ଦେହରେ ଶର ନ ପାରିଲା ଭେଦି
କିଞ୍ଚିତ ବାଣେ ନୃସିଂହ ତାହା ଦେଲେ ଛେଦି।
ବହିଲେ ବତାଶ ଯେହ୍ନେ ଗିରି ନ ଟଳଇ
ରହିଲେ ନୃସିଂହ ତେହ୍ନେ ଅଟଳ ଯେ ହୋଇ।
କହନ୍ତି ମୁରାସୁରକୁ ଚାହିଁ ପଦ୍ମମୁଖ
ବୋଲନ୍ତି ମୂଢ଼ା ତୁହି ରେ ଅଟୁ କେଡ଼େ ମୂର୍ଖ।
ପ୍ରତ୍ୟକ୍ଷରେ ନୟନରେ ବିଷ୍ଣୁ ଦେଖୁ ଦେଖୁ
ମାନବ ତୁଲେ ଆମ୍ଭଙ୍କୁ ନେଇକରି ଲେଖୁ।
ପ୍ରକୃତି ମନ୍ଦରୁ ତୋର ଅବିବେକପଣେ
ଗୋଡ଼ରେ ଚାଲିଲା କାଳସର୍ପ ଅକାରଣେ।
ଅମୃତକୁଣ୍ଡ ଶ୍ରୀହରି ଅଟନ୍ତି ପୃଥ୍ୱୀକୁ
ତାହାକୁ ନ ଖାଇ ମରୁ ଭୁଞ୍ଜିଣ ବିଷକୁ।
ବଳବନ୍ତପଣେ ତୁରେ ଅଟୁ ଯେବେ ଗାଢ଼
ନେତ୍ରେ ଦେଖୁ ଦେଖୁ ତୁ ନ ମାନୁ ଯୋଗାରୂଢ଼।
ହିଂସ୍ରକ ଲୋକଙ୍କୁ ପୁଣି ପୃଥ୍ୱୀ ନ ବହଇ
ସମ୍ପୂର୍ଣ୍ଣ ଆୟୁଷ ଥିଲେ ଅଳ୍ପେ କ୍ଷୟ ଯାଇ।
ତୁ ବୋଲୁଛୁ ପରା ହୋଇଅଛି ଚିରଆୟୁ
ମୁଁ ବୋଲେ ଦ୍ୱିପ୍ରହର ତୋ ଅଛି ନାସାବାୟୁ।
ହିଂସାରୁ ପ୍ରାଣୀ ଜାଣନ୍ତି ଅଳ୍ପକେ ମରୁଛି
ଏ କଥାକୁ ହେତୁକରି କେହି ନ ଜାଣୁଛି।
ତୁ ଯେଣୁ ହିଂସା କଲୁ ମୁଁ କେଡ଼େଲୋକ ବୋଲି
ତେଣୁ ଅଳ୍ପାୟୁଷ ତୋତେ ଅଳ୍ପକେ ମୁଁ କଲି।

ଆଜଠାରୁ ଛାଡ଼ ତୁରେ ତୋର ପ୍ରାଣ ଆଶ
ମୋର ଏହି ନାରାଚରେ ହେବୁ ପ୍ରାଣେ ନାଶ ।
ତ୍ରିମୁନା ଏକଘନୀ ତା ନାମ ଗୁଳୁଗୁଞ୍ଜି
ଲଲାଟକୁ ଲକ୍ଷ୍ୟକରି ଧନୁରେ ଆମଞ୍ଜି ।
ବିନ୍ଧନ୍ତେ ଶର ଯାଇଣ ଲଲାଟେ ପଡ଼ିଲା
ତିନିଠି ଘାଆ କରିଣ ଗଳି ପଳାଇଲା ।
ନୃସିଂହ ସ୍ୱାମୀର ତୂଣେ ରହିଲାକ ଯାଇ
ଚାହିଁଲା ମୁର ଲଲାଟ ପରେ ବ୍ୟଥାପାଇ ।
ତିନିଧାରା ହୋଇକରି ରକ୍ତ ବହିଯାନ୍ତେ
ଫୁଫୁକାର କରି ମୁର ପୋଛେ ବାମହସ୍ତେ ।
ଜୀବନ୍ୟାସ ମନ୍ତ୍ରେ ମନ୍ତ୍ରି ଦେଲାବେଳେ ଫୁଙ୍କି
ତକ୍ଷଣେ ଘାଆ ଲଲାଟୁ ଗଲା ତାର ସୁଖି ।
ଘୋର ସମର କରନ୍ତି ତହିଁ ବେନି ଜନ
କହିବାକୁ ଭାଜନ କେ ହେବ ଆନ ଜନ ।
ଡାକିହାକି ଶର ସେହୁ ହାନ୍ତି ବିନ୍ଧା ବିନ୍ଧି
କମ୍ପାନ୍ତି ବାସୁକୀ ପୁରଆଦି ନଦ ନଦୀ ।
ଦୁହିଙ୍କର ଶରୀରରୁ ବହେ ଶ୍ରମଝାଳ
ବାଣ ପଡ଼ିଣ ଶୋଣିତ ବହେ ଖଳଖଳ ।
ଘୋର ସମର କରନ୍ତି ଦୈତ୍ୟ ଦେବରାଜ
ଆଖି ପିଛଡ଼ାକେ ଲକ୍ଷେ ବିନ୍ଧନ୍ତି ନାରାଚ ।
ମାରନ୍ତି ରୋଷ ବହିଣ ବେଳୁଁବେଳ ବାଣ
ଛଡ଼ାଛଡ଼ି ନୋହି କରୁଛନ୍ତି ଘୋରରଣ ।
ଲକ୍ଷ ଲକ୍ଷକରି ବିନ୍ଧୁଛନ୍ତି ଦୁହେଁ ଶର
ଯେସନେ ଶୂନ୍ୟରୁ ଖସିପଡ଼େ ଜଳଧାର ।
ଦୈତ୍ୟଙ୍କ ଶିର ଛେଦନ୍ତି ବେଗେ ଭାବଗ୍ରାହୀ
ନୃସିଂହ ବାଣକୁ ଏକା ମୁର ନ ମାନଇ ।
ଦେହରେ ବାଜନ୍ତେ ସବୁହାତେ ଦିଏ ପୋଛି
ନୃସିଂହ ଆଗକୁ ମାଡ଼ି ଆସେ ଘୁଞ୍ଚି ଘୁଞ୍ଚି ।
ଏମନ୍ତେ ସମର କରୁ ପ୍ରହରେକ ଗଲା
ନୃସିଂହ ମୁରାସୁରର ଯୁଦ୍ଧ ନ ସରିଲା ।
ଆଉ ଦୁଇ ପ୍ରହର ଯେ ମୁର ଆୟୁ ଅଛି
ଏତେ ନ ଗଲେ ଭୋଗ ନ ମରେ ଧାତାବସି
ନୃସିଂହ ମୁର ସମର ଅଗୋଚର ବାଣୀ
ନିଃଶ୍ୱାସ ମାରିବାକୁ ନ ମିଳେ ବେଳ ପୁଣି ।
ଲକ୍ଷକୋଟି ଶର ପୁଣି ହାନ୍ତି ବିନ୍ଧାବିନ୍ଧି
ପେଷନ୍ତି ଜୟା ବିଜୟା ବାଣ ଦୟାନିଧି ।
ନିର୍ଘାତ ପଡ଼ନ୍ତେ ମୁଣ୍ଡେ ଆଡ଼େ ମୁରାସୁର
ଚୂର୍ଣ୍ଣକରି ପକାଏ ନୃସିଂହବିନ୍ଧା ଶର ।
ଭୂମିପରେ ଆଣ୍ଠୁ ଭାର ଦେଇ ମୁରଦୈତ୍ୟ
ଲକ୍ଷେକୋଟି ବାଣ ପୁଣି ବିନ୍ଧିଲା ତୁରିତ ।

ପୃଥ୍ୱୀଯାକ ଶରପୂର୍ଣ୍ଣ କରି ଦ୍ୟନ୍ତେ ରାଗେ
ତୀକ୍ଷ୍ଣ ନାରାଚରେ ତାହା ଛେଦିଲେ ନୃସିଂହେ ।
ସ୍ତମ୍ଭୀଭୂତେ ରହି ଦେଖୁଛନ୍ତି ସର୍ବସୈନ୍ୟେ
ଘଣ୍ଟମୃଗ ପ୍ରାୟ ଚାହିଁ ଅଛନ୍ତି ନୟନେ ।
ଲେଉଟି ମୁର ଯୋଚିଲା ପୁଣି ଅଗ୍ନି ଶର
ଶ୍ରୀନୃସିଂହ ଉପରକୁ ବିନ୍ଧିଲା ତତ୍ପର ।
ନାରାଚମାନ ଆସନ୍ତେ ନୃସିଂହ ତା ଜାଣି
ତକ୍ଷଣେ ମେଘାସ୍ତ୍ର ପେଷିଦେଲେ ଚକ୍ରପାଣି ।
ଜଳ ପଡ଼ନ୍ତେଣ ଅଗ୍ନିବାଣ ଗଲା ଲିଭି
ପୁନରପି ଶର ସେହୁ ବିନ୍ଧେ ଅତିବେଗି ।
ଲକ୍ଷେକ ନାରାଚ ପୁଣି ଧଇଲା ଦଇତ୍ୟ
ଧନୁରେ ଯୋଚିଣ ସେହୁ ବିନ୍ଧିଲା ତ୍ୱରିତ ।
ପ୍ରତିଅସ୍ତ୍ର କରି ଛେଦି ଦେଲେ ପ୍ରଭୁ ତାହା
ଅପୂର୍ବ ସମର ଗୋଟି କରେ ଦୈତ୍ୟନାହା ।
ପଢ଼ି ଧନୁର୍ବେଦ ଭୂମିପରେ ଉଭା ହୋଇ
ଅଭିମନ୍ତ୍ର କରି ଶର ପେଷେ ଦୈତ୍ୟସାଇଁ ।
ମହାକ୍ରୋଧ ହୋଇଲା ମଦନାବତୀ କାନ୍ତ
ତହିଁକି ନୃସିଂହ କୋପ ଅଟେ ଅଲୋକିତ ।
ବୁଝିଲେ ଦୁଇକ୍ଷତ୍ରୀଙ୍କ ରଣ ସମସରି
ସଂସାରରେ ଏଡ଼େ ଯୁଦ୍ଧ ପାରିବ କେ କରି ।
ଶରମୁନ ବାଜିକରି ରକ୍ତ ପଡ଼େ ବହି
ରକତେ ଦିଶନ୍ତି ଜରଜର ଦୁହେଁ ତହିଁ ।
ଅସ୍ତ୍ର ଦିଶନ୍ତି ଆକାଶୁଁ ଆସିଲାର ପରି
ଏହି ରୂପେ ଦୁହେଁ ବାଣ ହାନ୍ତି ମରାମରି ।
ବାଣ ପଡ଼ନ୍ତେ ଶୁଭଇ ଘଡ଼ଘଡ଼ି ପ୍ରାୟେ
ସ୍ୱର୍ଗେ ଶୁଣି ତା କମ୍ପନ୍ତି ଭୟେ ଦେବତାଏ ।
ଆତଙ୍କେ ଡାକନ୍ତି ସର୍ବେ ନୃସିଂହଙ୍କୁ ଚାହିଁ
ବୋଲନ୍ତି କେତେବାଣ ଏ ଦୈତ୍ୟ ଥିଲାଥୋଇ ।
ଏ ବାଣୁ ଉଦ୍ଧରି ପୃଥ୍ୱୀ ରଖ ଭଗବାନ
ଦେବଙ୍କ ଆକୁଳ ପ୍ରଭୁ ଜାଣି ଜନାର୍ଦ୍ଦନ ।
ବାବଲ ଶରେକ ପେଷି ଦେଲେ ଚକ୍ରପାଣି
ଆସୁ ଆସୁ ଦୈତ୍ୟଶର ପକାଇଲା ହାଣି ।
ପୁଣି ମୁରାସୁର ପେଷିଦେଲା ଏକଶର
ଛେଦିଲେ ନୃସିଂହ ତାହା କିଞ୍ଚିତ ପ୍ରକାର ।
ପୁଣିହିଁ ବାବଲ ଶର ପେଷିଣ ନୃସିଂହ
ବୋଇଲେ ତୁ ହାଣିପକା ମୁର ମୁଣ୍ଡ ବେଗ ।
ଶୁଣିଣ ବାବଲ ଶର ଧାଇଁଲା ତଡ଼ତି
ସୂର୍ଯ୍ୟଠାରୁ ଶତଗୁଣେ ପ୍ରକାଶେ ତା ଜ୍ୟୋତି ।
ଆଜ୍ଞାପାଇ ନାରାଚ ଯେ ଚଳିଲା ତତ୍ପର
ବେକ ଛିଡ଼ିଯାନ୍ତେ ତଳେ ନ ପଡ଼ିଲା ଶିର ।

ଅମରବର ହେତୁରୁ ତଳେ ନ ପଡ଼ିଲା
ସଜୀବ ହୋଇ ପୁଣି ଯେ ଯୁଦ୍ଧେ ସଜ ହେଲା ।
ବିଧାତା ବ୍ରହ୍ମଶକତି ଦେଇଥିଲେ ଯାହା
ସେ ଶରକୁ ବିନ୍ଧନ୍ତେ ନ ମଲା ଦୈତ୍ୟନାହା ।
ମହାକୋପ ହୋଇ ଯୁଦ୍ଧ କରେ ମୁରାସୁର
ନାରାୟଣ ଶର ପୁଣି ବିନ୍ଧି ଚକ୍ରଧର ।
ବୁକୁରେ ବାଜିଣ ଶର ବାହାରେ ନିକିଳି
ଟହଟହ ହୋଇ ଦୈତ୍ୟ ହସେ ମାରି ତାଳି ।
ଶୂନ୍ୟରେ ଥାଇଣ ଦେବେ ବିଚାରନ୍ତି ଚିତ୍ତ
ଏତେ ବାଣ ବିନ୍ଧିଲେ ନ ମଲା ମୁରଦୈତ୍ୟ ।
ଏଥର ବର୍ତ୍ତିଲେ ଏହୁ ମହୀକୁ ନ ରଖି
ଆଜିଠାରୁ ଦେବେ ଜାଣ ହେବେଟି ନିର୍ମାକ୍ଷୀ ।
ନୃସିଂହ ମୁର ଯୁଦ୍ଧକୁ ସର୍ବେ ଥିଲେ ଚାହିଁ
ଏଥର ନ ମଲେ ଯିବୁ ଅରକ୍ଷିତ ହୋଇ ।
ଶ୍ରୀନୃସିଂହ ହାତେ ମୁର ନ ମରିବ ଯେବେ
ଏହିଠାରୁ ରସାଗତ ହେବୁ ଆମ୍ଭେ ସର୍ବେ ।
ଏରୂପେ ଭାଳନ୍ତି ଶୂନ୍ୟେ ଥାଇ ଦେବତାଏ
ନୃସିହ ମୁର ସମର ଲାଗେ ଅପ୍ରମୟେ ।
ଯେବଣ ଶରେ ମୁରକୁ ମାରିବେ ମୁରାରି
ସେ ଶସ୍ତ୍ର ଧରି ନାହାନ୍ତି ସ୍ୱାମୀ ହେତୁକରି ।
ଯେତେ ଶସ୍ତ୍ର ବିନ୍ଧିଲେ ଏ ନ ମରଇ ମୁର
ବହୁ ପ୍ରଳୟ ପର୍ଯ୍ୟନ୍ତ ପାଇଅଛି ବର ।
ବିନ୍ଧୁଛନ୍ତି ବାଣ ସିନ୍ଧୁ ଲହରୀ ପରାୟେ
କକଡ଼ା ମାସରେ ଯେହ୍ନେ ଜଳବୃଷ୍ଟି ହୋଏ ।
ବିନ୍ଧନ୍ତି ଶ୍ରୀନୃସିଂହ ଯେ ସବୁ ଅସ୍ତ୍ର ଆଣି
ସେ ଶରମାନଙ୍କ ନାମ ପୁରାଣେ ବଖାଣି ।
ଧନୁ ତୀର କମାଣ ଯେ କୋଦଣ୍ଡ ଶକତି
ପରିଘ ଭୂଷଣ୍ଡି ଶୂଳ ଆଉ ଛୁରାକାତି ।
ବାଙ୍କିଆ ଯମଦାଢ଼ ଯେ ବିଜୟା ଶାବେଳି
ମେଘା କୁବେରା ବରୁଣା ଶର ରତ୍ନାବଳୀ ।
ବ୍ରହ୍ମଶର ବ୍ରହ୍ମଶକ୍ତି ଆଉ ନଇର୍ରୁତା
କାଳପାଶ ନାଗପାଶ ପବନ ପର୍ବତା ।
ରୁଦ୍ରଶର ବିଷ୍ଣୁଶର ମୋହ ଜଳପାଶୀ
ଦହନା ଯେ ଅଗ୍ନି ଶର ଉଗ୍ରତାରା ନିଶି ।
ବାବଲ ବେଲଙ୍କ ମନଭେଦୀ ଅସିବର
ପାତାଳଭେଦୀ ଯେ ସ୍ୱର୍ଗ ମଞ୍ଚଭେଦୀ ଶର ।
ଅକାଳ ବିକାଳ ମହାକାଳ ବିକରାଳ
ସ୍ତମ୍ଭନ ମୋହନ ବଶ ଉଚ୍ଚାଟନ ଶୂଳ ।
ଖର୍ପ ଶକତି ଭଲ୍ଲ ଯେ ମୁଦ୍‌ଗର ଫର୍କନା
ପିନାକ ଅକ୍ଷୟ ପାଶୁପତ ବଜ୍ରସେହ୍ନା ।

ଚଉକନା ପଞ୍ଚଶିରା ତ୍ରିକନା ଦ୍ୱିକନା
ମୁରାରି ବେତାଳ ଅଧାଚନ୍ଦ୍ର ଏକମୁନା ।
ମୂଷଳ କୁନ୍ତ ଖଡ଼ଗ ଦ୍ୱାଦଶ ଏକଘ୍ନୀ
ଗରୁଡ଼ କୁହୁକ ଅହିଶର ବଜ୍ରଧ୍ୱନି ।
ଉଡ଼ାଣ ବୁଡ଼ାଣ ଆଉ ମାରଣ ତାରଣ
ଭୈରବ କୌମୋଦୀ ଗଦା ସିଂହନାଦ ବାଣ ।
ଶଙ୍କରୀ ଗର୍ଜନାଜିତ ସୂର୍ଯ୍ୟାବଳୀ ଅସ୍ତ୍ର
କଙ୍କାଳୀ ବେତାଳୀ ବେନି ନାରାୟଣ ଅସ୍ତ୍ର ।
ହୁତାଶ ବତାଶ ମହାପ୍ରଳେ ଅଣଚାଶ
ସୁଦର୍ଶନ ଚକ୍ର ଅଜଗବ ସେ କୁଳିଶ ।
ସୂର୍ଯ୍ୟାବର୍ତ୍ତକ ଚକ୍ର ଶ୍ରୀଚନ୍ଦ୍ରାବଳି ଗଦା
ନୀଳବାଣ ଭୁଜବାଣ ଉର୍ଦ୍ଧ୍ୱଶୋଷୀ ସଦା ।
ଇନ୍ଦ୍ରଶକ୍ତି ବଜ୍ରଶକ୍ତି ଆଉ ବ୍ରହ୍ମଶକ୍ତି
ଯମପାଶ କାଳପାଶ ଭୈରବ ମୂରତି ।
ଏ ସବୁ ନାରାଚ ଆଣି ବିନ୍ଧନ୍ତି ଶ୍ରୀବତ୍ସି
ବାଜନ୍ତେ ମୁରର ଦେହେ ଦିଏ ସବୁ ପୋଛି ।
ବଜ୍ରଶକ୍ତି ବ୍ରହ୍ମଶକ୍ତି ତାଳ ବ୍ରହ୍ମକାଣ୍ଡ
ବିନ୍ଧନ୍ତେ ଧନୁରେ ଯୋଚି କମ୍ପେ ମହୀଖଣ୍ଡ ।
କାଳପାଶ ଯମପାଶ ଦେବଶର ବାଛି
ଧନୁମଧ୍ୟେ ଯୋଚି ଯୋଚି ବିନ୍ଧନ୍ତି ଶ୍ରୀବତ୍ସି ।
ଇନ୍ଦ୍ର ଶକ୍ତି ବଜ୍ରଶକ୍ତି ବ୍ରହ୍ମଶକ୍ତି ଯାଏ
ବାଜନ୍ତେଣ ମୁର ସବୁ ହାତେ ପୋଛିଦିଏ ।
ବୋଇଲା ବିନ୍ଧିଲୁ ଯେତେ ଶର ମୋତେ ଆଣି
ମୋର ମୃତ୍ୟୁଭେଦ ତୁ କି ପାରୁ କେଭେ ଜାଣି ।
ଜାଣିଥିଲେ ମୋତେ ତୁହି କ୍ଷଣେ ରଖନ୍ତୁ କି
ଏଣୁ ସଂସାରେ ମୁଁ ନ ମାନଇ କାହାରିକି ।
ତାହା ଶୁଣିଣ ନୃସିଂହ ହେଲେ କୋପାନଳ
ବୋଇଲେ ତେବେ ପୂରିଲା ନିଶ୍ଚେଁ ତୋରକାଳ ।
ଏତେ ବୋଲି ଶ୍ରୀନୃସିଂହ ବାବଲାସ୍ତ୍ର ଆଣି
ବୋଇଲେ ଦୈତ୍ୟର ଶିର ପକା ବେଗେ ହାଣି ।
ଶୁଣି ବାବଲାସ୍ତ୍ର ତତକ୍ଷଣେ ଗଲା ଗଳି
ମୁରାସୁର ଶିର କାଟି ଆସିଲା ତକ୍ରାଳି ।
ପଶିଲା ନୃସିଂହ ତୂଣୀ ମଧ୍ୟେ ଶର ଯାଇ
ଶର ଆସୁ ଆସୁ ମୁଣ୍ଡ ଲାଗିଲାକ ଦେହୀ ।
ଛିଡ଼ିପଡ଼ି ପୁଣ ମୁଣ୍ଡ ଲେଉଟି ଲାଗନ୍ତେ
ତାହା ଦେଖି ଚମତ୍କାର ହେଲେ ଲକ୍ଷ୍ମୀକାନ୍ତେ ।
ମୁରାସୁର ବୋଇଲା ହୋ ଶୁଣିମା ନୃସିଂହ
ସେ ଶର ବିନ୍ଧା ଦେଖି ମୋ ହସେ ଆତ୍ମାଲିଙ୍ଗ ।
ଏସନେ କାଟିଲେ ମୁଣ୍ଡ ମରନ୍ତି ମୁଁ ଯେବେ
କେ ହେଲେ ମାରିଣ ମୋତେ ପକାନ୍ତାଣି ତେବେ ।

ମୁହିଁ ମରିବାକୁ ଯାହା ଧାତା ଅଛି ଲେଖି
ସେ କଥା କହିବାକୁ କେ ନାହିଁ ଏଥେ ସାକ୍ଷୀ।
ମୋହର ମୃତ୍ୟୁ କଥାକୁ ମୁହିଁ ଏକା ଜାଣେ
ନୋହିଲେ ଯେ ବରଦେବା ପୁରୁଷ ବଖାଣେ।
ନୃସିଂହ ବୋଇଲେ ତୁହି ମରିବୁ ରେ ନିଶ୍ଚେ
ପ୍ରହରେକ ଧାତା ତୋତେ ରଖିଅଛି ମଞ୍ଚେ।
ଏ ଘେନି ତୋ ମୁଣ୍ଡ କାଟୁଅଛି ଭାବନାରେ
ବାଣ ବିନ୍ଧାବିନ୍ଧି ହୋଇ ଆଉ ଥରେ ଥରେ।
ଶୁଣିକରି ମୁରାସୁର ବୋଲେ ଭଲା ଭଲା
ଏବେ ଜାଣିଲି ତୋହର ଚିତ୍ତ ଜଣାଗଲା।
ମରିଲାଯାଏ ତୋତେ ନ ମାନେ କେବେ ଜାଣ
ଦେଖିଲେ ଯାଇ ବୋଲିବି ନିଶ୍ଚେ ନାରାୟଣ।
ଶୁଣିଣ ନୃସିଂହ ସ୍ୱାମୀ ବୋଇଲେକ ତହିଁ
ଆହୁରି ବିନ୍ଧିବି ତୋତେ କେତେ ବାଣ ମୁହିଁ।
ଶୁଣିକରି ମୁରାସୁର ଧରେ କରେ ନିଶ
ବୋଲେ ବାଣ ବିନ୍ଧି ମୋତେ କରିବୁ ତୁ କିସ।
ସୋଳଭେଳା ପ୍ରାୟ ସିନା ଅଟେ ତୋର ଶର
ବିନ୍ଧିଲେ ମୁନ ମୋଡ଼ି ତ ଯିବ ନାରାଚର।
ଶୁଣିକରି ନୃସିଂହ ଯେ ହସି ଟହ ଟହ
ବୋଇଲେ ଏବେ ସମ୍ଭାଳି ବେଳେତେବେରହ।
ଏତେ ବୋଲି ଶ୍ରୀନୃସିଂହ ପ୍ରଭୁ ଦେବସ୍ୱାମୀ
ପେଷିଲେ ବ୍ରହ୍ମଶକତି ହୋଇ ମନେ ତମୀ।
ବୋଇଲେ ମୁରର ଯାଇ କାଟ ଏବେ ମୁଣ୍ଡ
ଶୁଣିଣ ଚଳିଲା ଶର ହୋଇଣ ପ୍ରଚଣ୍ଡ।
ସୂର୍ଯ୍ୟଠାରୁ ଶତଗୁଣେ ପୃଥ୍ୱୀ ଗଲା ଘୋଟି
ପଡ଼ିଣ ମୁରର ବେକେ କାଟିଦେଲା ତୋଟି।
କାଟନ୍ତେ ମୁରର ଲାଗିଗଲା ବେକେ ମୁଣ୍ଡ
ଗତହୁଁ ଶତଗୁଣରେ ଦିଶେ ତାର ପିଣ୍ଡ।
ଶୂନ୍ୟରେ ଦେବେ ଚାହିଁଣ ହେଲେ ଚମତ୍କାର
ବୋଇଲେକ କେଡ଼େ ଦୈତ୍ୟ ଅଟେ ମୁରାସୁର।
ମୁଣ୍ଡ ଛିଡ଼ିପଡ଼ି ଲାଗୁଅଛି ବେକେ ପୁଣି
କେଡ଼େ ବର ଗୋଟି ତାକୁ ଦେଲେ ଶୂଳପାଣି
ଛିଡ଼ି ଯାଉଅଛି କିନ୍ତୁ ପଡୁ ନାହିଁ ମୁଣ୍ଡ
ତଳେ ପଡ଼ିଲେ ମରନ୍ତା ନିଶ୍ଚେ ଦୈତ୍ୟଷଣ୍ଢ।
ଏଥର ନ ମରି ଯେବେ ରହିବ ଏ ମୁର
ଅବଶ୍ୟ କରିବ ରସାଗତ ଏ ସଂସାର।
ଏରୂପେ ଭାଳନ୍ତେ ଶୂନ୍ୟେ ଥାଇ ଦେବତାଏ
ନୃସିଂହ ମୁରାସୁରର ଲାଗେ ଅପ୍ରମୟୋ
ହାଣନ୍ତେ ମୁଣ୍ଡ ତାହାର ଲାଗଇ ଲେଉଟି
ନ ମରିଣ ଯୁଦ୍ଧକୁ ସେ ପୁଣି ଧାଇଁଛିଟି।
ନୃସିଂହ ବୋଇଲେ ଆରେ ମୁରାସୁର ଶୁଣ
ଶସ୍ତ୍ର ମରାମରି ଦୁହେଁ ନୋହିବା ଯେ ଜାଣ।
ମାଲବିନ୍ଧା ହୋଇ ଆସ ଲାଗିଥିବା ଦୁହେଁ
ଜାଣିବା କାହାର କେତେ ବଳ ଯେଝା କାୟେ।
ମୁଁ ବାଣ ବିନ୍ଧିଲେ ତୁହି ଆଡୁ ନେଇ ବେକ
ଛିଡ଼ିଲେ ମରୁନାହୁଁ ଏ ବଡ଼ କଉତୁକ।
ବିନ୍ଧିଲି ସହସ୍ରଥର ଯାଏ ଏବେ ବାଣ
ତୋଟି କାଟିଲେ ତୋର ନ ଗଲା ଅଙ୍ଗୁ ପ୍ରାଣ।
ଧନୁଶର ତଳେ ଥୋଇ ଲାଗିବାକ ଆସ
ଦେଖିବା କେଡ଼େ ତୋହର ଅଟଇ ସାହସ।
ବେନି ପ୍ରହର ଏବେ ତ ହେଲା ଆସି ବେଳ
ତୋ ତୁଲେ ଆଉ ପ୍ରହରେ ଲାଗିବ କନ୍ଦଳ।
ମୁହିଁ ବା ଜିଣଇ ତୋତେ ତୁ ବା ମୋତେ ଜିଣ
ସେହିଠାରୁ ତୋ ତୁଲେ ମୋ ନାହିଁ ଆଉ ରଣ।
ଶୁଣିକରି ମୁରାସୁର ହସେ ଟହ ଟହ
ବୋଇଲାକ ଧନୁ ତେବେ ତଳେ ବେଗେ ଥୁଅ।
ଅଧର୍ମ ସମର କଲେ କାକୁ ନାହିଁ ପାର
ସ୍ଥିର ହୋଇଣ ସଂସାରେ ନାହାନ୍ତି କେ ନର।
ମୁହିଁ ଯେ ଚିର ହୋଇଣ ବୋଲୁଛି ରହିବି
ତୋଠାରୁ ବଞ୍ଚିଲେ ସିନା ଚିରଜୀବୀ ହୋଇବି।
ଧର୍ମ କଥାକୁ ନ ମାନି ଅଧର୍ମକୁ ଗଲେ
ନର୍କରେ ପଡ଼ନ୍ତି ସେହି ପ୍ରାଣୀ ଜାଣ ମଲେ।
ତୁ ଯେବେ ବିନ୍ଧିଲୁ ବାଣମାନ ମୋତେ ଆଣି
ସୋଳଭେଳା ବୋଲି ଏହା ନ କହେ କି ପୁଣି।
ଶୁଣିଣ ନୃସିଂହ ପ୍ରଭୁ ଅଳ୍ପ ମନେ ହସି
ଧନୁଶର ତଳେ ଥୋଇ ରହିଲେ ଆକ୍ରୋଶି।
ଶ୍ରୀନୃସିଂହ ଶ୍ରୀହସ୍ତରୁ ଦ୍ୟନ୍ତେ ଧନୁ ଛାଡ଼ି
ତେତେବେଳେ ଥୋଇଲା ଯେ ମୁର ଧନୁ କାଢ଼ି।



## ମୁରାସୁର ବଧ

ଭଇରବ ମୂର୍ତ୍ତି ଗୋଟି ଧରେ ମୁରାସୁର
ଡରିଣ ପଳାନ୍ତୁ ବୋଲି ନୃସିଂହ ଠାକୁର।
ଦଇତ୍ୟ ରୂପରେ ପ୍ରଭୁ ଦ୍ୱିଗୁଣରେ ବଢ଼ି
ମୁର ଦଇତ୍ୟ ଉପରେ ବର୍ଷିଲେକ ମାଡ଼ି।
ବୁକୁ ଉପରେ ମାରନ୍ତେ ଏକ ବଜ୍ରମୁଥ
ମୁରାସୁର ବୋଇଲା ହେ ହୋଇଲି କୃତାର୍ଥ।
ମାନବ ବିଷ୍ଣୁର ହସ୍ତେ ବିଧାଏ ପାଇଲି
ଦେହରୁ କଲୁଷ ଛାଡ଼ିଗଲା ମୁଁ ଜାଣିଲି।
ମୃତ୍ୟୁକାଳକୁ ମୋର ନ ଥିବ ଅଙ୍ଗେ ପାପ
ବିଧା ମାରି ମୋତେ କିରେ ଜିଣିଯିବୁ ବାପ।
ତୋର ବିଧା ବାଜି ମୋର କଣ୍ଠ ଭାଜୁନାହିଁ
କଣ୍ଠୁ ମାତ୍ର ଦେଉଛି ନୃସିଂହ ନାମ ବହି।
ନିଜେ ବିଷ୍ଣୁକୁ ଦେଖିଲେ ମୁହିଁ ବେନିଡୋଳେ
ତେତେବେଳେ ମୋକ୍ଷ ଯାଇଁ ହେବି ରବିତଳେ।
ଶୁଣିଣ ନୃସିଂହ ତାକୁ ଧଇଲେ ନିରାଟେ
ନେଇଣ ଛେଚିଲେ ଧରି ମେରୁଗିରି କ୍ରୋଟେ।

ତେଡ଼େ ମାଡ଼ରେ ମୁରର ନୋହେ ଲୋମବାଙ୍କ
ବୋଇଲାକ ଦେଲୁ ମୋତେ ସୁପାତି ପଲ୍ୟଙ୍କ ।
ଶେଯରେ ଶୁତିଲା ପରି ଲାଗେ ମୋତେ ଗିରି
ଏରୂପେ ଛେଚି ତୁହି ନ ପାରୁ କେବେ ମାରି ।
ଏରୂପେ ବୋଲନ୍ତେ ମୁର ଧଇଲେ ବାହୁଡ଼ି
ବିନ୍ଧ୍ୟଗିରିରେ ନେଇଣ ଛେଚିଲେ କଚାଡ଼ି ।
ତହିଁରେ ଛେଚନ୍ତେ ମୁର ହସେ ଟହ ଟହ
ବୋଇଲାକ ମହାବଜ୍ର ଅଟେ ମୋର ଦେହ ।
ଦେବତାମାନଙ୍କ କୂଟ ନ ଜାଣୁ କି ତୁହି
ଏରୂପେ ମଲେ ମୋତେ ସେଥାଆନ୍ତେ କି ଥୋଇ ।
ତେଡ଼ିକି ବଜ୍ର ଶରୀର ହେଉ ସିନା ମୋର
ତେଣୁ ରହିଲେ ମୋ ସେବା କରି ସୁର ନର ।
ଶୁଣିଣ ନୃସିଂହ ସ୍ୱାମୀ ଧରି ତାକୁ ଭିଡ଼ି
ଲକ୍ଷେକ ଯୂଣ ପର୍ଯ୍ୟନ୍ତେ ଶୂନ୍ୟେ ଗଲେ ବଢ଼ି ।
ବୋଇଲେ ଶୂନ୍ୟରୁ ଛେଦି ପକାଇବି ମହୀ
ହାତ ଗୋଡ଼ ବୁକୁ ଭାଜି ଯାଉ ଗୁଣ୍ଡା ହୋଇ ।
ଲକ୍ଷେ ଯୋଜନ ଉଚ୍ଚରୁ ଦେଲେ ପ୍ରଭୁ ଛାଡ଼ି
ପଡ଼ିଲା ଦୈତ୍ୟ ଭୂମିରେ ଆସି ମୁଖମାଡ଼ି ।
ନିର୍ଘାତ ହୋଇ ପଡ଼ନ୍ତେ ରନ୍ଧ୍ର ଗଲା ଫୁଟି
ପାତାଳପୁରକୁ ଗଳି ଗଲା ଦନୁଜଟି ।
ବାସୁକି ପାଦ ତଳରେ ହେଲା ଯାଇଁ ଉଭା
ଦେଖିଲା ସହସ୍ର ଫଣା ଦିଶେ ଫୁଟି ପ୍ରଭା ।
ସହସ୍ର ମୁଖ ଯାକରେ ଦ୍ୱିସହସ୍ର ଚକ୍ଷୁ
ସୂର୍ଯ୍ୟ ଜ୍ୟୋତିପ୍ରାୟ ନେତ୍ର ଦିଶେ ଦେଖୁ ଦେଖୁ ।
ଦେଖିଣ ମୁର ବାସୁକି ପାଦତଳେ ନମି
ବୋଇଲା ମୋତେ ପକାଇଦେଲେ ଅନ୍ତର୍ଯ୍ୟାମି ।
ବାସୁକି ବୋଇଲା ରେ ତୁ ଅଟୁ ବଡ଼ ମୂର୍ଖ
କି ବୋଲି ଆସିଲୁ ଛାଡ଼ି ନୃସିଂହର ପାଖ ।
ପାତାଳପୁରେ ଆସିଣ ରହିଲୁ ଯେ ଲୁଚି
ଏଠାରେ ରହି ପାରିବୁ କେତେଦିନ ବଞ୍ଚି ।
ଯେ ଯେତେ କଥା ହୃଦରେ ମନେ ପାଞ୍ଚୁ ଥାଇ
ଆଗହୁଁ ତାହା ଜାଣିଣ ଥାନ୍ତି ଭାବଗ୍ରାହୀ ।
ତୋହର ମନେ ପାଞ୍ଚୁଛୁ ଯେତେ ଭଲ ମନ୍ଦ
ସେ କଥା ସକଳ ଜାଣି ଗଲେଣି ଗୋବିନ୍ଦ ।
ନୃସିଂହ ପାଦ ଦେଖିଲେ ହୋଇଥାନ୍ତୁ ମୋକ୍ଷ
ତା ଛାଡ଼ି ପାତାଳେ ପଡ଼ି ରହିଲୁ ରେ ମୂର୍ଖ ।
ମୁର ବୋଇଲାକ ତୁମ୍ଭେ ଶୁଣ ସସ୍ର ମାଥ
ମୋର କର୍ମେ ଲେଖି ଯାହା ଥିବେ ଜଗନ୍ନାଥ ।
ସେହି କଥାଯାକ ଭୋଗ ହେଲେ ସିନା ଯାଇ
ଦୟା କରିବେ ଶ୍ରୀପାଦପଦ୍ମ ଭାବଗ୍ରାହୀ ।
ବାସୁକି ବୋଇଲେ ଯାଅ ଆସିଲୁ ଯେ ବାଟେ
ସେ ବାଟ ଚାରିଯୁଗକୁ ରହିବ ନିରାଟେ ।
ଯହିଁପାଇଁ ରହିବ ସେ କଥା ଥିବା କହି
ତୁ ମରି ହିରଣ୍ୟାସୁର ହେବୁ ପୁଣ ଯାଇଁ ।

ହିରଣ୍ୟର ତନୟ ଯେ ପ୍ରହ୍ଲାଦ ହୋଇବ
ହିରଣ୍ୟାସୁର ତାହାକୁ କେତେ କଷ୍ଟଦେବ ।
ସେ କଷ୍ଟ ତାହାର ହରି ନ ପାରିବେ ସହି
ଏହି ରନ୍ଧ୍ର ବାଟେ ଗଳିଯିବେ ଭାବଗ୍ରାହୀ ।
ସ୍ତମ୍ଭ ଭିତରେ ଯାଇଣ ଗୁପ୍ତେ ରହିଥିବେ
ଏହି ନୃସିଂହ ଏକ ଯେ ହିରଣ୍ୟ ମାରିବେ ।
ହିରଣ୍ୟ ମରି ପୁଣି ସେ ଦଶାନନ ହେବ
ପଞ୍ଚବଟୀ କାନନରୁ ସୀତା ହରି ନେବ ।
ସୁଗ୍ରୀବର ସଙ୍ଗତରେ ମୈତ୍ର ହୋଇ ରାମ
ଋଷ୍ୟମୂକ ପର୍ବତରେ କରିବେ ବିଶ୍ରାମ ।
ଚାରିଦିଗେ ଦୂତ ପେଷି ସୀତା ଖୋଜାଇବେ
କାହିଁରେ ନ ପାଇ ଦୂତେ ବାହୁଡ଼ି ଆସିବେ ।
ଅଷ୍ଟସେନା ଯାଇ ମାତ୍ର ଏହି ରନ୍ଧ୍ରେ ପଶି
ପାତାଳ ପୁରଯାକ ସେ ଖୋଜିବେ ବିଶେଷି ।
ଜାନକୀ ନ ପାଇଣ ସେ ରନ୍ଧ୍ରେ ଚଳିଯିବେ
ସମୁଦ୍ର ତଟରେ ଯାଇ ପ୍ରବେଶ ହୋଇବେ ।
ବିଚାର କରିବେ ବସି ତହିଁ ଆଠଜଣ
ବୋଲିବେ ଲଙ୍କା ଖୋଜିବା ଚାଲ ଯାଇ ପୁଣ ।
ସେହି ଲଙ୍କାରେ ଜାନକୀ ଦେବୀ ଥିବେ ରହି
ଖୋଜି ପାଇଲେ ରାମଙ୍କୁ ଏହା ଦେବା କହି ।
ଅଙ୍ଗଦ ବୋଲିବ କେହୁ ଯିବା କର ମୂଳ
ବଡ଼ ଦୁର୍ଗମ ପଥ ଏ ଅଟେ ସିନ୍ଧୁ ଜଳ ।
ହନୁମାନ ବୋଲିବ ମୁଁ ତେବେ ଏକା ଯିବି
ସୀତାଙ୍କୁ ଠାବ କରିଣ ବାହୁଡ଼ି ଆସିବି ।
ଏହି ରୂପେ ବୋଲି ହନୁ ଶୂନ୍ୟେ ଯିବ ଚଳି
ଷାଠିଦଣ୍ଡ ମଧ୍ୟେ ଲଙ୍କାପୁରେ ଯାଇ ମିଳି ।
ସେ ଲଙ୍କାଗଡ଼ଯାକ ଘଡ଼ିକେ ଖୋଜିବ
ସୀତାଙ୍କୁ ଅଶୋକବନେ କରିବ ସେ ଠାବ ।
ଜାନକୀଙ୍କି ଦେଖିଣ ଯେ ଆସିବ ବାହୁଡ଼ି
ସେନାଙ୍କ ଆଗେ ବସିବ ଆସି ଚକାମାଡ଼ି ।
ଜାନକୀଙ୍କି ଠାବକରି ଲଙ୍କାରୁ ଆସିଲି
ରାମଙ୍କୁ ଆସ କହିବା ଏବେ ଯାଇଁ ଚାଲି ।
ଏତେ ବୋଲି ସେନାଯାକ ଧରି ହନୁମାନ
ରଘୁନାଥ ପାଶେ ଯାଇଁ କହିଲେ ବହନ ।
ଶୁଣି ରାମ ଋକ୍ଷ କପି ସଇନଙ୍କୁ ଧରି
ସେତୁ ବାନ୍ଧି ରାବଣକୁ ପକାଇବେ ମାରି ।
ସୀତାଙ୍କୁ ଘେନି ଅଯୋଧ୍ୟା ନଗ୍ରେ ଯହୁଁ ଯିବେ
କିଛିଦିନେ ପୁଣି ସୀତା ବନକୁ ପେଷିବେ ।
ବାଲମୀକ ଋଷି ଘରେ ଥିବେ ଯାଇଁ ସୀତା
ଲବ କୁଶ ଗୀତ ଗାନ୍ତେ ଜାଣି ଜଗହିତା ।
ଲକ୍ଷ୍ମଣକୁ ପେଷି ସୀତାଦେବୀ ଘେନିଯିବେ
ପରୀକ୍ଷା ଦିଅ ବୋଲିଣ ଅନଳ ଜାଳିବେ ।
ସୀତା ପାଞ୍ଚିବେ ସରିଲା ଆମ୍ଭ ଭୋଗ ଆସି
ବୈକୁଣ୍ଠ ଯିବାକୁ ମନ କଲେ ବ୍ରହ୍ମରାଶି ।

ଏମନ୍ତ ବିଚାରି ଅଗ୍ନି ମଧ୍ୟେ ନ ପଶିବେ
ଏହି ବିଲରେ ପଶିଣ ବୈକୁଣ୍ଠ ଆସିବେ ।
ତହିଁ ଉତ୍ତାରୁ ଲକ୍ଷ୍ମଣ ପୁଣି କିଛିଦିନେ
ଏହି ବିଳେ ପଶି ଚଳିଯିବେ ନିଜସ୍ଥାନେ ।
ତହିଁ ଉତ୍ତାରୁ ପୁଣ ଏ ଅବତାର ସାରି
ଆସିବେ ବଇକୁଣ୍ଠକୁ ରାମ ଚାପଧାରୀ ।
ତ୍ରେତାଯୁଗ ଅନ୍ତେ ପୁଣି ଦ୍ୱାପରରେ ଯାଇଁ
ଶ୍ରୀକୃଷ୍ଣାବତାର ଗୋଟି ହେବେ ଭାବଗ୍ରାହୀ ।
ଜମ୍ବୁବତୀ କନ୍ୟା ବିଭା ହୋଇବା ନିମନ୍ତେ
ଏ ବିଳେ ପଶି ଆସିବେ ପୁଣି ଲକ୍ଷ୍ମୀକାନ୍ତେ ।
ପାତାଳେ ଆସି ଜାମ୍ବବ ସହିତରେ ହରି
କନ୍ୟା ବିଭା ହେବେ ବନ୍ଧୁ ସମ୍ବନ୍ଧ ସେ କରି ।
ସାତ ମଙ୍ଗଳା ସାରିଣ କନ୍ୟା ଘେନିଯିବେ
ଦ୍ୱାରକାପୁରରେ ନେଇ ସୁଖେ ବିଳସିବେ ।
ସେ ଅବତାର ସାରିଣ କଳିଯୁଗେ ଆସି
ନୀଳଗିରିରେ ବିଜୟ ହେବେ ବ୍ରହ୍ମରାଶି ।
ଏହି ରନ୍ଧ୍ରରେ ବାହାର ପାତାଳକୁ ଯାଇଁ
ଜଗନ୍ନାଥଙ୍କୁ ଦେଖିବେ ସର୍ବେ ତୁଷ୍ଟ ହୋଇ ।
ଏହିପରି ଦର୍ଶନ ସେ କରୁଥିବେ ନିତି
ଚାରିଯୁଗରେ ବିବର ରହିଲା ତୋ କୀର୍ତ୍ତି ।
ଯା ଯା ଏବେ ମୁର ରେ ନୃସିଂହ ହାତେ ମର
ଚାରିଯୁଗକୁ ରେ କୀର୍ତ୍ତି ରହିଗଲା ତୋର ।
ଶୁଣିକରି ମୁରାସୁର ହସିଣ ବୋଇଲା
ନୃସିଂହ ଲାଗି ଭଲା ଏ କୀର୍ତ୍ତି ମୋ ରହିଲା ।
ମାନବ ବିଷ୍ଣୁ ବୋଲି ମୁଁ ମନେ ପାଞ୍ଚୁ ଥାଇ
ଏବେ ଥୋକେ ଜାଣିଲି ଏ ଅଟେ ଭାବଗ୍ରାହୀ
ତଥାପି ଏ ଭାବଗ୍ରାହୀ ବୋଲି ସିନା ମାତ୍ର
ମଲାଯାଏ ତାକୁ ମୁଁ ନ ଯୋଡେ କରପତ୍ର ।
ସତେ ବିଷ୍ଣୁ ସେ ସଂସାରେ ଯେବେହୋଇଥାନ୍ତା
ଆଜ ପର୍ଯ୍ୟନ୍ତ ମୋତେ ସେ କିପାଁ ନ ମାରନ୍ତା
ଏଥୁ ଗଲେ ବିଷ୍ଣୁ ବଳ ବୁଝିବଇଁ ପୁଣି
ଏତେ ବୋଲି ମୁର ତହିଁ ଉଠି ଶିର ଝୁଣି ।
ସେହି ବିବର ବାଟରେ ମଞ୍ଚକୁ ଆସିଲା
ସମର ଭୂମିରେ ଯାଇଁ ପ୍ରଭୁଙ୍କୁ ଭେଟିଲା ।
ବୋଲେ ତୁହି ପରା କୃଷ୍ଣବଲ୍ଲଭର ପୁଅ
ଏରୂପେ ମୋତେ ଛେଚି ତୁ ପାରିବୁ କି କହ ।
ବ୍ରହ୍ମପ୍ରଳୟେ ଅଛଇ କେ ଅମର ହୋଇ
ତୋ ତୁଲେ ମୋ ଯୁଦ୍ଧଲାଗି ମୋକ୍ଷ ହେଲାଦେହୀ ।
ଆପଣେ ଶ୍ରୀହସ୍ତେ ଧରି ଦେଲୁ ମୋତେ ଛେଚି
ଅଧିକ ମୁଁ ବଜ୍ର ହୋଇ ରହିଲି ଶ୍ରୀବତ୍ସି ।
ଯେତେ ଦିନଯାଏ ଜୀଇଁ ସଂସାରେ ରହିଲି
ଅମେଧ ଶରୀର ବହି କାଳ ବଞ୍ଚିଗଲି ।
ଏବେ ମୁଁ ଶ୍ରୀଅଙ୍ଗେ ଲାଗି ହେଲି ପୀଡ଼ାପୀଡ଼ି
ଏ ପୁଣ୍ୟ ସଂସାରେ କେହୁ ପାଇନାହିଁ ଲୋଡ଼ି ।
ପୁତ୍ରେ ମୋର ମଲାଠାରୁ ଆଜିଯାଏ ତୋତେ
ଦେଖି ନ ଥିଲି ମୁଁ ଆଜି ଦେଖେଁ ନେତ୍ରପଥେ ।
ଆବର ତ ଦିନଯାକ ବ୍ୟର୍ଥେ ମୁହିଁ ନେଲି
ମାୟାରେ ପଡ଼ିଣ ତୋତେ ଭଜି ନ ପାରିଲି ।
ଏବେ ହେଲେ ମୋତେ ତୁହି ପାରିବୁ କି କହ
ଯେତେ ଛେଚୁଥିଲେ ମୋର ଅଟେ ବଜ୍ରଦେହ ।
ଶର ବିନ୍ଧିଣ ନିସତ ହୋଇଲୁଣି ହରି
ଛାଡ଼ିଦିଅ ମୋତେ ରାଜ୍ୟେ ଯିବି ମୁଁ ବାହାରି ।
ତେତିଶକୋଟି ରାଣୀ ଯେ ଅଛନ୍ତି ମୋ ଘରେ
ତାଙ୍କ ତୁଲେ ଯାଇଁ କ୍ରୀଡ଼ା କଲେ ଥରେ ଥରେ ।
କରିବି ସତର ଲକ୍ଷ ପୁତ୍ର ପୁଣି ଜାତ
ଲୋଡ଼ିଲେ ଭାଇ ଏକା ନ ମିଳେ କଦାଚିତ ।
ଏକାଙ୍ଗ ଚକ୍ରବର୍ତ୍ତୀ ମୁଁ ହେବି ଏବେ ଯାଇ
ତୋତେ ଆଉ ଭୟ ମୋର ତିଳେମାତ୍ର ନାହିଁ ।
ଶୁଣିଣ ନୃସିଂହ ପ୍ରଭୁ ଅଳ୍ପ ଦେଲେ ହସି
ବୋଇଲେ ଯିବାକୁ ମନ ହେଲା କିରେ ଦୋଷି ।
ରାଜ୍ୟକୁ ତୁ ଅବା ଯିବୁ ମୃତ୍ୟୁ ବା ଲଭିବୁ
ଆବର ଦଣ୍ଡକେ ଗଲେ ବୁଝିବୁ ନା ସବୁ ।
ଏତେ ବୋଲିଣ ନାରାଚ ଧଇଲେ ନୃସିଂହ
ବିନ୍ଧିଲେ ମୁରକୁ ଯେହ୍ନେ ପ୍ରଳୟର ମେଘ ।
ତୀକ୍ଷ୍ଣ ନାରାଚରେ ତାହା ଛେଦେ ମୁରାସୁର
ଲେଉଟି ନାରାଚ ନେଇ ବିନ୍ଧିଲେ ଶ୍ରୀଧର ।
ଶର ବାଜନ୍ତେ ଦଇତ ହାତେ ଦିଏ ପୋଛି
ତାହାଦେଖି ମନେ ଶଙ୍କା କରନ୍ତି ଶ୍ରୀବତ୍ସି ।
ବୋଲନ୍ତି କେବଣ ବାଣେ ମରିବ ଏ ଦୈତ୍ୟ
ଏତେ ପାଞ୍ଚି ଶର ପୁଣି ବିନ୍ଧି ଅପ୍ରମିତ ।
ଶୁଭେ ଗୁଣର ଟଙ୍କାର ମେଘଧ୍ୱନି ଜିଣି
କକଡ଼ା ମାସରେ ଯେହ୍ନେ ବର୍ଷୁ ଥାଇ ପାଣି ।
ତେହ୍ନେ ନୃସିଂହ ବିନ୍ଧନ୍ତି ଶରମାନ ଯୋଖି
ମୁରର ଦେହ ଯାକରେ ଶର ରହେ ଲାଖି ।
ମଧୁମାସେ ମହୁମାଛି ଯେହ୍ନେ ଥାନ୍ତି ବେଢ଼ି
ସେହିରୂପରେ ନାରାଚ ମୁର ଅଙ୍ଗେ ପଡ଼ି ।
ଦେହେ ବାଜି ଶରମାନ ରକ୍ତ ବହିଯାନ୍ତେ
ପୋଛିଣ ହସ୍ତରେ ଫିଙ୍ଗିଦିଏ ମୁର ଦୈତ୍ୟେ ।
ଫିମ୍ପି ମାଇଲେ ଯେମନ୍ତେ ଦିଶେ ଦେହ ଫିକା
ସେହି ରୂପରେ ମୁରର ନୋହେ ଲୋମ ବଙ୍କା ।
ତାହା ଦେଖିଣ ନୃସିଂହ ପୁଣି ଶର ବିନ୍ଧି
ଧୀବର ଯେହ୍ନେ ମୀନକୁ ଜାଲେ ଦିଏ ରୁନ୍ଧି ।
ଏରୂପେ ବାଣ ବିନ୍ଧନ୍ତେ କୋପେ ମହାପ୍ରଭୁ
ବାଜନ୍ତେ ମୁରର ଅଙ୍ଗେ ପୋଛି ହସ୍ତେ ସବୁ ।
ହୃଦୟରୁ ଶର କାଢ଼ି ଫିଙ୍ଗେ ଦଶଦିଗେ
ପର୍ବତରେ ପଡ଼ି ଗୁଣ୍ଡା ହୁଅନ୍ତି ମହାଭାଗେ ।
ଶର ବାଜନ୍ତେଣ ଦୈତ୍ୟ ହସେ ଟହ ଟହ
ବୋଲଇ ଶୁଣ ହେ କୃଷ୍ଣବଲ୍ଲଭର ପୁଅ ।

ନାରାଚ ବାଜିଲେ ଯେବେ ମୁହିଁ ମରୁଥାନ୍ତି
ଏତେକାଳ ଯାଏ ଜୀଇ କେମନ୍ତେ ରହନ୍ତି।
କେହୁ ହେଲେ ବଳେ ପଶି ପିଟିଣ ପକାନ୍ତା
ଆଜିଯାଏ ମୋତେ କେହୁ ସଂସାରେ ରଖନ୍ତା।
ଏଡ଼େଲୋକ ନୋହିଲେ କି ରୂପେ ଚୌଦପୁର
ସାଧ କରି ପାରନ୍ତି କି ମୁହିଁ ସୁର ନର।
ବ୍ରହ୍ମା ନିତି କିପାଁ ମୋତେ ବୋଧି ଆସୁଥାନ୍ତା
ଇନ୍ଦ୍ର ବୋଲ ପାଳି ମୋର କାହିଁକି ବର୍ଷନ୍ତା।
ଅନଳ ପାକ ସମ୍ପାଦି ଖଟି ଥାଆନ୍ତା କି
ପବନ ସେବା କରିଣ ଧୀରେ ବହନ୍ତା କି।
କୁବେର ଅଷ୍ଟରତନ କିପାଁ ମୋତେ ଦ୍ୟନ୍ତା
ବରୁଣ ବିଚଣା ଧରି କିପାଁ ବିଞ୍ଚୁ ଥାନ୍ତା।
ନ ଡରିଲେ ବସୁଧା ଯେ ମୋତେ ବହନ୍ତା କି
ନିତି ଚନ୍ଦ୍ର ସୂର୍ଯ୍ୟ ମୋତେ ଖଟି ଥାଆନ୍ତେ କି।
ପଞ୍ଚଭୂତ ଯାକ ମୋର କିରୂପେ ବୋଲରେ
ସେବା କରି ରହନ୍ତେ କି ରାତ୍ର ଦିବସରେ।
ଏତେ ନୋହିଲେ ପ୍ରଳୟ ପରିଯନ୍ତେ ମୁହିଁ
ଅମର ହୋଇ ସଂସାର ମଧ୍ୟେ ଅଛି ରହି।
ସତର ଲକ୍ଷ ପୁତ୍ର ମୋ ଥିଲେ ଅବତରି
ତାଙ୍କୁ ମାଇଲା ପରାୟେ ମଣୁ ମୋତେ ହରି।
ଦାରୁଣ ଭାଇକି ନାଶ କଲୁ ଅଛଟକେ
ତାହାର ପ୍ରାୟ ମୋତେ କି ମଣୁଛୁ ତ୍ରିଲୋକେ।
ବଡ଼ ଲୋକ ଜଣା ହେତୁ ତୁହି ଆଜିଯାଏ
ମୋର ଆଗେ ଯୁଝୁଛୁ ନ କରି ମନେ ଭୟେ।
ଆନଲୋକେ ମୋର ପାଶେ ପାରନ୍ତା କି ରହି
ନିମିଷକେ ପ୍ରାଣ ତାର ପକାନ୍ତି ମୁଁ ଦହି।
ଏହିକ୍ଷଣି ଘେନିଯିବି ନିଶ୍ଚେ ତୋର ପ୍ରାଣ
ଏତେ ବୋଲିଣ ପେଷିଲା ଏକଲକ୍ଷ ବାଣ।
ସେହି ବାଣଯାକ ଛେଦି ପକାଇଲେ ହରି
ଭୁଜବାଣ ବିନ୍ଧିଲେକ କରେ ପୁଣି ଧରି।
ବୋଇଲେ ମସ୍ତକ ଛେଦି ପକା ପାପିଷ୍ଠର
ଏହା ଶୁଣି ଭୁଜବାଣ ଚଳିଲା ତତ୍ପର।
ବେକରେ ପଡ଼ନ୍ତେ ତତକ୍ଷଣ ଗଲା ଛିଡ଼ି
ନିଃଶ୍ୱାସ ମାତ୍ରକେ ବେକେ ଲାଗିଲା ବାହୁଡ଼ି।
ତା ତହୁଁ ଶତେଗୁଣରେ ଦିଶେ ହୋଇ ଉଜ
ଲେଉଟି ଧରିଣ ବାଣ ବିନ୍ଧିଲା ଦନୁଜ।
ପ୍ରତିଅସ୍ତ୍ର କରି ଛେଦି ଦେଲେ ଭାବଗ୍ରାହୀ
ଦେଖି ମୁରଦୈତ୍ୟ ତାହା ଚମତ୍କାର ପାଇ।
ବୋଇଲା ବ୍ରାହ୍ମଣ ଏହି ନୁହଇ ନୃସିଂହ
ବିନ୍ଧିଲେକ ଶର ଦେଉଅଛି କରଭଙ୍ଗ।
କ୍ଷତ୍ରୀ ନୋହେ ବୋଲି ମୁହିଁ ଭାବୁଥାଇ ମନେ
କେଡ଼େ କ୍ଷତ୍ରିୟ ଅଟେ ସେ ନରବିଷ୍ଣୁ ଜଣେ।
ବିପ୍ରକୁଳେ ଜନମି ଏରୂପେ ହେବ ବୋଲି
ମୋଠାରୁ ନାହିଁ କେ କ୍ଷତ୍ରୀବୋଲି ପାଞ୍ଚୁଥିଲି।

ଭଲ କ୍ଷତ୍ରୀ ଅଟେ କୃଷ୍ଣବଲ୍ଲଭର ପୋଏ
ଏତେ ବୋଲିଣ ବିନ୍ଧିଲା ବାଣ ଅପ୍ରମୟେ।
ବାଜନ୍ତି ନୃସିଂହ ଅଙ୍ଗେ ଶରମାନ ଯାଇ
ରକ୍ତ ଖଳ ଖଳ ହୋଇ ଦେହୁଁ ପଡ଼େ ବହି।
ଅଙ୍ଗୁ ଝରନ୍ତେ ରକ୍ତ ନ ମାନି ଚଉବାହା
ଯୁଦ୍ଧ ତାମସେ ବିନ୍ଧନ୍ତି ବାଣ ହୋଇ ଠିଆ।
ହସ୍ତରେ ଆଉଁଷି ରକ୍ତ ଦେଇ ପ୍ରଭୁ ପୋଛି
ମହାକାଳ ଶର ଧନୁ ମଧ୍ୟେ ଦେଇ ଯୋଚି।
ବୋଇଲେକ ଅସୁରର ବେକେ ପଡ଼ ଯାଇ
ଛିଣ୍ଡାଇ ପକା ଦେଖନ୍ତୁ ଦେବେ ଶୂନ୍ୟେ ରହି।
ଏହା ଶୁଣି ଦେବଶସ୍ତ୍ର ଚଳିଲା ତକ୍ଷଣେ
ମୁରର ବେକ ଛିଣ୍ଡାଇ ପଶିଲାକ ତୂଣେ।
ଶର ନ ଖସୁଣୁ ବେକ ଲାଗେ ପୂର୍ଣ୍ଣ ତାର
ଶୂନ୍ୟେଥାଇ ଦେବେ ଦେଖି ହେଲେ ଚମତ୍କାର।
ନିଃଶ୍ୱାସ ମାତ୍ରକେ ବେକ ଲାଗିଲା ତା ପୁଣି
ନୃସିଂହ ବୋଇଲେ ମୁଁ ନ ପାରେ ଆଜ ଜିଣି।
ଶତେଥର ଯାଏ ଛେଦିଦେଲି ଦୈତ୍ୟଶିର
କଦାପି ନ ମଲା ପାଇଅଛି ଭଲା ବର।
ଛାଡ଼ିଦିଏଁ ରାଜ୍ୟକୁ ଏ ଯାଉ ସେ ବାହୁଡ଼ି
କେତେରୂପେ ମାଇଲେ ତ ନ ଗଲା ଏ ମରି।
ଦେବେ ନାରାଚ ସଂସାରେ ଯେତେ ଥିବେ ଥୋଇ
ସବୁ ବିନ୍ଧି ମୁଁ ରହିଲି ଚିଟା ମାତ୍ର ହୋଇ।
ଚାଳିଶ ଲିତା ଯେ ତିନି ପ୍ରହରକୁ ଅଛି
ଏଥି ମଧ୍ୟେ ନ ମଲେ ମୋ ସତ୍ୟ ଯେ ବୁଡୁଛି।
ମାତଳି ବୋଇଲା ସ୍ୱାମୀ ତୁମ୍ଭେ ସତ୍ୟବ୍ରହ୍ମ
ବୁଝିଲେ ଏ ସୃଷ୍ଟି ଅଟେ ଅସତ୍ୟ କରମ।
ଦୁର୍ଲ୍ଲଭ ଦେହ ପାଇ ଯେ ତୁମ୍ଭଙ୍କୁ ନ ଭଜି
ମରନ୍ତି ଅସତ୍ୟ କର୍ମ କରି ହୋଇ ଗଞ୍ଜି।
ଅସତ୍ୟରୁ ପ୍ରାଣୀମାନେ ଅଳ୍ପାୟୁଷ ହୋଇ
ଅଳ୍ପେ ମରନ୍ତି ଅସତ୍ୟ କରମରେ ଥାଇ।
ତୁମ୍ଭର ସତ୍ୟରେ ତୁମ୍ଭେ ପୃଥ୍ୱୀ ପାଳୁଅଛ
ପାଷଣ୍ଡେ ମଣିଲେ ତୁମ୍ଭ ସତ୍ୟ କରି ମିଛ।
ଦିନେ ମାତ୍ର ସତ୍ୟ ଧର୍ମ ବ୍ରତ ନ କରନ୍ତି
ତୁମ୍ଭ ପଥ ଛାଡ଼ି ଆନ ପଥେ ପ୍ରବର୍ତ୍ତନ୍ତି।
ପ୍ରଥମ ଦିନ ତୁମ୍ଭର ସତ୍ୟ ଧର୍ମ ବ୍ରତ
ସେ ପନ୍ଥା ଛାଡ଼ି ପାଷଣ୍ଡ କରେ ଆନ ବ୍ରତ।
ତୁମ୍ଭର ହରି ଜନମ ବ୍ରତ ଯେଉଁଦିନ
ସେହି ଦିନ ନ ପାଳନ୍ତି ପାଷଣ୍ଡ ଯେ ଜନ।
ପ୍ରଥମ ଦିନରୁ ଏକାଦଶୀ କି ଛାଡ଼ନ୍ତି
ଦ୍ୱାଦଶୀ ଦିନରେ ଏକାଦଶୀ ସେ କରନ୍ତି।
ତ୍ରୟୋଦଶୀରେ କରନ୍ତି ଦ୍ୱାଦଶୀ ପାଳନା
ପାଷାଣ୍ଡ ଲୋକଙ୍କର ଏ ଅଟେ ବୁଝାମଣା।
ତୁମ୍ଭେ ତ ସର୍ବଘଟରେ ତୁଲ୍ୟେ ଅଛ ପୂରି
ତୁମ୍ଭଙ୍କୁ ପାଷଣ୍ଡ ଘେନୁଛନ୍ତି ଭିନ୍ନ କରି।

ସ୍ବାର୍ଥ ଲୋକ ଯେତେକ ସେ ଭ୍ରମିଣ ମରନ୍ତି
ପରମାର୍ଥ ଲୋକେ ଦେହ ତା ଅର୍ଥ କରନ୍ତି।
ବୁଝିଲେ ତ ଦୁଇମତ ଅଟେ ସମସରି
ପଣ୍ଡିତ ଲୋକ ଘେନନ୍ତି ସବୁ ସମ କରି।
ତୁମ୍ଭର ସତ୍ୟ ବଚନ କିପାଁ ଯିବ ଛୁଡ଼ି
ସସ୍ରପାଦ ଦେଖି ଦୈତ୍ୟ ଛାଡ଼ିବ ଯେ ରଡ଼ି।
ସେ ରଡ଼ି ଶୁଣିଲେ ତିନିପୁର ଯିବ କମ୍ପି
ପୂର୍ବରୁ ବିଧାତା ଏହା ଅଛଇ କଳପି।
ଶୁଣିଣ ନୃସିଂହ ପ୍ରଭୁ ବୋଇଲେ ଏ ସତ୍ୟ
ଏରୂପ ନୋହିଲେ କେବେ ନ ମରେ ଏ ଦୈତ୍ୟ।
ସହସ୍ର ଚରଣ ତେବେ ଦେଖାଇବା ତାକୁ
ବଡ଼ ଅଗମ୍ୟ କଥା ଏ ଅଟେ ସଂସାରକୁ।
ଏତେ ବୋଲିଣ ନୃସିଂହ ବିଶ୍ୱରୂପ ଧରି
ଶ୍ରୀଅଙ୍ଗୁ ସହସ୍ରପାଦ ଜାତ କଲେ ହରି।
ଦିଶନ୍ତେ ରବିମଣ୍ଡଳ ଯାଏ ପ୍ରଭୁ ବଢ଼ି
ଆଦିତ୍ୟ କଲେ ସେବା ଶ୍ରୀପଦ୍ମପାଦେ ପଡ଼ି।
ସହସ୍ର କିରଣଯାକ ଘେନି ପ୍ରଭାକର
ଲାଗିଲେ ବିଷ୍ଣୁ ପାଦରେ ହୋଇ ଅବତାର।
ସହସ୍ର କିରଣଯାକ ସହସ୍ର ପାଦରେ
ଅଙ୍ଗୁଳି ଅଗରେ ନଖ ହୋଇଲେ ତପୂରେ।
ତେତିଶକୋଟି ଦେବତା ଝୁମୁକା ପରାୟେ
ପାଦେ ବେଢ଼ିଣ ଲାଗିଲେ ସର୍ବେ ଯେଝାଠାଏ।
ଶ୍ରୀନୃସିଂହ ଅଙ୍ଗେ ଆସି ଦଶଦିଗପାଳେ
ପ୍ରଭାମାନ ପ୍ରକାଶିଣ ରହିଲେ ନିଶ୍ଚଳେ।
ଅଣଚାଶ ମୂର୍ତ୍ତିଯାକ ଘେନିଣ ମରୁତ
ପ୍ରଭା ପ୍ରକାଶିଲେ ନେଇ ବିଷ୍ଣୁ ପାଦଗତ।
ବାସୁକୀ ସହସ୍ରଫଣା ଧରି ବିଜେ କଲା
ଶ୍ରୀନୃସିଂହ ପାଦତଳେ ପ୍ରଭା ପ୍ରକାଶିଲା।
ଚନ୍ଦ୍ର ଦେବତାଙ୍କ ଥିଲା ଯେତେ ପ୍ରଭାଗୁଣ
ନୃସିଂହର ପାଦେ ଆସି ପ୍ରକାଶିଲେ ପୁଣ।
ଈଶ୍ୱର ଦେବତାଙ୍କର ଯେତେ ରଶ୍ମି ତେଜ
ନୃସିଂହ ପାଦେ ଥୋଇଲେ ତାହା ବୃଷଧ୍ୱଜ।
ବ୍ରହ୍ମାଙ୍କ ହୃଦରେ ଥିଲେ ଯେତେ ରଶ୍ମିଗଣ
ସହସ୍ର ପାଦପଦ୍ମରେ ରହିଲେ ଲାଗିଣ।
ଅଗ୍ନି ଦେବତାଙ୍କ ଦେହେ ଯେତେ ତେଜ ଥିଲା
ବିଷ୍ଣୁଙ୍କ ସହସ୍ର ପାଦେ ପ୍ରକାଶ ହୋଇଲା।
ନବଗ୍ରହଯାକ ଆସି ଲାଗିଲେ ଚରଣେ
ଦେଖାଇ ଯେ ଯାହା ରଶ୍ମିଗଣ ଜଣେ ଜଣେ।
ନାଶକର ଦେବତା ଯେ ସସ୍ରପାଦ ତଳେ
କାଳପାଶ ଧରି ଜଗି ରହିଲେ ନିଶ୍ଚଳେ।
ବରୁଣ ଦେବତାଙ୍କର ଯେତେ ରଶ୍ମି ପୁଣ
ପାଦପଦ୍ମ ତଳେ ରଖି ସେବିଲେ ରହିଣ।
ନକ୍ଷତ୍ର ଯୋଗ କରଣ ବାର ତିଥି ଯେତେ
ପାଦ ସେବାରେ ଲାଗିଲେ ଯେ ଯାହାରମତେ।

ପୃଥ୍ୱୀ ଆପ ତେଜ ବାୟୁ ବ୍ୟୋମ ପଞ୍ଚଭୂତ
ସହସ୍ର ପାଦତଳେ ଏ ହୋଇଲେ ସମ୍ଭୂତ।
ସହସ୍ର ଶିରଯାକରେ ସସ୍ରଗୋଟି ମୁଖ
ବେନି ସହସ୍ର ନୟନ ବିରାଜେ ପ୍ରତ୍ୟକ୍ଷ।
ସହସ୍ର ପାଦ ନୃସିଂହ ଯେଉଁ ଅବତାର
ସଚରାଚରର ସେହି ପ୍ରଭୁ ପ୍ରତିକାର।
ଏହି ବିଷ୍ଣୁ ଅଙ୍ଗୁ ଦଶ ଅବତାର ଆସି
ପ୍ରକାଶି ଲୀଳା କରନ୍ତି ନିଜେ ବ୍ରହ୍ମରାଶି।
ଲୀଳା ସରିଗଲେ ପୁଣି ପ୍ରଭୁ ଭାବଗ୍ରାହୀ
ରହନ୍ତି ଏ ବିଷ୍ଣୁଅଙ୍ଗେ ମିଶି ଏକା ହୋଇ।
ସସ୍ରେପାଦ ଜ୍ୟୋତି ପରକାଶ ପ୍ରଭୁଅଙ୍ଗ
ମୁରାସୁର ଆଗେ ଦୃଶ୍ୟ ହୋଇଲେ ନୃସିଂହ।
ସମସ୍ତଙ୍କୁ ଦିଶନ୍ତି ନୃସିଂହ ବିଷ୍ଣୁମୟ
ମୁରକୁ ହୋଇଲେ ଦୃଶ୍ୟ କାଳଦେବ ପ୍ରାୟ।
ଏହା ଦେଖି ମୁରାସୁର ନିରେଖି ଚାହିଁଲା
ବିଷ୍ଣୁର ସହସ୍ରେ ପାଦ ଗଣି ହେଜିଗଲା।
ଗଣୁ ଗଣୁ ସସ୍ରେ ପୂରିଗଲା ଯେତେବେଳେ
ମହାଘୋର ରଡ଼ି ଏକ ଛାଡ଼ିଲା ସେକାଳେ।
ସ୍ୱର୍ଗ ମର୍ତ୍ତ୍ୟ ଯେ ପାତାଳ କମ୍ପିଗଲା ମହୀ
ନିଷ୍କମ୍ପ ହୋଇ ନୃସିଂହ ଛନ୍ତି ଉଭା ହୋଇ।
ସଂସାରରେ ଜୀବଜନ୍ତୁ ଯେତେ ପୂରିଥିଲେ
ତିରିଶ ଲିତା ପର୍ଯ୍ୟନ୍ତେ ଅଚେତ ହୋଇଲେ।
ତହିଁ ଉତ୍ତାରୁ ସକଳେ ଉଠିଲେ ଚେତାଇ
କନକାବତୀ ନଗ୍ରରେ ଶୁଭେ ରଡ଼ି ଯାଇ।
ମଦନାବତୀ ରାଣୀ ଯେ କର୍ଣ୍ଣ ଥିଲା ଡେରି
ସ୍ୱାମୀର ରଡ଼ି ଶୁଣନ୍ତେ ଜାଣିଲା ସୁନ୍ଦରୀ।
ବୋଇଲା ପତି ମୋହର ଗୃହୁଁ ଗଲାବେଳେ
ଶକୁନ କହିବା କଥା ଘଟିଲା ଏ କାଳେ।
ଏବେ ଅବଶ୍ୟ ପୂରିଲା ଆସି ମୃତ୍ୟୁକାଳ
ସହସ୍ର ପାଦ କାଢ଼ିଲେ ଅଙ୍ଗୁ ଆଦିମୂଳ।
ସେ ପାଦ ବାଜିଲେ ସ୍ୱାମୀ ନିଶ୍ଚେଁ ଯିବେ ମରି
ଆଜଯାଏ ସେ ପାଦ କେ ପାଇ ନାହିଁ ତରି।
ସେହି ପାଦପଦ୍ମ ଏକା ଭକ୍ତେ ଜାଣ ମିଳେ
ଅଣହେତୁ ମରଣ ଯେ ଅଗାଡ଼ିର ତୁଳେ।
ମୋର ସ୍ୱାମୀ ଭାଗ୍ୟପ୍ରାୟ ସଂସାରେ କେ ନାହିଁ
ଶ୍ରୀପାଦପଦ୍ମ ଲାଗିଣ ଯିବେ ମୁକ୍ତ ହୋଇ।
ଏରୂପେ ମନେ ପାଞ୍ଚି ମଦନାବତୀ ରାଣୀ
ତେତିଶକୋଟି ରାଣୀଏ ଗଲେ ରଡ଼ି ଶୁଣି।
ଶ୍ରୀପାଟ ମହାଦେଈକୁ ପୁଚ୍ଛିଲେ ଖବର
ମଦନାବତୀ ବୋଇଲେ ସ୍ୱାମୀକାର୍ଯ୍ୟ କର।
ରଡ଼ି ନୁହଇ ଏ ଜାଣ ଅଟଇ ମରୁଡ଼ି
କାଳିକି ସ୍ୱାମୀ ଖବର ପାଇବା ବାହୁଡ଼ି।
ଏଥୁ ଅନନ୍ତରେ ମୁରାସୁର କଥା ଶୁଣ
ସହସ୍ରେ ପାଦକୁ ଚାହିଁ ରହେ ନିରେକ୍ଷିଣ।

ବୋଇଲା ଜନ୍ମିଲେ ନିଜେ ବିଷ୍ଣୁ ଆସି ଏବେ
ବର ଦେଲାବେଳେ କହିଥିଲେ ସଦାଶିବେ।
ତେଣୁ ସେହି ବଲ୍ଲଭର ପୁତ୍ର ନ ମାନଇ
ମାନବବିଷ୍ଣୁ ବୋଲି ମୁଁ ଭୟ ନ କରଇ।
ପ୍ରତ୍ୟକ୍ଷେ ଦେଖିଲି ସ୍ୱୟଂବ୍ରହ୍ମ ଏବେ ଆସି
ଆଜଯାଏ ବ୍ୟର୍ଥେ ମାୟା ମଧ୍ୟେ ଥିଲି ପଶି।
ଧନଦ୍ରବ୍ୟ ଦାରାସୁତ ରାଜ୍ୟଘୋଷ ଯେତେ
ଦେହକୁ ଏ କାଳପାଶ ଅଟନ୍ତି ଜଗତେ।
ପକ୍ଷୀଠାରେ ସ୍ନେହ ଲୋଭ ଯେହ୍ନେ ପ୍ରବର୍ତ୍ତଇ
ସେହି ରୂପରେ ଧନର ଲୋଭେ ହୁଏ ମୋହି।
ଏଣୁକରି ଧନ ଦାରା ଦୁହେଁ ସମସରି
ଲୋଭେ ପ୍ରବର୍ତ୍ତି ଅବଶ୍ୟ ଯାଆନ୍ତି ସେ ମରି।
ଦାରା ତନୟ ଧନରେ ହୁଅନ୍ତି ଯେ ଯୋହି
ଚାକୁଣ୍ଡା ବୋଲି ତାହାକୁ ସଂସାରରେ କହି।
ବିଷ୍ଣୁ ପାଦରେ ନ ଭଜି ଧନେ ହୁଏ ମଜି
ଆଖି ବୁଜିଲେ ସଂସାରେ ସବୁ ଯାଏ ହଜି।
ଆଜି ପର୍ଯ୍ୟନ୍ତ ମୁଁ ମାୟା ମଧ୍ୟେ ଥିଲି ପଡ଼ି
ଏବେ ପାଇଲି ଯେ ପଦ୍ମପାଦ ଲୋଡ଼ି ଲୋଡ଼ି।
ଏତେ ବୋଲିଣ ଚାହିଁଲା ମୁର ନେତ୍ରଗତେ
ବୋଇଲାକ ପଦ୍ମପାଦ ଦେଖା ବେଳେ ମୋତେ।
ଶୁଣିକରି ମହାପ୍ରଭୁ ସସ୍ରେ ପାଦଯାକ
ରଖିଲେ ଛତ୍ର ଆକାରେ ଟେକି ପୁଣ୍ୟଶ୍ଲୋକ।
ରବି କିରଣ ପରାୟେ ଦିଶେ ପାଦଜ୍ୟୋତି
ବିଜୁଳି ଝଟକେ ଯେହ୍ନେ ଅନ୍ଧକାର ରାତ୍ରି।
ସହସ୍ରେକ ପାଦଯାକ ଦେଖି ମୁରାସୁର
ଶତେ ଯୋଜନ ପର୍ଯ୍ୟନ୍ତ ବଢ଼ିଲା ଶରୀର।
ବିଶ୍ୱରୂପ ଧରି ବିଷ୍ଣୁ ଆଗେ ହେଲା ଉଭା
ବୋଇଲା କିରୂପେ ମୋତେ ମାରିବ ଦେଖିବା
ବଢ଼ାଇଛ ପାଦଯାକ ଚଉକେ ଚଉକେ
ଏପାଦେ ମାରି ମୋତେ ନ ପାରି ପୁଣ୍ୟଶ୍ଲୋକେ।
କେତେ ପର୍ବତରେ ମୋତେ ଛେଚିଲ ଯେ ଧରି
ଲୋମବଙ୍କା 'ମୋହର କି ପାରିଲ ହୋ କରି।
ଛତ୍ରପ୍ରାୟ ଆଜ ତୋର ପାଦଯାକ ଧରି
ଉପାଡ଼ି ଫିଙ୍ଗିବି ଗୋଟି ଗୋଟି କୁଢ଼ କରି।
ଏତେ ବୋଲିଣ ଅସୁର ଉଠି ଅନ୍ତରାଳେ
ଚରଣ ଉପାଡ଼ିବାକୁ ଧାଏଁ କୋପାନଳେ।
ଶୂନ୍ୟପୁରେ ଥାଇକରି ଦେବକୁଳଯାକ
ମାର ମାର ବୋଲି ଉଚ୍ଚେ ଦେଲେ ଡାକହାକ
ଦେବଙ୍କ ଆକୁଳ ଶୁଣି ଦେବ ନରସିଂହ
ବୁଝିଲେ ତିନିପ୍ରହର ବେଳ ହେଲା ଭୋଗ।
ମୁରାସୁର ପରମାୟୁ ପୂରିଲାବେଳକୁ
ସହସ୍ର ଚରଣେ ଟେକି ଧଇଲେ ତାହାକୁ।
ବ୍ରହ୍ମଶକ୍ତି ପ୍ରାୟ ପିଟିଦେଲେ ପାଦ ଆଣି
ଧୂଳି ହୋଇ ଦୈତ୍ୟ ପଡ଼ିଗଲା ଶିରଝୁଣି।

ରେଣୁ ପରାୟେ ଭୂମିରେ ଭସ୍ମ ହୋଇଗଲା
ପ୍ରାଣକୁ ଛାଡ଼ିଣ ଯାଇ ବୈକୁଣ୍ଠେ ମିଳିଲା।
ବିଷ୍ଣୁ ସିଂହଦ୍ୱାରେ ପରବେଶ ହେଲା ଯାଇ
ଦେଖିଲା ବସିଛି ଦ୍ୱାରେ ଦାରୁଣ ତା ଭାଇ।
ମୁରାସୁରକୁ ଦେଖି ସେ ନମସ୍କାର କଲା
ଆଛା କଲୁ ଭାଇ ମୋର ଆସିଲୁ ବୋଇଲା।
ତୋହର ଯେଉଁ ଶବକୁ ଛାଡ଼ିଗଲୁ କେବୁ
ସେ ଶବେ ପଶିଲେ ଯାଇ ସବୁଙ୍କୁ ଚିହ୍ନିବୁ।
କୃଷ୍ଣ କରୁଣା ପଲ୍ୟଙ୍କେ ଶବ ଅଛି ଥୋଇ
ସୋହଂସ ବିଞ୍ଚଣା ଖଞ୍ଜି ଛନ୍ତି ପ୍ରଭୁ ତହିଁ।
ସେ ବିଞ୍ଚଣା ବାତ ବାଜି ଶବ ହୁଏ କଞ୍ଚା
ଦେଖ ତୋ ଶବମୂର୍ତ୍ତି କିରୂପେ ଅଛି ସଞ୍ଚା।
ଶୁଣିଣ ମୁରାସୁର ଶ୍ରୀବିଷ୍ଣୁଙ୍କୁ ପ୍ରଶଂସି
ବୋଇଲା କେଡ଼େ ଅଟନ୍ତି ପ୍ରଭୁ ବ୍ରହ୍ମରାଶି।
ଶବ ଗୋଟିକ ସାଇତି ରଖିଥିଲେ ମୋର
ଏତେ ବୋଲି ଶବେ ଯାଇ ପଶେମୁରାସୁର।
ଉଠି ବସିଲା ସଜୀବ ହୋଇ ଦେହ ଘେନି
ରହିଲେକ ଦ୍ୱାରପାଳ ହୋଇ ଭାଇ ବେନି।
ଏଥୁ ଅନନ୍ତରେ ଶୂନ୍ୟ ଦେବଗଣ ଆସି
ସହସ୍ରେ ପାଦକୁ ସ୍ତୁତି କରନ୍ତି ଯେ ବସି।
ବୋଲନ୍ତି ବିଷ୍ଣୁର ପାଦ ଏତେ ଅଛି ପୁଣି
ମୁରାସୁର 'ଲାଗି ଦେଖିଲୁ ଯେ ନେତ୍ର ବେନି।
ମୁରକୁ ଯେବେ ବର ଏରୂପେ ନ ଦିଅନ୍ତି
କିରୂପେ ଦର୍ଶନ ପାନ୍ତୁ ସସ୍ରେ ପାଦ ମୂର୍ତ୍ତି।
ସହସ୍ରେ ପାଦ ବୋଲିଣ ବେଦେ ଶୁଣିଥିଲୁ
ମୁରଲାଗି ଦେଖିକରି ଏବେ ମୁକ୍ତ ହେଲୁ।
ବ୍ରହ୍ମା ବୋଇଲେ କେତେ ମୁଁ ଭଜିଲି ବିଷ୍ଣୁଙ୍କୁ
ସହସ୍ରେ ପଦ୍ମ ଚରଣ ନେତ୍ରେ ଦେଖିବାକୁ।
ବେଦରେ ଶୁଣିଥିଲଇଁ ମନ୍ତ୍ର ସିନାପଢ଼ି
ସସ୍ରେପାଦ ବିଷ୍ଣୁ ଜନମିବେ ହୃଦୁଁ କାଢ଼ି।
ପ୍ରତ୍ୟକ୍ଷରେ ଏବେ ଆସି ପାଇଲା ଦର୍ଶନ
ମୁରଲାଗି ହେଲା ମୋର ସଫଳ ଜୀବନ।
ମୁର ଯଦ୍ୟପି ଏ ବର ମାଗି ନ ମରନ୍ତା
ଏ ପାଦ ଦେଖିଣ କେବେ ବ୍ରହ୍ମା କି ପାରନ୍ତା।
ଋଷିମାନେ ବୋଇଲେକ ଆମ୍ଭ କେଡ଼େ ଭାଗ୍ୟ
ଦେଖିଲୁ ସହସ୍ରେ ପାଦ ବିଷ୍ଣୁ ନେତ୍ରଯୁଗ।
ମୁର ଲାଗି ଏହି ପାଦ ଦରଶନ କଲୁ
ସମସ୍ତେ ଆଜଠାବରୁ ଚିରଜୀବୀ ହେଲୁ।
ଇନ୍ଦ୍ର ବୋଇଲେ କେତେ ମୁଁ ତପ କରିଥିଲି
ଏତେକାଳେ ପୁଣି ତାର ଫଳ ମୁଁ ପାଇଲି।
ମୁରର ଲାଗି ଦେଖିଲି ସସ୍ରେ ପଦ୍ମପାଦ
ଏଠାରୁ ଜନ୍ମିବେ ଦଶ-ଅବତାର ବୃନ୍ଦ।
ଦଶ-ଅବତାର ମୂର୍ତ୍ତି ଏହି ଅଙ୍ଗୁ ଆସି
ରୁହନ୍ତି ଏ ଅଙ୍ଗ ଲୀଳା ସାରି ପ୍ରଭୁ ମିଶି।

ଅଗ୍ନି ବୋଇଲେ ମୋହର ଅଟେ କେଡ଼େପୁଣ୍ୟ
ମୁରଲାଗି ଦେଖିଲି ମୁଁ ସସ୍ରେ ପାଦ ଚିହ୍ନ।
ଯମ ବୋଇଲା ମୋହର ପୂର୍ବ ପୁଣ୍ୟ ଭାଗ୍ୟୁଁ
ବିଷ୍ଣୁର ସହସ୍ରପାଦ ଦେଖେ ତପଯୋଗୁଁ।
ମୁରାସୁର ଲାଗିଣ ଏ ପୁଣ୍ୟ ପ୍ରକାଶିଲା
ଭଲ ବର ମାଗି ଏହି ପାଦେ ଲୀନ ହେଲା।
ବରୁଣ ବୋଇଲେ ହରି ପରମ ଦୟାଳୁ
ସହସ୍ରେ ପାଦ କାଢ଼ିଲେ ନିଜ ଉରୁମୂଳୁ।
ଦେଖିଲି ଏ ପାଦ ମୁହିଁ ମୁରଦୈତ୍ୟ ଲାଗି
ଚୌରାଶୀ ସିଦ୍ଧିଲେଖା ମୁଁ ହେଲି ମହାଭାଗୀ।
କୁବେର ବରୁଣ ଦେଖି କଲେ କେତେ ସ୍ତୁତି
ବୋଇଲେକ ମୁରଲାଗି ହେଲୁ ସର୍ବେ ମୁକ୍ତି।
ଭଲା ଏ ପାଦକୁ ଜଗିଥିଲା ମୁରାସୁର
ଏ ପାଦ ଘେନି କାହାକୁ ନ କରେ ନଜର।
ଏ ପାଦପଦ୍ମ ଲାଗି ସେ ମୋକ୍ଷ ହୋଇଗଲା
ସୁଗତି ଲଭିଲୁ ଆମ୍ଭେ ଦେଖି ସର୍ବେ ଭଲା।
ନବଗ୍ରହେ ବୋଇଲେକ ଧନ୍ୟ ପାଦଜ୍ୟୋତି
ମୁରାସୁର ଲାଗି ସର୍ବେ ଲଭିଲୁ ମୁକତି।
ଏ ମୁରାସୁରକୁ ଆମ୍ଭେ ଲାଖବିନ୍ଧାଠାରେ
ଧରିଣ ଶୂନ୍ୟରେ ଫିଙ୍ଗି ଛେଚିଥିଲୁ ଥରେ।
ଆମ୍ଭେ ଛେଚିଲା ମାତ୍ରେ କି ଭାଜନ୍ତା ତା ବୁକୁ
ଦେଖିଲୁ ମୁର ଲାଗି ଏ ସହସ୍ର ପାଦକୁ।
ଆଦିତ୍ୟ ଦେବତା ଦେଖି କଲେ ବହୁ ସ୍ତୁତି
ଧନ୍ୟ ପୁରୁଷ ସହସ୍ରେ ଶିର ଜଗଜ୍ଜ୍ୟୋତି।
ସହସ୍ରେ ମୁଖପଦ୍ମରେ ସସ୍ରେ ନାସା ରନ୍ଧ୍ର
ସହସ୍ରେ ନୟନେ ସସ୍ରେ ପ୍ରକାଶଇ ସୂର୍ଯ୍ୟ।
ଶ୍ରୀମୁଖ ଗୋଟିକେ ଦିଶେ ଦୁଇ ଦୁଇ ନେତ୍ର
ଏମନ୍ତେ ସହସ୍ରେ ପାଦ ଦିଶେ ପ୍ରଭୁ ଗାତ୍ର।
ସହସ୍ରେ ପାଦ ଯାକରେ ଦିଶେ ସୂର୍ଯ୍ୟଜ୍ୟୋତି
ଲକ୍ଷେ ଚନ୍ଦ୍ରରୁ ଅଧିକ ଶୀତ ପ୍ରକାଶନ୍ତି।
ଆମ୍ଭର ଭାଗ୍ୟ ଥିଲାରୁ ସସ୍ରେପାଦ ବିଷ୍ଣୁ
ମୁର ପ୍ରସାଦୁଁ ଦେଖିଲୁ ସର୍ବେ ଲୋକବିଷ୍ଣୁ।
ବାର ତିଥି ନକ୍ଷତ୍ର ଯେ ଯୋଗ କରଣାଦି
ଏମାନେ କଲେ ସ୍ତୁତି ଶ୍ରୀପାଦପଦ୍ମ ବନ୍ଦି।
ସହସ୍ରେ ପାଦର କଥା ବେଦେ ଥାଉଁ ଶୁଣି
ସହସ୍ରେ ଶିର ପୁରୁଷ ଶଏ ପଦ୍ମପାଣି।
ମୁର ଦଇତ୍ୟ ପ୍ରସାଦୁ ସସ୍ରେ ପାଦ କାଢ଼ି
ଆମ୍ଭେ ଏବେ ତରିଲୁ ସେ ପାଦପଦ୍ମେ ପଡ଼ି।
ଆଦିମୂଳ ବିଷ୍ଣୁ ଗର୍ଭୁ ପାଦଯାକ ଆଣି
ପ୍ରକାଶ କରନ୍ତେ ମୁର ଗଲା ସବୁ ଗଣି।
ପାଦକୁ ଆଶା କରିଣ ଆଜଯାଏ ଥିଲା
ଶ୍ରୀ ପାଦପଦ୍ମେ ବାଜିଣ ପ୍ରାଣ ବିସର୍ଜିଲା।
ଏହି ଅବତାର ଅନ୍ତେ ବାମନାବତାରେ
କାଢ଼ିବେ ଏ ପାଦମଧ୍ୟୁଁ ପାଦେ ବଳିଦ୍ୱାରେ।
ସେଠାରେ ପୁଣି ଯେ ନାଭିପଦ୍ମ ପାଦେ କାଢ଼ି
ବଳିର ମୁଣ୍ଡେ ପାତାଳେ ଦେଇ ଦେବେ ମାଡ଼ି।
ରଖିବେ ବୈକୁଣ୍ଠେ ନେଇ ତାକୁ ପାଦତଳେ
ପନ୍ଦରଲକ୍ଷ ଯୁଗ ସେ ରହିବ ପାତାଳେ।
ତହିଁ ଉତାରୁ ଇନ୍ଦ୍ର ସେ ହେବ ସ୍ୱର୍ଗେ ପୁଣି
ଏ କଥା ଆମ୍ଭେ ପୁରାଣେ ମଧ୍ୟ ଅଛୁ ଶୁଣି।
ଏହି ରୂପରେ ସକଳ ଦେବଯାକ ଆସି
ସହସ୍ରେ ପାଦେ କରନ୍ତି ସର୍ବେ ସ୍ତୁତି ବସି।
ବିଧାତା ବୋଇଲେ ପ୍ରଭୁ ହେ ପରମେଶ୍ୱର
ଏ ପାଦ ସଂହରି ଏବେ ନିଜରୂପ ଧର।
ପୃଥ୍ୱୀ ବଇରୀକୁ ନାଶି ରଖିଲ ଦେବଙ୍କୁ
ବ୍ରହ୍ମା ଶଙ୍କର ହେଲେ କେ ମାରନ୍ତା ମୁରକୁ।
ତୁମ୍ଭର କୃପାରୁ ଆମ୍ଭେ ସର୍ବେ ହେଲୁ ସୁଖୀ
ମୁର ଦାରୁଣ ମାରିଣ ପୃଥ୍ୱୀ ଗଲ ରଖି।
ଭକ୍ତର ପାଇଁ ଯାବତ ମୂର୍ତ୍ତି ତୁମ୍ଭେ ହୁଅ
ଦୁଷ୍ଟକୁ ସଂହାରି ଶିଷ୍ଟ ଲୋକେ ଦୟାବହ।
ମୁରକୁ ମାରି ମୁରାରି ନାମକୁ ବହିଲ
ମୁରାରି ନାମ ଗୋଟିକୁ ସଂସାରେ ରଖିଲ।
ମୁରାରି ନାମ ଗୋଟିକ ଅଭୀଷ୍ଟ ଯେ କରି
ଭଜନ କଲେ ସଂକଟୁ ନିଶ୍ଚେ ଯିବ ତରି।
ଏହିଠାରୁ ଯେ ମୁରାରି ନାମ ଗୋଟି ହେଲା
ମୁରାରି ନାମ ଗୋଟିକ ସଂସାରେ ରହିଲା।
ମୁରାରି ମଧୁସୂଦନ ବୋଲି ଯେ ଭଜିବ
ମହା ଆର୍ତ୍ତିରୁ ରଖିବେ ତାଙ୍କୁ ବାସୁଦେବ।
ଯାତ୍ରା ତୀର୍ଥରେ କୁମର ଯାର ଥିବ ହଜି
ବେଗେ ମିଳିବ ମୁରାରି ନାମ ଗୋଟି ଭଜି।
ଅଦ୍ଦୃଢ଼ ନାବରେ ଯେବେ ବସିଥିବ ପ୍ରାଣୀ
ତରିବ ତହୁଁ ମୁରାରି ନାମ ନିଶ୍ଚେ ଗୁଣି।
ନିଆଶ୍ରା ଭୂମିରେ ଯେ ପ୍ରଚଣ୍ଡ ବାତ ଯୋଗୁଁ
ଶ୍ରୀମୁରାରି ନାମ ଭଜି ତରିବ ଆତଙ୍କୁ।
ବିବାହ କାଳରେ ଯେବେ ବିବାଦ ଜନ୍ମିବ
ମୁରାରି ଚିନ୍ତା କରିଲେ କନ୍ୟା ପ୍ରାପ୍ତ ହେବ।
ଯଦ୍ୟପି ଭଜିବ ବନ୍ଧ୍ୟା ସ୍ତିରୀ ପୁତ୍ର ଚିନ୍ତି
ଚିନ୍ତିଲେ ମୁରାରି ନାମ ହେବ ପୁତ୍ରବତୀ।
ମଡ଼ଛି ଗର୍ଭକଷ୍ଟ ଯେ ଅବା ହୋଇଥିବ
ଭଜିଲେ ମୁରାରି ନାମ ତା ପୁତ୍ର ଜୀଇବ।
ଅଜ୍ଞାନ ସ୍ୱଭାବେ ଅରଜିବ ଯେବେ ପାପ
ଭଜିଲେ ମୁରାରିକୁ ସେ ପାପ ହେବ ଲୋପ।
ମୁରାରି ମଧୁସୂଦନ ଏହି ନାମ ଗୋଟି
ଯେ ନିତ୍ୟେ ଭଜିବ ତାର ଖଣ୍ଡିବ ଅରିଷ୍ଟି।
ଯେତେହେଁ ଲୋକଙ୍କଠାରେ ତୁମ୍ଭ ଦୟା ନାହିଁ
ସେହି କଥା ସାବଧାନେ କହେ ପୁଣ ମୁହିଁ।
ବିମୁଖ ଏ ତୁମ୍ଭ ପାଦପଦ୍ମେ ଯେତେ ପ୍ରାଣୀ
କଉଡ଼ି ଦେଇ ମାରନ୍ତି ଯେହ୍ନେ ବୋଦା କିଣି।
ତା ସପ୍ତପୁରୁଷ ନର୍କେ ପଡ଼ନ୍ତି ଯେ ଯାଇ
ଚୌରାଶୀ ଯୋନି ଭ୍ରମି ଜନମ ହେଉଥାଇ।
ଆବର କଥା ଗୋଟିଏ ଜଣାଉଛି ଆଗେ
ପୁରୁଷ ସ୍ତିରୀ ଯେତେକ ଚଳନ୍ତି ଅମାର୍ଗେ।

ଶୁଚିମନ୍ତ ଶରୀର ଯେ କେବେ ନ କରନ୍ତି
ନିରନ୍ତର ମିଥ୍ୟା ଭାଷା ଲୋକେ କହି ହୁନ୍ତି ।
ପରଦ୍ରବ୍ୟ ପରସ୍ତିରୀ ହରଣେ ଯା ମନ
କୁସ୍ଥାନରେ ବାସ କରି ସେବେ ନୀଚ ଜନ ।
ଯେ ପୁଣ ଦିନ ବଞ୍ଚେ ସୁକ୍ରିୟା କର୍ମହୀନେ
ଦକ୍ଷିଣ ମୁଖେ ଭୋଜନ କରେ ପ୍ରତିଦିନେ ।
ତ୍ରି ସନ୍ଧ୍ୟାରେ ହୋଇ ନିଦ୍ରା ଦିନେ କାମଭୋଗ
ଶ୍ରୀଗୁରୁ ଛାମୁରେ ଯେହୁ କରେ କୂଟମାର୍ଗ ।
ତାହାର ନୟନ ଅନ୍ଧହୁଏ ଜାଣ କାଳେ
ଏ କଥା ହେଜି ନପାରେ ସେହୁ କେତେବେଳେ ।
ଆବର କଥା ଗୋଟିଏ କହୁଅଛି ମୁହିଁ
କେ ପୁଣ ଯାଇଁ ଯେ ଭୂମି ପରେ ନ ଚାଲଇ ।
ମନେ ମନେ ପାଞ୍ଚଇ ମୁଁ ଅଟେ କେଡ଼େଲୋକ
ମୋର ବୋଲେ ସବୁ ଲୋକେ ଛନ୍ତି ହୋଇ ଏକ ।
ବୋଲେ ସଂସାରରେ ସବୁ କଥା ମୁହିଁ ଜାଣେ
ବିଷ୍ଣୁର ଭିଆଣ ଏହି ବୋଲି ନ ପ୍ରମାଣେ ।
ଯାବତ ପ୍ରକାରେ ଆତ୍ମା ମଧ ଗର୍ବକରେ
ମୁଁ ବଡ଼ ବୋଲି କାହାକୁ ନ ଆଣେ ନଜରେ ।
ଆପଣାର ଚକ୍ଷୁ ଥାଉଁ ପରେ ଅଧିକାର
ମଣିମା ମଣିମା ବୋଲି ଡାକେ ପରିଚାର ।
ବେନିଶ୍ରୁତି ହୃଦେ ଥାଉଁ କରେ ଅବଧାନ
ଶୁଣି ନଶୁଣିଲା ପ୍ରାୟ ଡେରିଥାଇ କର୍ଣ୍ଣ ।
ବେନି ବାହା ଥାଉଁ ଥାଉଁ ଆପଣା ହୃଦର
ପରକୁ ବୋଲୁଥାଇଁ ସୁବେଶ ବେଶ କର ।
ଆପଣା ପାଦ ଥାଉ ଯେ ପରପାଦେ ଚାଲେ
ଖଟ ଖଟୁଲିରେ ବସି ସୃଷ୍ଟିଯାକ ବୁଲେ ।
ପ୍ରତ୍ୟକ୍ଷରେ ସର୍ବଘଟେ ବିଜୟେ ନୃହରି
ଅଛନ୍ତିଟି ଆତ୍ମାରୂପେ ସବୁ ହୃଦେ ପୂରି ।
ଆପଣା ଆତ୍ମା ଚିହ୍ନି ନ ପାରେ ପରଦେହୁ
ପରଲୋକ ଆତ୍ମା ଚିହ୍ନି ପାରିବ ସେ କାହୁଁ ।
ପରଲୋକ ଆତ୍ମା ଚିହ୍ନି ପ୍ରଭୁପଣ କରେ
ସେ ପ୍ରାଣୀ ଜାଣ କେବେହେଁ ସଂସାରୁ ନ ତରେ ।
ଜୀବଟି ଶ୍ରୀ ଜଗନ୍ନାଥ ପ୍ରଭୁ ଚକ୍ରପାଣି
ରଜ ଗୁଣରୁ ଚିହ୍ନିକେ ନ ପାରନ୍ତି ଜାଣି ।
ମୁରାରି ନାମ ଗୋଟି ଯେ ନିତ୍ୟେ ଭଜୁଥିବ
ସର୍ବ ସଂକଟୁ ରଖିବେ ତାକୁ ବାସୁଦେବ ।
ତସକର ରାଜଦଣ୍ଡ ଗ୍ରହଗଣ ଆଦି
ଚଉଷଠି ରୋଗ ଘେନି ଖଣ୍ଡିହେବ ବ୍ୟାଧି ।
ଦୁର୍ଗମେ ପ୍ରଳୟେ ରଣେ ବଣେ ଶତ୍ରୁ ଭୟେ
ସର୍ପାଘାତ ବ୍ୟାଘ୍ରଭୟୁଁ ତରିବ ନିଶ୍ଚୟେ ।
ପିଶାଚ ଡାକିନୀ ଭୂତ ପ୍ରେତ ଅପମୃତ୍ୟୁ
ତରିବ ନିଶ୍ଚୟେ ଜାଣ ଆକାଶ ଉତ୍ପାତୁଁ ।
ପଥଶ୍ରାନ୍ତ ହୋଇଣ ଯେ ସ୍ମରୁଥିବ ଯେବେ
ଏଥୁ ତାରିଣ ରଖିବେ ତାକୁ ବାସୁଦେବେ ।
ବ୍ରହ୍ମାଙ୍କର ସ୍ତୁତି ଶୁଣି ଶ୍ରୀ ନୃସିଂହ ହରି
ଗର୍ଭରେ ସହସ୍ରେ ପାଦ ରଖିଲେ ସଂହରି ।
ଯେଉଁରୂପେ ପଦାକୁ କୂର୍ମ ଗ୍ରୀବା ଥାଏ ଖସି
ଲେଉଟିଣ କ୍ଷଣମାତ୍ରେ ଗର୍ଭେ ରହେ ପଶି ।
ସେହିପରି ନୃସିଂହ ଯେ ରୂପ ଗୋପ୍ୟକରି
ନିଜେ ଶ୍ରୀ ନୃସିଂହ ରୂପ ଧଇଲେ ନୃହରି ।
ପରମ ଦୟାଳୁ ସେହି ପୁରୁଷ ନୃସିଂହ
ବସିଲେ ଦେବଙ୍କ ସଙ୍ଗେ ଘେନି ସଭା ଆଗ ।
ଶ୍ରୀନୃସିଂହଗଣଯାକ ମୁର ସୈନ୍ୟ ମାରି
ଗୋଟିଏ ନରଖି ସବୁ ଦେଲେ ପଦାକରି ।
ଅସୁର ସଇନ୍ୟଯାକ ମାରି ହରିଗଣେ
ନୃସିଂହ ଛାମୁରେ ଆସି ମିଳିଲେ ତକ୍ଷଣେ ।
ଶ୍ରୀପାଦପଦ୍ମ ତଳରେ ସକଳେ ପ୍ରଣମି
ବୋଇଲେ ଯେ ଆଜ୍ଞା ହେବ କରିବୁ ହେ ସ୍ୱାମୀ ।
କେବଳ ଆଉ କନକାବତୀ ନଗ୍ର ଅଛି
ଆଜ୍ଞା ହୋଇଲେ ଯାଇଣ ଦେବୁ ସବୁ ପୋଛି ।
ଶୁଣିଣ ନୃସିଂହ ସ୍ୱାମୀ ଅଳ୍ପ ମନେ ହସି
ବୋଇଲେ ସେ ପୁରେ ଆଉ ଅଛନ୍ତି ରାକ୍ଷସୀ ।
ସେମାନଙ୍କ କଥାଯାକ ଆମ୍ଭେ ବୁଝୁ ସିନା
ତୁମ୍ଭେ ଏବେ ଗଣ୍ଡକୀର ତୀର୍ଥେ ଯାଅ କିନା ।
ଶାଳଗ୍ରାମ ହୋଇଣ ସେ ତୀର୍ଥେ କର ବିଜେ
ପୂଜନ୍ତୁ ବିପ୍ର ବୈଷ୍ଣବ ସାଧୁ ସବୁ ରାଜ୍ୟେ ।
ପୁରାଣେ ବିଷ୍ଣୁର ନାମ ଯେତେ ଅଛି ବସି
ସେହି ନାମ ବହି ଘେନୁଥିବଟି ତୁଳସୀ ।
ନାନାଦି ପ୍ରକାର ଷଡ଼ରସ ସୁଧା ଯେତେ
ଷୋଡଶୋପଚାରେ ପୂଜା କରନ୍ତି ସମସ୍ତେ ।
ଶ୍ରୀଆଜ୍ଞା ପାଇ ନୃସିଂହଗଣ ଗଲେ ଚଳି
ରହିଲେକ ଶାଳଗ୍ରାମ ତୀର୍ଥେ ଯାଇ ମିଳି ।



## ମୁରାସୁରର ଚିତାଗ୍ନିରେ ମଦନାବତୀ ସହିତ ରାଣୀମାନଙ୍କର ଦେହତ୍ୟାଗ

ଏଥୁ ଅନ୍ତରେ କନକାବତୀ ନଗରରେ
ଚାର ପେଷିଣ ବ୍ରହ୍ମାଏ ବାର୍ତ୍ତା ଦେଲେ ବାରେ ।
ବୋଇଲେ ତୁହି କନକାବତୀ ପୁରେ ଯିବୁ
ମୁରାସୁର ମଲା ବୋଲି ଖବର କହିବୁ ।
ବୋଲିବୁ ଦଶାହକ୍ରିୟା କର୍ମଯାକ ସାରି
ଆସିବେ ସମର ଭୂମିଠାକୁ ସର୍ବନାରୀ ।
ମୁରାସୁର ମରିବାର ଭୂମିଖଣ୍ଡ ଦେଖି
ସେହିଠାରେ ସତୀ ତୁମ୍ଭେ ହୁଅ ସର୍ବସଖୀ ।
ଶୁଣିଣ ଚାର କନକାବତୀ ନଗ୍ରେ ଗଲା
ମଦନାବତୀ ଆଗରେ ପ୍ରବେଶ ହୋଇଲା ।
ବୋଇଲା ଗୋ ମହାଦେଈ ବାର୍ତ୍ତା ବେଗେ ଶୁଣ
ତୁମ୍ଭ ସ୍ୱାମୀକୁ ମାଇଲେ ଆଜ ନାରାୟଣ ।
ବ୍ରହ୍ମାଏ କହି ଅଛନ୍ତି ଦଶକ୍ରିୟା ସାରି
ଯୁଦ୍ଧ ଭୂମିକୁ ଆସିବ ତୁମ୍ଭେ ସର୍ବନାରୀ ।

ଯେଉଁଠାରେ ଭୂମିରେ ମୁର ପ୍ରାଣ ଅଛି ପଡ଼ି
ସେଠାରେ ଯାଇଣ ସର୍ବେ ସତୀ ହୁଅ ପୋଡ଼ି।
ଏରୂପେ କହିଣ ଚାର ବାହୁଡ଼ି ଆସନ୍ତେ
ମଦନାବତୀ ଶୁଣିଣ କାନ୍ଦିଲା ମୁହୂର୍ତ୍ତେ।
ପତିବ୍ରତା ସ୍ତିରୀ ସେହି ଅଟେ ମହାଦେଈ
ବିଚାର କରିଲା ବସି ମନେ ଦମ୍ଭ ବହି।
ଅସମୟ ବେଳେ ଯେବେ ଅଧୈର୍ଯ୍ୟ ହୋଇବ
ତାହାର ବୁଦ୍ଧିକୁ ବଣା କରନ୍ତି ଦଇବ।
ଧୈର୍ଯ୍ୟବନ୍ତ ଲୋକର ଯେ ସବୁ ହୁଏ ସିଦ୍ଧି
ବୁଦ୍ଧିବଳରୁ ସେ ପ୍ରାଣୀ ଲଭେ କୋଟିନିଧି।
ପୂର୍ବ ଜନମେ ସ୍ୱାମୀ ମୋ ଘଟ ଆବୋରିଲେ
ତାଙ୍କ ବୁଦ୍ଧିବଳ ଜଣାଅଛି ମୋତେ ଭଲେ।
ନାରଦଋଷି ପୁରାଣ ପୋଥି ଦେଖୁ ଦେଖୁ
ଏହା କହିଥିଲେ ଶୁଣିଅଛି ତାଙ୍କ ମୁଖୁଁ।
ପ୍ରଚଣ୍ଡ ଚଣ୍ଡ ବୋଲିଣ ମୃତ୍ୟୁ ସେ ଲଭନ୍ତେ
ଯମରାଜାର ଛାମୁକୁ ନ୍ୟନ୍ତେ ଚିତ୍ରଗୁପ୍ତେ।
ଧର୍ମରାଜା ତାହାଙ୍କର ପାପପୁଣ୍ୟ ବୁଝି
ଲକ୍ଷେପଦ୍ମ ଯାଏ ପାପ ହେଲା ଦେଖୁଁ ପାଞ୍ଜି।
କାଢ଼ିଲେ ପୁଣ୍ୟ କେବଳ ଅଛି ତେରଦିନ
ପୁଚ୍ଛିଲେ ଆଗକି ଭୋଗ କରିବୁ ରାଜନ।
ପୁଣ୍ୟକୁ ଭୁଞ୍ଜିବୁ ପାପ ଭୁଞ୍ଜିବୁ କି କହ
ଯାହା ମାଗିବୁ ମୋଠାରୁ ତାହା ଲେଖିନିଅ।
ପୁଣ୍ୟ ତେରଦିନ ତୋର ସରିଗଲେ ପୁଣି
ସେଠାରୁ କରିବୁ ପାପଭୋଗ ନୃପମଣି।
ଶୁଣିକରି କଟୁଆଳ ମନେ ବୁଦ୍ଧି ପାଞ୍ଚି
ବୋଲେ ପାପ ଆଗ ମୁହିଁ ନ ମାଗିବି କିଛି।
ପୁଣ୍ୟକୁ ମାଗିଲେ ଅବା ପୁଣ୍ୟ କଲୁ କରୁ
ପାପରୁ ତରିଯିବି ଏ ସଂସାର ଭିତରୁ।
ଏଥୁ ଅନନ୍ତରେ ଯମ ବୋଲେ ବେଗେ ମାଗ
କଟୁଆଳ ବୋଲେ ଦିଅ ତୋର ରାଜ୍ୟ ଭୋଗ।
ତେରଦିନ ଯାଏ ମୁହିଁ ହେବି ନୂଆଯମ
ଦେଖ ବୁଦ୍ଧିବଳ ତାର କଲା କେଡ଼େ କର୍ମ।
ନାଶକଲେ ଦେବତା ଯେ ବର ଯାଚି ଦେଇ
ତେରଦିନ ଯାଏ ଦୁଃଖ ଯେତେ ଛନ୍ତି ପାଇ।
ସେ କଥା ପୁରାଣେ ହୋଇଅଛି ସବୁ ଲେଖା
ସେ ଚଣ୍ଡ ପ୍ରଚଣ୍ଡ ଜୟ ବିଜୟଟି ଏକା।
ସେ ଜୟ ବିଜୟ ମୁର ଦାରୁଣ ହୋଇଲେ
ବିଷ୍ଣୁଙ୍କୁ ନ ମାନି ଅଖଡ଼େ ସେ ନାଶଗଲେ।
ଲାଖ ବିନ୍ଧି ବିଭା ହୁନ୍ତି ମୋତେ ତହୁଁ ଆଣି
ତେତିଶକୋଟି ରାଣୀରେ କଲେ ପାଟରାଣୀ।
ମୋହର ମନର କଥା ଜାଣି ବେଦପତି
ବୋଇଲେ ରଣଭୂମିରେ ପଡ଼ ଆସି ସତୀ।
ଆମ୍ଭ ଭାଗ୍ୟପ୍ରାୟ ସୃଷ୍ଟି ମଧ୍ୟେ ନାହିଁ ଭାଗ୍ୟ
ସତୀ ଗଲାବେଳେ ଯାଇ ଦେଖିବୁ ନୃସିଂହ।
ପାଦେ ଶରଣ ପଶିବୁ ସର୍ବେ ତାଙ୍କୁ ଦେଖି
କେଡେ ସୁଦୟାରେ ଚାର ପେଷିଲେ ଅଷ୍ଟାଖି।

ଏତେ ପାଞ୍ଚଣ ଷୋଡ଼ଶୋତ୍ତର କର୍ମ କଲା
ଶୁକ୍ରଙ୍କୁ ଡକାଇ କରି କର୍ମରେ ବସିଲା।
ପ୍ରଥମ ଦିବସଠାରୁ ବାରଦିନ ଯାଏ
ଆପଣ କରାଇ ଦିଅ କର୍ମ ଦେବମୟେ।
ଏହା ଶୁଣି ଶୁକ୍ରଗୁରୁ ବୋଲେ ଆଚ୍ଛା ଆଚ୍ଛା
କର ଆଗୋ ସ୍ୱାମୀ କାର୍ଯ୍ୟ ପୁରା ମନୋବାଞ୍ଛା।
ସଂସାରେ ତୋହର ପ୍ରାୟ ଜଣେ ନାହିଁ ସ୍ତିରୀ
ବେନିକୁଳ ତାରି ସୃଷ୍ଟି ମଧ୍ୟେ ଯିବୁ ତରି।
ପୂର୍ବକାଳେ ମନୁ ବଂଶେ ଚଣ୍ଡ ରାଜାଙ୍କର
ପତ୍ନୀ ହୋଇଥିଲୁ ନାମ ତୋର ପ୍ରେମସାର।
ଏ ଅବତାରେ ମଦନାବତୀ ଆସି ହେଲୁ
ମୁରାସୁର ବଂଶଯାକ ତାରିକରି ଗଲୁ।
ଆରଜନ୍ମେ ହିରଣ୍ୟର ପତ୍ନୀ ତୁ ହୋଇବୁ
ଶୁଦ୍ଧାଙ୍ଗନା ହୋଇ ବ୍ରହ୍ମଜ୍ଞାନକୁ ଲଭିବୁ।
ସେ ଅବତାର ଅନ୍ତରେ ମନ୍ଦୋଦରୀ ହେବୁ
ରାବଣକୁ ବିଭା ହୋଇ ଭୋଗେ ବିଳସିବୁ।
ରାବଣେଶ୍ୱର ଅନ୍ତେ ତୁ ବିଭୀଷଣେ ବରି
ଚନ୍ଦ୍ର ସୂର୍ଯ୍ୟ ପ୍ରଳେ ଯାଏ ଥିବୁ ଦେହ ଧରି।
କହିଣ ଶୁକ୍ର ମଦନାବତୀର ହସ୍ତରେ
ପିଣ୍ଡ ପ୍ରଦାନ କରିଲେ ଦିନେ ଥରେ ଥରେ।
ଦେବଆଳୟେ ବ୍ରାହ୍ମଣ ଭୋଜନ କରାଇ
ତିଳ କାଞ୍ଚନ ଦାନ ସେ ଦେଲେ ମହାଦେଈ।
ପଣା ଛତ୍ର ଅନ୍ନଛତ୍ର ବହୁ ବିତରିଲେ
ଦ୍ୱାଦଶ ଦିନ ପର୍ଯ୍ୟନ୍ତେ ପିଣ୍ଡଦାନ କଲେ।
ବୈକୁଣ୍ଠ ଭୁବନୁ ମୁର ଦାରୁଣ ଯେ ଆସି
ପିଣ୍ଡ ପକାନ୍ତେଣ ଭୁଞ୍ଜିଦ୍ୟନ୍ତି ଶୂନ୍ୟେ ଗ୍ରାସି।
ନିଜ ଗୋତ୍ର ଉଦ୍ଧାରନ୍ତେ ପ୍ରେତଆତ୍ମା ବସେ
ଦ୍ୱାଦଶ ଦିନ ପର୍ଯ୍ୟନ୍ତ ପିଣ୍ଡଅନ୍ନ ଗ୍ରାସେ।
ଗୋଟି ଗୋଟି ଆତ୍ମାଜାଣ ଆତ୍ମା ଗୋତ୍ର ଏକ
ଗୋତ୍ରଟି ବେଦେ ଅଟନ୍ତି ଜାଣ ପିତୃଲୋକ।
ଶୁକ୍ରଙ୍କ ବାକ୍ୟ ମଦନାବତୀ ରାଣୀ ଶୁଣି
ଲକ୍ଷେକ ବ୍ରାହ୍ମଣ ବରି ଦେଲା ପଣାପାଣି।
ଦ୍ୱାଦଶାହ କର୍ମ ସାରି ସେ ମଦନାବତୀ
ଏବେ ଯାଉଛି ଶୁକ୍ରଙ୍କୁ ବୋଇଲା ଯେ ସତୀ।
ବୁଝିଲେ ତୁମ୍ଭେ ଆମ୍ଭର ଅଟ ଗୁରୁଦେବେ
କାହାକୁ କିସ ପଦାର୍ଥ ଦେଇଯିବି ଏବେ।
ଶୁକ୍ର ବୋଇଲେ ତୁହିତ ପରମ ଦୟାଳୁ
ତୋ ମନ ଇଚ୍ଛାରେ ତରିଯିବୁ ଧର୍ମବଳୁଁ।
ତୁହିଟି ଏତେବେଳରେ ଯେତେ ଦାନ ଦେବୁ
ମୃତାହ ପଞ୍ଚକ ଦେଇ ଗୋଦାନ କରିବୁ।
ତେତିଶକୋଟି ବ୍ରାହ୍ମଣ ଛନ୍ତି ତୋତେ ଜଗି
ତେତିଶକୋଟି ଗାବ ତୁ ଦିଅ ତାଙ୍କୁ ବେଗି।
ହୀରା ନୀଳା ମୁକୁତାଯେ ମାଣିକ୍ୟ ବୈଦୁର୍ଯ୍ୟ
ବ୍ରାହ୍ମଣଙ୍କୁ ଦେଲେ ସେହି ପାଇବେ ଐଶ୍ୱର୍ଯ୍ୟ।
ଶୁଣିଣ ମଦନାବତୀ ଶୁକ୍ର ଆଜ୍ଞାପାଇ
ଗୁଣେ ଶୁଣିଲାରୁ ଦଶଗୁଣେ ଦେଲା ବହି।

ତେତିଶକୋଟି ଗାବ ଯେ ବୈତରଣୀ କରି
ତେତିଶକୋଟି ରାଣୀଙ୍କ ହସ୍ତେ ଦେଲା ଧରି।
ଅନ୍ନପଣା ଛତ୍ର ଯେ ବିପୁଳ ଘର ଭୋଗ
ବ୍ରାହ୍ମଣମାନଙ୍କୁ ବରି ଦେଲା ଖଞ୍ଜି ଆଗ।
ଲକ୍ଷ ଲକ୍ଷ ସୁବର୍ଣ୍ଣ ସେ ଦାନ କରିଦେଲା
ରାଣୀମାନଙ୍କୁ ଘେନିଣ ସୁବେଶ ହୋଇଲା।
ଗଉରୀ ପୂଜା କରିଣ ଗଲେ ସର୍ବବାଳୀ
ବ୍ରାହ୍ମଣ ସ୍ତିରୀମାନେ ଯେ ଦ୍ୟନ୍ତି ହୁଳହୁଳି।
ରୋଳ ମୁକୁଟ ଯେ ମଥାପରେ ଛନ୍ତି ଖଞ୍ଜି
କପାଳେ ସିନ୍ଦୁର ବିନ୍ଦୁ ଦିଶଇ ବିରାଜି।
କୁଙ୍କୁମ ହଳଦୀ ଯେଝା ଦେହେ ବୋଳିହୋଇ
ନୟନରେ ସରୁରେଖା କଳାମାନ ଦେଇ।
କଣ୍ଠତଟେ ଚାପସରି ବାହେ ବିଦମୁଦି
ସୁବର୍ଣ୍ଣ ରତ୍ନଚୁଡ଼ି ସେ ହସ୍ତେ ଛନ୍ତି ପିନ୍ଧି।
ପାଦରେ ଅଳତା ବେଢ଼ ସମସ୍ତେ ଲଗାଇ
ପାଦରେ ଝୁମୁକି ବଳା ଶୁଭେ ରଣଝାଇଁ।
ଘୃତେ ଜର ଜର ହୋଇ କରି ସେ କାମିନୀ
ବ୍ରାହ୍ମଣ ପଢ଼ନ୍ତି ଆଗପଛେ ବେଦଧ୍ୱନି।
ଢ଼ୋଲ ଦମା ଟମକ ଯେ ବାଜେ ଘିଡ଼ି ଘିଡ଼ି
ଆସନ୍ତି ତେତିଶ କୋଟି ସତୀକୁଣ୍ଡେ ପଡ଼ି।
ଉତ୍ତର ଦ୍ୱାର ବାଟରେ ହୋଇଲେ ବାହାର
ଘୁମୁ ଘୁମୁ ଘୁମୁରା ଯେ ବାଜେ ନିରନ୍ତର।
ସମର ଭୂମିରେ ଆସି ମିଳି ସର୍ବବାଳୀ
ବ୍ରହ୍ମା ଆସି ସତୀକୁଣ୍ଡେ ଦେଲେକ ସେ ଜାଳି।
ତେତିଶ କୋଟି ରାଣୀକି ଏକ ଏକ କୁଣ୍ଡ
ଅଗୁରୁ ଚନ୍ଦନ କାଠ ତହିଁ ଖଣ୍ଡ ଖଣ୍ଡ।
ମୁରର ରକତ ପଡ଼ିଥିଲା ଯେତେ ଭୂମି
ତହିଁ ଅଗ୍ନି କୁଣ୍ଡମାନ ସ୍ଥାପି ବ୍ରହ୍ମା ଗମି।
ମୁରର ସନ୍ତକ ଯେତେ ଗୃହେ ଥିଲା ଥୋଇ
ସେ ସନ୍ତକ ଧରିଛନ୍ତି ସର୍ବ ମହାଦେଈ।
କେ ମାଳ ଧରିଛି କେହୁ ଧରେ ଜପାମାଳି
କେ ଛୁରି ଧରିଛି କେହୁ ଧରିଛି ଶାବେଳି।
ଚିରାଳ ଧରିଛି କେହୁ ଧରେ ଛତ୍ର ଟେକି
ଚାମର ଧରିଛି କେହୁ ଧରେ ପାଣ୍ଡୋଇକି।
କେ ବିଞ୍ଚଣା ଧରି କେହୁ ଧରେ ହୀରାବାଡ଼ି
ଏହ୍ନେ ସୁନ୍ଦରୀ ଆସିଲେ ବେଗେ ପଥମାଡ଼ି।
ଏଥୁ ଅନ୍ତେ ମଦନାବତୀ ଯେ ପାଟରାଣୀ
ଦେଖିଲା ରଣେ ବିଜୟ ଶ୍ରୀନୃସିଂହ ସ୍ୱାମୀ।
ଆବର ଦେଖି ବିଧାତା ଇନ୍ଦ୍ର ଋଷିଯାକ
ବଶିଷ୍ଠ ମାର୍କଣ୍ଡ ଋଷି ଅଗସ୍ତି ବାଲ୍ମୀକ।
ନାରଦ କପିଳ ବେଦବ୍ୟାସ ପରାଶର
ଆବର ଦେଖିଲା ବିଜେ କରିଛନ୍ତି ହର।
ତେତିଶକୋଟି ଦେବତା ଦଶଦିଗପାଳ
ସ୍ୱର୍ଗ ଅପସରୀ ଆଦି ଅଛନ୍ତି ସକଳ।
ଯମ ଅନଳ ବରୁଣ ପବନ ନୈରତ
କୁବେର ଚନ୍ଦ୍ର ସୂର୍ଯ୍ୟ ଯେ ବାସୁକୀ ଦୈବତ।
କନକାବତୀ ନଗ୍ରରେ ଆନ ସ୍ତିରୀ ଯେତେ
ସତୀ ଦେଖିବେ ବୋଲିଣ ଧାଇଁଛନ୍ତି କେତେ।
ସୁଧର୍ମା ସଭାକୁ ଆଣିଅଛି ବଜ୍ରପାଣି
ନୃସିଂହ ତହିଁରେ ବିଜେ କରିଛନ୍ତି ପୁଣି।
ଆଉ ସର୍ବ ଦେବ ଛନ୍ତି ସଭାମଧ୍ୟେ ବସି
ଗରୁଡ଼ ସୁଜାଣ ମନ୍ତ୍ରୀ କର୍ଣ୍ଣାଟେଶ ମିଶି।
ନୃସିଂହ ବାମଭାଗରେ ବିଜେ ଶେଷଦେବ
ମାତଳି ସହିତେ ତହିଁ ବସିଛନ୍ତି ସର୍ବ।
ମଦନାବତୀ ଆଦି ତେତିଶ କୋଟି ରାଣୀ
ତିନିଥର ଦେବସଭା ବୁଲିଲେ ତରୁଣୀ।
ପ୍ରଦକ୍ଷିଣ କରି ଦେବମାନଙ୍କୁ ସେ ଚାହିଁ
ବୋଇଲେ ଆମ୍ଭଙ୍କୁ ଏବେ କର ତୁମ୍ଭେ ତ୍ରାହି।
ଆସିଲୁ ଦୁର୍ବଳ କର୍ମ ସାରି ଦେହ ଛାଡ଼ି
ଏ ଭାଗ୍ୟ ସୃଷ୍ଟି ମଧ୍ୟେ କେ ପାଇ ନାହିଁ ଲୋଡ଼ି।
ତେତିଶକୋଟି ଦେବତା ବ୍ରହ୍ମା ବିଷ୍ଣୁ ହର
ଅଠାଶୀ ସହସ୍ର ବସିଅଛ ମୁନିବର।
ଦଶଦିଗପାଳ ଆବର ଯେ ସୁରପତି
କଲ୍ୟାଣ କର ପଡ଼ୁଛୁ ସର୍ବେ ଆମ୍ଭେ ସତୀ।
ସେ ମଦନାବତୀ ରାଣୀ ଚାହିଁ ନୃସିଂହଙ୍କୁ
ବୋଲେ ଦରଶନ କଲି ପରମ ରୂପକୁ।
ନଗର ଭିତରେ ସିନା ପଡ଼ିଥାନ୍ତି ସତୀ
ଭେଟିଲି ବ୍ରହ୍ମାଙ୍କ ଦୟାହେତୁ ଜଗଜ୍ୟୋତି।
ସ୍ୱାମୀ ମୋହର ତୁମ୍ଭଙ୍କୁ ନ ମାନିଲା ଘେନି
ଖାଇଲେ ମାଡ଼ ଲୋଟାଏ ନ ହୋଇଣ ତୁନି।
କେତେହେଁ ସମର କଲ କାହିଁରେ ନ ମଲେ
କେବଳ ପାଦପଦ୍ମକୁ ଚାହିଁ ରହିଥିଲେ।
ସେ ପଦପାଇ ଏବେ ସେ ଗଲେ ଭବୁଁ ତରି
ମୋତେ ଏବେ ତ ସୁଗତି କରନ୍ତୁ ଶ୍ରୀହରି।
ପ୍ରଭୁ ବୋଇଲେ ଆମ୍ଭେ ତୋ ମନଅଛୁଁ ଜାଣି
ପତିବ୍ରତା ଯୁବତୀ ତୁ ନାରୀ ଶିରୋମଣି।
ଚାରିଜନମ ପୂରିବ ତୋର ଯେତେବେଳେ
ଚନ୍ଦ୍ର ସୂର୍ଯ୍ୟ ଥିବାଯାଏ ଥିବୁ ରବିତଳେ।
ବ୍ରହ୍ମାଏ ବୋଇଲେ ମାଗୋ ସତୀ ଏବେ ପଡ଼
ସ୍ୱାମୀ ମଲା ସ୍ଥାନେ ସ୍ଥାପିଅଛୁ ଅଗ୍ନି କୁଢ଼।
ଶୁଣିଣ ମଦନାବତୀ ବ୍ରହ୍ମାପାଦେ ସେବି
ବସିଲେ ହରଙ୍କୁ ପାଦେ ସେବି ବିଷ୍ଣୁ ଭାବି।
ଆସନ ଶୁଦ୍ଧି ସେ କରି ଯୋଗମାର୍ଗେ ବସି
ଆତ୍ମାକୁ ସୂତ୍ରରେ ଧରି ପରଂହସେ ମିଶି।
ଆବର ଯେ ଲିଙ୍ଗ ନାଭି ହୃଦୁ କଣ୍ଠ ଯାଏ
ଲଲାଟଚକ୍ରରେ ଥୋଇ ବ୍ରହ୍ମେ କରି ଲୟେ।
ପଞ୍ଚବନନମାନଙ୍କୁ ଏକ ମାର୍ଗେ ଧରି
ପ୍ରାଣାପାନ ବ୍ୟାନୋଦାନ ସମାନ ଏ ସରି।
ଏହି ରୂପେ ଏକକରି ଅଗ୍ନିକୁଣ୍ଡେ ବସି
ହା ହା କୃଷ୍ଣ ବୋଲି ପ୍ରାଣ ଛାଡ଼େ ଶୁଭ୍ରକେଶୀ।
ମଦନାବତୀ ଏରୂପେ ସତୀ ହୋଇଯାନ୍ତେ
ପଡ଼ିଲେ ତେତିଶକୋଟି ରାଣୀ ଅଗ୍ନି ଖାତେ।

ତସଙ୍ଗ ହୋଇ ସରବେ ସ୍ୱାମୀକାର୍ଯ୍ୟ କରି
କିନ୍ନରୀ ହୋଇ ରହିଲେ ସ୍ୱର୍ଗେ ସର୍ବନାରୀ ।
ମଦନାବତୀ ବୈକୁଣ୍ଠେ କଲା ଯାଇ ବାସ
ଶ୍ରୀନୃସିଂହ ଶରଣ ମୁଁ ପୀତାମ୍ବର ଦାଶ ।



## କନକାବତୀ ପୁରରେ କର୍ଣ୍ଣାଟେଶ୍ୱରର ଅଭିଷେକ

ଏଥୁ ଅନନ୍ତରେ ନୃସିଂହ ଯେ ମହାପ୍ରଭୁ
ବ୍ରହ୍ମାଙ୍କୁ ବୋଇଲେ ଏବେ ଶୁଣ ହେ ଆତ୍ମଭୂ ।
ରାଜତ୍ୱ ବେଳରେ ଆମ୍ଭେ ଯେଉଁ ସତ୍ୟକଲୁଁ
କର୍ଣ୍ଣାଟେଶ୍ୱରକୁ ରାଜା କରିବା ବୋଇଲୁଁ ।
କନକାବତୀ ଏବେ ତ ହେଲା ଅଣପାଟ
ମୁର ମୃତ୍ୟୁ ହେଲା ଭାଜିଗଲା ସବୁ ନଟ ।
ପୂର୍ବରେ ଏ କର୍ଣ୍ଣାଟର ଅଟେ ରାଜ୍ୟଘୋଷ
ଆନକୁ ଦେଲେ ଲାଗନ୍ତା ସିନା ମୋତେଦୋଷ ।
ବ୍ରହ୍ମା ବୋଇଲେ ସ୍ୱାମୀ ଏକଥା ହେଲେସତ୍ୟ
କର୍ଣ୍ଣାଟକୁ ଜିଣି ରାଜା ହେଲା ମୁରଦୈତ୍ୟ ।
ଏବେ ତ ଶ୍ରୀଆଜ୍ଞା ଗୋଟି ଫିଟିଲାଣି ତାକୁ
କନକାବତୀ ନଗ୍ରରେ ରାଜା ହୋଇବାକୁ ।
ବୁଝିଲେ ମୁରର ଦ୍ରବ୍ୟ ତହିଁ ଅନ୍ତ ନାହିଁ
ରଖିଛି କେତେ ମଣ୍ଡଳୁ ଆଣି ଦ୍ରବ୍ୟ ତହିଁ ।
ଯାହାକୁ ଯେତେବେଳରେ ଥାଇ ଯେଉଁଯୋଗ
ବିଧାତା ଆଣି ତାହାକୁ କରାନ୍ତି ବୈଭୋଗ ।
ଏବେ ଆପଣ ସ୍ୱହସ୍ତେ ଶାଢ଼ୀ ଦେବା ହେଉ
କନକାବତୀ ନଗ୍ରରେ ରାଜା ହୋଇ ରହୁ ।
ନୃସିଂହ ବୋଇଲେ ମନ୍ତ୍ରୀ ସୁଜାଣ ହୋ ଶୁଣ
ଗରୁଡ଼କୁ ଘେନି ତୁମ୍ଭେ ଯାଅ ବେନିଜଣ ।
ଶେଷଦେବ ମଧ୍ୟ ତୁମ୍ଭ ସଙ୍ଗତରେ ଯାନ୍ତୁ
ଶ୍ରୀସିଂହାସନେ ବସାଇ ଶାଢ଼ୀ ବାନ୍ଧିଦିଅନ୍ତୁ ।
କର୍ଣ୍ଣାଟେଶ୍ୱର ରାଜ୍ୟର ତିନିପଦ୍ମ ସୈନ୍ୟ
ଶଙ୍କର ନାମରେ ତାର ଅଛି ମନ୍ତ୍ରୀ ଜାଣ ।
ଭାରିଯା ତନୟ ପୁତ୍ର ସଙ୍ଗେ ତାର ଆଣି
ଶରଣ ପଶିଣ ସେବିଥିଲା ନୃପମଣି ।
ସବୁଙ୍କୁ ସଙ୍ଗରେ ଘେନି ଶୀଘ୍ରେ ଏବେ ଯାଅ
ଶୁଣିଣ କର୍ଣ୍ଣାଟ ରାଜା ହେଲେ ହୃଷ୍ଟମୟ ।
ଶ୍ରୀନୃସିଂହ ସ୍ୱାମୀକି ଯେ ବହୁସ୍ତୁତି କରି
ବାହାରିଲେ କଟକକୁ ସ୍ୱକୁଟୁମ୍ବ ଧରି ।
ସୁଜାଣ ମନ୍ତ୍ରୀ ଗରୁଡ଼ ଶେଷଦେବ ଆଦି
ଦେଖନ୍ତି ଶୂନ୍ୟରେ ଥାଇ ସବୁ ବିବୁଧାଦି ।
ଶଙ୍ଖ ମହୁରୀ କାହାଳି ଝାଞ୍ଜ ଢୋଲ ବାଜେ
ସିଂହାସନରେ ବସିଲେ ଯାଇ ନୃପରାଜେ ।
ଅଭିଷେକର ଯୋଗାଡ଼ ଦ୍ୱିଜମାନେ ଆଣି
ତୀର୍ଥଜଳରେ ସ୍ନାନ କରାଇ ନୃପମଣି ।
ଅଭିଷେକ କଲେ ଉଚ୍ଚେ ପଢ଼ି ନିଜଗୋତ୍ର
ଶଙ୍କରମନ୍ତ୍ରୀ ଟେକିଲେ ଶିରେ ଦଣ୍ଡଛତ୍ର ।
ବନ୍ଦାଇଲେ ଦୂର୍ବାକ୍ଷତ ଶେଷଦେବ ଆଣି
ମଥାରେ ଶାଢ଼ୀ ବାନ୍ଧିଲେ ପୁଣି ସପ୍ତଫଣି ।
ରାଜାର ଅମାତ୍ୟମାନେ ଢାଳନ୍ତି ଚାମର
କରନ୍ତି ଯେ ବେଦଧ୍ୱନି ତହିଁ ବିପ୍ରବର ।
ସୁଲଭ କାମିନୀମାନେ ଦ୍ୟନ୍ତି ହୁଳହୁଳି
ମଙ୍ଗଳ ଶବଦ ବାଦ୍ୟ ବାଜେ କରତାଳି ।
କର୍ଣ୍ଣାଟେଶ୍ୱର ରାଜନ ଅଭିଷେକ ସାରି
ବନ୍ଦାପନାର ବିଧାନ କଲେ ଦଣ୍ଡଧାରୀ ।
ପାଟଗଜ ଆଉ ପାଟବାରୁ ଲାଗି ହୋଇ
ନଗ୍ରଯାକକୁ ବୁଲିଣ ଦେଖିଲେ ନୃସାଇଁ ।
ମୂର୍ଦ୍ଧନାଭିଷେକୀ ଯହୁଁ ହେଲେ ନୃପମଣି
ମନେ ପାଞ୍ଚିଲେ ଧନ୍ୟ ନୃସିଂହ ଚକ୍ରପାଣି ।
ହରିଙ୍କଠାରେ ଶରଣ ଯେବେ ନ ପଶନ୍ତି
ଆନ ଲୋକଠାରେ ଥିଲେ ନିଶ୍ଚେ ମରିଥାନ୍ତି ।
ପାଇଲି ନୃସିଂହ ପ୍ରଭୁ ଲାଗି ରାଜ୍ୟଘୋଷ
ଅଟନ୍ତି ଅକର୍ମ କର୍ମଦାତା ଜଗଦୀଶ ।
ଏଥୁଅନ୍ତେ ଯେ ସରନ୍ତେ ରାଜା ଅଭିଷେକ
ସେବା କଲେ ସେ କନକାବତୀ ନଗ୍ରଲୋକ ।
ପୂର୍ବକାଳେ ସାଆନ୍ତ ଏ ଅଟନ୍ତି ଆମ୍ଭର
ଅଚିହ୍ନାକୁ ସେ ଚିହ୍ନାଇ କରନ୍ତି ତତ୍ପର ।
ମୁରଦୈତ୍ୟ ଲାଗି ପଳାଇଲେ ଏ ତ ଡରି
ମୁରାସୁର ମଲାରୁ ଏ ହେଲେ ଦଣ୍ଡଧାରୀ ।
ଏହିରୂପେ କୁହାକୁହି ହୁଅନ୍ତେ ଲୋକେ ସର୍ବେ
ପ୍ରଶଂସା କରନ୍ତି ପୁର ଦେଖି ଶେଷଦେବେ ।
ଗରୁଡ଼ ବୋଲେ ଏଥକୁ ସ୍ୱର୍ଗ ନୁହେଁ ସରି
କେତେ ଦ୍ରବ୍ୟ ଆଣି ମୁର ରଖିଥିଲା ଭରି ।
ସୁଜାଣ ବୋଇଲେ ଆହୋ ଏ କଥା ପ୍ରମାଣ
ଲୋଭରେ ପଡ଼ିଣ ବୁଡ଼ିଗଲା ଦୈତ୍ୟ ଜାଣ ।
ଶେଷଦେବ ବୋଇଲେଙ୍କ ଚାଲ ଏବେ ଯିବା
ନୃସିଂହ ପ୍ରଭୁଙ୍କୁ ଯାଇ ଦର୍ଶନ କରିବା ।
କର୍ଣ୍ଣାଟେଶ୍ୱର ବୋଇଲେ ଏ କଥା ପ୍ରମାଣ
ଦେଖା ଦରଶନୀ କିଛି ନେଇଥିବା ପୁଣ ।
ଶଙ୍କର ମନ୍ତ୍ରୀଙ୍କୁ ଚାହିଁ ପୁଣି ଆଜ୍ଞା ଦେଲେ
ଭଣ୍ଡାର ଅଧିକାରୀକୁ ଡକାଇ ଆଣିଲେ ।
ବୋଇଲେ ଅପୂର୍ବ ଦ୍ରବ୍ୟ ଧନ ଆସ ଘେନି
ନୃସିଂହ ଛାମୁରେ ଦେବା ଦେଖାଦରଶନୀ ।
ଭଣ୍ଡାର ଅଧିକାରୀ ଯେ ଶୁଣି ତୋଷ ହୋଇ
ଅନେକ ଦ୍ରବ୍ୟ କାଢ଼ିଣ ଆଣିଲା ପକାଇ ।
ବାଟଯାକେ ପଟୁଆର ପତନୀ ପକାଇ
ଅମୂଲ୍ୟ ରତନମାନ ଆଣନ୍ତି ବୁହାଇ ।
ଅନେକ ଲୋକ ହାତରେ ବୁହାଇଲେ ଧନ
ଦେଖିଣ କର୍ଣ୍ଣାଟେଶ୍ୱର ହେଲେ ତୋଷମନ ।
ରଥ ଗଜଅଶ୍ୱ ସୈନ୍ୟ ସଙ୍ଗତେ ଚଳଇ
ଚଳିଲେ କର୍ଣ୍ଣାଟେଶ୍ୱର ମନହୃଷ୍ଟ ହୋଇ ।
ଗରୁଡ଼ ଶେଷଦେବ ଯେ ସୁଜାଣ ସହିତେ
ନୃସିଂହ ଛାମୁରେ ଯାଇ ମିଳିଲେ ସମସ୍ତେ ।

ଶେଷଦେବଙ୍କୁ ସବୁରି ଆଗରେ ଚଳାଇ
ନୃସିଂହ ପାଦେ ଦର୍ଶନ କଲେ ବେନି ଯାଇ।
କର୍ଣ୍ଣାଟେଶ୍ୱର ରାଜନ ବହୁ ସ୍ତୁତି କରି
ଭକତିରେ ପୂଜା କଲେ ବସିଣ ନୃହରି।
ଶ୍ରୀନୃସିଂହ ଘେନି ମୁହିଁ ହେଲି ରାଜେଶ୍ୱର
ପରମ ଦୟାଳୁ ଏହି ପ୍ରଭୁ ଚକ୍ରଧର।
ଶେଷ ବୋଇଲେ ଶୁଣିବା ପ୍ରଭୁ ଭାବଗ୍ରାହୀ
ସଂସାରେ କନକାବତୀ ପ୍ରାୟ ରାଜ୍ୟ ନାହିଁ।
କେତେ ପୁରରୁ ଅପୂର୍ବ ଦ୍ରବ୍ୟ କେତେ ଆଣି
ନବରରେ ମୁରାସୁର ଥୋଇଥିଲା ପୁଣି।
ଅଳକାପୁରୁଁ ଦ୍ୱିଗୁଣ ପୁର ଶୋଭା ଦିଶେ
ଦେଖିଲୁ ମାତ୍ର କରି ନ ପାରୁ ପଉରୁଷେ।
ସୁଜାଣ ମନ୍ତ୍ରୀ ବୋଇଲା ଏ କଥା ପ୍ରମାଣ
ନବରଯାକ ହୀରାରେ ହୋଇଛି ଘଟନ।
ପ୍ରଭୁ ବୋଇଲେ ପୃଥ୍ୱୀରେ ଯେତେ ଦ୍ରବ୍ୟ ଅଛି
ହରିଙ୍କର ସେ କାହାରି ନୁହଇ ତ କିଛି।
ଯାହାକୁ ଯା ସଂସାରେ ସେ ଖଞ୍ଜି ଦେଇଥାନ୍ତି
ତାହା କେହୁ ଆନକରି କେବେ ନ ପାରନ୍ତି।
ମୁରକୁ କେତେକ ଦିନ ଥିଲା ଜାଣ ଯୋଗ
ତେତିକି ଦିନ ସଂସାରେ କରିଗଲା ଭୋଗ।
ଭଲ ଲୋକକୁ ସଂସାରେ କହନ୍ତି ଯେ ଭଲ
ବୋଲାନ୍ତି ତ ମନ୍ଦଲୋକ ମଲେ ଗଲା ଶଲ।
ଯେତେକ ଦ୍ରବ୍ୟ ସଂସାରେ ସବୁଘରେ ଅଛି
ଗଲାବେଳେ ତା କାହାର ନୁହଇ ତ କିଛି।
ଶୁଣିଣ ସୁଜାଣମନ୍ତ୍ରୀ ବୋଲେ ସତ୍ୟ ସତ୍ୟ
ଏ ଅନ୍ତେ ଶୁଣ ନାରଦ ଋଷି ତପୋବନ୍ତ।
ଶ୍ରୀନୃସିଂହ ମହାପ୍ରଭୁମୁରାସୁର ମାରି
ସେହିପୁରେ କର୍ଣ୍ଣାଟକୁ ଦେଲେ ରାଜାକରି।
ମାତଳିକୁ ବୋଇଲେକ ହେ ଦେବ ସାରଥି
ତୁମ୍ଭ ଘେନି ମୁଁ ଜିଣିଲି ରଣେ ମୁରକ୍ଷତ୍ରୀ।
ନନ୍ଦିଘୋଷ ସ୍ୟନ୍ଦନକୁ ଘେନି ଏବେ ଯାଅ
ବାସବକୁ ଜଣାଇଣ ସ୍ୱର୍ଗେ ନେଇ ଥୁଅ।
ଏହା ଶୁଣି ମାତଳି ଯେ ଯୋଡ଼ି ବେନିକର
ବୋଇଲେ ତୁମ୍ଭ ସର୍ଜନା ଅଟେ ଏ ତ୍ରିପୁର।
ଆମ୍ଭର ସମାନ କୋଟି କୋଟି ଲକ୍ଷ ହେଲେ
ମୁରକୁ କେହୁ ମାରନ୍ତା ସସ୍ରେଯୁଗ ଗଲେ।
ଏ ରଥରେ ଆନଜନ ନ ପାରେ କେ ବସି
ଚାରିଯୁଗେ ତୁମ୍ଭର ଏ ଆସନ ପ୍ରକାଶି।
ଏରୂପେ ପ୍ରଭୁ ଛାମୁରେ ଜଣାଇ ମାତଳି
ନନ୍ଦିଘୋଷ ରଥ ଧରି ସ୍ୱର୍ଗେ ଗଲା ଚଳି।
ବ୍ରହ୍ମାଙ୍କୁ ଚାହିଁ ନୃସିଂହ ପୁଣି ଆଜ୍ଞା କଲେ
ବିଜୟା ରଥ ସମ୍ଭାଳ ତୁମ୍ଭେ ଏବେ ଭଲେ।
ମୁରାସୁର ତ ମରିଲା ରଥ ମୁକ୍ତ ହେଲା
ତୁମ୍ଭଙ୍କୁ ସେ ଦେବଯାନ କଥା ଲାଗେ ଭଲା।
ଶ୍ରୀମୁଖୁଁ ଶୁଣିଣ ବ୍ରହ୍ମା ବୋଇଲେ ପ୍ରମାଣ
ସେ ରଥ କଥା ଲାଗିଲା ମୋତେ ଏବେ ଜାଣ।

ଏତେ ବୋଲିଣ ବ୍ରହ୍ମାଏ ଗଲେ ରଥ ପାଶ
କହିଲେ କର୍ଣ୍ଣରେ ତାର ମନ୍ତ୍ର ଜୀବନ୍ୟାସ।
ବୋଇଲେ କହିବା ତୋତେ ଦେବଯାନ ଶୁଣ
ସଂସାରେ ଯେ ତିନିଗୋଟି ରଥ ଅଟେ ଟାଣ।
ତୁମ୍ଭେ ତିନି ଅଟ ବ୍ରହ୍ମା ବିଷ୍ଣୁ ହରଙ୍କର
ବିଜୟା ରଥକୁ ଭୋଗ କରନ୍ତି ଈଶ୍ୱର।
ନନ୍ଦିଘୋଷ ସ୍ୟନ୍ଦନ ତ ବିଷ୍ଣୁ ଭୋଗ ଅଟେ
ଭୋଗ କରନ୍ତି ପୁଷ୍ପକ ଯାନ ସୁରଜ୍ୟେଷ୍ଠେ।
ତୁ ଏବେ ବିଜୟା ରଥ କୈଳାସକୁ ଯାଅ
ସଦାଶିବଙ୍କୁ ମାନିଣ ସବୁକାଳେ ଥାଅ।
ଶୁଣିଣ ବିଜୟାରଥ ବ୍ରହ୍ମା ଆଜ୍ଞା ପାଇ
କୈଳାସ କନ୍ଦରେ ରହେ ମହାସୁଖେ ଯାଇ।
ଶେଷଦେବ ବୋଇଲେକ ଶୁଣ ପଦ୍ମନେତ୍ର
ଦେବଙ୍କୁ ମେଲାଣି କର ଚଳନ୍ତୁ ସ୍ୱକ୍ଷେତ୍ର।
ନଗରକୁ ଏବେ ଚାଲ ଯିବା ସଜ ହୋଇ
ଦର୍ଶନ କରିବା ପିତାମାତା ବେନି ଭାଇ।
ତେତିଶକୋଟି ଦେବତା ଛନ୍ତି ଏଥେ ଆସି
ବ୍ରହ୍ମା ରୁଦ୍ର ଇନ୍ଦ୍ର ଯେ ଅଠାଶୀସସ୍ର ଋଷି।
ଏଡ଼େ ଦୈତ୍ୟକୁ ମାଇଲ ତୁମ୍ଭେ ଭାବଗ୍ରାହୀ
ଏମାନେ ଆମ୍ଭଙ୍କୁ କିଛି ନ ଗଲେ ତ ଦେଇ।
ଶୁଣିଣ ନୃସିଂହ ସ୍ୱାମୀ ଅଳ୍ପ ମନେ ହସି
ବ୍ରହ୍ମାଙ୍କୁ ବୋଇଲେ ଶେଷ କି ବୋଲନ୍ତି ଆସି।
ଶୁଣି ବେଦବ୍ରହ୍ମା ଯୋଡ଼ିକରି ବେନି କର
ବୋଇଲେ ତୁମ୍ଭଙ୍କୁ କିସ ଦେବୁ ଆମ୍ଭେ ଛାର।
ସଚରାଚର ଯାକରେ ଯେଉଁ କର୍ତ୍ତା ହରି
କେବଳ ଏ ବର ଦିଅ ଯିବୁ ସେବାକରି।
ତୁମ୍ଭେ ଯେତେ ଅବତାର ସଂସାରେ ହୋଇବ
ବିପ୍ର ବ୍ୟତୀତ ଆନ କେ ସେବା ନ କରିବ।
ବ୍ରାହ୍ମଣ ମାନେ ଛୁଇଁଣ ସ୍ନାନ କରାଇବେ
ତୁମ୍ଭ ଷୋଡ଼ଶୋପଚାର ପୂଜାରେ ଯେ ଥିବେ।
ବ୍ରାହ୍ମଣମାନେ ରାନ୍ଧିଣ ପର୍ଷୁଥିବେ ଅନ୍ନ
ବ୍ରାହ୍ମଣ ଉଚ୍ଛିଷ୍ଟ ପୋଛିନେବେ ସର୍ବଜନ।
ସ୍ନାନ ମାର୍ଜନା ଯେ ବିଧି ଦ୍ୱିଜେ କରିବେଟି
ଶୂଦ୍ର ଛୁଇଁଲେ ମୂର୍ଦ୍ଧନା ଯିବ ନିଶ୍ଚେଁ ଫାଟି।
କେଉଁ ବ୍ରାହ୍ମଣ ସୁବେଶ ବେଶ କରାଇବେ
ଧଉତ ବସନ କାଢ଼ି ଅଙ୍ଗେ ପିନ୍ଧାଇବେ ।
ମୁଖରେ ବିଡ଼ିଆ ଆଣି ଦେବେ ଦ୍ୱିଜଯାକ
ପିକଦାନିରେ ଧରିବେ ଦ୍ୱିଜେ ପାନବିକ।
ବ୍ରାହ୍ମଣମାନେ ସଜାଉଥିବେ କେଶ ନିତି
ବ୍ରାହ୍ମଣ ବାନ୍ଧିବେ ଶିରେ ଫୁଲଗଭା ଗୁନ୍ଥି।
ବ୍ରାହ୍ମଣେ ସେ ପାଦପଦ୍ମେ କରୁଥିବେ ସେବା
କଠାଉ ଲାଗି କରାଇ ପାଦେ ହେବେ ଉଭା।
ବିଷ୍ଣୁ ପୂଜା ନୁହଇଟି ଦ୍ୱିଜ ବ୍ୟତିରେକେ
ତୁମ୍ଭେ ଜନ୍ମୁଥିଲେ ବିପ୍ରେ ପୂଜିବେ ତ୍ରିଲୋକେ।
ବିଷ୍ଣୁର ସେବକ ସଦା କେବଳ ବ୍ରାହ୍ମଣ
ଶୂଦ୍ର ଛୁଇଁ ସେବା କଲେ ପାପୀ ହେବ ଜାଣ।

ଦଶ ଅବତାର ମଧ୍ୟେ ଯେଉଁ ଚାରି ଜନ୍ମ
ନୃସିଂହ ବାମନ ରଘୁନାଥ କୃଷ୍ଣ ଶ୍ୟାମ।
ଏ ଚାରି ଜନମେ ତୁମ୍ଭେ ନରଦେହ ଧରି
ନାଶିବ ପୃଥ୍ୱୀର ଭାର। ଦୁଷ୍ଟଙ୍କୁ ସଂହାରି।
ଦଶ ଅବତାର ବିଷ୍ଣୁ ବିପ୍ର ପୂଜିବେକ
ନ ଛୁଇଁବେ ବ୍ରାହ୍ମଣ ବିନା କେ ଆନ ଲୋକ।
ଏରୂପେ ବେଦବର ନୃସିଂହ ଆଗେ କହି
ବୋଇଲେ ଛାମୁରୁ ଯିବୁ ମେଲାଣି ଯେ ହୋଇ।
ନୃସିଂହ ବୋଇଲେ ବ୍ରହ୍ମା ସର୍ବେ ବିଜେକର
ଋଷିଯାକ ସଙ୍ଗେ ମଧ ଚଳନ୍ତୁ ତୁମ୍ଭର।
ବାସବ ତେତିଶକୋଟି ଦେବ ସଦାଶିବ
ଦଶଦିଗପାଳ ଆଦି ଚଳନ୍ତୁ ସେ ସର୍ବ।
ତାର ବାର ତିଥି ଯୋଗ କରଣ ଯେ ରାଶି
ନବଗ୍ରହ ସଙ୍ଗେ ଚଳିଯାନ୍ତୁ ମଧ ଶଶୀ।
ମୁରା ତ ମରିଲା ଏବେ ଗଲା ସବୁ ଭୟ
ବିଧାତା ବୋଇଲେ ତୁମ୍ଭ ନାମେ ସବୁ ଜୟ।
ଭୋ ସ୍ୱାମି ତୁମ୍ଭର ନାମ ଯେତେକାଳ ଅଛି
ବ୍ରହ୍ମା ଇନ୍ଦ୍ର ଚନ୍ଦ୍ରଙ୍କର ଭୟ ନାହିଁ କିଛି।
ଆମ୍ଭ ଭୟ ନ ଥିବାରୁ ସଂସାର ଲୋକର
ବିଷ୍ଣୁ ଅଛନ୍ତି ବୋଲି ସେ ନ କରନ୍ତି ଡର।
ଭକ୍ତଜନମାନଙ୍କର ତିଳେ ନାହିଁ ଭୟ
ଆତଙ୍କେ ତୁମ୍ଭଙ୍କୁ କରୁଥାନ୍ତି ଏକ ଲୟ।
ଶୁଣିଣ ନୃସିଂହ ସ୍ୱାମୀ ହେଲେ ମନେ ତୋଷ
ଗରୁଡ଼କୁ ବୋଇଲେକ ରାଜ୍ୟେ ଯିବା ଆସ।
ଶୁଣିଣ ବୈନତେୟ ସୁବେଶ ବେଶ ହେଲା
ନାସାରୁ କେଶ ପର୍ଯ୍ୟନ୍ତେ ତିଳକ ନାଇଲା।
ହୀରାର କୁଣ୍ଡଳ ବେନିକର୍ଣ୍ଣେ ନେଇ ଖଞ୍ଜି
ବାନ୍ଧିଲା କେତକୀଫୁଲ ଶିରେ ପୁଞ୍ଜି ପୁଞ୍ଜି।
କନ୍ଧପରେ ନବଗୁଣ ସ୍ୱର୍ଣ୍ଣ ପଇତାକୁ
ପଇତାମନ୍ତ୍ରେ ମନ୍ତ୍ରିଲା କନ୍ଧେ ପିନ୍ଧିବାକୁ।
ମନ୍ଦାର କୁସୁମ ଆଣି ଗୁନ୍ଥି ଶତେହାର
ବାନ୍ଧିଲା ଶିରରେ ନେଇ ତାର୍କ୍ଷ୍ୟ ମହାବୀର।
ରଙ୍ଗ ଶୁକ୍ଳ କଳା ମିଶାଇ ଯେ ତିନିଫୁଲ
ଚୂଡ଼ା ମୂଳରେ ବାନ୍ଧିଣ ଚାଲେ ହୋଇ ଗେଲ।
ସହସ୍ରେକ କଂସାଘଣ୍ଟା ଲମ୍ବାଇ ପିଠିରେ
ସୁବର୍ଣ୍ଣ ଘାଗୁଡ଼ି ଲକ୍ଷେ ଛନ୍ଦିଲା ଜାନୁରେ।
ସରୁ ବସନ ଶାଢ଼ୀକି ପିନ୍ଧେ କାଛି ହୋଇ
ଲୁଗାର କାଛରେ ସୁନା ଝଟକି ରାଜଇ।

ଅଣ୍ଟାରେ ହୀରା ଘାଗୁଡ଼ି କେତେ ଦେଲା ଛନ୍ଦି
ପୟରେ ଝୁମୁକି ବଳା ବାଜେ ଖୁନ୍ଦି ଖୁନ୍ଦି।
ଘାଗୁଡ଼ି ଘଣ୍ଟା ଘଣ୍ଟି ଯେ ବାଜେ ରଣଝଣ
ଶ୍ରୀନୃସିଂହ କରତାଳି ଶୁଭେ ଟଣଟଣ।
ଶରୀରରେ ଅଳଙ୍କାର ଦିଶେ ଝଟଝଟ
ତହିଁକି ଶୋଭାବନ ଯେ ଦିଶେ ରଙ୍ଗପଟ।
ଶିରରୁ ଚରଣଯାଏ ଲମ୍ବିଅଛି ବେଣୀ
ବାସୁକି ଶିରରେ ଯେହ୍ନେ ଦିଶେ ସସ୍ରଫେଣି।
ବେନି ଖଗରେ ଚିରାଳ ଲକ୍ଷେ ବାନ୍ଧିଦେଲା
ଗେଲାଇ ଗେଲାଇ ହୋଇ ଅଗ୍ରେ ଉଭା ହେଲା।
ଏହିରୂପେ ଉଭାହୋଇ ତର୍କ୍ଷ୍ୟପତି ବାବା
ବୋଇଲା ଭୋ ସ୍ୱାମୀ ଚାଲ ବଦ୍ରିକାକୁ ଯିବା।
ସବୁଙ୍କୁ ମେଲାଣି କରି ପିଠିରେ ମୋ ବସ
ଦେବତାମାନେ ତ ଚଳିଯାନ୍ତୁ ଯେଝା ବାସ।
ଏହା ଶୁଣି ବେଦବ୍ରହ୍ମା ମନେ ବଡ଼ ହସି
ବୋଇଲେ ଭଲା ସୁବେଶ ହେଲା ଆସି ପକ୍ଷୀ।
ଶ୍ରୀନୃସିଂହ ଠାକୁରଙ୍କୁ ବହିକରି ନେବ
ବଦ୍ରିକା ନଗ୍ରେ ପ୍ରବେଶ ନେଇ କରାଇବ।
ବିଧାତା ବୋଇଲେ ସ୍ୱାମୀ ଶୀଘ୍ର ଏବେ ବସ
ତୁମ୍ଭେ ଗଲେ ଆମ୍ଭେ ଚଳିଯିବୁ ଯେଝା ବାସ।
ଶୁଣିଣ ନୃସିଂହ ପ୍ରଭୁ ତାର୍କ୍ଷ୍ୟେ କଲେ ବିଜେ
ଶେଷକୁ ବୋଇଲେ ଭାଇ ବସ ତାଳଧ୍ୱଜେ।
ଶୁଣିଣ ବସିଲେ ଶେଷଦେବ ଦେବଯାନେ
ଟେକିଲେ ସୁଜାଣ ମନ୍ତ୍ରୀ ଛତ୍ର ଧରି ଶୂନ୍ୟେ।
କର୍ଣ୍ଣାଟେଶ୍ୱର ବଜାଇ ତହିଁ ବୀରବାଜା
ଗଲେ ବିଷ୍ଣୁ ସଙ୍ଗେ ସେ କନକାବତୀ ରାଜା।
ବିଷ୍ଣୁଙ୍କୁ ବଳାଇ ଦେଇ ଦେବଗଣଯାକ
ଯେ ଯାହାପୁରେ ମିଳିଲେ ଯାଇ ଦେବଲୋକ।
ଏଥିଉତ୍ତାରେ କହିବା ବାଣୀ ଶୁଣ ଏବେ
ନଗ୍ରକୁ ଯାନ୍ତେ ଚଳି ନୃସିଂହ ଶେଷଦେବେ।
ଜୟ ଜୟ ଜୟ ଶବ୍ଦ ଶୁଭେ ଚଉପାଶ
ନଗରକୁ ଆସୁ ଆସୁ ବାଜେ ବିଜିଘୋଷ।
ଘଣ୍ଟି ଘଣ୍ଟା ଘାଗୁଡ଼ି ଯେ ବାଜେ ଶଙ୍ଖ ଭେରୀ
ଟମକ ମର୍ଦ୍ଦଳ ଦମା ବାଜଇ ମହୁରୀ।
ଗହ ଗହ ଶହଶବ୍ଦ ଶୁଭେ ଦାଣ୍ଡଯାକ
ଉଦ୍ଦଣ୍ଡ ପାଟଛତ୍ର ବିମଳ ପନ୍ତି ରେଖ।
ସ୍ୱର୍ଗରୁ ଅପ୍ସରୀ କରୁଛନ୍ତି ଆସି ନୃତ୍ୟ
ଶୂନ୍ୟ ଧୀରେ ଧୀରେ ଖସେ ବିନତାର ସୁତ।

ଦେବଯାନହିଁ ପ୍ରବେଶ ହେଲା ତଳେ ଆସି
ଗରୁଡ଼ରୁ ଉତୁରିଲେ ଜଗଜ୍ଜନବାସୀ ।
ଚାଲନ୍ତେ ନୃସିଂହ ବେନିଭାଇ ଦାଣ୍ଡେ ଦାଣ୍ଡେ
ଦେବେ ପୁଷ୍ପବୃଷ୍ଟି କରୁଛନ୍ତି ପ୍ରଭୁ ମୁଣ୍ଡେ ।
ସିଂହଦ୍ୱାରରେ ମିଳନ୍ତେ ଯାଇ ବେନି ଭାଇ
ଭଗବତୀ ଆଗେ ଲୋକେ କହିଲେକ ଯାଇ ।
ଏହା ଶୁଣି ଭଗବତୀ ଘେନି ଅର୍ଘ୍ୟଥାଳୀ
ଚୌଷଠି ସହସ୍ର କନ୍ୟା ଦ୍ୟନ୍ତି ହୁଳହୁଳି ।
ପୁତ୍ରଙ୍କୁ ମୁଖ ଶରଦ ଚନ୍ଦ୍ର ପ୍ରାୟ ଦେଖି
ମାତାଙ୍କୁ ଯେ ନମସ୍କାର କଲେ ପଦ୍ମ ଆଖି ।
ଶେଷଦେବହିଁ ମାତାଙ୍କ ପାଦେ ଓଳଗିଲେ
ବେନି କୁମରଙ୍କୁ ମାଏ କଲ୍ୟାଣ କରିଲେ ।
ବଦରିକା ନଗ୍ରଲୋକେ ବେଢ଼ି ଚଉପାଶ
ହରିବୋଲ ହରିବୋଲ ଶୁଭେ ମୁଖଘୋଷ ।
କୃଷ୍ଣବଲ୍ଲଭର ରାଣୀ ଘେନି ଅର୍ଘ୍ୟଥାଳୀ
ପୁତ୍ରକୁ ବନ୍ଦାଇ ଗଲେ ଭିତରକୁ ଚଳି ।
ପିତାଙ୍କୁ ଦେଖି ପୁତ୍ରେ ଯେ ଦଣ୍ଡବତ କଲେ
ମାରିଣ ମୁରାସୁରକୁ ଆସିଲୁ ବୋଇଲେ ।
ଶୁଣିଣ ବଲ୍ଲଭରାଜା ଆନନ୍ଦ ହୁଅଇ
ବ୍ରାହ୍ମଣମାନଙ୍କୁ ବରି ଦକ୍ଷିଣା ଯେ ଦେଇ ।
ଆମ୍ଭର କଳଙ୍କ ଗଲା ବୋଲି ଶ୍ରଦ୍ଧା କଲେ
ତୀର୍ଥରୁ ଜଳ ଆଣିଣ ମଥାରେ ସିଞ୍ଚିଲେ ।
ବଦ୍ରିକା ଲୋକେ ବୋଇଲେ ଏବେ ପାପ ଗଲା
ବ୍ରାହ୍ମଣ ଲୋକଙ୍କୁ କଳଙ୍କ ସେ ହୋଇଥିଲା ।
ସଜଲାଗି ହେଲେ ପ୍ରଭୁ ଧନୁତୂଣ ଥୋଇ
ପହରେକ ବେଳେ ଆସି ହେଲେ ଶୟ୍ୟାଶାୟୀ ।
ମାଜଣାକୁ ବିଜେକଲେ ଶ୍ରୀନୃସିଂହ ପ୍ରଭୁ
ଅଣାଇଲେ ନାନାତୀର୍ଥୁ ତୀର୍ଥଜଳ ସବୁ ।
ରତ୍ନପିଢ଼ାର ଉପରେ ବସି ବେନି ଭାଇ
ତିଳ ଅଏଁଳା ସୁଗନ୍ଧ ମଥାରେ ଲଗାଇ ।
ତୀର୍ଥଜଳ ଇଡ଼ିଣ ଶ୍ରୀଅଙ୍ଗ ପଖାଳିଲେ
ସରୁ ଝୀନବାସରେ ଯେ ଦେହ ଶାମଳିଲେ ।
ମାଜଣା ସାରିଣ ହୀରାପିଢ଼ାରେ ଯେ ବିଜେ
ଦେବାର୍ଚ୍ଚନ ବିଧି କଲେ ବସି ଦେବରାଜେ ।
କନକାବତୀ ପୁରରୁ କର୍ଣ୍ଣାଟେଶ ରାଜା
ଅପୂର୍ବ ଦ୍ରବ୍ୟ ଅଣାଇ କରିଥିଲେ ପୂଜା ।
ମୁରଦୈତ୍ୟ ଭଣ୍ଡାରରେ ଥିଲା ଯେଉଁ ଛତ୍ରୀ
ଅପୂର୍ବ ମହିମା ତାର ଅଟେ ଫଳଶ୍ରୁତି ।
ଯେତେବେଳେ ରାଜାଶାଢ଼ୀ ଦେଲେ ତାଙ୍କୁ ପ୍ରଭୁ
ଦରଶନୀ କରି ତାହା ଦେଇଥିଲେ ପୂର୍ବୁ ।
ସେ ଛତ୍ର ଶିର ଉପରେ ଟେକନ୍ତେ ଯେ ଆଣି
ଛତ୍ର ଚାରିପାଶେ ବୃଷ୍ଟି କରେ ରତ୍ନ ପୁରି ।
ମାଣିକ୍ୟ ମାଣିକ୍ୟ ହୀରା ହୀରାରୁ ଯେ ଖସେ
ମୁକ୍ତାରୁ ମୁକ୍ତା ନୀଳାରୁ ନୀଳା ଯେ ପ୍ରକାଶେ ।
ସୁଜାଣ ମନ୍ତ୍ରୀ ଯେ ପୁଣି ଛତ୍ର ଟେକିଅଛି
ଚାରିପାଶୁଁ ଅଷ୍ଟରତ୍ନ ଦ୍ୟନ୍ତି ଲୋକେ ବାଛି ।
ଦେବାର୍ଚ୍ଚନ ସାରିକରି ଉଠିଲେ ନୃସିଂହ
ପ୍ରସନ୍ନ କଲେ ଯାଇଁଣ ଦେବ ସୁଢ଼ଳାଙ୍ଗ ।
ସୂର୍ଯ୍ୟ ପୂଜା ଅଗ୍ନିପୂଜା ବୈଶ୍ୱଦେବ ପୂଜା
ଏମାନ ସାରି ମଣୋହି କଲେ ଦେବରାଜା ।
ଆଚମନ ସାରି କଲେ ପଲ୍ୟଙ୍କରେ ବିଜେ
ବସିଲେ ବିଡ଼ିଆ ଲାଗି ହୋଇ ଦେବରାଜେ ।
ସୁଜାଣ ମହାମନ୍ତ୍ରୀକି ଆଜ୍ଞା ଅବଧାରୀ
ବୋଇଲେ ଗୃହେ ଭୋଜନ ଆସ ଯାଇ ସାରି ।
ଗରୁଡ଼ଙ୍କୁ ରାଇ ପୁଣି ଅମୃତ ଭୁଞ୍ଜାଇ
କର୍ଣ୍ଣାଟେଶ୍ୱର ରାଜାକୁ ମଣୋହି କରାଇ ।
କର୍ଣ୍ଣାଟେଶ୍ୱର ରାଜାର ଯେତେ ଥାଟ ସୈନ୍ୟ
ସମସ୍ତେ ବିଷ୍ଣୁ ଭଣ୍ଡାରେ ସାରିଲେ ଭୋଜନ ।
କର୍ଣ୍ଣାଟେଶ୍ୱରଙ୍କୁ ଆଜ୍ଞା ଦେଲେ ପୁଣ ହରି
ବୋଇଲେ ରାଜ୍ୟକୁ ତୁମ୍ଭେ ଯାଅ ବିଜେ କରି ।
ରାଜ୍ୟ ଦେଶ ଘୋଷ ଆଦି ପରଜା ପାଳିବ
ମନ ହେଲା ଦିନ ଆମ୍ଭ ଛାମୁକୁ ଆସିବ ।
ଶୁଣି କର୍ଣ୍ଣାଟେଶ୍ୱର ଶ୍ରୀଆଜ୍ଞା ପରମାଣେ
ପାତ୍ର ମନ୍ତ୍ରୀ ସୈନ୍ୟ ଘେନି ଚଳିଲେ ତକ୍ଷଣେ ।
କନକାବତୀ ନଗରେ ହୋଇଲେ ପ୍ରବେଶ
ରାଜନୀତି ନିତ୍ୟାଚାରେ ପାଳି ରାଜ୍ୟଘୋଷ ।
ଏଥୁ ଅନନ୍ତରେ ପୁଣି ନୃସିଂହ ସ୍ୱାମୀଙ୍କି
ରହିଲେ ଯେ ଯାହା ସେବାଲାଗି ଅଷ୍ଟସଖୀ ।
ଚୌଷଠି ସହସ୍ର କନ୍ୟା ବିଷ୍ଣୁ ପାଦେ ସେବି
ରହିଲେ ଶ୍ରୀଗୋବିନ୍ଦ ଚରଣେ ଭକ୍ତି ଭାବି ।
ତ୍ରିସନ୍ଧ୍ୟା କର୍ମ ସାରିଣ ପ୍ରଭୁ ଦେବରାଜେ
ଲକ୍ଷ୍ମୀଙ୍କର ମନ୍ଦିରକୁ କଲେ ସେହୁ ବିଜେ ।
ଅନେକ କଉତୁକରେ କଲେ କ୍ରୀଡ଼ାରସ
ସେ ପାଦେ ଶରଣ ବିପ୍ର ପୀତାମ୍ବର ଦାଶ ।
ଷଷ୍ଠ ସାଗରର ଖଣ୍ଡ ହୋଇଲା ସମ୍ପୂର୍ଣ୍ଣ
ସପତ ସାଗର ଏବେ କରିବି ଲେଖନ ।
ଜୟ ଜୟ ଶ୍ରୀନୃସିଂହ ଗ୍ରନ୍ଥ ସୁଧାବାଣୀ
ମନ ପୂର୍ଣ୍ଣକରି ପିଇବା ତ ତାହା ଆଣି ।
ଲକ୍ଷ୍ମୀଧର ଦାଶ ବିପ୍ର କୁଳରେ ସମ୍ଭୁତ
ଜନ୍ମକାଳୁଁ ପିତାମୋର ବିଷ୍ଣୁର ଭକତ ।
ତେଣୁ ଶ୍ରୀନୃସିଂହ ପ୍ରଭୁ ଦୟା ମୋତେ କଲେ
ନୃସିଂହ ଗ୍ରନ୍ଥ ମୋହର ହସ୍ତେ ଲେଖାଇଲେ ।
ସେ ପ୍ରଭୁ ଚରଣ ତଳେ ରଖିଣ ମାନସ
ଶ୍ରୀନୃସିଂହ ପୁରାଣକୁ କରୁଛିଁ ପ୍ରକାଶ ।
ଷଷ୍ଠ ସାଗରର ଅନ୍ତେ ସପ୍ତମ ଖଣ୍ଡକୁ
ଆଜ୍ଞାଦେଲେ ପ୍ରଭୁ ମୋତେ ପୁଣି ଲେଖିବାକୁ ।
ଏଣୁକରି ସୁଜନେ ନ ଘେନ ମୋର ଦୋଷ
ବିପ୍ର ପୀତାମ୍ବର ମୁଁ ଯେ ବାଲୁଙ୍କେଶ ଶିଷ୍ୟ ।

— ସମାପ୍ତ —

ବିପ୍ର ପୀତାମ୍ବର ଦାଶଙ୍କ ବିରଚିତ

# ନୃସିଂହ ପୁରାଣ

## ସପ୍ତମ ସାଗର

(ନୂତନ ମୁଦ୍ରଣ)

ପ୍ରକାଶକ :
ଧର୍ମଗ୍ରନ୍ଥ ଷ୍ଟୋର



ପ୍ରାପ୍ତିସ୍ଥାନ :
ଧର୍ମଗ୍ରନ୍ଥ ଷ୍ଟୋର
ପରିଚାଳକ -
ଶ୍ରୀ ବିଦ୍ୟାଧର ସାହୁ
ଅଲିଶା ବଜାର, କଟକ - ୨
ଫୋନ୍ ନଂ : (୦୬୭୧) ୨୫୦୮୨୯୬

ମୂଲ୍ୟ : ଏକଶହ ଟଙ୍କା ମାତ୍ର

# ନୃସିଂହ ପୁରାଣ ସପ୍ତମ ସାଗର
## ପୂର୍ବଖଣ୍ଡର
### ସୂଚୀପତ୍ର



ସୂଚିପତ୍ର ସମାପ୍ତ

# ନୃସିଂହ ପୁରାଣ ସପ୍ତମ ସାଗର
## ଉତ୍ତରଖଣ୍ଡ
### ସୂଚୀପତ୍ର



ସୂଚିପତ୍ର ସମାପ୍ତ

# ନୃସିଂହ ପୁରାଣ

## ସପ୍ତମ ସାଗର

### ପୂର୍ବଖଣ୍ଡ

ଆସୀନଂ କମଳାସନେ କମଳାୟା ବକ୍ଷସ୍ଥଳା ସୀନୟା,
ବିଦ୍ୟୁଦ୍ଦ୍ୟୋତସଟାସମୂହବିଳସଦ୍, ସୌମ୍ୟାନନାମ୍ଭୋରୁହମ୍ ।
ଜାନ୍ବୋରର୍ପିତଯୋଗପଟ୍ଟମୁଭୟୋର୍ବାହ୍ବୁ ଦୃଢ଼ବାୟତୌ,
ହସ୍ତାଭ୍ୟାଂ ଧୃତଶଙ୍ଖଚକ୍ରମନିଶଂ ଲକ୍ଷ୍ମୀ ନୃସିଂହ ଭଜେ ।୧ ।
ନାରାୟଣଂ ନମସ୍କୃତ୍ୟ ନରଂ ଚୈବ ନରୋତ୍ତମମ୍ ।
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋଜୟମୁଦୀରୟେତ୍ । ୨ ।
ବେଦେ ରାମାୟଣେ ଚୈବ ପୁରାଣେ ଭାରତେ ତଥା
ଆଦ୍ୟେ ପ୍ରାନ୍ତେ ଚ ମଧ୍ୟେ ଚ ହରିଃ ସର୍ବତ୍ର ଗୀୟୟେ । ୩ ।
ତଂ ବେଦଶାସ୍ତ୍ରଂପରିନିଷ୍ଠିତଂ ଶୁଦ୍ଧବୁଦ୍ଧିଂ ଚର୍ମାମ୍ବରଂ ସୁରମୁନୀନ୍ଦ୍ରନୁତଂ କବୀନ୍ଦ୍ରମ୍
କୃଷ୍ଣତ୍ୱିଷଂ କନକପିଙ୍ଗଜଟାକଳାପଂ ବ୍ୟାସଂ ନମାମି ଶିରସାତିଳକଂମୁନୀନାଂ ।
ନାହଂ ତିଷ୍ଠାମି ବୈକୁଣ୍ଠେ ଯୋଗୀନାଂ ହୃଦୟେ ନ ଚ
ମଭକ୍ତା ଯତ୍ର ଗାୟନ୍ତି ତତ୍ର ତିଷ୍ଠାମି ନାରଦ । ୫ ।



#### ବନ୍ଦନା

ଜୟ ଜୟ ଶୀ ନୃସିଂହ ଲକ୍ଷ୍ମୀଦେବୀ ବର
ସଂସାର ଲୋକ ଯାହାର ପାଦେ ପରିଚାର ।
ଜୟ ଜୟ ଶ୍ରୀନୃସିଂହ ଶାରଦାଙ୍କ ପତି
ସଂସାର ପାଳନ କର ହୋଇ ବିଶ୍ୱମୂର୍ତ୍ତି ।
ଜୟ ଜୟ ଶ୍ରୀନୃସିଂହ ପରମ ଦୟାଳୁ
ଦୁଷ୍ଟଜନ ନିବାରିଣ ସନ୍ଥଜନ ପାଳୁ ।
ଜୟ ଜୟ ନରସିଂହ ଦେବ ଦାମୋଦର
ଜୟ ଜୟ ନୃସିଂହ ହେ ଶରଣ ସୋଦର ।
ଜୟ ଜୟ ଶ୍ରୀନୃସିଂହ କର୍ମାକର୍ମ ଦାତା
ତୁମ୍ଭଙ୍କୁ ଲାଗଇ ସିନା ସଂସାରର ଚିନ୍ତା ।
ବୁଝିଲେ ତୁମ୍ଭ ପୃଥ୍ୱୀ କେ ପାରେ ଅନ୍ତକରି
ପଞ୍ଚାଶ କୋଟି ଯୋଜନ ଅଟେ ବସୁନ୍ଧରୀ ।
ଏଡ଼େ ପୃଥିବୀରେ ପ୍ରଭୁ ହୋଇ ମହାରାଜା
କିଞ୍ଚିତେ ହେଲେ ପଡ଼ି ନକଲ ମୋତେ ଖଞ୍ଜା
ତବ ପଡ଼ିଆ ଭୂମିରେ ଥିଲା ଖଣ୍ଡେ କ୍ଷିତି
ତହିଁରେ ମୁହିଁ ଅଛଇ କରଣ ବସତି ।
ଭାତ ବରତନ ପଡ଼ି ଖଞ୍ଜା ନ ଥିବାରୁ
ପୃଥ୍ୱୀଯାକ ଭ୍ରମି ବୁଲି ଆଣେ ଦାତାଠାରୁ ।
ବାରଦ୍ୱାର ବୁଲି ମୋତେ ମିଳେଅବା ଯାହା
ଭାଗ୍ୟକୁ ଆଦରି ମୁହିଁ ଭୁଞ୍ଜେ ନିତି ତାହା ।
ମୋହଠାରୁ ଦୀନଦୁଃଖୀ ସଂସାରେ କେ ନାହିଁ
ସବୁଙ୍କରି ଆଶ୍ରା ତୁମ୍ଭେ ଅଟ ଭାବଗ୍ରାହୀ ।
ବ୍ରାହ୍ମଣ କୁଳେ ମୋହର ହେବାରୁ ଜନମ
ଏତିକି ମାତ୍ରଟି ସାର ଅଟେ ମୋର କର୍ମ ।
ବିଷ୍ଣୁଙ୍କର ମାୟାରେ ତ ହରଛନ୍ତି ଭୁଲି ।
ଆଉ କାହାକୁ ସଂସାର ମଧ୍ୟେ ବଡ଼ ବୋଲି ।
ବ୍ରହ୍ମା ରୁଦ୍ର ଇନ୍ଦ୍ର ଆଦି ସର୍ବ ସୁରମୁନି
ଯାହାର ଚରଣ ତଳେ କରନ୍ତି ଦଣ୍ଡନୀ ।
ତେଣୁ ମୁଁ ଆକୁଳ ହୋଇ ପାଞ୍ଚୁଥାଇ ଚିତ୍ତେ
ଏ ଭବସାଗରୁ ପୁଣି ତରିବା ନିମନ୍ତେ ।
ଏଥକୁହେ ସାଧୁ ଜନେ କର ମୋତେ ତ୍ରାହି
ସପ୍ତମ ସାଗର ଅର୍ଥ ପୁରାଣରେ କହି ।
ସାଧୁଙ୍କର ଚରଣରେ ସଦା ମୋର ସେବା
ବିପ୍ର ପୀତାମ୍ବରଙ୍କୁ ଯେ ସଂସାରୁ ତାରିବା

## ଶ୍ରୀ ନୃସିଂହଙ୍କର ମହାଲକ୍ଷ୍ମୀ ମନ୍ଦିରରେ ପ୍ରବେଶ

ଏଥୁ ଅନନ୍ତରେ ପଣି ପରୀକ୍ଷିତ ରାଜା
ଶୁକଦେବ ଚରଣରେ କଲେ ଦିବ୍ୟପୂଜା ।
ବୋଇଲେକ ମୁନି ମୋତେ କହିବା ଯେ ହେଉ
ମୁରକୁ ମାରି ବଦ୍ରିକା ଗଲେ ବୀରବାହୁ ।
ମହାଲକ୍ଷ୍ମୀ ମନ୍ଦିରରେ ପ୍ରବେଶ ହୋଇଲେ
ତା ଉତ୍ତାରୁ କି ବୃତ୍ତାନ୍ତ କହ ମୋତେ ଭଲେ
ଆଦ୍ୟ ନୃସିଂହ ପୁରାଣ କଥା କହିଗଲ ।
ପଛେ ଯାଇ ଭାଗବତ ଶୁଣିବୁ ବୋଇଲ ।
ଷଷ୍ଠ ଖଣ୍ଡଯାକ ସବୁ ବାଣୀ ଶୁଣିଲଇଁ
କହିଲେ ସମସ୍ତ ଭାଷା ଯିବି ମୁକ୍ତ ହୋଇ ।
ରାଜାର ମୁଖୁ ଏମନ୍ତ ଶୁଣି ମନେ ହସି
ବୋଇଲେ ଶୁଣ ହେ ରାଜା କହିବା ବିଶେଷି
ନାରଦ ଗୋସାଇଁ କି ଯେ କହିଲେକ ବ୍ରହ୍ମା
ସେ ପୁରାଣ ବାଣୀ ଏବେ ଶୁଣ ମହାତମା ।
ବ୍ରହ୍ମାଙ୍କ ଆଗେ ନାରଦ କରଯୋଡ଼ି କରି
ଶ୍ରୀନୃସିଂହ ପୁରାଣକୁ ବିନୟେ ପଚାରି ।
ପ୍ରଥମୁ ଷଷ୍ଠ ପର୍ଯ୍ୟନ୍ତେ ଶୁଣି ଗ୍ରନ୍ଥବାଣୀ
ସପ୍ତମ ସାଗର ଅର୍ଥ ପଚାରନ୍ତି ପୁଣି ।
ବିଧାତାଏ ଆଜ୍ଞାକଲେ ଶୁଣ ହେ ନାରଦ
କହିଲେ ମୁରାରି ନାମ ମୁର କରି ବଧ ।
ତହୁଁ ଆସିଣ ବଦ୍ରିକା ନଗ୍ରେ ବିଜେ କଲେ
ଲକ୍ଷ୍ମୀଙ୍କର ମନ୍ଦିରକୁ ନୃସିଂହ ଚଳିଲେ ।
ପ୍ରଭୁଙ୍କୁ ଦେଖିଣ ଲକ୍ଷ୍ମୀ ହୋଇଲେକ ବେଶ
ଲକ୍ଷ୍ମୀ ପରିବାରି ଲାଗିଛନ୍ତି ଚଉପାଶ ।
ଦେହଯାକରେ ଭୂଷିତ ହେଲେ ଅଳଙ୍କାର
ସେ ବେଶର ଶୋଭା ପୁଣି ଦିଶଇଅପାର ।
ସାକ୍ଷାତରେ କମଳା ଯେ ବିଷ୍ଣୁ ପ୍ରିୟବତୀ
ସବୁସ୍ତିରୀଙ୍କ ଉପରେ ଅଟନ୍ତି ଯେ ସତୀ ।
ନାନାଦି କୁସୁମ ଗୁଛି ଖୋଷି ଦିବ୍ୟ ଖୋଷା
ତହିଁ ଶ୍ୱେତ ପୀତ ନାନା ରଙ୍ଗ ଫୁଲ ମିଶା ।
ଭାଲପଟରେ କସ୍ତୁରୀ ଚିତା ନେଇ ଦେଇ
ବେନି ନେତ୍ରେ ସରୁରେଖା କଜ୍ଜ୍ୱଳ ରାଜଇ ।
କର୍ଣ୍ଣତଟେ ସୁବର୍ଣ୍ଣର କାପ ବେନି ଖଞ୍ଜି ।
ନାସା ଅଗ୍ରରେ ବସଣୀ ମୁକ୍ତା ରଞ୍ଜି ପୁଞ୍ଜି ।
କଣ୍ଠତଟେ ସୁନାହାର ଦିଶେ ଦେହ ବର୍ଣ୍ଣ
ସୁବର୍ଣ୍ଣଠାରୁ ଅଧିକ ଦିଶେ ଦେହ ବର୍ଣ୍ଣ ।
ସମ୍ପୂର୍ଣ୍ଣ ଚନ୍ଦ୍ରମା ପ୍ରାୟ ଦିଶେ ମୁଖ ପ୍ରଭା
ବେନି କରପତ୍ର ଜ୍ୟୋତି ଦିଶେ ଫୁଟି ଶୋଭା
ବେନି କରରେ ଶୋଭିତ ସ୍ୱର୍ଣ୍ଣବାହି ଚୂଡ଼ି
ନବରତ୍ନ ପୁଞ୍ଜିତହିଁ ବସେ ଧାଡ଼ି ଧାଡ଼ି ।
ଲକ୍ଷ୍ମୀଦେହ ପ୍ରାୟ ନାହିଁ ବ୍ରହ୍ମାଣ୍ଡରେ ଜ୍ୟୋତି
ଗୁରୁ ଶୁକ୍ରଠାରୁ ବଳି ତେଜ ବିରାଜନ୍ତି ।
ପଟନୀ ଝୀନପାଟ ଯେ ପିନ୍ଧା ଫେର ଉଢ଼େ
ଶରୀରର ବର୍ଣ୍ଣ ଫୁଟି ଦିଶେ ଚାରିଆଡ଼େ ।
ହୀରା ନୀଳା ମାଣିକ୍ୟ ଯେ ମୁକ୍ତା ପୁଞ୍ଜି ପୁଞ୍ଜି
ଦେହଯାକ ଲକ୍ଷ୍ମୀଦେବୀ ଦେଇଛନ୍ତି ଖଞ୍ଜି ।
ବେନିଭୁଜେ ହୀରା ତାଡ଼ ରାଜେ ନବରତ୍ନ
ଅଙ୍ଗୁଳିରେ ମୁଦ୍ରିକା ଯେ ଦିଶେ ବିତପନ ।
ମୁଦ୍ରିକା ଶୋଭା ଦିଶଇ ଦଶଅଙ୍ଗୁଳିରେ
ଦଶ ଅବତାର ବର୍ଣ୍ଣ ଦିଶେ ଯେ ପ୍ରକାରେ ।
କଟିତଟରେ ମେଖଳା ଶୋହେ ଆନୁଆନ
ଅଳଙ୍କାରମାନ ଫୁଟି ଦିଶେ ଅତି ଯତ୍ନ ।
ସୁବର୍ଣ୍ଣ କେରି କେରି ଯେ ଦିଶେ ଧାଡ଼ି ଧାଡ଼ି
ପାଦେ ରାଜେ ନବରତ୍ନ ନୂପୁରଯେ ଯୋଡ଼ି ।
ଚାଲନ୍ତେଣ ଝୁମ୍ ଝୁମ୍ ଶବ୍ଦ ଶୁଭେ ବାଣୀ
ହସନ୍ତି କମଳା ବେଶ ଦେଖି ଚକ୍ରପାଣି ।
ଏହ୍ନେ ବେଶ ହୋଇ ବ୍ରହ୍ମାଣ୍ଡର ଠାକୁରାଣୀ
ନୃସିଂହ ଛାମୁରେ ବିଜେ କଲେ କମଳିନୀ ।
ନମିଲେ ସତ୍ୱରେ ଆସି ସ୍ୱାମୀଙ୍କ ପୟରେ
ଚୌଷଠି ସହସ୍ର କନ୍ୟା ଅଛନ୍ତି ସଙ୍ଗରେ ।
ଆବର ଅଷ୍ଟସଖୀଏ ସଙ୍ଗତେ ଅଛନ୍ତି
ଲକ୍ଷ୍ମୀଙ୍କି ଦେଖିଣ ହରି ଆନନ୍ଦେ ହସନ୍ତି ।
ଶ୍ରୀହରି ହସିବାରୁ ଶ୍ରୀମହାଲକ୍ଷ୍ମୀ ହସି
ବୋଇଲେ ମୁରକୁ ମାଇଲ କି ବ୍ରହ୍ମାରାଶି ।
ଏହା ଶୁଣି ଶ୍ରୀନୃସିଂହ ମନେ ହୋଇ ତୋଷ
ବୋଇଲେ ତୁମ୍ଭେ ତ ଜାଣ ଆମ୍ଭ ପଉରୁଷ
ଅସୁର ଜନ୍ମିବା ହେତୁ ତୁମ୍ଭେ ଆମ୍ଭେ ବସି
ହୋଇଣ ସେ ଅବତାରଦୈତ୍ୟକୁଳ ଧ୍ୱଂସି
ମୁରାସୁର କଥାସବୁ ତୁମ୍ଭଙ୍କୁ ତ ଜଣା
ଆନ ଲୋକକୁ ସିନା ଏ କଥା ଅକଳଣା ।
ଏ ପୃଥ୍ୱୀର ଭାରା ଆମ୍ଭେ ନାଶିବାର ପାଇଁ
ତୁମ୍ଭେ ଆମ୍ଭେ ବେନି ମିଶି ଅବତାର ହୋଇ
ଚଉଦ ଭୁବନରେଟି ଆମ୍ଭେ ଏକା ମୂଳ
ସତ୍ୟଯୁଗରେ ଜନ୍ମିଲୁ ଦୁହେଁ ହୋଇ ମେଳ
ନୃସିଂହ ବାମନ ରାମକୃଷ୍ଣ ବଳରାମ
ଏ ଚାରିଜନ୍ମେ ଆମ୍ଭର ତୁମ୍ଭ ସଙ୍ଗେ ପ୍ରେମ ।
ନିତ୍ୟସ୍ଥଳ ରାସରେ ଯେ ତୁମ୍ଭେ ଏକା ମୂଳ
ତୁମ୍ଭ ଘେନି ଆମ୍ଭର ଯେ ଅଟେ ନିତ୍ୟସ୍ଥଳ ।

ଅଷ୍ଟସଖୀ ଚଉଷଠି ସହସ୍ର ଯେ କନ୍ୟା
ଏହାଙ୍କୁ ଘେନି ଆମ୍ଭର ସଦା ଜନ୍ମ ସିନା ।
ଏହି ଚାରିଜନ୍ମ ଅନ୍ତେ ବୌଦ୍ଧରୂପ ଧରି
ରାସ କରିବା ଯେ କଳିଯୁଗେ ନୀଳଗିରି ।
ଏହାଶୁଣି ମହାଲକ୍ଷ୍ମୀ ମନେ ହେଲେ ତୋଷ
ନୃସିଂହ ପାଦେ ଶରଣ ପୀତାମ୍ବର ଦାଶ ।



## ନୀଳଗିରି ମାହାତ୍ମ୍ୟ

ଏଥୁଅନନ୍ତରେ ପୁଣି ମିଳି ନାରୀଯାକ
ପୁଛିଲେ ଶ୍ରୀନୃସିଂହଙ୍କୁ ନୀଳଗିରି ବାକ୍ୟ ।
ନୀଳଗିରିର ପ୍ରସଙ୍ଗ କହିଲେ ଶ୍ରୀହରି
ଶ୍ରୀମୁଖୁ ଶୁଣିଣ ତୋଷ ହେଲେ ସର୍ବନାରୀ ।
କ୍ଷେତ୍ରର ମହିମା ଯେତେ କହିଲେ ଗୋବିନ୍ଦ
ସେ କଥା ବ୍ରହ୍ମାଙ୍କୁ ତହିଁ ପୁଛିଲେ ନାରଦ ।
ବୋଇଲେ ନାୟିକାଏ ସେ ଅଟନ୍ତି ପଣ୍ଡିତ
ସେ ସିନା ବୁଝିଲେ କ୍ଷେତ୍ର ମହିମା ସମସ୍ତ ।
ସେ କଥା ପ୍ରାଞ୍ଜଳ କରି ତୁମ୍ଭେ ମୋତେକହ
ଶୁଣିଲେ ତୁମ୍ଭର ମୁଖୁଁ ଚାଲିଯିବ ମୋହ ।
ସେମାନେ ବୃଦ୍ଧହେବାରୁ ଗଲେ ତାହା ବୁଝି
ଆମ୍ଭେତ ମାୟାରେ ପଡ଼ି ହେଉଅଛୁ ଗଞ୍ଜି ।
ନୀଳଗିରି ମାହାତ୍ମ୍ୟର ଯେତେକ ପ୍ରସଙ୍ଗ
ଶୁଣିଲେ ନାୟିକାଗଣ କହିଲେ ନୃସିଂହ ।
ସେ କଥାଯାକ କହିବା ମୋତେ ବେଦବର
କ୍ଷେତ୍ର ମାହାତ୍ମ୍ୟ ଶୁଣିଣ ପାପ ଯାଉ ଦୂର ।
ଶୁଣି ପିତାମହ କହୁଛନ୍ତି ଶାସ୍ତ୍ର ଫେଡ଼ି
ଶ୍ରୀକ୍ଷେତ୍ର ମାହାତ୍ମ୍ୟରୁ ଯେ ସବୁ ଅର୍ଥ ଲୋଡ଼ି
ବୋଇଲେ ଶୁଣ କହିବା ଆହେ ତପଚାରୀ
ଚଉଦ ବୈକୁଣ୍ଠେ ସାର ଅଟେ ନୀଳଗିରି ।
ବୈକୁଣ୍ଠଯାକ ପୁରାଣ ମଧ୍ୟେ ସିନା ଶୁଣି
ଚକ୍ଷୁରେ ଦେଖିଣ ତାହା ନାହାନ୍ତି କେ ପୁଣି ।
ଜମ୍ବୁଦ୍ୱୀପେ ସାର ବଇକୁଣ୍ଠ ନୀଳଗିରି
ଦେଖିବା ମାତ୍ରେ ସଂସାରୁ ପ୍ରାଣୀଯାନ୍ତି ତରି
ଚଉଦଭୁବନ ଲୋକେ ଦର୍ଶନ କରନ୍ତି
ବ୍ରହ୍ମ କ୍ଷତ୍ରୀ ଶଦ୍ର ବୈଶ୍ୟ ଆଦି ନାନାଜାତି ।
ଅଧମ ଚଣ୍ଡାଳ ଆଦି ସର୍ବେ ହୋନ୍ତି ମୋକ୍ଷ
ଜଗନ୍ନାଥଙ୍କ ମହିମା ଅଟଇ ପ୍ରତ୍ୟକ୍ଷ ।
ଆଉ ଯେତେକ ବୈକୁଣ୍ଠ ଶୁଣିଲେ କି କରି
ଶ୍ରୀପୁରୁଷୋତ୍ତମ କ୍ଷେତ୍ର ଦେଖିଲେ ନିସ୍ତରି ।
ଜଗନ୍ନାଥଙ୍କୁ ଦର୍ଶନ କରିବା ମାତ୍ରକେ
ତତ୍‌କାଳରେ ମୋକ୍ଷ ଯେ ପାନ୍ତି ସର୍ବଲୋକେ

ନାରଦ ବୋଇଲେ ସ୍ୱାମୀ ଶୁଣ ପିତାମହ
ପ୍ରଭୁଙ୍କୁ ଦେଖିଲାକ୍ଷଣି ପବିତ୍ର ଯେ ଦେହ ।
ଆବର କଥା ଗୋଟିଏ ଲାଗିଲା ସଂଶୟ
ସେ କଥା ଫେଡ଼ିକହିବା ମୋତେ ମହାଶୟ ।
ରତ୍ନସିଂହାସନ ତଳେ ଯେତେ ଦ୍ରବ୍ୟପୂଜି
ସେ ପଦାର୍ଥ ଉଚ୍ଛିଷ୍ଟତ ସର୍ବେଦ୍ୟନ୍ତି ଭୁଞ୍ଜି ।
ଏକାବେଳେ ପାଇଣ ସେ କୃତାର୍ଥ ହୁଅନ୍ତି
ଆଉଥରେ ଭୁଞ୍ଜି କେଉଁଫଳ ଅବା ପାନ୍ତି ।
କୃତାର୍ଥ ଉପରେ ଆଉ କୃତାର୍ଥ କି ହୋନ୍ତି
ବିଷ୍ଣୁଙ୍କ ଉପରେ ଆଉ ବିଷ୍ଣୁକି ଅଛନ୍ତି ।
ବ୍ରହ୍ମପଦ ଉପରେ କି ଅଛି ଆଉ ପଦ
ହର ଉପରେ କି ହର ଅଛି କହ ଭେଦ ।
ବ୍ରହ୍ମଜ୍ଞାନ ଉପରେ କି ଅଛି ଆଉ ଜ୍ଞାନ
ମୋକ୍ଷ ଉପରେ ଆଉ କି ଅଛି ମୋକ୍ଷସ୍ଥାନ ।
କହନ୍ତୁ ଏଥର ଗୁଣ କଥା ବେଦବର
ନୋହିଲେ ସଂଶୟ ହୃଦୁଁ ନ ଯିବ ମୋହର ।
ବିଧାତା ବୋଇଲେ ତୁମ୍ଭେ ଶୁଣ ହେ ନାରଦ
କହୁଛୁଁ ବିଷ୍ଣୁର ଶୁଣ ଯେ ରୂପେ ପ୍ରମାଦ ।
ଏଥିର ତତ୍ତ୍ୱ କଥା ନ ପାରେ କେହି ଜାଣି
ନାୟିକାଙ୍କୁ ଏହା କହିଥିଲେ ଚକ୍ରପାଣି ।
ବିଷ୍ଣୁ ମହାପ୍ରସାଦ ଯେ ବିଷ୍ଣୁଠାରୁ ବଡ଼
ପ୍ରସାଦକୁ ଅବଜ୍ଞା ଯେ କରେ ସେହୁ ମୂଢ଼ ।
ମହାପ୍ରସାଦଟି ମହା ନିର୍ମାଲ୍ୟ ବୋଲାଇ
ଗଙ୍ଗା ରେଣୁ ପରିମାଣେ କଣିକାଏ ନେଇ ।
ତୁଳସୀ ଜଳ ପୂରାଇ ହସ୍ତରେ ଧରିବ
ବିଷ୍ଣୁ ନାମ ପଢ଼ିକରି ମୁଖେ ନେଇ ଦେବ ।
ରସନାରେ ଲାଗି ତତକାଳେ ହୁଏ ଲୀନ
ଗର୍ଭରେ ପଡ଼ିବା ମାତ୍ରେ ବଇକୁଣ୍ଠେ ସ୍ଥାନ ।
ଶୂନ୍ୟେ ନକ୍ଷତ୍ର ଗଣିଲେ ହୁଅଇ ଯେତେକ
ଏ ନିର୍ମାଲ୍ୟ ସେବାଫଳ ଅଟେ ତତୋଽଧିକ
ଆଶା ଏକା ପ୍ରାଣୀଙ୍କର କରେ ସର୍ବନାଶ
ଆଶା ପୂର୍ଣ୍ଣ ନୋହିବାର ଲୋକ ମହାକ୍ଳେଶ ।
ସମସ୍ତ କଥାକୁ ଆଶା ସିନା ଧାଉଁଥାଇ
ଅସନ୍ତୋଷ ଲୋକଟିକୁ ପୁଣ୍ୟ ପ୍ରାପ୍ତ ନୋହି ।
ଆଶାର ଲୋଭରେ ଲକ୍ଷ ପ୍ରମାଣେ ଭୁଞ୍ଜିଲେ
ଗର୍ଭପୂର୍ଣ୍ଣ ହେଲେ ମୋକ୍ଷ ନ ମିଳଇ ଭଲେ ।
ଭକ୍ତିରେ ରେଣୁ ପ୍ରମାଣେ ନିର୍ମାଲ୍ୟ ଯେ ଖାଏ
ମନ ସନ୍ତୋଷରେ ତତକ୍ଷଣେ ମୁକ୍ତି ପାଏ ।
ମୋକ୍ଷ ଉପରେ ଲୋଡ଼ିଲେ ମୋକ୍ଷ ଆଉ ନାହିଁ
ଥରେ ହୋଇ ମୋକ୍ଷ ବିଷ୍ଣୁ ପ୍ରସାଦକୁ ଖାଇ ।

ଭୁଞ୍ଜଇ ଲୋଭରେ ସିନା ମନବୋଧ କରି
ଶୁଣ ହେ ନାରଦ କହୁଛନ୍ତି ମୁଖଚାରି ।
ଜମ୍ବୁଦ୍ୱୀପେ ସାର ଏ ପୁରୁଷୋତ୍ତମ କ୍ଷେତ୍ର
ଏ କ୍ଷେତ୍ର ସମାନେ ଆଉ ନାହିଁ ମୋକ୍ଷପାତ୍ର ।
ଅଟନ୍ତି ଚାରି ସଂପ୍ରଦା ଗୁରୁ ଜଗନ୍ନାଥ
ଦର୍ଶନ ମାତ୍ରକେ ସର୍ବେ ହୁଅନ୍ତି କୃତାର୍ଥ ।
ଶ୍ରୀପୁରୁଷୋତ୍ତମ କ୍ଷେତ୍ର କ୍ଷଣେ ଛାଡ଼ି କାହିଁ
ନ ଯାନ୍ତି କେଭେ କେଣିକି ପ୍ରଭୁ ଭାବଗ୍ରାହୀ
ପାଦେ ଅନ୍ୟଠାକୁ ଯେଣୁ ପ୍ରଭୁ ନ ଚଳନ୍ତି
ତେଣୁ ସେହି ପାଦପଦ୍ମ ସର୍ବେ ଭଜୁଥାନ୍ତି ।
ଯେଉଁ କ୍ଷେତ୍ରେ ପୂର୍ଣ୍ଣବ୍ରହ୍ମ ଛନ୍ତି ବିଜେ କରି
ଦର୍ଶନମାତ୍ରେ ସଂସାରୁ ସର୍ବେ ଯାନ୍ତି ତରି
ମୂଢ଼ଲୋକେ ସେ ବିଷ୍ଣୁଙ୍କୁ କେବେ ନ ମାନନ୍ତି
ଆନ ଦେବତାଙ୍କୁ ଯାଇ ପୂଜା କରୁଥାନ୍ତି ।
ବୁଝିଲେ ସର୍ବଦେବତା ହୃଦେ ନରହରି
ବର ଦିଅନ୍ତି ସବୁରି ମନ ବୁଝିକରି ।
ବୁଝିଲେ ଅଟନ୍ତି ସର୍ବଦେବ ଜଗନ୍ନାଥେ
ନ ଜାଣି ପ୍ରାଣୀଏ ଭ୍ରମୁଥାନ୍ତି ଅନ୍ୟପଥେ
ଅଭିନ୍ନ ପୁରୁଷ ସେହୁଅଟନ୍ତି ନୃହରି
ଅଜ୍ଞ ଲୋକମାନେ ଡାକୁଥାନ୍ତି ଭିନ୍ନ କରି ।
ଭାବକୁ ନିକଟ ହରି ସବୁ ଶାସ୍ତ୍ରେ କହେ
ଭିନ୍ନ ଭିନ୍ନ କରି ପୂଜା ନ କର କେବେହେଁ
ସବୁଠାରେ ବିଷ୍ଣୁଛନ୍ତି ନ ଜାଣନ୍ତି ମୂଢ଼େ
ବିଷ୍ଣୁନାମ ନ ପଢ଼ି ଯେ ଅନ୍ୟନାମ ପଢ଼େ ।
ମୂଲିଆ ମୂଲଲାଗି ଯେ ରୂପେ ନିଏ ମୂଲ
ସେରୂପେ ବର ପାଇ ସେ ଆସଇ ଅମୂଲ୍ୟ ।
ବଡ଼ଦେବ ସାନଦେବ କେବେ ନ ବୋଲିବ
ସର୍ବଘଟେ ବିଷ୍ଣୁ ବୋଲି ମନେ ପାଞ୍ଚୁଥିବ ।
ସର୍ବଘଟେ ବିଷ୍ଣୁ ଛନ୍ତି ଏହା ଯେ ଭାବଇ
କାହାରିକୁ ସାନ ବଡ଼ ବୋଲି ନ ମଣଇ ।
ତାହାର ପୁଣ୍ୟ ସବୁଟି ହୁଅଇ ସଫଳ
ଭକ୍ତି ଅନୁରୂପେ ବର ଦ୍ୟନ୍ତି ଆଦିମୂଳ ।
ଫଳବାଞ୍ଛା କଲା ଲୋକ ବିଷ୍ଣୁଙ୍କୁ ନ ପାଇ
ଫଳକାମନା ଲୋକକୁ ମୁକ୍ତି ନ ମିଳଇ ।
ଜଗନ୍ନାଥଙ୍କ ମହିମା ଶୁଣ ବେଦବର
ସବୁ କ୍ଷେତ୍ରରେ ସାର ଶ୍ରୀ ନୀଳଗିରି ପୁର ।
ଶ୍ରୀଜଗନ୍ନାଥ ମହିମା ଯେଉଁ ନୀଳଗିରି
ପାପୀଏ ଦର୍ଶନ ମାତ୍ରେ ଭବୁ ଯାନ୍ତି ତରି ।
କେ ଅବା ପଞ୍ଚରାତ୍ର କେ ଅବା ମାସେ ପକ୍ଷେ
କେ ବରଷ ରହି ଦରଶନ କରେ ସୁଖେ ।
ଶ୍ରୀପୁରୁଷୋତ୍ତମ କଥା ଶୁଣ ହେ ନାରଦ
ତହିଁ ଗୃହୀ ନିତି ରାନ୍ଧି ଭୁଞ୍ଜେ ଯେ ପ୍ରସାଦ ।
ହବିଷ୍ୟ କଲାର ଫଳ ପାଏ ସେହି ଜନ
ଦିନକରେ ତିନିଥର ଭୁଞ୍ଜେ ପଛେ ଅନ୍ନ ।
ସେ କ୍ଷେତ୍ରେ ଲମ୍ବ ଆସନ କରି ଯେ ଶୁଅଇ
ପ୍ରଣାମ ବୋଲି ଘେନନ୍ତି ତାହା ଭାବଗ୍ରାହୀ ।
ବାଡ଼କୁ ଆଉଜି ବେନି ନେତ୍ରେ ଢୁକାଇଲେ
ଯୋଗେ ବସିଛି ଜାଣିବ ତାହାକୁଟି ଭଲେ ।
କଥା ପଡୁ ପଡୁ ଯେବେ ଲାଗେ କଳିଦ୍ୱନ୍ଦ୍ୱ
ସ୍ତୁତି କରୁଛି ବୋଲି ସେ ଘେନନ୍ତି ଗୋବିନ୍ଦ ।
ବଚନମାନ ଯେତେକ ହୁଅନ୍ତି କୁହାକୁହି
ସେ କଥାମାନ ବିଷ୍ଣୁର କବଚ ବୋଲାଇ ।
ସେ ପୁରରେ ବ୍ୟବସାୟ କରନ୍ତି ଯେ ପ୍ରାଣୀ
ତାହାଙ୍କୁ ପ୍ରସନ୍ନ ସଦାବେଳେ କମଳିନୀ ।
ରତ୍ନ ସିଂହାସନ ତଳୁ ସାଉଁଟି ଆଣିଣ
ପ୍ରସାଦ କଣିକା ଯେବା କରଇ ଭକ୍ଷଣ ।
ଚୌରାଶୀ ସିଦ୍ଧେ ବୋଲାଇ ସେହୁ ସିଦ୍ଧଜନ
କ୍ଷେତ୍ର ମହାତମେ ଏହା ହୋଇଛି ଲିଖନ ।
ଏକଦିନେ ସଦାଶିବ କ୍ଷେତ୍ରେ ବିଜେକଲେ
ବଡ଼ ଦେଉଳରେ ଯାଇ ପ୍ରବେଶ ହୋଇଲେ
ହରିଙ୍କୁ ସେବିଲେ ଭକ୍ତିଭାବେ ତ୍ରିପୁରାରୀ
ସାକ୍ଷାତରେ ବ୍ରହ୍ମ ବୋଲି ମନେ ଚିନ୍ତାକରି ।
କର ପ୍ରସାରି ନମିଲେ ପଦ୍ମପାଦ ତଳେ
ଶ୍ରୀମହାପ୍ରସାଦ ଆଣି ଭୁଞ୍ଜିଲେ ତତ୍କାଳେ ।
ଭୁଞ୍ଜିବେ ପାର୍ବତୀ ଠାକୁରାଣୀ ବୋଲିକରି
ଶ୍ରୀକରେ ଧରି ପ୍ରସାଦ ଗଲେ ତ୍ରିପୁରାରୀ ।
ଉମାକୁ କହିଲେ ସେବା କର ବେଗେ ସଖି
ଶ୍ରୀହରି ପ୍ରସାଦ ଆମ୍ଭେ ଦେଖ ଆଣିଅଛୁ
ଶୁଣିଣ ପାର୍ବତୀ ଦେବୀ ଉଠି ତତକାଳେ
ପ୍ରସାଦ ପାଇ ନମିଲେ ସ୍ୱାମୀ ପାଦତଳେ ।
ବୋଇଲେ କ୍ଷେତ୍ରେ କି ଯାଇଥିଲ ବିରୂପାକ୍ଷ
ତୁମ୍ଭର ଘେନି ପ୍ରସାଦ ପାଇ ହେଲି ମୋକ୍ଷ ।
ପ୍ରଳୟ କାଳେ ପୁଣି ଏ ଥିଲା ନୀଳଗିରି
ସିଂହାସନେ ଜଗନ୍ନାଥ ଥିଲେ ବିଜେକରି ।
ପୃଥ୍ୱୀ ଆପ ତେଜ ବାୟୁ ସର୍ବେଗଲେ ବୁଡ଼ି
ଜଗନ୍ନାଥ ଥିଲେ ଏକା ହୋଇଣ ତ୍ରିଜୀବୀ ।
ବ୍ରହ୍ମା ଇନ୍ଦ୍ର ରୁଦ୍ର ଆଦି ଦଶଦିଗ ପାଳେ
ସମସ୍ତେ ଲୋପ ହୋଇଣ ଗଲେ ଭୂମଣ୍ଡଳେ
ପ୍ରଳୟ ଅନ୍ତରେ ପୁଣି ସର୍ବେ ହେଲେ ଜାତ
ସବୁକାଳେ ବିରାଜନ୍ତି ନୀଳଗିରି କାନ୍ତ ।

ବଶିଷ୍ଠ ଯେ ନୀଳଗିରି କଥା ଥିଲେ କହି
ମହାପ୍ରସାଦ ପାଇଲି ଆସି ଏବେ ମୁହିଁ ।
ଈଶ୍ୱର ବୋଇଲେ ସଖି ଏ କଥା ପ୍ରମାଣ
ପ୍ରତ୍ୟକ୍ଷେ ଶ୍ରୀଜଗନ୍ନାଥ ବ୍ରହ୍ମ ବୋଲି ଜାଣ ।
ବ୍ରହ୍ମରୂପ ନୋହିଲେ କି ପ୍ରକାଶ ପାଆନ୍ତା
ଆମ୍ଭର ପ୍ରସାଦୁଁ ଯେ କି ବଡ଼ହିଁ ବୋଲନ୍ତା ।
ପ୍ରତ୍ୟକ୍ଷ ଅଟନ୍ତି ସ୍ୱୟଂ ବ୍ରହ୍ମ ଜଗନ୍ନାଥ
ସେ ପ୍ରଭୁ ଉଚ୍ଛିଷ୍ଟ ଭୁଞ୍ଜନ୍ତି ଯେ ପରମାର୍ଥ ।
ତେଣୁ ସେ ପ୍ରସାଦ ମହାପ୍ରସାଦ ବୋଲାନ୍ତି
ବ୍ରାହ୍ମଣ ଚଣ୍ଡାଳ ଆଦି ସମସ୍ତେ ଭୁଞ୍ଜନ୍ତି ।
ଚତୁର୍ଦ୍ଦଶ ଲୋକେ ଖାଇ ମୁଣ୍ଡେ ପୋଛୁଥାନ୍ତି
ତେତିଶକୋଟି ଦେବେ ପ୍ରସାଦ ନିତି ପାନ୍ତି ।
ବ୍ରହ୍ମା ପ୍ରସାଦ କଣିକା ମାତ୍ର ଏକ ପାଇ
ସୃଜନ୍ତି ପୃଥ୍ୱୀସେ ମହାବଳବନ୍ତ ହୋଇ ।
ଚିତ୍ତେ ଭକ୍ତି ରଖି ପ୍ରସାଦକୁ ପାଉଥିଲେ
ସେ ଲୋକ ଆତ୍ମା କୃତାର୍ଥ ହୁଅଇଟି ଭଲେ ।
ଆବର ଭୁଞ୍ଜିବା ଯେତେଦ୍ରବ୍ୟ ଯେତେପ୍ରାଣୀ
ବିଷ୍ଣୁଙ୍କୁ ଚଳୁଦେଇଣ ଗ୍ରାସିବ ଯେ ଆଣି ।
ଶ୍ରୀଜଗନ୍ନାଥ ପ୍ରସାଦ ସଙ୍ଗେ ତାକୁ ଯୋଖି
ଚଳୁ ନ ଦେଇ ଭୁଞ୍ଜିଲେ ଅମେଧରେ ଦେଖି
ଯେତେକ ଲୋକ ଚଳୁଟି ବିଷ୍ଣୁଙ୍କୁ ନ ଦ୍ୟନ୍ତି,
ଗାବ ଆଧାର ଖାଇଲା ପ୍ରାୟ ଲେଖା ହ୍ୱନ୍ତି ।
ଶ୍ରୀଜଗନ୍ନାଥ ପ୍ରଭୁ ମହିମା ଏଡ଼େ ଜାଣ
ଦର୍ଶନ କରି ଆସନ୍ତି ସର୍ବେ ସଂସାରେଣ ।
ସମ୍ୱତ୍ସର ଗୋଟିଏ ଦ୍ୱାଦଶ ଯାତ୍ରା କରି
ରତ୍ନ ସିଂହାସନେ ବିଜେ କରିଥାନ୍ତି ହରି ।
ଆଷାଢ଼ ଶୁକ୍ଳପକ୍ଷ ଦ୍ୱିତୀୟା ତିଥିଦିନ
ରଚିଲେକ ଶ୍ରୀଗୁଣ୍ଡିଚା ଯାତ୍ରା ଭଗବାନ ।
ଶ୍ରୀନନ୍ଦିଘୋଷ ରଥରେ ବିଜେ ଜଗନ୍ନାଥ
ବିଜେକଲେ ବଳଭଦ୍ର ତାଳଧ୍ୱଜ ରଥ ।
ସୁଭଦ୍ରା ବିଜୟ କଲେ ପୁଷ୍ପକ ବିମାନେ
ଏରୂପେ ରଥେ ବିଜୟ ପ୍ରଭୁ ତିନିଜଣେ ।
ଚଉଦ ପୁରର ଲୋକେ ଆସନ୍ତି ତା ଦେଖି
ଆନନ୍ଦରେ ଚାହୁଁଥାନ୍ତି ଶୁଦ୍ଧ କରି ଆଖି ।
ନବଦିନ ଯାତ୍ରା ଅନ୍ତେ ଆସନ୍ତେ ଶ୍ରୀନାଥ
ଚତୁର୍ଦ୍ଦଶ ଲୋକ ଦେଖି ହୁଅନ୍ତି କୃତାର୍ଥ ।
ଶ୍ରୀଜଗନ୍ନାଥ ଦର୍ଶନ କରିବା ନିମନ୍ତେ
ମଞ୍ଚପୁର ଲୋକ ଆସି ଦେଖନ୍ତି ସମସ୍ତେ ।
ଅବନ୍ତୀ ନଗରେ ଜନ୍ମ ଏକ ବିପ୍ରବର
ହରିକୀର୍ତ୍ତନ ବୋଲିଣ ଅଟେ ନାମ ତାର ।
କାଣ୍ୱ ଶାଖା ଯଜୁର୍ବେଦ ଗୋତ୍ର କଉଣ୍ଡଣ୍ୟ
ଅତ୍ୟନ୍ତ ନିଷ୍ଠାପର ସେ ଅଟଇ ବ୍ରାହ୍ମଣ ।
ଷଡ଼ଶାସ୍ତ୍ରରେ ଜିତା ସେ ପୁଣି ଅଗ୍ନି ହୋତ୍ରୀ
ଶ୍ରୀବିଷ୍ଣୁ ଭଜନ କରୁଥାଇ ଦିବାରାତି ।
ସମସ୍ତ ଜୀବଯାକଙ୍କୁ ମଣେ ବିଷ୍ଣୁ ସମ
ସର୍ବଘଟେ ଛନ୍ତି ଯେଣୁ ଶ୍ରୀପୁରୁଷୋତ୍ତମ ।
କହନ୍ତି ସେ ସଦାଶିବ ଶୁଣ ଶାକମ୍ଭରୀ
ହରିକୀର୍ତ୍ତନର କଥା ଶୁଣି ଯିବୁ ତରି ।
ସମସ୍ତ ଦେଶ ଲୋକେ ନ ଦେଖାକରି ଯାନ୍ତେ
ବ୍ରାହ୍ମଣ ଦେଖିଲେ ତାହା ବିଚାରଇ ଚିତ୍ତେ ।
ମନେ ପାଞ୍ଚେ ଜଗନ୍ନାଥ ଦୃଶ୍ୟକେଡ଼େ ପୁଣ୍ୟ
ଦେଖି ମୋକ୍ଷ ହୋଇ ଯାଉଛନ୍ତି ସର୍ବଜନ ।
ଏତେ ପାଞ୍ଚି ବ୍ରାହ୍ମଣ ବିସ୍ମୟ ହୋଇ ଚିତ୍ତେ
ବୋଇଲା ମୋଠାରୁ ହୀନ ନାହିଁକେ ଜଗତେ
କ୍ଷେତ୍ରମାହାତ୍ମ୍ୟ ଗ୍ରନ୍ଥ ମୁଁ ନିତ୍ୟେ ପଢ଼ି ପଢ଼ି
ଅର୍ଥ ବୁଝି ଦର୍ଶନ ନକଲି ପଥ ହୁଡ଼ି ।
ମୋହଠାରୁ ହୀନହୋଇ ସଂସାରେକେ ନାହିଁ
ଜଗନ୍ନାଥ ଦର୍ଶନ ନ କଲି ଦିନେ ଯାଇଁ ।
ଧନ ଦାରା ସୁତରେ ଯେ ରହିଲା ମୋ ମନ
ଜଗନ୍ନାଥଙ୍କୁ ଯାଇଁ ନ କଲି ଦରଶନ ।
ଏତେ ପାଞ୍ଚିଣ ବ୍ରାହ୍ମଣ ମନେ ହୋଇ ଦୁଃଖୀ
କ୍ଷେତ୍ର ମାହାତ୍ମ୍ୟ ପୋଥିକି କାଖତଳେ ଜାକି ।
ପ୍ରଭୁଙ୍କୁ ଦର୍ଶନ ଯାଇଁ କରିବା ନିମନ୍ତେ
ଚଳିଲା ସେ ବିପ୍ରବର କ୍ଷେତ୍ରକୁ ତୁରିତେ ।
ଶ୍ରୀଜଗନ୍ନାଥ ପଦରେ ନିବେଶିଣ ମନ
ଶ୍ରୀକ୍ଷେତ୍ରକୁ ବାହାରିଲା କରିଣ ଗମନ ।
ଏମନ୍ତେ ବିପ୍ର ମିଳନ୍ତେ କ୍ଷେତ୍ରବର ଲାଗେ
ଦେଖି ଦେଖି କରି ଆସୁଛନ୍ତି ଲୋକ ବେଗେ
ଲୋକନାଥଙ୍କ ପାଶରେ ମିଳନ୍ତେଯେ ଯାଇ
ଦେଖିଲେ ଲୋକ ଗହଳ କଳନା ନ ଯାଇ ।
ସେଠାବକୁ ନୀଳଗିରି ଦିଶେ ଶୋଭାକର
ଅନେକ ସ୍ତୁତି କରଇ ତହିଁ ବିପ୍ରବର ।
ଏମନ୍ତେ ସେହି ବ୍ରାହ୍ମଣ ସ୍ତୁତି କରୁ କରୁ
ଦେଖଇ ଲୋକେ ବାହାରି ଯାଆନ୍ତୁ କ୍ଷେତ୍ରରୁ
ଲୋକଙ୍କର ଯିବା ଦେଖି ପାଞ୍ଚେ ବିପ୍ର ମନେ
ପୁଚ୍ଛଇ ଏତେକ ଲୋକ ଥିଲେ କେଉଁ ସ୍ଥାନେ
ଲୋକେ ବୋଲନ୍ତି ଆମ୍ଭେତ କ୍ଷେତ୍ରେ ଯାଇଥିଲୁ
ଶ୍ରୀଜଗନ୍ନାଥଙ୍କୁ ଦେଖି ବାହୁଡ଼ି ଆସିଲୁ ।
ତାହା ଶୁଣି ସ୍ତମ୍ଭୀଭୁତେ ବସିଲା ବ୍ରାହ୍ମଣ
ବୋଇଲା ମୋକ୍ଷଗତିକି ହେଲା ଏଥେ ପୁଣ ।

ଯେଉଁରୂପେ ଗଲେଫେରି ଆସିଲେ ସେରୂପେ
ଚାଲି ଚାଲି ଯାଇ ଆସି ଗଲେ ଚାଲି ଆପେ ।
ଭାର ବୋଝ ଯାଉଁଳି ସେ ଯେତେବେଳେଆଣି
ସରିଗଲାରୁ ପଳାଉ ଅଛନ୍ତି ସେ ପୁଣି ।
ଧନ ହାତରେ ଥିବାରୁ କ୍ଷେତ୍ରେ ରହିଥିଲେ
ସେହି ଦ୍ରବ୍ୟ ସରିଲାରୁ ସର୍ବେ ପଳାଇଲେ ।
ହାଟକୁ ଆସିଣ ଯେହ୍ନେ କାରବାର କରି
ସେହିରୂପେ ଗଲେ କିଏ କ୍ଷେତ୍ରରୁ ବାହାରି ।
ଦରଶନ କରି କ୍ଷେତ୍ର ଗଲେ ବୁଲି ବୁଲି
ଏହାଙ୍କୁ ଚାହିଁଣ ବ୍ୟର୍ଥେ ଆସିଲି ମୁଁ ଚାଲି ।
ଯେଉଁ ରୂପରେ ଗଲେଏ ଆସିଲେସେ ରୂପେ
କାହାକୁ ମୋକ୍ଷ ହର ନ କଲେ ରେଣୁକହ୍ନେ
ମୋତେହେଲେ ମୋକ୍ଷଗୋଟି ଏତଦିଶୁନାହିଁ
ଦର୍ଶନ କରି ଆସନ୍ତି ମାତ୍ର ସର୍ବେ ରହି ।
କ୍ଷେତ୍ରମାହାତ୍ମ୍ୟ ଗ୍ରନ୍ଥରେ ଲେଖିକେତେ ପୁଣ୍ୟ
ସେକଥା ହେଲା ବୋଲି ନ ଲାଗେ ମୋରମନ
ସମସ୍ତେ ଆସିଥିବାରୁ ମୁଁ ମଧ ଆସିଥିଲି
ମୋକ୍ଷହେବାରୁ କଥାତ କାରେ ନ ଦେଖିଲି
ଗଲେଯେଉଁ ମାର୍ଗରେ ସେଆସିଲେସେମାର୍ଗେ
ଯେ ଯାହାର ବର୍ଣ୍ଣ ଧରିଛନ୍ତି ଯେଝା ଅଙ୍ଗେ ।
କଳାବର୍ଣ୍ଣ ଲୋକ କିବା ଗୌରବର୍ଣ୍ଣ ହେଲା
ଗଉରବର୍ଣ୍ଣ ଲୋକ କି ଶ୍ୟାମଳ ଦିଶିଲା ।
ଚିତ୍ତ ନିର୍ମଳ ଲୋକ ସେ ଅବା କରିଥିବ
ନୋହିଲେ ସର୍ବେ ଦିଶନ୍ତି ମୋତେ ଏକଭାଗ
ଏତେ ବୋଲିଣ ବ୍ରାହ୍ମଣ ମନେ ଚିନ୍ତା ବହି
ଜଗନ୍ନାଥ ପ୍ରଭୁଙ୍କ ସେ ମନେ ମନେ ଧାୟି ।
ଶ୍ରୀଆସନ ମନ୍ତ୍ରପଢ଼ି ଋଷି ଛନ୍ଦ କଲା
ଶ୍ରୀଜଗନ୍ନାଥ ପ୍ରଭୁଙ୍କୁ ହୃଦେ ସୁମରିଲା ।
କ୍ଷେତ୍ର ମାହାତ୍ମ୍ୟ ପୁରାଣ ସବୁଦିନେ ପଢ଼େ
ସେହିଦିନ ତ ନ ପଢ଼ି ବସେ ମନଦୃଢ଼େ ।
ବୋଇଲା ଏ ପୁରାଣ କି ହେବ ପଢ଼ି ପଢ଼ି
ଏତେ ବୋଲିଣ ଲେଖନ ଧରି କରେ ଭିଡ଼ି ।
ବୋଇଲା ଏ ଗ୍ରନ୍ଥକୁ ମୁଁ ପକାଇବି ଚିରି
ଏଡ଼େକ କ୍ଷେତ୍ରରୁ ସର୍ବେ ଯାଉଛନ୍ତି ଫେରି ।
ଏତେ ବୋଲି ପୁରାଣକୁ ଚିରିବାକୁ ଯାନ୍ତେ
ଜଗନ୍ନାଥ ଅନ୍ତର୍ଯ୍ୟାମୀ ଆସିଲେ ତୁରିତେ ।
ବ୍ରହ୍ମାଣ୍ଡ ଲୋକଯାକର ଜାଣନ୍ତି ସେ ମନ
ତେଣୁ ସେ ପ୍ରଭୁଙ୍କ ନାମ ଅଟେ ଭଗବାନ ।
ବ୍ରାହ୍ମଣସ୍ୱରୂପ ଧରି ବିଜେକଲେ ହରି
ହସ୍ତେ ଗଡୁ ତମ୍ବା ପାତ୍ର ଅଛନ୍ତି ସେ ଧରି ।
ତତକାଳେ ବିପ୍ରହସ୍ତ ଧଇଲେକ ପ୍ରଭୁ
ବୋଇଲେ ବିଜେ କଲଣି କହ ତୁମ୍ଭେ କେବୁ
ବିପ୍ରେ ବୋଇଲେ ଆସିଲୁଁ ହେଲା ତିନିଦିନ
ଲୋକନାଥ ପଦାବାଟେ ଗଲେ କେତେଜଣ
କ୍ଷେତ୍ର ମାହାତ୍ମ୍ୟ ପୁରାଣେ ଯାହା ଲେଖାଅଛି
ସେ ପୁଣ୍ୟଫଳ ତ ଏବେ ନ ଦେଖିଲେ କିଛି
ମହାପ୍ରସାଦ ଯେ ସର୍ବେ ନେଉଛନ୍ତି ବହି
ଦେଖିଲି ପୁଣ୍ୟ ଏତିକି ରହିଅଛି ତହିଁ ।
ଭକ୍ତିଭାବେ ବହି ନେଲେ ତରନ୍ତି ବା ଲୋକେ
ଖାଇବା ଲୋଭରେ ସିନା ବହିନ୍ୟନ୍ତି ଥୋକେ
ଅନ୍ନ ଭୁଞ୍ଜନ୍ତି ଯେ ଲୋକେ ଗର୍ଭ ପୂର୍ଣ୍ଣକରି
ଭସ୍ମ ହୋଇଯାଏ ପ୍ରହରେକ ଗଲେ ସରି ।
ସେହି ପରକାରେ ମହାପ୍ରସାଦ ହେବକି
ହେତୁ ରହି ନ ଭୁଞ୍ଜିଲେ ତରିବ ସେ ନିକି ।
ହେତୁ ରଖି ଭୁଞ୍ଜିବ ଯେ ଗର୍ଭ କରି ପୁରା
ଜଗନ୍ନାଥେ ଦ୍ୟନ୍ତି ତାକୁ ମୁକତିପସରା ।
ପ୍ରସାଦମାନଙ୍କୁ ଘେନି ଚଳିଯାନ୍ତି ଯେହି
କପଟ ହିଂସା ଲୋଭକୁ ହୃଦେ ଛନ୍ତି ବହି ।
ଦେଖିଲି ସବୁରି ଅଙ୍ଗେ ମାୟା ଅଛି ପୂରି
ଘରକୁ ଫେରି ଯାଆନ୍ତି ଦରଶନ କରି ।
ସେହି ଦେହ ସେହି ଚର୍ମ ସେହି ଲୋକ ଘେନି
କେ ଗଲା କୃତାର୍ଥ ହୋଇ ନ ପାରିଲି ଚିହ୍ନି
ଏଣୁକରି ଶ୍ରୀକ୍ଷେତ୍ରର ମାହାତ୍ମ୍ୟ ପୁରାଣ
ଧରିଛି ଲେଖନ ଦେଖ ଚିରିବି ଏକ୍ଷଣ ।
ତାହାଶୁଣି ମନମଧେ ହସି ଜଗନ୍ନାଥ
ତକ୍ଷଣେ ପ୍ରଭୁ ଧଇଲେ ବ୍ରାହ୍ମଣର ହସ୍ତ ।
ହରିକୀର୍ତ୍ତନ କଥାକୁ ଶୁଣି ଆଦି ମୂଳ
ଅନ୍ତର୍ଯ୍ୟାମୀ ଜଗନ୍ନାଥ କହନ୍ତି କୋମଳ ।
ବୋଲନ୍ତି ସାବଧାନେ ତୁ ଶୁଣ ବିପ୍ରବର
ପୁରାଣେ କରିଛି ଯାହା କଥା ନିରାଧାର ।
ଯେବଣ ସକାଶୁ ବଣା ହୋଇଲା ତା ଚିତ୍ତ
ଶ୍ରୀକ୍ଷେତ୍ର ମାହାତ୍ମ୍ୟ ହେଲେ ଅଟଇ ସିଦ୍ଧାନ୍ତ ।
ତୁମ୍ଭେ ଆତ୍ମଜ୍ଞାନୀ ହୋଇଗଲ କିମ୍ପା ବଣା
ଯେ ଯେହ୍ନେ ତରିବ ତୁମ୍ଭଙ୍କୁତ ଅଛି ଜଣା ।
ବ୍ରହ୍ମାଣ୍ଡରେ ଯେଉଁଗ୍ରନ୍ଥ ଅଛି ସଦାକାଳେ
ତାହା କିମ୍ପାଇଁ ଚିରିବ ତୁମ୍ଭେ ନିଜ ବଳେ ।
ପୁରାଣେ ପ୍ରଭୁ ମହିମା କହିଅଛି ଯାହା
ଏକମନେ ଶୁଣ ଆମ୍ଭେ କହୁଅଛୁଁ ତାହା ।
ଦୂରେ ଥାଇଁ ବିଷ୍ଣୁଙ୍କୁ ଯେ ପ୍ରାଣୀ ସୁମରଇ
ଦୃମ ମନ ପ୍ରାଣ ତାଙ୍କ ପଦେ ସମର୍ପଇ ।

ସେ ଜନମାନେ ସଂସାରୁ ହୋଇଯାନ୍ତି ପାର
ଅନ୍ତେ ଯାଇଣ ବସନ୍ତି ବଇକୁଣ୍ଠପୁର ।
ଆଉ କଥାଏ କୀର୍ତ୍ତନ ମିଶ୍ରେ ତୁମ୍ଭେ ଶୁଣ
ମାୟାମୋହ ଲୋଭେ ପଡ଼ିଥାଇ ଯେଉଁ ଜନ ।
ବିଷୟା ଦ୍ୱନ୍ଦରେ ପଡ଼ି ସଂସାରେ ଭ୍ରମଇ
ବିଷ୍ଣୁ ନାମ ନ ଶୁଣି ଯେ ପୁରାଣ ନିନ୍ଦଇ ।
ଏମନ୍ତ ଲୋକ କେବେହେଁ ନ ପାଏ ହରିଙ୍କି
ଜାଣୁ ଜାଣୁ ବଣା ତୁମ୍ଭେ ହେଉଛ କାହିଁକି ।
ଯେତେକ ଲୋକ ଆସନ୍ତି କ୍ଷେତ୍ର ଦର୍ଶନକୁ
ଜଗନ୍ନାଥ ଯାତ୍ରା ଦେଖି ଚଳନ୍ତି ଗୃହକୁ ।
ବିଷ୍ଣୁପୁରକୁ ଆସି ଦେଖଣାହାରୀ ହୁନ୍ତି
ପୁଣ୍ୟବନ୍ତ ଲୋକ ଏକା ବିଷ୍ଣୁଙ୍କୁ ପାଆନ୍ତି ।
ଦୟାଳୁ ଅଟଇ ସେହି ପ୍ରଭୁ ଜଗନ୍ନାଥ
ଭକ୍ତି ଦେଖିଣ ପୂରାନ୍ତି ନିଜ ମନୋରଥ ।
ଏ କ୍ଷେତ୍ର ମାହାତ୍ମ୍ୟ ଗ୍ରନ୍ଥ ଅଟଇ ଯେ ସାର
ତୁମ୍ଭେ କି ବୁଝି ଏହାକୁ କର ନାରଖାର ।
କ୍ଷେତ୍ର ମାହାତ୍ମ୍ୟ ଶୁଣିଲେ ପିଣ୍ଡ ପାଏ ମୁକ୍ତି
କି ବୋଲିଣ ଚିରିଦେବ ଏ ପୁରାଣ ପୋଥି ।
ଶୁଣିଣ ହରିକୀର୍ତ୍ତନ ମନେ ଲଭି ତୋଷ
ବୋଲେ ଆପଣଙ୍କ ନାମଅଟେ କହ କିସ ।
ଶ୍ରୀହରି ବୋଇଲେ ଆମ୍ଭ ଅଟୁ କ୍ଷେତ୍ରବାସୀ
ସମସ୍ତଙ୍କ ଉପକାରେ ଥାଉଁ ଦିବାନିଶି ।
କେ ନ ଜନ୍ମୁ ଆମ୍ଭେ ହୋଇଅଛୁ ଆଗୁ ଜନ୍ମ
ଅନନ୍ତ ପଢ଼ିଆରି ଯେ ଅଟେ ଆମ୍ଭ ନାମ ।
ଅପାର କାଳୁ ଅଛୁ ଏ କ୍ଷେତ୍ରେ ଘର କରି
ଛପନ କୋଟି କୁଟୁମ୍ବ ଅଛନ୍ତି ଆମ୍ଭରି ।
ବାସଗୃହ ଖଣ୍ଡେ ଆମ୍ଭ କ୍ଷେତ୍ରରେ ଥିବାରୁ
ରହିଛୁ କାଳ ବଞ୍ଚିଣ ଅନେକ ହସ୍ତରୁ ।
କୁଟୁମ୍ବଙ୍କର ଅନ୍ନ ଯେ ଷାଠି ପୌଟି ଖଞ୍ଜା ।
ବହୁଦିନ ଖଞ୍ଜିଛନ୍ତି ଏହା ମହାରାଜା ।
ସେ ପଢ଼ି ଖଞ୍ଜା ଖାଇଣ ସୁଖେ ଅଛୁ ବସି
କହୁ ପରହିତେ କଥା ପଡ଼ିଗଲେ ଆସି ।
କଥାର ଚାତୁରି ଶୁଣି ସେ ହରିକୀର୍ତ୍ତନ
ମନରେ ଭାଳଇ ଏହୁ ଅଟେ ମହାଜନ ।
ମାନବଙ୍କ ପ୍ରାଣୀ ବାଣୀ ନ କହିଲେ କିଛି
କେବଣ ଦେବତା ଏହୁ ଅଟେ କି ଶ୍ରୀବତ୍ସି ।
ଏତେ ପାଞ୍ଚି ବ୍ରାହ୍ମଣ ବସିଲେ ଧ୍ୟାନ କରି
ଧ୍ୟାନ କରୁ କରୁ ଆଗେ ଦିଶି ନରହରି ।
ହୃଦରେ ପାଞ୍ଚିଲେ ମୁହିଁ ମନ୍ଦକୃତ୍ୟ କଲି
ଶ୍ରୀଜଗନ୍ନାଥ ପ୍ରଭୁଙ୍କୁ ଚିହ୍ନି ନ ପାରିଲି ।

ବ୍ରାହ୍ମଣ ପ୍ରାୟ ମୁଁ ମଣି ଦୋଷ କରି କେତେ
ମୋର ଛାର କର ଧରିଛନ୍ତି ପଦ୍ମହସ୍ତେ ।
ଦୁଇଶ ଯୋଜନ ମୁଁ ଆସିଲି କଷ୍ଟେ ପଡ଼ି
ସେ ଦୁଃଖତ ଏବେ ଗଲା ମୋର ଅଙ୍ଗୁଛାଡ଼ି
ଏତେ ବୋଲି ବିପ୍ରବର ପାୟେ ପଡ଼ି ଶୋଇ
ଉଠିଣ କରଇ ସ୍ତୁତି କୃତାଞ୍ଜଳି ହୋଇ ।
ହରିକୀର୍ତ୍ତନକୁ ଆଶ୍ୱାସିଲେ ଜଗନ୍ନାଥ
ବୋଇଲେ ଦେଖଯାଇ ମୋ ନନ୍ଦିଘୋଷରଥ
ହରିକୀର୍ତ୍ତବ ବୋଲେ ମୁଁ ଲୋଡ଼ୁଥିଲି ଯାହା
ପ୍ରତ୍ୟକ୍ଷରେ ଜଗନ୍ନାଥ ଦେଖିଲିଚୌବାହା ।
ନନ୍ଦିଘୋଷ ରଥକୁ ସଂସାର ଜନେ ଦେଖି
ଯାଉଅଛନ୍ତି ବାହାରି ପରସାଦ ଭକ୍ଷି ।
ମୁହିଁ ସେହିରୂପେ ଦେଖି ଯାନ୍ତି ସିନା ଚଳି
ମନ ନିର୍ମଳୁ ଦେଖିଲି ମୁହିଁ ବନମାଳୀ ।
ବିଷ୍ଣୁ ପ୍ରତିମା ଛାମୁକୁ ଦେଖିବାକୁ ଗଲେ
ସେ ପ୍ରତିମା ପଦ୍ମପାଦେ ମନ ନିବେଶିଲେ ।
ତେବେ ଯାଇଁ ଜୀବନ୍ୟାସ ହୁନ୍ତି ବାସୁଦେବ
ହେଳାରେ ଦର୍ଶନ କଲେ କାହୁଁ ବରଦେବ
ଭୋ ପ୍ରଭୁ ଶ୍ରୀଜଗନ୍ନାଥ ଅଟ ଭାବଗ୍ରାହୀ
ତୁମ୍ଭର ମହିମା କେହୁ ପାରେ ମୁଖେ କହି ।
ମୁହିଁ ଛାର ମାନବ ଯେ ଅଟେ ହୀନ ଲୋକ
ଶ୍ରୀହସ୍ତେ ହସ୍ତ ଧଇଲ ମୋର ପଦ୍ମମୁଖ ।
ଯେ ଜନ ତୁମ୍ଭ ମହିମା ଗୋଟି ନ ଜାଣଇ
ପଶୁଜନ୍ତୁ ସମାନେ ସେ ପ୍ରାଣୀଲେଖା ହୋଇ
ଅନ୍ତଃକାଳେ ତୁମ୍ଭଙ୍କୁହେ ପ୍ରାଣୀ କରେ ଲୟେ
ମୋକ୍ଷ ପାଇ ସେ ସଂସାର ମଧ୍ୟୁ ତରିଯାଏ ।
ଚଣ୍ଡାଳ ହୋଇଣ ଯେବେ ଭଜେ ତୁମ୍ଭନାମ
ଉତ୍ତମ ଗତି ପାଇ ସେ ବସେ ନିତ୍ୟଧାମ ।
ଦ୍ୱାଦଶଗୁଣେ ପଣ୍ଡିତ ବିପ୍ର ହୋଇଥିବ
ସବୁ ନିତ୍ୟକର୍ମ କରି ଯେହୁ ସେ ଚିହ୍ନିବ ।
ଦ୍ୱାଦଶ ଗୁଣ କରମ ପୁରାଣେ ଯା ଅଛି
ଗୋଟି ଗୋଟି କହିବା ସେ ଗ୍ରନ୍ଥ ବାଛି ବାଛି
ଅହିଂସା ଯେ ତପ ଶମ ଦମ ଜ୍ଞାନ ଧର୍ମ
ତିତିକ୍ଷା ଯଜ୍ଞ ଯେ ଧୃତି ଶ୍ରୁତି ଯେ ଉତ୍ତମ ।
ଏ ରୂପେ ବ୍ରାହ୍ମଣର ଦ୍ୱାଦଶ ଗୁଣ କହି
ଆବରଯେ ବେଦମନ୍ତ୍ର ଶାସ୍ତ୍ର ପଢ଼ିଥାଇ ।
ଏତେ ଗୁଣ ଥାଇ ଯେ ନକରେ ହରିସେବା
ଚଣ୍ଡାଳରୁ ହୀନ ତାକୁ କିମ୍ବା ନ ବୋଲିବା
ବ୍ରାହ୍ମଣ ଗୋସାଇଁ ସମସ୍ତଙ୍କ ମାନ୍ୟ ହୋନ୍ତି
ଆପଣ ଆତ୍ମାକୁ ସେହି ତାରି ନ ପାରନ୍ତି ।

ରାଜ ଧନ ଅର୍ଜିଣ ଯେ ବଡ଼ପଣ ଥାଇ
ଧନବନ୍ତ ହୋଇଣ ସେ ସୁଖେ ବିଳସଇ ।
ଉତ୍ତମକୁଳେ ଜନ୍ମି ସେ ଦିଶଇ ସୌନ୍ଦର୍ଯ୍ୟ
ଧନଜନେ ପୂର୍ଣ୍ଣ ହୋଇକରି ରାଜକାର୍ଯ୍ୟ ।
ଏତେ ଗୁଣ ଥାଉ ଯେହୁ ହରି ନ ଭଜଇ
ଗ୍ରାମ୍ୟ ପଶୁ ତୁଲ୍ୟରେ ସେପ୍ରାଣୀ ଲେଖାହୋଇ
ଯେତେ ଭୂଷଣ ଦେହରେ ଖଞ୍ଜିଥିଲେ ଯୁବା
ବସ୍ତ୍ରହୀନେ ସେହୁ ଯେହ୍ନେ ଦିଶଇ ଅଶୋଭା
ସେହି ମତି ଅଟଇ ଏ ସଂସାର ସମ୍ପଦ
ଶ୍ରୀବିଷ୍ଣୁଙ୍କୁ ନ ଭଜିବା ଲୋକ ଅଟେ ଅନ୍ଧ ।
ଧନ ଅର୍ଜିଦାନ ଧର୍ମ ଯେ ପ୍ରାଣୀ ନକରେ
ମହା ଦରିଦ୍ର ଲୋକ ସେ ଅଟଇ ସଂସାରେ ।
ଶ୍ରୀହରି ପଦ୍ମପାଦ ଯେ ପ୍ରାଣୀ ଭଜେ ନିତି
କୁବେର ସମାନ ସେହୁ ଅଟେ ଧନପତି ।
ଶ୍ରୀହରି ପାଦୋଦକ ଯେ କରେ ନିତ୍ୟସେବା
ନରମଧ୍ୟେ ଭାଗ୍ୟବନ୍ତ ସେ ପ୍ରାଣୀ ଜାଣିବା ।
ଭକତରେ ଧନଦ୍ରବ୍ୟ ଅଟନ୍ତି ମାଧବ
ଅନ୍ୟ ଦେବତାଙ୍କୁ ସେହୁ କାହିଁକି ପୂଜିବ ।
ବିଷ୍ଣୁ ପ୍ରୀତି ଅର୍ଥରେ ଯେ ପ୍ରାଣୀ ଅର୍ଜେ ଧନ
ତାର ଦ୍ରବ୍ୟଦେଖି ତୋଷ ହୁଅନ୍ତି ଭଗବାନ ।
ତୀର୍ଥ ବ୍ରତ ଦାରା ସୁତ ଧନ ଗୃହ ଆଦି
ବିଷ୍ଣୁରେ ସମର୍ପି ସବୁ ଦିଏ ଭକ୍ତ ଯଦି ।
ତାଠାରୁ ପବିତ୍ର କେହି ସଂସାରରେ ନାହିଁ
ସବୁ ମୋର ବୋଇଲେକ ବିଷ୍ଣୁଙ୍କୁ ନ ପାଇ
ଏମନ୍ତ ବୋଲିଣ ବିପ୍ର ପ୍ରଭୁ ପାଦତଳେ
ଶରଣ ରଖ ବୋଲିଣ ଡାକେ ପ୍ରେମଭୋଳେ
ବିପ୍ରର କରକୁ ଧରିଥିଲେ ଏଣେ ହରି
ଘେନିଗଲେ ନନ୍ଦିଘୋଷ ଆପେ ବିଜେକରି
କ୍ଷେତ୍ରଯାକ ଦେଖାଇଣ ବୈକୁଣ୍ଠେ ମିଳିଲେ
ବିଷ୍ଣୁଗଣଙ୍କ ସଭାରେ ନେଇ ବସାଇଲେ ।
ବିପୁଳ ଭୋଗ ଦେଇଣ ରଖିଲେ ଛାମୁରେ
ବୋଇଲେ ଦର୍ପଣ ହୋଇ ରହମୋଆଗରେ
ଦର୍ପଣରୁ ବଳି ସୃଷ୍ଟି ମଧ୍ୟେ ନାହିଁ ଜ୍ୟୋତି
ତୁମ୍ଭଙ୍କୁ ଚାହିଁଲେ ଦିଶୁ ସବୁରି ମୂରତି ।
ଆମ୍ଭେ ଯେତେବେଳେ ଶିରେତିଳକ ଘେନିବୁ
ତୁମ୍ଭଙ୍କୁ ଚାହିଁଣ ଆମ୍ଭ ରୂପ ଦେଖୁଥିବୁ ।
ତୁମ୍ଭଙ୍କୁ ଚାହିଁଲେ ଦିଶୁ ଆମ୍ଭର ଶ୍ରୀମୁଖ
ତୁମ୍ଭର ଜ୍ୟୋତି ଦେଖିଣ ନମିବେତ୍ରିଲୋକ ।
ଜଗତ ଲୋକମାନଙ୍କୁ ହୁଅ ଦିବ୍ୟଚକ୍ଷୁ
ତୁମ୍ଭରଜ୍ୟୋତି ସଂସାରେ ହେଉ ପରଚକ୍ଷୁ ।

ଦର୍ପଣ ବାଢ଼େ ତୁମ୍ଭର ଜ୍ୟୋତି ଉଦେ ହେଉ
ଆମ୍ଭ ଆଜ୍ଞାରେ ତୁମ୍ଭର ସୁଖେ ଦିନ ଯାଉ ।
ଆମ୍ଭ ଆଜ୍ଞାରେ ଦର୍ପଣ ଜ୍ୟୋତି ଆଜ ବହ
ବ୍ରହ୍ମାଣ୍ଡଯାକ ଉଦୟ ହେଉ ତବ ଦେହ ।
ଏକେ ତ ବ୍ରହ୍ମାଣ୍ଡ ସେହୁ ତେଜେ ବଳବନ୍ତ
ଦରପଣ ମୂରତିକୁ ସେବିଲେ ଶ୍ରୀକାନ୍ତ ।
ସଦା ସୁଚିମନ୍ତ ସେ ଯେ ଅଟନ୍ତି ବ୍ରାହ୍ମଣ
ତେଣୁ ତିଳକ ଘେନନ୍ତି ଚାହିଁ ନାରାୟଣ ।
ଶୁଣି ପାର୍ବତୀ ଦେବୀ ଯେ ହୋଇଲେ ସନ୍ତୋଷ
ସ୍ୱାମୀକି ସେବା କରିଣ ଭଜନ୍ତି ଲକ୍ଷ୍ମୀଶ ।
ଶୁଣନ୍ତି ନାରଦ କହନ୍ତି ଯେ ବେଦବର
ସେ ଜଗନ୍ନାଥ ମହିମା ଅଟେ ଅଗୋଚର ।
କ୍ଷେତ୍ରର ମହିମାଯାକ ନାୟିକାଗଣଙ୍କୁ
ଶ୍ରୀନୃସିଂହ କହିଥିଲେ ପୂର୍ବରେ ତାହାଙ୍କୁ ।
ସେହି କଥାଯାକ ଏବେ ଆପଣଙ୍କ ଆଗେ
ପ୍ରାଞ୍ଜଳ କରି କହିଲୁ ସବୁ ଶାସ୍ତ୍ର ମାର୍ଗେ ।
ଶୁଣି ନାରଦଗୋସାଇଁ ହୋଇଲେ ସନ୍ତୋଷ
ସେ ପାଦେ ଶରଣ ବିପ୍ର ପୀତାମ୍ବର ଦାସ ।
ହରିକୀର୍ତ୍ତନ ବ୍ରାହ୍ମଣ ଚରଣେ ମୋ ସେବା
ବିପ୍ର ପୀତାମ୍ବରକୁ ଯେ କ୍ଷେତ୍ରେ ବାସ ଦେବା
ଯେ ଯେତେ ଭାବେ ଭଜନ୍ତି ତାଙ୍କୁ ସେହିପରି
ରଖନ୍ତି ଦୟା ବହିଣ ପ୍ରଭୁ ଦଇତ୍ୟାରି ।
ବିଷ୍ଣୁ ମନ୍ଦିରେ ଆସିଣ କେତେ ଭକ୍ତ ଥାନ୍ତି
ତେଣୁକରି ପ୍ରଭୁ ମୋତେ ପାସୋରି ପକାନ୍ତି
ସମସ୍ତଙ୍କୁ ମହାପ୍ରଭୁ ଚର୍ଚ୍ଚା କରୁ କରୁ
ମୋତେ ନିର୍ଦ୍ଦୟା କରନ୍ତି ଏକା ବ୍ରହ୍ମାଣ୍ଡରୁ ।
ଭୋଜିଘରମାନଙ୍କରେ ବହୁ ଲୋକ ହେଲେ
ଚରଚୁଚରଚୁ କେବା ଭୋକେ ରହେ ଭଲେ
ସେହିରୂପେ ମୋତେ ଅବା ପାସୋରିଲ ହରି
କାହାଠାକୁ ଯାଇଁ ଏହା କରିବି ଗୁହାରି ।
ପ୍ରଭୁ ତହୁଁ ବଡ଼ହୋଇ ଜଣେ ଯେବେଥାନ୍ତେ
ତେବେ ମୁଁ ଗୁହାରି କରି ଜାଣନ୍ତି ଏକାନ୍ତେ
ଭକ୍ତମାନେ ଦ୍ରବ୍ୟବନ୍ତ ସଂସାରେ ହେବାରୁ
ତେଣୁ ଆଦର କରନ୍ତି ତାଙ୍କୁ ମହାମେରୁ ।
ମୁହିଁ ଛିଣ୍ଡା ନେଙ୍କଡ଼ା ଦୋଷଡ଼ା ଥାଏ ଧରି
ତେଣୁ ଅସଙ୍ଖୁଳା ମୋତେ କରନ୍ତି ଦୈତ୍ୟାରି
ଆଚାରି ହୋଇଣ ପୁଣି ନ ପାରେ ଜଣାଇଁ
ତେଣୁ ଅସଙ୍ଖୁଳା କଲେ ମୋତେ ଲକ୍ଷ୍ମୀସାଇଁ
ପ୍ରଭୁଙ୍କର ନାମ ମୁଁ ନ ହେଲାରୁ ଗୋଚର
ତେଣୁ ରଖିଲେ ମୋତେତ କରିଏତେ ଦୂର

ବାୟସକୁ କଳାବର୍ଣ୍ଣ କଲେ ଯେଉଁ ହରି
ଶୁଆକୁ ଶାଗୁଣା ବର୍ଣ୍ଣେ ପ୍ରକାଶ ଯେ କରି ।
ହଂସକୁ ଯେବଣ ପ୍ରଭୁ ଶ୍ୱେତବର୍ଣ୍ଣ କଲେ
ମୟୂରକୁ କେତେ ଚିତ୍ରରୂପେ ପ୍ରକାଶିଲେ ।
ପ୍ରଭୁଙ୍କୁ କେତେଲୋକର ଚିନ୍ତାଥିଲା ଲାଗି
ମୋହର ଚିନ୍ତାଏକା ସେ ପାସୋରନ୍ତି ବେଗି
ସେ ପାଶୋରିଦେଲେ ମୁହିଁ ପାଦଝିଙ୍କୁଥାଇ
ତେଣୁ ବସନ୍ତି ଶ୍ରୀପ୍ରଭୁ ହୃଦେ ଚେତାପାଇ ।
ହରିକୀର୍ତ୍ତନ ବିପ୍ରଙ୍କ ଚରଣ ସେବାକୁ
ଧ୍ୟାନ କରୁଛି ସଂସାର ମଧ୍ୟୁଁ ତରିବାକୁ ।
ସାଧୁ ସୁପଣ୍ଡିତ ସୁଜନଙ୍କ ପାଦତଳେ
ସର୍ବଦା ସେବା ମୋହର ରହୁ ଅବହେଳେ ।
ବ୍ରାହ୍ମଣ ବାଲୁକେଶ୍ୱର ସୁତ ପୀତାମ୍ବର
ସପ୍ତମ ସାଗର ବାଣୀ କହେ ଗ୍ରନ୍ଥସାର ।



## ମହାଲକ୍ଷ୍ମୀଙ୍କର ଚାରିପୁତ୍ରଜନ୍ମ ବୃତ୍ତାନ୍ତ

ଏଥୁ ଅନନ୍ତରେ ରାଜା ଜନ୍ମେଜୟ ତାତ
ଶୁକ ଯତି ଚରଣରେ କଲେ ଦଣ୍ଡବତ ।
ବୋଇଲେ ଶ୍ରୀଜଗନ୍ନାଥ ମହିମା ଯେ ବାଣୀ
ହୋଇଲଇଁ ମୋକ୍ଷ ଏବେ ତବ ମୁଖୁ ଶୁଣି ।
ଶ୍ରୀନୃସିଂହ ପ୍ରଭୁଙ୍କର ମହିମାକୁ କହ
ଶୁଣିଲେ ତୁମ୍ଭର ମୁଖୁଁ ସାର୍ଥ ହେବ ଦେହ ।
ରାଜାର ମୁଖୁଁ ଶୁଣିଣ ହସି ଶୁକପତି
ବୋଇଲେ ଶୁଣ ନୃପ ନୃସିଂହ ପ୍ରଭୁ ମୂର୍ତ୍ତି ।
ଶ୍ରୀ ନାରଦ ଗୋସାଇଁ କି କହେ ବେଦବର
ପ୍ରଥମୁ ସପ୍ତମ ଯାଏ ଯେତେ ଅର୍ଥ ସାର ।
ବୋଇଲେ ଶୁଣ କଳହପ୍ରିୟ ଆହେ ମୁନି
ନାୟିକାଗଣ ସହିତ ଲକ୍ଷ୍ମୀ ସଙ୍ଗେ ଘେନି ।
ସମସ୍ତ ସ୍ତିରୀଙ୍କି ଘେନି ନରସିଂହ ଗଲେ
ଏକାନ୍ତ ମନ୍ଦିରେ ଯାଇ ପ୍ରଭୁ ବିଜେ କଲେ ।
ସେହିପୁର ମହିମାଟି କହିବାକି ଆଉ
ବଇକୁଣ୍ଠପୁର ପ୍ରାୟ ଦିଶେ ଦାଉ ଦାଉ ।
ରାତ୍ରି ଦିବସ ବେନି ସେ ପୁରେ ନାହିଁ ଜଣା
ପ୍ରକାଶେ ଚନ୍ଦ୍ର ସୂର୍ଯ୍ୟର ଜ୍ୟୋତି ଅକଳଣା
ସେହି ପୁରେ ବିଜେ ହେଲେ ଲକ୍ଷ୍ମୀକାନ୍ତ ହରି
ରତ୍ନପଲ୍ୟଙ୍କରେ ଯାଇ ଶୀଘ୍ରେ ବିଜେ କରି ।
ପଲ୍ୟଙ୍କ ଉପରେ ପଡ଼ିଅଛି ଦିବ୍ୟଶେଯ
ତହିଁରେ ପଡ଼ିଅଛି କର୍ପୂରଗୁଣ୍ଡ ରଜ ।
ସେବତୀ ପାଖୁଡ଼ା ତହିଁ ପରେ ଅଛି ପଡ଼ି
ଆବର ଲମ୍ବିଛି ପୁଷ୍ପମାଳା ଧାଡ଼ି ଧାଡ଼ି ।
କନକ ଖମ୍ବ ଉପରେ ସୁବର୍ଣ୍ଣର ଚାଳ
ଅଷ୍ଟରତନରେ ଝରି ଲମ୍ବେ ମାଳ ମାଳ ।
ଆବର ଯେ ମୋତିଝରା ଲମ୍ବଇ ଚୌକତି
ବ୍ରହ୍ମଜାତି ହୀରାର ମଣ୍ଡନ ପନ୍ତି ପନ୍ତି ।
ପଲ୍ୟଙ୍କ କାଛବାଡ଼ରେ ସ୍ୱର୍ଣ୍ଣ ମୋତି ଝରା
ହୀରା ପିତୁଳିରେ ମାଣିକ୍ୟ ଯେ କେରା କେରା
ଲକ୍ଷ୍ମୀର ଶ୍ରୀକର ଧରିଛନ୍ତି ଭାବଗ୍ରାହୀ
ହସି ହସି ପଲ୍ୟଙ୍କରେ ବିଜେକଲେ ଯାଇଁ ।
କୁସୁମରେ ମଣ୍ଡି ହୋଇଛନ୍ତି ଲୋକମାତା
କପାଳରେ ଘେନିଛନ୍ତି ଅଗୁରୁର ଚିତା ।
ନାନା କୁସୁମରେ ଲକ୍ଷ୍ମୀ ଖୋସିଛନ୍ତି ଖୋଷା
ଶ୍ୱେତ ପୀତ ହରିତ ଯେ ନାନା ପୁଷ୍ପ ମିଶା ।
ନୟନେ ସବୁ ଉଜ୍ଜ୍ୱଳ କର୍ଣ୍ଣେ ହୀରା କାପ
ନାସା ପୁଟରେ ବସିଣ ବିରାଜେ ପ୍ରଦୀପ ।
କଣ୍ଠରେ ସୋରିଷା ନବରତ୍ନ ଗଜମୋତି
ସୁବର୍ଣ୍ଣ ଚମ୍ପା ପରାଏ ଦିଶେ ଦେହକାନ୍ତି ।
ଗୋଟିଏ ଲକ୍ଷଣ ଯାହା ଅଙ୍ଗେ ଅଛି ପୂରି
ସେରୂପେ ବର୍ଣ୍ଣିପାରିବ କେହୁ ହେତୁକରି ।
ପାଦପଦ୍ମ ଜ୍ୟୋତି ପରକାଶେ ପଦ୍ମପ୍ରଭା
ଏରୂପେ କମଳା ଦିଶୁଛନ୍ତି ମହାଶୋଭା ।
ଭୃଗୁଋଷି ଅଂଶରୁ ସେ ହୋଇଛନ୍ତି ଜାତ
ଅନ୍ୟ ଅବତାର ଅଟନ୍ତି ଯେ ଲୋକ ମାତ ।
ବରୁଣସୁତ ବୋଲିଣ ହେଲେ ଖ୍ୟାତ ପୁଣି
ଏରୂପେ ଅଯୋନି ଜାତା ଲୋକ ଠାକୁରାଣୀ
ଦ୍ୱିତୀୟ ଅବତାରରେ ସୀତା ହେବେ ସେହି
ଏରୂପେ ବର୍ଣ୍ଣି କରି ନ ପାରେ ଦେହ ବହି ।
ପ୍ରତ୍ୟକ୍ଷେ କମଳା ଅଛନ୍ତି ସେ ଅବତରି
ବୁଝିଲେ ସେହି ରୂପକୁ ଉମା ନୁହେଁ ସରି ।
ଅପାଙ୍ଗ କରି ଚାହିଁବେ ଯେବେ କମଳିନୀ
ସେ ଚାହାଣିକି ନୃସିଂହ ପାରନ୍ତି ଯେ ଜିଣି ।
ଲକ୍ଷ୍ମୀର ମହିମା କେହୁ ପାରେ ମୁଖେ କହି
ସେବାରେ ଅନେକ ପରିବାରୀ ଛନ୍ତି ରହି ।
ଆଲଟ ଚାମର ପକାନ୍ତି ଯେ ଧରି କରେ
ପହଣ୍ଡ ମଣାଇଁ କେହୁ ଚାଳେ ଧୀରେ ଧୀରେ
ପଲ୍ୟଙ୍କେ ବିଜୟେ ଲକ୍ଷ୍ମୀ ନୃସିଂହ ଏ ବେନି
ଛାମୁରୁ ଅନ୍ତର ହେଲେ ସକଳ କାମିନୀ ।
ଲକ୍ଷ୍ମୀ ନୃସିଂହଙ୍କ ଭେଟି ଏକାନ୍ତ ହୁଅନ୍ତେ
କମଳାଙ୍କ ଓଷ୍ଠ ଧରି ହସି ଲକ୍ଷ୍ମୀକାନ୍ତେ ।

ଏକମୁଖ ହୋଇ ବସି ଘେନି ନିଜ କୋଳେ
ଚୁମ୍ବନ ଦେଲେକ ପ୍ରଭୁ ଲକ୍ଷ୍ମୀ ଗଣ୍ଡସ୍ଥଳେ
ବୋଇଲେ ସଖିରେ ମୋର ଅଟ ପ୍ରାଣମଣି
ତୁ ଅଟୁ ଗଙ୍ଗ ଦେବୀ ମୁଁ ଅଟେ ଶିବ ପୁଣି ।
ତୁ ଅଟୁ ଭାରତୀ ମୁହିଁ ଭାରତୀ ଭୂଷଣ
ତୁ ଅଟୁ ମହାଲକ୍ଷ୍ମୀ ମୁଁ ଅଟେ ନାରାୟଣ ।
ତୁ ଅଟୁ ରତିଦେବୀ ମୁଁ ଅଟେ କାମଦେବ ।
ତୁ ଅଟୁ ଭୃଗୁସୁତା ମୁଁ ଅଟେ ବାସୁଦେବ ।
ତୁ ଅଟୁ ଲୋକମାତା ମୁଁ ଅଟେ ଲୋକତାତ
ସଂସାର ଲୋକ ଅଟନ୍ତି ତେଣୁ ବିଷ୍ଣୁଭକ୍ତ ।
ସମସ୍ତ ସ୍ତିରୀ ଉପରେ ତୁମ୍ଭେ ଠାକୁରାଣୀ
ସବୁ ଉପରେ ଠାକୁର ତେଣୁ ଆମ୍ଭେ ଗୁଣି ।
ଏହାଶୁଣି ମହାଲକ୍ଷ୍ମୀ ସନ୍ତୋଷ ହୋଇଲେ
ଶ୍ରୀ ନୃସିଂହ ସ୍ୱାମୀଙ୍କର ଚରଣ ବନ୍ଦିଲେ ।
ବୋଲନ୍ତି ପରମଲକ୍ଷ୍ମୀ ଶୁଣ ଭାବଗ୍ରାହୀ
ତୁମ୍ଭ ଚରଣରେ ଏହି ପ୍ରାର୍ଥନା କରଇ ।
ମୋହର ଗର୍ଭରୁ ଯେଉଁ କୁମର ଜନ୍ମିବ
ପୃଥିବୀରେ ରାଜାହୋଇ ପରଜା ପାଳିବ ।
ଶୁଣିଣ ଯେ ମହାପ୍ରଭୁ ମନ୍ଦେ ମନ୍ଦେ ହସି
ବୋଇଲେ କେଡ଼େକ କଥା ପାଞ୍ଚ ବସିବସି ।
ପରମ ବୈଷ୍ଣବୀ ତୁମ୍ଭେ ଅଟ ପ୍ରାଣସହୀ
ଋତୁମତୀ ସ୍ତିରୀସିନା ପୁତ୍ର ପ୍ରସବଇ ।
ତୁମ୍ଭେ ପୁଣି ଋତୁସ୍ନାନ କେବେନାହଁ କରି
ତୁମ୍ଭେ ସ୍ନାନ କଲେ ପ୍ରତେ ହୁଏ ବସୁନ୍ଧରୀ ।
ଲକ୍ଷ୍ମୀ ସରସ୍ୱତୀ ବୃନ୍ଦାବତୀ ଗଙ୍ଗାଦେବୀ
ପାର୍ବତୀଙ୍କୁ ଘେନିଣ ଏ ପାଞ୍ଚ ବଇଷ୍ଣବୀ ।
ଏ ପାଞ୍ଚମୂର୍ତ୍ତି ଅଟନ୍ତି ଶ୍ରୀବ୍ରହ୍ମ ରୂପିଣୀ
ଏହାଙ୍କ ମହିମା କେହୁ ପାରିବ ବଖାଣି ।
ଅନ୍ୟ ସ୍ତିରୀ ପ୍ରାୟ ନୁହେଁ ତୁମ୍ଭର ସ୍ୱଭାବ
ତୁମ୍ଭେ ସ୍ନାନ କଲେ ପୃଥ୍ୱୀ ହୁଏ ଜଳାର୍ଣ୍ଣବ ।
ତୁମ୍ଭ ଗର୍ଭରେ ଯେବେଟି ପୁତ୍ର ହେବ ଜାତ
ଅନ୍ୟ ସ୍ତିରୀପ୍ରାୟ ତୁମ୍ଭେ ହୋଇବବିଖ୍ୟାତ ।
ପୁତ୍ରଲାଭ ଅର୍ଥେ ତବ ବଳିଅଛି ଚିତ୍ତ
ଆମ୍ଭେ ବର ଦେଉଅଛୁ ଲଭ ଚାରିସୁତ
ଉର୍ମ ଧୂର୍ମ ଜ୍ୟୋତି ଜ୍ୱାଳା ଯେଉଁ ଚାରିଦ୍ୱାର
ସେ ଚାରିଦ୍ୱାରେ ପ୍ରସବ ହୁଅନ୍ତୁ କୁମର ।
ଲକ୍ଷ୍ମୀ ବୋଇଲେ ହେସ୍ୱାମୀ ଚାରିଦ୍ୱାରେ କିଏ
କେଉଁ ନାମ ବହିଣ ସେ ରହିଛନ୍ତି ଦେହେ ।
ପ୍ରଭୁ ବୋଇଲେ ସଖୀରେ ଶୁଣ ଚାରି ନାମ
କର୍ଣ୍ଣ ଦ୍ୱାରକୁ ବୋଲନ୍ତି ଜାଣ ସର୍ବେ ଉର୍ମ ।
ନାସାର ବେନିପୁଡ଼ାକୁ ଧୂର୍ମ ବୋଲି କହି
ଶୁଣ ଆଗୋ ମହାଲକ୍ଷ୍ମୀ ମନକର୍ଣ୍ଣ ଦେଇ ।
ନୟନ ଯୁଗଳକୁ ଶ୍ରୀଜ୍ୟୋତିଦ୍ୱାର ବୋଲି
ଜ୍ୱାଳା ଦ୍ୱାର ଅଧୋମୁଖ ଜିହ୍ୱାକୁ କହିଲି ।
ମୁଖଦ୍ୱାରେ ଜନ୍ମ ଏବେ ସତ ନାମେ ପୁତ୍ର
ଉର୍ମଦ୍ୱାରେ ଜନ୍ମ ହେଉ ଧର୍ମ ନାମେ ସୁତ ।
ଜ୍ୟୋତିଦ୍ୱାରେ ଜନ୍ମହେବ ଦୟାନାମେବଳା
ନାସାପୁଟରୁ ଜନମ ହେଉ ଜ୍ଞାନବଳା ।
ଶୁଣିଣ ଲକ୍ଷ୍ମୀ ପରମ ସନ୍ତୋଷ ହୋଇଲେ
ସେହିକ୍ଷଣି ଚାରିପୁତ୍ର ଜନମ ଲଭିଲେ ।
ପୁତ୍ରଙ୍କୁ ଦେଖିଣ କୋଳେ ଧଇଲେ କମଳା
ଅଯୋନିଜାତ ଅଟନ୍ତି ସେହି ଚାରିବଳା ।
ପୁତ୍ରଙ୍କ ମୁଖେ ଚୁମ୍ବନମାନ ଲକ୍ଷ୍ମୀ ଦେଲେ
ଚାରିପୁତ୍ରଙ୍କୁ ଅମୃତ ଆଣି ଖୁଆଇଲେ ।
ଅମୃତ ଭୁଞ୍ଜି ତନୟ ହେଲେ ଚିରଜୀବୀ
ଲୋକ ତରିବାକୁ ବିଷ୍ଣୁ ପ୍ରକାଶିଲେ ଭାବି ।
ସତ୍ୟ ଧର୍ମ ଦୟା ଜ୍ଞାନ ଚାରି ନାମ ବହି
ଜନ ତାରଣରେ ଜାତ କଲେ ଭାବଗ୍ରାହୀ ।
ପୁତ୍ରଙ୍କୁ କୋଳେ ଘେନିଣ ବିଜେ କମଳିନୀ
ନୃସିଂହଙ୍କ କୋଳେନେଇ ଦେଲେଠାକୁରାଣୀ
ନୃସିଂହ ବୋଇଲେ ସଖି ଜାତ ଚାରିବାଳ
ସଂସାରକୁ ଧାରଣ ଏ ହୋଇବେ କେବଳ ।
ସତ୍ୟ ବୋଲିବା ତନୟ ସତ୍ୟେ ଏକା ଥିବ
ସବୁ ଜିହ୍ୱାରେ ବସିଣ ବାକ୍ୟ ପ୍ରକାଶିବ ।
ସତ୍ୟ ବଚନକୁ ପାଳୁଥିବେ ଯେତେ ପ୍ରାଣୀ
ତାହାଙ୍କ କନ୍ଧଛାଡ଼ି ନ ଯିବେ କମଳିନୀ ।
ସତ୍ୟବଚନ କହିଣ ସଦା ସେହୁ ଥିବ
ସେଯାହା ବୋଲିବ ତାହା ତକ୍ଷଣେ ଫଳିବ
ସତ୍ୟଥିଲା ପ୍ରାଣୀଟିକି ଦେବ ନୁହେଁ ସରି
ଅସତ୍ୟ ପ୍ରାଣୀଙ୍କି ସିନା ଛାଡ଼ିଯାଏ ଶିରୀ ।
ସତ୍ୟଥିଲା ପ୍ରାଣୀଙ୍କି ନୃସିଂହ ଥାନ୍ତି ଜଗି
ଯେତେ କ୍ଲେଶ ପଡ଼ିଲେକ ଅକ୍ଳେଯାଏ ଭାଙ୍ଗି
ସତ୍ୟକୁ ଆଶ୍ରୟ କରି ସଦା ଯେହୁ ଥିବ
ତାହାକୁଟି ଧର୍ମ ଜାଣ କେବେ ନ ଛାଡ଼ିବ
ସତ୍ୟ ଛାଡ଼ିବା ପ୍ରାଣୀଟି ଅଳ୍ପେ ନାଶ ଯାଏ
ଧର୍ମ ପୁତ୍ର କଥା ଏବେ ଶୁଣ ଆଗେ ପ୍ରିୟେ ।
ଧର୍ମ ନାମେ କୁମର ତୋ ଜନ୍ମିଲା ଶ୍ରବଣୁ
ଧର୍ମ କରିବେ ଲୋକଟି କର୍ଣ୍ଣେ ଶୁଣି ତେଣୁ ।
ବସିବେ ସବୁରି କରପଦ୍ମେ ଧର୍ମ ଯାଇ
ଧର୍ମ ନ କରିଲା ହସ୍ତ ଅଟେ ଖାରଭୂଇଁ ।

ଖାରଭୂମିର ବୃକ୍ଷର ପତ୍ର ନୁହେଁ ଯେହ୍ନେ
ଧର୍ମ ନ କରିଲା ହସ୍ତ ଅଟେ ଜାଣ ତେହ୍ନେ ।
ଧର୍ମ ପୁରୁଷ ହସ୍ତରେ ଜାଣ ବସୁ ବସୁ
ଯେ ଧର୍ମ ନ କରେ ସେହୁ ସଂସାରରେ ପଶୁ
ଧର୍ମ ପୁରୁଷ ସବୁରି ହସ୍ତେ ରହିଥାନ୍ତି
ଧର୍ମ ନ କରିଲା ଲୋକେ ହସ୍ତେ ନ ରହନ୍ତି ।
ସମୂଳେ ନଷ୍ଟ କରନ୍ତି ପ୍ରଭୁ ଅଧର୍ମୀକି
ସୌଭାଗ୍ୟବନ୍ତ ଲୋକଟି ଦ୍ୟନ୍ତି ହସ୍ତ ଟେକି ।
ଧର୍ମରେ ସିନା ରହିଛି ଚରାଚର ପୃଥ୍ୱୀ
ଧାର୍ମିକ ଲୋକ ତାରନ୍ତି ପ୍ରଭୁ ଦାଶରଥି ।
ଧର୍ମବନ୍ତ ଲୋକର ଯେ ଦାରା ଧନ ସୁତ
ଧର୍ମବଳୁ ହୁଏ ତାର ସକଳ ବର୍ଦ୍ଧିତ ।
ସାନହେଉ ବଡ଼ହେଉ ଧର୍ମ ବିଷୟକୁ
ଯେ ଧର୍ମ କରଇ ସେହୁ ଚଳେ ବୈକୁଣ୍ଠକୁ ।
ସଂସାରରେ ଧର୍ମ ଏକା ଅଟେ ଯଶକୀର୍ତ୍ତି
ଧର୍ମ କୀର୍ତ୍ତି କଲା ଲୋକ ସଦା ସଜୀବତି ।
ଦୟାବନ୍ତ ପୁତ୍ର ଗୁଣ ଶୁଣ କମଳିନୀ
ଦୟାନିଧି ବୋଲି ସେହୁ ପୁରାଣେ ବଖାଣି ।
ସବୁରି ହୃଦରେ ସେହୁ ପରକାଶି ଥାନ୍ତି
କୀଟରୁ ବ୍ରହ୍ମ ପର୍ଯ୍ୟନ୍ତ ଯେତେ ପ୍ରାଣୀ ଛନ୍ତି ।
ଦୟାବାସ କରଇ ଯେ ସବୁରି ହୃଦୟେ
ଦୟାବନ୍ତ ଲୋକେ ସଦାକାଳେ ସୁଖୀ ହୁଏ ।
ଦୟାନିଧି ଯାହାକୁଟି ଦୟା ନ କରଇ
ମାତାହୋଇ କ୍ଷୀରପାନ ତାକୁ ନ ଦିଅଇ ।
ଏଭଳି ଦୟା ପୁରୁଷ ହୃଦେ ଥାଉଁ ଥାଉଁ
ଯେ ଦୟା ନ କରେ ସେହୁ ଅଟେ କାଳରାହୁ
ଦୟାବନ୍ତ ଲୋକହେତୁ ପୃଥିବୀ ଚଳଇ
ଦୟାବନ୍ତ ହେତୁ ଦୁଃଖିଜନେ ଛନ୍ତି ରହି ।
ଦୟାବନ୍ତ ପୁରୁଷଟି ଥିବାରୁ ଏ ପୃଥ୍ୱୀ
ସମସ୍ତ ପ୍ରାଣୀଙ୍କୁ ବହିଅଛଇ ନିବର୍ତ୍ତି ।
ଦୟାବନ୍ତ ଲୋକମାନେ ବିଷ୍ଣୁଙ୍କୁ ପାଇବେ
ନିର୍ଦ୍ଦୟ ଲୋକଟି ଘୋର ନରକ ଭୁଞ୍ଜିବେ ।
ଜ୍ଞାନ ବୋଲିକରି ଯେଉଁ ପୁତ୍ର ନାମ ଜାଣ
ନାସାରନ୍ଧ୍ରୁ ଜନମ ସେ ସବୁ ହେଲା ପ୍ରାଣ ।
ଜ୍ଞାନକୁ ବଳି ଯେ ସଂସାରରେ କେହି ନାହିଁ
ଜ୍ଞାନହୀନ ଲୋକ ମୂର୍ଖପଣେ ଗଣ୍ୟ ହୋଇ ।
ଜ୍ଞାନୀଲୋକ ସାକ୍ଷାତରେ ଅଟେ ଭଗବାନ
ମୃତଶବ ତୁଲେ ଲେଖା ହୁଅଇ ଅଜ୍ଞାନ ।
ଜ୍ଞାନୀ ଲୋକଟି ସାକ୍ଷାତେ ଅଟେ ବିଷ୍ଣୁଦେହୀ
ଶୁଣ ଗୋ କମଳା କହୁଛନ୍ତି ଭାବଗ୍ରାହୀ ।

ଜ୍ଞାନ ବୋଲିବା ତନୟ ଅଛ ହୃଦେ ବସୁ
ଅଜ୍ଞାନ ଲୋକ ସଂସାରେ ଅଟଇ ଯେ ପଶୁ ।
ଏତେବୋଲି ଶ୍ରୀନୃସିଂହ ପୁତ୍ର କୋଳେ ଧରି
ଚୁମ୍ବନ ଦେଲେ ମୁଖରେ ଅତି ସ୍ନେହ କରି
ଏହାଦେଖି ମହାଲକ୍ଷ୍ମୀ ହରଷିତ ମନ
ଚାରିପୁତ୍ରଙ୍କର ମୁଖେ ଦେଲେ ସେ ଚୁମ୍ବନ ।
ମହାଲକ୍ଷ୍ମୀ ବୋଇଲେକ ଶୁଣରେ ମୋପୋଏ
ତୁମ୍ଭେ ଚାରି ଯହିଁଥିବ ମୁଁ ଥିବି ସେଠାଏଁ ।
ସେ ଲୋକ କେବେହେଁ ହତଶିରୀଯେନୋହିବ
ଏକଥା ମୋହର ସତ୍ୟ ଅଟଇଟି ଧ୍ରୁବ ।
ଏତେବୋଲି ଶ୍ରୀଲକ୍ଷ୍ମୀ ଯେ କଲ୍ୟାଣ ଇଛିଲେ
ନୃସିଂହ ପ୍ରଭୁ ତା ଶୁଣି ଆନନ୍ଦ ହୋଇଲେ ।
ଏଥୁଅନନ୍ତରେ ରାତ୍ର ତ ହେଲା ଆସି ଶେଷ
ଦେବଆଳମାନଙ୍କରେ ଶୁଭେ ଶଙ୍ଖଘୋଷ ।
ପୁତ୍ରଙ୍କୁ ଘେନିଣ ତହୁଁ ଚଳିଲେ ନୃସିଂହ
ମାତାଙ୍କର ପାଶେ ଯାଇ ମିଳିଲେକ ଆଗ ।
ଭଗବତୀ ମାତା କୋଳେ ଦେଲେ ପୁତ୍ର ଚାରି
ଦେଖି ପଚାରିଲେ କୃଷ୍ଣ ବଲ୍ଲଭର ନାରୀ ।
ନୃସିଂହଙ୍କୁ ବୋଇଲେକ ଶୁଣରେ ମୋ ବାପ
କାହା କୁମର ଅଟନ୍ତି ଏହି ଚାରି ରୂପ ।
ମୋତେତ ଦିଶିଲେ ବିଷ୍ଣୁପ୍ରାୟ ଚାରିଗୋଟି
ତେଣୁ ପଚାରେ ସଂଶୟ ଯାଉ ମୋର ତୁଟି ।
ନୃସିଂହ ବୋଲନ୍ତି ଶୁଣ ଆଗୋ ଗର୍ଭଧାରି
ତୁମ୍ଭ ବଡ଼ ବଂଧୂଙ୍କର ଏହି ପୁତ୍ରଚାରୀ ।
ଉର୍ମ ଧର୍ମ ଜ୍ୟୋତିର୍ଜ୍ଜ୍ୱାଳା ଯେଉଁ ଚାରିଦ୍ୱାର
ତହିଁ ପ୍ରକାଶ ହେଲେଟି ଏ ଚାରି କୁମର
ତୁମ୍ଭ ଭାଗ୍ୟବଳୁ ଜନମିଲେ ଚାରି ନାତି
ପ୍ରତ୍ୟକ୍ଷରେ ବିଷ୍ଣୁ ଅଂଶ ଦେଖ ବ୍ରହ୍ମଜ୍ୟୋତି
ଶୁଣି ଭଗବତୀ ବିଷ୍ଣୁବଲ୍ଲଭର ଆଗେ
ନାତିଙ୍କର ଜନ୍ମକଥା କହିଲେକ ବେଗେ ।
ଶୁଣି ବଲ୍ଲଭ ବୋଇଲେ ଆମ୍ଭ ବଡ଼ ଭାଗ୍ୟ
ନାତିମାନଙ୍କୁ ଦେଖିବା ଆମ୍ଭେ ଯାଇ ବେଗ ।
ଏଥୁ ଅନନ୍ତରେ କୃଷ୍ଣବଲ୍ଲଭ ଯେ ରାଜା
ରାଜ୍ୟର ପ୍ରତି ନଗରେ ବଜାଇଲେ ବାଜା ।
ହାଟ ଲୁର ବାଟ ଲୁର କଲେ ରାଜା ଶୁଣି
ଲକ୍ଷ ଲକ୍ଷ ବ୍ରାହ୍ମଣେ ଦକ୍ଷିଣା ନେଲେ ପୁଣି ।
ଈଶ୍ୱର କପାଳେନେଇ ଗୋଦୋହନ କଲେ
ଦେବୀଙ୍କ ଆଳେ ଅମୃତକୁଣ୍ଡ କରାଇଲେ ।
ଗଣିକାଗଣ ନାଚନ୍ତି ଆସି ଗୀତ ଗାଇ
ଅନେକ ବଧାଇ ତାଙ୍କୁ ଦେଲେ ନରସାଇଁ

ଚଉଷଠିସସ୍ର କନ୍ୟା ଦେଖି ତୋଷ ହେଲେ
କେକାଖି କରିଣ କେହୁ ମୁଖେ ଚୁମ୍ବ ଦେଲେ
କେକାଖୁଁ ଛଡ଼ାଇ ନେଇ ଧରନ୍ତି ବା କୋଳେ
ଖେଳାଇ ନଚାଉଛନ୍ତି ଅତିସ୍ନେହ ଭୋଳେ ।
ପୁତ୍ରରାମାନଙ୍କୁ ସ୍ନେହେ ଧରି ଶେଷଦେବ
ବୋଇଲେ ଦେଖିଲେ ବସି ହେଲା ସର୍ବଶୁଭ
ସାକ୍ଷାତେ ଏ ଚାରିପୁତ୍ର ହେବେ ବିଷ୍ଣୁ ଦେହୀ
କେତେଲୋକ ତାରିବେ ଏ ବ୍ରହ୍ମାଣ୍ଡରେରହି
ପାତ୍ର ମନ୍ତ୍ରୀ ଅମାତ୍ୟ ଯେ ନଗର ଲୋକଙ୍କୁ
ଦେଖନ୍ତି କୃଷ୍ଣବଲ୍ଲଭ ନେଇଣ ନାତିଙ୍କୁ ।
ବୋଲନ୍ତି ନୃସିଂହ ପ୍ରଭୁଙ୍କର ପୁତ୍ର ଏହୁ
ଊର୍ମ ଧୂର୍ମ ଜ୍ୟୋତିରୁ ଜନ୍ମିଲେ ଲକ୍ଷ୍ମୀତହୁଁ
ଶୁଣିଣ ନଗର ଲୋକେ ହରଷ ହୋଇଲେ
ନୃସିଂହ ପୁତ୍ରଙ୍କୁ ଦେଖି ବହୁ ପ୍ରଶଂସିଲେ ।
ବୋଇଲେ କେଡ଼େକ ଭାଗ୍ୟ ପ୍ରବେଶିଲା ଆସି
ସଂସାରକୁ ସାରଣୀ ଏ ହେବେ ଚାରିଶିଷି ।
ବଂଶକୁ ଉଜ୍ଜ୍ୱଳ ଏହୁ ପୁଣି କୁଳଜିତା
ଲକ୍ଷ୍ମୀ ନୃସିଂହ ଅଟନ୍ତି ଯାରି ପିତାମାତା ।
କୁଳକୁ ଉଜ୍ଜ୍ୱଳ ଏହୁ ବଂଶକୁ ଉଜ୍ଜ୍ୱଳ
ଦାଣ୍ଡକୁ ଉଜ୍ଜ୍ୱଳ ଦିଶୁଥାନ୍ତି ଚାରିବାଳ ।
କୋଟି କୋଟି ଲକ୍ଷଣରେ ଛନ୍ତି ଅବତରି
ବିଷ୍ଣୁ ଜନମିଲେ ଏକା ଚତୁର୍ଦ୍ଧା ରୂପ ଧରି ।
ଏତେ ବୋଲି ସଭାମଧ୍ୟେ ସର୍ବେ ଉଭାହୋଇ
ବୋଇଲେ ପୁତ୍ରଙ୍କୁ ଅଛ କି କି ନାମଦେଇ ।
କୃଷ୍ଣବଲ୍ଲଭ ବସିଲେ ମନେ ମନେ ଗୁଣି
ଶ୍ରୀନୃସିଂହ ଠାକୁରଙ୍କୁ ଚାହିଁଲେ ନୃମଣି ।
ପିତା ଅଙ୍କେ ଚାହାନ୍ତି ଜାଣି ଭାବଗ୍ରାହୀ
କହିଲେ ପୁତ୍ରମାନଙ୍କ ନାମ ଶ୍ରଦ୍ଧାବହି ।
ବୋଇଲେକ ପାତ୍ରମନ୍ତ୍ରୀ ସର୍ବେ ତୁମ୍ଭେ ଶୁଣ
ଯେବେଣଅଂଶେ ଜନ୍ମିଲେ ଚାରିପୁତ୍ରେ ଜାଣ
ବ୍ରହ୍ମା ବିଷ୍ଣୁ ଈଶ୍ୱର ଏ ନିରଞ୍ଜନ ଚାରି
ସତ୍ୟ ଧର୍ମଜ୍ଞାନ ଏହୁ ନାମେ ଦେହ ଧରି ।
ଊର୍ମ ଧୂର୍ମ ଜ୍ୟୋତି ଜ୍ୱାଳା ଯେଉଁ ଚାରିଦ୍ୱାର
ଲକ୍ଷ୍ମୀଙ୍କ ଶ୍ରୀଅଙ୍ଗୁ ଆସି ହେଲେ ଅବତାର ।
ଈଶ୍ୱର ଅଂଶରୁ ଜାତ ହେଲେ ସତ୍ୟ ଜାଣ
ଶ୍ରୀବିଷ୍ଣୁ ଅଂଶରୁ ଜାତ ହେଲ ଧର୍ମ ପୁଣ ।
ବିଧାତା ଅଂଶରୁ ଜାତ ହେଲେ ଦୟାନିଧି ।
ନିରଞ୍ଜନ ଅଂଶୁଜାତ ହେଲେ ଜ୍ଞାନସିଦ୍ଧି ।
ଏହିରୂପେ ଚାରିପୁତ୍ର ହେଲେ ଅବତାର
ସବୁକାଳେ ଥିବେ ଏହି ପୃଥିବୀରେ ମୋର ।
ଯେପର୍ଯ୍ୟନ୍ତ ଚନ୍ଦ୍ର ସୂର୍ଯ୍ୟ ଉଦେ ହେଉଥିବେ
ସତ୍ୟ ଧର୍ମ ଦୟା ଜ୍ଞାନେ ସର୍ବେ ପ୍ରବର୍ତ୍ତିବେ ।
କେ ଧର୍ମ କରିବ କେହୁ ସୁଦୟା କରିବ
କେ ଲଭିବ ସଦାଜ୍ଞାନ କେ ସତ୍ୟ ପାଳିବ ।
ଏହି ଚାରିପୁତ୍ର କର୍ମ ଯାର ହୃଦେ ନାହିଁ
ଅଧର୍ମୀ ଅଜ୍ଞାନୀ ସେହୁ କୃପଣ ଅଟଇ ।
ଏହିରୂପେ ସତ୍ୟ ଧର୍ମ ଦୟା ଜ୍ଞାନ ଚାରି
ଲକ୍ଷ୍ମୀ ମୁଖପଦ୍ମୁ ଅଛନ୍ତି ଏ ଅବତରି ।
ସଂସାର ରଚିବାକୁ ଏ ହେଲେ ଅବତାର
ଏହାଙ୍କୁ ଆଶ୍ରୟ କରି ତରିଯିବେ ନର ।
କେ ଅବା ସତ୍ୟେ ଥିବ କେ ଅବା ଧର୍ମେ ଥିବ
କେହୁ ଅବା ଦୟାକରି ଜ୍ଞାନେ ପ୍ରବର୍ତ୍ତିବ ।
ଏହି ଚାରିକଥା କଲା ଲୋକ ସେବା କଲେ
ସାକ୍ଷାତରେ ବିଷ୍ଣୁ ଅଂଶ ଲଭେସେହୁ ଭଲେ
ଏହା ଶୁଣି ପାତ୍ର ମନ୍ତ୍ରୀ ଚରଣେ ପ୍ରଣମି
ବୋଇଲେକ କେଡ଼େକଥା ପ୍ରକାଶିଲୁ ଲକ୍ଷ୍ମୀ
ଉଠି ପୁଣି ପାତ୍ରମନ୍ତ୍ରୀ ଯୋଡ଼ି ବେନିକର
ବୋଇଲେ ନୃସିଂହ ପ୍ରତ୍ୟକ୍ଷରେ ଅବତାର ।
ସତ୍ୟ ଧର୍ମ ଦୟା ଜ୍ଞାନ ଅର୍ଜି ଚାରିପୁତ୍ର
ଏ ପୁତ୍ରଙ୍କ ଲାଗି ସୃଷ୍ଟି ହେବ ପୁଣ୍ୟକ୍ଷେତ୍ର ।
ସମସ୍ତ ଲୋକ ତ ଚାରିକଥାକେ ବର୍ତ୍ତିବେ
ସତ୍ୟ ଧର୍ମ ଦୟା ଜ୍ଞାନ କେହି ନ ଛାଡ଼ିବେ ।
ବସନ୍ତଋତୁରେ ଆସି ଜନ୍ମିବେ କୁମରେ
ସମାରୋହରେ ଉତ୍ସବ କର ନରବରେ ।
ଚନ୍ଦନଯାତ୍ରା ଏବେ ତ କରିବାବେଳକୁ
ଜନ୍ମିଲେ ବାଳକେ ଆସି ତୁମ୍ଭର ଭାଗ୍ୟକୁ ।
ଶୁଣିଣ କୃଷ୍ଣବଲ୍ଲଭ ସନ୍ତୋଷ ହୋଇଲେ
ନାତିଙ୍କୁ ଘେନି ଭିତରପୁରେ ଚଳିଗଲେ ।
ଅନ୍ତାପୁରରେ ଯାଇଣ ହୋଇଲେ ପ୍ରବେଶ
ଦେଖି ଭଗବତୀ ରାଣୀ ହେଲେ ହସ ହସ ।
ନାତିମାନଙ୍କ ମୁଖରେ ନେଇ ଚୁମ୍ବ ଦେଲେ
ହସାଇ ବସାଇ ଖେଳାଇଣ ଦିନ ନେଲେ ।
ଦେଖିଣ ନୃସିଂହ ସ୍ୱାମୀ ମନେହେଲେ ତୋଷ
ସେ ପ୍ରଭୁ ପାଦେ ଶରଣ ପୀତାମ୍ବର ଦାଶ ।



## ଚନ୍ଦନ ଯାତ୍ରା

ଏଥୁଅନ୍ତେ ସଭାରେ ଯେ ଥିଲେ ଦେବସ୍ୱାମୀ
ସୁଜାଣ ମନ୍ତ୍ରୀ ନ କହୁଁ ଆଗ ଅନ୍ତର୍ଯ୍ୟାମୀ ।
ବୋଲନ୍ତି ସାବଧାନେ ହେ ଶୁଣ ମନ୍ତ୍ରୀବର
ବସନ୍ତଋତୁ ଯେ ଭୋଗ ହେଲା ଦିନ ତେର ।

ଚନ୍ଦନଯାତ୍ରା କରିବା ଚାଲ ଆମ୍ଭେ ଏକେ
ଅକ୍ଷୟ ତୃତୀୟାଠାରୁ କରି ବିଧିପୂର୍ବେ ।
ଖେଳିବା ଯେ ହଂସ ପୋଖରୀରେ ଯାତ୍ରାକରି
ଚନ୍ଦନ ପିଚିକାମାନ ଥିବେ ସର୍ବେ ଧରି ।
ଚନ୍ଦନ ରାହାସ ଯାତ୍ରା ସର୍ବେକରି ଯିବା
ଗୃହମାନ ଦିଶୁଥିବ ଅତିଶୟ ଶୋଭା ।
ପୋଖରୀ ଚୌପାଶେଦେବମଣ୍ଡପେକ ତୋଳି
ତହିଁ ବିଶ୍ରାମ କରିବା ଜଳେ ଜଳ କେଳି ।
ଅଝାଲ କେରୁଆଳ ଯେ ନାବେ କରି ଖଞ୍ଜା
ତହିଁରେ ବସିବେ କୃଷ୍ଣବଲ୍ଲଭ ଯେ ରାଜା ।
ଆମ୍ଭର ନିମନ୍ତେ ନାବମାନ ଖଞ୍ଜିଥିବ
ତୁମ୍ଭେ ଯାଇ ଆନ ନାବ ମଧ୍ୟେ ବିଶ୍ରାମିବ ।
ଦଧି ଚନ୍ଦନ ହଳଦୀ କୁଙ୍କୁମ ବଟାଇ
ନଗର ଭିତରେ ଏହା ଥୋଇଥିବ ନେଇ ।
ପିଚିକା ମାରିବା ଆନନ୍ଦରେ କୁତୁହଳେ ।
ନାବ ବାହିବା ଲୋକଟି ବାହୁଥିବ ଜଳେ ।
ଚନ୍ଦନ ରାସଯାତ୍ରାକୁ କରିବଟି ଆଗ
ଏରୂପେ ମନ୍ତ୍ରୀକି ଆଜ୍ଞା ଦେଲେ ନରସିଂହ ।
ଶୁଣିଣ ସୁଜାଣ ମନ୍ତ୍ରୀ ଯୋଡ଼ି କରପତ୍ର
ବୋଇଲା ଆଜ୍ଞା ପ୍ରମାଣେ କରିବ ସମସ୍ତ ।
ବିଚିତ୍ର ମହାରଥ ଯେ ଯେବଣ ମୋ ବାଳା
ଦଣ୍ଡକ ମଧ୍ୟରେ ସର୍ଜିପାରେ ଚନ୍ଦ୍ରଶାଳା ।
ମଣ୍ଡପ ଦକ୍ଷିଣ ମେଲାଘର ସିଂହାସନ
ସମୟେ ନିର୍ଭା କରାଇ ଦେବ ସେହୁ ଜାଣ ।
ଶୁଣିଣ ନୃସିଂହ ସ୍ୱାମୀ ମନେ ହେଲେ ତୋଷ
ସେ ପାଦେ ଶରଣ ବିପ୍ର ପୀତାମ୍ବର ଦାଶ ।
ଏଥୁ ଅନନ୍ତରେ ବାଣୀ ଶୁଣ ହେ ନାରଦ
ପ୍ରଭୁଙ୍କର ଆଗେ ଆସି ବାଜେ ଲକ୍ଷ ବାଦ୍ୟ
ଲକ୍ଷ ଲକ୍ଷ ଶଙ୍ଖ ଭେରୀ ସ୍ୱରେ ଘନ ଘନ
ଲକ୍ଷେକ ବୀର କାହାଳୀ ବାଜେ ବିତପନ ।
ଭିତରପୁରକୁ ବିଜେ କଲେ ନରହରି
ମାତା ପିତାଙ୍କୁ ଯାଇଣ ନମସ୍କାର କରି ।
କଲେ ଅନେକ କଲ୍ୟାଣ ପିତା ମାତା ବେନି
ନାତିମାନଙ୍କୁ ଖେଳାଉଛନ୍ତି କୋଳେ ଘେନି ।
ଜନନୀ ବୋଇଲେ ବାପ ଶୁଣ ମୋର ବଳା
ଷଡ଼ରସେ ପାକସିଦ୍ଧ କଲେଣି କମଳା ।
ଶେଷକୁ ଘେନି ମଣୋହି ବେଗେ ଯାଇ କର
ବୁଝିଲେ ସମୟ ଏବେ ହେଲାଣି ଉଛୁର ।
ଶ୍ରୀ ନୃସିଂହ ବିଜେ କଲେ ଲକ୍ଷ୍ମୀ ଭୁବନକୁ
ଚଳିଗଲେ ଶେଷଦେବ ଇଳା ମନ୍ଦିରକୁ ।
ପହଣ୍ଡ ମଣାଇଣ ଯେ ଇଳା ଠାକୁରାଣୀ
ମଣୋହି କୋଠାରେ ବିଜେ କରାଇଲେ ପୁଣି
ଏଅନ୍ତରେ ଶଙ୍ଖ ଘଣ୍ଟ କାହାଳୀ ଯେ ବାଜେ
ଚଳନ୍ତି ପହଣ୍ଡି ବିଜେ ପ୍ରାୟେ ଦେବରାଜେ ।
ପାଛୋଟି ଆସନ୍ତି ମହାଲକ୍ଷ୍ମୀ ଖଣ୍ଡେ ଦୂରୁ
ନିଜ ରତ୍ନ ଝରୀକୁ ସେ ଆଣିଛନ୍ତି ଘରୁ ।
ସ୍ୱାମୀଙ୍କର ପଦ୍ମପାଦ ପଖାଳିଲେ ନେଇ
କମଳା ହସ୍ତ ଧଇଲେ ପ୍ରଭୁ ଭାବଗ୍ରାହୀ ।
ହସ୍ତ ଧରାଧରି ହୋଇ ଚଳିଲେ ହରଷେ
ରତ୍ନପୀଢ଼ାରେ ସେ ବିଜେକଲେଜାଣିତୋଷେ
ବାସବକୋଳେ ଦିଶନ୍ତି ଯେହ୍ନେ ଶଚୀଶୋଭା
ତହିଁରୁ ଅଧିକ ଲକ୍ଷ୍ମୀ ନୃସିଂହଙ୍କ ପ୍ରଭା ।
ମଣୋହି କରିବା ପାଇଁ ବସନ୍ତେ ଯେ ଯାଇଁ
ଉଠିଲେ ସେ ମହାଲକ୍ଷ୍ମୀ ଶୁଚିମନ୍ତ ହୋଇ ।
ରୋଷଶାଳରେ ପଶିଲେ ସ୍ୱର୍ଣ୍ଣଥାଳୀ ଆଣି
ଷଡ଼ରସ ଦ୍ରବ୍ୟ ତହିଁ ଥୋଇ କମଳିନୀ ।
ମଥାରେ ଯେ ମହାଲକ୍ଷ୍ମୀ ଓଢ଼ଣୀକି ଦେଇ
ଅନ୍ନ ବ୍ୟଞ୍ଜନ ଦିଅନ୍ତି ସବୁ ଆଗେ ଥୋଇ ।
ବସିଲେ ପ୍ରଭୁ ଆସନ ମନ୍ତ୍ରଶୁଦ୍ଧ କରି
ପୂଜାରେ ବିଜେ କଲେ ସେ ଲକ୍ଷ୍ମୀକାନ୍ତ ହରି
ଆସନ ଋଷିଛନ୍ଦ ଶ୍ରୀଅଙ୍ଗ କରନ୍ୟାସ
ସ୍ଥାନମାନଙ୍କୁ ଛୁଇଁଣ ତୋଷେ ଜଗଦୀଶ ।
ମାରି ତାଳତ୍ରୟ ଦଶ ଦିଗ ବନ୍ଧନ କଲେ
ହୃଦରେ ଧ୍ୟାନ କରିଣ ମନ୍ତ୍ର ସୁମରିଲେ ।
ବୋଇଲେ ଜନ୍ମ ହୋଇଛୁ ଆମ୍ଭେବିପ୍ରକୁଳେ
ପୂଜାବିଧି ନ କଲେ ନ ମାନିବେ ସକଳେ ।
ପୂଜାରେ ବସିଲେ ଏହା ପାଞ୍ଚ ଆଦିମୂଳ
କହନ୍ତି ବ୍ରହ୍ମା ଶୁଣନ୍ତି ନାରଦ ସକଳ ।
ମନରେ ପାଞ୍ଚ ସ୍ଥାପିବ ଅଗ୍ରେ ଦେବତାଙ୍କୁ
ତାହାଙ୍କର ନାମ ଏବେ କହିବା ତୁମ୍ଭଙ୍କୁ ।
ବିଷ୍ଣୁ ପ୍ରତିମାକୁ ଚିନ୍ତି ଅଗ୍ରେ ବସାଇବ
ତାହାଙ୍କୁ ପୂଜା କରିଣ ଅଗ୍ନିରେ ପୂଜିବ ।
ସୂର୍ଯ୍ୟରେ ପୂଜିବ ପୁଣି ଜଳରେ ପୂଜିବ
ହୃଦପଦ୍ମେ ଆତ୍ମା ଚିନ୍ତି ପୂଜି ବାସୁଦେବ ।
ସର୍ବଆତ୍ମା ନାରାୟଣ ବୋଲି ପୂଜାକଲେ
ଆତ୍ମାରୁ ବଳି ସଂସାରେ ଦେବ ନାହିଁ ଭଲେ
ଯେତେକ ଦେବଦେବୀ ଏ ସଂସାରେ ଅଛନ୍ତି
ଆତ୍ମା ନିବେଶି ସବୁଙ୍କୁ ପୂଜା ଦ୍ରବ୍ୟ ଯାନ୍ତି ।
ଦର୍ଶନ କଲା ଲୋକର ଆତ୍ମା ହୃଦୁ ଯାଇ
ଦେବ ଦେହେ ନିମଜ୍ଜିଲେ ତେବେବରପାଇ

ବିଷ୍ଣୁ ପାଦେ ମନ ସଦା ନିର୍ମଳ କରିବ
ସବୁବେଳେ ବାସୁଦେବ ମନରେ ଭାବିବ ।
ଦାରୁ ପାଷାଣରେ ମୂର୍ତ୍ତି ଆଦି ଲେଖାଯେତେ
ବାଲୁକା ମୂର୍ତ୍ତି କରିଣ ପୂଜି ଶୁଦ୍ଧଚିତ୍ତେ ।
ବିଷ୍ଣୁ ଆକାଶ ଅନନ୍ତ ମୂରତିକ ବହି
ଶୂନ୍ୟରେ ବ୍ୟାପି ଅଛନ୍ତି ଚରାଚର ମହୀ ।
ଏରୂପ ମହିମା ଅଟେ ପ୍ରଭୁଙ୍କ ପ୍ରସଙ୍ଗ
ବସିଣ ପୂଜାବିଧି ଯେ କରନ୍ତି ନୃସିଂହ ।
ଅଛିଦ୍ର କୁଶମାନଙ୍କୁ ଧରି ବ୍ରହ୍ମରାଶି
ମନ୍ତ୍ର ଉଚ୍ଚାରନ୍ତି ପୂର୍ବ ଅଭିମୁଖେ ବସି ।
କୁଶକୁ ସ୍ଥାପନ କରି ଦେଇ ଭୂମି ଭାଗେ
ଆତ୍ମାକୁ ଶୁଦ୍ଧ କରିଣ ବସିଲେ ନୃସିଂହେ ।
ଆତ୍ମା ପରେ ଆଦିଶକ୍ତି ପରମାତ୍ମା ସ୍ଥାପି
କୁଶାଗ୍ରେ ଜଳ ସିଞ୍ଚିଣ ଦେହଯାକ ବ୍ୟାପି ।
ବାକ୍ୟ ଉଚ୍ଚାରି ପବିତ୍ର କଲେ ନିଜ ଗାତ୍ର
ସମ୍ମୁଖେ ଆଣି ରଖିଲେ ପୂଜା ପାଣିପାତ୍ର ।
ତିନିଥାନ କରି ପ୍ରଭୁ ଜଳପତ୍ର ଥୋଇ
ମାର୍ଜ୍ଜନା କରନ୍ତି ପ୍ରଭୁ ବିଷ୍ଣୁ ମନେ ଧ୍ୟାୟି ।
ଆସନ ଯେ ପାଦାସନ ପାଦାର୍ଘ୍ୟାଚମନ
ଓଁ କାର ବ୍ରହ୍ମମନ୍ତ୍ରେ ସେ କରନ୍ତି ସ୍ଥାପନ ।
ସ୍ୱାହା ବେନି ଅକ୍ଷରକୁ ହୃଦେ ପ୍ରଭୁ ଚିହ୍ନି
ଜୀବ ପରମ ରୂପେ ସେ ପ୍ରକାଶେ ମେଦିନୀ
ସେ ତିନି ପାତ୍ରରେ ପ୍ରଭୁ ଆଚମନ ସାରି
ଗାୟତ୍ରୀ ମନ୍ତ୍ରେ ଦ୍ରବ୍ୟକୁ ଶୁଦ୍ଧ କଲେ ହରି ।
ପୁଟ କରିଣ ଯୋଡ଼ିଲେ ପ୍ରଭୁ ବେନିକର
ହୃଦପଦ୍ମ ମଧ୍ୟରେ ସେ ଚିନ୍ତି ଚକ୍ରଧର ।
ମନ ପବନକୁ ଚିନ୍ତି ହୃଦେ ସ୍ଥିର କରି
ନିଶ୍ଚଳ ଆସନରେ ସେ ବସିଲେ ଶ୍ରୀହରି ।
ଜୀବ ପରମଆତ୍ମା ଯେ ଏହି ବେନି ମୂର୍ତ୍ତି
ହୃଦପଦ୍ମ ମଧ୍ୟେ ଚିନ୍ତି ଭଜି ଜଗଜ୍ୟୋତି ।
ଏରୂପେ ବସିଣ ପ୍ରଭୁ ଧ୍ୟାନେ ପୂଜା କରି
ଦେଖିଲେ ଚଉଦପୁରେ ଛନ୍ତି ବିଜେ କରି ।
ଆବାହନ କଲେ ବସି ସ୍ୱାହା ମନ୍ତ୍ର ତନ୍ତ୍ରେ
ଶରୀରେ ସ୍ଥାପନ କରି ବସି ମୂର୍ତ୍ତି ମନ୍ତ୍ରେ ।
ପୂଜାର ଦ୍ରବ୍ୟ ଯେତେକ ଦ୍ୟନ୍ତି କମଳିନୀ
ସେ ଦ୍ରବ୍ୟ ଯାକେ ପୁଜନ୍ତି ପ୍ରଭୁ ଚକ୍ରପାଣି ।
ପାଦାର୍ଘ୍ୟ ଦେଇ କରନ୍ତି ପ୍ରଭୁ ଆଚମନ
ମନ୍ତ୍ରକୁ ପଢ଼ି କରନ୍ତି ତା ନିବେଦନ ।
ଆଦିଶକ୍ତି ମାତାଙ୍କୁ ସେ ଅନୁଧ୍ୟାନ କରି
ଧ୍ୟାନମତେ ଅଷ୍ଟଦଳକମଳ ସୁମରି ।

ଶୁଣ ହେ ନାରଦ ପୂଜା କରିବ ନିର୍ମଳ
ଶୁକ୍ଳବର୍ଣ୍ଣ କମଳଟି ଦିଶଇ ଉଜ୍ଜ୍ୱଳ ।
ଦେବ ମନ୍ତ୍ର ତନ୍ତ୍ରେ ତାହା କରି ଅନୁଧ୍ୟାନ
ବିଧି ପୂର୍ବେ ପୂଜନ୍ତି ଯେ ପ୍ରଭୁ ଭଗବାନ ।
ଶଂଖ ଚକ୍ର ଗଦା ପଦ୍ମ ଲଙ୍ଗଳ ମୂଷଳ
ଖଡ଼୍‌ଗ ଶରାସନ ଏ ବିଧି ଅସ୍ତ୍ରକୁଳ ।
ପାଶ ଅଙ୍କୁଶ କରି ଏ ଆଦି ଯେତେ ପୁଣ
ଶ୍ରୀବତ୍ସ ଆବର ବନମାଳା ମଣିଗଣ ।
ପୂଜିଲେ ଏହାଙ୍କୁ ଧ୍ୟାନକରି ଭାବଗ୍ରାହୀ
ଶ୍ରୀଛାମୁରେ ପାରିଷଦଗଣଙ୍କୁ ବସାଇ ।
ସୁବଳ ମହାବଳ ଯେ ନନ୍ଦ ବାସୁଦେବ
ଶ୍ରୀଚଣ୍ଡ ପରଶୁଚଣ୍ଡ ସୁବୀର ଆନନ୍ଦ ।
ସୁମୁଖ କୁଳକୋଦଣ୍ଡ କୁମୂଦଲୋଚନ
କାର୍ତ୍ତିକେଶ୍ୱରଙ୍କୁ ପୁଣି କଲେକ ଅର୍ଚ୍ଚନ ।
ବ୍ୟାସ ଆବର ବିଶ୍ୱକେସନ ନିଜ ଗୁରୁ
ଏ ବିଧି ଏ ପାରିଷଦ ସ୍ମରି ମହାମେରୁ ।
ବସାଇ ଏହାଙ୍କୁ ଏକସ୍ଥାନେ ପୂଜା କଲେ
ସୁଖାସନ ପରେ ତାଙ୍କୁ ବାସ ନୀର ଦେଲେ ।
ନବୀନ ଶୁକ୍ଳ ବସନ ଦିବ୍ୟ ଅଳଙ୍କାର
ଯାବତ ପୁଷ୍ପ ପୂଜନ୍ତି ପ୍ରଭୁ ଦାମୋଦର ।
ସୁଗନ୍ଧ ଚନ୍ଦନ ଧୂପ ଦୀପ ଘୃତଦାନେ
ପୂଜନ୍ତି ଅନ୍ନ ବ୍ୟଞ୍ଜନ ଦେଇ ଜନାର୍ଦ୍ଦନେ ।
ପଞ୍ଚାମୃତ ଦଧି ଦୁଗ୍ଧ ପକ୍ୱଦ୍ରବ୍ୟ ଯେତେ
ପୂଜନ୍ତି ବିବିଧ ଧନ ଦେଇ ପଦ୍ମ ହସ୍ତେ ।
ପ୍ରେମଭାବେ କରନ୍ତି ଯେ ପ୍ରଭୁ ଦେବପୂଜା ।
ଆନନ୍ଦ ମନେ ପୂଜନ୍ତି ବସି ଦେବପୂଜା ।
ପୁଣିହିଁ କରନ୍ତି ଅଗ୍ନିପୂଜା ଯଜ୍ଞକୁଣ୍ଡେ
ସ୍ୱାହାସ୍ୱାହା ବୋଲିଢ଼ାଳି ଦ୍ୟନ୍ତେ ଘୃତଭାଣ୍ଡେ
ଅଗ୍ନିକୁଣ୍ଡରୁ ପ୍ରକାଶ ଦିବ୍ୟ ରୂପରାଶି
ତପ୍ତହାଟକ ପରାୟ ଶରୀର ପ୍ରକାଶି ।
ନିଜ ଆୟୁଧ ଧରିଣ ପ୍ରଭୁ ଚତୁର୍ଭୁଜେ
ଶ୍ରୀପୀତବସନ ଗୋଟି ଶୋହେ କଟିମାଝେ
ମଞ୍ଜୁରୀମାଳା ହସ୍ତେ ଯେ ଆବର କଙ୍କଣ
ଶୋଭଇ ହୃଦପଦ୍ମରେ ଶ୍ରୀବତ୍ସଲାଞ୍ଛନ ।
କଉସ୍ତୁଭମଣି ଗୋଟି ହୃଦେ ପ୍ରକାଶଇ
ବିଭୂଷିତେ ବନମାଳା ଉରେ ବିରାଜଇ ।
ଆବର ରତନମାଳା ଶୋହେ ଓଢ଼ିଆଣୀ
ଅଷ୍ଟରତ୍ନ ମଧ୍ୟେ ବିରାଜଇ ହୀରା ପୁଣି ।
ଏମନ୍ତ ରୂପ ଯେ ଅଗ୍ନିକୁଣ୍ଡ ମଧ୍ୟେ ଦିଶି
ଧ୍ୟାନରେ ତାଙ୍କୁ ଚିନ୍ତନ୍ତି ବସି ବ୍ରହ୍ମରାଶି ।

ମୂଳମନ୍ତ୍ର ପଢ଼ି ଢ଼ାଳି ଦ୍ୟନ୍ତି ଘୃତ ଦେଇ
ଚାରିବେଦ ପଢ଼ନ୍ତି ଯେ ପ୍ରଭୁ ଲକ୍ଷ୍ମୀସାଇଁ ।
ସବୁ ଦେବତାଙ୍କ ମନ୍ତ୍ର ନାମ ଉଚ୍ଚାରିଣ
ପାରିଷଦଗଣଙ୍କୁ ଯେ ପୂଜି ନାରାୟଣ ।
ନମସ୍କାର କରନ୍ତି ଯେ ବେଦ ବିଧିମତେ
ପାରିଷଦଗଣ ପୂଜା କରି ଅପ୍ରମିତେ ।
ଆସନ ନିଶ୍ଚଳ କରି ମୂଳମନ୍ତ୍ର ଜପି
ବ୍ରହ୍ମା ପୁରୁଷକୁ ଧ୍ୟାନ କରନ୍ତି ନିରୂପି ।
ଭୋଜନ ଧ୍ୟାନ ସୁମାତ୍ରା ଦିଅନ୍ତି ଯେ ଆଣି
ଭୁଞ୍ଜାଇଣ ଆଚମନ ଦେଇ ଚକ୍ରପାଣି ।
ଶେଷ ନୈବେଦ୍ୟ ବିଶ୍ୱକେଶନକୁ ଯେ ଦେଇ
ଗନ୍ଧ ପୁଷ୍ପ ତୁଳସୀର ମଞ୍ଜରୀ ମିଶାଇ ।
ସୁବନ୍ଧ ପୁଷ୍ପ ଘେନିଲେ ପୁଣି ବେନିହସ୍ତେ
ଏ ବିଧି ସାରିଲେ ପୂଜା ବିଧି ଲକ୍ଷ୍ମୀକାନ୍ତେ ।
ଭୋଜନ ମନ୍ଦିରେ ବିଜେ କଲେ ଯାଇ ପୁଣି
ପହଣ୍ଡ ମଣାଇ ନିଅନ୍ତେ ଯେ କମଳିନୀ ।
ଭୋଜନ ମନ୍ଦିରେ ବିଜେ ଶ୍ରୀଲକ୍ଷ୍ମୀ ନାୟକ
ଷଡ଼ରସରେ ଲକ୍ଷ୍ମୀ ଯେ ସମ୍ପାଦନ୍ତି ପାକ ।
ବସିଲେ ସୁବର୍ଣ୍ଣ ପୀଢ଼ା ପରେ ଚକ୍ରପାଣି
ରତ୍ନଝରୀରେ ଦିଅନ୍ତି ନୀର କମଳିନୀ ।
ସୁବାସ ଜଳ ଧଇଲେ ହସ୍ତେଦେଲେ ତୋଳି
ବିଷ୍ଣୁଙ୍କୁ ଚିନ୍ତି ସିଞ୍ଚିଲେ ନୀର ବନମାଳୀ ।
ମହାଲକ୍ଷ୍ମୀ ପରଷନ୍ତି ଆଣି ଥାଳୀଅନ୍ନ
ଚଳୁ ଦେଇଣ ଭୁଞ୍ଜନ୍ତି ପ୍ରଭୁ ଭଗବାନ ।
ଲବଣ ଗୁଣ୍ଡ ସୁବାସ ଘୃତ ଆଦି ଦେଇ
ଜମ୍ବିର ନୀର ସିଞ୍ଚନ୍ତି ତାହା ପରେ ନେଇ ।
କାକରା ମୁଗ ପଇଡ଼ ମଧୁରୁଚି କାନ୍ତି
ବିବିଧ ବ୍ୟଞ୍ଜନ ଆଣି ଲକ୍ଷ୍ମୀ ପରଷନ୍ତି ।
ଝଡ଼ା ବଡ଼ା ଲଡୁ କୋରାରସ ଷଡ଼ବିଧ
ନିରୁତା ଦୁଧରେ ଦେବୀ କରିଛନ୍ତି ସିଦ୍ଧ ।
ଭୁଞ୍ଜିଣ ସେ ମହାପ୍ରଭୁ ବହୁ ପ୍ରଶଂସନ୍ତି
ଆବର ପାକ ସଜାଡ଼ି ଲକ୍ଷ୍ମୀ ପରଷନ୍ତି ।
କ୍ଷୀର କ୍ଷୀରିସା ଯେ ସରପୁଳି ମନୋହର
ଛତୁ ରସଫେଣା ଦଧି ପାପଡ଼ ଶାକର ।
କାକରା ଚନ୍ଦ୍ରକାନ୍ତି ଯେ ନାନା ସରପୁଳି
ନବାତ ଖଜା ଶର୍କରା ପାଣି ଦ୍ୟନ୍ତି ଢ଼ାଳି ।
କଦଳୀ କମଳା ଆମ୍ବ ଡାଳିମ୍ବ ପନସ
ପନୀର ପାଣିରେ ଦେଇ ଅଛନ୍ତି ସୁବାସ ।
ମରିଚ ଲବଙ୍ଗ ଜଳେ କର୍ପୂର ମିଶାଇ
ସୁବାସିତ ପାଣି ଆଣି ଦିଅନ୍ତି ଯୋଗାଇ ।

ଅମୃତ ପାଣି କଦଳୀ ପଣା ପୂରାଇଲେ
ଶ୍ରୀ ନୃସିଂହ ଛାମୁରେ ତା ଆଣି ସମର୍ପିଲେ ।
ମଣୋହିରେ ସନ୍ତୋଷ ଯେ ହେଲେ ନରହରି
ସୁବାସ ଜଳରେ ପ୍ରଭୁ ଆଚମନ କରି ।
ଶ୍ରୀମୁଖ ପୋଛି ଭୁଞ୍ଜିଲେ ବସି ଗୁଆପାନ
ଏଥୁ ଅନନ୍ତରେ ରବି ହେଲେ ଅସ୍ତମାନ ।
ସନ୍ଧ୍ୟା କରିବାକୁ ବିଜେ କଲେ ଚକ୍ରପାଣି
ମନ୍ଦିରରୁ ମହାଲକ୍ଷ୍ମୀ ଜଳ ଦେଲେ ଆଣି ।
ସନ୍ଧ୍ୟାକର୍ମ ସାରିଣ ସେ ପୁରେ ବିଜେ କଲେ
ଗଜଦନ୍ତ ପଲଙ୍କରେ ଯାଇଣ ବସିଲେ ।
ଆଲଟ ପକାନ୍ତି ମହାଲକ୍ଷ୍ମୀ ଧୀରେ ଧୀରେ
ଅଷ୍ଟସଖୀ ସେବା ଆସିକଲେ ଯେ ଯାହାରେ
ଚୌଷଠି ସହସ୍ର କନ୍ୟା ଆସିଲେ ବହନ
ପ୍ରସନ୍ନକଲେ ନୃସିଂହଦେବଙ୍କର ମନ ।
ଶ୍ରୀନୃସିଂହ ଆଜ୍ଞାକଲେ ଶୁଣ ସଖୀମାନେ
ଚନ୍ଦନଯାତ୍ରା କରି ଗୋ ଯିବା ନଦୀସ୍ନାନେ ।
ବୋଇଲେକ ସଖୀଗଣ କେଉଁଦିନ ହେବ
କାଲି ହେବ ବୋଲି ବୋଇଲେକ ବାସୁଦେବ
ଏହାଶୁଣି ସଖୀଗଣ ଆନନ୍ଦିତ ହେଲେ
ପ୍ରଭୁଙ୍କ ହେତୁରୁ ଯାତ୍ରା ଦେଖିବୁ ବୋଇଲେ
ଏଥୁଅନ୍ତେ ଯାହା ହେଲା ଶୁଣ ହେ ବୃତ୍ତାନ୍ତ
ସୁଜାଣ ମନ୍ତ୍ରୀର ପୁତ୍ର ବଡ଼ ବୁଦ୍ଧିମନ୍ତ ।
ତାହାକୁ ଡକାଇ ପ୍ରଭୁ ବୋଇଲେ ହରଷେ
ବିଶ୍ୱକର୍ମାକୁ ଡକାଇ ଆଣ ଆମ୍ଭ ପାଶେ ।
ଶୁଣି ଏହା ମନ୍ତ୍ରୀପୁଅ ବେଗେ ଚଳିଗଲା
ବିଶ୍ୱକର୍ମା ସଙ୍ଗେ ନେଇ ପ୍ରବେଶ ହୋଇଲା
ବୋଇଲେ ବିଶ୍ୱକର୍ମାକୁ ଚାହିଁ ଭଗବାନ
ଚନ୍ଦନଯାତ୍ରାରେ ବିଜେ ହେବୁ ଆମ୍ଭେ ଜାଣ
ଆଜ୍ଞା ପରମାଣେ ବିଶ୍ୱକର୍ମା ଚଳିଗଲା
ନିମିଷ ମାତ୍ରକେ ସବୁ ନିର୍ମାଣ ସେ କଲା ।
ଅନେକ ପାଚିଲା ଫଳ ବୃକ୍ଷ ଅଛି ସ୍ଥାପି
ପନ୍‌ସ କମଳା ଆମ୍ବ ନାରିକେଳ ଲୋପି ।
ଲେମ୍ବୁ ଜମ୍ବିର ନାରଙ୍ଗ ଟଭା ବୃନ୍ଦାହୋଲ
ଅଁଳା ନରକୋଳି ଯେ ବେଲ ଜାମୁତାଳ
ବଉଳ ଚମ୍ପକ ଯୁଇ ଯାଇ କନିଅର
ଅଶୋକ କାଞ୍ଚନ ତରାଟ ଯେ ନାଗେଶ୍ୱର ।
ମନ୍ଦାର କେତକୀ ଜବା ଆଦି ପୁଷ୍ପ ଯେତେ
ରୋପିଛି ସେ ବିଶ୍ୱକର୍ମା ନାବେଆଣି କେତେ
ପିପ୍‌ପଳୀ ଲବଙ୍ଗ ଯାଇଫଳ ଅଳାଇଚ
ଜୀରାଆଦି ହେଙ୍ଗୁଳାଦି ଯେ ଲଙ୍କାମରିଚ ।

ଏହା ଦେଖି ମନ୍ତ୍ରୀପୁତ୍ର ହୋଇଲା ହରଷ
ବୋଇଲା କହିବି ଏବେ ଯାଇ ପ୍ରଭୁ ପାଶ ।
ନାବମାନଙ୍କର ନିର୍ଭା ହୋଇଲା ଏଥର
ଆନନ୍ଦେ ନାବକୁ ବିଜେ କରିବେ ଠାକୁର ।
ଏତେ ପାଞ୍ଚ ମିଳିଲା ସେ ସିଂହଦ୍ୱାରେ ଯାଇ
ଦ୍ୱାରୀକି ଦେଖିଣ ହସ୍ତ ଠାରିଣ ଡାକଇ ।
ଦେଖି ଦ୍ୱାରପାଳ ଗଲା ଆସନରୁ ଉଠି
କହିଲା ବିଚିତ୍ର ମହାରଥ ଖବରଟି ।
ବୋଇଲେ ହେ ଦ୍ୱାରପାଳ ପ୍ରଭୁପାଶେ ଯାଅ
ନାବ ନିର୍ଭାହେଲା ବୋଲି ଛାମୁରେ ତୁ କହ
ବୋଲିବୁ ହେ ମହାରଥ ସିଂହଦ୍ୱାରେ ଅଛି
ଆଜ୍ଞାହେଲେ ଶ୍ରୀଛାମୁକୁ ଆସିବି ବୋଲୁଛି ।
ଶୁଣିଣ ସେ ଦ୍ୱାରପାଳ ଶୀଘ୍ର ଚଳିଗଲା
ପ୍ରତିହାରିକି ଭେଟିଣ ତକ୍ଷଣେ କହିଲା ।
ବୋଇଲାକ ଆଜ୍ଞାଦେଲେ ଛାମୁକୁ ମୁଁ ଯିବି
ନାବଯାକ ନିର୍ଭାହେଲା ବୋଲିଣ କହିବି ।
ଶୁଣିଣ ସେ ପ୍ରତିହାରୀ ଗଲା ସେହି ଲାଗେ
ଖୁଣ୍ଟିଆ ବେହେରାକୁ ଯେ କହିଲାକ ବେଗେ
ଶୁଣି ଖୁଣ୍ଟିଆ ବେହେରା ଗଲା ଶୀଘ୍ର ଧାଇଁ
ଚାଙ୍ଗଡ଼ା ମେକାପକୁ ଯେ କହିଲାକ ଯାଇଁ ।
ତାହା ଶୁଣିଣ ମେକାପ ଭିତରକୁ ଗଲା
ମୁଦୁସୁଲୀର ଆଗରେ ଖବର ସେ କଲା ।
ଶ୍ରୀଛାମୁକୁ ମହାରଥ ଆସିବେକି କହ
ପ୍ରଭୁଙ୍କୁ ଜଣାଅ ବେଗେ ଫିଟିବ ସନ୍ଦେହ ।
ଶୁଣିଣ ମୁଦୁସୁଲୀଏ ବେଗେ ଚଳିଗଲେ
ପ୍ରଭୁଙ୍କର ବେହରଣେ ତକ୍ଷଣେ ମିଳିଲେ ।
କହେ ତୁନି ତୁନି ଅଷ୍ଟସଖୀଙ୍କୁ ସେ ଠାରି
ବୋଇଲେ ଯାହାକୁ ନାବଦେଲେ ନିର୍ଭାକରି
ଶୁଣିଣ ନାୟିକାଗଣ ହୁନ୍ତି କୁହାକୁହି
ଚହଳ ଶୁଭିବା ଯୋଗୁଁ ଜାଣି ଭାବଗ୍ରାହୀ ।
ନାୟିକାମାନଙ୍କୁ ଚାହିଁ ପୁଚ୍ଛନ୍ତି ସେ କଥା
ଜଣାଇଲେ ଆସିଲାଣି ଚିତ୍ର ମହାରଥା ।
ନଦୀକୂଳେ ନାବଯାକ ଦେଲେଣି ସଜାଡ଼ି
ଆସି ସିଂହଦ୍ୱାରେ ବସିଅଛି କରଯୋଡ଼ି
ଶୁଣିଣ ନୃସିଂହ ମୁଦୁସୁଲୀକି ଯେ କହି
ବିଚିତ୍ର ମହାରଥକୁ ଆଣଲୋ ଡ଼କାଇ ।
ଚନ୍ଦନ ସାଗର ଯେତେ ବୁଝିବା ବିଷୟା
ନିଶି ପାଇଲେ ହୋଇବ ଅକ୍ଷୟ ତୃତୀୟା ।
ଆଦିତ୍ୟ ବାସରେ ଯେ ରୋହିଣୀ ନକ୍ଷତ୍ରରେ
କରିବା ଚନ୍ଦନ ଯାତ୍ରା ଅମୃତ ଯୋଗରେ ।

ଶୀଘ୍ର ଘେନିଆସ ଯାଇ ଆମ୍ଭର ଛାମୁକୁ
ଯାତ୍ରାର ବିଧାନଯାକ ପୁଛିବା ତାହାଙ୍କୁ ।
ଶୁଣିକରି ମୁଦୁସୁଲୀ ବେଗ ହୋଇଗଲା
ଖୁଣ୍ଟିଆ ବେହେରା ଆଗେ ଯାଇ ଜଣାଇଲା ।
ବୋଇଲା ମହାରଥକୁ ଆଣ ହୋ ବହନ
ଠାକୁର ଆଜ୍ଞାଦେଲେ ସେ କରିବେ ଦର୍ଶନ
ଶୁଣିଣ ବେହେରା ତତକ୍ଷଣେ ଗଲା ଧାଇଁ
ବିଚିତ୍ର ମହାରଥଙ୍କୁ ଆଣିଲା ଡକାଇ ।
ଛାମୁକୁ ବେଗେ ଯାଇଣ ଦରଶନ କଲା
ନାବଯାକ ନିର୍ଭାକରି ଆସିଲି ବୋଇଲା ।
ବୋଇଲାକ ଦଶଲକ୍ଷ ନିର୍ମାଣିଲି ନାବ
ବିଶ୍ୱକର୍ମା ନିର୍ମାଣ ସେ ଅଟଇ ଅପୂର୍ବ ।
ଶୁଣିଣ ଆନନ୍ଦ ହେଲେ ପ୍ରଭୁନରହରି
ବୋଇଲେ ଯାତ୍ରାକୁ ଯିବା କାଲି ବିଜେକରି
ତ୍ରିବେଣୀ ଗଙ୍ଗାର ତୀରେ ଅଛି ସରୋବର
ସେ ହଂସପୋଖରୀ ବୋଲି ନାମ ଅଟେ ତାର
ତ୍ରିକୁଟ ନାମେ ହ୍ରଦରେ ପୋଖରୀର ତୁଠ
ବୁଝିବ ସେସବୁ ଲୋକଙ୍କର ପାଣି ବାଟ ।
ସେ ତୁଠ ବାଟେ ପିବନ୍ତି ସର୍ବେ ଜାଣଜଳ
ଏହା ନଚିହ୍ନି ପ୍ରାଣୀଏ ଲଗାନ୍ତି କନ୍ଦଳ ।
ସବୁରି ମୁଖେ ପଡ଼ି ସେ ଜଳ ହୁଏ ଭୋଗ
କୀଟରୁ ବ୍ରହ୍ମପର୍ଯ୍ୟନ୍ତ ଯେତେ ପ୍ରାଣୀ ଅଙ୍ଗ ।
ସବୁରି ମୁଖେ ପ୍ରକାଶ ଝରି ସେହୁ ଜଳ
ସେହି ପୋଖରୀରେ ନାବ କରନେଇ ଠୁଳ
ସବୁରି ମୁଖେ ଏ ପୋଖରୀରୁ ଜଳ ସ୍ରବେ
ମନ୍ତ୍ରେ ପୂତ କରନ୍ତି ଯେ ତାହା ବାସୁଦେବେ
ପୁଣି ସେହି ମହାରଥ ଯୋଡ଼ିଲାକ କର
ବୋଇଲା ଶ୍ରୀ ଆଜ୍ଞାରେ ତ ଖଞ୍ଜିବୁଁ ସେ ପୂର
ଚନ୍ଦନ ଯାତ୍ରା ହୋଇବ କହ ଯେଉଁ ଦିନ
ରାତ୍ର ପାହିଲେ ଯେ ହେବ ଉତ୍ସବ ବିଧାନ ।
ନୃସିଂହ ଜନମାନସ ଅଟେ ଏ ଆମ୍ଭର
ମହାଉତ୍ସବ ଯାତ୍ରାଯେ କରିବା ସେଠାର ।
ପୋଖରୀର ଚାରିପାଶେ ଥିବୁ ଗୃହତୋଳି
ଶୁଣିଣ ସେ ମହାରଥ ଗଲା ଶୀଘ୍ର ଚଳି ।
ବିଶ୍ୱକର୍ମାକୁ ରାଇଣ ପାଶେ ଅଣାଇଲା
ଶ୍ରୀନୃସିଂହ ପ୍ରଭୁଙ୍କର ଆଜ୍ଞା ଜଣାଇଲା ।
ବୋଇଲା ହଂସ ପୋଖରୀ ଚାରିପାଶେ ଯାଇ
ଏହି ରାତ୍ରି ମଧ୍ୟେ ପୂର ଦେବୁଟି ନିର୍ଭାଇ ।
ଶୁଣି ବିଶ୍ୱକର୍ମା ଗଲା ତତକ୍ଷଣେ ଚଳି
ପୋଖରୀର ଚାରିପାଶେ ଦେଲା ଗୃହ ତୋଳି

ପୁରେ ପୁରେ ଖଞ୍ଜିଲାକ ନେଇ ଅଷ୍ଟରତ୍ନ
ସ୍ୱର୍ଗହୁଁ ଅଧିକ ସେହି ଦିଶିଲା ଶୋଭନ ।
କ୍ଷଣକେ ସେ ପୂର ନିର୍ଭାକଲା ବିଶ୍ୱକର୍ମା ।
ସ୍ୱର୍ଗପୁରେ ସଭା ଯେହ୍ନେ କରଇ ସୁଧର୍ମା ।
ଏଥୁଅନନ୍ତରେ ରାତ୍ର ହେଲା ଆସି ଶେଷ
ଶୁଭିଲା ଦେବଆଳୟ ମଧ୍ୟେ ଶଂଖଘୋଷ ।
ପୁରେ ପୁରେ ମହାରଥ ଦିଆଏ ଘୋଷଣ
ଚନ୍ଦନ ଯାତ୍ରାକୁ ବିଜେହେବେ ପ୍ରଭୁ ଜାଣ ।
ସମସ୍ତେ ଯାନ ଆରୋହୀ ହୁଅ ବେଗେ ସଜ
ହଂସ ପୋଖରୀ ଯାତ୍ରାରେ ବିଜେ ଦେବରାଜ
ଶୁଣି ନଗ୍ରଜନମାନେ ଉଚ୍ଚାଟ ହୋଇଲେ
ପ୍ରଭୁଙ୍କର ଯାତ୍ରାଆଜ ଦେଖିବା ବୋଇଲେ ।
ଏଥୁଅନନ୍ତରେ ସେହି ଶ୍ରୀନୃସିଂହ ପ୍ରଭୁ
ଯାତ୍ରାକୁ ଯିବାକୁ ସଜ କରାଇଲେ ସବୁ ।
ନିତ୍ୟକର୍ମ ବିଧିମାନ ସାରି ନାରାୟଣ
ଆସ୍ଥାନରେ ବିଜେକଲେ ଯାଇ ତତକ୍ଷଣ ।
ମନ୍ତ୍ରୀ ଅମାତ୍ୟ ଆସିଣ ଦରଶନ କଲେ
ଶେଷଦେବ ବିଜେକରି ମନ୍ଦିରୁ ଆସିଲେ ।
ପିତା କୃଷ୍ଣବଲ୍ଲଭ ମନ୍ଦିରୁ ବିଜେକରି
ଆସ୍ଥାନେ ପ୍ରବେଶ ହେଲେ ଆସି ଦଣ୍ଡଧାରୀ
ଦେଖିଣ ମହାପ୍ରଭୁ ସେ ଆସ୍ଥାନରୁ ଉଠି
ପିତାଙ୍କ ସଙ୍ଗେ ଅଛନ୍ତି ଶିଶୁ ଚାରିଗୋଟି ।
ସତ୍ୟ ଧର୍ମ ଦୟା ଜ୍ଞାନ ଯେଉଁ ଚାରିଭାଇ
ନୃସିଂହ ଆଗେ ନାଚନ୍ତି ଖେଳି ଡେଇଁଡେଇଁ
ଅଜାଙ୍କକୋଳୁ ପିତାଙ୍କ କୋଳେ ଯାଇଁ ବସି
ପିତା ଧରନ୍ତେ ପଳାନ୍ତି ପୁଣି ହସ୍ତୁ ଖସି ।
ପୁତ୍ରଙ୍କର କଉତକୁ ଦେଖି ନରସିଂହ
ଆନନ୍ଦେ ପୁତ୍ରଙ୍କ ମୁଖ ଚୁମ୍ବନ୍ତି ଶ୍ରୀରଙ୍ଗ ।
ଜନ୍ମରୁ ଦିଶନ୍ତି ଚାରିପୋଏ ଯୁବାତନୁ
ଥିବେଟି ସର୍ବଦା ଏକ ହୋଇ ଚାରିସୁନୁ ।
ବାଳବୃଦ୍ଧ ଯୁବା ରୂପ ସର୍ବାକାଳେ ଏକ
ଯେରୂପେ ଅଟନ୍ତି ଲକ୍ଷ୍ମୀ ନୃସିଂହ ବାଳକ ।
ଆନନ୍ଦରେ ଶ୍ରୀନୃସିଂହ ପୁତ୍ରକୁ ପଚାରି
ବୋଇଲେ ଯାତ୍ରାକି ଦେଖିଯିବା ବିଜେକରି ।
ଶୁଣି ମନେ ହସ ହସ ହେଲେ ଚାରିଭାଇ
ଅଜାଙ୍କ କୋଳେ ବସିଲେ ତହୁଁ ବେଗେଯାଇ
ଏଥୁଅନ୍ତେ ପୁଣି ସେ ବିଚିତ୍ର ମହାରଥା
ପୂର ନିର୍ମାଣି କହିଲା ଆସି ସବୁକଥା ।
ନାବଯାକ ନେଇ ରଖିଲଇଁ ପୋଖରୀରେ
ମନଇଚ୍ଛା ଅନୁକୂଳ କର ଏବେ ବାରେ ।

ଶୁଣି ମହାପ୍ରଭୁ ମନେ ଆନନ୍ଦିତ ହେଲେ
ଏହିଲାଗେ ଆମ୍ଭେ ବିଜେ କରିବା ବୋଇଲେ
ଏଥୁ ଅନନ୍ତରେ ହେଲା ପାଞ୍ଚଘଡ଼ି ବେଳ
ଚଳିଲେ ଯାତ୍ରାକୁ ପ୍ରଭୁ କରି ଅନୁକୂଳ ।
ପିଅରକୁ ଚାହିଁ ଆଜ୍ଞାଦେଲେ ପ୍ରଭୁ ବେଗେ
ଚାରି ନାତିଙ୍କୁ ଘେନିଆସ ମାତା ସଙ୍ଗେ ।
ଆସନ୍ତୁ ଯେ ଶେଷଦେବ ସାନବଧୂ ଘେନି
ଚନ୍ଦନ ଉତ୍ସବ ଯାତ୍ରା କରିବା ମେଦିନୀ ।
କମଳା ବିଜେ କରନ୍ତୁ ଯାଇ ହାନ୍ଦୋଳରେ
ଚୌଷଠି ସହସ୍ର କନ୍ୟା ଘେନି ସଙ୍ଗତରେ
ଅଷ୍ଟସଖିଏ ସେବାରେ ଥାଆନ୍ତୁ ଯେ ଲାଗି
କରିବା ଚନ୍ଦନଯାତ୍ରା ବେଳକାଳ ଜଗି ।
ଶୁଣିଣ କୃଷ୍ଣବଲ୍ଲଭ ଗଲେ ସେହିଲାଗେ
ଖବର କଲେକ ଭଗବତୀ ରାଣୀ ଆଗେ ।
ବୋଇଲେ ବଧୂମାନଙ୍କୁ ଘେନି ବେଗେ ଚଳ
ଚନ୍ଦନଯାତ୍ରାକୁ ବିଜେକଲେ ଆଦିମୂଳ ।
ସତ୍ୟ ଧର୍ମ ଦୟା ଜ୍ଞାନ ଯେଉଁ ଚାରିନାତି
ଏହାଙ୍କୁ ସଙ୍ଗେ ଘେନିଣ ଯିବା ଭଗବତୀ ।
ଶୁଣି ଭଗବତୀ ରାଣୀ ଆନନ୍ଦିତ ହେଲେ
ପୁତ୍ରବଧୂ ନାତି ସହିତରେ ବିଜେକଲେ ।
ପରିବାରୀ ମୁଦୁସୁଲୀ ହଂସିନୀ ପୋଇଲି
ହାନ୍ଦୋଳରେ ବସି ଯାତ୍ରା ଦେଖନ୍ତିଯେବୁଲି
ସେ ନଗରେ ନରନାରୀ ଯେତେ ଲୋକଥିଲେ
ସମସ୍ତେ ଚନ୍ଦନ ଯାତ୍ରାଦେଖି ବାହାରିଲେ ।
ଚନ୍ଦନଯାତ୍ରାକୁ ବିଜେକଲେ ନରସିଂହ
ଆଡ଼ୋ ଆଡ଼ୋ ଶବ୍ଦ ହେଉଅଛି ଚାରିଦିଗ ।
ଆଲଟ ଚାମର ପଙ୍ଖା ପଡ଼େ ଚଉପାଶ
ସମସ୍ତେ ଦେଖିଣ ତାହା ହେଉଛନ୍ତି ତୋଷ ।
ବୀର କାହାଳୀ ମର୍ଦ୍ଦଳ ବାଦ୍ୟ ଆଗେବାଜେ
ମହୁରୀ ଯେ ଶଙ୍ଖନାଦେ ଯାନ୍ତି ଦେବରାଜେ
ଆଗେରେ ଚୋପଦାରିଆ ହୋଇଛନ୍ତି ଉଭା
କେ କହିପାରେ ନୃସିଂହ ଯାତ୍ରାର ଯେ ପ୍ରଭା
ଶ୍ରୀନୃସିଂହ ଅଳଙ୍କାର ଲାଗିହେଲେ ଅଙ୍ଗେ
ଶ୍ରୀଜଗମୋହନ ବେଶହେଲେ ଶିରୀରଙ୍ଗେ
ଜଗତମୋହନ ପାଗ ପାନ୍ଧିଲେକ ଶିରେ
ସୁବର୍ଣ୍ଣ କେତକୀଫୁଲ ଖଞ୍ଜିଲେ ମଥାରେ ।
ହୀରାର ମୁକୁଟମଣି ଶିରେ ନେଇ ଖଞ୍ଜି
କର୍ଣ୍ଣରେ ଲମ୍ବାଇ କର୍ଣ୍ଣାଞ୍ଚଳ ପୁଞ୍ଜି ପୁଞ୍ଜି ।
କଣ୍ଠରେ ପଦକ ରତ୍ନହାର ମୋତିମାଳା
ବାହୁରେ ବାହୁଟି ରତ୍ନ ଶୋହେଜଗଦ୍‌ବାଳା

ବିଦମୁଦି କଙ୍କଣ ଯେ ରତ୍ନର ଭୂଷଣ
କଟିମେଖଳା ବାଜେଣି ବାଜେ ରୁଣଝୁଣ ।
ପାଦେ ହୀରା ତୋଡ଼ର ଯେ ଦିଶେ ଜକଜକ
ଅଳଙ୍କାର ଲାଗି ପ୍ରଭୁ ହୋଇଲେ ଅନେକ ।
ବାଜଇ ଢ଼ୋଲ ଦମାଲୁ ନିଶାଣ ମହୁରୀ
ତକ୍ଷଣେ ଯାତ୍ରାକୁ ଚଳିଗଲେ ବିଜେକରି ।
ଅପ୍ରମିତ ବାଜଣା ଯେ ବାଜେ ଲକ୍ଷେକୋଟି
ସୁକୁଟୁମ୍ବ ଘେନି ବିଜେ କଲେ ନୃସିଂହଟି ।
ଆନନ୍ଦିତ ହୋଇ ପ୍ରଭୁ ବିଜେ କରିଗଲେ
ଚନ୍ଦନ ଯାତ୍ରାରେ ଯାଇ ପ୍ରବେଶ ହୋଇଲେ ।
ପୋଖରୀ ମଧ୍ୟେ ନାବକୁ କଲେ ଯାଇ ଉଜ
ଅଛନ୍ତି ବହୁ ପଦାତି ରଥ ଜଗ ଅଶ୍ୱ ।
ନାବ ମଧ୍ୟେ ବିଜେ କଲେ ପ୍ରଭୁ ଦେବରାଜ
ଆହୁଲା ବାନ୍ଧି ନାବିକେ ବେଗେ ହେଲେ ସଜ
ବାହନ୍ତି ଜଳରେ ନାବ ଆନନ୍ଦ ଉଭାରି
ଚନ୍ଦନ ପାଣି ପିଚିକା ହୋନ୍ତି ମରାମରି ।
ଦଶଲକ୍ଷ ନାବଯାକ ଦେଲେ ପ୍ରଭୁ ବାଣ୍ଟି
ଅଠାଶୀସସ୍ର ଋଷିଙ୍କି ଏକ ଏକ ଗୋଟି ।
ଚୌଷଠିସସ୍ର କନ୍ୟାଙ୍କୁ ଗୋଟିଗୋଟି ନାବ
ପିଚକାରୀ ମରାମରି ହୁନ୍ତି ମାତି ସର୍ବ ।
ଈଳା ଠାକୁରାଣୀଙ୍କି ଯେ ଘେନି ଶେଷଦେବେ
ଚନ୍ଦନଯାତ୍ରା ଖେଳିଲେ ବସି ଏକ ନାବେ ।
କୃଷ୍ଣବଲ୍ଲଭ ରାଜା ଶ୍ରୀଭଗବତୀ ରାଣୀ
ଏ ନାବ ଉପରେ ବସି ଖେଳିଲେକ ପାଣି ।
ଗରୁଡ଼ କତିକି ପୂଣ ଦେଲେ ପ୍ରଭୁ ନାବ
ଖେଳିଲେ ଜଳେ ପଶି ସେ କରେ ମହାର୍ଣ୍ଣବ ।
ପାତ୍ର ମନ୍ତ୍ରୀ ସୈନ୍ୟବଳ ଯେତେଥିଲେ ଆସି
ସମସ୍ତଙ୍କୁ ନାବେ ନାବେ ଦେଲେ ବ୍ରହ୍ମରାଶି ।
ନଗରକୁ ଯେତେ ଜନ ଆସିଥିଲେ ଦେଖି
ସମସ୍ତଙ୍କୁ ନାବେ ନାବେ ଦେଲେ ପଦ୍ମଆଖି ।
ଚାଙ୍ଗଡ଼ା ମେକାପ ଖୁଣ୍ଟିଆ ଯେ ଚୋପଦାର
ଏମାନଙ୍କୁ ନାବେ ନାବେ ଦେଲେ ପଦ୍ମକର ।
ଦଶଦିଗପାଳ ଆଦି ଯେତେ ଦେବକୁଳ
ସମସ୍ତଙ୍କୁ ନାବେ ନାବେ ଦେଲେ ଆଦିମୂଳ ।
ବାରତିଥି ନକ୍ଷତ୍ର ଯେ ଯୋଗକରଣ ଏ
ଆଦିଙ୍କୁ ବସାଇ ନାବେ ଖେଳେ ଦେବରାୟେ
ଯାତ୍ରା ଦେଖିବାକୁ ଯେତେ ଜୀବ ଥିଲେ ଆସି
ସବୁଙ୍କୁ ଖେଳାନ୍ତି ନାବେ ନେଇ ବ୍ରହ୍ମରାଶି ।
ଚାରି ସମ୍ପ୍ରଦାର ଥିଲେ ଯେତେକ ବୈଷ୍ଣବ
ନୃସିଂହ ଯେ ସମସ୍ତଙ୍କୁ ଦେଲେ ନେଇ ଠାବ ।

ବୋଇଲେ ଚନ୍ଦନଯାତ୍ରା କଲୁ ଆମ୍ଭେ ଆଣି
ଏ ଯାତ୍ରା ଚାରି ଧାମକୁ ଯୋଗ ଦିଅ ପୁଣି ।
ଏ ଚାରି ଧର୍ମକୁ ଅଟୁ ଆମ୍ଭେ ମହାମନ୍ତ୍ର
ହରେ ରାମକୃଷ୍ଣ ଘେନି ଷଡ଼ାକ୍ଷର ତନ୍ତ୍ର ।
ଏ ମନ୍ତ୍ରକୁ ଚାରିମୁଖୁଁ ଶୁଣି ପ୍ରାଣୀମାନେ
ସଂସାରୁ ତରିବେ ମୋକ୍ଷ ହୋଇ ସର୍ବଜନେ ।
ଚାରି ସମ୍ପ୍ରଦାର ଏହି ମନ୍ତ୍ର ଏକା ଅଟେ
ଏ ମନ୍ତ୍ରକୁ ନିନ୍ଦାଥୋକେ କରନ୍ତି ପାପିଷ୍ଟେ ।
ବୋଲୁଛ ଆମ୍ଭର ଧର୍ମ ସଂସାରରେ ଉଚ୍ଚ
ଆନ ସଂପ୍ରଦାମାନଙ୍କୁ କରନ୍ତି ଯେ ତୁଚ୍ଛ ।
ଶ୍ରୀନୃସିଂହ ମହାପ୍ରଭୁ ଅଟନ୍ତି ଯେ ହରି
ତେଣୁ ହରି ଆଦ୍ୟେ ମହାମନ୍ତ୍ର ପୂଜାକରି ।
ହରି ନ ବୋଲି ଆଦ୍ୟେ ସେ ଦେବ ମନ୍ତ୍ରଦୀକ୍ଷା
ଅପଣ୍ଡିତ ବୋଲି ସେହିହେବ ଶାସ୍ତ୍ରେ ଲେଖା
ଆଦ୍ୟେ ହରି ମଧ୍ୟେ ରାମ ପ୍ରାନ୍ତେ କୃଷ୍ଣ ସିନା
ଏହି ତିନି ନାମ ମହାମନ୍ତ୍ରକୁ ମୂର୍ଦ୍ଧନା ।
ଏଣୁ ଏ ସଂସାରଯାକେ ସୁପଣ୍ଡିତ ଯେତେ
ସବୁ ସଂପ୍ରଦାକୁ ସରି ଘେନନ୍ତୁ ହୃଦଗତେ ।
ମୂଢ଼ ଲୋକମାନେ ଏକା ନିନ୍ଦା କରୁଥାନ୍ତି
ଦ୍ୱାଦଶଯାତ୍ରା ମୋହର ଅଟେ ମହାଭକ୍ତି ।
ଚନ୍ଦନଯାତ୍ରାରେ ମୋର ସେହୁ ବିଜେ କରି
କୀଟୁ ବ୍ରହ୍ମଯାଏ ମୋର ସମସ୍ତ ଯେ ସରି ।
ଶୁଣିଣ ସୁଜନ ସାଧୁ ବୈଷ୍ଣବ ଗୋସାଇଁ
ବିଷ୍ଣୁ ଆଜ୍ଞାପାଇ ନାବେ ବସିଲେକ ଯାଇ ।
ଚାରିସମ୍ପ୍ରଦା ବୈଷ୍ଣବ କଲେ ମହାଯାତ୍ରା
ନୃସିଂହ ମହିମାରୁ ନଛାଡ଼ି କ୍ଷଣେ ଯାତ୍ରା ।
ନାଚନ୍ତି ନୃସିଂହ ତାନେ ଗାଇ ଭୋଳ ହୋଇ
ପିଚକାରୀ ମରାମରି ହୁନ୍ତି ଗୀତ ଗାଇ ।
କରନ୍ତି ଯେ ନାନାକେଳି ଅଝାଳନ୍ତି ଭିଡ଼ି
ଜଳେ ଆନନ୍ଦେ ମାତନ୍ତି ନାବମାନ ଚଢ଼ି ।
ସୋଲ ଭେଳା ଧରି କେହୁ ଟିପାକାଠି ଧରି
ନାବରୁ ଡେଇଁ ଆନନ୍ଦେ ଜଳେ କ୍ରୀଡ଼ାକରି ।
ଦଶବିଂଶ ପଞ୍ଚ ଶତ ସସ୍ର ହୋଇ ରୁଣ୍ଡ
ଭିନ୍ନେ ଭିନ୍ନେ ଜଳେ ମାତି ହୁଅନ୍ତି ପ୍ରଚଣ୍ଡ ।
ବୋହାନ୍ତେ ପବନୁ ଶତେଗୁଣ ନାନାବେଗେ
ଏକକୁ ଆରେକ ପଛକରି ହୋନ୍ତି ଆଗେ ।
କହନ୍ତି ହେ ପିତାମହ ଶୁଣ ହେ ନାରଦ
ଏ ରୂପେ ଜଳକ୍ରୀଡ଼ା ଯେ କରନ୍ତି ଗୋବିନ୍ଦ ।
ଆପଣାତ ନାବ ତେଜି ଲକ୍ଷ୍ମୀ ନାବେ ଯାଇ
ବସିଲେ ନୃସିଂହ ପ୍ରଭୁ ହସ ହସ ହୋଇ ।

ନାୟିକାଗଣ ତାହାଙ୍କୁ ଦେଖି ହେବେ ମୋହି
ହରଷ ଆନନ୍ଦ କଥା କେ ପାରିବ କହି ।
କର୍ପୂର ମିଶାଇ ସୁବାସିତ ଜଳଆଣି
ଖେଳନ୍ତି ପିଚିକା ମାରି ସକଳ ତରୁଣୀ ।
ଅନେକ ସମ୍ଭାର ତହିଁ କେହୁ କହିପାରି
ନାଚନ୍ତି ବିବିଧ ନୃତ୍ୟରଙ୍ଗେ ଅପସରି ।
ଆକାଶମାର୍ଗେ ଥାଇଣ ସକଳ ବିବୁଧ
କରନ୍ତି କୁସୁମବୃଷ୍ଟି ହୋଇଣ ଆନନ୍ଦ ।
ଯଶୋବନ୍ତ ପୁରୁ ଅଇଲେକ ପିତାମହ
ସଙ୍ଗେ ଅଛନ୍ତି ବ୍ରାହ୍ମଣ ଋଷି ଅପ୍ରମେୟ ।
ବଶିଷ୍ଠ ଗୌତମ ମୁନି ବ୍ୟାସ ପରାଶର
ଜାବାଳି କଶ୍ୟପ ଋଷି ମାର୍କଣ୍ଡ ଅଙ୍ଗିର ।
ନାରଦ ଯେ ଭୃଗୁଋଷି କପିଳ ପୌଲସ୍ତ୍ୟ
ଆତ୍ରେୟ ଦତ୍ତାତ୍ରୟ ଯେ ଲୋମଶ ଅଗସ୍ତି ।
ଏ ଆଦି ବ୍ରହ୍ମର୍ଷି ଅଠାଅଶୀ ସହସ୍ରଯାଏ
ବ୍ରହ୍ମାଙ୍କ ଗହଳେ ଚାଲୁଛନ୍ତି ଅପ୍ରମେୟ ।
ବାସବପୁରେ ମିଳିଲେ ଆସି ବେଦବର
ଦେଖି ବିଡ଼ୋଜା କରନ୍ତି ପାଦେ ନମସ୍କାର ।
ଆନନ୍ଦେ କଲ୍ୟାଣ କରି ତାକୁ ପଦ୍ମଯୋନି
ବୋଇଲେ ଚାଲ ଦେବଙ୍କୁ ଯିବା ସଙ୍ଗେ ଘେନି
ନୃସିଂହ ଛାମୁରେ ଯାଇ କରିବା ଦର୍ଶନ
କରୁଅଛନ୍ତି ଚନ୍ଦନଯାତ୍ରା ଭଗବାନ ।
ବ୍ରହ୍ମାଙ୍କ ମୁଖୁଁ ଶୁଣିଣ ତୋଷ ଶଚୀସାଇଁ
ଯାନ ବାହନ ଚଢ଼ିଣ ଗଲେ ଶ୍ରଦ୍ଧା ବହି ।
ବଜାଇଦେବ ଦୁନ୍ଦୁଭି ବାଦ୍ୟ ବୀରତୂର
ତେତିଶକୋଟି ଦେବଙ୍କୁ ଘେନି ସଙ୍ଗତର ।
ଶ୍ରୀନୃସିଂହ ପାଶେ ଯାଇ ହୋଇଲେ ପ୍ରବେଶ
ତାହାଙ୍କ ପାଦେ ଶରଣ ପୀତାମ୍ବର ଦାଶ ।
ଜାତିରେ ବ୍ରାହ୍ମଣ ମୁହିଁ ଅଟେ ଯଜୁର୍ବେଦୀ
କଣ୍ୱଶାଖା ଗୋତ୍ରମୋର କୌଣ୍ଡିଲ୍ୟ ପ୍ରସିଦ୍ଧି
କୌଣ୍ଡିଲ୍ୟସଗୋତ୍ରେ ମୋତେ କରି ପ୍ରଭୁ ଜାତ
ବୋଇଲେ କର ନୃସିଂହ ପୁରାଣରୁ ଗୀତ ।
ପ୍ରାଞ୍ଜଳ କରି ଚନ୍ଦନ ଯାତ୍ରାମୋର ଲେଖ
ସଂସାରେ ଶୁଣିଣ ନରେ ହେବେ ଜାଣ ମୋକ୍ଷ
ଗ୍ରୀଷ୍ମକାଳେ ଏ ଚନ୍ଦନଯାତ୍ରା ହେବ ଜାଣ
ଦେଖିଲେ ସଂସାରେ ସର୍ବେ ମୋକ୍ଷ ହେବେ ପୁଣ ।
ମହା ଶାନ୍ତଶୀଳ ଅଟେ ଏହି ଯାତ୍ରା ଗୋଟି
ଦେଖିଲେ ବ୍ରହ୍ମକୁ କୀଟଯାଏ ତରିବେଟି ।
ଏ ରୂପେ ଆଜ୍ଞାଦିଅନ୍ତେ ମୋତେ ଚକ୍ରପାଣି
ତେଣୁ ଏ ଚନ୍ଦନଯାତ୍ରା ଲେଖେ ଶାସ୍ତ୍ର ଆଣି ।
ସାଧୁ ସଜ୍ଜନଙ୍କର ଚରଣ ରେଣୁକୁ
ସର୍ବଦା ସେବୁଛି ମୁହିଁ ଭବ ତରିବାକୁ ।
ଏଣୁ କରି ସୁଜନେ ନ ଘେନ ମୋର ଦୋଷ
ଶ୍ରୀନୃସିଂହ ଶରଣ ମୁଁ ପୀତାମ୍ବର ଦାଶ ।



## ବ୍ରହ୍ମାଦି ଦେବଙ୍କର ପ୍ରବେଶ ଓ ନୃସିଂହ ଶେଷଦେବଙ୍କର ଇହଲୀଳା ତ୍ୟାଗ

ଏଥୁ ଅନ୍ତେ ଦେବଗଣ ସର୍ବମହାମୁନି
ସଙ୍ଗେ ଘେନି ମିଳିଲେକ ତହିଁ ପଦ୍ମଯୋନି ।
ନୃସିଂହ ପାଶେ ଯାଇଣ ହେଲେ ପରବେଶ
ଚନ୍ଦନ ଯାତ୍ରା ଦେଖିଣ ମନକଲେ ତୋଷ ।
ପୋଖରୀର ଚାରିପାଖେ ପେଣ୍ଠ ହାଟ ଦେଖି
ବଜାର ବସିଣ ଦ୍ରବ୍ୟ ହୁଏ ବିକାବିକି ।
ଦେଖିଲେ ହେଉଛି ନାନା ବସ୍ତୁ ବିକାକିଣା
ନୃସିଂହର ମହିମା ଯେ ଅଟେ ଅକଳନା ।
ଗନ୍ଧର୍ବ ଆସିଣ ତାଳ ଦ୍ୟନ୍ତି ଘନ ଘନ
ନାରଦ ବୀଣା ବଜାଇ କରନ୍ତି ନର୍ତ୍ତନ ।
ଅପସରିଏ ଆସିଣ କରନ୍ତି ଯେ ନୃତ୍ୟ
କହନ୍ତି ଅଠାଶୀସହସ୍ର ଋଷି ଜ୍ଞାନ ତତ୍ତ୍ୱ ।
ବ୍ରହ୍ମା ପଦ୍ମାସନେ ବସି ଶ୍ରୀ ନୃସିଂହ ଆଗେ
ଗାୟନ କରନ୍ତି ଚାରିବେଦ ବ୍ରହ୍ମଭାଗେ ।
ସକଳ ଦେବତା ନୃସିଂହଙ୍କ ପାଶେ ବସି
ହଳଦୀ ପିଚିକା ମାରି ହୋନ୍ତି ମିଶାମିଶି ।
ସ୍ତିରୀ ପୁରୁଷ ସମସ୍ତେ ହୋଇ ଏକରୁଣ୍ଡ
ମାରନ୍ତି ପିଚକାରୀ ଯେ ହସ୍ତେ ଧରି ଭାଣ୍ଡ ।
ରାତ୍ର ଦିବସ ବୋଲି ସେ କିଛି ନ ଜାଣନ୍ତି
କର୍ପୂର ପନୀର ପାଣି ମିଶାଇ ଖେଳନ୍ତି ।
ପୋଖରୀ ଭିତରେ ଅଛି ଉତ୍ସବ ନଗର
ଖେଳନ୍ତି କନ୍ୟାମାନେ ଯେ ତହିଁ ଅଗୋଚର ।
ଚୌଷଠିସହସ୍ର ନାୟିକା ମହାଲକ୍ଷ୍ମୀ ଘେନି
ଖେଳନ୍ତି ପିଚିକାମାରି ସକଳ କାମିନୀ ।
ଅଙ୍ଗରେ ଯେ ଆଭରଣ ନବ ଝୀନବାସ
ଖେଳନ୍ତି ଗଭୀରଜଳେ ପଶି ସ୍ତିରୀଅଂଶ ।
ଜଳେ ପଶିଣ କୂଳକୁ ପାଣି କେହୁ ଫିଙ୍ଗେ
କେହୁ ବୁଡ଼ିଯାଇ ଧରେ କାହା ପାଦବେଗେ ।
ଖେଳରେ ଭୋଳ ହୋଇଣ ସକଳ ଯୁବତୀ
କେ କାହାର ଅଙ୍ଗେନେଇ ଅଏଁଳା ବୋଲନ୍ତି ।
ଏ ବିଧିରେ ଯୁବତୀଏ ଖେଳନ୍ତି ଆନନ୍ଦେ
ହସନ୍ତି ନୃସିଂହ ତାହା ଦେଖି ଗଦଗଦେ ।

ଦ୍ୱାଦଶ ଦିନଯାଏ ଏ ବିଧିମତେ ଯାତ
ଚନ୍ଦନଯାତ୍ରା ସମ୍ପୂର୍ଣ୍ଣ କଲେ ବିଧିମତ ।
ବିଷ୍ଣୁର ଦ୍ୱାଦଶ ଯାତ୍ରା ଏହିଠାରୁ ଉଦେ
କହନ୍ତି ସାବିତ୍ରୀକାନ୍ତ ଶୁଣ ହେ ନାରଦେ ।
ଚନ୍ଦନଯାତ୍ରା ବୈଶାଖ ଶୁକ୍ଳପକ୍ଷେ ସାରି
ନଗ୍ରକୁ ଯିବାକୁ ଆଜ୍ଞା ଦେଲେ ନରହରି ।
ଏତେ ବୋଲି ଉତୁରି ସେ ନାବୁ ଭଗବାନ
ସବୁଙ୍କୁ ବୋଇଲେ ଏବେ ଚଢ଼ି ଯେଝାଯାନ ।
ସରିଲା ଚନ୍ଦନ ଯାତ୍ରା ଗୋଟି ଆଜିଠାରୁ
ମେଷ ମାସ ଯାଇ ବୃଷ ପ୍ରବେଶ ହେବାରୁ ।
ନୃସିଂହ ଆଜ୍ଞା ପାଇଣ ଗଲେ ସର୍ବଜନ
ଆଗରେ ଯେ ବିଜିଘୋଷ ବାଜେ ଘନ ଘନ ।
କର୍ଣ୍ଣାଟେଶ୍ୱର ରାଜା ହୋଇ ଆଗୁଆଣି
ଚାଲନ୍ତି ନୃସିଂହ ଆଗେ ବଜାଇ ନିଶାଣି ।
ସକଳ ଦେବ ଅଛନ୍ତି ବେଢ଼ି ପ୍ରଭୁ ପାଶ
ଗରୁଡ଼ରେ ବିଜେ କରି ଯାନ୍ତି ହୃଷୀକେଶ ।
ଦେବଯାନେ ବସିଲେକ ଯାଇ ଶେଷଦେବ
ହସ୍ତୀ ଉପରେ ବସିଲେ ଯେ କୃଷ୍ଣବଲ୍ଲଭ ।
ସତ୍ୟ ଧର୍ମ ଦୟା ଜ୍ଞାନ ଚାରିପୁତ୍ର ଧରି
ଦୋଳାରେ ବସିଲେ ଚାରିଲକ୍ଷ୍ମୀ ବିଜେକରି ।
ଇଳା ଠାକୁରାଣୀ ଯାଇଁ ରତ୍ନ ବାଙ୍କିଆରେ
ମନ୍ଦିରକୁ ବିଜେକରି ଚାଲନ୍ତି ସଧୀରେ ।
ହାନ୍ଦୋଳାରେ ବିଜେକରି ଗଲେ ଭଗବତୀ
ଶ୍ରୀ ନୃସିଂହଗଣ ଲେଖି ପାରିବ କେ କ୍ଷିତି ।
ନାୟିକାଗଣ ବିମାନମାଳ ଗଲେ ଚଢ଼ି
ଶ୍ରୀମହାଲକ୍ଷ୍ମୀର ପାଶେ ଛନ୍ତି ସର୍ବେ ବେଢ଼ି ।
ପହଣ୍ଡିର ବିଜେ ପ୍ରାୟ ଯାନ୍ତି ଜଗଜ୍ୟୋତି
ମରାଳ ବାହନ ଚଢ଼ିଛନ୍ତି ବେଦପତି ।
ଅଠାଶୀ ସହସ୍ର ଋଷି ଶ୍ରୀନୃସିଂହ ପାଶେ
ହରିନାମ ସଂକୀର୍ତ୍ତନ କରନ୍ତି ବିଶେଷେ ।
ଧୀରେ ଧୀରେ ହୋଇଗଲେ ଚାଲେଖଗେଶ୍ୱର
ଏଥିଅନ୍ତେ କହନ୍ତି ଯେ ବ୍ରହ୍ମା ଯୋଡ଼ି କର ।
ବୋଲନ୍ତି ଶୁଣିମା ଆହେ ପ୍ରଭୁ ଚକ୍ରପାଣି
ମୁରକୁ ମାରିଣ ଏବେ ରଖିଲ ଧରଣୀ ।
ମୁରାସୁରକୁ ମାରିଣ ଦେବେ କଲ ସୁଖୀ
ଛାମୁରେ ପଦେ କହିବି ମୁହିଁ ପଦ୍ମ ଆଖି ।
ଦେବଆଦି ଋଷିକୁଳ ସର୍ବେ ଅଛୁଁ ଆସି
କଥାଏକ ଜଣାଉଛୁ ଶୁଣ ବ୍ରହ୍ମରାଶି ।
ତୁମ୍ଭେ ଯେ ନିର୍ଗୁଣ ବ୍ରହ୍ମ ହୋଇଅଛ ଜାତ
ଆପଣଙ୍କ ଗୁଣ କହିପାରେ କେ ଜଗତ ।

ପାର୍ବତୀକାନ୍ତ ଯା ଅନ୍ତ ପାଇ ଯେ ନାହାନ୍ତି
ସଂସାରେ ଆଉ ଛାରକୁ ଦେଖିବାକ ଏଥି ।
ଏ ରୂପେ କଥା ହୋଇଣ ଯାନ୍ତେ ମହାବିଷ୍ଣୁ
ବସିଲେ ଆସ୍ଥାନେ ଯାଇ ଭଗବତୀ ସୁନୁ ।
ରହିଲେ ଦେବ ମଣ୍ଡଳାକାର ହୋଇ ତହିଁ
ଅଛନ୍ତି ଛପନକୋଟି ବର୍ଣ୍ଣେ ମାଳା ଲାଇ ।
ସେ ଛପନକୋଟି ବର୍ଣ୍ଣ କେତେକୋଟି ଜୀବ
ଯେତେରୂପେ ପ୍ରଭୁଅଙ୍ଗ ପ୍ରକାଶନ୍ତି ସର୍ବ ।
ବୁଝିଲେ ସୁର ନରହି ଦେବତା କୋଟିଏ
ତା ଅନ୍ତକେ ପାଇବ ଏ ରୂପେ ରୂପ ହୋଏ ।
ଭଲା ବିନ୍ଧାଣି ନୃସିଂହ ପ୍ରଭୁ ଦେବରାଜ
ନାନାରୂପ ବୀର୍ଯ୍ୟେ ଥୋଇଭୁଞ୍ଜାନ୍ତି ଐଶ୍ୱର୍ଯ୍ୟ
ଯେବଣ ନୃସିଂହ ରୂପ ଅଟେ ସୁମଙ୍ଗଳ
ବଦ୍ରିକା ନଗ୍ରରେ ଜନ୍ମିଛନ୍ତି ଆଦିମୂଳ ।
ଚାରିଧାମେ ଲେଖା ଅଟେ ସେହି ବଦରିକ
ସେ କ୍ଷେତ୍ରରେ ଅଷ୍ଟନିଧି ପୂରିଛି ଅସଂଖ୍ୟ ।
ସକଳ ସମ୍ପଦ ଘେନି ବିଜେ ଭଗବାନ
ପ୍ରଭୁ ଘେନି ଧନରାଶି ଭୁଞ୍ଜାନ୍ତି ଭୋଜନ ।
ଅନନ୍ତ ଲକ୍ଷ୍ମୀ ଅଛନ୍ତି ଯହିଁ ବିଜେକରି
ସେ ପୁରେ କିସ ଅପୂର୍ବ ଅଟେ ଧନ ଶିରୀ ।
ଶ୍ରୀଲକ୍ଷ୍ମୀ ନୃସିଂହ ଘେନି ସର୍ବଜନେ ସୁଖୀ
ଦେବତାମାନେ କରନ୍ତି ସ୍ତୁତି ତାହାଦେଖି ।
ଦେବେ ଯା ଯାବତ ପୁଷ୍ପ ଗୁଛି ଅପ୍ରମିତ
ଭୂଷଣ କରି ପୂଜନ୍ତି ପ୍ରଭୁ ଲକ୍ଷ୍ମୀକାନ୍ତ ।
ବୋଲନ୍ତି ଯେ ସାବଧାନେ ଶୁଣ ନରହରି
ଅବତାର ହେଲେ ନରସିଂହ ରୂପ ଧରି ।
ଷୋଳ ସହସ୍ର ବରଷ କଲ ଯେବେ ଭୋଗ
ଲେଉଟି ଯେ ଅବତାର ହବ ଚାରିଯୁଗ ।
ଅଜପା ଜପରେ ଥାଇ ଜପ ନିଜେ କର
ଜପି ଜପି ପ୍ରାଣୀ ଛାଡ଼ନ୍ତି ଯେ କଳେବର ।
ଦିନକରେ ଏକୋଇଶ ସହସ୍ର ଛଅଶ
କରନ୍ତି ଏ ଜପ ସବୁ ଦେବେ ଜଗଦୀଶ ।
ଏ ଜପକୁ ଚିହ୍ନିଜପ କରେ ଯେଉଁ ପ୍ରାଣୀ
ଜପ ସେ କରେ ଏକା ନ ଚିହ୍ନି ଚକ୍ରପାଣି ।
ଜାଣନ୍ତି ମାତ୍ର ଜପୁଛି କେତେ ବୋଲି ଲୋକେ
ଏତିକି ମାତ୍ରକ ଭକ୍ତି ଅଛି ଜପଯାକେ ।
ମନ ସେ ହୁଅଇ ବୋଧ ପ୍ରଭୁଙ୍କୁ ନ ପାଇ
ହେତୁ ରଖି ଭଜୁଥିଲେ ବଇକୁଣ୍ଠ ଯାଇ ।
ହେତୁ ନ ରଖି ଭଜିଲେ ମନମାତ୍ର ବୋଧ
କେତେ ମାଳା ଗଡ଼ାଇ ନମିଲେ ମୋହପଦ ।

ଖଣ୍ଡ ଧରଦନ୍ତେ ମଧୁରତୁଣ୍ଡ ଯେବେ ହୋନ୍ତା
ତେବେ ଜାଣନ୍ତାଇ ମାଳ ଭଜିଲେ ତରନ୍ତା ।
ତୁମ୍ଭର ଶ୍ରୀପାଦପଦ୍ମେ ଚିତ୍ତ ଯାର ନାହିଁ
ଲୋକାୟତେ ଭଜୁଥିଲେ କେବେ ନ ତରଇ ।
ବାସବ ଦେବତା ଆଦି ଦଶଦିଗ ପାଳେ
ସ୍ତୁତି କରୁଛନ୍ତି ଆସି ତୁମ୍ଭ ପାଦତଳେ ।
ଅଷ୍ଟାଦଶ ଚିହ୍ନ ତୁମ୍ଭ ଶରୀରେ ଅଛନ୍ତି
ଏହା ନ ଚିହ୍ନି ଯେ ପ୍ରାଣୀ କର୍ମେ ପ୍ରବର୍ତ୍ତନ୍ତି ।
ଆପଣ କୃଷ୍ଣବଲ୍ଲଭ ଘରେ ଅବତରି
ମଞ୍ଚମଣ୍ଡଳରେ କୀର୍ତ୍ତି ରଖିଲେ ନୃହରି ।
ଏ ନୃସିଂହ ଅବତାର କଲେ ଯେତେ କୀର୍ତ୍ତି
କର୍ଣ୍ଣେ ଶୁଣିଲେ ଲଭିବେ ପ୍ରାଣୀଗଣ ମୁକ୍ତି ।
ଭଜିଲେ ନୃସିଂହ ନାମ ନ ଲାଗଇ ମାୟା
ହୋଇଲାଟି ସଂସାରେ ସେ ପ୍ରାଣୀ ପୂଣ୍ୟକାୟା ।
ଷୋଳସହସ୍ର ବରଷ କଲଣି ଯେ ଭୋଗ
ବୈକୁଣ୍ଠକୁ ବିଜେ ଏବେ କରିବା ଶ୍ରୀରଙ୍ଗ ।
ସଦା ତୁମ୍ଭଙ୍କୁ ସଂସାରେ ଅଟେ ସମସରି
ଆମ୍ଭେ ସିନା ଜନ୍ମ ହୋଇ ଥାଉଁ ଥାଉଁ ମରି ।
ବୈକୁଣ୍ଠରେ ଥିଲେ ତୁମ୍ଭେ ମଞ୍ଚେ ଥିଲେ ତୁମ୍ଭେ
ଯହିଁ ଜଣାଇଲେ ତହିଁ ଶୁଣ ବାସୁଦେବେ ।
ସ୍ଥାବର ଜଙ୍ଗମ କୀଟ ପତଙ୍ଗାଦି ଯାଏ
ତୁମ୍ଭର ମାୟାରେ ଜୀବଗଢ଼ା ହେଉଥାଏ ।
ବ୍ରହ୍ମାଣ୍ଡଯାକ ତ୍ରିଗୁଣେ ଘଟସୂତ୍ର ହୋଇ
ଜୀବ ସ୍ୱରୂପେ ବିଜୟ ତୁମ୍ଭେ ଭାବଗ୍ରାହୀ ।
ପ୍ରକୃତି ସର୍ବ ବିଷୟମାନ କରେ ଭୋଗ
ନିତ୍ୟ ନିର୍ଗୁଣ ସ୍ୱରୂପ ଅଟେ ତୁମ୍ଭ ଅଙ୍ଗ ।
ସଂସାର ବିଷୟ ସବୁ ତୁମ୍ଭ ପରିଚାର
ଆତ୍ମା ରୂପେ ଏ ଜଗତେ ତୁମ୍ଭେ ଲୀଳାକର ।
ତୁମ୍ଭର ନାମ ଅମୃତ ରସ ଜଳ ହୋଇ
ତୁମ୍ଭ ପାଦୁଁ ଝରି ନଦୀରୂପେ ବହିଯାଇ ।
ତୁମ୍ଭର ପଦ୍ମପାଦୁ ଯେ ବହି ସୁରନଦୀ
ବହଇ ତ୍ରିବେଣୀଧାର ଶରୀରରୁ ଭେଦି ।
ତ୍ରିକୁଟ ହ୍ରଦରେ ପଶି ମୁଖେ ଆସେ ଝରି
ସଂସାର ମଧ୍ୟେ ଅଛନ୍ତି ଯେତେ ଦେହଧାରୀ ।
ଏ ଗଙ୍ଗାକୁ ହୃଦେ କେହି ନ ପାରନ୍ତି ଚିହ୍ନି
ଗଙ୍ଗାରେ ବୁଡ଼ି ବସନେ ପୋଛନ୍ତି ମୁର୍ଦ୍ଧନୀ ।
ଗଙ୍ଗାର ତ୍ରିବେଣୀଧାର ଶରୀରେ ଯେ ବହୁ
ଅଣହେତୁ ସକାଶେ ନ ଚିହ୍ନି ଏହା କହୁଁ ।
ଏ ଗଙ୍ଗା ଚିହ୍ନି କହିଲେ ପ୍ରାଣୀ ଭବ ତରେ
ପତିତପାବନୀ ଗଙ୍ଗା ବୋଲନ୍ତି ତ୍ରିପୁରେ ।

ଗଙ୍ଗାକୁ ଚିହ୍ନିଣ ଗଙ୍ଗା ସ୍ନାନ କଲେ ହରି
ଭକ୍ତିକି ଚିହ୍ନିଣ ଫଳ ଦ୍ୟନ୍ତି ସୁରେଶ୍ୱରୀ ।
ଯେ ଜନ ସ୍ମରଣ ତୁମ୍ଭ ପାଦ କରୁଥାଇ
ପ୍ରଭୁର ମାୟା କେବେ ହେଁ ତାକୁ ନ ଲାଗଇ ।
ଏ ରୂପେ କହିଣ ଦେବେ ଚରଣେ ପ୍ରଣମି
ଦେବଙ୍କର ମନକଥା ଜାଣି ଅନ୍ତର୍ଯ୍ୟାମୀ ।
ବୋଇଲେ ଲୀଳା ଆମ୍ଭର ଶେଷ ହେଲାପରା
ତେଣୁ ଦେବତା କହନ୍ତି ଆସି ହୋଇ ତ୍ୱରା ।
ଷୋଳ ସହସ୍ର ବରଷ ହେଲା ଆମ୍ଭ ଭୋଗ
ଏତକ ଲୀଳା ଆମ୍ଭର ଲଭେ ସତ୍ୟଯୁଗ ।
ତେଣୁ ଦେବେ ଆମ୍ଭଙ୍କୁ ନ ପାରିଣ ଭରସି
ଜଣାଉ ଅଛନ୍ତି ସ୍ତୁତି କରି ଆଗେ ଆସି ।
ଆମ୍ଭେ ଆଉ ରହିବାର କିସ କାର୍ଯ୍ୟ ଅଛି
ବ୍ରହ୍ମା ଶ୍ରୀ ବୋଲିବେ ତାହା ଶୁଣିମା ନା କିଛି ।
ନୃସିଂହ ପ୍ରଭୁ ଏମନ୍ତ ପାଞ୍ଚୁ ପାଞ୍ଚୁ ମନେ
ବ୍ରହ୍ମାଏ ଛାମୁରେ ଆସି ଜଣାନ୍ତି ଯତନେ ।
ବୋଲନ୍ତି କହୁଛି ଶୁଣ ପ୍ରଭୁ ଭାବଗ୍ରାହୀ
ତୁମ୍ଭର ପାଳିତ ଚରାଚର ଏହି ମହୀ ।
ପଦ୍ମପତ୍ର ପରେ ପଡ଼ି ଦିଶେ ଯେହ୍ନେ ନୀର
ସେହି ରୂପେ ତୁମ୍ଭର ଏ ପୃଥ୍ୱୀ ଖେଳଘର ।
ସକଳ ଘଟ ପଦ୍ମରେ ତୁମ୍ଭେ ଆତ୍ମା ରୂପୀ
ଏ କଥାଟି ମୂର୍ଖ ଚିହ୍ନି ନପାରେ ଅଦ୍ୟାପି ।
ଅଶେଷ ପ୍ରାଣୀଙ୍କର ଯେ ଅଛ ହୃଦଗତେ
ତୁମ୍ଭଙ୍କୁ ନ ଚିହ୍ନି କର୍ମ କରେ ନାନାମତେ ।
ସ୍ମରଣମାତ୍ରେ ଯାହାର ସର୍ବ ପାପ ହରେ
ମହା ଅନ୍ଧକାର ଯେହ୍ନେ ଆଦିତ୍ୟ ସଂସାରେ
ସେ ରୂପେ ପ୍ରାଣୀଙ୍କି ତୁମ୍ଭ ନାମ ପରିତ୍ରାଣ
ଧ୍ୟାନେ ଚିନ୍ତନ୍ତି ଯେ ନିତ୍ୟ ବସି ନାରାୟଣ ।
ସେହି ପ୍ରାଣୀମାନେଟି ଏ ଭବୁ ଯାନ୍ତି ତରି
ନ ତରନ୍ତି ବିପ୍ରମାନେ କର୍ମମାନ କରି ।
ତୁମ୍ଭ ନାମ ସାଧୁଙ୍କୁ ଯେ ଅଟଇ ଅମୃତ
ମୂର୍ଖଙ୍କୁ ଯେ ତୁମ୍ଭ ନାମ ଅଟେ ବଜ୍ରାଘାତ ।
ଆମ୍ଭଙ୍କୁ ସେ ପାଦପଦ୍ମ ଚିହ୍ନାଇଣ ଦିଅ
ସର୍ବଦା ଥିବୁ ଯେ ଆମ୍ଭେ ଧରି ଏହି ଦେହ ।
ଅଶେଷ ଜନଙ୍କର ହେ ତୁମ୍ଭେ ଜ୍ଞାନଗୁରୁ
ଦେବହିତେ ତୁହି ଦଶ ଅବତାର ଧରୁ ।
ଆମ୍ଭ ହିତେ ତୁମ୍ଭେ ପ୍ରଭୁ ଅବତାର ହୁଅ
ଦୁଷ୍ଟକୁ ନିବାରି ସନ୍ଥଜନ ପାଳୁଥାଅ ।
ବୃଷଭର ନାସିକାରେ ଯେହ୍ନେ ରଜ୍ଜୁ ଦେଇ
ଯହିଁକି ସେ ନେଉଥିଲେ ସେଠାକୁ ସେ ଯାଇ

ବ୍ରହ୍ମାଦି ଦେବତା ଆମ୍ଭେ ଅଟୁ ଯେହି ମତି
ତୁମ୍ଭ ମାୟା ତେଜି କେହୁ ନାହିଁ ଏ ଜଗତି ।
ଅଟନ୍ତି ସକଳ ଜୀବ ପାଦେ ତୁମ୍ଭ ଦାସ
ନମସ୍ତେ ନମସ୍ତେ ଦେବ ଅନାଦି ପୁରୁଷ ।
ନମସ୍ତେ ନମସ୍ତେ ଦେବ ପୁରୁଷ ପୁରାଣ
ନମସ୍ତେ ନମସ୍ତେ ଦେବ ସଂସାର କାରଣ ।
ପୃଥ୍ୱୀ ଆପ ତେଜ ବାୟୁ ବ୍ୟୋମ ପଞ୍ଚଭୂତ
ତୁମ୍ଭ ଗର୍ଭେ ଥାଇ ଏହୁ ପାଳନ୍ତି ଜଗତ ।
ଏ ପଞ୍ଚଭୂତକୁ ଘେନି ସପତ ବ୍ରହ୍ମାଣ୍ଡ
ସର୍ଜନ ପାଳନ କର ପୃଥ୍ୱୀ ନବଖଣ୍ଡ ।
ତୁମ୍ଭର ଏ ବିଶ୍ୱଗର୍ଭ ଭିତରେ ସଂସାର
ଘଟଣା କରାନ୍ତି ଏହୁ ଚତୁର୍ଦ୍ଦଶ ପୁର ।
ଜଳ ସ୍ଥଳ ଅନଳରୁ କର ତୁମ୍ଭେ ରକ୍ଷା
ତୁମ୍ଭ ବିନା ଆମ୍ଭର କେ ନାହିଁ ଗୁରୁଦୀକ୍ଷା ।
ବ୍ରହ୍ମାର ବାକ୍ୟ ଶୁଣି ହସିଣ ଦେବ ହରି
ବୋଇଲେ ଯେ ତୁମ୍ଭ ଘେନି ଆମ୍ଭେ ଅବତରି
ଆମ୍ଭେ ହେଲେ ଏହିକଥା ମନେ ପାଞ୍ଚୁଥିଲୁ
ନୃସିଂହ ଜନମ ଲୀଳା ଶେଷ ଆସି କଲୁ ।
ଅବନୀର ଭାରା ଏବେ ହେଲାକ ଉଶ୍ୱାସ
ବୈକୁଣ୍ଠ ଯିବାକୁ ମନେ କରିଲୁ ବିଶେଷ ।
ବୈଶାଖ ଶୁକଳପକ୍ଷ ଏକାଦଶୀ ଦିନ
ବିଜେ ଆମ୍ଭେ କରିବା ହେ ଚତୁର ଆନନ ।
ସେହିଦିନଠାରୁ ଜାଣ ଏକାଦଶୀ ବ୍ରତ
ପାଳନା କରି ପୂଜିବେ ମୋତେ ବିଧିମତ ।
ଏକାଦଶୀ ବ୍ରତ ରାଜା ଆମ୍ଭେ ସିନା ଏକ
ପାଳିବେ ଆମ୍ଭର ଏକାଦଶୀ ସର୍ବଲୋକ ।
ପ୍ରଳୟ ଅନ୍ତେ ଯେ ଆମ୍ଭେ ଏକାଦଶୀବାରୁ
ତେଣୁ ଏକାଦଶୀ ବ୍ରତ ଜନ୍ମିଲ ସେଠାରୁ ।
ପୁଣି ସେ ଏକାଦଶୀରେ ଆମ୍ଭର ଗମନ
ତେଣୁ ଏକାଦଶୀ ବ୍ରତ ପାଳିବେ ସୁଜନ ।
ଆମ୍ଭର ଗମନ ବେଳେ ଚଳିଲେ ଯେ ପ୍ରାଣୀ
ତାହାଙ୍କୁ ବୈକୁଣ୍ଠେ ନେଇ ରହିବୁ ଯେ ପୁଣି ।
ମାତା ପିତା ସହିତରେ ପରିଚାରଗଣ
ଚୌଷଠି ସସ୍ର ନାୟିକା ବିଜେ ସଙ୍ଗତେଣ ।
କମଳାଇଳା ଆଦି ହେ ଶେଷଦେବ ଯାଏ
କର୍ଣ୍ଣାଟେଶ ରାଜା ଚଳିଯିବେ କରିଧାୟେ ।
ଶୁଣିଣ ପିତାମହ ନୃସିଂହ ପାଦେ ନମି
ଦଶଦିଶପାଳେ ଗଲେ ଯେ ଯାହାର ଭୂମି ।
ଦେବତା ଆଦି ସମସ୍ତେ ଗଲେ ଯେଝାପୁରୀ
ଶୁଣ ହେ ନାରଦ କହନ୍ତି ଯେ ମୁଖଚାରି ।

ଦେବତାଙ୍କୁ ମେଲାଣି ଯେ କରି ନାରାୟଣ
ଆପଣାର ପୁରେ ଯାଇ ମିଳିଲେ ତତକ୍ଷଣ ।
ସକଳ ଅମାତ୍ୟେ ଚଳିଗଲେ ଯେଝାପୁର
ମିଳିଲେ ଲକ୍ଷ୍ମୀମନ୍ଦିରେ ନୃସିଂହ ଠାକୁର ।
ବ୍ରହ୍ମାଦି କହି ଗଲେକ ଯେତେ ସ୍ତୁତି ଭଣି
କହିଲେ ତା କମଳାଙ୍କ ଆଗେ ଚକ୍ରପାଣି ।
ଶୁଣି କରି ମହାଲକ୍ଷ୍ମୀ ହୋଇଲେ ଆନନ୍ଦ
ବୋଇଲେ ଦେଖିବା ଗଲେ ବୈକୁଣ୍ଠ ସମ୍ପଦ ।
ତୁମ୍ଭଙ୍କୁ ଅଟଇ ସିନା ସବୁସ୍ଥାନ ସରି
ଯହିଁ ଚିନ୍ତିଲେ ପ୍ରକାଶ ହୁଅ ତହିଁ ହରି ।
କେବେ ଅନୁକୂଳ କରି ଯିବ କହ ମୋତେ
ସେ କଥା ଶୁଣିଲେ ମୁହିଁ ଯିବଇଁ ପରତେ ।
ବୈଶାଖ ମାସ ଶୁକଳ ଏକାଦଶୀ ଦିନ
ସେହିଦିନ ଆମ୍ଭେ ସଖି କରିବା ଗମନ ।
ଚୌଷଠି ସହସ୍ର କନ୍ୟା ଅଷ୍ଟସଖୀ ଘେନି
ଗୋଲୋକପୁରେ ରହିବା ଯାଇ ଆମ୍ଭେ ବେନି
ଏତେକହି ଗଲେ ପ୍ରଭୁ ମାତାପିତା ପାଶ
ଦେବତାଙ୍କ କଥାଯାଇଁ କହିଲେ ବିଶେଷ ।
ବୋଇଲେ ଜନନୀ ଆଗୋ ତୁମ୍ଭେ ଜାତ ପୂର୍ବୁ
ବାଳଯୁବା ବୃଦ୍ଧ ହେଲେ ଏ ସଂସାରେ ସବୁ ।
ବାଳକାଳ ଉତ୍ତାରୁ ତ ଯୁବା ହୋଏ ପ୍ରାଣୀ
ତହିଁରେ ଯେ ସୁଖଭୋଗ ସବୁଥାଇ କିଣି ।
ବୃଦ୍ଧ ହେଲା ଉତ୍ତାରୁ ତ ସରେ ସବୁ ଭୋଗ
କାଳପୂରିଲା ବୋଲି ସେ ପାଞ୍ଚେ ମୃତ୍ୟୁଯୋଗ
ମରନ୍ତି ଯେ ରୂପେ ଭୋଗ ସାରି ସର୍ବ ପ୍ରାଣୀ
ଶୁଣନ୍ତେ ଜନନୀ କହନ୍ତି ଯେ ଚକ୍ରପାଣି ।
ଶୁଣି ଭଗବତୀ ବୋଲେ ଏ କଥା ତ ସତ୍ୟ
ବୁଝିଲେ ତ ଆମ୍ଭ ମନ ହେଲାଣି ବିରକ୍ତ ।
ବଳ ତୁଟିଲେ ପ୍ରାଣୀକି ସବୁ ଲାଗେ ବିଷ
କେବଳ ଚିହ୍ନି ପାରନ୍ତି ଏହା ସୁପୁରୁଷ ।
ବୈକୁଣ୍ଠ ଯିବାକୁ ଯେବେ ବିଚାରଟି କଲ
ଆମ୍ଭଙ୍କୁ ସେ କଥା ହେଲେ ଲାଗୁଛି ଅମୂଲ୍ୟ ।
ବୁଝିଲେ ତ ଏ ସଂସାର ଅଟେ ମାୟାଦ୍ୱନ୍ଦ୍ୱ
ଗଲେ ତ ଦେଖିବା ସୁଖେ ବୈକୁଣ୍ଠେ ସମ୍ପଦ ।
ଶୁଣିଣ ନୃସିଂହ ସ୍ୱାମୀ ଆନନ୍ଦିତ ହୋଇ
ସଭାରେ ବସିଲେ ଯାଇଁ ପ୍ରଭୁ ଭାବଗ୍ରାହୀ ।
ସତ୍ୟ ଧର୍ମ ଦୟା ଜ୍ଞାନ ଚାରିପୁତ୍ରେ ଧରି
କୋଳରେ ବସାଇ ତାଙ୍କୁ ତିଆରନ୍ତି ହରି ।
ବୋଇଲେ ବୈକୁଣ୍ଠ ଗାମୀହେବୁ ଆମ୍ଭେ ଜାଣ
ଏ ପୃଥ୍ୱୀଯାକ ତୁମ୍ଭେଟି କରିବ ପାଳନ ।

ସତ୍ୟପୁତ୍ର ସେ ସବୁରି ମୁଖେ ଯାଇଁ ବସୁ
ସତ୍ୟବଚନ କହିଣ ପ୍ରାଣୀମନ ତୋଷୁ ।
ଧର୍ମ ପୁତ୍ର ଯେ ସବୁରି କରେ ରହିଥାନ୍ତୁ
ହସ୍ତରେ ଦେଇଣ ପୁଣ୍ୟ କରି ଧର୍ମୀ ହୋନ୍ତୁ ।
ଦୟା ପୁତ୍ର ଯେ ସବୁରି ହୃଦେ ଯାଇ ବସୁ
ଦୟାବନ୍ତକରି ଲୋକଙ୍କର ମନ ତୋଷୁ ।
ଜ୍ଞାନବୋଲି ଯେଉଁ ପୁତ୍ର ବସୁଯାଇ ମନେ
ଜ୍ଞାନେ ଏ ସଂସାରେ ପ୍ରବର୍ତ୍ତନ୍ତି ସର୍ବଜନେ ।
ସତ୍ୟ ଧର୍ମ ଦୟା ଜ୍ଞାନ ଏହି ପୁତ୍ର ଚାରି
ସଂସାରେ ଉଦେ ହୁଅନ୍ତି ପ୍ରାଣରକ୍ଷା କରି ।
ଏତେ ବୋଲି ମହାପ୍ରଭୁ ଚାରିଭାଇ ଶିରେ
ଅମୃତ ଭୁଞ୍ଜାଇ ଶାଢ଼ୀ ବାନ୍ଧିଲେ ଶ୍ରୀକରେ ।
ଛପନ କୋଟି ଜୀବର ରାଜା କଲେ ରାଜ୍ୟେ
ବସିଲେ ସବୁରି ହୃଦେ ବିଷ୍ଣୁର ଆମ୍ଭଜେ ।
ଚତୁର୍ଦ୍ଦଶ ପୁରଯାକେ ହେଲେ ଅଧିକାରୀ
ରହିଲେ ଯାବତ ଚନ୍ଦ୍ର ଅର୍କେ ଦେହ ଧରି ।
ଏ ରୂପେ ପୁତ୍ରଙ୍କୁ ବର ଦେଇ ଅନ୍ତର୍ଯ୍ୟାମୀ
ଅଷ୍ଟାଦଶ ଚିହ୍ନ ପ୍ରକାଶିଣ ଚକ୍ରପାଣି ।
ଶ୍ରୀଅଙ୍ଗେ ଭୁଷଣ ହେଲେ ନାନା ଅଳଙ୍କାର
ବୈକୁଣ୍ଠପୁର ମୁହାଁସ ଲାଗେ ଅଗୋଚର ।
ଯାବତ ଦେବତାଏ ଯେ କଲେ ଆସି ସଭା
ଦଶଦିଗପାଳ ଘେନି ମିଳିଲେ ମଘବା ।
ସ୍ଥାପିଲେ ସୁଧର୍ମା ସଭା ଆଣି ତହିଁ ଇନ୍ଦ୍ର
ବିଗଳିତ ଦିଶେ ଶୋଭାଯେହ୍ନେ କୋଟିଚନ୍ଦ୍ର ।
ସ୍ୱର୍ଗର ବିଳାସିନୀଏ ମିଳି କୋଟି କୋଟି
ହସ୍ତେ ବୀଣା ବାଦ୍ୟମାନ ଧରିଣ ବିମୋଷ୍ଟୀ ।
ସପତସ୍ୱରେ ଆଳାପ ଟେକିଣ ତରୁଣୀ
ହରିବୋଲ ନାଦେ ଗୀତ ଗାନ୍ତି ବେଳ ଜାଣି ।
ରତନ ଯୋଗାଡ଼ମାନ ଘେନି ଶଚୀପତି
ନୃସିଂହ ଛାମୁରେ ଆସି ମିଳିଲେ ତଡ଼ତି ।
ମରାଳ ବାହନେ ଧାତା ଆସିଲେ ତତକ୍ଷଣ
ଅଠାଶୀ ସହସ୍ର ଋଷି ଅଛନ୍ତି ସଙ୍ଗେଣ ।
କରନ୍ତି ସୁବେଦୀ ବିପ୍ରେ ମିଳି ବେଦଧ୍ୱନି
ସ୍ତିରୀଏ ବନ୍ଦାନ୍ତି ଉରେ ଅର୍ଘ୍ୟଥାଳୀ ଘେନି ।
ବୃଷଭ ବାହନ ଚଢ଼ି ମିଳିଲେ ଈଶ୍ୱର
ସଙ୍ଗତରେ ରୁଦ୍ରଗଣ ଅଛନ୍ତି ଅପାର ।
ମୂଷିକ ବାହନେ ଆସିଲେ ଯେ ଗଣପତି
ନବଗ୍ରହ ସଙ୍ଗେ ଉପଗତ ବୃହସ୍ପତି ।
ଏ ରୂପେ ଆସିଣ ଦେବେ ଭେଟନ୍ତି ନୃସିଂହ
ନୃସିଂହ ବୋଇଲେ ବ୍ରହ୍ମା କରିବା ଯେ ଯୋଗ

ଏ ଯାଗର ନାମ ଅଟେ ବୈକୁଣ୍ଠ ବାରୁଣୀ
ଅନ୍ତ କାଳକୁ ଏ ଯାଗ ସଂସାରେ କାରେଣୀ ।
ଭାଗ୍ୟବନ୍ତ ଲୋକ ଏକା ଏ ଯାଗ କରିବେ
କରି ନ ପାରିଲେ ପ୍ରାଣୀ ଶୁଣି ତରିଯିବେ ।
ଏ ଯୋଗ ଶୁଣି ମଲେ ନ ଲାଗେ ଯମଦଣ୍ଡ
ଯେତେ ପାପ କରିଥିଲେ ମୋକ୍ଷ ହୁଏ ପିଣ୍ଡ ।
ମୃତାହତପଞ୍ଚକ ଦାନ ଯେ ନପାରେ କରି
ସେ ପାଦେ ଏଥି ଶୁଣିଲେ ଯିବ ନିଶ୍ଚେ ତରି ।
ଶୁଣିଣ ଦେବବ୍ରହ୍ମା ଯେ ଆନନ୍ଦିତ ହେଲେ
ବୋଇଲେ ନୃସିଂହ କେଡ଼େ ଯୋଗ ଆରମ୍ଭିଲେ ।
ସଂସାରଯାକ ତ ମୋକ୍ଷ ହେବେ ଏହା ଶୁଣି
ଭଲା ଯାଗ ଆରମ୍ଭିଲେ ପ୍ରଭୁ ଚକ୍ରପାଣି ।
ଏତେ ବୋଲି ବ୍ରହ୍ମା ଯହିଁ ଯାଗ ଆରମ୍ଭିଲେ
ଲକ୍ଷ୍ମୀଙ୍କି କୋଳେ ଘେନିଣ ନୃସିଂହ ବସିଲେ ।
ସତ୍ୟ ଧର୍ମ ଦୟା ଜ୍ଞାନ ଯେଉଁ ଚାରିପୁତ୍ର
ବାମେ ଦକ୍ଷିଣେ ବସିଲେ ଧରି ଅର୍ଘ୍ୟପାତ୍ର ।
ଚାରିପୁତ୍ରଙ୍କୁ ବସାଇ ପାଶେ ଆଦିମୂଳ
କୁଶହସ୍ତ ହୋଇ ବସିଲେକ ଯାଗଶାଳ ।
ଇନ୍ଦ୍ରଦେବ ଅଳଙ୍କାର ହୋଇଲେ ଭୂଷଣ
ଦିଶନ୍ତି ସୂର୍ଯ୍ୟରୁ ଶତଗୁଣ ବିଚକ୍ଷଣ ।
ସତ୍ୟ ଧର୍ମ ଦୟା ଜ୍ଞାନୀଙ୍କର ଦେହଯାକେ
ବାସବ ଦେବା ରତନ ଖଞ୍ଜିଲେ କୌତୁକେ ।
ଅନେକ ଯେ ଅଳଙ୍କାର ଘେନି ଶଚୀଦେବୀ
ମଣ୍ଡଣି କଲେକ ଆଣି ଲକ୍ଷ୍ମୀପାଦେ ସେବି ।
ଖଞ୍ଜିଲେକ ପାରିଜାତ ପୁଷ୍ପ ପୁଣ ନେଇ
ଲକ୍ଷ୍ମୀ ନୃସିଂହ ଏ ବେନି ଜାଣ ଏକଦେହୀ ।
ଭେଟିଲେ ଆସିଣ ଦେବେ ଦେଇ ରତ୍ନମାଳ
ଭୂଷଣହୋଇ ବସିଲେ ପ୍ରଭୁ ଯାଗଶାଳ ।
ଆଦିତ୍ୟ ମଣି ମୁକୁଟ ଦେଲେକ ଭାସ୍କର
ତିମିରିବିଦାର ମଣି ଦେଲେ ବେଦବର ।
ପୁତ୍ର କୋଳେ ଧରି କୃଷ୍ଣବଲ୍ଲଭ ଯେ ରାଜା
ବିପ୍ର ଗୋସାଇଁଙ୍କ ପାଦେ କରନ୍ତି ଯେ ପୂଜା ।
ସତ୍ୟ ଧର୍ମ ଦୟା ଜ୍ଞାନ ଚାରି ଜାତି ଶିରେ
କରାନ୍ତି ଯେ ଅଭିଷେକ ବ୍ରହ୍ମା ବିଷ୍ଣୁ କରେ ।
ନୃସିଂହ ପ୍ରଭୁ ପୁତ୍ରଙ୍କୁ ଧରି ପୁଣି କୋଳେ
ଦେବଅଳଙ୍କାର ଖଞ୍ଜିଦେଲେ ମାଳେ ମାଳେ
ନାନା ବେଶେ ଅଳଂକୃତ ହେଲେ ପୁତ୍ର ଚାରି
ସେ ପୁତ୍ରଙ୍କ ଅବତାର କହିତ କେ ପାରି ।
ସବୁ ଜୀବଙ୍କ ଉପରେ କଲେ ତାଙ୍କୁ ରାଜା
ଯେତେଜୀବ କରନ୍ତି ସେ ସର୍ବେ ତାଙ୍କୁ ପୂଜା ।

ବ୍ରହ୍ମା ବିଷ୍ଣୁ ବରପ୍ରାୟ ଜାଣ ସର୍ବଲୋକେ
ଦେଖି କୃତାର୍ଥ ହୋଇଲେ ସର୍ବ ବୃନ୍ଦାରକେ ।
ରହିଲେ ବ୍ରହ୍ମାଣ୍ଡଯାକ ବ୍ୟାପି ଚାରିଭାଇ
ବିଜେକଲେ ସବୁ ଦେହେ ଦୟାଧର୍ମ ବହି ।
ବୈକୁଣ୍ଠ ମହାବାରୁଣୀ ଯାଗ ଶୁଣ ଏବେ
ସାବଧାନେ ବସି ବୁଝି କହନ୍ତି ଦଇବେ ।
ଯାଗ ଆରମ୍ଭିଲେ ବଶିଷ୍ଠ ଯେ ମହାଯତି
ଦୁର୍ବାସା ଯେ ଭରଦ୍ୱାଜ ମାର୍କଣ୍ଡ ପୌଲସ୍ତି ।
ସେ ଯାଗରେ ଯାଗନିକ ହେଲେ ବ୍ୟାସଋଷି
ଅଗସ୍ତି କପିଳ ମୁନି ପରାଶର ମିଶି ।
ବ୍ରହ୍ମା ବରଣ ହୋଇଲେ ଭରଦ୍ୱାଜ ଯତି
ଆଚାର୍ଯ୍ୟ ବରଣ ହୋଇ ବସିଲେ ଅଗସ୍ତି ।
ଆସନ ମାଡ଼ି ବସିଲେ ପ୍ରଭୁ ଚକ୍ରପାଣି
ଦଶ ଅବତାର ମୂର୍ତ୍ତି ସ୍ଥାପିଲେକ ଆଣି ।
ଶ୍ରୀମତ୍ସ୍ୟ କୂର୍ମ ବରାହ ନୃସିଂହ ବାମନ
ପର୍ଶୁରାମ ଶ୍ରୀରାମ ଶ୍ରୀକୃଷ୍ଣ ବଳରାମ ।
ବଉଦ୍ଧ କଳକୀ ମିଶି ଦଶ ଅବତାର
ଏମାନ ସ୍ଥାପନ ଆଣି କଲେ ମୁନିବର ।
ବାମେ ବ୍ରହ୍ମା ଏକମୁଖ ଦକ୍ଷିଣ ଯେ ମୁଖେ
ଅଗ୍ରେ ପ୍ରଜାପତି ମୁଖେ ରଖି ବିଷ୍ଣୁ ପାଖେ ।
ପଛରେ ସ୍ଥାପନ କଲେ ଏକମୁଖେ ନେଇ
ବୈକୁଣ୍ଠ ମହାବାରୁରୀ ଯେଉଁ ଯାଗ କହି ।
ବାର ତିଥି ନକ୍ଷତ୍ର ଯେ ସତାଇଶ ଯୋଗ
ନବଗ୍ରହ ଏକାଦଶ କରଣ ଏ ବର୍ଗ ।
ଦ୍ୱାଦଶ ଆଦିତ୍ୟ ସ୍ଥାପି ସମ୍ପୂର୍ଣ୍ଣ ଚନ୍ଦ୍ରମା
ବୈକୁଣ୍ଠ ମହାବାରୁଣୀ ଅଟେ ଯାଗସୀମା ।
ଏଥୁ ଅନ୍ତେ ଯେ ପବନ ଆସିକଲେ ବିଜେ
ଅଣଚାଶ ରୂପଯାକ ଧରି ବିଷ୍ଣୁ କାର୍ଯ୍ୟେ ।
ସେ ପବନ ନାମ ଥୋକେ କହିବା ହେ ପୁଣ
କହନ୍ତି ନାରଦ ଆଗେ ସାବିତ୍ରୀ ରମଣ ।
ପ୍ରାଣ ପବନ ବୋଲିଣ ପ୍ରଥମରେ କହି
ଯାବତ ଜୀବଙ୍କ ହୃଦେ ପ୍ରକାଶିବ ବହି ।
ପ୍ରଚଣ୍ଡ ପବନ ଚଣ୍ଡ ଜଳଦ ପବନ
ଷଡ଼ଚକ୍ର ପବନ ଯେ ଶ୍ରୀଧର ପବନ ।
ଶ୍ରୀଧର୍ମ ପବନ ଆଉ ଶ୍ରୀବ୍ରହ୍ମ ପବନ
ସିହାଣ ପବନ କାଳାନ୍ତକ ଯେ ପବନ ।
ତାରଣ ପବନ ପୁଣି କାରଣ ପବନ
ଶୀତଳ ପବନ ଆଉ ପ୍ରଳୟ ପବନ ।
ମହାଘୋର ପବନ ଯେ ଅଥୟ ପବନ
ମହାଅମାନ ପବନ ଯେ ସ୍ଥିର ପବନ ।
ମହାନିଶ୍ଚଳ ପବନ ପ୍ରାଣ ଯେ ପବନ
ମହାସମ ପବନ ଯେ ଉଦାନ ପବନ ।
ମହାସମାନ ପବନ ଯେ ବ୍ୟାନ ପବନ
ମହାକାତି ପବନ ଯେ ଆଘାତ ପବନ ।
ମହାରଶ୍ମି ପବନ ଯେ ସୁତୀକ୍ଷଣ ପବନ
ମହାବୀର ପବନ ଯେ ସୁନୀର ପବନ ।
ମହାଶାନ୍ତି ଆଉ ମହା ଅଶାନ୍ତି ପବନ
ମହାବ୍ୟାନ ପବନ ଯେ ଖଞ୍ଜାଳ ପବନ ।
ମହାକ୍ରୋଧ ପବନ ଯେ ପ୍ରବୋଧ ପବନ
ମହାଘୋର ପବନ ଯେ ମହୋର୍ମି ପବନ ।
ମହାଧାର୍ମିକ ପବନ ଯେ ସତ୍ୟ ପବନ
ମହାଭକ୍ତ ପବନ ଯେ ଅନୀଳ ପବନ ।
ମହାକାଳ ପୁଣି ମହାବେତାଳ ପବନ
ମହାସୁଢ଼ଳ ପବନ ନିର୍ଜୀବ ପବନ ।
ପରମ ପବନ ଏ ବିଧି ହେ ଅଣଚାଶ
ପ୍ରାକୃତ ବନ୍ଧେ କହିଲେ ପୀତାମ୍ବର ଦାଶ ।
ବୈକୁଣ୍ଠ ମହାବାରୁଣୀ ଯାଗେ ଆସି ମିଳି
ଶ୍ରୀନୃସିଂହଙ୍କ ଛାମୁରେ ଦ୍ୟନ୍ତି କରତାଳି ।
ଛାମୁରେ ଆସି ମିଳିଲେ ପୁଣି ବୃହସ୍ପତି
ଆଦିତ୍ୟ ସୋମ ମଙ୍ଗଳ ବୁଧ ଶୁକ୍ର ଛନ୍ତି ।
ଶନି ରାହୁ କେତୁ ଏ ଯେ ନବଗ୍ରହ
ବୈକୁଣ୍ଠ ବାରୁଣୀସ୍ଥାନେ ହେଲେ ଧରିଦେହ ।
ଦ୍ୱାଦଶ ବିଶ୍ୱଦେବା ଯେ ହେଲେ ପରବେଶ
ଚଉଦମନୁ ସହିତେ ବିହନ୍ତା ପୁରୁଷ ।
ଆବର ଥିଲେ ଯେତେକ ଦୁର୍ଗତି ତାରିଣୀ
ସେମାନଙ୍କ ନାମ କହିଦେବା ଥାଅ ଶୁଣି ।
ବୈକୁଣ୍ଠରେ ମହାବାଣୀ ଯାଗେ ସର୍ବେଆସି
ଅଚିନ୍ତେ ଭେଟ କରିଲେ ସେବି ବ୍ରହ୍ମରାଶି ।
ଶାରଦା ବରାହୀ ସରସ୍ୱତୀ ନାରାୟଣୀ
ବ୍ରାହ୍ମଣୀ ରୁଦ୍ରାଣୀ ପୁରି ଭଦ୍ରା ଠାକୁରାଣୀ ।
ବାସେଳୀ ଯେ ଉଗ୍ରତାରା ତ୍ରିପୁରା ଭୈରବୀ
କାଳିକା ଯେ କାଳରାତ୍ରି ବେତାଳୀ ବୈଷ୍ଣବୀ
ରାମଚଣ୍ଡୀ ଉଗ୍ରଚଣ୍ଡୀ ଦୁର୍ଗା ଯେ ପାର୍ବତୀ
ନରସିଂହଙ୍କୁ ଖଟିଲେ ଯେ ଅଷ୍ଟାଦଶ ମୂର୍ତ୍ତି ।
ମହିଷ ବାହନେ ଆସି ବିଜେ ଧର୍ମରାଜା
ଆଗରେ ଚାଲୁଅଛନ୍ତି ଦୁଇଟି ଭାରିଯା ।
କାଳୀ ଯେ କରାଳୀ ଏହି ନାମ ଦୁଇ ବହି
ନାଶକର ଦେବଙ୍କର ମହାଦେଈ ସେହି ।
ଶରୀର ଯେ ତାମ୍ର ବର୍ଣ୍ଣ ଲୁହାବର୍ଣ୍ଣ ଆଖି
ଷାଠିଏ ପଦ୍ମ ଯେ ବଳ ଛନ୍ତି ସଙ୍ଗେ ରଖି ।

ନୃସିଂହଗଣଙ୍କୁ ସେ ଯେ କରିଛନ୍ତି ଶ୍ରଦ୍ଧା
ପଞ୍ଚଦଶ ଅଗ୍ନି ଘେନି ବିଜେ ସ୍ୱାହା ସ୍ୱଧା ।
ଅନନ୍ତ ବାସୁକୀ ଘେନି ଅଷ୍ଟକୁଳ ନାଗେ
ନାଗବଳଯାକ ଘେନି ଚଳିଗଲେ ବେଗେ ।
ଗଣ୍ଡୁକୀତୀର୍ଥେ ମିଳିଲେ ଆସି ଶାଳଗ୍ରାମ
ପଞ୍ଚାଶକୋଟି ଯେ ଶିଳା ସବୁ ପରଂବ୍ରହ୍ମ ।
ବୈକୁଣ୍ଠ ମହାବାରୁଣୀ ଯାଗସ୍ଥାନେ ଆସି
କୋଟିଏ ତୀର୍ଥ ଜଳଙ୍କ ସଙ୍ଗେଛନ୍ତି ମିଶି ।
ସୁବର୍ଣ୍ଣର ଚାଙ୍ଗୁଡ଼ାରେ ଶ୍ରୀଫଳକୁ ଥୋଇ
ତଣ୍ଡୁଳ ଦୁର୍ବା ହଳଦୀ ପୁଣି ବୋଳିଦେଇ ।
ରଖିଲେ ଶ୍ରୀଶାଳଗ୍ରାମ ଯାକ ତହିଁ ପାଶ
ବିଧାତାଏ ସର୍ଜି ଏହା ଅଛନ୍ତି ବିଶେଷ ।
ବ୍ରହ୍ମା ଅବତାରେ ଶିଳା ଲକ୍ଷେ ଶାଳଗ୍ରାମ
ରୁଦ୍ର ଅବତାର ମୂର୍ତ୍ତି କୋଟି ପରଂବ୍ରହ୍ମ ।
ବୈକୁଣ୍ଠ ମହାବାରୁଣୀ ଯୋଗସ୍ଥାନେ ଆସି
ଘେନନ୍ତି ପୂଜା ସେ ରତ୍ନ ଖଟୁଲିରେ ବସି ।
ବ୍ରାହ୍ମଣମାନେ ପୂଜନ୍ତି ବସି ଶାଳଗ୍ରାମେ
ଅଗ୍ନିକୁ ପୂଜନ୍ତି ଘୃତ ଦେଇ ବରି ହୋମେ ।
ପଞ୍ଚଦଶ ଅଗ୍ନିଯାକୁ ପଞ୍ଚଦଶ ଲକ୍ଷେ
ପଞ୍ଚଦଶ ଲକ୍ଷେ ମନ୍ତ୍ରେ ପକାନ୍ତି ପ୍ରତ୍ୟକ୍ଷେ ।
ମନ୍ତ୍ର ପଢ଼ିଣ ବୋଲନ୍ତି ସ୍ୱାହା ଯେତେବେଳେ
ସବୁଦେବତା ଭୁଞ୍ଜନ୍ତି ଘୃତ ତତକାଳେ ।
ସ୍ୱାହା ବେନି ଅକ୍ଷର ଏ ସ୍ୱୟଂ ଆତ୍ମାରାମ
ବସନ୍ତି ସକଳ ଘଟେ ସେ ଜୀବ ପରମ ।
ଜୀବ ଭୁଞ୍ଜେ ସବୁ ପରମ ଯେ ହୁଳା କରି
ଏ କଥା ପ୍ରାଣୀ ହୃଦେ ନ ପାରେ କେହୁ ଧରି ।
ମନ୍ତ୍ର ପଢି ଯେ ସ୍ୱାହା ପଢ଼େ ନଇବେଦ୍ୟ
ସେହି ଦ୍ରବ୍ୟ ଦେବତାର ଅଟଇ ଅମେଧ ।
ଯେ ଯାଗରେ ନାନା ବାଦ୍ୟ ବାଜଇ ଅନେକ
ଚଉଦପୁର ଯାକରେ ପଡ଼ଇ ଚମକ ।
ପୁଷ୍କର ଦେବତାକୁ ଚିନ୍ତନ୍ତେ ବେଦବର
କମ୍ପିଲାରୁ ଆସନ ଯେ ମିଳିଲେ ତତ୍ପର ।
ଯାବତ ତୀର୍ଥ ଅଛନ୍ତି ତାଙ୍କ ସଙ୍ଗେ ଆସି
ଗଙ୍ଗା ଗୟା ଗୋଦାବରୀ ଘେନି ବାରାଣସୀ
ବ୍ରହ୍ମବେଣୀ କୃଷ୍ଣବେଣୀ ରୁଦ୍ରବେଣୀ ଯାଏ
ବୈତରଣୀ ରାମବେଣୀ ସେ ଯାଗେ ବିଜୟେ ।
ସୁମତୀ ବେଦମତୀ ପ୍ରାଚୀ ପାପନାଶିନୀ
ଭାରତୀ ନର୍ମଦା ସରସ୍ୱତୀ ମନ୍ଦାକିନୀ ।
ଫଲଗୁ ସରଯୁ ଆଶାବରୀ ସତ୍ୟବତୀ
ଏ ବିଧି କୋଟିଏ ତୀର୍ଥ ବିଜେ ଯୋଗ କତି ।

ଅଛନ୍ତି ପୁଷ୍କର ରାଜା ତୁଲେ କୋଟି ଅଶ୍ୱ
ଆବର ଯେ ନାନାବାଦ୍ୟ ବାଜେ ବିଜିଘୋଷ
ଏଥି ଉତ୍ତାରେ ମିଳିଲେ ଆସି ସରସ୍ୱତୀ
ହୃଦୟରେ ଭଜିକରି ଭେଟିଲେ ଶ୍ରୀପତି ।
ହସ୍ତରେ ଯେ ବୀଣାଦଣ୍ଡ ଧରି ମାହେଶ୍ୱରୀ
ବସନ୍ତ ରାଗରେ ତାନ ଟେକି ଉଚ୍ଚକରି ।
ନୃସିଂହ ପ୍ରଭୁଙ୍କ ପାଶେ ହେଲେ ପରବେଶ
ସ୍ୱାମୀକି ଦେଖିଣ ସତୀ ହୁନ୍ତି ହସ ହସ ।
ବୈଶାଖ ଶୁକ୍ଲଦଶମୀ ତିଥି ଗୁରୁବାର
ଉତ୍ତରାଫାଲଗୁନୀ ନକ୍ଷତ୍ର ଯେ ମିତ୍ର ତାର ।
ତୈତିଳ ନାମେ କରଣ ସେ ଦିନ ଯେ ପୁଣି
ଶୁଭ ନାମ ଯୋଗ ଦିବାରାତ୍ରି ଭୋଗ ଜାଣି ।
ବୈକୁଣ୍ଠ ବାରୁଣୀ ଯାଗ ହେଲା ସମାପତ
ଶୁଣ ହେ ନାରଦ ଋଷି କହନ୍ତି ବିଧାତ ।
ସଂସାର ଜୀବମାନଙ୍କୁ ତରିବା ନିମନ୍ତେ
ଏ ଯୋଗ ନୃସିଂହ ସ୍ୱାମୀ କଲେ ଏ ଜଗତେ ।
କେବା ମୃତାହପଞ୍ଚକ ନ ପାରିବ ଦେଇ
ବୈତରଣୀ ଦାନ ଅବା ନଥିବ କରାଇ ।
କେବଣ ପ୍ରାଣୀ ଅବିଦ୍ୟା ଅବା ଥିବ କରି
ମୃତଶଯ୍ୟା ନ କରିବ ଥିଲେ ଅବା ମରି ।
ନାନାଦି ପାପମାନ କେ ଅବା କରିଥିବ
ବୈକୁଣ୍ଠବାରୁଣୀ ଯାତ୍ରା ଶୁଣି ତରିଯିବ ।
ସବୁ ଜୀବଙ୍କ ମୃତ୍ୟୁକୁ ଏ ଯାଗ ବାରୁଣୀ
ଗଙ୍ଗାସ୍ନାନ ପ୍ରାୟ ପାପୁ ତରିଯିବେ ପ୍ରାଣୀ ।
ତାହାଙ୍କୁ ଯେ ଯମ ଦଣ୍ଡ କେବେ ନ ପାରିବ
ଶ୍ରୀନୃସିଂହ ଆଜ୍ଞା ଏହି ଅଟେ ଜାଣ ଧ୍ରୁବ ।
ଏଥୁ ଅନନ୍ତରେ ବାଣୀ ଶୁଣ ହେ ନାରଦ
ବୈକୁଣ୍ଠ ଯିବାକୁ ସଜ ହୋଇଲେ ଗୋବିନ୍ଦ ।
ଶଂଖ ଚକ୍ର ଗଦା ପଦ୍ମ ଚତୁର୍ଭୁଜେ ଧରି
ଗରୁଡ କନ୍ଧେ ନୃସିଂହ ପ୍ରଭୁ ବିଜେ କରି ।
ବଦରିକା ଦେଶେ ରାଜା ସ୍ଥାପିଲେକ ଆଣି
ନର ନାରାୟଣ ରୂପ ଧରି ଚକ୍ରପାଣି ।
ଆପେ ନୃସିଂହ ବୋଇଲେ ନରନାରାୟଣ
ବଦ୍ରିକାରେ ରାଜା ହୋଇ ବସିଲେ ଆପଣ ।
ବ୍ରହ୍ମାହାତେ ଅଭିଷେକ କରାଇ ନୃସିଂହ
ଦେବରାଜା ପଦେ ଶାଢ଼ୀ ବାନ୍ଧି ବିଷ୍ଣୁ ଅଙ୍ଗ ।
ଅମୃତପାନେ ମଣୋହି ଖଞ୍ଜା ତହିଁକରି
ବୋଇଲେ ଥାନ୍ତୁ ଏ ଚାରିଯୁଗେ ଦେହଧରି ।
ଚାରିଧାମରେ ଏ ଧାମଗୋଟି ଲେଖାହୋଇ
ସର୍ବଦା ବିରାଜି ଥାଉ ବିଷ୍ଣୁ ପୂଜା ପାଇ ।

ଋଷିମାନେ ଆସି ପୂଜା କରିବେ ତୁମ୍ଭଙ୍କୁ
ଦେବେ ପୁଷ୍ପ ବୃଷ୍ଟି କରୁଥିବେ ଆପଣଙ୍କୁ ।
ସବୁଦିନକୁ ଏ ରୂପେ ଖଞ୍ଜା ଜାଣ ହେବ
ବ୍ରହ୍ମାପଳୟ ଯାଏ ଏ ଅବତାର ଥିବ ।
ନର ନାରାୟଣ ଭଜିଲେକ ଜପ କରି
ଏ ସଂସାରୁ ପ୍ରାଣୀମାନେ ଯାଉଥିବେ ତରି ।
ଏ ରୂପେ ସେ ନର ନାରାୟଣ ଦେବତାଙ୍କୁ
ଆସନରେ ବସାଇଲେ ଉତ୍ସବରେ ତାଙ୍କୁ ।
ଏଥୁ ଅନନ୍ତରେ ଶ୍ରୀନୃସିଂହ ମହାପ୍ରଭୁ
ଶେଷଦେବଙ୍କୁ କହିଲେ ଠାରିଜ୍ଞାନ ସବୁ ।
ବୋଇଲେ ଆପଣ ଏବେ ନିଜରୂପ ଧର
ସହସ୍ର ଫଣାରେ ବେନି ସସ୍ର ଚକ୍ଷୁ ଧର ।
ବଇକୁଣ୍ଠ ରୂପଧରି ବୈକୁଣ୍ଠକୁ ଯାଅ
ଆସନ ସିଂହାସନ ମୋ ନିର୍ଭାକରୁ ଥାଅ ।
ଶୁଣିଣ ଶେଷଦେବ ଯେ ବିଚାରିଲେ ମନେ
ବୋଇଲେ ଏ ଲୀଳା ଶେଷହେଲା ଏତେ ଦିନେ ।
ନୃସିଂହ ଅବତାର ସେ ହେଲା ଆସି ଭୋଗ
ଏଣୁ କହି ଆଜ୍ଞା ମୋତେ ଦେଲେ ନରସିଂହ
ଏତେ ପାଞ୍ଚି ଅନନ୍ତ ଯେ ଚିନ୍ତି ବ୍ରହ୍ମରୂପ
ସହସ୍ରକ ଫଣାକାଢ଼ି ଦେହେ କଲେ ଗୋପ୍ୟ
ଦେଖି ବ୍ରହ୍ମା ରୁଦ୍ର ଆଦି ସର୍ବେ କଲେ ସ୍ତୁତି
ଫଣାକେ ଯେ ବେନିଚକ୍ଷୁ ଦିଶେ ଦିବ୍ୟଜ୍ୟୋତି
ସ୍ୱର୍ଗକୁ ଯେ ଶତେଗୁଣ ପ୍ରକାଶିଲା କାୟା
ଚାହିଁଣ ବ୍ରହ୍ମା ରୁଦ୍ର ଯେ ହୁଡ଼ି ଅଙ୍ଗ ମାୟା ।
ମଣ୍ଡଳାକାରେ ଅଠାଶୀ ସସ୍ର ଋଷି ରହି
ହରିବୋଲ ଶ୍ରୀନୃସିଂହ ନାମେ ତାଳ ବାଇ ।
ହରି ତ ନୃସିଂହ ନୃସିଂହ ତ ଅଟେ ହରି
ତେଣୁ ହରିବୋଲ ସବୁଙ୍କରି ମୁଖ ପୂରି ।
ଲକ୍ଷେ ବୀର କାହାଳୀ ଯେ ବାଜେ ଲକ୍ଷେଶଂଖ
ଚତୁର୍ବେଦକୁ ଗାଇଲେ ଉଚ୍ଚେ ଚତୁର୍ମୁଖ ।
କୁସୁମ ବୃଷ୍ଟି କରନ୍ତି ଦେବେ ଶୂନ୍ୟେ ଥାଇ
ନାଚନ୍ତି ଅପସରିଏ ତହିଁ ଗୀତ ଗାଇ ।
ଲକ୍ଷେ ଦେବକନ୍ୟା ଆସି ହୁଳହୁଳି ଦ୍ୟନ୍ତି
ମଙ୍ଗଳ ଗୁଜ୍ଜରୀ ନାଦେ ଗୀତ ଗାଉଥାନ୍ତି ।
ଏଥୁ ଅନନ୍ତରେ ନୃସିଂହଙ୍କ ସାନଭାଇ
କୋମଳ ବାକ୍ୟେ ପୃଥ୍ୱୀକି ଆଜ୍ଞାଦେଇ କହି ।
ବୋଇଲେକ ଆଗୋ ମାତ ବାଟ ମୋତେ ଦିଅ
ତା ଆଜ୍ଞା ପ୍ରମାଣେ ଯିବି ଧରି ନିଜ ଦେହ ।
ତୋ ଆଜ୍ଞା ଫିଟିଲେ ଆମ୍ଭେ ବୈକୁଣ୍ଠକୁ ଯିବୁ
ପଛେ ବିଜେ କରିବେଟି ଶ୍ରୀନୃସିଂହ ପ୍ରଭୁ ।

ଶୁଣି ବସୁମତୀ ଅନନ୍ତର ପାଦେ ନମି
ବୋଇଲେ ପାଦପଦ୍ମକୁ ଚାହିଁବେଗେ ସ୍ୱାମୀ ।
ସେ ପାଦପଦ୍ମର ତଳେ ବେଗେ ଚଳିଯାଅ
ବୈକୁଣ୍ଠକୁ ବୋଲି ବାଟ ଫିଟିଛି ନିର୍ଣ୍ଣୟ ।
ଏତେ ବୋଲି ପୃଥ୍ୱୀବାଟ ଦେଖାଇଣ ଦେଲେ
ଅନନ୍ତଙ୍କ ସଙ୍ଗେ ଘେନି କ୍ଷୀରାବଧିକି ଗଲେ ।
ବୈକୁଣ୍ଠ ନଗ୍ରେ ଛାଡ଼ିଣ ଆସିଲେ ବାହୁଡ଼ି
ଜଣାନ୍ତି ନୃସିଂହ ପାଶେ ମିଳି କରଯୋଡ଼ି ।
ଶୁଣିଣ ନୃସିଂହ ପ୍ରଭୁ ଆନନ୍ଦିତ ହେଲେ
ଏଥୁଅନ୍ତରେ ନାରଦ ଋଷି ଶୁଣ ଭଲେ ।
ଦଶମୀ ରାତ୍ର ପାହିଣ ଏକାଦଶୀ ହୋନ୍ତେ
ବୈକୁଣ୍ଠ ଯିବାକୁ ସଜ ହେଲେ ଲକ୍ଷ୍ମୀକାନ୍ତେ ।
ବଦରିକା ଆଶ୍ରମରେ ଥିଲେ ଯେତେ ଜନେ
ବୈକୁଣ୍ଠ ଯିବାକୁ ଇଚ୍ଛାକଲେ ଯେଝାମନେ ।
କର୍ଣ୍ଣାଟେଶ ରାଜା ରାଜ୍ୟ ପୁତ୍ରକୁ ଯେ ଦେଇ
ନୃସିଂହଙ୍କ ସଙ୍ଗେ ସଜ ହେଲେ ଯିବାପାଇଁ ।
ଆବର ତହିଁ ଯେତେକ ଜୀବଜନ୍ତୁ ଥିଲେ
ପ୍ରଭୁଙ୍କ ସଙ୍ଗେ ଯିବାକୁ ସର୍ବେ ସଜହେଲେ ।
ମୁଷା ମଶା ମାଛି ଜନ୍ଦା ପିମ୍ପୁଡ଼ିର ଯାଏ
ସମସ୍ତେ ଯିବାକୁ ସଜ ହେଲେ ଯେଝାଠାଏ ।
ଆବର ପକ୍ଷୀ ଜନ୍ତୁଏ ଥିଲେ ଯେତେ ତହିଁ
ସର୍ବେ ସଜହେଲେ ବୈକୁଣ୍ଠକୁ ଯିବାପାଇଁ ।
ସ୍ଥାବର ଜଙ୍ଗମ କୀଟ ପତଙ୍ଗ ଯେ ତୃଣ
ସମସ୍ତେ ସଜ ହୋଇଲେ ନୃସିଂହ ସଙ୍ଗେଣ ।
ଆବର ହେ ଚଉଷଠି ସହସ୍ର ନାୟିକା
ବସିଲେ ହାନ୍ଦୋଳାପରେ ଛାଡ଼ିଣ ବଦ୍ରିକା ।
କୃଷ୍ଣବଲ୍ଲଭ ରାଜନ ଭଗବତୀ ରାଣୀ
ନୃସିଂହ ଛାମୁରେ ଆସି ପ୍ରବେଶିଲେ ପୁଣି ।
ସୁଜାଣ ମନ୍ତ୍ରୀ ବିଚିତ୍ର ନାମେ ମହାରଥା
ନୃସିଂହ ଗହଳେ ଚାଲେ ଲୋଡ଼ିବିଷ୍ଣୁ ପଣ୍ଡା ।
ଅଷ୍ଟସଖୀ ଘେନି ହଂସିନୀ ଯେ ମୁଦୁସୁଲୀ
ଶ୍ରୀମହାଲକ୍ଷ୍ମୀ ଗହଣେ ଅଛନ୍ତି ଏ ଚାଲି ।
ଶେଷଦେବଙ୍କର ପ୍ରିୟା ଯେଉଁ ଇଳା ନାରୀ
ଲକ୍ଷ୍ମୀଙ୍କ ସଙ୍ଗେ ଅଛନ୍ତି ସେହି ବିଜେକରି ।
ବୈକୁଣ୍ଠର ଗମନକୁ ସର୍ବେ ହେଲେ ସଜ
ମହାବାରୁଣୀ ଯଜ୍ଞର ମହିମା ହେ ବୁଝ ।
ମୃତ୍ୟୁ ସୋହିତିକି ଅଟେ ଏ ବାରୁଣୀ ଯୋଗ
ତହିଁକି ଅମୃତନିଧି ଅଟନ୍ତି ନୃସିଂହ ।
ଏକାଦଶୀରେ ଗରୁଡ଼ ପୃଷ୍ଠେ ବିଜେକରି
ଉତ୍ତରକୁ ମୁଖକରି ଗଲେ ହିମଗିରି ।

ଯେ ଯାହାର ଆସନରେ ସର୍ବେଛନ୍ତି ବସି
ବ୍ରହ୍ମା ରୁଦ୍ର ଇନ୍ଦ୍ର ଆଦି ସକଳ ଦେବର୍ଷି ।
ସୁବର୍ଣ୍ଣର ଶଂଖ ତହିଁ ବାଜେ ତିନିଗୋଟି
ଚୌଷଠି ସହସ୍ର ନାରୀ ପାଦେ ଛନ୍ତି ଖଟି ।
ଧୀର ଧୀର ହୋଇଣ ଯେ ଚାଲେ ପକ୍ଷୀରାଜ
ଉତ୍ତର ମୁଖରେ ଚଳିଯାନ୍ତି ଦେବରାଜ ।
ବଦରିକା ଆଶ୍ରମରେ ଥିଲେ ଯେତେ ଜନ
ନୃସିଂହ ଗହଣେ ମିଶି କରନ୍ତି ଗମନ ।
ବଦ୍ରିକା ନାରାୟଣ ଶ୍ରୀପଦ୍ମପାଦେ ନମି
ଉତ୍ତରମୁଖ ହୋଇଣ ସର୍ବେଯାନ୍ତି ଗମି ।
ଜୟ ଜୟ ଶବଦ ଯେ ଶୁଭେ ଚଉପାଶ
ଦେବତାଏ ଶୁଣି ତାହା ହୋଇଲେ ହରଷ ।
ଆନନ୍ଦେ କରନ୍ତି ପୁଷ୍ପବୃଷ୍ଟି ଦେବଲୋକେ
ତାହା ଦେଖିଣ ସନ୍ତୋଷ ହୁନ୍ତି ବୃନ୍ଦାରକେ ।
ଅମୃତ ନାମେ ମେଘ ଯେ କରେ ସୁଧା ବୃଷ୍ଟି
ମେରୁ ପର୍ବତରେ ଚଢିଗଲେ ସର୍ବେ ଉଠି ।
ପ୍ରଭୁଙ୍କ ଗହଣେ ଗଲେ ଯେଉଁ ଲୋକବର୍ଗ
ବସିଲେ ଦେବତା ରୂପ ଧରି ଯାଇ ସ୍ୱର୍ଗ ।
ସମସ୍ତ ମୋକ୍ଷ ହୋଇଣ ପାଇ ଦେବଦେହୀ
କହନ୍ତି ଯେ ନାରଦଙ୍କୁ ସାବିତ୍ରୀର ସାଇଁ ।
ଏଥୁ ଅନନ୍ତରେ ପୁଣି ଶ୍ରୀନୃସିଂହ ସ୍ୱାମୀ
ପିତାକୃଷ୍ଣବଲ୍ଲଭଙ୍କୁ ଚାହିଁ ଅନ୍ତର୍ଯ୍ୟାମୀ ।
ନୃସିଂହ ଚାହାଁନ୍ତେ ବଦରିକା ଦେଶ ରାଜା
କଶ୍ୟପ ଅଙ୍ଗ ବହିଣ ଦେହକଲେ ତେଜ୍ୟା ।
ସେ କୃଷ୍ଣବଲ୍ଲଭ ସେହୁ ପ୍ରତ୍ୟକ୍ଷେ କଶ୍ୟପ
ଦେବତାଠାରୁ ଜନମି ଧରନ୍ତେ ସେ ରୂପ ।
ଅଦିତି ଅଙ୍ଗେ ଯାଇଣ ମାତା ଭଗବତୀ
ଲୀନ ହୋଇ ଗୋପ୍ୟ କଲେ ଶରୀର ଆକୃତି
ଯେହୁ ଭଗବତୀ ସେହୁ ଅଦିତି ଯେ ଜାଣ
ଇଳା ଠାକୁରାଣୀ କଥା କହିବାକ ଶୁଣ ।
ମହାଲକ୍ଷ୍ମୀ ଭଗ୍ନୀ ଅଟନ୍ତି ଯେ ଏକମାତ୍ର
ଏକଥା ଭିନ୍ନ ବୋଲି ନ ପାରେ କହିଶାସ୍ତ୍ର ।
ମହାଲକ୍ଷ୍ମୀ ଅଙ୍ଗରେ ସେ ଗଲେ ଲୀନ ହୋଇ
ବୁଝିଲେ ଏକବ୍ରହ୍ମା ଅନେକ ରୂପ ହୋଇ ।
କର୍ଣ୍ଣାଟେଶ୍ୱର ରାଜା ଶ୍ରୀ ସୂର୍ଯ୍ୟବଂଶୀ ସିନା
ସୂର୍ଯ୍ୟରେ ସେ ହେଲା ଲୀନ ବ୍ରହ୍ମହୋଇ ଚିନା
ସୁଜାଣ ମହାମନ୍ତ୍ରୀ ବିଚିତ୍ର ମହାରଥ
ରହିଲେକ ଦେବଦେହେ ସ୍ୱର୍ଗେ ହୋଇମାଥ
ଏ ସୁମନ୍ତ୍ର ମନ୍ତ୍ରୀ ପୁଣି ତ୍ରେତୟା ଯୁଗରେ
ଜନ୍ମିବେ ସୁମନ୍ତ୍ର ମନ୍ତ୍ରୀ ହୋଇ ଅଯୋଧ୍ୟାରେ ।

ଆବର ଯେ ଜନ ନୃସିଂହଙ୍କ ସଙ୍ଗେ ଗଲେ
ଦେବତା ରୂପ ହୋଇଣ ସ୍ୱର୍ଗରେ ରହିଲେ ।
ଏଥୁ ଅନନ୍ତରେ ନୃସିଂହଙ୍କ କଥା ଶୁଣ
ଆଲଟ ପକାନ୍ତି ଶଚୀ ଇନ୍ଦ୍ର ସଙ୍ଗତେଣ ।
ଅଠାଶୀ ସହସ୍ର ଋଷି ଧରି ଦଣ୍ଡଛତ୍ର
ଶ୍ରୀନୃସିଂହ ଶିରେ ଟେକିଛନ୍ତି ଅହୋରାତ୍ର ।
ନାରଦ ବଜାନ୍ତି ବ୍ରହ୍ମା ବୀଣା ଅନୁକ୍ଷଣ
ଗରୁଡ଼ କନ୍ଧରେ ବସିଯାନ୍ତି ନାରାୟଣ ।
ଆବର ବ୍ରହ୍ମା ରୁଦ୍ରାଦି ଦଶଦିଗପାଳେ
ଆଗେ ଆଗେ ଚାଲିଛନ୍ତି ବାଟ ଦେଖା ଛଳେ
କ୍ଷୀର ସମୁଦ୍ରର ତଟେ ହୋଇଲେ ପ୍ରବେଶ
ଶ୍ରୀନୃସିଂହ ଶରଣ ମୁଁ ପୀତାମ୍ବର ଦାଶ ।
ସୁଧର୍ମା ସଭାକୁ ନେଇ ବାସବ ଦେବତା
କ୍ଷୀରସିନ୍ଧୁ ତଟରେ ଯେ ରଚି ମହଜ୍ଞାତା ।
ଗରୁଡ଼ କନ୍ଧେ ବସିଣ ସଭାରେ ଯେ ବିଜେ
କହନ୍ତି ନାୟିକାଗଣ ଚାହିଁ ଦେବରାଜେ ।
ବୋଇଲେ ଗୋସଖି ଏବେ ନିତ୍ୟ ସ୍ଥଳେ ଯାଅ
ତୁମ୍ଭେ ଗଲାରୁ ଆମ୍ଭେ ଯେ ଯିବୁ ଧରି ଦେହ ।
ହଂସିଂନୀ ମୁଦୁସୁଲୀ ଯେ ଅଷ୍ଟସଖୀ ଆଦି
କର ନିତ୍ୟସ୍ଥଳେ ମୋର ରାସକୁ ସମ୍ପାଦି ।
ନାୟିକାଗଣ ନୃସିଂହ ମୁଖ ଆଜ୍ଞା ପାଇ
ନିତ୍ୟସ୍ଥଳ ମଣ୍ଡଳିରେ ପ୍ରବେଶିଲେ ଯାଇ ।
ନିତ୍ୟରାସେ ଯାଇ ପୁଣି ହେଲେ ସର୍ବେ ମେଳ
ସେ ସ୍ତିରୀ ମଧ୍ୟେ ପୁରୁଷ ଏକା ଆଦିମୂଳ ।
ଏଥୁ ଅନନ୍ତରେ ବାଣୀ ଶୁଣ ଶାସ୍ତ୍ରମାର୍ଗ
ଗରୁଡଙ୍କୁ ଚାହିଁ ସ୍ତୁତି କରନ୍ତି ନୃସିଂହ ।
ବୋଇଲେ ତୋ ପରାନାହିଁ ସଂସାରେ କେ ଭକ୍ତ
ମୋତେ ଚିହ୍ନି ତୁହି ଏକା ପାରୁ ଏ ଜଗତ ।
ବ୍ରହ୍ମାଣ୍ଡଯାକେ ଯେତେକ ମୋ ଭକ୍ତ ଅଛନ୍ତି
ତୋହ ପରି କେହି ମୋତେ ବହି ନ ପାରନ୍ତି ।
ତୋର ପୃଷ୍ଠେ ବସି ମୁଁ ବ୍ରହ୍ମାକୁ ପାରେ ଜିଣି
ଗରୁଡାସନେ ହରିଙ୍କି ଭଜନ୍ତି ଯେ ପ୍ରାଣୀ ।
ପୃଥିବୀରେ ଅବତାର ହେବି ଯେତେବେଳେ
ତୁ ମୋର ଛାମୁରେ ଉଭା ହୋଇଥିବୁ ତଳେ
ତୋତେ ଦର୍ଶନ କରିବେ ଆଗ ସର୍ବ ପ୍ରାଣୀ
ପଛେ ଦର୍ଶନ କରିବେ ମୋତେ ଯାଇ ପୁଣି ।
ଆମ୍ଭେ ଏବେ ଯାଇଁ କ୍ଷୀରସାଗରେ ରହିବୁ
ରମ୍ୟକ ଦ୍ୱୀପେ ଥାଇ ତୁ ମୋତେ ଚାହିଁଥିବୁ ।
ମୋର ଛାମୁକୁ ବୋଲି ପଡ଼ିବ ତୋର ଦୃଷ୍ଟି ।
ବୁଝିଲେ ପାଞ୍ଚ କୋଟି ବସୁଧା ମୋ ସୃଷ୍ଟି ।

ମୋହ ତୋହ ମଧ୍ୟେ ଯେତେ ମଣୋହି ଟି ହେବ
ସେ ମହାନିର୍ମାଲ୍ୟ ତା ଭୁଞ୍ଜିବେ ସର୍ବଦେବ ।
ତୋହର ମୋହର ଦୃଷ୍ଟି ନ ପଡ଼ିବ ଯହିଁ
ସେହି ଦ୍ରବ୍ୟଯାକ ମୋତେ ଅମେଧ ଅଟଇ ।
ତୋର ମୋର ମଧ୍ୟେ ଲାଗି ହେଲେ ଯାଇ ଭୋଗ
ଶ୍ରୀମହାପ୍ରସାଦ ହୋଇବ ସେ ତିନି ସ୍ୱର୍ଗ ।
ରମ୍ୟକ ଦ୍ୱୀପରୁ କ୍ଷୀର ବଇକୁଣ୍ଠ ଯାଏ
ତୋ ନେତ୍ର ମୋ ନେତ୍ର ଲାଗିଥିବ ଏକପାଏ ।
ଏତେ କହି ନୃସିଂହ ଗରୁଡ଼ ମନ ତୋଷି
ରମକ୍ୟ ଦ୍ୱୀପରେ ଥାଅ ବୋଲି ଦେଲେ ପେଷି
ଶ୍ରୀପଦ୍ମପାଦେ ନମିଣ ଗଲେ ଖଗେଶ୍ୱର
ଶୁଣ ହେ ନାରଦ କହନ୍ତି ଯେ ବେଦବର ।
ଏଥୁ ଅନନ୍ତରେ ଶ୍ରୀକମଳାଦେବୀ ସ୍ୱାମୀ
ବୈକୁଣ୍ଠ ଯିବାକୁ ସଜହେଲେ ଅନ୍ତର୍ଯ୍ୟାମୀ ।
ଦୁର୍ଜ୍ଜୟ ଶୂନ୍ୟ ଦେହକୁ ଧଇଲେ ନୃସିଂହ
ପଞ୍ଚାଶକୋଟି ପୃଥିବୀ ପୂରି ଦିଶେ ଅଙ୍ଗ ।
ଦେହଯାକ କର୍ଣ୍ଣ ଦେହଯାକ ସବୁ କୁକ୍ଷି
ଦେହଯାକ ନାସା ଦେହଯାକ ପୂର୍ଣ୍ଣ ଆଖି ।
ଦେହଯାକ ମଥା ଦେହଯାକ ଅଛି ନାମ
ଦେହଯାକ ଆତ୍ମା ଦେହଯାକ ପୂର୍ଣ୍ଣ ବ୍ରହ୍ମ ।
ଅଲୌକିକ ବ୍ରହ୍ମରୂପ ଦେଖି ଦେବତାଏ
ସମସ୍ତେ ଯୋଡ଼ିଣ କର କରନ୍ତି ବିନୟେ ।
ବୋଲନ୍ତି ଶୁଣିମା ହେଉ ପ୍ରଭୁ ପଦ୍ମଆଖି
ଏ ରୂପେ ତୁମ୍ଭର ଯେ ନ ଥିଲୁ କେବେ ଦେଖି ।
ପୁରୁଷ ଉତ୍ତମ ତୁମ୍ଭେ ପ୍ରାଣୀଙ୍କ ସୁଗତି
ନମୋ ନମୋ ପରଂବ୍ରହ୍ମ ସର୍ବଲୋକ ପତି ।
ଏ ପୃଥ୍ୱୀଯାକରେ ଯେତେ ଲୋକଛନ୍ତି ରହି
ତୁମ୍ଭଙ୍କୁ ନ ଭଜିବା ଲୋକର ଗତି ନାହିଁ ।
ଏହି ତବ ପଦ୍ମପାଦୁ ସେ ସୁଗନ୍ଧ ବାସେ
ଆନନ୍ଦମନେ ଯେ ଘେନେ ତା ନିଶି ଦିବସେ
ସେ ଲୋକଙ୍କୁ ଏ ସଂସାରେ ବୋଲି ଜ୍ଞାନବାନ
ଇହଲୋକେ ଗତି ତାଙ୍କ ପରଲୋକେ ଧନ୍ୟ
ତୁମ୍ଭଙ୍କୁ ଚିହ୍ନି ନ ଭଜି ପତ୍ନୀଠାରେ ରସେ
ପତ୍ନୀପୁତ୍ର ବେଠିଆ ସେ ଅଟେ ଗୃହବାସେ ।
ଗୃହ୍ୟମବାନ୍ଧେ ପଡ଼ି ଯେ ଲୋଡ଼େ ନାନାସୁଖ
ପଦାର୍ଥେ ମୋହ ହୋଇ ନ ଭଜେ ପଦ୍ମମୁଖ ।
ପରକୁ ସେବାକରେ କେ ଅବା କରେ କୃଷି
ରମଇ ବେଶ୍ୟାକୁ କେବା ନଟଦ୍ୟୁତେ ରସି ।
ବିଷୟାରେ ପଡ଼ି କେହି ଭ୍ରମେ ଅନୁକ୍ଷଣ
ତାହାର ଜୀବନ ଗୋଟି ଜାଣ ଅକାରଣ ।

ଜନ୍ମକୁ ବ୍ୟର୍ଥ କରିଣ ମରନ୍ତି ସେ ପ୍ରାଣୀ
ଫଳକୁ ମୂଳ କରିଣ କର୍ମେ ହୋଏ ଶ୍ରମି ।
ତୁମ୍ଭଙ୍କୁ ସର୍ବ ଘଟେ ନ ବୋଲେ ଯେହୁ ହରି
ତାହାକୁ ସଂସାରେ ଜାଣ ମୂର୍ଖେ ଲେଖା କରି
ତୁମ୍ଭଙ୍କୁ ନ ଚିହ୍ନି ଯେହୁ ନିତ୍ୟ ଜପ କରେ
ସେ ଜପ ଯାକଟି ଶ୍ରମ ଅଟଇ ସଂସାରେ ।
ଜପୁଅଛି ଆତ୍ମା ରୂପେ ସର୍ବଘଟେ ଥାଇ
ସେ ଜପ ଚିହ୍ନି ଜପିଲେ ତୁମ୍ଭଙ୍କୁ ସେ ପାଇ ।
ସବୁ ଜୀବର ହୃଦରେ ଆତ୍ମାରୂପେ ବସ
ଜୀବ ହୃଦେ ବସି ଜପୁଅଛ ଯେତେ ମନ୍ତ୍ର
କାହାକୁତ ନାହିଁ ଜଣା ତୁମ୍ଭ ଜପସୂତ୍ର ।
ଏକୋଇଶ ସହସ୍ର ଛଅଶ ଅହୋରାତ୍ରେ
କରୁଛ ଏ ରୂପେ ଗଣି ଜପ ସର୍ବ ଗାତ୍ରେ ।
ଅବ୍ୟକତ ବ୍ରହ୍ମ ତୁମ୍ଭେ ହୁଅ ଜୀବରୂପୀ
ଜପୁଛ ବ୍ରହ୍ମାଣ୍ଡଯାକ ଜୀବ ହୃଦେ ବ୍ୟାପି ।
ତୁମ୍ଭ ଜପ ଥିବାଯାକେ ଦେହ ସୁଖେ ଥାଇ
ନାନା ବିଷୟା କରିଣ କୁଟୁମ୍ବ ପାଳଇ ।
ଚାହିଁଛି କହୁଛି ଶୁଣିଅଛି ଯେତେ ବାଣୀ
କରୁଅଛି ଦାନଧର୍ମ ପୁରାଣେ ଯା ଶୁଣି ।
ତୀର୍ଥଆଦି ବାରବ୍ରତ ଯେତେ ପୁଣ୍ୟକର୍ମ
ହୃଦେ ଜପ ଚିହ୍ନିକଲେ ଲଭେ ପରଂବ୍ରହ୍ମ ।
ହୃଦେ ଜପ ଚିହ୍ନିଥିବା ଲୋକ ଅଟେ ସାଧୁ
ନୋହିଲେ ହୁଏଟି ବୋଝ କଲା କର୍ମପଦୁଁ ।
ବ୍ରହ୍ମା ବାକ୍ୟଶୁଣି ନରସିଂହ ହେଲେ ତୋଷ
ବୋଇଲେ ଜପ ତ ମୋର ପୂରିଛି ଅଶେଷ ।
ଆମ୍ଭେ ନ ଜପିଲେ ଜୀବ ଜୀଇବେ କି ରୂପେ
ବିଧାତା ହେଲାରୁ ତୁମ୍ଭେ କହିଲ ଅଳପେ ।
ଶ୍ରୀମୁଖରୁ ବାଣୀ ଶୁଣି ବିଧାତା ଆନନ୍ଦ
ଏଥିଉତାରେ ଯେ ବାଣୀ ଶୁଣ ହେ ନାରଦ ।
ବୈକୁଣ୍ଠପୁରୁଁ ମିଳିଲେ ଆସି ବିଷ୍ଣୁଗଣ
ଚଉଦ ଲକ୍ଷ ସେ ସାକ୍ଷାତରେ ନାରାୟଣ ।
ନୃସିଂହ ପ୍ରଭୁଙ୍କୁ ଦେଖି ହେଲେ ହସ ହସ
ମନ ଇଚ୍ଛାରେ ଦର୍ଶନ କରି ଚଉପାଶ ।
ଲକ୍ଷେ ଚାମର ନୃସିଂହ ଦେବଙ୍କୁ ଆନନ୍ଦେ
ଢ଼ାଳନ୍ତି ସେ ବିଷ୍ଣୁଗଣ ସେବି ପଦ୍ମପାଦେ ।
ସୁବର୍ଣ୍ଣ ଆସନେ ବସାଇଣ ନୃସିଂହଙ୍କୁ
ବ୍ରହ୍ମାଦି ଦେବେ ମେଲାଣି ମାଗିଲେ ଯିବାକୁ ।
ଶ୍ରୀନୃସିଂହ ଆଜ୍ଞା କଲେ ସମସ୍ତେ ହେ ଯାଅ
ବିଷ୍ଣୁଗଣ ସଙ୍ଗେ ଆମ୍ଭେ ଯିବୁ ଜାଣିଥାଅ ।

ଶୁଣି ବ୍ରହ୍ମା ରୁଦ୍ର ଇନ୍ଦ୍ର ଦେବରଷି ଆଦି
ସମସ୍ତେ ଗଲେ ନୃସିଂହ ପାଦପଦ୍ମ ବନ୍ଦି ।
ସୁଧର୍ମା ସଭାକୁ ଘେନି ଇନ୍ଦ୍ର ଗଲେ ଚଳି
ଯେ ଯାହାର ପୁରେ ଯାଇଁ ଦେବତାଏ ମିଳି ।
ପବନ ଦେବତା ଆଦି ଦଶ ଦିଗପାଳ
ସମସ୍ତେ ଗଲେକ ଚଳି ଯେ ଯାହା ମଣ୍ଡଳ ।
ବାର ତିଥି ନକ୍ଷତ୍ର କରଣ ଯୋଗଲଗ୍ନ
ସମସ୍ତେ ରହିଲେ ଯାଇ ଯେ ଯାହାର ସ୍ଥାନ ।
ଯେତେ ଦେବସ୍ତିରୀ ଆସିଥିଲେ ପ୍ରଭୁ ସଙ୍ଗେ
ହୁଳହୁଳିମାନ ଦେଇ ଚଳିଗଲେ ସ୍ୱର୍ଗେ ।
ଏଥୁ ଅନନ୍ତରେ ଶ୍ରୀନୃସିଂହ ଦେବ ହରି
ବିଷ୍ଣୁଗଣ ସଙ୍ଗେ ବଇକୁଣ୍ଠେ ବିଜେକରି ।
ଶ୍ରୀ ବୈକୁଣ୍ଠ ସିଂହଦ୍ୱାରେ ପ୍ରବେଶ ହୁଅନ୍ତେ
ଦେଖିଲେ ମୁର ଦାରୁଣ ତହିଁ ବେନିଭ୍ରାତେ ।
ଜୟ ବିଜୟ ପଦ୍ମକୁ ବହି ବେନିଭାଇ
ଦ୍ୱାରପାଳ ହେବାପାଇଁ ଛନ୍ତି ବାଟ ଚାହିଁ ।
ପ୍ରଭୁଙ୍କୁ ଦେଖି ସ୍ତୁତିଲେ ଦୁହେଁ ପାୟେପଡ଼ି
ବୋଇଲେ ଆମ୍ଭଙ୍କୁ ସ୍ୱାମୀ ହସ୍ତେ ଦିଅ ଶାଢ଼ୀ
ଶୁଣିଣ ନୃସିଂହ ସ୍ୱାମୀ ମନେ ମନେ ହସି
ବୋଇଲେ ମୋହର ଦ୍ୱାରେ ସଦା ଥାଅ ବସି
ଛାମୁକୁ ମୋହର ଭକ୍ତ ଯେତେ ଆସୁଥିବେ
ସବୁଙ୍କୁ ଦର୍ଶନ ନେଇ କରାଇବ ତୁମ୍ଭେ ।
ଅଦୃଷ୍ଟ ଏକାଟି ବାମ ହେବ ଯେତେବେଳେ
ତେବେ ପୁଣି ଜନ୍ମ ଯାଇ ହେବ ରବିତଳେ ।
ଏକଥାଟି ଧ୍ରୁବ ଜାଣ ଅଟଇ ପ୍ରାରବ୍ଧ
ଶାଢ଼ୀ ବାନ୍ଧି କହି ଚଳିଗଲେ ଚକ୍ରାୟୁଧ ।
ଆଗରେ ବାଜଇ ଲକ୍ଷେ ଶଙ୍ଖ ବିଜିଘୋଷ
ଆଲଟ ଚାମର ପୁଚ୍ଛ ପଡ଼େ ଚଉପାଶ ।
ତରାସ ଧଣ୍ଡି ଟେକିଣ ଯାନ୍ତି ବିଷ୍ଣୁଗଣ
ସୁବର୍ଣ୍ଣ ପଲ୍ୟଙ୍କେ ବିଜେକଲେ ନାରାୟଣ ।
ବୈକୁଣ୍ଠପୁରେ ଯେତେକ ଥିଲେ ସ୍ତିରୀବୃନ୍ଦ
ସମସ୍ତେ ଯେ ହୁଳହୁଳି ଦ୍ୟନ୍ତିଟେକି ନାଦ ।
ହରି ହରି ବୋଲି ଶବ୍ଦ ଶୁଭେ ଅନୁକ୍ଷଣି
କନଡ଼ା ରାଗରେ ଗୀତ ଗାନ୍ତି ସୁଲକ୍ଷଣୀ ।
କୁସୁମ ବୃଷ୍ଟି କରନ୍ତି ଦେବେ ଶୂନ୍ୟେ ଥାଇ
ବୈକୁଣ୍ଠେ ଦାଣ୍ଡ କୁସୁମ ଗନ୍ଧେ ଚହଟଇ ।
ଶାନ୍ଦୋ ମାତ ବିଜୟ କଲେ ପଲ୍ୟଙ୍କରେ
ବୟାଳିଶ ରାଗେ ତାଳ ଟେକି ଉଚ୍ଚସ୍ୱରେ ।
ନୃସିଂହ ବୈକୁଣ୍ଠ ବଡ଼ ଦାଣ୍ଡେ ବିଜେ ହୋନ୍ତେ
ସେ ଉତ୍ସବ ଲେଖିକେ ନ ପାରେ ଶାସ୍ତ୍ରମତେ

ଶ୍ରୀମହାଲକ୍ଷ୍ମୀଙ୍କୁ କୋଳେ ଧରିଣ ନୃସିଂହ
ଶାରଦା ମୁଖ ଚୁମ୍ବିଲେ କରିଣ ସୁଆଗ ।
ବୋଇଲେ ତୁମ୍ଭେ ମୋହର ବେନିଗୋଟି ରାଣୀ
ତୁମ୍ଭ ବ୍ୟତୀତ ଆନ ମୁଁ ନଛୁଏଁ ତରୁଣୀ ।
ଆବର ଯେତେ ଲୀଳା ମୁଁ କରେ ଅବତରି
ମାୟାରେ ମୋହର ତାଙ୍କୁ ପ୍ରେମେ ବଶକରି
ସେ ଜାଣନ୍ତି କ୍ରୀଡ଼ାବୋଲି କିନ୍ତୁ ତାହା ମାୟା
ଯେହେତୁ ସଂସାରେ କେ ନ ପାରେ ବହିକାୟା
ଏତେ ବୋଲିଣ ନୃସିଂହ ତେଜି ଆସନକୁ
ଲୀଳାଗତି କରି ବିଜେକଲେ ମନ୍ଦିରକୁ ।
ଶ୍ରୀଗୁଣ୍ଡିଚା ପହଣ୍ଡିରେ ଦିଶେ ଯେହ୍ନେ ଶୋଭା
ସେହିରୂପେ ଚାଲନ୍ତେ ଯେ ଦିଶେ ବିଷ୍ଣୁ ଆଭା
ଏ ରୂପେ ଶ୍ରୀନୃସିଂହଙ୍କୁ ବିଷ୍ଣୁ ଗଣ ଯାଇ
ଅନନ୍ତ ଶଯ୍ୟାରେ ବିଜେ କରାଇଲେ ନେଇ ।
ସହସ୍ରକ ଫଣା ଯେ ଅନନ୍ତ ଶଯ୍ୟା ଖଟ
ବିରାଜେ ବେନି ସହସ୍ର ଚକ୍ଷୁ ଝଟ ଝଟ ।
ସୂର୍ଯ୍ୟଠାରୁ ଶତେଗୁଣ ଉଜ୍ଜ୍ୱଳ ତା ଜ୍ୟୋତି
ସେଠାରେ ନୁହଇଁ କେବେ ଜାଣ ଦିବାରାତି ।
ସବୁବେଳେ ଦେଖାଯାଏ ସେ ଆଲୋକମୟ
ତହିଁକି ନୃସିଂହ ଜ୍ୟୋତି ରାଜେ ସୂର୍ଯ୍ୟପ୍ରାୟ ।
ଦେବଦେବ ଜଗନ୍ନାଥ ବିଜେ କ୍ଷୀରସିନ୍ଧୁ
ଏପରି କଥା ବର୍ଣ୍ଣି ନ ପାରେ କବି ହୃଦୁଁ ।
ସେ ଅନନ୍ତ ସିଂହାସନ ଉପରକୁ ଯାଇ
ଲକ୍ଷ୍ମୀଙ୍କି ଘେନି ଶୟନ କଲେ ଭାବଗ୍ରାହୀ ।
ଅହିଂସା ଭୁବନ ସେହି ପୁରେ ନାହିଁ ହିଂସା
କହନ୍ତି କେବଳ ସର୍ବେ ତହିଁ ସତ୍ୟଭାଷା ।
କାମ କ୍ରୋଧ ଲୋଭ ମୋହ ସେ ପୁରେ ବର୍ଜିତ
ସେ ବୈକୁଣ୍ଠ ଲୋକଯାକ ସର୍ବେ ବିଷ୍ଣୁ ଭକ୍ତ ।
ବୁଝିଲେ ସବୁ ଜୀବରୁ କାକ ଅଟେ ହୀନ
ଚତୁର୍ଭୁଜ ରୂପେ ବସି ପ୍ରକାଶିଛି ବର୍ଣ୍ଣ ।
ଯେଉଁରୂପେ କାକପକ୍ଷୀ ଚତୁର୍ଭୁଜ ଦିଶେ
ସେ ପୁର ମହିମା ଏକା ଜାଣ ଜଗଦୀଶେ ।
ଲକ୍ଷ୍ମୀଙ୍କି କୋଳେ ଘେନିଣ ଶୋଇଲେ ମୁକୁନ୍ଦ
ଦକ୍ଷିଣକୁ ମଥା କରି ଉତ୍ତରକୁ ପାଦ ।
ବାମଭାଗେ କମଳା ଯେ ଦକ୍ଷିଣେ ଶାରଦା
ସୁଖେ ଲକ୍ଷ୍ମୀ ସାଇଁ ହେଲେ ମଗ୍ନେ ଯୋଗନିଦ୍ରା
ଛପନ କୋଟି ଜୀବଙ୍କୁ ବରତନ ଖଞ୍ଜି
ନିଶ୍ଚିନ୍ତେ ଶୋଇଲେ ପଦ୍ମ ଲୋଚନକୁ ବୁଜି ।
ଶ୍ରୀଲକ୍ଷ୍ମୀ ନୃସିଂହ ଶ୍ରୀଶାରଦା ପଦାମ୍ବୁଜେ
ବିପ୍ର ପୀତାମ୍ବର ଦାଶ ନିରନ୍ତରେ ଭଜେ ।

ଘୋର କଳିଯୁଗେ ଜନ୍ମ ଦେଲେ ପ୍ରଭୁ ମୋତେ
ସାଧୁଙ୍କୁ ମୁଁ ସେବି ନାହିଁ ଦିନେ କଦାଚିତେ ।
ଏ ଅଗାଧ ସାଗର ଶ୍ରୀନୃସିଂହ ପୁରାଣ
କର ବୋଲି ଆଜ୍ଞା ମୋତେ ଦେଲେ ନାରାୟଣ ।
ଶ୍ରୀନୃସିଂହ ଅବତାରେ ବୈକୁଣ୍ଠ ବାରୁଣୀ
କହନ୍ତି ନାରଦ ଗୋସାଇଁଙ୍କି କୁଶପାଣି ।
ଶ୍ରୀ ନୃସିଂହ ମହାପ୍ରଭୁ ବୈକୁଣ୍ଠକୁ ଯାନ୍ତେ
ମହାଭୟ କରି ମୁହିଁ ଭାବିଲି ହୃଦଗତେ ।
ନୃସିଂହ ଯିବାରୁ ମୁହିଁ ହୁଅନ୍ତେ ଆକୁଳ
ସ୍ୱପନେ କହିଲେ ଆସି ମୋତେ ଆଦିମୂଳ ।
ବୋଇଲେ ନୃସିଂହ ପୁରାଣ ତୁ ପୂରାକର
ଆମ୍ଭେ ଆଜ୍ଞାଦେଲୁ ଲେଖ ନ ହୋଇ କାତର
ଦଶଅବତାର ମୋର ଯେତେକ ମହିମା
ଲେଖ ନୃସିଂହ ପୁରାଣେ ସମସ୍ତ ଶୁଣିମା ।
ଏକଥାକୁ ହାସ୍ୟକରି ନିନ୍ଦିବେ ଯେ ତୋତେ
ତାହାକୁ ଜଡ଼ କରିବି ମୁହିଁ ଏ ଜଗତେ ।
ମହାପୁରୁଷ ଜଣେ ତୁ ବୋଲି ଚିହ୍ନାଇବି
ଏଥକୁ ନକରି ଭୟ ଲେଖ ମନେଭାବି ।
ସୁପଣ୍ଡିତ ମାନେ ଶୁଣି ହେବେ ମନେ ତୋଷ
ମୂର୍ଖ ଲୋକେ ନ ମାନି କରିବେ ତୋର କିସ ।
ଅନ୍ଧ ବୋଲଇ ସଂସାରେ ଚନ୍ଦ୍ର ସୂର୍ଯ୍ୟ ନାହିଁ
ଏତେକେ କି ଚନ୍ଦ୍ରସୂର୍ଯ୍ୟ ଗଲେ ସାନଭାଇ ।
ଶ୍ରୀନୃସିଂହ ଶାଳଗ୍ରାମ କଣ୍ଠେ ମାଳକରି
ଲେଖେ ଏହି ପୁରାଣକୁ ଲେଖନ ଯେ ଧରି ।
ଏ ରୂପେ ଆଜ୍ଞା ଦେଇଣ ଯାନ୍ତେ ମହାପ୍ରଭୁ
ତେବେଯାଇ ମନୁ ମୋର ଗଲା ଭୟ ସବୁ ।
ଚେତାପାଇ ବିଷ୍ଣୁଙ୍କୁ ମୁଁ ହୃଦେ ସୁମରନ୍ତେ
ଗଣେଶଙ୍କୁ ଧ୍ୟାନ କରିନେଲି ଖେଦା ହସ୍ତେ ।
ବୋଇଲି ହେ ଗଣପତି ଜଣାଉଛି ଏବେ
ପୂରଣ କର ଏ ଭାଷା ଲେଖିବି ପ୍ରସ୍ତାବେ ।



## ଗଣେଶଙ୍କ ସ୍ତୁତି

ବନ୍ଦଇ ଶ୍ରୀ ଗଣନାଥ ଗଣଙ୍କ ପ୍ରଧାନ
ସକଳ ଦେବଙ୍କ ପରେ ଅଟ ବିଦ୍ୟମାନ ।
ଅଗ୍ର ପୂଜା ଅଗ୍ର ଭୋଜା ଅଗ୍ରେ ତୋତେ ବରି
ତବ ଦରଶନେ ନାଥ ସର୍ବପାପ ହରି ।
ସର୍ବଜ୍ଞ ପୁରୁଷ ତୁହି ସବୁରି ପ୍ରଧାନ
ବନ୍ଦଇ ଶ୍ରୀଗଣପତି ଈଶ୍ୱର ନନ୍ଦନ ।
କୋଟିଜନ୍ମ ଗଲେ ତାର ପଲକ ନପଡ଼େ
ଆଉ ଲୋକ ଏ ସଂସାରେ କିଏ ଅଟେ ଏଡ଼େ
ଅନନ୍ତ କୋଟି ଯୁଗେ ତୋ ବର୍ଷ ନୁହେଁ ଭଳି
ସବୁଦିନେ ତନୁ ତୋର ଦିଶେ ଏକ ଭଳି ।
ଚନ୍ଦ୍ରଧ୍ୱଜ ବିବାଦେ ତୁ କାଶୀଶ୍ୱର ନାଶୁ
ଗଉରୀଙ୍କୁ ଘେନି ସଦାଶିବ ଆସୁ ଆସୁ ।
କଇଳାସପୁରେ ତୁ ଦକ୍ଷିଣ ଦ୍ୱାରପାଳ
ତବ ବିଶ୍ୱରୂପ ଦେଖି କମ୍ପେ ଯମଆଳ ।
ଅନ୍ଧକ ବିବାଦେ ଶିବ ଛେଦିଲେ ତା ଶିର
ଦ୍ୱାର ନ ଛାଡ଼ିଲୁ ଯେଣୁ କଇଳାସ ପୁର ।
ଈଶ୍ୱର ପୁରୁଷକୁ ତୁ ନ ପାରିଲୁ ଚିହ୍ନି
ବସିଲୁ ଅନ୍ଧକ ବଧକାଳେ ଦ୍ୱନ୍ଦ ଘେନି ।
ସୋମକ ସତ୍ୟଯୁଗରେ ଆଦି ଅବତାରେ
ବିରଞ୍ଚି ନାମେ ଯେ ବ୍ରହ୍ମା ବସେ ସ୍ୱର୍ଗପୁରେ ।
ସେକାଳେ ଈଶ୍ୱର କଇଳାସକଲେ ତେଜ୍ୟା ।
ଅମର ଭୁବନେ ବିଜେକଲେ ଦେବରାଜା ।
ବୃଦ୍ଧଶ୍ରବା ନାମେ ସ୍ୱର୍ଗପୁରେ ବସେ ଇନ୍ଦ୍ର
ସୋଽହଂସ ନାମେ ସୂର୍ଯ୍ୟ ସୁଧାଂଶୁନାମେଚନ୍ଦ୍ର
ଅନ୍ଧକାସୁର ବୋଲି କବନ୍ଧାସୁର ବଂଶୀ
ସେ କାଳେ ସ୍ୱର୍ଗକୁ ଧାଡ଼ିଦେଲା ବଳେ ପଶି
ଦୈତ୍ୟକୁ ଉଗାଳି ଯୁଦ୍ଧକଲେ ବୃନ୍ଦାରକେ
ଜିଣି ନ ପାରିଲେ ଦେବେ ଅସୁର ଅନ୍ଧକେ
ଈଶ୍ୱର ପାଦେ ଶରଣ ପଶିଲେ ସେ ଯାଇଁ
ଦେବତାଙ୍କ ଦୁଃଖ ହର ନପାରିଲେ ସହି ।
ରୁଦ୍ରତୁଲେ ଅନ୍ଧକର ହେଲା ଘୋର ଯୁଦ୍ଧ
ସହସ୍ର ବରଷ ଯାଏ କଲେ ଦୂହେଁ ଦ୍ୱନ୍ଦ ।
ଭୈରବ ମୂର୍ତ୍ତି ଧଇଲେ ହର ଏତେବେଳେ
ଅନ୍ଧକ ଦୈତ୍ୟକୁ ବଧ କଲେକ ତ୍ରିଶୂଳେ
ଦୈତ୍ୟକୁ ସଂହାରି ପୁଣି ହେଲେ ଉଗ୍ରମୂର୍ତ୍ତି
କଇଳାସପୁରେ ହର ମିଳିଲେ ତଡ଼ତି ।
ବୃଷଭ ଆରୋହୀ ଦେବେ ଯୋଗାଧିପୁରୁଷ
ନଗର ଦକ୍ଷିଣଦ୍ୱାରେ ହୋଇଲେ ପ୍ରବେଶ
ନଷ୍ଟଚନ୍ଦ୍ର ନିଶା ଅଟେ ସେଦିନ ରଜନୀ
ଈଶ୍ୱର ବୋଲି ଆପଣ ନ ପାରିଲ ଚିହ୍ନି ।
ନିରୋଧି ଦକ୍ଷିଣଦ୍ୱାର ନ ଦେଲେ ଯେ ଛାଡ଼ି
ନିଜ ବାହନ ଉପରେ ବସିଲ ଯେ ମାଡ଼ି ।
ଗଜବଦନ ଜଠର ପୃଥୁଳ ଉଦର
ଦକ୍ଷିଣକରେ ପରଶୁ ଧରିଣ କୁଠାର ।
ଯମକୁ ଜିଣିଲ ଦେବ ଯେବଣ ସ୍ୱରୂପ
ଈଶ୍ୱରଙ୍କୁ ଅଗୋଚର ହେଲା ତୁମ୍ଭ ରୂପ ।
ଈଶ୍ୱର ପାଞ୍ଚିଲେ ମୋର ନଗରେ କେ ଆସି
କରୁଛି କନ୍ଦଳ ହୁଏ କଇଳାଶେ ପଶି ।

ପାର୍ବତୀ ସହିତେ କେହି ନାହାନ୍ତି ଯେ ଏଥ
ଏତେ ପାଞ୍ଚି ପାଶୁପତ ଧରି ପଞ୍ଚମାଥ ।
ପିନାକ ସମାନ ଧନୁ ବଳ ତିନିକୋଟି
ବାମକରେ ଧରି ଆଜ୍ଞାଦେଲେକ ଧୂର୍ଜଟି ।
ଈଶ୍ୱର ବୋଇଲେ ଦ୍ୱାର ଛାଡ଼ ତୁହି ବେଗେ
ନଛାଡ଼ିଲେ ସମର ତୁ କର ମୋର ସଙ୍ଗେ ।
ଈଶ୍ୱର ରୂପରେ ଅବା କେବଣ ଦାନବ
କରୁଛୁ ପଶି କୈଳାସପୁରେ ଉପଦ୍ରବ ।
ଏରୂପେ କହନ୍ତେ ସଦାଶିବ କୋପେ ଗର୍ଜି
ସେକଥା ଗୋଟି ଆପଣ ନପାରିଲେ ହେଜି ।
କୋପରେ ବୋଇଲେତୁମ୍ଭେ ଶୁଣରେପାମର
ଅନ୍ଧକ ଦୈତ୍ୟକୁ ମାରି ଗଲେଣି ଈଶ୍ୱର ।
ପିତା ନ ଥିବାରୁ ମୋର କଇଳାସ ଗିରି
କାହାକୁ ନ ଛାଡ଼ିଦ୍ୱାର ଅଛି ରକ୍ଷାକରି ।
ଏକଥା ତୁମ୍ଭର ବୁଝି ନପାରିଲେ ହର
ସେହିଠାରୁ ପିତାପୁତ୍ର ଲାଗିଲା ସମର ।
ଦେଖଦେଖ କୋପ ହୋଇ ଉଠିଲେ ସୂର୍ଯ୍ୟଟି
ଘୋରଯୁଦ୍ଧ କରି ଦୁହେଁ ହେଲେ ପିଟାପିଟି ।
ମହାଘୋର ଅନ୍ଧକାର ହୋଇଛି ସେ ରାତି
ଲାଗିଲା ସମର ଦୁହେଁ ହୋଇଣ ଅପ୍ରୀତି ।
ଚନ୍ଦ୍ର ସୂର୍ଯ୍ୟ ବେନି ରଶ୍ମି ଅଦୃଶ୍ୟହୋଇଲା
କେତେକାଳଯାଏ ତୁମ୍ଭ ଯୁଦ୍ଧ ନ ସରିଲା ।
ପିତା ପୁତ୍ର ବୋଲି ତହିଁ ନ ଗଲା ବାରଣ
ମନୁଷ୍ୟ ମନୁରେ ଯୁଗ ଅଦ୍ଧ ସହିତେଣ ।
ପରଶୁ ଗଦା ତ୍ରିଶୂଳ ଚକ୍ରବଜ୍ରସୂଚୀ
ହୁଅନ୍ତେଣ ଆତଯାତ ବିଦ୍ୟୁତପ୍ରାୟ ନାଚି ।
କମ୍ପିଲା ଅମରପୁର ଆଦି ଭୂମଣ୍ଡଳ
କଇଳାସ ସହିତେ ଯେ ହେଲା ଟଳ ଟଳ ।
ତବ ଯୁଦ୍ଧ ଦେଖି ହର ହୋଇଲେ ପ୍ରଚଣ୍ଡ
ତ୍ରିଶୂଳ ପେଷି ଛେଦିଲେ ଆପଣଙ୍କ ମୁଣ୍ଡ ।
ବଜ୍ରପରେ ବଜ୍ର ପଡ଼ି ଶୁଭେ ଯେହ୍ନେ ନାଦ
ସେରୂପେ ଝଲକି ଅଗ୍ନି ଉଠିଲା ତା ହୃଦ ।
ତ୍ରିଶୂଳ ବାଜି ହୁଅନ୍ତେ ତୋର ମୁଣ୍ଡ ଚୂର୍ଣ୍ଣ
ଦ୍ୱାରଜିଣି ଭିତରକୁ ଗଲେ ତ୍ରିଲୋଚନ ।
ତୋର ସେନାଗଣ ଈଶ୍ୱରର କୋପ ଦେଖି
ପଳାଇ ଲୁଚିଲେ କଇଳାସେ ଯୁଦ୍ଧ ରଖି ।
ଡମ୍ବରୁ ବାଦ୍ୟ ବଜାଇ ହର ଅନ୍ତରୀକ୍ଷେ
ବୃଷଭ ପିଠିରେ ବସି ଗଲେ ବିରୁପାକ୍ଷେ ।
ସେକାଳେ ଈଶ୍ୱର ନଗ୍ର ତେଜି ବିଜେକଲେ
ସେଦିନଠାରୁ ଯୋଗରେ ଉମା ବସି ଥିଲେ
ଏମନ୍ତବେଳେ ମିଳନ୍ତେ ଆସି ପଶୁପତି
ଆସନ କମ୍ପିଲା ଦେଖି ଜାଣିଲେ ପାର୍ବତୀ ।
ପାଞ୍ଚନ୍ତି ବିଜେକଲେ କି ଆସି ସଦାଶିବ
ଡମ୍ବରୁ ବାଜିଲା ଚଢ଼ି ଆସନ୍ତି ବୃଷଭ ।
ଏତେବୋଲି ଦ୍ୱାରେଉଭା ହେଲେଠାକୁରାଣୀ
କରେ ଅର୍ଘ୍ୟ ଧରି ପଚାରନ୍ତି ଗୋସାମଣି ।
ଜାଣିଲେ ହୋଇଛି ସ୍ୱାମୀ ମନ କୋପମୟ
ରକତରେ ଜର ଜର ଦିଶେ ସର୍ବକାୟ ।
ତ୍ରିଶୂଳ ପିନାକ ଆଦି ଦିଶେ ରକ୍ତବର୍ଣ୍ଣ
ବାହନ ତେଜିଣ ଉଭାହେଲେ ତ୍ରିଲୋଚନ ।
ପାର୍ବତୀ ବୋଇଲେ ଆଜ୍ଞା ହେଉ ମୃତ୍ୟୁଞ୍ଜୟ
ଶ୍ରୀଅଙ୍ଗ କିମ୍ପାଇଁ ହୋଇଅଛି ରକ୍ତମୟ ।
କେବଣ ଚରିତ କହିବା ହେ ଶୂଳସାଇଁ
ଏରୂପେ ପୃଚ୍ଛନ୍ତି ଦେବୀ ସ୍ୱାମୀ ପାଦ ଧ୍ୟାୟି ।
ପାର୍ବତୀର ସେବା ଯୋଗୁଁ ଶିବ ଲଭିଶାନ୍ତି
ବୋଇଲେ ରେ ସଖୀ ଶୁଣ କହିବାସେ ରୀତି
ଅନ୍ଧକ ଦୈତ୍ୟକୁ ମୁହିଁ ମାରିବାକୁ ଯାନ୍ତେ
ତାହାକୁ ସଂହାରି ଆସନ୍ତେ ମୁଁ କୋପଚିତ୍ତେ
ଦକ୍ଷିଣ ଦ୍ୱାରେ ଆସନ୍ତେ ମୁହିଁ ବିଜେ କରି
ଦେଖିଲି ଗୋ ଦ୍ୱାରଛାଡ଼ି ନ ଦେଲା ଦୁଆରୀ
ଓଗାଳି ଘୋର ସମର ମୋର ସଙ୍ଗେ କଲା
ପାଞ୍ଚିଲି ଅସୁର କାହିଁ ଏଠାକୁ ଆସିଲା ।
ନୋହିଲେ କି ଏଡ଼େଯୁଦ୍ଧକରନ୍ତା ମୋ ସାଥେ
ଏରୂପେ ପାଞ୍ଚିଣ ଶସ୍ତ୍ର ପିଟିଲି ତା ମାଥେ ।
ଅନ୍ଧକ ନିସୂଦନ ଯେ କ୍ଷତ ମୋହ ଦେହେ
ସହି ନ ପାରି ପ୍ରହର କଲି ତାକୁ କୋହେ
ମୁଣ୍ଡକୁ ହାଣି ପକାଇଦେଲି ତାକୁ ତଳେ
ଶୁଣ ଆଗୋ ଉମା ତୁହି କହନ୍ତି ସୁଢ଼ଳେ ।
ମାରିଛି ମାତ୍ର ମୁଁ ତାକୁ ଚିହ୍ନିନାହିଁ ଏକା
ଶୁଣିଣ ବସିଲେ ମାତା କ୍ଷଣେ କରି ଶଙ୍କା ।
ଶୁଣି ବୋଇଲେ ଭୋ ସ୍ୱାମୀଚାଲ ଦେଖିଯିବା
ଗଣେଶ ପୁତ୍ର ଆମ୍ଭରି ହୋଇଥିବ ଅବା ।
ଏରୂପେ ତହିଁ ସ୍ୱାମୀଙ୍କୁ ଘେନି ଦେବୀ ଚଳି
ନନ୍ଦୀ ଭୃକୁଟୀ ସଙ୍ଗରେ ଘେନି ଦ୍ୱାରେ ମିଳି
ଦେଖିଲେ ପୁତ୍ର ଅଟଇ ସେହୁ ବିନାୟକ
ବେନିଖଣ୍ଡ ହୋଇଣ ଯେ ଛିଡ଼ିଅଛି ବେକ ।
କୋଳକରି ପିଣ୍ଡଗୋଟି ଧରି ଠାକୁରାଣୀ
ଉଚ୍ଚସ୍ୱରେ ରୋଦନ କରନ୍ତି ଗୁଣଗୁଣି ।
ଏହା ଦେଖିଣ ଈଶ୍ୱର ହେଲେ ଚମତ୍କାର
ଭୀମକୁ ରାଇଣ ଆଜ୍ଞାଦେଲେ ତରତର ।

ବୋଇଲେ ଗଣପତିର ମୁଣ୍ଡ ଆଣ ଚିହ୍ନି
ଚଳିଗଲା ଭୀମ ଶିବଙ୍କର ଆଜ୍ଞା ଘେନି ।
ଲୋଡ଼ି ନ ପାରିଲା ସେହୁ ତୁମ୍ଭ ମଥା ଗୋଟି
ହସ୍ତୀ ଗୋଟାଏ ଦେଖିଣ ଆଣେ ମୁଣ୍ଡ କାଟି
ପୁଷ୍ପବନ୍ତ ଗଜସେହୁ ଐରାବତ ବଂଶୀ
ତାହାର ମୁଣ୍ଡକୁ ହାଣି ଭୀମ ଘେନି ଆସି ।
ତୁମ୍ଭ କନ୍ଧରେ ଲଗାନ୍ତେ ଆଣି ସେହି ଶିର
ଜୀବନ୍ୟାସ ମନ୍ତ୍ରେ ଜଳ ସିଞ୍ଚିଲେକ ହର ।
ବ୍ରହ୍ମ ପୁରୁଷ ପ୍ରତ୍ୟକ୍ଷେ ଜାଣ ଜୀବ ହୋଇ
ତୁମ୍ଭର ହୃଦ ପଦ୍ମରେ ପ୍ରକାଶିଲେ ଯାଇଁ ।
ସେହିଠାରୁ ତୁମ୍ଭ ନାମ ହେଲା ଗଜାନନ
ବିଘ୍ନରାଜ ବୋଲି ପୂଜା କଲେ ସର୍ବଜନ ।
ଗଣଙ୍କ ଈଶ୍ୱର ତୁମ୍ଭ ନାମ ଗଣାଧିପ
ପୃଥୁକ ଉଦର ତବ ମହିମା ସ୍ୱରୂପ ।
ସେ ଗଜରେ ଏକ ଦନ୍ତ ବାହାରି ଯେ ଥିଲା
ଏଣୁ ଏକଦନ୍ତ ବୋଲି କୁମ୍ଭ ନାମ ଦେଲା ।
ମହାଉତ୍ସର୍ଗ ଉଦର ନାମ ଲମ୍ବୋଦର
ଅମୃତ ଭୁଞ୍ଜିଣ ସ୍ୱାମୀ ହେଲୁ ଅଜ୍ରାମର ।
ତେଣୁ ତୁମ୍ଭର ନାମ ଯେ ସର୍ବଦା ପ୍ରଭାତେ
ସୁମରି ବିଘ୍ନ ଖଣ୍ଡନ୍ତି ପ୍ରାଣୀମାନେ ନିତ୍ୟେ ।
ଆଦୋଷେ ହର ତୁମ୍ଭଙ୍କୁ କଲେ ଯେଣୁ ନାଶ
ତେଣୁ ବିନାୟକ ନାମ ଦେଲା ବ୍ୟୋମକେଶ
ଯମ ତୁମ୍ଭ ଜୀବନ ହରଣ କଲା ଯହୁଁ
ଯମର ତୁଲେ ବିବାଦ କଲ ତୁମ୍ଭେ ତହୁଁ ।
ନାଶକର କାଳଦଣ୍ଡ ଘେନିଲ ଛଡ଼ାଇ
ମୂଷିକ ସ୍ୱରୂପେ ଯମ ଗଲାକ ପଳାଇ ।
ଗୋଡ଼ାଇ ଆକର୍ଷି ତାକୁ ବସିଲେ ଯେ ମାଡ଼ି
ପଶିଲା ଶରଣ ସେହୁ କରପତ୍ର ଯୋଡ଼ି ।
ଇନ୍ଦୁର ବାହନ କରି ରଖିଲ ତାହାକୁ
ଭୟ ଛାଡ଼ିଗଲା ତାର ଅଶେଷ କାଳକୁ ।
ଯମକୁ ବାହନ କରି ପୃଥ୍ୱୀ ଶତେ ବେଢ଼ା
ବୁଲିଲ ପିଠିରେ ବସି ତିଳେ ନାହିଁ ଛଡ଼ା ।
ତୁମ୍ଭ ଦୟାରୁ କୃତାନ୍ତ ପୁଣି ରକ୍ଷା ହେଲା
ଶିବର ନନ୍ଦନ କଥା ସଂସାରେ ରହିଲା ।
ବଦନ ଶୁକଳ ଶ୍ୱେତ ଇନ୍ଦୀବର ଭଳି
ଅଶେଷ କୋଟି ଗ୍ରନ୍ଥ ସେ ମୁଖୁଁ ଯାଏ ଝଳି ।
ବ୍ୟାସର କରଣ ତୁମ୍ଭେ ସେହି ଜ୍ଞାନବନ୍ତ
ତୁମ୍ଭେ ହୋଇଲ ତହିଁକି ଦ୍ୱିଗୁଣ ପଣ୍ଡିତ ।
ମେରୁକୁ ଲେଖନ କଲେ ପୃଥ୍ୱୀ ତାଳପତ୍ର
ଏ ଦୁଇ ଧରି ଲେଖିଲେ ହେବ କୋଟି ଶାସ୍ତ୍ର
ଅହୋରାତ୍ର ଲେଖୁଁ ଲେଖୁଁ ନସରିଲା ବିଦ୍ୟା
ଏରୂପେ ମହିମା ତୋର ସଂସାରେ ପ୍ରସିଦ୍ଧା ।
ଲେଖନ ମୁନକୁ ତୋର ସପ୍ତସିନ୍ଧୁ ଜଳ
କଜ୍ଜ୍ୱଳ କାଳି ଯେ କଲ ସଦାଶିବ ବାଳ ।
ଶ୍ରୀମହାଦେବଙ୍କ ମନବାକ୍ୟେ ଦେଲ ରଞ୍ଜି
ଅମର ଲଡ୍ଡୁ କାର୍ତ୍ତିକେଶ୍ୱର ବାଦ୍ୟେ ଭୁଞ୍ଜି
ଶରୀର ଗୋଟିକ ତୋର କଲୁ ଅଜ୍ରାମର
କୋଟି କଳ୍ପରେ ନବୀନ ତୋର କଳେବର
ନମସ୍ତେ ନମସ୍ତେ ଦେବ ଗଣପତି ସ୍ୱାମୀ
ନମସ୍ତେ ନମସ୍ତେ ତ୍ରଇଲୋକ୍ୟ ଅନ୍ତର୍ଯ୍ୟାମୀ ।
ନମସ୍ତେ ନମସ୍ତେ ଦେବ ପାର୍ବତୀ ଆତ୍ମଜ
ନମସ୍ତେ ନମସ୍ତେ ଦେବ ତୁମ୍ଭେ ଅଗ୍ରପୂଜ୍ୟ ।
ନମସ୍ତେ ନମସ୍ତେ ଦେବ ସଦାଶିବ ଚାଟ
ନମସ୍ତେ ନମସ୍ତେ ଦେବ ଦେବଙ୍କର ଶ୍ରେଷ୍ଠ ।
ନମସ୍ତେ ନମସ୍ତେ ଦେବ ସର୍ବ ବିଦ୍ୟାଗୁରୁ
ତୁ ନିର୍ଦ୍ଦୟ ହେଲେ ପଣ୍ଡିତକୁ ମୂର୍ଖକରୁ ।
ନମସ୍ତେ ନମସ୍ତେ ଦେବ ସର୍ବ ଶାସ୍ତ୍ର ଜ୍ଞାତା
ନମସ୍ତେ ନମସ୍ତେ ଦେବ ବିଘ୍ନ ବିନାଶନ୍ତା ।
ତୁମ୍ଭର ପ୍ରସାଦୁ ସ୍ୱାମୀ ସର୍ବହୋଏ ସିଦ୍ଧି
ଯାବତ ଯେ ଜପତପ ଧର୍ମ ଯଜ୍ଞ ଆଦି ।
ତଥାପି ମୁଁ ଦିନେ ପଢ଼ିନାହିଁ ବେଦଶାସ୍ତ୍ର
ଶ୍ରୀହରିର ପାଦେ ଚିତ୍ତ ଥୋଇ କେବେ ମାତ୍ର
ବ୍ରହ୍ମା ବିଷ୍ଣୁ ହର ଜାଣ ଅଟନ୍ତିଟି ଏକ
ସତ ରଜ ତମ ରୁପେ ଏ ତିନି ନାୟକ ।
ଏ ତିନି ମୂର୍ତ୍ତି ନୁହନ୍ତି କେବେ ଜାଣ ଭିନ୍ନ
ଭିନ୍ନ କରିପାରେ ଏକା ବ୍ରହ୍ମଘାତୀ ଜନ ।
ଏକାମୂର୍ତ୍ତି ଗୋଟିକ ସେ ତିନିମୂର୍ତ୍ତି ହୋଇ
ସଂସାର ପାଳୁଅଛନ୍ତି ତିନି ନାମ ବହି ।
ବ୍ରହ୍ମା ବିଷ୍ଣୁ ହର ଏହି ସବୁରି ଠାକୁର
ପ୍ରତ୍ୟକ୍ଷ ନୃସିଂହରୂପେ ହେଲେ ଅବତାର
ପ୍ରତ୍ୟକ୍ଷ ନୃସିଂହ ଯେହୁ ସେହୁ ବ୍ରହ୍ମା ରୁଦ୍ର
ନୀଚ ଲୋକ ଭିନ୍ନ କରି ଘେନୁଥାନ୍ତି ଛିଦ୍ର ।
ଶ୍ରୀନୃସିଂହ ଅବତାର ଲୀଳାମାନ ଛାଡ଼ି
ଗଲେ ପ୍ରଭୁ ବଇକୁଣ୍ଠପୁରେ ବିଜେ କରି ।
ପ୍ରଥମ ସାଗରଠାରୁ ଷଷ୍ଠିଯାଏ କଲି
ସପ୍ତମ ସାଗର ପୂରା କରି ନ ପାରିଲି ।
ଏଥକୁ ଦୟା କରିବ ମୋତେ ଗଣପତି
ତୁମ୍ଭ ଆଜ୍ଞାରେ ହୋଇବ ଜଗତେମୋଖ୍ୟାତି
ମୋ ପ୍ରପିତାମହ ବିପ୍ର ନୀଳାମ୍ବର ଦାଶ
ମୋର ପିତାମହ ବିପ୍ର ଲକ୍ଷ୍ମୀଧର ଦାଶ ।

ବାଲୁଙ୍କେଶ୍ୱର ତାହାଙ୍କ ଜ୍ୟେଷ୍ଠପୁତ୍ର ଖ୍ୟାତ
ସେ ମୋର ପିଅର ମୁହିଁ ଅଟେ ତାଙ୍କ ପୁତ୍ର
ବିଘ୍ନ ରାଜ କୃପାରୁ ମୁଁ ଲେଖଇ ଏ ଶାସ୍ତ୍ର
ଜନ୍ମରୁ ମୂରୁଖ ନାହିଁ ଜ୍ଞାନ ଯେ କିଞ୍ଚିତ ।
ଶ୍ରୀଲକ୍ଷ୍ମୀ ନୃସିଂହ ପ୍ରଭୁ ପାଦପଦ୍ମ ତଳେ
ଶରଣ ଗଲା ଯେ'ବିପ୍ର ପୀତାମ୍ବର ବେଳେ ।



## ନାରଦଙ୍କ ଆଗରେ ବ୍ରହ୍ମାଙ୍କର ଭାଗବତ ବୃତ୍ତାନ୍ତ କଥନ

ଏଥୁ ଅନନ୍ତରେ ନାରଦ ଯେ ମହାମୁନି
ବ୍ରହ୍ମାଙ୍କର ପାଦେ ନମି କଲେକ ଦଇନି ।
ବୋଇଲେ ଶୁଣିମା ସାବଧାନେ ପିତାମହ
କିରୂପେ ଶ୍ରୀଭାଗବତ ଗ୍ରନ୍ଥ ହେଲା କହ ।
ନାରଦଙ୍କ ମୁଖରୁ ଏସନ ବାଣୀ ଶୁଣି
କହନ୍ତି ଯେ ମନେ ମନେ ହସି କୁଶପାଣି ।
ଷଡ଼ ସମ୍ବାଦେ ହେଲା ଏ ପୁରାଣ ଉକତ
ଯେରୂପେ ଶୁଣିଲେ ତାହା ବୁଝ ସେ ତଦନ୍ତ
ବିଷ୍ଣୁଙ୍କ ଶ୍ରୀମୁଖୁ ଜାତ ହେଲା ଏକାକ୍ଷର
ତ୍ରିଅକ୍ଷର କରି ତାକୁ ରଖିଲେ ଠାକୁର ।
ଅନନ୍ତକୁ ନେଇ ତାହା ଶୁଣାଇଲେ ପ୍ରଭୁ
ଶୁଣି ଚବିଶ ଅକ୍ଷର ବାଢ଼ିଲେ ସେ ଗର୍ଭୁ ।
ଚବିଶ ଅକ୍ଷର ନେଇ ବ୍ରହ୍ମାଙ୍କ ଅଗ୍ରତ
ଶୁଣାଇଲେ ଅନନ୍ତ ଯେ ହୋଇ ତୋଷଚିତ୍ତ
ବ୍ରହ୍ମା ତାହା ଶୁଣି ଚାରି ଗୋଟି ଶ୍ଳୋକ କଲେ
ନାରାୟଣଙ୍କ ଛାମୁରେ ନେଇ ଶୁଣାଇଲେ ।
ନାରାୟଣ ଶୁଣି ତାହା ଦଶ ଶ୍ଳୋକ କରି
ନାରଦ ଋଷିଙ୍କ ଆଗେ କହିଲେ ବିସ୍ତାରି ।
ଶୁଣିଣ ନାରଦ ତାହା କଲେ ଶତେଶ୍ଳୋକ
ବ୍ୟାସଙ୍କୁ କହିଲେ ସେ ପୁରାଣ ମହାବାକ୍ୟ ।
ବ୍ୟାସଋଷି ଶୁଣି ତାହା ହୋଇଲେ ସନ୍ତୋଷ
ଅଠର ସହସ୍ର ଶ୍ଳୋକ କଲେ ସେ ପ୍ରକାଶ ।
ବୋଇଲେ ଜନ୍ମିଲା ଭାଗବତ ଏକାକ୍ଷରୁ
ପ୍ରକାଶ ହେଲେ ଶ୍ରୀବିଷ୍ଣୁଙ୍କର ଶ୍ରୀମୁଖରୁ ।
ଏ ରୂପେ ବୋଇଲେ ବ୍ୟାସ ଶୁକଙ୍କର ଆଗେ
ପ୍ରାଞ୍ଜଳ କରି କହିଲେ ସବୁ ଶାସ୍ତ୍ରମାର୍ଗେ ।
ଏରୂପେ ଶ୍ରୀଭାଗବତ ହୋଇଲା ପ୍ରକାଶ
ପରୀକ୍ଷ ଆଗେ କହିଲେ ନେଇ ବ୍ୟାସଶିଷ୍ୟ
ଶୁଣିଣ ନାରଦ ଋଷି ହୋଇଲେସନ୍ତୋଷ
ଶ୍ରୀ ଭାଗବତ ଶୁଣିଣ କାଟିଲେ କଲୁଷ ।

ଏଥୁଅନନ୍ତରେ ପରୀକ୍ଷିତ ମହାରାଜା
ଶୁକଦେବ ଚରଣରେ କଲେ ଦିବ୍ୟ ପୂଜା ।
ବୋଇଲେ ମୁନି ଯେମୋତେ କହିଥିଲଆଗେ
ପଛେ ତୁ ଶୁଣିବୁ ଭାଗବତ ଶାସ୍ତ୍ରମାର୍ଗେ ।
ଶୁଣିଣ ନୃସିଂହ ଗ୍ରନ୍ଥଯାକ ପୂର୍ବ ତପୁ
ଭାଗବତ ଶୁଣି ତରିଯିବି ଋଷିଶାପୁଁ ।
ଶୁଣିଣ ସେ ଶୁକଦେବ ହେଲେ କୃତ୍ୟକୃତ୍ୟ
ବୋଇଲେ କହିବା ତେବେ ଶୁଣ ଭାଗବତ ।
ଷଡ଼ ସମ୍ବାଦରେ ଏ ପୁରାଣ ଅଛି ହୋଇ
ନାରଦ ଗୋସାଇଁ ଆଗେ ଧାତା ଛନ୍ତି କହି
ବ୍ରହ୍ମା ନାରଦ ସମ୍ବାଦ ଅଟେ ଏହି ବାଣୀ
ଶୁଣ ଆହେ ପରୀକ୍ଷିତ କହିବା ତା ଆଣି ।
ପ୍ରଥମସ୍କନ୍ଧଠାରୁ ଦ୍ୱାଦଶସ୍କନ୍ଧ ଯାଏ
ଷଡ଼ସମ୍ବାଦ ମହିମା ଶୁଣ ମହାରାୟେ ।
ଓଁ କାର ଶ୍ରୀବ୍ରହ୍ମରୂପେ ଯେବଣ ଶ୍ରୀହରି
ସୃଷ୍ଟି ଆଦ୍ୟ ଦେଖ ବ୍ୟାପିଛନ୍ତି ବିଜେ କରି
ବ୍ରହ୍ମାଣ୍ଡେ ପୁରିଅଛନ୍ତି ତିଳେ ଛଡ଼ା ନାହିଁ
ତୋର ମୋର ମଧ୍ୟେ ଦେଖୁଛନ୍ତି ରୂପ ବହି
ଅରୂପ ସ୍ୱରୂପ ସେହି ରୂପ ବ୍ରହ୍ମରୂପେ
ଶୁକ୍ଳାମ୍ବର ବିଷ୍ଣୁମୂର୍ତ୍ତି ପ୍ରକାଶିତ ଆପେ ।
ଆପେ ଆପେ ସମ୍ଭୂତ ହିଁ ସ୍ୱୟଂ ବ୍ରହ୍ମରାଶି
ଶୁଣ ପରୀକ୍ଷ କହନ୍ତି ଶୁକ ମହାଋଷି ।
ଏହି ପ୍ରଭୁଙ୍କର ମୁଖ ଜାତ ଅକ୍ଷରରୁ
ଜନ୍ମିଲା ସେ ଭାଗବତ ପ୍ରତ୍ୟକ୍ଷ ଅଙ୍ଗରୁ ।
ଶ୍ରୀ ଭାଗବତ ଶୁଣନ୍ତେ ଯେତେ ପାପ ହରେ
ଲୋକଯେ ତେତେ ପାତକ କରିଣ ନପାରେ
ଆଦିତ୍ୟ ଉଦେ ହୁଅନ୍ତି ତମ ଯେହ୍ନେ ଯାଏ
ଭାଗବତ ଶୁଣନ୍ତେ ଯେ ପାପ ଯାଏ କ୍ଷୟେ ।
ଅନଳେ ପତଙ୍ଗ ପଡ଼ି ଭସ୍ମ ଯେହ୍ନେ ହୋଇ
ଭାଗବତ ଶୁଣି ଯେହ୍ନେ ପାପ ନ ପଶଇ ।
ଶୁଣ ହେ ପରୀକ୍ଷ ରାଜା ଭାଗବତ ବାଣୀ
ପ୍ରଥମସ୍କନ୍ଧରେ ଯାହା ଶୁଣିମା ପ୍ରମାଣି ।
ନାରଦ ଗୋସାଇଁ ଆଗେ ବ୍ରହ୍ମାଛନ୍ତି କହି
ସେ କଥାଯାକ ଏବେ ତୁ ଶୁଣ ମନଦେଇ ।
ସକଳ ଘଟର ମଧ୍ୟେ ବିଜେ ନାରାୟଣ
ଆତ୍ମାସ୍ୱରୂପେ ସବୁରି ହୋଇଛନ୍ତି ପ୍ରାଣ ।
ଇନ୍ଦ୍ରଗଣ ଉପରେ ସେ ଅଟନ୍ତି ଈଶ୍ୱର
ପ୍ରକୃତିରେ ଭୁଲି ଭୋଗନ୍ତି ଯେ ସର୍ବ ନର ।
ଆତ୍ମା ଯେ ଅକ୍ଷୟ ବ୍ରହ୍ମ ସଦାଦିନେ କ୍ଷରି
ପ୍ରକୃତି ବୋଧ କରନ୍ତି କର୍ମ ଆତ୍ମା କରି ।

ପ୍ରକୃତି ଯାବତ ଶ୍ରୁତି ରସ କରେ ଭୋଗ
ପଦ୍ମପତ୍ର ଜଳପ୍ରାୟେ ପ୍ରକାଶଇ ଅଙ୍ଗ ।
ସୂକ୍ଷ୍ମରେଣୁ ପ୍ରାୟ ଆତ୍ମା ଦେହେ ବସିଥାଇ
ନାନା ସୁଖ ଦଣ୍ଡ କ୍ଳେଶ ପ୍ରକୃତି ଭୋଗଇ ।
ଶରୀର ଯେ ଆତ୍ମାଗୋଟି ବିଳସଇ ବସି
ଏ ରୂପେ ଯେ କ୍ରୀଡ଼ା କରୁଛନ୍ତି ବ୍ରହ୍ମରାଶି ।
ସେ ବ୍ରହ୍ମ ପୁରୁଷଙ୍କୁ କେ ଚିହ୍ନି ନ ପାରନ୍ତି
କେବଳ ମହିମା କିଛି ମୁଖେ ଉଚ୍ଚାରନ୍ତି ।
ସେ ପ୍ରଭୁ ଭୋଗ ଭୁଞ୍ଜନ୍ତି ହୋଇ ଚତୁର୍ଭୁଜ
ମଣିମା ମଣିମା ଆଦି ଅଷ୍ଟ ଅଇଶ୍ୱର୍ଯ୍ୟ ।
ଯଶଶିରୀ ସମ୍ପତ୍ତି ଯେ କ୍ଷମା ଦୟାବାନ
ନିର୍ଭାକରି ଏମାନେ ପାରନ୍ତି ଭଗବାନ ।
ସାତ୍ତ୍ୱିକ ଧର୍ମ ବୈଷ୍ଣବ ଧର୍ମ ଆଦି ଯେତେ
ଶ୍ରୀହରିର ପାଦେ ଚିତ୍ତ ଦ୍ୟନ୍ତି ଅନୁବ୍ରତେ ।
ସ୍ୱୟମ୍ଭୁ ଯେବେଣ ବିଷ୍ଣୁ ହରି ନାରାୟଣ
ଯଦୁବଂଶେ ଅବତାର ହେଲେ ଆସି ପୁଣ ।
ଶ୍ରୀକୃଷ୍ଣ ଅବତାର ଯେ ହେଲେ ଭାବଗ୍ରାହୀ
ଜନ୍ମିଲେ ଦେବକୀ ଗର୍ଭେ ଆସି ଦେହ ବହି
ଯଦୁବଂଶେ ଜନ୍ମ ନାମ ବହି ଯଦୁପତି
ପ୍ରାଞ୍ଜଳ ଭାବେ କହିବା ଶୁଣ ତାଙ୍କ କୀର୍ତ୍ତି ।
ଶ୍ରୀକୃଷ୍ଣ ଅବତାର ଯେ ହେଲେ ଭଗବାନ
ହରି ହର ବୋଲି ଯାକୁ କରନ୍ତି କୀର୍ତ୍ତନ ।
ଅନୁଭବ ଥିଲେ ପାଇ ଶୁଣ ଜ୍ଞାନତତ୍ତ୍ୱ
ସେ ଲୋକଟିକୁ ସଂସାରେ ବୋଲି ମହାଭକ୍ତ
ଜ୍ଞାନୀମାନଙ୍କ ଆଶ୍ରୟ ଅଟନ୍ତି ଯେ ବ୍ରହ୍ମ
ଭକ୍ତ ସେ ଜାଣନ୍ତି ଏକା ଅନ୍ୟ ନାହିଁ କ୍ଷମ ।
ନାରଦ କହିଣ ତାହା ଅଛନ୍ତି ବ୍ୟାସଙ୍କୁ
ବୁଝାଇଲେ ଦଶଶ୍ଳୋକ ଭାଗବତ ଯାକୁ ।
ବଦ୍ରିକା ଆଶ୍ରମେ ପୁଣି ବ୍ୟାସ ତପୋବନ୍ତ
କହିଲେ ଅଠରସସ୍ର ଶ୍ଳୋକ ଭାଗବତ ।
ଭାଗବତ ଅର୍ଥଯାକ ବ୍ୟାସ ଏକା ଜାଣି
ଗୋଚରେ ସେ କଲେ ତିନି ଜନ୍ମକଥା ଜାଣି
କହିବା ତୋ ପିତାମହ କଥା ଏବେ ପୁଣ
ହସ୍ତିନା ପଞ୍ଚକଟକେ ସେହି ନୃପରାଣ ।
ଦୂର୍ଯ୍ୟୋଧନ ବୋଲିଣ ସେ ସୋମବଂଶ ରାଜା
ଲକ୍ଷେ ନୃପତି କରନ୍ତି ତାର ପାଦପୂଜା ।
ତୋର ପିତାମହ ପୁଣି ଅଟେ ଭୀମସେନ
ସେ ପୁଣି ଦୁର୍ଯ୍ୟୋଧନର କରେ ଜାନୁଭଗ୍ନ ।
ଜାନୁଭଗ୍ନ କରିଣ ସେ ବାହୁଡ଼ି ଆସନ୍ତେ
କୃଷ୍ଣ ଅଶ୍ୱଥାମା ଦେଖି ଉଠି କୋପଚିତ୍ତେ ।
ଦୁର୍ଯ୍ୟୋଧନ ରାଜାପାଶେ ମିଳନ୍ତେ ଯେ ଯାଇ
ମାନଗୋବିନ୍ଦ କାନ୍ଦିଲା ତାଙ୍କ କଷ୍ଟ ଚାହିଁ ।
ଦୂର୍ଯ୍ୟୋଧନ ରାଜାଙ୍କର କ୍ରନ୍ଦନ ସେ ଦେଖି
ବୋଇଲେ ହୋ ରାଜା କିମ୍ପା ହେଉଛୁନିର୍ମାଖି
ସେନାପତି କରିଦିଅ ଆମ୍ଭଙ୍କୁ ତୁ ଶାଢ଼ୀ
ପାଣ୍ଡବଙ୍କ ମୁଣ୍ଡ ଧରି ଆସିବୁ ବାହୁଡ଼ି ।
ସେହିଠାରୁ କରିବୁ ତୁ ପୃଥ୍ୱୀ ବଇଭୋଗ
ଏ କଥାରେ ଆଉ ତୁ ନ ଘେନ ବଇରାଗ ।
ଏତେ କହି ଶାଢ଼ୀବାନ୍ଧି ରାଜା ହସ୍ତୁ ନେଇ
ଇନ୍ଦ୍ରପ୍ରସ୍ଥ ରାଜ୍ୟେ ଯାଇ ପ୍ରବେଶିଲେ ସେହି ।
ଦେଖିଲେ ପାଣ୍ଡବେ କେହି ନାହାନ୍ତି ସେଘରେ
ପଲ୍ୟଙ୍କେ ଅଛନ୍ତି ଶୋଇ ପାଞ୍ଚାଳି କୁମରେ
ଦେଖି ଅଶ୍ୱଥାମା ଛେଦି ଦେଲା ତାଙ୍କ ଶିର
ପାଣ୍ଡବେ ମଲେ ପାଞ୍ଚିଲା ମନ ମଧ୍ୟେ ତାର
ଧନୁହୁଳେ ପାଞ୍ଚଗୋଟି ମୁଣ୍ଡଭାର କରି
ଧାଇଁଲା ସେ ଶ୍ରଦ୍ଧାବନ୍ତ ହୋଇ ଧନୁ ଧରି ।
ଦୂର୍ଯ୍ୟୋଧନର ଆଗରେ ଥୁଅନ୍ତେ ସେନେଇ
ଚକ୍ଷାଳେ ଚିହ୍ନିଲା ରାଜା ପୁତ୍ରଙ୍କୁ ଅନାଇ ।
ପାଞ୍ଚାଳୀ କୁମରେ ବୋଲି ମନରେ ପାଞ୍ଚିଲା
କେଡ଼େକୃତ୍ୟ ଅଶ୍ୱଥାମା କଲୁହେ ବୋଇଲା
ପାଣ୍ଡବଙ୍କୁ ନ ମାରିଣ ଆଣୁ ପୁତ୍ରେ ମାରି
ବ୍ୟର୍ଥେ କଲୁ ଆମ୍ଭେ ଆମ୍ଭ ବଂଶ କ୍ଷୟ କରି ।
ଆହେ ଅଶ୍ୱଥାମା ଏହା କାହିଁପାଇଁ କଲୁ
ବାଳୁତ ପୁତ୍ରଙ୍କୁ ମୋର କି ବୋଲି ମାଇଲୁ ।
ଏତେବୋଲି ରୋଦନ ସେ ଦୁର୍ଯ୍ୟୋଧନ କଲା
ଆହା ମୋର ପୁତ୍ର ବୋଲି ପ୍ରାଣ ବିସର୍ଜିଲା ।
ପାଣ୍ଡବ ପାଞ୍ଚପୁତ୍ରଙ୍କ ମୃତ୍ୟୁ କର୍ଣ୍ଣେ ଶୁଣି
କାନ୍ଦିଣ ଦ୍ରୌପଦୀ ଦେଖି ଲୋଟନ୍ତି ଧରଣୀ ।
ଦ୍ରୌପଦୀଙ୍କ ଶୋକ ଦେଖି କୃଷ୍ଣ ଫାଲଗୁନୀ
ଦ୍ରୌଣୀ ମାଇଲା ଜାଣିଲେ ପ୍ରଭୁ ଚକ୍ରପାଣି ।
ଦ୍ରୌପଦୀଙ୍କ ଶୋକ ଦେଖି କୃଷ୍ଣ ଧନଞ୍ଜୟେ
ନନ୍ଦିଘୋଷେ ଗଲେ ଚଢ଼ି ଅଶ୍ୱଥାମା ଯାଏ ।
ବାଟରେ ଦେଖିଣ ତାକୁ କଲେ ମହାଯୁଦ୍ଧ
ଅଶ୍ୱଥାମାକୁ ଜିଣିଣ କାଟି କଟିବନ୍ଧ ।
ମଥାମଣି ଛଡ଼ାଇଣ ରଥେ ତାକୁ ବାନ୍ଧି
ଯୁଧିଷ୍ଠିଙ୍କ ପାଶେ ନେଇଦେଲେ ଦୟାନିଧି
ଭୀମସେନ ହାତେ ତାଙ୍କୁ କରି ସାତବେଣ୍ଟି
ଆବର ତା ନିଶ ଯାକ ଦେଲେ ପୁଣି କାଟି ।
ଯୁଧିଷ୍ଠି ତାକୁ ନ ଦେଖି କଲେକ ଆସ୍ବଦ ।
ଗୁରୁପୁତ୍ର ବୋଲି ତାକୁ ନକଲେ ପ୍ରମାଦ ।

ରଥରୁ ତା ଡ଼ୋର କାଟି ଛିଡ଼ାଇଣ ଦେଲେ
ତଛେ ଅଶ୍ୱଥାମା ତହୁଁ ପଳାଇଣ ଗଲେ ।
ମହା ଅପମାନ ପାଇ ଦ୍ରୋଣଙ୍କ କୁମର
ପାଣ୍ଡବେ ମାରିବି ବୋଲି ପେଶେ ବ୍ରହ୍ମଶର
ତାହା ଶୁଣିଣ ଅର୍ଜୁନ ଧଇଲେ ଗାଣ୍ଡୀମ
ପେଶିଲେ ସେ ମନଭେଦୀ ଶର ହୋଇ ତମ
ଶ୍ରୀକୃଷ୍ଣ ଥିବାରୁ ପାଶେ ବ୍ରହ୍ମଶର ଗଲା
ଉତ୍ତରାବଳୀ ଗର୍ଭରେ ଯାଇଣ ପଡ଼ିଲା ।
ଅଙ୍ଗୁଷ୍ଠି ପ୍ରମାଣେ ଗର୍ଭେ ଥିଲା ଯେଉଁ ବାଳ
ଏ ପୁତ୍ର କରିବ ବୋଲି ଜାଣି ଆଦିମୂଳ ।
ସୁଦର୍ଶନ ଚକ୍ରକୁ ଯେ ପେଶିଲେ ସେକ୍ଷଣି
ବ୍ରହ୍ମଶରକୁ ନାଶି ରଖିଲେ ପୁତ୍ରମଣି ।
ପାଣ୍ଡବ ବଂଶକୁ ରକ୍ଷା କରିବା ନିମନ୍ତେ
କେହୁ ନ ଜାଣୁ ରଖିଲେ ତାହା ଜଗନ୍ନାଥେ
ଗର୍ଭ ବାଳକକୁ କୃଷ୍ଣ ଚକ୍ରେ ରକ୍ଷାକଲେ
ଜନ୍ମ ହୋନ୍ତେ ପରୀକ୍ଷିତନାମ ତାର ଦେଲେ ।
ମାତାର ଗର୍ଭରୁ ତୋତେ କୃଷ୍ଣ ରଖିଛନ୍ତି
ଏବେ ଜାଣ କରିବେ ସେ ପ୍ରଭୁ ତୋର ଗତି
ତୋହର ପିତାମହ ଯେ ଯୁଧିଷ୍ଠି ରାଜନ
ପଞ୍ଚ କଟକ ଯାକେ ସେ ହେଲେ ନରରାଣ ।
ସଂସାରଯାକେ ଅନେକ ଧର୍ମକୀର୍ତ୍ତି କରି
ଯୁଧିଷ୍ଠିଙ୍କ ପ୍ରାୟ ରାଜା ନାହିଁ ତିନିପୁରୀ ।
ଧର୍ମରେ ପାଳିଲେ ସେହି ଚରାଚର ସୃଷ୍ଟି
ପୃଥ୍ୱୀଯାକ ଖୋଜିଲେକ ନାହିଁ ଜଣେ କଷ୍ଟୀ ।
ଆବର ସେ କଲେ ପୁଣି ଅଶ୍ୱମେଧ ଯାଗ
ଅଇଶ୍ୱର୍ଯ୍ୟ ଲଭି ପୁଣି କଲେ ପୃଥ୍ୱୀ ଭୋଗ ।
କଳିଯୁଗ ଭୋଗ କଲେ ଛତିଶ ବରଷ
ତହିଁ ଉତ୍ତାରୁ ତୁମ୍ଭଙ୍କୁ ଦେଲେ ରାଜ୍ୟଘୋଷ ।
ରାଜ୍ୟଶାଢ଼ୀ ତୁମ୍ଭ ମଥା ପରେ ବାନ୍ଧିଦେଇ
ରାଜନୀତିମାର୍ଗ ପନ୍ଥା କହିଲେ ବୁଝାଇ ।
ଶ୍ରୀକୃଷ୍ଣଙ୍କ ବଇକୁଣ୍ଠ ଯିବା କଥା ଶୁଣି
ସ୍ୱର୍ଗ ଆରୋହଣ କଲେ ପାଣ୍ଡବେ ଯେ ପୁଣି ।
ସେହିଦିନରୁ ପରୀକ୍ଷ ହୋଇଲେ ରାଜନ
ଦିଗବିଜେ କରି ପୁଣି ପୃଥ୍ୱୀ ରାଜାମାନ ।
କଳିଯୁଗ ପୁରୁଷକୁ ପରୀକ୍ଷିତ ଦେଖି
ବାନ୍ଧିରଖି ତାକୁ କଲେ ସଂସାରକୁ ସୁଖୀ ।
ଏକଷଠି ବର୍ଷଯାଏ ରାଜ୍ୟ ଭୋଗ କଲେ
ଅଦୃଷ୍ଟ ବାମ ହେବ ନ ଜାଣେ କେହିଭଲେ ।
ଏଥୁଅନ୍ତେ ଶୁଣ ପରୀକ୍ଷିତ ରାଜା ବାଣୀ
ବୈଶାଖ ମାସେ ପାରିଧି ବିଜେ କଲେପୁଣି ।
ମୃଗ ବ୍ୟାଘ୍ର ଆଦି ପଶୁ ଖୋଜି ବନଯାକେ
ପାରିଧି ନିଷ୍ଫଳ ହେତୁ ଚଳେ ମନଦୁଃଖେ ।
ଆସୁ ଆସୁ ମିଳିଲେକ ଶମୀକ ଆଶ୍ରମେ
ତୃଷାରେ ଋଷିଙ୍କି ଜଳ ମାଗିଲେ ସେ ଶ୍ରମେ
ଶମୀକ ଋଷି ଯେ ଏଣେ ତପେ ଛନ୍ତି ବସି
ରାଜା ମାଗିବା କଥା ନ ଜାଣେ ବ୍ରହ୍ମଋଷି ।
ମନମଧ୍ୟେ ମହାକୋପ ବହି ଦଣ୍ଡଧାରୀ
ବୋଲେ କି ତପ କରୁଛି ଏହି ବ୍ରହ୍ମଚାରୀ ।
ଆମ୍ଭେ ଏଡ଼େ ଆକୁଳେ ମାଗନ୍ତେ ଜଳଟିକେ
ନ ଶୁଣି ବସିଛି ଧ୍ୟାନକରି ଅଧୋମୁଖେ ।
ଅଦୃଷ୍ଟ ବାମ ବେଳକୁ କେଡ଼େ ରାଜା ଦେଖ
ଚିତ୍ତ ଭ୍ରମ କରି ମନେ ହୋଇଲା ବିମୁଖ ।
ଚାହିଁଲାକ ଚାରିଦିଗେ ମନର ଉଦ୍‌ବେଗ
ଦେଖିଲାକ ମୃତ ସର୍ପ ପଡ଼ିଅଛି ଆଗେ ।
ସେ ସର୍ପ ଆଣି ଋଷିଙ୍କ ଗଳାରେ ଲମ୍ବାଇ
ରାଜ୍ୟକୁ ବୋଲିଣ ରାଜା ଆସିଲେ ପଳାଇ ।
ଏଥୁଅନ୍ତେ ମିଳିଲେକ ଆସି ଋଷିବଳା
ଦେଖିଲେ ଲମ୍ବିଛି ପିତାକଣ୍ଠେ ସର୍ପମାଳା ।
ରାଜାକୁ ଯେ ଶାପଦେଲେ ହୋଇମହାକୋପ
ବୋଇଲେ ସପ୍ତଦିନକେ ଦଂଶୁ ତୋତେସର୍ପ
ଋଷି ଅଭିଶାପ ଦେବା କଥା ରାଜା ଜାଣି
ଜନମେଜୟ ପୁତ୍ରଙ୍କୁ ରାଜ୍ୟ ଦେଲେ ପୁଣି ।
ସିଂହାସନେ ବସାଇଣ ବାନ୍ଧି ପାଟଶାଢ଼ୀ
ମିଳିଲେ ଗଙ୍ଗାତଟରେ ରାଜ୍ୟଘୋଷ ଛାଡ଼ି ।
ସେ ଗଙ୍ଗାତୀରରେ ବସି ପାତି କୁଶଶଯ୍ୟା
ବସିଲେ ଶୁକଦେବଙ୍କୁ ଧ୍ୟାୟି ମହାରାଜା ।
ଜାଣିଣ ସେ ଶୁକଦେବଋଷିଗଣ ଘେନି
ରାଜାର ପାଶେ ମିଳିଲେ ଆସି ତପୋଧନୀ
ଋଷିଗଣଙ୍କୁ ଦେଖିଣ ପରୀକ୍ଷିତ ରାଜା
ସମସ୍ତ ଋଷିଙ୍କ ପାଦେ କଲେ ଦିବ୍ୟପୂଜା ।
ବସିଲେ ଆସନମାନ ପାଇ ସର୍ବଋଷି
ଶୁକଦେବଙ୍କୁ ଯେ ପୂଜା କଲେ କୁରୁବଂଶୀ ।
ଆସନ ପଦାସନକୁ ଦେଇ ପୂଜାକରି
ବୋଇଲେ ଋଷିଶାପୁ କି ରୁପେ ହେବି ପାରି
ଏତିକି ଦୟା କରିବେ ମୋତେ ଶୁକଦେବ
ପୁରାଣ ଶୁଣିଲେ ଏକା ତରିବି କହିବ ।
ହସିଲେ ରାଜାର ବାକ୍ୟ ଶୁଣି ତପୋବନ୍ତ
ବୋଇଲେ କହିବା ତେବେ ଶୁଣ ଭାଗବତ ।
ନାରଦ ଗୋସାଇଁ ଆଗେ ବ୍ରହ୍ମାଛନ୍ତି କହି
ଷଡ଼ ସମ୍ବାଦରେ ଭାଗବତ ଅଛିହୋଇ ।

ପ୍ରଥମସ୍କନ୍ଧ ଠାରୁ ଦ୍ୱାଦଶସ୍କନ୍ଧ ଯାଏ
ଶୁଣ ଶ୍ରୀଭାଗବତ ଏ ପୁରାଣ ନିଶ୍ଚୟ ।
ଆଦ୍ୟରୁ ପ୍ରଥମସ୍କନ୍ଧ ଊନବିଂଶ ଅଧ୍ୟାୟ
କହିଲେକ ଶୁକ ଶୁଣିଲେକ ନୃପ ସିଦ୍ଧା ।
ଏଠାରୁ ପ୍ରଥମସ୍କନ୍ଧ ହେଲା ସମାପତ
କହନ୍ତି ଯେ ଶୁକମୁନି ଶୁଣ ପରୀକ୍ଷିତ ।
ବିପ୍ର ପୀତାମ୍ବର ଦାଶ ମୂର୍ଖ ନରାଧମ
ପଦେ ପଦେ ଅର୍ଥ ବୁଝି ଲେଖେ ଶାସ୍ତ୍ରଧର୍ମ ।
ଶ୍ରୀ ଶୁକମୁନି ଚରଣେ ନିତ୍ୟେ ମୋର ସେବା
ବିପ୍ର ପୀତାମ୍ବରକୁ ଯେ ମୁକ୍ତି ଗତି ଦେବା ।
ଏଥୁ ଅନନ୍ତରେ ପରୀକ୍ଷିତ ନାମେ ରାଜା
ଶୁକଦେବଙ୍କ ଚରଣେ କଲେ ପାଦପୂଜା ।
ବୋଇଲେ ଭୋମୁନି ମୋତେ କହ ଭାଗବତ
ପ୍ରଥମସ୍କନ୍ଧ ଶୁଣିଣ ହୋଇଲି ମୁକତ ।
ବ୍ୟାସସୁତ ବୋଇଲେ ହେ ଶୁଣ ଦେବରାଜା
ଦ୍ୱିତୀୟସ୍କନ୍ଧ ଶୁଣି ନିର୍ମଳ କର ମଜ୍ଜା ।
ପରମାତ୍ମା ଜାଣ ସେହୁ ଯେବଣ ପୁରୁଷ
କରନ୍ତି ବିରାଟରୂପ ବହି ହୃଦେ ବାସ ।
ସେ ବିରାଟ ପୁରୁଷ ଯେ ପରମାତ୍ମା ହୋଇ
ସକଳ ଘଟେ ପ୍ରକାଶି ପଦ୍ମେ ବସେ ଯାଇ ।
ସମସ୍ତେ ପ୍ରକାଶ ହେବା କଥା ଦେଖୁଥାନ୍ତି
ଆତ୍ମାର ଆଶା ଯେ କେହି ଚିହ୍ନି ନ ପାରନ୍ତି
ଦିଶନ୍ତି ପ୍ରତ୍ୟକ୍ଷେ ଦୃଷ୍ଟି ଆଗେ ସବୁ ନେତ୍ରେ
ଏକଥା ପ୍ରମାଣ ବୋଲି ନ ଜାଣେ ସଗୋତ୍ରେ
ସେ ପରମ ଆତ୍ମାଗୋଟି କେଉଁ ଦ୍ୱାରେଥାନ୍ତି
ସେ ସ୍ଥାନ ଗୋଚର କେହି ଜାଣି ନ ପାରନ୍ତି
ଏ ଜୀବର ଉଦେ ଅସ୍ତ ଅଟେ ଯେଉଁ ଭୂମି
ପ୍ରକାଶ ପାଏ ଶରୀରଯାକେ ଆତ୍ମା ଭ୍ରମି ।
ବୁଝିଲେ ତ ଘରେ ସେହି ବାହାରେତସେହି
ସଂସାରେ ଘରେ ନଥିବା ଲୋକ କେହିନାହିଁ
ଆତ୍ମା ଅଭୟ ବ୍ରହ୍ମ ଏ କଥା ନିଶ୍ଚେ ଜାଣ
ଆତ୍ମା ଏକ ନାରାୟଣ ସବୁରି ସେ ପ୍ରାଣ ।
ଜୀବ ଆତ୍ମା ପରମାତ୍ମା ଏକ ଶରୀରଟି
ଏ ପିଠି ଅଟେ ବ୍ରହ୍ମ ସେ ପିଠି ପରମଟି ।
ଆତ୍ମା ପରମଆତ୍ମା ଯେ ଏକସ୍ଥାନେ ବସି
ବିହରନ୍ତି ହୃଦେ ଜୀବ ପରମ ଯେ ମିଶି ।
ଆତ୍ମାକୁ ଯେ ପରମକୁ ଘେନି ଏକମତେ
କହିବା ତାର ନିର୍ଣ୍ଣୟ ଶୁଣ ଭାଗବତେ ।
ତ୍ରିକୁଟ ହ୍ରଦେ ପଶିଣ ଗମି ସସ୍ତ୍ରବଳେ
ପ୍ରାଣପୁରୁଷକୁ ଦେଖିବେ ଯେ ବେନିଡ଼ୋଳେ

ଶ୍ରୀବ୍ରହ୍ମା ନାରଦ ଋଷିଙ୍କର ଏ ସମ୍ବାଦ
ଦ୍ୱିତୀୟସ୍କନ୍ଧ ବାଣୀ ଯେ ପରମାତ୍ମା ପଦ ।
ନାରଦ ନାରୟଣ ଶ୍ରୀମୁଖୁ ଦୀକ୍ଷାପାଇ
କହିଲେ ଶ୍ଳୋକବ୍ୟାସଙ୍କୁ ସେ କୁଶଳେନେଇ
ବ୍ୟାସ ପାଇ ଅଷ୍ଟ ଦଶସସ୍ର ଶ୍ଳୋକ କଲେ
ଏହି ଭାଗବତ ବୋଲି ଶୁକଙ୍କୁ କହିଲେ ।
ସେହି ଶୁକ ଦେବ ଜାଣ ଅଟୁ ଆମ୍ଭେ ପୁଣି
ଆପଣଙ୍କୁ କହିଛୁ ଶ୍ରୀଭାଗବତ ବାଣୀ ।
ମହା ବିରାଟ ପୁରୁଷ ଯେଉଁ ଭଗବାନ
ତାହାଙ୍କ ଉତ୍ପତ୍ତି ସ୍ଥିତି କହିବା ହେ ଶୁଣ ।
ଶ୍ରୀବିଷ୍ଣୁ ଚବିଶ ଅବତାର କୀର୍ତ୍ତି ଲୀଳା
ଉତ୍ପତ୍ତି ସ୍ଥିତି ରୂପ ଏ ଅଟେ ଜ୍ଞାନକଳା ।
ଶ୍ରୀଦ୍ୱିତୀୟସ୍କନ୍ଧ ବାଣୀ ଅଟେ ଏ ଚରିତ
ଦଶ ଅଧ୍ୟା ଅର୍ଥ ଏହି ହେଲା ସମାପତ ।
ବିପ୍ର ପୀତାମ୍ବର ଦାଶ ସାଧୁଙ୍କ ପାଦକୁ
ଆଶ୍ରାକରି ରହିଅଛି ଭବୁ ତରିବାକୁ ।
ଏଥକୁ ହେ ସୁଜ୍ଞଜନ କର ମୋତେ ତ୍ରାହି
ସଂସାରୁ ତରିଯିବ ଶ୍ରୀଭାଗବତ ଗାଇ ।
ମହା ହୀନ ଦୁଃଖୀ ମୁହିଁ ଅଟେ ଭକ୍ତିଭାବେ
ସର୍ବ ସଙ୍ଗେ ଜଣେ ମୁଁ ଛପନ କୋଟି ଜୀବେ ।
ସେ ଛପନକୋଟି ଜୀବଆତ୍ମାଯାକ ମୋର
ନିତି ନିତି ପ୍ରଣାମ ମୁଁ କରେ ତିନିଥର ।
ସର୍ବ ଆତ୍ମାରେ କନିଷ୍ଠ ପୁତ୍ର ଅଟେ ମୁହିଁ
ବିପ୍ର ପୀତାମ୍ବର କହେ ଆତ୍ମା ଅନୁଧ୍ୟାୟି ।
ଶୁଣ ପରୀକ୍ଷ ତୃତୀୟସ୍କନ୍ଧର ଯେ ବାଣୀ
ବିଦୁର ଉଦ୍ଧବ ଦୁଇ ସମ୍ବାଦେ ଭାଳେଣି ।
ମଇତ୍ରେୟ ବିଦୂରଙ୍କୁ କହିଥିଲେ ଯାହା
ସେ କଥା ତୁ ସାବଧାନେ ଶୁଣ ନରନାହା ।
ପୁରାଣମାନଙ୍କ ମଧ୍ୟେ ଅଛି ଯେତେଭେଦ
କହିଲେ ତାହା ସୁଜ୍ଞାନେ ଆଣି ସବୁ ପଦ ।
ମହାପୁରୁଷମାନଙ୍କ ଯେତେକ ନିର୍ଣ୍ଣୟେ
ପଞ୍ଚପ୍ରକୃତିମାନଙ୍କୁ ସଞ୍ଚିଲା ହୃଦୟେ ।
ସପତାବରଣଙ୍କର ଯେତେକ ପ୍ରସଙ୍ଗ
ପୃଥ୍ୱୀର ଉତ୍ପତ୍ତି ପ୍ରଳୟ ସ୍ଥିତି ଯେ ମାର୍ଗ ।
କହିବାକୁ ଯେତେ ନାମ ସପ୍ତାବରଣର
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଧର୍ମ ନିରାକାର ।
ନିରଞ୍ଜନ ନିରାଲମ୍ବ ଏହି ସାତ ମୂର୍ତ୍ତି
ପ୍ରଳୟ ଅନ୍ତେ ପୃଥ୍ୱୀକୁ ସର୍ଜନା କରନ୍ତି ।
ଶ୍ରୀବିରାଟ ପୁରୁଷଟି ଯେବଣ ସ୍ୱରୂପ
କାଳ ଯେ କୁଶଳ ଆଦି ଯେଣେ ସୂକ୍ଷ୍ମରୂପ ।

ଶ୍ରୀନାଭିକମଳୁ ବ୍ରହ୍ମା ହୋଇଲେ ଉତ୍ପତ୍ତି
ପ୍ରଳୟ ଅନ୍ତେ ହୋଇଲା ପୁଣି ତାର ସ୍ଥିତି ।
ବରାହ ଅବତାର ଯେ ହୋଇ ପୁଣି ହରି
ପୃଥ୍ୱୀକି ଦନ୍ତ ଅଗ୍ରରେ ଧଇଲେ ଉଦ୍ଧରି ।
ଆଦ୍ୟରେ ହୋଇଲା ଅସୁରେକ ଅବତାର
ହିରଣ୍ୟାକ୍ଷ ବୋଲି ଜାଣ ଅଟେ ନାମ ତାର
ତାହାକୁ ସଂହାରି ପ୍ରଭୁ ଉଦ୍ଧରିଲେ ମହୀ
ଦୈତ୍ୟକୁ ମାରିଣ କ୍ଷିତି ରଖି ଭାବଗ୍ରାହୀ ।
ଦେବତା ଗନ୍ଧର୍ବ ଯକ୍ଷ ରକ୍ଷ ସୁରନର
କିନ୍ନର ସିଦ୍ଧ ଚାରଣ ଯେତେ ବିଦ୍ୟାଧର ।
ବ୍ରହ୍ମାଙ୍କ ଶ୍ରୀଅଙ୍ଗରୁ ଏ ସର୍ବେ ହେଲେ ଜାତ
ସ୍ଥାବର ଜଙ୍ଗମ କୀଟ ପତଙ୍ଗ ସହିତ ।
ଚାରିଖାନି ଚାରିଯୁଗ ସମ୍ପ୍ରଦା ଯେ ଚାରି
ଚାରିହିଁ ସମ୍ପ୍ରଦା ଚାରି ଯେ ତିଳକଧାରୀ ।
ସ୍ୱର୍ଗ ମର୍ତ୍ତ ପାତାଳ ଉତ୍ପତ୍ତି ବିଧି ଯେତେ
ସବୁ କଥା ସର୍ଜିଣ ତା ରଖିଲେ ଜଗତେ ।
ଦିବସ ରାତ୍ର ଯେ ସନ୍ଧ୍ୟା କଲେ ତିନିକାଳ
ଉତ୍ପତ୍ତି ସ୍ଥିତି କଥାଏ ବ୍ରହ୍ମାଙ୍କର ମୂଳ ।
ଯାବତ ସର୍ଜି ଶରୀର ବ୍ରହ୍ମା ଦେଲେ ଛାଡ଼ି
ସେ ଦେହକୁ ବେନି ଭାଗ କଲେକ ବାହୁଡ଼ି ।
ନବୀନ ପିଣ୍ଡ ଧରିଣ ଆଗେ ଉଭା ହେଲେ
ତପ୍ତହାଟକ ପରାୟ ଜ୍ୟୋତି ପ୍ରକାଶିଲେ ।
ଯେବଣ ଦେହ ଛାଡ଼ିଣ କଲେ ବେନି ଭାଗ
ଅର୍ଦ୍ଧେକ ସ୍ତିରୀ ଅର୍ଦ୍ଧେକ ପୁରୁଷର ଅଙ୍ଗ ।
ସତ୍ୟରୂପା ସ୍ୱାୟମ୍ଭୁବ ବୋଲି ନାମ ଦେଲେ
ବ୍ରହ୍ମାଙ୍କ ପରାୟେ ସୃଷ୍ଟି ସର୍ଜନା ସେ କଲେ
ଏହି ବେନିଜଣ ଜାତ ହେଲେ ପତିପତ୍ନୀ
ସଂସାରେ ମନୁ ହୋଇଣ ପାଳିଲେ ମେଦିନୀ
ସେ ସତ୍ୟ ପୁରୁଷଠାରୁ ସୁତେ ଜନମିଲେ
ଉତ୍ତାନପାଦ ସେ ପ୍ରିୟବ୍ରତ ନାମ ଦେଲେ ।
ପୁଣିହିଁ ସେ ଏକାଦଶ ରୁଦ୍ର କଲେ ଜନ୍ମ
ଶୁଣ ପରୀକ୍ଷ କହନ୍ତି ଏକା ଶୁକବ୍ରହ୍ମ ।
ଆବର ଜନମ କଲେ ସର୍ବ ଋଷିଗଣ
ତାହାଙ୍କ ନାମ କହିବା ମଧ କିଛି ଶୁଣ ।
ସନକ ସନନ୍ଦ ସନାତନ ବୋଢୁ ଜାତ
କପିଳ ଆହୁତି ପଞ୍ଚଶିଖ ଏହି ସାତ ।
ସ୍ୱାୟମ୍ଭୁବ ମନୁଙ୍କର ଜାତ ତିନିପୁତ୍ର
ଆବର ଯେ ତିନି କନ୍ୟା ଜାତ ନିଜ ଗୋତ୍ର
ଚଉଦଜଣ ପୁଣି ଶ୍ରୀଦଶ ପ୍ରଜାପତି
ବ୍ରହ୍ମାଙ୍କର ନିଜ ପୁତ୍ର ସେମାନେ ବୋଲାନ୍ତି ।

କର୍ଦ୍ଦମ ବୋଲି ଯେବଣ ପୁତ୍ର ମହାଯତି
ତାହାଙ୍କ ଭାରିଯା ନାମ ଅଟେ ଦେବହୂତି ।
ସେ ମାତାଗର୍ଭରୁ ଜାଣ ଜାତ ନବ କନ୍ୟା
ନବ ପ୍ରଜାପତି ବିଭାହେଲେ ତାଙ୍କୁ ସିନା ।
କର୍ଦ୍ଦମ ଋଷି ବୀର୍ଯ୍ୟରୁ କପିଳ ଯେ ଜାତ
ମାତାଙ୍କ ଆଗେ କହିଲେ ସେହି ଜ୍ଞାନତତ୍ତ୍ୱ ।
ବିଷ୍ଣୁଙ୍କ ମହିମାଯାକ ମାତାଙ୍କୁ ଯେ କହି
ବୈକୁଣ୍ଠକୁ ଚଳିଗଲେ କପିଳ ଗୋସାଇଁ ।
ତୃତୀୟସ୍କନ୍ଧ ତେତିଶ ଅଧ୍ୟାର ଯେ ବାଣୀ
ପରୀକ୍ଷ ଆଗେ କହନ୍ତି ବସି ଶୁକମୁନି ।
ବିପ୍ର ପୀତାମ୍ବର ଦାଶ ବାଳଭାବ ପ୍ରାୟେ
ତୃତୀୟ ସ୍କନ୍ଧରୁ ଆଣି ଲେଖିଲେ ଥୋକାଏ ।
ଅଥର୍ପା ପୁରୁଷ ପ୍ରାୟ ଅଟେ ମୋର ବୁଦ୍ଧି
ପାଦେ କରୁ କରୁ ଆରପାଦ ନୋହେ ସିଦ୍ଧି ।
ଏଡ଼େଭଳି ପୁରୁଷ ମୁଁ ପଦ ଯୋଡ଼ିବାକୁ
ଏଥକୁ ସୁଜନେ ଦୟା କର ଅଧମକୁ ।
ଅଗାଧ ସମୁଦ୍ର ଅଟେ ଏହି ଗ୍ରନ୍ଥ ବାଣୀ
ଶୂନ୍ୟକୁ ପକାଇ ମୁହିଁ ଚଢ଼ୁଛି ନିଶୁଣି ।
ଚାଳିଶ ସହସ୍ର ଏବେ ହେଲା ପଦ ବନ୍ଧ
ଆଉ ଦଶ ସହସ୍ରରେ ହେବ ମନବୋଧ ।
ଏଥକୁ ସୁଦୟା ମୋତେ କରିବେ ନୃସିଂହ
ଚତୁର୍ଥସ୍କନ୍ଧରୁ କିଛି ଲେଖିବି ପ୍ରସଙ୍ଗ ।
ପରୀକ୍ଷିତେ କହନ୍ତି ଯେ ଶୁକ ମହାତମା
ଚତୁର୍ଥସ୍କନ୍ଧରୁ କିଛି ଥୋକାଏ ଶୁଣିମା ।
ନବପ୍ରଜାପତିଙ୍କର ଯେ ରୂପେ ଜନମ
ତୃତୀୟସ୍କନ୍ଧରେ ଶୁଣିଅଛି ତାଙ୍କ ନାମ ।
ବୁଝି ତାଙ୍କ ବଂଶାନୁଚରିତର ଯେ ବାଣୀ
ଯେରୂପେ ପୁରାଣେ କହିଛନ୍ତି କୁଶପାଣି
ଦକ୍ଷପ୍ରଜାପତି ପୁଣି କଲେ ମହାଯୋଗ
ସର୍ବଋଷିଙ୍କୁ ଲୋଡ଼ିଲେ ସେହି ମହାଭାଗ ।
ସଦାଶିବଙ୍କୁ ଏକା ସେ ବରଣ ନ କଲେ ।
ଈଶ୍ୱରଙ୍କ ଅଭିମାନେ ସତୀ ନାଶ ଗଲେ ।
ଆପଣ ଯାଗଭାଙ୍ଗିଲେକୋପେ ଆସି ରୁଦ୍ରଗଣ
ପଦେ କହନ୍ତି ସେ ଅର୍ଥ ଗଲାଣି ଜାଣିଣ ।
ଆବର ଶ୍ରୀରୁଦ୍ରଗୀତା ପ୍ରସଙ୍ଗ ଯେ ବାଣୀ
କହୁଁ କହୁଁ ସବୁ ଅର୍ଥ ଗଲାଣି ତା ଜାଣି ।
ତହିଁ ଉତ୍ତାରୁ ଶୁଣିମା ଧ୍ରୁବଙ୍କ ଚରିତ
ତପସ୍ୟା କରି ଲଭିଲେ ସେହି ଲକ୍ଷ୍ମୀକାନ୍ତ ।
ଧ୍ରୁବଙ୍କ ପ୍ରସଙ୍ଗ ଆଦି କେତେକ କାହାଣୀ
ଆପଣ ବୁଝିଗଲଣି ଏବେ ସବୁ ଜାଣି ।

ତହିଁଉତ୍ତାରୁ ଶୁଣିବା ପୃଥୁଙ୍କର କଥା
ଶ୍ରୀଭାଗବତ କଥା ଏ ଅକଳିତ ପନ୍ଥା ।
ପୃଥିବୀକି ଧେନୁ କହି ଦୁହିଁଲେ ସେ କ୍ଷୀର
ସେହିଠାବରୁ ସଂସାରେ ହେଲେ ସୁଖୀ ନର
ତହିଁ ଉତ୍ତାରୁ ପ୍ରାଚୀନ ବରହି ସମ୍ବାଦ
ବ୍ରହ୍ମଜ୍ଞାନୀ ଉପଦେଶ କହିଲେ ନାରଦ ।
ପ୍ରାଞ୍ଜଳ କରି କହିଲେ ତାହା ବ୍ରହ୍ମାସୁତ
ପୁରଞ୍ଜନଙ୍କ ଆଖ୍ୟାନ ଯେତେକ ଚରିତ ।
ଦଶ ପ୍ରଚେତାଙ୍କର ଯେ ହୋଇଲେ ନନ୍ଦନ
ଦକ୍ଷପ୍ରଜାପତି ବୋଲି ଦେଲେ ତାଙ୍କ ନାମ ।
ପ୍ରାଚୀନ ବରହି ବୋଲି ଯେଉଁ ମହାରାୟେ
ତାହାଙ୍କର ଜନମିଲେ ଦଶଟି ତନୟେ ।
ଜନ୍ମିଲା ଦଶ ପ୍ରଚେତାଙ୍କର ଏକପୁତ୍ର
ଜନମିଲେ ଏକମାତା ଗର୍ଭୁଧରି ଗାତ୍ର ।
ତାହାଙ୍କର ନାମ ଦକ୍ଷପ୍ରଜାପତି ବୋଲି
ତାଙ୍କ ଯଶ କୀର୍ତ୍ତିଯାକ ଗ୍ରନ୍ଥରେ କହିଲି ।
ଆପଣା ନ ଶୁଣୁ ଏହା ଗୋଚର ହେଲାଣି
ଶ୍ରୀଭାଗବତ ଗ୍ରନ୍ଥ ଏ ଅଟେ ପୁଣ୍ୟଧ୍ୱନି ।
ପ୍ରେମଶୀଳା ବୋଲି ଏକ ଅପସରୀ ଥିଲା
କଣ୍ଡୁଋଷି ବୀର୍ଯ୍ୟ ପଡ଼ି ଗର୍ଭ ସେ ହୋଇଲା
ତାହାର ଗର୍ଭରୁ ଏକ ଜନ୍ମିଲା କୁମାରୀ
ପ୍ରଚେତସ ଗଣ ତାକୁ ଗଲେ ରତି କରି ।
ତହୁଁ ପ୍ରଜାପତି ଏକ ହେଲା ପୁଣି ଜାତ
କହିବାରୁ ବୁଝି ତୁମ୍ଭେ ଗଲଣି ଯାବତ ।
କହନ୍ତି ଯେ ଶୁକ ବ୍ରହ୍ମା ଶୁଣନ୍ତି ନୃମଣି
ଅପୂର୍ବ ମହିମା ଏ ଶ୍ରୀଭାଗବତ ବାଣୀ ।
ଚତୁର୍ଥସ୍କନ୍ଧ ଭାଷା ଯେ ହେଲା ସମାପତ
କହନ୍ତି ଯେ ଶୁକମୁନି ଶୁଣେ ପରୀକ୍ଷିତ ।
ଏକତ୍ରିଂଶ ଅଧ୍ୟାୟ ଯେ ଅଟଇ ଏ ବାଣୀ
ବିପ୍ର ପୀତାମ୍ବରକୁ ଯେ ରଖ ଚକ୍ରପାଣି ।
ସୁପଣ୍ଡିତ ଜନଙ୍କର ପାଦେ ମୋର ଆଶ
ହେଜି ବୁଝି ନ ପାରିଣ କରୁଛି ସାହସ ।
ଶ୍ରୀଭାଗବତ ଗ୍ରନ୍ଥ ଏ ଅକଳିତ ବାଣୀ
ମୁଁ ଛାର କିସ ଲେଖିବି ତାହା ପରିମାଣି ।
ଭାଗବତ ଗ୍ରନ୍ଥରୁ ପୁଛିଲେ ପଦେ ମୋତେ
କହି ନ ପାରି ଘୁଞ୍ଚି ମୁଁ ପଳାଏ ଏକାନ୍ତେ ।
ସାଧୁଙ୍କର ପଛଆଡ଼େ ବସେ ଯାଇଁ ଲୁଚି
ଶୁଣଇ ଗୁପତେ ରହି ବ୍ରହ୍ମଜ୍ଞାନ କିଛି ।
ସେ ସାଧୁ ଗୋସାଇଁଙ୍କର ଚରଣେ ମୋ ଆଶ
କହଇ ଦୀନ ପାମର ପୀତାମ୍ବର ଦାଶ ।

ଶୁଣ ପରୀକ୍ଷ ପଞ୍ଚମସ୍କନ୍ଧ ସୁଧାବାଣୀ
ପ୍ରିୟବ୍ରତ ରାଜାକଥା ଯେମନ୍ତ କାହାଣୀ ।
ଜଡ଼ରାଜାଙ୍କର ପୁଣ ଯେବଣ ଚରିତ
ଋଷଭରୂପେ ବିଷ୍ଣୁଟି ହେଲେ ତହୁଁ ଜାତ
ଜଡ଼ଭରତ ରାଜାଙ୍କୁ ଯେବଣ ନନ୍ଦନ
ରଘୁରାଜାଙ୍କୁ କହିଲେ ଫେଡ଼ି ବ୍ରହ୍ମଜ୍ଞାନ ।
ତିନିଜନ୍ମେ ଯାଇ ସେ ଲଭିଲେ ବିଷ୍ଣୁଭକ୍ତି
ଜଡ଼ଭରତ ମହିମା ଅପାର ଏ କ୍ଷିତି ।
ତୁମ୍ଭେ ଏହି ପୁରାଣକୁ ଶୁଣି ବୁଝିପାର
କେତେପ୍ରକାର କରନ୍ତି ଅର୍ଥ କେତେ ନର
ବ୍ରହ୍ମାଣ୍ଡ ଭୂଗୋଳ କଥା କହିବାକ ଶୁଣ
ପୃଥ୍ୱୀକି ସପତ ଦ୍ୱୀପ ଖଞ୍ଜି ବିହି ଜାଣ ।
ଦ୍ୱୀପ ଗୋଟିକେ ସମୁଦ୍ର ଗୋଟିଏ ବଢ଼େଇ
ଏରୂପେ ଖଞ୍ଜା କରିଣ ଅଛି ଜଣାନାହିଁ ।
ସମୁଦ୍ରକୁ ସମୁଦ୍ର ଦ୍ୱିଗୁଣ ପ୍ରମାଣେଣ
ବ୍ୟାପିଣ ପ୍ରକାଶି ଅଛି ସଂସାର ଯାକେଣ
ଚବିଶକୋଟି ଯୋଜନ ଯେଉଁ ବସୁନ୍ଧରୀ
ଏ ପୃଥ୍ୱୀଯାକ ସମୁଦ୍ର ଅଛନ୍ତି ଆବୋରି ।
ଲୋକାଲୋକ ଗିରି ପରିଯନ୍ତେ ଯେତେମହୀ
ସବୁ କଥା ସରଜିଣ ଅଛି ଜାଣ ବିହି ।
ପର୍ବତ ସହିତେ ଜାଣ ନଦ ନଦୀମାନ
ଏହା ସଜ ହୋଇଅଛି ଚତୁର ଆନନ ।
ଜ୍ୟୋତିଶ୍ଚକ୍ର ଧ୍ରୁବଚକ୍ର ଯାଏ ଯେତେ କହି
ଶିଷମୁନା ଚକ୍ର ଜାଣ ଖ୍ୟାତ ଅଛି ହୋଇ
ପାତାଳପୁର ବର୍ଣ୍ଣନା ନାଗଙ୍କ ବିଧାନ
ଗଙ୍ଗା ଆଦି ନଦୀଙ୍କ ଚରିତ ଯେତେ ନାମ ।
ଶୁଣ ପରୀକ୍ଷ ପଞ୍ଚମ ସ୍କନ୍ଧର ଏ ଅର୍ଥ
ଛବିଶ ଅଧ୍ୟାରେ ହୋଇଅଛି ସମାପତ ।
ବିପ୍ର ପୀତ୍ମାମ୍ବର ଦାଶ ସାଧୁ ମୁଖୁ ଶୁଣି
ଅଧ୍ୟାୟକେ ପଦେ ପଦେ ଲେଖିଛି ବଖାଣି ।
ଶ୍ରୀବିଷ୍ଣୁ ଭକ୍ତ କଥାକୁ ଚୋରରୁ ଅଧିକେ
ସଂସାର କରିବେବୋଲି ଲେଖେ ଗ୍ରନ୍ଥବାକ୍ୟେ
ଅର୍ଥ ନ ଜାଣନ୍ତି ଅନର୍ଥିଆ ବୋଲୁଥାନ୍ତି,
ମୂର୍ଖଅଟେ ସଭାରେ କେ ମୋତେ ନବସାନ୍ତି
ଶ୍ରୀବିଷ୍ଣୁଭକ୍ତି ମୋହର ହୃଦେ ନ ଥିବାରୁ
ସୁପଣ୍ଡିତ ସଭା ଦେଖି ଲୁଚେ ଖଣ୍ଡଦୂରୁ ।
ସୁଜନମାନେ ମୋହର ଭକ୍ତି ଏକା ଚିହ୍ନ
ଆଶୀର୍ବାଦରେ କରନ୍ତି ମୋତେ ଧନ୍ୟ ଧନ୍ୟ
ତାଙ୍କ ପ୍ରଶଂସା ଭକ୍ତିକୁ ଜ୍ଞାନ ମୋର ହୃଦେ
ତେଣୁ ନୃସିଂହ ପୁରାଣବାନ୍ଧେ ଶାସ୍ତ୍ରବନ୍ଧେ ।

ଏଥକୁ ସୁଜନମାନେ ନ ଧର ମୋ ଦୋଷ
ଶ୍ରୀ ନୃସିଂହ ଶରଣ ମୁଁ ପୀତାମ୍ବର ଦାଶ ।
ଏଥୁ ଅନନ୍ତରେ ଶୁଣ ରାଜା ପରୀକ୍ଷିତ
ବୋଇଲେ ଶୁଣିବି କହ ମୁନି ଭାଗବତ ।
ମୁନି ବୋଇଲେକ ତେବେ ଶୁଣ ମହାରାଜା
ନାରଦ ଗୋସାଇଁ କଲେ ବ୍ରହ୍ମାଙ୍କର ପୂଜା
ନୃସିଂହ ପୁରାଣ ଭାଗବତରେ ମିଶାଇ
ଶୁଣିଛନ୍ତି ବ୍ରହ୍ମମୁଖୁଁ ନାରଦ ଗୋସାଇଁ ।
ସେ କଥାଯାକ କହୁଛି ତୋତେ ଏବେ ଶୁଣ
ଷଷ୍ଠସ୍କନ୍ଧ ରସବାଣୀ ଯେରୂପେ ବଖାଣ ।
ଅଜାମିଳ୍ ଜାଣ ଯେତେ ଥିଲା ପାପକରି
ନାରାୟଣ ନାମ ଡାକି ପାପୁଁ ଗଲା ତରି ।
ନାରାୟଣ ନାମଗୋଟି ପୁତ୍ରେ ଦେଇଥିଲା
ବେଢ଼ନ୍ତେଣ ଯମଦୂତେ କୁହାଟି ଡାକିଲା ।
ଆରେ ନାରାୟଣ ମୋତେଦୂତେନେଲେବାନ୍ଧି
ଓଟାରି ଝିଙ୍କନ୍ତି ଚର୍ମ ଉଦଡ଼ିରେ ଛନ୍ଦି ।
ଆରେ ନାରାୟଣ ମୋତେ ରଖଏତେବେଳେ
ପୁତ୍ର ଥାଉଁ ଅନାଥ କି ହେବି ମୃତ୍ୟୁକାଳେ ।
ଏରୂପେ ପୁତ୍ରର ନାମ ଡାକନ୍ତେ ଉଚ୍ଚାରି
ଭାଜିଲେକ ଯମଦୂତେ ଅଜାମିଳେ ଡରି ।
ବିଷ୍ଣୁଗଣ ଆସି ଧରି ଘେନିଗଲେ ତାକୁ
ନାରାୟଣ ନାମ ଏଡ଼େ ଅଟେ ପୃଥ୍ବୀଯାକୁ ।
ବୈକୁଣ୍ଠଯାଇ ବିଷ୍ଣୁର ଛାମୁରେ ଯେହେଲେ
ବିପୁଳ ଭୋଗ ଖଞ୍ଜିଣ ଅଚିନ୍ତେ ରଖିଲେ ।
ଜନ୍ମରୁ ମୃତ୍ୟୁଯାଏ ଯେ ପାପ ଥିଲା ଅର୍ଜି
ତରିଲା ଅନ୍ତଃକାଳେ ଶ୍ରୀନାରାୟଣ ଭଜି ।
ଧର୍ମରାଜ ଆଗେ ଦୂତ କହିଲେକ ଯାଇ
ବୋଇଲେ ପାପୀକିନେଲେ ବିଷ୍ଣୁ ଗଣେବହି
କେତେ ପାପ ହେଲେ ଅଜାମିଳ କରିଥିଲା
ମୃତ୍ୟୁକାଳେ ନାରାୟଣ ନାମ ଡାକି ମଲା ।
ଯମ ବୋଇଲେ ସେ ମୋରତହୁଁ ଅଟେବଡ଼
ତାକୁ କିବୋଲି ପକାନ୍ତ ତୁମ୍ଭେ ନର୍କଗାଡ଼ ।
ପାପ କରି କରି ପ୍ରାଣୀ ମୃତ୍ୟୁକାଳେ ଯେବେ
ନାରାୟଣ ନାମ ଧରି ମରେ ସର୍ବ ଶୁଭେ ।
ସେହି ପ୍ରାଣୀ ସାକ୍ଷାତେତ ଅଟେ ବିଷ୍ଣୁ ସମ
ଭାଗ୍ୟଥିଲେ ଯେତେବେଳେ ସ୍ମରେବିଷ୍ଣୁନାମ
ଲୋକଙ୍କୁ ଚାହିଁ ଯେ ହରିନାମ ଭଜୁଥିବ
ମୃତ୍ୟୁକାଳେ ହରିନାମ ତୁଣ୍ଡେ ନବୋଲିବ ।
ସେହିଲୋକଙ୍କୁ ତୁମ୍ଭେରେ ଆସୁଥିବ ଘେନି
ନର୍କରେ ପକାଇ ଜାତ କରିବାକୁ ଯୋନି ।

ହରେ ରାମକୃଷ୍ଣ ନାରାୟଣ ତେବେ ବୋଲି
ବିଷ୍ଣୁଗଣ ନେବେ ତାଙ୍କୁ ତୁମ୍ଭଙ୍କୁ କହିଲି ।
ବିଷ୍ଣୁମାୟା ଲୋଭ ନାହିଁ ପ୍ରାଣୀଙ୍କିତ ଛାଡ଼ି
ମୃତ୍ୟୁକାଳେ ହରିନାମ ନପାରଇ ପଢ଼ି ।
ପାଖଲୋକ ଶୁଣାଇଲେ ଲୋଡ଼େ ଟଙ୍କାସୁନା
ପତ୍ନୀ ପୁତ୍ର ମୁହାଁସରେ ବୁଡ଼ଇ ଚେତନା ।
ଏହିରୂପେ ପ୍ରାଣୀଏ ଯେ ଲୋଭେ ଛନ୍ତି ପଡ଼ି
କେହିଅବା ସୁଭାଗ୍ୟରେ ହରିଭଜେ ଲୋଡ଼ି ।
ହରି ନାମକୁ ସହସ୍ରେ ଗନ୍ଧର୍ବ ଲାଗିଆ
ଲାଗିଛି ସବୁଙ୍କୁ ଏଣୁ ଗୋବିନ୍ଦର ମାୟା ।
କହନ୍ତି ସେ ଧର୍ମରାଜ ଶୁଣ ଧର୍ମଦୂତେ
ବିଷ୍ଣୁଭକ୍ତ ପାଶକୁ ନ ଯିବ କଦାଚିତେ ।
ସେମାନଙ୍କୁ ବିଷ୍ଣୁଗଣେ ଯାଉଥିବେ ଘେନି
ଆମ୍ଭର ଜ୍ଞାନ ନ ମେଣ୍ଟିପାଳ ଏ ମେଦିନୀ ।
ଅବସାନ ବେଳକୁଟି ହରି ଏକା ମୂଳ
ଚିହ୍ନି ବୁଝି ଭଜୁଥିଲେ ନ ପଶଇ କାଳ ।
କାଳସିନା ପ୍ରାଣୀଙ୍କର ଅଟେ ଜାଣ ମୃତ୍ୟୁ
ମୃତ୍ୟୁ ଜଗି ନାମରେଯେ ଦେଇଥିବ ହେତୁ ।
ଅବସାନ ବେଳେ ନାମ କିମ୍ବା ନ ଆସିବ
ହରେ ରାମ କୃଷ୍ଣ ବୋଲି ପ୍ରାଣଯେ ଛାଡ଼ିବ ।
ତାହାର ଜୀବନ ପ୍ରାୟ ଆନ ଲକ୍ଷ୍ୟବାକି
ସାକ୍ଷାତ ବିଷ୍ଣୁ ସମ ସେ ଅଟଇ ପୃଥ୍ୱୀକି ।
ଅଣହେତୁ ମୃତ୍ୟୁଟି ଅଗାଡ଼ି ଚକ୍ଷୁ ପ୍ରାୟ
ସସ୍ର ଯୋନିରେ ଜନ୍ମନ୍ତି ଧରି ମରି କାୟ ।
ଶୁଣ ଯମଦୂତେ କହନ୍ତି ସେ ଧର୍ମରାଜା
ଅଜାମିଳ ବିପ୍ର ପତ୍ୟକ୍ଷେ ସେ ଧର୍ମଦ୍ୱିଜା ।
ମୃତ୍ୟୁକାଳେ ନାରାୟଣ ନାମକୁ ଉଚ୍ଚାରି
ବୈକୁଣ୍ଠକୁ ଗଲା ଶ୍ରୀହରିର ନାମ ଧରି ।
ଏହିରୂପେ ଅଜାମିଳ ବ୍ରାହ୍ମଣ ଚରିତ
କହନ୍ତି ଯେ ଶୁକମୁନି ଶୁଣେ ପରୀକ୍ଷିତ ।
ଦକ୍ଷ ପ୍ରଜାପତିଙ୍କର ମହିମା ଯେ ଶୁଣ
ଯେତେପୁତ୍ର ଜାତକଲେ କେହି ସଂସାରେଣ
ନାରଦଙ୍କ ବଚନରେ ଗଲେ ଯେ ଉପୁଜି
କେ ଆନ କରିବ ଏହା କର୍ମେଯାହା ଅର୍ଜି ।
ନାରଦ ବୋଇଲେଦକ୍ଷ ଆମ୍ଭେତହୁଁ କେଡ଼େ
ଆମ୍ଭେଥାନ୍ତେ ଏହାଙ୍କର ବଂଶ କିମ୍ବା ଏଡ଼େ
କପଟେ ଘେନିବି ଆଜି ଶତ୍ରୁଙ୍କର ପ୍ରାଣ
ପ୍ରଜାପତିର ବୁଝିବା ତେବେ ବଡ଼ ପଣ ।
ବୋଇଲେକ ଶୁଣ ବାପ କହୁଛି ତୁମ୍ଭଙ୍କୁ
ତେରଶତ ପୁତ୍ର ତୁମ୍ଭ ଜନ୍ମିଛି ଭାଗ୍ୟକୁ ।

ଦକ୍ଷ ପ୍ରଜାପତି ଅଟେ ଆମ୍ଭ ଜ୍ୟେଷ୍ଠଭ୍ରାତ
ତାଙ୍କ ଭାଗ୍ୟ ଆମ୍ଭ ବଂଶ ବଢ଼େ ଅଲୋକିତ
କୁଟମ୍ବ ପୋଷିବାକୁ ତ ଅଛି ଯେବେ ଆଶ
ସମୁଦ୍ର ଭିତରେ ଚାଲ କରିବାକ ଚାଷ ।
ଇନ୍ଦ୍ରଙ୍କୁ ଦେଖି ସମୁଦ୍ରେ ଜଳ ବହିଆଣି
ପୃଥ୍ୱୀରେ ବର୍ଷୁଛି କୃଷି ନିମନ୍ତେ ସେ ପାଣି
ଆକାଶ ଜଳକୁ ଚାହିଁ ପୃଥିବୀର ଲୋକେ
କୁଟୁମ୍ବ ପୋଷନ୍ତି କୃଷିକରି ଦୁଃଖେ ସୁଖେ ।
ସମୁଦ୍ରେ ପଶି କରିବା କୃଷି ଆମ୍ଭେ ଯେବେ
ଜଳ ବରଷାକୁ ଚିନ୍ତା ନକରିବା କେବେ ।
ଶୁଣି ଦକ୍ଷପୁତ୍ରେ ବୋଇଲେ ସେ ହେଉହେଉ
ଏଡ଼େ ସୁଖ ଛାଡ଼ି ପୁଣି କରିବା କି ଆଉ ।
ନାରଦ ବୋଇଲେ ବାପ ଚାଲ ତେବେଯିବା
ସିନ୍ଧୁ ମଧ୍ୟେ ପଶି ଭୂମିଖଣ୍ଡ ଆବୋରିବା ।
ଶୁଣି ଦକ୍ଷପୁତ୍ରେ ବୋଇଲେ ଯେ ଆଛା ଆଛା
ଏଡ଼େ କଥାରେ କରିବା କିସ ଆଉ ବାଞ୍ଛା
ଶୁଣି ନାରଦ ପୁତ୍ରଙ୍କୁ ଘେନିଗଲେ ସଙ୍ଗେ
ସମୁଦ୍ର ତୀରରେ ଯାଇ ପ୍ରବେଶିଲେ ବେଗେ
ବୋଇଲେ ବାପ ସମୁଦ୍ରେ ବେଗେ ତୁମ୍ଭେପଶ
ଭୂମିଖଣ୍ଡେ ଆବୋରିଣ ବେଗ ହୋଇ ଆସ
ଚାଷ ନିମନ୍ତେ ବଳଦ କରୁଛି ମୁଁ ଖଞ୍ଜା
କୃଷି ହେଲା ଉତ୍ତାରୁ କରିବା ଯାଇ ସଞ୍ଜା ।
ଶୁଣିଣ ଦକ୍ଷ କୁମରେ ପଶିଲେ ସମୁଦ୍ରେ
ପନ୍ଦର ଯୋଜନ ଯାଏ ଗମିଲେ ଉନ୍ନିଦ୍ରେ
ଦିବା ନିଶି ଦୁଇ ସେହି କିଛି ନ ଜାଣିଲେ
ଭୂମି ଲୋଡୁ ଲୋଡୁ ସମସ୍ତେ ଯେ ବୁଡ଼ିମଲେ
ଏ ଘେନି ଲାଗିଲା ନାରଦଙ୍କୁ ବ୍ରହ୍ମହତ୍ୟା
ଶୁଣ ପରୀକ୍ଷିତ କହନ୍ତି ଯେ ଶୁକଜ୍ଞାତା ।
ଏଣୁ ନାରଦ ବ୍ରହ୍ମାଙ୍କ ପାଶେ ଯାଇ ବସି
ଶ୍ରୀନୃସିଂହ ଗ୍ରନ୍ଥ ଶୁଣି ପାପ ଗଲେ ନାଶି ।
ପୁରାଣ ମହିମା ଏହିରୂପେ ଅଟେ ପୁଣ
କେଡ଼େ ବ୍ରହ୍ମହତ୍ୟା କଲା ଶୁଣିଲେଟି ଜାଣ
ପୁତ୍ରଙ୍କର ମୃତ୍ୟୁ ଶୁଣି ଦକ୍ଷ ପ୍ରଜାପତି
ଲେଉଟି ଜନ୍ମ କରିଣ ବସିଲେ ସନ୍ତତି ।
ନୋହିଲେ ପୁତ୍ର ଜନମ ଦୁହିତା ଯେ ଜାତ
ଷାଠିଏ କୁମାରୀଯାଏ ହୋଇଲେ ଗଣିତ ।
ଦଶ ଜୁଆଇଁକି ବରି ବିଭା ତାଙ୍କୁ କଲେ
ଶୁଣ ପରୀକ୍ଷିତ ତହୁଁ ଯେତେକ ଜନ୍ମିଲେ ।
ତାହାଙ୍କର ସନ୍ତତି ଯେ କହିବା ହୋ ଶୁଣ
ଜୀବାଦି ନର ରାକ୍ଷସ ଦେବ ସହିତେଣ ।

ପଶୁଗଣ ସହିତରେ ଯେତେ ଜୀବଜନ୍ତୁ
ସର୍ବେ ଜନମିଲେ ଜାଣ କଶ୍ୟପର ରେତୁ ।
ପ୍ରଥମ ସାଗରେ ଶୁଣିଲି ଏହିସବୁ ଜନ୍ମ
ଭାଗବତରୁ କହିବା ଏବେ କିଛି ଶୁଣ ।
ବୃତ୍ରାସୁର ସହିତରେ ମଲେ ଯୁଦ୍ଧକରି
ହିରଣ୍ୟ ହିରଣ୍ୟାକ୍ଷ ଏ ଜାତ ଦେହ ଧରି ।
ଦିତିମାତା ଗର୍ଭରୁ ସେ ହୋଇଲେ ଜନମ
ବରାହ ରୂପ ଧଇଲେ ପ୍ରଭୁ ପରଂବ୍ରହ୍ମ ।
ହିରଣ୍ୟାକ୍ଷକୁ ମାରିଣ ବଇକୁଣ୍ଠ ଗଲେ
ଚିତ୍ରକେତୁ ରାଜା ମୃତ୍ୟୁକଥା ଶୁଣ ଭଲେ ।
ସେ ଚିତ୍ରକେତୁ ମରନ୍ତେ ପତ୍ନୀମାନେ ତାର
ରୋଦନ କରନ୍ତି ବୋଧି କଲେ ନାଶକର ।
ବୋଇଲେକ କାହିଁପାଇଁ କରୁଛ କାରୁଣ୍ୟ
କେ କାହା ପତି ଅଟେ କେ କାହା ପତ୍ନୀଜାଣ
ଇହଲୋକ ପ୍ରାଣୀମାନେହୋନ୍ତିଲେଖାଯୋଖା
ପରଲୋକେ ଗଲେ ଜାଣ ସମସ୍ତେ ତ ଏକା ।
ଶାଶୁ ଶ୍ୱଶୁର ଯେ ଇହଲୋକେ ହୋଇଥାନ୍ତି
ପରଲୋକେ ଗଲେ ସର୍ବେ ଏକତ୍ରେ ମିଶନ୍ତି ।
ଇହଲୋକ ଦେଢ଼ଶୁର ଭାଇବୋହୂ ଲେଖା
ପରଲୋକ ଗଲେ ଦୁହେଁ ସରିସମ ଏକା ।
ଏ ଶରୀର ଆତ୍ମା ଗଲେ ପରଆତ୍ମା ଦେହେ
ଏକତ୍ରେ ମିଶି ରହିଣ ପୁଣି ଜନ୍ମପାଏ ।
ବୁଝିଲେ ତ ଆତ୍ମାରାମ ଅଟେ ଏକ ବ୍ରହ୍ମ
ପାପୀଙ୍କୁ ପାପ ଯୋନିରେ କରେ ନେଇଜନ୍ମ
ଏକଥା ହିଁ ଧ୍ରୁବ ଜାଣ ଦେବେ ଛନ୍ତି କହି
ଏ ସ୍ଥାନେ ଭାଇବୋହୂ ସେ ସ୍ଥାନ ଏକଦେହୀ
ଯେଣୁ ଏକ ବ୍ରହ୍ମ ଅଟନ୍ତି ସେ ନାରାୟଣ
ଏହା ନ ବୁଝି କାନ୍ଦୁଛ ତୁମ୍ଭେ ରାଣୀଗଣ ।
ଏକଥାକୁ ନ ବୁଝିବା ଲୋକ ବସେ କାନ୍ଦି
ଏରୁପେ କହୁ ଚଳିଲେ ପୁରେ ଧର୍ମ ନିଧି ।
ଶୁଣ ପରୀକ୍ଷ କହନ୍ତି ମୁନି ଶୁକଦେବ
ପବନ ଦେବତାଙ୍କର ଶୁଣିବା ଉଦ୍ଭବ ।
ଅଦିତିଙ୍କ ଗର୍ଭୁ ଜନ୍ମ ବାସବ ହୁଅନ୍ତେ
ଦିତି ଦେଖି ସହି ତାହା ନ ପାରିଲେ ଚିତ୍ତେ
ପୟୋବ୍ରତ କରି କଲେ ପତିଙ୍କର ସେବା
ଏଥୁ ଅନନ୍ତରେ ଗର୍ଭେ ହେଲେ ନବଯୁବା ।
ଅଦିତି ତାହା ଦେଖିଣ ସହି ନ ପାରିଲେ
ମନେ ହିଂସା ବହି ବାସବର ପାଶେ ଗଲେ
ବୋଇଲେ ତୁ ଶୁଣ ଆରେ କଶ୍ୟପ ତନୟୀ
କହିଲେ ତୋ ପିତା ନଟକୁଟ ନ ସରଇ ।

ତେରଗୋଟିକନ୍ୟାବିଭା ହୋଇଲେଯେ ଆଣି
ସେ କଥାହିଁ ଅସମ୍ଭବ ନୋହେ କର୍ଣ୍ଣେ ଶୁଣି
ଏକ ପତ୍ନୀର ଭାରା କେ ନ ପାରନ୍ତି ସହି
ବିଷୟୀ ଦ୍ୱନ୍ଦେ ମରନ୍ତି ପ୍ରାଣୀ ହୋଇ ଦହି ।
ସପତଣୀମାନଙ୍କ ଏ ହିଂସା ଅଗୋଚର
କାହାକୁ ସେ ମନ୍ଦ ପାଞ୍ଚେ ମନେ ନାହିଁ ଡର
ମାରନ୍ତି ସ୍ୱାମୀଙ୍କୁ ବିଷଦେଇ କାଳେ ପୁଣି
ପୁରୁଷ ଲୋକର ଏହା ନ ପାରନ୍ତି ଜାଣି ।
ଏବେ ଦେଖି ତୁମ୍ଭର ଯେ ସଉତଣୀ ମାତ
ତୋତେ ମାରିବାକୁ ହୋଇଅଛି ଗର୍ଭଗତ ।
ଆଜକୁ ଯେ ସାତମାସ ହେଲାଣି ତା ଗର୍ଭ
ଶୁଣିଣ ମନରେ କିଛୁ ଧଇଲେ ବାସବ ।
ବୋଇଲେ ହେଲାଣି ସାତମାସ ଯେବେ ତାର
ସାତଖଣ୍ଡ କରି କାଟିଦେବି ପୁତ୍ରଶିର ।
ସାତଖଣ୍ଡଯାକ ପୁଣି କରି ସାତ ସାତ
ତେବେ ଅଣଚାଶ ମୂର୍ତ୍ତି ହେବ ଗର୍ଭସୁତ ।
ଏତେ କହିଣ ମାତାଙ୍କୁ ଇନ୍ଦ୍ରଗଲେ ଚଳି
କାଟିଲେ ସେ ଗର୍ଭସୁତ ମଶାରୁପେ ଚଳି ।
ଖଣ୍ଡକୁ ସେ ସାତ ସାତ ଖଣ୍ଡ ପୁଣି କଲେ
ଅଣଚାଶ ରୁପ ଧରି ତାତ ଜନମିଲେ ।
ଷଷ୍ଠସ୍କନ୍ଧର ଭାଷା ଏ ଯେତେକ ଚରିତ
ଊନବିଂଶ ଅଧ୍ୟାୟରେ ହେଲା ସମାପତ ।
ନୃପ ପରୀକ୍ଷିତ ଶୁଣେ ଭାଗବତ ବାଣୀ
ବିପ୍ର ପୀତାମ୍ବର ପଦ ଲେଖେ ଲିଛି ଆଣି ।
ଭାଗବତ ମହିମା ତ ସମୁଦ୍ରରୁ ବଳେ
ମୁଁ ତାହା ନ ଜାଣି ଲେଖୁଅଛି ମତିଭୋଳେ
ବିବେକପଣେ ନ ଥିଲେ କେତେ ଅର୍ଥ ଜାଣି
ସଭାଯୋଗ୍ୟ ହୋଇ କହନ୍ତି ଏ ଅର୍ଥବାଣୀ ।
ଲୋକାଇତ କର୍ମେ ମାତ୍ର ଅଛଇଁ ମୁଁ ଧାଇଁ
ମୋଠାରୁ ଅଜଣା ହୋଇ ବ୍ରହ୍ମାଣ୍ଡେକେନାହିଁ
ପଢ଼ନ୍ତେ ଶ୍ଳୋକ ପାସୋର ଯାଏ ଆର ପଦ
ଏକେ ସୁପଣ୍ଡିତ ମୁହିଁ ଅଟେ ପଢ଼ି ବେଦ ।
ଏଣୁ ଗୋବିନ୍ଦମୋତେ ଶ୍ରୀମୁଖେ ଆଜ୍ଞାଦେଲେ
ନୃସିଂହ ପୁରାଣ କର ବୋଲି କହିଗଲେ
ଏଥୁଅନ୍ତେ ଶୁଣ ସପତମସ୍କନ୍ଧ ବାଣୀ
ହିରଣ୍ୟକଶିପୁ କଥା କହିବା ପ୍ରମାଣି ।
ଜନ୍ମିଲେ ଅସୁର ବଂଶ ଧରି ବେନିଭାଇ
ହିରଣ୍ୟାକ୍ଷ ମୃତ୍ୟୁ ଆଗହୁଁ ତ କହିଥାଇ
ମାଇଲେ ବରାହ ଅବତାରେ ତାକୁ ହରି
ହିରଣ୍ୟକଶିପୁ କଥା ଶୁଣ ଦଣ୍ଡଧାରୀ
ଭାଇର ମୃତ୍ୟୁ ହିରଣ୍ୟକଶିପୁ ଯେ ଶୁଣି
ଖଡ଼ଗଧରି ଉଠିଲା ଆପେ ଶିରଝୁଣି ।
ରୋଷେ ଦଶନ ଚୋବାଇ କରେ ନିଶମୋଡ଼ି
ଆହେ ଭ୍ରାତ ବୋଲି କର କପାଳରେ ତାଡ଼ି
ଭାଇର ଗୁଣ ସୁମରି ହୁଅଇ ବିକଳ
ନିଃଶ୍ୱାସ ଛାଡ଼ଇ ମହାଖରେ ଅନ୍ତରାଳ ।
କରାଳଦଂଷ୍ଟ୍ର କରିଣ ରାଜା କୋପେ ଉଠି
ଚାହିଁଇ ଲଲାଟ ଟେକି କୁଟିଳ ଭ୍ରୁକୁଟି ।
ଶୂଳ ଉଞ୍ଚାଇ ଧାଇଁଲା ଉଠି ସଭାମଧ୍ୟେ
ଅସୁରଙ୍କୁ ଚାହିଁ କହେ ଶୋକ ଗଦଗଦେ ।
ବୋଇଲା ଦୈତ୍ୟ ମୋହର ତୁମ୍ଭେ ସଖାଗଣ
କହିବଇଁ ମୋର ଶତ୍ରୁ କଥା ଏବେ ଶୁଣ ।
ଶ୍ରୀହରି ବୋଲିଣ ଯେହୁ ଅଟେ ବଡ଼ ମୁର୍ଖ
ଆବର ଭାଇକି ମୋର ମାରିଗଲା ଦେଖ ।
ଆହେ ସଇନ୍ୟ ମୋହର ବୋଲ ତୁମ୍ଭେଶୁଣ
ଆବର ଶତ୍ରୁ ଅଟନ୍ତି ମୋର ଦେବଗଣ ।
ମନୁଷ୍ୟଗଣ ଅଛନ୍ତି ଜାଣ ଯହିଁ ଯେତେ
ହରିନାମ ଭଜି ଭଜି ମରନ୍ତି ଯେ ନିତ୍ୟେ ।
ଏତେକ ଲୋକ ବଇରୀ ଅଟନ୍ତି ମୋ ଜାଣ
ଏହାଙ୍କୁ ମାରିବା ପୃଥ୍ୱୀଯାକେ ଦେଖିଲେଣ ।
ଦୈତ୍ୟକୁଳକୁ ଏମାନେ ଅଟନ୍ତି ବଇରୀ
ଏହାଙ୍କୁ ଦେଖିଲାକ୍ଷଣି ପକାଇବ ମାରି ।
ଆବର ଶ୍ରୀହରି ଡରେ ବହୁରୁପ ଧରେ
ଦଶ ଅବତାର ହୋଇ ଦୁଷ୍ଟଙ୍କୁ ସଂହାରେ ।
ତାହାର ପ୍ରତାପ ମୁଁ ନ ପାରେ କେବେ ସହି
ଦେଖିବ ଆଗେ ପଡ଼ିଲେ କି କରିବି ମୁହିଁ ।
ମୋତେସେହୁକେତେବେଳେହେଉଛି ଦେଖା
ଦେଖିଲେ ତ ପ୍ରାଣ ଶୋଷି ପକାନ୍ତି ମୁଁ ଏକା
ଧରିଛି ଶୂଳ ତାହାକୁ ମୁଁ ମାରିବି ବୋଲି
ଖୋଜିଖୋଜି ଲୋଡ଼ିଲୋଡ଼ି ଚିଟା ଏବେହେଲି
ଏଣୁକରି ତୁମ୍ଭଙ୍କୁ ମୁଁ କହୁଛିରେ ବାପ
ଯହିଁ ଦେଖିଲେ ମାରିବି ତହିଁ ବିଷ୍ଣୁରୁପ ।
ବିଷ୍ଣୁର ଭକ୍ତସଂସାରେ ଯେତେ ସ୍ଥାନେଛନ୍ତି
ସମସ୍ତେ ଏ ବିଷ୍ଣୁ ବୋଲି ମାରିବି ସବୁନ୍ତି ।
ସେମାନେ ମଲେ ମରିବେ ନିଶ୍ଚେ ଜାଣ ହରି
ଝୁରି ଝୁରି ପ୍ରାଣ ସେହୁ ନ ପାରିବ ଧରି ।
ବ୍ରହ୍ମକ୍ଷତ୍ରୀ ବୈଶ୍ୟ ଶୂଦ୍ର ଆଉ ଜାତି ଯେତେ
ବିଷ୍ଣୁର ଭକ୍ତକୁ ଖୋଜି ମାର ଏ ଜଗତେ ।
ତପସ୍ୱୀଜନମାନଙ୍କୁ ମାର ଖୋଜି ଖୋଜି
ଋଷିମାନଙ୍କୁରେ ମାରିପକା ଯଜ୍ଞ ଭାଜି ।

ବାସବ ଆଦି ଦେବତା ପିତୃଗଣ ଯେତେ
ଧର୍ମପରାୟଣ ଦେଖି ମାର ଏ ଜଗତେ ।
ଆବର ଗୋରୁବ୍ରାହ୍ମଣ ଯେତେ ବେଦାଧ୍ୟାୟି
ଏହାଙ୍କର ଘର ପୋଡ଼ିଦେବ ନିତି ଯାଇଁ
ଅସୁରେ ରାଜାର ଆଜ୍ଞା ପାଇ ଗଲେ ଚଳି
ପେଣ୍ଠ ପାଟନା ନଗର ପୁରେ ଯାଇଁ ମିଳି ।
ଗ୍ରାମେ ଗ୍ରାମେ ପଶି ଅଗ୍ନି ଲଗାନ୍ତି ସେ ନେଇ
ଉତ୍ତମ ବୃକ୍ଷ ଛେଦିଣ ପକାବନ୍ତି ଦହି ।
ଚମ୍ପକ ଚୂତ ଚନ୍ଦନ ବୃକ୍ଷମାନ ହାଣି
ଖଦୀର ବୃକ୍ଷକୁ ରଖି ଦ୍ୟନ୍ତି ତହିଁ ପାଣି ।
ସାରସ କୋକିଳ ଶୁକ ସାରୀ ହଂସ ମାରି
ରଖନ୍ତି ଘୁଷୁରି ଖର ଶ୍ୱାନ ସ୍ନେହ କରି ।
ପୁଷ୍ପତୋଟା ଅଶ୍ୱତ୍ଥ ଯେ ବଟବୃକ୍ଷ ଆଦି
ବ୍ରହ୍ମାଣ୍ଡରେ ବୁଲି ସବୁ ପକାବନ୍ତି ଛେଦି ।
ଜୀଅନ୍ତା ବୃକ୍ଷ କରି ନ ରଖିଲେ ଗୋଟିଏ
ଦୁଷ୍ଟ ଲୋକର ବୁଦ୍ଧି ଏରୁପ ଜାଣ ହୋଏ ।
ଏମନ୍ତ ଲୋକର ପାଶେ ସୁ ପୁରୁଷ ଜନେ
କେବେ ରହିପାରନ୍ତି କି କାଳକାଟି କ୍ଷଣେ ।
ଏ ରୁପରେ ଦଣ୍ଡଦେଇ ବୁଲିସେ ରାକ୍ଷସେ
କହନ୍ତି ସେ ଶୁକଦେବ ପରୀକ୍ଷିତ ପାଶେ ।
ଏମନ୍ତ ବୁଲିଲେ ଦୈତ୍ୟ ଦ୍ୱାଦଶ ବରଷ
ଯାବତ ଧର୍ମଯାକ ସେସବୁ କଲେ ନାଶ ।
ଦେବତାଏ ସ୍ୱର୍ଗ ଛାଡ଼ିକରି ପଳାଇଲେ
ବନସ୍ତମାନଙ୍କେ ଯାଇ ଲୁଚିଣ ରହିଲେ ।
ଯେ ରୁପେ ବନସ୍ତ ମଧ୍ୟେ ଥାନ୍ତି ପଶୁଗଣେ
ସେ ରୁପେ ରହିଲେ ଦେବତାଏ ପଶି ବଣେ
ଏଥୁ ଅନ୍ତେ ହିରଣ୍ୟକଶିପୁ ଦୈତ୍ୟରାୟେ
ଅନ୍ତଃପୁରେ ଯାଇକରି କଲାକ ବିଜୟେ ।
ହିରଣ୍ୟାକ୍ଷ ମରନ୍ତେ ତା ପ୍ରେତ କର୍ମ କଲା
ତର୍ପଣ ସାରି ଯତିଙ୍କି ଅନ୍ନ ରାନ୍ଧି ଦେଲା ।
ଭାଇର ପୁତ୍ରକୁ ରାଜା ଧରି କୋଳକରି
ବୋଇଲା ମୋ ସମାନେ ତୁ ଅଟୁ ଦଣ୍ଡଧାରୀ
ବାପ ତୋ ମଲା ବୋଲି ନଘେନ ମନେଛିଦ୍ର
ତୋତେ ନେଇ ସ୍ୱର୍ଗପୁରେ କରିବି ନରେନ୍ଦ୍ର
ସାନ ଭାଇର ପତ୍ନୀ କି ପୁଣି ଡକାଇଲା
ଘର ସମର୍ପକାରେଣୀ ତାକୁ କରାଇଲା ।
ତାହାର ନାମ ଗୋଟି ଯେ ଅଟେ ରୂପଭାନୁ
ବୋଇଲା ମହତ୍ୱ ମୋର ରହିବ ତା ଜ୍ଞାନୁ ।
ତହିଁ ଉତ୍ତାରୁ ମାତାକୁ ରାଜା ଡକାଇଲା
ଛାମୁରେ ବସାଇ ତାକୁ ପ୍ରବୋଧ କରିଲା ।

ହେ ମାତ ହେ ପୁତ୍ରବଧୂ ସମସ୍ତେ ଯେ ଶୁଣ
ସବୁଙ୍କୁ ମାୟାରେ ରଚିଅଛି ନାରାୟଣ ।
ଜନ୍ମଦେଲେ ଏ ସଂସାରେ ମରିନାହିଁ ମୂଳ
ଏକଥା ଏ ବୁଝି ଚିନ୍ତା କରନ୍ତି ତତ୍କାଳ ।
ହିରଣ୍ୟାକ୍ଷ ଭାଇ ମୋର ଗଲା ଶତ୍ରୁ ମୁଖେ
ମିଳିଲା ତାକୁ ଯାହା ନ ମିଳେ କୋଟିଲକ୍ଷେ ।
ସେ ମଲାବୋଲି ମୋହର ତିଳେ ଚିନ୍ତାନାହିଁ
ସ୍ୱର୍ଗରେ ଯାଇ ବସିଲା ଏବେ ମୋର ଭାଇ ।
ବୁଝିଲେ ଏହି ପୃଥ୍ୱୀଟି ବିଷ୍ଣୁ ଖେଳଘର
ସବୁ ଜନଙ୍କୁ ଲାଗିଛି ମାୟା ଅଗୋଚର ।
କାହାର ସଙ୍ଗେ କେହୁ ନଯାଏ ଧରି ଦେହ
ପଥେ ପଥିକୀ ସଙ୍ଗ କି ହେଲେ ରହେ କହ ।
ବୃକ୍ଷ ଛାୟାରେ ବସନ୍ତି ପଥଶ୍ରମ ପାଇ
ଶ୍ରମ ଭାଜିଲେ ବୃକ୍ଷ କି ସଙ୍ଗତେ ତା ଯାଇ ।
ଏ ରୂପେ ଏ ଦେହଯାକ ପ୍ରକୃତି ବିନାଶ
ସେ ଆତ୍ମା ପୁରୁଷ କେବେ ନୁହଇଟି ଧ୍ୱଂସ ।
ଆତ୍ମାରୁ ଆତ୍ମା ପ୍ରକାଶି ହୁଅଇ ଜନମ
ତେଣୁ ଆତ୍ମାକୁ ବୋଲଇ ବେଦ ଏକ ବ୍ରହ୍ମ ।
ଜଳଭିତରେ ଯେସନେ ଦିଶେ ବୃକ୍ଷ ଛାଇ
ପବନ ବହିଲେ ସେହୁ ବୃକ୍ଷ ଦୋହଲଇ ।
ସେ ବୃକ୍ଷର ଛାଇ ଯେହ୍ନେ ଜଳରେ ନମିଶେ
ସେ ରୂପେ ପ୍ରକୃତିଗଣ ଆତ୍ମା ସଙ୍ଗେ ରସେ ।
ଯେସନେ ଧୂଳିରେ ବାଳପୋଏ ଘରତୋଳି
ଭାତ ତିଉଣ ରାନ୍ଧିଣ ଭୁଞ୍ଜନ୍ତି ଯେ ଖେଳି ।
ସେ ଘର ଭାଙ୍ଗି ପକାନ୍ତି ପୁଣି ଯେଝାମତେ
ଏହିରୂପେ ଜୀବଆତ୍ମା ଅଟଇ ଜଗତେ ।
ଯେ ଯାହା କରମ ଘେନି ଭୁଞ୍ଜନ୍ତି ତା ଫଳ
ପ୍ରାଣୀ ନ ଚିହ୍ନି କରଇ ବିଷୟକୁ ମୂଳ ।
ଶୁଣିଲୁ ଆଗୋ ଜନନୀ କହିଲି ମୁଁ ଯେତେ
ଏ କଥା ବେଦ କହନ୍ତି ବୁଝି ଶାସ୍ତ୍ରମତେ ।
ସୁଯଜ୍ଞ ବୋଲିଣ ପୁଣି ଥିଲା ଏକ ରଜା
ଯୁଦ୍ଧକୁ ଯାଇଣ ସେହୁ କଲା ପ୍ରାଣତେଜ୍ୟା ।
ରାଜାର ମୃତ୍ୟୁ ଶୁଣିଣ ତାର ରାଣୀଗଣେ
ମୃତ ପିଣ୍ଡକୁ ଚାହିଁଣ କାନ୍ଦି ଜଣେ ଜଣେ ।
ଶରୀର ଯାକ ଜର୍ଜର ହୋଇଛି ରୁଧିରେ
ହା ହା ସ୍ୱାମୀ ବୋଲି କାନ୍ଦନ୍ତି ସେଉଚ୍ଚସ୍ୱରେ
ବିବର୍ଣ୍ଣ ହୋଇ ପଡ଼ିହିଁ ରାଜା ମହୀଖଣ୍ଡେ
ରୁଧିର ଧାରା ବହିଣ ପଡୁଅଛି ତୁଣ୍ଡେ ।
ଲଲାଟ ଭିତରେ ପଶି ଗଲାଣି ନୟନ
ସୁରଙ୍ଗ ଅଧର ଗୋଟି ଦିଶେ କଳାବର୍ଣ୍ଣ ।

ନାନା ରନ୍ଧ୍ରରୁ ରୁଧିରଧାର ବହେ ଗଡ଼ି
ଭଗ୍ନ ଶସ୍ତ୍ର ଧରି ଭୂମିରେ ସେ ଅଛି ପଡ଼ି ।
ବନ୍ଧୁ ବାନ୍ଧବ ଆଦି ଏ ସର୍ବେ ରୁଣ୍ଡହୋଇ
କାନ୍ଦୁଅଛନ୍ତି ବସିଣ ରାଜା ମୁଖ ଚାହିଁ ।
ବୋଲନ୍ତି ଭୋ ଦେବ ଆମ୍ଭେ ତୁମ୍ଭ ବନ୍ଧୁଗଣ
ତୁମ୍ଭ ବିହୁନେ ଆମ୍ଭେ ଯେ ହେଲୁ ଅକାରଣ ।
ଜୀବନ ଥାଉ ଥାଉ ଯେ ଆମ୍ଭେ ସର୍ବେ ମଲୁ
ଭୋ ଧାତା ଆମ୍ଭଙ୍କୁ ଏହା କାହିଁକି ତୁ କଲୁ
ମୁଣ୍ଡମାନଙ୍କରେ ଆଣି ବେନିକର ତାଡ଼ି
ଭୂମି ଉପରେ କାନ୍ଦନ୍ତି ସର୍ବେ ପଡ଼ି ଗଡ଼ି ।
ରାଜାର ପାଦ ବେନି ନ ଧରି ସର୍ବେ ଗଡ଼ି
ଉଠି ଉଭା ହୋଇ କାନ୍ଦନ୍ତି ସେ ଡକାପାଡ଼ି ।
ରାଜାର ପାଦେ ପଡ଼ଇ ଯାଇ ଅଶ୍ରୁଜଳ
ଲୋତକେ ମିଶିଣ ବହେ ନୟନ କଜ୍ଜ୍ୱଳ ।
କୁଚ ଉପରେ ପଡ଼ଇ ରହି ନେତ୍ର ଖସି
ରାଜାର ପାଦରେ ପଡ଼ି ଝଟକ ସେ ଦିଶି ।
ସୁବେଶ କେଶ ବାସ ଏ ସବୁ ଅସମ୍ଭାଳ
କି କହିବା ସେ ପ୍ରାଣୀଙ୍କ ହୃଦୟ ବିକଳ ।
ଏ ରୂପେ ସେ ଶୋକ କରୁ ରବି ଅସ୍ତଗଲା
ଘୋର ଅନ୍ଧାର ଗଗନେ ଆସି ଆଚ୍ଛାଦିଲା ।
ସେମାନଙ୍କର ରୋଦନ ନିବାରିବା ପାଇଁ
ବାଳକ ରୂପ ଧରିଣ ବେଗେ ଜନ୍ତୁସାଇଁ ।
ଯୁବତୀଙ୍କ ଆଗେ ଆସି ମିଳିଲେ ବହନ
ସେମାନେ ନ ପୁଚ୍ଛୁ ଆଗେ କହନ୍ତି ବଚନ ।
ବୋଲନ୍ତି ତୁମ୍ଭ କୋଳର ବାଳସିନା ମୁହିଁ
ତୁମ୍ଭ ଆଗେ ପାରିବି ମୁଁ କିସ କଥା କହି ।
ସୁପଣ୍ଡିତ ଲୋକ ମୁଖୁ ଅଛି ଯାହା ଜାଣି
ସେ କଥାକୁ ସାବଧାନେ କହିବା ତା ପୁଣି ।
ତୁମ୍ଭ ପ୍ରାୟ ଯୁବତୀ ସଂସାରେ ନ ମିଳଇ
ଜାଣି ଜାଣି ବଣା ତୁମ୍ଭେ ହେଉଛ କିମ୍ପାଇଁ
ବୁଝିଲେ ତ ଦିଶ ତୁମ୍ଭେ ବୟସେ ଅଧିକ
ତୁମ୍ଭ ପ୍ରାୟ ସୁଶୀଳ କେ ନମିଳେ ତ୍ରିଲୋକ
ବାଳୁତ ପିଲା ପରାୟେ କାହିଁକି ରୋଦୁଛ
ଜନ୍ମ ହେଲେ ଜାଣିବଟି ମଲା ସେ ପ୍ରତ୍ୟକ୍ଷ
ଜନ୍ମ ଯାର ନାହିଁ ନିଶ୍ଚେ ସେହୁ ନ ମରଇ
ଏ କଥାହିଁ ଧ୍ରୁବ ଜାଣ ଚାରିଯୁଗେ କହି ।
ଏ ରାଜା ଏବେ ଯେ ମରି ପଡ଼ିଅଛି ତଳ
କର୍ମରେ ଏତିକି ଲେଖାଥିଲା ଯେ କେବଳ ।
କର୍ମର ଭୋଗ କରନ୍ତେ ଗଲା ଜାଣ ମରି
ଏକଥା ସଂସାରେ କେ ନ ଜାଣେ ଦେହ ଧରି

ଏବେ ଯେ ଅଛ ଶରୀରମାନ ତୁମ୍ଭେ ବହି
କର୍ମ ସରିଲେ ନ ଯିବ ପରଲୋକ ହୋଇ ।
ଯହୁଁ ଆସିଥିଲା ଜୀବ ତହିଁକି ସେ ଗଲା
ନ ଜାଣିଣ ଲୋକମାନେ ବୋଲୁଥାନ୍ତି ମଲା
ଏ ରାଜା ଦେହୁଁ ଗଲାଣି ଜୀବ ଅନ୍ତରୀକ୍ଷେ
ଏହା କେ ନ ଜାଣି ନ ପୁଚ୍ଛଇ ଗୁରୁ ମୁଖେ
କାହାକୁ ଚାହିଁ ରୋଦନ ତୁମ୍ଭେ ଏବେ କର
ପରଲୋକ ହୋଇ ଗଲାଣିତ ନୃପବର ।
ସବୁରି ଦେହେ ଅଛନ୍ତି ଦେଖ ଇନ୍ଦ୍ରଗଣ
ଏହାଙ୍କ ଉପରେ ମନ ରାଜା ସିନା ଜାଣ ।
ଆତ୍ମାଗୋଟି ସେ ମନର ସଙ୍ଗେ ମିଶିଥାଇ
ଇନ୍ଦ୍ରିୟଙ୍କୁ ମୋହି ବିଷୟାରେ ପ୍ରବର୍ତ୍ତଇ ।
ଯାବତ କର୍ମେ ପୁରାଇ ଭୁଲାଏ ପ୍ରାଣୀଙ୍କୁ
ଏ ଦେହକୁ ସତ ପ୍ରାୟେ ମଣେ ସେ ଅଧିକୁ
ଆତ୍ମାକୁଟି ଦୁଃଖସୁଖ କେବେ ନ ଲାଗଇ
ପ୍ରକୃତି କି ଦୁଃଖ ସୁଖ ଦୁଇ ଲାଗିଥାଇ ।
ଏ ଦେହ ଅନ୍ତେ ତହିଁକି ଜାଣ ଜୀବ ଯିବ
ଯେ କଥା ଗୋଟି କହି ନପାରେ ବ୍ରହ୍ମା ଶିବ
ଗୋବିନ୍ଦମାୟାରେ ହୁଏ ଏ ସଂସାରେ ଜାତ
ଆତ୍ମାରୁ ଆତ୍ମା ପ୍ରକାଶି କରେ ଆତଯାତ ।
ମୃତ୍ତିକାକୁ ଭେଦି ଯେହ୍ନେ ଚକ୍ରରେ ବସାଇ
ଭିନ୍ନ ଭିନ୍ନ କରି ମନେ ରୁପ ଗଢ଼ିଥାଇ ।
ହୃଦରେ ପାଞ୍ଚଣ ରୂପ ଗଢୁଥାଇ ଯାହା ।
ଏହି ରୂପେ ଏ ସଂସାରେ ଅଟେ ବିଷ୍ଣୁ ମାୟା
ସେହି ଭାଣ୍ଡ ଭାଜି କାଳେ ହୁଏ ଯେହ୍ନେ ନାଶ
ଲେଉଟି ଭୂମିରେ ଯାଇ ମିଶଇ ଅବଶ୍ୟ ।
ଅନଳ ଯେସନେ ଗୋପ୍ୟ ଥାଇ ଦାରୁମଧ୍ୟେ
ଉପାୟ କଲେ ପ୍ରକାଶେ ଯେହ୍ନେ କାଷ୍ଠହୃଦେ
ବାହାର ଭିତରେ ଜାଣି ବାୟୁ ଯେହ୍ନେଥାଇ
ନାସିକା ଅଗ୍ରେ ଯେସନେ ଆସି ସଞ୍ଚରଇ ।
ଶରୀରେ ଥାଇ ପବନ ନ ଲାଗେ ଦେହକୁ
ସମସ୍ତ ସଂହରି ରହିଥାଏ ଶରୀରକୁ ।
ଆକାଶ ଯେହ୍ନେ ସବୁକୁ ବ୍ୟାପିଅଛି ଲାଗି ।
ସବୁକଥା ସଂହରି ବ୍ରହ୍ମାଣ୍ଡ ଅଛି ଜଗି ।
ଏ ଆତ୍ମା ଯେ ରୂପେ ଅଛି ଏ ଶରୀରେ ଜାଣ
ଖେଳୁଛି ସବୁରି ଦେହେ ଘେନି ଇନ୍ଦ୍ରିଗଣ ।
ଏଜୀବ ଶରୀରୁ ଯେତେବେଳେ ଛାଡ଼ିଯିବ ।
ପରମ ପୁରୁଷ ଗଲାକ୍ଷଣି ମିଳିଯିବ ।
ତହିଁ ଉତ୍ତାରେ ଯେ ତାର ପୁଣ୍ୟ ହେବ ବୁଝା
ପାପୀଙ୍କ ନରକ ପୁଣ୍ୟାତ୍ମାକୁ ଭୋଗ ଖଞ୍ଜା ।

ଉତ୍ତମ କୁଳେ କରଇ ନେଇ ତାକୁ ଜନ୍ମ
ମାନବ ଦେହରେ ପୁଣି ଲଭଇ ସୁକର୍ମ ।
ଜୀବଟି ଜନ୍ମ ମରଣ ଏରୂପରେ ଭଜେ
ସୁଯଜ୍ଞ ରାଜା ମଲାକୁ କାନ୍ଦ କିମ୍ପା ଏବେ ।
ଏରୂପେ ଜୀବଯାକ ଯାଆସ ହେଉଥାନ୍ତି
ଜନ୍ମ ହେଲାରୁ ମୃତ୍ୟୁକୁ ମୁଣ୍ଡରେ ବହନ୍ତି ।
ସେହିଠାରୁ ଆତ୍ମାକୁ ଯେ କ୍ଷଣେ ନ ଛାଡ଼ଇ
ଅଳ୍ପ ଅଳ୍ପ ଗ୍ରାସକରି ଆୟୁଷ ପୂରାଇ ।
ଯେତିକି ସେ ଆଣିଥାଇ ଲେଖି ଜନ୍ମକାଳେ
ତେତେ ଭୋଗ କରିଯାଏ ଏ ମହୀମଣ୍ଡଳେ
ସୁଯଜ୍ଞ ରାଜା ସାରିଣ ଏବେ ତାର ଭୋଗ
ମରି ପଡ଼ିଅଛି ଦେଖ କରି ପ୍ରାଣତ୍ୟାଗ ।
ଶୁଣିକରି ରାଣୀମାନେ ସତବୋଲି ପାଞ୍ଚି
ଶବକୁ ଛାଡ଼ିଣ ଉଠିଗଲେ ତହୁଁ ଘୁଞ୍ଚି
ପୁଣି ଉଠନ୍ତି ଯୁବତୀମାନେ ତୋଷମନେ
ସେ ବାଳକ ଚଳିଗଲେ ହୋଇ ଅନ୍ତର୍ଦ୍ଧାନ
ସୁଯଜ୍ଞ ରାଜାରାଣୀଏ ଜ୍ଞାତି ଗୋତ୍ର ଗଣ
ସାରିଲେ ରାଜାଏ ପ୍ରେତକାର୍ଯ୍ୟ ବାରଦିନ ।
ଏରୂପେ ପ୍ରାଣୀଙ୍କି ଲାଗେ ଗୋବିନ୍ଦର ମାୟା
ଶୁଣ ଗୋ ଜନନୀ ମୋର ଦକ୍ଷଙ୍କ ତନୟା ।
ଏମନ୍ତ ବାକ୍ୟ ହିରଣ୍ୟକଶିପୁର ଶୁଣି
ହିରଣ୍ୟାକ୍ଷ ମଲା କଥା ଛାଡ଼ିଲେ ତରୁଣୀ ।



## ହିରଣ୍ୟକଶିପୁର ତପସ୍ୟା

ଏଥୁ ଅନନ୍ତରେ ବାଣୀ ଶୁଣ ପରୀକ୍ଷିତ
ବଧୂମାନଙ୍କୁ ତିଆରି କରାଇ ନିଶ୍ଚିନ୍ତ
ହିରଣ୍ୟକଶିପୁ ପାଞ୍ଚେ ଭାଇ ମୃତ୍ୟୁଛଳେ
ତପସ୍ୟା କରିବ ବୋଲି ବସିଲା ନିଶ୍ଚଳେ ।
ବୁଝିଲେ କେବେହେଁ ନୋହେ ଏ ଶରୀର ଚିର
ତପରେ ତୋଷିବି ଏବେ ବସି ବେଦବର
ଏତେ ପାଞ୍ଚି ଗୃହ ତେଜି ଚଳିଲା ଏକାନ୍ତେ
ମିଳିଲା ତକ୍ଷଣେ ଯାଇଁ ମନ୍ଦର ପର୍ବତେ ।
ସେ ଗିରି ଗୁହାରେ ବସି ସଙ୍କଳପ କଲା
ତ୍ରିଭୁବନଯାକେ ରାଜା ହୋଇବି ବୋଇଲା
ଏମନ୍ତ ମନରେ ପାଞ୍ଚି ହିରଣ୍ୟକଶିପୁ
ବସିଲା ଆସନ ଶୁଦ୍ଧ କରି ପୂର୍ବ ତପୁ ।
ଉର୍ଦ୍ଧ୍ୱବାହୁ ହୋଇକରି ବେନିକର ଟୋଳି
ଆକାଶକୁ ମୁଖକରି ଚାହିଁଇ ନିରୋଳି ।
ଏକ ଅଙ୍ଗୁଷ୍ଠିରେ ଉଭାହୋଇ ଜାଗକଲା
ଏମନ୍ତେ ସହସ୍ରେ ବର୍ଷ ତାର ବହିଗଲା ।
ଭୂମିର ଉପରେ ଯେହ୍ନେ ଦିଶେ ମାଟିକୂଳ
ସେହିରୂପେ ହିରଣ୍ୟର ଦିଶେ ଶଙ୍ଖାନାଳ ।
ନାସିକା ରନ୍ଧ୍ର ଦିଶଇ ଜରି ଖୋଲା ପ୍ରାୟେ
ନାସାରୁ ପବନ ବହେ ବତାସର ପ୍ରାୟେ ।
ବିବରେ ପଶି ରହିଲେ ଡ଼ରେ ସର୍ପମାନେ
ରହିଲେ ଜଟାରେ ବସା ବାନ୍ଧି ପକ୍ଷୀମାନେ
କ୍ଷୁଧା ପିପାସାକୁ ଦୈତ୍ୟ କରିଦେଲା ଦୂର
ପବନକୁ ଭକ୍ଷ ଭକ୍ଷି ରଖିଲା ଶରୀର ।
କମ୍ପନ୍ତି ତାହାର ତପ ଦେଖି ସର୍ବଲୋକେ
ଗଗନୁ ନକ୍ଷତ୍ର ଖସିପଡ଼େ ଆଡ଼ବାଙ୍କେ ।
ସମସ୍ତ ଦେବତା ତାକୁ ମହାଭୟ କରି
ବିଧାତାଙ୍କ ପୁରେ ଯାଇ କରନ୍ତି ଗୁହାରି ।
ବୋଲନ୍ତି ଭୋଦେବ ସ୍ୱାମୀ ଶୁଣ ବେଦବର
ହିରଣ୍ୟକଶିପୁ ତପେ କମ୍ପେ ତିନିପୁର ।
କେତେଅସୁର ଦେଖିଛୁ ଆମ୍ଭେବେନି ଡ଼ୋଳେ
ଏତେ ତପସ୍ୟା କରି କେ ନାହିଁ ଭୂମଣ୍ଡଳେ ।
ହିରଣ୍ୟକଶିପୁ ତପସ୍ୟାକୁ ଆମ୍ଭେ ଚାହିଁ
ସ୍ୱର୍ଗପୁରଯାକେ ଜଣେ ନ ପାରିଲୁ ରହି ।
ମହାଘୋର ତପ ସେହି କରେ ପଶି ବନେ
ବି ଅବା ସଂକଳ୍ପ ସେହୁ କରିଅଛି ମନେ ।
ଦେବଲୋକଙ୍କର ବାକ୍ୟ ଶୁଣି ବେଦବର
ଋଷିଗଣ ସଙ୍ଗେ ଘେନି ଚଳିଲେ ତତ୍ପର ।
ମଞ୍ଚପୁରେ ମିଳିଲେକ ଯାଇ ସସ୍ରଯୋନି
ଦେଖିଲେ ତପସ୍ୟା ହିରଣ୍ୟର ଘୋରଧ୍ୱନି ।
ସ୍ୱଭାବେ ଅସୁର ସେ ତ ପୁଣି ଭୟଙ୍କର
ମହାବିକଟାଳ ପ୍ରାୟ ଦିଶଇ ଶରୀର ।
ଦେହରେ ତିଳାର୍ଦ୍ଧେମାଂସ ନାହିଁତାର କିଛି
କେବଳ ଅସ୍ଥି ପଞ୍ଜରା ଗୋଟି ସଙ୍ଗେ ଅଛି ।
କ୍ଷୀଣ ହୋଇ ମାତ୍ରକ ନିଃଶ୍ୱାସ ଗୋଟିବହେ
ବେଳକୁ ବେଳ ଦୁର୍ବଳ ହୋଇଲାଣି କାୟେ
ଏ ରୂପେ ବିଧାତା ଦେଖି ଅସୁରର ଗତି
ହଂସ ବାହନରେ ଚଢ଼ି ଆଗେ ଉଭା ହୋନ୍ତି
ବୋଲନ୍ତି ଉଠି ଏବେଁରେ କଶ୍ୟପ କୁମର
ତୋ ତପ ଦେଖି ଆସିଛୁ ଆମ୍ଭେ ବେଦବର
କି କଥା ପାଞ୍ଚିଣ ତପ କରୁ ତାହା କହ
ଯାହା ମାଗିବୁଟି ତାହା ଦେବେ ପିତାମହ ।
ଏତେ ବୋଲି କମଣ୍ଡଳୁ ଧରି କରେ ଜଳ
ହିରଣ୍ୟକ ଦେହେନେଇ ସିଞ୍ଚିଲେ ତତ୍କାଳ ।
ପଢ଼ୁ ମନ୍ତ୍ରଜଳ ଉଠିଲା ସେ ଦୈତ୍ୟେଶ୍ୱର
ସୂର୍ଯ୍ୟ ଶତେଗୁଣ ତେଜ ଦିଶେ ତା ଶରୀର

ଚାହିଁଲା ନୟନ ବେନି ମଳି ଦଶଦିଶେ
ଦେଖିଲା ଯେ ବିଜେ କରିଛନ୍ତି ଧାତା ପାଶେ
ଚାହିଁଲା ମରାଳେ ବସିଛନ୍ତି ବେଦବର
ତକ୍ଷଣେ ବ୍ରହ୍ମାଙ୍କୁ ଚାହିଁ କଲା ନମସ୍କାର ।
ହରଷରେ ନେତ୍ର ଜଳ ତେଡ଼େ ତାର ବହି
ଅନେକ ସ୍ତୁତି କରିଣ ବ୍ରହ୍ମା ମନ ମୋହି ।
ବୋଇଲା କହିବି ଶୁଣ ସ୍ୱାମୀ ବେଦବର
ଯାହା ମୁଁ ମାଗିବି ତାହା ଦେବଟି ତପୃର ।
ପ୍ରଥମରେ ତିନିପୁରେ ହେବି ମୁହିଁ ରାଜା
ଯାବତଲୋକେ କରିବେ ମୋତେ ପାଦପୂଜା
ସଂସାରେ ତୁମ୍ଭ ସର୍ଜନା ଜୀବ ଯେତେ ଛନ୍ତି
ଏମାନେ ମୋତେ କେ ମାରି ନ ଯାରିବେକ୍ଷିତି
ଅକ୍ରାମର ହୋଇଣ ମୁଁ ଥିବି ସବୁଦିନେ
ନମରିବି ରଜନୀରେ ନମରିବି ଦିନେ ।
ସ୍ତିରୀ ପୁରୁଷ ଦୁହିଁଙ୍କ ହସ୍ତେ ନମରିବି
ବାଜିଲେ ନାନାଶସ୍ତ୍ର ମୁଁ ଚିରଞ୍ଜୀବୀ ହେବି ।
ଦେବତା ଅସୁର ନର ସର୍ପ ଦନ୍ତାଘାତେ
ଏ ମରିବି ଭୂମିରେ ମୁଁ ଜାଣ କଦାଚିତ୍ତେ ।
ସଂଗ୍ରାମେ ନୋହିବେ ସମ ମୋତେ ନରନାରୀ
ସମସ୍ତେ ମୋ ବଶବର୍ତ୍ତୀ ହେବେ ତିନିପୁରୀ ।
ଆବର ମନେ ପାଞ୍ଚିବି ମୁହିଁ ଯେତେକଥା
ସମସ୍ତ ସିଦ୍ଧ ହୋଇବ ନ ହୋଇବ ବୃଥା ।
ବ୍ରହ୍ମାଣ୍ଡ କର୍ତ୍ତା ହେବାରୁ ଜାଣି ସିନା ମୁହିଁ
ମାଗିଲି ସାମାନ୍ୟ କିଛି ବର ଯିବ ଦେଇ ।
ବୁଝିଲେ ତୁମ୍ଭେ ଜଗତଯାକର ଯେ ତାତ
ଏପରି ବର ଦେଇଣ କରିବ ଯେ ମୁକ୍ତ ।
ଶୁଣିଣ ସେ ବେଦବର ମନମଧ୍ୟେ ପାଞ୍ଚି
ଭଲବର ଦେବଇଁ ତ ଆମ୍ଭେ ଆସି ଯାଚି
ନ ଦେଲେ ତ ସତ୍ୟହାନିହେବସିନା ମୋର
ଏତେ ପାଞ୍ଚି ଅସ୍ତୁ କହିଗଲେ ବେଦବର
ଯଶୋବନ୍ତୀ ଭୁବନେ ସେ ହୋଇଲେ ପ୍ରବେଶ
ଶ୍ରୀନୃସିଂହ ଶରଣ ମୁଁ ପୀତାମ୍ବର ଦାଶ ।
ଏ ରୁପେ ଯେ ଦୈତ୍ୟପତି ବ୍ରହ୍ମାବର ପାଇ
ତପତ କାଞ୍ଚନ ପ୍ରାୟ ଦିଶେ ତାର ଦେହୀ ।
ହରିଙ୍କି ମାରିବି ବୋଲି ତପ ଗୁପ୍ତେ କଲା
ବ୍ରହ୍ମା ଭୋଳହୋଇ ତାକୁଯାଚି ବର ଦେଲା
କରିବ ଉତ୍ପାତ ବୋଲି ଏହା ସେ ପାଞ୍ଚିଲେ
ବର କଥାକୁ ସେ ମୁଳ କରିଦେଇ ଗଲେ ।
ଯେଣୁ ତାଙ୍କ ମୁଖୁଁ ଅସ୍ତୁ ବାକ୍ୟଗଲା ଫିଟି
ସେ କଥା ଆନ କରି ନ ପାରେ ପରମେଷ୍ଠୀ

ଯହିଁରେ ବ୍ରହ୍ମା ଅଛନ୍ତି ତାକୁ ବର ଦେଇ
ତାହା କେ ଆନକରି ନ ପାରେ ଦେହ ବହି
ଉଠିଲା ଭାଇର ମୃତ୍ୟୁଛଳେ ଶିରଝୁଣି
ତିନିପୁରଯାକ ବୁଲିଗଲା ସେହିକ୍ଷଣି ।
ସ୍ୱର୍ଗପୁରେ ପଶିଣ ସେ କଲା ଉପଦ୍ରବ
ବାହାର କରି ରଖିଲା ଦ୍ରବ୍ୟ ଖର୍ବ ଖର୍ବ ।
ଶରୀରୁ ସକଳ ସୈନ୍ୟଯାକ ଜାତ କଲା
ଆନ ଲୋକ କରି ଏହା ପାରଇ କି ଭଲା ।
ସୁଧର୍ମା ସଭାରେ ଯାଇ ବସିଲା ଆପଣେ
ସବୁ ଦେବଙ୍କୁ ବରଣ କରେ ଜଣେ ଜଣେ ।
ସେବାରେ ଦେବାକୁ ରଖି ପଡ଼ି କଲା ଖଞ୍ଜା
ବୋଇଲେ ତିନିପୁରେ ମୁଁ ହୋଇବଇଁ ରାଜା ।
ତୁମ୍ଭଙ୍କୁ ମହାରାଜାଙ୍କ ଆଜ୍ଞା ନାହିଁ ଜାଣ
ରାଜାଙ୍କ ଆଜ୍ଞା ଯମଙ୍କୁ ଅଟେ ବୁଝାଇଣ ।
ଖଡ଼ଗଙ୍କ ପ୍ରତିତୁଲ୍ୟ ଅଟେ ଭାଷା ସତ୍ୟ
ଶ୍ରୀମୁଖ ଫିଟିଲା ବାଣୀ ନୁହେଁ ବିଚଳିତ ।
ଆଜ୍ଞା ମାନିବା ଲୋକଙ୍କୁ ଚନ୍ଦ୍ରର ଶୀତଳ
ଆଜ୍ଞା ଯେ ମେଣ୍ଟେ ପ୍ରତ୍ୟକ୍ଷେ ତାକୁ ଦାବାନଳ ।
ରାଜାର ଆଜ୍ଞା ପ୍ରମାଣେ ଚରାଚର ସୃଷ୍ଟି
ଆଜ୍ଞା ପ୍ରମାଣେ ସେ ପାଦେସର୍ବେ ଥାନ୍ତି ଖଟି
ପ୍ରତ୍ୟକ୍ଷେ ରାଜାର ଆଜ୍ଞା ଗୋଟି ବିଷ୍ଣୁ ସମ
କଶ୍ୟପ ଋଷି ପୁତ୍ର ମୁଁ ଅଟେ ଦୈତ୍ୟବ୍ରହ୍ମ ।
ବ୍ରହ୍ମା ମୋତେ ବର ଦେଇକରି କଲେ ପୁଜା
ତେଣୁ କରି ତିନିପୁରେ ହେଲି ମୁହିଁ ରାଜା ।
ଶୁଣି ଦେବତାଏ ତାର ଆସ୍ୟକୁ ଯେ ଚାହିଁ
ଭେଟିଲେ ଦେଖା ଦର୍ଶନୀମାନସର୍ବେ ଦେଇ
ସ୍ୱଭାବେ ଅସୁର ପୁଣି ତପେ ବଳୀୟାର .
ଅଗ୍ନିରୁବଳିଣ ତେଜ ଦିଶଇ ପ୍ରଖର ।
ମିଳିଲେ ସର୍ବ ଦେବତା ଆସି ତାର ପାଶେ
ଖଟିଲେ ଆସ୍ୟକୁ ଚାହିଁ ଜୀବନର ଆଶେ ।
ଆବର କେବଳ ବ୍ରହ୍ମା ବିଷ୍ଣୁ ପଶୁପତି
ଏ ଏକା ନ ଭେଟି ରହିଲେକ ରଖି ଜାତି ।
ଏ ତିନି ମୂର୍ତ୍ତିଙ୍କୁ ଛାଡ଼ି ଆଉ ସର୍ବ ଦେବା
ହିରଣ୍ୟକଶିପୁ ପାଦେ କଲେ ଆସି ସେବା ।
ଇନ୍ଦ୍ରର ଆସନେ ଯାଇ ବସିଲା ହିରଣ୍ୟ
ଶତ୍ରୁହୁଁ ଦ୍ୱିଗୁଣେ ସେହୁଅଟେ ଶୋଭାବନ ।
ଗନ୍ଧର୍ବଗଣ ସେବିଲେ ଆସି ତାର ପାଦେ
ସଙ୍ଗତେ ଅଛନ୍ତି ରହି ଅପସରାବୃନ୍ଦେ ।
ନାରଦ ବିଜେ କଲେକ ତୁମ୍ବୁରୁ ବଜାଇ
ଗନ୍ଧର୍ବେ ମିଳିଲେ ଆସି କରତାଳି ବାଇ ।

ସିଦ୍ଧ ଋଷିଏ ମିଳିଲେ ଡରି ଦୈତ୍ୟପାଶେ
ସ୍ତୁତି ବଚନ କହନ୍ତି ହସି ମନତୋଷେ ।
ବ୍ରାହ୍ମଣମାନେ ଆସିଣ ବେଦଗାନ କଲେ
ଯଜ୍ଞକରି ହିବର୍ଭାଗ ଦର୍ପଣକୁ ଦେଲେ ।
ଏ ରୂପେ ସେବିଲେ ସର୍ବେ ହରିଣ୍ୟକୁ ଯାଇ
ସପତଦ୍ୱୀପୁ ମିଳିଲେ ଆସି ନୃପସାଇଁ ।
ବୃକ୍ଷମନେ ଡରିକରି ଫଳିଲେ ଦ୍ୱିଗୁଣ
ଗାବମନେ ପୂଜିଲେ ଅନେକ କ୍ଷୀର ଜାଣ ।
ଷଡ଼ଋତୁଏ ଖଟିଲେ ଆସି ପାଦତଳେ
ଯେଝାବଳେ ସେବାକରି ରହିଲେ ନିଶ୍ଚଳେ ।
ଦଶଦିଗପାଳ ଆଜ୍ଞା ପାଇ ସେବାକଲେ
ପୃଥ୍ୱୀଯାକ ଦେବା ଦେବୀ ପାଦରେ ଖଟିଲେ
ସପତଦ୍ୱୀପେ ହିରଣ୍ୟ ହେଲା ନୃପମଣି
ଅନୁମାନଙ୍କ ପ୍ରାୟେ ସେ ଭୁଞ୍ଜେ ଭୋଗ ଆଣି
ତପ ଗର୍ବ ବଳେ ନୋହେ ସନ୍ତୋଷ ସେ କେବେ
ଅସୁର ବୁଦ୍ଧି ଯିବ କି ତାର କହ ଏବେ ।
ସପତ ମୁନିଙ୍କ ଶାପ ପୂର୍ବୁଥିଲା ପାଇ
ଅସୁର ପ୍ରକୃତି ତେଣୁ କେବେ ନ ଛାଡଇ ।
ପ୍ରଚଣ୍ଡ ମୂରତି ତାର ଦେଖି ଦେବତାଏ
ବୋଇଲେ ବିଷ୍ଣୁଙ୍କୁ ଚାଲ କରିବାକ ଲୟେ ।
ସୁବ୍ରାହ୍ମଣ ଜନମାନେ ଯାକୁ ଛନ୍ତି ଧାୟି
ଗତିପଥକୁ ଅଛନ୍ତି ସେହି ବାଟ ଚାହିଁ ।
ଦୁଷ୍ଟଲୋକଙ୍କୁ ବିନାଶି ସନ୍ଥ ଉଦ୍ଧାରନ୍ତି
ଆତଙ୍କୀ ପ୍ରାଣୀମାନଙ୍କ କେଶ ବିନାଶନ୍ତି ।
ଧର୍ମବନ୍ତ ଲୋକକୁ ଯେ ଥାନ୍ତି ପ୍ରଭୁ ଜଗି
କରାନ୍ତି ବିପୁଳ ଲକ୍ଷ୍ମୀଦେଇ ବିଷ୍ଣୁ ଭୋଗୀ ।
ଆମ୍ଭର ଦୁଃଖ ଖଣ୍ଡିବେ ଏବେ ଦେବ ହରି
ଚାଲ କ୍ଷୀରସିନ୍ଧୁ ତଟେ କରିବା ଗୁହାରି ।
ଏତେ ବୋଲି ଦେବତାଏ କୃତାଞ୍ଜଳି ହୋଇ
କ୍ଷୀରସିନ୍ଧୁ ତଟରେ ସେ ପ୍ରବେଶିଲେ ଯାଇ ।
ଆତଙ୍କ ହୋଇ ଲୋଡ଼ନ୍ତି ସର୍ବେ ଭଗବାନ
ଦେବଙ୍କ ଆକୁଳ ପୁଣି ଦେବ ଜନାର୍ଦ୍ଦନ ।
ଶଂଖ ଚକ୍ର ଗଦା ପଦ୍ମ ଚତୁର୍ଭୁଜେ ଧରି
ଦେବଙ୍କ ଆଗରେ ଦୃଶ୍ୟ ହେଲେ ନରହରି ।
ଦେଖି ଦେବତାଏ କଲେ ଅନେକ ଯେ ସ୍ତୁତି
ହରିଣ୍ୟକଶିପୁ କଥା କହିଲେ ତଡ଼ତି ।
ଦେବଙ୍କ ମୁଖୁଁ ଦୈତ୍ୟର ଉଗ୍ର କଥା ଶୁଣି
କୋମଳ ବାକ୍ୟେ କହନ୍ତି ତାଙ୍କୁ ଚକ୍ରପାଣି ।
ବୋଇଲେ ନକର ଭୟ ଆହେ ସୁରମାନେ
ତହିଁକି ଉପାୟ ଆମ୍ଭେ କରିବୁ ବିଧାନେ ।

ହିରଣ୍ୟକଶିପୁ ବୀର୍ଯ୍ୟେ ଜନ୍ମିବେ ସେ ଯାଇଁ
ପ୍ରହ୍ଲାଦ ନାମ ହୋଇବ ସାଧୁ ଅଙ୍ଗ ବହି ।
ମହାସାଧୁ ସୁଜନ ସେ ସୁପଣ୍ଡିତ ହେବ
ପର ଉପକାରୀ ଯେ ପ୍ରହ୍ଲାଦ ବୋଲାଇବ ।
ସାକ୍ଷାତେ ପ୍ରହ୍ଲାଦ ନାମ ଗୋଟି ପରଂବ୍ରହ୍ମ
ଦିନକେ ପ୍ରହରେ ସେହୁ ବୁଝେ ରାଜକର୍ମ ।
ରାଜ୍ୟ ଛାଡ଼ି ଦେବାର୍ଚ୍ଚନ ଯେତେକ ନିଯୋଗ
ପ୍ରହ୍ଲାଦ ନାମକୁ ପ୍ରହରେକ ରାଜଭୋଗ ।
ପ୍ରହଲାଦ ନାମ ଗୋଟି ପ୍ରହରେ ପର୍ଯ୍ୟନ୍ତେ
ସାକ୍ଷାତେ ବିଷ୍ଣୁ ସମ ଯେ ଅଟଇ ଜଗତେ ।
ପ୍ରହଲାଦ ବାକ୍ୟ ଗୋଟି ଶୁଣୁଥିଲେ କର୍ଣ୍ଣେ
ଲାଗଇ ଅମୃତପାନ ପ୍ରାୟ ସବୁଦିନେ ।
କେବଳ ପ୍ରହ୍ଲାଦ ମୁଖ ଗୋଟି ଅଟେ ହରି
ହରିନାମ ବିନୁ ଅନ୍ୟ ନପାରେ ଉଚ୍ଚାରି ।
ଯେତେଯେତେ ପ୍ରାଣୀ ଜାଣ ଗର୍ଭୁ ଜନ୍ମହନ୍ତି
କଳଙ୍କ ପସରା ମୁର୍ଖେ ଧରି ବୁଲୁଥାନ୍ତି ।
ହିରଣ୍ୟକଶିପୁ ବୀର୍ଯ୍ୟେ ପ୍ରହଲାଦ ଯାଇ
ତୁମ୍ଭ ହିତେ ଜନମିବ ହରିନାମ ଗାଇ ।
ପୁତ୍ରର ବଚନ ଶୁଣି ଦୈତ୍ୟ ଦୁଃଖ ଦେବ
ତାହା ସହି ନପାରି ମୁଁ ମାରିବି ଦାନବ ।
ଏତେ କଷ୍ଟ ଦେବତାଙ୍କୁ ଦେଇଣ ମେଲାଣି
ବୈକୁଣ୍ଠକୁ ବିଜେକରି ଗଲେ ଚକ୍ରପାଣି ।
ଶୁଣହେ ପରୀକ୍ଷ ଏବେ ପ୍ରହଲାଦ ଜନ୍ମ
ଏହା ଯେ ଶୁଣଇ ତାକୁ ବୋଲିଟି ଉତ୍ତମ ।
ଅଶେଷ କ୍ଲେଶ ତାହାର ହୁଅଇ ବିନାଶ
ଏଥୁ ଅନନ୍ତରେ ସ୍ୱର୍ଗୁ ଆସିଲା ରାକ୍ଷସ ।
ଅନ୍ତଃପୁର ମଧ୍ୟେ ଯାଇଁ ମିଳିଲା ଅସୁର
ରାଣୀ କି କହଇ ହସି ବ୍ରହ୍ମା ଦେଲା ବର ।
ବୋଇଲା ଏଠାରୁ ମୁହିଁ ଅମର ହୋଇଲି
ହରିକି ଏବେ ମାରିବି ନିଶ୍ଚେ ଖୋଜି କାଲି ।
ଶୁଣି ଶୁଦ୍ଧାଙ୍ଗନା ମନେ ହୋଇଲା ବିରସ
ବୋଇଲା ଏବେ ଅଳ୍ପକେ ରାଜା ଯିବ ନାଶ ।
ବର ଯେବେ ପାଇଲା ଏ ନିଶ୍ଚେ ଜାଣ ମଲା
ବର ନ ପାଇବାଯାକେ ସୁଖରେ ଏ ଥିଲା ।
ଆଜିଠାରୁ ବିଷ୍ଣୁର ଏ ହେଲା ଜାଣ ଶତ୍ରୁ
କି ରୂପେ କରିବ ପୁତ୍ର ହେବ କୁଳଗୋତ୍ରୁ ।
ଏତେ ବୋଲିଣ ରାଣୀ ଯେ ରାଜା ଆଶା ଜାଣି
ସମସ୍ୟା ନ ଦେଇ ହସେ ସ୍ୱାମୀ ବାକ୍ୟ ଶୁଣି
ମଣୋହି ମନ୍ଦିରେ ଭୋଜନ ସେ କରାଇଲା
ଅମୃତ ମିଶାଇ ଷଡ଼ରସେ ଭୁଞ୍ଜାଇଲା ।

ଆଚମନାନ୍ତେ ପଲ୍ୟଙ୍କେ ରାଜା କଲା ବିଜେ
ଏଥୁଅନ୍ତେ ଅସ୍ତହେଲେ ସେ ଗରୁଡାଗ୍ରଜେ ।
ପଲ୍ୟଙ୍କେ ଶ୍ରୀ ମହାରାଜା ରାଣୀ ବିଜେ କଲେ
ଏଥୁଅନ୍ତରେ କହିବା ବାଣୀ ଶୁଣ ଭଲେ ।
ସ୍ତିରୀ ପୁରୁଷଙ୍କ ଭାବ ଯେ ରୂପେ ବିହାର
ତେତେ ରସେ ରତି କଲା ହିରଣ୍ୟ ଅସୁର ।
ରାଣୀଙ୍କ ପୁତ୍ର ହେବାକୁ ମନେ ଥିଲା ପାଞ୍ଚି
ବିଷ୍ଣୁ ଦେବତାଙ୍କୁ କହିଥିଲେ ହୋଇ ଶୁଚି ।
ସେ ଦୁଇ କଥାଯାକ ତ ଘଟିଲା ଯେ ଆସି
ଶୁଦ୍ଧାଙ୍ଗନା ଗର୍ଭେ ବୀର୍ଯ୍ୟ ପଡ଼ିଲାକ ଖସି ।
ଏଥୁଅନନ୍ତରେ ରାତ୍ର ହେଲା ଆସି ଶେଷ
ଦେବ ଆଳୟେ ବାଜିଲା ଶଙ୍ଖ ବାଦ୍ୟଘୋଷ
ହିରଣ୍ୟକଶିପୁ ରାଜା ଶଯ୍ୟା ତେଜି ଯାଇ
ବସିଲା ସଭାରେ ପାତ୍ର ମନ୍ତ୍ରୀଙ୍କି ବସାଇ ।
ଏମନ୍ତେ ଯେ କହୁଁ କହିଁ ନବମାସ ଅନ୍ତେ
ଜନମିଲେ ପ୍ରହଲାଦ ମାତା ଗର୍ଭ ପଥେ ।
ବାଳକମତି ସ୍ୱଭାବେ ବାରବର୍ଷ ଗଲା
ହରିନାମ ଭଜି ଦେହ ଅଜ୍ରାମର କଲା ।
ଅଗ୍ନିରେ ପଡ଼ିଲେ ନୋହିବ ଯେ କ୍ଷୟ ବୃଦ୍ଧି
ହରିନାମ ଗୋଟି ଏଡ଼େ ଅଟଇ ସମୃଦ୍ଧି ।
ଅଗ୍ନିରେ ନ ପୋଡ଼ଇ ସେ ଜଳେ ନ ବୁଡ଼ଇ
ପବନେ ନ ଉଡ଼ଇ ସେ ଖଡ଼୍‌ଗେ ନ ଛିଡ଼ଇ ।
ଏ ରୂପେ ଅଛଇ ପ୍ରହଲାଦ ଦେହ ବହି
ସଂସାରେ ତା ପରି ବିଷ୍ଣୁ ଭକ୍ତ ଆନ ନାହିଁ ।



## ପ୍ରହଲାଦ ଚରିତ

କହନ୍ତି ଯେ ଶୁକମୁନି ଶୁଣ ପରୀକ୍ଷିତ
ପ୍ରହଲାଦ ଚରିତ ଏ ଅଟଇ ଅମୃତ ।
ହିରଣ୍ୟକଶିପୁ ପ୍ରହଲାଦ ମୂର୍ତ୍ତି ଦେଖି
ମନରେ ହରଷ ହୋଇ ଚାହିଁଇ ନିରେଖି ।
ପ୍ରହଲାଦ ଭକ୍ତ ପ୍ରାୟ ନାହିଁ କେ ବୈଷ୍ଣବ
ପଲକେ ନ ଛାଡ଼ି ଆତ୍ମା ଭଜେ ସର୍ବଜୀବ ।
ଅନୁକ୍ଷଣେ ପୁଲକ ସେ କରେ ଲୋମରାଜି
ଆନନ୍ଦେ ବହଇ ଅଶ୍ରୁଜଳ ନେତ୍ର ରଞ୍ଜି ।
ଏମନ୍ତେ ପୁତ୍ରର ଚିତ୍ତ ଦେଖି ନରସାଇଁ
ବୋଇଲା ହରିଙ୍କି କିମ୍ପା ଭଜେ ନିତ୍ୟେଧାଇଁ ।
ମୋର ନଗ୍ରଯାକେ ଆଜ ପରିଯନ୍ତେ ଦିନେ
ହରିନାମ ନ ଧରନ୍ତି ଏଥି ପ୍ରାଣୀମାନେ ।
କି ରୂପେ ପୁତ୍ର ମୋହର ପଢ଼ିଲା ବା କାହୁଁ
ବୁଝାଇଣ ଶିଖାଇଲେ ଶୁଣିବ ବା ସେହୁ ।

ଏତେ ପାଞ୍ଚିଣ ହିରଣ୍ୟ ପୁତ୍ର କୋଳେ ଧରି
ମୁଖପଦ୍ମେ ଚୁମ୍ବଦେଇ କହଇ ତିଆରି ।
ବୋଇଲା ବାପରେ ମୋର ଶୁଣ ପ୍ରହଲାଦ
ବିଷପ୍ରାୟେ ଲାଗେ ମୋତେ ଶ୍ରୀହରି ଶବଦ ।
ସାନ ଭାଇ କି ମୋହର ଅଛି ଜାଣ ମାରି
ତେଣୁକରି ଅଟଇ ସେ ଆମ୍ଭର ବଇରୀ ।
ତୁହି ତ ଆତ୍ମାରୁ ମୋର ହୋଇଛୁ ଜନମ
ପୁତ୍ର ସିନା ପାଳଇ ଯେ ପିତା ଧର୍ମ କର୍ମ ।
ଯେଉଁ ପୁତ୍ର ପିତା ବାକ୍ୟ ଭବେ ନ ପାଳଇ
କନ୍ଧରେ ଲକ୍ଷ୍ମୀ ତାହାର କେଭେ ନ ରହଇ ।
ସଭାଜନ ଲୋକ ବୋଲି ନ ବୋଲିବେ ତାକୁ
ମହା ଅପକାରୀ ସେହି ଅଟେ ସଂସାରକୁ ।
ହଂସ ସଭାରେ ବସିଲେ ବକ ଯେହ୍ନେ ଦିଶେ
ଅଣ ପୁରୁଷା ଯେସନେ ଯୁବାସ୍ତିରୀ ରସେ ।
ଅଭଦ୍ର ଯେ ଅପାଣ୍ଡକ ଅଟେ ପୁତ୍ର ଜାଣ
ତୁ ମୋର ଜନ୍ମିଛୁ ବାପ କୁଳ ଉଦ୍ଧାରଣ ।
ଶୁଣିଣ ଯୋଡ଼ିଲା ପ୍ରହଲାଦ କରପତ୍ର
ପିତା ପାଦଧୂଳି ନେଇ ବୋଲିହେଲା ଗାତ୍ର ।
ବୋଇଲା ତୁ ପିତା ମୋର ପିଣ୍ଡର କାରେଣି
ପ୍ରତ୍ୟକ୍ଷେ ଜନନୀ ମୋର ଦେବୀ କମଳିନୀ ।
ତୁମ୍ଭ ରଜ ବୀର୍ଯ୍ୟେ ମୁଁ ନିର୍ଗୁଣ ଅଙ୍ଗ ପାଇ
ଦେଖିଲି ସଚରାଚର ପୃଥ୍ୱୀ ଆପ ମୁହିଁ ।
ନୟନେ ଦେଖିଲି ସବୁ ଶ୍ରବଣେ ଶୁଣିଲି
ଜିହ୍ୱା ଗ୍ରତେ ପଢ଼ି ନାମ ଉଚ୍ଚାରଣ କଲି ।
ମୋର ପିତା ଆତ୍ମାଘେନି ଆତ୍ମା ମୋର ହେଲା
ଶିକୁଳିର ଛନ୍ଦେ ପଡ଼ି ପ୍ରକାଶ ପାଇଲା ।
ପିତା ଘେନି ସିନା ମୋର ହେଲା କଳେବର
ପାଦେ ଚାଲିଣ ଦର୍ଶନ କଲାକ ତ୍ରିପୁର ।
ଅଟନ୍ତି ମୋହର ପିତାମାତା ପୂର୍ଣ୍ଣବ୍ରହ୍ମ
ବ୍ରହ୍ମରୁ ଯେ ବ୍ରହ୍ମ ଅଂଶ ହୋଇଛି ମୁଁ ଜନ୍ମ ।
ପୁତ୍ରର ବାକ୍ୟ ଶୁଣିଣ ସେ ହିରଣ୍ୟ ରାଜା
ବୋଇଲା ଏଡ଼େକ ଯୋଗ୍ୟ ହେବ ମୋ ଆତ୍ମଜା ।
ଶ୍ରୀ ଯୁବରାଜ ପଦ ମୁଁ ଦେଇଥିଲି ଆଜୁ
ବୁଦ୍ଧି ହେଲେ ରାଜ୍ୟଯାକ ପଛେ ମୋର ବୁଝୁ
ଏତେ ବୋଲିଣ ହରିଣ୍ୟ ମନେ ମନେ ପାଞ୍ଚି
କାହାକୁ ନ କହିଦେଲା ରାଜପଦ ଯାଚି ।
ହରିଣ୍ୟ ଏକା ଜାଣଇ ପ୍ରହଲାଦ ଜାଣେ
ରାଜପଦକୁ ମନରେ ତୁଚ୍ଛପ୍ରାୟ ମଣେ ।
ପିତାର ଆସ୍ୟକୁ ଚାହିଁ ମନେ ଶ୍ରଦ୍ଧା କଲା
ତହିଁପରେ ପ୍ରସଙ୍ଗ କହିବା ଶୁଣ ଭଲା ।

ବିଷ୍ଣୁ ଭକ୍ତି ବିନା ନ ଜାଣଇ ଆନକଥା
ତାର ଆସ୍ୟ ଚାହିଁ ନ ପଢ଼େ ବିଷ୍ଣୁ ପୋଥା ।
ମନେ ମନେ ହରିଙ୍କୁ ସେ ଭଜେ ଅନୁକ୍ଷଣେ
କାହାକୁ ନ ଶୁଭଇ ନ ଜାଣେ କେହି ଜଣେ ।
ଏମନ୍ତେ କେତେଦିନ ଭୋଗ ହୋଇ ଯାନ୍ତେ
ହିରଣ୍ୟକଶିପୁ ମନେ ପାଞ୍ଚି ହୃଦଗତେ ।
ବୋଇଲା ପୁତ୍ରକୁ ଏବେ ପଢ଼ାଇବା ପାଠ
ପାଠ ନ ପଢ଼ିଲେ କେବେ ନୁହଇ ଗରିଷ୍ଠ ।
ଏତେ ବୋଲିଣ ପୁତ୍ରକୁ ରାଜା ଡକାଇଲା
ପ୍ରହଲାଦକୁ ଯେ ବିଦ୍ୟା ପଢ଼ାଅ ବୋଇଲା ।
ଶୁଣକରି ଶୁକ୍ରଗୁରୁ ହୋଇଲେ ଆନନ୍ଦ
ବୋଇଲେ ପ୍ରାଣୀଙ୍କୁ ବିଦ୍ୟା ଅଟେ ବଡ଼ପଦ ।
ସବୁ ଭାଗ ହୁଏ ବିଦ୍ୟା ହୁଏ ନାହିଁ ଭାଗ
ସୁପଣ୍ଡିତ ଜନେ ଚିହ୍ନି ଜାଣନ୍ତି ଏ ମାର୍ଗ ।
ତୋ ପୁତ୍ରକୁ ପଢ଼ାନ୍ତୁ ଯେ ମୋର ପୁତ୍ର ବେନି
ଷଣ୍ଡମାର୍କା ଦୁଇ ନାମ ଅଟନ୍ତି ସେ ମୁନି ।
ଯାବତ ବିଦ୍ୟା ତ ତାଙ୍କ ଗର୍ଭେ ପୂରିଅଛି
ପଢ଼ିଲେ ପଣ୍ଡିତ ହେବ ତୋର ଏହି ବଚ୍ଛି ।
ଶୁଣି ହିରଣ୍ୟପଶିପୁ ଆନନ୍ଦ ଯେ ହେଲା
ମୁନିଙ୍କୁ ଡକାଇ ସେହୁ ପୁତ୍ର ସମର୍ପିଲା ।
ବୋଇଲା ମୁନି ଆପଣ ଶୁଣ ଷଣ୍ଡମାର୍କା
ତୁମ୍ଭ ପ୍ରାୟ ବୁଦ୍ଧିମନ୍ତ ନାହିଁ ଶାସ୍ତ୍ରେ ଏକା ।
ଯେ ରୂପେ ହରିନାମକୁ ଛାଡ଼ିବ ଏ ଜାଣ
ଅନୁକ୍ଷଣେ ପଢ଼ାଇବ ଶିବଙ୍କ ପୁରାଣ ।
ଏ ନାମ ଯେ ଭଜେ ତାକୁ ମୋର ବଡ଼ଦୟା
ବିଷ୍ଣୁକୁ ଭଜିବା ଲୋକ ଅଟେ କୁଳକ୍ଷୟା ।
ହରି କି ଯେ ଭଜଇ ସେ ଅଟଇ ମାୟାବୀ
ଶିବଙ୍କୁ ଭଜିଲା ଲୋକ ଅଟେ ଚିରଞ୍ଜୀବୀ ।
ଶୁଣି ଷଣ୍ଡମାର୍କ ମୁନି ହେଲେ ହସ ହସ
ବୋଇଲେ ରାଜାର ବୁଦ୍ଧି ଅଟଇ ରାକ୍ଷସ ।
ବୁଝିଲେ ତ ହର ବ୍ରହ୍ମା ବିଷ୍ଣୁ ଏକମୂର୍ତ୍ତି
ଭିନ୍ନ କରି ଘେନିବ ଏ ଅସୁର ପ୍ରକୃତି ।
ଏତେ ପାଞ୍ଚି ହରିଣ୍ୟର ଆସ୍ୟକୁ ଚାହିଁଣ
ପ୍ରହଲାଦକୁ ଯେ ଘେନିଗଲେ ମୁନିଗଣ ।
ସାତ ପାଞ୍ଚ ପିଲା ଘେନି ଚାଟଶାଳୀ କରି
ପଢ଼ାଇଲେ ବିଦ୍ୟା ମୁନି ଶାରଦା ସୁମରି ।
ପ୍ରହ୍ଲାଦ ଆଗକୁ ଶିବପୁରାଣ ଯେ ଆଣି
ପଢ଼ାନ୍ତି ଯେ ଗୁରୁପୁତ୍ରେ ରାଜା ଆଜ୍ଞା ମାନି ।
ଶୁଣି ପ୍ରହଲାଦ ଗୁରୁଙ୍କର ମୁଖାଗ୍ରତେ
ପଢଇ ସୁମରି ହରିନାମ ଏକଚିତ୍ତେ ।
ଗୁରୁଙ୍କୁ ଶୁଭଇ ଶିବପୁରାଣ ପରାୟେ
ଜାଣନ୍ତି ପ୍ରହଲାଦର କଥା ଦେବରାୟେ ।
ଦୈତ୍ୟ ପୁତ୍ରଙ୍କର ସଙ୍ଗେ ପଢ଼ିଲେ ପ୍ରହ୍ଲାଦ
ମଙ୍ଗଳବାକ୍ୟ ଶୁଭଇ ହରି ହରି ଶବ୍ଦ ।
ହରି ହରି ବୋଲି ବୋଲେ କଶ୍ୟପର ନାତି
ଶୁଣି ଗୁରୁପୁତ୍ରେ ବଡ଼ ଆନନ୍ଦ ହୁଅନ୍ତି ।
ବଡ଼ଲୋକ ପ୍ରାୟ ପଢନ୍ତି ଏ ଚାଟପୋଏ
ଶୁଭଇ ପ୍ରହ୍ଲାଦର ତୁଣ୍ଡ ହରି ମୟେ ।
ପ୍ରହ୍ଲାଦର ପ୍ରାୟେ ନ ପାରେ କେହୁ ପଢି
ଗୁରୁଙ୍କର ହାତୁଁ ମାଡ଼ ଖାନ୍ତି ବେତବାଡ଼ି ।
ଏମନ୍ତ ପଢ଼ାନ୍ତେ ସାତମାସ ଗୁରୁ ବିଦ୍ୟା
ବୋଇଲେକ ପୁତ୍ରେ ଆସି ହେଲେ ଏବେ ସିଦ୍ଧା
ରାଜାର ଛାମୁକୁ ଏବେ ଘେନିଯିବା ପରା
ଏ ରୂପେ ପୁତ୍ରକୁ ଗୁରୁ କରାଇଲେ ତ୍ୱରା ।
ରାଜାର ଛାମୁରେ ଯାଇ ହୋଇଲେ ପ୍ରବେଶ
ଆଗରେ ଯେ ପ୍ରହ୍ଲାଦ ଚାଲେ ହୋଇ ବେଶ ।
ଦେଖିଣ ହିରଣ୍ୟ ବଡ଼ ଆନନ୍ଦ ବୋଇଲା
ପୁତ୍ରକୁ କୋଳେ ଧରିଣ ଜଙ୍ଘେ ବସାଇଲା ।
ଅଳଙ୍କାରେ ବିଭୂଷଣ ପୁତ୍ରକୁ ଯେ କରେ
ଆନନ୍ଦିତ ହୋଇ ପୁତ୍ରେ ପୁରାଣ ପଚାରେ ।
ବୋଇଲେ ତୁ କି କି ବିଦ୍ୟା ଶିଖିଲୁରେ ବାପ
ତୋ ମୁଖୁଁ ଶୁଣି ଖଣ୍ଡନ ହେବ ମୋର ପାପ ।
ପୁତ୍ର ଯେବେ ସଭାଭୋଗ୍ୟ ହୁଅଇ ସଂସାରେ
ସେ ପିତାକୁ ଭାଗ୍ୟବନ୍ତ ବୋଲେ ତିନିପୁରେ
ଭାଗ୍ୟବନ୍ତ ଶବ୍ଦ ପ୍ରତ୍ୟକ୍ଷରେ ଗଙ୍ଗାସ୍ନାନ
କହ ପ୍ରହଲାଦ ଆରେ ଶୁଣା ସୁବଚନ ।
ରାଜନୀତି ବିଦ୍ୟାବୃତ୍ତି କୁଳଧର୍ମ କୀର୍ତ୍ତି
ଏ ତିନି ପାଳିବା ପୁତ୍ରେ ପଣ୍ଡିତ ବୋଲାନ୍ତି ।
ରାଜାର ବାକ୍ୟ ଶୁଣିଣ ପୁତ୍ର ପ୍ରହଲାଦ
ବୋଇଲା କହୁଛି ପିତା ଶାସ୍ତ୍ର ଶୁଣ ଆଦ୍ୟ ।
ହକାର ଅକ୍ଷରୁ ହରି ହୋଇଲେ ପ୍ରକାଶ
ହରି ନାମରେ ପ୍ରବର୍ତ୍ତି ଅଛନ୍ତି ମନୁଷ୍ୟ ।
ଆଦ୍ୟରେ ଜାଣ ଶୁଣାନ୍ତି ଗୁରୁ କର୍ଣ୍ଣେ ହରି
ତେତେବେଳେ ଯାଇ ମୋକ୍ଷ ହୁନ୍ତି ନରନାରୀ ।
ହରି ନାମରେ ସମସ୍ତେ ମୋକ୍ଷ ଯେଣୁ ହୋଇ
ତେଣୁ ଶତ୍ରୁ ମିତ୍ର ତାହାକୁ ମୁଁ ନ ମଣଇ ।
ତୋର ଦେହେ ମୋର ଦେହେ ସବୁ ଦେହ ଯାକେ
ହରି ବିଜେକରି ବସିଛନ୍ତି ଯଥାଶକ୍ୟେ ।
କର୍ଣ୍ଣଦ୍ୱାରେ ଶୁଣାନ୍ତି ସେ ନେତ୍ରଦ୍ୱାରେ ଦେଖି
ନାସାଦ୍ୱାରେ ସର୍ବ ବାସ ଘେନେ ପଦ୍ମଆଖି ।

ମୁଖଦ୍ୱାରେ ସର୍ବ ରସ ଆପ୍ୟାନ ସେ କରେ
ଏଣୁ ହରେ ରାମ କୃଷ୍ଣ ସର୍ବମୁଖେ ସ୍ଫୁରେ ।
ହରି ହରି ବୋଲି ଯେହୁ ବୋଲେ ସର୍ବକାଳେ
ତାର ପ୍ରାୟ ଭକ୍ତ କେ ନ ମିଳେ ଭୂମଣ୍ଡଳେ ।
ହରେ ରାମକୃଷ୍ଣ ଆଉ ଗୋବିନ୍ଦ ଗୋପାଳ
ଜଗନ୍ନାଥ ଦାରୁବ୍ରହ୍ମ ବିଷ୍ଣୁ ଆଦିମୂଳ ।
ଶ୍ରୀନୃସିଂହ ନାରାୟଣ ଶ୍ରୀ ମଧୁସୂଦନ
ଅଚ୍ୟୁତ ଆଦିକନ୍ଦ ଯେ ପତିତପାବନ ।
ଅନନ୍ତ ଯେ ଅନ୍ତର୍ଯ୍ୟାମୀ ଭକ୍ତ ଭାବଗ୍ରାହୀ
ସେ ପ୍ରଭୁ ଆର୍ତ୍ତ ଫେଡ଼ନ୍ତି ଜୀବେ କରି ତ୍ରାହି ।
ଏ ରୂପେ ସେ ହରିନାମ ପୁତ୍ରମୁଖୁଁ ଶୁଣି
ବିଦ୍ୟାଗୁରୁଙ୍କୁ ଚାହିଁଣ ପୁଚ୍ଛେ ନୃପମଣି ।
ବୋଇଲା ପ୍ରହଲାଦ କି ପଢ଼େ ଏହି ପାଠ
ହରି ନାମ ଗାଇ ଗାଇ ବୁଲାଉଛି ଓଷ୍ଠ ।
ପଢ଼ାଇଲ ଆଚ୍ଛା ପାଠ ଆଜିଯାଏ ନେଇ
ଏତେ ବୋଲି ପୁତ୍ରକୁ ସେ ଦେଲା ଚିରିକାଇଁ ।
ବୋଇଲା ଏବେ ନେଇଣ ଶିଖାଇବ ପଦ
ଉତ୍ତମ କରି ପଢିବ ମୋର ପ୍ରହଲାଦ ।
ଶୁଣି ମନକୁ ବିରସ ଗୁରୁଦେବ କରି
ଚଳିଲେ ସଙ୍ଗତେ ଘେନି ପ୍ରହ୍ଲାଦକୁ ଧରି ।
ରାଜା କହିବାରୁ ବିପ୍ରେ ମନ ଉଦବେଗେ
କହନ୍ତି ସେ ଶୁକ୍ରରୂପେ ପ୍ରହ୍ଲାଦଙ୍କ ଆଗେ ।
ବୋଇଲେ ହେ ରାଜପୁତ୍ର ଆମ୍ଭଠହୁଁ ଶୁଣ
ଗୁରୁପାଶେ ଆମ୍ଭେ ତୋତେ କରୁଛୁ କଲ୍ୟାଣ
ତୁମ୍ଭେ ଘେନି ଆମ୍ଭଙ୍କୁ ଯେ ଲାଗୁଛି ସନ୍ଦେହ
ନ କହିଣ ମିଥ୍ୟା କିଛି ସତ୍ୟ ବାକ୍ୟ କହ ।
ବାଳକର ବୁଦ୍ଧି ପ୍ରାୟ ନୁହେଁ ବୁଦ୍ଧି ତୋର
ରାଜାର ମୁଖକୁ ଚାହିଁ ପାଉଁ ଆମ୍ଭେ ଡର ।
ଏଥକୁ ଶୁଣିଣ ଆମ୍ଭ ବାକ୍ୟ ଯେବେ ତୁହି
କଥାଏ କହୁଛୁଁ ଆମ୍ଭେ ବୁଝ ମନ ଦେଇ ।
ହରିଙ୍କି ଛାଡିଣ ଏବେ ଶିବଶାସ୍ତ୍ର ପଢ଼
ଏ କଥାକୁ ରାଜା କରୁଅଛି କେଡ଼େ ତୋଡ଼ ।
ଶିବ ପୁରାଣ ପଢ଼ିଲେ ପାପ କ୍ଷୟ ଯାଇ
ଶୁଣିବା ଲୋକର ପାପ ନିଶ୍ଚେ ନ ରହଇ ।
ପଢ଼ିଲେ ତା ଶିବନାମ ଅନ୍ଧଚକ୍ଷୁ ଦିଶେ
ଏତେ ହେଁ ମହିମା ଶିବ ପୁରାଣେ ପ୍ରକାଶେ ।
ଆମ୍ଭର ବାକ୍ୟ ନ ମାନି ଅନ୍ୟମାର୍ଗେ ପଂଢୁ
ଏ ଅର୍ଥ ନ ବୁଝି କି ରୂପେ ତୁ ପଦଯୋଡୁ ।
ଶୁଣି ପ୍ରହଲାଦ ଏହା ବୋଲେ ହରେ ହରେ
ମୁଁ କିସ କହିବି ଆଉ ଗୁରୁକଙ୍କ ଛାମୁରେ ।

ଶ୍ରୀ ଗୋବିନ୍ଦ ମାୟାରେ ଏ ତ୍ରିଭୁବନଯାକ
ଏକ ବ୍ରହ୍ମରୁ ପ୍ରକାଶି ହୋଇଲେ ଅନେକ ।
ଯେଉଁ ହରିର ଆଜ୍ଞାରେ ଉଦେ ପଞ୍ଚଭୂତ
ସେ ପ୍ରଭୁଙ୍କୁ ମୋର କୋଟି କୋଟି ଦଣ୍ଡବତ ।
ବଞ୍ଚିଛନ୍ତି ଯାର ଇଚ୍ଛା ଘେନି ସର୍ବଜନ୍ତୁ
ଅଛନ୍ତି ସେ ଭକ୍ତଜନଙ୍କର ଜ୍ଞାନତନ୍ତୁ ।
ଯାହାର ମାର୍ଗରେ ଚାଲୁଛନ୍ତି ବ୍ରହ୍ମା ଶିବ
ଭଜନ୍ତି ସୁଗତି ହେବ ପାଇଁ ବାସୁଦେବ ।
ସେ ମହାପ୍ରଭୁଙ୍କୁ ମୋର କୋଟି ନମସ୍କାର
ପର ଅପର ବୋଲି ନ ମଣେ ମନ ମୋର ।
ପ୍ରହଲାଦ ବାକ୍ୟ ଗୋଟି ଶୁଣ ଗୁରୁ କର୍ଣ୍ଣେ
ପୁଛନ୍ତି ହୃଦରେ କୋପବହି କ୍ରୋଧମନେ ।
ବୋଇଲେ ପ୍ରହ୍ଲାଦ ଅଟୁ ତୁହି ଅବିବେକ
ଦେଖ ଆମ୍ଭ ପାଶେଛନ୍ତି କେତେ ରାଜ୍ୟଲୋକ ।
ଆମ୍ଭେ ମଧ୍ୟ ଅଟୁ ପୁଣି ରାଜା ସେବାକାରୀ
ତୋ ବାକ୍ୟ ଶୁଣି ଯାଉଛି ଆମ୍ଭ ଦେହ ଥରି ।
ଆମ୍ଭେ ଯେତେ ପଢ଼ାଇଲୁ ସେ ନୁହେଁ ଗୋଚର
ଏମନ୍ତ ଜନକୁ ବୋଲି କୁଳର ଅଙ୍ଗାର ।
ଚନ୍ଦନବନେ ଜନ୍ମିଲେ ଆସି କଣ୍ଟାବୃକ୍ଷ
କଣ୍ଟାକୁ ଛେଦିଲେ ଦୋଷ ନ ଲାଗେ ପ୍ରତ୍ୟକ୍ଷ
କଣ୍ଟକ ଉପରେ ପଡ଼ିବଟି ଯେବେ ପାଦ
କମ୍ପଇ ଯେ ମହାଭୟ କରି ତାର ହୃଦ ।
ବଡ଼ ଲୋକକୁ ପଢ଼ାଉଥାନ୍ତୁ ଯେବେ ଆମ୍ଭେ
କୋକିଳ ପରି ତୁଣ୍ଡ ତା ଫିଟନ୍ତାଣି ଯେବେ ।
ଏ ରୂପେ କହିଣ ଗୁରୁ ପ୍ରହ୍ଲାଦକୁ ବୋଧି
ପଢାନ୍ତି ଯେ ରାଜନୀତି ବିଦ୍ୟା ହସ୍ତେ ସାଧି ।
ଯେତେକ ବିଦ୍ୟା ପଢ଼ିଲେ ଧର୍ମ ଏକା ମୂଳ
ପାରନ୍ତି ଏ କଥା ଚିହ୍ନି ସୁଜନେ କେବଳ ।
ତୁମ୍ଭେ ଶ୍ରୀଗୁରୁଦେବ ମୁଁ ତୁମ୍ଭ ଶିଷ୍ୟପୁତ୍ର
ତୁମ୍ଭର ବଚନ ମୋତେ ଯେ ପରମ ଶାସ୍ତ୍ର ।
ଯେତେ ପଢ଼ାଇଛ ମୋତେ ତୁମ୍ଭେ ଶାସ୍ତ୍ରବାଣୀ
ମୋତେ ଶୁଭୁଅଛି ତାହା ହରି ଚକ୍ରପାଣି ।
ତୁମ୍ଭର ଶ୍ରୀପଦ୍ମପାଦେ ଚିତ୍ତ ମୋର ରହୁ
ଗୁରୁ ଗୋବିନ୍ଦ ଭଜନ ନିତ୍ୟେ କରୁଥାଉ ।
ପ୍ରହଲାଦଠାରୁ ଏହି ବାକ୍ୟ ଗୁରୁଶୁଣି
ତାଙ୍କ ମୁଖୁଁ ନ ସ୍ଫୁରଇ ଅନ୍ୟ କିଛି ବାଣୀ ।
ବୋଇଲେ ଏହାକୁ ଆମ୍ଭେ ନ ପାରୁ ବୁଝାଇ
ରାଜାର ଆଗେ କହିବା ସବୁ ଏବେ ଯାଇ ।
ଏତେ ବିଚାରିଣ ଗୁରୁ ପ୍ରହ୍ଲାଦକୁ ଧରି
ରାଜା ଛାମୁରେ ମିଳିଲେ ଯାଇ ବ୍ରହ୍ମଚାରୀ ।

ପ୍ରହ୍ଲାଦ ପୁତ୍ରଙ୍କୁ ଦେଖି ହିରଣ୍ୟ ଅସୁର
ବୋଇଲା କୁମର ମୋର କୁଳର ଈଶ୍ୱର ।
ଦିନକ ମଧ୍ୟେ ସାଧିଲା ବିଦ୍ୟା କେତେକ୍ଷଣି
ଆସିଲା ଗୁରୁଙ୍କୁ ସଙ୍ଗେ ଧରି ପୁତ୍ରମଣି ।
ପିତାର ଯେ ସ୍ନେହବାଣୀ ଶୁଣି ପ୍ରହଲାଦ
ପ୍ରଣମି ଚରଣ ତଳେ ଧରି ବେନିପାଦ ।
ନେତ୍ରରୁ ଯେ ଅଶ୍ରୁଜଳ ବହେ ଘନ ଘନ
କାହାକୁ ନ ଶୁଭେ କରେ ହରିଙ୍କୁ ଭଜନ ।
ହିରଣ୍ୟକଶିପୁ ବୋଲେ ଶୁଣରେ ପ୍ରହ୍ଲାଦ
ପଢ଼ିଲୁ କି ଶିବଗ୍ରନ୍ଥ ବହି ଶ୍ଳୋକବନ୍ଧ ।
ପଢ଼ିଲୁ ଗୁରୁଙ୍କପୁରେ ରହି ପାଠ ଯେତେ
ବାଳକ ବୋଲିତ ସାନ ନ କରେ ମୁଁ ତୋତେ ।
କେଉଁ କେଉଁ ବିଦ୍ୟା ପଢ଼ିଅଛୁ ମୋତେ କହ
ଶୁଣିଲେ ତୋ ମୁଖୁଁ ମୋର ଭାଜିବ ସନ୍ଦେହ ।
ପ୍ରହ୍ଲାଦ ବୋଇଲା ତେବେ କହିବ ଭୋ ତାତ
ତୁମ୍ଭ ଆତ୍ମା ଭିତରୁ ମୁଁ ଜନ୍ମିଛି ବାଳୁତ ।
ତୁମ୍ଭ ପାଦପଦ୍ମ ସେବା ଦିନେ କରି ନାହିଁ
ମୂଢ଼ପଣେ ବୋଲୁଅଛି ମୁଖେ ହରି ମୁହିଁ ।
ତୁମ୍ଭ ଆଗେ କହୁଅଛି ଶୁଣ ବିଦ୍ୟା ଗୁଣ
କହିବି ଗୋଟିଏ ବିଷ୍ଣୁଭକ୍ତି ଶ୍ଳୋକ ଶୁଣ ।
ଶ୍ରବଣଂ କୀର୍ତ୍ତନଂ ବିଷ୍ଣୋଃସ୍ମରଣଂ ପାପସେବନଂ
ଅର୍ଚ୍ଚନଂ ବନ୍ଦନଂଦାସ୍ୟ ସଖ୍ୟମତ୍ମନିବେଦନଂ
ଇତି ପୁସାର୍ପିତାବିଷ୍ଣୌ ଭକ୍ତିଶ୍ଚେନ୍ନବଲକ୍ଷଣ
କ୍ରିୟତେଭଗବତ୍ୟଦ୍ଧାତନ୍ନନ୍ୟେଽଧୀତମୁତ୍ତମ ।
ଭୋ ପିତା ଶୁଣ ମୋହର ଶ୍ଳୋକର ଯେ ଅର୍ଥ
ନବଧାଭକତି କଲା ଲୋକଟି କୃତାର୍ଥ ।
ଶ୍ରୀହରି ନାମଗୋଟି ଯେ ଶୁଣେ ଶ୍ରବଣରେ
ତାର ପ୍ରାୟ ଭକ୍ତଜନ ନାହିଁ କେ ସଂସାରେ ।
ହରିଙ୍କୁ ବନ୍ଦନା କରେ ମନେ ମନେ ପୁଣି
ତାହାଙ୍କୁ ତାରନ୍ତି ନାନା କ୍ଲେଶୁଁ ଚକ୍ରପାଣି ।
ଅନୁବ୍ରତେ ହରିନାମ କୀର୍ତ୍ତନ ଯେ କରେ
ପରମ ବୈଷ୍ଣବ ସେହି ଅଟଇ ସଂସାରେ ।
ହରିଙ୍କୁ ଅର୍ଚ୍ଚନା କଲେ ନିଷ୍ଠଲେ ଯେ ବସି
ମହାପବିତ୍ରବନ୍ତ ଯେ ଅଟେ ବିଷ୍ଣୁ ଅଂଶୀ ।
ଶ୍ରୀହରି ପଦ୍ମପାଦ ଯେ ଚିନ୍ତେ ଅନୁବ୍ରତେ
ତାର ପ୍ରାୟ ମହାଭକ୍ତ ନାହିଁ କେ ଜଗତେ ।
ହରିଙ୍କୁ ଭଜନ୍ତି ଦାସ ପାଦେ ଯେତେଲୋକ
ତାଙ୍କ ସମ ଭକ୍ତ କେ ନ ମିଳନ୍ତି ତ୍ରିଲୋକ ।
ଶ୍ରୀହରି ପାଦପଦ୍ମେ ଯେ ଭଜେ ସଖାପଣେ
ବ୍ରାହ୍ମଣ ତୁଲେ ଲେଖା ସେ ଅଟେ ବିଷ୍ଣୁ ଗଣେ

ହରି ଏକ ଆତ୍ମା ଯେ ଅଟନ୍ତି ସର୍ବଘଟେ
ହରିଙ୍କୁ ଚିହ୍ନିଲା ଲୋକ ନପଡ଼େ ସଂକଟେ ।
ଏ ରୂପେ ଶ୍ରୀହରିର ନବଧା ଭକ୍ତି ଗୁଣ
ରାଜାଙ୍କ ଛାମୁରେ କିସ କହିବି ମୁଁ ପୁଣ ।
ଶୁଣିଣ ହରିଣ୍ୟ ମହା ପ୍ରଚଣ୍ଡ ହୋଇଲା
ଅରୁଣ ଉଦୟ ପ୍ରାୟ ନେତ୍ର ପ୍ରକାଶିଲା ।
ପୁତ୍ର ପଦ୍ମ ମୁଖୁ ହରି ବଚନ ତୁ ଶୁଣି
କ୍ରୋଧ ହୋଇ ରାଜା ଉଠିଲାକ ଶିର ଝୁଣି ।
ପ୍ରଚଣ୍ଡ ମୁଖେ ଯେ ଗୁରୁ ପୁତ୍ରଙ୍କୁ ସେ ଚାହିଁ
ବୋଇଲାକ କିବା ବିଦ୍ୟା ପଢ଼ାଇଛ ନେଇ ।
ତୁମ୍ଭେ ଯେ ସୁବେଦୀ ବିପ୍ର ଆମ୍ଭେ ଗୁରୁପୁତ୍ର
ଏ ବିଧି ଶୁଣି ଲାଗିଲା ମୋତେ ବିପରୀତ ।
ପଢ଼ାଇ ମୋହର ଶତ୍ରୁ କଥା ନାମ ଧରି
ଶୁଣିଲା ମାତ୍ରକେ ତନୁ ହେଲା ମୋର ଘାରି ।
ଏହାକୁ ମୋହର ଶତ୍ରୁ ବିଦ୍ୟା ଶିଖାଇଲ
ମହାରାଜା ଆଜ୍ଞା ଅବଜ୍ଞା ଯେ ତୁମ୍ଭେ କଲ ।
ଅସାଧୁ ହୋଇ ଥାଆନ୍ତି ଜାଣ ଯେତେ ନର
ଜ୍ଞାନୀ ହୋଇଣ କହନ୍ତି ତତ୍ତ୍ୱ ସଭାପର ।
ସେହି ଲୋକଙ୍କର ଜ୍ଞାନ ତାକୁ ମୂଢ଼ ଜାଣ
ଏ କଥା କହିଅଛନ୍ତି ଶାସ୍ତ୍ରେ ସୁଧୀଗଣ ।
ଯେସନେ ଶରୀର ରୋଗ ଜାଣ ନାଶ କରେ
ସତ୍ୟ ଏ କଥାଟି ବୋଲି ନ ପାଞ୍ଚନ୍ତି ନରେ ।
ଯେବଣ ପ୍ରାଣୀ କରିଣ ଜାଣ ବ୍ରହ୍ମହତ୍ୟା
କୋଟି ଯୁଗରେ ଯାଇ ସେ କଲେ ମୋକ୍ଷପନ୍ଥା
ମୋକ୍ଷ ହୋଇଣ ଜନ୍ମଇ ପୁଣି ଦେହ ଧରି
କୁଷ୍ଠ ରୋଗରେ ହୁଅଇ ତାର ତନୁ ଘାରି ।
ବିଶୁଦ୍ଧ ଜାତି ହୋଇ ଯେ କରେ ମଦ୍ୟପାନ
ନ ତରଇ ସେ କେବେ ହେଁ ଲଭେ ଗଙ୍ଗାସ୍ନାନ ।
ବିଧବା ବ୍ରାହ୍ମଣୀ କି ଯେ କରେ ରତି ରଙ୍ଗ
ଚାହିଁଲେ ତା ମୁଖ ସବୁ ପୁଣ୍ୟ ହୁଏ ଭଙ୍ଗ ।
ସହସ୍ର ଯୁଗରେ ଯାଇ ହୋଇବ ସେ ମୋକ୍ଷ
ଏକଥା ପୁରାଣେ କହିଛନ୍ତି ମୁନିଦକ୍ଷ ।
ଯେବଣ ପ୍ରାଣୀ ସୁବର୍ଣ୍ଣ କରେ ଜାଣ ଚୋରି
ଦରିଦ୍ର ହୋଇ ଜନ୍ମଇ ସେହୁ ବସୁନ୍ଧରୀ ।
ଗୁରୁପତ୍ନୀ କି ପାଞ୍ଚଇ ଯେହୁ ମନେ ରତି
ଧବଳ ବ୍ୟାଧି ତାହାର ହୃଦେ ପ୍ରକାଶନ୍ତି ।
ହସ୍ତ ପାଦ ତା ଧବଳ ସବୁ ଜାଣ ଦିଶେ
ଏ କଥା ପୁରାଣେ କହିଛନ୍ତି ବେଦବ୍ୟାସେ ।
କୁଳାଙ୍ଗାର ପୁତ୍ର ଯାର ଜନ୍ମଇ ବଂଶରେ
ସମୂଳରେ ବିନାଶ ସେ କରେ ଅନାଚାରେ ।

ଶ୍ରୀମହାରାଜଙ୍କ ଆଜ୍ଞା ଯେ ଜନ ନ ମାନେ
ଶିରଚ୍ଛେଦ ହୋଇ ମରେ ସେହୁ ଅଳ୍ପଦିନେ ।
ଏକେ ତ ବ୍ରାହ୍ମଣ ତୁମ୍ଭେ ଦୁଜେ ଗୁରୁସୁତ
ତୁମ୍ଭ ଦୋଷ ତେଣୁ ଆମ୍ଭେ ନ ଘେନୁ ଯାବତ ।
ଏ ରୂପେ ଛଳାଇ ଶେଷେ କହନ୍ତେ ହିରଣ୍ୟ
ଶୁଣି ଗୁରୁପୁତ୍ର ହେଲେ ମୃତର ସମାନ ।
କହନ୍ତି ଲାବଣ୍ୟ କରି ବାକ୍ୟ ବେନିଭାଇ
ଆମ୍ଭ କହିବାରୁ କଥା ଏ ଯେ ନ ପଢ଼ଇ ।
ତୁମ୍ଭର ପୁତ୍ରର ଜାଣ ଏମନ୍ତ ସ୍ୱଭାବ
ବୁଝିଣ ଆମ୍ଭଙ୍କୁ ତୁମ୍ଭେ ଦିଅ ପରାଭବ ।
ଶୁକ୍ର ପୁତ୍ରଙ୍କର ମୁଖୁ ଏ ବଚନ ଶୁଣି
ମନେ ମନେ ବିଚାର ଯେ କରିଣ ନୃମଣି ।
ପ୍ରହ୍ଲାଦ ମୁଖକୁ ଚାହିଁଲାକ କୋପଭରେ
କହଇ ଲାବଣ୍ୟ କରି ପୁଣ ନୃପବରେ ।
ବୋଇଲା ଯେତେକ ବିଦ୍ୟା ପଢ଼ିଲା ମୋ ଆଗେ
ଗୁରୁ ତୋତେ କହି ନାହାନ୍ତି ତ ବ୍ରହ୍ମଭାଗେ ।
ଶୁଣି ପ୍ରହଲାଦ ଯୋଡ଼ି ବେନି କରପତ୍ର
ବୋଇଲା ଶୁଣ କହୁଛି ତାତ ଶିବଶାସ୍ତ୍ର ।
ଈଶ୍ୱର ପୁରୁଷ ଅଟେ ସର୍ବ ଅଧିକାରୀ
ସେ ପୁଣି ଅଛନ୍ତି ସଦା ବିଷ୍ଣୁ ସେବା କରି ।
ସାତ କଳ୍ପଯାଏ ଶିବ ବିଷ୍ଣୁଙ୍କୁ ଭଜିଣ
ବର ଲଭି ଖ୍ୟାତ ହେଲେ ଜଗତରେ ପୁଣ ।
ମୁହିଁ କେବେହେଁ ଅବିଦ୍ୟା କର୍ମ ନାହିଁ କରି
ତୋ ଆଜ୍ଞା ପ୍ରମାଣେ ଭଜୁଅଛି ରାମ ହରି ।
କାହିଁକି ଗୁରୁ ବଚନ ଗୋଟି ନ ମାନିବି
ମୂର୍ଖ ଲୋକମାନେ ସିନା ଗୁରୁଙ୍କୁ ନ ସେବି ।
ଅସାଧୁ ଜନେ ସିନା ଯେ ଇନ୍ଦ୍ରିୟ ଗୋଚରେ
ପଡ଼ନ୍ତି ଗୃହସ୍ଥାଶ୍ରମ କରି ତମଘୋରେ ।
ତାହାର ମନ ଜାଣି ନ ରହେ କୃଷ୍ଣଭାବେ
ଆମ୍ଭେ ଶ୍ରେଷ୍ଠ ବୋଲି କରି କହୁଥାନ୍ତି ଦମ୍ଭେ ।
ଅମେଧ ଜୀବ ଅଟନ୍ତି ସେ ଯେତେକ ଜନ
ଅନର୍ଥ କଥା ଶୁଣିଣ ଆନନ୍ଦିତ ମନ ।
ସେ ପ୍ରାଣୀ କେମନ୍ତେ ଜାଣ ହରିଙ୍କୁ ପାଇବ
ନାହାନ୍ତି ଯାହାର ଭେଟ ପାଇ ବ୍ରହ୍ମା ଶିବ ।
ସେ ବିଷ୍ଣୁର କଥାଗୋଟି ବିଷ୍ଣୁ ଏକାଜାଣେ
ପ୍ରାଣୀଙ୍କୁ ଯେ ଅଗୋଚର ଅଟେ ନାରାୟଣେ
ଅନ୍ଧକୁ ଯେହ୍ନେ କଢ଼ାଉଥାଇ ଅନ୍ଧ ବାଟ
ଭ୍ରମନ୍ତି ଦେବୀ ମାୟାରେ ପଡ଼ି ପ୍ରାଣୀ କୁଟ ।
ଏହି ମାର୍ଗେ ଚଳୁଥାଇ ସବୁରି ସ୍ୱଭାବ
ଏମନ୍ତ କଥାରେ କି ହେ ହରିଙ୍କି ପାଇବ ।

ଗୋବିନ୍ଦଙ୍କର ସୁନ୍ଦର ପାଦପଦ୍ମ ଦୁଇ
କେତେ ଶ୍ରମରେ ଯାଇ ସେ ପ୍ରାଣୀଙ୍କି ମିଳଇ
ନାନାଦି ତୀର୍ଥରେ ଜପ ତପ କରିଥିଲେ
କାମନା ଭକତି ସେହୁ ଅଟେ ବିଚାରିଲେ ।
କହିବା ନିଷ୍କାମ ଭକ୍ତି କଥା ଜାଣ ବାଛି
ପାଦପଦ୍ମେ ନିମଜ୍ଜି ନ କରେ ବାଞ୍ଛା କିଛି ।
କୋଟି କୋଟି ଅନର୍ଥ ତା ସଙ୍ଗେ ଲଗାଇଲେ
ନ ପଡ଼େ କ୍ଲେଶ ଶ୍ରୀହରି କଟାକ୍ଷ ସେ ଥିଲେ ।
ଏ ରୂପେ କହନ୍ତେ ବାକ୍ୟ ଗୋଟି ପ୍ରହଲାଦ
ପୁଣି ହରିଣ୍ୟର କମ୍ପିଲାକ ଜାନୁହୃଦ ।
କୋଳରୁ ପକାଇ ଦେଲା ବାଳକକୁ ତଳ
ଡାକିଲା ଅସୁରଙ୍କୁ ସେ ହୋଇ କୋପାନଳ ।
ମହାକୋପ ହୋଇ ଆଖି ରକ୍ତ ବର୍ଣ୍ଣ କଲା
ଅସୁରଙ୍କୁ ଚାହିଁ ରାଜା ଆଜ୍ଞା ବେଗେ ଦେଲା
ବୋଇଲା ଶୁଣରେ ଦୈତ୍ୟେ ପୁତ୍ର ଦୁଷ୍ଟପଣ
କରଇ ମୋର ଶତ୍ରୁର ନାମ ଉଚ୍ଚାରଣ ।
ଏଣୁ ଏ ଶତ୍ରୁ ମୋହର ଏହାକୁରେ ମାର
ଏହାକୁ ମୋହର ଆଗୁଁ କର ବେଗେ ଦୂର ।
ରାଜାର ଆଜ୍ଞା ପାଇଣ ଗଲେ ଦୈତ୍ୟ ଧାଇଁ
ପ୍ରହଲାଦ ବାଳଧରି ନେଲେ ଘୋଷଡ଼ାଇ ।
ଦେଖୁ ଦେଖୁ ହିରଣ୍ୟର ପାଶୁ ଘେନିଗଲେ
ଶୂଳ ଉପରେ ବୁଲାଇ ନେଇ କଚାଡ଼ିଲେ ।
ମହା ବିଶ୍ୱରୂପ ଦୈତ୍ୟେ ଅଛନ୍ତି ସେ ବେଢ଼ି
ତମ୍ବା ବର୍ଣ୍ଣ ପ୍ରାୟ ଦିଶେ ତାଙ୍କ ଦଣ୍ଡ ଦାଢ଼ି ।
ଭଇରବ ରୂପ ଧରି କିଳିକିଳା ନାଦେ
ଶୂଳମାନ କରେ ଧରି ଅଛନ୍ତି ଆନନ୍ଦେ ।
ବାଳକ ଉପରେ ମାଡ଼ି ବସିଲେ ଅସୁରେ
ଦେଖି ପ୍ରହଲାଦ ଚକ୍ରଧରଙ୍କୁ ସୁମରେ ।
ଗୋବିନ୍ଦର ପଦ୍ମପାଦେ ଚିତ୍ତବୃତ୍ତି ଦେଇ
ଅସୁରଙ୍କୁ ଚାହିଁଣ ସେ ବଚନ କହଇ ।
ତୁମ୍ଭ ଦେହେ ଦେଖ ହରି ଛନ୍ତି ବିଜେ କରି
ଆତ୍ମା ସ୍ୱରୂପେ ଅଛନ୍ତି ସବୁଘଟେ ପୂରି ।
ଏ କଥା ଯଦ୍ୟପି ସତ୍ୟ ଅଟଇ ସଂସାରେ
ତୁମ୍ଭର ଶସ୍ତ୍ର ନ କାଟୁ ବାଜି ମୋ ଅଙ୍ଗରେ ।
ଶୁଣିଣ ଅସୁର ବୀରେ ହେଲେ କୋପାନଳ
ପ୍ରହଲାଦ ଅଙ୍ଗେ ନେଇ ପ୍ରହାରିଲେ ଶୂଳ ।
ବାଜିଲା ଶୂଳ ଶକତି ଗଲେ ସବୁ ଭାଜି
ହିରଣ୍ୟ ବସିଲା ତାହା ଦେଖି ଚକ୍ଷୁ ବୁଜି ।
ଆସନୁ ଉଠି ଭିତର ପୁରେ ବିଜେ କଲା
ମନ୍ତ୍ରୀକି ଚାହିଁଣ ଉଚ୍ଚେ ସମସ୍ୟା ସେ ଦେଲା

ବୋଇଲା ଏ ବାଳକକୁ ବେଗେ ମୋର ମୋର
ହସ୍ତୀକି ଲଗାଇ ଦେଇ ଶରୀର ତା ଚିର ।
ଶୁଣି ମନ୍ତ୍ରୀବର ଚଳିଗଲା ତତକାଳେ
ଐରାବତ ପ୍ରାୟ ହସ୍ତୀ ଅଣାଇଲା ବଳେ ।
ପ୍ରହ୍ଲାଦର ଉପରେ ଚଢ଼ାଇଲା ନେଇ
ଚକଟନ୍ତେ ହସ୍ତୀ ପାଦ ଗଲା ମୋଡ଼ି ହୋଇ ।
ଦନ୍ତ ମାରନ୍ତେଣ ପଡ଼ିଲାକ ଦନ୍ତ ଝଡ଼ି
ଭାଜିଲେକ ହସ୍ତୀମାନେ ଛାଡ଼ି ଘୋର ରଡ଼ି ।
ତାହାଦେଖି ହିରଣ୍ୟ ଯେ ହୋଇ କୋପାଳନ
ବୋଇଲା କେହ୍ନେ ପୂରିବ କହ ପୁତ୍ର କାଳ ।
ଏତେ ବୋଲି ସୁମରିଲା ଅଷ୍ଟକୁଳା ନାଗେ
ଚିନ୍ତନ୍ତେ ହିରଣ୍ୟାସୁର ମିଳିଲେ ସେ ଆଗେ ।
ନାଗକୁଳକୁ ଚାହିଁଣ ବୋଲେ ନୃପବର
ପ୍ରହ୍ଲାଦକୁ ତୁମ୍ଭେମାନେ ବେଗେ ଯାଇ ମାର ।
ହିରଣ୍ୟକଶିପୁ ମୁଖୁ ଏ ବଚନ ଶୁଣି
ଧାଇଁଲେକ ସର୍ପମାନେ ଟେକିକରି ଫଣୀ ।
ସେ ନାଗକୁଳଙ୍କୁ ଦେଖି ଭକ୍ତ ପ୍ରହଲାଦ
ହୃଦରେ ଚିନ୍ତା କରିଣ ବସିଲା ଗୋବିନ୍ଦ ।
ଫୁଁଫୁଁକାର କରିଧାଇଁ ଆସି ନାଗବଳେ
ପ୍ରହଲାଦ ଦେହ ଦନ୍ତେ ଦଂଶିଲେ ତତ୍କାଳେ ।
ବାଜି ଦନ୍ତମାନ ତତକ୍ଷଣେ ଗଲା ଭାଜି
ତହୁଁ ବ୍ୟାଳମାନେ ପଳାଇଲେ ଚକ୍ଷୁବୁଜି ।
ତରଛ ହୋଇଣ ନାଗେ ପଳାଇଣ ଗଲେ
ଜୀବନ ଘେନି ଯାଇଁଣ ପାତାଳେ ଲୁଚିଲେ ।
ତାହା ଦେଖିଣ ହିରଣ୍ୟ ବ୍ରାହ୍ମଣଙ୍କୁ ବରି
କୃତ୍ୟ ଜାତ କରାଇଲା ହୋମ ଯାଗ କରି ।
କୃତ୍ୟ ପୁରୁଷକୁ ବିପ୍ରେ କରନ୍ତେଣ ଜାତ
ତାହା ଦେଖି ପ୍ରହଲାଦ ସୁମରେ ଅଚ୍ୟୁତ ।
ଦେଖିଲା ହିରଣ୍ୟାସୁର ପୁତ୍ରର ନିର୍ଭୟ
ପ୍ରଚଣ୍ଡ ହୋଇ ଉଠିଲା ପୁଣି ଦୈତ୍ୟରାୟ ।
ପର୍ବତ ଉପରେ ପୁଣି ନେଇ କଚାଡ଼ିଲା
ଗତୁଁ ଶତେଗୁଣ ପୁତ୍ର ବଳକୁ ଲଭିଲା ।
ଶମ୍ବର ଦୈତ୍ୟର ହାତେ ପୁଣି ମାୟାକରି
ତେବେ ହେଁ ପ୍ରହ୍ଲାଦକୁ ସେ ନ ପାରିଲା ମାରି
ପୁଣି ହିଁ ଗରଳ ଭୋଜନରେ ଭୁଞ୍ଜାଇଲା
କୁମର ଅମୃତ ପ୍ରାୟ ବିଷ ପାନକଲା ।
ଅନଳ କୁଣ୍ଡରେ ତାକୁ ପକାଇଲା ନେଇ
ଅଗ୍ନିରେ ପଡ଼ିଣ ପୁତ୍ର ନାଚେ ହରି ଗାଇ ।
ଏ ରୂପେ ରାଜା ଅନେକ କଷଣ ଯେ ଦେଲା
ପ୍ରହଲାଦ ପୁତ୍ରକୁ ସେ ମାରି ନ ପାରିଲା ।
ନାଶକର ପ୍ରାୟ ପୁତ୍ରକୁ ସେ କଷ୍ଟ ଦେଇ
କେତେକାଳ ବାଳକକୁ ମାରି ନ ପାରଇ ।
ଏ ରୂପେ କେତେ ହେଁ ଦଣ୍ଡ କୁମରକୁ ଦେଲା
ମନମଧ୍ୟେ ତାପ ବହି ହୃଦେ ଚିନ୍ତା କଲା ।
ପୁଣି ହିଁ ମନେ ପାଞ୍ଚେ ଏ ଅଟେ କେଡ଼େ ସାଧୁ
କେତେ ଦଣ୍ଡରୁ କରି ଏ ରହିଲା ପ୍ରମାଦୁ ।
ଯେତେବେଳେ କଷଣ ତ ଦେଲି ଆଜ ମୁହିଁ
ବ୍ରହ୍ମା ବିଷ୍ଣୁ ହେଲେ ମରି ଯାଆନ୍ତାଣି କାହିଁ ।
ଏହାକୁ ଦଣ୍ଡ ଆଉ ନ ଯୋଗାଏ ମୋହର
ଦଣ୍ଡିଲେ ବାଧା ମୋତେ ଯେ ପଡିବ ଅପାର
ଏମନ୍ତ ପାଞ୍ଚି ବସିଲା ରାଜା ମନ ଦୁଃଖେ
ଦଣ୍ଡେ ପରିଯନ୍ତେ ରହିଲାକ ଅଧୋମୁଖେ ।
ଶୁକ୍ରଗୁରୁଙ୍କର ପୁତ୍ରେ ରାଜା ଦୁଃଖ ଜାଣି
କହନ୍ତି ଯେ ହରିଣ୍ୟକୁ ବୋଧ ବାକ୍ୟ ପୁଣି ।
ବୋଲନ୍ତି ଯେ ସାବଧାନେ ଶୁଣ ହେ ନୃବର
ତପର ବଳେ ତୁହିତ ଅଟୁ ବଳିୟାର ।
ତୋର ବଳବୀର୍ଯ୍ୟ ପ୍ରାୟ ଅଛି କେ ସଂସାରେ
ମେରୁହିଁ ସହସ୍ରେ ଗୁଣେ ବଳୁ ବ୍ରହ୍ମାଣ୍ଡରେ ।
ବୁଝିଲେ ତ ତୋ ସମାନ ନାହିଁ ତିନିପୁରୀ
ଏଥକୁ ଶଙ୍କା କରୁଛୁ କିମ୍ପା ମନେ ଧରି ।
ଏ ପ୍ରହଲାଦ ଯେବେ ଟି ବାଳକ ତୋହର
ପୁତ୍ରକୁ ଡରିଲେ ବାପ ହେବକି ସଂସାର ।
ଆତ୍ମାରୁ ତୁ ଆତ୍ମାକାଢ଼ି କରିଅଛୁ ଜନ୍ମ
ବୁଝିଲେ ତୋର ଆତ୍ମା ଯେ ଅଟେ ପୁତ୍ରନାମ
ବାଳକ ଭାବରୁ ଯେ ନ କର ନୃପରାଣ
ଏଥକୁ ସଂଶୟ ଯେ ନ କର ନୃପରାଣ ।
ବାଳକାଳ ଚାଲିଯାଇ ଯୁବାକାଳ ହେଲେ
ସୁବୁଦ୍ଧି ପଣ ଏହାର ଉପୁଜିବ ଭଲେ ।
ଗୁରୁପୁତ୍ରଙ୍କ ମୁଖରୁ ଏ ବଚନ ଶୁଣି
ସନ୍ତୋଷ ହୋଇଣ ରାଜା କହେ ମୃଦୁବାଣୀ ।
ବୋଇଲା ଶୁଣ କହିବା ଆହେ ଗୁରୁସୁତେ
ଲାଗିଲା ଅମୃତ ପ୍ରାୟ ତୁମ୍ଭ କଥା ମୋତେ ।
ଏ ମୋହର ପ୍ରହଲାଦକୁ ସଙ୍ଗତରେ ନିଅ
କୁଳଧର୍ମ ବିଦ୍ୟା କହି ଯାବତ ଶିଖାଅ ।
ଏସନକ ବାକ୍ୟଗୋଟି ରାଜା ମୁଖୁଁ ଶୁଣି
ପ୍ରହଲାଦକୁ ଧରିଣ ଗଲେ ବିପ୍ରମଣି ।
ଆପଣା ପୁରେ ତକ୍ଷଣେ ବିଜେକଲେ ଯାଇ
ଅସୁରପୁତ୍ରଙ୍କ ସଙ୍ଗେ ବସାଇଲେ ନେଇ ।
ଗୁରୁ ବୋଇଲେ ଉତ୍ତମ କରି ବାପ ପଢ଼
ଶିବଗ୍ରନ୍ଥ ବ୍ୟତୀତ ତୁ ଆନ ବିଦ୍ୟା ଛାଡ଼ ।

ଏତେ କହିଣ ଗୃହକୁ ପୁରୁଗଲେ ଚଳି
ବାଳକଙ୍କ ସଙ୍ଗେ ପ୍ରହଲାଦ ଅଛି ମିଳି ।
ଦୈତ୍ୟପୁତ୍ରେ ବୋଇଲେ ଯେ ଶୁଣ ରାଜବଷି
ଗୁରୁ କହିଯିବା ଗ୍ରନ୍ଥ ପଢ଼ିବା କି ବାଛି ।
ପ୍ରହଲାଦ ବୋଇଲେ ମୁଁ ନାହିଁ କରୁନାହିଁ
ଶିବ ସବୁରି ଶରୀରେ ଛନ୍ତି ଆତ୍ମା ହୋଇ ।
ଆତ୍ମାହୋଇ ହରି ରାମ କୃଷ୍ଣ ଆଗେ ଭଜେ
ଜୀବ ପରମ ସବୁରି ଶରୀରରେ ବିଜେ ।
ପ୍ରହ୍ଲାଦ କହଇ ଅସୁରଙ୍କ କୁମରକୁ
ଏହି ବିଦ୍ୟା ସାରଅଟେ ଜାଣ ସଂସାରକୁ ।
ମାୟାକର୍ମେ ପଡ଼ି ତୁମ୍ଭେ ଅର୍ଥେ ମୋହଯାଇ
କାହାରି ହୃଦରେ ଗୋଟାକର ଜ୍ଞାନନାହିଁ ।
ବାଳକ ଯୁବା ବୃଦ୍ଧ ଏ ତିନି କାଳ ମଧ୍ୟେ
ଆତ୍ମାର ଆୟୁଷ ପୂରିଥାନ୍ତି ସବୁ ହୃଦେ ।।
ଏ କଥାକୁ ତତ୍ତ୍ୱଜ୍ଞାନ ଜାଣନ୍ତି ଯେ ହୃଦେ
ଶୁଣ ହେ ବାଳକ କହନ୍ତି ଯେ ପ୍ରହଲାଦେ ।
ଯେଉଁ ବିଦ୍ୟା ସାରସ୍ୱତ ଅଟେ ଏ ଆତ୍ମାକୁ
ସେହି ବିଦ୍ୟା ସାବଧାନେ କହୁଛି ତୁମ୍ଭଙ୍କୁ ।
ସଂସାର ଯାକେ ଅଛନ୍ତି ଯେତେ ସାଧୁଜନ
ସେ ଏକା ପାରନ୍ତି କରି ହରିଙ୍କ କୀର୍ତ୍ତନ ।
ପ୍ରାଣୀଙ୍କ ଆୟୁଷ ଶତେ ବରଷ ଯେ ଲେଖି
ନିଦ୍ରାରେ ଶଯ୍ୟାରେ ଅଧେ ଗଲାବୁଜି ଆଖି ।
ଆବର ଯେଉଁ ପଞ୍ଚାଶ ବରଷ ରହିଲା
ତହିଁରୁ ଅର୍ଦ୍ଧେକ ବାଲ୍ୟକାଳେ କଟିଗଲା ।
ତଦନ୍ତେ ଆୟୁ ରହିଲା ପଚିଶ ବରଷ
ତେତିକିରେ କରଇ ଯାବତ କ୍ରୀଡ଼ାରସ ।
କାଳର ସ୍ୱଭାବ ଗୋଟି ଅଟଇ ଏମନ୍ତ
ମାୟାରେ ତ ପଡ଼ି ପ୍ରାଣୀ ହୁଅଇ ଏମନ୍ତ ।
ପୁଣି ଦ୍ୱାଦଶ ବରଷ ବୃଦ୍ଧରୂପେ ଯାଇ
ଅସମର୍ଥ ହୋଇଣ ଯେ ଗୃହେ ବସିଥାଇ ।
ଆବର ରହିଲା ଦ୍ୱାଦଶ ଯେ ସମ୍ବତ୍ସରେ
ପାଶୋରିଲା ଗୃହ ବନ୍ଧେ ଆତ୍ମାର ନିସ୍ତାର ।
ଗୃହସ୍ଥାଶ୍ରମେ ପଡ଼ିଣ ବନ୍ଦୀ ହୋଇଥାଇ
ଆତ୍ମାରୁ ଉଦ୍ଧରି ସେହି କେବେ ନ ପାରଇ ।
ଅତି ଯନ୍ତ୍ରିତ ଅଟଇ ଏହି ସ୍ନେହପାଶ
ଇନ୍ଦ୍ରିୟ ଲାଳସେ ପଡ଼ି ଲଭେ ନାନାକ୍ଳେଶ ।
ପଦାର୍ଥ ଅରଜିବାରେ ଦେଇଥାଇ ଚିତ୍ତ
ଲୋଭେ ପଡ଼ିଣ ହିଂସାରେ ହୁଅଇ ମୋହିତ ।
ପ୍ରାଣରୁ ଅଧିକ ଲୋଭ ପଦାର୍ଥରେ କଲେ
ତେଣୁ ସେ ଜନ ଗୋବିନ୍ଦ ନାମ ନସୁମରେ ।

ଏକାନ୍ତ ହୋଇଣ ରମେ କାମିନୀର ସଙ୍ଗେ
କାମନା କ୍ରୀଡ଼ାରସ ସେ କରେ ନାନାରଙ୍ଗେ
ପତ୍ନୀର ବଚନେ ସେହୁ ଥାଇ ଅନୁକ୍ଷଣେ
ଗୁରୁଙ୍କର ମନ୍ତ୍ର ପ୍ରାୟ ମଣେ ପ୍ରତିଦିନେ ।
ବନ୍ଧୁ ବାନ୍ଧବ ବାଳକ ସଙ୍ଗେ ଦିନ ହରେ
ପତ୍ନୀର ସଙ୍ଗତେ ଭାବ ଥାଇ ନିରନ୍ତରେ ।
କାମିନୀର କାମରସେ ସଦା ମନ ଥାଇ
ଗୃହବନ୍ଧେ ପଡ଼ି ହରିନାମ ନ ଜାଣଇ ।
ଘରୁ ବାହାରି ପ୍ରବାସ କରେ ଯେବେ ଜାଣ
ତହିଁରେ ରହି ଜୀବନ ମଣେ ଅକାରଣ ।
ଗୃହରେ ମନଦେଇ ଯେ ଭାଳେ ନିରନ୍ତରେ
ବୋଲେ ଭ୍ରାତାଜନନୀ କି ଥିବେ ସୁଖେଘରେ
ମନକୁ ସେ ରଖିଥାଇ ପତ୍ନୀ ହୃଦଗତେ
ଦୁହିତା କୁମର ସ୍ନେହ ନ ଛାଡ଼ଇ ଚିତ୍ତେ ।
ନିରତେ ହୁଅଇ ଘାଣ୍ଟି କୁଟୁମ୍ବ ପୋଷଣେ
ଜୀବନ ରକ୍ଷାରକଥା କେବେହେଁ ନଜାଣେ ।
ପଦାର୍ଥ ପାଶୁ ଅଧିକ କରି ରଖିଥାଇ
ହିକ୍କା ଗୋଟିଏ ମାଇଲେ କ୍ଷଣକେ ମରଇ ।
ମଲା ଉତ୍ତାରୁ ଯାଇ ସେ ପଡ଼େ ତମଘୋରେ
ଶ୍ରୀହରିଙ୍କ ନାମ ଭଜି ନପାରେ ମୁଖରେ ।
ହେ ବାଳକମାନେ ତୁମ୍ଭେ ସମସ୍ତେ ଯେ ଶୁଣ
କାହିଁକି ଆତ୍ମାର ହିତ କଥା ନ ବଖାଣ ।
ବିଷୟେ ପଡ଼ିଭ୍ରମୁଛ ବ୍ୟର୍ଥେ ଦୈତ୍ୟସଙ୍ଗେ
କହୁଛ ଯେତେ କଥା ଏ ଜଳଧି ତରଙ୍ଗେ ।
ଆହେ ବାଳକେ ତୁମ୍ଭେ ଏ ସଙ୍ଗ ତ୍ୟାଗକର
ହରିଚରଣ ଭଜିଣ ଭବୁଁ ବେଗେ ତର ।
ସେ ନାରାୟଣ ପ୍ରଭୁ ତ ଜଗତ କରତା
ଅଟନ୍ତି ପୃଥ୍ୱୀଯାକକୁ କଇବଲ୍ୟଦାତା ।
ବାଳକ ତୁମ୍ଭେ ସେ ହରିପଦେ ସେବାକର
ଶ୍ରୀ ଅଭୟ ଚରଣଟି ମିଳିବ ତତ୍ପର ।
ଅସୁର ଗୁଣ ଯାଇଣ ସାଧୁଭାବ ହେବ
ତୁମ୍ଭ ଆତ୍ମା ପ୍ରାଣ ଦେଖ ଏ ସକଳ ଜୀବ ।
ସବୁଙ୍କୁ ବିଷ୍ଣୁର ମାୟାଗୋଟି ଅଛି ଲାଗି
ତାହା ଯେ ପାରଇ ଚିହ୍ନିସେତ ମହାଯୋଗୀ
ଏକଇ ଆତ୍ମା ଅନେକ ରୂପ ଜାଣ ହୋଇ
ସର୍ବ ଘଟେ ପୂରିଛନ୍ତି ସେହି ଦେହ ବହି ।
ଆତ୍ମାର ସ୍ୱରୂପେ ବସିଛନ୍ତି ସବୁ ଦେହେ
ତାକୁ ଭଜିଲେ ସୁଜ୍ଞାନ ହୃଦରେ ଉଦୟେ ।
ବାହାର ଭିତରେ ଜାଣ ପ୍ରଭୁ ଛନ୍ତି ପୂରି
ତାହା କେ ସଂସାରେ ଜାଣିପାରେ ଅନ୍ତକରି ।

ଆନନ୍ଦଭାବେ କେବଳ ସେହୁ ପ୍ରୀତ ହୋଇ
ଅଛନ୍ତି ଅଶେଷ ଜୀବଯାକେ ଭାବଗ୍ରାହୀ
ସେ ବିଷ୍ଣୁ ଅଟନ୍ତି ଯେଣୁ ସଂସାରେ ଈଶ୍ୱର
ଏଣୁକରି ସର୍ବଜୀବେ ତୁମ୍ଭେ ଦୟାକର ।
ଆପଣାର ଆତ୍ମା ପ୍ରାୟ ଘେନି ସର୍ବ ଆତ୍ମା
ଆତ୍ମା ଚିନ୍ତା ଲୋକଙ୍କୁଟି ବୋଲ ମହାତମା ।
ଦୈତ୍ୟ ଭାବକୁ ବାଳକେ ଚିତ୍ତୁ ଦୂରକର
ତକ୍ଷଣେ ପ୍ରସନ୍ନ ଆସି ହେବେ ଚକ୍ରଧର ।
ଗୋବିନ୍ଦ ପାଦପଦ୍ମକୁ ଦୃଢ଼କରି ଚିତ୍ତେ
ଶ୍ରୀହରିଙ୍କ ମହିମାକୁ ଭାବ ଅବିରତେ ।
ସେ ପ୍ରଭୁ ପ୍ରସନ୍ନ ହୋନ୍ତି ଯାହାକୁଟି ଜାଣ
ତାହାକୁ ବୋଲନ୍ତି ମହାଭକ୍ତ ସଂସାରେଣ ।
ଏ କଥାଟି ନ ଜାଣନ୍ତି ଭବେ ପ୍ରାଣୀମାନେ
ମାୟାରେ ଭ୍ରମନ୍ତି ଜାଣ ବେଦର ବଚନେ ।
ଯଜ୍ଞମାନ ଆରମ୍ଭିଣ କରୁଥାନ୍ତି କର୍ମ
ଶ୍ରୁତିବାକ୍ୟ ପଢ଼ି ସେ ହୁଅନ୍ତି ମତିଭ୍ରମ ।
ପ୍ରହ୍ଲାଦ ମୁଖୁ ଏମନ୍ତ ବାକ୍ୟ ସେହି ଶୁଣି
ଅସୁର ପୁତ୍ରେ ପଚାରୁ ଅଛନ୍ତି ଯେ ପୁଣି ।
ବୋଇଲେ ଶୁଣ କହିବା ଆହେ ରାଜପୁତ୍ର
ଆମ୍ଭେ ତୁମ୍ଭ ସଙ୍ଗେ ପଢ଼ିଅଛୁ ଅହୋରାତ୍ର ।
ତୁମ୍ଭର ଆମ୍ଭର ଭିନ୍ନ ନୁହଇତ ଗୁରୁ
ଏ ବିଦ୍ୟାମାନ ଶିଖିଲ ତୁମ୍ଭେ କେଉଁଠାରୁ ।
ଶୁଣିଣ ସେ ପ୍ରହଲାଦ୍ କହେ ତୋଷମନେ
ବାଳକମାନଙ୍କୁ ବସାଇଣ ସନ୍ନିଧାନେ ।
ବୋଇଲା ଶୁଣ ସକଳ ଆହେ ବାଳପୋଇ
ଶୁଣିଅଛି ଜ୍ଞାନ ମୁହିଁ ମାତାଗର୍ଭେ ଥାଇ ।
ସେ କଥାଯାକ କହୁଛି ଶୁଣ ତୁମ୍ଭ ଆଗେ
ପିତା ମୋର ତପ କରିଗଲା ବନ ମାର୍ଗେ ।
ମନ୍ଦର ପର୍ବତେ ଯାଇ ବସିଲା ତୁରିତେ
ଭଜିଲା ନିଶ୍ଚଳ ଭାବେ ଧରି ଅନୁବ୍ରତେ ।
ତାହା ଦେଖି ଦେବତାଏ ମନେ ବଡ଼ ଡ଼ରି
ମନରେ ପୁଣ କଥାଏ ପାଞ୍ଚିଲେ ବିଚାରି ।
ହରିଣ୍ୟ କଶିପୁ ତାର ନଗରରେ ନାହିଁ
ମନ୍ଦିରେ ପଶିବା ସର୍ବେ ଆସ ଏବେ ଯାଇଁ ।
ଏତେ ବୋଲିଣ ପଶନ୍ତେ ଦେବେ ପୁରେଆସି
ତହୁଁ ଜଗୁଆଳି ଦୈତ୍ୟେ ପଳାଇଲେ ଖସି ।
ଜୀବନର ଡରେ ସର୍ବେ ପଳାଇଣ ଗଲେ
ଦେବତାମାନେ ନଗ୍ରକୁ ଆସି ଜୁର କଲେ ।
ସକଳ ସମ୍ପଦ ତାର କଲେ ହୁରିଜୁରି
ମୋହର ଜନନୀ କି ସେ ଘେନିଗଲେ ଧରି ।
ଶୂନ୍ୟପଥେଚଳାଇଣ ଯାନ୍ତେ ବେଗେ ବେଗେ
ମୋହର ପିତାକୁ ଡରି ଚାଲନ୍ତି ଉଦବେଗେ ।
ଜନନୀ ମୋହର ଏଣେ ନ ପାରନ୍ତେ ଚାଲି
ଗୁରୁଶୋକେ ବୋଲେ ଗଲାମହତଟି ବୋଲି
ଏମନ୍ତେ ସେ ଯାଉ ଯାଉ ପଥବାହି ଦୂର
ଭେଟିଲେ ନାରଦଗୋସାଇଁଙ୍କ ମାତ ମୋର
ଜନନୀର କଷ୍ଟ ଦେଖି ଗଲେ ମୁନି ବେଗେ
ତକ୍ଷଣେ ମିଳିଲେ ଯାଇ ଇନ୍ଦ୍ରଦେବ ଆଗେ ।
ବାସବ ଦେଖି ମୁନିଙ୍କି ପାଦ ଅର୍ଘ୍ୟ ଦ୍ୟନ୍ତେ
ନାରଦ ବୋଇଲେ ଇନ୍ଦ୍ର କହୁଁ ଶୁଣତୋତେ
ହିରଣ୍ୟାସୁର ପତ୍ନୀକି ଦେବତାଏ ଜାଣ
ଆଣିଲେକ ବନ୍ଦିକରି ଘେନି ସଙ୍ଗତେଣ ।
ବୁଝିଲେ ଅଦଣ୍ଡ୍ୟ ସ୍ତିରୀ ଅଟନ୍ତିଟି ପୁଣି
ଏ କଥାମାନ ସଂସାରେ ଦେବ ଥାଅ ଜାଣି ।
ପରର ଯୁବତୀ ଏହି ଅଟଇ ସୁନ୍ଦରୀ
ଏହାକୁ ତୁ ବେଗେ ଛାଡ଼ିଦିଅ ବଜ୍ରଧାରୀ ।
ନାରଦ ଗୋସାଇଁ ଆଜ୍ଞା ଏ ରୂପରେ ଦ୍ୟନ୍ତେ
ଶୁଣିଣ ବାସବ କହିଲା ଯେ କୋପଚିତ୍ତେ ।
ବୋଇଲା ନାରଦ ଶୁଣ କହୁଛି ତା ସୂଚୀ
ଏହାର ଗର୍ଭେ ବାଳକ ଗୋଟିଏ ଯେ ଅଛି ।
ହିରଣ୍ୟେ ବୀର୍ଯ୍ୟରେ ଜାତ ହୋଇଅଛି ରହି
ତାହାର ପ୍ରତାପ ଜାଣ କେ ପାରିବ ସହି ।
ଜନ୍ମିଲେ ମାଡ଼ି ବସିବ ଏ ସ୍ୱର୍ଗକୁ ମୋର
ଏଣୁ ସେ କଥାକୁ ମୋତେ ଲାଗୁଅଛି ଡର ।
ହିରଣ୍ୟେ ପତ୍ନୀକି ନେଇ ରଖିବଇଁ ଘରେ
କୁମର ଜନ୍ମିଲେ ତାକୁ ମାରିବି ତପୃରେ ।
ଏକଥା ସଂକଳ୍ପ କରିଅଛି ମନେ ଘେନି
ହସିଲେ ଇନ୍ଦ୍ରର କଥା ଶୁଣି ଧ୍ୟାନେ ମୁନି ।
ବୋଇଲେ କହିବା ଶୁଣ ଏବେ ପୁରନ୍ଦର
ଏ ଗର୍ଭରେ ଥିବା ପୁତ୍ର ଅଟେ ଜାତିସ୍ମର ।
ଗୋବିନ୍ଦର ଭକ୍ତ ଅଟେ ସେହୁ ବିଷ୍ଣୁ ଦାସ
ଏ ଗର୍ଭର ପୁତ୍ରକୁ ନ କର ମନେ ତ୍ରାସ ।
ଏ କଥା ମୁନିଙ୍କ ମୁଖୁଁ ଶୁଣି ସୁରପତି
ତକ୍ଷଣେ ଦେଲାକ ଛାଡ଼ି ଅସୁର ଯୁବତୀ ।
କହନ୍ତି ଯେ ପ୍ରହଲାଦ ଶୁଣ ଚାଟପୋଏ
ନାରଦ ଋଷିଙ୍କ ସଙ୍ଗେ ଅଇଲେ ମୋ ମାଏ
ନାରଦ ଋଷି ଆଶ୍ରମେ ରହିଲେ ନିଶ୍ଚିନ୍ତେ
କହନ୍ତି ମାତାକୁ ମୋର ଜ୍ଞାନ ତପୋବନ୍ତେ ।
ଶ୍ରୀ ନୃସିଂହ ମହିମା ଯେତେକ ଚରିତ
ବ୍ରହ୍ମାଙ୍କ ମୁଖୁ ଶୁଣିଣ ଥିଲେ ତପୋବନ୍ତ ।

ଗର୍ଭେ ଥାଇଣ ତାହା ମୁଁ ସବୁ ଅଛି ଶୁଣି
ସେ ଜ୍ଞାନ ଯାକ କହନ୍ତେ ସବୁ ମହାମୁନି ।
ସ୍ୱଭାବେ ଜନନୀ ମୋର ଅଟେ'ମତିଭୋଳା
କହୁଁ କହୁଁ ପାଶୋରିଲା ସେହି ଜ୍ଞାନକଳା ।
ନାରଦ ଗୋସାଇଁଙ୍କର ଚରଣ ପ୍ରସାଦେ
ଜନନୀଙ୍କ ଗର୍ଭୁ ଆସି ଜନ୍ମ ଅପ୍ରମାଦେ ।
ନାରଦ ମୁନିଙ୍କ ଦୟା ହେବାରୁ ଯେମୋତେ
ବ୍ରହ୍ମଜ୍ଞାନ ଗୋଚର ମୁଁ କଲି ହୃଦଗତେ ।
ମୋର ବାକ୍ୟକୁ ବାଳକେ ଏବେ ଶ୍ରଦ୍ଧାକର
ତୁମ୍ଭ ହୃଦେ ପ୍ରକାଶ ଯେ ହେଉ ଜ୍ଞାନ ସାର ।
ବୁଝିଲେ ସବୁରି ମନ ବିଷୟାରେ ବନ୍ଧୀ
ଭକ୍ତିଲକ୍ଷଣ ହୋଇକଲେ ପାର ଆତ୍ମା ସାଧି
ଏଣୁ ବାଳକେ ଭକ୍ତିରେ ଗୁରୁପାଦେ ସେବ
ଶ୍ରୀହରିର ଭାବ ପାଇ ସଂସାରୁ ତରିବ ।
ସବୁବେଳେ ସାଧୁଙ୍କର ସଙ୍ଗେ ହୁଅ ମେଳ
ଶ୍ରୀ ହରିପାଦେ ସେବିଲେ ହୋଇବ ନିର୍ମଳ ।
ଗୋବିନ୍ଦଙ୍କ କଥା ଯେହୁ ଶୁଣନ୍ତି ଶ୍ରବଣେ
କୋଟି ପାପ କରିଥିଲେ ଖଣ୍ଡଇ ତକ୍ଷଣେ ।
ଶ୍ରୀକୃଷ୍ଣର ଅଟଇଟି ଯେତେ ନାମ ଗୁଣ
ଅନୁକ୍ଷଣେ କରୁଥିବ ଶ୍ରବଣ କୀର୍ତ୍ତନ ।
କରିବ ଶ୍ରୀହରି ପାଦପଦ୍ମେ ଧ୍ୟାନ ବଳେ
ବଞ୍ଚିବ ସେ ଅନୁକ୍ଷଣେ ସାଧୁ ସଙ୍ଗମେଳେ ।
ଜ୍ଞାନ ଉଦେ ହେଲେ ଅବିଦ୍ୟା ଯେନାଶଯିବ
ଅସୁର ସ୍ୱଭାବ ଯାଇ ସାଧୁ ବୋଲାଇବ ।
ମନୁଷ୍ୟ ଦେହେ ଜନ୍ମଇ ଶତଗୋଟି କଥା
ଶରୀରଟି ଚିର କେବେ ନୁହଇ ସର୍ବଥା ।
ବୃକ୍ଷର ଫଳ ଯେସନେ ପଡ଼େ ପାଚି ଫୁଟି
ସେହି ପ୍ରକାରେ ସଂସାରେ ଜୀବ ନୁହଇଟି ।
ଏ ଜୀବର ସ୍ୱଭାବଟି ଅଟେ ଜାଣ ଏହି
ଗର୍ଭରେ ରୂପ ବହିଣ ଆସେ ଜନ୍ମ ହୋଇ ।
ବାଳକ ସ୍ୱଭାବେ କେତେଦିନ ତାର ଯାଏ
ଯୁବା ସ୍ୱରୂପରେ କାଳ ବଞ୍ଚଇ ଥୋକାଏ ।
ବୃଦ୍ଧ ହୋଇଗଲେ ପୁଣି ଲଭଇ ମରଣ
ଶୁଣ ଆହେ ଚାଟ ପୋଏ ଜୀବର ଘଟଣ ।
ଏ ଷଡ଼ ପ୍ରକାର ଜୀବ ଦେହେ ଭୋଗ କରି
ଆତ୍ମା ସଂସାରେ ସକଳ କାଳେ ସମସରି ।
ଦେଖୁଛ ତ ସବୁଠାରେ ଅଛନ୍ତି ସେ ବ୍ୟାପି
ଆବୃତ୍ତି ନିବୃତ୍ତି ସେହୁ ଅଟଇ ସ୍ୱରୁପୀ ।
ଦେହ ବହି ପାପ ପୁଣ୍ୟ ଯେତେ କରୁଥାଇ
ସେ ବେନି ବୃଥା ଆତ୍ମାକୁ ଜାଣ ନ ଲାଗଇ ।
ସଂସାରେ ଶ୍ରୀହରିଭାଇ ଗୋଟି ଥିବ ଭାବି
ବୈଷ୍ଣବ ସାଧୁଙ୍କ ଚରଣରେ ଥିବ ସେବି ।
ଏ ଭାବରେ ରହିଥିବ ଜାଣ ଯେଉଁ ପ୍ରାଣୀ
ଏ ସଂସାରେ ଚଉବର୍ଗ ପାଇବ ସେ ପୁଣି ।
ଶ୍ରୀଗୋବିନ୍ଦ ବିଷୟରେ ଯେଉଁଜନ ଥାନ୍ତି
ଏ ଭବସାଗରୁ ସେହି ପ୍ରାଣୀ ତରିଯାନ୍ତି ।
ଏହି ଜୀବକୁ କରିବ ଯେବେ ପରିତ୍ରାଣ
ସେ ବିଷ୍ଣୁ କଥା କିଛି କହିବା ଏବେ ଶୁଣ ।
ଶ୍ରୀ କୃଷ୍ଣଲୀଳା ଶୁଣିବ ସ୍ନେହେ କର୍ଣ୍ଣଦ୍ୱାରେ
ବିଷ୍ଣୁ ଗଣ ପୁଣି ହୃଦ ପୁଳକ ସେ କରେ ।
ହରଷେ ନେତ୍ରୁ ଯାହାର ଅଶ୍ରୁଜଳ ବହେ
କଣ୍ଠ ଗଦଗଦ କରି କୃଷ୍ଣଲୀଳା କହେ ।
ଆନନ୍ଦ ହୋଇ ବହଇ ମୁଖେ ହରିବାଣୀ
ହରଷେ କାନ୍ଦି ଉଠେ ଯେ କୃଷ୍ଣକଥା ଶୁଣି ।
ଆନନ୍ଦ ହୋଇ କରଇ ନୃତ୍ୟ ବେନିପାଦେ
ହସିଣ ହରି ଡାକଇ ନାମ ହୃଦମଧ୍ୟେ ।
ସବୁବେଳେ ବୋଲଇ ଯେ ତୁମ୍ଭେ ହରି ହରି
ଆହେ ଜଗନ୍ନାଥ ପ୍ରଭୁ ଦେବ ଦଇତ୍ୟାରି ।
ଆହେ ଦେବ ନାରାୟଣ ପ୍ରଭୁ ଯଦୁପତି
କରିବ ଲଜ୍ଜାକୁ ତେଜ୍ୟା କରି ହରିଭକ୍ତି ।
ଏରୁପେ ଭାବ ଉପୁଜେ ଜାଣ ଅନୁକ୍ଷଣେ
ଭଜଇ ଦୃଢ଼ କରି ଶ୍ରୀ ଗୋବିନ୍ଦ ଚରଣେ ।
ଅଶେଷ କର୍ମ ବନ୍ଧ ଯେ ହୁଏ ତାର ନାଶ
ଶ୍ରୀ କୃଷ୍ଣପାଦେ ଭଜିଣ କାଟଇ କଲ୍ମଷ ।
ଶ୍ରୀହରି ଭକ୍ତ ଅଟନ୍ତି ଜାଣ ଯେତେ ନର
ଶୁଭ ଅଶୁଭ ମଣଇଁ ସେହୁ ଏକାକାର ।
ଭଲ ମନ୍ଦ ଦୁଇ କଥା ସଂସାରେ ଯେ କରେ
ସେ କର୍ମଫଳ ଭୁଞ୍ଜଇ ଜନ୍ମି ଶରୀରରେ ।
ଏ ସଂସାର ଚକ୍ର ଗୋଟି ଅଟେ ଦୃଢ଼ ପାଶ
ଶ୍ରୀହରି ଭଜିଲା ଲୋକ ଖଣ୍ଡନ୍ତି କଲ୍ମଷ ।
ବନ୍ଧ ମୋକ୍ଷ ବେନି ଏହା ଦେହ ହେଉଥାଇ
ଆତ୍ମା ଅକ୍ଷୟ ବ୍ରହ୍ମରେ ମିଶି ମଳେ ଯାଇ ।
ଅକ୍ଷୟ ବ୍ରହ୍ମର କର୍ମ କରିଲେଟି ଜାଣ
ବନ୍ଧନ ନୁହଇ ଜନ୍ମ ମୃତ୍ୟୁ ସହିତେଣ ।
ଜାଣନ୍ତି ଆତ୍ମାର ସୂତ୍ର ଚିହ୍ନି ସୁପଣ୍ଡିତେ
ମିଶନ୍ତି ଶ୍ରୀହରି ଅଙ୍ଗେ ଭଜି ଦେହ ଅନ୍ତେ ।
ହେ ବାଳକ ନାମକୁ ଯେ ଭଜ ଏବେମନେ
ତରିବ ଏ ଭବବନ୍ଧୁ କୃଷ୍ଣ ଉପାସନେ ।
ଦେହମଧ୍ୟେ ଆତ୍ମାଗୋଟି ଅଟେ ପଦ୍ମନାଭ
ଅନ୍ୟ ଭଜନେ ନୁହଇ ଆଉ କେବେ ଶୁଭ ।

ଦେଖ ଏ ସଂସାର ମଧ୍ୟେ ଧନ ଦାରା ସୁତ
ପଶୁଅଶ୍ୱ କୁଞ୍ଜର ଯେ ଭବଲୀଳାମତ ।
ବିଷୟାରେ ପଡ଼ି ଯାହା କରନ୍ତି ଜଗତେ
କ୍ଷଣଭଙ୍ଗୁର କଥା ଯେଅଟେ କ୍ଷଣମାତ୍ରେ ।
ସ୍ୱପ୍ନର ପ୍ରାୟ ସମସ୍ତେ ଜାଣି ମିଥ୍ୟା ହୋନ୍ତି
ଜୀବରୁ ସେ ପ୍ରୟୋଜନ କେବେହେଁ ନୁହନ୍ତି ।
ଏ କଥାମାନ କେବେ ନଜାଣେ ସର୍ବଜନେ
ଭ୍ରମନ୍ତି ମାୟାରେ ପଡ଼ି ବେଦର ବଚନେ ।
ଯଜ୍ଞ ଆରମ୍ଭ କରନ୍ତି ନାନାବିଧ କର୍ମ
ଶ୍ରୁତି ବଚନରେ ପଡ଼ି ହୋନ୍ତି ମତିଭ୍ରମ ।
ସେ ଯଜ୍ଞଫଳ ଭୁଞ୍ଜନ୍ତି ଜାଣ ବେନି ଲୋକେ
ଯେ ଯାହା ଫଳଶ୍ରୁତି ସେ ଭୁଞ୍ଜେ ଏକେଏକେ
କର୍ମ ସରିଲେ ଚଳନ୍ତି ପୁଣି ପୁଣ୍ୟବଳେ
ବସନ୍ତି ପବିତ୍ରବନ୍ତ ଜନେ ସ୍ୱର୍ଗଥାଳେ ।
ପାପୀଙ୍କୁ ପାପ ଯୋନିରେ ନେଇ ଜାତକରେ
ଏ କଥା ଧ୍ରୁବ ଜାଣଟି ଅଟଇ ସଂସାରେ ।
ଅଦୃଷ୍ଟ ଘେନିଣ ଭୋଗ ସବୁ ଭୁଞ୍ଜେ ପ୍ରାଣୀ
ଏ କଥା ସତ୍ୟବୋଲି ନପାରେକେବେଜାଣି
ପରଶିରୀ ଦେଖି ହେଉଥାଇ ବୋଲି ଦୁଃଖୀ
କର୍ମେ ଥିବାର କଥା ନ ଭୁଞ୍ଜେ ମନେ ରଖି ।
କର୍ମେ ଈଶ୍ୱର ଯାହାକୁ ଯାହା ନେଇ ଦ୍ୟନ୍ତି
ଏ କଥାକୁ ଆନ କରି କେହି ନ ପାରନ୍ତି ।
ଏ କଥା ବାଳକେ ତୁମ୍ଭେ ଭଲ କରି ଜାଣ
ଜନ୍ମ ହେଲେ ଅବଶ୍ୟଟି ଲଭଇ ମରଣ ।
ଦେହ ଧଇଲେ ଜୀବକୁ ଲାଗେ ଦୁଃଖ ସୁଖ
ସୁପଣ୍ଡିତେ ସମ ଘେନି ନୁହନ୍ତି ବିମୁଖ ।
କର୍ମଯୋଗରୁ ଅଛଇ ଜୀବ ଦେହ ବହି
ପୁନଃ ପୁନଃ ଜନ୍ମ କର୍ମଫଳ ଭୁଞ୍ଜୁଥାଇ ।
ବାଳକେ ବୁଝି ସଂଶୟ ହୃଦୁ ଦୂରକର
ଅନ୍ତର୍ଗତେ ହରିନାମ ସର୍ବଦା ସୁମର ।
ଆତ୍ମା ଈଶ୍ୱରଟି ଜାଣ ଅଟେ ପରଂବ୍ରହ୍ମ
ଚିତ୍ତ ନିର୍ମଳ କରିଣ ଭଜ ହରିନାମ ।
ଏ ଜୀବ ଜନମ ଲଭେ ଘେନି ପଞ୍ଚଭୂତ
କର୍ମରେ ଯାହାଥାଇଟି ଭୁଞ୍ଜେ ତାହା ନିତ୍ୟ ।
ସଂଯୋଗ ସକାଶରୁ ସେ ଆସେ ଦେହ ବହି
କର୍ମ ସରିଲେ ଦେହକୁ ପୁଣି ବିନାଶଇ ।
ଦେବତା ଅସୁର ଆଦିକରି ଯେତେ ଜନ
ଯେ ଏଥେ କରି ପାରଇ ହରିଙ୍କ କୀର୍ତ୍ତନ ।
ସେହି ସଂସାରେ ଉତ୍ତମ ଗତି ଏକା ପାଇ
ମହା ପବିତ୍ରବନ୍ତ ଯେ ଅଟେ ପୁଣ୍ୟଦେହୀ ।

ଦେବ ବିପ୍ର ଦେବତା କେ ଅବା ଋଷିଦେବ
ଅନେକ ବିଦ୍ୟା ପଢ଼ିଣ ବହୁ ଦାନ ଦେବ ।
ଅନେକ ଯେ ତପ ଯଜ୍ଞ ନାନା ବ୍ରତ ସାଧି
ଅଷ୍ଟାଙ୍ଗଯୋଗେ ବସିଣ କରେ କର୍ମବିଧି ।
ଶଉଚ ଯଜ୍ଞାଦି ତପ ବ୍ରତ ଧର୍ମ ଯେତେ
ନାନାଦି ତୀର୍ଥ କରଇ ସେହୁ ବେଦମତେ ।
ଅଜ୍ଞାନୀ ଭ୍ରମି ମରନ୍ତି ଏଥେ ହୋଇ ଶ୍ରମୀ
କୃଷ୍ଣ ପଦ୍ମପାଦକୁ ନ ପାରେ କେବେ ଗମି ।
ନିର୍ମଳ ଭକ୍ତି ଯେ କରିପାରେ ଅନ୍ତର୍ଗତେ
ତେବେ ସେ ପଦାରବିନ୍ଦ ଲଭେ ହୃଦଗତେ ।
ଆଉ ଯେତେ କର୍ମ କରେ ସବୁ ଅକାରଣ
ଭଜି ପାରିଲେ ତାରନ୍ତି ଏକା ନାରାୟଣ ।
ଏଣୁ ଆରେ ବାଳକେ ଶ୍ରୀହରି ପାଦେ ଭଜ
ଅସୁର ମାର୍ଗ କଥାକୁ ହୃଦୁଁ ବେଗେ ତେଜ ।
ତେବେ ଯାଇଁ ତୁମ୍ଭଙ୍କୁଟି ବୋଲିବା ମହାତ୍ମା
ତୁମ୍ଭ ଆତ୍ମା ପ୍ରାୟ ମଣ ସମସ୍ତଙ୍କ ଆତ୍ମା ।
ସକଳ ଘଟର ମଧ୍ୟେ ବିଜେ ନରହରି
ସୂକ୍ଷ୍ମ ରେଣୁ ପ୍ରମାଣେ ସେ ଛନ୍ତି ବିଜେ କରି
ଶ୍ରୀହରି ପାଦପଦ୍ମରେ କେତେ ଭକ୍ତ ଭାବି
ଅମର ଅଛନ୍ତି ରହି ହୋଇଣ ତ୍ରିଜୀବୀ ।
ଅମର ଯାକରେ ଜାଣ ଏକଥା ଦୁର୍ଲ୍ଲଭ
ଏକାନ୍ତ ହୋଇଣ ବସି କୃଷ୍ଣପାଦେ ଭାବ ।
ଜ୍ଞାନ ଲୋଚନେ ସକଳ ଆତ୍ମା ଚିହ୍ନ ଦେଖ
ଆତ୍ମାରେ ଆତ୍ମାକୁ ଭରି ଦେହ ମଧ୍ୟେ ରଖ ।
ପ୍ରହ୍ଲାଦ ମୁଖୁ ଏମନ୍ତ ବାକ୍ୟମାନ ଶୁଣି
ଅସୁର ପୁତ୍ରେ ହସନ୍ତି ତାହା ମନେ ଗୁଣି ।
ବୋଲନ୍ତି ଏ କଥାଯାକ ଗୁରୁମୁଖେ କେବେ
ଚାଟଶାଳୀରେ ଦିନେ ହେଁ ଶୁଣିନାହୁଁ ଆମ୍ଭେ
ଗୁରୁଙ୍କ ଆଗେ କହିବା ଆସ ବେଗେ ଯାଇ
ଏତେକ ପାଞ୍ଚି ସମସ୍ତେ ଗଲେ ଏକ ହୋଇ
ଗୁରୁଙ୍କ ଛାମୁରେ ଯାଇ ସର୍ବେ ପହଞ୍ଚିଲେ
ପ୍ରହଲାଦ ପଢ଼ିବାର ବିଦ୍ୟା ବଖାଣିଲେ ।
ବାଳକମାନଙ୍କ କଥାଶୁଣି ଗୁରୁଦେବ
ଚିନ୍ତା ମନଦୁଃଖେ ବହିଲେ ସେ ସ୍ତବ୍ଧଭାବ ।
ସବୁବେଳେ ହରିନାମ ବୋଲେ ପ୍ରହଲାଦ
କେବେହେଁ ନସ୍ଫୁରେତାର ତୁଣ୍ଡେ ଆନପଦ
ଗୁରୁ ବୋଇଲେ ଏହାକୁ ଆଉ ପଢ଼ାଇଲେ
ଆମ୍ଭର ଭଲ ନୋହିବ ରଞ୍ଜେ ନ କହିଲେ
ଏତେ ପାଞ୍ଚିଣ ହରିଣ୍ୟ ପାଶେ ଗୁରୁ ଯାଇଁ
ପ୍ରହଲାଦ କଥା ସବୁ କହିଲେ ବତାଇ ।

## ନୃସିଂହ ଅବତାର ଓ ହିରଣ୍ୟକଶିପୁ ବଧ

ତାହାଶୁଣି ହିରଣ୍ୟ ଯେ ମନେ କଲା ଚିନ୍ତା
କୋପ ବହିଣ ପୁତ୍ରକୁ କଲାକ ଅହନ୍ତା ।
କିଛି କଥା ଆଉ ତାର ନ ପଶେ ମନର ।
ରମ୍ଭା ବନେ ପଶି ଯେହ୍ନେ ନାଶଇ ସମୀର ।
ପୁତ୍ରର ମରଣ ସେହିରୂପେ ଚିନ୍ତାକଲା
ଗୁରୁଙ୍କ ବାକ୍ୟ ଉତ୍ତମ କରିଣ ଶୁଣିଲା ।
ଅରୁଣ ନେତ୍ରେ ରାଜା ଯେ ଚାହେଁ ପୁଣି ପୁଣି
ଶରୀର କମ୍ପେ ତାହାର ଉଲକାପାତ ଜାଣି ।
ଗୁରୁପୁତ୍ରଙ୍କୁ ଚାହିଁଣ ବୋଇଲା ହିରଣ୍ୟ
ବେଗେ ପ୍ରହ୍ଲାଦକୁ ମୋର ପାଶକୁ ଯେ ଆଣ
ଶୁଣିଣ ଗୁରୁପୁତ୍ର ଯେ ପ୍ରହ୍ଲାଦକୁ ରାଇ
ରାଜାଙ୍କ ଛାମୁରେ ନେଇ ଦେଲେକ ଧରାଇ
କୃତାଞ୍ଜଳି ହୋଇକରି ପ୍ରହଲାଦ ବୀର
ପିତାର ପାଦେ ଯାଇଣ କଲା ନମସ୍କାର ।
ପାଦେପଡ଼ି ଶୋଇଣ ସେ ଉଠି ତତକାଳେ
ରହିଲା ଉଭା ହୋଇଣ ବାଳକଙ୍କ ମେଳେ
ପୁତ୍ରକୁ ଚାହିଁ ପୁଛଇ ରାଜାମନ କୋପେ,
ଫୁଫୁକାର ହୋଇ ଯେହ୍ନେ ଗର୍ଜେ କଳାସର୍ପେ
ସ୍ୱଭାବେ ଦାରୁଣ ଅଟେ ଅସୁରର ଦେହୀ
କୋପ ହୋଇଣ ପୁଛଇ ପୁତ୍ରମୁଖ ଚାହିଁ ।
କିରେ ପ୍ରହଲାଦ ତୁହି କେଡ଼େ ଦୁରାଚାର
ନଜାଣୁକି କୋପିଲେ ମୁଁ କମ୍ପେ ତିନିପୁର ।
ତ୍ରାସନ୍ତି ଭୟ କରିଣ ଦଶଦିଗପାଳ
ପୃଥ୍ୱୀ ଆପ ତେଜବାୟୁ କମ୍ପେ ଭୂମଣ୍ଡଳ ।
ତୁ ମୋତେ ଟିକିଏ ତ ନକରି ଭୟଭୀତି
କହିବା କଥା ମୋର ନ ଘେନୁଅଛୁ ମତି ।
ମୋହବୀର୍ଯ୍ୟରେ ଜନ୍ମିତୁ ହେଲୁ କୁଳାଙ୍ଗାର
ଆଜି ତୋତେ ପେଶିବି ମୁଁ ନିଶ୍ଚେ ଯମପୁର ।
କାହାର ବାକ୍ୟ ଶୁଣି ଏ ରୁପେ ଅଛୁ ମାତି
ବୁଝାଇ କହିଲି ତୋତେ ନ ଫେରାଉ ମତି
ଶୁଣି ପ୍ରହଲାଦ କହେ ଯୋଡ଼ି ବେନିପାଣି
ବୋଇଲାକ ସାବଧାନେ ଶୁଣିମା ନୃମଣି ।
ଯାହା କହିଲଟି ମୋତେ ଉଚିତ ତୋହର
ସେ କଥାରୁ ପଦେ କହିବି ମୁଁ ନୃପବର ।
ନିର୍ମଳଚିତ୍ତେ କହୁଛି ଶୁଣ ତାହା ତୁହି
ଯାହାର ଜୀବ ବଳେ ମୁଁ ସମ ମଣିଥାଇ ।
ତୁମ୍ଭେ ଆମ୍ଭେ ଏସଂସାରେ ଯେତେଦେହଧାରୀ
ତିନିପୁର ମଧ୍ୟେ ଜୀବ ଯେତେଛନ୍ତି ପୂରି ।
ସ୍ଥାବର ଜଙ୍ଗମ କୀଟ ପତଙ୍ଗାଦି ଯେତେ
ବ୍ରହ୍ମାଦି ଯେତେକ ଜୀବ ଶିବାଦି ସହିତେ ।
କରନ୍ତି ତାହାଙ୍କ ଚରଣରେ ସର୍ବେ ସେବା
ସେ ପ୍ରଭୁଙ୍କୁ କେମନ୍ତେ ମୁଁ ଛାଡ଼ିବି କହିବା ।
ସମସ୍ତ ପ୍ରାଣୀଙ୍କ ସେହି ଦ୍ୟନ୍ତି ଗତି ମୁକ୍ତି
ତାହାର ଭିତରେ ପୂରିଛନ୍ତି ବ୍ରହ୍ମମୂର୍ତ୍ତି ।
ଭୁଞ୍ଜନ୍ତି ସମସ୍ତେ ଜୀବ ହୃଦେଭୋଗ ବସି
କ୍ରୀଡ଼ା ଭାଙ୍ଗିଲେ ଚଳନ୍ତି ପୁଣି ବ୍ରହ୍ମରାଶି ।
ଏ କଥା ଶୁଣି କୃଷ୍ଣଙ୍କୁ ବେଗେ ତାତ ଭଜ
ଅସୁର ସ୍ୱଭାବ ତୋର ବେଗେ ପରିତେଜ ।
ଆପଣା ଆତ୍ମାର ପ୍ରାୟ ସବୁ ଆତ୍ମା ଦେଖ
ସମବୁଦ୍ଧି ଆଚରିଣ ସବୁ ଘଟେ ରଖ ।
ଏଭାବ ଥିଲା ହୃଦେ ନ ଥାଇ ମିତ୍ର ରିପୁ
ମୁଁ କିସ କହିବି ପିତା ହିରଣ୍ୟ କଶିପୁ ।
ଶ୍ରୀପଦ୍ମ ପାଦ ଭଜିବା ହୃଦେକରି ସ୍ଥିର
ହରିଙ୍କୁ ହୃଦରେ ଚିହ୍ନି ସର୍ବ କର୍ମ କର ।
ଆପଣ ଯେ ତ୍ରିଲୋକକୁ ଏକାଅଛ ଜିଣି
ତ୍ରିଭୁବନ ମଧ୍ୟେ ତୁହି ବୋଲାଉ ନୃମଣି ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳେ ତୁ ଅଟୁ ମହାରାଜା
ସୁର ନରେ ଅସୁରେ କରନ୍ତି ତୋତେପୂଜା ।
ବ୍ରହ୍ମାଣ୍ଡରେ ଯେତେ ନାରୀ ପୁରୁଷ ଅଛନ୍ତି
ସବୁରି ହୃଦପଦ୍ମେ ସେ ପୂରି ରହିଛନ୍ତି ।
କାମ କ୍ରୋଧ ଆଦି ଯେଉଁ ଷଡ଼ରିପୁଛନ୍ତି
ମନକୁ ସେନାକରି ସେ ଭଣ୍ଡାର କରନ୍ତି ।
ଏ ଭଣ୍ଡାରେ ଦଶ ଇନ୍ଦ୍ର ଦଶ ଦିଗପାଳ
ଆତ୍ମା ନାଶିବାକୁ ହୋଇଅଛନ୍ତି ସେ କାଳ ।
ଏମାନଙ୍କୁ ତହିଁ ଆଗୁଁ ସେହୁ ନ ନିବାରି
ମୁହିଁ ଏକା ବୀର ବୋଲି ବିଚାରୁଛି କରି ।
ଇନ୍ଦ୍ରିଗଣକୁ ଜିଣି ଯେ ପାରୁଛି ଶରୀରେ
ସେ ଲୋକକୁ ବଡ଼ବୋଲି ଘେନି ମଞ୍ଚପୁରେ ।
ପ୍ରହଲାଦ ବାକ୍ୟ ଶୁଣି ହିରଣ୍ୟ ଯେ ରାଜା
ମାରିବିରେ ତୋତେ ବୋଲି କଲାକ ତରିଜା
ମାଡ଼ି ବସିଲାଣି ମୃତ୍ୟୁ ତୋତେ ଆସି ଏବେ
ବାତୁଳ ଲୋକପ୍ରାୟ ତ କଥା କହୁ ଗର୍ବେ ।
ଉତ୍ତମଲୋକ ଯେବେରେ ଦୁଷ୍ଟ ବୁଦ୍ଧିକରେ
ମୃତ ହେଲା ବୋଲିଣ ସେ ଜାଣିବ ସଂସାରେ
ଦୁଷ୍ଟଲୋକ ଯେବେଟି ସୁବୁଦ୍ଧି କଥା କହେ
ମୃତ୍ୟୁ ତାକୁହେଲା ବୋଲି ଜାଣ ନିଃସନ୍ଦେହେ
ଏ ଜନ୍ମରେ ଭାଗ୍ୟ ଆଉ ନାହିଁରେ ତୋହର
ମୋର ବୀର୍ଯ୍ୟେ ଜନ୍ମ ତୁହି ନୋହିଲୁ ଅସୁର ।

ମୋର ବୁଦ୍ଧିପ୍ରାୟ ତୋରବୁଦ୍ଧି ଯେବେହନ୍ତା
ଏ ଭାଷା କାହିଁପାଇଁ ତୋ ତୁଣ୍ଡୁ ବାହାରନ୍ତା
ମୋର ଏ ପୃଥ୍ୱୀଯାକରେ ହୁଅନ୍ତୁ ତୁ ରାଜା
ଦଶଦିଗପାଳେ ଆସି କରୁଥାନ୍ତେ ପୂଜା ।
ପରବୁଦ୍ଧି ଶିଖିଣ ତୁ ମୋର ବାକ୍ୟ ତେଜ
ନୀରସ ବୋଲିଣ ମୋତେ ମନରେ ତୁହେଜ
ମୋଠାରୁ ଈଶ୍ୱର କେହି ଅଛି ଯେବେ ଭିନ୍ନେ
ତାହାକୁ ବେଗେ ଆଣ ତୁ ଦେଖିବି ନୟନେ ।
ତୁହି ଯେବେ ବୋଲୁଅଛୁ ଗୋବିନ୍ଦ ନୃହରି
ସଂସାରେ ଦୃଶ୍ୟେ ଅଦୃଶ୍ୟେ ରହିଛନ୍ତି ପୂରି
ସେ ହରିତୋତେଯେବେରେହୋଇଛି ସପକ୍ଷ
ତାହାକୁ ଆଜ ମୋତେରେ ଦେଖାଅପ୍ରତ୍ୟକ୍ଷ
ସେ ହରି ଯେବେରେ ସର୍ବଘଟେ ଅଛି ପୂରି
ଏ ସ୍ତମ୍ଭ ମଧ୍ୟେ କିମ୍ପା ନ ଦିଶେ ନରହରି ।
ତୁ ଯେବେ ବୋଲୁଅଛୁ ସେ ହରି ମୋରସଖା
ପ୍ରତ୍ୟକ୍ଷେ ତୁତେବେମୋତେସ୍ତମ୍ଭମଧ୍ୟେ ଦେଖା
ନୋହିଲେ ଆଜ ତୋହର ଛେଦିବି ମୁଁ ଶିର
କିରୂପେ ସଂସାରେ ତୋତେରଖେ ଚକ୍ରଧର
ହିରଣ୍ୟାସୁର ମୁଖରୁ ଶୁଣି ଏ ବଚନ
ଭୟରେ ଯେ ପ୍ରହଲାଦ ସ୍ମରେ ଭଗବାନ ।
ବୁଝିଲେ ତ ପ୍ରହଲାଦ ଅଟେ ବିଷ୍ଣୁ ଦାସ
ଚାହିଁଲା କୃଷ୍ଣଙ୍କୁ ଲୟକରି ଦଶଦିଶ ।
ଦେଖିଲା ସ୍ତମ୍ଭ ମଧରେ ବିଜେ ନରହରି
ଶଙ୍ଖ ଚକ୍ର ଗଦା ପଦ୍ମଛନ୍ତି କରେ ଧରି ।
ଚାହିଁଲା ଦିଶନ୍ତି ସ୍ତମ୍ଭ ମଧ୍ୟେ ଚକ୍ରଧର
ଆତଙ୍କେ ଡାକିଲେ ପ୍ରଭୁ ଶୁଣନ୍ତି ସତ୍ୱର ।
ପ୍ରହଲାଦ ବୋଲନ୍ତି ଯେ ପିତାମୁଖ ଚାହିଁ
ଭୋ ପିତା କହୁଛି ଶୁଣ ନମସ୍କାର ହୋଇ ।
ସ୍ତମ୍ଭର ମଧରେ ଦେଖ ବିଜେ ନରହରି
ସର୍ବ ଅନ୍ତର୍ଯ୍ୟାମୀ ହୋଇଛନ୍ତି ବିଜେ କରି ।
ହିରଣ୍ୟାସୁର ପୁତ୍ରର ବାକ୍ୟ ଗୋଟି ଶୁଣି
କୋପଭରେ ହୋଇ ଉଠିଲା ସେ ଶିର ଝୁଣି
ବୋଇଲା ସବୁରି ଆତ୍ମା ଅଟେ ଯେବେ ହରି
ତୋର ଦେହ ମଧ୍ୟେ ଅଛିକି ସେ ବିଜେକରି
ଏ ସଂସାରେ ହଣାହଣି ହୁଅନ୍ତେ ଯେତେ ଲୋକ
ଆତ୍ମାକୁ ଆତ୍ମା ହାଣନ୍ତେ ଛିଡ଼େ କିମ୍ପା ବେକ
ପ୍ରହ୍ଲାଦ ବୋଇଲା ମନ୍ଦ ପ୍ରକୃତି କି ଘେନି
ହେଉଥାନ୍ତି ମରାମରି ଆତ୍ମାକୁ ନ ଚିହ୍ନି ।
ଭୋ ପିତା ନୁହନ୍ତା ଯେବେ ତୋ ପ୍ରକୃତିମନ୍ଦ
ଆତ୍ମାରାମଙ୍କୁ ଚିହ୍ନିଣ ଭଜନ୍ତୁ ଗୋବିନ୍ଦ ।

ଆବର ଶ୍ରୀହରେ ରାମକୃଷ୍ଣ ବୋଲି ବୋଲି
ଭଜନ କରୁଥାନ୍ତୁ ତୁ ପାଦପଦ୍ମ ଭାଳି ।
ପୁତ୍ରବାକ୍ୟ ଶୁଣି ରାଜା କଲା ବହୁ କୋପ
ଆସନୁ ଉଠି ଧଇଲା ମହା ବିଶ୍ୱରୂପ ।
ବିକଟାଳ ହୋଇଣ ସେ ଦେଲା ବେନିଦୃଷ୍ଟି
ଓଷ୍ଠକୁ ମିଶାଇ ଚାପିଲାକ ଦନ୍ତପାଟି ।
ତକ୍ଷଣେ ତୀକ୍ଷ୍ଣ ଖଡ଼ଗ ଧରି ବେନିକରେ
ସ୍ତମ୍ଭପାଶେ ଯାଇଁ ଉଭାହୋଇଲା କ୍ରୋଧରେ
ଦେଖିଲା ସ୍ତମ୍ଭ ମଧ୍ୟରେ ଦିଶେ ନାରାୟଣ
କଳାମେଘ ବିଜୁଳି ଝଟକେ ଯେହ୍ନେ ଜାଣ
ଦୈତ୍ୟକୁ ଦିଶନ୍ତି ସେହି ରୂପେ ଚକ୍ରଧର
ପ୍ରହଲାଦକୁ ପ୍ରଶଂସା କଲାକ ଅସୁର ।
ବୋଇଲା ଭଲା ପୁତ୍ର ମୁଁ ଥିଲି ଜନ୍ମକରି
ବୈରୀକି ମୋର ଦେଖାଇଦେଲା ଆଣି ଧରି
ଯେଉଁ ହରିନାମ ପଢୁଥିଲା ମୋର ପୁତ୍ର
ସେ ପୁତ୍ର ଯୋଗୁଁ ଦେଖିଲି ମୁହିଁ ପଦ୍ମନେତ୍ର ।
ଏତେବୋଲି ହିରଣ୍ୟ ଯେ କୋପେଗଲା ଉଠି
ପ୍ରହାର କଲାକ ସ୍ତମ୍ଭେ ନେଇ ବାମ ମୁଷ୍ଟି ।
ତକ୍ଷଣେ ନୃସିଂହ ପ୍ରଭୁ ଘୋର ନାଦକରି
ସ୍ତମ୍ଭ ମଧ୍ୟରୁ ବାହାର ହେଲେ ରୂପ ଧରି ।
ମହାଘୋର ରଡ଼ି ଛାଡ଼ିଲେକ ଆଦିକନ୍ଦେ
ଚଉଦ ବ୍ରହ୍ମାଣ୍ଡ କମ୍ପିଗଲା ସେ ଶବଦେ ।
ହର ବ୍ରହ୍ମା ଇନ୍ଦ୍ର ଆଦି ଦଶ ଦିଗପାଳେ
ରଡ଼ି ଘାତରେ ଚମକି ପଡ଼ିଲେ ସକଳେ ।
ଯେସନେ ପୃଥିବୀ କମ୍ପେ ପଡ଼ି ଘଡ଼ଘଡ଼ି
ସେରୁପେ ନୃସିଂହଦେବଦେଲେ ଘୋର ରଡ଼ି
ରଡ଼ି ଛାଡ଼ି ସ୍ତମ୍ଭ ମଧ୍ୟେ ଅଦୃଶ୍ୟେ ରହନ୍ତେ
ନେତ୍ରେ ନଦେଖିଧାଇଁଲା ଦୈତ୍ୟ କ୍ରୋପଚିତ୍ତେ
କ୍ରୋଧେ ଯାଇ ଧଇଲାକ ପ୍ରହ୍ଲାଦର ବାଳ
ତାହାଦେଖି ଭୟରେ କମ୍ପିଲେ ଦିଗପାଳ ।
ସତ୍ୱରେ ପୁତ୍ରର ବାଳ ଧରି କୋପେ ଚାହିଁ
ବୋଇଲା ମାରିବି ଆଜ ତୋତେ ନିଶ୍ଚେମୁହିଁ
କାହିଁଅଛି ଦେଖାଅ ତୁ ବେଗେତୋର ହରି
ନୋହିଲେ ତ ଯମପୁରେ ପେଶିବି ମୁଁ ମାରି ।
ତାହାଶୁଣି ପ୍ରହଲାଦ ହୁଅନ୍ତେ ବିକଳ
ଜାଣିଲେ ଭକ୍ତର ବ୍ୟଥା ତହୁଁ ଆଦିମୂଳ ।
ସ୍ତମ୍ଭର ଭିତରୁ ପ୍ରଭୁ ପ୍ରକାଶିଲେ ଆସି
ଆଦିତ୍ୟ ଉଦେ ଯେସନେ ପାରାବାରୁଁ ଦିଶି ।
ଅଦ୍ଭୁତେ ସେ ସ୍ତମ୍ଭ ମଧ୍ୟୁ ଜାତ ଦେବରାଜ
ସାକ୍ଷାତେ ନୃସିଂହ ରୂପ ପରି ଚତୁର୍ଭୁଜ ।

ସ୍ତମ୍ଭ ମଧ୍ଯୁ ଅବତରି ପ୍ରଭୁ ଆଦିମୂଳ
ଚାହିଁ ହିରଣ୍ୟ ଛାଡ଼ିଲା ପୁତ୍ରର ଯେ ବାଳ ।
ନୃସିଂହ ଛାମୁରେ ଯାଇ ମିଳନ୍ତେ ହିରଣ୍ୟ
ତପ୍ତ କାଞ୍ଚନ ପରାୟେ ଦିଶେ ତନୁବର୍ଣ୍ଣ ।
କେଶରୀ ବଦନ ପ୍ରାୟ ଦିଶେ ମୁଖପ୍ରଭା
ତପତ ହାଟକ ପ୍ରାୟ ଶ୍ରୀଅଙ୍ଗର ଶୋଭା ।
ମୂରାସୁରକୁ ମାରିଣ ଶ୍ରୀ ନୃସିଂହ ପ୍ରଭୁ
ପ୍ରହ୍ଲାଦ ପାଇଁ ପ୍ରକାଶ ହେଲେ ଆସି ସ୍ତମ୍ଭୁ ।
ହିରଣ୍ୟସୁରକୁ ଭୟ ଦେଖାଇବା ପାଇଁ
ବିଶ୍ୱ ମୂରତି ଧଇଲେ ପ୍ରଭୁ ଭାବଗ୍ରାହୀ ।
ବିକଟାଳ ଦନ୍ତମାନ ପ୍ରକାଶଇ ପାଟି
ନିଶ୍ଚଳ ନରହେ ତନୁ ଚଞ୍ଚଳ ଭ୍ରୁକୁଟି ।
ଆକାଶଯାକ ଘୋଟିଣ ଦିଶେ ବେନିକର୍ଣ୍ଣ
ଗହ୍ୱର ପ୍ରାୟ ଦିଶଇ କର୍ଣ୍ଣରନ୍ଧ୍ର ଜାଣ ।
ନାସିକାର ରନ୍ଧ୍ର ବେନି ଦିଶେ ଅଗୋଚର
ଶ୍ରୀଅଙ୍ଗରେ ଓଷ୍ଠ ଲମ୍ବ ଦିଶେ ଭୟଙ୍କର ।
ହର ଡମ୍ବରୁ ପରାୟ ଅଣ୍ଟାର ଆକାର
ଆଜାନୁଲମ୍ବିତ ବାହୁ ସୁଦୀର୍ଘ ପୟର ।
ଶ୍ରୀଅଙ୍ଗରେ ଲୋମମାନ ବଜ୍ର ପ୍ରାୟ ଦିଶେ
ବଢ଼ନ୍ତି ଆକାଶ ବୃଦ୍ଧି ପ୍ରାୟ ଜଗଦୀଶେ ।
ସଂସାରଯାକ ପୂରିଣ ଦିଶେ ସେହି ଦେହ
ପ୍ରକାଶେ କର ଚରଣ ଆଦି କରରୁହ ।
ଯେତେକ ଅସୁର ଥିଲେ ହିରଣ୍ୟର ପାଶେ
ଭୟରେ ପଳାଇ ଲୁଚିଗଲେ ଦଶ ଦିଶେ ।
ଏକାନ୍ତେ ନୃସିଂହ ରୂପ ହିରଣ୍ୟ ଯେ ଦେଖି
କ୍ରୋଧେ ଗଦାଧରି ଧାଏଁ ତରାଟିଣ ଆଖି ।
ନୃସିଂହ ଉପରେ ଗଦା ପିଟିଲାକ ନେଇ
ବୋଇଲା ଭାଇକି ମୋର ମାଇଲୁରେ ତୁହି ।
ବିକ୍ରମ ପ୍ରକାଶି ଉଚ୍ଚେ କହନ୍ତି ଅସୁର
ବ୍ୟର୍ଥରେ ମଲୁରେ ଏବେ ତୁହି ଚକ୍ରଧର ।
ବୋଇଲା ଭାଇକି ମୋର ମାରିଥିଲୁ ପରା
ଲୁଚି ଲୁଚି ମୋତେ ଏବେ କିମ୍ପାଦେଲୁ ଧରା
ନୃସିଂହ ବୋଇଲେ ଆଜ ବୁଝିବିରେ ମୁହିଁ
ତୋର ଭାଇଠାରୁ ବଡ଼ ଅଟୁକିରେ ତୁହି ।
ଦଶ ନଖେ ବିଦାରିଣ ଦେବି ତୋର ବୁକୁ
ମାରିଣ ପେଶିବି ତୋତେ ତୋଭାଇପାଶକୁ
ଏତେବୋଲି ଦଇତକୁ ଧରି ନରହରି
ତାହାର ବୁକୁ ଉପରେ ବସିଲେ ମୁରାରି ।
ନୃସିଂହକୁ ଛିଞ୍ଚାଡ଼ିଣ ପକାନ୍ତେ ଦଇତେ ।
ତକ୍ଷଣେ ଉଠିଣ ପ୍ରଭୁ ଧାଇଁଲେ ତୁରିତେ ।

ଧରୁ ଧରୁ ହସ୍ତୁ ଖସିଗଲା ଦୈତ୍ୟବେଗେ
ଓଷ୍ଠ କାମୁଡ଼ି ଚାହିଁଲା ପୁଣି ଦଶଦିଗେ ।
ଅସୁର ଅତ୍ୟନ୍ତ ଦୁଷ୍ଟ ଦେଖି ଦେବଗଣ
ସ୍ତୁତି କରନ୍ତି ଶୂନ୍ୟରେ ଥାଇ ଜଣେ ଜଣ ।
ବୋଲନ୍ତି ଆମ୍ଭଙ୍କୁ ମହାପ୍ରଭୁ ରକ୍ଷାକର
ହିରଣ୍ୟାସୁରକୁ ମାରି ସଂସାର ଉଦ୍ଧର ।
ଏଥୁ ଅନନ୍ତରେ ଦୈତ୍ୟ ଧାଏଁ କୋପକରି
ଗଦା ପକାଇ ଖଡ଼ଗକରେ ଦୃଢ଼େ ଧରି ।
ଅଣଚାଶ ପବନର ପ୍ରାୟ ଧ୍ୱନିକରେ
ଘୋର ଗର୍ଜନ କରି ସେ ମିଳିଲା ଆଗରେ
ଦୈତ୍ୟକୁ ଦେଖି ଗରୁଡ଼ ପ୍ରାହ ହରି ଧାଇଁ
ଅସୁରକୁ ଧରି ଶୂନ୍ୟେ ଛେଦିଦେଲେ ମହୀ
ସ୍ୱଭାବରେ ଦୁର୍ଜୟ ତ ଅଟଇ ଅସୁର
ବଜ୍ର ହୁଁ ଆଣ୍ଟ ତାହାର ଅଟଇ ଶରୀର ।
ଲେଉଟି ଉପରେ ମାଡ଼ି ବସି ନରହରି
ପକାଇଲେ ଭୂମିରେ ଉତ୍ତାନଶାୟୀ କରି ।
ଯେସନେ ଧରଇ ଧାଇଁ ମୂଷିକକୁ ସର୍ପ
ସେ ରୂପେ ମାଡ଼ି ବସିଲେ ହରି କଉଣପ ।
ଯେସନେ ଗଜ ମୁଣ୍ଡକୁ କେଶରୀ ବିଦାରି
ମାଡ଼ିବସି ବିଦାରିଲେ ତେସନ ଶ୍ରୀହରି ।
ଦଶ ନଖେ ବିଦାରିଲେ ଅସୁରର ବୁକୁ
ପ୍ରାଣଛାଡ଼ି ହିରଣ୍ୟ ଯେ ଗଲା ବୈକୁଣ୍ଠକୁ ।
କୋପଭରେ ସେ ନୃସିଂହ ଚାହିଁ ଦଶଦିଶେ
ମିଳିଲେ ହିରଣ୍ୟ ସୈନ୍ୟଗଣ ଚଉପାଶେ ।
ଚକ୍ରପେଶି ସମସ୍ତଙ୍କୁ ଦେଲେ ପ୍ରଭୁ ଛେଦି
ଅତିବେଗେ ବହିଗଲା ତହିଁ ରକ୍ତନଦୀ ।
ସର୍ବ ଅସୁର ପଡ଼ିଲେ ମରି ମହୀତଳେ
ଊର୍ଦ୍ଧ୍ୱମୁଖେଚାହାନ୍ତେ ସେ ପୁଣି କୋପାନଳେ
ଗଗନରୁ ଦେବତାଏ ପଳାଇଲେ ତ୍ରାସେ
ଅଷ୍ଟ ଦିଗପାଳେ କେହି ନରହିଲେ ପାଶେ
ଅସୁର ଗୋଟିଏ କରି ନ ରଖିଲେ ହରି
ବାତଚକ୍ରେ ବୁଲାଇଣ ଦେଲେ ସବୁ ମାରି ।
ଅଭେଟ ହେବା ଅସୁରେ ସର୍ବେ ପଳାଇଲେ
ଅସ୍ତ୍ରଧାରୀ ହୋଇ ତହିଁ କେହି ନ ରହିଲେ
ହିରଣ୍ୟ ଅସୁରକୁ ଯେ ସଂହାରି ଶ୍ରୀହରି
ଅସୁରର ସିଂହାସନେ ଯାଇ ବିଜେ କରି ।
ନନ୍ଦନବନୁ ଦେବତାମାନେ ପୁଷ୍ପତୋଳି
ମଙ୍ଗଳ ରାଗରେ ଗୀତ ଗାଇ ଆଗେ ମିଳି ।
ତକ୍ଷଣେ ସ୍ୱର୍ଗୁ ଆସିଲେ ମିଳି ଦେବନାରୀ
ଆନନ୍ଦ ହୋଇ କୁସୁମ ବୃଷ୍ଟିଶିରେ କରି ।

ଗଗନ୍ତୁ ମିଳିଲେ ଆସି ସର୍ବ ଦିଗପାଳେ
ଦୁନ୍ଦୁଭି ବାଦ୍ୟ ବଜାଇ ନାଚି କୁତୂହଳେ ।
ହରଷ ହୋଇଣ ସର୍ବେ ନୃତ୍ୟଗୀତ କରି
ଆନନ୍ଦରେ ହୁଳହୁଳି ଦ୍ୟନ୍ତେ ଅପସରୀ ।
ବ୍ରହ୍ମାରୁଦ୍ର ଇନ୍ଦ୍ର ଆଦି ଋଷିଗଣ ମେଳେ
ସମସ୍ତେ ସ୍ତୁତି କରନ୍ତି ପ୍ରଭୁ ଆଦିମୂଳେ ।
ଚଉଦ ଭୁବନେ ପୂରିଥିଲେ ଯେତେ ଜନ
ସମସ୍ତେ କରନ୍ତି ନୃସିଂହଙ୍କୁ ଧନ୍ୟ ଧନ୍ୟ ।
ବ୍ରହ୍ମା ଆସି ନୃସିଂହଙ୍କ ମୁଖକୁ ଅନାଇ
କରନ୍ତି ଯେତେଯେ ସ୍ତୁତି ପାଦତଳେ ଶୋଇ
ବ୍ରହ୍ମା ରୁଦ୍ର ଇନ୍ଦ୍ରାଦି ତେତିଶକୋଟି ଦେବ
ଶ୍ରୀମହାଲକ୍ଷ୍ମୀ ସହିତେ ଋଷିଗଣ ସର୍ବ ।
ଯକ୍ଷ ରକ୍ଷ ଗନ୍ଧର୍ବ ଯେ ପିତୃଗଣ ଆଦି
ସମସ୍ତେ ଶ୍ରୀନୃସିଂହଙ୍କ ପାଦତଳେ ବନ୍ଦି ।
ସମସ୍ତେ ତ ମନେ ମନେ କରନ୍ତି ଯେ ସ୍ତୁତି
କାହାକୁ ନୃସିଂହ ସ୍ୱାମୀ ସମସ୍ୟା ନଦ୍ୟନ୍ତି
ପରମ ଦୟାଳୁ ଜାଣ ପ୍ରଭୁ ନରସିଂହ
ଭକ୍ତପାଇଁ ଅବତାର ହେଲେ ବହି ଅଙ୍ଗ ।
ପ୍ରହଲାଦ ମୁଖରୁ ସେ ସମସ୍ୟା ନ ଶୁଣି
ମୌନ ହୋଇଣ ରହିଲେ ତହିଁ ଚକ୍ରପାଣି ।

●

## ପ୍ରହଲାଦର ସ୍ତୁତି ଓ ରାଜ୍ୟାଭିଷେକ

ଏଥୁ ଅନନ୍ତରେ ଶୁଣ ହେ ନାରଦ ମୁନି
ପ୍ରହଲାଦ କରଗୋଟି ଧରି ପଦ୍ମଯୋନି ।
ବୋଇଲେ ସଂସାର ଯାକ କଲୁ ଆମ୍ଭେ ସ୍ତୁତି
କାହାକୁ ନକହି ବସି ଅଛନ୍ତି ନିବର୍ତ୍ତି ।
ତୋତେ ଦେଖି ଶ୍ରୀମୁଖୁ ବା ଫିଟିବ ବଚନ
ତୋହର ଘେନି ସଂସାରୁ ତରିବେ ଯେ ଜନ
ତୋର ଘେନି ଅବତାର ହୋଇଛନ୍ତି ହରି
ସବୁରି ଯିବଟି କ୍ଲେଶ ତୋତେ ଦେଖିକରି
ଶୁଣିଣ ସେ ପ୍ରହଲାଦ ବ୍ରହ୍ମାଙ୍କ ବଚନେ
ଚଳିଲେ ଆନନ୍ଦେ ଉଠି ପ୍ରଭୁଙ୍କ ଦର୍ଶନେ
କୃତାଞ୍ଜଳି ହୋଇକରି ଶିରେ ଦେଇ କର
ପଦ୍ମ ପାଦତଳେ ଯାଇ ବସିଲା ତତ୍ପର ।
ଭକ୍ତକୁ ନୃସିଂହ ପ୍ରଭୁ ଦେଖି ଦୟାଚିତ୍ତେ
ଆନନ୍ଦ ହୋଇ ଧରିଲେ ତାକୁ ବେନିହସ୍ତେ ।
ଭୂମିରୁ ଟୋଳି ଆଣିଣ କୋଳେ ବସାଇଲେ
ପଙ୍କଜ ହସ୍ତକୁ ନେଇ ଶିରପରେ ଦେଲେ ।
ପ୍ରଭୁଙ୍କର ହସ୍ତ ଗୁଣ ଶୁଣ ନରସାଇଁ
ବ୍ରହ୍ମାଏ ପୁରାଣେ ନାରଦଙ୍କୁ ଛନ୍ତି କହି ।
ସେ ପଦ୍ମହସ୍ତ ମହିମା ଏଡ଼େ ବଡ଼ ଜାଣ
କାଳ ଭୁଜଙ୍ଗର ଭୟ ନିବାରେ ତକ୍ଷଣ ।
ଯେବଣ ପ୍ରାଣୀ ଆନନ୍ଦେ ଜାଣ ଡାକ ଦେଇ
ଶୀଘ୍ରେ ଉଦ୍ଧରି ରଖନ୍ତି ତାଙ୍କୁ ଭାବଗ୍ରାହୀ ।
ଚଣ୍ଡାଳ ହୃଦକୁ ଜାଣ ଯେବେ ବାଧିଥିବ
ଆତଙ୍କ ଗୋଟି ନାଶନ୍ତି ତାର ବାସୁଦେବ ।
ପ୍ରହଲାଦ ତ ଅଟଇ ବିଷ୍ଣୁ ଆତ୍ମା ଜ୍ୟୋତି
ତାହାର ଆତଙ୍କ ଦେଖି ଜାତ ଲକ୍ଷ୍ମୀପତି ।
ପ୍ରହଲାଦ କୁମର ଯେ ଯୋଡ଼ି ବେନିକର
ଲୋମ ପୁଲକ କରାଇ ଅଙ୍ଗରୁ ଯେ ତାର ।
ଶ୍ରୀପାଦପଦ୍ମ ଉପରେ ଲଗାଇଣ ପାଣି
ପ୍ରେମରେ ଆନନ୍ଦ ହୋଇ କହେ ମୃଦୁବାଣୀ ।
ବୋଲଇ ଶୁଣିମା ସାବଧାନେ ମହାପ୍ରଭୁ
ସବୁ ଋଷି ଘେନି ସେବା କରନ୍ତି ସ୍ୱୟମ୍ଭୁ ।
ରୁଦ୍ରଇନ୍ଦ୍ର ସହିତରେ ଯେତେ ଦେବଗଣେ
ସାତ୍ତ୍ୱିକରେ ଆସି ସେବା କରନ୍ତି ଚରଣେ ।
ଆପଣାର ଆତ୍ମା ଗୋଟି ନିସ୍ତରିବା ଅର୍ଥେ ।
ଏ ଅବତାର ଦର୍ଶନେ ଧାମନ୍ତି ସମସ୍ତେ ।
ଶ୍ରୀମୁଖରୁ ସୁଧାବାକ୍ୟ ଶୁଣିବା ନିମନ୍ତେ
ସମସ୍ତେ ସେବନ୍ତି ଆସି ତୁମ୍ଭ ପାଦଗ୍ରତେ ।
ସ୍ୱଭାବେ ଅସୁର ବୀର୍ଯ୍ୟେ ମୁହିଁ ପୁଣି ଜାତ
ମୋ ଛାର କିସ କହିବ ଅବା ତୁମ୍ଭ ଭୃତ୍ୟ ।
ଅନେକ ଧନ ଯେ ଅର୍ଜିଥିବ କୋଟି କୋଟି
ଜପ ତପ ବ୍ରତ କରି ହୋଇଥିବ ଶ୍ରେଷ୍ଠୀ ।
ବୁଦ୍ଧିରେ କେ ବଳୀୟାରହେବ ସଭାଯୋଗ୍ୟ
ଶ୍ରୀମନ୍ତ ହୋଇ ଭୁଞ୍ଜିବ ଯେ ବିପୁଳ ଭୋଗ ।
ଏ ଆଦି ଯେତେ ଗୁଣରେ ଥିବ ବଡ଼ପଣେ
ନୁହନ୍ତି ଶ୍ରୀହରି ଭଜନକୁ ସରି ଜଣେ ।
ବୁଝିଲେ ପ୍ରଭୁ ଭକତି ମାର୍ଗେ ଏକ ତୋଷ
କେବଣ ଜ୍ଞାନୀ ବିଷ୍ଣୁଙ୍କୁ କରେ ଏକା ବଶ ।
ଦ୍ୱାଦଶ ଗୁଣେ ବ୍ରାହ୍ମଣ ଯେବେ ମଜ୍ଜିଥିବ
ସେ ପୁଣ ନୁହେଁ ସରି ନ ଭଜେ ବାସୁଦେବ ।
ସବୁ ଜାତିରୁ ସଂସାରେ ସେହି ଶ୍ରେଷ୍ଠ ହୋଇ
ଆପଣା ଆତ୍ମାକୁ ସେହୁ ତାରି ନପାରଇ ।
ଦ୍ୱାଦଶ ଲକ୍ଷଣ ନାମ କହିବା ହେ ଶୁଣ
ଅହିଂସା ତୀର୍ଥ ବ୍ରତ ହେ ସତ୍ୟ କ୍ଷମା ଦାନ ।
ତପସ୍ୟା ଶଉଚ ଜ୍ଞାନ ପୁଣ୍ୟ ଯଶ କୀର୍ତ୍ତି
ବିପ୍ରର ଦ୍ୱାଦଶ ଗୁଣ ଏହିରୂପେ ଛନ୍ତି ।
ଏତେକ ଗୁଣ ବ୍ରାହ୍ମଣ ଯେବେ ବହିଥିବ
ବିଷ୍ଣୁ ଭକ୍ତି ନଥିଲେ ତା ବ୍ୟର୍ଥ ଜାଣଜୀବ ।

ଚଣ୍ଡାଳ ହୋଇଣ ଯେବେ କରେ ବିଷ୍ଣୁଭକ୍ତି
ତାହାଠାରୁ ପୁଣ୍ୟବନ୍ତ ନାହିଁ କେହି କ୍ଷିତି ।
ଚଣ୍ଡାଳବୋଲି ତାକୁ ନଲେଖି ବା ସଂସାରେ
ସାକ୍ଷାତେ ସେ ଭାଗବତ ଘେନିବ ମନରେ ।
ବିପ୍ର ଜନ୍ମ ଗୋଟି ସବୁଙ୍କରି ମାନ୍ୟହୋଇ
ତାହାର ଆତ୍ମାକୁ ଉଦ୍ଧରି ସେ ନ ପାରଇ ।
ଶ୍ରୀକୃଷ୍ଣ ମହିମା ଗୋଟି ସେହି ମାତ୍ର ଜାଣେ
ସୁପଣ୍ଡିତ ବୋଲି ତାକୁ ଲେଖନ୍ତି ପୁରାଣେ ।
ସାଧୁଜନମାନଙ୍କର ଆସେ୍ୟ ଅଛି ଧାଇଁ
ଦୈତ୍ୟ ବୀର୍ଯେ୍ୟଜାତ ପ୍ରହଲାଦ ନାମ ବହି ।
ଜନ୍ମରୁ ମୁଁ ହରିନାମ ନାହିଁ ମନୁ ଛାଡ଼ି
ଭଜୁଅଛି ଅନୁବ୍ରତେ ବିଷ୍ଣୁପାଦେ ପଡ଼ି ।
ଏତେ ବୋଲିଣ କରଇ ସ୍ତୁତି ପ୍ରହଲାଦ
ବୋଇଲା ଆତଙ୍କୁ ମୋତେ ରଖିଲେ ଗୋବିନ୍ଦ
ମହା ଦୟାଳୁ ନୃସିଂହ ବ୍ରହ୍ମ ଆଦିମୂଳ
ବ୍ରହ୍ମା ଶଙ୍କର ନମନ୍ତି ଆସି ପାଦତଳ ।
ମୁହିଁ ତୁମ୍ଭ ପାଦପଦ୍ମେ ପଶିଲି ଶରଣ
ମୁଖରୁ ଫିଟିଲେ ବାକ୍ୟ ତରିବୁ ଯେଜାଣ ।
ଭୋ ମହାପ୍ରଭୁ ଶୁଣିବା ଏବେ ପଦ୍ମମୁଖ
ଏ ବିଶ୍ୱରୂପ ସଂହରି ଏବେ ପ୍ରଭୁ ରଖ ।
ଘନ ମଣ୍ଡଳେ ବିଜୁଳି ଯେହ୍ନେ ଝଟକଇ
ସେ ରୂପେ ଚଞ୍ଚଳ ମୁଖେ ଜିହ୍ୱା ପ୍ରକାଶଇ ।
ଉଦୟ ଆଦିତ୍ୟ ପ୍ରାୟ ଦିଶେ ନେତ୍ର ବେନି
ଦିଶନ୍ତି ଶ୍ରୀଅଙ୍ଗେ ଲୋମ ଖଡ଼ଗ କୁନ୍ତ ଜାଣି ।
ଶ୍ରୀଅଙ୍ଗେ ଭୃକୁଟିମାନେ ଦିଶନ୍ତି ପ୍ରଚଣ୍ଡ
ଓଷ୍ଠ କରାଳ ବିକଟ ଦିଶେ ପାଟି ତୁଣ୍ଡ ।
ଦୈତ୍ୟ ରୁଧିର ଶରୀରେ ପଡ଼ି ରଙ୍ଗ ଦିଶେ
ଅରୁଣ ବର୍ଣ୍ଣ ପରାୟ ଶରୀର ବିକାଶେ ।
ଶିରର ଉପର କେଶ ଦିଶେ ରକ୍ତବର୍ଣ୍ଣ
ଦିଶଇ ଶ୍ରବଣ ବେନି ପର୍ବତ ଯେସନ ।
ତୁମ୍ଭର ମୁଖରୁ ଘୋର ଶବଦ ଯେ ଶୁଣି
ଅଚେତ ହୋଇପଡ଼ିଲେ ଦଣ୍ଡେଲୋକେ ପୁଣି
ଏମନ୍ତ ଯେ ଭୟଙ୍କର ତୁମ୍ଭ ରୂପ ଚାହିଁ
ଡରୁଛନ୍ତି ଦେବତାଏ ମୋର ଭୟ ନାହିଁ ।
ସଚରାଚର ଜୀବଙ୍କୁ ତୁମ୍ଭେ ପ୍ରତିପାଳ
ଅବ୍ୟୟ ଆତ୍ମା ହେ ପ୍ରଭୁ ଅଟ ଆଦିମୂଳ ।
ତୁମ୍ଭର ମାୟା ସଂସାର ଚକ୍ରେ ମୁହିଁ ପଡ଼ି
ଭ୍ରମୁଛି ଶରୀର ବହି ନିଜ ପଥ ଛୁଡ଼ି ।
ତୁମ୍ଭର ନାମ ଭଜୁଛି ମୁହିଁ ପାଦତଳେ
ଶରଣ ପଶୁଛି ମୋତେ ରଖ ଆଦିମୂଳେ ।

ଏବେ ମୋତେ ଭୋପ୍ରଭୁ ଏମନ୍ତ ଆଜ୍ଞାକର
ସର୍ବଦା ମନ ମୋହର ଥିବ ଶ୍ରୀପୟର ।
ଭୋନାଥ ତୁମ୍ଭେଟି ଯେଣୁ ପ୍ରାଣୀଙ୍କ ଜୀବନ
ସବୁରି ପ୍ରିୟ ଯେ ତୁମ୍ଭେ ଅଟ ବନ୍ଧୁଜନ ।
ତୁମ୍ଭର କ୍ରୀଡ଼ା ଆନନ୍ଦ ଯେତେ ଲୀଳାରସ
ପୁରାଣମାନଙ୍କେ ତାହା କହନ୍ତି ବିଶେଷ ।
ମୁଁ ତୁମ୍ଭର ଯେତେ ଲୀଳା ମନେ ତାହାଶୁଣି
ତରିବି ବୋଲୁଛି ମୁହିଁ ଭବ ତରଙ୍ଗିଣୀ ।
ତୁମ୍ଭ ଶ୍ରୀପଦାରବିନ୍ଦ ପଦ୍ମବନ ମଧ୍ୟେ
ଯେବଣ ପରମହଂସ ଖେଳନ୍ତି ଆନନ୍ଦେ ।
ତାହାଙ୍କ ସଙ୍ଗତେ ମୋତେ ସମକରି ରଖ
ମାୟା ସଂସାରୁ ଉଦ୍ଧର ମୋତେ ପଦ୍ମମୁଖ ।
ମାତା ଯେହ୍ନେ ବାଳକକୁ ପାଳନ୍ତି ସଂସାରେ
ସେହିରୂପେ ମୁହିଁ ଜାଣ ଅଟଇ ଛାମୁରେ ।
ମୁହିଁ ଏବେ ଆହେ ନାଥ ଦେଖିବି ପ୍ରତ୍ୟକ୍ଷେ
ତୁମ୍ଭର ପାଖରେ ଥାଇ ମୁହିଁ ଅନ୍ତରୀକ୍ଷେ ।
ବ୍ରହ୍ମାଣ୍ଡ ମଧ୍ୟେ ଅଛନ୍ତି ଯେତେ ଦେବାଦେବୀ
ମନୁଷ୍ୟମାନେ ମନରେ ଥାନ୍ତି ତାଙ୍କୁ ସେବି ।
ଅଇଶ୍ୱର୍ଯ୍ୟ ଭୋଗନ୍ତି ସେ ଭୁଞ୍ଜୁଥାନ୍ତି ସୁଖେ
ଦେବତାରୁ ବଡ଼ହୋଇ ନାହିଁକେ ତ୍ରିଲୋକେ ।
ସେ ଦେବତାମାନେପୁଣି ମୋର ପିତାତ୍ରାସେ
ଆଜ୍ଞା ପ୍ରମାଣେ ଖଟିଣ ଥାନ୍ତି ଦୈତ୍ୟପାଶେ
ତେଢ଼େ ଅସୁରକୁ ତୁମ୍ଭେ କ୍ଷଣକେ ସଂହାରି
ପୃଥ୍ୱୀଯାକ ରକ୍ଷାକଲ ଦେବଙ୍କୁ ଉଦ୍ଧରି ।
ମୋହର କାହିଁରେ ଜାଣ କିଛି ନାହିଁ କାର୍ଯ୍ୟ
ଶ୍ରୀଚରଣ ତଳେ ମୋତେ ରଖ ଦେବରାଜ ।
ଏ ଦେହର ପରିଗୁଣ କହିବ ମହିମା
ଚୌଷଠି ରୋଗଯାକର ଅଟଇ ଯେ ସୀମା ।
ଶରୀର ଯାବତ ରୋଗଯାକ ଏକା ଜନ୍ମେ
ଏହି କଥା ବିହି ଲେଖିଛନ୍ତି ସବୁ କର୍ମେ ।
ଏବେ ଏ ବିଷୟକୁ ମୁଁ କର୍ଣ୍ଣପଥେ ଶୁଣି
ତେଣୁକରି ଶରୀରକୁ ସ୍ୱପ୍ନପ୍ରାୟ ମଣି ।
ତୁମ୍ଭ ଆଜ୍ଞା ପ୍ରମାଣେ ମୋ ନାମ ଏକା ମୂଳ
ପିତା ମରୁଥିଲେ ମୋ ନ ପଶେ ଦେହ କାଳ
ଅସୁରକୁଳେ ମୋତେ ଯେ ଜନ୍ମ କଲା ଆଣି
ଅସୁର ହୁଅନ୍ତି ବିଷ ପ୍ରାୟ ନାମ ଶୁଣି ।
ନାମ ଅସୁରଙ୍କୁ ହେଲା ଗିରିପ୍ରାୟେ ଗରୁ ·
ଆତ୍ମା ଗଲା ପ୍ରାୟ ହୋନ୍ତି ନ ମରୁ ନ ମରୁ ।
ମୂର୍ଖ ଲୋକଙ୍କୁ ଏ ନାମ ଅଟେ ଏଣୁ ବିଷ
କହଇ ଯେ ପ୍ରହଲାଦ ଶୁଣ ଜଗଦୀଶ ।

ବିଷଜ୍ୱାଳାରେ ଶରୀର ହୁଏ ଯେହ୍ନେ ଘାରି
ସେ ରୂପେ ମୂର୍ଖଙ୍କୁ ତବ ନାମ ହୁଏ ଭାରି ।
କେବଳ ଏତିକି ମୋର ହୋଇଲା ସୁଫଳ
ପଦ୍ମ କର ଲଦିଲ ମୋ ଶିରେ ଆଦିମୂଳ ।
ତୁମ୍ଭ ପ୍ରସାଦେ ହେଲା ମୋ ଏତିକି ଦୁର୍ଲ୍ଲଭ
ଦୁର୍ଲ୍ଲଭ ବ୍ରହ୍ମା ଶଙ୍କରେ ଯେଉଁ ପଦ୍ମ ନାଭ ।
ଅନୁବ୍ରତେ ମହାଲକ୍ଷ୍ମୀ ଯାହାଙ୍କୁ ସେବନ୍ତି
କ୍ରୀଡ଼ାରେ ମୋହହୋଇ ସେ ତୁମ୍ଭଙ୍କୁ ନପାନ୍ତି
ସେବା ଅନୁରୂପେ ସିନା ମିଳଇ ବର୍ତ୍ତନ
ଏକଥା ହେତୁ କରି ନ ପାରେ ମୂର୍ଖଜନ ।
ତେଣୁ ମୁହିଁ ସାଧୁଙ୍କର ସଙ୍ଗ ଅଛି ଭାବି
ଶ୍ରୀ ପାଦପଦ୍ମ ତଳରେ ସଦାଥିବି ସେବି ।
ମୋହର ଏ ପ୍ରାଣଗୋଟି ରଖିବା କାରଣେ
ବ୍ରହ୍ମାଦି ଗୁହାରି କରୁଛନ୍ତି ସୁରଗଣେ ।
ଭକତଜନମାନଙ୍କୁ ରଖିବାର ଅର୍ଥେ
ତୁମ୍ଭେ ଅବତାର ହୁଅ ଆସି ଏ ଜଗତେ ।
ମୋର ପିତା ମୂର୍ଖପଣେ ଖଡ଼୍‌ଗ କରେଧରି
ମାଡ଼ମାରିମୋତେବୋଲେ ଦେଖ ଏବେହରି
ନୋହିଲେ ଛେଦିବି ଏହିକ୍ଷଣି ତୋର ଶିର
ମୋଠାରୁ ଠାକୁର ଆଉ ଅଛି କେଉଁ ନର
ଭକ୍ତର ଛଳେ ମୂର୍ଖର ଗାରିମା ନ ସହି
ଆପଣ ଯେ ଅବତାର ହେବେ ଦେହ ବହି
ସମସ୍ତ ଜନଙ୍କ ହୃଦେ ଥାଅ ବିଜେକରି
ଅବତାରମାନ ହୁଅ ରୂପମାନ ଧରି ।
ସୃଷ୍ଟିକି ସଂହାର କର ପ୍ରଳୟରେ ଯାଇ
ଅନନ୍ତ ଶୟନ ହୁଅ ନିଶ୍ଚଳରେ ରହି ।
ତୁମ୍ଭେ ନିଜ ସୁଖ ଏବେ କରି ଅନୁଭବ
ନୃସିଂହ ରୂପ ଧରିଲ ଏବେ ପଦ୍ମନାଭ ।
ନିଶ୍ଚୟ ନିର୍ମଳ ନେତ୍ର ବେନି ରଖି ହରି
ନିଦ୍ରା ଗୋଟିକ ତୁମ୍ଭ ଶ୍ରୀ ହୃଦପଦ୍ମେ ଭରି ।
ଆପଣାର ଆୟତ୍ତରେ ଆପେ ଥାଅ ରହି
ଏ ସଂସାର ତ୍ରିଗୁଣରେ ତୁମ୍ଭ କାର୍ଯ୍ୟ ନାହିଁ ।
ସ୍ୱଗୁଣ ତେଜରେ ଧର ତୁମ୍ଭେ କଳେବର
ଚେତନା ନିଦ୍ରାସମାନ ବେନି ଅଟେତୋର ।
ଯୋଗବଶେ ଦଳରୁ ନ ପଶେ ନେତ୍ରେକାଳ
ତେଣୁ ଯୋଗୀନ୍ଦ୍ର ବୋଲନ୍ତି ଜ୍ଞାନୀ ଅନର୍ଗଳ ।
ଆବର ନାଭି ପଦ୍ମରୁ ବୃକ୍ଷେ କଲ ଜାତ
କହୁଛି ପ୍ରଳୟକାଳ କଥା ବିଧିମତ ।
ସେ ବୃକ୍ଷର ନାମଗୋଟି ଅଟେ ପଦ୍ମ ପୁଣି
ସେ ନାଭିପଦ୍ମ ଜନ୍ମିଲେ ଜାଣ କୁଶପାଣି ।
ତୁମ୍ଭ ନାଭିରୁ ଜନମି ନଚିହ୍ନେ ତୁମ୍ଭକୁ
କାହିଁ ଆସିଲ ବୋଲି ସେ ଭାବଇ ମନକୁ ।
ପୁଣିହିଁ ବ୍ରହ୍ମା ପଶିଲା ଯାଇଁ ପଦ୍ମନାଳେ
ରହିଲା ଅନେକ କାଳଯାଏ ପଦ୍ମମୂଳେ ।
ସେ ନାଭିପଦ୍ମର ମୂଳେରହି ବୀର୍ଯ୍ୟେଲୋଡ଼ି
ଭ୍ରମଇ ଅନ୍ତରାଳେ ସେ ବହୁ ଦୁଃଖେ ପଡ଼ି ।
ଥଳ ନପାଇ ଆସିଲେ ଧାତା ଭାସି ଜଳେ
ଆକୁଳ ହୋଇ ଲାଗିଲେ ପୁଣି ଆସି କୂଳେ ।
ପଦ୍ମ ମୃଣାଳର ମଧ୍ୟେ ବସି ଭାଳେ ପୁଣି
ତେବେ ମହିମା ତୁମ୍ଭର ନପାରିଲେ ଜାଣି ।
ପୁଣିହିଁ ଅନେକ୍ଷ କାଳ ବସି ତପ କରି
ଦେଖିଲେ ତେବେ ତୁମ୍ଭର ମୁଖେ ମୁଖ ଚାରି
ସହସ୍ରେ ବଦନ ପୁଣି ସହସ୍ରେ ନୟନ
ସହସ୍ରେ ନାସିକା ଆଉ ସହସ୍ରେ ଶ୍ରବଣ ।
ସହସ୍ରେକ ପାଦ ପୁଣି ସହସ୍ରେକ କର
ଏରୂପେ ଦେଖିଲେ ତୁମ୍ଭ ମୂର୍ତ୍ତି ବେଦବର ।
ତେତେବେଳେଯାଇଧାତାହୋଇଲେ ହରଷ
ବୋଇଲେ ସଞ୍ଚବେ କଥା ଏବେ ଜଗଦୀଶ ।
ଏରୂପେ ପାଞ୍ଚୁ ବିଧାତା ତୁମ୍ଭ ନିଦ୍ରାକାଳେ
ପ୍ରସବି ମଳିରୁ ସ୍ୱେଦେ ପଡ଼ିଲାକ ଜଳେ ।
ରଜ ତାମସ ଏ ବେନିଘେନି ହେଲେ ଜାତ
ମଧୁକୈଟଭ ବୋଲି ସେ ଜନ୍ମିଲେ ଦଇତ୍ୟ ।
ତାହାକୁ ମାରିଣ ପୃଥ୍ୱୀକଲ ନାରାୟଣ
ବ୍ରହ୍ମାଙ୍କ ଗୋଚରରେ ତାହା କଲ ସମର୍ପଣ ।
ପୃଥିବୀ ସର୍ଜନା ହୋନ୍ତେ ମହାଦୈତ୍ୟ ପୁଣି
ମୁର ଦାରୁଣ ନାମରେ ଜାତ ଭାଇ ବେନି ।
କେତେଭୋଗକଲେସେପୃଥ୍ୱୀରେରାଜା ହୋଇ
ତାହାଙ୍କର ଭାରା ପ୍ରଭୁ ନ ପାରିଲେ ସହି ।
କୃଷ୍ଣ ବଲ୍ଲଭର ବୀର୍ଯ୍ୟେ ଜନ୍ମ ଭାବଗ୍ରାହୀ
ସୂର୍ଯ୍ୟବଂଶ ରାଜାମାନେ ଜାଣ ବିପ୍ରଦ୍ରୋହୀ
ଭଗବତୀ ମାତାଙ୍କର ଉଦରେ ପ୍ରକାଶ
ଶ୍ରୀ ନୃସିଂହ ଅବତାର ହେଲେ ଜଗଦୀଶ ।
ତାହାକୁ ମାରି ଉଶ୍ୱାସ ତୁମ୍ଭେ ପୃଥ୍ୱୀ କଲ
ସେ ଅବତାର ଲୀଳାରେ ବୈକୁଣ୍ଠକୁ ଗଲ ।
ପୁଣି ମୂର ଦାରୁଣ ହେ ଜାତ ଆସି ମହୀ
ହିରଣ୍ୟ ହିରଣାକ୍ଷ୍ୟ ଯେ ନାମେ ବେନିଭାଇ ।
ସେ ଦୈତ୍ୟଙ୍କ ଭାରାଦେବେ ସହି ନପାରିଲେ
ତୁମ୍ଭଆଜ୍ଞାରେମୋତେ ତା ବୀର୍ଯ୍ୟୁ ଜାତକଲେ
ଜନ୍ମ ହେଲାକ୍ଷଣି ମୁହିଁ ତୁମ୍ଭଙ୍କୁ ନ ଛାଡ଼ି
ଅନୁବ୍ରତେ ଭଜଇ ମୁଁ ତୁମ୍ଭ ନାମ ପଢ଼ି ।

ତୁମ୍ଭଙ୍କୁ ଭଜନ୍ତେ ଦୈତ୍ୟ ସହି ନ ପାରିଲା
ନାନାମାଡ଼ ମାରିମୋତେକେତେଦଣ୍ଡ ଦେଲ
ଆଦ୍ୟରେ ନୃସିଂହ ଅବତାର ହୋଇଥିଲ
ସେହି ସ୍ତମ୍ଭେ ଆସି ପ୍ରଭୁ ଅବତାର ହେଲ ।
ମୋତେ ଆତଙ୍କରୁ ପ୍ରଭୁ ରଖିବାର ପାଇଁ
ହିରଣ୍ୟକୁ ବିନାଶିଲ ଜାନୁରେ ପକାଇ ।
ଦୁଷ୍ଟଜନ ନିବାରିଣ ସନ୍ଥ ପ୍ରତିପାଳୁ
ତେଣୁ ଅଟ ପ୍ରଭୁ ତୁମ୍ଭେ ନୃସିଂହ ଦୟାଳୁ ।
ଯେବଣ ଯୁଗ ମଧରେ ଯେଉଁ ଧର୍ମ ଯେତେ
ତୁମ୍ଭେ ସେ ପାଳନ ପ୍ରଭୁ କର ଏ ଜଗତେ ।
ଦଇବୀ ମାୟାରେ ପଡ଼ି ନୋହେ ମନସ୍ଥିର
ତୁମ୍ଭ ପଦ୍ମପାଦେ ଚିତ୍ତ ସଦା ରହୁ ମୋର ।
ଏ ଦେହକୁ ଇନ୍ଦ୍ରିଗଣେ କରନ୍ତେ ଯେନାଶ
ଭୋ ନାଥ କହୁଛି ମୁହିଁ ଶୁଣ ପୀତବାସ ।
ଆତ୍ମା ପୁରୁଷ ଯେ ରହିଅଛି ହୃଦଗତେ
ଇନ୍ଦ୍ରିଗଣ ଆୟତ୍ତ ନ ପାରେ କରି ନିତ୍ୟେ ।
କ୍ଷୁଧା ଲାଗିଲେ ଚଞ୍ଚଳ ଜାଣ ଜିହ୍ୱା ହୁଏ
ତୃଷା ଲାଗିଲେ ଆତୁରେ କଣ୍ଠ ଜଳ ପିଏ ।
ଉପାସ୍ଥି ଗୋଟି ରହିଛି ଜାଣ କାମମାର୍ଗେ
ଗୁହ୍ୟ ଗୋଟିଏ ରହିଅଛି ମୂଳରୁ ଉତ୍ସର୍ଗେ ।
ଚର୍ମ ଗୋଟି ରହିଛି ତେଜ ଶୀତ ଧର୍ମେ
ଉଦର ଗୋଟି କେବଳ ଅଛି ଭକ୍ଷ କର୍ମେ ।
ଶବଦ ଶୁଣିବାକୁ ଯେ କର୍ଣ୍ଣ ଅଛି ରହି
ଗନ୍ଧ ଆସ୍ୱାଦନ ପାଇଁ ନାସା ପ୍ରକାଶଇ ।
ଚିତ୍ତର ସଂଯୋଗେ ଘେନି ଦୃଷ୍ଟି ମାତ୍ରରହେ
ବଳକଳ ଆବୋରି ଶାନ୍ତି ପ୍ରକାଶ ଯେପ୍ରାଏ ।
ଏ ରୁପେ ଦଶ ଇନ୍ଦ୍ରିୟ ପ୍ରାଣୀ ଆୟୁଷକୁ
ଅଳ୍ପ ଦିନେ କ୍ଷୟକରି ଦିଅନ୍ତି ଆତ୍ମାକୁ ।
ବହୁତ ପତ୍ନୀ ଯାହାର ଗୃହେ ଜାଣ ଥାନ୍ତି
ସ୍ୱାମୀର ବଳବପୁସେ ଅଳ୍ପେ ନିବାରନ୍ତି ।
ଯୁବତୀ କାମଭୋଗ ନପାରେ ତେଜ୍ୟାକରି
ଅନୁକ୍ଷଣେ କ୍ରୀଡ଼ାକରେ ମନହେଲେ ସରି ।
ତାହାଙ୍କ ସଙ୍ଗେ ସଂସାରେ ଅଛି ମୁହିଁ ରହି
ଆତ୍ମାର ଗତାଗତ ମୁଁ କେଭେ ନ ଜାଣଇ ।
ତେଣୁ ତୁମ୍ଭ ପାଦକୁ ମୁଁ ଅଛି ଆଶ୍ରାକରି
କେତେବେଳେ ସେପାଦକୁ ନଯିବି ପାସୋରି
ସେ ପାଦପଦ୍ମ ପାରନ୍ତା ପ୍ରାଣୀ ଯେବେଚିହ୍ନି
କାହିଁକି ସଂସାରଜନେ ହୁଅନ୍ତି ଅଜ୍ଞାନୀ ।
ମୋତେ ସେହି ପାଦପଦ୍ମେ ସବୁକାଳେ ରଖ
କେତେବେଳେ ମନମୋର ନୋହିବ ବିମୂଖ
ସେ ପାଦପଦ୍ମ ତୁମ୍ଭର ସବୁକାଳେ ସରି
ପ୍ରଳୟ କାଳରେ ଥାଏ ବିଷ୍ଣୁ ରୂପ ଧରି ।
ସମସ୍ତେ ହୋନ୍ତି କ୍ଷୟ ମୋପାଦ ଏକାଥାଇ
ରଖିବ ସେ ପାଦପଦ୍ମ ତଳେ ମୋତେନେଇ
ସଂସାର ଜନେ କୁଟୁମ୍ବ ପୋଷିବାର ଅର୍ଥେ
ଭାରା ଗୋଟିଏ ବହିଣ ଥାନ୍ତି ଅବିରତେ ।
ଇନ୍ଦ୍ରିୟ ସୁଖ ଘେନିଣ ଗୃହବନ୍ଧେ ପଡ଼ି
କୁଟୁମ୍ବର ସ୍ନେହ ଗୋଟି କେବେହେଁ ନ ଛାଡ଼ି
ପତ୍ନୀଠାରେ ମଜ୍ଜିଥାନ୍ତି ମଇଥୁନ ସୁଖେ
ଦେହକୁ କ୍ଳେଶ ବୋଲିଣ ନଜାଣନ୍ତି ମୂର୍ଖେ ।
କଣ୍ଡୁର ସୁଖ ଯେସନେ ଥାଇ ନଖ ଅଗ୍ରେ
କଣ୍ଡୁ ଭାଜିଲେ ସେ ଦୁଃଖ ମଣେ ଅତିବ୍ୟଗ୍ରେ
କଣ୍ଡୁ ସଦୃଶ ଅଟଇ ଜାଣ ଗୃହ ସୁଖ
ଏକଥା ସତ ବୋଲି ନ ଜାଣେ ମହାମୂର୍ଖ ।
ଭଜନ୍ତି ତୁମ୍ଭର ପାଦପଦ୍ମେ ଯେତେ ଜନ
ଅନୁକ୍ଷଣେ କରୁଥାନ୍ତି ଗୋବିନ୍ଦ କୀର୍ତ୍ତନ ।
ତୁମ୍ଭ ପାଦପଦ୍ମକୁ ନ ପାରେ କେହୁ ଚିହ୍ନି
କର୍ମରେ ସେ ଧାଇଁଥାଏ ହୋଇ ମହାଜ୍ଞାନୀ ।
ତୁମ୍ଭଙ୍କୁ ନ ପାନ୍ତି ମାତ୍ର ବର୍ଣ୍ଣନ ସେ ପାନ୍ତି
କାହାର ମୂଲ୍ୟ ତୁମ୍ଭେ ନରଖ ଲକ୍ଷ୍ମୀପତି ।
ଶ୍ରୀଭାଗବତ ମହିମା ନାରଦଙ୍କ ଆଗେ
କହନ୍ତି ଯେ ପିତାମହ ପୁରାଣ ପ୍ରସଙ୍ଗେ ।
ସେ ଅର୍ଥ ପରୀକ୍ଷ ଆଗେ ଶୁକଦେବ ଆଣି
ଶୁଣାନ୍ତି ନିର୍ଣ୍ଣୟ କରି ଭାଗବତ ବାଣୀ ।
ଜଣାନ୍ତି ପ୍ରହ୍ଲାଦ ପ୍ରଭୁ ନୃସିଂହଙ୍କ ଆଗେ
ଶୁଣିଣ ସନ୍ତୋଷ ପ୍ରଭୁ ହେଲେ ଭକ୍ତିମାର୍ଗେ ।
ପ୍ରଚଣ୍ଡ ତେଜ ଛାଡ଼ିଣ କହନ୍ତି ବଚନ
ବୋଲନ୍ତି ବର ମାଗ ତୁ ହୋଇଲି ପ୍ରସନ୍ନ ।
ଭଜନରେ ପ୍ରୀତିକରି ପାରଇ ଯେ ମୋତେ
ମୁଁ ତାକୁ ଦୁର୍ଲ୍ଲଭ ବର ଦିଅଇ ଜଗତେ ।
ମୋତେ ଯେ ଚିହ୍ନିପାରିବ ଦେଖିବ ନୟନ
ସେ ଲୋକର ଜପ ତପ କିସ ପ୍ରୟୋଜନ ।
ଏହି ସକାଶରୁ ଜାଣ ଜ୍ଞାନୀଜନ ଯେତେ
ମନରେ ଭାବନା କରୁଥାନ୍ତି ସଦା ମୋତେ ।
ଏମନ୍ତ ଭକ୍ତକୁ ମୁହିଁ ଯାଚି ଦିଏ ବର
ବର ମାଗ ବର ମାଗ ହିରଣ୍ୟ କୁମର ।
ଶୁଣିଣସେ ପ୍ରହଲାଦ ଯୋଡ଼ି ବେନିପାଣି
ବୋଇଲା ମୁଁ ନିସ୍ତରିଲି ଏହି ବାକ୍ୟ ଶୁଣି ।
ହାସ୍ୟ ବଦନ କରିଣ ପ୍ରଭୁ ମୁଖ ଚାହିଁ
ବୋଇଲା ମୁଁ ନିସ୍ତରିଲି ପଦ୍ମପାଦ ଧ୍ୟାୟି ।

ଶ୍ରୀମୁଖେ ବର ଯାଚିଲ ଯେବେ ପ୍ରଭୁ ମୋତେ
ତୁମ୍ଭର ଶ୍ରୀଛାମୂରେ ମୁଁ ରହିଥିବି ନିତ୍ୟେ ।
ଭଜନ୍ତି ସ୍ୱାମୀର ଭାବ ପ୍ରାୟେ ସିନା ନର
ଫଳ ଲୋଡ଼ି ଦର୍ଶନ ନ କରେ ଯେ ଈଶ୍ୱର
ଆତ୍ମାର ଗତାଗତ ନ ଜାଣେ ଯେଉଁ ପ୍ରାଣୀ
ଭକ୍ତ ବୋଲିଣ ସଂସାରେ ତାହାକୁ ନ ଗଣି
ଗଣିତାଙ୍କ ପ୍ରୀତି ପରି ସ୍ୱଭାବ ତାଙ୍କର
ସେହିଜନ କେତେବେଳେଭକ୍ତୁ ନୋହେପାର
ସ୍ୱାମୀର ଦ୍ରବ୍ୟକୁ ଯେଉଁ ଭୃତ୍ୟ ଇଚ୍ଛାକରେ
ଭୃତ୍ୟବୋଲି ତାହାକୁ ମୁଁ ନଗଣେସଂସାରେ
ଯେବଣ ସ୍ୱାମୀ ଭୃତ୍ୟକୁ ଜାଣି ପଣ ଦିଏ
ତାର ଅଧିକାର ପଣ ଅଳ୍ପେ ନାଶ ଯାଏ ।
ରାଜାକୁ ସେବକ ପଣ ଯେତେଟି ଅନ୍ତର
ସେହିରୂପେ ସ୍ୱାମୀ ମୁହିଁ ସେବକ ତୁମ୍ଭର ।
ଜୀବକୁ କ୍ଷଣେ ମାତର ବିଶ୍ରାମ ଯେ ନାହିଁ
ନାନା ଯୋନିରେ ସେଜନ୍ମି ମୃତ୍ୟୁ ଲଭୁଥାଇ
ନୀଳ ଯୋନିରେ ଜନ୍ମିଣମରେ କେତେଥର
ଅନ୍ୟାୟ ଯୋଗୁଁ କରଇ ଲୋକେ ଅପକାର
ଯେଉଁ ଜନମରେ ମିଳେ ତୁମ୍ଭ ପାଦପଦ୍ମ
ସେ ଯୋନିରେ ମୋତେ ଜନ୍ମକରାଅ ଗୋବିନ୍ଦ
ପ୍ରହଲାଦର ଏ ବାକ୍ୟ ଶୁଣି ଚକ୍ରଧର
ବୋଇଲେତୋପରାନାହିଁ କେହିଭକ୍ତ ମୋର
ତୁଏବେ ଯେତେକ ସ୍ତୁତି କଲୁ ବସିମୋତେ
ତରିବେ ସଂସାର ଜନ ଗାଇ ଏହା ନିତ୍ୟେ
ମୋ ନାମଧରିବ ଯେହୁ ତୋହ ନାମସଙ୍ଗେ
ସଂସାର କଳ୍ମଷ ତାର ନ ଲାଗିବ ଅଙ୍ଗେ ।
ଶତେ ଜନ୍ମର କଳ୍ମଷ ତାର କ୍ଷୟ ଯିବ
ଏ କଥାଟି ପ୍ରହଲାଦ ଅଟେ ନିଶ୍ଚେ ଧ୍ରୁବ ।
ଏମନ୍ତ ବାକ୍ୟ ନୃସିଂହ ପ୍ରଭୁ ମୁଖୁ ଶୁଣି
ପ୍ରହ୍ଲାଦ ପୁଚ୍ଛିଲା ତହୁଁ ଏକ କଥା ପୁଣି ।
ବୋଇଲା ଶୁଣନ୍ତୁ ଆହେ ପ୍ରଭୁ ଚକ୍ରଧର
ତୁମ୍ଭଙ୍କୁ ଯେ କେତେ ନିନ୍ଦା କଲା ପିତାମୋର
ଭ୍ରାତୃ ମଲା ବୋଲିଣ ସେ ବହୁ କୋପ କଲା
ଶୁଣିଲେ ତୁମ୍ଭର ନାମ ପ୍ରଚଣ୍ଡ ହୋଇଲା ।
କେବଳ ଭକ୍ତ ବୋଲିଣ ମାନିଥାଇ ମୋତେ
ନଛାଡ଼େ ସେ ହିଂସାଗୋଟି ହୃଦୁ କଦାଚିତେ ।
କ୍ରୋଧୀହୋଇଲେ ସେ ମୋର ନୁହଇକି ପିତା
କି ରୂପେ ସେ ହେବ ମୋର କହଜଗଜ୍ଜିତା
ଏଣୁକରି ଭୋ ନାଥ ମୁଁ ମାଗୁଅଛି ବର
ଅଟଇ ଅମୃତ ଦୃଷ୍ଟି ନୟନ ତୁମ୍ଭର ।

ପଡ଼ଇ ସେ ଦୃଷ୍ଟି ଗୋଟି ଯାହାର ଶରୀରେ
ତକ୍ଷଣେ ପବିତ୍ର ହୋଇଯାନ୍ତି ସେହୁ ଭଲେ ।
ଏ ରୂପେ ପ୍ରହଲାଦ ଯେ କହନ୍ତେ ବଚନ
ଶୁଣି ମନେ ଆନନ୍ଦିତ ହେଲେ ଭଗବାନ ।
ବୋଇଲେ ହିରଣ୍ୟ ପୁଣି କଶ୍ୟପ ମରୀଚି
ଏ ତିନିଜଣ ପବିତ୍ର ହେଲେ ହୋଇ ଶୁଚି ।
ଆବର ସପତ ଋଷି ଯେତେ ମୁନିଗଣେ
ସମସ୍ତେ ପବିତ୍ର ହେଲେ ତୋହରବଚନେ ।
ତାହାଙ୍କ କୁଳରେ ତୁହି ହୋଇଅଛୁ ଜନ୍ମ ।
ଧନ୍ୟ ଧନ୍ୟ ଅଟେ ତୋର ପ୍ରହଲାଦ ନାମ ।
ମୋହର ଭକ୍ତ ଯେବଣ ନଗ୍ରେ ଜାଣ ଥାଇ
ସବୁ ଆତ୍ମା ଏକ ବୋଲି ମନେ ବିଚାରଇ ।
ଜଗତ ଜନ ମଧ୍ୟରେ ସେହି ଏକା ସାଧୁ
ପତିତଜନଙ୍କୁ ସେହି ତାରେ ଅପରାଧୁ ।
ପ୍ରାଣୀଙ୍କି ହିଂସା ଭାବନକରେ କେତେବେଳେ
ଉଚ୍ଚ ନୀଚ ସମ ଘେନି ହୃଦୟ କମଳେ ।
ମୋହର ଭାବନା ଗୋଟି କେଭେ ନ ଛାଡ଼ଇ
ପ୍ରାଣୀମାନଙ୍କୁ ସର୍ବଦା ପ୍ରୀତି କରିଥାଇ ।
ମୁହିଁ ସେ ଭକ୍ତକୁ ମୋ ଶ୍ରୀପାଦପଦ୍ମ ତଳେ
ନିର୍ମଳରେ ରଖିଥାଇ କରିଣ ନିଶ୍ଚଳେ ।
ତୁହି ଯେ ଅଟୁ ମୋହର ଭକ୍ତମଧ୍ୟେ ସାର
କେତେହେଁ ମହିମା ତୁହିଁ ବର୍ଣ୍ଣିଲୁ ମୋହର ।
ଏଣୁ ତୁହି ଶ୍ରୀହରିର ଭକ୍ତମଧ୍ୟେ ଶ୍ରେଷ୍ଠ
ମୋ ଆଜ୍ଞା ପ୍ରମାଣରୁ ତୋମନ କେଡ଼େଆଣ୍ଠ
ପୁତ୍ରର ସ୍ୱଭାବ ଗୋଟି ଦେଖା ତୋର ଏବେ
ପିତାର ତୁ ପ୍ରେତକାର୍ଯ୍ୟ କରିବିଧି ପୂର୍ବେ ।
ମୋ ଅଙ୍ଗ ଲାଗିଲା ବେଳୁଁ ଗଲାଣି ସେ ତରି
ସଂସାର ନିନ୍ଦାରୁ ମାତ୍ର କଲେ ହେବୁପାରି ।
ପିତୃତର୍ପଣ କରିବୁ ତାକୁ କର ମୋକ୍ଷ
ଏ ରୂପେ କହିଣ ଆଜ୍ଞା ଦେଲେ ପଙ୍କଜାକ୍ଷ ।
ପ୍ରହଲାଦ ଶ୍ରୀମୁଖରୁ ଶୁଣି ଆଜ୍ଞାବାଣୀ
ପିତାର କାର୍ଯ୍ୟ କଲାକ ଗଙ୍ଗାତୀରେ ଆଣି ।
ପିତା କାର୍ଯ୍ୟ ସାରି ପିତୃ ତର୍ପଣ ଯେ କଲା
ବିପ୍ରଗଣଙ୍କୁ ରାଇଣ ବହୁଦାନ ଦେଲା ।
ପ୍ରହ୍ଲାଦକୁଂ ଆଜ୍ଞା ଦେଲେ ଶ୍ରୀନୃସିଂହ ଶୁଣି
ବୋଇଲେ ଚଉଦପୁରେ ହୁଅ ନୃପମଣି ।
ଆପଣା କଟକେ ଯାଇ ସିଂହାସନେ ବସ
ଯହିଁ ଚିନ୍ତିଲେ ଦେଖିବୁ ତହିଁ ଜଗଦୀଶ ।
ଏ ରୁପେ କହି ବାନ୍ଧିଲେ ଶାଢ଼ୀ ଦେବରାଜା
ସକଳ ନୃପେ ଆସିଣ କଲେ ପାଦପୂଜା ।

ଆନନ୍ଦ ଚିତ୍ତେ ଦେବଙ୍କୁ ସଙ୍ଗେ ଧାତା ଘେନି
ନୃସିଂହ ପାଶେ ମିଳିଲେ ଆସି ପଦ୍ମଯୋନି
ହରଷେ ଛତ୍ର ଟେକିଲେ ଶ୍ରୀନୃସିଂହ ଶିରେ
ଚତୁଃମୁଖେ ହରଷ ସେ ବହୁ ସ୍ତୁତି କଲେ ।
ବୋଇଲେ ପ୍ରଭୁ ଦେବଙ୍କ ଉପରେ ତୁ ରାଜା
ସକଳ ଜନ ତୁମ୍ଭର ପାଦକରି ପୂଜା ।
ସଂସାରକୁ ଦୁଃଖଦେଇ ହିରଣ୍ୟ ଅସୁର
ଅଳ୍ପାୟୁଷ ହୋଇ ମଲା ଲାଗି ତୁମ୍ଭ କର ।
ପ୍ରହଲାଦକୁ ରଖିଲ ଯେଣୁ ସ୍ନେହକରି
ସମସ୍ତ ଲୋକ ଲଭିଲେ ଏବେ ଯଶ ଶିରୀ ।
ଶ୍ରୀନୃସିଂହ ନାମ ଶୁଣି ସଙ୍କଟ ତାରିବେ
କହନ୍ତି ଏସନ ସ୍ତୁତି କରି ବ୍ରହ୍ମା ଶିବେ ।
ନୃସିଂହ ପ୍ରଭୁ କହନ୍ତି ପୁଣି ତୋଷଚିତ୍ତେ
ନଦେବୁ ଦୁଷ୍ଟଙ୍କୁ ବର କହିଲୁ ଯେ ତୋତେ
ରାକ୍ଷସମାନଙ୍କୁ ହୋ ନ ଦେବୁ କେବେ ବର
ଏକଥା ମନରେ ରଖିଥିବୁଟି ତୋହର ।
ଦୁଷ୍ଟପ୍ରାଣୀଙ୍କି ତୁ ବର ଦେବୁ ଯେବେ ଯାଚି
କୁଆକୁ ରଖିବୁ ସ୍ୱର୍ଣ୍ଣ ପିଞ୍ଜରାରେ ସଞ୍ଚି ।
କାକକୁ ମାଣିକ୍ୟ ତୁଲେ କରିବାକୁ କଚ୍ଛ
ରତ୍ନ ସୁବର୍ଣ୍ଣର ତୁଲେ ରଙ୍ଗ ଦେଉଅଛ ।
ହୀରା ମାଣିକ୍ୟ ମୋତି କି ଘେନ କରି ତୁଲ
ଦୁଷ୍ଟ ରାସକ୍ଷର ତୁଲେ ମୋତେ ସମ କଲ ।
ଯେଣୁ ନୃସିଂହ ରୂପକୁ ବହିଅଛି ମୁହିଁ
ଏ ଦୂଃଖ ଦେଖି ଫେଡ଼ିବ ମୋର ଆନକେହି
ଆନ କେହି ନ ଜାଣଇ ଅଙ୍ଗେ ନିଭାଇଛି
ଜାଣେ ଏକା ପ୍ରଭୁ ମୁହିଁ ନୃସିଂହ ଶ୍ରୀବତ୍ସି
ଏ ଦୂଃଖକୁ ମୁଳଯେ ନଦେଲେ କେଉଁଠାରେ
ଲତାକୁ ମଣଇ ସେହି ଗିରି ସମତୁଲେ ।
ଏହି ଅନ୍ତର୍ଦ୍ଧାହ ଦୁଃଖ ମଣିବ କେ ସୁଖ
ମଣିଲେ ମଣିବ ଶ୍ରୀ ନୃସିଂହ ପଦ୍ମମୁଖ ।
ଯେଉଁ ସ୍ଥାନେ ଯେଉଁଦ୍ରବ୍ୟ ଯେଉଁ ଲୋକସଞ୍ଚି
ତହିଁର ଅର୍ଥ କହୁଛି ଶୁଣ ତୋତେ ବାଛି ।
ସର୍ପକୁ ଦେଲେ ପୟ ସେକରେ ବିଷ ଜାତ
ଏହିକଥା ପ୍ରମାଣଟି ଅଟଇ ଯଥାର୍ଥ ।
ଏରୂପେ ବ୍ରହ୍ମାଙ୍କୁ ବୋଧ କହି ଭାଗବାନ
ତତକ୍ଷଣେ ଚଳିଗଲେ ହୋଇ ଅନ୍ତର୍ଦ୍ଧାନ ।
କ୍ଷୀର ବଇକୁଣ୍ଠପୁରେ ମିଳିଲେକ ହରି
ଆନନ୍ଦେ ନିଦ୍ରାଗଲେ ସେକାଳେ ଲକ୍ଷ୍ମୀଧରି
ଦେଖି ପ୍ରହଲାଦ ମନେ ଆନନ୍ଦ ହୋଇଲେ
ତକ୍ଷଣେ ବ୍ରହ୍ମାଙ୍କ ପାଦସେବା ଯାଇକଲେ ।

ଶଙ୍କର ଆଦି ସମସ୍ତ ଋଷିବର ପାଦେ
ଆଗରେ ଉଭା ହୋଇଣ ପାଦତଳେ ବନ୍ଦେ
ପ୍ରହଲାଦକୁ ଦେଖିଣ ତୋଷ ପଦ୍ମ ଯୋନି
ସମସ୍ତ ଋଷିମାନଙ୍କୁ ସଙ୍ଗେଛନ୍ତି ଘେନି ।
ପ୍ରହଲାଦକୁ ବସାଇ ସର୍ବେ ରାଜପଦେ
ଅନେକ କଲ୍ୟାଣ କଲେ ତୋଷେ ଋଷିବୃନ୍ଦେ
ଦେବତାଙ୍କ ସହ ଇନ୍ଦ୍ର ଆଦି ଦିଗପାଳ
ପ୍ରହଲାଦ ଶିରେ ମନ୍ତ୍ରି ଦେଲେକ ତଣ୍ଡୁଳ ।
ଯେତେଦୈତ୍ୟଥିଲେ ଆସିକଲେ ସର୍ବେ ସେବା
ଆନନ୍ଦ ହୋଇ ସ୍ୱର୍ଗକୁ ଚଳିଲେ ମଘବା ।
ଋଷିମାନଙ୍କୁ ବ୍ରହ୍ମାଏ ଘେନିଗଲେ ଚଳି
ରାଜା ହୋଇଣ ପ୍ରହ୍ଲାଦ ରହେ ସର୍ବ ପାଳି
ଆନନ୍ଦ ହୋଇ ଚଳିଲେ ତହୁଁ ଦେବଗଣ
କହନ୍ତି ଯେ ନାରଦଙ୍କ ଆଗେ ବ୍ରହ୍ମା ଜାଣ ।
ସେ କଥାକୁ ଶୁକଦେବ ପରୀକ୍ଷିତ ଆଗେ
କହନ୍ତି ସପ୍ତମ ସ୍କନ୍ଧ ବାଣୀ ବ୍ରହ୍ମଭାଗେ ।
ଶୁଣନ୍ତି ଆନନ୍ଦେ ଅନ୍ତର୍ଗତେ ପରୀକ୍ଷିତ
ଜୟ ବିଜୟ ହେଲେଟି କଶ୍ୟପର ସୁତ ।
ବ୍ରହ୍ମଋଷି ମାନେ ଶାପ ଦେଲେ ଯେତେବେଳେ
ଜନ୍ମିଲା ହିରଣ୍ୟାସୁର ହୋଇ ରବିତଳେ
ଆଦ୍ୟେହେଲା ମୁରଦୈତ୍ୟ ଦ୍ୱିତୀୟେହିରଣ୍ୟ
ନୃସିଂହ ରୂପେ ମାଇଲେ ତାକୁ ଭଗବାନ ।
ଅନେକ ଲୀଳା କରିଣ ବଇକୁଣ୍ଠେ ଗଲେ
ତହିଁଉତ୍ତାରୁ ଲେଉଟି ଦୈତ୍ୟେ ଜନମିଲେ
ନଉକେଶୀ ରାକ୍ଷସୀର ଗର୍ଭୁ ହେଲେ ଜାତ
ରାବଣ ଯେ କୁମ୍ଭକର୍ଣ୍ଣ ନାମେ ବେନି ଭ୍ରାତ ।
ସୀତାଙ୍କୁ ଚୋରାଇ ମଲେ ଶ୍ରୀରାମର ବାଣେ
ଲେଉଟି ଦ୍ୱାପର ଯୁଗେ ଜନ୍ମିଲେ ଆପଣେ ।
ଦମଘୋଷ ରାଜା ଘରେ ହୋଇଲେ ଜନମ
ଶିଶୁପାଳ ଦନ୍ତବକ୍ର ବହି ବେନିନାମ ।
ଶ୍ରୀହରିଙ୍କ ଚକ୍ର ବାଜି ପ୍ରାଣ ବିସର୍ଜିଲେ
ଏରୂପେ ମୋକ୍ଷ ହୋଇଣ ବଇକୁଣ୍ଠେ ଗଲେ
ତିନିଜନ୍ମେ ହେଲେ ଦୈତ୍ୟ ଚାରିଜନ୍ମେ ନର
ସେ ଜନ୍ମେ ମୋକ୍ଷ ହୋଇଣ ଗଲେ ବିଷ୍ଣୁ ପୁର
ଶ୍ରୀହରିର ମାୟା ଏହି ଅଟେ ସୁଧାରସ
ସପ୍ତମ ସ୍କନ୍ଧର ବାଣୀ ହେଲା ଆସି ଶେଷ ।
ବିପ୍ର ପୀତାମ୍ବର ଦାଶ ସାଧୁପଦ୍ମ ପାଦେ
ଜଣାଉଛି ତରିବି ମୁଁ ତୁମ୍ଭ ଆଶୀର୍ବାଦେ ।
ବିଷ୍ଣୁଙ୍କର ମାୟାଜାଲ ମଧ୍ୟେ ଅଛି ପଡ଼ି
ସେ ଜାଲରୁ ଖସିବାକୁ ନାମ ଧରେ ଭିଡ଼ି ।

ସଂସାରର ଜନଯାକ ସର୍ବେ ମୋର ପିତା
ଯାବତ ସ୍ତିରୀଯାକ ତ ବୁଝିଲେ ମୋମାତା ।
ସେ ମାତା ପିତାଙ୍କର ମୁଁ ସାନ ପୁତ୍ର ଅଟେ
ଜ୍ଞାନଭଣ୍ଡାରକୁ ବାଣ୍ଟିନେଲେ ଯେଝା ବାଣ୍ଟେ
ମୋତେ ତିଳାର୍ଦ୍ଧେ ଭାଗ ନଦେଲେତହୁଁ କିଛି
ତେଣୁ ମୁଁ ସଂସାରେ ଜାଣ ଭ୍ରମିଣ ମରୁଛି ।
ଏଣୁ ମୋତେ ସୁଜନେହେ କର ଯେ କୃତାର୍ଥ
ଅଷ୍ଟମ ସ୍କନ୍ଧ ବାଣୀର ଲେଖିଲଇ ଅର୍ଥ ।
କହନ୍ତି ଶ୍ରୀ ଶୁକଦେବ ପରୀକ୍ଷିତ ଆଗେ
ଅଷ୍ଟମ ସ୍କନ୍ଧର ବାଣୀ ବିଧାନ ପ୍ରସଙ୍ଗେ ।
ଚତୁର୍ଦ୍ଦଶ ମନୁଙ୍କର ଯେ ବିଂଶ ଆଖ୍ୟାନ
କହନ୍ତି ଯେ ମୁନି ଭବିଷ୍ୟତ ବର୍ତ୍ତମାନ ।
ଗଜରାଜକୁ ଉଦ୍ଧାରି ପ୍ରଭୁ ଚକ୍ରପାଣି
ସୁଦର୍ଶନ ଚକ୍ର ପେଷି ଗ୍ରାହା ହେଲେ ହାଣି ।
ଶାପକୁ ମୁକତ କରି ଗ୍ରାହା କଲେ ମୋକ୍ଷ
ବୈକୁଣ୍ଠରେ ନେଇ ତାକୁ ରଖିଲେ ପଦ୍ମାକ୍ଷ
ହୟଗ୍ରୀବ ରୂପେ ପ୍ରଭୁ ଦେଲେ ଅବତାର
ବିନାଶିଲେ ଜନ୍ମହୋଇ ପୃଥ୍ୱୀ ଭାରାଭର ।
କୂର୍ମ ଅବତାର ପୁଣି ହୋଇଲେ ଶ୍ରୀହରି
ବରାହ ନୃସିଂହ ରୂପେ ହିରଣ୍ୟ ବିଦାରି ।
ଲେଉଟି ପ୍ରଭୁ ହୋଇଲେ ବାମନାବତାର
ସେହି ମହିମା ତ ତୁମେ ଜାଣ ନୃପବର
ଦଶ ଅବତାର ଚତୁର୍ବିଂଶ ରୂପ ଯାଏ
ତହୁଁ ପଦେ ପଦେ କରି କହୁଅଛି ରାୟେ ।
ସମୁଦ୍ର ମନ୍ଥନ ମଧ୍ୟୁ ଜନ୍ମିଲେ ଯେ ଜାଣ
ତାହାଙ୍କର ନାମ ଥୋକେ କହିବାକ ଶୁଣ ।
ଐରାବତ ହସ୍ତୀ ଆଉ ଉଚ୍ଚୈଃଶ୍ରବା ଅଶ୍ୱ ।
ସୁଧାକୁଣ୍ଡ ମହାଲକ୍ଷ୍ମୀ ପାରିଜାତ ପୁଷ୍ପ ।
ଏ ବିଧିରେ କେତେଦ୍ରବ୍ୟ ସମୁଦ୍ରୁ ଜନ୍ମନ୍ତେ
ସବୁ ପୂଣି ତୁମ୍ଭେ ବୁଝିଅଛ ଭାଗବତେ ।
ଦେବବୈଦ୍ୟ ଧନ୍ୱନ୍ତରୀ ଜାତ ହେଲେ ପୁଣି
ମୋହିନୀ ଅବତାର ଯେ ହେଲେ ଚକ୍ରପାଣି ।
ସେ ମୂର୍ତ୍ତି ଦେଖିବା ମାତ୍ରେ ଶିବମୋହଗଲେ
ସୁଧା ଭାଷନ୍ତେ ରାହୁର ଶିର ଛେଦି ଦେଲେ ।
ଆଦିତ୍ୟ ଚନ୍ଦ୍ରମା ବେନି ଲଭିଲେ ବିପଦ
ଗ୍ରହଣ କାଳରେ ରାହୁ ମିଳେ ତାଙ୍କ ହୃଦ ।
ଅମୃତକୁ ଖାଇ ଆଉ ନ ପାରିଲେ ଦୈତ୍ୟ
ଦେବଙ୍କ ସଙ୍ଗରେ ଯୁଦ୍ଧ ଲାଗେ ଅପ୍ରମିତ ।
ଇନ୍ଦ୍ର ଆଦି କରିଣ ଯେ ଦେବତା ସକଳେ
ପଶିଲେ ଭୟରେ ଯାଇଁ ବନ ଗିରିମାଳେ ।
ବଳିରାଜା ମର୍ତ୍ତ୍ୟପୁରେ ରାଜପଣ କରି
ଅନେକ ଦାନ ଦେଲା ସେ ବ୍ରାହ୍ମଣଙ୍କୁ ବରି ।
କୁମର ବାସବ କଷ୍ଟ ଦେଖିଣ ଅଦିତି
ତପୋବ୍ରତେ ଆଚରିଣ ବସିଲାକ ସତୀ ।
ସେ ବ୍ରତର ପୁଣ୍ୟଫଳୁ ପ୍ରଭୁ ଚକ୍ରଧର
ପ୍ରକାଶି ବହିଲେ ନାମ ବାମନାବତାର ।
ବଳିରାଜା ଯାଗଶାଳେ ପ୍ରବେଶିଲେ ଯାଇ
ତିନିପାଦ ଭୂମି ତାକୁ ମାଗିଲେ ଗୋସାଇଁ ।
ଶୁକ୍ର ଯେ ଆଚାର୍ଯ୍ୟ ହୋଇଭାଙ୍ଗିଲେ ସେକଥା
ତାହାଦେଖି କୋପକଲେ ବାମନ ଦେବତା ।
ବାମନର ବିଶ୍ୱରୂପ ଦେଖି ବିଷ୍ଣୁଗଲେ
ବଳିକି ବନ୍ଧନ କରିଦେଲେ ତତ୍‌କ୍ଷଣେ ।
ପାଦକରେ ମହୀଯାକ ଘୋଡିଗଲେ ବ୍ୟାପି
ଆବର ପାଦେ ଆକାଶେ ଗଲେ ପୁଣିକ୍ଷେପି
ପାଦ ବାଜନ୍ତେ ବ୍ରହ୍ମାଣ୍ଡଯାକ ଗଲା ଫାଟି
ଆକାଶୁ ଗଙ୍ଗା ସବୁରି ମୁଖେ ପଡ଼େ ଫୁଟି ।
ଗଙ୍ଗା କହନ୍ତେ ପବିତ୍ର ହେଲା ସର୍ବଦେହୀ
ପୁଣି ନାଭିରୁ କାଢ଼ିଲେ ପାଦ ଭାବଗ୍ରାହୀ ।
ସେ ପାଦେ ବଳିକି ଚାପି ପାତାଳକୁ ଦେଲେ
ବୈକୁଣ୍ଠପୁରେ ନେଇଣ ତାହାକୁ ରଖିଲେ
ଏବେ ସତ୍ୟବ୍ରତ ରାଜା ମହିମା ତୁ ଶୁଣ
ପ୍ରଳୟ ଘୋଟିଲା ଯେତେବେଳେ ଜଗତେଣ
ମତ୍ସ୍ୟ ଅବତାର ଗୋଟି ହେଲେ ଭାବଗ୍ରାହୀ
ସେମତ୍ସ୍ୟ ଶୃଙ୍ଗରେ ନାବ ଖଟାଇଲେ ନେଇ
ପ୍ରଳୟ ବାଞ୍ଛିଲେ ବିଷ୍ଣୁ ମହିମାକୁ ଗୁଣି
ଅଷ୍ଟମ ସ୍କନ୍ଧ ଏଠାରୁ ଶେଷହେଲା ପୁଣି ।
ଚବିଶ ଅଧ୍ୟାୟେ ସେହି ହେଲା ସମାପତ
ବିପ୍ର ପୀତାମ୍ବର ଦାସ ସର୍ବଦା ଅର୍ଚ୍ଚିତ ।
ଶ୍ରୀ ଭାଗବତ ମହିମା ସାତ ଜନ୍ମେ ମୁହିଁ
ଚରଣକର ଅର୍ଥ ନ ପାରେ କେବେ କହି ।
ସାଧୁଙ୍କ ମୁଖରୁ କେତେ ଶୁଣିବାରୁ ଅର୍ଥ ।
ତେଣୁ କିଛି କହି ମୋତେ ଦ୍ୟନ୍ତି ଜଗନ୍ନାଥ ।

●

## ସଂକ୍ଷିପ୍ତ ରାମଚରିତ

ଶୁଣ ପରୀକ୍ଷ ନବମସ୍କନ୍ଧର ଯେ ବାଣୀ
ବଂଶାନୁଚରିତ କଥା ଯେ ରୂପେ ବଖାଣି ।
ସୂର୍ଯ୍ୟବଂଶେ ପୁତ୍ରହେଲେ ବୈବସ୍ୱତ ନାମ
ଜ୍ଞାନରେ ନିର୍ଗୁଣ ସେହୁ ଅଟନ୍ତି ଉତ୍ତମ ।
ସେ ରାଜପୁତ୍ରର ନାମ ଇକ୍ଷ୍ୱାକୁ ଯେ କହି
ତାହାଙ୍କ ମହିମାଯାକ ଶୁଣ ମନଦେଇ ।

ଈଳା କନ୍ୟାଠାରୁ ହେଲା ଯେବଣ ଚରିତ
ସେ କଥାକୁ ସାବଧାନେ ଶୁଣ ପରୀକ୍ଷିତ ।
ଜନ୍ମହେଲେ ପୁରରବା ବୁଧଙ୍କର ବୀର୍ଯ୍ୟେ
ଚନ୍ଦ୍ର ସୂର୍ଯ୍ୟ ବେନି ବଂଶେ ଖ୍ୟାତଦେବରାଜେ
ଏଣୁ ସୋମ ସୂର୍ଯ୍ୟ ବେନି ସବୁ ବଂଶେଶ୍ରେଷ୍ଠ
ସୂର୍ଯ୍ୟବଂଶ କଥା ଏବେ ଶୁଣ କୁରୁଶ୍ରେଷ୍ଠ ।
ଜ୍ୟୋତିବୋଲି ଅଟେ ପୁରୁରବାଙ୍କର ବାଳ
ନବାଂଶେ ବରିଲେ ନବ କନ୍ୟା ପ୍ରେମଶୀଳ ।
ତାହାଙ୍କ ବଂଶଯାକ ଶ୍ରୀଭଗବନ୍ତ ଜନ
ଆପଣ ଶୁଣି ବୁଝିଲେ କରି ତନ୍ନ ତନ୍ନ ।
ଚ୍ୟବନ ମହାଋଷିଙ୍କୁ ଯେବଣ ବିଧାନ
ସେ କଥା ଗୋଚର କରିଅଛି ହେ ରାଜନ ।
କାକୁସ୍ଥ ନୃପତିଙ୍କର ଯେବଣ ବିଚାର
ପୁରାଣରେ କହିବାରୁ ହେଲାଣି ଗୋଚର ।
ଖଟ୍ୱାଙ୍ଗ ନୃପତିଙ୍କର ଯେବଣ ଚରିତ
ଶ୍ରବଣେ ଶୁଣିବା ମାତ୍ରେ ଗଲାଣି ଦୁରିତ ।
ମାନଧାତା ରାଜାଙ୍କର ଯେବଣ ବିଧାନ
ସ୍ମୃତିମାତ୍ରେ କହି ଆମ୍ଭେ ଯାଉଛୁ ରାଜନ ।
ଶମ୍ଭର ଋଷିଙ୍କର ହେ ଯେତେକ ଚରିତ
ଶୁଣିବା ମାତ୍ରେ ବୁଝିଲେ ଏହା ପରୀକ୍ଷିତ ।
ସଗର ମହାରାଜାର ଯେତେକ ବିଧାନ
ଅଶ୍ୱମେଧ ଯାଗକରେ ସେ ମହାରାଜନ ।
ଷାଠିଏ ସହସ୍ର ପୁତ୍ର ଅଶ୍ୱ ଘେନିଗଲେ
କପିଳ ଋଷିଙ୍କ କୋପେ ଦଗଧ ହୋଇଲେ ।
ତେଣେସେ ସଗରରାଜା କଲେ ପ୍ରାଣତ୍ୟାଗ
ରହିଲା ପୃଥ୍ୱୀରେ କୀର୍ତ୍ତି ପୁରାଣେ ତା ବୁଝ ।
ଦିଲୀପ ରାଜାଙ୍କ ବଂଶେ ଭଗୀରଥ ଜନ୍ମ
ଗଙ୍ଗା ପୃଥ୍ୱୀରେ ବୁହାଇ ରଖି କୀର୍ତ୍ତିମାନ ।
ଆପଣେ ପିତୃଗଣଙ୍କୁ ଗଲେ ମୋକ୍ଷକରି
ଦଶରଥ କୀର୍ତ୍ତି ଏବେ ଶୁଣ ଦଣ୍ଡଧାରୀ ।
ଅଜା ରାଜା ପୁତ୍ର ସେହୁ ଅଟେ ଦଶରଥ
ଦଶରଥଙ୍କର ବୀର୍ଯ୍ୟୋଜାତ ରଘୁନାଥ ।
ସଂସାର ରକ୍ଷା ନିମନ୍ତେ ମର୍ତ୍ତ୍ୟେ ଅବତରି
ରାମ ଲକ୍ଷ୍ମଣ ଭରତ ଶତ୍ରୁଘନ ଚାରି ।
ଆଗ ବିଶ୍ୱାମିତ୍ରଙ୍କର ରଖିଲେକ ଯାଗ
ସୁବାହୁ ତାହାଙ୍କ ବାଣେ କଲା ପ୍ରାଣତ୍ୟାଗ
ତହୁଁଗଲେ ବିଜେକରି ସୀତା ସ୍ୱୟମ୍ବରେ
ମିଳିଲେ ଶ୍ରୀରାମ ଯାଇଁ ମିଥିଳା ନଗରେ ।
ଭାଙ୍ଗିଲେ ଶ୍ରୀରାମ ଯାଇ ଈଶ୍ୱର କୋଦଣ୍ଡ
ବାଳକେ ଭାଙ୍ଗିପକାନ୍ତି ଯେହ୍ନେ ଆଖୁଦଣ୍ଡ ।

ସେହିରୂପେ ଶ୍ରୀରାମ ଯେ ଶିବଧନୁ ଜିଣି
ସୀତାଙ୍କୁ ଆଣିଲେ ବିଭା ହୋଇ ରଘୁମଣି ।
ବାଟେ ଆସି ଘଞ୍ଚାଳିଲେ ରେଣୁକାର ସୁତ
ବୋଇଲେ ତୋ ନାମ କିସକହମୋତେ ସତ
ରାମ ବୋଇଲେ ଯେ ଆମ୍ଭେ ଦଶରଥ ପୁଅ
ରାବଣମାରିବାପାଇଁ ଧରିଅଛୁ ଦେହ ।
ପର୍ଶୁରାମ ବୋଲେ ଧନୁ ଭାଙ୍ଗିଲୁକି ତୁହି
ତାହା ଶୁଣିବାରୁ ଆମ୍ଭେ ଆସିଅଛୁ ଧାଇଁ ।
ଆମ୍ଭେ ଧନୁ ଗୋଟିଏ ଯେ ଧରିଅଛୁ ହସ୍ତେ
ଭାଙ୍ଗିପାରିଲେକ ବିଷ୍ଣୁ ବୋଲିବାକ ତୋତେ
ନୋହିଲେ ସୀତାଙ୍କୁ ଛଡ଼ାଇଣ ଘେନିଯିବୁଁ
ତୋହର ଶ୍ରୀରାମପଦ ଲିଭାଇଣ ଦେବୁଁ ।
ଏତେ ବୋଲି ପର୍ଶୁରାମ ଉଠିଲେ କୋପରେ
ଧନୁ ବଢ଼ାନ୍ତେ ଧଇଲେ ରାମ ବାମକରେ ।
ପର୍ଶୁରାମ ଆଜ୍ଞା ପାଇ ପୁଣି ତହିଁ ଦେଲେ
ଜଙ୍ଘରେ ପକାଇ ଧନୁ ବେନି ଖଣ୍ଡ କଲେ ।
ଧନୁଭାଙ୍ଗି କରନ୍ତେ ଯେ ରାମ ଘୋରତମ
ତାହା ଦେଖି ମହାଶାନ୍ତି ଲଭି ପର୍ଶୁରାମ ।
ମନେ ପାଞ୍ଚିଲେ ନିଶ୍ଚେ ଏ ଅଟେ ରଘୁନାନ
ଏତେ ବୋଲି ରାମଙ୍କୁ ସେ କଲେ ଧନ୍ୟଧନ୍ୟ
ନୋହିଲେ ଏ ଧନୁଭାଙ୍ଗି କରନ୍ତା କେବ୍ୟର୍ଥ ।
ପଥଛାଡ଼ି ଦିଅନ୍ତେଣ ଗଲେ ରଘୁନାଥ ।
ସୀତାଙ୍କୁ ଘେନିଣ ରାମ ଅଯୋଧ୍ୟାକୁ ଗଲେ
ଜାନକୀ ଘେନି ଆନନ୍ଦେ ସୁଖ ଭୋଗକଲେ
ଶୁଣ ପରୀକ୍ଷ କହନ୍ତି ମୁନି ଶୁକଦେବ
କଇକେୟୀ ରାଣୀ ଦଶରଥଙ୍କ ପ୍ରସ୍ତାବ ।
କଇକେୟୀ ମହାରାଣୀ ମନେ ପାଞ୍ଚି କୂଟ
ସ୍ୱାମୀର ମନ ମୋହିଣ କଲାକ ଉଚ୍ଚାଟ ।
ବୋଇଲା ମୋହର ପୁତ୍ର ରାଜ୍ୟେରାଜା ହେଉ
ଚଉଦ ବରଷ ଯାଏ ରାମ ବନଯାଉ ।
ପତ୍ନୀର ବଚନ ରାଜା ନ ପାରିଲେ ଭାଙ୍ଗି
ହେଉବୋଲି ସତ୍ୟ କଲେ ଭାର୍ଯ୍ୟାମାନରଞ୍ଜି
ପିତାର ସତ୍ୟବଚନ ନ ପାରିଲେ ଛାଡ଼ି
ଚଳିଲେ ବନକୁ ରାମ କଷା ବାସ ଭିଡ଼ି ।
ସୀତା ଲକ୍ଷ୍ମଣ ବେନିଙ୍କି ଘେନିଲେ ସଙ୍ଗତେ
ନାନା ଦୁଃଖ ସହି ରାମ ବଞ୍ଚିଲେ ବନସ୍ତେ ।
ଅରଣ୍ୟ ଭିତରେ ବୁଲୁଥାନ୍ତି ବେନିଭାଇ
ଜନକ ନନ୍ଦିନୀ ତାଙ୍କ ସଙ୍ଗତରେ ଥାଇ ।
ଆସିଲା ରାବଣେଶ୍ୱର ଭଗ୍ନି ସୂର୍ପଣଖା
ମାୟାରୂପ ଧରିଣ ସେ ବନେ ଦେଲା ଦେଖା

ଲକ୍ଷ୍ମଣ ଦେଖି ଅନେକ କୁଟ ତାକୁ କଲେ
ନାସା ଶ୍ରବଣ ତାହାର ଛେଦି ପକାଇଲେ ।
ସୂର୍ପଣଖାର ଯେ କଷ୍ଟ ଦେଖି ଦୈତ୍ୟଗଣ
ଶ୍ରୀରାମ ସଙ୍ଗେ ଆସିଣ କଲେ ଘୋର ରଣ ।
ଖର ଦୂଷଣ ଅସୁର ଆବର ତ୍ରିଶିର
ବହୁ ଅସୁର ଘେନିଣ ସଙ୍ଗେ ମହାବୀର ।
ଶ୍ରୀରାମ ସଙ୍ଗରେ ଆସି କଲେକ ସମର
ତୀକ୍ଷ୍ଣ ଶରେ ତାହାଛେଦି ଦେଲେରଘୁବୀର
ଆବର ଥିଲେ ଚଉଦ ସହସ୍ର ଯେ ବଳ
ସବୁଙ୍କୁ ବିନାଶି କରି ଦେଲେ ରଘୁବାଳ ।
ତାହା ଦେଖି ସୂର୍ପଣଖା ଗଲା ସେହିଲାଗେ ।
ମିଳିଲା ସେ ଶୀଘ୍ର ଯାଇ ରାବଣର ଆଗେ ।
କହିଲା ସୀତା ଲକ୍ଷ୍ମଣ କଥା ଆଗ କରି
ଶୁଣିଲା ମାତ୍ରେ ରାବଣ ବସି ମନେ ଝୁରି
କାମେ ଆତୁର ହୋଇଣ ହେଲା ସେହିମୋହ
ଭଗ୍ନୀର ନାସା ଦେଖିଣ କଲା କିଛି କୋହ
ଖର ଦୂଷଣ ତ୍ରିଶିରା ମରଣ ଶୁଣିଲା
ତହିଁକି ଶୋଚନା କିଛି ମନରେ ନକଲା ।
କେହ୍ନେ ସୀତାକୁ ଆଣିବି ପାଞ୍ଚିଲା ମନରେ
ଆପେ ମାରୀଚକୁ ଘେନି ଅଇଲା ସଙ୍ଗରେ ।
ସେ ମାରିଚ ଅସୁରକୁ ରାବଣ ଯେ ନେଇ
ଯାବତ ଗୁପତ କଥା କର୍ଣ୍ଣେ ତାର କହି ।
ବୋଇଲାକ ମାୟା ମୃଗ ହୋଇଣ ତୁ ଯିବୁ
ସୀତାକୁ ଦେଖା ଦେଇଣଆଗୁଁ ପଳାଇବୁ ।
ମୁହିଁ ଜାଣ ଋଷି ରୂପେ ହେବି ବ୍ରହ୍ମମୁନି
ସୀତା ଚୋରାଇ ଆଣିବି ମାୟାରେ ତ ଘେନି
ଏରୂପେ କହି ନାରାଚ ଦୈତ୍ୟକୁ ତିଆରି
ରାମ ଥିବା ବନେ ଆସି ମିଳି ଦେବଅରୀ ।
ବୃକ୍ଷ ଉହାଡ଼େରାବଣ ରହିଲାକ ଲୁଚି
ସୁବର୍ଣ୍ଣ ମାୟା ମୃଗେକ ମାରୀଚ ହୋଇଛି ।
ତେନ୍ତୁଳି ବୃକ୍ଷର ତଳେ ମଢ଼ିଆ ଯେତୋଳି
ରାମ ଲକ୍ଷ୍ମଣ ସୀତାକୁ ଥାନ୍ତି ପ୍ରତିପାଳି ।
ସେ ମଢ଼ିଆ ଘର ପାଶେ ମାୟା ମୃଗଗୋଟି
ଦେଖା ଦେଇଯାନ୍ତେ ପଡ଼ିଲାକ ସୀତାଦୃଷ୍ଟି
ସ୍ୱାମୀକି ବୋଇଲେ ପ୍ରଭୁ ଶୁଣିମା ମୋବାଣୀ
ଏ ସୁବର୍ଣ୍ଣ ମୃଗ ମାରି ଦିଅ ମୋତେ ଆଣି ।
ପ୍ରିୟା ବାଣୀ ଶୁଣି ଉଠିଲେକ ରଘୁନାଥ
କୋଦଣ୍ଡ କରେ ଧରିଣ ଖୋଜନ୍ତି ସେ ପଥ ।
ମୃଗକୁ ପ୍ରଭୁ ଖୋଜନ୍ତି କରି ପାଦଗତି
ମୃଗର ପାଖେ ମିଳିଲେ ଯାଇଁ ସେ ତଡ଼ତି ।
ତୀକ୍ଷ୍ଣ ନାରାଚ ପେଷିଣ ମୃଗେ ଦ୍ୟନ୍ତେହାଣି
ମରିବାବେଳେ ସେ ମୃଗକଲା ଉଚ୍ଚେ ବାଣୀ
ଲକ୍ଷ୍ମଣ ରଖ ଶୁଭିଲା ଆସି ସୀତା କର୍ଣ୍ଣେ
ତକ୍ଷଣେ ଚାହିଁଲେ ସୀତା ଉଠି ଦିଗମାନେ ।
ଲକ୍ଷ୍ମଣକୁ ବୋଇଲେ ତୁ ବହନ ଯେ ଯାଅ
ସ୍ୱାମୀଙ୍କୁ ପଡ଼ିଲା ଆସି ବିପତ୍ତି ସମୟ ।
ଲକ୍ଷ୍ମଣ ବୋଲେ ସତୀ ନ କର କିଛି ଭୟ
ସାକ୍ଷାତେ ଅଟନ୍ତି ପରଂବ୍ରହ୍ମ ରାମରାୟ ।
ତାଙ୍କୁ ପାପ ଚିନ୍ତିବ କେ ଅଛି ଭୂମଣ୍ଡଳେ
ଦିଗପାଳେ ଖଟିଥାନ୍ତି ଯାର ପାଦତଳେ ।
ଏ କଥାକୁ ଶୋଚନା ନ କର କିଛି ଭୀତି
ଆମ୍ଭେ ଗଲେ ଯେ ପ୍ରମାଦ ପଡ଼ିବ ଗୋ ସତୀ
ସେ କଥା ଶୁଣିଣ ସୀତା ହେଲେ କୋପଭର
ବୋଇଲେ କରିବ ମୋତେଘେନିତୁମ୍ଭେ ଘର
ସେହିରୂପେ କଥା ଦିଶିଲାକ ମୋତେ ଆସି
ଶୁଣିଣ ଲକ୍ଷ୍ମଣ ଅଙ୍ଗୁ ଝାଳପଡ଼େ ଖସି ।
ପାଞ୍ଚିଲେ ମନରେ କେଡ଼େକଥା ଠାକୁରାଣୀ
ବୁଝିଲେ ଏ ମାତା ସମ ଅଟନ୍ତି ଯେ ପୁଣି ।
ଠାକୁରାଣୀ ହୋଇଲେକ ହେବ ବଡ଼ ହୋଇ
ଅଦୃଷ୍ଟ ବାମ ଲୋକଙ୍କୁ ବୁଦ୍ଧି ନ ଦିଶଇ ।
ଅଭୂଷଣ କଥା ତୁଣ୍ଡେ କରନ୍ତି ପ୍ରକାଶ
ଭୋଧର୍ମ ଦେବତା ମୋର କିଛି ନାହିଁ ଦୋଷ
ଏତେ ପାଞ୍ଚି ଲକ୍ଷ୍ମଣ ଶ୍ରୀହସ୍ତେ ଧନୁ ଧରି
ଉଠିଲେ ସେ ମଢ଼ିଆରୁ ବିଶ୍ୱମୂର୍ତ୍ତି ଧରି ।
ଲୋକ-ନିନ୍ଦାକୁ ପାଞ୍ଚିଣ ମନେ ତାପ ବହି
ତିନିଗାର କାଟି ଚଳିଗଲେ ରାମଭାଇ ।
ତତ୍କାଳେ ମିଳିଲେ ଯାଇଁ ଶ୍ରୀରାମ ଅଗ୍ରତେ
ଭାଇକି ଦେଖି ବିଷଣ୍ଣ ହେଲେ ରାମଚିତ୍ତେ ।
ଲକ୍ଷ୍ମଣ ଯାନ୍ତେ ରାବଣ ଆସିଲା ତତ୍କାଳେ
ମିଳିଲା ଶୀଘ୍ର ତିନ୍ତୁଳି ବୃକ୍ଷର ଯେ ତଳେ ।
ରାମ ଲକ୍ଷ୍ମଣ ଦୁହିଁଙ୍କୁ ନ ଦେଖି ରାବଣ
ସୀତାଙ୍କୁ ଏକା ଦେଖି ଯେ ହରଷ ହୋଇଣ
ଯୋଗୀନ୍ଦ୍ର ରୂପ ଛାଡ଼ିଣ ନିଜ ରୂପ ହେଲା
ରଥେ ବସାଇ ରାବଣ ସୀତା ଘେନିଗଲା ।
ଆସିଲେ ବନରୁ ମୃଗ ମାରି ବେନିଭାଇ
କେଣେ ସୀତା ଅଛ ବୋଲି ଡାକି ରଗୁସାଇଁ
ମଢ଼ିଆ ଖୋଜି ବୁଲନ୍ତି ଦିଗ ଅନ୍ତରାଳେ
ସୀତାଙ୍କୁ ନ ଦେଖି ରାମ ଖୋଜନ୍ତି ବିକଳେ
ଲକ୍ଷ୍ମଣ ବୋଲେ ଶୁଣିମା ପ୍ରଭୁ ରଘୁସାଇଁ
ଅସମୟ କାଳରେ ସେ ଧୈର୍ଯ୍ୟସିନା ହୋଇ

ତୁମ୍ଭେ ମହାପ୍ରଭୁ ପୁଣି ଅନ୍ତର୍ଯ୍ୟାମୀ ଅଟ ।
ସୀତା ନେବା ଲୋକଭୟେ ସରିଲାଣି ନଟ ।
ଅବଶ୍ୟ ମାରିବି ଖୋଜି ଖୋଜି ତାକୁ ଯାଇଁ
ଏ କଥାରେ ସଂଶୟ ତ କିଛି ଆଉ ନାହିଁ ।
ଶୁଣି ରଘୁନାଥ ତାଙ୍କ ନିଃଶ୍ୱାସକୁ ବାରି
ବାହାରିଲେ ମଢ଼ିଆରୁ ଭାଇ ସଙ୍ଗେ ଧରି ।
କେତେଦୂରେ ଦେଖିଲେକ ବୃଦ୍ଧ ପକ୍ଷୀଚଟା
ପୁଚ୍ଛନ୍ତି ରାମ ତାହାକୁ ମାଥେ ବାନ୍ଧି ଜଟା ।
ବୋଇଲେ ସୀତାଙ୍କୁ ମୋର ଦେଖିଛୁକି ତୁହି
ଏହାଶୁଣି ପକ୍ଷୀଚଟା ବୋଲେ ହୋଇ ହୋଇ
ଲଙ୍କାର ରାବଣେଶ୍ୱର ଘେନିଗଲା ସୀତା
ଦେଖିଛି ପ୍ରତ୍ୟକ୍ଷେ କହେ ତୁମ୍ଭଙ୍କୁ ବାରତା
ଶୁଣିକରି ରାମଚନ୍ଦ୍ର ସାହସ ବାନ୍ଧିଲେ
ସୀତାଙ୍କୁ ମୂର୍ଚ୍ଛିନପାରି ପୁଣି ଶୋକ କଲେ ।
ଲକ୍ଷ୍ମଣ ବୋଲେ ସ୍ୱାମୀ ନ କର ଆଉ ଚିନ୍ତା
ଶତ୍ରୁ ବିନାଶି ଆଣିବା ଜନକ ଦୁହିତା ।
ଶୁଣନ୍ତେ ଶ୍ରୀରଘୁନାଥ ଲକ୍ଷ୍ମଣ ବଚନ
ବାମକନ୍ଧେ ଧନୁଧରି ଚଳିଲେ ତକ୍ଷଣ ।
ଋଷ୍ୟମୁକ ପର୍ବତରେ କଲେ ଯାଇ ବିଜେ
ଏଥୁ ଅନନ୍ତରେ ବାଣୀ ଶୁଣ କୁରୁରାଜେ ।
ଋଷ୍ୟମୁକ ପର୍ବତରେ ପ୍ରବେଶିଲେ ରାମ
ପମ୍ପା ସରୋବର ତଟେ ଦେଖି ହନୁମାନ ।
ମୁହୂର୍ତ୍ତେକ ରାମଚନ୍ଦ୍ର ନିରେଖି ଚାହିଁଲେ
ପ୍ରତ୍ୟକ୍ଷେ ହନୁକୁ ଆଜି ଦେଖିଲୁ ବୋଇଲେ
ଦୁର୍ଦ୍ଦଶା ଭୋଗ ଆମ୍ଭର ଗଲା ଆସି ଏବେ
ଆଦ୍ୟେ ହନୁମାନ ଭେଟ ହୋଇଲାକ ଶୁଭେ
ଧନ୍ୟ ଏ କୁଣ୍ଡଳ ବେନି କର୍ଣ୍ଣେ ବିରାଜୁଛି
ଏଣୁ ତୋତେ ଜାଣିଲି ମୁଁ ପବନର ବଛି ।
ଦେବତାଙ୍କ କୁଣ୍ଡଳକୁ ଭଲା ଅଛୁ ରଖି
ମୁହିଁ ତୋତେ ଚିହ୍ନନ୍ତିକି ନୋହିଲେପଦ୍ମାକ୍ଷୀ
ଶ୍ରୀମୁଖରୁ କଥା ହନୁ ଶୁଣି ତୋଷ ହେଲା
ପ୍ରତ୍ୟକ୍ଷରେ ବିଷ୍ଣୁ ବୋଲି ମନେ ବିଚାରିଲା
ଆନ ଜନକୁ ମୋର କି ଦିଶନ୍ତା କୁଣ୍ଡଳ
ଚିହ୍ନିଲି ମୁଁ ପ୍ରତ୍ୟକ୍ଷେ ଏ ପ୍ରଭୁ ଆଦିମୂଳ ।
ଏତେବୋଲି ଶ୍ରୀରାମଙ୍କ ପାଦେ ଓଳଗିଲେ ।
ଶ୍ରୀରାମ ପାଦରେ ଖଟି ସୁଗ୍ରୀ ଭେଟାଇଲେ ।
ସୁଗ୍ରୀବର ସଙ୍ଗତରେ ମିତ୍ର ହେଲେ ରାମ
ବାଳିକୁ ମାରି ସୁଗ୍ରୀବେ ଦେଲେ ରାଜ୍ୟଗ୍ରାମ
ମାଲ୍ୟବନ୍ତରେ ରହିଲେ ଜାନକୀର ନାଥ
ଅଙ୍ଗଦ ହନୁକୁ ଘେନିଛନ୍ତି ନିଜ ସାଥ ।

ଅଷ୍ଟସେନା ଆଉ ପଞ୍ଚବିଂଶ ଯୁଥପତି
ଶ୍ରୀରାମ ପାଦରେ ସେବା କଲେ ଦିବାରାତି
ଚତୁର୍ମାସ୍ୟା ଅନ୍ତେ ରାମଚନ୍ଦ୍ର ବିଚାରିଲେ
ଡକାଇ ଚାରିଦିଗକୁ ଦୂତ ବରଗିଲେ ।
ସୀତା କାହିଁ ରହିଛନ୍ତି ବେଗେ ଦେଖି ଆସ
ଶୁଣି ଦୂତମାନେ ଖୋଜି ଚଳିଲେ ବିଦେଶ
ଲଙ୍କାପୁରେ ଜାନକୀଙ୍କୁ ଖୋଜି ଠାବ କଲେ
ବାହୁଡ଼ି ରାମଙ୍କୁ ଦୂତେ ବାରତା କହିଲେ ।
ଶୁଣି ରଘୁନାଥ ମନେ ଆନନ୍ଦ ହୋଇଲେ
ଜାନକୀର ବାର୍ତ୍ତାପାଇ ଯୁଦ୍ଧେ ବାହାରିଲେ ।
ତତକ୍ଷଣେ ସିନ୍ଧୁତଟେ ମିଳିଲେକ ଯାଇ
ବରୁଣକୁ ଚିନ୍ତାକରି ବସିଲେ ଘୁମାଇ ।
ଏହା ଜାଣି ରତ୍ନାକର ବେଗେ ବିଜେକରି
ଶ୍ରୀରାମର ଚରଣରେ ଶୁଏ ପାଦ ଧରି ।
ବୋଲଇ କିମ୍ପାଇମୋତେ ମନେକଲ ଆଜ୍ଞା
ମୋତେ ଗୋଚର ହୋଇଲା ତୁମ୍ଭର ପ୍ରତିଜ୍ଞା
ରାମ ବୋଇଲେ ସର୍ବଜ୍ଞ ନୁହ କି ଆପଣ
ସୀତାଙ୍କୁ ଚୋରାଇ ମୋର ନେଇଛି ରାବଣ
କେବଣ ବାଟେ ଲଙ୍କାକୁଯିବି ମୋତେ କହ
ଏହା ଶୁଣି ରତ୍ନାକର ହସି ଟହ ଟହ ।
ସେତୁବନ୍ଧ କର ବୋଲି କହିଦେଲେ ବାଟ
ସୁବଳୟା ଗିରିପରେ ରହନ୍ତୁ ଯେ ଥାଟ ।
ଅନନ୍ତକୋଟି ପର୍ଯ୍ୟନ୍ତ କପିବଳ ଧରି
ଦଶ ବଦନକୁ ଯାଇ ପକାବେଗେ ମାରି ।
ଲଙ୍କାଗଡୁ ଜାନକୀଙ୍କୁ ବେଗେ ଘେନି ଆଣ
ଅଯୋଧାରେ ରାଜା ହୋଇ ପାଳରାଜ୍ୟଦେଶ
ତୁମ୍ଭର ଯେତେକ ଯଶ ସଂସାରରେ ଖ୍ୟାତି
ସୁଜନେ ଗାୟନକରି ହୁଅନ୍ତି ମୁକତି ।
ସୁଗ୍ରୀବ ନଳନୀଳ ଯେ ବୀର ହନୁମାନ
ଅଙ୍ଗଦକୁ ମୂଳ ଘେନି ସର୍ବ କପିସୈନ୍ୟ ।
ବିଜେ କରନ୍ତୁ ଆପଣ ୟାଙ୍କୁ ଘେନି ସଙ୍ଗେ
ଲଙ୍କାପୁରକୁ ଦହନ କରଯାଇ ବେଗେ ।
ଆବର କୁମ୍ଭ ନିକୁମ୍ଭ ପୁତ୍ର ଇନ୍ଦ୍ରଜିତ
ଧୂମ୍ରାକ୍ଷ ସହିତେ ଯେତେ ରାବଣର ସୁତ ।
ଲଙ୍କାଗଡ଼ରେ ଅଛନ୍ତି ଯେତେକ ସଇନ୍ୟ
ଏହାଙ୍କ ସଙ୍ଗେ ମିଶିଣ ମାର କୁମ୍ଭକର୍ଣ୍ଣ ।
ଖଡ଼ଗ କୁନ୍ତ ଶାବେଳି ପର୍ଶୁରାମ ଯାଠୀ
ଅସୁରକୁ ମାରିବେଗେ କର ଶରବୃଷ୍ଟି ।
ରାବଣ କୁମ୍ଭକର୍ଣ୍ଣାଦି ଦୈତ୍ୟକୁ ସଂହାରି
ସୀତାଙ୍କୁ ଘେନି ଅଯୋଧ୍ୟା ଆସ ବିଜେକରି ।

ଏହିରୂପେ ବରୁଣ ଯେ ରାମ ଆଗେ କହି
ମେଲାଣି ହୋଇ ନଗ୍ରକୁ କଲେ ଜଳଶାୟୀ
ବରୁଣ ମୁଖରୁ ଶୁଣି କୌଶଲ୍ୟା ଦୁଲ୍ଲାଳ
ତକ୍ଷଣେ ଲଙ୍କଗଡ଼କୁ କଲେ ଅନୁକୂଳ ।
ସଙ୍ଗତରେ କପିବଳ ଅଛନ୍ତି ଗୋଡ଼ାଇ
ସେତୁ ବାନ୍ଧି ସୁବଳୟା ଗଲେ ରଘୁସାଇଁ ।
ଲଙ୍କାଗଡ଼ରେ ପଶିଲେ ଯାଇ ରାବଣାରି
ରାବଣର ସୈନ୍ୟଯାକ ପକାଇଲେ ମାରି ।
ସୌମିତ୍ରୀ ହାତରେ ମଲା ବୀର ଇନ୍ଦ୍ରଜିତ
ପ୍ରାଣ ଛାଡ଼ିଣ ଭୂମିରେ ପଡ଼ିଲା ଦଇତ ।
ପୁତ୍ର ମଲାରୁ ରାବଣ ଭାଳି ପଞ୍ଚମନେ
ନିଦୂ ଉଠାଇଲା ବେଗେ ବୀର କୁମ୍ଭକର୍ଣ୍ଣେ ।
ଶ୍ରୀରାମର କଥାଯାକ କହିଲା ତା ଆଗେ ।
ଏହାଶୁଣି କୁମ୍ଭକର୍ଣ୍ଣ ଉଠିଲା ଯେ ରାଗେ ।
କପିବଳ ଉପରେ ସେ ପଡ଼େଯାଇ ମାଡ଼ି
ତାକୁ ଦେଖି କପିମାନେ ପଳାଇଲେ ଛାଡ଼ି ।
ସୁଗ୍ରୀବକୁ ଏକା ଦେଖି ଧରି କୁମ୍ଭକର୍ଣ୍ଣ
ବିଧାଏ ମାରନ୍ତେ ସେହୁ ହେଲା ଅଚେତନ ।
ରଥ ଉପରେ ସୁଗ୍ରୀବ ପଡ଼ିଣ ରହିଲା
ଖଣ୍ଡେଦୂର ଚଳନ୍ତେ ସେ ଚେତନା ପାଇଲା
କୁମ୍ଭକର୍ଣ୍ଣର ନାସିକା ଶ୍ରବଣକୁ ଧରି
ପକାଇଲା କପିରାଜ ସୁବଳୟା ଗିରି ।
ନାସିକା ଶ୍ରବଣ ତାର ଖଣ୍ଡିଆ ହୁଅନ୍ତେ
ବାହୁଡ଼ିଲା କୁମ୍ଭକର୍ଣ୍ଣ କୋପକରି ଚିତ୍ତେ ।
ଅନେକ କପି ଧରିଣ ତୁଣ୍ଡେ ଦ୍ୟନ୍ତେ ଦଳି
ତାହାଦେଖି ରଘୁନାଥ ମନେ ମନେ ଭାଳି ।
ଧନୁରେ ଶର ପେଷିଣ ଛେଦିଲେ ତା ଭୁଜ
ପାଦ ସହିତେ ହାଣିଲେ ପ୍ରଭୁ ଦେବରାଜ ।
କର ଚରଣ ନାସିକା କର୍ଣ୍ଣ ଛିଡ଼ିଯାନ୍ତେ
ଡେଇଁ ଡେଇଁ କୁମ୍ଭକର୍ଣ୍ଣ ପଡ଼େ ଭଡ଼ାସାତେ ।
ଦୈତ୍ୟର ରଡ଼ି ଦେଖିଣ ଧାଇଁ ରଘୁମଣି
ବାବଲ ଶର ପେଷିଣ ପକାଇଲେ ହାଣି ।
ଦେଖିକରି ଦଶମୁଖ ଭାଇର ମରଣ
ଧାଇଁଲା ପୁଷ୍ପକ ରଥେ ତୁରିତେ ଚଢ଼ିଣ ।
ଦେଖି ଶ୍ରୀରାମ ରାବଣ ନିକଟକୁ ଯାଇ
କହନ୍ତି ବାକ୍ୟ ତାହାକୁ ମନେ କୋପ ବହି ।
ବୋଇଲେକ ତୁହିକିରେ ଦଶମୌଳି ଅଟୁ
ମୋର ଯୁବତୀର କିସ ବୋଲି ପଦେ ଖଟୁ ।
ସଂସାର ଜନନୀ ସେହୁ ଅଟେ ଲୋକମାତ
ତାର ଯେ ଦର୍ଶନ ପାଏ ସେ ହୁଏ ମୁକତ ।
ଏହା ନ ବୁଝି ତୁହି ଯେ ଆଣିଲୁ ଚୋରାଇ
ତପସ୍ୟା ବଳରେ ଆଜିଯାଏ ଥିଲୁ ରହି ।
ଏକ୍ଷଣି ତୋତେ ପେଶିବି ଶମନ ନଗର
ଏତେ ବୋଲି ଧନୁଶର ଧରି ରଘୁବୀର ।
ଧନୁରେ ବସାଇ ପେଷିଦ୍ୟନ୍ତି ଚାପଧର
ରଥପରୁ ଖସି ତଳେ ପଡ଼େ ଦଶଶିର ।
ଦଶବଦନଯାକରୁ ରକ୍ତ ଗଲା ବହି
ଶର ବାଜନ୍ତେ ଜୀବନ ଛାଡ଼େ ଲଙ୍କସାଇଁ ।
ବିଷ୍ଣୁର ହସ୍ତେ ମରିଣ ବୈକୁଣ୍ଠକୁ ଗଲା
ଏଠାବରୁ ତିନିଜନ୍ମ ଦୈତ୍ୟଭୋଗ କଲା ।
ମାନବ ଜନ୍ମରେ ଯାଇ ଲଭିଲେ ମୁକତି
ତାଙ୍କପାଇଁ ଅବତାର ହୁଅନ୍ତି ଶ୍ରୀପତି ।
ମୁର ହିରଣ୍ୟ ରାବଣ ଆଉ ଶିଶୁପାଳ
ଏ ଜନ୍ମ ଅନ୍ତେ ଲଭିଲେ ପୁଣି ବିଷ୍ଣୁଆଳ ।
ଦମଘୋଷ ଘରେ ଏବେ ଜନମିବେ ଯାଇଁ
ଚକ୍ର ପେଷିଣ ଛେଦିବେ ତାକୁ ରଘୁସାଇଁ ।
ଶିଶୁପାଳ ଜନ୍ମ ଶେଷ ହେବ ଚାରିଜନ୍ମ
ଶୁଣ ପରୀକ୍ଷ କହନ୍ତି ଶୁକଦେବ ବ୍ରହ୍ମ ।
ରାବଣେଶ୍ୱରର ହତ ଶୁଣି ପୁରଜନେ
ଆସିଲାକ ମନ୍ଦୋଦରୀ ସ୍ୱାମୀର ବିହୀନେ ।
ଆବର ରାଣୀଏ ମିଳି ସମର ଭୂମିରେ
ଚାରିପାଶେ ଉଭାରିଣ କାନ୍ଦନ୍ତି ଉଚ୍ଚରେ ।
ହୃଦରେ କୋଡ଼ି ହୁଅନ୍ତି ବେନିକର ତାଡ଼ି
ହା ହା ପ୍ରାଣନାଥ ବୋଲି ପାଦତଳେ ପଡ଼ି ।
ମନ୍ଦୋଦରୀର ଯେ ଶୋକ କହିଲେ ନସରେ
ବୋଲନ୍ତି ଅନାଥ ହେଲୁ ଆମ୍ଭେ ଲଙ୍କାପୁରେ ।
ଭୋ ନାଥ ଆମ୍ଭଙ୍କୁ କିମ୍ପା ଅନାଥ କରିଲୁ
ସ୍ତିରୀ ଲୋଚାଏ ଆଣିଣ ଅଖଡ଼େ ମାରିଲୁ ।
ଏତେ ଯୁବତୀ ଥାଉଁ ତୁ ହରୁ ପରନାରୀ
ଏଡ଼େ ଦୋଷ ଅରଜି ତୁ ରହିବୁ କିପରି ।
ଶ୍ରୀରାମର ପତ୍ନୀକୁ ଅଦୋଷେ ଆଣିଲୁ
ଆଣିଲୁ ତୁ ତାକୁ ଦିନେ ଛୁଇଁ ନ ପାରିଲୁ ।
ଜାନକୀକୁ ଆଣିବାରୁ ଧାତା ନ ସହିଲା
ଛପନ ଗଣ୍ଡାରୁ ଚୌଦଗଣ୍ଡା ଭୋଗ ହେଲା ।
ଏ ଘେନି ଅଳ୍ପ ଆୟୁଷ ହେଲୁ ଜାଣ ସ୍ୱାମୀ
ଦୋଷ ଅର୍ଜିଲା ଲୋକ ନରହେ କେବେ ପୁଣି
ପରହିଂସା ଯେଉଁ ଜନ କରେ ସଂସାରେଣ
ତାହାର ଜୀବନ ଜାଣ ଅଟେ ଅକାରଣ ।
ସଭାରେ ପକ୍ଷ କରିଣ କହନ୍ତି ଯେ ପ୍ରାଣୀ
ତିନି ବରଷେ ନାଶନ୍ତି ତାକୁ ଚକ୍ରପାଣି ।

ହାର ଜିଣ ନ ବୁଝି ଯେ କରେ ପକ୍ଷପାତ
ଅବଶ୍ୟ କାଳେ ତାହାକୁ ପଡ଼ଇ ପ୍ରମାଦ ।
ନିଷ୍କପଟ ଲୋକ ଜାଣ କେବେ ନୁହେଁ ନାଶ
କପଟି ଲୋକଟି ହୁଏ ଅଳ୍ପକେ ବିଧ୍ୱଂସ ।
ତୋହର କପଟ ଜାଣ ମୋତେ ନାଶକଲା
ଆସିଲାକ୍ଷଣି ନ ମଲୁ କିଇଥିଲୁ ଭଲା ।
ଭୋ ଦେବ ଲଙ୍କପତି ତୁ କାମେ ବଶକଲୁ
ଏତେ ସ୍ତିରୀ ଥାଉଁ ଥାଉଁ ସୀତା ଚୋରୀକଲୁ ।
ସେହି ଦୋଷରୁ ଆପଣେ ଗଲୁ ଏବେ ନାଶ
ତେଣୁଟି ଅପମୃତ୍ୟୁରେ ମଲୁ ଲଙ୍କଈଶ ।
ଏ ସ୍ତିରୀ ଲୋଚାକୁ ଗଲ ପତିହୀନା କରି
ଏ ରୂପେ ବୋଲିଣ ଶୋକ କରେ ମନ୍ଦୋଦରୀ
ତିନିକୋଟି ପାଞ୍ଚଶତ ଲକ୍ଷେ ମହାଦେଈ
ସତୀ ରୂପେ ଅନଳରେ ଗଲେ ଦଗ୍ଧ ହୋଇ
ଆବର ଏକାକେ ରହିଅଛି ମନ୍ଦୋଦରୀ
ତାହାର ଯେ କଥା ଏବେ ଶୁଣ ଦଣ୍ଡଧାରୀ ।
ରାବଣର ସାନଭାଇ ଅଟେ ବିଭୀଷଣ
ଶ୍ରୀରାମରେ ଶରଣ ସେ ପଶିଥିଲା ପୁଣ ।
ମନ୍ଦୋଦରୀ ରାଣୀକୁ ଶ୍ରୀରାମଚନ୍ଦ୍ର ଡାକି
ବୋଇଲେ କହିବା ଆମ୍ଭେ ବାକ୍ୟ ପାଳିବୁକି ।
ରାବଣ ବିଭୀଷଣର ଅଟେ ଏକ ଆତ୍ମା
ଏକା ରକ୍ତରୁ ଯେ ଜନ୍ମ ଅଛନ୍ତି ଜାଣିମା ।
ବିଭୀଷଣ ସଙ୍ଗେ ତୋର ବିବାହ ହୋଇଲେ
ଏଥେଁ ଦୋଷ ନାହିଁ କିଛି ପୁରାଣେ ବୁଝିଲେ ।
ଭାଉଜ ଦିଅର ଆଉ ଦିଅର ଭାଉଜ
ଏହା କରି କାର୍ଯ୍ୟକଲେ ଅଟଇ ସହଜ ।
ଜ୍ୟେଷ୍ଠଭ୍ରାତାକୁ ଏକଥା କେଭେ ନ ଯୋଗାଇ
ଶୁଣ ଚାରୁହାସିନୀ ଗୋ ପାଟ ମହାଦେଈ ।
ବିଭୀଷଣକୁ ଘେନି ଯା ବସ ଏବେ ପାଟେ
ତୁମ୍ଭ ବେନିଙ୍କି ସ୍ଥାପି ମୁଁ ଯିବ ଲଙ୍କରାଷ୍ଟ୍ରେ ।
ଶ୍ରୀରାମଙ୍କର ବଚନ ଶୁଣି ମନ୍ଦୋଦରୀ
ବୋଇଲେ କେଉଁ ରୂପେ ମୁଁ ହୋଇବି ଦୋଚାରୀ
ସ୍ତିରୀକୁଳକୁ ଏହାଟି ଅଟେ ବିଡ଼ମ୍ବନ
ବୁଡ଼ିଲା ତେବେ ମୋହର ସାଧବୀ ଲକ୍ଷଣ ।
ଚଉଦପୁର ଯାକର ତୁମ୍ଭେ ହର୍ତ୍ତା କର୍ତ୍ତା
କି ରୂପେ ଆପଣ କହୁଅଛ ହୋଇ ଜ୍ଞାତା ।
ଶ୍ରୀରାମ ବୋଇଲେ ତେବେ ଶୁଣରେ ତରୁଣୀ
ଯେତେବେଳେ ଦଶମଥା ଆଣେ ମୋ ଘରଣୀ
ସେତେବେଳେ ଧନୁ ଛୁଇଁ ସତ୍ୟକଲି ଜାଣ
ବୋଇଲି ନିଶ୍ଚେ ମାରିବି ଦଇତ୍ୟ ରାବଣ ।
ତାହାର ଭାର୍ଯ୍ୟାକୁ ମୁହିଁ ଆନେ ନେଇଦେବି
ତେବେ ମୋର ଯଶ କୀର୍ତ୍ତି ସଂସାରେ ରଖିବି
ଆନକୁ ଦେଲେ ସିନା ତ ମୋତେ ନିନ୍ଦାହନ୍ତା
ବିଭୀଷଣକୁ ଦେଲେ କି ଅଛି ଆଉ ଚିନ୍ତା ।
ଦିଅର ଭାଉଜକୁ ଯେ କିଛି ନାହିଁ ଦୋଷ
ଯେତେ ଭାବିଲେ ବୋଲଇ ସେହୁ ପରିହାସ
ରାବଣର ସାନଭାଇ ଅଟେ ବିଭୀଷଣ
ଏକ ଆତ୍ମାରୁ ଜନ୍ମି ସେ ଛନ୍ତି ଦୁହେଁ ଜାଣ ।
ଲୋକଙ୍କ କର୍ମକୁ ସେହୁ ଦିଅର ବୋଲାଇ
ବୁଝିଲେ ଅଛନ୍ତି ଏକ ଆତ୍ମା ବେନିଭାଇ ।
ଭାବଣ ଥିବାରୁ ହୋଇଥିଲେ ସେ ଦିଅର
ଏବେ ପ୍ରତ୍ୟକ୍ଷେ ହୋଇଲା ସ୍ୱାମୀ ଯେ ତୁମ୍ଭର
ଏକଥାରେ ଇଚ୍ଛା କିଛି ନକର ଯୁବତୀ
ଆମ୍ଭ ବାକ୍ୟ ପାଳିଥିଲେ ବୋଲାଇବୁ ସତୀ ।
ନୋହିଲେ ବିଧବା ସ୍ତିରୀ ସଙ୍ଗେ ଲେଖାହେବୁ
ହେଲେ ତୁ ତ ସୁଲକ୍ଷଣୀ ସାଧ୍ୱୀ ବୋଲାଇବୁ
ତୁହି ଯେ ପାଞ୍ଚୁଛୁ ମୁହିଁ ହୋଇବି ଦୋଚାରୀ
ଏକ ଆତ୍ମା ବୋଲି ଆମ୍ଭେ ଦେଉଛୁ ବିଚାରି ।
ବିଭୀଷଣ ଅଛି ଦଶମାଥ ମରିନାହିଁ
ମରିବେ ପ୍ରଳୟକାଳ ହେଲେ ଦୁହେଁ ଯାଇ ।
ପୃଥ୍ୱୀ ଆପ ତେଜ ବାୟୁ ବ୍ୟୋମଥିବାଯାକ
ନ ମରିଣ ବିଭୀଷଣ ଥିବ ଯୁଗାନ୍ତକ ।
ବିଭୀଷଣ ମଲେ ଦଶଶିର ଯିବ ମରି
ଏ କଥାର ଅର୍ଥ କେ ନ ପାରେ ହେତୁ କରି ।
ବେଦରେ ମହାବାକ୍ୟରେ ଜୀଇଛି ରାବଣ
ଯଥା ରାବଣସ୍ୟ ମନ୍ଦୋଦରୀ ଉଚ୍ଚାରଣ ।
ବ୍ରାହ୍ମଣ ମହାବାକ୍ୟରେ ପଢ଼ିବେ ଯା ପୁଣି
କହନ୍ତି ଶ୍ରୀରାମ ଶୁଣ ମନ୍ଦୋଦରୀ ରାଣୀ ।
ବିଭୀଷଣ ଥିବାଯାକ ରାବଣ ଜୀଇଛି
ଏଥୁ ଯାଇଣ ବୈକୁଣ୍ଠେ ଦୁଆରୀ ହୋଇଛି ।
ଏଥକୁ ଉପଲକ୍ଷ୍ୟ ଯା କହୁଥାଇ ପୁଣ
ସ୍ତିରୀଙ୍କ ସଦବୁଦ୍ଧିରୁ ତରନ୍ତି ସେ ଜାଣ ।
ତୋ ସତୀପଣରୁ ତୁହି ସଂସାରୁ ତରିବୁ
ପ୍ରଭାତୁ ତୋହର ନାମ ସମସ୍ତେ ସାରିବୁ ।
ତୁ ଯେ ପାଞ୍ଚୁଅଛୁ ମୋତେ ବୋଲିବେ ଅସତୀ
ସତୀ ସୁଲକ୍ଷଣୀ କଥା କହେ ଶୁଣ ଉକ୍ତି ।
ଉତ୍ତମ କରି ବୁଝ ତା କହୁଛୁ ତୋ ଆଗେ
ନର୍ମଦା ନାମେ ସ୍ତିରୀଏ ଥିଲା ସତ୍ୟଯୁଗେ ।
ଶୁଣିଛୁ ବଶିଷ୍ଠ ଋଷି ମୁଖୁଁ ଆମ୍ଭେ ଏହା
ଶୁଣ ବିଶ୍ରବାବଧୂ ଗୋ କହିବାକ ତାହା ।

ହେମବନ୍ତ ଗିରିତଟେ ଅଟେ ସେ ଭୁବନ
କର୍ଣ୍ଣକେଶରୀନାମେ ସେ ରାଜ୍ୟର ରାଜନ ।
ବିଦର୍ଭ ଦେଶ ବୋଲିଣ ନଗ୍ରନାମ ବହି
ନର୍ମଦା ନାମେ ସତୀଏ ଥିଲା ତହିଁ ରହି ।
ତାହାର ଯେ ସତ୍ୟକଥା ଶୁଣ ମନ୍ଦୋଦରୀ
ସତ୍ୟରେ ସେ ବେଶ୍ୟାବୃତ୍ତି କରଇ ନାଗରୀ
ରସିକ ନର ଯଦ୍ୟପି ପ୍ରାତୁ ମିଳେ ଆସି
ତାହାଙ୍କୁ ବରଣ କରି ରଖେ ଶୁଭ୍ରକେଶୀ ।
ଗୃହସ୍ଥ ଭାରିଯାଙ୍କର ଯେ ରୁପେ ବେଭାର
ଦିବା ରଜନୀଯାକରେ ଘେନିକରେ ଘର ।
ଆରଦିନେ ପ୍ରଭାତୁ ଯେ ଆସି ପୁଣ ମିଳେ
ଏହି ମୋର ସ୍ୱାମୀ ବୋଲି ଖଟେ ପାଦତଳେ
ଏ ରୂପରେ ସତ୍ୟକରି ସ୍ୱାମୀ ସେବା କରେ
ରାତିଦିନ ବଞ୍ଚଇ ଯେ ସ୍ୱାମୀର ସେବାରେ ।
ଆନ ପୁରୁଷକୁ କେତେବେଳେ ନ ଛୁଅଇଁ
ସ୍ୱାମୀସେବା ବିନୁ ସେହି କିଛି ନ ଜାଣଇ ।
ଦିବସ ରାତ୍ରଯାକେ ସେ ସ୍ୱାମୀ ପଦତଳେ
ପର ପୁରୁଷ ମୁଖ ନ ଚାହେଁ କେତେବେଳେ ।
ଏ ରୂପେଣ ଗଲା ତହିଁ ଶତେକ ବରଷ
ପ୍ରତ୍ୟକ୍ଷେ ନବଯୁବା ସେ ଅଟେ ଲକ୍ଷ୍ମୀଅଂଶ ।
ସତ୍ୟ ବାକ୍ୟରେ ଥିବାରୁ ହେଲା ନବଯୁବା
ସ୍ୱର୍ଗର ଅପ୍‌ସରୀ ପ୍ରାୟେ ଦିଶେ ତାର ଶୋଭା
ପ୍ରଭାତୁ ଧନ ଧରି ଯେ ଆସଇ ଯେତିକି
ସତ୍ୟକୁ ପାଳିଣ ସେବା କରେ ସେ ସ୍ୱାମୀକି
ସତ୍ୟହିଁ ଏକା ତାହାର ଅଟେ ସ୍ୱାମୀଜାଣ
ଲକ୍ଷେ ଧନ ଦେଲେ ପରେ ନୁହେଁ ସମର୍ପଣ ।
ସତ୍ୟ ବଚନେ ପ୍ରଭାତୁ ଯେତିକି ମିଳଇ
କୋଟିଲକ୍ଷ ବୋଲି ତାକୁ ମନେ ବିଚାରଇ ।
ହସ୍ତେ ବହୁ ଧନ ଧରି ଆସିଲେକ ଆନ
ତା ମୁଖ ଚାହିଁ କିଛି ନ କହଇ ବଚନ ।
ପାଞ୍ଚଇ ମୋହର ପତି ଆସିଛନ୍ତି ଘରେ
ପର ପୁରୁଷକୁ ଦେହ ଦେବି କି ପ୍ରକାରେ ।
ପର ପୁରୁଷରେ ରମି ଅସତୀ ହୋଇବି
ରଉରବ ନରକରେ ଅବଶ୍ୟ ପଡ଼ିବି ।
ପରସ୍ତ୍ରୀ ହରଣ କେତେବେଳେ ନୁହେ ପାର
ପରସ୍ତିରୀ ହରି କ୍ଷୟ ହେଲା ନିଶାଚର ।
ପରସ୍ତିରୀ ହରି ଇନ୍ଦ୍ର ସସ୍ରଯୋନି ହେଲେ
ଗୌତମ ଋଷିଙ୍କ ଶାପ ମେଣ୍ଟି ନ ପାରିଲେ ।
ପରସ୍ତିରୀଙ୍କି ଯଦ୍ୟପି ପରପୁଂସ ହରେ
ସେମାନଙ୍କୁ କେବେଗତି ନାହିଁଟି ସଂସାରେ ।
ଏମନ୍ତ ମନେ ପାଞ୍ଚଣ ନର୍ମଦା ସୁନ୍ଦରୀ
ପର ପୁରୁଷକୁ ମନେ କେବେ ହେଁ ନକରି ।
ଏହି ରୂପେ ସତ୍ୟପାଳୁଁ ଗଲା କେତେ କାଳ
ଶୁଣ ପରୀକ୍ଷ କହନ୍ତି ବ୍ୟାସଙ୍କ ଦୁଲାଳ ।
ନର୍ମଦାର ସତ୍ୟବାଣୀ ଶୁଣି ଦେବତାଏ
ସୁଧର୍ମା ସଭାରେ ବସି ପାଞ୍ଚିଲେ କଥାଏ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଆଉ ବଜ୍ରଧାରୀ
ପାଞ୍ଚିଲେ ନର୍ମଦା ସତ୍ୟ ଭାଙ୍ଗିବା କିପରି ।
ଏତେ ବଡ଼ ସତ୍ୟ କରି ନାହିଁ କେହୁ ପ୍ରାଣୀ
ଯହିଁକି ଗଲେ ଆନନ୍ଦ ଆକାଶ ଧରଣୀ ।
ଚତୁରାନନ ବୋଇଲେ ମୋର ବୋଲକର
ସେଠାକୁ ବିଜୟେ କରି ଯାନ୍ତୁ ତେବେ ହର ।
ବୃଦ୍ଧ ସ୍ୱରୂପକୁ ଧରି ପ୍ରାତୁ ବେଶେ ଯାନ୍ତୁ
କବାଟ ନ ଫିଟୁ ତାର ପିଣ୍ଡାରେ ବସନ୍ତୁ ।
ବିଧାତା ସହ ବାସବ ଦେବକୁଳ ଆଦି
ସର୍ବେ ହରଙ୍କୁ ପେଷିଲେ ପାଦପଦ୍ମେ ବନ୍ଦି ।
ଶୁଣିକରି ସଦାଶିବ ସବୁରି ସମ୍ମତେ
ଭାବ ବୁଝିବା ବୋଲିଣ ଚଳିଲେ ତୁରିତେ ।
ନର୍ମଦା ପିଣ୍ଡାରେ ହରଛନ୍ତି ବିଜେ କରି
ସୁବେଶ ହୋଇଣ ଗୃହୁ ବାହାରିଲା ନାରୀ ।
କବାଟ ଫେଡ଼ି ଚାହାନ୍ତେ ଦେଖି ବୃଦ୍ଧ ଜଣେ
ପାଣିଢ଼ାଳ ହସ୍ତେ ଧରି ଚାହିଁଲା ତକ୍ଷଣେ ।
ଚରଣ ବେନି ଧୋଇଣ ଶିରେ ଛିଞ୍ଚିହେଲା
ମୋ ଗର୍ଭକୁ ପୋଷକ କି ଆଣିଛ ବୋଇଲା ।
ଶଙ୍କର ବୋଇଲେ ସଖି ଆମ୍ଭେ ବୃଦ୍ଧ ଅଟୁ
ଯୁବାକାଳୁ ପତ୍ନୀ ମୋର ମରିଗଲେ ଭେଟୁ ।
ଯାଗଶାଳକୁ ଯାଇଣ ମଲା ଅଖଡ଼ରେ
ସେହିକାଳୁ ବୁଲୁଛି ମୁଁ ଭିକାରୀ ବେଶରେ ।
ତଣ୍ଡୁଳ ମାଣେ ମାତ୍ରକ ଆଣିଛି ମୁଁ ଜାଣ
ଆଜପ୍ରତିପାଳି ତୁହି ରଖ ସମ୍ଭାଳିଣ ।
ଶୁଣିଣ ନର୍ମଦା ବଡ଼ ଆନନ୍ଦିତ ହେଲା
କନ୍ଦର ଭିତରେ ନେଇ ବହୁ ସେବାକଲା ।
ତଣ୍ଡୁଳ ମାଣକୁ ଅଷ୍ଟରତ୍ନ ବୋଲି ପାଞ୍ଚି
ସ୍ୱାମୀ ଏ ମୋହର ବୋଲି ସେବେ ଦିନ ବଞ୍ଚି
ରତ୍ନଶେଯ ଉପରରେ ନେଇ ବସାଇଲା
ଏଥିଅନ୍ତେ ବାଣୀ ପୁଣ କହୁଥାଇ ଭଲା ।
ପ୍ରହରକ କାଳ ଆସି ହୁଅନ୍ତେ ଦିନ ଭୋଗ
ଦେବକୁଟ ପଞ୍ଚ ପେଷି ଦେଲେ ଚାରିଯୁଗ ।
ସତ୍ୟ ତ୍ରେତୟା ଦ୍ୱାପର କଳି ପୁରୁଷଙ୍କୁ
ବୋଇଲେ ଶରୀର ଯାଇ ମାଗ ନର୍ମଦାକୁ ।

ସୁବେଶ ବେଶ ହୋଇଣ କାମ ପ୍ରାୟ ହୁଅ
ତୁମ୍ଭଙ୍କୁ ଦେଖିଲାକ୍ଷଣି ହୋଇବ ଏ ମୋହ ।
ଶୁଣି ଚାରିଯୁଗ ବେଗେ ସୁବେଶ ହୋଇଲେ
କାମଦେବରୁ ଅଧିକ ରୂପ ପ୍ରକାଶିଲେ ।
ମାଣିକ୍ୟ ମୁକୁତା ହୀରା ନୀଳା ଧରି କରେ
ପ୍ରବେଶ ହୋଇଲେ ଯାଇ ନର୍ମଦାର ଦ୍ୱାରେ ।
ନର୍ମଦାର ନାମ ଧରି ଡାକନ୍ତେ ସେ ପୁଣି
ଶୁଣିଣ ମନ୍ଦିରୁ ଉଠି ଆସିଲା ତରୁଣୀ ।
ଦେଖିଲା ଦିଶନ୍ତି ଚନ୍ଦ୍ର ପ୍ରାୟ ଚାରିମୂର୍ତ୍ତି
ବୋଇଲା କାହିଁକି ବିଜେକଲେ ଆସି ଏଥି ।
ସେ ଚାରିଜଣ କହିଲେ ଶୁଣ ଗୋ ସୁନ୍ଦରୀ
ଆମ୍ଭର ମାନସ ହରି ନେଲୁଣି ନାଗରୀ ।
ଲକ୍ଷେ ପାଣିଦ୍ରବ୍ୟ ଘେନିଅଛୁ ତୋତେ ଦେବୁ
ତୋ ତୁଲେ କ୍ରୀଡ଼ା କରିଣ ଚାରିହେଁ ଚଳିବୁ ।
ଦେଖ ଅଳଙ୍କାର କେତେ ଆଣିଛୁ ତୋ ପାଇଁ
ଭୂଷଣ ହେଲେ ଅଙ୍ଗରେ ନ ପାରିବୁ ବହି ।
ଆବର ଲକ୍ଷେକ କୋଟି ଆଣିଛୁ ଯେ ଦ୍ରବ୍ୟ
ତୋ ଛାମୁରେ ଥୋଇ ଦେଉଅଛୁ ନିଅସର୍ବ ।
ଆମ୍ଭେ ଆନଲୋକ ନୋହୁ ଅଟୁ ଚାରିଯୁଗ
ଆମ୍ଭଙ୍କୁ ସେବା କରିଲେ ଛାଡ଼ିବ ତୋ ରୋଗ
ଆମ୍ଭ ଅଙ୍ଗ ଲାଗିଲେ ତୁ ସଦାକାଳେ ଥିବୁ
କାହିଁକି ନିତି ଜଣକେ ପୁଂସ ଆବୋରିବୁ ।
ଚାରିଯୁଗେ ରହିଥିବୁ ହୋଇ ଅଜ୍ରାମର
ନିତି ଏକକୁ ବୋଲୁଛୁ ସ୍ୱାମୀ ଏ ମୋହର ।
ଶୁଣିଣ ନର୍ମଦା ସତୀ ଗାଲେ ଦେଲା ହାତ
ବୋଇଲା କହିଲ କେଡ଼େ କଥା ଅମହତ ।
ଦେଖୁଅଛ ସ୍ୱାମୀ ମୋର ଛନ୍ତି ଦ୍ୱାରେ ବସି
ସତ୍ୟ ଛାଡ଼ି ତୁମ୍ଭଙ୍କୁ ମୁଁ ବରିବି କି ଆସି ।
ଯୁଗମାନେ ବୋଇଲେକ ବୃଦ୍ଧଗୋଟା ଆଣି
ତାତୁଲେ ମାତିଲୁ କେହ୍ନେ ହୋଇ ତାର ମଣି ।
ବୃଦ୍ଧଲୋକକୁ ଯୁବତୀ ନାରୀ ଅଟେ ବିଷ
ମହୁରା ଖାଇଲେ ପ୍ରାୟ ଲାଗେ କ୍ରୀଡ଼ା ରସ ।
କାମଦେବ ସମଅଟେ ଆମ୍ଭ ଅପଘନ
କି ବୋଲି ବୃଦ୍ଧକୁ ଜାଣି ଦେବୁ ତନୁଦାନ ।
ଏ ରୂପେ ଯୁଗଙ୍କ ମୁଖୁ ଶୁଣିଣ ନର୍ମଦା
ବୋଇଲେ ସତ୍ୟକୁ ଛାଡ଼ି ନପାରେ ସର୍ବଦା ।
ଏ ବୃଦ୍ଧସ୍ୱାମୀ ମୋହରି ଗୃହେ ଥିବାଯାଏ
ବିଷ୍ଣୁ ଆସିଲେ ମୁହିଁ ନ ମାନେ ସର୍ବଦାଏ ।
ମୋହର ସତ୍ୟ ବାକ୍ୟଟି ଅଟେ ଏକାମୂଳ
ଯାଅ ଯାଅ ଚଳିବେଗେ ଚାରିଯୁଗପାଳ ।
ସେ ଚାରିଯୁଗ ନିରାଶ ବଚନକୁ ପାଇ
ସୁଧର୍ମା ସଭା ମଧ୍ୟରେ ପ୍ରବେଶିଲେ ଯାଇଁ ।
ବୋଇଲେ ନର୍ମଦା ପ୍ରାୟ ନାହିଁ ଆଉ ସତୀ
ନିଶ୍ଚେ ସେହି ପତିବ୍ରତା ଅଟଇ ଯୁବତୀ ।
କେତେ ହେଁ ଧନଦେଲୁ ନକଲା ତହିଁଇଚ୍ଛା
ବୋଇଲେ ସତ୍ୟ ଏକ ମୋ ଅଟେ ମନୋବାଞ୍ଛା
ଏହାଶୁଣି ଦେବତାଏ ମନେ ବିଚାରିଲେ
ଈଶ୍ୱର ଆସନ୍ତୁ ଆଗ ବୁଝିବା ବୋଇଲେ ।
ଏଥୁ ଅନନ୍ତରେ କଥା ଶୁଣ ହେ ନାରଦ
ମନେ କଥାଏ ପାଞ୍ଚିଲେ ତହୁଁ ଦେବବୃନ୍ଦ ।
ଗ୍ରହଣୀ ରୋଗକୁ ଦେବେ ପାଶକୁ ଡକାଇ
ବୋଇଲେ ଆମ୍ଭ ବୋଲେ ତୁ ଯିବୁ ଶୀଘ୍ର ଧାଇଁ
ଈଶ୍ୱରଙ୍କ ଶ୍ରୀଅଙ୍ଗରେ ପ୍ରବେଶିବୁ ଯାଇ
ତତକ୍ଷଣେ ରୋଗ ଜାତକର ହୃଦେ ରହି ।
ମାୟାବଳେ ହାଡ଼ରସା ପ୍ରଭୃତି କରିବୁ
ହିକ୍କ ଶ୍ୱାସ ଧୁଗଡ଼ିଆ ବେଗେ ପେଶିଦେବୁ
ଅତି ବିକାର ହୁଅନ୍ତେ ଫୁଲିବ ସେ ପେଟ
ଶଯ୍ୟାରେ ପଡ଼ି ଶଙ୍କର ହେବେ ଛଟପଟ ।
ମାୟାରେ ପ୍ରାଣ ଛାଡ଼ିବେ ତହିଁ ସଦାଶିବ
ତେବେ ନର୍ମଦାର ସତୀପଣ ନାଶ ହେବ ।
ଶୁଣିଣ ଗ୍ରହଣି ରୋଗ ମନେ ଭୟ କଲା
ତେତେବେଳେ ଦେବତାଙ୍କୁ କଥାଏ କହିଲା ।
ବୋଇଲା ଈଶ୍ୱର ସାକ୍ଷାତରେ ବ୍ରହ୍ମମୂର୍ତ୍ତି
ସେ ପ୍ରଭୁ ଶ୍ରୀଅଙ୍ଗେ କେହ୍ନେ ହୋଇବ ପ୍ରକୃତି
ପ୍ରକୃତି ଶଙ୍କା କରିବେ ଯେବେ ମହାଦେବେ
ମୁଁ କେହ୍ନେ ମୋକ୍ଷ ହେବି ସେ କଥା କହ ଏବେ
ଶୁଣି ଦେବତା ବୋଇଲେ ହେଉ ଆଛା ଆଛା
ତୋର ତରିବାକୁ ଯେବେ ହେଲା ମନୋବାଞ୍ଛା
ପ୍ରକୃତି ଶଙ୍କା କରିବେ ବସି ଯେତେ ନରେ
ସେମାନେ ଉଠିଣ ତୋତେ ଚାହିଁବେ ନେତ୍ରରେ
ଚାହିଁଲାମାତ୍ରେ ତୁ ଜାଣିଯିବୁ ମୋକ୍ଷ ହୋଇ
ଆଜ୍ଞାଦେଲୁ ନିଶ୍ଚିନ୍ତରେ ସୁଖେ ଥାଅ ରହି ।
ତୋତେ ଚାହିଁଣ ସମସ୍ତ ଲୋକେ ଉଠିଥିବେ
ତହିଁ ଉତ୍ତାରୁ ସରିଲେ ଶୌଚ ପ୍ରକାଶିବେ ।
ବ୍ରହ୍ମାଣ୍ଡଯାକରେ ଯେତେ ଲୋକଛନ୍ତି ପୁରି
ତୋତେ ଚାହିଁଲେ ସଲିଲେ ଶୌଚ ଯିବେ କରି
ଶୁଣିଣ ଗ୍ରହଣୀ ରୋଗ ବହୁ ଶ୍ରଦ୍ଧା କଲା
ଈଶ୍ୱର ଅଙ୍ଗରେ ଯାଇଁ ପ୍ରକୃତି କରିଲା ।
ମାୟାରେ ମିଛେ ଶଙ୍କର ପ୍ରକୃତି ଆସନ୍ତେ
ନର୍ମଦାକୁ ଦେଖିକରି କୁନ୍ଥାନ୍ତି ନିରତେ ।

ଅଜୀର୍ଣ୍ଣକ୍ରିୟା ବମନ ଓକାରକୁ କରି
ଟରାଟିଣ ବେନି ଆଖି ଚାହାନ୍ତି କି ମାରି ।
ହରିଙ୍କୁ ଦେଖି ନର୍ମଦା କଲା ମନେ ଭୟେ
ପଛପାରୁଶେ ବସିଣ ରମଣୀ ପରାୟେ ।
ବୋଇଲା ପାଇଲ କେଡ଼େ କ୍ଳେଶ ଆସି ସ୍ୱାମୀ
ଅଙ୍ଗଦ ଦେଇଅଛି ମାତ୍ର ପାଦେ ନାହିଁ ନମି ।
ଈଶ୍ୱର ବୋଇଲେ ତେବେ ଶୁଣ ପତିବ୍ରତା
ତୋ ଆଗରେ ପ୍ରାଣ ମୋର ଛାଡ଼ିଯେବେ ଯାନ୍ତା
ନରଦେହ ବହି କେତେ ସହିବି ମୁଁ କ୍ଳେଶ
ଏକରୋଗ ନୋହେ ପୁଣି ଧରେ ଶ୍ୱାସକାଶ ।
ହିକ୍କା ଧୂଗାଜୀ ଅଜୀର୍ଣ୍ଣ ବାଡ଼ି ପେଟଫୁଲା
ଦେଖିଲା ପଡ଼ିଶାଲୋକେ ବୋଲିବେତ ମଲା
ଆବର ପ୍ରକୃତି ଶଙ୍କା ଆଦି ହେଲା ଜାଣ
କ୍ଷଣକେ ଦଣ୍ଡକେ ଅଙ୍ଗ ଛାଡ଼ିଯିବ ପ୍ରାଣ ।
ଏହିରୂପେ ଦେବୀ ମାୟା ଲଗାନ୍ତେ ଶଙ୍କର
ତାହା ନର୍ମଦା ଜାଣି ନ ପାରେ ହୃଦେ ତାର ।
ବାନ୍ତି ଓକାର କରନ୍ତି ହର ପୁଣି କେତେ
ଦେଖିଣ ନର୍ମଦା ସତୀ ବିଚାରିଲା ଚିତ୍ତେ ।
ବୋଇଲା ଆସିଲା କେଡ଼େ ବୃଦ୍ଧ ବିଜେକରି
ବରଣ ହୋଇଛି ମାତ୍ର ନାହିଁ ପ୍ରୀତିକରି ।
ତଥାପି ବରଣବେଳୁ ହେଲେ ସ୍ୱାମୀ ମୋର
ସ୍ୱାମୀ ବିହୁନେ କରିବି କେହ୍ନେ ମୁହିଁ ଘର ।
ସେ ପ୍ରାଣେ ଥିଲେ ସିନା ମୋ ପ୍ରାଣ ଆଜି ଅଛି
ଏତେ ବୋଲି ପିନ୍ଧାଇଲା ନୂଆବାସ ବାଛି ।
ଉତ୍ତମ ଶଯ୍ୟାରେ ନେଇକରି ଶୁଆଇଲା
କାହିଁକି ଅଧୈର୍ଯ୍ୟ ସ୍ୱାମୀ ହେଉଛ ବୋଇଲା
ଉଷୁମପାଣି ଆଣିଣ ଦେହଯାକ ଧୋଇ
ହୃଦୟରେ ଲେପଦେଲା କର୍ପୂରକୁ ନେଇ ।
ଈଶ୍ୱର ବୋଇଲେ ସଖି ସରିଲା ମୋ ନଟ
ଜୀଇଲା ପ୍ରାୟ ମୋତେ ନ ଦିଶେ ବୁଦ୍ଧିବାଟ ।
ନିଶ୍ଚେଷ୍ଟେ ଶୋଇଲେ ଏତେ ବୋଲି ପଶୁପତି
ତାହା ଦେଖିଣ ମନରେ ଭାଳେ ମହାସତୀ ।
ବୋଇଲା ସ୍ୱାମୀ ମରିବେ ଯେବେ ମୋର ଆଜ
ନିଶ୍ଚୟେ ସତୀ ମୁଁ ହେବି କରି ପତିକାର୍ଯ୍ୟ ।
ଏତେ ପାଞ୍ଚି ସ୍ୱାମୀ ପାଶେ ବସିଲା ସୁନ୍ଦରୀ
ହରେ ରାମ କୃଷ୍ଣ ମୁଖେ ଉଚ୍ଚାରଣ-କରି ।
ଆପଣା ମନ୍ଦିରେ ଯେତେ ଥିଲା ଦ୍ରବ୍ୟମାନ
ବ୍ରାହ୍ମଣଙ୍କୁ ଡକାଇଣ ଦେଲା ସବୁ ଦାନ ।
ଚାରିପାଶେ ବସି ବିପ୍ରେ ନୃତ୍ୟେ ଗୀତ କଲେ
ଏଥୁ ଅନନ୍ତରେ ବୃଦ୍ଧ ପ୍ରାଣ ଛାଡ଼ିଦେଲେ ।

ଗ୍ରାମବାହାରେ ଖୋଳିଲେ ସତୀନେଇ ଗାତ
କାଠ ସଜାଡ଼ିଣ ତହିଁ କଲେ ଅଗ୍ନିଜାତ ।
ମାୟାକରି ସଦାଶିବ ଦେହଗଲେ ଧରି
ମାଟି ପିତୁଳା ଗୋଟିଏ ଶବ ରୂପ କରି ।
ଏ କଥାଗୋଟି କାହାକୁ ନାହିଁ ଯେ ଗୋଚର
କେବଳ ବ୍ରହ୍ମା ଜାଣନ୍ତି ପ୍ରଭୁ ଚକ୍ରଧର ।
ଋଷିମାନେ ଜାଣନ୍ତି ଯେ ଜାଣନ୍ତି ଶଙ୍କର
ଆଉ ଦେବତା ଜାଣନ୍ତି ଜାଣେ ସୁନାସୀର ।
ଶୁଣ ମନ୍ଦୋଦରୀ ନର୍ମଦାର ସତ୍ୟବାଣୀ
ଈଶ୍ୱର ଦେହେ ଛାଡ଼ିଣ ଗଲାରୁ ସେକ୍ଷଣି ।
ମୃତପିଣ୍ଡକୁ ବହିଣ ନେଲେ ଗ୍ରାମଲୋକେ
ସତୀକୁଣ୍ଡେ ପକାଇଣ ଦେଲେ ବେଦବାକ୍ୟେ
ଗଉରୀଙ୍କି ପୂଜାକରି ନର୍ମଦା ସୁନ୍ଦରୀ
ଅନେକ ଦାନଦେଲା ସେ ଦ୍ୱିଜଙ୍କୁ ହକାରି ।
ମୃତାହ ପଞ୍ଚକ ଆଦି ଦାନମାନ ଦେଇ
ବ୍ରତାଚାରୀମାନେଛନ୍ତି ସଙ୍ଗତେ ଗୋଡ଼ାଇ ।
ତାଳ ଖୋଳ ମରଦଳ ବାଜେ ଶଙ୍ଖଭେରୀ
ସୁଲକ୍ଷଣୀ ସ୍ତିରୀମାନେ ଦେଖନ୍ତି ଆବୋରି ।
ଯାବତ ଦେବ ସ୍ତିରୀଏ ଆସିଲେକ ଦେଖି
ନର୍ମଦାର ମହିମାକେ ପାରେ ଶାସ୍ତ୍ରେ ଲେଖି ।
ଅନଳକୁଣ୍ଡ ପାରୁଶେ ପ୍ରବେଶିଲା ଯାଇ
ବୁଲିଲା ସେ ତିନିବେଢ଼ା ହରିନାମ ଗାଇ ।
ଶରୀରରୁ ଅଳଙ୍କାର କାଢ଼େ ମନେ ପାଞ୍ଚି
ସୁଲକ୍ଷଣୀ ସ୍ତ୍ରୀମାନଙ୍କୁ ଦେଲା ହର୍ଷେ ଯାଚି ।
ତାହାର ମନ କଥାକୁ ଜାଣି ଦେବଗଣେ
ପ୍ରବେଶ ହୋଇଲେ ଆସି ଅଗ୍ନି ଚାରିକୋଣେ
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଦଶଦିଗପାଳ
ଋଷିଗଣଯାକ ଆସି ମିଳିଲେ ସକଳ ।
ନର୍ମଦାର ସତ୍ୟ କେହି ନ ପାରିଲେ ଭାଙ୍ଗି
ବରଦେବାର ନିମନ୍ତେ ସର୍ବେହେଲେ ବେଗି ।
ବ୍ୟର୍ଥେ ଏ ମରିବ ବୋଲି ସମସ୍ତେ ବିଚାରି
ବୋଇଲେ ସ୍ତିରୀକୁଳେ ଏ ଅଟେ ବ୍ରହ୍ମଚାରୀ ।
ଏହାକୁ ଯେ କଟୁକଥା ପାଞ୍ଚିବ ମନରେ
ତାହାକୁ ଯେ ଅପଘାତ ପଡ଼ଇ ତପୂରେ ।
ଏମନ୍ତ ସ୍ତିରୀମାନେଟି ସଂସାରରେ ଥିଲେ
ପୃଥ୍ୱୀକୁ ପବିତ୍ର ସେହୁ ଅଟେ ବିଷ୍ଣୁ ତୁଲେ ।
ଏତେବୋଲି ସର୍ବେ ଆସି ଧଇଲେ ତା କର
ବୋଇଲେ ସୁନ୍ଦରୀ ତୁରେ ମାଗ ବେଗେ ବର
ନର୍ମଦା ବୋଇଲେ ତୁମ୍ଭେ କେଉଁ ପୁରୁଷକି
ମୋର ସତ୍ୟ ଭାଙ୍ଗିବାକୁ ଆସିଛ କାହିଁକି ।

ଋଷିଏ ବୋଇଲେ ଜାଣ ଏହି ତିନି ସ୍ୱାମୀ
ସାକ୍ଷାତରେ ବ୍ରହ୍ମା ହର ପ୍ରଭୁ ଅନ୍ତର୍ଯ୍ୟାମୀ ।
ଏମାନେ ନ ଜାଣି ତୋତେ ଯାଚିଲେଣି ବର
ଏଡ଼େ କଥା ଛାଡ଼ି କେହ୍ନେ ଲୋଡ଼ୁ ମୃତ୍ୟୁଦ୍ୱାର
ଶୁଣିଣ ନର୍ମଦା ନାରୀ ଆନନ୍ଦ ହୋଇଲା
ସର୍ବ ଦେବତାଙ୍କୁ ସେହୁ ନମସ୍କାର କଲା ।
ବୋଇଲା ତୁମ୍ଭ ସଙ୍ଗେ ମୋ ନାମ ଯାଉରହି
ସକଳକାଳେ ଥିବି ମୁଁ ତୀର୍ଥ ନାମ ବହି ।
ଏହା ଶୁଣି ଦେବତାଏ ବୋଇଲେ ଯେ ହେଉ
ଆମ୍ଭ ସଙ୍ଗରେ ତା ନାମ ସବୁକାଳେ ଥାଉ ।
ପୃଥିବୀରେ ନଦୀରୂପ ବହିଁଥିବୁ ତୁହି
ବ୍ରହ୍ମା ଥିବାଯାଏ ଭୋଗ କରିବୁ ତୁ ମହୀ ।
ଆଦ୍ୟେ ସ୍ମରଣ କରିବେ ତୋତେ ସର୍ବ ଜନେ
ବିଭା ବ୍ରତ ସଂକଳ୍ପରେ ପଢ଼ିବେ ବ୍ରାହ୍ମଣେ ।
ନର୍ମଦା ଗଙ୍ଗା ଯମୁନା ସରସ୍ୱତୀ ଧରି
ବ୍ରାହ୍ମଣ ସଂକଳ୍ପ କରି ପଢ଼ିବେ ଉଚ୍ଚାରି ।
ବ୍ରହ୍ମା ବିଷ୍ଣୁ ଆଜ୍ଞାରେ ସେ ହେଲା ନଦୀରୂପା
ବହିଲା ମେରୁରୁ ଫୁଟି ପୃଥ୍ୱୀର ସ୍ୱରୂପା ।
ଏହି ରୂପେ ବରଦେଇ ସବୁ ଦେବତାଏ
ଯେଝା ପୁରକୁ ସେ ଚଳିଗଲେ ଯେଝାଠାଏ ।
ଶୁଣ ସୁନ୍ଦରୀ କହନ୍ତି ପ୍ରଭୁ ରଘୁନାଥ
ସତୀ ପତିବ୍ରତାପଣ ଅଟଇ ଏମନ୍ତ ।
ଗୋବିନ୍ଦ ଯାହାକୁ ଜାଣ କରନ୍ତି ସୁଦୟା
ତା ହୃଦଗୋଟି କେବଳ ଅଟେ ବିଷ୍ଣୁ ମାୟା ।
ବହନ ହୋଇ ତୁ ଏବେ ବିଭୀଷଣେ ବର
ଏଥେ କିଛି ଦୋଷ ନାହିଁ ମନେ ହେତୁ କର ।
ପୂର୍ବରୁ ବିଧାତା ମଧ ଲେଖିଅଛି ଆଣି
ବିଭୀଷଣ ରାଜାର ତୁ ହେବୁ ପାଟରାଣୀ ।
ଚନ୍ଦ୍ର ସୂର୍ଯ୍ୟ ଥିବାଯାକେ ଅମର ହୋଇବୁ
ପ୍ରଭାତେ ତୋହର ନାମ ସମସ୍ତେ ସାରିବୁ ।
ଶୁଣି ମନ୍ଦୋଦରୀ ରାଣୀ କର୍ମ ଅନୁସରି
ସତ ଏକଥା ବୋଲିଣ ପାଞ୍ଚେ ହେତୁକରି ।
ରଘୁନାଥଙ୍କର ଆଜ୍ଞା ବଚନକୁ ପାଳି
ବିଭୀଷଣର କୋଳରେ ବସେ ଯାଇବାଳୀ ।
ଆପଣେ ଦୁର୍ବା ଅକ୍ଷତ ହସ୍ତେ ଧରି ରାମ
ଅଭିଷେକ କରି ତାକୁ ଦେଲେ ଲଙ୍କାଗ୍ରାମ ।
ଆଜିଠାରୁ ଅକ୍ରାମର ହୋଇ ତୁହେଁ ଥାଅ
ନବଯୁବା ରୂପଧରି ସବୁଦିନେ ରହ ।
ଏକୋଇଶ ସସ୍ର ଛଅଶତ ଯାଏ ସୁତ
ତୁମ୍ଭର ହେଉ, ବୋଇଲେ ପ୍ରଭୁ ସୀତାକାନ୍ତ ।

ଏହ୍ନେ ବିଭୀଷଣ ମନ୍ଦୋଦରୀକି ବୁଝାଇ
ଅଶୋକରୁ ସୀତା ଅଣାଇଲେ ରଘୁସାଇଁ ।
ମଇଥିଳୀ ଶ୍ରୀରାମଙ୍କୁ ଦେଖି ବେନି ଡୋଳେ
ଅଧୋବଦନ ହୋଇଣ ଚାଲନ୍ତି ଭୂତଳେ ।
ଶ୍ରୀରାମ ବିଚ୍ଛେଦେ ତନୁ ଦିଶେ କ୍ଷୀଣପ୍ରାୟେ
ଶୁଖିଲା ସିଠୁଆ ବର୍ଣ୍ଣ ଦିଶୁଛନ୍ତି ମାଏ ।
ବେନି ନୟନୁ ଲୋତକଧାରା ବହେ ପୁଣି
ସୀତାଙ୍କୁ ଦେଖି କାନ୍ଦନ୍ତି ରାମ ଶୋକକରି ।
ଶ୍ରୀରାମଙ୍କର ଶ୍ରୀମୁଖ ଦେଖି ବଇଦେହୀ
ଏକଦୃଷ୍ଟି କରି ଦେବୀ ରହିଛନ୍ତି ଚାହିଁ ।
ଶ୍ରୀରାମ ବୋଇଲେ ସତୀ ପରୀକ୍ଷା ତୁ ଦିଅ
ଆମ୍ଭ ହୃଦୟରୁ ଦୂର ହେଉ ଯେ ସଂଶୟ ।
ଶୁଣି ଠାକୁରାଣୀ ଅଗ୍ନି ପରୀକ୍ଷାକୁ ଗଲେ
ତାହାଦେଖି ଲୋକମାନେ ଚମତ୍କାର ହେଲେ
ଯେତେବେଳେ ଶ୍ରୀରାମ ଯେ ଧରି କୋଳ କଲେ
ମୁଖରେ ଚୁମ୍ବନ ଦେଇ ନିନ୍ଦାରୁ ତରିଲେ ।
ପୁଷ୍ପକଯାନ ଆଣିଣ ଦେଲେ ବିଭୀଷଣ
ସୀତାଙ୍କୁ ଧରି ବସିଲେ ତହିଁ ରାମରାଣ ।
ସମସ୍ତେ ଆସିଣ ସେହି ରଥରେ ବସିଲେ
ଲକ୍ଷ୍ମଣ ହନୁ ପ୍ରଭୃତି ଯେଉଁମାନେ ଥିଲେ ।
ବିଭୀଷଣକୁ ବୋଲନ୍ତି ପ୍ରଭୁ ଦାଶରଥି
ଆଜିଠାରୁ ଲଙ୍କାଗଡ଼େ ହେଲ ନରପତି ।
ମନ୍ଦୋଦରୀ ସତୀ ମୁଖ ଚାହିଁ ରଘୁସାଇଁ
ବୋଲନ୍ତି ତୋ ନାମ ମହାବାକ୍ୟେ ଥାଉ ରହି
ରାମ ନାମ ଥିବାଯାକେ ଅମର ହୋଇଥା
ଆଜ୍ଞା ପାଇ ସୁନ୍ଦରୀ ଯେ ଛାଡ଼େ ହୃଦୁ ଚିନ୍ତା ।
ଏ ରୂପେ ଲଙ୍କାରେ ରାମ ସ୍ଥାପି ମନ୍ଦୋଦରୀ
ବସିଲେ ପୁଷ୍ପକ ଯାନେ ସୀତକୋଳେ ଧରି ।
ଆପଣା ରାଜ୍ୟକୁ ସ୍ୱାମୀ କଲେକ ଗମନ
ଶୂନ୍ୟରୁ ଦେବେ କରନ୍ତି କୁସୁମ ବର୍ଷଣ ।
ଭରତ ଅଛନ୍ତି ରହି ନନ୍ଦିଗ୍ରାମ ସ୍ଥାନେ
ଶ୍ରୀରାମ ବନଯିବାକୁ ହୋଇ ଦୁଃଖମନେ ।
ଭରତ ମନର କଥା ରାମଚନ୍ଦ୍ର ଜାଣି
ଋଷିମାନେ କହିବାରୁ ସବୁଛନ୍ତି ଶୁଣି ।
ବ୍ରହ୍ମଚାରୀ ସ୍ୱରୂପରେ ଛନ୍ତି ଦେହଧରି
ମସ୍ତକରେ ଜଟାଭାର ଯେହ୍ନେ ତପଚାରୀ ।
ପବନ ଆହାର କରି କାଟୁଥାନ୍ତି କାଳ
ପରିଧାନ କରିଛନ୍ତି ଶ୍ରୀଅଙ୍ଗେ ବକଳ ।
ପିଙ୍ଗଳବରନ ଜଟା ଶିରେ ଛନ୍ତି ବହି
ପୂଜନ୍ତି ରାମ ପାଦୁକା ସିଂହାସନେ ଥୋଇ ।

ଅନୁକ୍ଷଣେ ବସନ୍ତି ସେ ପାଦୁକାକୁ ସ୍ମରି
ଏହି ରୂପେ ଚତୁର୍ଦ୍ଦଶ ବର୍ଷ ଭୋଗ ସାରି ।
ରାବଣକୁ ମାରି ବିଜେ କଲେ ଆସି ରାମ
ଦେଖିଣ ଭରତ ଉଠି କଲେକ ପ୍ରଣାମ ।
ଭ୍ରତଙ୍କୁ ଧଇଲେ କୋଳ କରି ରଘୁନାଥ
ରାମ ପାଦୁକା ମୁଣ୍ଡରେ ବହିଛନ୍ତି ଭ୍ରତ ।
ମୁନିଗଣ ସଙ୍ଗେ ଘେନି ରାମଚନ୍ଦ୍ର ରାୟ
ମିଳିଲେ ଭ୍ରତ ଆଶ୍ରମେ କୌଶଲ୍ୟା ତନୟ ।
ଭରତର ହସ୍ତଗୋଟି ରାମଚନ୍ଦ୍ର ଧରି
ମୁଖେ ଚୁମ୍ବନ ଦେଇଣ ଆଶ୍ୱାସନା କରି ।
ରାମର ପାଦରେ ନମି ଭ୍ରତ ଶତ୍ରୁଘନ
ଆଗଭର ହୋଇଯାନ୍ତି ବୀର ହନୁମାନ ।
ମିଳିଲେ ସକଳେ ଯାଇଁ ଅଯୋଧ୍ୟା ନିକଟେ
ସରଯୁ ନାମେ ନଦୀର ପୂର୍ବଭାଗ ତଟେ ।
ଶ୍ରୀରାମଚନ୍ଦ୍ର ଆସିବା ଦେଖି ପୁରଜନେ
ମିଳିଲେ ଛାମୁରେ ଆସି ପାତ୍ରମନ୍ତ୍ରୀ ମାନେ ।
ବେଦମାନ ଉଚ୍ଚାରିଣ ମିଳିଲେ ବ୍ରାହ୍ମଣ
ଦୁନ୍ଦୁଭି ରାମତାଳି ଯେ ବାଜେ ରୁଣଝୁଣ ।
ଦିବ୍ୟବିମାନ ଆରୋହି ମହାରଥୀମାନେ
ଧ୍ୱଜପତାକା ଚିରାଳ ଉଡ଼ାଇଣ ଶୂନ୍ୟେ ।
ଉତ୍ତମ ଗଜ ଅଶ୍ୱରେ କିଏ ଅଛି ବସି
ଆଗେ ଆଗେ ଚଳିଯାନ୍ତି ବଶିଷ୍ଠ ମହର୍ଷି ।
ଗଣିକାଏ ଗୀତ ଗାଇ ନୃତ୍ୟ ଆରମ୍ଭନ୍ତି
ମଗଧ ଯେ ଯୋଡ଼ିଶଙ୍ଖ ଧରିଣ ବଜାନ୍ତି ।
ସକଳ ଘର ଦୁଆରେ ଜଳେ ଦୀପାବଳି
ଦାଣ୍ଡେ ଚାଲି ଆସୁ ଆସୁ ଦ୍ୟନ୍ତି ହୁଳହୁଳି ।
ବିପ୍ରଗଣଙ୍କୁ ଚଳାନ୍ତି ଆଗେ ରଘୁନାଥ
ଦେଖିଣ ଅଯୋଧ୍ୟାଜନେ ହୁଅନ୍ତି କୃତାର୍ଥ ।
ରାମ ଲକ୍ଷ୍ମଣ ସୀତାଙ୍କୁ ସର୍ବେଛନ୍ତି ଚାହିଁ
ଆନନ୍ଦରେ ଦେଖୁଛନ୍ତି ମୁଖେ ଗୀତ ଗାଇ ।
ଶ୍ରୀରାମ ପାଦୁକା ଭ୍ରତ ବହି ମଥାପରେ
ଚାମର ଆଲଟ ଗୁଚ୍ଛ ଢ଼ାଳନ୍ତି ଯେ ନରେ ।
ଭରତ ଚଳି ଆସନ୍ତି ରାମ ପଛେ ପଛେ
ସକଳ ଦେବତା ତାହା ଦେଖନ୍ତି ପ୍ରତ୍ୟକ୍ଷେ ।
ସୁଗ୍ରୀବ ସେ ବିଭୀଷଣ ଅଙ୍ଗଦ ଏ ତିନି
ଶ୍ୱେତଚାମର ଢ଼ାଳନ୍ତି ଦକ୍ଷକରେ ଘେନି ।
ଶତ୍ରୁଘନ ବୀର ହସ୍ତେ ଧରି ଧନୁଶର
ଆଗରେ ଚାଲନ୍ତି ଭାଟେ କରି କେୟବାର ।
ଋଷିର ହସ୍ତରେ ଧରିଛନ୍ତି କମଣ୍ଡଳ
ଯାବତତୀର୍ଥରୁ ଆଣି ରଖିଛନ୍ତି ଜଳ ।

ନାନା ପୁଷ୍ପମାନ ହନୁମନ୍ତ ଧରି କରେ
ଚାଲଇ ଯେ ଗେଲେ ଗେଲେ ନାଚି ଧୀରେ ଧୀରେ ।
ଯୁବତୀଗଣ ମଧ୍ୟରେ ବିଜେ ରଘୁନାଥ
କୋଦଣ୍ଡ କରରେ ଧରିଛନ୍ତି ବେନିଭ୍ରାତ ।
ଶୂନ୍ୟେଥାଇ ଦେବତାଏ କୁସୁମ ବରଷି
ନକ୍ଷତ୍ରମଧ୍ୟେ ଯେସନେ ପ୍ରକାଶଇ ଶଶୀ ।
ଶ୍ରୀରାମଚନ୍ଦ୍ର ସଙ୍ଗରେ ଘେନି ତିନିଭାଇ
ଆପଣାପୁରେ ପ୍ରବେଶ ହୋଇଲେକ ଯାଇ ।
ଜନନୀଙ୍କ ପାଦେ ରାମ କଲେ ନମସ୍କାର
କଲ୍ୟାଣ କରିଲେ ମାଏ ପ୍ରସାରିଣ କର ।
କୈକେୟୀ ସୁମିତ୍ରା ପାଦେ ନମିଲେକ ଯାଇଁ
କଲ୍ୟାଣ କରିଲେ ମାଏ ମୁଖେ ଚୁମ୍ବ ଦେଇ ।
ଶ୍ରୀରାମଚନ୍ଦ୍ରଙ୍କୁ ହର୍ଷେ ଦେଖି ମାତାଗଣେ
ଆଶୀର୍ବାଦ କରୁଛନ୍ତି ହୋଇ ଜଣେ ଜଣେ ।
ରଘୁନାଥଙ୍କର ଶିରେ ଦେଖି ଜଟାଭାର
ହୁଅନ୍ତି ଜନନୀମାନେ ଅତି ଚମତ୍କାର ।
ଏଥି ଉତ୍ତାରେ ମିଳିଲେ ଆସି ବିପ୍ରଗଣ
ବଶିଷ୍ଠ ମାର୍କଣ୍ଡ ଆଉ ଅଗସ୍ତି ବ୍ରାହ୍ମଣ ।
ମାର୍କଣ୍ଡେୟ ବୋଇଲେକ ଜଟାଫିଟା ଏବେ
ମେଦିନୀର ଭାରା ନାଶି ମିଳିଲ ଯେ ଶୁଭେ ।
ଋଷିଙ୍କ ବାକ୍ୟରେ ରାମ ଫେଡ଼ି ଜଟାଭାର
ବିପ୍ରମାନଙ୍କୁ ସେ ଦେଲେ ବହୁ ଉପହାର ।
ସ୍ୱର୍ଣ୍ଣ ଗରିଆରେ ପୂର୍ଣ୍ଣ କରି ତୀର୍ଥ ଜଳ
ବସିଲେ ଅଭିଷେକରେ ଦଶରଥ ବାଳ ।
ନବୀନ ବାସ ପିନ୍ଧିଲେ ନୂଆ ଅଳଙ୍କାର
ରତନ ମୁକୁଟ ଆଣି ବାନ୍ଧିଲେକ ଶିର ।
ଜାନକୀଙ୍କୁ କୋଳେ ଧରି ହେଲେ ଅଭିଷେକ
ଆନନ୍ଦ ହୋଇ ଦେଖନ୍ତି ଜଗତର ଲୋକ ।
ଶ୍ରୀରାମଚନ୍ଦ୍ର ରାଜ୍ୟରେ ହେଲେ ମହାରାଜା
ସତ୍ୟଯୁଗ ପ୍ରାୟ କରି ପାଳିଲେ ପରଜା ।
କାମଧେନୁ ପ୍ରାୟ ପୃଥ୍ୱୀ ହେଲା ଶସ୍ୟମୟୀ
ପ୍ରଜା ଭୁଞ୍ଜିଲେ ବିପୁଳ ଭୋଗ ତହିଁ ରହି ।
ସେବନ୍ତି ଶ୍ରୀରାମ ପାଦେ ଜନକର ସୁତା
ପତିବିନୁ ଆନକଥା ନ ଜାଣନ୍ତି ସୀତା ।
ଶ୍ରୀରାମଚନ୍ଦ୍ର ପୃଥ୍ୱୀରେ ହେଲେ ମହାରାଜା
ପୃଥିବୀରେ ରହିଲେକ ସୁଖେ ଜନପ୍ରଜା ।
ଅନେକ ଯାଗ ଯଜ୍ଞ ଯେ କଲେ ମହାରାଜେ
ବଶିଷ୍ଠ ମନ୍ତ୍ର ପଢ଼ିଣ ଅଗ୍ନି ଦେବ ପୂଜେ ।
ଚାରିବେଦୀ ବ୍ରାହ୍ମଣଙ୍କୁ ଆଣିଲେ ହକାରି
ପୃଥ୍ୱୀ ବାଣ୍ଟିଦେଲେ ପ୍ରଭୁ ଚାରିଭାଗ କରି ।

ହୋତାବରଣ ବିପ୍ରଙ୍କୁ ପୂର୍ବଦିଗ ଦେଲେ
ପଶ୍ଚିମଭାଗେ ଅଥର୍ବବେଦୀ ବସାଇଲେ ।
ବସିଲେ ଉତ୍ତରଭାଗେ ସାମବେଦୀ ଦ୍ୱିଜ
ଦକ୍ଷିଣରେ ଯଜୁର୍ବେଦୀ ହୋଇଲେ ଆଚାର୍ଯ୍ୟ
ଏହିରୂପେ ପୃଥ୍ୱୀବାଣ୍ଟି କଲେ ବିପ୍ରଭୋଗ
ବିପ୍ରଙ୍କୁ ସେ ଦେଲେ ଦାନ ରାମ କରି ତ୍ୟାଗ ।
ଦାନପାଇ ଦ୍ୱିଜେ ବଡ଼ ସନ୍ତୋଷ ହୋଇଲେ
ଶ୍ରୀରାମ ଚାରିଭାଇଙ୍କୁ ଆଶୀର୍ବାଦ କଲେ ।
ବୋଲନ୍ତେ ପୁତ୍ର ଜନମ ହ୍ୱନ୍ତେ ଶ୍ରୀରାମର
ପୁତ୍ର ନ ଥିବା ଘର ନ ଦିଶେ ଶୋଭାକର ।
ଏହି ଚାରିଭାଇଙ୍କର ସନ୍ତତି ଜନ୍ମନ୍ତୁ
ଏଡ଼େ ପୁତ୍ର ଅପୁତ୍ରିକେ ବୈକୁଣ୍ଠେ ନ ଯାନ୍ତୁ ।
ଏମନ୍ତ ପ୍ରକାରେ ଭୋଗ କେତେ ଦିନ ଗଲା
ଶୁଣ ପରୀକ୍ଷ ଶ୍ରୀରାମ ମହିମା ଯେ ହେଲା ।
ଚାରିଭାଇଙ୍କର ପତ୍ନୀ ହେଲେ ଗର୍ଭବତୀ
ଶ୍ରୀରାମ ଅନୁଗ୍ରହରେ ଫିଟେ ମନୁଭ୍ରାନ୍ତି ।
ଏହିରୂପେ ଷଡ଼ମାସ ଭୋଗ ହୋଇଯାନ୍ତେ
ଅନ୍ଧାରି ବିଜେ କରିଲେ ଶ୍ରୀରାମ ଗୁପତେ ।
ଶ୍ରୀରାମଙ୍କ ନିଜ ଭୃତ୍ୟ ସଙ୍ଗତେ ଅଛନ୍ତି
ଗ୍ରାମେ ଗ୍ରାମେ ରାମ ଦାଣ୍ଡେ ଦାଣ୍ଡେ ଚଳିଯାନ୍ତି
ଆସନ୍ତେଣ ଏକଘରେ ଶୁଭୁଅଛି କଳି
ପତି ପତ୍ନୀ ଦୁହିଁଙ୍କ ଯେ ଲାଗେ ବାରୁଆଳି ।
ସ୍ୱାମୀ ବୋଇଲେକ କେଡ଼େ ଅସତୀତୁ ଅଟୁ
ତୋର କଥାଗୋଟିମୋର ସଭା ମଧ୍ୟେ ଭେଟୁ
ମୁହିଁ ବୋଲି ତୋତେ ରଖିଅଛି ସ୍ନେହବହି
ଆନଲୋକେ ହେଲେ ମୁଣ୍ଡେ ମାରନ୍ତା ପାଞ୍ଚୋ
ନାକ କାନ କାଟି ଦିଅନ୍ତାଣି ଘଉଡ଼ାଇ
ଦାଣ୍ଡେ ଦାଣ୍ଡେ କାନ୍ଦି କାନ୍ଦି ଯାଆନ୍ତୁ ପଳାଇ ।
ପତ୍ନୀ ବୋଇଲାକ ତୁମ୍ଭେ ରାମଠାରୁ କେଡ଼େ
କଳିରେ କାହାକୁ କେହୁ କଥାରେ ନ ହୁଡ଼େ ।
ଶ୍ରୀରାମ ଆଣିଲେ ଦଶମଥା ଘରୁ ସୀତା
ଅଭିଷେକ ହେଲେ ଆଣି ଜନକ ଦୁହିତା ।
ଚଉଦ ମାସ ରାବଣ ଘରେ ରହିଥିଲେ
ତାଙ୍କୁ ଆଣି ରାମ ଘରେ ପାଟରାଣୀ କଲେ ।
ବୁଝିଲେ ମୁଁ ଘରୁ ଗୋଡ଼ ପଦାକୁ ନ କାଢ଼ି
ଅକାରଣେ କଥା ତୁମ୍ଭେ କହୁଅଛ ହୁଡ଼ି ।
ଭାରିଯା ମୁଖରୁ ପତି ଏସନକ ଶୁଣି
ବୋଇଲା ତାହାଙ୍କଠାରୁ ବଡ଼ ଦୋଚାରୁଣୀ ।
ବୁଝିଲେ ସେ ମହାଲକ୍ଷ୍ମୀ ସବୁଘରେ ଥାନ୍ତି
ରାବଣ ନେଲା ମାତ୍ରକେ ଗଲା ତାଙ୍କ ଜାତି ।
ବୁଝିଲେ ତ ପ୍ରତ୍ୟକ୍ଷରେ ରାମ ନାରାୟଣ
ସୀତା ଠାକୁରାଣୀ ଲକ୍ଷ୍ମୀ ପ୍ରତ୍ୟକ୍ଷରେ ଜାଣ ।
ତୁହି ଛାର ସ୍ତିରୀ ବୁଦ୍ଧି କେଡ଼େ ଲୋକତୁହି
ଲକ୍ଷ୍ମୀଙ୍କି ତୁ ଚଣ୍ଡାଳୁଣୀ ବୋଲି କହୁ ବାଇ ।
ଏହିରୂପେ ଉଚ୍ଚବାଚ ହ୍ୱନ୍ତି ଦୁହେଁ ପୁଣି
ସେ କଥା ସବୁ ଶୁଣିଲେ ପ୍ରଭୁ ରଘୁମଣି ।
ଲୋକ ଅପବାଦକୁ ସେ ମନେ ଭୟ କରି
ନିନ୍ଦା ଶୁଣି ମହାଦୁଃଖୀ ହେଲେ ରାବଣାରି ।
ଦେହଧାରୀ ହୋଇବାରୁ ଲାଗେ ଅପବାଦ
ବିଷ୍ଣୁଙ୍କୁ ହେଲେ ଛାଡ଼ି ନ ଗଲା ତା ପ୍ରମାଦ ।
ଶୁଣ ହେ ପରୀକ୍ଷ ନୃପେ ଏଥୁଅନ୍ତେ ବାଣୀ
ମନ୍ଦିରକୁ ବିଜେକରି ଆସି ରଘୁମଣି ।
ସୀତାଙ୍କୁ କୋଳରେ ଧରି ପଲ୍ୟଙ୍କେ ବସିଲେ
ନାନା ପ୍ରେମ ରସଭରେ ରାତି କଟାଇଲେ ।
ଶଯ୍ୟାରୁ ଉଠି ଶ୍ରୀରାମ ସୀତାଙ୍କୁ ପୁଛନ୍ତି
ଗର୍ଭ ଆସି ଉଚ୍ଚ ଏବେ ଦିଶିଲା ବୋଲନ୍ତି ।
କି କି ମନସାଧ ଲାଗୁଅଛି ମୋତେ କହ
ଯାହା ମାଗିବୁ ତାହା ମୁଁ ଦେବି କରିସ୍ନେହ ।
ଶୁଣିଣ ହସନ୍ତି ମନେ ମନେ ଠାକୁରାଣୀ
ବୋଲନ୍ତି ଶ୍ରୀରାମ ବେଗେ ସରିଲାକ ପୁଣି ।
ମୁହିଁ କିସ ମାଗିବି ସେ ନ ଜାଣନ୍ତି କିସ
ଅନ୍ତର୍ଯ୍ୟାମୀ ଅଟନ୍ତି ସେ ସ୍ୱାମୀ ଜଗଦୀଶ ।
ମୁଁ ନ ମାଗିଲେ ସ୍ୱାମୀଙ୍କ ଲୀଳା ନ ଭାଜଇ
ମୋର ଜନ୍ମଦିନ ମାଏଛନ୍ତି ମୋତେ କହି ।
ମୁଁ ଗଲେ ବନକୁ ଜନମିବେ ଲବ କୁଶ
ଏହି କଥା ଧ୍ରୁବ ଜାଣ ହୋଇବ ଅବଶ୍ୟ ।
ବାଲ୍ମୀକି ଆଶ୍ରମେ ଯାଇ କଟାଇବି କାଳ
ଏହି କଥା ବିହି ମୋର ଲେଖିଛି କପାଳ ।
ଏତେ ପାଞ୍ଚଣ ଜାନକୀ ମନେ କରି କ୍ଷୋଭ
ରାମଙ୍କୁ ବୋଇଲେ ମୋତେ ପକ୍ୱଫଳ ଦେବ
ପକ୍ୱଫଳକୁ ହେଉଛି ମୋର ମନେ ଇଚ୍ଛା
ରାମ ବୋଇଲେ ଉତ୍ତମ କଲ ତୁମ୍ଭେ ବାଞ୍ଛା ।
ବୋଇଲେ ସଖି ତେବେ ତୁ ବନେ ବେଗେ ଯାଅ
ମିଳିବ ବାଲ୍ମୀକି ଋଷି ଘରେ ଅପ୍ରମେୟ ।
ଯାବତ ଫଳ ରସେ ସେ ସ୍ଥାନ ଅଛି ପୂରି
ମନକଲେ ଆଣି ଦେଉଥିବେ ତପଚାରୀ ।
ଏହା ଶୁଣି ବଇଦେହୀ ହେଲେ ମନେ ତୋଷ
ଏଥୁ ଅନ୍ତେ ଆନବାଣୀ ଶୁଣ କୁରୁବଂଶ ।
ଲକ୍ଷ୍ମଣକୁ ଚାହିଁ ଆଜ୍ଞା ଦେଲେ ସୀତାକାନ୍ତ
ପାଶରେ ବସାଇ ତାଙ୍କୁ କହନ୍ତି ଏକାନ୍ତ ।

ବୋଇଲେ ସୀତାଙ୍କୁ ଛାଡ଼ି ଆସ ତୁ ବିପିନେ
ଏକଥା ଘେନିବୁ ଆମ୍ଭେ କେଡ଼େ କରିମନେ ।
ଶୁଣିକରି ସଉମିତ୍ରୀ ରାମ ଆଜ୍ଞା ପାଇ
ବନସ୍ତକୁ ନେଲେ ସୀତା ରଥରେ ବସାଇ ।
ବାଲମୀକ ଋଷିଙ୍କର ଆଶ୍ରମ ନିକଟେ
ସୀତାଙ୍କୁ ଗଲେକ ଛାଡ଼ି ସୁମିତ୍ରାଙ୍କ ଚାଟେ ।
ଏଥିଅନନ୍ତରେ ଶୁଣ ଜାନକୀ ପ୍ରସଙ୍ଗ
ଜନମିଲେ କିଛି ଦିନେ ସୀତ ପୁତ୍ର ଆଗ ।
ଭୂମିରେ ପଡ଼ି କାନ୍ଦନ୍ତି ପୁତ୍ରେ ତଡବଡ଼ି
ବାଲ୍ମୀକି ଋଷିଙ୍କ କର୍ଣ୍ଣେ ଶୁଭିଲା ସେ ରଡ଼ି ।
ଧ୍ୟାନରେ ଜାଣିଲେ ରାମ ପୁତ୍ର ହେଲା ବୋଲି
ତତକ୍ଷଣେ ଉଠି ଋଷି ବନେ ଗଲେ ଚଲି ।
ଜାନକୀଙ୍କୁ ବୋଲେ ତୁମ୍ଭେ ରାମପତ୍ନୀ ପରା
ତୋ ଦୁଃଖଦେଖି ଧାଇଁଛୁ ଆମ୍ଭେ ହୋଇତ୍ୱରା
ଜଗତମାତାଙ୍କୁ କେହୁ ଦେଲା ଏଡ଼େ କଷ୍ଟ
ଆସିଲେ ଗର୍ଭ ଭରାରେ ଉଚ୍ଚ ବଡ଼ ବାଟ ।
ବନସ୍ତେ ପଶିଲେ ଆସି କେତେ ଦୁଃଖପାଇ
ଏଡ଼େ କଷ୍ଟେ ଜନମିଲେ ପୁଣି ପୁତ୍ର ଦୁଇ ।
ବାଳକେ ଜନ୍ମିଲେ ପୁଣି ହୋଇଣ ନିର୍ମାକ୍ଷୀ
ତାହାକୁ ବୋଲିଲା ଏହା ଧାତା ଅଛି ଲେଖି ।
ମହାଲକ୍ଷ୍ମୀ କର୍ମେ ଲେଖିଅଛି ଭଲା ବିହି
ଆନଲୋକ ବଡ଼ବୋଲି ଯେହ୍ନେ ବୋଲୁଥାଇ
ନ ଜାଣିଣ ନୀଚ ଲୋକ ନିନ୍ଦନ୍ତି ବିହିକି
କର୍ମ ଏକା ମୂଳ ଅଟେ ସକଳ ପ୍ରାଣୀଙ୍କି ।
ଲକ୍ଷ୍ମୀ ହେଲେ କରମକୁ ନ ପାରିଲେ ମେଣ୍ଟି
ଆଉ ଜନମାନଙ୍କୁ କି ଲେଖି ନବ ସୃଷ୍ଟି ।
ଏତେ ପାଞ୍ଚି ମନ ମଧ୍ୟେ ବାଲ୍ମୀକି ମହର୍ଷି
ସୀତାଙ୍କୁ ବୋଇଲେ ଆଗୋ ଶୁଣ ଶୁଭ୍ରକେଶୀ
ଅନଳ ପରୀକ୍ଷା କରି ଗୃହେ ଯିବା ଘେନି
ଲୋକନିନ୍ଦାରୁ ପାରି ଗୋ ହେବ ରାମପତ୍ନୀ ।
ଏହା ଶୁଣି ଠାକୁରାଣୀ ମନେ ଅଳ୍ପ ହସି
ବୋଇଲେ ସଂସାରେ ମୁହିଁ ନୁହେଁ କାର ଦୋଷୀ
ଶତେଥର ମୋତେ ଅଗ୍ନି ମଧ୍ୟେ ପୂରାଇଲେ
ସ୍ୱର୍ଣ୍ଣ ଅଧିକେ ପ୍ରକାଶୁ ଥିବି ମୁହିଁ ଭଲେ ।
ଦୋଷୀଲୋକ ଅଳପକେ ସଂସାରେ ମରନ୍ତି
ପଶୁଛି ଅଗ୍ନିରେ ତେବେ ଦେଖ ଆହେ ଯତି ।
ଏତେ ବୋଲି ସୀତାଅଗ୍ନି ମଧ୍ୟେ ଗଲେ ପଶି
ଦଗଧ କାଞ୍ଚନ ପ୍ରାୟ ପ୍ରକାଶିଲା ଆସି ।
ଶୁଣ ହେ ପରୀକ୍ଷ ନୃପ ସୀତା କରାମତ
ନାହିଁ କେହି ସ୍ତିରୀକୁଳେ ଏଡ଼େକ ପବିତ୍ର ।

ଅଗ୍ନି ଭିତରେ ପଡ଼ିଣ ବାହାର ହୁଅନ୍ତେ
ନିଷ୍କଳଙ୍କ ସୀତା ବୋଲି ଜାଣି ତପୋବନ୍ତେ ।
ବୁଝିଲେ ସବୁ ଦେହରେ କଳଙ୍କ ପୂରିଛି
ନିଷ୍କଳଙ୍କୀ ସୀତା ଅଟେ ଜନକର ବସ୍ଥି ।
ଏତେବୋଲି ଲବକୁଶ ସଙ୍ଗତରେ ଧରି
ସୀତାଦେବୀଙ୍କୁ ଆଣିଲେ ଗୃହେ ତପଚାରୀ ।
ପର୍ଣ୍ଣକୁଟୀର ଭିତରେ ଦେଲେ ନେଇ ସ୍ଥାନ
ମାତା ପୁତ୍ର ତିନିଙ୍କି ସେ କରନ୍ତି ପାଳନ ।
ଏମନ୍ତେ ସେ କହୁଁ କହୁଁ କିଛି ଦିନ ଅନ୍ତେ
ସୀତା ଦେବୀଙ୍କୁ ଲୋଡ଼ନ୍ତେ ପୁଣି ରଘୁନାଥେ
ଏଥିଅନନ୍ତରେ ରାମ ଖବର ପାଇଲେ
ଜାନକୀ ଥିବା ସ୍ଥାନକୁ ବିଜେ କରିଗଲେ ।
ଶ୍ରୀରାମ ଆସିଲେ ବୋଲି ଜାଣି ସୀତାମନେ
ବୋଇଲେ କିରୂପେ ଭେଟହେବ ସ୍ୱାମୀ ସ୍ଥାନେ
ଏଡ଼େ ପ୍ରଭୁ ହସ୍ତ ଧରି ହେଲି ମୁଁ ନିର୍ମାକ୍ଷୀ
ବୁଝିଲେ ତ ଦୀନଜନ ପତ୍ନୀ କେଡ଼େ ସୁଖୀ ।
ଭୋ ଜନନୀ ବାସୁମତୀ ହୁଅ ବେନି ଫାଳ
ଶ୍ରୀରାମ ଦେଖୁଁ ଦେଖୁଁ ମୁଁ ଯିବି ନିତ୍ୟସ୍ଥଳ ।
ମୋହର ଯିବା ଦେଖି ସେ ପଛରେ ଆସନ୍ତୁ
ଅଇସୁଲକ୍ଷଣୀ ବୋଲି ଜଗତେ ବୋଲନ୍ତୁ ।
ଆଜ୍ଞା ପ୍ରମାଣେ ବସୁଧା ହେଲା ବେନିଫାଳ
ସ୍ୱାମୀ ମୁଖ ଚାହିଁ ସୀତା ପଶିଲେ ପାତାଳ ।
କ୍ଷୀର ବଇକୁଣ୍ଠେ ଯାଇ ହୋଇଲେ ପ୍ରବେଶ
ସେବାରେ ଲାଗିଲେ ଆସି ସର୍ବ ରାଣୀହଂସ
ଏଥି ଅନନ୍ତରେ ଶୁଣ ପରୀକ୍ଷ ରାଜନ
ସୀତା ଯିବା ଦେଖି ରାମ ହେଲେ ଛନ୍ନ ଛନ୍ନ ।
ପାଞ୍ଚିଲେ ସରିଲା ରାମ ଅବତାର ଲୀଳା
ସୀତା ତେଜିଗଲେ ମୋତେ କରି ଅସଙ୍ଖୋଳା ।
ଲକ୍ଷ୍ମୀ ଗଲେ ନାରାୟଣ କେବେ ରହିନ୍ତିକି
ଏକଇ ଶରୀର ଗୋଟି ଦୁହେଁ ନୁହନ୍ତିକି ।
ଏତେବୋଲି ଲବଶୁକ ପୁତ୍ର ଧରି ସଙ୍ଗେ
ଅଯୋଧ୍ୟାନଗ୍ରେ ମିଳିଲେ ରାମ ଯାଇ ବେଗେ
ସେ ନଗ୍ରେ ଲବକୁଶଙ୍କୁ ଦେଲେ ରାଜାକରି
ତିନି ଭାଇ ପୁତ୍ରଙ୍କୁ ସେ ଆଣିଲେକ ବରି ।
ତାହାଙ୍କୁ ରାମଯେ ରାଜ୍ୟଦେଲେ ସବୁ ବାଣ୍ଟି
ପୁତ୍ରଙ୍କର ନାମମାନ କହିବା ଶୁଣଟି ।
ଲକ୍ଷ୍ମଣ ପୁତ୍ର ଅଙ୍ଗଦ ଚନ୍ଦ୍ରକେତୁ ଦୁଇ
ଭରତର ପୁତ୍ର ତକ୍ଷ ପୁଷ୍କଳ ଅଟଇ ।
ଶତ୍ରୁଘ୍ନ ପୁତ୍ର ସୁବାହୁ ଶତ୍ରୁ ଘାତୀ ଜାଣ
ପରୀକ୍ଷ ଆଗେ କହନ୍ତି ବ୍ୟାସଙ୍କ ନନ୍ଦନ ।

ଚନ୍ଦ୍ରଜ୍ୟୋତିରେ ଲକ୍ଷ୍ମଣ ପୁତ୍ର ହେଲେ ରାଜା
ଅଯୋଧ୍ୟାରେ ଲବ କୁଶ ପାଳିଲେ ପରଜା ।
ଗନ୍ଧର୍ବ ଦେଶକୁ ଦେଇ ଭରତ ପୁତ୍ରଙ୍କୁ
ରାଜା କରିଦେଲେ ରାମ ତହିଁରେ ତାହାଙ୍କୁ ।
ଦିଗବିଜେ ଶତ୍ରୁଘନ ଲବଣଙ୍କୁ ମାରି
ତାହା ପୁତ୍ରଙ୍କୁ ଆସିଲେ ତହିଁ ରାଜା କରି ।
ଜାନକୀ ଗଲା ଦିନରୁ କୌଶଲ୍ୟାଙ୍କ ସୁତେ
ବିଶାଦେ ବସି ଝୁରନ୍ତି ମନେ ଅନୁବ୍ରତେ ।
ସ୍ତିରୀ ବା ପୁରୁଷ କାହା ସଙ୍ଗେ ସଙ୍ଗନୋହି
ଏକାନ୍ତେ ସେ ବସିଥାନ୍ତି ମନେ ଚିନ୍ତାବହି ।
ପୁତ୍ରଙ୍କୁ ରାଜା କରିଣ ବ୍ରହ୍ମଚର୍ଯ୍ୟ ଦେଶେ
ବସିଲେ ଶ୍ରୀରାମଚନ୍ଦ୍ର ଜ୍ଞାନ ଉପଦେଶେ ।
ସସ୍ର ବରଷ ପୁରିଲେ ପୁଣି ତ୍ରୟୋଦଶେ
ଏ ରୂପେ ସେ ଭୋଗକଲେ ବ୍ରହ୍ମଚର୍ଯ୍ୟ ବେଶେ
ପୁତ୍ରର ବେଶ ଦେଖିଣ ମାତାମାନେ ଆସି
ବୋଇଲେ ବୃଦ୍ଧ ହୋଇଣ କେତେଥିବୁ ବସି ।
ଭୂମିରେ ନ ପାରୁ ଏବେ ଉଠି ବସି ଚାଲି
ସ୍ୱାମୀର କାର୍ଯ୍ୟ କରିଣ ସର୍ବେ ଯିବୁ କାଲି ।
ତୁଣ୍ଡରୁ ଯେ ଦାନ୍ତଯାକ ଗଲାଣି ତ ଝଡ଼ି
ପାକୋଇ ହୋଇବସିଛୁ ସର୍ବେ ହୋଇବୁଢ଼ୀ ।
ଶୁଣି ରଘୁନାଥ ବଡ଼ ସନ୍ତୋଷ ହୋଇଲେ
ଯାଅ ଯାଅ ମାତାମାନେ ବୋଲିଆଜ୍ଞା ଦେଲେ
ଶୁଣିଣ ମାତାମାନେ ଯେ ଅଗ୍ନି ଜାଳିକରି
ପଡ଼ିଲେ ତହିଁରେ ଯାଇ ସନ୍ତକକୁ ଧରି ।
ମାତାମାନଙ୍କର ଶୁଦ୍ଧି ସାରି ରଘୁନାଥ
ସଉମିତ୍ରିକି କହିଲେ କଥା କରି ଗୁପ୍ତ ।
ବୋଇଲେକ ବୈକୁଣ୍ଠକୁ ଏବେ ଆମ୍ଭେ ଯିବୁ
କ୍ଷୀରଶାୟୀ ଶଯ୍ୟାକୁ ତୁ ସଜ କରିଥିବୁ ।
ଶୁଣିଣ ସେ ସଉମିତ୍ରୀ ରାମ ଆଜ୍ଞା ବୋଲେ
ସପ୍ତଫଣା ପ୍ରକାଶିଣ ବୈକୁଣ୍ଠକୁ ଗଲେ ।
ଭରତ ଶତ୍ରୁଘନଙ୍କୁ ଚାହିଁ ରାମରାୟେ
ବୋଇଲେକ ଶଂଖ ଚକ୍ର ରୂପ ଧର ତୁହେଁ ।
ଆମ୍ଭର କରେ ଲାଗିଣ ତୁହେଁ ଆସି ରହ
ବୈକୁଣ୍ଠକୁ ଯିବ ଚଳି ଧରି ଏହି ଦେହ ।
ଶୁଣି ଭରତ ଶତ୍ରୁଘ୍ନ ଆଜ୍ଞା ପରମାଣେ
ଶ୍ରୀରାମ କରେ ଲାଗିଲେ ଆସି ତତକ୍ଷଣେ ।
ଭରତ ଶତ୍ରୁଘ୍ନଙ୍କର ବେନି ପତ୍ନୀ ପୁଣି
ନିତ୍ୟସ୍ଥଳକୁ ଚଳିଣ ଗଲେ ସେହିକ୍ଷଣି ।
ରକ୍ଷବାନର ଆଦି ଏ ଯେତେ ଲୋକ ଥିଲେ
ଦେବରୂପ ଧରି ସର୍ବେ ସ୍ୱର୍ଗକୁ ଚଳିଲେ ।
କୁସୁମ ବୃଷ୍ଟି କରନ୍ତି ଦେବେ ଶୂନ୍ୟେ ଥାଇ
ଶ୍ରୀରାମ ଗଲେ ସରଯୁ ନଦୀ ପାରହୋଇ ।
ବାଜଇ ଶଂଖ ମହୁରୀ ବାଦ୍ୟ ଅପ୍ରମିତ
ଆନନ୍ଦେ କରନ୍ତି ଅପସରା ମିଳି ନୃତ୍ୟ ।
ବ୍ରହ୍ମା ଇନ୍ଦ୍ର ରୁଦ୍ର ଆଦି ଦଶ ଦିଗପାଳେ
ଶ୍ରୀରାମଉପରେ ପୁଷ୍ପ ଢ଼ାଳନ୍ତି ସକଳେ ।
କ୍ଷୀରସିନ୍ଧୁତୀରେ ଯାଇ ହୋଇଲେ ପ୍ରବେଶ
ବୈକୁଣ୍ଠରୁ ବିଷ୍ଣୁଗଣେ ଆସିଲେ ବିଶେଷ ।
ବିଷ୍ଣୁଗଣ ଦେଖି ବ୍ରହ୍ମା ରୁଦ୍ର ଗଲେ ଚଳି
ଯେ ଯାହାର ଭୁବନରେ ସର୍ବେ ଯାଇ ମିଳି ।
ବିଷ୍ଣୁଗଣଙ୍କ ସଙ୍ଗରେ ରାମ ବିଜେ କଲେ
ଅନନ୍ତ ଶଯ୍ୟାରେ ଯାଇ ନିଶ୍ଚଳେ ରହିଲେ ।
ଲକ୍ଷ୍ମୀ ଶାରଦା ଆସିଣ ସେବିଲେ ପୟର
ସେ ପାଦେ ଶରଣ ବିପ୍ର ଦାଶ ପୀତାମ୍ବର ।



## ବଂଶାନୁ ଚରିତ

ଶୁଣ ପରୀକ୍ଷ କହନ୍ତି ଶୁକ ମହାଯତି
ଶ୍ରୀରାମଙ୍କ ଲୀଳା ଶୁଣି ଭବୁ ହୁଅ ମୁକ୍ତି ।
ନିମିରାଜାଙ୍କର ଏବେ ଶୁଣିବା ଚରିତ
ନବମସ୍କନ୍ଧ ଅର୍ଥ ଏ ଜନକ ସୁକୃତ ।
ସୂର୍ଯ୍ୟବଂଶରେ ଏହୁଟି ପ୍ରତ୍ୟକ୍ଷେ ଉପୁତ୍ତି
ଜନକ ରାଜାର ହେଲେ ଯେତେକ ସ୍ୱଜାତି ।
ଏହାର ଉତ୍ତାରୁ ଏବେ ଆଉ ବଂଶ ଶୁଣ
କହନ୍ତି ଶୁକ ମୁନି ଯେ ପରୀକ୍ଷ ଆଗେଣ ।
ଅଟନ୍ତି ଯେ ଯମଦଗ୍ନି ଋଷି ଭୃଗୁବଂଶୀ
ଯମଦଗ୍ନି ପୁତ୍ର ହେଲେ ପର୍ଶୁରାମ ଋଷି ।
ସେହି ପର୍ଶୁରାମ ହେଲେ ସଂସାରରେ ଶ୍ରେଷ୍ଠ
କ୍ଷତ୍ରିୟ ପଣକୁ ବିପ୍ର କୁଳକୁ ଗରିଷ୍ଠ ।
ଜନନୀର ଚରୁ ଜାଣ କନ୍ୟା ଖାଇଲାରୁ
ତେଣୁ ସେହି ପର୍ଶୁହେଲେ କ୍ଷତ୍ରିକୁଳ ମେରୁ ।
କ୍ଷତ୍ରିଚରୁ ଅଂଶୁ ଜନମିଲେ ପର୍ଶୁରାମ
ଶୁଣ ପରୀକ୍ଷ କହନ୍ତି ଶୁକଦେବ ବ୍ରହ୍ମ ।
ସହସ୍ରାର୍ଜ୍ଜୁନ ବୋଲିଣ ଏକ ନୃପବର
ଗୋଧନ ହରିନେଲା ସେ ଯମଦଗ୍ନିଙ୍କର ।
ତାହାଙ୍କର ଶିର ପୁଣି ପକାଇଲା ଛେଦି
ପିତାଙ୍କର ମୃତ୍ୟୁଦେଖି ପର୍ଶୁ ହେଲେ କ୍ରୋଧୀ
ବସନ୍ତେ ବିଶ୍ୱନାଥଙ୍କୁ ହୃଦେ କରି ଧ୍ୟାନ
ଜାଣି ପ୍ରସନ୍ନ ହୋଇଲେ ଦେବ ପଞ୍ଚାନନ ।
ଲକ୍ଷେକ ସିଂହର ବଳ ପ୍ରକାଶିଲେ ଦେହେ
ସାକ୍ଷାତେ ଅଟନ୍ତି ପର୍ଶୁରାମ ବିଷ୍ଣୁମୟେ ।

ସହସ୍ରାର୍ଜ୍ଜୁନର ଜାଣ ଯେତେ ବଂଶ ଥିଲେ
ସମୂଳ କରି ତାହାଙ୍କୁ ବିନାଶ କରିଲେ ।
ପୃଥ୍ୱୀରେ ବୁଲିଲେ ପୁଣି ଏକୋଇଶ ବାର
ଛେଦିଲେକ ଅତି ରୋଷେ କ୍ଷତ୍ରିଙ୍କର ଶିର ।
ଦୁର୍ଦ୍ଧର୍ଷ ଦର୍ପ ଯେତେକ ବ୍ରହ୍ମାଣ୍ଡରେ ଥିଲେ
ସୁଜନ ସାଧୁଙ୍କୁ ରଖି ଦୁଷ୍ଟେ ସଂହାରିଲେ ।
ଏ ରୂପେ ପ୍ରତ୍ୟକ୍ଷେ ପର୍ଶୁରାମ ବିଷ୍ଣୁ ଜାଣ
କହିବା ସୋମବଂଶର କଥା ଏବେ ଶୁଣ ।
ସହସ୍ର ଶିର ପୁରୁଷ ଯେଉଁ ବିଷ୍ଣୁ ଜାଣ
ତାହାଙ୍କ ନାଭିରୁ ବ୍ରହ୍ମା ଜନମିଲେ ପୁଣ ।
ସେ ବ୍ରହ୍ମା ପୁଣି ଅନେକ ପୁତ୍ର କଲେ ଜାତ
ବଶିଷ୍ଠ ଅତ୍ରି ମରୀଚି ଅଙ୍ଗିରା ପୌଲସ୍ତ୍ୟ ।
ବୋଢ଼ୃ ଆସୁରୀ ଯେ ପଞ୍ଚଶିଖା ସପ୍ତମୁନି
ଅତ୍ରିମୁନିଠାରୁ ଚନ୍ଦ୍ର ଜନମିଲେ ପୁଣି ।
ଚନ୍ଦ୍ରଙ୍କ ବୀର୍ଯ୍ୟରୁ ପୁଣି ବୁଧ ଜନମିଲେ
ବୁଧଙ୍କର ପୁତ୍ର ପୁଣି ପୁରୁରବା ହେଲେ ।
ପୁରୁରବା ଚରିତକୁ କହୁଥାଇ ଶୁଣ
ଯେଉଁରୂପେ ଉର୍ବଶୀକି କଲେ ସେ ରମଣ ।
ସୁଧର୍ମା ସଭାରେ ବସି ସର୍ବ ସୁରଗଣେ
ଉର୍ବଶୀକି ଡକାଇଣ ଆଣିଲେ ତକ୍ଷଣେ ।
ବୋଇଲେ ସୁନ୍ଦରୀ ତୋତେ କହିବାକ ଶୁଣ
କରିବୁ ନୃତ୍ୟ ଦେଖିବୁ ସର୍ବେ ସୁରଗଣ ।
ଦେବଙ୍କର ବୋଲ ଶୁଣି ଉର୍ବଶୀ ନାଚିଲା
ଗାନ୍ଧର୍ବ ବିଦ୍ୟାରେ ମିତ୍ରାବରୁଣ ହାରିଲା ।
ମିତ୍ରାବରୁଣ ହାରରେ ମନେକଲା କୋପ
ବୋଇଲା ନଟିଲୋଦେବି ମୁହିଁ ତୋତେ ଶାପ
ଦେବଙ୍କ ପୁରେ ଆଉ ନଥାଅ କ୍ଷଣେ ରହି
ମଞ୍ଚମଣ୍ଡଳରେ ରହ ନରଲୋକେ ଯାଇଁ ।
ମିତ୍ରାବରୁଣର ଶାପ ଉର୍ବଶୀ ଯେ ଶୁଣି
ସ୍ୱର୍ଗରୁ ପଳାଇ ଆସି ରହେ ମଞ୍ଚେ ପୁଣି ।
ଯାବତ ପୁରରେ ପଶି ବୁଲେ ଅହର୍ନିଶି
କାହିଁରେ ସୁଖମନା ନ ହୁଏ ଶୁଭ୍ରକେଶୀ ।
ସାକ୍ଷାତରେ ଦେବକନ୍ୟା ନୋହି କିସ ପୁଣି
ଶାପର ଦୁର୍ଯୋଗୁ ସିନା କରୁଛି ଭ୍ରମଣି ।
ଗିରିକନ୍ଦର କାନନେ ବୁଲେ ପୁଣି ଯାଇଁ
ଉର୍ବଶୀର ଭୋଗ ଏବେ ଶୁଣ ନରସାଇଁ ।
ଏମନ୍ତେ ବୁଲନ୍ତେ ଘୋରବନେ ଶଶିମୁଖୀ
ମୁଗ୍‌ଧ ହେଲା ପୁରୁରବା ନୃପତିକି ଦେଖି ।
ସାକ୍ଷାତରେ କାମଦେବ ପ୍ରାୟ ତାକୁ ମଣି
କନ୍ଦର୍ପଜ୍ୱାଳାରେ ବାଳା ଦଗ୍‌ଧ ହେଲା ପୁଣି ।
ଉଭାହୋଇଲା ଯାଇଣ ରାଜା ବାମପାଖେ
ଅଞ୍ଚଳ ଫେଇ କାଢ଼ିଣ ଚାହିଁଲେକ ବାଙ୍କେ ।
ସେ ପୁରୁରବା ନୃପତି ତାର ମୁଖ ଚାହିଁ
କନ୍ଦର୍ପରେ ହେଲା ଘାରି କାମେ ବଶ ହୋଇ
ବୋଇଲା ସୁନ୍ଦରୀ ଆସ ରହମୋ ଗୃହରେ
ଦାସ ପ୍ରାୟ ନିତ୍ୟ ଖଟୁଥିବି ଚରଣରେ ।
ରାଜାଙ୍କର ବାକ୍ୟଶୁଣି ସେ ଉର୍ବଶୀ ମୋହେ
ବୋଲେ ତୁମ୍ଭେ ଦିଶୁଅଛ ମୋତେ ଚନ୍ଦ୍ର ପ୍ରାୟେ
ପୁରୁରବା ବୋଲେ ତେବେ ଶୁଣ ରେ ତରୁଣୀ
ମୋ ବୋଲେ ଥିଲେ କରିବି ତୋତେ ପାଟରାଣୀ
ତୋହର ବଚନେ ମୁହିଁ ସଦାଥିବି ରହି
ବେଗେ ଆସି ମୋର ଗୃହେ ରହ ପ୍ରାଣ ସହି ।
ଉର୍ବଶୀ ବୋଇଲା ତେବେ ଶୁଣହୋ ରାଜନ
ମୁଁ କହିବା କଥା ପାଳିଥିବ ସର୍ବଦିନ ।
ଏହା କହି ପୁରୁରବା ବୋଲେ କହ ସଖି
ତୋହର ବାକ୍ୟଗୋଟି ମୁଁ ସଦା ଥିବି ରଖି ।
ଉର୍ବଶୀ ବୋଇଲା ତେବେ ଶୁଣ ହେ ରାଜନ
ନିଶ୍ଚୟ ତୁମ୍ଭଙ୍କୁ ମୁହିଁ କହେ ସୁବଚନ ।
ଦେଖ ମୋ ସଙ୍ଗରେ ଛନ୍ତି ମେଷପୁତ୍ର ବେନି
ଏହାଙ୍କୁ ପୋଷଇ ମୁହିଁ ନିତ୍ୟ ସ୍ନେହ ଘେନି ।
ପ୍ରାଣରୁ ଅଧିକ କରି ରଖିବି ସମ୍ଭାଳି
ଏହାଙ୍କୁ ଭୋଜନ ଦେଉଥିବି ପ୍ରତିପାଳି ।
ଆବର କହିବା ଏକ କଥା ମଧ ଶୁଣ
ମୋହର ନିଶ୍ଚେ ସତ୍ୟ ଏ ଅଟଇ ପ୍ରମାଣ ।
ଉଲଗ୍ନ ହୋଇ ତୁମ୍ଭେ ନ ଦେବ ମୋତେ ଦେଖା
ଏତେକ ସତ୍ୟ ପାଳିବ ତୁମ୍ଭେ ମୋର ଏକା ।
ଆବର ଘୃତ ଆହାର କରଇ ମୁଁ ନିତି
ଏତେକଥା ପ୍ରମାଣ ମୋ ଅଟଇ ନୃପତି ।
ଏହା ଶୁଣି ପୁରୁରବା ବୋଲେ କଲି ସତ୍ୟ
ତୋହର ବଚନ ମୁହିଁ ପାଳିଥିବି ନିତ୍ୟ ।
ଉର୍ବଶୀ ରାଜା ବଚନ ଶୁଣି ହେଲା ବଶ
ସେଠାରୁ ଲାଗିଲା ଦୁହିଁଙ୍କର କ୍ରୀଡାରସ ।
ବିମାନରେ ବସିଣ ସେ ଭ୍ରମି ବନଗିରି
ଆନନ୍ଦେ କ୍ରୀଡା କରନ୍ତି ବନରେ ବିହରି ।
ଯେସନେ ପଦ୍ମ କୁମୁଦ ବେନି ଗନ୍ଧବାସେ
ଭ୍ରମର ଛାଡ଼ି ନଯାନ୍ତି ଅନ୍ୟକାହା ପାଶେ ।
ସେ ରୂପେ ଉର୍ବଶୀ ସଙ୍ଗେ ପୁରୁରବା ଅଛି
ରାତ୍ର ଦିବସ ବୋଲି ସେ ନ ଜାଣନ୍ତି କିଛି ।
ସେ ରୂପରେ ବେନିଜନେ ବହୁ ପ୍ରୀତିକଲେ
ନିର୍ମଳ କରି କହିବା ଶୁଣ ତାହା ଭଲେ ।

ଉର୍ବଶୀକି ବାସବ ଯେ ସ୍ୱର୍ଗେ ନ ଦେଖିଣ
ପୁଚ୍ଛଇ ଗନ୍ଧର୍ବଙ୍କୁ ସେ ପାରୁଶେ ରାଇଣ ।
କହ ଉର୍ବଶୀ ମୋହର କେଉଁପୁରେ ଅଛି
ସ୍ୱର୍ଗଯାକ ଭଲ ମୋତେ ନ ଲାଗଇ କିଛି ।
ଶୁଣି ଗନ୍ଧର୍ବେ କହନ୍ତି ଶିରେ କରଯୋଡ଼ି
ମିତ୍ରାବରୁଣ ଶାପରୁ ସ୍ୱର୍ଗ ଗଲା ଛାଡ଼ି ।
ମଞ୍ଚପୁରକୁ ଯାଇଣ ପୁରୁରବା ତୁଲେ
ମାତିଅଛି ତାର ସଙ୍ଗେ ତୁମ୍ଭ ଭଳି ହେଲେ ।
ଏହା ଶୁଣି ପୁରନ୍ଦର ମନେ କ୍ଷୋଭ ପାଇ
ବୋଇଲେ ଗନ୍ଧର୍ବେ ତାକୁ ଆଣ ବେଗେ ଯାଇ
ସେ ନଥିବାରୁ ସ୍ୱର୍ଗ ମୋ ନ ଦିଶଇ ଶୋଭା
ଚନ୍ଦ୍ରବିନେ ରାତ୍ରେ ଯେହ୍ନେ ନ ପ୍ରକାଶେ ପ୍ରଭା
ସେହିରୂପେ ସ୍ୱର୍ଗ ମୋର ଅଲଗା ଦିଶଇ
ଶୁଣି ଗନ୍ଧର୍ବେ ଚଳିଲେ ଉର୍ବଶୀର ପାଇଁ ।
ପୁରୁରବାପୁରେ ଯାଇଁ ହୋଇଲେ ପ୍ରବେଶ
ନିବିଡ ଅନ୍ଧାର ରାତ୍ରେ ନ ଦିଶଇ ଦିଶ ।
ଦେଖିଲେ ପୁରୁରବାର କୋଳରେ ଉର୍ବଶୀ
ଏକଅଙ୍ଗ ପ୍ରାୟ ଦୁହେଁ ହୋଇଛନ୍ତି ମିଶି ।
ମେଷ ତନୟ ବେନିଙ୍କି ପଲ୍ୟଙ୍କ ଖୁରାରେ
ବାନ୍ଧିପ୍ରେମେ ଶୋଇଛନ୍ତି ଦୁହେଁ ଅଚେତାରେ
ମାୟାରେ ଗନ୍ଧର୍ବେ ମିଳି ଉର୍ବଶୀର ଆଳେ
ମେଷପୁତ୍ର ବେନିର ଯେ ଶିକୁଳି କାଟିଲେ ।
ମେଷପୁତ୍ରଙ୍କୁ ଚୋରାଇ ଘେନିଣ ପଳାନ୍ତେ
ଉଚ୍ଚେ କାନ୍ଦିଣ ସେ ରଡ଼ି ଦ୍ୟନ୍ତି ଅପ୍ରମିତେ ।
ମେଷଦୁହେଁ ରୋଦନ୍ତେ ଯେ ଉର୍ବଶୀ ଚିତ୍ତ ହୋଇ
କିଏ ମେଷ ନେଲା ବୋଲି କାନ୍ଦି ଚାନ୍ଦମୁହିଁ ।
କ୍ରୀଡ଼ାଭୋଳେ ନରପତି ଉଲଗ୍ନରେ ଥିଲା
ଉର୍ବଶୀର ଶବ୍ଦ ଶୁଣି ଚେତନା ବସିଲା ।
ଉଲଗ୍ନ ହୋଇଣ ରାଜା ଖଟେ ଥିଲା ଶୋଇ
ଉର୍ବଶୀ କାନ୍ଦିବା ଜାଣି ଉଠେ ଚେତାପାଇ ।
ଉର୍ବଶୀ ଝିଙ୍ଗାସ ବାଣୀ ଶୁଣିଲାକ କର୍ଣ୍ଣେ
ସେ ଝିଙ୍ଗାସ ପରୀକ୍ଷିତ ଶୁଣ ସାବଧାନେ ।
ଉର୍ବଶୀ ବୋଇଲା ହୁଏ କେଡ଼େ ସୁଖୀଲୋକ
ନ ଜାଣିଣ ଭୁଲିଲି ମୁଁ ଅଟେ ନଂପୁସକ ।
ଅବିବେକ ପଣେ ମୋତେ ସତ୍ୟ କରାଇଲା
ଏଡ଼େ ରାଜାପାଶୁଁ ମେଷ ଚୋରାଇକେ ନେଲା
ନିଦ୍ରାରେ ଶୋଇଛୁ ଏହୁ କେଡ଼େ ସୁଖ ପାଇ
ଦେଖ ନପୁଂସୀକ ପ୍ରାୟ ଅଛି ଏହୁ ଶୋଇ ।
ଏ ରୂପରେ ଉର୍ବଶୀର କଟୁବାକ୍ୟ ଶୁଣି
ସେକ୍ଷଣି ଉଠି ଧାଇଁଲା ବେଗେ ନୃପମଣି ।

ଅନ୍ତରାଳ ହୋଇକରି ଖଡ୍‌ଗ କରେ ଧରି
ଉଲଗ୍ନରେ ଅଛି ବୋଲି ନାହିଁ ହେତୁ କରି ।
ଆରେ ଆରେ ବୋଲିକରି ଉଠେ ବେଗେ ଧାଇଁ
ବୋଇଲା ମେଷକୁ ମୋର କେ ନେଲା ଚୋରାଇ
ଆଗରେ ପଡ଼ିଲେ ଆଜ କାଟିଦେବି ଶିର
ମୁଁ ପୁରୁରବା ବୋଲି କି ନ ଜାଣେ ପାମର ।
ଏତେ ବୋଲି ମହାରାଜା ଧାଇଁ ଅତି ରୋଷେ
ଗମଇ ସେ ଏକମନ ନିଃଶ୍ୱାସକେ କୋଶେ ।
ଦେଖିଣ ଗନ୍ଧର୍ବେ ଭାଜିଗଲେ ଅନ୍ତରାଳେ
ମେଷପୁତ୍ରଙ୍କୁ ଛାଡ଼ିଣ ଡ଼ରେ ପଳାଇଲେ ।
ସେ ମେଷ ବେନିଙ୍କି ରାଜା ଧରିବାମ ହସ୍ତେ
ତକ୍ଷଣେ ମିଳିଲେ ଆସି ଉର୍ବଶୀ ଅଗ୍ରତେ ।
ଗନ୍ଧର୍ବେ ସେକଥା ଶୂନ୍ୟେଥାଇ ଦେଖୁଥିଲେ
ବିଜୁଳି ତେଜ ଜାଣିଣ ତହିଁ ପ୍ରକାଶିଲେ ।
ବିଜୁଳିର ତେଜଘାତେ ଉର୍ବଶୀ ଅନାଇଁ
ଦେଖିଲା ରାଜାର କଟୀତଟେ ବାସନାହିଁ ।
ଉଲଗ୍ନ ହେବାର ଦେଖି ପାଞ୍ଚଇ ଉର୍ବଶୀ
ବୋଇଲା ରାଜାର ସତ୍ୟ ପୂରିଲାକ ଆସି ।
ଏତେ ପାଞ୍ଚି ମନମଧ୍ୟେ ସୁବେଶ ହୋଇଲା
ମେଷପୁତ୍ରଙ୍କୁ ଧରିଣ ଶୂନ୍ୟେ ଚଳିଗଲା ।
ସେ ପୁରୁରବା ନୃପତି ଘେନି ମାୟାମେଷ
ଉର୍ବଶୀ ଥିଲା ପରାୟ କହଇ ତା ପାଶ ।
ବୋଇଲା ସଖି ଏବେ ତୋ ନିଅ ନିଜପୁତ୍ର
ନ ଜାଣି ରୋଦନ କେତେ କଲୁ ବସିରାତ୍ର ।
ଏତେ ବୋଲି ରାଜା ଖଟେ ବସିରାଟେ ପୁଣ
ଖୋଜିଣ ପଲ୍ୟଙ୍କେ ଯାଇ ହାତେ ଉଣ୍ଡାଳିଣ
ଶଯ୍ୟାରେ ନ ଦେଖି ରାଜା ଲଗାଇଲା ଦୀପ
କେଣେ ଗଲୁ ମୋତେ ଛାଡ଼ି କରଇ ବିଳାପ ।
ଗୃହରାକ ଲୋଡ଼ିଣ ସେ ନ ପାଇଲା କାହିଁ
ଭ୍ରମିଲା ସେ ଅନ୍ତରାଳେ ହୋଇ କାମେବାଇ
ଗିରି କାନନ ଦୁର୍ଗମ ସବୁଦେଶେ ଭ୍ରମେ
କେଣେଗଲୁ ସଖି ବୋଲି ତରଳଇ କାମେ ।
ଭ୍ରମୁ ଭ୍ରମୁ ସେହି ନିଶା ପାହିଲା ତତ୍କାଳେ
ଯାଉଁ ଯାଉଁ କରୁକ୍ଷେତ୍ରେ ମିଳି ନ ପଶିଲେ ।
ଦେଖିଲା ଉର୍ବଶୀକି ସେ ଶାରଦାର ତଟେ
ଅନେକ ଲୋକ ଯେ ମିଳିଛନ୍ତି ଜଳଘଟେ ।
ରାଜାଙ୍କୁ ଦେଖି ଉର୍ବଶୀ ମନେ ମନେ ପାଞ୍ଚି
ବୋଇଲା ନ କହି ଏଥୁ କେହ୍ନେ ଯିବି ଘୁଞ୍ଚି ।
ଉର୍ବଶୀର ମୁଖଗୋଟି ପୁରୁରବା ଚାହିଁ
ବିନୟ ହୋଇ ଆଗରେ ବୋଲେ ଶୁଣ ସହି ।

ତୁ ମୋର ପ୍ରାଣ ଅଟୁ ମୁଁ ତୋର ପ୍ରାଣମଣି
ଏଥକୁ ଛାଡ଼ି ମୋତେ ନ ଯାଅ ସଙ୍ଗାତୁଣୀ ।
ଚାହିଁଣ ଉର୍ବଶୀ ତାଙ୍କୁ ନ ଦେଲା ଉତ୍ତର
ବାଟମଧ୍ୟେ ଯାଉଁ ଯାଉଁ ଚାଲେ ଧୀର ଧୀର ।
ସେ ରାଜା ତାହାର ପଛେ ଧାଏଁ କାମବଶେ
ପଛରେ ଗୋଡ଼ାଇ ଧାଇଁ ଅଛଇ ବିଶ୍ୱାସେ ।
ବୋଲଇ ସଖିରେ ମୋତେ ଚାହିଁ କ୍ଷଣେ ରହ
ମୋହଠାରୁ ପଦେ ଶୁଣି ମିଷ୍ଟ ବାକ୍ୟ କହ ।
କିମ୍ବା ମନେ କୋପ ବହି ଏଡ଼େ କର୍ମ କରୁ
ଭାବ ଅଭାବ ଦୁହିଁକି କିମ୍ବା ନ ବିଚାରୁ ।
ମୋପରା ଲୋକକୁ କିମ୍ବା କରୁ କୋପମନ
ତୋହର ବଚନେ ମୁହିଁ ବଞ୍ଚେ ସର୍ବଦିନ ।
ତୋପରା ସଖୀ ହୋଇ ତୁ ମୋତେ ଦୂର କଲେ
ତୋହର ଅଙ୍ଗୁ ଜୀବନ ଛାଡ଼ିବଟି ଭଲେ ।
ତୁ ଦୁଃଖ କଲେ ମନେ ମୁଁ ନିଶ୍ଚେ ଯିବି ମରି
ଖାଆନ୍ତୁ ମୋତେ ପଛକେ ବନେ ବ୍ୟାଘ୍ରଧି ।
ଶୁକର ଶୃଗାଳ ଭାଲୁଛନ୍ତି ଜାଣ ଯେତେ
ସେମାନେ ଧରି ଖାଆନ୍ତୁ ନେଇ ପଛେ ମୋତେ
ଏ ରୂପେ ରାଜନ ମୁଖୁଁ ଉର୍ବଶୀ ଯେ ଶୁଣି
ବୋଇଲାକ ସାବଧାନେ ଶୁଣ ନୃପମଣି ।
ତୁମ୍ଭଙ୍କୁ ସ୍ତିରୀମାନଙ୍କ କଥା ନାହିଁ ଜଣା
ସ୍ତିରୀସଙ୍ଗେ ପ୍ରୀତି କଲା ଲୋକ ନିଉଛଣା ।
ମୂର୍ଖ ମୂଢ଼ ଅପାଣ୍ଡିକ ଅଟନ୍ତି ଯେ ଲୋକ
ସ୍ତିରୀ ସଙ୍ଗେ ପ୍ରୀତି କଲା ଲୋକ ଅଲାଜୁକ ।
ବ୍ୟାଘ୍ର ଭାଲୁଙ୍କ ସଙ୍ଗେ ଯେ କରେ ଜାଣ ପ୍ରୀତି
ସେହିରୂପେ ସ୍ତିରୀଙ୍କର ଅଟେ ଜାଣ ମତି ।
ସ୍ତିରୀଙ୍କ ଦେହେ ପୁରିଛି ଯେତେ ଅବିଗୁଣ
ସେ କଥା କହିବା ରାଜା ସାବଧାନେ ଶୁଣ ।
ନିର୍ଦ୍ଦୟପଣେ ଲେଖାରେ ଥାନ୍ତି ବାରକୋଟି
ତେରକୋଟି ଯାଏ ଥାନ୍ତି ଉପରୋଧ କାଟି ।
ଚଉଦକୋଟି ପର୍ଯ୍ୟନ୍ତେ ଠକପଣେ ଥାନ୍ତି
କପଟ ପନ୍ଦରକୋଟି ଯାଏ ପ୍ରକାଶନ୍ତି ।
ସାହସ ପଣେ ଅଟନ୍ତି ସେହୁ ଶତକୋଟି
ହୃଦୟରେ କ୍ରୋଧହେଲେ ପ୍ରାଣନ୍ୟନ୍ତି କାଟି ।
ପତିଠାରେ କେବେ ହେଁ ସେ ଭକ୍ତି ନ କରନ୍ତି
ଅଜ୍ଞାନଭାବ ବହିଣ ସଦାବେଳେ ଥାନ୍ତି ।
ସୌନ୍ଦର୍ଯ୍ୟ ରୂପ ଦେଖିଣ କାମେହୋନ୍ତି ଘାରି
ଜଳା ପଞ୍ଚରୀ ବାଟେ ସେ ଚାହିଁ ଅନୁସରି ।
ରମନ୍ତି ମନରେ ଇଚ୍ଛାହେଲେ ପରସ୍ୱାମୀ
ସ୍ତିରୀଙ୍କର ମନ ଜାଣ କାମେ ଏକା ଭ୍ରମି ।
ତୁମ୍ଭେ କାହିଁକି କରୁଛ ରାଜା ମନଭେଦ
ରାଜ୍ୟକୁ ଯାଅହେ ଏବେ ନକରିଣ ଖେଦ ।
ବରଷେକ ଭୋଗକଲେ ହେବ ଦୁହେଁ ଭେଟ
ଯାଉଛୁ ଏ କଥା ସତ୍ୟ କରି ମୁହିଁ କଷ୍ଟ ।
ଋତୁସ୍ନାନ କରିଣ ଯେ ଦିନ ମୁଁ ଆସିବି
ସେଦିନ ତୁମ୍ଭର ସଙ୍ଗେ ପ୍ରେମେ ବିଳସିବି ।
ଅବଶ୍ୟ ତୁମ୍ଭର ବୀର୍ଯ୍ୟେ ଜନ୍ମିବ ସନ୍ତତି
ଏକଥା ମୋହର ସତ୍ୟ ଶୁଣ ହେ ନୃପତି ।
ଗନ୍ଧର୍ବଗଣଙ୍କ ପାଦପଦ୍ମେ ସେବାକର
ତୁମ୍ଭଙ୍କୁ ଜାଣ ଅବଶ୍ୟ ସେହୁ ଦେବେ ବର ।
ଗନ୍ଧର୍ବ ବରଦେଲେ ଯେ ପାଇବହେ ମୋତେ
ଆସିବି ମୁଁ ତୁମ୍ଭପାଶେ ବରଷକ ଅନ୍ତେ ।
ଏ ରୂପେ ଉର୍ବଶୀ କଥା ପୁରୁରବା ଶୁଣି
ସନ୍ତୋଷ ମନେ ରହିଲେ ତହିଁ ନୃପମଣି ।
କଟୀକି ସେ ଆଉଁଷନ୍ତେ ବସ୍ତ୍ର ନ ଦେଖିଲେ
ଜିହ୍ୱାକୁ ମୋଡ଼ିଣ ରାଜା ବସ୍ତ୍ର ଲାଗିହେଲେ ।
ଉର୍ବଶୀ ବୋଇଲେ ଶୁଣ ଶୁଣ ହେ ନୃମଣି
ଏ ଦୋଷରୁ ମୋତେ ନକର ଭୋଗ ପୁଣି ।
ମୁହିଁତ କରାଇଥିଲି ତିନି କଥା ସତ୍ୟ
ତୁମ୍ଭଙ୍କୁ ଜାଣ ଏବେ ସେ ହେଲାକି ନିତାନ୍ତ ।
ଏମନ୍ତ ବାକ୍ୟ ଉର୍ବଶୀ ମୁଖୁଁ ରାଜା ଶୁଣି
ମନରେ ତୋଷ ହୋଇଣ ଚଳିଲେ ନୃମଣି ।
ଗନ୍ଧର୍ବମାନଙ୍କୁ ତହୁଁ ବହୁ ପୂଜାକଲେ
ବହୁତ ପ୍ରକାରେ ଅନ୍ନ ଭୋଜନ ସେ ଦେଲେ
ସ୍ତୁତି ବଚନ କହିଣ କର ଦୁଇ ଯୋଡ଼ି
କରନ୍ତି ସହସ୍ରେ ଦଣ୍ଡବତ ପାଦେ ପଡ଼ି ।
ରାଜାର ଭକତି ଦେଖି ସେ ଗନ୍ଧର୍ବମାନେ
ପ୍ରସନ୍ନ ହୋଇ କହନ୍ତି ବାକ୍ୟ ସୁବଚନେ ।
ବୋଲନ୍ତି ହୋ ସାବଧାନେ ଶୁଣ ନୃପମଣି
ତହିଁକି ତପ କରୁଛ ଲଭି ପୁଣ୍ୟବାଣୀ ।
ମୃତ୍ତିକାଭାଣ୍ଡେ ଦେଉଛୁ ଆମ୍ଭେ ଅଗ୍ନିଥୋଇ
ସେ ଅଗ୍ନି ପୂଜାକର ତୁ ନିଶ୍ଚେ ଫଳପାଇ ।
ଉର୍ବଶୀ ଜାଣ ମିଳିବ ଆସି ତୋର ପୁରେ
କହିଲୁ ଏ ଆମ୍ଭେ ବାକ୍ୟ ସତ୍ୟ ନିରାଧାରେ ।
ଗର୍ନ୍ଧବେ ଏତେ କହି ଅଗ୍ନି ଥୋଇଦେଲେ
ଉର୍ବଶୀ ସଙ୍ଗେ ଘେନିଣ ଶୂନ୍ୟେ ଚଳିଗଲେ ।
ସେ ଅଗ୍ନି ନେଇ ଥୋଇଲେ ରାଜାବନଭାଗେ
ଗନ୍ଧର୍ବେ କହିଲେ ଯେଉଁକଥା ଯେଉଁମାର୍ଗେ ।
ଅଗ୍ନିକି ନେଇଣ ରାଜା ବୃକ୍ଷମୂଳେ ଥୋଇ
ଆପଣେ ରାଜ୍ୟକୁ ଚଳିଗଲେ ନୃପସାଇଁ ।

ଲାଗିଲା ପ୍ରଜାମାନଙ୍କ କଥା ରାଜା ଚିତ୍ତେ
ଏମନ୍ତ ଯେ କାଳ ବହିଗଲା ଦିନାକେତେ ।
ତହିଁଉତ୍ତାରେ ଉର୍ବଶୀ ମନେ ପୁଣି ପଡ଼ି
ଭାଳଇ ଯେ ଅନୁକ୍ଷଣେ ହୃଦପଦ୍ମେ ଲୋଡ଼ି ।
ଏମନ୍ତେ ଯେ ସତ୍ୟଯୁଗ ଭୋଗ ହୋଇଯାନ୍ତେ
ଶୁଣ ପରୀକ୍ଷିତ ତାହା କହିବାକ ତୋତେ ।
ତ୍ରେତୟା ଯୁଗ ଆସିଣ ହୋଇଲା ପ୍ରବେଶ
ଉର୍ବଶୀ ମନରେ ଚିନ୍ତି ଲୋଡ଼େ ଚଉପାଶ ।
ଗନ୍ଧର୍ବେ ଦେବା ଅନଳ ବନେ ଥୋଇଥିଲା
ସେହି ଅଗ୍ନି ଦେଖିବାକୁ କାନନକୁ ଗଲା ।
ଯେବଣ ବୃକ୍ଷ ମୂଳରେ ଅଗ୍ନିଥିଲା ଥୋଇ
ସେ ବୃକ୍ଷର ନାମଗୋଟି ପିପପଳ ବୋଲାଇ
କେତେକାଳ ଅନ୍ତରେ ସେ ଅଗ୍ନିଗଲା ଲିଭି
ଆନ ଅଗ୍ନି ହୋମକଲେ କାର୍ଯ୍ୟ ନ ପାଇବି ।
ପିପ୍ପଳବୃକ୍ଷର କାଠ ଖଣ୍ଡେ ହାଣି ଆଣି
ଗଢ଼ାଇଲା ନୃପତି ସେ ଯଜ୍ଞର ଅରଣୀ ।
ଅରଣୀ ସଜାଡ଼ି ରାଜା ଅଗ୍ନିକି ମନ୍ଥିଲା
ନିଗମ ତତ୍ତ୍ୱ ଅନଳ କାଷ୍ଠୁ ବାହାରିଲା ।
ଉର୍ବଶୀକି ଧ୍ୟାନକରି ବସିଲା ଆସନେ
ଆହୁତି ପକାଇଲା ସେ ନେଇ ହୁତାସନେ ।
ଯାଗଯଜ୍ଞ କରୁ କରୁ ଏସନେ ଉର୍ବଶୀ
ନୃପତିର କୋଳେ ଆସି ବସେ ଶୁଭ୍ରକେଶୀ ।
ଉର୍ବଶୀକି ଦେଖି ରାଜା ଆନନ୍ଦିତ ହେଲେ
ପ୍ରେମଭୋଳେ ତାର ତୁଲେ ବହୁକ୍ରୀଡ଼ା କଲେ
ଜନମିଲେ ପୁତ୍ରମାନେ କାମଦେବ ପ୍ରାୟେ
ନିର୍ଧୂମ ଅନଳ ଜିଣି ଦିଶେ ତେଜୋମୟେ ।
ଉର୍ବଶୀ ଗର୍ଭୁ ଜନ୍ମିଲେ ଷଡ଼ଗୋଟି ଭାଇ
ଭାଗବତର ନବମସ୍କନ୍ଧେ ଏହା କହି ।
ପୁରୁରବାର ଅନ୍ତେଣ ଆଉ ଯେତେ ରାଜା
ତାହାଙ୍କ ନାମ ମାନ ହେ ଶୁଣ ମହାରାଜା ।
ନହୁଷ ରାଜା ଅନ୍ତେଣ ଯଯାତି ପର୍ଯ୍ୟନ୍ତେ
ଦୁଷ୍ମନ୍ତ ଯେ ମୃଗନାଭ କୁରୁର ସହିତେ ।
ଶାନ୍ତନୁ ରାଜାଙ୍କର ଯେ ମହିମା ବିଖ୍ୟାତ
ତାହାଙ୍କ ବଂଶ ଉତ୍ପତ୍ତି ଶୁଣ ପରୀକ୍ଷିତ ।
ଚିତ୍ର ବିଚିତ୍ର ବୋଲିଣ ଶାନ୍ତନୁଙ୍କ ବୀର୍ଯ୍ୟେ
ଜନମ ଲଭିଲେ ସେହୁ ଅତିଅନ୍ତ ତେଜେ ।
ଚିତ୍ର ବିଚିତ୍ର ଏ ଦୁହେଁ ଅପୁତ୍ରିକେ ମଲେ
କୁଳବଧୂଙ୍କୁ ରମଣ ବେଦବ୍ୟାସ କଲେ ।
ବ୍ୟାସଙ୍କ ବୀର୍ଯ୍ୟୁ ଜନ୍ମିଲେ ତିନିଗୋଟି ବାଳ
ଧୃତରାଷ୍ଟ୍ର ବିଦୁର ସେ ପଣ୍ଡୁ ହେଲେ ଠୁଳ ।
ଧୃତରାଷ୍ଟ୍ର ରାଜାଙ୍କର ଶତେ ପୁତ୍ର ହେଲେ
ପଣ୍ଡୁ ପାଞ୍ଚପୁତ୍ର ନାମ ପୁରାଣେ ଲିହିଲେ ।
ଏହାଙ୍କର ପୁତ୍ର ଅଟେ ଅଭିମନ୍ୟୁ ଜାଣ
ତାହାଙ୍କ ବୀର୍ଯ୍ୟୁ ଜନ୍ମିଲେ ପରୀକ୍ଷ ରାଜନ ।
ପରୀକ୍ଷ ରାଜା ପୁତ୍ରଟି ଜନ୍ମେଜୟ ହେଲେ
କଳିଯୁଗେ ରାଜା ହୋଇ ପୃଥିବୀ ପାଳିଲେ ।
ସେ ବଂଶେ ଆଉ ଯେତେକ ହେଲେ ନୃପଈଶ
କଳିକି ଭୋଗ କରିଲେ ସହସ୍ର ବରଷ ।
ଯଯାତିଙ୍କ ବଂଶ ଏବେ ଶୁଣ କୁରୁରାୟେ
ଶ୍ରୀଭାଗବତ ମହିମା ଅଟେ ଅପ୍ରମୟେ ।
ଯଯାତିଙ୍କ ଜ୍ୟେଷ୍ଠପୁତ୍ର ନାମ ଅଟେ ଯଦୁ
ସାତବଂଶ ଉପରେ ସେ ରାଜ୍ୟ ଅଟେ ଆଦ୍ୟ
ସେହି ବଂଶମାନଙ୍କର କେତେକ ବର୍ଣ୍ଣନା
ଏ କଥାଯାକ କେତୋଟି ଆଗେ କହିସିନା ।
ଯଯାତି ଦ୍ୱିତୀୟ ପୁତ୍ର ଅଟେ କୁରୁରାଣ
ହସ୍ତିନାର ନୃପତି ସେ ଅଟନ୍ତି ଜାଣିଣ ।
ତୃତୀୟ ପୁତ୍ରର ନାମ ଅଟଇ ଦହିର୍ଯ୍ୟ
ତାହାଙ୍କର ବଂଶଯାକ ବୋଲାନ୍ତି ଯେ ଭୋଜ
ଚତୁର୍ଥ ତନୟ ନାମ ଅଟେ ଜାଣ ଅନୁ
ସେ ବଂଶରେ ଜନମିଲେ ଯେତେ ରାଜସୁନୁ
ସନ୍ଧ୍ୟାକାଳ ହେତୁ ଜନ୍ମହେଲେ ମ୍ଳେଚ୍ଛଗଣ
ପଞ୍ଚମ ତନୟ ବଂଶ କହୁଥାଇ ଶୁଣ ।
ଯଜୁ ପଞ୍ଚ ବୋଲିକରି ଅଟଇ ତା ନାମ
ସେ ବଂଶେ ଜନ୍ମିଲେ ଜାଣ ସହସ୍ର ଅର୍ଜ୍ଜୁନ ।
ଲେଉଟି ଆବର ପୁତ୍ରେ ଜନ୍ମିଲେ ପୟୋଦ
ତାହାଙ୍କର ବଂଶୁ ଜନ୍ମହେଲେ ଜରାସନ୍ଧ ।
ଆବର ଏକ ପୁତ୍ରର ଅଟେ କୃଷ୍ଣ ନାମ
ଯଦୁ ବଂଶରେ ସେହୁଟି ହେଲେ ବର୍ଦ୍ଧମାନ ।
ସୁରସେନ ପ୍ରଭୃତି ସେ ବସୁଦେବ ଯାଏ
ନୀଳବୋଲି କରିଣ ଯେ ଜନ୍ମିଲା ତନୟେ ।
ଆବର ପୁତ୍ରେକ ଜନ୍ମ ହୋଇଲେ ଅନ୍ଧକ
ଭୋଜବଂଶେ ଉଗ୍ରସେନ ହୋଇଲା ନାୟକ
କୁଳର ବଂଶରେ ହେଲେ ସୁରସେନ ରାଜ
ସାତକନ୍ୟା ଉପୁଜିଲେ ଏକଇ ତନୁଜ ।
ବସୁଦେବ ବିଭାହେଲେ ଅଷ୍ଟାଦଶ ନାରୀ
ରୋହିଣୀ ଦେବୀ ଦେବକୀ ପ୍ରଭୃତିଙ୍କୁ କରି ।
ଏହି କନ୍ୟାଙ୍କ ମଧରେ ରୋହିଣୀ ଗର୍ଭରେ
ଅଷ୍ଟମାବତାରେ ଜନ୍ମହେଲେ ନୀଳାମ୍ବରେ ।
ସୁଭଦ୍ରା ବୋଲି କରିଣ କନ୍ୟା ଏକ ଜନ୍ମ
ଆଉ ସ୍ତିରୀଙ୍କର ଦୁଇ ଦୁଇଟି ନନ୍ଦନ ।

ଦେବକୀର ଷଡ଼ପୁତ୍ର କଂସ ରାଜା ଜାଣ
ନେଇକରି କଚାଡ଼ିଲା ଶିଳା ଉପରେଣ ।
ସପ୍ତମ ଗର୍ଭ ଗୋଟି ଯେ ଗଲେ ମାୟାଭାବେ
ରହିଲେ ରୋହିଣୀ ଗର୍ଭେ ଯାଇ ବଳଦେବେ
ଶ୍ରୀଗୋପପୁରେ ରୋହିଣୀ କଲେ ତାଙ୍କୁ ଜାତ
ଦେବକୀ ଅଷ୍ଟମ ଗର୍ଭେ ଶ୍ରୀକୃଷ୍ଣ ସମ୍ଭୁତ ।
ଶ୍ରୀକୃଷ୍ଣାବତାର ଯେଉଁରୂପେ ହେଲେ ଜାଣ
ନବମ ସ୍କନ୍ଧ ଚରିତ ଅଟଇ ପ୍ରମାଣ ।
ଚବିଶ ଅଧାରେ ଏହା ହୋଇଲା ସମ୍ପୂର୍ଣ୍ଣ
ବଂଶାନୁଚରିତ ଏହୁ ଶୁଣିଲେ ରାଜନ ।
ଦଶମସ୍କନ୍ଧେ କହିବା ଶ୍ରୀକୃଷ୍ଣଙ୍କ ରସ
ସେ ପାଦେ ଶରଣ ବିପ୍ର ପୀତାମ୍ବର ଦାସ ।

■

## ଶ୍ରୀକୃଷ୍ଣଙ୍କ ଲୀଳା

ଶ୍ରୀକୃଷ୍ଣଙ୍କର ଜନମ ଯେଉଁ ଲୀଳାବାଣୀ
ପୂରିଛି ଅମୃତ ରସ ପାର ଯହିଁ ଶୁଣି ।
ଏମନ୍ତ ବୋଲି ଫେଡ଼ିଲେ ଗ୍ରନ୍ଥ ମହାମୁନି
ଦଶମ ଚରିତ କହୁଛନ୍ତି ମୋକ୍ଷବାଣୀ ।
ଆଦ୍ୟେ କହିଲି ଦେବକୀ ବସୁଦେବ ବିଭା
ଯେତେକ କଷଣ କଂସ ଦେଲାକ କହିବା
ଆକାଶର ବାଣୀ ଦୈତ୍ୟ ଶୁଣିଲା ଯେକାଳେ
ଦେବକୀର କେଶ ଧରି ବୋଇଲେ ତକ୍ଷାଳେ
ଏହୁ ମଲେ ମୋର ସବୁ କଳଙ୍କ ସରିବ
ଏହାପୁତ୍ର ହେଲେ ସିନା ମୋତେ ସଂହାରିବ
ଏ ରୂପେ ପାଞ୍ଚ ଭଗ୍ନିକୁ ମାରନ୍ତେ ଯେ ମାଡ଼
ବସୁଦେବ ବୋଇଲେ ନକର ଆଉତୋଡ଼ ।
ତୁ ଯହିଁକି ଡରୁ କହୁଅଛି ପୁଣି ମୁହିଁ
ଯେତେ ଗର୍ଭ ଜନମିବେ ମାରିବୁ ତ ନେଇ
ସ୍ତ୍ରୀ ହତ୍ୟା ଭଗ୍ନିଦ୍ରୋହ ନକର ରାୟେ ଆଉ
ଶୁଣିକରି କଂସାସୁର ବୋଲେ ହେଉ ହେଉ
ପାଞ୍ଚିଲେ ଭଗ୍ନିକି ଆଉ ମାଇଲେ କିହେବ
ବୁଝିଲେ ଅଟନ୍ତି ମୋର ବୈରୀ ବାସୁଦେବ ।
ଏତେ ବୋଲି କଂସରାଜ ଭଗିନୀକି ଛାଡ଼ି
ଚଳିଲେକ ପତିପତ୍ନୀ ଗୃହକୁ ବାହୁଡ଼ି ।
କଂସର ଯେ ମୂର୍ଖପଣ ଦେଖି ପୃଥ୍ୱୀଦେବୀ
ବ୍ରହ୍ମାଙ୍କୁ ସେ ଜଣାଇଲେ ପାଦପଦ୍ମ ସେବି ।
ଶୁଣିକରି ବ୍ରହ୍ମା ଚଳିଗଲେ କ୍ଷୀରାର୍ଣ୍ଣବ
ସଙ୍ଗତେ ଅଛନ୍ତି ତ୍ରୟବିଂଶ କୋଟିଦେବ ।
ଆତଙ୍କ ହୋଇ ଡାକିଲେ ଆହେ ଜଗଜ୍ୟୋତି
ଦୁଷ୍ଟକଂସାସୁର ଭୟୁ ରଖ ହେ ଶ୍ରୀପତି

ଦେବବାକ୍ୟ ଶୁଣି ଶୂନ୍ୟେ ଥାଇ ଭଗବାନ
ବୋଇଲେ ଜନ୍ମିବୁ ଆମ୍ଭେ କୃଷ୍ଣରୂପେଜାଣ
ସପତମ ଗର୍ଭଅନ୍ତେ ବାସୁଦେବ ବୀର୍ଯ୍ୟେ
ଦେବକୀଗର୍ଭୁ ଜନମି ଯିବୁ ଗୋପରାଜ୍ୟେ
ଦେବକୀର ଷଡ଼ପୁତ୍ର କଂସ ନିପାତିଲେ
ଜନ୍ମହେବ ଯୋଗମାୟା କନ୍ୟାରୂପେଭଲେ
ଦେବକୀ ମାତାର ଗର୍ଭେ ସ୍ୱପତମ ଠାରେ
ଜନମିବେ ବଳଦେବ ରୋହିଣୀ ଉଦରେ ।
ଅଷ୍ଟମ ଗର୍ଭରେ ପୁଣ ଆମ୍ଭେ ହେ ଆତ୍ମଭୁ
ଜନମିବୁ ମଞ୍ଚେ ଯାଇ ଦେବକୀର ଗର୍ଭୁ ।
ଯୋଗମାୟାଜନ୍ମ ଯେବେଯଶୋଦାରକୋଳେ
ମୋତେଥୋଇଣ ତାହାକୁଆଣିବେଯେକାଳେ
ଶୁଣିଣ କଂସ ଆସିବ ଅତିବେଗେ ଧାଇଁ
ଧରନ୍ତେ ହସ୍ତରୁ ଖସିଯିବେ ମହାମାଈ ।
ଆବର ଷଡ଼ପୁତ୍ରଙ୍କୁ ମାରିଥିବ ଛେଚି
କନ୍ୟାକୁ ସେ ନଦେଖିଣ ଗୃହେ ଯିବଘୁଞ୍ଚି ।
ଏରୂପେ କହିଣ ବିଷ୍ଣୁ ହେଲେ ଅନ୍ତର୍ଦ୍ଧାନ
ଶୁଣ ପରୀକ୍ଷ ଶ୍ରୀକୃଷ୍ଣ ପ୍ରଭୁଙ୍କ ଜନମ ।
ଯେତେ ମାର୍ଗରେ ଦେବଙ୍କୁକହିଥିଲେ ହରି
ସେହି ରୂପେ ଷଡ଼ପୁତ୍ର ଦେଲା କଂସ ମାରି ।
ଏଥିଉତ୍ତାରେ ଶ୍ରୀକୃଷ୍ଣ ଦେବକୀ ଗର୍ଭରେ
ପ୍ରବେଶ ହୋଇଲେଯାଇଁ ଲୌକିକ କର୍ମରେ
ତତକ୍ଷଣେ ମହାପ୍ରଭୁ ମାୟା ବିସ୍ତାରିଲେ
ବସୁଦେବଙ୍କୁ ଡକାଇ ଗୁପ୍ତେ ଆଜ୍ଞାଦେଲେ ।
ବୋଇଲେକ ଗୋପପୁରେ ରଖ ମତେନେଇ
ନନ୍ଦଗୃହରୁ କନ୍ୟାକୁ ଆଣ ପାଲଟାଇ ।
ଶୁଣିକରି ବସୁଦେବ କୃଷ୍ଣ ଘେନିଗଲେ
ନନ୍ଦ ଘରେ ପୁତ୍ର ଥୋଇ କନ୍ୟାକୁ ଆଣିଲେ ।
କଂସ ଛାମୁରେ ନେଇଣ ଦେଲେବସୁଦେବେ
ବୋଇଲେ ଏ ଭାଣିଜୀକି ସମ୍ଭାଳତୁ ଏବେ ।
ମୋର ପୁତ୍ରମାନେ ଜନ୍ମିଛନ୍ତି ଯେତେବେଳେ
ସମସ୍ତଙ୍କୁ ସମର୍ପିତ ଦେଇଛି ତୋ ମୂଳେ ।
ଏବେ ଭାଣିଜୀକି ତୋର ସମ୍ଭାଳିଣ ରଖ
ତା ଭାଗ୍ୟ କଥା ତ ଦେଖିଥିବ ଚତୁର୍ମୁଖ ।
ଭିଣୋଇ ମୁଖରୁ ଶଳା ଏହି ବାକ୍ୟ ଶୁଣି
ବୋଇଲା ଶତ୍ରୁ ମୋତେ ଏ ହେବାକାଳେ ପୁଣି
ଶତ୍ରୁ ଶେଷ ରଖିଲେଯେ ନିଶ୍ଚେ ଦୁଃଖପାଇ
କାଳେ ସେହି ବଂଶଯାକ ଅବଶ୍ୟ ନାଶଇ ।
ଏହିକଥା ବଡ଼ଲୋକ ମୁଖୁ ଥାଉ ଶୁଣି
ଏତେବୋଲି ଦୈତ୍ୟରାଜଉଠେ ଶିରଝୁଣି ।

ବସୁଦେବ ହସ୍ତୁ ଯାଇ କନ୍ୟାକୁ ଧରନ୍ତେ
ବିଜୁଳି ପରାୟ ଖସିଗଲା ଶୂନ୍ୟପଥେ ।
ଆକାଶ ମାର୍ଗରେ ରହି କଂସକୁ କହଇ
ବୋଲେ କୃଷ୍ଣହାତେ ନିଶ୍ଚେ ମରିବୁରେ ତୁହି ।
ଏତେକହି ସ୍ୱର୍ଗେ ଚଳିଗଲେ ଯୋଗମାୟା
ତାହାଶୁଣି କଂସର ଯେ ଡରେ ନିଜ କାୟା ।
ଶ୍ରୀକୃଷ୍ଣ ଜନମ ହୋଇ ବଢ଼ିଲେ ଗୋପରେ
ନାନା ଉତ୍ସବ ଯାତ୍ରା ସେ କଲେଗୋପପୁରେ
ଅନ୍ତୁଡ଼ି ଉଠିଆରି ଯେ ପଞ୍ଚୁଆତି ଦିନ
ମିଳେ ପୁତନା ଦେବାକୁ କୃଷ୍ଣେ କ୍ଷୀରପାନ ।
ତୁଣ୍ଡରେ ସ୍ତନ ତାହାର ଦିଅନ୍ତେ ପୂରାଇ
କ୍ଷୀର ସଙ୍ଗରେ ତା ପ୍ରାଣଶୋଷିଲେ ମାଧୋଇ
ଏକୋଇଶ ରାତ୍ରେ ପୁଣି ଗାର୍ଗବ ଅଇଲେ
ଜାତକ ନାମଟି ବୁଝି କର୍ଣ୍ଣରେ କହିଲେ ।
ତହିଁ ଉତ୍ତାରୁ ଶକଟ ଭାଙ୍ଗି ଦେବହରି
ବେନିମାସ ମଧ୍ୟେ ତୃଣାବର୍ତ୍ତ ଦେଲେ ମାରି ।
ଏଥି ଉତ୍ତାରୁ ଶ୍ରୀକୃଷ୍ଣ ମୃତ୍ତିକା ଭକ୍ଷିଲେ
ଚଉଦଭୁବନ ମାତା ଗର୍ଭରେ ଦେଖିଲେ ।
ତହିଁଉତ୍ତାରୁ ସେ ଦଧି ମନ୍ଥିଲେକ ଆଣି
ଦଧିଭାଣ୍ଡ ଗୋଟି ଭାଙ୍ଗିଦେଲେ ଚକ୍ରପାଣି ।
ଲବଣୀ ଧରି ଭକ୍ଷନ୍ତେ ଦେବ ନାରାୟଣ
ଯଶୋଦା ଛାଟ ଧରିଣ ଗୋଡ଼ାନ୍ତି ପଛେଣ ।
ତତକ୍ଷଣେ ଶ୍ରୀହରିଙ୍କି ଧରି ଯାମଳାରେ ।
ରୋଳରେ ଗୁଡ଼ାଇକରି ବାନ୍ଧିଲେ କୋପରେ
ସେ ରୋଳ କରରେ ଧରି ଟାଣିଲେ ଅଚ୍ୟୁତ
ତତକ୍ଷଣେ ଭାଙ୍ଗି ତରୁ ହେଲା ଖଣ୍ଡ ଶତ ।
ଶାପୁଁ ବୃକ୍ଷ ହୋଇଥିଲେ କୁବେର କୁମର
କୃଷ୍ଣଲାଗି ମୋକ୍ଷ ହୋଇଗଲେ ନିଜପୁର ।
ମଣିଚୂଡ଼କୁ ପୁଣି ଯେ କୃଷ୍ଣକଲେ ମୁକ୍ତି
ପୂର୍ବକାଳୁ ଶାପଦେଇଥିଲେ ବେନିମୂର୍ତ୍ତି ।
ତହିଁ ଉତ୍ତାରୁ ହୋଇଲେ କୃଷ୍ଣ ବାଳଲୀଳା
କେ ତୁଣ୍ଡେ କହି ପାରିବ ବିଷ୍ଣୁଙ୍କର ଖେଳା ।
ଏଥିଉତ୍ତାରେ ଅଇଲା କୋଳିବିକା ପୁଣ
ସେ କଥା ଗୋଚର କରିଛନ୍ତି କୃଷ୍ଣ ଜାଣ ।
ବସ୍ତାସୁର ବକାସୁର ଦୁହିଁଙ୍କୁ ସେ ମାରି
ଏହାଙ୍କର କଥା ଯେତେ ଜାଣ ଦଣ୍ଡଧାରୀ ।
ତହିଁଉତ୍ତାରୁ କାନନେ ମୂରଲୀ ବଜାଇ
ଷୋଳସହସ୍ର ଗୋପିଙ୍କି ଉଚ୍ଚାଟ କରାଇ ।
ବନସ୍ତେ ପୁଣି ଶ୍ରୀକୃଷ୍ଣ ବନଭୋଜି କଲେ
ଦୁରାତ୍ମା ଅଘାସୁରକୁ ବନେ ସଂହାରିଲେ ।

ଗୋରୁ ବସ୍ତାଯାକ ବ୍ରହ୍ମା ହରିଲେକ ପୁଣି
ତାହା ଚାହିଁଣ ଶ୍ରୀକୃଷ୍ଣ ହୋଇଲେକ ତୁନି ।
ଶ୍ରୀଅଙ୍ଗୁ ବସ୍ତା ବାଳକ କଲେ ପ୍ରଭୁ ଜାତ
ବ୍ରହ୍ମାନେଲା ପ୍ରାୟବସ୍ତା ହୋଇଲେ ସଂଜାତ ।
ଏମନ୍ତ କେତେଦିନ ଭୋଗହୋଇଯାନ୍ତେ
ଶ୍ରୀକୃଷ୍ଣଙ୍କ ମାୟାକେହୁ ଜାଣିବ ଜଗତେ ।
ଦିନେ ପୁଣି ଚତୁର୍ମୁଖ ଆସି ଗୋପପୁର
ବସ୍ତା ବାଳକ ଦେଖିଣ ହେଲେ ଚମତ୍କାର ।
ଶ୍ରୀପାଦତଳରେ ପଡ଼ି ବହୁ ସ୍ତୁତି କଲେ
ଆନନ୍ଦହୋଇ ଆପଣେ ନିଜପୁରେ ଗଲେ ।
ଧେନୁକାସୁରକୁ ପୁଣି ମାରି ଦାମୋଦର
କାଳିନ୍ଦୀରେ ପଶି କାଳିଦର୍ପ କଲେ ଚୂର ।
ପୁନରପି ମହାପ୍ରଭୁ ପ୍ରଳମ୍ବା ନାଶିଲେ
ଅନଳ ଲିଭାଇ ବନେ ଗୋକୁଳ ରଖିଲେ ।
ନନ୍ଦକୁ ରକ୍ଷା କରିଲେ ଅଜଗର ମୁଖୁ
ଆବର ପଦେକ ଶୁଣ କହିବା ସେ ପାଖୁ ।
ମୁରଲୀ ଶବଦ କରି ବୃନ୍ଦାବନେ ନିତି
ଗୋପୀଙ୍କି ଘେନିଣ ବନେ କ୍ରୀଡ଼ା କରୁଥାନ୍ତି
ଷଡ଼ଋତୁରେ ଶ୍ରୀକୃଷ୍ଣ କରନ୍ତି ବିହାର
ଯେଉଁ ଋତୁରେ ଯେଭାବ ଯେମନ୍ତ ପ୍ରକାର ।
ଗୋପୀ ନିତ୍ୟେ ଯମୁନାରେ କରନ୍ତିସ୍ନାହାନ
ରାସକ୍ରିଡ଼ା କଲେ କୃଷ୍ଣ ଚୋରାଇ ବସନ ।
କଦମ୍ବ ବୃକ୍ଷରେ ବାନ୍ଧି ଖେଳିଲେକ ଦୋଳି
ପହଞ୍ଚାଇ ଦେଲେ ତହିଁ ବସି ବନମାଳୀ ।
ଯଜ୍ଞ ପତ୍ନୀମାନଙ୍କୁ ସେ ଯେହ୍ନେ ବରଦେଲେ
ତାହାକୁ କେଅନ୍ତକରିପାରେ ଲେଖାଥିଲେ ।
ବାସବ ଗର୍ବ ଗଞ୍ଜିଣ ଯଜ୍ଞ ଅନ୍ନ ଭୁଞ୍ଜି
ଗୋବର୍ଦ୍ଧନ ଗିରି ଟେକିଦେଲେ ବନ ମଝି ।
ତତକ୍ଷଣେ ପୁରନ୍ଦର ମନେ ଭୟ କରି
ଅର୍ଘ୍ୟପାତ୍ର କରେ ଧରି ଭେଟିଲେ ନୃହରି ।
ଚରଣ ତଳରେ ପଡ଼ି ବହୁ ସ୍ତୁତି କଲେ
ଶ୍ରୀଗୋବିନ୍ଦ ନାମଦେଇ ସ୍ୱର୍ଗକୁ ଚଳିଲେ ।
ଏଥିଉତ୍ତାରେ ନନ୍ଦର ହେଲା ଏକାଦଶୀ
ସ୍ନାନ କରୁଅଛି ନନ୍ଦ ଜଳପତି ଆସି ।
ଘେନିଯାନ୍ତେ କୃଷ୍ଣ ଯାଇ ବରୁଣ ନଗରେ
ପଶିଲେ ପ୍ରଭୁ ଗୋପାଳ ପୃଥଙ୍କ ବେଶରେ ।
ବରୁଣ ଦେବ କୃଷ୍ଣଙ୍କୁ ଦେଖି ସ୍ତୁତିକରି
ନନ୍ଦକୁ ଛାମୁରେ ଦେଇଗଲା ନିଜପୁରୀ ।
ଏଥି ଉତ୍ତାରେ ଶ୍ରୀକୃଷ୍ଣ କଲେକ ଯେ ରାସ
କାଳିନ୍ଦୀରେ ଯାଇଁ ପ୍ରଭୁ ହୋଇଲେ ପ୍ରବେଶ

ଶରଦ ନିଶାରେ ଦିଗ ଦିଶଇ ନିର୍ମଳ
କଦମ୍ବ ତରୁର ତଳେ ମିଳି ଆଦିମୂଳ ।
ତ୍ରିଭଙ୍ଗୀ ଛନ୍ଦରେ ଉଭା ହୋଇ ଭାବଗ୍ରାହୀ
ସୁସ୍ୱରରେ ମୁରଲୀ କି ବଜାଇ ମାଧୋଇ ।
ଗୋପୀମାନଙ୍କୁ ପବିତ୍ର କରିବା କାରଣେ
ଶ୍ରୀକୃଷ୍ଣ ମୁରଲୀ ନାଦ ଡ଼ାକେ ଅନୁକ୍ଷଣେ ।
ଅଧରେ ମୁରଲୀନାଦ ବଜାନ୍ତେ ସୁସ୍ୱରେ
ସେ ଶବଦ ଗୋଟିଯାଇଁ ଶୁଭେ ଗୋପପୁରେ
ଗୋପିଏ ସେ ନାଦଶୁଣି ତରଳ ହୋଇଲେ
ଧାଇଁ ଧାଇଁ ବୃନ୍ଦାବନେ କୃଷ୍ଣଙ୍କୁ ଦେଖିଲେ ।
ଶ୍ରୀକୃଷ୍ଣ ତାହାଙ୍କ ମନ ବିଡ଼ିବାର ପାଇଁ
କହନ୍ତି ନିଷ୍ଠୁର ଭାଷା ହୃଦେ ଦୟାବହି ।
ବୁଝିଲେ କୃଷ୍ଣର ଦେହ ଅମୃତ ସାଗର
ଗୋପିଏ ଚିହ୍ନନ୍ତି ଏକା ଶ୍ରୀକୃଷ୍ଣ ଶରୀର ।
ଶ୍ରୀକୃଷ୍ଣ ବୋଇଲେ କିମ୍ପା ଏତେରାତ୍ରକାଳେ
ଦୋଚାରୁଣୀ ନାରୀ ପ୍ରାୟ ଧାଇଁ ଅସମ୍ଭାଳେ
ଗୋପିଏ ତାହା ଶୁଣିଣ ଆନନ୍ଦିତ ହୋଇ
ବୋଲନ୍ତି ପୁରୁଷମାନେ ସୁରତରେ ବାଇ ।
କାର୍ଯ୍ୟ ସରିଲେ ସେମାନେ ନୁହନ୍ତି କାହାର
ଛାଡ଼ିଯାନ୍ତି ପୁଷ୍ପମାନ ଯେସନେ ଭ୍ରମର ।
ଗୋପିଙ୍କ ବଚନ ଶୁଣି ଶ୍ରୀକୃଷ୍ଣ ହସିଲେ
କଥାର ମାର୍ଗେ ପ୍ରଭୁଙ୍କ ବଶୀଭୂତ ହେଲେ ।
ତହିଁ ଉତ୍ତାରୁ ଶ୍ରୀକୃଷ୍ଣ ରାସକ୍ରୀଡ଼ା କରି
ଆନନ୍ଦ ପାଇ ବୁଡ଼ିଲେ ସର୍ବ ଗୋପନାରୀ ।
ଆନନ୍ଦରେ ଗୋପିମାନେକାମେଭୋଳ ହୋଇ
ବୃନ୍ଦାକୁ ଘେନି ଅନ୍ତର ହୋନ୍ତେ ଭାବଗ୍ରାହୀ ।
ଜାଣିଲେକ ଗୋପିମାନେ କୃଷ୍ଣ ଅନ୍ତର୍ଦ୍ଧାନ
ଭୂମିପରେ ଶୋଇପଡ଼ି କରନ୍ତି ରୋଦନ ।
ପ୍ରେମରେ ଭୋଳହୋଇଣ ଡାକନ୍ତେ ଆକୁଳେ
ବୋଲନ୍ତି କାମୁ ଉଦ୍ଧର ପ୍ରଭୁ ଆଦିମୂଳେ ।
ଗୋପିମାନଙ୍କ ବିକଳ ଶୁଣି ଜନାର୍ଦ୍ଦନ
ରାହାସ ସ୍ଥାନରେ ଆସି ଦେଲେ ଦରଶନ ।
ମୋହିନୀ ସ୍ୱରୁପେ ତାଙ୍କୁ କଲେ କରଗତ
ଏଥିଅନନ୍ତରେ ବାଣୀ ଶୁଣ ନରନାଥ ।
ତହିଁ ଉତ୍ତାରୁ ସେ ଶଂଖଚୂଡ଼ ବଧ କଲେ
ଷଣ୍ଢାସୁର ପୁଣି ବକାସୁର ସଂହାରିଲେ ।
କେଶୀନାମେ ଦଇତ୍ୟକୁ ମାଇଲେ ଶ୍ରୀହରି
ସେହିଠାରୁ କଂସରାଜା ରଙ୍ଗସଭା କରି ।
ନାନାପ୍ରକାରେ ସଭାକୁ କରିଲା ମଣ୍ଡନ
ମାରିବାକୁ ମନେ ପାଞ୍ଚେ କୃଷ୍ଣ ବଳରାମ ।

ଅକ୍ରୁରକୁ ରାଇ ପେଷିଦେଲା ଗୋପପୁର
ବୋଇଲେକ ଭଣଜାକୁ ଆଣ ହେ ମୋହର
ରଙ୍ଗସଭା ଯାତ୍ରା ମୋର ଦେଖନ୍ତୁ ଦ୍ୱିଭାଇ
ପୁରାତନ ଶାସ୍ତ୍ରେ ଏହା ଅଛି ଲେଖାହୋଇ ।
ଯାତ୍ରା ଉତ୍ସବ କାଳରେ ଭଣଜାକୁ ଲୋଡ଼ି
ବିଷ୍ଣୁ ପରାୟ ମାନିବ ଲେଖିଅଛି ଧାଡ଼ି ।
ଏତେମାର୍ଗ କପଟରେ କହି କଂସଦୈତ୍ୟ
ଅକ୍ରୂରକୁ ରଥଦେଇ ପେଶିଲା ତୁରିତ ।
ସ୍ୟନ୍ଦନ ଧରି ଅକ୍ରୂର ଗୋପେ ଗଲା ଚଳି
ଦେଖିଲା ନନ୍ଦ ଗୃହରେ ବିଜେ ବନମାଳୀ ।
ଶ୍ରୀକୃଷ୍ଣଙ୍କୁ ଜଣାଇଲା ପାଦତଳେ ପଡ଼ି
ବୋଇଲାକ ଯିବା ଚାଲ ଅଛି କଂସଲୋଡ଼ି ।
ବହୁତ ଆଦର କରି କହିଅଛି ମୋତେ
ରଙ୍ଗସଭା ଯାତ୍ରା ଦେଖିଯିବେ ବେନିଭ୍ରାତେ ।
ଶୁଣିଣ ପ୍ରଭୁ ଜାଣିଲେ କଂସାସୁର କଥା
ବୋଇଲେ ଆୟୁପୂରିଲା ଏବେ ତାର ବୃଥା ।
ଏତେ ପାଞ୍ଚି ଅକ୍ରୂରକୁ ସମ୍ମାନନା କଲେ
ମଥୁରା ଯିବା ବୋଲିଣ ଆପେ ସଜହେଲେ ।
ପାଞ୍ଚିଲେ ଯିବାକୁ ଯେତେ ଦିନ ଯୋଗଥିଲା
ତାହା କେହୁ ଆନ କରି ପାରିବଟି ଭଲା ।
ଏରୁପେ ମନରେ ପାଞ୍ଚି କୃଷ୍ଣ ସଜହୋନ୍ତେ
ଶୁଣିଣ ଗୋପୀଏ ଧାଇଁ ଆସିଲେ ତୁରିତେ ।
କାନ୍ଦନ୍ତି ଶୋକଭରରେ କୃଷ୍ଣ ମୁଖ ଚାହିଁ
ବୋଲନ୍ତି ଛାଡ଼ି ଯିବକି ସତେ ଭାବଗ୍ରାହୀ ।
ତୁମ୍ଭର ସେ କ୍ରୀଡ଼ାରସ ଆମ୍ଭେ କରୁ ଭୋଗ
ଆମ୍ଭର ସେ ଭୋଗ ଘେନି ଯାଉଛ ଶ୍ରୀରଙ୍ଗ ।
ଭୋଗ ପୂର୍ଣ୍ଣ ନ ହେବାରୁ ଚିତ୍ତ ନୁହେଁ ବୋଧ
ଏଣୁତେଣୁ ଯେ ବାହାର କଲ ହେ ଗୋବିନ୍ଦ
ଏଣୁ ବୋଲିବାର କଥା ଅଟେ ନବଯୁବା
ତେଣୁ ବୋଲିବାର କଥା ବୃଥାରେ ଲେଖିବା
ଯୁବାବୃଦ୍ଧା ଦୁଇରୁ ଯେ ବାହାର ହୋଇଲୁ
ଅଦଣ୍ଡ ନାବରେ ବସି ଜଳେ ବୁଡ଼ି ମଲୁ ।
ଯେତେ ମୁହାଁସ ତୁମ୍ଭଙ୍କୁ ଥିଲୁ ଆମ୍ଭେକରି
ଜଳବିନ୍ଦୁ ପ୍ରାୟ ଲୀଳା ସରିଲା ସବୁରି ।
ଗୋପୀମାନଙ୍କ ବିକଳ ଶୁଣି ନନ୍ଦବାଳ
ବହୁତ ବୋଧ କହନ୍ତି ତାଙ୍କୁ ଆଦିମୂଳ ।
ବୋଇଲେ କହୁଛୁ ଆହେ ଗୋପୀମାନେ ଶୁଣ
ସୁବନ୍ଧୁ ଲୋଡ଼ିବ ଯେବେ ନିମିତ୍ତ କାର୍ଯ୍ୟେଣ ।
ତହିଁ ନଗଲେ ମହତ କାଳେ ହୋଏ ହାନି
ଏହି କଥା ସ୍ୱବନ୍ଧୁ ଏ ଜାଣନ୍ତି ଯେ ଚିହ୍ନି ।

ଆମ୍ଭଙ୍କୁ କଂସ ନୃପତି ଲୋଡ଼ିଲେଯେବେଳେ
ସେଠାକୁ ନଗଲେ ଲଜ୍ଜାପାଇବୁ ସେକାଳେ ।
ତଥାପି ବନ୍ଧୁ ଲୋଡ଼ିବେ ଯେବେ ଶ୍ରଦ୍ଧାପାଇ
ନ ଗଲା ଲୋକକୁ ନିନ୍ଦାବହୁ ଉପୁଜଇ ।
ବରଣ କଲାରୁ ଯେବେ ନ ଯିବ ସେଠାକୁ
ବହୁତର ଲଜା ତହିଁ ଜନ୍ମେ କାଳାନ୍ତକୁ ।
ଆମ୍ଭଙ୍କୁ କଂସ ନୃପତି ବରିଲାକ ଯେବେ
ନ ଗଲେ ଆମ୍ଭଙ୍କୁ ନିନ୍ଦା ଲୋକରେ କରିବେ ।
ଏ ଘେନି ଆମ୍ଭେ ଯାଉଛି, ମଥୁରା ପୁରକୁ
ଗଲେ ବାହୁଡ଼ି ଅବଶ୍ୟ ଆସବୁ ଗୋପକୁ ।
ଏ ରୂପେ ଗୋପୀମାନଙ୍କୁ କହି ବ୍ରହ୍ମରାଶି
ଅକ୍ରୂରଙ୍କୁ ସଙ୍ଗେ ଘେନି ରଥେ ଯାଇଁ ବସି ।
ଶ୍ରୀକୃଷ୍ଣ ବଳରାମଙ୍କୁ ଦେଖିଣ ଅକ୍ରୂର
ମହା ଆନନ୍ଦରେ ରଥ ବାହେ ଧୀର ଧୀର ।
କାନନେ ପଶନ୍ତେ ରଥ ପବନହୁଁ ଗଲା
କାଳିନ୍ଦୀର ତଟେ ଯାଇଁ ପ୍ରବେଶ ହୋଇଲା ।
ସେହି ରଥର ଉପରୁ ଓହ୍ଲାଇ ଦ୍ୱିଭାଇ
କାଳିନ୍ଦୀରେ ପଶି ଜଳ ପିଇଲେକ ଯାଇ ।
ପାନ କରନ୍ତେ ସେ ଜଳ ଲାଗେ ସୁଧାସମ
ସେ ଜଳ ପିଇଲେ ଯାଇ କୃଷ୍ଣ ବଳାରମ ।
ବୃକ୍ଷମୂଳେ ରଥପରେ ବସିଲେ ଦ୍ୱିଭାଇ
ଛାମୁରେ କର ଯୋଡ଼ିଣ ଅକ୍ରୂର ଜଣାଇ ।
ବୋଇଲେଭୋ ପ୍ରଭୁ ମୋତେହୋଇବାପ୍ରସନ୍ନ
ଆଜ୍ଞା ଦେଲେ ଯମୁନାରେ କରିବିସ୍ନାହାନ ।
ସ୍ନାହାନ ଶୁଚି ହୋଇଣ ଶୀଘ୍ରେ ଆସିବି
ତେବେ ଯାଇଁ ଆପଣଙ୍କୁ ଦର୍ଶନ କରିବି ।
ଅକ୍ରୂରର ବଚନକୁ ଶୁଣି ଜନାର୍ଦ୍ଦନ
ବୋଲନ୍ତି ବେଗେଯାଇଣକର ତେବେ ସ୍ନାନ
ଉଛୁର ନକର ଯିବା ମଥୁରା ନଗର
ଶୁଣିଣ ରଥୁ ଓହ୍ଲାଇ ଗଲାକ ଅକ୍ରୂର ।
ଜଳରେ ଯାଇଁ ବୁଡ଼ନ୍ତେ ଶ୍ରୀକୃଷ୍ଣ ସୁମରି
ଦେଖିଲା କାଳିନ୍ଦୀ ଜଳ ମଧ୍ୟେ ନରହରି ।
ସ୍ୟନ୍ଦନ ଉପରେ ଦେଖିଥିଲା ଯେଉଁ ରୂପ
ସେହି ରୂପ ଜଳେ ବୁଡ଼ି ଦେଖିଲା ସ୍ୱରୂପ ।
ଅକ୍ରୂର ଦେଖିଣ ତାହା ମନେ ବିଚାରଇ
ବୋଲେକଂସଡ଼ରେଜଳେଲୁଚିଲେ ମାଧୋ
ଏତେ ପାଞ୍ଚି କୂଳେ ଉଠି ଚାହେଁ ମନ୍ତ୍ରୀବର
ଦେଖିଲା ରଥରେ ବସିଛନ୍ତି ଦାମୋଦର ।
ବୃକ୍ଷମୂଳେ ରଥେ ବସିଛନ୍ତି ବେନିଭାଇ
ଦୁଇଠାରେ ଶ୍ରୀକୃଷ୍ଣଙ୍କ ତୁଲ୍ୟ ଦେଖିଲଇଁ ।
ଜଳେଦେଖିବାରୂପ ସେକେବେନୁହେଁ ମିଥ୍ୟା
ଭଲା ସେ ପ୍ରକାଶ କରିଛନ୍ତି କୃଷ୍ଣକଥା ।
ଲେଉଟି ବୁଡ଼ିବି ଜଳେ ବେଳେ ପରାଯାଇଁ
ଦେଖିଲେ ପାଞ୍ଚିବି ମୁହିଁ ବିଭୋଳ ହେଲଇଁ ।
ଏତେ ପାଞ୍ଚି ଜଳମଧ୍ୟେ ପୁନରପି ବୁଡ଼ି
ଦେଖିଲା ବୈକୁଣ୍ଠ ତହିଁ ମଧ୍ୟେ ଅଛି ଗଡ଼ି ।
ସୁସଞ୍ଚ ମନ୍ଦିରେ ଅଛି ରତ୍ନ ସିଂହାସନ
ବହଇ ସୁଗନ୍ଧ ବାସେ ମଳୟ ପବନ ।
ଅନନ୍ତ ସ୍ୱରୁପ ଧରିଛନ୍ତି ହଳଧର
କୋଟିଏ ଚନ୍ଦ୍ର ସୂର୍ଯ୍ୟ ନଦିଶେ ପଟାନ୍ତର ।
ସହସ୍ରଫଣାରେ ବେନି ସସ୍ରଚକ୍ଷୁ ଦିଶେ
ପ୍ରଭାତ ରବି ପରାୟ ଉଦୟ ପ୍ରକାଶେ ।
କଟିରେ ପିନ୍ଧିଅଛନ୍ତି ଅମୁଲ୍ୟ ବସନ
ଫଣାର ବିସ୍ତାର ଦିଶେ ଶତେକ ଯୋଜନ ।
କୋଟିଏ କନ୍ଦର୍ପ ସେହିରୁପେ ନୁହେଁ ସରି ।
ଏରୂପେ ଶ୍ରୀବଳରାମ ଛନ୍ତି ରୂପ ଧରି ।
ରତନ କୁଣ୍ଡଳମାନ ଦିଶେ କର୍ଣ୍ଣେ ଫୁଟି
କପାଳରେ ଅଳକାଯେ ମୋହେ ନବସୃଷ୍ଟି ।
ଗଳାଦେଶେ ଦିବ୍ୟ ହାରମାଳ ଝଟକନ୍ତି
ଆକାଶେ ଯେସନେ ଗ୍ରହଗଣ ପ୍ରକାଶନ୍ତି ।
ଏରୂପେ ଅନନ୍ତ କୋଳେ ବିଜେକରି ହରି
ନୀଳଜୀମୁତ ପରାୟ ଅଙ୍ଗେଛନ୍ତି ଧରି ।
କଟୀରେ ପୀତ ଅମ୍ବର, ନାନାବର୍ଣ୍ଣେ ମାଳ
ଶ୍ରବଣରେ ବିରାଜଇ ମକର କୁଣ୍ଡଳ ।
ଶଂଖ ଚକ୍ର ଗଦା ପଦ୍ମ ଚାରିକରେ ଧରି
କମଳ ଲୋଚନ ଚାହିଁଛନ୍ତି ବିଜେ କରି ।
ଦରହାସ ବଦନରେ କହନ୍ତି ବଚନ
ଅମୃତରସ ତହିଁରୁ ବହେ ଘନ ଘନ ।
ସୁମଞ୍ଚ କପାଳରେ ଯେ ଦିଶେ ଭ୍ରୁଜରେଖା
ତିଳ କୁସୁମ ପରାୟ ଶୋହଇ ନାସିକା ।
ରଙ୍ଗଅଧରେ ପ୍ରକାଶେ ମନ୍ଦ ମନ୍ଦ ହାସ
ଦିଶଇ କର୍ଣ୍ଣେ କୁଣ୍ଡଳ ଚନ୍ଦ୍ର ସୂର୍ଯ୍ୟ ତ୍ରାସ ।
ବର୍ତ୍ତୁଳ ତୁଙ୍ଗ ହୃଦୟେ ଦିଶଇ ଶୋଭନ
ଶ୍ରୀବତ୍ସ ଚିହ୍ନ ଗୋଟିକେ ଶୋହେ ବକ୍ଷସ୍ଥାନ ।
ଦକ୍ଷିଣାବର୍ତ୍ତ ପରାୟ ଦିଶେ କନ୍ଧ ଗ୍ରୀବା
ପଦ୍ମ କୁସୁମ ପ୍ରାୟେକ ଦିଶେ ନାଭି ଶୋଭା ।
କଟି ଭାଗରେ ଶୋଭା ଯେ ଦିଶଇ ଅପୂର୍ବ
ନିତମ୍ବ ଦେଶେ ଶୋଭଇ ଯେହ୍ନେ କରୀକୁମ୍ଭ ।
କର ମେଖଳାରେ ଶୋଭାପାଏ ରତ୍ନମଣି
ଜାନୁ ଯୁଗଳ ଉଲଟ ରମ୍ଭାତରୁ ଜିଣି ।

ମାଣିକ୍ୟର ସଦୃଶ ଯେ ଦିଶେ ନଖପନ୍ତି
ବିରାଜ ଅଙ୍ଗୁଳି ଅଗ୍ରମାନ ଝଟକନ୍ତି ।
ଶ୍ରୀ ଚରଣ ପଦ୍ମବେନି ପଦ୍ମପନ୍ତି ପ୍ରାୟେ
ଅମୂଲ୍ୟ ଅଳଙ୍କାର ଯେ ଶୋହେବିଷ୍ଣୁକାୟେ
ମଥାପରେ ରତ୍ନମଣି ମୁକୁଟାଲଙ୍କାର
କର୍ଣ୍ଣରେ କୁଣ୍ଡଳ ଦିଶେ ଦଶଅବତାର ।
ଶ୍ରୀ ଯଜ୍ଞୋପବୀତ ଗୋଟି ବିରାଜଇ କନ୍ଧେ
ଶଙ୍ଖ ଚକ୍ର ଗଦା ପଦ୍ମ ପ୍ରକାଶିତ ହୃଦେ ।
ଶ୍ରୀ ଗଣ୍ଡଯୁଗଳେ ପୂଣି ରାଜେ ପଞ୍ଚରେଖ
ପ୍ରାଣ ପାନ ଦ୍ୟାନୋଦାନ ସମାନ ଯେମୁଖ ।
ଶ୍ରୀବତ୍ସ ଚିହ୍ନ ଉପରେ ନାନା ରତ୍ନମାଳ
କଉସ୍ତୁଭ ମଣି ଗୋଟି ରାଜେ ବକ୍ଷସ୍ଥଳ ।
ବିଧାତା ଶଙ୍କର ମୁନି ଛନ୍ତି ସୁରଗଣେ
ଶ୍ରୀହରିବୋଲି କରନ୍ତି ଧ୍ୱନି ଜଣେ ଜଣେ ।
ପଢ଼ନ୍ତି କବଚ ସ୍ତୁତି ସ୍ତୋତ୍ର ବିପ୍ରେ ମିଳି
ସ୍ୱର୍ଗରୁ ଅପସରିଏ ଦ୍ୟନ୍ତି ହୁଳହୁଳି ।
ବହୁତ ଭକତ ତହିଁ ମିଳିଛନ୍ତି ଆସି
ଭୁଷଣ୍ଡ ପ୍ରହ୍ଲାଦ ଆଉ ଉଦ୍ଧାନ ଯେ ମିଶି ।
ଶ୍ରୀମହାଲକ୍ଷ୍ମୀଙ୍କ ତୁଲେ ଅଷ୍ଟ ସଖୀ ଛନ୍ତି
ଆଲଟ ଚାମର ଧରି ଚୌକତି ବିଞ୍ଚନ୍ତି ।
ମାଗଧେ ଶଂଖ ବଜାନ୍ତି କରି ଘନ ଘନ
ଅକ୍ରୁର ତାହା ଦେଖିଣ କରଇ କୀର୍ତ୍ତନ ।
ମହାଭକତି ଭୋଳରେ ହୁଏ ଗଦ ଗଦ
ନୟନରୁ ଅଶ୍ରୁଜଳ ବହେ ଗଦ ଗଦ ।
ହୃଦୟରେ ଉଚ୍ଚାରଇ ହରି ନାରାୟଣ
ଚାପଇ ଶ୍ରୀ ପଦ୍ମପାଦ ଦୃଢ଼େଣ ଧରିଣ ।
ଭକତିରେ ଭୋଳହୋଇ ବୋଲେତ୍ରାହି ତ୍ରାହି
ଶ୍ରୀହରି କୀର୍ତ୍ତନ କରି ନାଚେ ଢ଼େଇଁ ଢ଼େଇଁ ।
ସ୍ତୁତିବଚନ ଭାଷଇ ଜ୍ଞାନେ ମନ ରସି
ବୋଲେଭୋଦେବ ସାକ୍ଷାତେ ଅଟ ବ୍ରହ୍ମରାଶି
ସଂସାର ସର୍ଜ୍ଜନାକର ହୋଇ ନିରାକାର
ନାଭିରୁ ଜନମ ପୁଣି କଲ ବେଦବର ।
ତେଣୁକରି ତୁମ୍ଭ ତହୁଁ ହୁନ୍ତି ଆତଯାତ
ପୃଥ୍ୱୀ ଆପ ତେଜ ବାୟୁ ବ୍ୟୋମ ପଞ୍ଚଭୂତ ।
ମହତକୁ ଆଦିକରି ଇନ୍ଦ୍ରିଗଣେ ଯେତେ
ତୁରୀୟାତୀତକୁ ଘେନି ପ୍ରକାଶି ସାକ୍ଷାତେ ।
ତୁମ୍ଭେ ସ୍ୱୟଂ ମହାପ୍ରଭୁ ଅଟ ନାରାୟଣ
ଚଉଦ ବ୍ରହ୍ମାଣ୍ଡ ତୁମ୍ଭେ କରିଛ ଭିଆଣ ।
ବ୍ରହ୍ମାଣ୍ଡଯାକ ତୁମ୍ଭର ଲୋମକୂପୁ ଜାତ
ତୁମ୍ଭର ରୂପ ଚିହ୍ନ ନ ଜାଣେ କେହି ତତ୍ତ୍ୱ ।
ତ୍ରିଗୁଣେ ପଡ଼ି ରହିଲେ ବ୍ରହ୍ମା ଜଡ଼ ହୋଇ
ତୁମ୍ଭ ମହିଁମା ଚିହ୍ନି ନପାରେ ହେତୁ ଦେଇ ।
ସନକ ପ୍ରଭୃତି କରି ସର୍ବ ଯୋଗିଜନେ
କେବଳ ସେ ପୂଜା କରୁଛନ୍ତି ଅନୁମାନେ ।
ତ୍ରିଗୁଣ ରୂପେ ସଂସାରେ ଅଛ ତୁମ୍ଭେ ଛନ୍ଦି
ଏ ଜନ୍ତୁମାନଙ୍କୁ ବିଷ୍ଣୁ ମାୟାରେ ଯେ ବନ୍ଦି ।
ତୁମ୍ଭ ମୁଖରୁ ଭୋ ଦେବ ଅଗ୍ନି ହେଲା ଜାତ
ଚରଣ ବେନିରୁ ପୁଣି ହେଲା ବସୁମାତ ।
ଆବର ଦଶଦିଶ ଯେ ତୁମ୍ଭ ବେନିଶ୍ରୋତ୍ର
ଅଟନ୍ତି ତୁମ୍ଭର ଚନ୍ଦ୍ର ସୂର୍ଯ୍ୟ ପୁଣି ନେତ୍ର ।
ତୁମ୍ଭର ଭୁଜ ଅଟନ୍ତି ଦଶଦିଗପାଳ
ଅଟଇ ଉଦର ଗୋଟି ବଡ଼ବା ଅନଳ ।
ବୃକ୍ଷପନ୍ତି ଏ ଅଟନ୍ତି ତୁମ୍ଭର ଯେ ଲୋମ
ଅଠର ବର୍ଣ୍ଣ ଯାକରେ ତୁମ୍ଭେ ପରଂବ୍ରହ୍ମ ।
ଯାବତ ଗିରିମାନଙ୍କୁ କରିଅଛ ଅସ୍ଥି
ତୁମ୍ଭର ଭୂଷଣ ଜାଣ ଅଟେ ପ୍ରଜାପତି ।
ଏ ଘେନି ତୁମ୍ଭେପ୍ରତ୍ୟକ୍ଷେ ଅଟ ନିରଞ୍ଜନ
ତୁମ୍ଭର ଶ୍ରୀଅଙ୍ଗୁ ଜାତ ଚଉଦ ଭୁବନ ।
ବ୍ରହ୍ମାଣ୍ଡଯାକ ତୁମ୍ଭର ଲୋମମାଳା ହୋଇ
ଯେସନେକ ଉଦୁମ୍ବର ବୃକ୍ଷେ ଥାନ୍ତି ରହି ।
ସକଳ ହୃଦୟେ ମନରୂପେ ଅଛ ବ୍ୟାପି
ନମସ୍ତେ ନମସ୍ତେ ଦେବ ଅଟ ମତ୍ସ୍ୟରୂପି ।
କୁର୍ମ ସ୍ୱରୁପ ଧରିଣ ପୃଥ୍ୱୀଭାରା ବହ
ମଧୁକୁ ମାରିଣ ମଧୁସୂଦନ ବୋଲାଅ ।
ବରାହ ରୂପରେ ପୃଥ୍ୱୀ ଦନ୍ତେଅଛ ଧରି
ନୃସିଂହ ସ୍ୱରୂପେ ସ୍ୱାମୀ ହିରଣ୍ୟକୁ ମାରି ।
ବାମନ ସ୍ୱରୂପେ ବଳି ପାତାଳରେ ଚାପି
ନମସ୍ତେ ନମସ୍ତେ ଦେବ ତ୍ରିବିକ୍ରମ ରୂପି ।
ନମସ୍ତେ ନମସ୍ତେ ଦେବ ଯମଦଗ୍ନି ସୁତ
ପର୍ଶୁରାମ ଅବତାରେ କ୍ଷତ୍ରୀ କଲ ହତ ।
ଜାନକୀ ଛଳରେ ପୁଣି ରାବଣ ସଂହାରି
ଲଙ୍କାରେ ବିଭୀଷଣକୁ କଲ ଦଣ୍ଡଧାରୀ ।
ରୋହିଣୀକୋଳରେଦେବ ହୋଇଲ ସଞ୍ଜାତ
ବଳରାମ ଦେବସ୍ୱାମୀ ବସୁଦେବ ସୁତ ।
ନମସ୍ତେ ନମସ୍ତେ ଦେବ କୃଷ୍ଣ ଅବତାର
ଦେବକୀ ଦେବୀର କୋଳେ ଜନମ ତୁମ୍ଭର ।
ବଉଦ୍ଧ ସ୍ୱରୂପ ହରି ପୂଜେ ନୀଳଗିରି
ବସିଅଛ ଭୁଜ ଟେକି ସବୁ ଜନ ତାରି ।
ପୁଣି କଳକୀ ସ୍ୱରୂପ ଧରି ଭଗବାନ
ମ୍ଳେଚ୍ଛ ମାରିଣ ରଖିବ ପ୍ରଭୁ ସାଧୁଜନ ।

ସଂସାରେ ତୁମ୍ଭର ମାୟା କାହାକୁ ନ ଛାଡ଼ି
ଭ୍ରମନ୍ତି ସମସ୍ତେ ମୋହ ମାୟା ଚକ୍ରେ ପଡ଼ି ।
ମୁହିଁ ତହିଁ ପଡ଼ି ହେଉଅଛି ସ୍ୱାମୀ ବଣା
ତୁମ୍ଭର ଭୃତ୍ୟର ଭୃତ୍ୟ ଅଟେ ନିଉଛଣା ।
ଦାରାପୁତ୍ର ବନ୍ଧୁମାନେଛନ୍ତି ମୋତେବେଢ଼ି
ଏହାକୁ ପୋଷି ସଂସାର ମଧ୍ୟେ ଅଛି ପଡ଼ି ।
ଅନିତ୍ୟ ସଂସାର ଏହୁ ଅଟେ ପ୍ରଭୁ ଜାଣ
ବୁଝିଲେ ଏକା ସବୁରି ତୁମ୍ଭେ ପରିତ୍ରାଣ ।
ନିର୍ମଳ ଜଳ ସଂସାର ମଧ୍ୟେ ଛାଡ଼ି ମୁହିଁ
ମୃଗତୃଷ୍ଣାରେ ମୁଁ ଭ୍ରମେ ପଡ଼ି ପହଁରଇ ।
ତେଣୁ ଏ ତୃଷାମୋର ନ ଭାଙ୍ଗ ଦାମୋଦର
ତୁମ୍ଭର ପାଦେ ନୋହିଲି ଯେଣୁ ପରିଚାର ।
ମନକୁ ମୋର ଚିହ୍ନି ନପାରେ ଯେଣୁ ଜାଣ
ଯେଣୁ ତୁମ୍ଭଙ୍କୁ ଚିହ୍ନି ନ ପାରେ ନାରାୟଣ ।
ମନକୁ ମୋହର ଚିହ୍ନି ନ ପାରିଲି ଧରି
ତେଣୁ ଅନ୍ତର ତୁମ୍ଭଙ୍କୁ ହେଉଛି ଶ୍ରୀହରି ।
କି ରୂପରେ ମୋତେନେଇ ରଖ ପାଦତଳେ
ଶରଣ ପଶୁଛି ମୁହିଁ ଚରଣ ଯୁଗଳେ ।
ତୁମ୍ଭର ଶ୍ରୀ ପାଦ ପଦ୍ମ ସର୍ବ ପରିତ୍ରାଣ
ସୁଜ୍ଞାନୀ ଜନେ ଯେ ଚିହ୍ନିହ୍ୱନ୍ତି ନିସ୍ତାରଣ ।
ଜ୍ଞାନୀଙ୍କର ସଂଶୟ ଯେ ଫିଟଇ ତେଣୁଟି
ତୁମ୍ଭର ଚରଣ ଚିହ୍ନ ପାରନ୍ତି ଯେଣୁଟି ।
ପରମ ପୁରୁଷ ତୁମ୍ଭେ ସର୍ବ ପିତା ମାତ
ପ୍ରାଣୀଙ୍କ ଉପରେ ତୁମ୍ଭେ ବୋଲାଅ ଶ୍ରୀମନ୍ତ
ଇନ୍ଦ୍ରିୟଗଣ ଉପରେ ଆପଣ ଯେ ରାଜା
ତେଣୁ ମୁଁ ଆପଣଙ୍କର କରେ ପାଦପୂଜା ।
ଏରୂପେ ଅକ୍ରୂର ସ୍ତୁତି କରେ ଜଳେ ପଶି
ପୁଣି ଚରଣରେ ସେବା କରେ ଅହର୍ନିଶି ।
ସେବାରେ ଭୋଳ ହୋଇଣ ବୋଲେ ତ୍ରାହିତ୍ରାହି
ମୋର ଛାର କି ତୁମ୍ଭଙ୍କୁ ଚିହ୍ନେ ଭାବଗ୍ରାହୀ ।
ଏରୂପେ ଅକ୍ରୂରଠାରୁ ଶୁଣିଣ ଗୋବିନ୍ଦ
କହନ୍ତି ଚିହ୍ନିପାରିଲୁ ଏକା ତୁ ମୋ ହୃଦ ।
ବିଦୂର ଅକ୍ରୂର ଆଉ ଧ୍ରୁବ ହନୁମାନ
ଲଙ୍କାର ବିଭୀଷଣ ଯେ ପାଣ୍ଡବ ଅର୍ଜ୍ଜୁନ ।
ଉଦ୍ଧବ ପ୍ରଭୃତି କରିଛନ୍ତି ଯେତେ ଭକ୍ତ
ଏହିମାନେ ଚିହ୍ନି ଏକା ପାରନ୍ତି ମୋ ଚିତ୍ତ ।
ଏହିରୂପେ କହି କୃଷ୍ଣ ହେଲେ ଅନ୍ତର୍ଦ୍ଧାନ
ସେ ପାଦେ ଶରଣ ବିପ୍ର ପୀତାମ୍ବର ଦୀନ ।

●

## କଂସ ବଧ

ଶୁଣ ହେ ପରୀକ୍ଷ ନୃପ ଏଥୁଅନ୍ତେ ବାଣୀ
ଜଳମଧ୍ୟେ ଅନ୍ତର୍ଦ୍ଧାନ ହ୍ୱନ୍ତେ ଚକ୍ରପାଣି ।
ଅକ୍ରୂର ଥିଲା ଶ୍ରୀକୃଷ୍ଣ ପାଦତଳେ ପଡ଼ି
ଉଠିକରି ଚାରିଆଡ଼େ ଚାହେଁ କରଯୋଡ଼ି ।
ଦେଖିଲା ନାହାନ୍ତି ଜଳମଧ୍ୟେ ଆଦିମୂଳ
କୂଳରେ ଆସିଣ ଉଭା ହୋଇଲା ତତ୍କାଳ ।
ଦେଖିଲାକ ବୃକ୍ଷମୂଳେ ରଥେଛନ୍ତି ହରି
ଶୀଘ୍ର ନିତ୍ୟ କର୍ମମାନ ଦେଲା ସେହି ସାରି
ସ୍ୟନ୍ଦନର ପାଶେ ଆସି ମିଳିଲା ତତ୍କାଳେ
ମନେ ପ୍ରେମ ହୋଇ ଦରଶନକଲା ଭୋଳେ
ହସି ଅକ୍ରୂରକୁ ପୁଣି ବୋଲନ୍ତି ଶ୍ରୀଧର
ବୋଲନ୍ତି କେତେ ଉଚ୍ଛୁରକଲୁ ସ୍ନାନ ତୋର
ସେହିଠାରେ କିସ ଆଉ ଦେଖିଲୁ ହେ ତୁହି
ତେଣୁ ତୁ ବିଳମ୍ବ କରି ନ ଆସିଲୁ ଧାଇଁ ।
ଶ୍ରୀକୃଷ୍ଣ ବଚନ ଶୁଣି ଅକ୍ରୂର ଯେ ହସି
ବୋଇଲେ ଛାମୁରେ ମୁହିଁ କହିବିକି ଆସି ।
ତୁମ୍ଭେ ତ ପରମବ୍ରହ୍ମ ପ୍ରଭୁ ଅନ୍ତର୍ଯ୍ୟାମୀ
ସବୁରି ମନର କଥା ଜାଣ ତୁମ୍ଭେ ସ୍ୱାମୀ ।
ମୋହର ମନର କଥା ଜଣା ନ ଗଲାରୁ
ତେଣୁ ଯେ କାଳିନ୍ଦୀକଥା ମୋତେ ପୁଚ୍ଛିପାରୁ
ଅଜଣା ଲୋକ ପରାୟ କିମ୍ପା ମୋତେ ପୁଚ୍ଛ
ଏହା ଶୁଣି ମନେ ମନେ ହସେ ନନ୍ଦବତ୍ସ ।
ବୋଲଇ ମଥୁରାପୁରେ ବେଗେ ଯିବା ପରା
ଶୁଣିଣ ଅକ୍ରୂର ମନ ହେଲା ବଡ଼ତ୍ୱରା ।
ପାଞ୍ଚିଲେ ଜାଣନ୍ତି ଅନ୍ତର୍ଯ୍ୟାମୀ ସବୁକଥା
ନଗଲେ ତ କୋପିବ ସେ କଂସାସୁର ବୃଥା
ଏ ରୂପରେ ପାଞ୍ଚି ରାମକୃଷ୍ଣ ପାଦେ ନମି
ବାହିଲା ସ୍ୟନ୍ଦନ ଟେକି ଶୂନ୍ୟମାର୍ଗେ ଗମି ।
ମଥୁରା ପୁରରେ ଯାଇ ହୋଇଲେ ପ୍ରବେଶ
ମିଳିଗଲେ ଲୋକେ ଆସି ରାମକୃଷ୍ଣ ପାଶ ।
ପ୍ରଥମରେ ରଜକକୁ ଦେଖି ଭଗବାନ
ଠକପଣେ ଠାରିତାକୁ ମାଗନ୍ତି ବସନ ।
ବୋଲନ୍ତି ଯେ ମଡ଼ିଆଳ ଦିଅ ତୁ ଦ୍ୱିଖଣ୍ଡ
ପିନ୍ଧି ଦୁଇଭାଇ ବୁଲୁଥିବୁ ରାଜଦାଣ୍ଡ ।
ନ ଶୁଣଇ ରଜକ ଯେ ଛନ୍ଦେ କାଲ ହୋଇ
ବସ୍ତ୍ର ମାଗନ୍ତେ ପ୍ରଭୁଙ୍କୁ ବହୁ ଝିଙ୍ଗାସଇ ।
ସହି ନପାରି ଶ୍ରୀକୃଷ୍ଣ ଉଠି ତଡ଼ବଡ଼ି
ଚାପୋଡ଼େମାରିଣ ତାର ମୁଣ୍ଡଦେଲେମୋଡ଼ି

ତହିଁପରେ ସୁଦାମ ମାଳିକୁ ମୁକ୍ତ କରି
ଧନୁ ଗୃହରେ ଯାଇଣ ମିଳିଲେ ଶ୍ରୀହରି ।
ସେ ଧନୁକୁ ଧରି ଭାଙ୍ଗିଦେଲେ ବାମକରେ
କୁବୁଜୀ ମିଳିଲା ଆସି ଏଥୁ ଅନନ୍ତରେ ।
ସୌନ୍ଦର୍ଯ୍ୟ ରୂପ ତାହାକୁ କରି ଭଗବାନ
କୁବଳୟା ଗଜ ପୁଣି କଲେକ ନିଧନ ।
ରଙ୍ଗ ସଭାରେ ମିଳିଲେ ପୁଣି ଦୁଇ ଭାଇ
ମାଇଲେ ମାଇଲୁ ଯୁଦ୍ଧକରି ଭାବଗ୍ରାହୀ ।
ମଞ୍ଚା ଉପରେ ଉଠିଣ ପ୍ରଭୁ ଭଗବାନ
କଂସର କେଶକୁ ପୁଣି ଧଇଲେ ଦୃଢ଼େଣ ।
ମଞ୍ଚାରୁ ଖସି ପଡ଼ି ଯେ ତତକାଳେ ଯାଇଁ
ଆକର୍ଷିକେଶ ତାହାର ଝିଙ୍କିଲେ ମାଧୋଇ
ତତକ୍ଷଣେ କଂସ ହୃଦୁ ପ୍ରାଣଗଲା ଛାଡ଼ି
ଉଗ୍ରସେନକୁ ପୁଣି ସେ ଦେଲେ ରାଜଶାଢ଼ୀ ।
ମଥୁରା କଟକେ ରାଜା କରି ଉଗ୍ରସେନ
ଯାଦବେ ସୁଖେ ରହିଲେ ଯେଯାହାର ସ୍ଥାନ
ଦେବକୀ ବସୁଦେବଙ୍କୁ କରି ବନ୍ଦୀମୁକ୍ତ
ପିତାମାତା ପାଦେ ସ୍ତୁତି କରନ୍ତି ଅଚ୍ୟୁତ ।
କଂସର ପତ୍ନୀମାନଙ୍କୁ କୃଷ୍ଣ ଡକାଇଲେ
ମାଇଁଙ୍କ ସାଙ୍ଗରେ ବସି ରୋଦନ କରିଲେ ।
ଲୋକ ନିନ୍ଦାରୁ ଯେ ପାରିହେଲେ ଭଗବାନ
ମାଇଁମାନଙ୍କୁ ବୋଧିଣ କହନ୍ତି ବଚନ ।
ସଂସାର ଯେ କରାଇଲେ କଂସରାଜା ନେଇ
ଅବନ୍ତୀ ନଗ୍ରରେ ବିଦ୍ୟା ପଢ଼ନ୍ତି ଦ୍ୱିଭାଇ ।
ଯମର ପୁରକୁ ଯାଇ ଗୁରୁପୁତ୍ର ଆଣି
ଗୁରୁ ଦକ୍ଷିଣା ଦେଇଣ ତୋଷି ଚକ୍ରପାଣି ।
ମଥୁରା ପୁରରେ ପୁଣି ପ୍ରବେଶିଲେ ଯାଇଁ
ଡକାଇ ଉଦ୍ଧବେ ପେଷ ଦେଲେ ଯଦୁସାଇଁ ।
ଉଦ୍ଧବ ଗୋପୀଙ୍କର ଯେ ପଡ଼ିଲା ବିଚାର
ଏଥୁଅନ୍ତେ ଆନବାଣୀ ଶୁଣ ନୃପବର ।
ବୃନ୍ଦାବତୀ ବୋଲିକରି ଯେଉଁ ପ୍ରେମଶୀଳା
ଶ୍ରୀକୃଷ୍ଣ ଅର୍ଦ୍ଧାଙ୍ଗ ସେହୁ ଜାଣେ ରସଲୀଳା ।
ଭ୍ରମର ତାହାର ପାଦେ ଉଡ଼ିଆସି ବସି
ପଞ୍ଚମ ସ୍ୱରରେ ନାଦ ଟେକି ମୁଖେ ଘୋଷି
ତାହାର ଶବଦେ ମୋହ ହେଲେ ବୃନ୍ଦାବତୀ
ଶ୍ରୀକୃଷ୍ଣଙ୍କ ଦୂତ ବୋଲି ପାଞ୍ଚେ ମନେ ସତୀ
ମନେ ମହାରୋଷ ବହି ବଚନ ଭାଷିଲା
ଉଦ୍ଧବ ତାହା ଶୁଣିଣ ମଥୁରାକୁ ଗଲା ।
ଯାଇଣ ଶ୍ରୀକୃଷ୍ଣ ଆଗେ କଲାକ ଦର୍ଶନ
କହିଲା ଗୋପୀମାନଙ୍କ ଯେତେ କଥା ମାନ ।

ଶ୍ରୀକୃଷ୍ଣ ଶୁଣିଣ ତାହା ମନେ ତୋଷ ହେଲେ
ଉଦ୍ଧବ ସଙ୍ଗେ ଧରିଣ କୁବ୍‌ଜାପୁରେ ଗଲେ ।
ରମଣ ରସରେ ତାକୁ ତୋଷିଲେ ଶ୍ରୀପତି
ଅକ୍ରୂରପୁରେ ମିଳିଲେ ଯାଇ ଜଗଜ୍ୟୋତି
ଅକ୍ରୂରକୁ ହସ୍ତିନାକୁ ପେଷିଲେ ମାଧବ
ବୋଇଲେ ବେଗେ ଯାଇଣ ଅର୍ଜ୍ଜୁନେ ଆଣିବ
ଶୁଣିଣ ଅକ୍ରୂର ବେଗେ ଗଲା ହସ୍ତିନାକୁ
ଅର୍ଜ୍ଜୁନ ସଙ୍ଗେ ଆସିଲେ ମଥୁରା ପୁରକୁ ।
ଯାଦବ କୁଳରେ ଯାଇ ପାର୍ଥ ପ୍ରୀତିକରି
ଏଥି ଉତ୍ତାରୁ ଯା ହେଲା ଶୁଣ ଦଣ୍ଡଧାରୀ ।
କଂସର ନିଧନ ଶୁଣି ଜରାସନ୍ଧ ବୀର
ଅଠରବେଳ ପର୍ଯ୍ୟନ୍ତ ଦେଲାଧାଡ଼ି ଘୋର
ଅନେକ ସଇନ୍ୟ ତାର ମାରି ଚକ୍ରପାଣି
କାଳଦମନର ଶିର ପକାଇଲେ ହାଣି ।
ମୁଚୁକୁନ୍ଦକୁ ସେ ପୁଣି ଦେଲେ ପ୍ରଭୁ ବହି
ଏଥିଉତ୍ତାରେ ଯା ହେଲା ଶୁଣ ନୃପସାଇଁ ।
ଦ୍ୱାରକା ପୁରକୁ କୃଷ୍ଣ ସଜାଡ଼ିଣ ଦେଲେ
ବିଶ୍ୱକର୍ମାକୁ ରାଇଣ ପୁର ନିର୍ମାଣଲେ ।
ସକଳ ଯାଦବ ସଙ୍ଗେ ପ୍ରଭୁ ଘେନି ପୁଣି
ସେପୁରେ ରହିଲେ ବେଗେ ଯାଇକମ୍ବୁପାଣି
ରୁକ୍ମିଣୀ କନ୍ୟାକୁବିଭା ହୋଇଲେଯେଭାବେ
ସେକଥା ସମସ୍ତ ଜାଣ ହେଲା ସର୍ବ ଶୁଭେ ।
ଜରାସନ୍ଧ ଆଦି ଯେତେ ସର୍ବ ରାଜା ଜିଣି
ରୁକ୍ମିଣୀ ଦେବୀଙ୍କି ବିଭା ହେଲେ ଚକ୍ରପାଣି
ପ୍ରସନ୍ନାଜିତକୁ ପୁଣି କଲେ ସଂହାରଣ
ଆଣିଲେକ ସ୍ୟମନ୍ତକ ମଣି ନାରାୟଣ ।
ଜାମ୍ବବ ପୁରରେ ପଶି ଆଣିଲେକ ମଣି
ଜମ୍ବୁବତୀକି ବିବାହ ହେଲେ ଚକ୍ରପାଣି ।
ସତ୍ୟଭାମାଙ୍କ କଣ୍ଠରେ ଦେଲେ ମଣି ନେଇ
ଶକ୍ରାଜିତକୁ ମାରିଣ ଆଣିଲେ ସେ ମହୀ ।
ପିତାର ମୃତ୍ୟୁ ସମ୍ବାଦ ସତ୍ୟଭାମା ଶୁଣି
ରୋଦନ କରି ସ୍ନାହାନ କଲେ ଠାକୁରାଣୀ ।
କାଳିନ୍ଦୀ ତୁଳସୀ ମିତ୍ରବିନ୍ଦା ସୁଲକ୍ଷଣା
ବୃନ୍ଦାକୁ ମିଶିଣ ହେଲେ ଏହି ଅଷ୍ଟ କନ୍ୟା ।
ଅଟନ୍ତି ଏ ଅଷ୍ଟ ପାଟରାଣୀ ଅଷ୍ଟନାରୀ
ଏହାଙ୍କୁ ଆଣି ବିବାହ ହେଲେ ନରହରି ।
ନାରକା ପୁରରୁ ଷୋଳସସ୍ର କନ୍ୟା ଆଣି
ତାଙ୍କୁ ଘେନି ଭୋଗ କରୁଥାନ୍ତି ଚକ୍ରପାଣି ।
ରୁକ୍ମିଣୀ ଦେବୀର ଗର୍ଭେ ଜନ୍ମିଲେ ମଦନ
ସୁତିକାପୁରୁ ଶାମ୍ବକୁ ହରିନେଲା ପୁଣ ।

ସମୁଦ୍ରରେ ପକାଇଣ ପୁରେ ଚଳିଗଲା
ମୀନ ଗିଳନ୍ତେ ଧୀବର ଶମ୍ବରକୁ ଦେଲା ।
ସେହି ମୀନକୁ ଶମ୍ବର ଦେଲା ରତିପୁର
ମୀନକୁ କାଟନ୍ତେ ରତି ଦେଖିଲା କୁମର ।
ଜାଣିଲା ମୋର ପତି ଏ ଅଟନ୍ତି କନ୍ଦର୍ପ
ଏହାଙ୍କୁ ଚାହିଁ ବସି ମୁଁ କରୁଥିଲି ତପ ।
ଏତେ ପାଞ୍ଚି ରତି ତାକୁ ରଖିଲା ସମ୍ଭାଳି
ପଦ୍ମନେ ସମସ୍ତ କଥା କହେ ମନେ ଭାଳି ।
ତାହା ଶୁଣି ପଦ୍ମନ ଯେ ଶମ୍ବରକୁ ମାରି
ଦ୍ୱାରକାକୁ ଚଳିଗଲେ ରତି କୋଳେ ଧରି ।
ମଣି ପାଇଁ ପୁଣି ହରି ନାରକା ବଧିଲେ
ଅନିରୁଦ୍ଧ ବିବାହରେ ରୁକ୍ମଣ ମାରିଲେ ।
ପାରିଜାତ ହରଣରେ ଇନ୍ଦ୍ର ତୁଲେ ଯୁଦ୍ଧ
ସୁଧର୍ମା ସଭାରେ ଯାଇ ବସିଲେ ଗୋବିନ୍ଦ ।
ଏଥୁ ଅନନ୍ତରେ ହେଲା ଉଷାର ହରଣ
ଆପଣେ ସମର ତହିଁ କଲେ ନାରାୟଣ ।
ବାଣାସୁର ଦୈତ୍ୟତୁଲେ କଲେଘୋର ଯୁଦ୍ଧ
ଅନେକ ସଇନ୍ୟ ତାକୁ କଲେ ପୁଣି ବଧ ।
ବାଣାସୁର ଅପମାନେ ଶିବ କଲେ କୋପ
ଲାଗିଲା ହରି ହରଙ୍କ ଯୁଦ୍ଧ ଅନ୍ତର୍ଯ୍ୟାପ ।
ଅର୍ଜୁନ ବୁଦ୍ଧି ବଳରୁ ଶ୍ରୀକୃଷ୍ଣ ଜିଣିଲେ
ବାଣାର ସହସ୍ର ଭୁଜ ଛେଦି ପକାଇଲେ ।
ଉଷାକୁ ଆଣି ରଖିଲେ ଆପଣାର ପୁର
ପୁଣି ନୃପ ରାଜାଙ୍କୁ ଯେ ତାରିଲେ ଶ୍ରୀଧର ।
ତହିଁ ଉତ୍ତାରେ ଶ୍ରୀକୃଷ୍ଣ ହସ୍ତିନାକୁ ଗଲେ
ରାଜସ୍ୱୟ ମହାଯାଗ ଆରମ୍ଭ କରିଲେ ।
ଯୁଧିଷ୍ଠିରଙ୍କ ହସ୍ତରେ ରାଜସୂୟ କରି
ଭୀମର ହସ୍ତରେ ପୁଣି ଜରାସନ୍ଧ ମାରି ।
ପୁଣ୍ଡରୀକ ବୋଲି ଥିଲା ବାସୁଦେବ ଜଣେ
କାଠ ଗରୁଡ଼ ଚଢ଼ି ସେ ବୁଲେ ଅନୁକ୍ଷଣେ ।
ବୋଲଇ ସେ ପୁଣ୍ଡରୀକ ବାସୁଦେବ ମୁହିଁ
ସେବାକର ମୋତେ ସର୍ବବିଷ୍ଣୁ ବୋଲି କହି
ଦେଖ ଶଙ୍ଖ ଚକ୍ର ଗଦା ପଦ୍ମ ଅଛି ଧରି
ଚତୁର୍ଭୁଜ ହୋଇ ବୁଲେ ପୃଥ୍ୱୀଯାକ ହେରି
ବାସୁଦେବ ବୋଲି କରି କହନ୍ତି ଗରବେ
ତାର କଥା ଶୁଣି ହସୁଥାନ୍ତି ବାସୁଦେବେ ।
ବେଳକାଳ ଦେଖି ପ୍ରଭୁ ଦେଲେ ତାକୁମାରି
ହିଂସ୍ରକ ଲୋକର ଭାରା ନ ସହନ୍ତି ହରି ।
ମୁହିଁ ଏକା ବାସୁଦେବ ବୋଲି ନାଶଗଲା
ଏପରେ ପରୀକ୍ଷ ଶୁଣ କହୁଥାଇ ଭଲା ।

ରାଜସୂୟ ଯାଗେ ଯେତେ ରାଜା ବସିଥିଲେ
ଶ୍ରୀକୃଷ୍ଣଙ୍କୁ ଅର୍ଘ୍ୟ ଦେବା ମନରେ ପାଞ୍ଚିଲେ ।
ଶୁଣି ଶିଶୁପାଳ ବେଗେ ହସ୍ତିନାକୁ ଗଲା
କିବୋଲି ଗଉଡ଼େ ଅର୍ଘ୍ୟଦେବ ସେବୋଇଲା
ଜନ୍ମମାତ୍ରେ ପୁତନାକୁ ଖାଇଅଛି ସେହି
କିବୋଲି ସଭାରେ ତାକୁ ଅଛ ଯେ ବସାଇ
ସ୍ତ୍ରୀ ହତ୍ୟାକାରୀର ମୁଖ ଯଦ୍ୟପି ଚାହିଁବ
ଲକ୍ଷେଧେନୁ ଦାନଦେଲେ ଜାଣ ମୋକ୍ଷହେବ
ଏ ରୂପେ ସଭାରେ ଶତବାର ଝିଙ୍ଗାସନ୍ତେ
ତୁନି ହୋଇ ସବୁ ଶୁଣୁଥିଲେ ଲକ୍ଷ୍ମୀକାନ୍ତେ
ଲେଉଟି ଝିଙ୍ଗାସନ୍ତେ ,ସେ ନ ପାରିଲେ ସହି
ଚକ୍ରପେଷି ଶିର ତାର ଛେଦିଲେ ମାଧୋଇ
ମରି ଶିଶୁପାଳ ପ୍ରଭୁ ଅଙ୍ଗେ ଲୀନ ହେଲା
କେତେ ତପ କଲେ ଏହା ପାଇବ କେଭଲା
ଭ୍ରାତାର ମରଣ ଦେଖି ଶାଲ୍ୱ ଦନ୍ତବକ୍ର
ନୟନକୁ ବୁଲାଇଲେ ଯେହ୍ନେ କାଳଚକ୍ର ।
ଶ୍ରୀକୃଷ୍ଣଙ୍କ ସଙ୍ଗେ ଆସି ବହୁ ଯୁଦ୍ଧ କଲା
ଯାବତ ଶର ଘେନିଣ କ୍ରୋଧେ ପ୍ରହାରିଲା ।
ଚକ୍ରପେଶିଣ ନାଶିଲେ ତାକୁ ଚକ୍ରଧର
ଶ୍ରୀକୃଷ୍ଣଙ୍କ ଦେହେ ଲୀନ ହୋଇଲା ତତ୍ପର ।
ତାହା ଶୁଣି ପରୀକ୍ଷିତ ଆଚମ୍ବିତ ହୋଇ
ଶୁକମୁନି ପାଦେ ନମି ପୁଛେ ନୃପସାଇଁ ।
ବୋଇଲେ ସେ ଶ୍ରୀକୃଷ୍ଣଙ୍କୁ କେତେ ନିନ୍ଦା କରି
କିପୁଣ ବୁଝି ତାହାକୁ ତାରିଲେଦୈତ୍ୟାରି ।
ଏକଥା ସନ୍ଦେହ ମୋତେ ଲାଗେ ବ୍ରହ୍ମମୁନି
କେନାହିଁ ବୋଲିବ ଏ ଶ୍ରୀଭାଗବତ ବାଣୀ ।
ଏମାନେ କୃଷ୍ଣଙ୍କୁ ଏଣେ କରନ୍ତି ଉଚ୍ଛନ୍ନ
କି ପାଞ୍ଚି ଶରୀରେ ଠାବଦେଲେ ନାରାୟଣ ।
ଶୁଣି ଶୁକଦେବ ମନମଧ୍ୟେ ବହୁ ପାଞ୍ଚି
କହନ୍ତି ଶ୍ରୀ ଭାଗବତ ଅର୍ଥକଥା ରଚି ।
ବୋଲନ୍ତି ଯେ ସାବଧାନେ ଶୁଣ ନୃପବର
ପୂର୍ବରେ ଏହା ତୋତେତ କରିଛୁ ଗୋଚର
ଦନ୍ତବକ୍ର ଶିଶୁପାଳ ଅଟନ୍ତି ସେ ଜାଣ
ସେହିକଥା ମନ ମଧ୍ୟେ କହିବାକ ଶୁଣ ।
ଜୟ ବିଜୟ ବୋଲିଣ ବଇକୁଣ୍ଠ ଦ୍ୱାରୀ
ବିପ୍ର ଅଭିଶାପ ପାଇ ହୋଇଲେ ଶରୀରୀ ।
ଚାରିଥର ଆସି ଏହି ମଞ୍ଚେ ଜନ୍ମ ହେଲେ
ଶିଶୁପାଳ ଜନ୍ମଠାରୁ ମୋକ୍ଷ ହୋଇଗଲେ ।
ଅସୁର ରୂପ ଧଇଲେ ତିନି ଜନ୍ମଯାଏ
ବ୍ରହ୍ମକୁଳରେ ଜନ୍ମିଣ ହେଲେ ଦୁଷ୍ଟମୟେ ।

ଏ ଜନ୍ମେ ପୁଣି ମାନବ କୁଳେ ଜାତହୋଇ
ମୋକ୍ଷ ହୋଇଗଲେ ଜୟ ବିଜୟ ଯେ ଭାଇ
ଏହ୍ନେ ଚାରିଥର ଜନମିଲେ ମଞ୍ଚେ ଆସି
ଶୁଣ ପରୀକ୍ଷ କହନ୍ତି ଶୁକଦେବ ଋଷି ।
ସରିଗଲା ଏହିଠାରେ ଦୈତ୍ୟଚାରିଜନ୍ମ
ମୂର ହିରଣ୍ୟ ରାବଣ ଶିଶୁପାଳ ନାମ ।
ଲେଉଟି ଜୟ ବିଜୟ ହେଲେ ଦୂଇ ଯାଇ
ଦଶମ ସ୍କନ୍ଧର ଅର୍ଥ କହିବା ବୁଝାଇ ।
ଦ୍ୱିବିନ୍ଦ କପିଳ ପୁଣି ମାରି ଭଗବାନ
ବୃତ୍ରାସୁରକୁ ମାରିଣ କଲେ ନିଶୋଧନ ।
ଦ୍ୱେଷ କରାଇଲେ କୁରୁପାଣ୍ଡବ ଏ ବେନି
ଶ୍ରୀମହାଭାରତ ଯୁଦ୍ଧହେଲେ ଅନ୍ୟୋଅନି ।
ଦୁଷ୍ଟ ରାଜା ଏ ସଂସାରେ ଯେତେ ରହିଥିଲେ
ମହାଭାରତ ଯୁଦ୍ଧରେ ସବୁଙ୍କୁ ନାଶିଲେ ।
ପୃଥ୍ୱୀରେ ଯୁଧିଷ୍ଠିରଙ୍କୁ ରାଜା କରିଦେଲେ
ଦ୍ୱାରକା ନଗରେ ପୁଣି ହରି ବିଜେକଲେ ।
ବଳରାମ ଦେଲେ ଗୋପପୂରେ ପଠିଆଇ
କାଦମ୍ବରୀ ପାନେ ଭୋଳ ହେଲେ ରାମ ଯାଇ
ଯମୁନା ନଦୀକି ରାମ ଆକର୍ଷଣ କଲେ
ସର୍ବଦା ଦିନକୁ ସେହି କୀର୍ତ୍ତି ରଖାଇଲେ ।
ଦୁର୍ଯ୍ୟୋଧନର ଝିଅ ସେ ଚନ୍ଦ୍ରାବତୀ ପୁଣ
ଗୁପତରେ ଶାମ୍ବ ଯାଇ ହରିଲା ତକ୍ଷଣ ।
ଅନେକ ସମର ତହିଁ କଲେ କୁରୁବାଳ
ହସ୍ତିନା ନଗର ତାଡ଼ିଦେଲେ କାମପାଳ ।
ତୀର୍ଥ କରିବାକୁ ପୁଣି ଗଲେ ବଳରାମ
ନୈମିଷା ଅରଣ୍ୟେ ଯାଇ କଲେକ ବିଶ୍ରାମ ।
ଋଷିମାନଙ୍କ ମଧ୍ୟରେ ଛନ୍ତି ଜଣେ ବସି
ସୁତ ପୌରାଣିକ ବୋଲି ତାଙ୍କନାମ ଭାଷି ।
ରାମଙ୍କୁ ଦେଖିଣ ସେହୁ ଯେଣୁ ନ ଉଠିଲେ
ତେଣୁକରି ତାହାଠାରେ ବହୁ କୋପକଲେ ।
ହଳମୂଷଳ ଲଦିଣ କାଟିଲେ ତା ଶିର
ତନୟକୁ ଆଣି ତାର ଦେଲେ ଅଧିକାର ।
କଲି ମୁହିଁ ବ୍ରହ୍ମହତ୍ୟା ବୋଲି ରାମ ଡ଼ରି
ଚଳିଗଲେ ତତକ୍ଷଣେ ତୀର୍ଥ ବ୍ରତ କରି ।
ଏଥୁଅନ୍ତେ ଶୁଣିବାକ ହେ ପରୀକ୍ଷ ରାଜା
ଦାମୋଦର ପଣ୍ଡା ବୋଲି ଏକ ବ୍ରହ୍ମଦ୍ୱିଜା
ବିଦ୍ୟାପଠନ କାଳେ ସେ ଥିଲା ମିତ୍ର ହୋଇ
ଦାମୋଦର ପଣ୍ଡା ବୋଲି ତାର ନାମ କହି
ମହର୍ଗ କାନ୍ତା ରକାଳ ପଡ଼ିଲା ଯେ ବେଳେ
କୁଟୁମ୍ବ ନ ପୋଷିପାରି ଭାଳେ ଅନ୍ତରାଳେ ।

ପତ୍ନୀ ବୋଇଲା ସ୍ୱାମୀ ନ ଭାଳ ମନେ କିଛି
କଥା ଏକ କଲେ ନିଶ୍ଚେ ପାରିବାଟି ବଞ୍ଚି ।
ଚାଲ ବନ୍ଧୁ କୁଟୁମ୍ବଙ୍କ ଆଳୟକୁ ଯିବା
ସେମାନେ ସୁଦୟା କଲେ ସୁଖେ ଦିନନେବା
ଅସମୟ କାଳରେ ସୁବନ୍ଧୁମାନେ ଏକ
ପ୍ରାଣରୁ ଅଧିକ କରି ପୋଷନ୍ତି ଯେ ଲୋକ ।
ପଣ୍ଡା ବୋଇଲେ କହିବି ଶୁଣ ତେବେ ସଖୀ
ବନ୍ଧୁ ଗୃହଗଲେ ଲୋକେ ବୋଲିବେଯେରଙ୍କି
ତଥାପି ବୁଝିଲେ ମୋର ନାହିଁ ବନ୍ଧୁ କେହି
ଦୀନବନ୍ଧୁ ଅଛନ୍ତି ହେ ଆମ ବନ୍ଧୁ ହୋଇ ।
ଦ୍ୱାରକାପୁରରେ ରହିଛନ୍ତି ଘର କରି
ସେ ଏକା ପେଷି ପାରିବେ ଦେଇକରି ଶିରୀ
ପତ୍ନୀ ବୋଇଲା ପୁଚ୍ଛିବି ପଦେ ସ୍ୱାମୀ ତେବେ
କି ରୂପରେ ତୁମ୍ଭ ବନ୍ଧୁ ଅଟନ୍ତି ମାଧବେ ।
ଦରିଦ୍ର ଦାମୋଦର ଯେ ହସିଲା ତା ଶୁଣି
ବାଲ୍ୟକାଳ କଥା ସବୁ କହେ ତାକୁ ଆଣି ।
ବୋଇଲା କୃଷ୍ଣ ତୁଲେ ମୁଁ ପଢୁଥିଲି ପାଠ
ଗୁରୁପତ୍ନୀଙ୍କ ବୋଲରେ ଭାଙ୍ଗିଗଲୁ କାଠ ।
ଏଥୁଉତ୍ତାରେ ଜାଣଟି ଘୋର ବର୍ଷାକଲା
ବନସ୍ତକୁ ପଳାଇଣ ଗଲୁ ଦୁହେଁ ଭଲା ।
ଲୋଚିଏ ଲୋଚିଏ କାଠ ମୂଣ୍ଡେ ଅଛୁ ବହି
ତିନ୍ତୁଳି ବୃକ୍ଷ ମୂଳରେ ବସିଲୁ ଯେ ଯାଇଁ ।
ଶ୍ରୀକୃଷ୍ଣ ବୋଇଲେ ଆହେ ତୁମ୍ଭେ ନାମ କିସ
ମୋ ନାମ ଦାମୋଦରଯେ ଡାକନ୍ତି ଲୋକେଶ-
ମୁହିଁ ବୋଇଲି ମୋନାମ ଅଟେ ଦାମୋଦର
ଶ୍ରୀକୃଷ୍ଣ ବୋଇଲେ କେବେ ନହୋଇବାପର
ଆଜହୁଁ ତୁମ୍ଭେ ଆମ୍ଭେତ ଜାଣ ହେଲେ ବନ୍ଧୁ
ତୁମ୍ଭେତ ବିପ୍ରବର ଯେ ଆମ୍ଭେ କୃପାସିନ୍ଧୁ ।
ଶୁଣି କଥା ଏବେ ମୋତେ ପୁଚ୍ଛିଲେ ଲକ୍ଷ୍ମୀଶ
ବୋଇଲେ କହ ହେ ସଖା ସଖିନାମ କିସ ।
ମୁହିଁ ବୋଇଲି ତୁଳସୀ ଅଟେ ତାଙ୍କ ନାମ
ଶୁଣିଣ ଆନନ୍ଦ ହେଲେ ଶ୍ରୀପୁରୁଷୋତ୍ତମ ।
ତୁଳସୀ ପତର ତହୁଁ ଆଣି ବନମାଳୀ
ହସ୍ତେ ମୋରଦେଇ ବନ୍ଧାଇଲେ କୃଷ୍ଣ ତୋଳି
ବୋଇଲେ ଅଟଇ ବୃନ୍ଦାବତୀ ଆମ୍ଭ ସତୀ
ତୁମ୍ଭ ପତ୍ନୀ ନାମ ପୁଣି ଅଟେ ବୃନ୍ଦାବତୀ ।
ବୁଝିଲେ ଏ ରୂପେ ମିତ କାହିଁ ନ ମିଳଇ
ନାମଗୋଟି ଦୁଇରେ ଯେ ତୁଲ୍ୟ ହୋଇଲଇଁ
ଏରୂପରେ ଆମ୍ଭେ ବନ୍ଧୁ ହେଲୁ ଦୁହେଁ ଜାଣ
ରହିଲା ସବୁ କାଳକୁ ଆମ୍ଭ ବନ୍ଧୁପଣ ।

ଏହିରୂପେ ଆଜ୍ଞା ଦେଇ ଗଲେ ଜଗଦୀଶ
ଦ୍ୱାରକାରେ ବିଜେ କରିଛନ୍ତି ପୀତବାସ ।
ଏ ରୂପେ ଅଟନ୍ତି ଆମ୍ଭ ବନ୍ଧୁ କୃପାସିନ୍ଧୁ
ଶୁଣ ଶୁଣ ପ୍ରିୟା ମୋର କହିଲଇଁ ଆଦ୍ୟ ।
ଏ ରୁପେ ପତିର ମୁଖୁଁ ଶୁଣିଣ ବ୍ରାହ୍ମଣୀ
ଦ୍ୱାରକାକୁ ପେଷିଦେଲା ସ୍ୱାମୀଙ୍କୁ ସେକ୍ଷଣି ।
ବ୍ରାହ୍ମଣ ବୋଇଲା ମୋର ଘରେ କିଛି ନାହିଁ
କି ବୋଲି ମିତ୍ରଙ୍କୁ ତୁଛା ଭେଟିବି ମୁଁ ଯାଇଁ ।
ବ୍ରାହ୍ମଣୀ ବୋଲେ ତୁମ୍ଭେ ନକର ଶଙ୍କା କିଛି
ଦରିଦ୍ର ଲୋକର କଥା ଜାଣନ୍ତି ଶ୍ରୀବତ୍ସି ।
ମନର କଥା ଜାଣନ୍ତି ଯେଣୁ ଜଗନ୍ନାଥ
ତେଣୁ କରି ଅନ୍ତର୍ଯ୍ୟାମୀ ବୋଲନ୍ତି ଅଚ୍ୟୁତ ।
ଏଥକୁ ସଂଶୟ ଯେବେ କଲ ମନେ ସ୍ୱାମୀ
ଖୁଦ ମୁଠିଏ ଧରିଣ ତେବେ ଯାଅ ଗମି ।
କାଲି ଧାନ କୁଟି ଆଣିଅଛି ମୂଲଲାଗି
ଏରୁପେ ଥାଇ ସଂସାରେ ହୋଇ ଆମ୍ଭେଭୋଗି
ଏଥକୁ ଖେଦମନ ନ ହେବା ଏବେ ସ୍ୱାମୀ
ଆମ୍ଭର କଥାତ ଜାଣି ଯିବେ ଅନ୍ତର୍ଯ୍ୟାମୀ ।
ପତ୍ନୀ ବାକ୍ୟେ ବିପ୍ରଖୁଦ ମୁଠିଏକ ଧରି
ଛିଣ୍ଡା କନାରେ ବାନ୍ଧିଣ ଚାଲେ ଧୀରି ଧୀରି
ଦ୍ୱାରକାରପୂରେ ଯାଇଁ ହେଲା ପରବେଶ
ଦେଖିଲା ରତନ ଖଟେ ଛନ୍ତି ଜଗଦୀଶ ।
ଶ୍ରୀ ମହାଲକ୍ଷ୍ମୀ ଚରଣ ମଞ୍ଚାଳନ୍ତି ବସି
ଏମନ୍ତ ସମୟେ ବିପ୍ର ପ୍ରବେଶିଲା ଆସି ।
ଛାମୁରେ ଉଭା ହୁଅନ୍ତେ ଚାହିଁ ନାରାୟଣ
ମଇତ୍ର ଆସିଲେ ବୋଲି ଚଳିଲେ ତକ୍ଷଣ ।
ଗୃହ ମଧ୍ୟୁ ପାଣି ଢ଼ାଳ ଅଣାଇ ଶ୍ରୀଧର
ମିତ୍ରପାଦ ଧୋଇ ସିଞ୍ଚିଦେଲେ ନେଇ ଶିର ।
ଚରଣ ପୋଛି ଆସନେ ନେଇ ବସାଇଲେ
ବିଞ୍ଚଣା କରେ ଧରିଣ ଶ୍ରୀହସ୍ତେ ବିଞ୍ଚିଲେ ।
ବୋଇଲେ ବଥାଉଥିବ ପାଦବେନି ପରା
ସଙ୍ଗତରେ କେହିନାହିଁ ଆସିଲ ଯେ ତ୍ୱରା ।
ଏମନ୍ତ ବୋଲି ଚରଣ ମଞ୍ଚାଳିଲେ ବସି
କର୍ପୂର ଚନ୍ଦନ ଆଣି ହୃଦଯାକ ଘଷି ।
ଦେହେଁ ବୋଲୁ ବୋଲୁ କନାବୁଜୁଲାଏ ଖସି
ହାତରେ ଚିପିଜାଣିଲେ ତାହା ବ୍ରହ୍ମରାଶି ।
ବୋଇଲେ ମିତ୍ର ହେ ବାନ୍ଧିଅଛ ଏଥେ କିସ
ଶୁଣିଣ ଲଜ୍ଜା କରି ନ କହେ ବିପ୍ରଈଶ ।
ଆପଣେ ତାହା ଫିଟାଇ ପ୍ରଭୁ ନାରାୟଣ
ଦେଖିଲେ ମୁଠିଏ ଖୁଦକଣି ଅଛି ପୁଣ ।

ତହିଁରୁ ଖୁଦ ମୁଠିଏ ଧରି ନାରାୟଣ
ଉଦରକୁ କ୍ଷେପିଦେଲେ ହୋଇ ଶ୍ରଦ୍ଧାମନ ।
ଲେଉଟିଣ ଆଉ ପୋଷେ ହସ୍ତେ ଧରୁ ଧରୁ
ଶ୍ରୀମହାଲକ୍ଷ୍ମୀ ଉଠିଣ ଆସି ଆସନରୁ ।
ସ୍ୱାମୀଙ୍କ କର ଗୋଟିକୁ ଧରି ମହାସତୀ
ବୋଇଲେ ତୁମ୍ଭର ଶିରୀ ଛାଡିଲା ଶ୍ରୀପତି ।
ବଳେ ଏବେ ଖାଇବାରୁ ଅଧେ ଲକ୍ଷ୍ମୀଯାଇ
ମିତ୍ରର ଗୃହରେ ଧନ ଗଲା ପୂରା ହୋଇ ।
ସୁବର୍ଣ୍ଣମୟ ପୁର ଯେ ହେଲା ସର୍ବ ନିର୍ଭା
ମିତଣୀ ବସିଅଛନ୍ତି ହୋଇ ନବଯୁବା ।
ପରିଜନ ଲୋକେ ଆସି ଖଟିଲେଣି କେତେ
ଆଗକାଳ ଘର ଏବେ ଦିଶେ ସାନ ମୋତେ
କୁବେରଙ୍କ ଭବନରୁ ବଳିଲାଣି ଆସି
ଏଥିରୁ ଆଉ କଲେ ନଖାଅ ବ୍ରହ୍ମରାଶି ।
ଖାଇଲେ ଶ୍ରୀଲକ୍ଷ୍ମୀ ଯିବେ ତୁମ୍ଭଘର ତ୍ୟାଗି
ବ୍ରାହ୍ମଣ ଘରେ ରହିବେ ଯାଇ ମୁଲ ଲାଗି ।
ଏହା ଶୁଣି ମହାପ୍ରଭୁ ମନେ ବଡ଼ ହସି
ମିତ୍ରଙ୍କୁ ଯାଅ ବୋଇଲେ ପ୍ରଭୁ ବ୍ରହ୍ମରାଶି ।
ପୁଣି ଦ୍ୱିଜବର ଚଳିଗଲେ ଆଜ୍ଞାପାଇ
ସତ୍ୱରେ ବିଜେ କରିଲେ ନିଜ ରାଜ୍ୟେ ଯାଇ
ଦେଖିଲେକ ଘରଦ୍ୱାର ହୋଇଅଛି ଆନ
ମନେ ପାଞ୍ଚେ ଘର ମାଡ଼ି ବସିଲା କେ ଜନ ।
କାହିଁ ମୋର ପ୍ରିୟା ଗଲା ଦେଖିବି ମୁଁ କେବେ
ଦେଖିଲେ କହନ୍ତି ଯାହା କଲେ ବାସୁଦେବେ
କେଡ଼େ ଆଦରକରି ନଦେଲେ କିଛି ମୋତେ
କଡ଼ାଏଗଣ୍ଡାଏ ଦେଇ ନାହାନ୍ତି ମୋ ହସ୍ତେ ।
ପ୍ରଭୁଙ୍କର ମନେ ଅବା କିସ କଥା ଅଛି
ଘରେ ମୋତେ ପହଞ୍ଚାଇ ଦେବେ ଶିରୀବତ୍ସି
ପ୍ରିୟାକୁ ଆଗେ ଦେଖିବି ଏବେ କେଉଁରୂପେ
କା ଘରେ ବା ଧାନ କୁଟୁଅଛି ଯାଇ ଆଗେ ।
ଏହି ରୂପେ ପାଞ୍ଚି ବିପ୍ର ଗୃହେ ଯାନ୍ତେ ଚଳି
ପତ୍ନୀ କି ଲୋଡୁ କୁଆଡ଼େ ଚାଲିଗଲା ବୋଲି
ଏଥୁ ଅନ୍ତେ ପୁଣି ଦାମୋଦର ପଣ୍ଡା ପତ୍ନୀ
ହସ୍ତରେ ପିନ୍ଧିଅଛଇ ସ୍ୱର୍ଣ୍ଣ ଚୁଡ଼ି ବେନି ।
ନାନାଅଳଙ୍କାର ଅଙ୍ଗେ ଭୂଷଣ ହୋଇଛି
ଲକ୍ଷେ ଟଙ୍କା ପାଟଶାଢ଼ୀ ଦେହେ ପିନ୍ଧି ଅଛି ।
ସ୍ୱର୍ଣ୍ଣ ଗଡୁଆରେ ପୂର୍ଣ୍ଣ କରି ବାସ ପାଣି
ସ୍ୱାମୀର ଚରଣ ଧୋଇ ଘରେ ଗଲାଘେନି ।
ଆସନେ ବସାଇ କରେ ଆଲଟକୁ ଧରି
ସ୍ୱାମୀ ନ କହୁଣୁ ଆଗେ କହେ ବିପ୍ରନାରୀ ।

ବୋଇଲା ଅଟନ୍ତି କେଡ଼େ ପ୍ରଭୁ ନାରାୟଣ
ତୁମ୍ଭେ ନ ମାଗୁଣୁ ଆଗ ଦେଲେ ସବୁ ଜାଣ ।
ଦ୍ୱାରକାପୁରେ ପ୍ରବେଶ ନୋହୁଁ ତୁମ୍ଭେ ପୁଣି
ସମସ୍ତ ଦ୍ରବ୍ୟ ଦେଇଣ ଗଲେ ଚକ୍ରପାଣି ।
ବିଶ୍ୱକର୍ମା ପଶି ଏହି ଘର ନିର୍ମାଣିଲେ
ପରିଜନ ଲୋକଙ୍କୁ ହେଁ ଖଞ୍ଜାଇଣ ଗଲେ ।
ରାତ୍ର ପାହାନ୍ତେ ଦେଖିଲି ଶଯ୍ୟାରୁ ମୁଁ ଉଠି
ଘରେ ହୀରାକୁମ୍ଭ ଲମ୍ବିଅଛି ମର୍ଭୂତେଟି ।
ତୁମ୍ଭଙ୍କୁ ପୁଣି ଆଦର କଲେ କେତେ ହରି
ତାହା ଶୁଣିଅଛି ମୁହିଁ ଲୋକଙ୍କୁ ପଚାରି ।
ପଣ୍ଡିଆଣୀ ମୁଖୁ ଶୁଣି ପଣ୍ଡା ତୋଷ ହେଲେ
ଏଥୁଅନ୍ତେ ହେ ନୃପତି କହୁଥାଇଁ ଭଲେ ।
ସେ ଦରିଦ୍ର ବ୍ରାହ୍ମଣଙ୍କୁ ସୁଖଭୋଗ ଦେଇ
କୁରୁକ୍ଷେତ୍ରେ ବିଜେକରି ଗଲେ ଲକ୍ଷ୍ମୀସାଇଁ ।
କୁଟୁମ୍ବ ଯାକଙ୍କୁ ସଙ୍ଗେ ଘେନିଣ ଶ୍ରୀରଙ୍ଗ
ନାନା ତୀର୍ଥଯାତ୍ରା ତହିଁ କଲେ ଯାଇଁ ବେଗ ।
ସମସ୍ତେ ସେଠାରେ ହୋଇଛନ୍ତି ରୁଣ୍ଡ ହୋଇ
ଗୋପୀ ଗୋପାଳ ପ୍ରଭୃତି ନନ୍ଦ ଯଶୋଦାହିଁ ।
ଦ୍ୱାରକାପୁରେ ଯେତେକ ଯଦୁବଂଶ ଥିଲେ
କୁରୁପାଣ୍ଡବ ପ୍ରଭୃତି ସର୍ବେ ବିଜେ କଲେ ।
ଯେ ଯାହା କଥା ସକଳେ ପୁଚ୍ଛନ୍ତି କୁଶଳ
ଘେନାଘେନି ହୋଇକରି କାଟନ୍ତି ଯେ କାଳ ।
ତହିଁରେ ବାସୁଦେବଙ୍କୁ ଯାଗ କରାଇଲେ
ଦେବକୀ ମାତାଙ୍କୁ ସାତପୁତ୍ର ଆଣିଦେଲେ ।
ସୁଭଦ୍ରା ଦେବୀଙ୍କୁ ବିଭା କରାଇ ଅର୍ଜୁନ
ସେଠାରୁ ମନରେ ଛଳ କଲେ ଦୁର୍ଯ୍ୟୋଧନ ।
ଶୁକଦେବ ବୋଲିକରି ମିଳିଲେକ ରାଜ
ଜନକ ବଂଶରେ ସେହୁ ଅଟଇ ତନୁଜ ।
ତାହାଙ୍କୁ କହିଲେ ବଳରାମ କେତେ ଜ୍ଞାନ
ସେହିଠାରୁ ସଂସାରେ ସେ ହୋଇଲେ ବ୍ରହ୍ମଣ୍ୟ
ବ୍ରହ୍ମଲୋକରେ ପୁଣ ସେ କଲେ ମହାଯାଗ
ଭୃଗୁ ଋଷିଙ୍କି ଅଣାଇ ନେଲେ ମହାଭାଗ ।
ହରି ହର ବ୍ରହ୍ମାର ଯେ ଅଟେ ଭକ୍ତଜନ
ମନେ କ୍ଷୋଭ ପାଇ ଭୃଗୁ କଲେ ତ୍ରୟସ୍ଥାନ ।
ହର ବ୍ରହ୍ମା ଗୁଣ ଚିହ୍ନି ଦେଲେ ଶାପ ଋଷି
ଶ୍ରୀବିଷ୍ଣୁ ହୃଦେ ପାଦେକ ମାଇଲେକ ଆସି ।
ମାୟାରେ ଶ୍ରୀ ନାରଦଙ୍କୁ ଦେଲେ ଦରଶନ
ସ୍ତିରୀକେ ପୁରୁଷ ହେଲେ ଦ୍ୱାରକା ଭୁବନ ।
ଏଥୁ ପୁରିଲା ଦଶମ ସ୍କନ୍ଧର ଯେ ବାଣୀ
ନଉ ଅଧା ଶାସ୍ତ୍ର ଏହା କହିଲି ବଖାଣି ।

ଶୁଣିଣ ପରୀକ୍ଷ ରାଜା ହୋଇଲେ ସନ୍ତୋଷ
ସେ ପାଦେ ଶରଣ ବିପ୍ର ପୀତାମ୍ବର ଦାଶ ।
ଆମୂଳ ହୋଇ ମନରେ ଲେଖେ ପଦଖୋଜି
ଶ୍ରୀ ସାଧୁ ଗୋସାଇଁଙ୍କର ପାଦତଳେ ଭଜି ।



## ଶ୍ରୀକୃଷ୍ଣଙ୍କ ଦେହତ୍ୟାଗ

ଶୁଣ ହେ କୁରୁ କହନ୍ତି ବ୍ରହ୍ମା ଶୁକଦେବ
ଏକାଦଶ ସ୍କନ୍ଧ ଏବେ କହିବା ଶୁଣିବ ।
ହୁଅନ୍ତେ ଶ୍ରୀକୃଷ୍ଣ ଅବତାର ଲୀଳା ଶେଷ
ଗୋବିନ୍ଦଙ୍କ ପାଶେ ଆସି ମିଳିଲେ ତ୍ରିଦଶ ।
ବ୍ରହ୍ମାଙ୍କର ସହିତେଣ ଦଶଦିଗପାଳେ
କରନ୍ତି ସ୍ତୁତି ଆସିଣ କୃଷ୍ଣ ପାଦତଳେ ।
ବୋଲନ୍ତି ଧୀରେ ଶୁଣିବା ହେଉ ପଦ୍ମମୁଖ ।
ସବୁଦିନେ ଦେହ ଧରିଥିବା ନୋହେ ସୁଖ ।
ବାଳ ଯୁବାକାଳ ପାଇଁ ବୃଦ୍ଧକାଳ ହେଲେ
ଅବୟବମାନ ଦେହେଁ ଅବଶ ହୋଇଲେ ।
ଆଖି କି ନ ଦିଶଇ ଯେ କର୍ଣ୍ଣେ ନ ଶୁଭଇ
ଆଣ୍ଠୁ ଗଣ୍ଠି ଅଣ୍ଟା ପିଠି ଚାହିଁନ୍ତେ ବଥାଇ ।
ଦଶନମାନ ଖସିଣ ପଡ଼ଇ ମୁଖରୁ
ଲୋଚି ଲୋଚି ହୋଇ ଚର୍ମ ଲୁଚେ ଶରୀରରୁ
ନରଦେହକୁ ସିନା ଏ କଥା ଶୋଭାପାଇ
ତୁମ୍ଭେ ସ୍ୱୟଂ ପରଂବ୍ରହ୍ମ କିମ୍ପା ଥିବ ରହି ।
ପୃଥିବୀର ଭାରାଯାକ ଆସି ସଂହାରିଲ
ଏ ସଂସାରେ ଆଉ ତୁମ୍ଭେ ଥିବା ନୋହେ ଭଲ
ତୁମ୍ଭର ବୟସ ଆସି ହେଲା ଯେତେ ଜାଣ
ସେହି କଥା ସାବଧାନେ କହିବାକ ଶୁଣ ।
ଶତେ ବରଷ ଉତ୍ତାରେ ପୁଣି ପଞ୍ଚବିଂଶ
ଏତେକ ବର୍ଷ ଭୋଗ କଲଣି ଲକ୍ଷ୍ମୀଈଶ ।
ଏବେ ଏହି ଅବତାର ଶେଷ ହେଲା ଆସି
ନିଜଧାମକୁ ଚଳିବା ହେଉ ବ୍ରହ୍ମରାଶି ।
ବ୍ରହ୍ମାଙ୍କ ମୁଖୁ ଏମନ୍ତ ବାକ୍ୟମାନ ଶୁଣି
ବୋଇଲେକ ସତ୍ୟକଥା କହ କୁଶପାଣି ।
ତୁମ୍ଭ ଦୁଃଖ ଦେଖି ମୁହିଁ ହେଲି ଅବତାର
ଅସୁରଲୋକଙ୍କୁ ମାରି ରଖିଲି ସଂହାର ।
ବାଳକ ବୃଦ୍ଧ ତରୁଣ ନାହିଁ ମୋର ଲୋଡ଼ା
ପରମହଂସ ଆଚାର ଅଟେ ନିଜ ଘୋଡ଼ା ।
ସେ ଘୋଡ଼ାଥିବାରୁ ଆମ୍ଭ ବର୍ଷେ ନୋହେ କଳି
ବାପ ଜନ୍ମ ନୋହୁ ଜନ୍ମଅଛୁ ଆମ୍ଭେ ବଳି ।
ଶୁଣି ବେଦବର ବୁଝିଗଲେ କଥା ତର୍କି
ବୋଇଲେ ଶ୍ରୀକୃଷ୍ଣ କଥା ଏମନ୍ତ ନୁହେଁକି ।

ଲୋକାୟିତ ମାର୍ଗ ବୁଝି କହିଲି ଛାମୁରେ
ନୋହିଲେ ପ୍ରଭୁ କଥାକେ କଳି ଜାଣିପାରେ ।
ଶ୍ରୀକୃଷ୍ଣ ବୋଇଲେ ତେବେ ଶୁଣ ଅଷ୍ଟସଖି
ପୃଥିବୀରେ ଯାଦବଙ୍କୁ ଯିବା କିହେ ରଖି ।
ଏ ପୃଥ୍ୱୀମଧ୍ୟେ ଯାଦବେ ଯେବେ ରହିଥିବେ
ମହୀର ଭାରା ଉଶ୍ୱାସ ନୋହିବଟି କେବେ ।
ବ୍ରହ୍ମା ବୋଇଲେ ସ୍ୱାମୀ ସେକଥା ତୁମ୍ଭେ ଜାଣ
ଯାଉଛୁ ଛାମୁରୁ ଆମ୍ଭେ ମେଲାଣି ହୋଇଣ ।
ଏହିରୂପେ କହିଦେବେ ଯେଝାପୁର ଗଲେ
ଶ୍ରୀକୃଷ୍ଣ ଛାମୁରେ ଆସି ଋଷିଏ ମିଳିଲେ ।
କୃଷ୍ଣର ପୁତ୍ରେ ପ୍ରଭାସ ତୀର୍ଥବରେ ଯାଇ
ଶାମ୍ବକୁ ସେ ନାରୀବେଶ କଲେ ଗର୍ବ ବହି ।
ପେଟରେ ଭରିଲେ ତାର ଲୁହା ଖପରାଏ
ଶାମ୍ବ ଚାଲେ ଅନ୍ତସତ୍ତ୍ୱା ନାୟିକା ପରାୟେ ।
ଆସନ୍ତି ଯେ ଋଷିଗଣ ପଥେ ଶ୍ରମ ପାଇ
ଦେଖିଲେ ବାଟରେ ତାଙ୍କୁ କୃଷ୍ଣ ପୁତ୍ରେ ଯାଇ ।
ମନମଧ୍ୟେ ଗର୍ବ ବହି ହେଲେ ମତୁଆଳ
ଶାମ୍ବର କଥା ପୁଚ୍ଛନ୍ତି ଶ୍ରୀକୃଷ୍ଣର ବାଳ ।
ବୋଇଲେ କହ ମୁନି ଏ ଗର୍ଭେ କିସ ହେବ
ଦୁହିତା ଜନ୍ମିବ କିବା ପୁତ୍ର ପ୍ରସବିବ ।
ପୁତ୍ରଙ୍କର ହାସ୍ୟବୁଦ୍ଧି ଜାଣି ମୁନିବର
କ୍ରୋଧହୋଇ ଅଭିଶାପ ଦେଲେକ ତପୂର ।
ବିନାଶ କାଳକୁ ହେଲା ବିପରୀତ ବୁଦ୍ଧି
ପାଞ୍ଚିଲେ ସ୍ନେହ ଛାଡ଼ିଣ ଦେଲେ ଦୟାନିଧି ।
ଅବଶ୍ୟ ଏ ଯଦୁବଂଶ ଯିବେ ନାଶ ହୋଇ
ଯେବେ ବୈକୁଣ୍ଠକୁ ଚଳିଯିବେ ଭାବଗ୍ରାହୀ ।
ଋଷି ବୋଇଲେ ଶୁଣ ହେ କୃଷ୍ଣ ପୁତ୍ରମାନେ
ଏ ଗର୍ଭରେ ଯାହାଅଛି ଶୁଣ ଏକମନେ ।
ଗର୍ଭର ଭିତରେ ଅଛି ଲୁହାର ମୂଷଳ
ଜନମ ହୋଇ ନାଶିବ ନିଶ୍ଚେ ଯଦୁକୁଳ ।
ତେଣୁ ଏ ଶାମ୍ବର ଗର୍ଭୁ ମୁଷଳ ଜନ୍ମିବ
ଜନ୍ମାନ୍ତେ ମୁଷଳ ଗିରିଶିରେ ଘସାଇବ ।
ସେ ଲୋହ ଫେଣୁ ଜନ୍ମିବ ଏରକାର ବନ
ଅବଶେଷ ରହି ହେବ ଜରା ଶର ଜାଣ ।
ସେ ବାଣ ବାଜିଲେ କୃଷ୍ଣ ଛାଡ଼ିଯିବେ ପ୍ରାଣ
ଏ ରୂପେ କହି ଚଳିଲେ ତହୁଁ ଋଷିଗଣ ।
ଏଥୁ ଅନନ୍ତରେ ବାଣୀ ଶୁଣ ମହାରାଜେ
ବସୁଦେବପୁରେ ଯାଇଁ ନାରଦ ଯେ ବିଜେ ।
ସେହି ବେନିଜନଙ୍କର ସମ୍ବାଦ ଯେ ଭାବ
କହନ୍ତି ନାରଦ ମୁନି ଶୁଣନ୍ତି ମାଧବ ।

ନିମି ରାଜାଙ୍କର ଯାଗଶାଳେ ବ୍ରହ୍ମଋଷି
ମିଥିଳାପୁରରେ ଯାଇଁ ପ୍ରବେଶିଲେ ଆସି ।
କହି ହବି ଅନ୍ତରୀକ୍ଷ ଯେ ପିପ୍‌ଳାୟନ
ପ୍ରବୃଦ୍ଧ ଯେ ଆବିର୍ହୋତ୍ର ଦ୍ରାବିଣ ବ୍ରାହ୍ମଣ ।
କରଭାଜନ ମୁନି ଯେ ଚମସ ଏ ଜାଣ
ଏ ରୂପରେ ନବଋଷି ମିଳିଲେ ଆସିଣ ।
ଜଣେ ଜଣକେ କହିଲେ ଜ୍ଞାନମାର୍ଗ ବସି
ନିମି ରାଜାଙ୍କୁ କହିଣ ସନ୍ତୋଷିଲେ ଋଷି ।
ଆବର ରାଜା ପାଶରେ ମିଳିଲେ ଭରତ
ଋଷଭ ରାଜନଙ୍କର ଅଟଇ ସେ ସୁତ ।
ଶତେପୁତ୍ର ଉପରେ ସେ ଅଟେ ଜ୍ୟେଷ୍ଠ ଭାଇ
ନିଜ ରାଜ୍ୟେ ଭରତକୁ କଲେ ରାଜା ନେଇ ।
ନବ ପୃଥ୍ୱୀରେ ରହିଲେ ନବ ଗୋଟି ଭାଇ
ଏକାଅଶୀ ଗୋଟିପୁତ୍ର ଦ୍ୱିଜେକର୍ମେ ଯାଇ ।
ସେହିମାନେ ରହିଲେ ଯେ ଦ୍ୱିଜକର୍ମେ ଜାଣ
ଶ୍ରୀ ବ୍ରହ୍ମାଙ୍କୁ ଚିହ୍ନିଣ ସେ ବୋଲନ୍ତି ବ୍ରାହ୍ମଣ ।
ସେ ଭରତ ହେଲେ ଜାଣ ସପ୍ତଦ୍ୱୀପେ ରାଜା
ସମସ୍ତେ ଆସି କରନ୍ତି ତାଙ୍କ ପାଦପୂଜା ।
ନବଖଣ୍ଡ ମେଦିନୀ ଯେ ସପ୍ତଦ୍ୱୀପା ମହୀ
ନବ ଖଣ୍ଡ ପୃଥ୍ୱୀ ଭୋଗ କଲେ ନବ ଭାଇ ।
ଏଥୁ ଅନନ୍ତରେ ବାଣୀ ଶୁଣ ନୃପରାଣ
କହନ୍ତି ଶୁକମୁନି ଶ୍ରୀଭାଗବତ ପୁଣ ।
ଯଦୁରାଜାଙ୍କର ପାଶେ ମିଳିଲେ ଭରତ
ଅବଧୂତ ମାର୍ଗ ଯାଇ ବଖାଣିଲେ ତତ୍ତ୍ୱ ।
ଚବିଶ ଗୁରୁମାର୍ଗ ସେ ଶୁଣି ତୋଷ ହୋଇ
ତହିଁଉତ୍ତାରୁ ସେ କଥା ଶୁଣ ନୃପସାଇଁ ।
ନରନାରାୟଣ କରି କହି ଆନ ତପ
ଚତୁର୍ବିଂଶ ଅବତାର ତେତେ ବିଷ୍ଣୁରୂପ ।
ଶ୍ରୀକୃଷ୍ଣ ଉଦ୍ଧବଙ୍କର ଯେତେକ ସମ୍ବାଦ
ଜ୍ଞାନକୁ ବଢ଼ାଇ ଛେଦିଦେଲେ ମାୟାବନ୍ଧ ।
ଆତ୍ମଜ୍ଞାନ ସହିତରେ ସବୁ ବ୍ରହ୍ମଜ୍ଞାନ
କର୍ମଯୋଗ ଜ୍ଞାନଯୋଗ ପୂଜାବିଧି ମାନ ।
ବନ ଆଶ୍ରମ ସନ୍ନ୍ୟାସ ଗୃହ ଦୀକ୍ଷା ରସ
ନାନାଦି ଜ୍ଞାନ କହିଣ କଲେ ମନ ତୋଷ ।
ଉଦ୍ଧବ ଜ୍ଞାନ କହିଣ ଚଳିଲେ ବଦ୍ରିକା
ତପ ଆରମ୍ଭ କରିଲେ ଯାଇଁ ତହିଁ ଏକା ।
ଦ୍ୱାରକାପୁରେ କୋକୁଆ ଭୟ କଲେ ହରି
ପ୍ରଭାସ ତୀର୍ଥକୁ ସର୍ବେ ଗଲେ ବିଜେ କରି ।
ମହାଦାନ ଯଜ୍ଞ ଆଦି ସମସ୍ତ ସମ୍ପାଦି
ଦୈବୀମାୟା ଲଗାଇଲେ ପ୍ରଭୁ ଦୟାନିଧି ।

ବାରୁଣୀ ମଦ୍ୟପାନ ଯେ କଲେକ ଯାଦବେ
ହତଜ୍ଞାନ ହୋଇକରି ମାତିଲେ ସରବେ ।
ସନ୍ତରା ବଣରେ ପଶି କଲେ ମହାଯୁଦ୍ଧ
ସକଳ ଯାଦବେ ତହିଁ ହେଲେ ପ୍ରାଣେ ବଧ ।
ଚକ୍ରକୁ ପେଷି ପଦ୍ମନେ କରିଲେ ସେ ବଧ
ତାହା ଦେଖି ବଳରାମ ହୋଇଲେ ବିଷାଦ ।
ତତକ୍ଷଣେ କାମପାଳ ବିଶ୍ୱରୂପ ଧରି
ଚଳିଗଲେ ବୈକୁଣ୍ଠକୁ ଆପେ ବିଜେକରି ।
ମାଘମାସ ଅମାବାସ୍ୟା ଅଟେ ସେହିଦିନ
ଅଶ୍ୱତ୍ଥ ମୁଳେ ମିଳିଲେ ପ୍ରଭୁ ଭଗବାନ ।
ସେ ବୃକ୍ଷ ମୁଳେ ଟିକିଏ ବିଶ୍ରାମନ୍ତେ ବସି
ଝାଙ୍କିଲା କାଳନିଦ୍ରା ଯେ କୃଷ୍ଣ ଅଙ୍ଗେ ଆସି ।
ଚିତି ହୋଇଣ ଶୋଇଲେ ପ୍ରଭୁ ଭଗବାନ
ଆଣ୍ଠୁରେ ବାମ ପାଦକୁ ଲଦି ଜନାର୍ଦ୍ଦନ ।
ମୃଗର କର୍ଣ୍ଣ ପରାୟେ ଦିଶେ କୃଷ୍ଣ ପାଦ
ଦେଖିଣ ଜାରା ଶବର ହୋଇଲା ଆନନ୍ଦ ।
ମାରିବି ଏ ମୃଗ ବୋଲି ମନେ କଲା ପାଞ୍ଚ
ଗୁଣ ଟଙ୍କାରିଣ ଧନୁ କରିଲା ଆମଞ୍ଚ ।
ଏହି ଶ୍ରୀକୃଷ୍ଣ ବୋଲିଣ ଜରା ନାହିଁ ଜାଣି
ବିଷ୍ଣୁଙ୍କ ପଦ୍ମପାଦକୁ ବିନ୍ଧେ ଶର ଟାଣି ।
ପଡ଼ିଲା ନାରାଚ ଯାଇ କୃଷ୍ଣ ପଦ୍ମପାଦେ
ବାଣ ବାଜନ୍ତେ ଉଠିଣ ବସିଲେ ଗୋବିନ୍ଦେ ।
ପାଞ୍ଚିଲେ ଲୀଳା ଆମ୍ଭର ଗଲାଣି ତ ସରି
ବସିବା ଏ ମୃତ୍ୟୁକାଳେ ଜ୍ଞାନହେତୁ ଧରି ।
ଏତେ ବୋଲିଣ ଆତ୍ମାକୁ ଦୃଷ୍ଟି ଅଗ୍ରେଥୋଇ
ହେତୁ ପୁରାଇଲେ ରାମ ଶବଦରେ ନେଇ ।
ଯେତେବେଳେ ଶର ପାଦପଦ୍ମେ ଗଲା ପଡ଼ି
ରାମ ରାମ ଶବ୍ଦ ଗୋଟି ଗଲା ହୃଦୁ ଛାଡ଼ି ।
ଆତ୍ମା ସିନା ଟେକି ରହିଥାଇ ସବୁ ହୃଦେ
ରାମ ଟେକି ପାଶ ଛିଡ଼ି ଶିକୁଳିର ଛନ୍ଦେ ।
ଶିକୁଳି ଛିଡ଼ି ଆତ୍ମା ନ ପାରେ ପିଣ୍ଡେ ରହି
ଶିକୁଳି ଯୋଚିଣ ଆଉ ନ ପାରନ୍ତି କେହି ।
ଶିକୁଳି ଛନ୍ଦରେ ପଡ଼ି ଦେହେ ଆତ୍ମା ଥୋଇ
ପାଦେ ହୃଦେ ରଖିପାଦେ ଗମନ କରଇ ।
ସଂସାରରେ ଯେତେ ଆସି ଜନ୍ମନ୍ତି ଶରୀରୀ
ସବୁ ହୃଦେ ଆତ୍ମା ଜାଣ ଏ ରୂପେ ବିହରି ।
ଦଶାବତାରେ ଧରନ୍ତି ଦେହ ଦେବେ ହରି
ରହନ୍ତି ସେ ଦେହେ ଆତ୍ମା ହରି ଦେଇକରି ।
ନାରାଚ ବାଜନ୍ତେ କୃଷ୍ଣ ଛାଡ଼ି ଶରୀରକୁ
ଯୋଗାଗ୍ନି କର୍ମକରି ସେ ଛାଡ଼ିଲେ ପ୍ରାଣକୁ ।
ନିରାଲମ୍ବ ବିଷ୍ଣୁ ଦେହେ କୃଷ୍ଣ ହେଲେ ଲୀନ
କ୍ଷୀର ବଇକୁଣ୍ଠେ ଯାଇ ପ୍ରବେଶିଲେ ପୁଣ ।
ପ୍ରାଣ ଗଲାବେଳେ କୃଷ୍ଣ ଦାରୁକକୁ କହି
ବୋଇଲେ ଦ୍ୱାରକାପୁରେ କହ ସବୁଯାଇ ।
ବୋଲିବୁ ଶ୍ରୀକୃଷ୍ଣ ହେଲେ ବଇକୁଣ୍ଠ ବାସୀ
ଆଜ୍ଞାପାଇ ଦାରୁକ ଯେ କହେ ସବୁ ଆସି ।
ଦେବକୀ ବସୁଦେବ ଯେ କୃଷ୍ଣ କଥା ଶୁଣି
ହା ହା କୃଷ୍ଣ ବୋଲି ପ୍ରାଣ ଛାଡ଼ିଲେ ସେକ୍ଷଣି ।
ଆଉ ଯେତେକ ଯାଦବ ଥିଲେକ ସବୁରି
ସର୍ବହେଲେ ମୋହ ପିତୃ ତରପଣ କରି ।
ଅଷ୍ଟପାଟବଂଶୀ ଗଣ କୃଷ୍ଣ ନାମ ଭଜି
ବୈକୁଣ୍ଠକୁ ବିଜେକଲେ ଦେହମାନ ତେଜି ।
ଆଉ ଯେତେକ ଯୁବତୀ ଅଗ୍ନିକୁଣ୍ଡ କରି
ପଡ଼ିଲେ ଆନନ୍ଦ ହୋଇ ସନ୍ତକକୁ ଧରି ।
ଦ୍ୱାରକା ନଗର ପୁଣି ଜଳେ ଗଲା ବୁଡ଼ି
ଶ୍ରୀକୃଷ୍ଣ ନିବାସ ଜାଣ ରହିଲା ଉବୁରି ।
ଅରଜୁନ ଆସିଥିଲେ ଦ୍ୱାରକା ଭୁବନ
ଅନିରୁଦ୍ଧ ତନୟକୁ କଲେ ସେ ରାଜନ ।
ତାହାର ନାମ ଅଟଇ ବଜ୍ରନାଭ ପୁଣି
ଶୁଣ ପରୀକ୍ଷ କହନ୍ତି ଶୁକଦେବ ମୁନି ।
ଇନ୍ଦ୍ରପ୍ରସ୍ଥେ ପୁଣି ଯାଇ ମିଳିଲେ ଅର୍ଜ୍ଜୁନ
ହସ୍ତିନାରେ ପରୀକ୍ଷକୁ କଲେକ ରାଜନ ।
ହିମାଳୟ ଯାତ୍ରାରମ୍ଭ କଲେ ପାଞ୍ଚଭାଇ
ଏକାଦଶସ୍କନ୍ଧ ଏହିଠାରୁ ପୂରା ହୋଇ ।
ବତିଶ ଅଧ୍ୟାୟ ଏହୁ ଅଟଇ ପ୍ରମାଣ
ବିପ୍ର ପୀତାମ୍ବର ଦାଶ ପଶିଲା ଶରଣ ।

## ପରୀକ୍ଷିତ ରାଜାଙ୍କ ଚରିତ

ଏ ଭବସାଗରୁ ତରିଯିବି ବୋଲିକରି
ଏକାଦଶସ୍କନ୍ଧ ଯାଏ ଲେଖିଲି ବିଚାରି ।
ଦ୍ୱାଦଶସ୍କନ୍ଧର ଅର୍ଥ ଯେତେକ ଚରିତ
ପ୍ରାଞ୍ଜଳ କରିଣ ସବୁ ଶୁଣ ପରୀକ୍ଷିତ ।
ପରୀକ୍ଷ ବୋଇଲେ ତୁମ୍ଭେ ଶୁଣ ବ୍ରହ୍ମବେତ୍ତା
ବ୍ରହ୍ମଜ୍ଞାନ କହିବାକୁ ତୁମ୍ଭେ ମହାଜ୍ଞାତା ।
ତୁମ୍ଭର ମୁଖରୁ ମୁହିଁ ହରିଲୀଳା ଶୁଣି
ଋଷିଙ୍କ ଶାପରୁ ତରିଯିବି ସ୍ୱର୍ଗେ ପୁଣି ।
ତୁମ୍ଭର ମୁଖୁଁ ମୁଁ ଶୁଣିଅଛି ଯେତେ ଜ୍ଞାନ
ଆନ କେ କହିଲେ ବୋଧ ନ ହୁଅନ୍ତା ମନ ।
ହରିର ମହିମା ମୋତେ ଯେତେକ କହିଲେ
ଏ ଭବସାଗରୁ ମୋତେ ଉଦ୍ଧାର କରିଲେ ।

ଏବେ ମୁହିଁ ସନ୍ଦେହ ଯେ କରୁଅଛି ମନେ
ତକ୍ଷକ ଆସିଣ ମୋତେ ଦଂଶିବ କେସନେ ।
ସେହୁ ପୁଣି କାଳରୂପି ଅଟେ ମହାସର୍ପ
ହରିବ କି ରୂପେ ଆସି ମୋର ଏଡ଼େ ଦର୍ପ ।
କି ରୂପେ ଦଂଶିବ ମୋତେ ଲୋଚନେ ଦେଖିବି
ସଜୀବ ଶରୀର ପୁଣି କେହ୍ନେ ସମର୍ପିବି ।
ଏତେ ମହାଭୟ ଲାଗୁଅଛି ମୋତେ ଜାଣ
ତେଣୁ ତୁମ୍ଭଙ୍କୁ ଭରସା ପଚାରେ ମୁଁ ପୁଣ ।
ଶୁଣି ମନରେ ସନ୍ତୋଷ ହେଲେ ବ୍ୟାସବସି
ବୋଲେ ଏଥକୁ ରାଜା ନ କର ଭୟକିଛି ।
ଶ୍ରୀଭାଗବତ ଗ୍ରନ୍ଥ ଏ ଆଦ୍ୟୁ ପ୍ରାନ୍ତ ଯାଏ
କହୁଅଛି ତୋତେ ଆଣି ସବୁ ଜ୍ଞାନମୟେ ।
ଶ୍ରୀଭାଗବତ ବୋଲିଣ ଯେବଣ ପୁରୁଷ
ଶ୍ରୀଅଙ୍ଗଯାକ ତାଙ୍କର ଅଟେ ସୁଧାରସ ।
ଶ୍ରୀଭାଗବତ ପୁରାଣ ଶୁଣିବା ଲୋକକୁ
ସେ କାହିଁପାଇଁ ଡରିବେ ମରଣ ଛାରକୁ ।
ମୃତ୍ୟୁକୁ ଯଦ୍ୟପି ତୁମ୍ଭେ ଡରଭୟ ପାଇ
ବୁଝିଲେ ସଂସାରେ ଚିରହୋଇ କେହୁନାହିଁ ।
ଦଶ ଇବତାରେ ସେ ଯେ ଜନ୍ମନ୍ତି ପଦ୍ମାକ୍ଷୀ
ସେ ପୁଣ ସଂସାରେ ଦେହ ନ ପାରନ୍ତି ରଖି ।
ଆବର ଲୋକମାନଙ୍କୁ ଦେଖି କି ସଂସାରେ
ଜନ୍ମ ହେଲାରୁ ଜାଣିବ ମଲା ଏ ପୃଥ୍ୱୀରେ ।
ତୁମ୍ଭେ ପୁଣି ମରିବାକୁ ଡର ଏଡ଼େ ହୋଇ
ଜନ୍ମ ନୋହିବେ ମାରି କି ପାରେ ଜନ୍ତୁସାଇଁ ।
ଜନମ ହେଲେ ପ୍ରାଣୀଙ୍କୁ ସର୍ବକ୍ଳେଶ ଲାଗେ
ବ୍ୟାଘ୍ର ସର୍ପାଘାତେ ମରେ ଚଉଷଠି ରାଗେ ।
ଜନମ ନୋହିଲା ଯାକେ ସଂସାରେ ଯେ ସୁଖ
ଜନମ ହେଲା ଉତ୍ତାରୁ ଲଭେ ନାନାଦୁଃଖ ।
ତୁମ୍ଭେ ମରିବାକୁ କରୁଅଛ ମହାଭୟେ
ଅଜ୍ଞାନ ପ୍ରାଣୀ ମୃତ୍ୟୁକୁ ସଦା ଡରୁଥାଏ ।
ମୃତ୍ୟୁ ହେଲା ଉତ୍ତାରୁ ସେ ବ୍ରହ୍ମେ ମିଶିଯାଏ
ବ୍ରହ୍ମା ଆସି ଜନମିଲେ ନିଶ୍ଚେ ମୃତ୍ୟୁ ହୁଏ ।
ପାପକୁ ପାପଯୋନି ଯେ ପୁଣ୍ୟେ ପୁଣ୍ୟସ୍ଥାନ
ଏକ ଧ୍ୟାନରେ ଦେଖିଲେ ସେ ପରମବ୍ରହ୍ମ ।
ତୁମ୍ଭେ ଜନ୍ମି ମରିଅଛ କେତେଥର ଜାଣ
ପୁଣି ତୁମ୍ଭେ ଜନମ ନ ହେବ ନୃପରାଣ ।
ଆବର ଏଣିକି ଆଉ ଜନମ ନୋହିବ
କେତେବେଳେ ପୁଣି ତୁମ୍ଭେ କେବେ ନ ମରିବ ।
ଏବେ ହେଁ ପୁଣି ତୁମ୍ଭେ ଯେ ଜନମ ନୋହିଛ
ଏଣୁ ଜନମ ମରଣ ଅଟେ ଜାଣ ମିଛ ।

ସହଜାନନ୍ଦ ସ୍ୱରୂପ ସଦାକାଳେ ସ୍ମରି
ଜନ୍ମହେଲା ପ୍ରାଣୀମାନେ ଯାଉଥାନ୍ତି ମରି ।
ଉତ୍ପତ୍ତି ସ୍ଥିତି ଜୀବର ଆତ୍ମା କେବେ ନାହିଁ
ସକଳକାଳେ ସଂସାରେ ଜାଣ ରହିଥାଇ ।
ଏଦେହୁ ଗଲେ ଜାଣସେ ଦେହେ ଯାଇ ରହେ
ସେ ଦେହୁଁ ଆସିଲେ ପୁଣି ଦେହ ଗୋଟିପାଏ
ଏଣୁ ଜୀବଗୋଟି ନାଶ କେବେହେଁ ନୁହଇ
ଶୁଣ ହେ ପରୀକ୍ଷ ରାଜା ଶୁକଦେବ କହି ।
ଦାରା ଧନ ପୁତ୍ରପୁତ୍ରୀ ବୋଲେ ମୋର ମୋର
ଏମାନେ ସଂସାରେ ଜାଣ ନୁହନ୍ତି କାହାର ।
ଦେଖିବାକୁ ସେହୁ ପାଣି ଫୋଟକା ପରାୟ
କୁହୁଡ଼ି ପ୍ରାୟ ତକ୍ଷଣେ ପୁଣିଯାନ୍ତି କ୍ଷୟ ।
ନିଦ୍ରାକାଳେ ସ୍ୱପ୍ନ ସେହୁ ଦେଖୁଥାନ୍ତି ପ୍ରାଣୀ
ସ୍ୱପ୍ନକାଳରେ ମସ୍ତକ ପକାଏ କେ ହାଣି ।
ପ୍ରାଣ ଗୋଟିକ ମୋହର ଗଲାବୋଲି ଜାଣେ
ନିଦ୍ରା ଶେଯରୁ ଉଠିଣ ଚାହେଁ ଏଣେତେଣେ ।
ଏମନ୍ତ ପ୍ରକାରେ ଜାଣ ଅଟେ ଜନ୍ମ ମୃତ୍ୟୁ
ଏକଥା ଚିହ୍ନି କେହି ନ ପାରେ କରି ହେତୁ ।
ଏହିଭାବେ ଅଟେ ସବୁ ଜନ୍ମମୃତ୍ୟୁ ପନ୍ଥା
ନ ଜାଣି ମୂଢ଼େ କରନ୍ତି ଅନ୍ୟ ଅର୍ଥ ବୃଥା ।
ଏ ଆତ୍ମା ଥାଇ ଦେହରେ ହୋଇଣ ବିଲଗ
ଜନ୍ମମୃତ୍ୟୁ କଥାରେ ଯେ ନୁହେଁ କେବେ ସଙ୍ଗ
ଆବର ଯେ ଉପଲକ୍ଷ୍ୟ କହିବା ତା ଶୁଣ
ଜଳ ଘଟରେ ଚାହିଁଲେ ଦିଶେ ଯେହ୍ନେ ଜହ୍ନ ।
ସେହି ଘଟକୁ ଚାହିଁଲେ ବ୍ୟୋମଯେହ୍ନେ ଦିଶେ
ଘଟ ବିନାଶ ହେଲେ ସେ ପୁଣି ନ ପ୍ରକାଶେ ।
ଜନମ ମୃତ୍ୟୁ ଉଭୟ ଘଟନା ହୁଅଇ
ଶରୀର ଧରନ୍ତେ ଦେହ କେବେ ଚିରନୋହି ।
ଆତ୍ମାକୁ ଜନମ ମୃତ୍ୟୁ ସଦାକାଳେ ସରି
ଅବଶ୍ୟ ମରଇ ଜନମିଲେ ଦେହ ଧରି ।
ରହଇ ଅବିନାଶରେ ହୋଇ ଆତ୍ମା ଜାଣ
ପ୍ରକାଶ ହୁଏ ଶରୀର ଘଟଧରି ପୁଣ ।
ଘଟ ଧଇଲେ ମାୟାକୁ ଦେହ ନୁହେଁ ଛାଡ଼ି
ଦେହ ସଂଯୋଗରୁ ସେହି କର୍ମେ ଥାଇ ପଡ଼ି ।
ସାପରେ ବଳିତା ଗୋଟି ଯେଉଁ ରୂପେ ଥାଇ
ଗଳଇ ତୈଳ ସଂଯୋଗୁ ତିନିରୂପ ହୋଇ ।
ତୈଳ ସରିଲେ ପୁଣି ସେ ହୁଏ ନିର୍ବାପିତ
କରମ ସରିଲେ ଜାତ ହୁଏ ସେହିମତ ।
ଦୀପର ମଧ୍ୟରେ ଯେହ୍ନେ ତୈଳ ପୂରିଥାଇ
ତେବେ ସେହି ଦ୍ୱୀପ ଜାଣ ଉଜ୍ଜ୍ୱଳେ ଜଳଇ ।

ତଇଳ ସରିଗଲେ ହେ ଲିଭେ ଜାଣ ଦୀପ
ଏହି ରୁପେ ମରଣ ଜନମ ଅଟେ ନୃପ ।
ଅନଳ ଲିଭିଲେ ଦୀପ ବଇଠା ବୋଲାଇ
ଆତ୍ମା ଛାଡ଼ିଲେ ଶରୀର ଶବେ ପ୍ରବର୍ତ୍ତାଇ ।
ଲଗ୍ନ ଆଦ୍ୟ ପାଦ୍ଧ୍ୟ ଯେହୁ ସ୍ତିରିସଙ୍ଗ କରେ
ସେ ବୀର୍ଯ୍ୟେ ଜନ୍ମିଲେ ବଞ୍ଚେ ଶତ ସମ୍ବସରେ
ଲଗ୍ନ ଗୋଟିକ ଜାଣଟି ଅଟେ ଚାରିପଦ
ଯେଉଁ ପାଦରେ ପଡ଼ଇ ତେତେ ଭୋଗସାଧ
ତଇଳ ସମ୍ପୂର୍ଣ୍ଣ କରି ଦୀପ ଦେଇଥିଲେ
ଅର୍ଦ୍ଧଦ୍ୱାରା ଦୀପ କିବା ଜଳେ ତାର ତୁଲେ ।
ଏହିରୂପରେ ଜୀବଟି ସଂସାରେ ଜନ୍ମନ୍ତି
କେହି ଆଗ କେହ୍ଣ ପଛହୋଇ ମରିଯାନ୍ତି ।
ଆଦ୍ୟ ପାଦ ବୀର୍ଯ୍ୟ ଆଉ ଶେଷପାଦ ବୀର୍ଯ୍ୟ
ଏ ବେନି ବୀର୍ଯ୍ୟରୁ ଆୟୁ ତୁଲ୍ୟକି ହେ ବୁଝ ।
ଯେଉଁପାଦେ ଯେତେ ଭୋଗ ଲେଖିଆଣି ଥାଇ
ତେତେ ଭୋଗ କରିବ ସେ ଜାଣ ମରିଯାଇ ।
ତୁମ୍ଭ ଭୋଗ ଆସି ସରିଗଲା ଏବେ ଜାଣ
ମନରେ ନିମଗ୍ନ ହୋଇ ଭଜ ନାରାୟଣ ।
ଦେହ ଭିତରେ ବିଲଗ୍ନ ଆତ୍ମା ଥାଇ ରହି
ମହାଜ୍ୟୋତି ହୋଇ ଘଟେ ପ୍ରକାଶ ହୁଅଇ ।
ଆତ୍ମାରେ ମିଶ୍ରିତ ଯେହୁ ହୁଏ ଅନୁବ୍ରତେ
ତାହାର ଅଙ୍ଗେ ରୋଗ ନ ପଶେ କଦାଚିତେ
ଗୋବିନ୍ଦଙ୍କର ଚରଣେ ମନଦେଇ ରଖ
ତେବେତୁହି ରାଜ ଜାଣ ହେବୁ ନିଶ୍ଚେ ମୋକ୍ଷ
ତକ୍ଷକ ଆସିଣ ଜାଣ ବ୍ରାହ୍ମଣ ଶାପରେ
ଅବଶ୍ୟ ଦଂଶିବ ଆସି ତୁମ୍ଭର ପୟରେ ।
ମାୟାରୂପେ ଆସି ସେହୁ ତୁମ୍ଭଙ୍କୁ ଦଂଶିବ
ଦଂଶନ୍ତେ ଦେହ ତୁମ୍ଭର ଭସ୍ମ ହୋଇଯିବ ।
ଆତ୍ମାଗୋଟି ଶରୀରରୁ ଚଳିବ ଯେ କାଳେ
ଲେଉଟିଣ ଜନ୍ମ ମୃତ୍ୟୁ ଲଭିବ ସେକାଳେ ।
ଶରୀର ସିନା ଅଟଇ ମୃତ୍ୟୁ କଳେବର
ତେଣୁ ତୁମ୍ଭେ ମୃତ୍ୟୁ ବାଞ୍ଛା କେବେ ହେଁ ନକର
ଅବିନାଶୀ ପୁରୁଷ ଯେ କେବେ ମରିଛି କି
ଦେହ ଧରିଲେ ଲେଉଟି ମରିବ ନାହିଁକି ।
ଏ ମୃତ୍ୟୁକାଳେ ବାଞ୍ଛା ନ କର କିଛି ମନେ
ଭୋଗ ବାଞ୍ଛଲେ ଭୁଞ୍ଜିବ ପୁଣି ଆରଜନ୍ମେ ।
ପରମବ୍ରହ୍ମ ଅଟନ୍ତି ଯେଉଁ ଭଗବାନ
ଦେହ ଥାଉଁ ଥାଉଁ ତୁମ୍ଭେ ତାଙ୍କୁ ବେଗେଚିହ୍ନ ।
ଯଦ୍ୟପି ତୁମ୍ଭେ ଆତ୍ମାକୁ ଆପଣେ ଚିହ୍ନିବ
ପରଂବ୍ରହ୍ମ ପୁରୁଷକୁ ତକ୍ଷଣେ ଭେଟିବ ।

ସେ ବିଷ୍ଣୁ ରୂପ ଅଟଇ ନିରାକାର ରୂପୀ
ଅଛନ୍ତି ସର୍ବସ୍ଥାନରେ ପରଂପଦେ ବ୍ୟାପି ।
ଏ ଭାବକୁ ଚିହ୍ନି ତୁମ୍ଭେ ରଖ ଆତ୍ମାଜ୍ଞାନ
କରିବେ ପରମପାଦେ ଲୀନ ଜନାର୍ଦ୍ଦନ ।
ଦେଖ ନିର୍ମଳେ ଭଜନ୍ତି କେତେବେଳେ ଜ୍ଞାନୀ
ପୃଥ୍ୱୀ ଆପ ତେଜବାୟୁ ବ୍ୟୋମଚାରିଖାନି ।
ବ୍ରାହ୍ମଣଙ୍କର ଶାପରୁ ତକ୍ଷକ ଯେ ଆସି
ତୁମ୍ଭର ଚରଣକୁ ସେ ଦେବ ନିଶ୍ଚେଦଂଶି ।
ସେ ବିଷଜ୍ୱାଳାରେ ଜାଣ ତୁମ୍ଭ ନିଜଦେହ
ତତକ୍ଷଣେ ଦଗଧ ହୋଇ ଦେହ ଭସ୍ମମୟ ।
ସେ ତକ୍ଷକକୁ କେବେ ହେଁ ତୁମ୍ଭେ ନ ଦେଖିବ
ଆପଣା ଦେହରେ ପୁଣ ଜୀବନ ନ ଥିବ ।
ଯୋଗ ଅନଳରେ ତୁମ୍ଭେ ଦେହଥିବ ବହି
ଦେହ ଦିଶୁଥିବ ପାଞ୍ଚଗୋଟି ପ୍ରାୟରହି ।
ପ୍ରକୃତିଗଣକୁ ଜିଣିଥିବ ତୁମ୍ଭେ ବସି
ପରମ ପୁରୁଷ ଜାଣ ଆତ୍ମଙ୍କୁ ନିବେଶି ।
ଏ ମାୟା ଦେହ ତୁମ୍ଭର ଆତ୍ମା ନ ଦେଖିବ
ଲୌକିକ କର୍ମ ସିନା ଏ ଅଟେ ମୃତ୍ୟୁଭାବ ।
ବସିଲେ ଯୋଗାସନରେ ତୁମ୍ଭ ଆତ୍ମାଯାଇ
ରହିବେ ସେ ନିରାକାର ଦେହେ ଲୀନହୋଇ
ଏଂ ଜୀବ ଗୋଟିକ ଜାଣ ଯିବାର ନିକଟେ
ପ୍ରକାଶ କରେ ତାହାକୁ ନେଇ ଅନ୍ୟ ଘଟେ ।
ଏ ଘଟରୁ ଜୀବଗଲେ ପରଘଟେ ନେଇ
ରଖଇ ସେହୁ ଜୀବକୁ ଦେହେ ଠାବଦେଇ ।
ସେ ପରମ ପୁରୁଷର ଯେଉଁ ରୂପ ଗୋଟି
ଛପନକୋଟି ପୃଥ୍ୱୀରେ ଅଛି ରହି ଘୋଟି ।
ଏଦେହୁଁ ଗଲେ ଜୀବ ସେ ଦେହେ ରହେ ଯାଇ
ଜୀବ ପରମକୁ ଏକା ଦେହ ତେଣୁ କହି ।
ଜୀବକୁ ଲେଉଟି ଯେତେବେଳେ ଜନ୍ମକରେ
ପାତକ ବୁଝି ତାହାର ଖଞ୍ଜଇ ବୀର୍ଯ୍ୟରେ ।
ପାପକୁ ସେ ପାପଯୋନି ପୁଣ୍ୟେ ପୁଣ୍ୟ ସ୍ଥାନ
ଭାଗବତ ପୁରାଣରେ କହଇ ଏସନ ।
ମୃତ୍ୟୁକୁ ଡରି ପୁଛିଲ ତୁମ୍ଭେ ମହୀପାଳ
ଆମ୍ଭେ କହୁଥିବା ଯାକ ତୁମ୍ଭଙ୍କୁ କୁଶଳ ।
ସମସ୍ତ ଆତ୍ମା ଅଟନ୍ତି ପ୍ରଭୁ ନାରାୟଣ
ତାକୁ ଧ୍ୟାନକରି ଯେବେ ଛାଡ଼ିଯିବ ପ୍ରାଣ ।
ନିମଗ୍ନ ହୋଇଣ ରାଜା ଧ୍ୟାନେ ଏବେ ବସି
ଶ୍ରୀ ଗୋବିନ୍ଦ ପାଦେ ନେଇ ଚିତ୍ତକୁ ନିବେଶି ।
ଲଗାଅ ଲୟ ଗୋଟିଏ ଚରଣାରବିନ୍ଦେ
ତତ୍କାଳେ ଦୟା ତୁମ୍ଭଙ୍କୁ କରିବେ ଗୋବିନ୍ଦେ ।

ଲଗାଅ ଲୟ ଗୋଟିକୁ ପାଦପଦ୍ମେ ନେଇ
ମୋକ୍ଷଗତି କରିବେ ଯେ ପ୍ରଭୁ ଲକ୍ଷ୍ମୀସାଇଁ ।
ଅଟନ୍ତି ବିଧାତାରୂପୀ ଯେଉଁ ଚକ୍ରପାଣି
ତାହାଙ୍କର ଆଶ୍ରୟରୁ ବର୍ତ୍ତନ୍ତି ଯେ ପ୍ରାଣୀ ।
ଜୀବ ରୂପରେ ଜନ୍ମିଣ ମୃତ୍ୟୁ ଲଭୁଥାନ୍ତି
ପରମପଦେ ସେ ରହି କେବେ ନ ମରନ୍ତି ।
ପୁନରପି ଜନମିଣ ଧରନ୍ତି ଶରୀର
କୃଷ୍ଣର ମହିମା ଗୋଟି ପୁଣି ଅଗୋଚର ।
ଭକତି ଭଣ୍ଡାରେ ପ୍ରଭୁ ମୁକ୍ତ ହେତୁ ରହି
ପଦ୍ମକୋଷ ସମାନ ତା ଆକାର ଅଟଇ ।
କେତେ ପାଖୁଡ଼ାରେ କେତେ ବିଷ୍ଣୁ ଛନ୍ତି ରହି
ଲୀଳା କରୁଥାନ୍ତି ପ୍ରଭୁ ସର୍ବଦେହେ ଥାଇ ।
ସେ ବିଷ୍ଣୁ ମହାପ୍ରଭୁଟି ସବୁରି ମୋକ୍ଷାର୍ଥ
ସେ ମହିମା କହିବାକୁ ହେବ କେ ସମର୍ଥ ।
ସଂସାରେ ସାଗର ଏହୁ ଅଟଇ ଦୁସ୍ତର
ସେ ସମୁଦ୍ର ତରିବାକୁ ବିଷ୍ଣୁ କର୍ଣ୍ଣଧାର ।
ମନଟି ଯାର ଗୋବିନ୍ଦ ପାଦପଦ୍ମେ ଥିବ
ନାନା ଦୁସ୍ତରୁ ରଖନ୍ତି ତାକୁ ବାସୁଦେବ ।
ଅଟଇ ଏହୁ ପୁରାଣ ନୌକାପ୍ରାୟ ପୁଣି
ବୋଇତେ ବସିଲେ ଯେହ୍ନେ ସିନ୍ଧୁପାରେ ଜିଣି
ଏ ବୋଇତେ ପୂରିଅଛି କୃଷ୍ଣଲୀଳା କଥା
ଏ ଲୀଳା ଶୁଣିଲେ ପାପ ନ ରହେ ସର୍ବଥା ।
ଏହି ଗ୍ରନ୍ଥ ନିତି ନିତି ପଢ଼ିବ ଯେ ପ୍ରାଣୀ
ନିଶ୍ଚେ ତରିବ ସେହି ଏ ଭବତରଙ୍ଗିଣୀ ।
କହିଲି ଶ୍ରୀ ଭାଗବତ ଅର୍ଥ ସବୁ ତୋତେ
ଅମୃତରସ ପୂରିଛି ପିଅ ଅବିରତେ ।
ଏ ଭବସାଗରକୁ ଏ ଗ୍ରନ୍ଥ ଅଟେ ନାବ
ବୁଝି ହେଜି ପାରିଲେ ଯେ ନିଶ୍ଚେ ତରିଯିବ ।
ଶ୍ରୀଭାଗବତ ପୁରାଣ ଅଟେ ବିଷ୍ଣୁ ଆତ୍ମା
କହିବାରୁ ତୁମ୍ଭେ ଚିହ୍ନା ଯିବଟି ମହାତ୍ମା ।
ତୁମ୍ଭଙ୍କୁ କହିଲୁ ଭାଗବତ ଆଦ୍ୟ ପ୍ରାନ୍ତ
ଆମ୍ଭର ଶରୀର ଗୋଟି ହୋଇଲା କୃତାର୍ଥ ।
ଆପଣ ଏବେ ବିଷ୍ଣୁଙ୍କ ଦେହେ ଲୀନ ହେବ
ଶ୍ରୀ ଭାଗବତ ପୁରାଣ ନୋହେ ଅନ୍ୟ ଭାବ ।
ସବୁ ଗ୍ରନ୍ଥରୁ ସାର ଏ ଅଟେ ଭାଗବତ
ଚାରିବେଦ ଅର୍ଥ ଏହୁ କହିଲୁଟି ତତ୍ତ୍ୱ ।
ତୁମ୍ଭ ଆମ୍ଭ ସମ୍ବାଦ ଯେ ହେଲା ଗଙ୍ଗାତୀରେ
କହିଲେ ଏହା ଯେ ସୁତ ନୈମିଷାରଣ୍ୟରେ ।
ସୌନକ ମୁନି ଆଗରେ ସୁତ ପୌରାଣିକ
କହିଲେ ଋଷି ଭାବରେ ଭାଗବତ ଶ୍ଳୋକ ।

ଶୁକମୁନିଙ୍କ ମୁଖରୁ ଏହି ବାକ୍ୟ ଶୁଣି
ଆନନ୍ଦ ହୋଇ ଭଜନ୍ତି ରାଜା ଚକ୍ରପାଣି ।
ଶ୍ରୀହରିଙ୍କ ପାଦେ ନେଇ ମନକୁ ନିବେଶି
ଗୋବିନ୍ଦ ଚରଣେ ଭଜୁଥାନ୍ତି ଅହର୍ନିଶି ।
ବୋଇଲେ ନମୋନମୋହେ ପରମ ପୁରୁଷ
ତୋ ଅନ୍ତ ପାଇ ନାହାନ୍ତି ବିଧାତା ମହେଶ ।
ଆପଣ ଭାବକୁ ପ୍ରଭୁ ଆପେ ଏକା ଜାଣ
ତୁମ୍ଭ ବିନା ସଂସାରେ କେ ନାହିଁ ପରିତ୍ରାଣ ।
ଆପରଙ୍କ ପାଦେ ନେଇ ରଖ ମନ ମୋର
ରହିବ ଶ୍ରୀଅଙ୍ଗେ ଲୀନ ହୋଇ ଦୟାକର ।
ସବୁରି ଆଶ୍ରା ବିଶ୍ରାମ ଅଟ ନରହରି
ରଖ ମୋର ଆତ୍ମା ପ୍ରଭୁ ଅଙ୍ଗେ ନେଇ ଭରି ।
ଶୁଣିଲି ଶୁକଦେବଙ୍କ ମୁଖୁଁ ଯେଉଁ ବାଣୀ
ସଂସାରର କୂପକୁ ସେ ଅଟଇ ନିଶୁଣୀ ।
ଏ ରୂପେ ବିଷ୍ଣୁଙ୍କୁ ଧ୍ୟାୟି ପରୀକ୍ଷ ରାଜନ
ଶୁକଦେବ ପାଦେ ପୁଣି କଲେକ ପ୍ରଣାମ ।
ଲୋମ ପୁଲକ କରିଣ ହୋଇ ଗଦ ଗଦ
ବୁହାନ୍ତି ନେତ୍ରରୁ ନୀର ଜ୍ଞାନେ ରଖି ହୃଦ ।
ବୋଲନ୍ତି ତୁମ୍ଭେ ପ୍ରତ୍ୟକ୍ଷେ ଅଟ ଜ୍ଞାନନିଧି
ତୁମ୍ଭ ମୁଖୁ ଶୁଣି ସବୁ ଲଭେ ଜ୍ଞାନ ବୁଦ୍ଧି ।
ଷଡ଼ ଯତି ମଧ୍ୟେ ତୁମ୍ଭେ ଯତି ଜଣେ ଅଟ
ତେଣୁ ଆତ୍ମାଜ୍ଞାନ ମୋତେ କରାଇଲ ଭେଟ
ଏତେ ବୋଲିଣ ପରୀକ୍ଷ ଶୁକଦେବ ପାଦେ
ପୁଚ୍ଛନ୍ତି ପ୍ରଣାମ କରି ମନର ଆନନ୍ଦେ ।
ବୋଲନ୍ତି ଆପଣ ସ୍ୱୟଂ ଅଟ ଅବଧୂତ
ତେଣୁ ସବୁରି ଆତ୍ମାକୁ ମଣ ଏକମତ ।
ମରିବା କଥାକୁ ଏବେ ନାହିଁ ମୋର ଭୟ
ମୂର୍ଖଲୋକ ଡରି ମରୁଥାନ୍ତି ଅପ୍ରମେୟ ।
ତୁମ୍ଭର ସୁଦୟା ମୋତେ ହେଲା ଯେତେବେଳେ
ଜନମି ମୃତ୍ୟୁକୁ ଆଉ କେବେ ହେଁ ନଭାଳେ ।
ବୁଝିଲେ ତୁମ୍ଭେ ପ୍ରତ୍ୟକ୍ଷେ ଅଟ ବିଷ୍ଣୁରୂପୀ
ବିଷ୍ଣୁ ପ୍ରାୟେ କହୁଅଛ ସବୁଶାସ୍ତ୍ରେ ବ୍ୟାପି ।
ଏ ସଂସାରେ ତାପେପଡ଼ି ପ୍ରାଣୀମାନେ ଥାଇ
ଆତ୍ମାର ଗତାଗତକୁ ନ ଜାଣନ୍ତି କେହି ।
ଆପଣା ଆତ୍ମାକୁ ଯେହୁ ଆପେ ଚିହ୍ନିପାରେ
ସେହି ଜନମାନେ ଜାଣ ରହନ୍ତି ସଂସାରେ ।
ଶ୍ରୀହରି ମହିମା ଏହୁ ପୁରାଣ ସଂହିତା
ସାଧୁଙ୍କ ପାଶେ ଯେ ବସି ଶୁଣେ କୃଷ୍ଣ କଥା ।
ସେ ପ୍ରାଣୀମାନେ ସୁଗତି ଲଭି ତରିଯାନ୍ତି
ସେହି ରୂପେ ମୋତେ ତୁମ୍ଭେ କଲ ଗତିମୁକ୍ତି ।

ଏ ବିଶ୍ୱ ସଂସାରୁ ମୋତେ ତୁମ୍ଭେ ଉଦ୍ଧରିଲ
ଆତ୍ମାର ଗତ ଆଗତ ଆପେ କହିଦେଲ ।
ତେଣୁ କରି ତୁମ୍ଭଙ୍କୁ ଯେ ମୋର ନମସ୍କାର
ସାକ୍ଷାତରେ ମୋତେ କହିଦେଲ ଯେ ଈଶ୍ୱର
ତୁମ୍ଭେ ମୋ ହେଲ ଗୁରୁ ମୁଁ ଶିଷ୍ୟ ଜାଣ
ତୁମ୍ଭେ ଏକା ହେଲ ମୋର ପ୍ରଭୁ ନାରାୟଣ ।
ମୃତ୍ୟୁକୁ ମୋହର ତେଣୁ କରି ଭୟ ନାହିଁ
ଅକ୍ଷୟ ବୋଲି ବ୍ରହ୍ମାର ଭେଟ ଏବେ ପାଇ ।
ବ୍ରହ୍ମ ଚିହ୍ନାଇ ଦେଇଣ ଦେଖା କରାଇଲ
କୁଜନ ଲୋକକୁ ଦେବ ସୁଜନ କରିଲ ।
ଏବେ ଆହେ ମୁନିବର ଆଜ୍ଞା ମୋତେ ଦିଅ
ସବୁବେଳେ ମୋର ତୁମ୍ଭପାଦେ ରହୁ ଲୟ ।
ଏବେ ମୁହିଁ ଶୁକଦେବ ବସି ଯୋଗାସନେ
ମଉନବ୍ରତେ ରହିବ ହୋଇ ନିଗମନେ ।
ଷଡ଼ଚକ୍ରରେ ପୁରାଇ ଆତ୍ମା ଟେକି ନେବି
ଜୀବର ଛନ୍ଦଦୁଆରେ ନେଇ କରାଇବି ।
ତେବେ ସେ ଜୀବ ପରମ ସଙ୍ଗେ ଭେଟ ହେବ
ଏ ଦେହ ଛାଡ଼ିଲେ ଯାଇ ସେ ଦେହେ ରହିବ
ଏ ଜୀବ ଆସି ଜନ୍ମିଣ ଯିବାର ନିକଟେ
ପ୍ରତ୍ୟକ୍ଷରେ ନେଇ ତାକୁ ରଖେ ଆନଘଟେ ।
ସେହି ଘଟେ ନେଇ ମୋର ପ୍ରାଣ ନିବେଶିବି
ମାୟାମୋହ ଛେଦି ବିଷ୍ଣୁ ଦେହେ ଲୀନ ହେବି
ତକ୍ଷକ ଏବେ ଆସିଣ ବ୍ରାହ୍ମଣ ଶାପରେ
ଦଂଶିଣ ଯାଉ ପଛେ ସେ ମୋହର ଶରୀରେ
ଏଥକୁ ଭୟ ମୋହର ନାହିଁ ଆଉ କିଛି
ତୁମ୍ଭର ଘେନି ମୋକ୍ଷ ଯେ ହେବି ବ୍ୟାସବତ୍ସି ।
ଏତେ ବୋଲି ଦଣ୍ଡବତ କଲେ ଶୁକପାଦେ
ମୁନିଙ୍କ ବଦନ ଚାହିଁ ରହିଲେ ନିଃଶବ୍ଦେ ।
ରାଜାଙ୍କ ବିନୟ ଦେଖି ବ୍ୟାସଙ୍କର ସୁତ
ବୋଇଲେ କହିବା ଶୁଣ ଆହେ ପରୀକ୍ଷିତ ।
ଦେହାନ୍ତେ ନିଶ୍ଚୟ ତୁମ୍ଭେ ଲଭିବ ଗୋବିନ୍ଦ
ଆମ୍ଭେ ସର୍ବରଷି କରୁଅଛୁ ଆଶୀର୍ବାଦ ।
ତୁମ୍ଭ ଛାମୁରୁ ମେଲାଣି ଏବେ ଆମ୍ଭେ ହୋଇ
ଯାଉଛୁଁ କଲ୍ୟାଣ କରି ସୁଖେ ଥାଅ ରହି ।
ଶୁଣିଣ ପରୀକ୍ଷ ରାଜା ବହୁ ହୃଷ୍ଟ ହେଲେ
ପୁରାଣ ଦକ୍ଷିଣା କରି ଲକ୍ଷେ ସ୍ୱର୍ଣ୍ଣ ଦେଲେ ।
ଲକ୍ଷେ ହୀରା ଲକ୍ଷେ ନୀଳା ଲକ୍ଷେ ମୋତି ଦେଇ
ରହିଲେ ଶୁକଦେବଙ୍କ ଅଗ୍ରେ ଉଭାହୋଇ ।
ତାହା ଦେଖି ଶୁକଦେବ ହସ ହସ ହେଲେ
ବିପ୍ର ଗୋସାଇଁମାନଙ୍କୁ ଦ୍ରବ୍ୟଯାକ ଦେଲେ ।
ପରୀକ୍ଷ ମହାରାଜାଙ୍କ ଅନୁଗ୍ରହ ପାଇ
ଚଳିଗଲେ ଶୁକଦେବ ବହୁ ମାନ୍ୟ ପାଇ ।
ଯାବତ ଋଷି ଯାକଙ୍କୁ ଘେନି ଶୁକ ସଙ୍ଗେ
ବଦ୍ରିକାଶ୍ରମରେ ଯାଇଁ ପ୍ରବେଶିଲେ ବେଗେ ।
ଯୋଗାସନରେ ବସିଲେ ଚିତ୍ତ ସ୍ଥିର କରି
ନିଶ୍ଚଳ ଆସନ କରି ଗୋବିନ୍ଦ ସୁମରି ।
ଏଥୁ ଅନନ୍ତରେ ବାଣୀ ଶୁଣହେ ନାରଦ
ନୈମିଷାରଣ୍ୟେ ଯେତେକ ଥିଲେ ଋଷିବୃନ୍ଦ ।
ସୂତ ପୌରାଣିକ ମୁଖୁଁ ଶୁଣନ୍ତି ପୁରାଣ
ଭାଗବତ ଗ୍ରନ୍ଥ ନାମେ ପ୍ରସିଦ୍ଧ ଯା ଜାଣ ।
ସୁତ ପୌରାଣିଙ୍କର ଅଗ୍ରେ ଋଷିଯାକ
ପୁଚ୍ଛନ୍ତି ସେ ଭାଗବତ ଅଛିଟି ଯେତେକ ।
ବୋଲନ୍ତି ହେ ସୁତ ଏବେ କହିବାକ ହେଉ
ଶୁକ ବଦ୍ରିକା ଯିବାରୁ କି ଘଟିଲା ଆଉ ।
ମେଲାଣି ହୋଇଣ ଶୁକଦେବ ବିଜେ କଲେ
ଶୁଣିବା ପରୀକ୍ଷ ରାଜା କଥା କହ ଭଲେ ।
ଋଷିଙ୍କ ମୁଖୁ ଶୁଣିଣ ସୁତ ପୌରାଣିକ
କହନ୍ତି ପୂର୍ଣ୍ଣ କରି ଶ୍ରୀଭାଗବତ ଶ୍ଳୋକ ।
ଶୁଣିବା ଏବେ ହେଉ ସେ ପରୀକ୍ଷିତ କଥା
ଶୁକ କହିବାରୁ ସେହି ହେଲେ ବ୍ରହ୍ମବେତ୍ତା ।
ବସିଲେ ସେହି ଠାବରେ ଯୋଗାସନ କରି
ଗୋବିନ୍ଦର ପାଦେ ମନ ରଖିଲେ ଓଟାରି ।
ଆତ୍ମାରେ ଆତ୍ମା ରଖିଣ କଲେ ପାଦେ ଜଣା
ଅଷ୍ଟାଙ୍ଗ ଯୋଗମଧ୍ୟେ ସେ ଅଟେ ଜଗଜ୍ଜିଣା ।
ପରମବ୍ରହ୍ମ ରୂପରେ ଯେଉଁ ବିଶ୍ୱରୂପ
ପବନକୁ ଦେଖି ତହିଁ କଲେ ମନେ ଜପ ।
ଜୀବର ଜପ ପୁଣ ଯେ ଅଟେ ଜାଣ ଯେତେ
ସେହି ଜପ ଶୁଣ କହୁଅଛି ଶାସ୍ତ୍ରମତେ ।
ଏକୋଇଶ ସସ୍ର ଛଅଶତ ଯାଏ ପୁଣି
ଭଜୁଥାଇ ବସି ଜୀବ ଦିବସ ରଜନୀ ।
ସେହି ଜପ ଶୁଣ କହୁଅଛି ଶାସ୍ତ୍ରମତେ
ଜୀବର ଜପ ଗୁଣଟି ଅଟେ ଜାଣ ଯେତେ ।
ସେ ଜପଗୋଟି କାହାକୁ ନାହିଁ ଜାଣ ଜଣା
ଜାଣିଲେ ପ୍ରାଣୀ ମରନ୍ତେ ହୋଇକିମ୍ପା ବଣା ।
ସତ କହିବାରୁ ପରୀକ୍ଷିତ ତାହା ଶୁଣି
ବସି ଯୋଗାସନେ ଭଜୁଥାନ୍ତି ଚକ୍ରପାଣି ।

ବିପ୍ରମାନଙ୍କୁ ରାଇଣ ଦାନ ଧାନ କରି
ମୃତାହ ପଞ୍ଚକ ଦାନ ଦେଲେ ଦଣ୍ଡଧାରୀ ।
ସୁବର୍ଣ୍ଣ ଅନ୍ନଦାନ ଯେ ଭୂମି ଶାଳଗ୍ରାମ
ଦେଲେ ବିପୁଳ ଆଗାର ନେଲେ ବିପ୍ରଜନ ।
ହସ୍ତିନା ନଗରର ଯେ ଗୃହ ପୂର୍ବଭାଗେ
ବସିଲେକ ଗଙ୍ଗାନଦୀ ତୀର ପୂର୍ବଭାଗେ ।
ତୁଳସୀ ବୃକ୍ଷ ସ୍ଥାପିଣ ବାଲୁକା ବେଦୀରେ
ଲକ୍ଷ୍ମୀ ନୃସିଂହ ମୂର୍ତ୍ତିକି ବସାଇ ଆଗରେ ।
ଉତ୍ତର ଦିଗକୁ ରାଜା ମୁଖକରି ବସି
ଦେଖନ୍ତି ନାସାଅଗ୍ରକୁ ଚାହିଁ ବ୍ରହ୍ମରାଶି ।
ଆତ୍ମାକୁ ନେଇଣ ପୁଣ ବ୍ରହ୍ମରନ୍ଧ୍ରେ ଥୋଇ
ଜୀବର ବୃନ୍ଦା ସ୍ଥାନରେ ପ୍ରକାଶିଲେ ନେଇ ।
ଆଧାର ଚକ୍ର ଯେ ଲଲାଟର ଚକ୍ରଯାଏ
ପରମାତ୍ମାକୁ ରଖିଲେ କରି ହେତୁ ଲୟେ ।
ଏକ ଅକ୍ଷର ବ୍ରହ୍ମରେ ହୋଇଲେ ପ୍ରବେଶ
ଯୋଗାଗ୍ନି କରି ଜୀଅନ୍ତା ଦେହ କଲେ ନାଶ ।
ପରମ ପାଦରେ ଯାଇ ରାଜା ପ୍ରବେଶିଲେ
ବିଷ୍ଣୁର ଶରୀରେ ଯାଇ ଲୀନ ହୋଇଗଲେ ।
ତକ୍ଷକଙ୍କ କଥା ଏବେ ଶୁଣ ଋଷିମାନେ
ପରୀକ୍ଷ ରାଜା ପାଖକୁ ଆସଇ ଯେସନେ ।
ବ୍ରାହ୍ମଣ ସ୍ୱରୂପ ଧରି ଆସେ ଅନ୍ତରାଳେ
ପରୀକ୍ଷିତ ରାଜା ତ ବସିଛି ଅନ୍ତର୍ଜଳେ ।
ରାଜାକୁ ଯାଇ ଦଂଶିବି ଆଗ ବୋଲିକରି
ବାଟରେ ଆସି ଆସୁ ସେ ଭେଟି ଧନ୍ୱନ୍ତରୀ ।
ଦେଖିଣ ଧନ୍ୱନ୍ତରୀକି ପୁଚ୍ଛଇ ଏସନ
ବୋଇଲା କହ କେଣିକି ଚଳୁଛ ଆପଣ ।
ସେ ବିପ୍ର ହୋଇଲେ ଆମ୍ଭେ ଅଟୁ ଯେ ଧନ୍ୱନ୍ତି
ଦେବତାଙ୍କ ବୈଦ୍ୟ ଆମ୍ଭେ ଅଟୁ ବ୍ରହ୍ମଗୋତ୍ରୀ
ପରୀକ୍ଷ ରାଜନ ଏବେ ବ୍ରହ୍ମଜ୍ଞାନ ପାଇ
ବସିଛନ୍ତି ଅନ୍ତର୍ଜଳେ ଗଙ୍ଗାତୀରେ ଯାଇ ।
ଆଜ ତକ୍ଷକ ଦଂଶିବ ତାଙ୍କୁ ପୁଣ ବୋଲି
ଖବର ପାଇଥିଲୁ ଏ କଥା ଆମ୍ଭେ କାଲି ।
ତକ୍ଷକ ଯେବେ ତାହାକୁ ଭସ୍ମ କରିଦେବ
ଆମ୍ଭେ ଗଲାକ୍ଷଣି ସେହୁ ଜୀଇଣ ଉଠିବ ।
ସେ ଭସ୍ମଯାକ ପିତୁଳାରୂପେ ଆମ୍ଭେ ଗଢି
ସିଞ୍ଚିବୁ କୁସୁମ ପାଣି ମନ୍ତ୍ରଗୋଟି ପଢ଼ି ।
ଶ୍ରୀଜୀବନ୍ୟାସ ମନ୍ତ୍ରଟି ଅଟଇ ଆମ୍ଭର
ପରୀକ୍ଷିତଙ୍କୁ ଜୀଆଇ ଆସିବୁ ତତ୍ପର ।

ଧନ ହିଁ ପାଇବୁଆମ୍ଭେ ଯଶ ହିଁ ପାଇବୁ
ଏଡ଼େ ଧର୍ମକଥା କିମ୍ପା ସଂସାରେ ଛାଡ଼ିବୁଁ ।
ଧନ୍ୱନ୍ତ୍ରୀ ମୁଖୁଁ ଏପରି ବାକ୍ୟ ଗୋଟି ଶୁଣି
ଆଚମ୍ବିତ ହୋଇକରି ତକ୍ଷକ ଯେ ଭଣି ।
ବୋଇଲାକ ଏଡ଼େ କଥା ଯେବେ ଜୀଆଇଁବ
ବ୍ରାହ୍ମଣ ଶାପ ଆଉ କେ ସଂସାରେ ମାନିବ ।
ବିପ୍ରଙ୍କର ବଡ଼ପଣ ରହିବ କି ଆଉ
କେତେବଡ଼ କଥାଗୋଟି କହିଲେକ ଏହୁ ।
ତଥାପି ଆମ୍ଭର ନାମ ଅଟଇ ତକ୍ଷକ
ବ୍ରହ୍ମ ହେଲେ ମରିଯିବ ଲାଗି ଆମ୍ଭ ମୁଖ ।
ଦେହ ଭସ୍ମ ହୋଇଯିବ ତତକ୍ଷଣେ ଜଳି
ଏକଥା ପରୀକ୍ଷାକରି ବୁଝିବା ସଙ୍ଖୋଳି ।
ଯା କହି ତକ୍ଷକ ଧନ୍ୱନ୍ତରୀ ପାଦେ ନମି
ବୋଇଲା କେଡ଼େ ଜଣେତ ଅଟ ତୁମ୍ଭେ ସ୍ୱାମୀ
ଧନ୍ୱନ୍ତ୍ରୀ ବୋଇଲେ ତୁମ୍ଭେ କେଉଁ ପୁରୁଷକି
ଏତେ ପରିବନ୍ଧେ କଥା ବୁଝୁଛ କାହିଁକି ।
ଶୁଣିଣ ବୋଲେ ଆମ୍ଭର ଅଟେ ନାଗ ନାମ
ଅଷ୍ଟକୁଳା ନାଗମଧେ ଜଣେ ମୁଁ ଜାଣିମ ।
ଆମ୍ଭେ ଯଦ୍ୟପି ପ୍ରାଣୀକି ସତେହେଁ ମାରନ୍ତୁ
ଗୋଟିଏ ଲୋକ ବରତି ରହନ୍ତେ କି ତନ୍ତୁ ।
ଏଥକୁ ତେବେ ବୁଝିବା ତୁମ୍ଭ କରାମତ
ଆମ୍ଭେ ତ ପରୀକ୍ଷିତଙ୍କୁ ଦଂଶିବୁ ନିୟତ ।
ତୁମ୍ଭେ ଯଦ୍ୟପି ଏହାଙ୍କୁ ଜୀଆଇଣ ପାର
ପରୀକ୍ଷା କଥା ବୁଝିବା ତେବେ ଏଠାବର ।
ଏ ରୂପେ ବଚନ ଗୋଟି କହନ୍ତେ ତକ୍ଷକ
ଦେଖିଲେ ଆଗରେ ରହିଅଛି ଯେ ବୃକ୍ଷେକ ।
ତହିଁ ଉପରରେ କାଠ ଭାଙ୍ଗେ ଏକ ଜନ
ବୋଇଲେ ଏ ବୃକ୍ଷକୁ ମୁଁ ଦଂଶୁଛି ବହନ ।
ତୁମ୍ଭେ ଯଦ୍ୟପି ଏହାକୁ ପ୍ରାଣ ଦେଇପାର
ତେବେ ଜୀଇଁବେଟି ପରୀକ୍ଷିତ ନୃପବର୍ ।
ଏତେ ବୋଲିଣ ତକ୍ଷକ ବୃକ୍ଷକୁ ଦଂଶିଲା
ମନୁଷ୍ୟ ବୃକ୍ଷ ଆଦି ସେ ଭସ୍ମ ହୋଇଗଲା ।
ତାହା ଦେଖି ଧନ୍ୱନ୍ତରୀ ଉଠିଲେ ତକ୍ଷଣ
ଏକଠାବ କରି ଭସ୍ମ କୁଢ଼ କଲେ ଜାଣ ।
ଶଙ୍ଖ ମଧସ୍ଥିତ ପାଣି ଧରି ଦକ୍ଷକରେ
ମୃତ୍ୟୁ ସଞ୍ଜୀବନୀ ମନ୍ତ୍ର ପଢ଼ିଲେ ମୁଖରେ ।
ତିନିଥର ମନ୍ତ୍ରି ତିନିମୁଠା ସେ ସିଞ୍ଚିଲେ
ସେହି ଭସ୍ମ ଯାକ ସବୁ ଏକତ୍ର ହୋଇଲେ ।

ତକ୍ଷଣେ ସେ ବୃକ୍ଷ ଗୋଟି ଅଙ୍କୁରିଲା ପୁଣି
ପୂର୍ବରୂପ ପରାୟେକ ଦିଶିଲା ସେକ୍ଷଣି ।
ଯେତେ ଶାଖା ଯେତେ ଡାଳ ଯେତେ ପତ୍ର ଥିଲା
ସେହି ସଦୃଶରେ ପୁଣି ଆଗେ ଉଭାହେଲା ।
ସେହି ରୂପେ ସେ ମନୁଷ୍ୟ ଭାଙ୍ଗୁଅଛି କାଠ
ବୋଇଲା ଗୋସାଇଁ ଏବେ ତଳୁ ବେଗେ ଉଠ
କାଠ ପଡ଼ିଲେ ମୁଣ୍ଡରେ ତାଳୁଯିବ ଫାଟି
ଏହାଶୁଣି ଧନ୍ୱନ୍ତରୀ ହସିଲେ ଚହଟି ।
ତକ୍ଷକ ତା ଦେଖି ବଡ଼ ଆଶ୍ଚର୍ଯ୍ୟ ହୋଇଲା
ନିଶ୍ଚୟ ପରୀକ୍ଷ ରାଜା ଜୀଇଁବ ବୋଇଲା ।
ଏତେ ବୋଲିଣ ତକ୍ଷକ କହେ ଧନ୍ୱନ୍ତ୍ରିକି
ବୋଇଲେ କଥାଏ ମୁହିଁ ମାଗୁଛି ଏତିକି ।
ଆପଣ ସତ୍ୟ କରିଲେ କହିବି ତା ଏବେ
ବିପ୍ରଙ୍କର ଶାପ ପାଇ ଅଛନ୍ତି ସେ ପୂର୍ବେ ।
ସେଠାକୁ ଗଲେ ଅବଶ୍ୟ ତୁମ୍ଭେ ଜୀଆଇବ
ଆମ୍ଭର ତ ବଡ଼ପଣ ବ୍ୟର୍ଥେ ଭାଜିଯିବ ।
ପଦାର୍ଥ ମାତ୍ର ଯଦ୍ୟପି ପାଇବ ସେଠାରୁ
ଆମ୍ଭେ ସେହି ଦ୍ରବ୍ୟ ଦେବୁ ବାହୁଡ ଏଠାରୁ ।
ଏହି ରୂପେ କହି ଲକ୍ଷେ ସ୍ୱର୍ଣ୍ଣ ଦେଲେ ଆଣି
ଧନପାଇ ଧନ୍ୱନ୍ତରୀ ବିଚାରିଲେ ପୁଣି ।
ମନେ ପାଞ୍ଚିଲେ ରାଜାଙ୍କୁ ପୂର୍ବ ଶାପ ଅଛି
ସେ କଥାକୁ ଆନକରି ନ ପାଞ୍ଚେ ବିରଞ୍ଚି ।
ପରୀକ୍ଷିତ ରାଜାଙ୍କର ଆୟୁ ଆଉ କାହିଁ
ଜୀଇବାକୁ ଇଚ୍ଛା ପୁଣ ସେହି ନ କରଇ ।
ଶୁକଦେବ ସବୁ ଏଣେ କହି ତ ଗଲେଣି
ଆମ୍ଭେ ଗଲେ ବାହୁଡ଼ିଣ ଆସିବୁ ଏକ୍ଷଣି ।
ଯୋଗବଳେ ଆମ୍ଭଙ୍କୁ ଏକଥା ହେଲା ଜଣା
ତଥାପି ଏ ଧନ ମୋତେ ଦେଲେ ଅକଳନା ।
ନୃପତିଙ୍କୁ ଶୁକ ସବୁ ଗଲେଣି ତ କହି
ଆମ୍ଭେ ଯିବାରେ ଆଉ କି କାର୍ଯ୍ୟ ଅଛି ତହିଁ ।
ବିରକ୍ତ ମନେ ବସିଛି ସିନା ଗଙ୍ଗାତୀରେ
ମହାଯୋଗାରୂଢ଼ ହୋଇ ବସିଛି ଧ୍ୟାନରେ ।
ଆତ୍ମାକୁ ରଖିଲେଣି ସେ ପରଂ ପଦେ ନେଇ
ଯୋଗାନଳରେ ପ୍ରକୃତି ହୋଇଲେଣି ଦହି ।
ଯେ ବ୍ରହ୍ମରେ ଯାଇ ସେହି ମଜ୍ଜି ରହିଲେଣି
ପିଣ୍ଡ ସିନା ଅନ୍ତର୍ଜଳେ ଅଛି ଦେହ ଘେନି ।
ତକ୍ଷକ ଆମ୍ଭଙ୍କୁ କେତେ ଦେଲେଣି ତ ଧନ
ଏହା ଛାଡ଼ିଗଲେ ଲୋକେ କରି ଅନୁମାନ ।

ବୋଲିବେକ କେଡ଼େ ଲୋଭୀ ଅଟଇ ଏ ବୈଦ୍ୟ
ତକ୍ଷକ ମନମଧ୍ୟେ ଯେ ହୋଇବ ବିଷାଦ ।
ତଥାପି ଆମ୍ଭେ ତ ଗଲେ ଜୀଆଇଣ ଦେବା
ଲେଉଟିଣ ମରିଗଲେ ଜୀଆଇଁ ନ ପାରିବା ।
କେବେ ହେଲେ ପ୍ରାଣୀ ଥରେ ଅବଶ୍ୟ ମରିବ
ବିଷ୍ଣୁଙ୍କର ଭଜନ ସେ କାହିଁକି ଛାଡ଼ିବ ।
ଏତେ ପାଞ୍ଚି ଧନ୍ୱନ୍ତରୀ ତକ୍ଷକକୁ କହି
ଧନ ଧରି ବାହୁଡ଼ି ସେ ଗଲେ ନିଜ ମହୀ ।
ଏଥୁଅନ୍ତେ ତକ୍ଷକର କଥା ତୁମ୍ଭେ ଶୁଣ
ଗଲେ ସେହି ରାଜାଠାକୁ ବ୍ରାହ୍ମଣ ରୂପେଣ ।
ଫଳମୂଳ ଧରି କରେ ଶୀଘ୍ର ଗଲେ ଚଳି
ରହିଲେ ଫଳ ଭିତରେ କୃମିରୂପେ ଗଳି ।
ପୁରୋହିତଙ୍କ ହସ୍ତେ ସେ ଫଳ ନେଇଦେଲେ
ରାଜାଙ୍କ ପାଶେ ନେଇଣ ସମର୍ପି ବୋଇଲେ
ଏହା ଶୁଣି ପୁରୋହିତ ଫଳ କରେ ଧରି
ରାଜାର ପାଶେ ଥୋଇଲେ ନେଇ ବେଗକରି
ବ୍ରାହ୍ମଣ ରୂପ ତକ୍ଷକ ସିନା ଧରିଥିଲା
ସର୍ପ ରୂପେ ବାହାରିଣ ରାଜାଙ୍କୁ ଦଂଶିଲା ।
ବ୍ରାହ୍ମଣ ସ୍ୱରୂପ ପୁଣି ଧଇଲା ସେକ୍ଷଣି
କାହାକୁ ସଂସାରେ ଏହା ଜଣାନାହିଁ ପୁଣି ।
ରାଜାର ପାଦରେ ଦଂଶି ତକ୍ଷକ ଚଳିଲା
ପରୀକ୍ଷିତ ଭସ୍ମ ହୋଇ ଭୂମିରେ ପଡ଼ିଲା ।
ପରୀକ୍ଷିତ ରାଜା ମୃତ୍ୟୁ ସର୍ବଜନ ଦେଖି
ଲୋତକଧାରା ବହି ଯେ ପଡ଼େ ସବୁ ଆଖି ।
ସଂସାରରେ ହା ହା କାର ଶବ୍ଦ ଗଲା ଶୁଭି ।
ଠାବେ ଠାବେ ଉଛୁଳିଲେ ଶୋକେ ମହୀଦେବୀ
ଆକାଶରେ ଦେଖୁଥିଲେ ସର୍ବଦେବ ରହି
ଦେଖିଲେ ପରୀକ୍ଷରାଜା ଗଲେ ଭସ୍ମ ହୋଇ
ତକ୍ଷକ ରୂପ ଏକା ଯେ କେହି ନ ଦେଖିଲେ
ପରୀକ୍ଷିତ ଭସ୍ମ ହୋଇ ବିଷ୍ଣୁରେ ମିଶିଲେ ।
ଶ୍ରୀ ମହାରାଜାଙ୍କ ମୋକ୍ଷ ଦେଖି ସର୍ବ ଦେବେ
ଦୁନ୍ଦୁଭି ବାଦ୍ୟକୁ ବଜାଇଲେ ଠାବେ ଠାବେ ।
ଅପସରାଯାକ ମିଳି ଦ୍ୟନ୍ତି ହୁଳହୁଳି
ସାଧୁ ସାଧୁ କରନ୍ତି ସେ ସର୍ବ ଲୋକ ମିଳି ।
ଶୂନ୍ୟରେ ଥାଇଣ ଦେବେ ପୁଷ୍ପବୃଷ୍ଟି କଲେ
ଆନନ୍ଦ ହୋଇଣ ତହୁଁ ସ୍ୱର୍ଗପୁରେ ଗଲେ ।
ନମସ୍ତେ ନମସ୍ତେ ପ୍ରଭୁ ବ୍ରହ୍ମାଣ୍ଡ ଈଶ୍ୱର
ତୋ ପାଦେ ଶରଣ ପଶେ ବିପ୍ର ପୀତାମ୍ବର ।

## ଜନ୍ମେଜୟଙ୍କ ଚରିତ

ପରୀକ୍ଷିତ ରାଜାସୁତ ଅଟେ ଜନ୍ମେଜୟ
ହସ୍ତିନା ରାଜ୍ୟରେ ରାଜା ହେଲେ କୁରୁରାୟ
ପିତାଙ୍କର ପିତୃକାର୍ଯ୍ୟ ତତ୍‌କ୍ଷଣ ସାରିଲେ
ଶ୍ରୀମହାରାଜା ହୋଇଣ ପୃଥ୍ୱୀକି ପାଳିଲେ ।
ସେହି ଜନ୍ମେଜୟ ରାଜା କିଛି ଦିନାନ୍ତରେ
ଉତ୍ତମ ଋଷିଙ୍କୁ ଡାକି କହିଲେ ସଭାରେ ।
ବୋଇଲେ ଦେଖି ଆସିଣ ଚଣ୍ଡାଳ ତକ୍ଷକ
ପରୀକ୍ଷ ରାଜାଙ୍କୁ ଦଂଶି କଲା ଭସ୍ମାନ୍ତକ ।
ଧନ୍ୱନ୍ତରୀ ଆସିଥିଲେ ବଞ୍ଚାଇବା ପାଇଁ
ବାଟରୁ ଧନ ଦେଇଣ ଦେଲା ପଠିଆଇ ।
ଧନ ପାଇ ଧନ୍ୱନ୍ତରୀ ନ ଆସିଲେ ଏଥେ
କେଡ଼େ କଥା କଲା ସେହି ଚାଣ୍ଡାଳ ସାକ୍ଷାତେ
ଉତ୍ତଙ୍କ ଋଷି ବୋଇଲେ ଏହି କଥା ସତ୍ୟ
କେଡ଼େ ରାଜାଙ୍କୁ ତକ୍ଷକ କରିଲା ନିହତ ।
ମୁର୍ଦ୍ଧନାଭିଷେକୀ ଅଟେ ଯେଉଁ ମହାରାଜା
ଲକ୍ଷେ ରାଜାରେ ମଉଡ଼ମଣି ବ୍ରହ୍ମଦ୍ୱିଜା ।
ତେଡ଼େ ରାଜାଙ୍କୁ ତକ୍ଷକ ଛାର ମାତ୍ର ହୋଇ
ପାଦରେ ଦଂଶି ଗଲାକ ନ ଜାଣଇ କେହି ।
ଉତ୍ତଙ୍କ ଋଷି ମୁଖରୁ ଶୁଣି ଏ ବଚନ
ପାତ୍ରମନ୍ତ୍ରୀକି ଡକାଇ ଆଣିଲେ ବହନ ।
ବୋଇଲେ ମନରେ ମୁହିଁ ଯାହା ପାଞ୍ଚୁଥିଲି
ସେ କଥା ଉତ୍ତଙ୍କ ଋଷି କହିଲେ ଶୁଣିଲି ।
ଶୁଣିଣ ପାତ୍ରମନ୍ତ୍ରୀ ଯେ ଯୋଡ଼ି ବେନିକର
ବୋଇଲେ ତକ୍ଷକ ବେଳେ ଦଂଶିଲା ନିକର ।
ଆମ୍ଭଙ୍କୁ ଧନ୍ୱନ୍ତ୍ରୀ ଆସିବାର ଜଣା ନାହିଁ
ଶୁଣିଣ ଦେଶ ଲୋକଙ୍କୁ ନୃପତି ଡକାଇ ।
ବୋଇଲେ ବୃକ୍ଷେ କହ କେ କାଠ ଭାଙ୍ଗୁଥିଲା
ସେ ବୃକ୍ଷର ସଙ୍ଗରେ ସେ ଭସ୍ମ ହୋଇଗଲା ।
ରାଜାର ଆଜ୍ଞା ପାଇଣ ଶବରେକ ଉଠି
କରପତ୍ର ଯୋଡ଼ିକରି ଛାମୁରେ କହେଟି ।
ବୋଇଲା ସେ ବୃକ୍ଷରେ ମୁଁ ଏକାଥିଲି ଚଢ଼ି
ଭାଙ୍ଗୁଥିଲି ଶୁଷ୍କକାଠ ବୃକ୍ଷଯାକ ଲୋଡ଼ି ।
ଏମନ୍ତ ବେଳରେ ଧନ୍ୱନ୍ତରୀ ଆସିବାରେ
ତକ୍ଷକ ଧନ୍ୱନ୍ତ୍ରୀ ଭେଟ ପଡ଼ିଲା ସେଠାରେ ।
ଦୁହିଁଙ୍କର ଉଚ୍ଚବାଚେ ବୃକ୍ଷ ଭସ୍ମ କଲେ
ମୁହିଁ ମଧ ଜଳିଗଲି ସେ ବୃକ୍ଷର ତୁଲେ ।
ଧନ୍ୱନ୍ତରୀ ମନ୍ତ୍ରବଳୁ ଜୀଇଁଲିଟି ପୁଣି
ଯେତେକ କହିଲେ ମୁହିଁ ସବୁ ଅଛି ଜାଣି ।
ମୁହିଁ ଦେଖିଛି ତକ୍ଷକ ଧନ ତାକୁ ଦେଲା
ବହୁତ ବିନୟ ହୋଇ ବଚନ କହିଲା ।
ଦ୍ରବ୍ୟ ପାଇ ଧନ୍ୱନ୍ତରୀ ତହୁଁ ଚଳିଗଲେ
ଛାମୁରେ କହୁଛି ମୁଁ ଏକଥା ନିର୍ଣ୍ଣେ ଭଲେ ।
ଶବର କହିବା ବାକ୍ୟ ଶୁଣିଣ ରାଜନ
ନାଗକୁଳ ପରେ କୋପି ଉଠିଲେ ବହନ ।
ବୋଇଲେ ଏହି ସଂସାରେ ଯେତେ ସର୍ପ ଅଛ
ଦେଲି ଶାପ ତୁମ୍ଭଙ୍କୁ ମୁଁ ନ ହୋଇବ ମୋକ୍ଷ ।
ଆଜଠାରୁ ରାଜାମାନେ ଯେତେ ଜନ୍ମିବେଟି
ତାହାଙ୍କୁ ଛୁଇଁଲେ ତୁମ୍ଭ ମୁର୍ଦ୍ଧା ଯିବ ଫାଟି ।
ସେ ଦିନୁ ରାଜାମାନଙ୍କୁ ନ ଛୁଇଁଲେ ସର୍ପ
ରହନ୍ତି ରାଜା ଶୟନକାଳେ ହୋଇ ଗୋପ୍ୟ
ରାଜାଙ୍କ ଛାମୁରେ ସେ ନ ଯାନ୍ତି ଦେଖା ହୋଇ
ରହିଲା ସବୁକାଳେ ଏ କଥା ସିଦ୍ଧ ହୋଇ ।
ଏଥୁ ଅନନ୍ତରେ ପୁଣି ଜନ୍ମେଜୟ ରାଜା
ଉତ୍ତଙ୍କ ମହାଋଷିଙ୍କ କଲେ ପାଦପୂଜା ।
ବୋଇଲେ ଆପଣ ଏବେ କର ସର୍ପ ଯାଗ
ଯେ ଯାଗରେ ସର୍ପେ ପଡ଼ି ହୁଅନ୍ତୁ ଦହିର୍ଯ୍ୟ ।
ରାଜାଙ୍କ ମୁଖରୁ ଶୁଣି ସେ ଉତ୍ତଙ୍କ ଯତି
ବୋଇଲେ ଚିନ୍ତା ଆଉ ନକର ହେ ନୃପତି ।
ସର୍ପକୁଣ୍ଡଳୀ ବିଦ୍ୟା ଯେ ଅଛି ମନ୍ତ୍ରଭାଗ
ପଢ଼ିବା ମାତ୍ରକେ ଧରି ଆଣିବଟି ନାଗ ।
ମରିଗଲେ ନାଗକୁଳ ସରିଯିବ ପାପ
ଏଥକୁ ଚିନ୍ତା ଆଉ ନ କର କିଛି ନୃପ ।
ସର୍ପ କୁଣ୍ଡଳୀ ମନ୍ତ୍ରରେ ସବୁ ଧରି ଆଣି
ଯାଗ ମଧରେ ପକାଇ ଦେବି ଏହିକ୍ଷଣି ।
ଏତେ ବୋଲିଣ ଉତ୍ତଙ୍କୁ ହରଣ ମନ୍ତ୍ରରେ
ସଂସାର ସର୍ପଯାକକୁ ଆଣିଲେ ସତ୍ୱରେ ।
ନାଗେ ଯଜ୍ଞକୁଣ୍ଡ ମଧେ ପଡ଼ିଲେକ ଆସି
ତକ୍ଷକ ଏକାଳେ ଜାଣ ପଳାଇଲା ଖସି ।
ଜନ୍ମେଜୟଙ୍କର କୋପ ଆଗୁଥିଲା ଶୁଣି
ଭୟେ ପଳାଇଲା ସ୍ୱର୍ଗେ ଭେଟି ବଜ୍ରପାଣି ।
ବୋଇଲା ବାସବ ମୋତେ ରଖହେ ଶରଣ
ଜନ୍ମେଜୟ ଯାଗ ଶେଷ ହେବା ପର୍ଯ୍ୟନ୍ତେଣ ।
ଏହା ଶୁଣି ବାସବ ବୋଇଲେ ସୁଖେ ଥାଅ
ଯାଗଶେଷ ହେଲେ ତୁମ୍ଭେ ଗୃହେ ପଛେ ଯାଅ

ତକ୍ଷକ ବୋଇଲେ ଆଉ କଥା ଏବେ ଶୁଣ
ସର୍ପ କୁଣ୍ଡଳୀ ମନ୍ତ୍ର ଯେ ଅଛଇ ହରଣ ।
ସେହୁ ମନ୍ତ୍ରକୁ ଉତ୍ତଙ୍କ ପଢ଼ିବେକ ଯେବେ
ତେବେ ମୁଁ ଏଠାରେ ରହି ନ ପାରିବି କେବେ
ଏହା ଶୁଣି ବାସବ ଯେ ହସେ ଟହ ଟହ
ବୋଇଲେ ତେବେ ମୋହର ସୁଧାକୁଣ୍ଡେ ରହ
ସେ ହରଣ ମନ୍ତ୍ର ଗୋଟି ସୁଧା ହୋଇଯିବ
ଅମୃତଭାଣ୍ଡକୁ ମୋର କେବେ ନ କାଟିବ ।
ଶୁଣିଣ ତକ୍ଷକ ମନୁ ଭୟ ଗଲା ଛାଡ଼ି
ଯାଗଶେଷ ଯାଏ ତହିଁ ରହିଲାକ ବୁଡ଼ି ।
ଏଥୁଅନନ୍ତରେ ପୁଣ ଶୁଣ ସେ ପ୍ରସଙ୍ଗ
ତକ୍ଷକ ନ ଆସନ୍ତେ ସେ ଜାଣିଲେ ଉତ୍ତଙ୍କ ।
ଜନ୍ମେଜୟଙ୍କ ଆଗେ ସେକଥା ଜଣାଇଲେ
ବୋଇଲେ ତକ୍ଷକ ଏକା ଯାଗେ ନ ପଡ଼ିଲେ ।
ସବୁ ସର୍ପଯାକ ଆସି ପଡ଼ିଲେ ହୋମରେ
ତକ୍ଷକ ଏକା ଲୁଚିଣ ରହିଲା ସ୍ୱର୍ଗରେ ।
ବାସବ ଦେବତା ତାକୁ ରଖିଲେ ଶରଣ
ତେଣୁ ଏକା ଅଗ୍ନିରେ ସେ ନ ପଡ଼ିଲା ଜାଣ ।
ଏହା ଶୁଣି ଜନ୍ମେଜୟ ମନେ କଲେ କ୍ଷୋଭ
ବୋଇଲେକ ପିତାଶତ୍ରୁ ଯେବେ ଜୀବେ ଥିବ
ଏଡ଼େଯାଗ କରିବା କି କାର୍ଯ୍ୟ ତେବେ ହେଲା
ପିତା ଶତ୍ରୁ ନ ମରିଣ ଯେବେ ରହିଗଲା ।
ଇନ୍ଦ୍ର ତକ୍ଷକ ପ୍ରଭୃତି ସବୁ ତେବେ ଆଣି
ପକାଅ ଯାଗରେ ଖାନ୍ତୁ ଏ ଆଶୁକ୍ଷଣି ।
ତକ୍ଷକ ଅଟଇ ମୋର ପିତାର ବଇରୀ
ତାହାର ସଙ୍ଗ ଦୋଷରୁ ଇନ୍ଦ୍ର ଯାଉ ମରି ।
ଏ ରୂପେଣ ରାଜା ଆଜ୍ଞା ଉତ୍ତଙ୍କଙ୍କୁ ଦ୍ୟନ୍ତେ
ବସିଲେ ଉତ୍ତଙ୍କ ଋଷିଶ୍ରୁବ ଧରି ହସ୍ତେ ।
ଏଥୁଉତ୍ତାରେ ସେ ଇନ୍ଦ୍ରକଥା ବାର୍ତ୍ତା ପାଇ
ଆସ୍ତିକ ମହାଋଷିଙ୍କୁ ଆଣିଲେ ଡକାଇ ।
ବୋଇଲେକ ଜନ୍ମେଜୟ ନୃପତିଙ୍କୁ କହ
ନାଶିଲେ ଜୀବଲୋକ ଏ ହୋଇଣ ନିର୍ଦ୍ଦୟ ।
ଦେଖି ଆମ୍ଭଙ୍କୁ ଆହୁତି ଦେବେ ଏବେ ବୋଲି
ମନେ ମାରିବାକୁ ପାଞ୍ଚୁଛନ୍ତି ପାପେ ଭୁଲି ।
ଶୁଣିଣ ଆସ୍ତିକ ଋଷି ଚଳିଲେ ସେ ଲାଗେ
ଉତ୍ତମ ଋଷି ପାଶରେ ମିଳିଗଲେ ବେଗେ ।
ରାଜାଙ୍କୁ ଚାହିଁ ଆସ୍ତିକ କଲ୍ୟାଣ ବାଞ୍ଛିଲେ
ଦ୍ୱିତୀୟେ ପରୀକ୍ଷ ରାଜା ବୋଲି ପ୍ରଶଂସିଲେ

ପଢ଼ିଲେକ ଚାରିବେଦ ରାଜାପାଶେ ବସି
ମାଗନ୍ତି ତକ୍ଷକ ସେହୁ ବେଦସ୍ୱର ଘୋଷି ।
ବାସବ ଦେବ ତୁମ୍ଭଙ୍କୁ ବହୁ ସ୍ତୁତି କରି
ମୋତେ ଯେ ପେଶୀ ଅଛନ୍ତି ଅନେକ ତିଆରି
ତକ୍ଷକର ରକ୍ଷା କରିବାର ନିମନ୍ତେଣ
ତେଣୁ ତୁମ୍ଭ ପାଶେ ଆସିଅଛୁ ଆମ୍ଭେ ଜାଣ ।
ନାଗମାନଙ୍କର ଆମ୍ଭେ ଅଟୁ ଯେ ଭଣଜା
ତେଣୁ ତୁମ୍ଭଙ୍କୁ କହୁଛି ଆମ୍ଭେ ମହାରାଜା ।
ସକଳ ସର୍ପ ଅଟନ୍ତି ଆମ୍ଭ ମାତୃକୁଳ
ଏହାଙ୍କୁ ତୁମ୍ଭେ ଆଉ ନ ମାର ନୃପଶୀଳ ।
ବହୁଛି ଧର୍ମଶାସ୍ତ୍ରରେ ଜୀବକୁ ରଖିଲେ
ବିଷ୍ଣୁତୁଲ୍ୟ ସରି ସେହୁ ଅଟେ ଜୀବଥିଲେ ।
ସେ ଯାଗ ସ୍ଥାନରେ ପୁଣି ଥିବେ ବୃହସ୍ପତି
କହିଲେ ଜନ୍ମେଜୟଙ୍କୁ କରି କେତେ ସ୍ତୁତି ।
ବୋଇଲେ ଆହେ ରାଜନ କହିବା ତା ଶୁଣ
ଯଜ୍ଞକଲେ ତକ୍ଷକ ନାମରେ କେବେ ଜାଣ ।
ଅମୃତ କୁଣ୍ଡ ମଧ୍ୟରେ ଲୁଚିଅଛି ସେହି
ତାହାକୁ ମାରିଣ କେ ନ ପାରେ ଦେହ ବହି ।
ଅମୃତ ଖାଇଣ ସେହୁ ହୋଇଛି ଅମର
ଏବେ ଆମ୍ଭେ କହୁଅଛୁ କୋପକୁ ସଂହର ।
ତୁ ଯେ ବୋଇଲୁ ମୋହର ପିତାଙ୍କୁ ମାଇଲା
ତକ୍ଷକକୁ ମାଇଲେ ସେ ଜୀଇଁବ କି ଭଲା ।
ସଂସାରରେ କେ କାହାକୁ ପ୍ରାଣେ ନ ମାରଇ
କେ କାହାକୁ କେବେ ହେଁ ଜ୍ୟାଇଁ ନ ପାରଇ ।
ଜୀବଗୋଟି କରି ପୁଣି କର୍ମେ ହୁଏ ଜାତ
ଯେ ଯାହାଟି ଅର୍ଜିଥାଇ ଭୁଞ୍ଜଇ ତା ନିତ୍ୟ ।
ମରିବାକୁ ସେହି ଏକା ମାରିବାକୁ ସେହି
ଏହା ଚିହ୍ନି ସଂସାରେ ନ ପାରେ ଜାଣି କେହି ।
ଆବର ଜ୍ୱର ରୋଗ ସେ ସର୍ପ ଅଗ୍ନି କ୍ଷୁଧା
ତୃଷାଦି ବ୍ୟାଧି ଲାଗଇ ଆବର ଯେ ବାଧା ।
କାଶ ଶ୍ୱାସ ହିକ୍କା ରୋଗ ଅଜୀର୍ଣ୍ଣ ଧୂଗୁଡ଼ି
ପିଳେହି ଯେ ପେଟଟଣା ମୁଣ୍ଡବ୍ୟଥା ବାଡ଼ି ।
ପ୍ରାଣୀଙ୍କର ଶରୀରରେ କରନ୍ତି ଏ ଭୋଗ
ଭୁଞ୍ଜୁ ଥାଇ ଆପଣାର କଲା କର୍ମ ଯୋଗ ।
ଜନମ ମରଣ ଦୁଇ ଅଟେ ଏକଭାଗ
ଜନମିଲେ ମରିବ ସେ ମଲେ ଜନ୍ମ ହେବ ।
ଈଶ୍ୱର ଆୟତ୍ତ ଏହା ଅଟେ ଜାଣିଥାଅ
ମଲାଲୋକ ଜନ୍ମେ ଜନମିଲା ଲୋକକ୍ଷୟ ।

ତୋହର ପିଅର ଅଟେ ପରୀକ୍ଷ ନୃବର
ବିପ୍ର ଶାପ ଦେଲାରୁ ସେ ମଲା ତତପର ।
ଅଦୋଷରେ ତୋର ତାତ ଋଷିଗଳେ ନେଇ
ମୃତ ସର୍ପ ଗୋଟି ଏକ ଦେଲା ଗୁଡ଼ିଆଇ ।
ସେହି ଦୋଷ ଘେନି ଋଷି ତାକୁ ଶାପଦେଲା
ତକ୍ଷକ ଦଂଶୁ ବୋଲିଣ ଜଗତେ ବ୍ୟାପିଲା ।
ଗଙ୍ଗାତୀରେ ଆସି ତାକୁ ଶୁକଦେବ ପୁଣ
ତୋ ପିତା ଆଗରେ ଆସି କହିଲେ ପୁରାଣ ।
ଶୁଣି ଶୁଣି ପୁରାଣରୁ ଜ୍ଞାନ ପ୍ରକାଶିଲା
ବ୍ରହ୍ମେ ଚିତ୍ତ ରଖି ବିଷ୍ଣୁ ଅଙ୍ଗେ ଲୀନ ହେଲା ।
ସେ ରାଜାର ଦେହଗୋଟି ଯୋଗାଗ୍ନି ରେ ଦହି
ହେତୁରେ ଲଗାଇ ଲୟ ପ୍ରାଣକୁ ପୂରାଇ ।
ବିଷ୍ଣୁ ଦେହରେ ପଶନ୍ତେ ତକ୍ଷକ ଧାଇଁଲା
ନୃପତିର ଶରୀରରେ ଚୋଟେକ ମାଇଲା ।
ଦଂଶିଲାବେଳେ ପ୍ରାଣ ନ ଥିଲା ରାଜା ହୃଦ
ନାମ ମାତ୍ରକ ହୋଇଲା ତକ୍ଷକାପବାଦ ।
ତକ୍ଷକ ଯାଇ ରାଜାଙ୍କୁ ଦଂଶିଲା ଯେ କାଳେ
ନଥିଲା ତୋ ପିତା ଆତ୍ମା ହୃଦୟ କମଳେ ।
ଏଣୁ ସେହି ତକ୍ଷକର କିଛି ଦୋଷ ନାହିଁ
ଅଦୋଷେ ସର୍ପ ଲୋଚାଏ ମାରୁଛୁ କିମ୍ପାଇଁ ।
ଏବେ ସେହି ସର୍ପଯଜ୍ଞ କର ହେ ନିବର୍ତ୍ତ
ନିର୍ଦ୍ଦୋଷ ସର୍ପ ସକଳ ହୋଇବେ ନିହତ ।
ବୃହସ୍ପତି କହନ୍ତେ ଏ ରୂପେ ଧର୍ମ ବାଣୀ
ଶୁଣିଣ ମନେ ସନ୍ତୁଷ୍ଟ ହେଲେ ନୃପମଣି ।
ରାଜାଙ୍କୁ ସାନ୍ତ୍ୱନା କରି ସ୍ୱର୍ଗେ ମୁନି ଗଲେ
ସମସ୍ତେ ଚଳନ୍ତେ ଯାଗ ସମାପତ କଲେ ।
ନୃପତିଙ୍କୁ ଜ୍ଞାନେ ବୋଧ ମହର୍ଷି ପ୍ରବର
ମେଲାଣି ହୋଇ ଚଳିଣ ଗଲେ ଯେଝାପୁର ।
ବଞ୍ଚିଥିବା ସର୍ପସବୁ ରଖାଇ ନିଶ୍ଚିନ୍ତେ
ତକ୍ଷକର ପାଶେ ଯାଇଁ ମିଳିଲେ ତୁରିତେ ।
ଇନ୍ଦ୍ର ପୁରରେ ତକ୍ଷକ ଲୁଚି ରହିଥିଲା
ଆସ୍ତିକଙ୍କୁ ଦେଖି ସୁଦ୍ଧା ମଧ୍ୟ ବାହାରିଲା ।
ଇନ୍ଦ୍ର ସଙ୍ଗତେ ସଭାରେ ବସିଲେ ସରବେ
ଆସ୍ତିକଙ୍କୁ ବୋଇଲେ ସେ କଥା କହ ଏବେ ।
ଆସ୍ତିକ ବୋଲେ ଆସିଲୁ ଆମ୍ଭେ ନିବର୍ତ୍ତାଇ
ଶୁଣିକରି ଜନ୍ମେଜୟ ଶାନ୍ତଚେତା ହୋଇ ।

ସାଗରେ ଯେତେକ ସର୍ପ ପଡ଼ିଥିଲେ ଆସି
ସେହିତକ ନାଶଯାଇ ହେଲେ ସ୍ୱର୍ଗବାସୀ ।
ଆବର ଯେତେକ ନାଗ ସଂସାରରେ ଥିଲେ
ଆମ୍ଭେ ଯାଇ କହିବାରୁ ସମସ୍ତେ ରହିଲେ ।
ଏହା ଶୁଣି ଦେବତାଏ କଲେ ବଡ଼ ଶ୍ରଦ୍ଧା
ତକ୍ଷକ ବୋଲେ ଆମ୍ଭର ଗଲା ଏବେ ବାଧା ।
ଆସ୍ତିକ ନାମ ଯେ ଧରି ନିଦ୍ରା ଯାଇଥିବ
ତାଙ୍କୁ ଛୁଇଁଲେ ସର୍ପଙ୍କ ମୂର୍ଦ୍ଧନା ଫାଟିବ ।
ଆସ୍ତିକ ନାମ ଗୋଟିକି ତିନିଥର ଧରି
ଯେଉଁ ନର ରାତ୍ରିକାଳେ ଶୋଇବ ସୁମରି ।
ତାହାକୁ ସର୍ପର ବାଧା ନ ଲାଗିବ ପୁଣ
ଶୁଣିଣ ଅଗସ୍ତି ଶ୍ରଦ୍ଧା କଲେ ବଡ଼ ଜାଣ ।
ଏତେ କହିଣ ତକ୍ଷକ ଗଲା ନିଜପୁର
ଶୁଣ ନାରଦ କହନ୍ତି ପ୍ରଭୁ ବେଦବର ।
ନଇମିଷ ଅରଣ୍ୟରେ ସୁତ ପୌରାଣିକ
କହନ୍ତି ଶ୍ରୀଭାଗବତ ପୁରାଣର ଶ୍ଳୋକ ।
ଶ୍ରୀନୃସିଂହ ପୁରାଣ ଏ ସପ୍ତମ ସାଗର
ପ୍ରକୃତ ବନ୍ଧେ ଲେଖିଲା ବିପ୍ର ପୀତାମ୍ବର ।
ଶ୍ରୀନାରାୟଣ ଚରଣେ ରହୁ ମୋର ମନ
ପ୍ରିୟ ପିତାମ୍ବରକୁ ହେ ରଖ ଜନାର୍ଦ୍ଦନ ।
ଜୟ ଜୟ ହେ ଶ୍ରୀରାମ ଜଗତ କରତା
ଜୟ ଜୟ ହେ ଶ୍ରୀରାମ ସର୍ବଜନ ପିତା ।
ଜୟ ଜୟ ହେ ଶ୍ରୀରାମ ଅଯୋଧ୍ୟା ଠାକୁର
ଜୟ ଜୟ ହେ ଶ୍ରୀରାମ କୌଶଲ୍ୟା କୁମର ।
ଜୟ ଜୟ ହେ ଶ୍ରୀରାମ ଜାନକୀ ଜୀବନ
ଜୟ ଜୟ ହେ ଶ୍ରୀରାମ ପତିତପାବନ ।
ହେ ଶ୍ରୀରାମ ତବପାଦେ ରହୁ ମୋର ଚିତ୍ତ
ଏ ବିପ୍ର ପୀତାମ୍ବରକୁ ରଖ ପଦ୍ମନେତ୍ର ।
ଶ୍ରୀନୃସିଂହ ପୁରାଣର ପୂର୍ବଖଣ୍ଡ ବାଣୀ
ପଢ଼ି ଶୁଣି ସଂସାରରୁ ତରିଯିବେ ପ୍ରାଣୀ ।
ପୂର୍ବଖଣ୍ଡ ଏହିଠାରେ ହୋଇଲା ସମ୍ପୂର୍ଣ୍ଣ
ଉତ୍ତର ଖଣ୍ଡକୁ ଏବେ କରିବି ଲିଖନ ।
ଶ୍ରୀନୃସିଂହ ଚରଣରେ ସଦା ମୋର ଆଶ
ପୀତାମ୍ବରକୁ ଉଦ୍ଧର ଆହେ ପୀତବାସ ।



# ନୃସିଂହ ପୁରାଣ

## ସପ୍ତମ ସାଗର

### ଉତ୍ତରଖଣ୍ଡ

ନାରାୟଣଂ ନମସ୍କୃତ୍ୟ ନରଂ ଚୈବ ନରୋତ୍ତମମ୍ ।
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋଜୟମୁଦୀରୟେତ୍ । ୨ ।



### ସଂକ୍ଷିପ୍ତ ମହାଭାରତ

ଜୟ ତୁ ଶାରଦା ମାଗୋ ବିଷ୍ଣୁଙ୍କ ଘରଣୀ
ମୂର୍ଖକୁ ପଣ୍ଡିତ କରି ପାରୁ ତତକ୍ଷଣି ।
ଅକର୍ମ କର୍ମଦ୍ରାତ୍ରୀ ତୁ ସର୍ବଶାସ୍ତ୍ରେ ଠୁଳ
ଯାହାରଯେବଣ ବୁଦ୍ଧି ହେଉ ତେଣେମେଳ ।
ମୋହର କେତେବା ବୁଦ୍ଧି ଜାଣିବି ତୋ ଗୁଣ
ଅସଡ଼ ପୁରୁଷ ପ୍ରାୟ ଭ୍ରମେ ସଂସାରେଣ ।
ପ୍ରହରେକ ଯାଏ ବସି ଭାବିବି ଯେ ପଦ
ସେ ପଦକୁ ଅର୍ଥକରି ନ ପାରେ ମୋ ହୃଦ ।
ପଢ଼ିଲେ ଶ୍ଳୋକରେ ପାଦେ ଅକ୍ଷରକେ ହୁଡ଼ି
ଏଡ଼େ ବଡ଼ ପଣ୍ଡିତ ମୁଁ ଯାଏ ପଦ ଯୋଡ଼ି ।
ବୀରକେଶରୀ ନୃପତି ରାଜୁତିର କାଳେ
ଶାରଦାଙ୍କୁ ପଠାଇଲେ ପ୍ରଭୁ ଆଦିମୂଳେ ।
ବୋଇଲେକ ଋଷିକୁଲ୍ୟା ନଦୀତୀରେ ଯାଅ
ବିପ୍ର ପୀତାମ୍ବର କରିଅଛି ତହିଁ ଗୃହ ।
ତାକୁ ତୁମ୍ଭେ ଶୀଘ୍ର ଯାଇ ବର ଦେଇଆସ
ନୃସିଂହ ପୁରାଣ ସେହି କରିବ ପ୍ରକାଶ ।
ଏହାଶୁଣି ସରସ୍ୱତୀ ଆଜ୍ଞା ପରମାଣେ
ସ୍ୱପନରେ ଆସି ମୋତେ କହିଲେ ତକ୍ଷଣେ ।
ବୋଇଲେ ସେ ବାବୁ ବେଗେ ନିଦ୍ରା ପରିହରି
ନୃସିଂହ ପୁରାଣ ଲେଖ କହିଲେ ଶ୍ରୀହରି ।
ତକ୍ଷଣେ ବୋଇଲେ ମାଗୋ ନ ଜାଣଇ ତାହା
ଶାରଦାବୋଇଲେ ଆମ୍ଭେହେବୁ ତୋତେ ସାହା
ସୁଲଳିତ ପଦ ଲେଖ ବାବୁ ହେତୁଦେଇ
ଆମ୍ଭ ଆଜ୍ଞାରେ ତୋ ମୁଖୁଁ ବାକ୍ୟ ସ୍ଫୁରିବଇଁ
ମୁଁ ତହୁଁ ବୋଇଲି ମାଗୋ ଶୁଣିବା ଶାରଦା
ପଣ୍ଡିତମାନଙ୍କୁ ଜଣା ନୁହେଁ ଯେଉଁ ବିଦ୍ୟା ।
ଆପଣଙ୍କ ଆଜ୍ଞାରେ ମୁଁ ତାହା ଲେଖିବଇଁ
କେବଳ ମୂର୍ଖଙ୍କୁ ଦେଖି ଭୟ ଉପୁଜଇ ।
ସୁଜନମାନଙ୍କ ପାଦେ ମୋର ନମସ୍କାର
ମୂର୍ଖଲୋକଙ୍କୁ ଦେଖିଣ ଲାଗେ ମୋତେ ଡ଼ର
ପଦ ନ ଲାଗିବ ବୋଲି କରିବେ ଯେ ନିନ୍ଦା
ଏହି ସଂଶୟ ମୋ ହୃଦୁଁ ଫେଡ଼ ଗୋ ଶାରଦା
ଶୁଣି ବାକ୍‌ଦେବୀ କହିଲେ ଲେଖ ତୁମ୍ଭେ ଗ୍ରନ୍ଥ
ନିନ୍ଦିବା ଲୋକଙ୍କ କଥା ଜାଣିବେ ଅଚ୍ୟୁତ ।
ମୂର୍ଖଲୋକଙ୍କୁ ପଣ୍ଡିତ କରାଇ ଯେ ଏକା
ସେ ପ୍ରଭୁ ବୁଝିବେ ତାହା ମନୁ ଛାଡ଼ ଶଙ୍କା ।
ଏରୂପେ କହି ବାକ୍‌ଦେବୀ ହେଲେ ଅନ୍ତର୍ଦ୍ଧାନ
ବିଷ୍ଣୁପ୍ରିୟା କଥା କେହୁ କହିପାରେଆନ ।
ଆହେ ସାଧୁଜନେକେହି ନ ଧର ମୋ ଦୋଷ
ଶାରଦାଙ୍କ ଆଜ୍ଞାରେ ମୁଁ କରଇ ପ୍ରକାଶ ।
ଶ୍ରୀନୃସିଂହ ପୁରାଣ ମୁଁ ଲେଖଇ ନ ଜାଣି
ଏଥକୁ ଦୟା କରିବେ ପ୍ରଭୁ ଚକ୍ରପାଣି ।
ଅଭୟ ପଦ୍ମ ଚରଣ ଅଟଇ ଯାହାର
ସେ ପାଦେ ଶରଣ ପଶେ ବିପ୍ର ପୀତାମ୍ବର ।
ନୃସିଂହ ପୁରାଣର ଏ ସପ୍ତମ ସାଗର
ନାରଦଙ୍କ ଆଗେ କହୁଛନ୍ତି ବେଦବର ।
ଶୁଣ ପଣ୍ଡିତେ ଉତ୍ତର ଖଣ୍ଡର ଯେ ବାଣୀ
ନାରଦ ପୁଚ୍ଛନ୍ତେ ଧୀରେ କରିଣ ଦଇନୀ ।
ବୋଲନ୍ତି ଭୋ ପିତା ଏବେ ଶୁଣମୋ ବଚନ
ସବୁ ଶୁଣିଲି ଶୁଣିବି ଭାରତ ଆଖ୍ୟାନ ।
ନୃସିଂହ ପୁରାଣେ ସବୁ ପୁରାଣତ ଅଛି
ଶ୍ରୀମହାଭାରତ ମୁହିଁ ନ ଶୁଣିଲି କିଛି ।
ନୃସିଂହ ପୁରାଣକୁ ଯେ ଯେତେ ପ୍ରାଣୀ ଶୁଣି
ଲଭିବେ ପଞ୍ଚପୁରାଣ ପୁଣ୍ୟକୁ ସେ ପୁଣି ।
ନୃସିଂହ ପୁରାଣେ ଚାରି ପୁରାଣ ସେ ଭଣି
କହିବା ଭାରତ ରସାମୃତ ଏବେ ପୁଣି ।

ବ୍ରହ୍ମା ବୋଇଲେ କହିବା ଆଛା ତେବେ ଶୁଣ
ସବୁ ଅର୍ଥ ଏଥେ ବ୍ୟାସ ଅଛନ୍ତି ଥୋଇଣ ।
ମୂର ହିରଣ୍ୟ ରାବଣ ଶିଶୁପାଳ ଚାରି
ଏ ଚାରିଜଙ୍କ ଅର୍ଥ ଏ ଗ୍ରନ୍ଥେ ଅଛି ପୂରି ।
ଭାଗବତ ଉତ୍ତାରୁ ଶ୍ରୀଭାଗବତ ଯେ ଶୁଣ
ପାଞ୍ଚଗ୍ରନ୍ଥ ଶୁଣିବାରେ ଲଭିବ କାରଣ ।
ଆଦ୍ୟରୁ ମୁଁ ଗଲି କହି ନୃସିଂହ ପୁରାଣ
ଏବେ ଶ୍ରୀମହାଭାରତ ଶୁଣ ଦେଇ ମନକର୍ଣ୍ଣ
ପୁଛନ୍ତି ବୈଶମ୍ପାୟନ ପୁଣି ଜନ୍ମେଜୟ
ଆସନେ ବସାଇ ପାଦେ ହୁଅଇ ବିନୟ ।
ବୋଲନ୍ତି ଭୋ ମହାଋଷି ସାବଧାନେ ଶୁଣ
କାଶ୍ୟପ ପୁତ୍ରଙ୍କୁ ବଧ କଲି ଅକାରଣ ।
ପିତାଶତ୍ରୁ ବୋଲି ନାଶନ୍ତେଣ ନାଗବଂଶ
ବୁଝିବା ବେଳକୁ ସେହି କରି ହେଲା ମିଛ ।
ନାଗଲୋକ ଅଟନ୍ତିତ ପରଂବ୍ରହ୍ମ ଅଂଶୀ
ଆସ୍ତିକଋଷି କହିଲେ ମୋତେ ଏବେ ଆସି
ବୋଇଲେ ତୁ ବ୍ରହ୍ମହତ୍ୟା କଲୁ ହୋ ରାଜନ
ପୁରାଣ ଶୁଣିଲେ ତୋର ଯିବ ପାପମାନ ।
ମୁଁ ବୋଇଲିକହ ତେବେତୁମ୍ଭେ ମୋତେଗ୍ରନ୍ଥ
ସେ ବୋଇଲେ ଋଷି ମୂଖୁଁ ଶୁଣତୁ ଭାରତ
ତେଣୁକରି ତୁମ୍ଭଙ୍କୁ ଯେ ପଚାରୁଛି ମୁହିଁ
ଭାରତ ଶୁଣିଲେ ମୋର ପାପ ଯିବ ଦହି ।
ବୈଶମ୍ପାୟନ ବୋଇଲେ ଆଛା ତେବେ ଶୁଣ
ତୋ ପିତୃପିତାମହଙ୍କ ମହିମା ଯେ ପୁଣ ।
ସୋମବଂଶରେ ଜନମ ହେଲେ ଜାଣ ବୁଧ
ତେଣୁ ସେହି ସୋମବଂଶ ହୋଇଲା ପ୍ରସିଦ୍ଧ ।
ବୁଧଙ୍କର ପୁତ୍ର ଜାଣ ହେଲେ ପୁରୁରବା
କଲେ ସେ ମହିମା ଖ୍ୟାତ ଯେସନେ ମଘବା
ନହୁଅ ଯଯାତି ହେଲେ ସୋମବଂଶେ ଜାତ
ଆବର ମଧ ଜନମ ହୋଇଲେ ଦୁଷ୍ମନ୍ତ ।
ଦୁଷ୍ମନ୍ତଙ୍କ ପୁତ୍ର ପୁଣ କୁରୁରାଣ ହେଲେ
ସେହିଠାରୁ କୁରୁବଂଶ ନାମ ବୋଲାଇଲେ ।
କୁରୁଙ୍କ ବୀର୍ଯ୍ୟୁ ଶାନ୍ତନୁ ହେଲେ ଜାଣ ଜନ୍ମ
ଗଙ୍ଗାଙ୍କ ଗର୍ଭୁ ହୋଇଲେ ଜାଣ ପୁଣି ଭୀଷ୍ମ
କ୍ଷତ୍ରିପଣେ ପର୍ଶୁରାମ ପ୍ରାୟେକ ମହିମା
ପୃଥ୍ୱୀଯାକ ବଳିଷ୍ଠ ଯେ ତାହାଙ୍କ ଗାରିମା ।
ଗଙ୍ଗାଙ୍କୁ ଯେ ଲୁଚାଇଣ ସେ ରାଜା ଶାନ୍ତନୁ
ଚିତ୍ରରେ ବୀର୍ଯ୍ୟଦେଲେ ସେ ପୀଡ଼ିତ ଅତନୁ
ସେବୀର୍ଯ୍ୟରୁ ଜାତ ହେଲେ ଦ୍ୱିଗୋଟି ଆତ୍ମଜ
ତାହାଙ୍କ ନାମ ବିଚିତ୍ର ଆଉ ଚିତ୍ରବୀର୍ଯ୍ୟ ।

ଏମନ୍ତେକେତେକ କାଳଭୋଗ ହୋଇଯାନ୍ତେ
ଗଙ୍ଗା ଶାନ୍ତନୁଙ୍କୁ ପୁଚ୍ଛିଲେକ କୋପଚିତ୍ତେ ।
ବୋଇଲେ ଏବେନି ଜନେ ଅଟନ୍ତି କା ବାଳା
ଶାନ୍ତନୁ ବୋଇଲେ ଶୁଣ ଆରେ ପ୍ରେମଶୀଳା
କାହାରପୁତ୍ର ହେଲେହେଁ ବାଳ ନୁହନ୍ତି କି
ସୁଖେଣ ଥାନ୍ତୁ କଲ୍ୟାଣ କର ସେ ଦୁହିଁଙ୍କି ।
ବୁଝିଲେ ତ ଗଙ୍ଗାଦେବୀ ସର୍ବ ଅନ୍ତର୍ଯ୍ୟାମୀ
ବୋଇଲେ ଶାଂତନୁ ବୀର୍ଯ୍ୟୁ ଅଛନ୍ତି ଏ ଜନ୍ମି
ମୋତେ ଯେବେ କହିଲେ ଏ ଆଡୁଆଳକରି
ଅପୁତ୍ରିକ ହୋଇଯାନ୍ତୁ ତେବେ ଏହି ମରି ।
ପରର ପୁତ୍ର ଯଦ୍ୟପି ହୋଇଥିବେ ତତ୍ତ୍ୱୁ
ସୁଖେ ଧନ ଜନ ଘେନି ଭୋଗ କରୁଥାନ୍ତୁ ।
ଏ ରୂପେ କହନ୍ତେ ଗଙ୍ଗାଦେବୀ କୋପକରି
ଶୁଣିଣ ଶାନ୍ତନୁଙ୍କର ବଚନ ନ ସ୍ମରି ।
ପାଞ୍ଚିଥିଲେ ସୋମବଂଶ ବୁଡ଼ିଲା ସେଠାରୁ
ଏଥିକୁ କିରୂପେ ହରି ରକ୍ଷା ଅବା କରୁ ।
ଏଥିଉତ୍ତାରେ ଚିତ୍ରବିଚିତ୍ର ଦୁହେଁ ମଲେ
ସମସ୍ତେ ମଲାରୁ ବଂଶ ବୁଡ଼ିଲା ବୋଇଲେ ।
ଏରୂପେ ସୋମବଂଶର ହୁଅନ୍ତେ କାଉଳି
ସତ୍ୟବତୀ ବୋଇଲେ ନ ବସ ଆଉ ଭାଳି ।
କରିବି ଉପାୟ ରହିଯିବ ସୋମବଂଶ
ପରାଶର ଋଷିଙ୍କର ପୁତ୍ର ବେଦବ୍ୟାସ ।
ଗଙ୍ଗା ଶାନ୍ତନୁ ଅଟନ୍ତି ଦୁହେଁ ପତିପତ୍ନୀ
ଗଙ୍ଗାରେ ଜନ୍ମିବେ ମୋରଗର୍ଭୁ ବ୍ୟାସମୁନି ।
ଲେଖାରେ ଚିତ୍ର ବିଚିତ୍ରବୀର୍ଯ୍ୟ ହୋନ୍ତେ ଭାଇ
ସଂଶୟ ନ କଲେ କଥା ଏକ କହିବଇଁ ।
ଅମ୍ବିକା ଅମ୍ବଲିକା ଏ ତାଙ୍କ ପତ୍ନୀ ବେନି
ତାଙ୍କୁ କରାଇବା ଭେଟ ଆଣି ବ୍ୟାସମୂନି ।
ଜନ୍ମିଲେ ସେ ବ୍ୟାସମୂନି ବୀର୍ଯ୍ୟେ ତିନି ପୁତ୍ର
ତେବେ ସେ ରହିବ ସୋମବଂଶ କୁଳଗୋତ୍ର
ଅମ୍ବିକା ଅମ୍ବାଳିକା ଯେ ଅମ୍ବୁବତୀ ଠାରୁ
ଅବଶ୍ୟ ଜନ୍ମିବେ ପୁତ୍ର ବ୍ୟାସଙ୍କ ବୀର୍ଯ୍ୟରୁ ।
ଶୁଣି ଶାନ୍ତନୁ ବହୁତ ଶ୍ରଦ୍ଧାବନ୍ତ ହେଲେ
ଏ କଥା କରାଅ ବୋଲି ମୋତେ ଆଜ୍ଞାଦେଲେ
ଶୁଣିଣ ବ୍ୟାସଜନନୀ ଗଲେ ମନ୍ଦିରକୁ
କହିଲେ ବଧୂମାନଙ୍କୁ ବୋଧି ବିଷୟକୁ ।
ବୋଇଲେ ତୁମ୍ଭର ଆମ୍ଭେ ଧର୍ମଶାଶୁ ଅଟୁ
ଆମ୍ଭ ବୋଲ କଲେ ସର୍ବେ ତରିବ ସଙ୍କଟୁ ।
ତୁମ୍ଭେ ତିନି ବଧୂଏ ଏ ବଂଶ ଉଦ୍ଧାରିବ
ତିନିପୁତ୍ର ଜାତ କରି ତିନିହେଁ ତରିବ ।

କୁରୁବଂଶକୁ ଧାରଣା ହେବ ତିନିପୁତ୍ର
ଶୁଣିବ ବଧୂମାନେ ଯେ ଯୋଡ଼ି କରପତ୍ର ।
ବୋଇଲେକ ଆମ୍ଭେମାନେ ଅଟୁଁ ଯେ ବିଧବା
କି ରୂପେ ଆମ୍ଭ ଜଠରେ ପୁତ୍ର ହେବ ଅବା ।
ସତ୍ୟବତୀ ବୋଇଲେକ ଶୁଣ ଆଗୋ ମାୟେ
ମୋବୋଲ ମାନିଲେ ନିଷ୍ଚେଜନ୍ମିବେବୈନତୟେ
ପ୍ରତ୍ୟକ୍ଷେ ଅଟନ୍ତି ମୋର ପୁତ୍ର ବ୍ୟାସମୁନି
ଜନ୍ମିବେ ତାହାଙ୍କ ପ୍ରୀତିକଲେ ପୁତ୍ର ତିନି ।
ଲେଖାରେ ହୋନ୍ତି ସେ ଭାଇ ବିଚିତ୍ର ବୀର୍ଯ୍ୟର
ମାନବ କୂଳ ପ୍ରତ୍ୟକ୍ଷେ ଶ୍ରୀବିଷ୍ଣୁ ଶରୀର ।
ତାଙ୍କ ଦେହ ଲାଗି ତୁମ୍ଭେ ପବିତ୍ର ଯେ ହେବ
ବୁଝିଲେ ତୁମ୍ଭଙ୍କୁ ଦୋଷ କିଛି ନ ଲାଗିବ ।
ଏଥକୁ ଦୋଷ ଲାଗିଲେ କରିବୁ ଯେ ପାରି
ତହିଁକି ଶୋଚନା ତୁମ୍ଭେ ନ କର ବିଚାରି ।
ଶାଶୁଙ୍କ ବଚନ ଶୁଣି ବଧୂ ତୋଷ ହେଲେ
ତୁମ୍ଭର ଆଜ୍ଞାମେଣ୍ଟି କେ ପାରିବ ବୋଇଲେ ।
ଶୁଣିଣ ହରଷ ମନା ସତ୍ୟବତୀ ହୋଇ
ମିଳିଲେ ବ୍ୟାସ ଋଷିଙ୍କ ପାଶେ ବେଗେଯାଇଁ
କୁରୁବଂଶ କଥାଯାକ କହିଲେ ବ୍ୟାସଙ୍କୁ
ଶୁଣି ବ୍ୟାସ ମନେ ପାଞ୍ଚି ପୁଛିଲେ ବ୍ୟାସଙ୍କୁ ।
ବୋଇଲେ ସମ୍ମତ ବଧୂମାନେ କଲେଣି କି
ବିଷୟ ବୁଝିଲେ ସିନା ଚଳିବ ତହିଁକି ।
ସତ୍ୟବତୀ ବୋଇଲେ ମୁଁ ଆସିଛି ମଗାଇ
ଶୁଦ୍ଧସ୍ନାନମାନ କରିଛନ୍ତି ସୁଖେ ରହି ।
କେହୁ ଆଜିକାଲି କେହୁ ତିନି ଦିନଠାରୁ
ଶୁଦ୍ଧସ୍ନାନମାନ କରିଛନ୍ତି କହିଲାରୁ ।
ମାସେହେଲା ବୁଝାଇଣ କହି କହି ମୁହିଁ
ମଗିଲାରୁ ଆସିଅଛି ତୋତେ ନେବାପାଇଁ ।
ତହୁଁ ଯେ ଉଠିଲେ ବ୍ୟାସ ମାତାବୋଲ ଶୁଣି
ଅମ୍ବିକାର ପୁରେ ବିଜେକଲେ ସେ ରଜନୀ ।
ବ୍ୟାସଙ୍କୁ ଦେଖିଣ ପ୍ରିୟା ମନମଧ୍ୟେ ହେଜି
ପଲ୍ୟଙ୍କେ ଶୁତିଲେ ବେନି ନୟନକୁ ବୁଜି ।
ଲଜ୍ଜାଭରେ କିଛିହିଁ ସେ କଥା ନ କହନ୍ତେ ।
ବସିଲେକ ବ୍ୟାସଯାଇଁ ଧରି କୋଳାଗ୍ରତେ ।
ଅତ୍ୟନ୍ତ ହରଷ ହୋଇ କରନ୍ତେ ରମଣ
ସଇନ୍ଧୁ ପୁତ୍ରେକ ଜାତ ହୋଇଲା ତକ୍ଷଣ ।
ସାକ୍ଷାତେ ଚନ୍ଦ୍ରମା ପ୍ରାୟ ଦିଶେ ପୁତ୍ରଜ୍ୟୋତି
ବଇରୀ ହେଲେହେଁ ଲୋଭେଦେଖି ଧାଇଁଛନ୍ତି
କୁମର ଜାତ କରିଣ ମାତା ମରିଯାନ୍ତେ
ପୁତ୍ରକୁ ଧଇଲେ ବେଦବ୍ୟାସ ତୋଳି ହସ୍ତେ ।

ପାଞ୍ଚିଲେ ବଡ଼ ବଳିଷ୍ଠ ଅଟେ ଏ କୁମର
ଭଗଦ୍ୱାର ଭାରା ସହି ନ ପାରିଲା ତାର ।
ଲକ୍ଷେ ସିଂହର ଯେ ବଳ ଦରେ ଏହା ଦେହୀ
ତେଣୁ ଯେ ମାତା ମଲା ନ ପାରି ଭାରା ସହି ।
ଏତେ ପାଞ୍ଚି ପାଶେ ଆସି ମିଳି ସତ୍ୟବତୀ
ପୁତ୍ର ଦେଖିଣ ବ୍ୟାସଙ୍କୁ ପ୍ରଶଂସା କରନ୍ତି ।
ମାତାଙ୍କୁ ଦେଖି ପୁତ୍ରକୁ ବ୍ୟାସ ସମର୍ପିଲେ
ନିତ୍ୟକର୍ମ କରିବାକୁ ନଦୀକୁ ଗମିଲେ ।
କୁମରକୁ ବସିଲେକ ଧରି ସତ୍ୟବତୀ
ଦେଖିଲେ ଅନଙ୍ଗ ପ୍ରାୟ ଦିଶେ ପୁତ୍ରମୂର୍ତ୍ତି ।
ଦେହଯାକ ନିରୋପିତ ମୁହିଁ ପୁତ୍ରହୃଦ
ଦେଖିଲେ ବେନି ନୟନ ହୋଇଅଛି ଅନ୍ଧ ।
ଚକ୍ଷୁ ବୁଜି ରତି ଯେଣୁ କରାଇଲେ ସତୀ
ସେ ଲଗ୍ନଦୋଷୁଁ ସେ ଅନ୍ଧହେଲା ପୁତ୍ରମୂର୍ତ୍ତି ।
ଗର୍ଭରୁ ପଡ଼ନ୍ତେ ବାଳ ଧରଣୀ କମ୍ପିଲା
ତେଣୁ ଏ ପୁତ୍ରର ନାମ ଧୃତରାଷ୍ଟ୍ର ହେଲା ।
ଅମ୍ବିକାକୁ ଧରି ଶ୍ମଶାନକୁ ବହିନେଲେ
ଚିତା ଆରୋପଣ କରି ଅଗ୍ନିରେ ଦହିଲେ ।
ବେଦବିଧି ପ୍ରମାଣରେ ପ୍ରେତକାର୍ଯ୍ୟ ସାରି
ପୁଛିଲେକ ଶାନ୍ତନୁଙ୍କୁ ପରାଶର ନାରୀ ।
ବୋଇଲେ ଏ ପୁତ୍ରକୁଯେ ବ୍ୟାସକଲେ ଜାତ
ଚକ୍ଷୁବେନି ଅନ୍ଧ ହୋଇ ଜନ୍ମିଛି ବାଳୁତ ।
ବୁଝିଲେ କଡ଼ାଏ କାର୍ଯ୍ୟ ଏ ପୁତ୍ରର ନାହିଁ
ରାଜ୍ୟକୁ କାରେଣୀ ଏହୁ କେବେହେଁ ନୁହଇ ।
ଆବର ପ୍ରସଙ୍ଗ କହୁଅଛି ଭଲେ ବୁଝ
ଅମ୍ବାଳିକା ପୁରକୁ ଯେଯାନ୍ତୁ ବ୍ୟାସେ ଆଜ ।
ଜନ୍ମିବେ ଆଚ୍ଛା ପୁତ୍ରେକ ପାଳିବ ସେ ଦେଶ
ଏ କଥାଟି ଶୁଭ ଲଗ୍ନେ ହେଲା ମୋତେ ଦୃଶ୍ୟ
ଶୁଣିଣ ତାହା ଶାନ୍ତନୁ ଆନନ୍ଦ ଯେ ହୋଏ
ବୋଇଲେତାକରବେଗେ ଜାତ ହେଉ ପୋଏ
ବୁଝିଲେ ଯାଉଛି କୁରୁବଂଶ ବ୍ୟର୍ଥେ ବୁଡ଼ି
ପଛକୁ ଭାବିଲେ ଏହା ନ ପାରିବା ଲୋଡ଼ି ।
ଶୁଣିଣ ସେ ସତ୍ୟବତୀ ହରଷ ହୋଇଲେ
ବସିଣ ବ୍ୟାସଙ୍କୁ ମନେ ସୁମରଣା କଲେ ।
ଆସନ ଟଳନ୍ତେ ମୁନି ଜାଣି ମାତା ମନ
ତତକ୍ଷଣେ ବିଜେକଲେ ଆସି ତପୋଧନ ।
ମାତାଙ୍କ ଚରଣେ ଯାଇକଲେ ନମସ୍କାର
ବୋଇଲେ ମାତା ମନେ କିଆଉ ବାଞ୍ଛାକର
ସତ୍ୟବତୀ ବୋଇଲେରେ ଶୁଣ ମୋର ବାପ
ଯେଉଁ ପୁତ୍ର ଜନ୍ମିଲା ସେ ହେଲା ଅନ୍ଧରୂପ ।

ଅମ୍ବାଳିକା ଅଛି ଆଉ ଅଛି ଅମ୍ବାବତୀ
ସେ ବେନିଙ୍କ ମନ ମୋହି କର ଏବେ ପ୍ରୀତି
ଯେ ରୂପେ ଏ କୁରୁବଂଶ ରହିବ କୁଳକୁ
ସେ ରୂପେ ପୁତ୍ରେକ ଦିଅ ତୁ ଅମ୍ବାଳିକାକୁ ।
ଜନନୀ ବୋଲ ଶୁଣିଣ ବ୍ୟାସ ମନେ ଘେନି
ଅମ୍ବାଳିକା ପୁରେ ଯାଇଁ ମିଳିଲେ ରଜନୀ ।
ଅତି ଆନନ୍ଦ ମନରେ ରତି କରାଇଲେ
ଚଉଷଠି ପରିବନ୍ଧେ ଚିତ୍ତ ରସାଇଲେ ।
ଅନେକ କ୍ରୀଡ଼ା କରୁ ସେ ରାତି ନ ଅଣ୍ଟନ୍ତେ
ବେଗେଶେଷକଲେ କ୍ରୀଡ଼ାରସ ତପୋବନ୍ତେ
ସଇନ୍ଦୁ ପୁତ୍ରେକ ଜାତ ହୋଇଲେ ତକ୍ଷଣ
ଚାହିଁଣ ପୁତ୍ରକୁ ମୁନି ଦେଖିଲେ ଲକ୍ଷଣ ।
ଅରୁଣ ଦିଶନ୍ତେ ପୂର୍ବଦିଗେ ପାଣ୍ଡୁବର୍ଣ୍ଣ
ତେଣୁ ପାଣ୍ଡୁ ବୋଲିଦେଲେ ସେ ପୁତ୍ରର ନାମ
ଭୂମିରେ ପଡ଼ି ରୋଦନ ପୁତ୍ର କରୁ କରୁ
ଶୁଣିଣ ଧାଇଁ ଆସିଲେ ସତ୍ୟବତୀ ଘରୁ ।
ମାତାଙ୍କୁ ଦେଖିଣ ବ୍ୟାସପୁତ୍ର କୋଳେଦେଇ
ସ୍ନାନସାରି ନଇମିଷେ ମିଳିଲେ ସେ ଯାଇଁ
ଭଜନ କରୁ କରୁ ସେ ରଜନୀ ହୁଅନ୍ତେ
ଆସିଲେ ଜନନୀବାକ୍ୟ ପାଳି ତପୋବନ୍ତେ ।
କାମଦେବର ପ୍ରାୟେ ସେ ରୂପଛନ୍ତି ଧରି
ଦେଖିଣ ବଶ ବିଚିତ୍ରବୀର୍ଯ୍ୟର ଯେ ନାରୀ ।
ବେଶ ଭୂଷଣ ହୋଇଣ ବସିଥିଲା ବାଳୀ
ପଲ୍ୟଙ୍କର ଚାରିଆଡ଼େ ଜଳେ ଦୀପାବଳୀ ।
ଋଷିଙ୍କି ଦେଖି ହୋଇଲେ ଦେବୀ ହସ ହସ
ବୋଇଲେ ଭାଗ୍ୟକୁମୋର ଅଇଲେକ ବ୍ୟାସ
ବିଷ୍ଣୁ ସମାନ ଅଟନ୍ତି ଏହୁ ଋଷି ପୁଣି
ଲେଖାରେ କିହେବ ମୋର ତାହା ମୁଁ ନଜାଣି
ସାକ୍ଷାତରେ ବିଷ୍ଣୁ ପ୍ରାୟ ଦିଶୁଛନ୍ତି ମୋତେ
ଉତ୍ତମ ବାଳକ ଦେଇଯିବେ ତପୋବନ୍ତେ ।
ଏତେ ପାଞ୍ଚି ସେ ସୁନ୍ଦରୀ ଋଷି ଗୋଡ଼ ଧରି
ପଲ୍ୟଙ୍କରେ ବସାଇଲେ ନେଇ କୋଳକରି ।
ଦେଖି ବ୍ୟାସ ତାଙ୍କୁବଡ଼ ଆନନ୍ଦ ହୋଇଲେ
ଚଉଷଠି ପରିବନ୍ଧେ ରତିରସ କଲେ ।
ମନେ ପାଞ୍ଚିଲେ ଉତ୍ତମ ପୁତ୍ର ଏକ ହେଉ
ବିଷ୍ଣୁର ଭକତ ହୋଇ ସଦାଦିନ ନେଉ ।
ଦେହ ଅନ୍ତେ ଗୋବିନ୍ଦର ଅଙ୍ଗେ ହେଉଲୀନ
ଏତେ ପାଞ୍ଚିଣ ସୁରତି ରଚି ତପୋଧନ ।
ଦେହ ପୁଲକ ହୁଅନ୍ତେ ଖସିଲା ଯେ ରେତ
ଗର୍ଭରେ ପଡ଼ି ସଇନ୍ଦୁ ପୁତ୍ରେ ହେଲା ଜାତ ।

ପୁତ୍ରକୁ ଦେଖିଣ ବ୍ୟାସ ଆନନ୍ଦ ହୋଇଲେ
ବାକ୍ୟ ସୁଶୀଳଁ ବିଦୁର ନାମ ବାଛି ଦେଲେ ।
ଏଥିଉତ୍ତାରେ ମିଳିଲେ ଆସି ସତ୍ୟବତୀ
ଦେଖିଲେ ଅନଙ୍ଗ ପ୍ରାୟ ଦିଶେ ପୁତ୍ର ମୂର୍ତ୍ତି ।
ବ୍ୟାସ ବୋଇଲେ କହିବା ମାତା ଏବେଶୁଣ
ବୁଡ଼ିଥିବା କୁରୁବଂଶ ରଖିଲେ ଯେ ଜାଣ ।
ଉତ୍ତମପୁତ୍ର ଜନ୍ମିଲେ ଆସି ଏବେ ତିନି
ଅନ୍ଧ ହେଲା ଜ୍ୟେଷ୍ଠପୁତ୍ର ମାତାଗଣ ଘେନି ।
ଆମ୍ଭଙ୍କୁ ଦେଖି ରହନ୍ତେ ସଖୀ ଚକ୍ଷୁ ବୁଜି
ତେଣୁ ସେ ଜନ୍ମିଲା ଅନ୍ଧପୁତ୍ର ବୁଝ ହେଜି ।
ଆବର ବେନି ଉତ୍ତମ ଗୁଣମାନ ଘେନି ।
ଅଛନ୍ତି ଜନମ ହୋଇ ଶୁଣ ଗୋ ଜନନୀ ।
ଶୁଣିଣ ବ୍ୟାସଙ୍କୁ ସତ୍ୟବତୀ ପ୍ରଶଂସିଲେ
ତୋହ ଘେନି କୁରୁବଂଶ ରହିଲା ବୋଇଲେ ।
ବ୍ୟାସବୋଇଲେ ଯାଉଛୁ ଆମ୍ଭେବେଗେଚଳି
ପୁତ୍ରଙ୍କୁ ସମ୍ଭାଳି ତୁମ୍ଭେ ରଖ ପ୍ରତିପାଳି ।
ଏରୂପେ କହି ଚଳିଲେ ବ୍ୟାସ ତପସ୍ୟାକୁ
ଶୁଣିଲ ତ ଜନ୍ମେଜୟ କହିଲି ତୁମ୍ଭଙ୍କୁ ।
ଏଥିଉତ୍ତାରୁ କେତେହେଁ ଦିନ ପୁଣି ଯାନ୍ତେ
କୁନ୍ତୀର ଗର୍ଭରୁ ଜାତ ହେଲେ ଜାଣ କୁନ୍ତେ
ଧର୍ମୁ ଜନ୍ମୁ ଧର୍ମ ଯୁଧିଷ୍ଠିର ନାମ ଦେଲେ
କହିବା ଧୃତରାଷ୍ଟ୍ରଙ୍କ କଥା ଶୁଣ ଭଲେ ।
ଗାନ୍ଧାରୀ ଗର୍ଭରୁ ଜନ୍ମ ହେଲେ ଶତେପୁତ୍ର
ଦୁ ଅକ୍ଷର ଆଦ୍ୟନାମ ବହିଲେ ସେ ମାତ୍ର ।
ଜ୍ୟେଷ୍ଠପୁତ୍ରର ନାମ ଯେ ହେଲା ଦୁର୍ଯ୍ୟୋଧନ
କହନ୍ତି ଜନ୍ମେଜୟଙ୍କୁ ବଇଶମ୍ପାୟନ ।
ଏ ରୂପେ ଯେ ଧୃତରାଷ୍ଟ୍ର ପଣ୍ଡୁଙ୍କର ପୁତ୍ର
ସାକ୍ଷାତରେ କୁରୁବଂଶ ଅଟେ କୁରୁକ୍ଷେତ୍ର ।
ଆବର ଜନ୍ମିଲେ ପଣ୍ଡୁଙ୍କର ଚାରିବଳା
ତାଙ୍କ ନାମ ବଇରୀକି ଅଟେ ଅନର୍ଗଳା ।
ଭୀମ ଅର୍ଜ୍ଜୁନ ନକୁଳ ସହଦେବ ଚାରି
ପୃଥ୍ୱୀ ରକ୍ଷାକରିବେ ଏ ଶତ୍ରୁଙ୍କୁ ସଂହାରି ।
ଧୃତରାଷ୍ଟ୍ରପୁତ୍ର କଉରବ ବୋଲାଇଲେ
ପଣ୍ଡୁର ପୋଏ ପାଣ୍ଡବ ନାମ ପ୍ରକାଶିଲେ ।
ଏରୂପେ ଜନ୍ମିଲେ କୁରୁବଂଶ କୁରୁକ୍ଷେତ୍ରେ
ବୋଇଲେ ବେନି ଭାଇର ଶତେ ପଞ୍ଚପୁତ୍ରେ ।
ଏମନ୍ତେ କେତେକ ଦିନ ଉତ୍ତାରୁ ଯେ ପୁର
ଝିମାଣି ଖେଳ ଖେଳିଣ ଗଲେ ପୋଏ ଜାଣ
ସେହି ଖେଳ ଖେଳୁ ଭୀମ ଜିଣିଲେ ସବୁନ୍ତି
ତାହାର ଆଗରେ କେହି ଜଣେ ନରହନ୍ତି ।

ଭୀମ କଥା ଶୁଣି ଅନ୍ଧରାଜା ଭୟକଲା
ପାଞ୍ଚିଲା ଏ ପୁତ୍ର ମୋର ନିଶ୍ଚେ ଶତ୍ରୁ ହେଲା
ଏହାଙ୍କୁ ବାଣ୍ଟି ଯେବେ ନଦେବି ରାଜ୍ୟ ଦେଶ
ବେଳକୁବେଳ ଏ କଥା ହେବ ଅମରୀଷ ।
ଏତେକ କହି ବିଦୁର ଭୀଷ୍ମଙ୍କୁ ଯେ ରାଇ
ବୋଇଲେ ଆମ୍ଭେ ବସିଲୁ ଜାଣ ଅନ୍ଧହୋଇ
ଏଥକରୁ କଥାଏ କହୁଅଛି ତୁମ୍ଭେ ଶୁଣ
ପରର ଗୃହରେ ଛିଦ୍ର ନ କହିବ ଜାଣ ।
ଘରେ ଜିଣି ପାରିଲେ ବାହାରେ ଜିଣିପାରି
ମୂର୍ଖ ସିନା ପର ଆଗେ କରନ୍ତି ଗୁହାରି ।
ଶୁଣି ପରଲୋକେ ଆଗ ହସିଣ କହନ୍ତି
ଘର ମହତ୍ୱ ସଭାରେ ପଡ଼େ ଯାଇ ନିତି ।
ଏଣୁ ତୁମ୍ଭଙ୍କୁ ଆଣିଲୁ ଆମ୍ଭ ପାଶେ ରାଇ
ପୁଅ ପୁତୁରାଙ୍କ କଥା କହିବାର ପାଇଁ ।
ଝିମାଣି ଖେଳୁ ଭୀମର ଲାଗିଲାଣି ଗୋଳ
ଏଥକୁ କଥାଏ ମୁହିଁ କହୁଛି କେବଳ ।
ମୁଁ କହିଲା କଥା କାଳେ ଉତ୍ତମ ହୋଇବ
ପୁଅ ପୁତୁରାଙ୍କ ସୁଖ ସବୁଦିନେ ଥିବ ।
କାହାର ଶିରେ ବାନ୍ଧିବା କହ ରାଜଶାଢ଼ୀ
ନୋହିଲେ ବାଦ ଛିଦ୍ର ସେ ହେବ ହରଘଡ଼ି ।
ସେ କଥା ଶୁଣିଣ ଭୀଷ୍ମ ମନେ ବଡ଼ ହସି
ପାଞ୍ଚିଲେ ପଡ଼ିଲା ଘାଟିକଥା ଏବେ ଆସି ।
ଏଥକୁ ଯଥାର୍ଥ କରି କହିଦେବ ପଦେ
ତହିଁ ଉତ୍ତାରୁ ଶୁଣିମା କଥା ଅନ୍ଧହୃଦେ ।
ଏରୂପେ ପାଞ୍ଚିବିଚାର କଲେ ଭୀଷ୍ମ ପୁଣ
ବୋଇଲେଅଟନ୍ତି ଜ୍ୟେଷ୍ଠ ଯୁଧିଷ୍ଠିର ଜାଣ ।
ଘରକୁଜ୍ୟେଷ୍ଠପୁତ୍ର ଅଟେ ମହାଶ୍ରେଷ୍ଠ
କହିଲୁ ଏକଥା ମନେ ପାଞ୍ଚି ଧୃତରାଷ୍ଟ୍ର ।
ଶୁଣିଣ ଅନ୍ଧରହିଲେ ଟିକେ ତୁନି ହୋଇ
ରହି ନ ପାରି ଲେଉଟି କହେ ବଳିଆଇ ।
ଭୋପିତା ମୋତେ କହିବାହେଉ ଆଉପଦେ
ବୁଝିଲେ ଅଟନ୍ତି କୁନ୍ତୀ ପୁତ୍ର ବଡ଼ ମନ୍ଦେ ।
ଭୀମର ଭାରା ଯେ ସହି ନ ପାରିଲା ପୃଥ୍ୱୀ
ଏଥକୁ କହିବା ଆଉ ପଦେ ଭୀଷ୍ମ ରଥୀ ।
ପନ୍ନଗନାରାୟଣତ ଅଟେ ଦୁର୍ଯ୍ୟୋଧନ
ତାକୁ ରାଜାକଲେ ପାଳନ୍ତା ସେ ସର୍ବଜନ ।
ଦିନକେ ସେ ବରବେଶ ହୁଏ ନିତ୍ୟବେଳେ
ଭୀମାର ବାକ୍ୟ ଏକା ସେ ନ ସହଇ ତିଳେ ।
ଏଣୁକରି ଦୁଇକୁଳ ଅନ୍ତର କରିବା
ଇନ୍ଦ୍ରପ୍ରସ୍ଥେ ପାଣ୍ଡବଙ୍କୁ ନେଇ ଠାବଦେବା ।

ହସ୍ତିନାରେ ଦୁର୍ଯ୍ୟୋଧନ ସେଠାରେ ଯୁଧିଷ୍ଠି
ଏରୂପେ ରଖିଲେ ପୁତ୍ରେ ନୋହିବ ଅରିଷ୍ଟି ।
କହନ୍ତେ ଏମନ୍ତ ଧୃତରାଷ୍ଟ୍ର କୂଟବାଣୀ
ଭୀଷ୍ମ ବିଦୁର ବିଚାର କଲେ ଦୁହେଁ ଶୁଣି ।
ବୋଇଲେ ଯୁଧିଷ୍ଠିରତ ଅତି ଶାନ୍ତମୂର୍ତ୍ତି
ଆମ୍ଭେ ବୋଲିବା କଥା ସେ ନକରିବ ନାସ୍ତି
ଅନ୍ଧକୁ ଯେବେ ତିଆରି କହି ପଦେ ଆଜ
ହୃଦରେ କିନ୍ତୁ ରଖିବ ଜାଣ ଅନ୍ଧରାଜ ।
ବୟସ ଅଧିକ ହୋଇ ନ ଜାଣଇ କିଛି
ପୁଅ ପୁତୁରାଙ୍କୁ ଭିନ୍ନ କଲା ମନ୍ଦ ପାଞ୍ଚି ।
ଏତେ ପାଞ୍ଚିବୋଇଲେ ତୋ ମନକୁ ପାଇଲେ
ଇନ୍ଦ୍ର ପ୍ରସ୍ଥେ ପାଣ୍ଡବଙ୍କୁ ରଖ ନେଇ ଭଲେ ।
ଶୁଣି ଧୃତରାଷ୍ଟ୍ର ବଡ଼ ଆନନ୍ଦିତ ହେଲା
ଇନ୍ଦ୍ର ପ୍ରସ୍ଥେ ପାଣ୍ଡବଙ୍କୁ ନେଇ ରଖାଇଲା ।
ଏମନ୍ତ କେତେକ ଦିନ ଭୋଗ ହୋଇଯାନ୍ତେ
ହସ୍ତିନାପୁରକୁ ପଞ୍ଚୁ ପାଣ୍ଡବ ଆସନ୍ତେ ।
ନିତ୍ୟ ଅନ୍ଧରାଜାଙ୍କୁ ସେ ଦର୍ଶନ କରନ୍ତି
ସଭାରେ ବସିଣ ବେଳେ ନଗ୍ରେ ଚଳିଯାନ୍ତି ।
ଦିନେ ସେ ସଭାରେ ଦୁର୍ଯ୍ୟୋଧନ ପାଞ୍ଚି କୁଟ
ଯୁଧିଷ୍ଠିରଙ୍କୁ ବୋଇଲା ବସ ଧର୍ମଚାଟ ।
ଭୀମସେନଙ୍କୁ ବୋଇଲା ବାୟୁପୁଅ ବସ
ବୀର ଅର୍ଜ୍ଜୁନକୁ ବୋଲେ ବସ ଇନ୍ଦ୍ର ଶିଷ୍ୟ ।
ନକୁଳକୁ ବୋଲେ ଆସ ହେ ଅଶ୍ୱିନୀପୁତ୍ର
ସଭାରେଯେ ନବସେ ତା ବୁଡ଼େ କୁଳଗୋତ୍ର
ସହଦେବକୁ ବୋଇଲା ବସ ପଣ୍ଡୁବଳା
ବୁଝିଲେ ପାଞ୍ଚଭାଇତ ଅଟ ଗଳାମାଳା ।
ଏରୂପେ ପାଞ୍ଚଭାଇଙ୍କ ପାଞ୍ଚପିତା ନାମ
ଧରନ୍ତେ କୋପ ହୋଇଣ ଉଠିଲା ସେ ଭୀମ
ବୋଇଲା ଆମ୍ଭ ପିତାଙ୍କ ନାମମାନ ଧରି
ସଭାରେ ବସାଉଅଛି ଆହାଲାଦ କରି ।
ଏତେ ପାଞ୍ଚି ଆଗହୋଇ ଉଠିଲା ସଭାରୁ
କାହାକୁ ନ କହି କିଛି ଗଲା ଖଣ୍ଡଦୂରୁ ।
ପଛକୁ ଚାହିଁ ଚାହିଁଣ ଗୃହେ ଚଳିଗଲା
କବାଟ ଗୋଟିକି କିଳି ନିଶ୍ଚିନ୍ତେ ଶୋଇଲା ।
ଭୀମ ଆସନ୍ତେ ବାହାରି ଆସିଲେ ଯୁଧିଷ୍ଠି
ବାଟରେ ଆସି ପାଞ୍ଚନ୍ତି ଭୀମ କଥା ଗୋଟି ।
ଅର୍ଜ୍ଜୁନ ବୋଇଲେ ହେ ଏ କେମନ୍ତ କଥା
ନକୁଳ ବୋଇଲେ ଗଲେ ବୁଝିବା ସେ ବାର୍ତ୍ତା
ସହଦେବ ବୋଲେ ବୁଝିଲେ ତ ଜଣାଯିବ
ଭୀମସେନ ଠାକୁର ଯେ ବୁଝିଲେ ଅଭାବ ।

ଏରୂପେ କହି ଆସନ୍ତେ ଚାରିଗୋଟି ଭାଇ
ମାତାଙ୍କୁ ଦେଖିଲେ ଏକ ଗୃହେ ଛନ୍ତି ରହି ।
ଯୁଧିଷ୍ଠି ବୋଇଲେ ମାତା ଭୀମ କାହିଁଅଛି
ସଭାରେ ଆମ୍ଭଙ୍କୁ ଛାଡ଼ି ଆସି ଆଗ ଘୁଞ୍ଚି ।
ଦିଶୁନାହିଁ ଘରେ କେଉଁଆଡ଼େ ଗଲା କହ
କୁନ୍ତୀବୋଇଲେ କି ତାର ଗୁଣ ବୁଝି ନାହିଁ ।
କଥା ପଦକରେ ରୁଷି ପଳାଏ ମୋ କୋଳୁ
ଏବେ ଆସି ଖଟେ ଶୋଇଅଛି କେତେବେଳୁ
ଶୁଣି କୁନ୍ତୀଦେବୀ ଉଠି ଭୀମ ପାଶେ ଗଲେ
ଅନେକ ମାର୍ଗେ ବୁଝାଇ ବୋଧି ନ ପାରିଲେ
ଅର୍ଜ୍ଜୁନ ନକୁଳ ଆଦି ସହଦେବ କୁନ୍ତ
ଏମାନେ ବୋଧିଲେ କେତେ କହି ଅପ୍ରମିତ ।
କାହାରି ବଚନ ସେ ଯେ ନ ଶୁଣିଲା କିଛି
କପଟେ ଘୁଙ୍ଗୁଡ଼ି ମାରି ପଲ୍ୟଙ୍କେ ଶୋଇଛି ।
ଯୁଧିଷ୍ଠିର ବୋଇଲେ ହେ ଶୁଣ ବୀର ପାର୍ଥ
ମନ ଚିନ୍ତାରେ ଆସନ୍ତି ପ୍ରଭୁ ଜଗନ୍ନାଥ ।
ଏହା ଶୁଣି ଫାଲଗୁନି ବସେ ଧ୍ୟାନ କରି
ତକ୍ଷଣେ ଗରୁଡ଼େ ବସି ମିଳିଲେ ଶ୍ରୀହରି ।
ଗରୁଡ଼ କନ୍ଧୁ ଉତୁରି ଦେବ ଚକ୍ରଧର
ଯୁଧିଷ୍ଠିର ପାଦପଦ୍ମେ କଲେ ନମସ୍କାର ।
ଅର୍ଜ୍ଜୁନ ନକୁଳ ଆଉ ସହଦେବ ଉଠି
ନମିଲେ ଶ୍ରୀକୃଷ୍ଣ ପାଦପଦ୍ମେ କୋଟି କୋଟି
ଯୁଧିଷ୍ଠି ବୋଇଲେ ସ୍ୱାମୀ ଶୁଣ ହୃଷୀକେଶୀ
ଭୀମାକୁ ଦେଖ ସେ ଘରେ ବସିଅଛି ରୁଷି ।
କୁରୁ ସଭାରେ ଆମ୍ଭେ ତ ଯାଇଁ ବସନ୍ତେଟି
କିଅପମାନ ପାଇ ସେ ଆସିଲା ଲେଉଟି ।
ଯୁଧିଷ୍ଠି କହିବା କଥା ଜାଣି ଭାବଗ୍ରାହୀ
ବୋଇଲେ ଚିନ୍ତା ଆଉନକର ତୁମ୍ଭେ କେହି
ପଦେଆମ୍ଭେ କହିଲେତ ହୋଇବ ସେ ବୋଧ
ଚାଲିବ ଆଗ ହୋଇଣ କରି ମନେ ସଧ ।
ଧର୍ମରାଜା ବୋଇଲେକ ହେଉତେବେ ଆଛା
ଶ୍ରୀକୃଷ୍ଣ ଘେନି ଆମ୍ଭର ପୂରୁ ମନୋବାଞ୍ଛା ।
ଶୁଣିକରି ଜନାର୍ଦ୍ଦନ ମନେ ହୋଇ ତୋଷ
ଭୀମସେନ ନାମଧରି ଡାକିଲେ ରମେଶ ।
ଡାକଶୁଣି ବୃକୋଦର ଉଠିଲା ତକ୍ଷଣେ
ଦେଖିଲା ବିଜୟେ କରିଛନ୍ତି ଆଦିମୂଳେ ।
ତତକାଳେ ଉଠିପାଦେ କରି ନିଉଛାଳି
ଶ୍ରୀକୃଷ୍ଣ ବୋଇଲେ ତୁହୋ ଉଠ ମହାବଳି ।
ଦ୍ୱାରକାପୁରରୁ ଆମ୍ଭେ ଆସିଛୁ ତୋ ପାଇଁ
କାହିଁକି ରୁଷିଲୁ ଭ୍ରାତାମାନଙ୍କୁ ନ କହି ।

ବୃକୋଦର ବୋଇଲା ମୁଁ କହିବି କାହାକୁ
ଦୁର୍ଯ୍ୟୋଧନ କଥା ହେଲା ଅମୃତ ଏହାଙ୍କୁ ।
ଯୁଧିଷ୍ଠିର ଅନ୍ଧହେତୁ ହେଲା ନିତ୍ୟ ପୋଷି
ଦର୍ଶନ କରିଲେ ପେଟ ଫୁଲେ ଅହର୍ନିଶି ।
ତଥାପି ଦେଖାଦେଲେ ସେ ଘଚକୁ ଆସନ୍ତି
ମାନଗୋବିନ୍ଦ ସଭାରେ ଯାଇଣ ବସନ୍ତି ।
ଆଦର ଥିଲେ ବସିଲେ ସିନା ଶୋଭା ପାଇ
ମହାକପଟୀ ଲୋକ କି ନୁହେଁ କୁରୁସାଇଁ ।
ଆମ୍ଭେ ଯେତେବେଳେଯାଇ ତା ସଭାରେ ବସୁ
ହସିଣ ଆସନ ଆସି ପକାଏ ତା ପାଶୁ ।
ଆମ୍ଭ ପାଞ୍ଚଭାଇଙ୍କର ବାପ ନାମ ଧରି
ବସ ବସ ବୋଲି ଉଚ୍ଚେ ହୁଅନ୍ତି ଫୁକାରି ।
ଏହାଙ୍କ ଦେହେ କି ଅଛି ଛଳଟିକେ କହ
ସେ କଥା ଶୁଣି ମୋହର କମ୍ପୁଅଛି ଦେହ ।
ତାହାର କଟୁବାକ୍ୟ ମୁଁ ନ ପାରିଲି ସହି
କାହାକୁ ନ କହି କିଛି ଘରେ ଶୋଇଲଇଁ ।
ଏହିରୂପେ ଭୀମ ମୁଖୁଁ ଶୁଣି ଭାବଗ୍ରାହୀ
ବୋଇଲେ ତାକୁ ଉତ୍ତର କିସଦେଲୁ ତୁହି ।
ଭୀମବୋଇଲେ ମୋତେ ଯେ କିରୂପେ ଆସିବ
ମାରିବା କଥା ଏକାତ ଜାଣେ ବାସୁଦେବ ।
ଏହାଶୁଣି ମନେ ମନେ ହସିଲେ ଚୌବାହା
ବୋଇଲେ ଗୋଇ ତାହାର ଶୁଣୁଅଛି ଯାହା ।
ଯେତେବେଳେ ସେ ଧରିବ ତୁମ୍ଭ ବାପନାମ
ତୁ ଏକା ସେତେବେଳରେ କହିବୁତା ମର୍ମ ।
ବୋଲିବୁ ବସୁଛି ଶୁଣ ଗୋଲକର ପୁଅ
କହିଲୁ ତୋ ବାପ ଭାଇ ନାମ ଶୁଣିଥାଅ ।
ପାସୋରି ଏକା ନ ଯା ତା ବାପ ନାମଗୋଟି
ଏ ରୂପରେ କହିଦେଲେ ଦେବକୀ ସୁତଟି ।
ଶୁଣିକରି ଭୀମସେନ ହସେ ମାରି ହେଣ୍ଡା
ପାଞ୍ଚେ କୁରୁବଂଶ କରିଦେବି ଏବେ ଗୁଣ୍ଡା ।
ଆଚ୍ଛା ପଦଟିଏ ମୋତେ କହିଲେ ଶ୍ରୀହରି
ଶୁଣି ଦୁର୍ଯ୍ୟୋଧନ ମରିଯିବ ଝୁରି ଝୁରି ।
ଏ ରୂପରେ ପାଞ୍ଚ ଭୀମ କୃଷ୍ଣପାଦେ ନମି
ଅନ୍ନ ଭୁଞ୍ଜାଇ ଚଳିଲେ ତାକୁ ଅନ୍ତର୍ଯ୍ୟାମୀ ।
ଦ୍ୱାରକାପୁରେ ମିଳିଲେ ଯାଇ ଭଗବାନ
ଜନ୍ମେଜୟ ରାଜନକୁ ଚାହିଁ ଉପୋଧନ ।
ବୋଇଲି ଯେ ସାବଧାନେ ଶୁଣ ହେ ରାଜନ
ତୋ ପିତାମହଙ୍କର ଏ ଅପୂର୍ବ ଆଖ୍ୟାନ ।
ପାଣ୍ଡବ ମହିମା ଏବେ କହିବା ତୁ ଶୁଣ
ଭୀମକୁ ଯେ କହିଗଲେ ଯାହା ନାରାୟଣ ।

ସନ୍ଧ୍ୟା ପାଠ ପରାୟେସେ ପଦ ଘୋଷିଘୋଷି
ଶୋଇଲା ରାତ୍ରି ଆସନ୍ତେ ପବନର ଶିଷି ।
ନିଦ୍ରା ଭାଜନ୍ତେ ଭୀମ ଯେ ଉଠିଣ ବସିଲା
ବିଷ୍ଣୁ କହିବା ପଦକୁ ପାସୋରିଣ ଦେଲା ।
ଉଠିଦରାଣ୍ଡି ଖୋଜନ୍ତେ ପଶି ଘରେ ଘରେ
ସହଦେବ ବୋଲେ କିସ ଖୋଜୁଛଠାକୁରେ
ବୃକୋଦର ବୋଇଲେକ ଶୁଣ ମନ୍ତ୍ରୀବର
ଶ୍ରୀକୃଷ୍ଣ କହିବା କଥା ପାସୋରିଲି ମୋର ।
ସହଦେବ ବୋଇଲେକ ମୋତେ ନ ପଚାରି
ଗୃହରେ ଖୋଜିଲେ ତୁମ୍ଭେ ପାଇବ କିପରି ।
ଗୋଲକ ପୁତ୍ର ବୋଲିଣ କୃଷ୍ଣ କହିଥିଲେ
ଏହାଶୁଣି ଭୀମସେନ ସତ୍ୟସତ୍ୟ ବୋଲେ ।
ଭଲାଭାଇ ତୁରେ କହିଦେଲୁ ମୋତେ ତାହା
ଚାଲ ସଭାରେ ଭେଟିବା ଏବେ କୁରୁନାହା ।
ଶୁଣିଣ ସହଦେବ ଯେ ମନେ ମନେ ହସି
ବସିଲେକ ଭୀମସେନ କୃଷ୍ଣପଦ ଘୋଷି ।
ଶୁଣ ଆହେ ଜନ୍ମେଜୟ ଏ ଉତ୍ତାରେ ବାଣୀ
ରାତ୍ର ଅନ୍ତେ ପାଣ୍ଡବେ ଯେ ଦେଇ ଦେହେପାଣି
ହସ୍ତିନାରେ ପ୍ରବେଶନ୍ତେ ପାଞ୍ଚଗୋଟି ଭାଇ
ଯୁଧିଷ୍ଠିର ପଛେ ଭୀମ ଚାଲେ ଆଗହୋଇ ।
ଯୁଧିଷ୍ଠି ବୋଇଲେ ବାବୁ ଶୁଣ ଭୀମସେନ
କି ଛାର କଥାକୁ ତୁହି ଘେନୁ ଅପମାନ ।
ଦୁର୍ଯ୍ୟୋଧନର ବାପ ତ ଅଟେ ଆମ୍ଭ ବାପ
ତାହାଙ୍କୁ ଦର୍ଶନ କଲେ ଖଣ୍ଡିବ ଯେ ପାପ ।
ଏହାଶୁଣି ଭୀମସେନ ବୋଲେ ହୋଇ ହୋଇ
ଅନ୍ଧ ତୁମ୍ଭର ଦେବତା ସିନାଅଛି ହୋଇ ।
ମାନଗୋବିନ୍ଦ ସଭାକୁ ଚାଲ ଆମ୍ଭେ ଯିବା
କାଲି ପଛେ ଜେଜୁତାଙ୍କୁ ଦର୍ଶନ କରିବା ।
ଶୁଣିକରି ସହଦେବ ହସିଲେ ଅପାର
ବୋଇଲେ ଠାକୁରଙ୍କର ବାକ୍ୟ ତେବେକର ।
ସାନ ହେଉ ବଡ଼ ହେଉ ବୋଲି ପାଳିଥିଲେ
ଯେହି ଘରେ ସୁଖଗୋଟି ସଦାଥାଇ ଭଲେ ।
ଶୁଣିଣ ନକୁଳ ପାର୍ଥ ବୋଇଲେକ ହୋଇ
ସଭାକୁ ମିଶିଣ ଚାଲ ଯିବା ପାଞ୍ଚଭାଇ ।
ଶୁଣିଣ ଧର୍ମରାଜ ଯେ ଆଗତ ଗତକୁ
ମନରେ ବହୁତ ପାଞ୍ଚ ଚଳନ୍ତି ସଭାକୁ ।
ବୋଲନ୍ତି ଗୋବିନ୍ଦ ଯାକୁ ଯାହା ଥାନ୍ତି ପାଞ୍ଚ
ତାହା କେ ଆନ କରି ନ ପାରେ କାଳ ଘୁଞ୍ଚ ।
ଭାଇମାନଙ୍କର ବାକ୍ୟ କିମ୍ପା ଭାଙ୍ଗିଦେବା
ଏତେ ପାଞ୍ଚଣ ଯୁଧିଷ୍ଠି ମିଳିଲେ ସେ ସଭା ।
ପାବନି ସଭାରେ ଆଗ ହୋଇ ଦେଖାଦ୍ୟନ୍ତେ
ଚାହିଁକରି ଦୁର୍ଯ୍ୟୋଧନ ହସେ ଶୁଦ୍ଧଚିତ୍ତେ ।
ବଡ଼ ଆଦରେ ଆସନ ଖଣ୍ଡେ ଆଣିଦେଲା
ବସ ହୋ ପବନ ପୁଅ ବୋଲି ହାସ୍ୟକଲା ।
ଶୁଣିକରି ଭୀମସେନ ଉଠିଗଲା ତଲୁ
ବସୁଛି ଗୋଲକପୁଅ କିମ୍ପା ମନେ ଭାଳୁ ।
ତୋ ବାପ ଗୋଲକ ଅଟେ ମୋ ବାପ ପବନ
ଏଥକୁ ଶଙ୍କା ଭାଇ ନ କର କେବେ ମନ ।
ଏହାଶୁଣି ତୁନିହୋଇ ଚାହେଁ କୁରୁମଣି
ହସିଲେ ଭୀଷ୍ମ ବିଦୂର ଭୀମକଥା ଶୁଣି ।
ବୋଇଲେ ଏଡ଼େକ ସନ୍ଧି ପାଏ କାହୁଁ ଭୀମ
କୃଷ୍ଣ କହିଥିବେ ଏକା ଏହାର ମରମ ।
ଆନକୁ ହେଲେ ଜଣା ତ କେବେ ଏହା ନାହିଁ
ଏ ରୁପରେ ସଭାଯାକ ହୁନ୍ତି କୁହାକୁହି ।
ସଭାମଧେ ଅପମାନ ପାଇ କୁରୁରାଜା
ଜନନୀ ପାଶକୁ ଗଲା ସଭାକରି ତେଜ୍ୟା ।
ନିଜ ପୁତ୍ରର ବିରସ ମନ ଦେଖିକରି
ଉଠିଣ ତକ୍ଷଣେ ଚାହିଁ ପଚାରେ ଗାନ୍ଧାରୀ ।
ବୋଇଲେ ସଭାରୁ ସବୁଦିନେ ଉଠି ଆସୁ
ହସି ହସି ଆସିକରି ପାଶେ ମୋର ବସୁ ।
ମାନଗୋବିନ୍ଦ ବୋଇଲା ଶୁଣ ଗୋ ଜନନୀ
କାହିଁକି ସଭାରେମୋତେ ବୋଇଲା ପାବନି
ଗୋଲକପୁତ୍ର ମୋତେ ସେ କହିଲା କାହିଁକି
ସଭାରେ କଳଙ୍କ ମୋର କାଢ଼ି ଉଚ୍ଚେ ଡାକି ।
ନିଷ୍କଳଙ୍କ ଚନ୍ଦ୍ରବଂଶ ବୋଲି ଜାଣିଥିଲି
ପାଣ୍ଡବେ ଜାରଜାତକା ସକଳେଯେ ବୋଲି
ଗୋଲକପୁତ୍ର ସେ ମୋତେ କାହିଁକି ବୋଇଲା
ଏଥିର ବିଷୟ ମୋତେ କହ ତୁମ୍ଭେ ଭଲା ।
ଶୁଣିଣ ଗାନ୍ଧାରୀ କହେ ପୁତ୍ରକୁ ଆଶ୍ୱାସି
ନିଷ୍କଳଙ୍କ ଚନ୍ଦ୍ର ମୋର ଅଟୁ କୁରୁବଂଶୀ ।
ମହାଦୋଷୀ ଭୀମ ତୁଲେ କିମ୍ପା ଗଲୁ ଲାଗି
ଦୁର୍ଦ୍ଦଣ୍ଡ ଲୋକଙ୍କୁ ବାବୁ ଦୂରୁଁ ଥିବୁ ତ୍ୟାଗି ।
ମୂର୍ଖଲୋକଙ୍କୁ ଓହରି ଜାଣି ରହିଥିଲେ
ସେ ଲୋକକୁ ଧନ୍ୟଧନ୍ୟ ବୋଲି ସର୍ବେ ଭଲେ
ସେ ଲୋକକୁ ବୋଲନ୍ତି ଯେ ସର୍ବେ ସାଧୁସାଧୁ
ଏ ଛାର କଥାକୁ ଉଠି ଆସୁ ସଭାମଧୁ ।
ଦୁର୍ଯ୍ୟୋଧନ ବୋଇଲା ଗୋ ଏମନ୍ତ ନୁହଇ
ମୋ ପିତାର ଗୁପ୍ତ କଥା ଦେବୁ ଆଜ କହି ।
ମାତା ଜାଣନ୍ତି ପୁତ୍ରର କେତେଗୋଟି ବାପ
ମନ ସିନା ଜାଣଇଟି ହୃଦେ କେତେ ପାପ ।

ଏଣୁ ଜନନୀ କହିବୁ ମୋତେ ସତ୍ୟକଥା
ମୁଁ ଯେବେତୋର ପୁତ୍ର ତୁଯେବେ ମୋରମାତା
ଶୁଣିଣ ଗାନ୍ଧାରୀ ମନେ ବହୁତ ବିସ୍ତାରି ।
ବିଭାକାଳ କଥା ତାର କହିଲା ବିସ୍ତାରି ।
ବୋଲେ ଅମାବାସ୍ୟାରେ ମୁଁ ଥିଲି ଜନ୍ମହୋଇ
ତେଣୁ ରାଜାମାନେ ବିଭାନୋହିଲେ ଯେ କେହି
ତାହାର ଜନମ ମଧ ଅମାସ୍ୟା ତିଥିରେ
ଜନ୍ମ ହେବାରୁ କନ୍ୟାଦେଲେକ ପୃଥ୍ୱୀରେ ।
ସେ କଥାର ତାତପର୍ଯ୍ୟ ବୁଝି ବ୍ୟାସମୁନି
ବୋଇଲେ ଶାହାଡ଼ା ବୃକ୍ଷେ ବିଭାକର ଆଣି ।
ମୁନିର ମୁଖୁଁ ଏମନ୍ତ ଶୁଣି ମୋର ତାତ
ଶାହାଡ଼ା ବୃକ୍ଷେ ସମର୍ପି ଦେଲେ ମୋର ହାତ
ମୋ ହାତ ଲାଗନ୍ତେ ସେହି ତତକ୍ଷଣେ ମଲା
ସେହେତୁ ବିଧବାଦୋଷ ମୋତେତ ଲାଗିଲା
ତହିଁପରେ ତୋ ପିତାକୁ ମୋତେ ବିଭାକଲେ
ଏ କଥାଗୋଟି ଭୀମକୁ କେବା କହିଦେଲେ ।
ଏହି ଛାର କଥାକୁ ତୁ କେଡ଼େ ରୋଷ କଲୁ
ତେଡ଼େ ରାଜସଭା ମଧୁ ଯା ଉଠି ଆସିଲୁ ।
ଶୁଣିଣ ମାନଗୋବିନ୍ଦ ମନେ କଥା ପାଞ୍ଚି
ମାତାଙ୍କୁ ନ ବୋଲି କିଛି ଗଲା ତହୁଁ ଘୁଞ୍ଚି ।
ହୃଦୟରେ କିନ୍ତୁ ରଖି ସଭାକୁ ଚଳିଲା
ସଭାରେ ନାହାନ୍ତି କେହି ଏକାନ୍ତେ ବସିଲା ।
ପଥୁରିଆମାନଙ୍କୁ ସେ ଆଣିଲା ଡକାଇ
ବହୁତ ଧନଦ୍ରବ୍ୟ ସେ ତାଙ୍କୁ ଦେଲା କହି ।
ବୋଇଲାକ ପାଷାଣରେ ଘର କର ନିର୍ଭା
ଅନେକ କାଳର ଘର ପ୍ରାୟ ହେବ ଶୋଭା ।
ଏହାଶୁଣି ପଥୁରିଆ ଗଲେ ପାଞ୍ଚଲକ୍ଷ
ଦଣ୍ଡକରେ ସଜାଇଣ ଦେଲେ ଘରଯାକ ।
ଜଳା ପିଞ୍ଜରାମାନ ସେ ବସେ ଧାଡ଼ି ଧାଡ଼ି
ସୁବର୍ଣ୍ଣ ଲେପ ଦେଇଣ ଆସିଲେ ବାହୁଡ଼ି ।
ଘର ନିର୍ଭା ହେଲା ବୋଲି କହି ରାଜା ଆଗେ
ଶୁଣିଣ ମାନଗୋବିନ୍ଦ ଚଳେ ସେହି ଲାଗେ ।
ଘରଯାକ ଦେଖି ବଡ଼ ସନ୍ତୋଷ ହୋଇଲା
ସବୁଙ୍କୁ ମେଲାଣି କରି ଗୃହେ ବିଜେକଲା ।
ଦେହ ପାଣିହୋଇ ତହୁଁ ବେଗେ ଭୁଞ୍ଜିସାରି
ଅଜା ଘରକୁ ଯିବାକୁ ଚଳେ ଦଣ୍ଡଧାରୀ ।
ଗାନ୍ଧାର ଦେଶରେ ଯାଇ ମିଳିଲେ ବହନ
ନାତିକୁ ଦେଖି ଆଦର ସେ ଗାନ୍ଧାରସେନ ।
ଖାଇବାକୁ ଦେଇସାରି ବସି ଅଜାନାତି
ପାଣ୍ଡବଙ୍କ କଥାସବୁ କହେ କୁରୁପତି ।
ପାଷାଣର ଘର ଏକ ନିର୍ମାଣିଛି ମୁହିଁ
ଦେଖିବ ତୁମ୍ଭଙ୍କୁ ଆସିଅଛି ନେବାପାଇଁ ।
ପାଣ୍ଡବଙ୍କୁ ସେ ଗୃହରେ ରଖିବ ଯେ ନେଇ
ତୁମ୍ଭ ମନ ପାଇଲେ ଏକଥା କରିବଇଁ ।
କୁଟୁମ୍ବ ଯାକ ଧରିଣ ଆପେ ବିଜେକର
ତୁମ୍ଭେଦେଖିଲେ ମୋ ମନହେବ ଯାଇସ୍ଥିର ।
ବୃକୋଦର କଥା ଜାଣେ ସେ ଗାନ୍ଧାରସେନ
ସତ ଏ କଥା ବୋଲିଣ ପାଞ୍ଚେ ନୃପରାଣ ।
ନାତିକି ବୋଇଲେ ଚାଲ ବେଗ ହୋଇଯିବା
ଝିଅ ଜୁଆଇଁକି ମଧ ଦେଖିଣ ଆସିବା ।
ଏକରୁ ଯେ ଦୁଇକଥା ହୋଇବ ଉତ୍ତମ
ପାଞ୍ଚିଲା କୁରୁପତି ଏ ହେଲା ଆସି ବାମ ।
ଏଥୁଅନ୍ତେ ଆନବାଣୀ ଜନ୍ମେଜୟ ଶୁଣ
କୁଟୁମ୍ବଯାକ ଧରିଣ ସେ ଗାନ୍ଧାରସେନ ।
ଉନଶତ ପୁତ୍ର ଆଦି ଭାରିଯା ସହିତେ
ମାନଗୋବିନ୍ଦ ସଙ୍ଗତେ ଚଳିଲେ ସମସ୍ତେ ।
ଆଗେ କୁରୁରାଜା ପଛେ ସେ ଗାନ୍ଧାରସେନ
ପଥରଘରେ ଯାଇଣ ମିଳିଲେ ବହନ ।
ଗୃହ ଭିତରେ ପଶିଣ ସମସ୍ତେ ଦେଖିଲେ
ଆଛା କଲୁ ବୋଲି ରାଜା ନାତିକୁ କହିଲେ ।
ଶୁଣିକରି ଦୁର୍ଯ୍ୟୋଧନ ମନେ ବଡ଼ ହସି
ଆସନମାନ ପକାଇ ଦେଲା କୁରୁବଂଶୀ ।
ଅଜା ଆଇ ମାମୁଁଙ୍କୁ ସେ ନେଇ ବସାଇଲା
ଅନେକ ବିଚାର କରି କଥାରେ ମୋହିଲା ।
କିଳିବ କପାଟମୁଠା ଦ୍ୱାରେ ଯାଇ ଦେଖି
ତୁମ୍ଭେ ଉଠ ସମସ୍ତେ କି ପାରିବ ତା ଝିଙ୍କି ।
ଜାଣିବ କଞ୍ଚି ହୁଗୁଳିଗଲେ କାର୍ଯ୍ୟ ନାହିଁ
ଏତେ କହିଣ ପଦାକୁ ଆସେ କୁରୁସାଇଁ ।
ନିବାଡ଼େ କଞ୍ଚିମୁଦି ସେ ବେଗେ କିଳିଦେଲା
କବାଟ ଝିଙ୍କ ବୋଲିଣ ମାମୁଁଙ୍କୁ ଡାକିଲା ।
ଶୁଣି ଆସିଲେ ଗାନ୍ଧାରସେନର ଯେ ପୋଏ
ଆମ୍ଭେ ଝିଙ୍କିଲେ କପଟ ଲାଗେ ବଜ୍ରପ୍ରାଏ ।
ପୃଥ୍ୱୀ କମ୍ପିଲା କବାଟ କେବେ ନ ଫିଟିଲା
ତାହାଦେଖି ଦୁର୍ଯ୍ୟୋଧନ ହରଷିତ ହେଲା ।
ଗାନ୍ଧାରସେନ ବୋଇଲା ଶୁଣ କୁରୁପତି
କେଡ଼େ ଆମ୍ଭେ ଏ କଥାଟି ଦେଖୁଅଛି ପାତି ।
ଏହା ପ୍ରାୟ ସଂସାରେ କେ ନାହିଁ ଆଉ ଗଢ଼ି
କେତେ ପୃଥ୍ୱୀ ଦେଖିଅଛି ଅଶ୍ୱଯାନେ ଚଢ଼ି ।
ମାନଗୋବିନ୍ଦ ବୋଇଲା ଶୁଣ ତେବେ ଅଜା
ତୁମ୍ଭର ପାଇଁ ଏ ଘର କରିଛି ମୁଁ ଖଞ୍ଜା ।

ଅଚିନ୍ତା ହୋଇ ଏବେ ଏ ଘରେ ସୁଖେ ଥାଅ
ବରଷା ଖରା ଶୀତଳ ନ ଲାଗିବ ଦେହ ।
ତାହା ଶୁଣି ଗାନ୍ଧାରର ପଡ଼େ ଝାଳ ବହି
ବୋଲେ କି କହିଲା ଏମୋ କାନେ ପଶୁନାହିଁ
ସାକ୍ଷାତେ ମୋରନାତି ମୁଁଅଟେ ତୋରଅଜା
ପରିହାସରେ କହିଲା ଅବା କୁରୁରାଜା ।
ଏତେ ପାଞ୍ଚଣ ମନରେ ସେ ଗାନ୍ଧାରସେନ
ବୋଇଲା ଫିଟାଅ କଞ୍ଚି କହିବି ବଚନ ।
ମାତା ପିତାଙ୍କୁ ଦେଖିବା ତୋର ଆଜ ଯାଇଁ
ସେ ମୋର ଜ୍ୟେଷ୍ଠ ଝିଅର ଅଟନ୍ତି ଜୁଆଇଁ
ମୁଁ ଅଟେ ଗାନ୍ଧାରସେନ ବିଷ୍ଣୁ ପରାୟଣ
ତୁ ପନ୍ନଗନାରାୟଣ ଅଟୁ କୁରୁରାଣ ।
ବ୍ୟାସ ଋଷିଙ୍କର ପୁତ୍ର ଅଟେ ଧୃତରାଷ୍ଟ୍ର
ତୁ ଅଟୁ ସୋମବଂଶର ମୂର୍ଦ୍ଧା କୁଳଶ୍ରେଷ୍ଠ ।
ଶୁଣିକରି ଦୁର୍ଯ୍ୟୋଧନ କହିଲାକ ପୁଣି
ବୋଇଲା ପିତାଙ୍କୁ ମୋ କି କନ୍ୟାଦେଲୁ ଆଣି
ରାଣ୍ଡକନ୍ୟା ଗୋଟିଏକ କିମ୍ପା ବିଭା କଲୁ
ନିଷ୍କଳଙ୍କ ବଂଶେ ମୋର କଳଙ୍କ ରଖିଲୁ ।
ସଭାରେ ଭୀମା ମୋତେତ କଲା କେତେହାସ
ନାକରେ ହସ୍ତ ଦେଇଣ ହସିଲେ ତ୍ରିଦଶ ।
ଗୋଲକପୁତ୍ର ମୋତେ ସେବୋଇଲା କାହିଁକି
ଏଣୁକରି ତୁମ୍ଭଙ୍କୁ ମୁଁ ଆଣିଲଇଁ ଡାକି ।
ନିଗମ ଘରେ ରଖିଲି ଜାଣ ଆଣି ତୋତେ
ଥାଅ ଅଜା ମାମୁଁ ମାଇଁ ଏଘରେ ନିଶ୍ଚିନ୍ତେ ।
ଗାନ୍ଧାରସେନ ବାଉଳି ହୋଇଲା ଯା ଶୁଣି
ବୋଇଲା କହିବି ଫିଟା କବାଟ କିଳିଣୀ ।
ମୁଁ ଅଟେ ତୋହର ଅଜା ତୁ ମୋହର ନାତି
ଏ କଥା ମନେ କିଛି ନଘେନ କୁରୁପତି ।
ଏ କଥା କଲେ ପାଇବୁ ନିନ୍ଦା ଜାଣ ରାଜା
ଶୁଣିଲେ କରିବେ ଛିଛିକାର ଜନପ୍ରଜା ।
ମୁଁ ମଲେ ତୋହର ବଂଶ ହେବ ଜାଣ କ୍ଷୟ
ଦେଖିବୁ ଅଳ୍ପଦିନେ ଏ କଥା କୁରୁରାୟ ।
ରାଜା ବୋଇଲା କାଉଳି ନୁହ ଆଉ ଅଜା
ମୁଁ ଗଲେ ତୁମ୍ଭଙ୍କୁ କରିଦେବି ଅନ୍ନଖଞ୍ଜା ।
ଗାନ୍ଧାରସେନ ବୋଲେ କିକାର୍ଯ୍ୟ ଅଛି ଆଉ
ମୁଁ ମଲେ ତୋହର ବଂଶ ଅକ୍ଷେକ୍ଷୟ ଯାଉ ।
ଶୁଣ ଆହେ ଜନ୍ମେଜୟ ଦେଲା ତାକୁ ଶାପ
ଆତ୍ମାକୁ ବାଧିଲେ ପଡ଼େ ନୀଚଲୋକ ତାପ ।
ଯେତେଲୋକ ହେଉପଛେ ଆତ୍ମାକୁ ବାଧିଲେ
ତତକାଳେ ପଡ଼େଶାପ ଯାହାମୁଖେ ବୋଲେ

ଏକଥା ପୁଣି ନିଶ୍ଚେଟି ଫଳେ ଜନ୍ମେଜୟେ
ଆଗତ ଗତ କଥାକୁ ପାରେ ହେଜି କିଏ ।
ପଥର ଘରରେ ରଖି ସେ ଗାନ୍ଧାର ବଂଶ
ମିଳିଲେ ନବତ୍ରେ ଆସି ଗାନ୍ଧାରୀର ଶିଷ୍ୟ ।
ମୁଦୁସୁଲୀକି ରାଇଣ କହେ ଦୁର୍ଯ୍ୟୋଧନ
ବୋଇଲା ପଥର ଘରେ ଦେଇ ଆସ ଅନ୍ନ ।
ପ୍ରତିଦିନରେ ତୁହିଟି ଆସି ନେଉଥିବୁ
ଆମ୍ଭର ଆଜ୍ଞାଗୋଟିକୁ କେବେ ନମେଣ୍ଟିବୁ ।
ଏତେ କହିଣ ସେ ଦିନ ଅନ୍ନ ଦଶଭାର
ବ୍ୟଞ୍ଜନ ଲବଣ ସହ କେତେ ଦେଲା ନୀର ।
ପଥର ଗୃହର ଜଳା ପଞ୍ଝୁରୀର ବାଟେ
ସବୁ ବଢ଼ାଇ ଦେଇ ସେ କହେ ମନହୃଷ୍ଟେ ।
ନିଅ ଆହୋ ମହାତମୀ ବୋଲି ଡାକ ଦେବୁ
ଶୁଣିକରି ମୁଦୁସୁଲୀ ଚଳେ ଘେନି ସବୁ ।
ଏରୂପେ ଦେଲା ନେଇଣ ଏକୋଇଶ ଦିନ
କହୁଛନ୍ତି ମୁନିବର ଶୁଣ ହେ ରାଜନ ।
ତାହା ଧରି ମୁଦୁସୁଲୀ ବହନ ଚଳିଲା
ନିଅ ଆହେ ମହାତମା ବୋଲି ଡାକଦେଲା ।
କଳାପଞ୍ଚରେ ବଢ଼ାଇ ଦ୍ୟନ୍ତି ଅନ୍ନ ବାଳୀ
ଦେଖିଣ ଗାନ୍ଧାରସେନ ମନେ ବହୁ ଭାଳି ।
ପାଞ୍ଚିଲା ଖଞ୍ଜିଲା ଯେବେ ଅଧେ ଅନ୍ନ ରାଜା
ଅବଶ୍ୟପୁତ୍ରେମୋହର ହେବେପ୍ରାଣତେଜ୍ୟା
ଦଶଭାରରୁ ଅର୍ଦ୍ଧେକ ଦେଲା ଯେବେ ଆଣି
ଏଥକୁ ବିଚାରି ମୋତେ କହରେ ଶକୁନି ।
ଶକୁନି ବୋଇଲେ ତାହାମୁହିଁ ବାଣ୍ଟଦେବି
ସଭିଙ୍କୁ ସମାନ ବୋଧି ଆପେ ଭୁଞ୍ଜାଇବି ।
ଗାନ୍ଧାରସେନ ତନୟଠାରୁ ପାଇ ଦୀକ୍ଷା
ବୋଇଲା କୁଳଦୀପ ମୋ ହେବୁ ରଖି କକ୍ଷା ।
ମୋର ଭାଇଯାକ ଆଣି କୁଟେ ମରାଇଲା
ତୁ ତାର ଭାଇଯାକଙ୍କୁ କୂଟେ ମାର ଭଲା ।
ମୁଁ ମଲେ କରିବୁ ମୋର ଅଙ୍ଗ ପଶାକାଠି
ଯେଉଁଦାନ ଡାକିବୁ ତୁ ପଡ଼ିବ ଶୀଘ୍ରଟି ।
ଯୁଧିଷ୍ଠିଙ୍କି ବସାଇଣ ଖେଳାଇବୁ ପଶା
ସବୁବେଳେ ହାରିବେସେ ମୋର ସତ୍ୟଭାଷା
କୁରୁ ପାଣ୍ଡବଙ୍କୁ ଜାଣ ଯୁଦ୍ଧ କରାଇବୁ
ସର୍ବେ ମଲା ଉତ୍ତାରୁ ତୁ ମଧ ମରିଯିବୁ ।
ଏ ରୂପେ ଶତ୍ରୁ ସାଧିଲେ ସାଧିଲା ହୁଅଇ
ସେ ଲୋକକୁ ଜାଣ ଦୋଷ କିଛି ନ ଲାଗଇ ।
ଏହି ରୂପେ ଅନ୍ନ ଦେଲେ କେବେ ବଞ୍ଚିବ କି
ଅଧେ ଏବେ ତୁଟାଇଣ ଦେଲାଣି ସଭିଙ୍କି ।

ଆଉ କିଛି ଦିନ ଗଲେ ଅଧେ ତୁଟାଇବ
ପଛ ବେଳକୁ ଜାଣ ସେ କିଛି ଯେ ନଦେବ ।
ଖାଇବାକୁ ନ ପାଇଣ ସମସ୍ତେ ମରିବା
ଏକୋଉର ଶତେଲୋକ କେମନ୍ତେ ବଞ୍ଚିବା ।
ଶକୁନି ବୋଲେ ତାତ ନ ଭାଳ ମନେ କିଛି
ଅନ୍ନ ବାଣ୍ଟିଲା ବେଳକୁ ମେଞ୍ଚା ଲୁଚାଉଛି ।
ସୁନା ସୁତା ପରାୟେକ ବାଡ଼େ ଅଛି ଲାଖି
ନମିଳିଲା ଦିନ ଖାଇ ଜୀବେ ଥିବି ରଖି ।
ଶୁଣିଣ ଗାନ୍ଧାରସେନ ଆନନ୍ଦିତ ହେଲା
ଶକୁନି ଯେ ଅନ୍ନଯାକ ସବୁ ପରଷିଲା ।
ଏମନ୍ତରେ ଏକୋଇଶ ଦିନ ପୂରିଯାନ୍ତେ
ଅଧେ ଅନ୍ନଦେଲା ରାଜା ତହୁଁ ଦିନାକେତେ ।
ମୃଦୁସୁଲୀ ତାହା ନେଇ ଦେଇଣ ଆସିଲା
ଶକୁନି ଯେ ଅନ୍ନଯାକ ସବୁ ପରଷିଲା ।
ପୁଣି ଏକୋଇଶ ଦିନ ପୂର୍ଣ୍ଣ ହୋଇ ଯାନ୍ତେ
ଏକହାଣ୍ଡି ଅନ୍ନ ରାଜା ଦେଲା ଦିନାକେତେ ।
ଗାନ୍ଧାରସେନ ବୋଇଲା ଶୁଣରେ ନନ୍ଦନ
ଜୀଇବା ହାଣ୍ଡିଏ ଅନ୍ନଭୁଞ୍ଜି କେତେ ଦିନ ।
ଯୋଗାଗ୍ନି କରି ଯାଉଛୁ ଆମ୍ଭେ ସର୍ବେ ମରି
ତୁ ଏକା ଥିଲେ ଶତ୍ରୁକୁ ପାରିବୁ ସଂହାରି ।
ଶୁଣିଣ ଶକୁନି ନେତ୍ରୁ ପଡ଼େ ଲୁହ ବହି
ଆହା ପିତା ମୋର ଯାଉଅଛ ମୋତେ କହି ।
ମୁଁ ମଧ୍ୟ ତୁମ୍ଭ ସଙ୍ଗରେ ଯାନ୍ତି ତାତ ଚଳି
ଶତ୍ରୁ ସଂହାରିବି ରହିଅଛି ଏତେ ଭାଳି ।
ତୁମ୍ଭର ସୁକୃତରୁ ମୁଁ ଶତ୍ରୁ ସଂହାରିବି
ଶତ୍ରୁ ସଂହାରିଲେ ମୁହିଁ ତୁମ୍ଭଙ୍କୁ ତାରିବି ।
ଶୁଣିଣ ଗାନ୍ଧାରସେନ ଆନନ୍ଦିତ ହେଲେ
ପୁତ୍ରବୋଲିଘେନିଯୋଗାଗ୍ନିରେ ଝାସ ଦେଲେ
ଛାଡ଼ିକରି କଳେବର ବ୍ରହ୍ମେ ହେଲେ ଲୀନ
କହନ୍ତି ଜନ୍ମେଜୟଙ୍କୁ ବଇଶମ୍ପାୟନ ।
ଏଥୁଅନନ୍ତରେ ମାନଗୋବିନ୍ଦ ନୃପତି
କୁଞ୍ଚାଏ ଅନ୍ନପୁଣି ସେ ପେଶିଲା ତଡ଼ତି ।
ଧରିକରି ମୃଦୁସୂଲୀ ବେଗେ ଚଳିଗଲା
ଅନ୍ନ କୁଞ୍ଚାକ ଦେଇଣ ବାହୁଡ଼ି ଆସିଲା ।
ଏମନ୍ତ ଆସନ୍ତେ ପ୍ରତିଦିନ ଅନ୍ନଦେଇ
ବାଟେ ଦେଖିଲା କରିଛି ବିଜେ କୁରୁସାଇଁ ।
ବଟମୂଳେ ଏକାନ୍ତରେ ଅଛି ସେହୁ ବସି
ପ୍ରସାବ କରନ୍ତେ ବଟଫୁଲ ଗଲା ଭାସି ।
ତାହାଦେଖି କୁରୁରାଜା ହସିଣ ଉଠିଲା
ପାଞ୍ଚେ·ଏଡ଼େ ବୃକ୍ଷମଞ୍ଜି କି ରୂପେ ଭାସିଲା ।
ଏ ମହାବୃକ୍ଷରେ ଅଟେ ଏହୁ କ୍ଷୁଦ୍ରମଞ୍ଜି
ହାୟ ଏ ଫଳ ବିଧାତାକେହ୍ନେ ଥିଲା ଖଞ୍ଜି ।
ଏତେ ବୋଲିଣ ହସନ୍ତେ ଚାହିଁଣ ମଞ୍ଜିକି
ହସିଲା ସେ ମୃଦୁସୁଲୀ ରାଜା ହସ ଦେଖି ।
ମୃଦୂସୁଲୀ ହସନ୍ତେଣ ଚାହେଁ ଦୁର୍ଯ୍ୟୋଧନ
କିମ୍ପାଇଁ·ହସିଲୁ ବୋଲି ପୁଛିଲା ବହନ ।
ପୋଇଲୀ ବୋଇଲା ତୁମ୍ଭେ ହସିଲ ଯହିଁକି
ମୁହିଁ ହସିଲଇଁ ସ୍ୱାମୀ ସେ କଥା ପାଇଁକି ।
ଦୁର୍ଯ୍ୟୋଧନ ବୋଇଲାଯେ ତୁଯେବେ ହସିଲୁ
ମୋହର ମନ କଥା ତୁ କେମନ୍ତେ ଜାଣିଲୁ ।
ଏକଥା ଗୋଟିକ ମୋତେ କହିବୁ କାଲିକି
ନୋହିଲେକ ବସାଇବି ଶୂଳେ ଆଣି ଝିଙ୍କି ।
କହିଲେ ତୋତେ କରିବି ନିଶ୍ଚେ ପାଟରାଣୀ
ମେଢ଼ଫୁଲ ଭୋଗ ମୋର ସମୀପକୁ ଆଣି ।
ଶୁଣିଣ ପୋଇଲୀ ମନେ ବିରସ ହୋଇଲା
ବ୍ୟର୍ଥେ ମରିଗଲି ବୋଲି ମନରେ ପାଞ୍ଚିଲା ।
ଆରଦିନ ଅନ୍ନ କୁଞ୍ଚାଏକ ପୁଣି ଧରି
ପଥର ଘରକୁ ଗଲା ମନେ ଶୋକ କରି ।
ବୋଇଲା ପଥର ଘରେ ଅଛି କେହୁ ଜାଣ
ଆଜକ ଅନ୍ନ ଦେଇଣ ଯାଉଛି ମୁଁ ଶୁଣ ।
ଏଠାରୁ ଗଲେ ମାରିବ ରାଜା ମୋତେ ଆଜ
ଶୂଳିରେ ବସାଇ ମୁଣ୍ଡ କାଟିବ ଦହିର୍ଯ୍ୟ ।
ଶକୁନି ବୋଇଲା ଆଲୋ କିମ୍ପା ଏତେଡ଼ରୁ
ମୁଁ ଶୁଣିଲାରୁ ଗୋବିନ୍ଦ ତୋତେ ରକ୍ଷାକରୁ ।
ପୋଇଲୀ ବୋଇଲାତେବେ ଶୁଣହେ ମହାତ୍ମା
ତୁମ୍ଭଙ୍କୁ କହିଲେ କିବା ରହିବ ମୋ ଆତ୍ମା ।
ପୁଛିଲ ଯେବେ କହିବି ପଦେ ତେବେଶୁଣ
ତୁମ୍ଭଙ୍କୁ ଅନ୍ନ ଦେଇ ମୁଁ ମଲି ଅକାରଣ ।
ଏଥୁ ଯାଉ ଦେଖିଲି ମୁଁ ବାଟେ କୁରୁପତି
ବଟବୃକ୍ଷ ତଳେ ସେହୁ ବସିଥିଲେ ମୂତି ।
ମୋତେ ଦେଖିକରି ସେହୁ ହସହସ ହୋନ୍ତେ
ରାଜା ହସିବାରୁ ମୁହିଁ ହସେ ଶ୍ରଦ୍ଧାଚିତ୍ତେ ।
ମୋର ହସ ଦେଖି ସେହି କି ମନେ ପାଞ୍ଚିଲେ
ତୁ କିମ୍ପା ହସିଲୁ ବୋଲି ମୋତେ ପଚାରିଲେ
ମୁହିଁ ବୋଇଲି ତାହାଙ୍କୁ ହସିଲ କାହିଁକି
ତୁମ୍ଭେ ଯେଣୁ ହସିଲ ମୁଁ ହସିଲି ତହିଁକି ।
ରାଜାବୋଇଲେ ତାହା ତୁ ଅଛୁ ଯେବେଜାଣି
ନ କହିଲେ ମୁଣ୍ଡ ତୋର ପକାଇବି ହାଣି ।
ଏହିରୂପେ ମୃଦୁସୁଲୀ ବିଷୟ କହନ୍ତେ
ଶକୁନି ବୋଲେ ଏ ଛାର କିମ୍ପାଡ଼ରୁ ଏତେ ।

ମୁହିଁ ତୋତେ ଯାହା କହୁଅଛି ଏବେ ଶୁଣ
ଯେତେବେଳେ ବଟମୂଳେ ବସିଲା ରାଜନ ।
ପରିସ୍ରା କରୁଁ ବଟର ମଞ୍ଜି ଭାସିଗଲା
ତାହା ଦେଖି କୁରୁରାଜା ହସିଣ ଉଠିଲା ।
ରାଜା ତ ହସିଲେ ବୋଲି ତୁ ଖରେ ହସିଲୁ
ପୁଛନ୍ତେ ତୁ ସେ କଥାକୁ କହି ନ ପାରିଲୁ ।
ଏବେ ଯାଇ ରାଜାକୁ ଏ କଥା ବେଗେ କହ
ଶୁଣିଣ ମୃଦୁସୁଲୀର ଉଲ୍ଲସିଲା ଦେହ ।
ଶୁଣ ଆହେ ଜନ୍ମେଜୟ ଏଥୁଅନ୍ତେ ବାଣୀ
ରାଜାର ଛାମୁରେ ଆସି ମିଳିଲା ତରୁଣୀ ।
ରାଜାର ଆଗରେ ଉଭା ହୁଅନ୍ତେ ମୃଦୁସୁଲୀ
ବୋଇଲା ହସ କଥା ତୁ କହଲୋ ପୋଇଲୀ
ସେ କଥା ମନୁ ପାଶୋର ମୋର ଯାଉନାହିଁ
ତୁ କହିଲେ ପେଟଫୁଲା ଭାଜିବ ମୋ ଯାଇଁ ।
ଏହାଶୁଣି ମୃଦୁସୁଲୀ ଯୋଡ଼ି ବେନିକର
ବୋଲେ ଛାମୁରେ କହିବି ପଦେତେବେମୋର
ଶ୍ରୀମହାରାଜା ମନକୁ ଆସୁ ବା ନ ଆସୁ
କହି ପାରିଲେ ଫିଟିବି ମୁହିଁ ରାଜା ପାଶୁ ।
ଦୁର୍ଯ୍ୟୋଧନ ବୋଇଲାକେ କହତେବେତାହା
ମୃଦୁସୁଲୀ କହିଲା ହେ ଶୁଣ ନରନାହା ।
ଯେବଣ ବଟମୂଳରେ ଆପେ ଥିଲ ହସି
ପରିସ୍ରା କରନ୍ତେ ମଞ୍ଜିମାନ ଗଲା ଭାସି ।
ତାହା ଦେଖିଣ ଆପଣ ଚମତ୍କାର ହେଲେ
ଭଲ ଏ ବୃକ୍ଷ ବୋଲିଣ ମନରେ ପାଞ୍ଚିଲେ ।
ବୋଇଲେ ଏଡ଼େକ ଦାରୁ ଗଛ ମଞ୍ଜି ପଡ଼ି
ପ୍ରସାବଳେ ଭାସି ଯାଉଅଛି ଗଡ଼ି ଗଡ଼ି ।
ଏହି କଥା ଦେଖି ତୁମ୍ଭେ ହସିଲ ରାଜନ
ଶୁଣିକରି ଚମତ୍କାର ହେଲା ଦୁର୍ଯ୍ୟୋଧନ ।
ବୋଇଲା ଏ ବୁଦ୍ଧି ଜାଣ ତୋହର ନୁହଇ
କେତୋତେ କହିଲା ତାହାଦେବୁ ମୋତେକହି
ଏ ଭେଦ କହିବାକୁ କେ ଅଛି ମଣ୍ଡଳେ
ମନର କଥା ଜାଣନ୍ତି ଏକା ଆଦିମୂଳେ ।
ଯେତୋତେ କହିଲା ଏହା ତାକୁ ଦେଖାମୋତେ
ଘେନିଲେ ଦେଖିବି ବଡ଼କରି ମଧ ତୋତେ ।
ପୋଇଲୀ ବୋଇଲା ତେବେ ଶୁଣ କୁରୁଦେବ
ପଥର ଘର ଭିତରେ ଅଛି ସେ ଜାଣିବ ।
ଦୂର୍ଯ୍ୟୋଧନ ବୋଇଲାଲୋ ତେବେଚାଲ ଯିବା
ପଥର ଘରରୁ କାଢ଼ି ତାହାକୁ ଦେଖିବା ।
ମାସେ ହେଲା ଏବେ ମୁଁ ତ ଅନ୍ନ ଦେଉନାହିଁ
ଶୂନ୍ୟରେ ରହିଛି ଘରେ କିସ ଦ୍ରବ୍ୟଖାଇ ।

ବଟମୂଳକୁ ପଥର ଘର ଜାଣ ଯେତେ
ଯୋଜନେହୋଇବ ଛଡ଼ାବୁଝିଲେ ଉପାନ୍ତେ
ଏଡ଼େ କଥାଗୋଟି କି ସେ କିରୂପେ ଜାଣିଲା
ମନ୍ତ୍ରୀପଣକୁ ସେ ମୋର ଯୋଗ୍ୟ ହେବ ଭଲା
ଏତେ ବୋଲି ପୋଇଲୀ କି ପଉରୁଷ କରି
ପଥର ଘରକୁ ବିଜେ କଲା ଦଣ୍ଡଧାରୀ ।
ପାଷାଣ ଘରେ ଯାଇ ମିଳିଲା ତତ୍‌କ୍ଷଣ
କଞ୍ଚମୁଦ ଫେଡ଼ିଦେଇ ଡକାଇ ବହନ ।
ବୋଇଲା ହୋ ମହାତମା ବେଗେ ଉଠିଆସ
ତୋ ମୁଖ ଦେଖିଲେ ମୋର ଫିଟିବ ସନ୍ଦେଶ
ଦୂର୍ଯ୍ୟୋଧନ ବାକ୍ୟ ଗୋଟି ଶୁଣିଲା ଶକୁନି
ବୋଇଲା ବାପ ଏକା ମୁଁ ଅଛି ଦେହଘେନି ।
ରଜା ବୋଇଲା ତାହାକୁ ବେଗେ ଉଠିଆସ
ତୋତେ ଦେଖିଲାକ୍ଷଣି ମୁଁ ଦେବି ରାଜ୍ୟଘୋଷ
ମହାମନ୍ତ୍ରୀ ହୋଇଣ ତୁ ବସିବୁ ମୋ ପାଶେ
ତୋହର ବୋଲୁଁ ବାହାର ନୋହିବି ନିମିଷେ
ପୋଇଲୀ ଯାଇଣ ମୋତେ କହିଲା ଯେବେଳୁ
ବୁଝିଲି ସଙ୍କେତ ସବୁ ବଟବୃକ୍ଷ ଫଳୁ ।
ଗୋଟାଏ କଥାରେ ତୋର ଗଲି ସବୁ ଚିହ୍ନି
ରାଜାର ବଚନେ ଉଠି ଆସିଲା ଶକୁନି ।
ଦେଖି ମହାରାଜା ତାକୁ କଲା କୋଳାଗ୍ରତ
ବୋଇଲେ ତୁମୋ ମାତୁଳ ମୁଁତୋ ଭଗ୍ନିସୁତ
ଭୂତ ଭବିଷ୍ୟତ ଜ୍ଞାତ ଅଟୁ ମନ୍ତ୍ରୀଯୋଗ୍ୟ
ଆପଣଙ୍କୁ ଘେନିଣ କରିବି ପୃଥ୍ୱୀ ଭୋଗ ।
ଏକ ବଚନ ମୋହର ଅଟେ ଏକ ବାଣୀ
ଏକ ପତ୍ନୀ ଅଟେ ମୋର ଭାନୁମତୀ ରାଣୀ ।
ଏକ ପୁତ୍ର ଅଟେ ମୋର ଲକ୍ଷ୍ମଣ କୁମର
ଏକ ଶକୁନି ହେବ ମୋ ରାଜ୍ୟେ ମନ୍ତ୍ରୀବର ।
ଏକ ମନ ମୋହର ଯେ ଏକ ସତ୍ୟବାଣୀ
ଶୁଣ ଆହେ ମନ୍ତ୍ରୀବର କହେ କୁରୁମଣି ।
ଏତେ କଥା ମୋହରଟି ହେବ ଯେବେଆନ
ନିରଞ୍ଜନ ଥାଳେ ବିଷ ଦେବି ପ୍ରତିଦିନ ।
ଏ ରୂପେ ବାକ୍ୟ କହିଲା ଯହୁଁ କୁରୁମଣି
ବିଚାର କଲା ମନରେ ଶକୁନି ତାଶୁଣି ।
ବୋଲେ ପାଣ୍ଡବଙ୍କ ଲାଗି ମାଇଲୁ ମୋ ବଂଶ
ସେହି ପାଣ୍ଡବେ ଥାଇ ସେ କରିବେ ତା କିସ
ଭୀମକୁ ମାରିବାକୁ ମୁଁ କରିବି ଉପାୟ
କରିବି ଏକାଙ୍ଗଚକ୍ରବର୍ତ୍ତୀ ତୋତେ ରାୟ ।
ଏତେ ବୋଲିଣ ଶକୁନି ରାଜା ହସ୍ତ ଧରି
ଚଳିଗଲେ ହସ୍ତିନାକୁ ଘେନି ଦଣ୍ଡଧାରୀ ।

ଗାନ୍ଧାରସେନ ରାଜା ଯେ ନୁହେଁ କି ଶକୁନି
ଶୁଣ ଆହେ ଜନ୍ମେଜୟ କହେ ମହାମୁନି ।
ସେ ଶକୁନି ଦୂର୍ଯ୍ୟୋଧନ ସଭାରେ ବସନ୍ତେ
ଦେଖିଣ ଭୀଷ୍ମ ବିଦୂର ବିଚାରିଲେ ଚିତ୍ତେ ।
ବୋଇଲା ଏ ଅଲାଜୁକ ଥିଲା ଏକ ଜୀଇଁ
ସଭାରେ ବସିଲା ଏକ ବଂଶଯାକ ଖାଇ ।
କୁରୁବଂଶଯାକ ଏବେ କରିବ ଏ ନାଶ
ଆମ୍ଭଙ୍କୁ ଏ କଥାଗୋଟି ପ୍ରତ୍ୟକ୍ଷରେ ଦୃଶ୍ୟ ।
ଶତ୍ରୁକୁ ସାଧିଲା ପ୍ରାୟ ଦିଶିଲା ଏ କଥା
ମାନଗୋବିନ୍ଦ ବୁଦ୍ଧି ତ ହେଲା ଆସି ବୃଥା ।
ବଂଶଯାକ ମରିଲେ ଏ ରହିଲା କେସନେ
କୁରୁବଂଶ ନାଶିବ ଏ ଜାଣ ଅଳ୍ପଦିନେ ।
ଏଥକୁ ବୁଦ୍ଧି ରାଜାକୁ କିଛି ନାହିଁ ଜଣା
ଆମ୍ଭେ କହିଲେ ବିଷମ ହେବ ବୁଝାମଣା ।
ଧୃତରାଷ୍ଟ୍ର ହେଲେ ମଧ ଜାଣିବ କି ଏହା
ବାପ ପୁଅଙ୍କର ବୁଦ୍ଧି ଅଟେ ଏକ ଦେହା ।
ଗୋବିନ୍ଦ ଯାହାକୁ ଦେଉଥାନ୍ତି ଯେଉଁ ବୁଦ୍ଧି
ତାହାକୁ କେ ଆନକରି ନପାରେ ଅବଧି ।
ଏତେକ କହିଣ ଭୀଷ୍ମ ବିଦୂର ଏ ବେନି
ବଚନସ୍ଫୁଟ ନ କରି ରହିଲେକ ତୁନି ।
ଶକୁନିକି ସଙ୍ଗେ ଘେନି ରାଜା ଦୂର୍ଯ୍ୟୋଧନ
ପାଣ୍ଡବଙ୍କ ପାଇଁ କୂଟ ପାଞ୍ଚି ବେନି ଜନ ।
ଏ ଅନ୍ତେ ମିଳିଲେ ପୁରୋଚନ ବିପ୍ର ଆସି ।
ରାଜା ମନ୍ତ୍ରୀ ଆଗେ ମିଳିଗଲେ ହସି ହସି ।
ଶକୁନି ବୋଇଲା ତୁମ୍ଭେ ଶୁଣ ଦ୍ୱିଜବର
ତୁମ୍ଭେ ତ ଗୁପ୍ତ କଥାଏ ହେଉଛ ଏଠାର ।
ପୁରୋଚନ ବୋଇଲା ମୁଁ ତୁମ୍ଭକଥା ଜାଣି
ତୁମ୍ଭେ ନ କହିଲେ ମୂହିଁ ପୂର୍ବୁ ଅଛି ଶୁଣି ।
ପାଣ୍ଡବଙ୍କ କଥା ସିନା ହୁଅ ଆସି ଗୁପ୍ତେ
ସେ କଥାକୁ କହ ପାଞ୍ଚିବାରେ ଅପ୍ରମିତେ ।
ଶକୁନି ବୋଲେ ବସିବା ହେଉ ତେବେଦ୍ୱିଜ
କି ଅଛି ଉପାୟ ତୁମ୍ଭଠାରେ କହ ଆଜ ।
ଦ୍ୱିଜବୋଲେମୋ କୂଟେ ନପଶେକେଉଁନର
ଆମ୍ଭର ବୁଦ୍ଧି ଅଟଇ ସବୁ ବଳିୟାର ।
ହିଂସା ହିଁ ବହିପାରୁ ଯେ ମିଛ କହିପାରୁ
ବୁଝିଲେ ମହାକ୍ରୋଧି କେ ଅଛି ଆମ୍ଭଠାରୁ ।
ପ୍ରତ୍ୟକ୍ଷ ଅର୍ଥବବେଦୀ ବିପ୍ର ଆମ୍ଭେ ବ୍ରହ୍ମା
ରାଜାଙ୍କ ଛାମୁରେ କହିପାରେ କେ ଗାରିମା ।
ପାଣ୍ଡବଙ୍କ କଥା ହେଉଅଛ ଧୀରେ ଧୀରେ
ପାଣ୍ଡବେ ମରିବେ ଯେ ଗୋଟିଏ କଥାରେ ।
ମୋର କଥା କଲାକ୍ଷଣି ପାଣ୍ଡବେ ମରିବେ
ଶକୁନି ବୋଲେ କହିବା ହେଉ ବିପ୍ର ତେବେ
ତୁମ୍ଭ ଆମ୍ଭ କଥା ନ ଜାଣୁ ଯେ ଆନ କେହି
ଷଡ଼ କାନ ଭେଦରେ ଯେ ମନ୍ତ୍ର ନ କାଟଇ ।
ପୁରୋଚନ ବିପ୍ର ବୋଲେ ଶୁଣ ହେ ଶକୁନି
କରିବଇଁ ଜତୁ ଘର ଦେଖ ଏହିକ୍ଷଣି ।
ଘର ନିର୍ମାଣିବି ମୁହିଁ ସବୁ ହିଁ କପଟ
ଜଉ ଶାଳ ରସ ଗୁଆ ଘୃତ ଛଣପଟ ।
ସବୁ ଘରେ ଲେପଦେଇ ସଜାଡ଼ିବି ଘର
ଦେଖିଲେ ଯେ ଶତ୍ରୁଲୋଭେ ହେବଚମତ୍କାର
ଶୁଣିକରି ଶକୁନି ଯେ ହୋଇଲା ଆନନ୍ଦ
ବୋଇଲେ ଭଲ ବିପ୍ରେକଖଞ୍ଜିଲେ ଗୋବିନ୍ଦ ।
ମହାପୁରୁଷ ଅଥର୍ବବେଦୀ ଏହି ଦ୍ୱିଜ
କେତେ ଯେ କପଟମାନ ଜାଣେ ଅଇଶ୍ୱର୍ଯ୍ୟ ।
ଏହାଙ୍କର ଲାଗି ମୋର ବଂଶ ଉଦ୍ଧାରିବି
ପାଣ୍ଡବେ ଦେଶ ଦେଇଣ କୌରବେ ମାରିବି
ଏତେ ପାଞ୍ଚିଣ ଶକୁନି ବିପ୍ର କଥାଯାକ
ଦୂର୍ଯ୍ୟୋଧନକୁ ବତାଇ କହିଲା ଅନେକ ।
ଶୁଣି ମାନଗୋବିନ୍ଦ ଯେ ଆନନ୍ଦିତ ହେଲା
ବ୍ରହ୍ମାଣ୍ଡକୁ ଅନେକ ସେ ଦ୍ରବ୍ୟ ଖଞ୍ଜିଦେଲା
ବୋଇଲା ଜତୁର ଘର କର ବେଗେ ସଜ
ଏଥିରେ ହେଳା କିଛି ନ କର ମାମୁଁ ଆଜ ।
ଶୁଣିଣ ଶକୁନି ଉଠି ବିପ୍ର କର୍ଣ୍ଣେ କହି
ବୋଇଲେ ସଜାଡ଼ ଜତୁ ଘର ବେଗେ ଯାଇ
ଶୁଣିଣ ପ୍ରରୋଚନ ଯେ ବେଗେ ଗଲା ଚଳି
ନିର୍ମାଣେ ଘର ବାରୁଣାବନ୍ତେ ଯାଇ ମିଳି ।
ସ୍ୱର୍ଗ ଭୁବନରୁ ଦିଶେ ଦ୍ୱିଗୁଣେଯେ ଶୋଭା
ଦେଖି ଶତ୍ରୁହେଲେମନେହୋଇବେଯେଲୋଭା
ଏଥୁ ଅନନ୍ତରେ ଭୀମସେନ ବୁଲିଯାନ୍ତେ
ଦେଖିଲେ ଅପୂର୍ବ ଘର ସଜଡ଼ା ହୁଅନ୍ତେ ।
ପୁରୋଚନ ପଣ୍ଡା ପାଶେ ମିଳି ବେଗେ ଯାଇଁ
ବୋଇଲା ରହିବ ଏହି ଘରେ କିଏ ଭାଇ ।
ପୁରୋଚନ ବୋଇଲା ଯେ ଶୁଣ ବୃକୋଦର
ଦୂର୍ଯ୍ୟୋଧନ ରାଜାଙ୍କୁ ମୁଁ କହିଲି ଅପାର ।
ବୋଇଲା ପାଣ୍ଡବେ ଅଟନ୍ତି ତୋ ଭାଇ ପରା
ପାଞ୍ଚ ଭାଇଙ୍କି ନ ଦେଲ ପାଞ୍ଚୋଟି ବଖରା ।
ରଖିଲୁ ବାରୁଣାବନ୍ତେ କୁଡ଼ିଆଏ ଦେଇ
ବତାସ ହେଲେ ସେ ଘର ଉଡ଼ିଯିବ କାହିଁ ।
କାହିଁକି କରୁଛୁ ଏତେ ହେଳା ଦୁର୍ଯ୍ୟୋଧନ
ଭାଇ ଯେ ବନ୍ଧୁ ଅଟେ ଏ କଥା ଭଲେ ଚିହ୍ନ

ପରକୁ ବୋଲଇ ଭାଇ ବୋଲି ଯେହୁ ନିଶ୍ଚେ
ଅସମୟଠାରେ ତାକୁ ରଖେ ସେ ସୁସଞ୍ଚେ ।
ଏରୂପେ କେତେ ମାର୍ଗରେ କହିବାରୁ ମୁହିଁ
ବୋଇଲା ସଜାଡ଼ି ଆସ ଭଲ ଘର ଯାଇଁ ।
ପାଣ୍ଡବଙ୍କୁ ରଖାଇ ସେ ଘରେ ବେଗେ ଆସ
ଶୁଣି ବୃକୋଦର ମନେ ହେଲା ହସ ହସ ।
ବୋଇଲା ପଣ୍ଡାଏ ତୁମ୍ଭେ କେଡ଼େ ଉପକାରୀ
ଆମ୍ଭର କ୍ଳେଶକୁ ତୁମ୍ଭେ ମଣ କେଡ଼େ କରି ।
ଯେବେ ଏ ଘରରେ ଆମ୍ଭେ ନିଶ୍ଚୟ ରହିବୁ
ତୁମ୍ଭଙ୍କୁ ଏ ଘରୁ ଜାଣ ବଖରାଏ ଦେବୁ ।
ତୁମ୍ଭ ସଙ୍ଗାଳି ହୋଇଣ ମିଶିଥିବା ରହି
ତୁମ୍ଭଙ୍କୁ ଏଡ଼େକ ଗୃହଦାନ ଦେଲି ମୁହିଁ ।
ଯୁଧିଷ୍ଠି ଠାକୁରଙ୍କର ଶ୍ରୀଚରଣେ ସେବି
ତୁମ୍ଭଙ୍କୁ କହି ଏତେକ ଦାନ ନିଶ୍ଚେଁ ଦେବି ।
ଶୁଣିଣ ପୁରୋଚନ ଯେ ଆନନ୍ଦ ହୋଇଲା
ଯାହା ପାଞ୍ଚିଥିଲା ତାହା ଭୀମ ଯାଚିଦେଲା ।
ପୁରୋଚନ ପଣ୍ଡାକୁଯେ ସଙ୍ଗେ ଧରି ଭୀମ
ଯୁଧିଷ୍ଠିଙ୍କ ପାଦେ ଯାଇ କଲାକ ପ୍ରଣାମ ।
ଉଠି ଉଭାହୋଇ ଯୋଡ଼ିଲାକ ବେନିକର
ବୋଇଲା ଆମ୍ଭଙ୍କୁ ଦୟାକଲା କୁରୁବୀର ।
ଏ ବିପ୍ରଙ୍କୁ ପଠାଇଣ ଘର ତୋଳାଇଲା
ସ୍ୱର୍ଗପୁରୁଁ ଯେ ଅଧିକ ମୋତେ ଦିଶୁଥିଲା ।
ଏ ବିପ୍ର ଗୋସାଇଁଙ୍କୁ ସେଘରୁ ଅଧେଦେବା
ଅଥର୍ବବେଦୀ ବ୍ରାହ୍ମଣ ପାଶେ ଆମ୍ଭେ ଥିବା ।
ବୃକୋଦର ବାକ୍ୟ ଶୁଣି ହସିଲେ ଯୁଧିଷ୍ଠି
ବୋଇଲେ କୁରୁରାଜାଙ୍କୁ ଯିବା ଆମ୍ଭେ ଭେଟି
ଆମ୍ଭେ ରହିଲେ ରଖିବା ବିପ୍ରେ ସେହିଦିନ
ଏଥି ସଂଶୟ କିଛି ନ କର ଭୀମସେନ ।
ଯୁଧିଷ୍ଠିର ମୁଖୁଁ ଶୁଣି ବିପ୍ର ଶ୍ରଦ୍ଧା ବହେ
ଏଥୁଅନ୍ତେ ଆନବାଣୀ ଶୁଣ ଜନ୍ମେଜୟେ ।
ଏଥୁଅନନ୍ତରେ ପୁଣି ଯୁଧିଷ୍ଠି ରାଜନ
ଧୃତରାଷ୍ଟ୍ର ପାଶେ ଯାଇଁ ଦେଲେ ଦରଶନ ।
ଦେଖି ଅନ୍ଧରାଜା ବଡ଼ ଆନନ୍ଦିତ ହେଲେ
କଲ୍ୟାଣ କରିଣ ଆସି ନେଇ ବସାଇଲେ ।
ବହୁତ ଆଦର କରି କହିଲେ ତିଆରି
ବୋଇଲେ ରହରେ ଯାଇ ବାରୁଣ ନଗରୀ ।
ଦୂର୍ଯ୍ୟୋଧନ ରାଜନ ତ ଭଲ ଘର ଦେଲା
ଏ କଥାଯାକ ଶୁଣିଛି ସବୁ ମୁହିଁ ଭଲା ।
ଯୁଧିଷ୍ଠି ବୋଇଲେ ପିତା ତୁମ୍ଭ ମନଇଚ୍ଛା
ଆମ୍ଭେ ସମସ୍ତେ କଥାକୁ କରୁ ମନେ ବାଞ୍ଛା ।

ମେଲାଣି ହୋଇଣ ତେବେ ଯାଉଛି ମୁଁ ଚଳି
କେବଳ ତୁମ୍ଭ କରୁଣା ଥାଉ ମୋତେ ମିଳି ।
ଏ ରୂପେ କହି ଯୁଧିଷ୍ଠି ଆସିଲେ ତ୍ୱରିତେ
ମାତାଙ୍କୁ ଘେନି ଚଳିଲେ ସେ ବାରୁଣାବନ୍ତେ
ଜତୁର ଗୃହରେ ଯାଇ ହୋଇଲେ ପ୍ରବେଶ
ଅଚିନ୍ତା ହୋଇ ରହିଲେ ତହିଁ ପଣ୍ଡୁ ଶିଷ୍ୟ
ପୁରୋଚନକୁ ଜଗିଲା ପରାୟେ ସେ ହୋଇ
ରହିଲେ ଯୁଧିଷ୍ଠି ଆଜ୍ଞାପାଇ ଘରେ ଯାଇ ।
ପାଣ୍ଡବେ ସେଘରେ ରହୁଁ ଜାଣିଲେ ବିଦୂର
ପାଞ୍ଚିଲେ ମନେ ଏ ସବୁ ଶକୁନି ବିଚାର ।
ଏତେବୋଲି ପ୍ରବେଶିଲେ ସେ ବାରୁଣାବନ୍ତେ
ପୁତ୍ରଙ୍କର ଆଗେ ଯାଇ ମିଳିଲେ ତୁରିତେ ।
ଦେଖନ୍ତି ଧର୍ମରାୟ ଯେ କଲେକ ଗୌରବ
ବିଦୁରଙ୍କୁ ବହୁତ ସେ ପୁଚ୍ଛନ୍ତି ପ୍ରସ୍ତାବ ।
ବିଦୂର ବୋଇଲେ ବାପ ଏ ନୁହେଁ ଉତ୍ତମ
ପାର୍ଥଙ୍କୁ ବୋଇଲେ ଚିନ୍ତ ଶ୍ରୀପୁରୁଷୋତ୍ତମ ।
ତକ୍ଷଣେ ପାର୍ଥ ସ୍ମରଣ କରନ୍ତି ଶ୍ରୀହରି
ଗରୁଡ଼ ବାହନେ ବିଜେକଲେ ଚକ୍ରଧାରୀ ।
ଯୁଧିଷ୍ଠି ପାଦପଦ୍ମରେ ପ୍ରଣିପାତ କଲେ
ତ୍ୱରିତେ ନକୁଳ କୋଳ କରିଣ ଧଇଲେ ।
ଚାରି ପାଣ୍ଡବେ ବିଦୁର ଏହି ପାଞ୍ଚଜଣ
ଜଗନ୍ନାଥଙ୍କ ଚରଣେ କଲେକ ପ୍ରଣାମ ।
ବିଦୁର ବୋଲେ ଶୁଣିମା ହେଉ ଚକ୍ରପାଣି
ଶକୁନି ବୋଇଲେ କୁଟ କଲା କୁରୁମଣି ।
କି ରୂପେ ବଞ୍ଚିବେ ପୁତ୍ରେ ଜତୁଘରୁ ଜାଣ
ସେ କଥାକୁ ସାକ୍ଷୀ ତୁମ୍ଭେ ଅଟ ନାରାୟଣ ।
ଶୁଣିଣ ଶ୍ରୀ ନାରାୟଣ ବିଚାରି ହୃଦଗତେ
ବିଦୂର ସହଦେବଙ୍କୁ କହିଲେ ଏକାନ୍ତେ ।
ବୋଇଲେ ସହଦେବ ତୁ ଅଟୁ ମହାଜ୍ଞାତା
ତୋତେ ଜଣାଥିବ ତ ଏ ଜତୁଘର ବାର୍ତ୍ତା
ଯେ ରୂପେ ଏଥିରୁ ତରିଯିବେ ପାଞ୍ଚଭାଇ
ସେ କଥାକୁ ମନେ ତୋର ଥିବୁଟି ଚିତୋଇ
ଏ ଅଥର୍ବୀ ବିପ୍ରଙ୍କୁ ବିଶ୍ୱାସ ନ ଯିବୁଟି
ତୁ ତ ଅଟୁ ସର୍ବଜ୍ଞ ମୁଁ କିସ କହିବିଟି ।
ସହଦେବ ବୋଲେ ପ୍ରଭୁ ତୁମ୍ଭ କୃପା ଥିଲେ
ଜତୁ ଗୃହ ଛାରକୁ କି ଡରୁ ଆମ୍ଭେ ଭଲେ ।
ସେ କଥା ଶୁଣିଣ ପ୍ରଭୁ ମନେ ବଡ଼ ହସି
ଦ୍ୱାରକାକୁ ବିଜେ କରିଗଲେ ବ୍ରହ୍ମରାଶି ।
ବିଦୂର ବିଜୟ କରି ଗଲେ ନିଜପୁର
ରହିଲେକ ଜତୁ ଘରେ ସେହି ପାଞ୍ଚବୀର ।

ହରନ୍ତି ମୃଗୟା ବିନୋଦରେ ଦିନ ନିତି
ପିତୃକାର୍ଯ୍ୟ ଅର୍ଥେ ଗଣ୍ଡା ଧରିଲେ ମାରୁତି ।
ବୋଇଲେ ଗଣ୍ଡା ଧରିଣ ହସ୍ତିନାକୁ ଯିବୁ
ଧୃତରାଷ୍ଟ୍ର ପାଶେ ଯାଇଁ ଚରଣେ ସେବିବୁ ।
ଆମ୍ଭଙ୍କୁ ଦୂର୍ଯ୍ୟୋଧନର ଥାଏ ବଡ଼ ଦୟା
ଘର ଦେବାରୁ ଜାଣିଲି ନାହିଁ ତାର ମାୟା ।
ସହଦେବ ହସିଲେ ଯେ ଶୁଣି ମନେ ମନେ
ଏ ଘର କଟୁକଥା ସେ ଜାଣିବେ କେସନେ
ଭୋଳା ପୁରୁଷ ଅଟନ୍ତି ସ୍ୱାମୀ ବୃକୋଦର
ନ ପାଆନ୍ତି ସେହି ଏକା ତମଗୁଣାକାର ।
ଏତେ ପାଞ୍ଚି ସହଦେବ ରହେ ହୋଇ ତୁନି
ଯୁଧିଷ୍ଠି ବୋଇଲେ ଭୀମ ଯାଉ ଗଣ୍ଡା ଘେନି
ଗଣ୍ଡା ଦେଖି କେଡ଼େ ଶ୍ରଦ୍ଧାହେବଦୂର୍ଯ୍ୟୋଧନ
ଆମ୍ଭର ସେ କଲା ପିତୃକାର୍ଯ୍ୟ ବୋଲି ଜାଣ
ଶୁଣିଣ ସେ ବୃକୋଦର ଗଲା ସେହିଲାଗେ
ଗଣ୍ଡା ନେଇ ଦେଲା ମାନଗୋବିନ୍ଦର ଆଗେ
ଦେଖିଣ ଶକୁନି ତାହା ହେଲା ହସ ହସ
ଦୂର୍ଯ୍ୟୋଧନ ବୋଲେ ସଭାମଧ୍ୟେ ଯାଇଁ ବସ
ଏତେ ବୋଲି କୋଳାଗ୍ରତ କରି ଘେନିଗଲା
ଭୀମସେନଙ୍କୁ ସେଠାରେ ବହୁ ପ୍ରଶଂସିଲା ।
ଏଥୁ ଅନନ୍ତରେ ହ୍ୱନ୍ତେ ଆହ୍ନିକର ବେଳ
ଭୋଜନ ନିମନ୍ତେ ବିଜେକଲେ ମହୀପାଳ ।
ପିତୃକର୍ମ ଧର୍ମ ସାରି ଧୃତରାଷ୍ଟ୍ର ରାୟେ
ବୋଇଲେକ ଅନ୍ନଭୁଞ୍ଜି ବସ ସର୍ବପୋଏ ।
ଶକୁନି ଆବର ଭୀମସେନ ଦୁର୍ଯ୍ୟୋଧନ
ସର୍ବପୋଏ ମିଶିକରି କରନ୍ତି ଭୋଜନ ।
ଏଥି ଉତ୍ତାରୁ ଯେ ବାଣୀ ଶୁଣ ଜନ୍ମେଜୟେ
ବସିଲେ ସର୍ବେ ଆସନ ମାଡ଼ି ଯେଝା ଠାଏ ।
ଦୂର୍ଯ୍ୟୋଧନ ବୋଇଲାକ ଶୁଣ ଦୁଃଶାସନ
ଭୀମକୁ ପରଷ ସୂକ୍ଷ୍ମକରି ବେଗେ ଅନ୍ନ ।
ଷଡ଼ରସରେ ସମ୍ପାଦି ଥାଇ କେତେ ବାବୁ
ଭୀମସେନକୁ ମୋହର ଆଣି ଦେବୁ ସବୁ ।
ଏତେ କହି ରାଜା ଭାଇମାନଙ୍କୁ ଯେ ଘେନି
ବସିଲେ ଅନ୍ନ ଭୁଞ୍ଜିଣ ଆବର ଶକୁନି ।
ସବୁଙ୍କୁ ପରଷେ ଅମାଲୁ ଯେ ପୁଲିମାନ
ଭୀମକୁ ଯେ ବିଷଲଡ୍ଡୁ ଦେଲା ଦୁଃଶାସନ ।
ଭୋଜନରେ ଅତୃପତି ଅଟେ ବୃକୋଦର
ସନ୍ତୋଷେ ଭୀମସେନ ତା କରଇ ଆହାର ।
ଅଚେତ ହୋଇ ପଡ଼ିଲା ଭୀମ ତଳେ ଶୋଇ
ମେଲିଲେନାଗୁଣୀ ଖାଉବୋଲି ଜଳେନେଇ

ବାସୁକୀର ଝିଅ ଏକ ଥିଲା ବେଲାବଳୀ
ଜଳର ମଧ୍ୟେ ଆସି ସେ କରୁଥିଲା କେଳି ।
ସୌନ୍ଦର୍ଯ୍ୟ ରୂପ ଦେଖିଣ ଭୀମକୁ ସେ ନେଇ
ଜୀଆଇଁଲା ସୁଧା ଦେଇ ରାଜାଙ୍କୁ ଯେ କହି ।
ପାଞ୍ଚଇ ଯେ ଭୀମସେନ ଆସିଲି ମୁଁ କାହୁଁ
ଏଥିରୁ ପାରି କରନ୍ତୁ ମୋତେ ମହାବାହୁ ।
ଏ ନାଗଯୋଗକୁ ଯେବେ ମାରିଣ ମୁଁ ଦେବି
ଯିବାକୁ ଏଥୁ ମୁହିଁ ଯେ ପଥ ନ ପାଇବି ।
ବେଲାବଳୀ ସଙ୍ଗେ ପ୍ରୀତି କରିବଇଁ ଆଜ
ତେବେ ମୋର ସବୁକଥା ହୋଇବ ଐଶ୍ୱର୍ଯ୍ୟ
ଏତେ ପାଞ୍ଚି ନାନାରଙ୍ଗେ ବହୁକ୍ରୀଡ଼ା କଲା
କ୍ରୀଡ଼ା ସୁଖପାଇ ବାଳୀ ଗର୍ଭବାସ ହେଲା ।
ଏଥିଉତ୍ତାରେ ଯେ କଥା ଶୁଣ ଜନ୍ମେଜୟେ
ପାଣ୍ଡବାସୁରକୁ ମାରି ଗଲେ ପଣ୍ଡୁ ପୋଏ ।
ଯୁଧିଷ୍ଠିଙ୍କୁ ଗିଳିବାକୁ ଧାମନ୍ତେ ଦଇତ୍ୟ
ଭୀମକୁ ଚିନ୍ତିଲେ ସେତେବେଳେ ଧର୍ମସୁତ ।
ବୋଇଲେ ଆମ୍ଭଙ୍କୁ ଏଥେ ଗିଳୁଛି ଅସୁର
କାହିଁଅଛୁ ଏଥେ ଆସି ମିଳ ବୃକୋଦର ।
ପାତାଳପୁରେ ଥାଇଣ ଜାଣିଲେ ପାବନି
ପ୍ରୀତିରେ କହିଲା ନାଗୁଣୀର ମନଘେନି ।
ବୋଇଲା ତୁ କହିଲେ ମୁଁ ଯିବି ଏହିକ୍ଷଣ
ଠାକୁରଙ୍କୁ ଆମ୍ଭର ଗୋ ପଡ଼ିଲା କଷଣ ।
ଶୁଣିଣ ନାଗୁଣୀ ଜାଣି ଭୀମର ଯେ କଥା
ବୋଇଲାହେ ତେବେ ବିଜେକର ମହାରଥା
ତୁମ୍ଭଙ୍କୁ ଗୁପ୍ତ ବାଣୀଏ କହିଥିବି ପୁଣ
ଆପଣଙ୍କ ବୀର୍ଯ୍ୟେ ଗର୍ଭ ହୋଇଛି ମୋ ଜାଣ
ଶୁଣି ବୃକୋଦର ବହୁ ଆନନ୍ଦ ହୋଇଲେ
ବୋଇଲେ ମୁଁ ମିଶିଥିବି ପୁତ୍ରନାମ ତୁଲେ ।
ମୁଁ ଅଟେ ମହାବୀର ମୋ ପୁତ୍ର ବଳୀୟାର
ବଳୀବେଲାଳ ବୋଲି ତୁ ନାମ ଦେବୁ ତାର
ତୁ ଅଟୁ ବେଲାବଳୀ ମୁଁ ଅଟେ ଭୀମସେନ
ବଳୀବେଲାଳ ଦେବୁ ତୁ ସେ ପୁତ୍ରର ନାମ ।
ଏତେକହି ପାତାଳରୁ ଗଲେ ବେଗେ ବୀର
ଧର୍ମଙ୍କ ପାଦେ ନମିଲେ ଯାଇ ତତପର ।
ରେରେକାର କରି ଧାଇଁଲେକ ଗଦାଧରି
ପାଣ୍ଡବାସୁରକୁ ମାରି ଦେଲେ ଗୁଣ୍ଡା କରି
ଦେଖି ଦେବତାଏ ବଡ଼ ଆନନ୍ଦିତ ହେଲେ
ପଞ୍ଚପାଣ୍ଡବ ବୋଲିଣ ନାମ ଦେଇଗଲେ ।
ବାରୁଣାବନ୍ତେ ଯାଇଣ ହେଲେ ପରବେଶ
କହଇ ଯେ ଭୀମସେନ ହସ୍ତିନା ସନ୍ଦେଶ ।

ବୋଇଲା କହିବି କେତେ ଅନ୍ଧର ମୁଁ ଗୁଣ
ଭୋଜନରେ ବିଷଲଡୁ ଦେଲା ମୋତେ ପୁଣ
ଭୁଞ୍ଜିଣ ଅଚେତ ମୁହିଁ ହେଲି ଯେତେବେଳେ
ଜଳରେ ପକାଇ ମୋତେ ଦେଲେ ତତକାଳେ
ପାତାଳପୁରେ ପଡ଼ିଲି ଯାଇଁ ମୁହିଁ ଖସି
ବାସୁକୀର ଝିଅ ମୋତେ ସମ୍ଭାଳିଲା ଆସି ।
ଜୀବଦାନ ଦେଇଣ ସେ ମୋତେ ଜୀଆଇଁଲା
ତୁମ୍ଭେ ଚିନ୍ତିବାରୁ ଧାଇଁ ଆସିଲି ମୁଁ ଭଲା ।
ସମସ୍ତ କଥା ଶୁଣନ୍ତି ରାଜା ଜନ୍ମେଜୟ
ଏହାପରେ ଆନବାଣୀ ଶୁଣ ଧର୍ମରାୟ ।
ଘୋର ବରଷା ସେ ଦିନ ରାତ୍ରେ ପୁଣ ହେଲା
ଜୟନ୍ତୀ ଶବରୀ ତିନ୍ତି ତିନ୍ତି ଘେନିଗଲା ।
ଜତୁଘରେ ଯାଇଣ ସେ ପଶନ୍ତେ ଆକୁଳେ
କୁଇନ୍ତାଘରେ ରଖିଲେ ନେଇ ତତକାଳେ ।
ବୋଇଲେ ତୁମ୍ଭର ନାମ ଅଟଇ ଗୋ କିସ
ପାଞ୍ଚକୁମର ଆଣିଛ ହେବେ ଆମ୍ଭ ଶିଷ୍ୟ ।
ରହିବା ସାଙ୍ଗହୋଇ ଏ ଘରେ ଦୁହେଁ ମିଶି
ଆମ୍ଭଙ୍କୁ ସାହା ତୁମ୍ଭେତ ହୋଇଲ ଗୋ ଆସି
ମୋ ନାମ ଅଟଇ କୁନ୍ତୀ ଶୁଣ ମହାମ୍ରାଣୀ
ସେ ବୋଲେ ଜୟନ୍ତୀ ନାମ ମୁହିଁ ଶବରୁଣୀ ।
କୁନ୍ତୀ ବୋଇଲେ ମଇତ୍ର ତେବେ ହୋଇବଇଁ
ସୁଖେ ଦୁହେଁ ଯାକ ଥିବା ଏ ଘରରେ ରହି ।
ଶୁଣି ଅଚିନ୍ତା ହୋଇ ସେ ଶବରୁଣୀ ରହେ
କହନ୍ତି ବୈଶମ୍ପାୟନ ଶୁଣ ଜନ୍ମେଜୟେ ।
ଭୀମ ଦୟା ଘେନି ପୁରୋଚନ ଯେ ଗୋସାଇଁ
ପାଣ୍ଡବମାନଙ୍କ ପଛେ ଶତ୍ରୁପାରେ ରହି ।
ଏହି ମନଭାବ ଏକା ସହଦେବ ଜାଣେ
ଆନକୁ ତା ଜଣାନାହିଁ ଜାଣେ କୁରୁରାଣେ ।
ଏଥୁ ଅନ୍ତରେ ଯେ ଭାଳି ବିଦୂର ଯେ ଚିତ୍ତେ
ବିବର ଖୋଳାଇ ଦେଲେ ଖଲ୍ୟକାର ହସ୍ତେ
ଜତୁ ଘରଠାରୁ ଗଙ୍ଗାକୂଳକୁ ଯେ ବୋଲି
ଖୋଳି ଖଲ୍ୟକାର ମାଟି ନିଏ ପେଲି ପେଲି ।
ବିଦୂର ବୋଇଲେ ଶୁଣ ଆହେ ସହଦେବ
ଆଜ ରାତ୍ର ଅର୍ଦ୍ଧେ ତୁମ୍ଭେ ବିବରେ ପଶିବ ।
ପାଞ୍ଚଭାଇ ଯାକ କୁନ୍ତୀ ମାତାଙ୍କୁ ଯେ ଘେନି
ଗୁପତେ ଚଳିବ ଏଥୁ ହୋଇ ବନଗାମୀ ।
ଶୁଣିକରି ସହଦେବ ଆନନ୍ଦିତ ହେଲେ
ପାଞ୍ଚଭାଇ ଯାକ ମିଳି ଗୁପ୍ତେ କଥା ହେଲେ ।
ସେ ବିବର ବାଟେ ପଶି ହୋଇଲେ ବାହାର
ଗଲାବେଳେ ଅଗ୍ନି ଜାଳି ଗଲା ବୃକୋଦର ।
ନାବରେ ବସି କୁମ୍ଭୀର ଦୈତ୍ୟ ଜଳେ ମାରି
ବକ ହିଡ଼ିମ୍ବକ ଦୈତ୍ୟ ସବୁଙ୍କୁ ସଂହାରି ।
ବାରବର୍ଷ ଯାଏ ବନବାସ ଭୋଗକଲେ
ପଞ୍ଚାଳ ଦେଶରେ ରାଧା ଚକ୍ରକୁ ବିନ୍ଧିଲେ ।
ଲକ୍ଷେ ରାଜା ଜିଣି ଦ୍ରୌପଦୀକି ବିଭା ହୋଇ
ମିଳିଲେକ ଇନ୍ଦ୍ରପ୍ରସ୍ଥେ ସେହି ପାଞ୍ଚଭାଇ ।
ତାହାଙ୍କୁ ଦେଖି କୌରବେ ହୋଇଲେ ବିରସ
ଏଥି ଉତ୍ତାରେ କହିବା ଶୁଣ ଆନ ରସ ।
ଅର୍ଜ୍ଜୁନ ପୁଣି ଦ୍ୱିତୀୟ ବନବାସ କଲେ
ସତ୍ୟବ୍ରତ ଲଙ୍ଘି ବାରବରଷ ବୁଲିଲେ ।
ଖାଣ୍ଡବବନ ଦହିଣ ଅଗ୍ନିକି ଯେ ତୋଷି
ବାସବ ଦେବତାଙ୍କୁ ସେ ଜିଣି ଶର ପେଶି ।
ଈଶ୍ୱରଙ୍କୁ ଜିଣି ଆଣିଲେକ ପାଶୁପତ
ଶତଧନୁ ବିବାଦେ ସେ ଜିଣି ପଦ୍ମନେତ୍ର ।
ଦ୍ୱାରକାରେ ପଶି ପାର୍ଥ ସୁଭଦ୍ରାକୁ ହରି
ଜିଣିଲେ ବଳରାମଙ୍କୁ ଶସ୍ତ୍ର କରେ ଧରି ।
ତହୁଁ ଆସିଣ ସେ ଇନ୍ଦ୍ରପ୍ରସ୍ଥେ କଲେ ବିଜେ
ପୁଣି ରାଜସୂୟ ଯଜ୍ଞ କଲେ ଧରିରାଜେ ।
ଲକ୍ଷେ ରାଜା ବରି ରାଜସୂୟ ଯାଗ କରି
ପୁରେ ବିଜେ ହେଲେ ଯୁଧିଷ୍ଠିର ଦଣ୍ଡଧାରୀ ।
ଦୁର୍ଯ୍ୟୋଧନ ଦେଖି ତାଙ୍କୁ ସହି ନ ପାରିଲା
ଶକୁନି କି ଘେନି ତହିଁ ବିଚାରେକ କଲା ।
ବୋଇଲା ମାରିବା କେହ୍ନେ ପାଂଡବଙ୍କୁ କହ
ତାହାଙ୍କୁ ଦେଖିଲାକ୍ଷଣି କମ୍ପଇ ମୋ ଦେହ ।
ହସ୍ତିନା ସଭାରେ ଦେଖ ବସିଲେକ ଆସି
ଶୁଣିଣ ଶକୁନି କହେ ତହିଁ ହସି ହସି ।
ବୋଇଲା ତହିଁକି ମୁହିଁ କରିବି ଉପାୟ
ପଶାଖେଳାଇବି ହାରିଯିବ ଧର୍ମରାୟ ।
ମୁଁ ଯେବେ ଗାନ୍ଧାରସେନ ପୁତ୍ର ହୋଇଥିବି
ଯାବତ ଦାନ ପାଡ଼ିଣ ତୋତେ ଜଣାଇବି ।
ଏକାଙ୍ଗ ଚକ୍ରବର୍ତ୍ତୀ ଯେ କରାଇବି ତୋତେ
ହରାଇବି ପାଣ୍ଡବଙ୍କୁ ପଶିବେ ବନସ୍ତେ ।
ଦ୍ୱାଦଶ ବରଷ ଯାଏ ବନେ ବୁଲାଇବି
ଅଜ୍ଞାତ ବନବାସ ଯେ ବର୍ଷେ କରାଇବି ।
ଦେଶଘୋଷ ଜନ ଆଦି କିଛି ନ ଦେଖିବେ
ଅନ୍ନ ନଖାଇ ପାଣ୍ଡବେ ପୁଣି ମରିଯିବେ ।
ଏହା କହି ଧର୍ମରାଜେ ଡକାଇଣ ପାଶ
ବୋଇଲେ ପଶାଖେଳିବା କେତେବାଜି ଆସ
ଧର୍ମଙ୍କର ସମ୍ମତିଙ୍କୁ ଜାଣିଣ ଶକୁନି
ବୋଲେ କି ଦ୍ରବ୍ୟ ରଖିବା ହାଲ ଜିଣାବେନି

ଦେଖିବି ବେନିଭାଇଙ୍କ ହାର ଜିଣାଆଜ
ଶୁଣିକରି ମନେ ମନେ ହସେ କୁରୁରାଜ ।
ଯୁଧିଷ୍ଠି ବୋଇଲେ ଆଛା ବସତେବେ ମାମୁଁ
ଧନଦ୍ରବ୍ୟଯାକସବୁ ତେଜିଲି ପ୍ରଥମୁଁ ।
ଶକୁନି ବୋଇଲେ ତେବେ କହିଲି ମୁଁ ପଦେ
ସତ୍ୟକରି ବସ ତୁମ୍ଭେ ବେନିଭାଇ ହୃଦେ ।
ପଶାରେ ଯେ ହାରିବ ସେ ଛାଡ଼ିରାଜ୍ୟଘୋଷ
କରିବ ଦ୍ୱାଦଶବର୍ଷ ଯାଏ ବନବାସ ।
ଅଜ୍ଞାତ ହୋଇ ରହିବ ତେରମାସ ପୁଣି
ଜଣାପଡ଼ିଲେ ଲେଉଟି କରିବ ଭ୍ରମଣି ।
ରାଜ୍ୟକୁସେ କେଭେ ଆଉ ବର୍ଷେ ନ ଆସିବ
ଏରୂପେ ସତ୍ୟ କଲେଟି ପଶା ଯେ ଖେଳିବ ।
ଶୁଣି ଯୁଧିଷ୍ଠିର ବୋଇଲେକ ଆଛା ଆଛା
ମାନଗୋବିନ୍ଦ ବୋଇଲେ ଆମ୍ଭର ଏ ବାଞ୍ଛା ।
ଏ ରୂପେ ସତ୍ୟ କରିଣ ଯୁଧିଷ୍ଠି ଠାକୁରେ
ଧରି ମଞ୍ଚାଳିଲେ କାଠି ସଭାର ମଧରେ ।
ବୋଇଲେ ଆମ୍ଭର ଦଶଦାନ ହେଲା ଜାଣ
ତୁମ୍ଭର ପଡ଼ିବ ଯେବେ ପଞ୍ଚୁଆତି ଜିଣ ।
ଆମ୍ଭର ଯେ ଦଶଦାନ ହେଲା ଶୁଣ ମାମୁଁ
ଏଥି ଗୋଳ କଲା ଲୋକ ନ ତରିବ ଧର୍ମୁ
ଏତେ ବୋଲି ଯୁଧିଷ୍ଠି ପକାନ୍ତେ ଦାନଡାକି
ପଡ଼ିଲା ପଞ୍ଚୁଆତି ଯେ କୂଟ ନୁହଇ କି ।
ଯୁଧିଷ୍ଠି କପଟ ପଶା ବୋଲି ନ ଜାଣନ୍ତି
ଦାନ ପଡ଼ନ୍ତେ ହସିଲା ରାଜା କୁରୁପତି ।
ଧନଦ୍ରବ୍ୟଯାକ ସବୁ ଦୁଃଶାସନ ନେଲା
ଆପଣାର କତିରେସେ ନେଇ କୁଢ଼ାଇଲା ।
ଲେଉଟି ଯେ ଯୁଧିଷ୍ଠିର ଲୋଡ଼ି ରାଜ୍ୟଘୋଷ
ଶୁଣିଣ ଶକୁନି ମନେ ହେଲା ହସ ହସ ।
ଯୁଧିଷ୍ଠିର ପକାଇଲେ ଡାକି ଦଶଦାନ
ପଡ଼ିଲା ଯେ ପଞ୍ଚୁଆତି ହାରିଲେ ରାଜନ ।
ଦେଖିଣ ସେ ଦୁଃଶାସନ ହସିଣ ଚହଟି
ବୋଇଲେ ଏବେହେ କିସ ଲୋଡ଼ିବ ଯୁଧିଷ୍ଠି
ଯୁଧିଷ୍ଠି ବୋଇଲେ ଅଛନ୍ତି ମୋ ଚାରିଭାଇ
ତାଙ୍କୁ ଲୋଡ଼ିଅଛି କାର୍ଯ୍ୟ ଲଭିବାର ପାଇଁ ।
ଏତେ ବୋଲି ଯୁଧିଷ୍ଠିର ଧରି ପଶାକାଠି
ପଡ଼ ଦଶ ଦାନ ବୋଲି ଛାଡ଼ିଦେଲେ ମୁଠି ।
ପଡ଼ିଲା ପଞ୍ଚୁଆତି ଯେ ଜିଣିଲେ କୌରବ
ହସିଲେକ କୁରୁବାଳ ହୋଇ ମତ୍ତଗର୍ବ ।
ଦୁଃଶାସନ ବୋଲେ ସଭାମଧୁ ଉଠି ଧର୍ମ
ଅଦୃଷ୍ଟହାନି ଲୋକର ଅଛି କେଉଁ କର୍ମ
ସବୁ ହାରି ଏ ସଭାରେ ବସିଛି ଅଲାଜେ
ଉଠହେ ଯୁଧିଷ୍ଠି ବୋଲି ଝିଙ୍କେ ବେନି ଭୁଜେ
ଯୁଧିଷ୍ଠି ବୋଇଲେ ଆରେ ରହରହ ଦୂଃଶା
ଆଉ ଦ୍ରବ୍ୟେ ଲୋଡ଼ିବାକୁ ଅଛି ମୋର ଆଶା
ପୀଢ଼ରେ ମୋଦ୍ରୌପଦୀକି ଲୋଡ଼ିବି ମୁଁ ଜାଣ
ତାଙ୍କୁ ହାରିଲେ ସରିବ ଆମ୍ଭ ବଡ଼ ପଣ ।
ଜିଣିଲେକ ରାଜ୍ୟଘୋଷ ସବୁ ଯିବି ଜିଣି
ଶୁଣିଣ ହେଉ ବୋଲିଣ ହସିଲା ଶକୁନି ।
ବୋଇଲା ଶୁଣିଣ ଏବେ ସବୁପଛେ ନିଅ
ଶୁଣିଣ ତା ପଶାକାଠି ଧରି କୁନ୍ତୀପୁଅ ।
ମନେ ମନେ ପାଞ୍ଚପକାନ୍ତେ ସେ ଦଶଦାନ
ପଡ଼ିଲାକ ପଞ୍ଚୁଆତି ହାରିଲେ ରାଜନ ।
ବୁଝିଲେ ମହାକପଟ ଅଟେ ପଶାକାଠି
ଯୁଧିଷ୍ଠି ପରା ପୁରୁଷ ନ ପାରିଲେ ମେଣ୍ଟି ।
ଏଣୁ ସୁଜନେ କପଟ ଅଟେ ବଡ଼ ପାପ
କପଟୀ ଲୋକେ ଜାଣତ ଅଶ୍ଳେହ୍ୱନ୍ତି ଲୋପ ।
ଦୂର୍ଯ୍ୟୋଧନ ରାଜା ବଡ଼ କପଟ ଯେ କରି
କେତେକାଳ ହେଲେ ରହିବ ସେ ଦେହଧରି
ଯୁଧିଷ୍ଠି ଠାକୁର ନିଜ ପତ୍ନୀ ଦେଲେ ହାରି
କର୍ଣ୍ଣ ଦୂଃଶା ଦୁହେଁ ହସନ୍ତି ଯେ ଆଖିମାରି ।
ଦୂଃଶାସନ ବୋଇଲେ ହେ ଯୁଧିଷ୍ଠିର ଶୁଣ
ସଭାକୁ ତୋର ପତ୍ନୀକି ଆଣିବି ଏକ୍ଷଣ ।
ଏତେ ବୋଲିଣ ପଶିଲା ଯାଇଁ ଅନ୍ତଃପୁରେ
କାହିଁସେଦ୍ରୌପଦୀବୋଲି ଖୋଜେ ପଶିଘରେ
ଦେଖିଲା ଆସନେ ବସି ଅଛନ୍ତି ପାଞ୍ଚାଳୀ
ସୁବର୍ଣ୍ଣର ଜ୍ୟୋତିପ୍ରାୟ ଦିଶେ ଦେହ ଝଳି
ଦେଖିଣ ହୁଙ୍କାର ନାଦେ ଦୂଃଶାସନ ଧାଇଁ
ପାଞ୍ଚାଳୀ କେଶ ଧରିଣ ଆଣେ ଘଉଡ଼ାଇ ।
ବୋଇଲା ସଭାର ତଳେ ବସିଛି ତୋ ପତି
ଆମ୍ଭଙ୍କୁ ସେ ସମର୍ପନ୍ତେ ଆସିଲୁ ତୋ କତି
ଦ୍ରୌପଦୀ ବୋଇଲେ ଆଜ ରହରେ ଚଣ୍ଡାଳ
ସ୍ୱାମୀ ମୋର ନାହାନ୍ତି ତ ଧରୁ କିମ୍ପା ବାଳ
ଏତେ ବୋଲିଣ ରୋଦନ କରନ୍ତି ମୃଗାକ୍ଷୀ
ବାଳ ଧରି ଦୁଃଶାସନ ଆଣେ ଝିଙ୍କି ଝିଙ୍କି
ସଭାତଳେ ନେଇ କରନ୍ତେଣ ବିବସନ
ଚିନ୍ତନ୍ତି ଦ୍ରୌପଦୀ ମନେ ଧର୍ମ ନିରଞ୍ଜନ ।
ବୋଲନ୍ତି ଭୋ ପ୍ରଭୁ ମୋତେ ରକ୍ଷାକର ଏଥୁ
ସଭାରେ ମୋ କାନୁସ୍ତନ କେହି ନ ଦେଖନ୍ତୁ
ଏ ମାନ ମହତ ରଖ ମୋର ନାରାୟଣ
ଏତେବୋଲି ମନେ ଚିନ୍ତା କଲେ ଭଗବାନ

ଦ୍ରୌପଦୀ ଦେବୀଙ୍କ କଥା ଗୋବିନ୍ଦ ଜାଣିଲେ
ଛାୟାମାୟାଙ୍କର ହସ୍ତେ ବସନ ସେ ଦେଲେ
ଦ୍ରୌପଦୀ ଦେବୀରପାଶେ ମିଳିଲେ ସେଆସି
ରହିଲେ ବାମଦକ୍ଷିଣେ କାହାକୁ ନ ଦିଶି ।
ପାଞ୍ଚାଳୀକି ଦୁଃଶାସନ କରନ୍ତେ ଉଲଗ୍ନ
ତକ୍ଷଣେ ଛାୟା ମାୟା ଯେ ପିନ୍ଧାନ୍ତି ବସନ ।
ପର୍ବତ ପ୍ରାୟେ ହୁଅନ୍ତେ ଆଗେ ବାସ କୁଢ଼
ତାହାଦେଖି ହସନ୍ତି ଯେ କଉରବ ମୂଢ଼ ।
ପାଣ୍ଡବେ ବିରସ ହୋଇ ବସିଛନ୍ତି ତଳେ
ଯୁଧିଷ୍ଠିରଙ୍କି ବୃକୋଦରବୋଲେକୋପାନଳେ
ଏତେ କଥା ଦେଖି ଦେଖି ସହିଛୁ କିପରି
ଆଜ୍ଞାଦେଲେ ଶିରମାନ ପକାନ୍ତି ମୁଁ ତୁରି ।
କୁରୁସଭାଯାକ ମୁହିଁ କରନ୍ତି ଧୂମନ୍ତ
ଗଦାଘାତେ ମୁଣ୍ଡମାନ କରନ୍ତି ବିନ୍ୟସ୍ତ ।
ଯୁଧିଷ୍ଠି ଠାକୁରଙ୍କର ଲାଗି ଏତେ ଦଣ୍ଡ
ନୋହିଲେ କୌରବଙ୍କର ରହନ୍ତା କି ପିଣ୍ଡ ।
ଏଥୁଅନନ୍ତରେ ବାଣୀ ଶୁଣ ଜନ୍ମେଜୟେ
ଦ୍ରୌପଦୀ ଚାହିଁଲେ ମହାକ୍ରୋଧେ ସଭାଯାଏ
କୁରୁ ସଭାରେ ଉଠିଲା ଜଳି ଅଗ୍ନି କୁଢ଼
ପଳାଇଲେ କୁରୁବଳ ତହୁଁ ଚାରିଆଡ଼ ।
ପାଣ୍ଡବଙ୍କ ପାଶେଛନ୍ତି ଦ୍ରୁପଦ ଦୁହିତୀ
ଯୁଧିଷ୍ଠି ଚାହିଁଲେ ପଳାଇଲେ କୁରୁପତି ।
ତାହାଦେଖି ଧର୍ମରାୟ କରନ୍ତି କାରୁଣ୍ୟ
ବୋଲନ୍ତି ଭାଇଙ୍କୁ ମୋର ପଡ଼ିଲା କଷଣ ।
ମଥାରେ ବସନ ଗୋଟି ଧର୍ମରାୟ ଦେଇ
ଚଳିଲେ ବନବାସକୁ କାହାକୁ ନ କହି ।
ତାହାଙ୍କ ପଛେ ପଛେ ଯେ ଗଲେବୃକୋଦର
ହସ୍ତରେ ଗଦା ବୁଲାଇ ଧରି ବେନିକର ।
ତାହାଙ୍କର ପଛେ ପାର୍ଥ ଗଲେ କୋପହୋଇ
ହସ୍ତେ ବିଞ୍ଚେ ବୋଲି ଭୀମସେନ ପଛେ ଥାଇ
ଅର୍ଜ୍ଜୁନ ପଛେ ନକୁଳ କୁନ୍ତୀ କରେ ଧରି
ଚାଳଇ କରକୁ ସହଦେବ ଚାହିଁକରି ।
ଦ୍ରୌପଦୀ ଦେବୀ କେଶକୁ କରିଣ ମୁକୁଳା
ପଶିଲେକ ବନେ ଯାଇ ପଞ୍ଚ ପଣ୍ଡୁବଳା ।
ଆନନ୍ଦରେ ରହିଲେ ସେ ଋଷିଗଣ ସଙ୍ଗେ
ବିହରନ୍ତି ବନରେ ସେ ମୃଗୟାର ରଙ୍ଗେ ।
ସେବନ୍ତି ଗୁରୁଙ୍କ ପାଦେ ଫଳମୂଳ ଦେଇ
ଦ୍ୱାଦଶ ବର୍ଷ ବୁଲନ୍ତି ବନେ ପାଞ୍ଚଭାଇ ।
ବିରାଟ ରାଜ୍ୟରେ ଯାଇ ରହିଲେ ଅଜ୍ଞାନ୍ତେ
ଉଦ୍‌ଯୋଗପର୍ବେ ମିଳିଲେଯାଇଁ ଇନ୍ଦ୍ରପ୍ରସ୍ଥେ ।

ଜଗନ୍ନାଥ ପ୍ରଭୁଙ୍କୁ ପେଶିଲେ କରି ଦୂତ
ହସ୍ତିନାକୁ ବିଜେ କରି ଚଳିଲେ ଅଚ୍ୟୁତ ।
ବାଟରେ ଯାଇ ଭେଟିଲେ ହରି ବେଦବ୍ୟାସ
ଋଷିଙ୍କି ଦେଖି ଗୋବିନ୍ଦ ହେଲେ ହସ ହସ
ଚରଣ ସେବି ଋଷିଙ୍କ କରି ପାଦପୂଜା
ହସ୍ତିନାକୁ ଯିବୁବୋଲି କହିଦେବ ରାଜା
ଯୁଧିଷ୍ଠିରଙ୍କ ଦୂତପଣେ ଯାଉଛି ଯେ ଜାଣ
ଶୁଣିଣ ସେ ବେଦବ୍ୟାସ ତୋଷ ହେଲେ ପୁଣ
କୃଷ୍ଣଙ୍କୁ ସଙ୍ଗେ ଘେନିଣ ଯାନ୍ତି ଋଷି ପଥେ
ମିଳିଲେ ବିଦୁର ପୁରେ ଯାଇ ଜଗନ୍ନାଥେ ।
ଦେଖିଣ ବିଦୁର ହରିଙ୍କି ଯେ ସେବା କଲେ
ପାଳିଣ ତାହାଙ୍କୁ ବାସୁଦେବ ବରଦେଲେ ।
କହନ୍ତି ବୈଶମ୍ପାୟନ ଶୁଣ ଜନ୍ମେଜୟେ
ବିଦୁର୍ ଘରେ ଯେ ଜାଣ ଥିଲେ କୁନ୍ତୀମାୟେ
ବାରତା ପାଇ ମିଳିଲେ ସେହୁ କୃଷ୍ଣ ପାଶ
ଉଠିଲେ ଆସନ ତେଜ୍ୟା କରି ଜଗଦୀଶ ।
ବିନୟ ଭାବରେ ହରି ହୋଇ କୃତାଞ୍ଜଳି
କହନ୍ତି ସେ ଶୋକଭରେ ଭୋଜର ଦୁଲାଳି ।
ମୋହର ଅବସ୍ଥା ଯେତେ କହିବି କି ହରି
ବୁଝିଲେ ଗାନ୍ଧାରୀ ଏକା ଭୁଞ୍ଜେ ଭୋଗଶିରୀ
ଶାହାଡ଼ା ବୃକ୍ଷକୁ ବିଭାହେବା ବାଳକାଳେ
ଧୃତରାଷ୍ଟ୍ରଙ୍କୁ ଖଞ୍ଜିଲେ ବ୍ୟାସେ ବୁଦ୍ଧିବଳେ ।
ଗାନ୍ଧାରୀ ନାମେ ବାଇଶି ଜଣ ରାଣ୍ଡୀ ମଲେ
ତାହାର କର୍ମେ ଏମନ୍ତ ବିହି ଲେଖିଥିଲେ ।
ପଞ୍ଚ କଟକେ ହୋଇଲେ ତାର ପୁତ୍ରେ ରାଜା
ସ୍ୱର୍ଗର ଇନ୍ଦ୍ର ପ୍ରାୟେକ ପାଉଅଛି ଶୋଭା ।
ଦୁର୍ବାସା ପ୍ରସାଦୁଁ ପାଇଲି ମୁଁ ଜପାମାଳୀ
ପଣ୍ଡୁରାଜା ଭାରିଜା ମୁଁ ଭୋଜର ଦୁଲାଳୀ ।
ଶ୍ରୀଧର୍ମ ଅଂଶରେ ଜନ୍ମ ହୋଇଲେ ଯୁଧିଷ୍ଠି
ଜନ୍ମିଲାକ ବୃକୋଦର ପବନ ଅଂଶେଟି ।
ବାସବ ବଂଶରୁ ଜନ୍ମ ହେଲେ ଫାଲଗୁନି
ଦ୍ୱିତୀକୃଷ୍ଣ ବୋଲି ନାମ ଦେଲେ ଚକ୍ରପାଣି ।
ନକୁଳ ସହଦେବ ଯେ ଅଶ୍ୱିନୀଙ୍କ ଚାଟ
ଆକାଶରୁ ସେ ଦୁହିଁଙ୍କୁ ମିଳିଲାକ ପାଟ ।
ଏଡ଼େଅଂଶ ଘେନିମୋର ଗର୍ଭୁ ହେଲେଜାତ
କାହିଁରେ ନୋହିଲେ ଗଣା ଯେହ୍ନେ ଅରକ୍ଷିତ ।
ମୂଲିଆ ପ୍ରାୟ ବୁଲିଲେ ବନେ ଯାଇକରି
ମୋର ପୁତ୍ରଙ୍କର କର୍ମେ ଲେଖା ଏତେସରି ।
ସିଂହଦ୍ୱାରେ ଜନ୍ମିହେଲେ ଶୃଗାଳମୋପୋଏ
ଭିକ୍ଷା ମାଗିଣ ବଞ୍ଚିଲେ ଦିନ ସବୁଠାଏଁ ।

କେତେକଷ୍ଟ ବଞ୍ଚିଲେ ମୋପୋଏ ଦିନକାଳ
ମୁଁ ସଙ୍ଗେ ଥିଲେ ଦିଅନ୍ତି ତାଙ୍କୁ ବୁଦ୍ଧିବଳ ।
ଅସୁର ଆଗେ ପଡ଼ି ବା ମଲେ ମୋର ପୁତ୍ରେ
କି ଅବା ବନ ପୋଡ଼ିଲେ ନାହାନ୍ତି ଜୀବିତେ
ଅପୁତ୍ରିକ ଲୋକ ପ୍ରାୟ ହେଲି ଜଗଦୀଶ
ପୃଥ୍ୱୀ ଅନ୍ଧାର ଦିଶିଲା ଏବେ ପୀତବାସ ।
କେହୁ ଘେନିଗଲା ମୋର ଅନ୍ଧର ଲଉଡ଼ି
ହା ହା ପୁତ୍ରେ ବୋଲି ଉଠିଲେକ ଡ଼କାପାଡ଼ି
ବିଷ୍ଣୁ ଆଶ୍ରେ ପାଣ୍ଡବେଯେ ବୋଲୁଥାନ୍ତିଲୋକ
ତୋତେ ଆଶ୍ରେକରି ହରି ହେଲେ ଅବିବେକ
ବ୍ରହ୍ମାଣ୍ଡ କରତା ତୋତେ ବୋଲୁଥାନ୍ତିହରି
ବନେ ବୁଲାଇଲୁ ତାଙ୍କୁ ରଖି ଆଚ୍ଛା କରି ।
ହରି ଅର୍ଜ୍ଜୁନ ଯେ ଏକା ବୋଲୁଥାନ୍ତି ସର୍ବେ
ତେଣୁ ବନେ ମରାଇଲୁ ତାଙ୍କୁ ବାସୁଦେବେ
ହରି ବୋଇଲେ ଆକୁଳ ନୁହ ମାଗୋ କିଛି ।
ସୁଲଭ କଥାରେ ଜାଣ ଅଶୁଭ ନ ପାଞ୍ଚି ।
ଧର୍ମକୁ ନ ଲଙ୍ଘି ପୁତ୍ରେ ତୋର ବନେଗଲେ
ତାହାଙ୍କ କଥା କହିବା ଶୁଣ ଏବେ ଭଲେ ।
କେତେ ଦୁଷ୍ଟଦାନବଙ୍କୁ ମାଇଲେ ତୋବସି
ସେ କଥାମାନଙ୍କୁ ତୁମ୍ଭେ ଶୁଣିନାହଁ କିଛି ।
ତୋର ପୁତ୍ର ଘେନି ଏବେ ରହିଛି ପୃଥିବୀ
ନୋହିଲେ ସଂସାରଯାକ ଯାଆନ୍ତାଣି ବୁଡି ।
ଯୁଧିଷ୍ଠି ତୋ ପୁତ୍ର ପ୍ରତ୍ୟକ୍ଷରେ ନିରଞ୍ଜନ
ତାଙ୍କୁ ନ ଦେଖିଲେ ମୋର ନ ସରଇଦିନ ।
ସତ୍ୟକୁ ନ ଲଙ୍ଘି ପଶିଲେ ସେ ଯାଇବନ
କେତେ ଦୁଷ୍ଟ ଦାନବଙ୍କୁ ମାଇଲେଣି ପୁଣ ।
ମହୀ ଭାରକୁ ଉଶ୍ୱାସ କଲା ବୃକୋଦର
ନାଶିଲା ଅନ୍ଧକ ଦୈତ୍ୟ ନକୁଳ କୁମର ।
ନିବାତକବଚକୁ ଯେ ନାଶିଲେ ଅର୍ଜ୍ଜୁନ
ବଜ୍ରକବଚର ସେହୁ ଅଟଇ ନନ୍ଦନ ।
ହିରଣ୍ୟ କବଚ ବୋଲି ଥିଲା ତାର ସୁତ
ତପୋଧନ ରୂପେ ହରିଲାକ ଧର୍ମସୁତ ।
ସମର କରି ମାଇଲେ ତାହାକୁ ଅର୍ଜ୍ଜୁନ
ଘୋଷଯାତ୍ରା ପୁଣ କରି ଗଲା ଦୁର୍ଯ୍ୟୋଧନ ।
ମହା ସନ୍ଦର୍ବରେ ସେହୁ ପୃଥ୍ୱୀ ହବିଶାନ୍ତେ
ଚିତ୍ରସେନ ଗର୍ନ୍ଧବ ଯେ ଦେଖି ଶୂନ୍ୟ ପଥେ
ଦୁର୍ଯ୍ୟୋଧନକୁ ଦେଖି ସେ ସହି ନପାରିଲା
ଯୁଦ୍ଧରେ ଜିଣି ତାହାକୁ ରଥେ ବାନ୍ଧି ନେଲା
ଭୀଷ୍ମ ଦ୍ରୋଣ କର୍ଣ୍ଣ ଶଲ୍ୟ ପଳାଇଲେ ଛାଡ଼ି
ବନ୍ଧାହୋଇ ଦୁର୍ଯ୍ୟୋଧନ ରଥେ ଅଛି ପଡ଼ି ।
ଯୁଧିଷ୍ଠି ଦେବ ଚାହିଁଲେ ଅର୍ଜ୍ଜୁନର ମୁଖ
ବୋଇଲେ କୁରୁରାଜାଙ୍କୁ ନେଲା କେଉଁଲୋକ
ଆମ୍ଭପାଖୁଁ ଆମ୍ଭଭ୍ରାତେଯେବେ ବାନ୍ଧିନେଲେ
ବଂଶକୁ ଆମ୍ଭର ନିନ୍ଦା କରିବେ ଯେ ଭଲେ ।
ଫିଟା ଏ ବନ୍ଧନ ବେଗେ ଯାଉ ଦୂର୍ଯ୍ୟୋଧନ
କୁରୁରାଜା କଥାକୁ ନ ଘେନ ଅଭିମାନ ।
ଶୁଣିଣ ଅର୍ଜ୍ଜୁନ ଚଳିଗଲା ସେହିଲାଗେ
ଚିତ୍ରସେନକୁ ବିନୟେ କହି ବୋଧମାର୍ଗେ ।
ବୋଇଲା ଯୁଧିଷ୍ଠି ତୋତେ ଦେଇଛନ୍ତି ଆଜ୍ଞା
ଦୂର୍ଯ୍ୟୋଧନକୁ ଛାଡ଼ିଣ ରଖ ତୋ ପ୍ରତିଜ୍ଞା ।
ଶୁଣି ଚିତ୍ରସେନ ଦେଲା ବନ୍ଧନରୁ ଫେଇ
ପକାଇଲା କୁରୁରାଜା ଶୀଘ୍ରଗତି ହୋଇ ।
ଏଥିଉତ୍ତାରେ କହିବା ମଧ ମାତ ଶୁଣ
ଦ୍ରୌପଦୀଙ୍କି ଜୟଦ୍ରଥ ହରିନ୍ୟନ୍ତେ ପୁଣ ।
ତୁମ୍ଭ ପାଞ୍ଚପୁତ୍ର ସେ ଖବର ପାଇଲାରୁ
ଧାଇଁଲା ତକ୍ଷଣେ ଭୀମସେନ ଉଠି ଘରୁ ।
ଜୟଦ୍ରଥକୁ ଦେଖିଣ ବହୁ ଶାସ୍ତି ଦେଲା
ସାତବେଣ୍ଟ କରି କେଶ କାଟି ପକାଇଲା ।
ମୁକୁଟ ଧରି ମୋଡ଼ନ୍ତେ ରଖିଲେ ଯୁଧିଷ୍ଠି
ବୋଇଲେ ଆମ୍ଭର ଭଗ୍ନୀ ବିଧବା ହେବଟି ।
ବେଗେ ଛାଡ଼ିଦିଅ ସେହୁ ଏଠାରୁ ପଳାଉ
କୁରୁସଭାରେ ସବୁରି ଆଗେଯାଇ କହୁ ।
ଯୁଧିଷ୍ଠିର ଆଜ୍ଞା ଘେନି ରହିଲା ତା ପ୍ରାଣ
ଜୟଦ୍ରଥର ଯେ କଥା କହିବାନା ଶୁଣ ।
ସେଠାରୁ ସେ ଭୀମସେନ ମନେକ୍ରୋଧହୋଇ
ଗାଲେ ଚୂନ ଗାଲେକଳା ଦେଇ ପୁଣନେଇ ।
ଗୋଡ଼ତଳେ ନେଇ ପୁଣ ଗଳାଇଣ ଦେଲା
ସେହିଠାରୁ ଜୟଦ୍ରଥ ପଳାଇଣ ଗଲା ।
ଏଥୁ ଅନନ୍ତରେ ଶୁଣ ଭୋଜର କୁମାରୀ
ଗୌତମ ତୀର୍ଥ ପାଣ୍ଡବେ ଗଲେ ବିଜେକରି ।
ସିଂହ ବୃହସ୍ପତି ହୋନ୍ତେ ଗୋଦାବରୀ ତଟେ
ମାନ ଗୋବିନ୍ଦକୁ ଲଜ୍ଜା ଦେଲେ ତୋର ଚାଟେ
ନାଗବଳ ମାରି କୁରୁବଳ ରକ୍ଷାକଲେ
ବଳିବେଲାଳକୁ ସେହିଠାରେ ଚିହ୍ନାଇଲେ ।
ତହିଁଉତ୍ତାରୁ ନକୁଳ କଥା ପୁଣ ଶୁଣ
ରେବାସୁର ଦୈତ୍ୟ ସଙ୍ଗେ ପ୍ରୀତିକଲେ ଜାଣ
କାଳଞ୍ଜି ମାରି ମାଇଲେ ପୁଣି ମେରୁଶୃଳ
ବିରାଟ ଦେଶେ ଅଜ୍ଞାତ ହେଲେ ତୋର ବାଳ
ମଲ୍ଲ ବ୍ୟାଘ୍ର ଦୁହିଁକି ଯେ ମାରି ବୃକୋଦର
ଦ୍ରୌପଦୀ ଲାଗି କୀଚକ ଗଲେ ଯମପୁର ।

ବିରାଟ ନିମନ୍ତେ ତ୍ରିଗର୍ତ୍ତର ଦର୍ପ ଧ୍ୱଂସି
ଗୋଧନ ହରଣେ କୁରୁ ମତ୍ସ୍ୟଦେଶେ ପଶି ।
ଉତ୍ତରକୁ ଯେ ଅର୍ଜ୍ଜୁନ ଘେନି କଲେ ଯାହା
ନ ମାଇଲା ପରକାର୍ଯ୍ୟ କରିଣ ସେନେହା ।
କୋଟି ସିଂହର ଯେ ବଳ ବହି ବଳରାମେ
ସୁଭଦ୍ରା ହରଣେ ପାର୍ଥ ଜିଣିଲା ସଂଗ୍ରାମେ ।
ଶତଧନୁ ଶରଣେ ସେ ଜିଣିଲାକ ମୋତେ
ଜିଣିଲା ଶରେ ସାଗର ବାନ୍ଧି ହନୁମନ୍ତେ
ଧଇଲା ଧନୁହୁଳରେ ସପତ ବ୍ରହ୍ମାଣ୍ଡ
ଦହିଲା କିଞ୍ଚିତେ ମେଦିନୀ ସେ ନବଖଣ୍ଡ ।
ପାଞ୍ଚାଳ ଦେଶେ ପଶିଣ ଲକ୍ଷେ ରାଜା ଜିଣି
ଦ୍ରୌପଦୀକି ବିଭାହେଲେ ବୀର ଚୂଡ଼ାମଣି ।
କିରାତ ରୂପେ ପୁଣି ସେ ଦ୍ୱିତୀ ବନବାସେ
ଆଣି ପାଶୁପତ ଈଶ୍ୱରଙ୍କୁ ଜିଣି ତୋଷେ ।
ଖାଣ୍ଡବବନ ଜିଣିଲେ ପୁଣି ପୁରନ୍ଦର
ଲୁହୂ ବୁହୁ ବ୍ୟାଧି ଭଲକଲେ କୃଶାନୁର ।
ମନଭେଦୀ ଶର ପାର୍ଥକୁ ସେ ପୁଣି ଦେଲେ
ଗୋସିଂହ ଜୟ ସିଂହକୁ ପାର୍ଥ ସଂହାରିଲେ
ପାଣ୍ଡବାସୁରକୁ ମାରି ପୃଥ୍ୱୀଭାର ରଖି
ପାଣ୍ଡବ ନାମକୁ ତେଣୁ ଦେଲେ ଅଷ୍ଟଆଖି
ଶୁଣ ଗୋ ଜନନୀ ତୋର ପୁତ୍ରଙ୍କୁ ମହିମା
ସଂସାର ଲୋକଯାକେ ସେ ଅଟେ ନରୋତ୍ତମ
ବିଷ୍ଣୁ ସଦୃଶେ ସଂସାରେ ଅଛି ତାଙ୍କ ପୂଜା
ଯୁଧିଷ୍ଠି ପୁତ୍ର ପ୍ରତ୍ୟକ୍ଷେ ତୋର ଧର୍ମରାଜା ।
ଶିମୁଳି ବୃକ୍ଷମୂଳେ ସେ ଅଭିଷେକ ହୋଇ
ବାରୁଣାବନ୍ତେ ଅଛନ୍ତି ଆସି ପାଞ୍ଚଭାଇ ।
ଯେତେ ରାଜାମାନେ ଆସିଛନ୍ତି ତାଙ୍କପାଶେ
ମୋତେ ହତକରି ପେଷିଦେଲେ ଧର୍ମଶିଷ୍ୟେ
ସାକ୍ଷାତେ ବିଷ୍ଣୁ ମୁଁ ଯାଉଅଛି ପଡ଼ା ମାଗି
ନଦେଲେ ହୋଇବ ଜାଣ ସେହିଶିରୀତ୍ୟାଗୀ
ବିଦୂର ବୋଲେ ଯୁଧିଷ୍ଠି କେଡ଼େ କର୍ମବନ୍ତ
ବ୍ରହ୍ମାଣ୍ଡର ହର୍ତ୍ତାକର୍ତ୍ତା ହରି ହେଲେ ଦୂତ ।
କେତେ ରାଜା ଥିବେ ବସି ହସ୍ତିନା ସଭାରେ
ମାରିବକି ଦୂର୍ଯ୍ୟୋଧନ କୃଷ୍ଣ କହିବାରେ ।
କପଟ କୂଟ ମନ୍ତ୍ରୀତ ଅଛଇ ଶକୁନି
କୁରୁବଂଶ ନାଶିବାକୁ ଆସୁଛି ସେ ପୁଣି ।
ତା ବାକ୍ୟ ପଳାଉନାହିଁ ଦୁର୍ଯ୍ୟୋଧନ ତଳେ
ଯାହା ବୋଲୁଛି ତାହାତ କରୁଛି ତତ୍କାଳେ
ପଥର ଘରେ ମାରିଛି ଭରି ତାର ବଂଶ
ଜାଣୁ ଜାଣୁ ଘରେ ଆଣି ରଖେ ଶତ୍ରୁ ଶେଷ
ଦୋଚାରୀ ଭାରିଯା ଜାଣ ରିପୁବଳ ମନ୍ତ୍ରୀ
ଉଚ୍ଚଲୋକ ନୀଚଲୋକ ସଙ୍ଗରେ ପୀରତି ।
ଯେଉଁ ସଭାରେ କପଟ କୂଟଲୋକେ ଥାନ୍ତି
ସାଧୂଙ୍କୁ ନିନ୍ଦା କରିଣ ମୂର୍ଖେ ପ୍ରଶଂସନ୍ତି ।
ଅସଦବନ୍ଧୁ ଅଭାବ ମିତ୍ର ଜାଣ ଯେତେ
ଏମାନଙ୍କୁ ବିଶ୍ୱାସ ନ ଯିବ କଦାଚିତେ ।
ସେଠାରେ ଶକୁନି ମନ୍ତ୍ରୀ ଦେଖିଲେ ଚଳିବ
ସେ ସଭାକୁ କେଉଁପରି ଯିବ ବାସୁଦେବ ।
ବଧିର କେବେ ଶୁଣିଛି କି କମ୍ବୁର ବାଣୀ
ତସକର ସଭାରେ କି ସୁବିଦ୍ୟା ବଖାଣି ।
ପିଶାଚ ସଭାରେ ବିପ୍ର ସୁବେଦୀର ପ୍ରୀତି
ପଣ ପାଇଲେ ଶୂଦ୍ରକୁ ବିପ୍ର ନ ମାନନ୍ତି ।
ଆଗେ ଓଲଗିଲେ ମଥା ହଲାଇ ଦିଅନ୍ତି
ଆମ୍ଭେ ଏକା ବଡ଼ଲୋକ ବୋଲି ବିଚାରନ୍ତି ।
ସେଠାକୁ ମଧ୍ୟସ୍ଥ କିମ୍ପା ହେଲ ନାରାୟଣ
ସେହି ଭାବରେ ବିବେକୀ ନାହାନ୍ତି କେ ଜାଣ
ଭଲର ପ୍ରାୟ କଥା ନ ଦିଶେ ମୋତେ ଆଜ
ତହିଁକି ତୁମ୍ଭେ ବିଜେ ନକର ଦେବରାଜ ।
କୃଷ୍ଣ ବୋଇଲେ କହିଲ ତୁମ୍ଭେ ଆଚ୍ଛା କଥା
ଆନ ଲୋକର ଦୂତ ମୁଁ ହୁଅନ୍ତି କି ବୃଥା ।
ଯୁଧିଷ୍ଠି ଦେବ ଅଟନ୍ତି ମୋର ପଞ୍ଚପ୍ରାଣ
ତାଙ୍କ ଘେନି ଅବତାର ହୋଇଛି ମୁଁ ଜାଣ ।
ପଡ଼ା ପାଞ୍ଚଖଣ୍ଡ ମାଗିବାର କଥା ସତ୍ୟ
ଦେବ କି ନଦେବ ସେହି ବୁଝିବା ବୃତ୍ତାନ୍ତ ।
ନଦେଲେ ସେ ଅବଶ୍ୟ ମୁଁ ଯୁଦ୍ଧ କରାଇବି
କୌରବଙ୍କୁ ପାଣ୍ଡବଙ୍କ ହାତେ ମରାଇବି ।
ଆବର କହିଲେ କୁନ୍ତୀଦେବୀ ଯେତେ ଦୁଃଖ
ତାହା ବିଦୂର କହିବା କିସ ତୁମ୍ଭ ପାଖ ।
ବୋଇଲେ କେଡ଼େଅର୍କ୍ଷିତ ହେଲେ ମୋନନ୍ଦନ
ନିତି ନିତି ଭିକ୍ଷା ମାଗି ପୋଷିଲେ ନନ୍ଦନ ।
ଧିକ ଧିକ ହେଉ ତାଙ୍କ ଜୀଇଁବାର ଛାର
ଶୁଣି କୁନ୍ତୀ କହୁଛନ୍ତି ଶୁଣ ଦାମୋଦର ।
ତୁମ୍ଭେ ଯେବେ ସଂସାରକୁ ଅଟ ଆଦିମୂଳ
କୁରୁ ପାଣ୍ଡବଙ୍କ ଯୁଦ୍ଧ କରାଅ ତତ୍କାଳ ।
ଯୁଦ୍ଧକୁ ତୁ ଅନୁକୂଳ ଯେବେ ନ କରାଉ
ନିରଞ୍ଜନ ଥାଳରେ ତୁ ନିଶେଁ ବିଷ ଦେଉ ।
ଏତେ ବୋଲି ରୋଦନ କରନ୍ତି କୁନ୍ତୀମାଏ
ଶ୍ରୀକୃଷ୍ଣ ବୋଇଲେ ମୁହିଁ ଯାଏ ସଭାଯାଏ ।
ଏତେ କହି ହସ୍ତିନାକୁ ଗଲେ ଭଗବାନ
ଆସ୍ଥାନ ଉପରେ ଥାଇ ଦେଖେ ଦୁର୍ଯ୍ୟୋଧନ

ସେ ସଭାରେ ଲକ୍ଷେରାଜା ଆସି ବସିଥିଲେ
ଶ୍ରୀକୃଷ୍ଣଙ୍କୁ ଦେଖି ସର୍ବେ ତହିଁ ଉଭାହେଲେ ।
ଭୀଷ୍ମ ବୋଇଲେ ଆମ୍ଭର ଧନ୍ୟ ଏ ଜୀବନ
ପ୍ରତ୍ୟକ୍ଷେ ଦେଖିଲୁ ନେତ୍ରଯୁଗେ ଭଗବାନ ।
ବ୍ରହ୍ମା ଶଙ୍କର ଆଦିଏ ଚିନ୍ତିଥାନ୍ତି ଯାକୁ
ଶତ୍ରୁଲୋକ ପ୍ରାୟେକ ତୁ ମଣୁଛୁ ତାହାକୁ ।
ଆମ୍ଭର ଏ କୁରୁସଭା ଅଟେ ଧନ୍ୟ ଧନ୍ୟ
ଶ୍ରୀହରିଙ୍କ ପାଦରଜ ପଡ଼ିଲା ଏ ସ୍ଥାନ ।
ଶୁଣିଣ ବୋଇଲା କୁରୁରାୟ ସବୁରିଙ୍କି
ପାଣ୍ଡବଙ୍କ ଦୂତ ହୋଇ ଏ ଆସେ କାହିଁକି ।
ଦ୍ରୋଣ ବୋଇଲେ ଏକଥା ନୁହଇ ଉଚିତ
ଅନାଦିନାଥ ପ୍ରଭୁ ସେ କାର ହେବେ ଦୂତ ।
ଦୁର୍ଯ୍ୟୋଧନ ବୋଲେ ଆଗ ଆସନ୍ତୁ ଶ୍ରୀହରି
ବୁଝିବା କାହିଁକି ସେହି ଏଥେ ବିଜେକରି ।
ଶକୁନି ବୋଇଲେ ସେହି ପାପ ଅଛି ଅର୍ଜି
କରିଲେ ସେ ସ୍ତିରୀହତ୍ୟା ଗୋପରେ ଉପୁଜି
ବୃଷଭ ଗୋଟାଏ ପୁଣି ଦେଇଅଛି ପିଟି
ଆଉ ଯେତେକ ପାତକ ପଛେ କହିବିଟି ।
ଭୀଷ୍ମ ବୋଇଲେ ମନ୍ତ୍ରୀ ତୁ କହୁ ମନ୍ଦବାଣୀ
ଶରୀର କମ୍ପଇ ମୋର ତୋର ବାକ୍ୟଶୁଣି ।
ଯାହାର ନାମ ଶୁଣନ୍ତେ ଖଣ୍ଡଇ ପାତକ
ସେ ଦେଖିଲାକ୍ଷଣି ମୋକ୍ଷ ହୋନ୍ତି ପାପୀଲୋକ
କାହାକୁ ଦେଖି ଖଣ୍ଡିବ ସର୍ବ ପାପ ଆଜ
ଶକୁନି ବୋଲେ ହେଉଛି କେତେ ବଜବଜ ।
ସେହୁ ଏ ରାଜସଭାକୁ ଆସିଛି କିମ୍ପାଇଁ
ଗୋପୀମାନଙ୍କୁ ରଖିଛି ବୃନ୍ଦାବନେ ନେଇ ।
ଅଜାତିକୁଳେ ଜନମି ଅଛି ଗୋପେ ବଢ଼ି
କୁଜନ ଆବର ଦୁଷ୍ଟ ହେଲେ ନର୍କେପଡ଼ି ।
କୁଳକ୍ଷୟ ମନ୍ତ୍ରୀବର କହୁ କୂଟ ବୁଦ୍ଧି
ଶତେ ଭ୍ରାତ ଘେନି ଦୁଃଖେରହେ ବାଟ ରୁନ୍ଧି
ଆସ୍ଥାନ ତଳେମିଳିଲେ ଯାଇ ଭଗବାନ
ତୁନି ହୋଇ ରହିଲେ କେ ନକହି ବଚନ ।
ଆସ୍ଥାନ ପାଖକୁ ତୋର ପାବଚ୍ଛ ଯେ ଅଛି
ସାତ ପାବଚ୍ଛ ଉଠିଣ ଗଲେଣି ଶ୍ରୀବତ୍ସି ।
ଦେଖି ଭୀଷ୍ମ ଦ୍ରୋଣ ଉଠିବେଗେହେଲେଉଭା
ବୋଇଲେ ଶ୍ରୀକୃଷ୍ଣେ ପଥ ଛାଡ଼ିକର ସେବା ।
ଦ୍ରୋଣ ବୋଇଲେ କହିବା ଶୁଣ ଦଣ୍ଡଧାରୀ
ଦଶ ପାବଚ୍ଛ ଉଠିଣ ଆସିଲେଣି ହରି ।
ଯଦି ଏ ସଭାରେ ଜାଣ ହରିଙ୍କି ନ ବରି
ସେ ସଭା ଜାଣ ଚଣ୍ଡାଳ ସଭା ମଧ୍ୟେ ସରି ।
ଶକୁନି ବୋଲେ ଶୁଣିମା ହେଉଭୀଷ୍ମଦ୍ରୋଣେ
ଯେ କାଳେ ଭୀଷ୍ମକ ଦେଶେଥିଲେରାଜାଗଣେ
ସେ କାଳରେ ରାଜା ଦେଲା ସଭାରୁ ଘଉଡ଼ି
ଆସନ ନ ପାଇ ହରି ପଳାଇଲେ ଛାଡ଼ି ।
ଏସନ ଚରିତ ତାର ସବୁ ଜଣାଅଛି
ଏବେ ସଭାରେ କି ରୂପେ ବସିବେ ଶ୍ରୀବତ୍ସି ।
ଶକୁନି ମୁଖୁଁ ଶୁଣିଣ କହେ ଦୁର୍ଯ୍ୟୋଧନ
ବୋଇଲେ ସଭାରେକେହ୍ନେତାକୁଦେବାସ୍ଥାନ
ଭୀଷ୍ମ ବୋଇଲେ ବାବୁ ଏକଥା ଯେବେସତ୍ୟ
ଏ କଥାକୁ କଥା ଏକ କହିବା ଯେ ତତ୍ତ୍ୱ ।
ଜରାସନ୍ଧ ଚଣ୍ଡାଳ ଯେ ଅନୀତି କରିଲା
ଶ୍ରୀରାମ କୃଷ୍ଣ ବେନିଙ୍କି ଉଠାଇଣ ଦେଲା ।
ହରି ରାମ ବିଜେ କଲେ ମନ୍ଦର ପର୍ବତେ
ଡକାଇ ଆଣି ବିନତାଦେବୀଙ୍କର ସୁତେ ।
ବୋଇଲେ ଭୀଷ୍ମକ ସଭା ଯାଇଁ ଭାଙ୍ଗିପକା
ଆମ୍ଭଙ୍କୁ ଅଣଆଦର କଲା ଯେବେ ଏକା ।
ଆଜ୍ଞା ପ୍ରଣାମରେ ବୈନତେୟ ଚଳିଗଲା
ସଭାଯାକ ଭାଙ୍ଗିଣ ସେ ଛିନ୍ନଛତ୍ର କଲା ।
ପ୍ରଚଣ୍ଡ ପବନ କରି ପିଟି ବେନି ଡେଣା
ଗଜ ଅଶ୍ୱ ସହିତରେ ମଲେ ଅକଳନା ।
ସହସ୍ର ଯୋଜନଯାଏ ପଡ଼ିଲେ ସେ ଉଡ଼ି
ଲଜ୍ଜା ପାଇଣ ରାଜାଏ ପଳାଇଲେ ଛାଡ଼ି ।
ଜରାସନ୍ଧ ରାଜା କୃଷ୍ଣଠାରେ ଦ୍ରୋହକଲା
ଯୁଗାନ୍ତ ରାଜା ହୋଇଣ ଅଳ୍ପଦିନେ ମଲା ।
ଶୁଣିଣ ତା ଦୂର୍ଯ୍ୟୋଧନ ପାଞ୍ଚେମନେ ଭାଳି
ପୁଣି ହିଁ ଶକୁନି କହିଲାକ କଥା ଚାଳି ।
ବୋଇଲା କେଉଁ ରଜାର ପୁତ୍ର ବସୁଦେବ
ଅଲାଜୁକ ହୋଇ ତୁମ୍ଭେ କଥା କହ ସର୍ବ
ସେହି ଅତି ଅଲାଜୁକ ତୁମ୍ଭେ ଅପୁତ୍ରିକ
ତୁମ୍ଭ ଦୁହିଁଙ୍କ ପ୍ରକୃତି ଅଟେ ଜାଣ ଏକ ।
ପ୍ରଭାତୁଚାହିଁଲେ ତୁମ୍ଭ ମୁଖି ବଡ଼ ପାପ
ସେ ପାପୀ ଶିବ ପୂଜିଲେ ଜୀବ ତା ଅଳପ ।
କୁଳବୃଦ୍ଧ ହେବାରୁ ଏ ସଭାମଧ୍ୟେ ବସ
ନୋହିବା କଥାକୁ କହି ବଳିଥାଅ ଆଶ ।
ତୁମ୍ଭ ଦୁଷ୍ଟବୁଦ୍ଧି କଥା ଗଙ୍ଗାମାତା ଜାଣି
ଜନ୍ମକରି ଛାଡ଼ିଦେଇ ଗଲେ ସେହିକ୍ଷଣି ।
ଏମନ୍ତେ କଥା ହେଉ ଶ୍ରୀହରି କଲେ ବିଜେ
ମିଳିଲେ ଦଶପାବଚ୍ଛ ତଳେ ଦେବରାଜେ ।
ଦ୍ରୋଣ ବୋଇଲେ ଶୁଣ ହେ ରାଜା କୁରୁବୀର
ଶ୍ରୀଜଗନ୍ନାଥଙ୍କୁ ତୁମ୍ଭେ କଟାଳ ନ କର ।

ଯାହା ଲୋମମୂଳୁ କୋଟି ବ୍ରହ୍ମାଣ୍ଡଟି ଜାତ
ଅଶେଷ କୋଟିଏ ଜୀବ ଯାଏ ଗର୍ଭଗତ ।
ସେହି ପ୍ରଭୁ ଉଭା ହୋଇଛନ୍ତି ସଭାତଳେ
ପୃଥ୍ୱୀ ନାଶ ଯିବ କୋପ କଲେ ଆଦିମୂଳେ
ପନ୍ନଗନାରାୟଣ ତୁ ଅଟୁ କୁରୁମଣି
ଆଜ୍ଞାଦିଅ ସଭାକୁ ଆସନ୍ତୁ ଚକ୍ରପାଣି ।
ପାଦ୍ୟ ଅର୍ଘ୍ୟ ଦେଇ ସର୍ବେ କରିବାକ ପୂଜା
ଶକୁନି ବୋଲେ ତୁମ୍ଭେଟି କେତେ ହୁଅ ମଜ୍ଜା
ଭିକ୍ଷାଷୀ ବ୍ରାହ୍ମଣ ଅଟ କେତେ ଅବା ବୁଦ୍ଧି
ସଭାରେ ଥିଲେ ଜାଣନ୍ତି ସିନା କଥା ଭେଦି ।
ଭାରିଯା ଗୋଟିକ ତୁମ୍ଭେ ନ ପାରିଲ ପୋଷି
କାଢ଼ିଲ ତାହାର ଗର୍ଭଚିରି ବାଳଶିଷି ।
ବୁଝିଲେ ଆପଣାଠାରେ ସ୍ତିରୀହତ୍ୟା ଅଛି ।
ମନ୍ଦ ବୁଦ୍ଧି ସକାଶରୁ ମାତା ମରିଅଛି ।
ଏ ରୂପରେ କେତେ ଦୋଷ ଅଛି ତୁମ୍ଭଠାଏ
ବିଷ୍ଣୁକଲା ପାତକକୁ ସରି ତୁମ୍ଭେ ଦୂହେଁ ।
ବିଦ୍ୟାଗୁରୁ ବୋଲିଣ ନ ବୋଲୁ ଆମ୍ଭେ କିଛି
ବ୍ୟର୍ଥ କଳଙ୍କ କଢ଼ାଉଅଛ ଅଙ୍ଗୁବାଛି ।
ନିଷ୍କଳଙ୍କ ଚକ୍ରବର୍ତ୍ତୀ ଅଟେ କୁରୁରାଜା
ପୃଷ୍କର ଗୋଟିଏ ତୀର୍ଥ ଆଣି କରେ ପୂଜା ।
ଭୀଷ୍ମ ବୋଇଲେ ଶକୁନି କହିବା ହେ ଶୁଣ
ହରିର ପାଦେ ପୁଷ୍କର ସେବେ ନିତି ଜାଣ ।
ବିଷ୍ଣୁ ପାଦୁକା ଘେନନ୍ତି ଶିରେ ରାଜା ଯେଣୁ
ଶ୍ରୀହରି ପାଦୂ ବହନ୍ତି ଗଙ୍ଗା ନଖ କୋଣୁ ।
କହନ୍ତି ଦେବ କିନ୍ନର ନରେ ସ୍ନାନ ତହିଁ
ବିବେକୀ ମନ୍ତ୍ରୀ ହୋଇଣ ଏହା କହୁ ତୁହି ।
ଶକୁନି ବୋଇଲା ବିଷ୍ଣୁ ହେଲେ କିସ ହେବ
ଦୋଷଥିଲେ ସଭାରେ ହେ କିରୂପେ ବସିବ
ବିପ୍ର ହୋଇଣ ହୋଇବ ଯେବେଜାଣଦୋଷୀ
ସଭାରେ ପକ୍ଷ ଧରି ଯେ ନ୍ୟାୟ କରେ ବସି
ଯୁବତୀ ହୋଇଣ ଯେବେ ହୋଇବ ଦୋଚାରୀ
ପଥଶ୍ରାନ୍ତ ଲୋକକୁ ଯେ କୂଟକରି ମାରି ।
ପରକଥା ଶୁଣି କରେ ଘରକୁ ଯେ ନାଶ
ତାହାଙ୍କ ମୁଖ ଚାହିଁଲେ ବ୍ରହ୍ମହତ୍ୟା ଦୋଷ
ବିଦୂର ବୋଲେ କାହିଁକି ପ୍ରଭୁ ଅଛ ସହି
ଚକ୍ରକୁ ପେଷିଦେଲେ ଏଯାନ୍ତେ କ୍ଷୟ ହୋଇ
ପ୍ରଭୁ ବୋଇଲେ କହିବା ତୋତେହେ ବିଦୂର
ଏମାନେ ପାଣ୍ଡବଙ୍କର ଅଟନ୍ତି ସୋଦର ।
ଆସିଛୁ ମଧ୍ୟସ୍ଥ ହୋଇ ଆମ୍ଭେ ଦୂତପଣେ
କାହିଁକି ମାରିବା ଏମାନଙ୍କୁ ଅକାରଣେ ।

ବିଦୂର ଚଳିଲେ ତାହା ଶୁଣି ତତକାଳେ
କହିଲେ ଦୁର୍ଯ୍ୟୋଧନର ପାଶେ କର୍ଣ୍ଣମୂଳେ
ବୋଇଲା ତୋ ପରା ରାଜା ଅଛି କେତେଜଣ
ଜମ୍ବୁଦ୍ୱୀପକୁ ତୁ କରୁ ସାକ୍ଷାତେ ଧାରଣ ।
ଦେଖ ପ୍ରଭୁ ବିଜେ କରିଛନ୍ତି ସଭାତଳେ
ତୁ ଆଜ୍ଞାଦେଲେ ଆସିବେ ଜାଣ ଆଦିମୂଳେ
ବିଦୂରଙ୍କର ବଚନ ଶୁଣି କୁରୁସାଇଁ
ବୋଇଲେ ସଭାକୁ ବିଜେକର ଭାବଗ୍ରାହୀ ।
ଶୁଣିଣ ସେ ଦୂଃଶାସନ ଛାଡ଼ିଦେଲା ପଥ
ସଭାର ମଧ୍ୟେ ମିଳିଲେ ଯାଇଁ ଜଗନ୍ନାଥ ।
ଦେଖିକରି ଭୀଷ୍ମ ଦ୍ରୋଣ କଲେକ ଦଇନୀ
ରାଜାର ମୁଖ ଚାହିଁଣ କହଇ ଶକୁନି ।
ବୋଇଲା ତୁମ୍ଭ ହିତେ ମୁଁ କହିଥିଲି ଯେତେ
ପାଣ୍ଡବଙ୍କ ହିତେ ଏବେ ନିଜେ ଜଗନ୍ନାଥେ
ରାଜା ବୋଇଲା ପୃଚ୍ଛିବା କଥା ସିନା ଆଗ
କହିବେ କି କି ବଚନ ଶୁଣିବା ସେ ରଙ୍ଗ ।
ଦୂର୍ଯ୍ୟୋଧନ ବୋଇଲାହୋ ଶୁଣ ଦାମୋଦର
କି ନିମନ୍ତେ ବିଜେ କଲେ ଆପଣ ମୋ ପୂର
କୃଷ୍ଣ ବୋଇଲେ କହିବା ଶୁଣ ଦଣ୍ଡଧାରୀ
ଯୁଧିଷ୍ଠିଦେବ ପେଶିଲେ ମୋତେ ତୁମ୍ଭ ପୁରୀ
ଧର୍ମରାଜାଏ ତୁମ୍ଭଙ୍କୁ ରାଜ୍ୟଭାର ଦେଇ
ରହିଲେ ମନରେ ସେହି ବହୁଦୁଃଖ ପାଇ ।
ବିରାଟ ରାଜ୍ୟେ ରହିଣ ବଞ୍ଚିଲେ ଅଜ୍ଞାତ
ଏବେ ପ୍ରବେଶହୋଇଲେ ସେ ବାରୁଣାବନ୍ତ
ମୋତେ ରାଇଣ ଯୁଧିଷ୍ଠିଦେବ ଆଜ୍ଞାଦେଲେ
ଦୂର୍ଯ୍ୟୋଧନକୁ ଯେ ପଞ୍ଚଗ୍ରାମ ମାଗ ଭଲେ ।
କିଞ୍ଚିତ ଦୟା କରିବୁ ଯେବେ ଜାଣ ତୁହି
କୋଣରେ ରହିଥିବେ ସେ ମିଳି ପାଞ୍ଚଭାଇ ।
ତୋହର ସଙ୍ଗେ ତାଙ୍କର ଜାଣ ଥିବ ପ୍ରୀତି
ଧୃତରାଷ୍ଟ୍ରକୁ ସେ ସେବା କରୁଥିବେ ନିତି ।
ତୁ ଯେଣୁ ହୋଇଛୁ ରାଜ୍ୟଯାକେ ଅଧିକାରୀ
ଭାଇ ପାଳିଲେ ଯେ କୋଟି ରାଜସୂୟ ସରି ।
ଯୁଧିଷ୍ଠିଦେବ ଅଟନ୍ତି ପୁଣି ଜ୍ୟେଷ୍ଠଭାଇ
ତାଙ୍କୁ ଦୟାକଲେ କେତେ ପୁଣ୍ୟପାରେକହି
ରାଜା ବୋଇଲା ଆଜକ ଏଥେ କୃଷ୍ଣ ରହ
କାଲି ସଭାରେ ସମସ୍ତ କଥା ଆସି କହ ।
ଏକେ ତ ହେଲାଣି ଆସି ନବଘଡ଼ି ବେଳ
ମଣୋହି କରିବା ଚାଲ ଏବେ ଆଦିମୂଳ ।
ସୂର୍ଯ୍ୟକାଳରେ ଆହାର ହୁଏ ଜାଣ ପକ୍ୱ
ଚନ୍ଦ୍ରକାଳରେ ଆହାର ହୁଅଇ ଅପକ୍ୱ ।

ବେଗେ ଯେ ଆହ୍ନିକସାର ଆହେ ଭଗବାନ
ଗୋବିନ୍ଦ ବୋଇଲେ ଯିବୁ ବିଦୂର ଭବନ ।
ଶୁଣି ରାଜା ଦୁର୍ଯ୍ୟୋଧନ ମନେ ବହି ରୋଷ
ବୋଇଲା ଆମ୍ଭ ଘରେ ନକର ପଛେ ଗ୍ରାସ ।
ଭୀଷ୍ମ ଦ୍ରୋଣ ବେନିଙ୍କି କିରୂପେ ତ୍ୟକ୍ତକରି
ବୃଷଳୀ ଭୋଜନ କେହ୍ନେ କରିବୁ ତୁ ହରି ।
ସୁହୃଦ ନାମେ ଏକଇ ଶୂଦ୍ର ପୂର୍ବେ ଥିଲା
ଅମ୍ବୁବତୀ ବୋଲି ତାର କନ୍ୟା ଉପୁଜିଲା ।
ତାହାକୁ ବ୍ୟାସେ ଶୃଙ୍ଗାର କଲେ ବଳେଯାଇ
ବ୍ରାହ୍ମଣ ବୀର୍ଯ୍ୟେ ବିଦୂର ଜାଣ ଜନ୍ମହୋଇ ।
ଏରୂପେ ବର୍ଣ୍ଣଶଙ୍କର ଅଟଇ ବିଦୂର
କିରୂପେ ତା ଘରେ ଯାଇ କରିବ ଆହାର ।
ଏରୂପେ କହନ୍ତେ ଝିଙ୍ଗାସିଣ ଦୂର୍ଯ୍ୟୋଧନ
ତହିଁକି ଯେ ପ୍ରତିବାଦ୍ୟ ଦ୍ୟନ୍ତି ଜନାର୍ଦ୍ଦନ ।
କହନ୍ତି ରାଜା ତୁ ଶୁଣ ମନେ ବହି କ୍ରୋଧ
ମୋ ଭକ୍ତମାନଙ୍କ ଅନ୍ନ ଅଟେ ମହାଶୁଦ୍ଧ ।
ସଂସାରେ ଅଛନ୍ତି ଯେତେ ନର ଭକ୍ତମୋର
ତାଙ୍କଦେଲା ଅନ୍ନ ମୁହିଁ କରଇ ଆହାର ।
ମୋର ଉଚ୍ଛିଷ୍ଟ ନିର୍ମାଲ୍ୟ ବୋଲି ହୋଏଜାଣ
ସ୍ନାନକରି କରନ୍ତି ମୋ ଭକ୍ତେ ସେବାପୁଣ
ଗଙ୍ଗାଜଳ ମହାଶୁଦ୍ଧ ସ୍ନାନକଲେ ତରି
ଏକାଦଶୀ ବ୍ରତ ସଙ୍ଗେ ସମ ଏକା ହରି ।
ଶ୍ରୀଭାଗବତ ପୂରାଣ ଅଟେ ମହାଶୁଦ୍ଧ
ମୋ ନାମ ଶୁଣି ସମସ୍ତେ ହୁଅନ୍ତି ପ୍ରବୋଧ ।
ଶ୍ରୀହରି ନାମକୁ ଯେହୁ କରଇ କୀର୍ତ୍ତନ
ସେମାନେ ଯେ ମହାଶୁଦ୍ଧ ଅଟନ୍ତି ରାଜନ ।
ବ୍ରାହ୍ମଣ ହୋଇଣ ଯେ ନଭଜେ ଚକ୍ରପାଣି
ଚଣ୍ଡାଳ ସଙ୍ଗରେ ଜାଣ ତାକୁ ନେଇ ଗଣି
ଚଉଦ ଭୁବନ ମଧ୍ୟେ ଅଛନ୍ତି ଯେ ଜନ
ମେ ଭକତ ତୁଲେ କେହି ନୁହନ୍ତି ସମାନ ।
ଏରୂପେ କୃଷ୍ଣଙ୍କ ମୁଖୁଁ ଶୁଣି କୁରୁସାଇଁ
ଆସ୍ଥାନୁ ଉଠି ମିଳିଲେ ଗୃହେ ବେଗେ ଯାଇଁ
ରାଜା ଚଳିଯାନ୍ତେ ଚଳିଗଲେ ଭଗବାନ
ବିଦୂରଙ୍କ ଘରେ ଯାଇଁ କଲେକ ଭୋଜନ ।
ତତକ୍ଷଣେ ନିତ୍ୟକର୍ମ ସାରି କୁରୁରାଜେ
ଦେବାର୍ଚ୍ଚନ ସାରି ମଣୋହିରେ କଲେବିଜେ ।
ଅମୃତ ଯୋଗାଡ଼ସାରି ଆଚମନ କଲେ
କର୍ପୁର ତାମ୍ବୁଳ ଭୁଞ୍ଜି ଅବକାଶ ନେଲେ ।
କୁଙ୍କୁମ କସ୍ତୁରୀ ଦେହଯାକ ହୋଇ ଲିପି
ଦେବାଙ୍ଗ ବସନେ ନାନାରତ୍ନେ ଅଛି ବ୍ୟାପି ।

ଚନ୍ଦ୍ରଶାଳାପୁରୁ ବାହାରଇ ଅବକାଶେ
ଖଟଣି ଲୋକେ ଦର୍ଶନ କଲେ ଯାଇଁ ପାଶେ ।
ଏମନ୍ତ ସମୟେ ଆସି ପ୍ରବେଶି ବିଦୂର
ଦୂର୍ଯ୍ୟୋଧନକୁ କହନ୍ତି ଆସି ବାକ୍ୟ ସାର ।
ସଞ୍ଜୟ ଗାନ୍ଧାରୀ ମାତା ଧୃତରାଷ୍ଟ୍ର ପୁଣ
ପାଶେ ବସି ବୋଲନ୍ତି ଯେ ଶୁଣ କୁରୁରାଣ ।
ଲକ୍ଷେ ରାଜା ଉପରେ ତୁ ଅଟୁ ଚକ୍ରବର୍ତ୍ତୀ
ପନଗ ନାରାୟଣ ତୋ ମହିମା ବିଖ୍ୟାତି ।
ପାଣ୍ଡବେ ଅଟନ୍ତି ଜାଣ ତୋର ନିଜ ଭ୍ରାତ
ତୋ ପରା ପ୍ରଭୁ ଥାଉଁ ସେ ହେବେକି ଅନାଥ
କାଳାନଳ ଅଗ୍ନି ଜାଣ ଅଟନ୍ତି ପାଣ୍ଡବେ
ସେଅଗ୍ନିକି ପବନଟି ହେବେ ବାସୁଦେବେ ।
ଅଗ୍ନିରେ ପବନମିଶି ତୋଦେଶ ପୋଡ଼ିବେ
ତହିଁକି ବିଚାର ରାଜା କର ତୁହି ଏବେ ।
ଦେଖିଲୁ କୋପିଲେ ପାଣ୍ଡବଙ୍କୁ ବଳରାମେ
ଏକା ଅର୍ଜ୍ଜୁନକୁ ଜିଣି ନାହାନ୍ତି ସଂଗ୍ରାମେ ।
ଖାଣ୍ଡବ ବନ ଦହିଲେ ଜିଣି ବଜ୍ରଧାରୀ
ଅର୍ଜ୍ଜୁନ ଘେନି ସୋଦର ତେଜିଲେ ଶ୍ରୀହରି ।
ଆମ୍ଭର ବାକ୍ୟ ନକଲେ ଅନାଥ ହେବୁଟି
ସବୁଙ୍କୁ ବିନାଶ ଏକା କରିବ କିରୀଟି ।
ଏରୂପେ ତିଆରି କେତେ କହିଲା ଗାନ୍ଧାରୀ
ବୋଇଲା ଦ୍ୱିଖଣ୍ଡ ପଡ଼ା ଦିଅ ବୋଲିକରି ।
ପାଶରେ ଆଦର କରି ପାଣ୍ଡବଙ୍କୁ ରଖ
ସେ ସୁଖେ ଥିଲେ ଆମ୍ଭର ସବୁ କଥା ସୁଖ ।
ଗାଙ୍ଗେୟ ବୋଇଲେ ରାଜା ଶୁଣ କୁରୁଦେବ
ବାଣ୍ଟିଲେ ପାଣ୍ଡବଙ୍କର ଅଧେ ରାଜ୍ୟ ହେବ
ଦୁର୍ଯ୍ୟୋଧନ ବୋଲେତାଙ୍କୁ କିମ୍ପାପାଶେଲଗା
ସ୍ଥାନଛଡ଼ା ଲୋକଙ୍କୁକେ ଦେବ ଆଉଜାଗା
ସଭାରେ ବସି କହୁଛ ମାତ୍ର ସର୍ବେ କଥା
ପାଣ୍ଡବଙ୍କୁ ଭାଗଦେଲେ ନମିଳେ ସର୍ବଥା ।
ତୁମ୍ଭେମାନେ ଯେବେ ମୋତେ କହିଲତିଆରି
ବେନିଗ୍ରାମ ଦେବି ତାଙ୍କୁ ତୁମ୍ଭ ବୋଲକରି ।
ଦେବଇଁ ବାରୁଣାବନ୍ତେ ବେନିଖଣ୍ଡ ଗ୍ରାମ
ଗାଙ୍ଗେୟ ବୋଇଲେ ରାଜା ତୁହି ଯେ ଉତ୍ତମ
ତୋହର କନ୍ଧରୁ ଜାଣ ଲକ୍ଷ୍ମୀ ନ ଛାଡ଼ନ୍ତୁ
ବେନିଗ୍ରାମ ଦେଲେ ହରି ସନ୍ତୋଷେଣ ଯାନ୍ତୁ
ଏରୂପେ କହିଣ ସର୍ବେ ଗଲେ ତହୁଁ ଚଳି
ରାଜାର ପାଶେ ଶକୁନି ମନ୍ତ୍ରୀ ଆସି ମିଳି ।
ଦୂର୍ଯ୍ୟୋଧନ ବୋଲେ ମାମୁଁ କହିବି କଥାଏ
ବେନିଗ୍ରାମ ଦେବା ମାଗିଲେକ ଦେବରାୟ

ଏମନ୍ତ ସମୟେ ଶଲ୍ୟ କୃପ ଦୁଃଶାସନ
ମିଳିଲେକ ପାଶେ ଆସି ଅଶ୍ୱତ୍ଥାମା କର୍ଣ୍ଣ ।
ଏମାନଙ୍କୁ ସାକ୍ଷ୍ୟକରି କହଇ ଶକୁନି
ବେନିଗ୍ରାମ ପାଣ୍ଡବଙ୍କୁ ଦେବାକି ମେଦିନୀ ।
ତୁମ୍ଭର ମନକୁ ଏହା ଆସିଲା କି କହ
ଶୁଣି ସେମାନେ ହସିଲେ ହସି ଅପ୍ରମେୟ ।
ବୋଇଲେ କୃଷ୍ଣର କଥା ଜାଣିଣ ନାହିଁ କି
ଏକ ପାଦକେ ଚାପିଣ ଦେଲା ସେ ବଳିକି ।
ଏରୂପେ ମାୟାବୀ ସେହି ଅଟେ ବାସୁଦେବ
ବେନିଗ୍ରାମ ଦେଲେ ପୃଥ୍ୱୀଯାକ ସେ ଗିଳିବ
ସ୍ୱର୍ଗ ମର୍ତ୍ତ୍ୟ ପାତାଳକୁ ଏକ କରିବଟି
ଘୋଟିଣ ଯିବ ସଚରାଚର ଯାକ ସୃଷ୍ଟି ।
ରାଜା ବୋଇଲେ ସଭାରୁ ହରି ବାହୁଡ଼ିଲେ
ସମସ୍ତେ ନାଶଯିବଟି ଗୋବିନ୍ଦ କୋପିଲେ ।
ଶକୁନି ବୋଇଲା ଏକା ସିନା ଶିରୀପତି
ଆମ୍ଭର ସୈନ୍ୟ ଅଛନ୍ତି ଘେରି ଚଉକତି ।
ଶକୁନି ବଚନ ଶୁଣି ରାଜା ଦୁର୍ଯ୍ୟୋଧନ
ଭିତର ପୁରକୁ ବିଜେ କଲାକ ରାଜନ ।
ଦେଖି ଭାନୁମତୀ ରାଣୀ ଅର୍ଘ୍ୟଥାଳୀ ଧରି
ରାଜାର ଶିରେ ବନ୍ଦଇ ପୁଚ୍ଛେ ପାଦଧରି ।
ବୋଇଲା ଶ୍ରୀକୃଷ୍ଣ ଆସିଥିଲେ ହସ୍ତିନାକୁ
ପାଣ୍ଡବଙ୍କ ଦୂତ ହୋଇଗଲେ ତୁମ୍ଭଠାକୁ ।
ସଭାରେ ତୁମ୍ଭଙ୍କୁ ମାଗିଲେ ଯେ ପଞ୍ଚଗ୍ରାମ
ଦେଇ କି ବୋଧ କରିଲ ଶ୍ରୀପୁରୁଷୋତ୍ତମ ।
ପାଣ୍ଡବେ ଅଟନ୍ତି ଆମ୍ଭରତ ନିଜଭ୍ରାତ
ରାଜ୍ୟର ଅଟେ କାରେଣୀ ସେହି ପଣ୍ଡୁସୁତ
ଶ୍ରୀକୃଷ୍ଣଙ୍କୁ ବୋଧ ଦୂଇଖଣ୍ଡ ପଡ଼ା ଦେଇ
ତୁମ୍ଭଙ୍କୁ କହିବେ ସର୍ବେ ଧନ୍ୟ କୁରୁସାଇଁ ।
ଶ୍ରୀକୃଷ୍ଣ ତୋଷେ ପାଣ୍ଡବମାନେ ନିବର୍ତ୍ତିବେ
ଏତେକ କହୁଛି ଶୁଣିମା ହେ କୁରୁଦେବେ ।
ଦୂର୍ଯ୍ୟୋଧନ ବୋଇଲା ଗୋ ଶୁଣ ଭାନୁମତୀ
କହିଲେ ବିଦୂର ଭୀଷ୍ମ ଦ୍ରୋଣ ଏହିମତି ।
ଦେବାକୁ ମୋହର ହୃଦ ମଧ୍ୟେ ପାଞ୍ଚିଲିଣି
କେବଳ ନାସ୍ତି ଏକା ଯେ କରୁଛି ଶକୁନି ।
ବୃଦ୍ଧ ଲୋକମାନଙ୍କର ବାକ୍ୟ ନ ଘେନିଲେ
ଅବଶ୍ୟ ପ୍ରମାଦ ତହିଁ ପଡ଼ଇ ଗୋ ଭଲେ ।
ଶୁଣି ଭାନୁମତୀ ରାଣୀ ବୋଇଲା ଏ ସତ
ବୃଦ୍ଧଙ୍କ ବଚନ ଏକା ଶୁଣନ୍ତି ପଣ୍ଡିତ ।
ଶକୁନି ବଚନ ଯେବେ ଶୁଣୁଥିବ ନିତି
ବାବନାଭୂତ ପରାୟ ରହିବ ନିବର୍ତ୍ତି ।

ଯେହ୍ନେ ଅଛଡ଼ା ଛଡ଼ା ନଦେଲା ଜାଣ ତିଳ
ମହାବନ୍ଧରେ ପକାଇ ବାନ୍ଧିଲା ଚାଉଳ ।
ଚାଉଳ ପ୍ରାୟ ତାହାକୁ କରିବଟି ହରି
ଶକୁନିର ବୁଦ୍ଧି କଲେ ଛାଡ଼ିଯିବ ଶିରୀ ।
ଦୂର୍ଯ୍ୟୋଧନ ବୋଇଲାଗୋ ଶୁଣ ଭାନୁମତୀ
ଶକୁନିର ବୁଦ୍ଧି ବଳୁଁ ହେଲି ମୁଁ ନୃପତି ।
ପଞ୍ଚରାଜ୍ୟଯାକ ଭୋଗିଲି ମୁହିଁ ନିଶ୍ଚିନ୍ତେ
ତେଣୁତା ବାକ୍ୟ ଭାଙ୍ଗି ନପାରେ କଦାଚିତେ
ଶତ୍ରୁଙ୍କୁ ମୋହର ନାଶିବ ସେ ବୁଦ୍ଧିବଳେ
ଏଥକୁ ଚିନ୍ତା କିଛି ନକର ପ୍ରେମଶାଳେ ।
ଭାନୁମତୀ ବୋଇଲେ ସେ କୁଳକ୍ଷୟ ମନ୍ତ୍ରୀ
ଅବଶ୍ୟ ଏ ବଂଶଯାକ ମାରିବ ସେ ମନ୍ତ୍ରୀ ।
ତୁମ୍ଭେ ଯେ ପଥରଘରେ ମାରିଛ ତା ବଂଶ
ଅବଶ୍ୟ ତୁମ୍ଭର ବଂଶ କରିବ ଯେ ନାଶ ।
ପାଣ୍ଡବଙ୍କ ଆଗେ ମୋତେ ନଦିଶେକେଯୋଦ୍ଧା
ଏକା ଶରକେ ପାରନ୍ତି ଚୌଦପୁର ଭେଦି ।
ବିରୁପାକ୍ଷଦୈତ୍ୟକୁ ସେମାଇଲେ ଯେକାଳେ
ସେକଥାଯାକ ପାଶୋରି ଦେଲେ ନୃପଭାଳେ
ରଥରେବସାଇ ଦେତ୍ୟଘେନିଯାନ୍ତେମୋତେ
ସେକାଳେ ଶକୁନି କି ନ ଥିଲା ତୁମ୍ଭ ସାଥେ ।
କୁରୁବଳଯାକ ଛାଡ଼ି ପଳାଇଲେ କାହିଁ
ଅର୍ଜ୍ଜୁନ ଥିବାର ଜାଣି ରହିଲି ମୁଁ ତହିଁ ।
ଏକା ଶର ପେଶିଣସେ ଦୈତ୍ୟଙ୍କୁ ନାଶିଲେ
ଆମ୍ଭଙ୍କୁ ରଥେ ବସାଇ ରାଜ୍ୟେ ଛାଡ଼ିଦେଲେ
ପାଣ୍ଡବଙ୍କ ମହିମା ଯେ କହେ ଭାନୁମତୀ
ରାତ୍ରିଅନ୍ତେ ନିତ୍ୟକର୍ମ ସାରି କୁରୁପତି ।
ଇନ୍ଦ୍ରପ୍ରସ୍ଥେ ସଭାକରି ବସେ କୁରୁରାଣ
ପାରିଦଣ୍ଡଯାକ କଲେ ରାଜାଙ୍କୁ ଦର୍ଶନ ।
କହନ୍ତି ବୈଶମ୍ପାୟନ ଶୁଣ ଜନ୍ମେଜୟ
ରହିଲେ ଯେ ବିଦୂରଙ୍କ ପୁରେ ଦେବରାୟ ।
ସଙ୍ଗେ ଋଷିଗଣ ଘେନି ବିଜେ ନରହରି
ଭୀଷ୍ମ ବୋଇଲେ ସଭାକୁ ଆସନ୍ତୁ ଦୈତ୍ୟାରି
ଆସ୍ଥାନ ମଧ୍ୟେ ବସନ୍ତେ ଆସି ଭଗବାନ ।
ଶ୍ରୀହରିଙ୍କ ମୁଖ ଚାହିଁ ପୁଚ୍ଛେ ଦୂର୍ଯ୍ୟୋଧନ ।
ବୋଇଲା କି ଅର୍ଥେ ବିଜେକର ମମ ପୁରୀ
ଗୋବିନ୍ଦ ବୋଇଲେ ଶୁଣିମା ହେ ଦଣ୍ଡଧାରୀ
ଲକ୍ଷେ ଯୋଜନଯାକେ ତୋଅଟେ ଆଧିପତ୍ୟ
ପଡ଼ା ପାଞ୍ଚଖଣ୍ଡ ଦେଲେ ଯୁଧିଷ୍ଠିର ଶାନ୍ତ ।
କିଞ୍ଚିତେ ଦୟାକରିଲେ ପାଣ୍ଡବେ ରହିବେ
କହନ୍ତି ଋଷିଙ୍କି ସାକ୍ଷୀ କରି ବାସୁଦେବେ ।

ବୁଝିଲେ ପାଣ୍ଡବଙ୍କର ଅଧେ ଭାଗ ଅଛି
ଶୁଣ ହେ ମାନଗୋବିନ୍ଦ କହନ୍ତି ଶ୍ରୀବସି
ଶୁଣି ମାନଚକ୍ରବର୍ତ୍ତୀ କମ୍ପାଇ ଅଧର
ବୋଇଲେ ଯୁଧିଷ୍ଠି ମୋର କିରୂପେ ସୋଦର
ଧର୍ମ ଦେବତାଠାରୁ ସେ ଯୁଧିଷ୍ଠିର ଜନ୍ମ
କି ରୂପେ ମୁଁ ଭାଗଦେବି କହ ପରଂବ୍ରହ୍ମ ।
ପବନ ବୀର୍ଯ୍ୟରୁ ଜାତ ହେଲା ଭୀମସେନ
ବାସବ ବୀର୍ଯ୍ୟରୁ ଜାଣ ଜନ୍ମିଛି ଅର୍ଜ୍ଜୁନ ।
ଅଶ୍ୱିନୀ କୁମାର ବୀର୍ଯ୍ୟ ନକୁଳ ପ୍ରସବ
ମାଦ୍ରୀର ଗର୍ଭୁ ଜନ୍ମିଛି ଜାଣ ସହଦେବ ।
ପଣ୍ଡୁ ରାଜାର ଗୋଟିଏ ପୁଅ ନ ଦେଖିଲି
ଜାରଜାତକା ପୁତ୍ରଟି ଏମାନଙ୍କୁ ବୋଲି ।
ଦୁର୍ଯ୍ୟୋଧନ ମୁଖରୁ ଯେ ଏ ବଚନ ଶୁଣି
ମନରେ ହସି କହନ୍ତି ପ୍ରଭୁ ଚକ୍ରପାଣି ।
ବୋଇଲେହୋ ସାବଧାନେ ଶୁଣ ଧାର୍ତ୍ତରାଷ୍ଟ୍ରି
ତୁମ୍ଭର ଉପରେ ବଂଶୁଅଛି ଏ କଥାଟି ।
ବୃହସ୍ପତିଙ୍କ ଭାରିଯା ତାରା ନାମେ ସତୀ
ଚନ୍ଦ୍ରଙ୍କ ବୀର୍ଯ୍ୟରୁ ବୁଧ ହେଲେ ଉତପତ୍ତି ।
ଆବର ଉପର ବଂଶ କହିଲେ କି ହେବ
ସେ ସବୁରି ମନେ ପେଞ୍ଚପାଞ୍ଚ ଯାକ ଥିବ ।
ପୂର୍ବରୁ ଜାରଜାତକ ଅଟେ ତୁମ୍ଭ ବଂଶ
ଶାନ୍ତନୁର କଥା ଆଗ ଶୁଣ ଅନ୍ଧଶିଷ୍ୟ ।
ଶାନ୍ତନୁ ବୀର୍ଯ୍ୟରୁ ଯେତେ ପୁତ୍ର ହେଲେ ଜାତ
ଚିତ୍ର ବିଚିତ୍ରବୀର୍ଯ୍ୟ ଯେ ଭୀଷ୍ମ ନାମେ ସୁତ ।
ଏମାନେ ଯେଉଁ ପ୍ରକାରେ ଜନ୍ମିଛନ୍ତି ପୁଣି
ସେକଥା ଯାକ ତୁମ୍ଭେତ ସବୁ ଥିବ ଜାଣି ।
ଦାରା ସଂହରଣ କରି ଭୀଷ୍ମ ଯେ ରହିଲେ
ଚିତ ବିଚିତ୍ରବୀର୍ଯ୍ୟ ତ ଅପୁତ୍ରିକେ ମଲେ ।
ସେହିଠାରୁ ସୋମବଂଶ ନୁହନ୍ତେ ଉଦିତ
ସତ୍ୟବତୀର ଉପାୟେ ଜାତ ବେନିସୁତ ।
କୈବର୍ତ୍ତୀ ପୁତ୍ରର ତୁଲେ ପ୍ରୀତି ଅମ୍ବାଳିକା
ତାଙ୍କ ବୀର୍ଯ୍ୟ ଜାତ ଧୃତରାଷ୍ଟ୍ର ପାଣ୍ଡୁ ଏକା ।
ବୁଝିଲେ ଜାରଜାତକ ଧୃତରାଷ୍ଟ୍ର ପାଣ୍ଡୁ
ଆପଣ ଗୋଇ ନ ଚିହ୍ନିପରେ କହି ଭଣ୍ଡୁ ।
ବ୍ୟାସଙ୍କ ବୀର୍ଯ୍ୟୁ ସମସ୍ତେ ତୁମ୍ଭେ ସିନା ଜାତ
ଏହା କେବେହେଁ ନୁହଇ ଜାଣହେ ଅସତ୍ୟ ।
ଦାସରାଜା ଦୁହିତା ଯେ ନାବ ବାହୁଥିଲେ
ପରାଶର ଋଷି ତାର ସଙ୍ଗେ ପ୍ରୀତି କଲେ ।
ଦାସରାଜା ଝିଅ ଗର୍ଭୁ ହେଲେ ବ୍ୟାସ ଜନ୍ମ
ତେଣୁ କୁରୁବଂଶ ବୋଲାଅଟି ଦାସ ସମ ।
ଜାରଜାତକା ବୋଲି ଯେ ପାଣ୍ଡବଙ୍କୁ ବୋଲୁ
ନିଜର ଗୋଇ ନ ଚିହ୍ନିପରେ କହ ଓଲୁ ।
ଧୃତରାଷ୍ଟ୍ର ତୋହର ଯେ ଅଟେ ପରା ପିତା
ଭ୍ରାତୃବଧୂ ଗର୍ଭୁଜନ୍ମି ଅନ୍ଧହେଲେ ବୃଥା ।
ଜ୍ୟେଷ୍ଠମାସ ଅମାବାସ୍ୟା କୃତ୍ତିକାରେ ଜାଣ
ଜାତକ ନାମ ତାହାର ହେଲା ଦୈତ୍ୟରାଣ ।
ଦେବତା ନର ନ ହୋଇ ରାକ୍ଷସ ସେ ହେଲା
ବିଭାକଲେ ଉନଶତ କନ୍ୟା ତାର ମଲା ।
ଗାନ୍ଧାରସେନ ଦୁହିତା ଅଟଇ ଗାନ୍ଧାରୀ
ସେ ପୁଣି ଅମାବାସ୍ୟାରେ ଜନ୍ମିଲା ସୁନ୍ଦରୀ ।
ଜନ୍ମନକ୍ଷତରେ ବ୍ରହ୍ମରାକ୍ଷସୀ ସେ ହେଲା
ବରଣ କରୁ ବାଇଶି ରାଜା ସେ ଖାଇଲା ।
ଶାହାଡ଼ା ବୃକ୍ଷକୁ ବ୍ୟାସ କଲେ ତାକୁ ବିଭା
କୁଶଗଣ୍ଠି ବାନ୍ଧୁବାନ୍ଧୁ ହେଲା ସେ ବିଧବା ।
ଶାହାଡ଼ା ବୃକ୍ଷ ମଲାରୁ ଦୋଷ ତାର ଗଲା
ସେ ବିଧବା କନ୍ୟାକୁ ତୋ ପିତାବିଭାହେଲା
ତାର ବୀର୍ଯ୍ୟ ଶତେପୁତ୍ର ହେଲ ତୁମ୍ଭେଜନ୍ମ
ତୁମ୍ଭର ବଂଶ କଥା ତ ଏପରି ଉତ୍ତମ ।
ଶ୍ରୀକୃଷ୍ଣ ମୁଖୁଁ ଏମନ୍ତ କଥା ଶୁଣି ଲାଜ
ଉଠିଲାକ କୋପକରି ଗାନ୍ଧାରୀ ତନୁଜ ।
ମାରରେ ଏ ଗଉଡ଼କୁ ବୋଲି ହେଲାକ୍ରୋଧ
ଉଠି ଦୁଃଶାସନ କରେ ଧଇଲା ଆୟୁଧ ।
ତାହାଦେଖି ଶୁଦ୍ଧମନେ ପାଞ୍ଚ ପଦ୍ମ ଆଖି
ବୋଇଲେ ଦୁଷ୍ଟଙ୍କୁ ଆଜ ଡରାଇବା ଦେଖି ।
ଦୁଇ ତିନି ଚାରିମୂର୍ତ୍ତି ହେବା ଅବତାର
ତାହା ଦେଖିଲେକ ଭାଜିଯିବ ଏ ପାମର ।
ଦଶ ଅବତାର ମୂର୍ତ୍ତି ଦେଖାଇଲେ ହରି
ଦୁଷ୍ଟେ ଯେ ତାହା ନ ମାନି ପିଟେ ଶସ୍ତ୍ରଧରି ।
ମତ୍ସ୍ୟ କୁର୍ମ ବରାହ ଏ ରୂପ ସଂହାରିଲେ
ଶ୍ରୀନୃସିଂହ ଅବତାର ରୂପ ପ୍ରକାଶିଲେ ।
ମହାଘୋର ଭୟଙ୍କର ରୂପ ଧରୁଁ ହରି
ଏକ ଗର୍ଜ୍ଜନ ରଡ଼ିକେ କମ୍ପିଲା ତ୍ରିପୁରୀ ।
ଆସ୍ଥାନରୁ ପଳାଇଣ ଗଲେ କଉରବେ
ଏକା ଉଭା ହୋଇଛନ୍ତି ତହିଁ ବସୁଦେବେ ।
କାଳାନଳ ଚକ୍ରପ୍ରାୟ ବୁଲାଇ ନୟନ
ତା ଦେଖି ଭାଜିଲେ ଭୟ କରି ସର୍ବଜନ ।
ନୃସିଂହଙ୍କ ତେଜ ଦେଖି ସହି ନ ପାରିଲେ
ଆତଙ୍କେ ପଳାଇ ଘରମାନଙ୍କେ ଲୁଚିଲେ ।
ମହାଶାନ୍ତ ରୂପ ଧଇଲେକ ଭଗବାନ
ବିଦୂରପୁରେ ଚଳିଲେ ତହୁଁ ଜନାର୍ଦ୍ଦନ ।

ସର୍ବଋଷିଏ ମିଳିଲେ ଆସି କୃଷ୍ଣପାଶ
କହନ୍ତି ଯେ ମାର୍କଣ୍ଡେୟ ସଭାର ପୌରୁଷ ।
ବୋଇଲେ କୌରବେ ତହିଁଥିଲେସର୍ବେଚାରୀ
ଦଶଅବତାର ରୂପ ଦେଖାଇଲେ ହରି ।
ଯାହାକୁ ବ୍ରହ୍ମା ରୁଦ୍ରାଦି ଭେଟ ନ ପାଆନ୍ତି
ସେ ରୂପଯାକ ଦେଖିଲା ନେତ୍ରେ କୁରୁପତି ।
କହନ୍ତି ଜନ୍ମେଜୟକୁ ବଇଶମ୍ପାୟନ
ସ୍ନାନ ସାରିଣ ମଣୋହି କଲା ଦୁର୍ଯ୍ୟୋଧନ
ଆଚମନ ସାରି ସଭାମଧ୍ୟେ ବିଜେକଲା
ଏଥିଉତ୍ତାରୁ କହିବା ଶୁଣ ବାଣୀ ଭଲା ।
ଭୀଷ୍ମ ଦ୍ରୋଣ ଭୁରିଶ୍ରବା ସମସ୍ତେହିଁ ଆସି
ରାଜାର ଚାରି ପାରୁଶେ ଅଛନ୍ତି ସେ ବସି ।
ସମାରୋହେ ଆସ୍ଥାନରେ ବସିଛି ରାଜନ
ଏମନ୍ତବେଳେ ମିଳିଲେ ଆସି ଭଗବାନ ।
ଅଠାଶୀ ସହସ୍ର ଋଷି ବିଦୁରକୁ ଧରି
କୁରୁସଭା ମଧ୍ୟେ ଆସି ବିଜେ ନରହରି ।
ଯହିଁପାଇଁ ଯୁଧିଷ୍ଠିର ପେଷିଲେକ ମୋତେ
ସେକଥାଦେଲେ ଆମ୍ଭେ ଯେ ଚଳିବୁତୁରିତେ
ଗ୍ରାମ ପଞ୍ଚଖଣ୍ଡି ମାଗି ଘେନିଆସ ହରି
ଏରୂପେ କହି ଯୁଧିଷ୍ଠି ଅଛନ୍ତି ତିଆରି ।
ଦିଅ ଶୀଘ୍ର ଯିବୁ ଆମ୍ଭେ ଗ୍ରାମ ପାଞ୍ଚଗୋଟି
ହସିଲା କୃଷ୍ଣଙ୍କ ବାକ୍ୟ ଶୁଣି ଧାର୍ତ୍ତରାଷ୍ଟ୍ରି ।
ବୋଇଲେ ମାଗୁଛି କି କି ଗ୍ରାମ ମତେ କହ
ବୁଝିଲେ ପଣ୍ଡୁଙ୍କର ତ ନୁହନ୍ତି ଏ ପୁଅ ।
ତୁମ୍ଭେ ବିଜୟେ ଆପଣ କଲ ଯହୁଁ ଆସି
ବ୍ରହ୍ମାଣ୍ଡକର୍ତ୍ତା ସାକ୍ଷାତେ ଅଟ ବ୍ରହ୍ମରାଶି ।
ମାଗୁଅଛ କେଉଁଗ୍ରାମ କହିବା ତ ହେଉ
ଶ୍ରୀମୁଖୁଁ ଶୁଣି ସଂଶୟ ମନୁ ଫିଟିଯାଉ ।
କେବଣ ଗ୍ରାମକୁ ମାଗୁଅଛି ଦେବରାଜ
ମନକୁ ଅଇଲେ ତାହା ସମର୍ପିବୁ ଆଜ ।
ଶୁଣି କହନ୍ତି ଋଷିଙ୍କୁ ହରି ସାକ୍ଷ୍ୟ କରି
ଭୀଷ୍ମ ଦ୍ରୋଣ ବିଦୁର ଯେ ଶଲ୍ୟ ଆଦିକରି ।
ଯେଉଁଗ୍ରାମ ଦେବେକେବେ ନହୋଇବ ରାଜ
ପାଇ ସନ୍ତୋଷ ହୋଇବେ ଯୁଧିଷ୍ଠିର ରାଜା ।
ଶୁଣ ଦୁର୍ଯ୍ୟୋଧନ ସେହି ଗ୍ରାମଙ୍କର ନାମ
ଦେବା କଥାଏ ସଂସାରେ ଅଟେ ବଡ଼ ଧର୍ମ ।
ଇନ୍ଦ୍ରପ୍ରସ୍ଥ ଯମପ୍ରସ୍ଥ ଆଉ ଜୟନ୍ତାଟି
ହସ୍ତିନା ବାରୁଣା ମିଶି ଦେବୁ ଧାର୍ତ୍ତରାଷ୍ଟ୍ରି ।
ଏପରି ପାଞ୍ଚଖଣ୍ଡ ଯେ ପଡ଼ା ଦେବ ରାୟ
ପାଇ ସନ୍ତୋଷ ହୋଇବେ ଯୁଧିଷ୍ଠିର ରାୟ ।
ଶୁଣି ଦୁର୍ଯ୍ୟୋଧନ ବେନି ଚକ୍ଷୁଦେଲା ବୁଜି
ବୋଲେ ମାଗିଲ କିସ ମୁଁ ମନେ ନାହିଁହେଜି
ମାଗିଲାବେଳେ କାହିଁ ମୋ ମନ ଭ୍ରମୁଥିଲା
ତୁମ୍ଭ କଥାଯାକ ମୋର କର୍ଣ୍ଣେ ନ ପଶିଲା ।
ମାଗିଲେ ତ ଆଉବେଳେ ହୁଅନ୍ତା ଗୋଚର
ଗୋବିନ୍ଦ ବୋଇଲେ ତେବେ ଶୁଣ ନୃପବର
ଆମ୍ଭର ବାକ୍ୟ କର୍ଣ୍ଣକୁ ଯେବେ ହେଲା ଗୁରୁ
ନିର୍ଭୟ ହୋଇଣ ବସି ଶୁଣ ମୋ ମୁଖରୁ ।
ପଡ଼ଇ ଇନ୍ଦ୍ରର ଜଳବୃଷ୍ଟି ଯେତେଠାରେ
ସେ ଭୂମିକି ମାଗିଛନ୍ତି ତୋତେ ପାଞ୍ଚବୀରେ ।
ସେ ଗ୍ରାମର ନାମଗୋଟି ଅଟେ ଇନ୍ଦ୍ରପ୍ରସ୍ଥ
ଚିହ୍ନାଇ କହିଲୁ ଜାଣ ଶୁଣ ହୋଇ ସୁସ୍ଥ ।
ଆବର ପବନ ବାଆ ଲାଗେ ଯେତେ ଭୂମି
ସେ ଗ୍ରାମ ଖଣ୍ଡିକ ନେବେ ଯୁଧିଷ୍ଠିର ସ୍ୱାମୀ
ବାରୁଣାବନ୍ତ ବୋଲିଣ ଅଟେ ତାର ନାମ
ଶୁଣ କୁରୁପତି କହନ୍ତି ଯେ ପରଂବ୍ରହ୍ମ ।
ଆବର ଯେ ଗ୍ରାମ ନାମ ଶୁଣ ନୃପବର
ଯମର କାଳଦଣ୍ଡ ନପଡ଼େ ଯେତେ ଠାର ।
ସେ ଗ୍ରାମର ନାମଗୋଟି ଅଟେ ଯମପ୍ରସ୍ଥ
ବୋଲନ୍ତି ଏ ଗ୍ରାମମାନ ଦିଅ ଜଗନ୍ନାଥ ।
ହସ୍ତିନା ଜୟନ୍ତୀ ମିଶି ଏତେ ଗ୍ରାମ ଦେବୁ
ସନ୍ତୋଷ ହୋଇ ଏଠାରୁ ଆମ୍ଭେତେବେ ଯିବୁ
ତୋହର ଏହି ଆଦର ଦେଖି ପାଞ୍ଚଭାଇ
କେଡ଼େ ଶ୍ରଦ୍ଧାବନ୍ତ ହେବେ ପଞ୍ଚଗ୍ରାମ ପାଇ ।
ଏ ପାଞ୍ଚ ଉତ୍ତାରୁ ଆଉ ଅଛି ଯେତେମାନ
ସେ ପୁରକୁ ଭୋଗକର ତୁହି ଦୁର୍ଯ୍ୟୋଧନ ।
ଏ ଜମ୍ବୁଦ୍ୱୀପ ଯାକରେ ଅଟୁ ଚକ୍ରବର୍ତ୍ତୀ
ଶକୁନି ପ୍ରାୟ ପୁଣି ନ ମିଳେ ମହାମନ୍ତ୍ରୀ ।
ଏହିରୂପେ ଯେବେ ମନ୍ତ୍ରୀ ଚାରିଯୁଗେ ଥାଇ
ରାଜାଙ୍କର ପୁଷ୍ଟି କହିଲେ ଯେ ନ ସରଇ ।
ଶୁଣିଣ ଶକୁନି ମନ୍ତ୍ରୀ ମାରି କରତାଳ
ଭୀଷ୍ମଙ୍କୁ ଡାକିଣ ସାକ୍ଷୀ କଲା ତିନିବେଳ ।
ଦୁଇଖଣ୍ଡ ଗ୍ରାମ ଦିଅ ବୋଲୁଥିଲ ତୁମ୍ଭେ
ଶୁଣିଣ କିସ ମାଗଇ ବାସୁଦେବ ଏବେ ।
କହୁଥିଲ ତୁମ୍ଭେ ପରା ରାଜା କର୍ଣ୍ଣମୂଳେ
ବାମନ ପ୍ରାୟ ଲାଗିଲା ଦେଖ ନନ୍ଦବାଳେ ।
ଏ ସଭାରେ ବସିଅଛ ତୁମ୍ଭେ ଯେତେଲୋକ
କିରୂପେ କୃଷ୍ଣ ମାଗଇ ଶୁଣିଲ ସେ ବାକ୍ୟ ।
ମାଗିଲା ଆସି ଏ ଯେଉଁ ପାଞ୍ଚଖଣ୍ଡି ଗ୍ରାମ
କେ ପାରିବ ସେହି ହୃଦେ ନ ବହିଣ ତମ ।

ମାନଗୋବିନ୍ଦ ବନସ୍ତେ ଏବେ ପଶୁ ଯାଇ
ଏ ପଞ୍ଚନଗ୍ର ଭୁଞ୍ଜନ୍ତୁ ସୁଖେ ପାଞ୍ଚଭାଇ ।
ଶୁଣି ଦୁର୍ଯ୍ୟୋଧନ ମନ୍ତ୍ରୀକି ଯେ ପ୍ରଶଂସିଲା
ବୋଇଲା ମାମୁଁ ଏକା ତୋ କଥାଯାକ ଭଲା
ପୂର୍ବକାଳେ ମୋତେଥିଲ ଯେତେଯେତେ କହି
ସେ କଥାଯାକ ଘଟିଲା ଆସି ଦେଖିଲଇଁ ।
ବୁଝାନ୍ତି ବିଦୂର ଭୀଷ୍ମ ଦ୍ରୋଣ ଯାହାମୋତେ
ବୋଲନ୍ତି ଯେ ବେନିଗ୍ରାମ ଦିଅ ତୋଷଚିତ୍ତେ
ଗୋବିନ୍ଦ ଆସି ମାଗିଲ ଏବେ ପଞ୍ଚଗ୍ରାମ
ଏହି ଦୂତକୁ ମାଇଲେ କୋଟି କୋଟି ଧର୍ମ ।
ସୁଧର୍ମା ସଭା ପରାୟେ ଅଟେ ସଭା ମୋର
ଏଥେ କି ରାଜନ ନନ୍ଦ ଗଉଡ଼ କୁମର ।
ହଂସସଭା ମଧ୍ୟେ ବକ ଥିଲା ପ୍ରାୟ ଦିଶେ
ନନ୍ଦର ପୁଅ ଅଟଇ ସିନା ସେ ସଦୃଶେ ।
ଗଉଡ଼ ମୂର୍ଖ ବୋଲି ଯା ବୋଲନ୍ତିଟି ସର୍ବେ
ସେ କଥାଯାକ ଘଟିଲା ଆସିଣ ପ୍ରସ୍ତାବେ ।
ଯେତେ ଉଚ୍ଚେହେଲେ ଜାତି ଧର୍ମ ନ ଛାଡ଼ଇ
ବଚନ ଭାଷଣେ ତାର କଥା ଚିହ୍ନାଯାଇ ।
ଶ୍ରୀକୃଷ୍ଣ ଉଚ୍ଚହେଲେ କି ଜାତି ଛାଡ଼ିବାକ
ବୁଝିଲେ ଗଉଡ଼ଙ୍କର ଭାବ ଅଟେ ଏକ ।
ଯାହା ମନେ ପାଞ୍ଚୁଥାନ୍ତି ତାହା କରୁଥାନ୍ତି
କିବୋଲି ମାଗିଲ ଏଡ଼େ ଗ୍ରାମ ଶିରୀପତି ।
ମୋର ଦୂଃଶାସନ ଯାଉ ଏ ଗଉଡ଼ ଉଡ଼ି
ଶୁଣିଣ ଧାଇଁଲେ ଦୁଷ୍ଟେ ଉଠି ନିଶମୋଡ଼ି ।
ରାଜାବୋଲେ ମୂର୍ଖେ ଉପରୋଧପରିତ୍ୟାଗୀ
ରହିଲେ ଭୂଷଣ୍ଡି ଗଦାଧରି ବାଟଜଗି ।
ଦେଖିଣ କୃଷ୍ଣଙ୍କୁ ଭୀଷ୍ମ ଦ୍ରୋଣ ଆବୋରିଲେ
ରହ ରହ ମୂର୍ଖ ବୋଲି ବଚନ ଭାଷିଲେ
ବୋଇଲେ ଅଟନ୍ତି କେଡ଼େ ପ୍ରଭୁ ଜଗନ୍ନାଥ
କି ବୋଲି ଧାଉଁଛ ମାରିବାକୁ ଟେକିହସ୍ତ ।
ପ୍ରଭୁଙ୍କୁ ବ୍ରହ୍ମାଣ୍ଡକର୍ତ୍ତା ବୋଲି ଚିହ୍ନୁନାହଁ
କହୁଛ ତୁମ୍ଭର ହିତେ ନିବର୍ତ୍ତିଣ ରହ ।
ଦୁଷ୍ଟଙ୍କର ଦୁଷ୍ଟବୁଦ୍ଧି ଦେଖି ଭଗବାନ
କରେଧରି କୌମୋଦକୀ ଗଦା ସୁଦର୍ଶନ ।
ଦଶଅବତାର ପ୍ରକାଶିଲେ ନରହରି
ଦେଖିଣ ଭାବିଲେ ଦୁଷ୍ଟେ ମନେ ହାସ୍ୟକରି ।
ମତ୍ସ୍ୟକୁର୍ମ ବରାହାଦି ମହାରୂପ ଦେଖି
ବୋଇଲେ ଏମନ୍ତ କିମ୍ପା ହେଲେ ପଦ୍ମଆଖି ।
ଭାଟ ନଟ ପ୍ରାୟ କିମ୍ପା ନାନାରୂପ ଧରୁ
ଏ ରୂପ ଦେଖି ପାଷାଣ ଆମ୍ଭେ ଫିଙ୍ଗିମାରୁ ।

ଶୁଣିଣ ବୋଇଲେ ଜଗନ୍ନାଥ ଆଛା ଆଛା
ଦେଖିରେ ମୂର୍ଖେତେବେ ମୋରୂପ ବିଷ୍ଣୁସଞ୍ଚା
ଏ ରୂପେ ପାଞ୍ଚିଧରନ୍ତେ ପ୍ରଭୁ ବିଷ୍ଣୁରୂପ
ଆକାଶପର୍ଯ୍ୟନ୍ତେ ଘୋଟିଗଲା ହୋଇକୋପ
ବିଶ୍ୱରୂପକୁ ପ୍ରକାଶ କଲେ ଦେବ ହରି ।
ଘୋଟିଲେ ନୃସିଂହ ରୁପ ପ୍ରାୟ ତିନିପୁରୀ ।
ଦେଖିଣ କୌରବ ତ୍ରାସ ପାଇଗଲେ ଘୁଞ୍ଚି
ଖଣ୍ଡେ ଦୂର ଯାଇଁ ସର୍ବେ ରହିଲେକ ଲୁଚି ।
ନୃସିଂହ ରୁପ ଦେଖିଣ ଭୀଷ୍ମ ଦ୍ରୋଣ ଡରି
ଅନେକ କରିଲେ ସ୍ତୁତି ପାଦପଦ୍ମ ଧରି ।
ଭକତବତ୍ସଳ ପ୍ରଭୁ ଭକ୍ତ ଭାବଗ୍ରାହୀ
ସେମାନେ ସ୍ତୁତି କରନ୍ତେ ଗଲେ ତୁନିହୋଇ
ବୁଝିଲେ ଶ୍ରୀନୃସିଂହ ଯେ ପରମ ଦୟାଳୁ
ଚିହ୍ନନ୍ତି ବିଦୂର ଭୀଷ୍ମ ଦ୍ରୋଣ ଭକ୍ତବଳୁ ।
ତହିଁ ଉତ୍ତାରୁ ପୁଛଇ ପୁଣି ଦୂର୍ଯ୍ୟୋଧନ
ବୋଇଲା ଶୁଣ ଶୁଣ ହେ ପ୍ରଭୁ ଭଗବାନ ।
ଏବେହେଁ କହୁଛି ମୁହିଁ ବ୍ୟଗ୍ରେ ଯାଅ ଚଳି
ପଞ୍ଚପାଣ୍ଡବଙ୍କ ଆଗେ କହ ବନମାଳୀ ।
ବିନାଯୁଦ୍ଧେ ସୂଚି ଅଗ୍ରେ ପୃଥ୍ୱୀ ନଦିଅଇ
ପାରିଲେ ଯୁଦ୍ଧ କରନ୍ତୁ ଆସି ପାଞ୍ଚଭାଇ ।
କୃଷ୍ଣ ବୋଇଲେ କହିବି ରାଜା ତେବେଶୁଣ
ଭାଇର ଭାଗ ବ୍ରହ୍ମାଣ୍ଡଯାକେ ଅଛି ପୁଣ ।
ଗୃହରେ ଛୋଟା ହୋଇଣ ଥିବଯେବେ ଭାଇ
ସେ ଆଗ ଗୃହରୁ ଭାଗ ବାଣ୍ଟି ଘେନିଯାଇ ।
ମୁଁ ଦୂତପଣେ ଆସିଛି ପୁଣି ତୁମ୍ଭଠାକୁ
ଏତେକେ ଚିହ୍ନି ତୁମ୍ଭେ ନ ପାର ପାଣ୍ଡବଙ୍କୁ
ତୁମ୍ଭେ ବୋଲୁଛ ଆସନ୍ତୁ ସେହି ଯୁଦ୍ଧ କରି
ଜଣକୁ ଜଣେ ହୁଅନ୍ତି ସିନା ମରାମରି ।
ଭୀମ ଏକାକେ ତୋହର ଶତେ ଭାଇଯାକ
ଧରି ମୋଡ଼ିମାଡ଼ିଦେବ ସବୁଙ୍କର ବେକ ।
ଏଥକୁ ଯେ ସାକ୍ଷୀ ତୁମ୍ଭେ ଥାଅ ଭୀଷ୍ମଦ୍ରୋଣ
ବ୍ରହ୍ମାଣ୍ଡର ହର୍ତ୍ତାକର୍ତ୍ତା କହୁଛି ଯା ଶୁଣ ।
ପାଞ୍ଚଟି ପଡ଼ା ମାଗିଲୁ ଆମ୍ଭେ ସିନା ଆସି
ଖଣ୍ଡିଏହେଲେ ପଡ଼ା ନଦେଲେ କୁରୁବଂଶୀ ।
ବୋଇଲେ ସେ ଦୂର୍ଯ୍ୟୋଧନ ଶୁଣ ମହାବାହୁ
ଯୁଦ୍ଧେ ଜିଣିଲେ ଯୁଧିଷ୍ଠି ପଛେ ସବୁଖାଉ ।
ଗୋବିନ୍ଦ ବୋଇଲେ ମଧୁପିଙ୍ଗଳ ତୋ ଜାତି
ଆପଣାର ଶିରୀ ଆପେ ନାଶୁ କୁରୁପତି ।
ତଥାପି କହୁଛୁ ଆଉ ପଦେ ତୋତେ ଶୁଣ
ଖଣ୍ଡିଏ ହେଲେ ତୁ ପଡ଼ା ଦିଅ କୁରୁରାଣ ।

ଶ୍ରୀକୃଷ୍ଣ ମୁଖୁଁ ଏମନ୍ତ ଶୁଣି କୁରୁରାଜା
ହସି ବୋଇଲେ ଏଠାରୁ ବେଗେ ଉଠି ଯାଅ।
ପ୍ରତ୍ୟକ୍ଷେ ମାଗୁଛ ଆସି ଭଗବାନ ମୋତେ
ଯୁଦ୍ଧ ନ କଲେ ଭୂମି ନଦିଏ କଦାଚିତେ ।
ଶ୍ରୀକୃଷ୍ଣ ବୋଇଲେ ତେବେ ଶୁଣ କୁରୁପତି
ଅର୍ଜୁନ ପ୍ରାୟ ଅଛି କି ତୋର ଜଣେ କ୍ଷତ୍ରୀ ।
ଯୋଦ୍ଧା କୋଟିକେ ବିନ୍ଧିବସେହୁ ବାଣଶତେ
ହସ୍ତୀକେ ଶର ବିନ୍ଧିବ ପୁଣି ସେ ଅୟୁତେ ।
ସ୍ୱାତୀ ନକ୍ଷତ୍ରେ କକଡ଼ାମାସ ଶୁକ୍ର ଯେହ୍ନେ
ଫାଲଗୁନି ଶରମାନ ବିନ୍ଧିବଟି ତେହ୍ନେ ।
ଶୁଣିଣ ରାଜା କହଇ ତହିଁ କଥା ଯନ୍ତ୍ରି
ଦ୍ରୋଣଙ୍କ ପ୍ରାୟ ସଂସାରେ କାହିଁ ଅଛି କ୍ଷତ୍ରୀ
ସାକ୍ଷାତେ ସେ ଦ୍ରୋଣମେଘପ୍ରାୟ ଦ୍ରୋଣଗୁରୁ
ବିନ୍ଧୁ ନ ସରେ ଯମରେ ବାଣ ଯୁଦ୍ଧ କରୁ ।
ମାନଗୋବିନ୍ଦର ମୁଖୁ ଶୁଣି ଯଦୁସାଇଁ
ବୋଇଲେ କହୁଛି ଭୀମ କଥାଶୁଣ ତୁହି ।
ପଶିଲେ ହସ୍ତରେ ଗଦା ଧରି ବୃକୋଦର
କରିବ ପଦାତି ଅଶ୍ୱ ଗଜ ସବୁ ଚୂର ।
ଗାନ୍ଧାରୀର ଶତେ ପୁତ୍ର ସଙ୍ଗେ ତୋତେମାରି
ଯୁଧିଷ୍ଠିର ହେବେ ରାଜା ଭୁଞ୍ଜି ସୁଖଶିରୀ ।
ଏକଥାଯାକ ନୋହିବ ଯେବେ କୁରୁକ୍ଷେତ୍ରେ
ମନୁ ମଦ ଖାଇ ବାନ୍ଧିଥିଲେ ତେବେ ଶାସ୍ତ୍ରେ ।
ଏରୂପେ କହି ଆସ୍ଥାନୁ ପ୍ରଭୁ ଓହ୍ଲାଇଲେ
ତିନି ପାବଚ୍ଛର ତଳେ ଯାଇଁ ବିଜେକଲେ ।
କୃଷ୍ଣଙ୍କୁ ଚାହିଁଣ ହାସ୍ୟ କରନ୍ତି କୌରବେ
ଶ୍ରୀ ମହାଲକ୍ଷ୍ମୀଙ୍କୁ ଚିନ୍ତାକଲେ ବାସୁଦେବେ ।
ବୋଇଲେ ସଖିରେ ମୋର ରହୁ ଆଜିମାନ
ଦୁଃଖେ ମାନଗୋବିନ୍ଦର ସବୁ ପ୍ରାଣ ଧନ ।
ତୁମ୍ଭେ ଆସିଲେ ଗଞ୍ଜିବା ଗର୍ବତାର ଆମ୍ଭେ
ରଖିବ କେବଣ ବାପ ଦେଖିବା ତା ଏବେ ।
ତୁମ୍ଭେ ଯେବେ ପ୍ରତ୍ୟକ୍ଷେ ମୋହର ଅର୍ଦ୍ଧଅଙ୍ଗ
ତେବେ ମୋରବାକ୍ୟପାଳି ଆସିବଗୋ ଆ
ଆମ୍ଭଠାରେ ତୁମ୍ଭର ଗୋ ଅଛି ଯେବେଆଶ
ମାନଗୋବିନ୍ଦର କନ୍ଧୁ ବେଗହୋଇ ଖସ ।
ମୋତେ ବାଧିଲେ ତୁମ୍ଭଙ୍କୁ ନବାଧେ କି ସଖି
ଆମ୍ଭର ଏ ଅପମାନ ରଖ କମଳାକ୍ଷୀ ।
ଏରୂପେ ଚିନ୍ତା କରନ୍ତେ ପ୍ରଭୁ ଚକ୍ରପାଣି
ରାଜାଙ୍କ କନ୍ଧରୁ ଖସି ଖସି କମଳିନୀ ।
ଶ୍ରୀହରିଙ୍କ ବକ୍ଷସ୍ଥଳେ ବସିଲେକ ଯାଇଁ
ଶଙ୍ଖନାଦ କରିଗଲେ ଜଗତ ଗୋସାଇଁ ।

ଦ୍ୱାରିକାପୁରେ ମିଳିଲେ ଯାଇଁ ଭଗବାନ
ଶୁଣନ୍ତି ନାରଦ ବ୍ରହ୍ମା କରନ୍ତି ଯେ ଜ୍ଞାନ ।
କହନ୍ତି ନୃସିଂହ ଗ୍ରନ୍ଥ ଆନନ୍ଦ ସଭାବେ
ପଞ୍ଚପୁରାଣ ପୁଣ୍ୟ ଏ ଗ୍ରନ୍ଥ ଶୁଣି ଲଭେ ।
ପଞ୍ଚପୁରାଣ ଅର୍ଥ ଏ ଗ୍ରନ୍ଥେ ପୂରିଅଛି
କାର୍ତ୍ତିକ ମାଘ ବୈଶାଖେ ଶୁଣି ଖୋଜିପୁଛି
କୋଟିଏ ତୀର୍ଥରେ ଯେତେ ପୂଣ୍ୟଫଳହୋଇ
ସେ ଫଳ ଲଭିବ ଶୁଣି ଗୃହେ ବସିଥାଇ ।
ନୃସିଂହ ପୁରାଣ ସପ୍ତସାଗର ଏ ବାଣୀ
ଲଭିବ ଭାରତ ଭାଗବତ ପୂଣ୍ୟ ଶୁଣି ।
ବଇଶମ୍ପାୟନ ଋଷି ଜନ୍ମେଜୟ ଆଗେ
କହିଛି ପଞ୍ଚପୁରାଣ ଅର୍ଥ ବ୍ରହ୍ମଭାଗେ ।
ଏଥୁ ଅନନ୍ତରେ ବାଣୀ ଶୁଣ ଜନ୍ମେଜୟ
ବିଦୁର ମିଳିଲେ ଯହିଁ ଯୁଧିଷ୍ଠିର ରାୟ ।
ତତକ୍ଷଣେ ଧର୍ମ ପାଶେ ମିଳନ୍ତେ ସେ ଯାଇଁ
ପୁଚ୍ଛିଲେ ତାହାକୁ ତହୁଁ ଯୁଧିଷ୍ଠି ଗୋସାଇଁ
ବୋଇଲେ ଯେ ହସ୍ତିନାକୁ ଗଲେଜଗନ୍ନାଥେ
ସେହିଠାରେ ପଡ଼ିଲା କି କଥାକହ ମୋତେ ।
ବିଦୂର ବୋଲେ ନୋହିଲେ କଥା ସାମଞ୍ଜସ୍ୟ
ହସିଲା ଶ୍ରୀକୃଷ୍ଣ କଥା ଶୁଣି ଅନ୍ଧଶିଷ୍ୟ ।
ପ୍ରଭୁଙ୍କୁ ଝିଙ୍ଗାସି କଲା ବଚ୍ଛା ଦ୍ରୋହସରି
ଧଇଲେ ନୃସିଂହ ଅବତାର ରୂପ ହରି ।
ଦେଖି କଉରବେ ଭାଜିଗଲେ ଅନ୍ତରାଳେ
କେବଳ ପଡ଼ିଲେ ଭୀଷ୍ମ ଦ୍ରୋଣ ପାଦତଳେ
ସ୍ତୁତିକରି ଶ୍ରୀନୃସିଂହ ମୂର୍ତ୍ତି ଶାନ୍ତକଲେ ।
ହରି ଅପମାନେ ଲକ୍ଷ୍ମୀ ଘେନି ତହୁଁ ଗଲେ ।
ଦ୍ୱାରକାପୁରକୁ ଚଳିଗଲେ ଭାବଗ୍ରାହୀ
ଶୁଣ ଆହେ ଧର୍ମରାଜ ବିଦୂର ଯେ କହି ।
ବଇଶମ୍ପାୟନ ଜନ୍ମେଜୟଙ୍କୁ ଯେ ଆଣି
କହନ୍ତି ସେ ଠିକେଠିକେ ସୁଧାସାର ବାଣୀ ।
ମହାଲକ୍ଷ୍ମୀ ଚଳିଯାନ୍ତେ ହସ୍ତିନା ନଗର
ଦିଶନ୍ତି ଯେ ଲୋକେ ଶିରୀ ଛାଡ଼ିଲା ପ୍ରକାର ।
ଆବର ପଡ଼ନ୍ତେ ନଗ୍ରଯାକ ଉତପାତ
ଶକୁନି ପାଶେ ବସିଲା ଯାଇ କୁରୁନାଥ ।
ବୋଇଲା ମାମୁଁ ଶୁଣ ମୁଁ କି କହିବି ତୋତେ
ଦିଶଇ ଉଲୁକାପାତ ପ୍ରାୟ ପୃଥ୍ୱୀ ମୋତେ
ଏହାଶୁଣି ହସିକରି ସେ ଶକୁନି ମନ୍ତ୍ରୀ
ବୋଇଲା କାହିଁକି ରାଜା କରୁ ମନେ ଭ୍ରାନ୍ତି
ସୁଖଭୋଗକଥା ଅଟେ ଲକ୍ଷ୍ମୀଦତ୍ତ ସିନା
ଏକଥା କେହି ଚିହ୍ନି ନ ପାରେ ମୁଢ଼ମନା ।

କହ ଚିରସ୍ଥାୟୀ ହୋଇ ସଂସାରେକେ ଅଛି
କୋଟିଏ ଯାଇଣ ଏକକୋଟି ବିକାଶୁଛି ।
ଧନ ବଢୁଥିଲେ କେଡ଼େ ଆନନ୍ଦ ଜନ୍ମାଏ
କ୍ଷଣକେ ପୁଣି କୁହୁଡ଼ି ପ୍ରାୟ ନାଶ ଯାଏ ।
ନଡ଼ିଆ ଫଳେ ସଲିଳ ଯେହ୍ନେ ପଶେ ଯାଇ
ସେ ରୂପେ ଲକ୍ଷ୍ମୀ ସେ ନ ଜାଣେ ଏହା କହି
ଗଲାବେଳକୁ ଶ୍ରୀଲକ୍ଷ୍ମୀ ଯେହ୍ନେ ଯାନ୍ତି ଜାଣ
ଗଜ ଭକ୍ଷତ କପିତ୍ଥ ରସର ପ୍ରମାଣ ।
ଆହାର ଭସ୍ମ ହୁଅନ୍ତେ କରେ ମଳମୂତ୍ର
ସେ ଫଳ ସେହି ରୂପରେ ପଡ଼େ ଧରି ଗାତ୍ର
ଦେଖିଲେ ଫଳ ମଧ୍ୟେ ନଥାଇ ତେହ୍ନେରସ
ଗଲାବେଳକୁ ଶ୍ରୀଲକ୍ଷ୍ମୀ ଚଳନ୍ତି ତାଦୃଶ ।
କି ରୂପରେ ମନ ତୋର ସଂସାରେ ଭ୍ରମିଲା
ଏଥକୁ କିସ ପାଞ୍ଚୁଛ କୃଷ୍ଣ ଚଳିଗଲା ।
ମୂର୍ଦ୍ଧନା ଅଭିଷେକୀ ତୁ ଅଟୁ ମହାରାଜା
ସଂସାର ଲୋକ କରନ୍ତି ତୋର ପାଦପୂଜା
ହସ୍ତରେ ଅଛଇ ପଦ୍ମପାଦେ ଅଛି ସଦ୍ମ
ତୋ ଧନ ପ୍ରାୟ ସଂସାରେ ନାହିଁକାର ପଦ୍ମ
ପାଷାଣ ଧଇଲେ ଯାଇ ହସ୍ତେ ହେବ ସ୍ୱର୍ଣ୍ଣ
ଏ ଛାର କଥାକୁ କିମ୍ପା ଭାଳୁ ଦୁର୍ଯ୍ୟୋଧନ ।
ଏ ରୂପରେ ଶକୁନି ଯେ କହନ୍ତି ତିଆରି
ଭୀଷ୍ମ ବୋଇଲେକ ତହୁଁ ଶୁଣ ଦଣ୍ଡଧାରୀ ।
ଆମ୍ଭ କହିବା ବାକ୍ୟକୁ ନିନ୍ଦିଲୁ ତୁ ନିତି
ତୋତେ ବଳାଇ ଆମ୍ଭେ ନକହୁ କୁରୁପତି ।
ମହାତ୍ମା ବାକ୍ୟ କହିଲେ ଯେଉଁ ଜନଠେସେ
ତିନି ବରଷ ମଧରେ ପଡ଼େ ଦଣ୍ଡଦୋଷେ ।
ବାରମାସରୁ ମାସକେ ଅବଶ୍ୟ ପଡ଼ଇ
ମୂର୍ଖ ଗର୍ବିତ ଲୋକ ନ ଜାଣେ ଏହାକୁହିଁ ।
ବୃଦ୍ଧଲୋକଙ୍କୁ ଜାଣ ଯେ ପ୍ରାଣୀ କରେକ୍ରୋଧ
ତାହାରି ଉପରେ ନିଶ୍ଚେ ପଡ଼ଇ ପ୍ରମାଦ ।
ଦୂତପଣେ ଆସିଲେ ଯେ ନିଜେ ଦାମୋଦର
ତାହାଙ୍କୁ ନ ଚିହ୍ନିମାରି ଧାଇଁଲେ ତତ୍ପର ।
ଅସନ୍ତୁଷ୍ଟ ହୋଇ ପ୍ରଭୁ ଗଲେ ତୋର ପାଶୁ
ଲକ୍ଷ୍ମୀଙ୍କି ଘେନିଣ ମଧ ଗଲେ ତୋରଦେଶୁ
ଶୁଣିକରି ରାଜା ଅଙ୍ଗୁ ଭୂଷଣ ପଡ଼ିଲା
ମୁକୁଟ ରତନ କେରା ତକ୍ଷଣେ ଝଡ଼ିଲା ।
ବୋଇଲାଯେ ଦୂର୍ଯ୍ୟୋଧନ ସରିଲା ମୋବୁଦ୍ଧି
ଲକ୍ଷ୍ମୀଙ୍କି ଘେନିଣ ଯେବେ ଗଲେ ଦୟାନିଧି
ବୋଇଲେକ ଭୀଷ୍ମ ଦ୍ରୋଣ କହିବାଟି ଶୁଣ
ଅଟନ୍ତି ଭକ୍ତବତ୍ସଳ ପ୍ରଭୁ ନାରାୟଣ ।

ମାମୁଁଙ୍କୁ ଘେନି ଦ୍ୱାରକାପୁରେ ବିଜେକର
ତୋହର ବଡ଼ ବନ୍ଧୁ ଯେ ଅଟେ ହଳଧର
ଏଥିଉତ୍ତାରେ ଶକୁନି ରାଜା ଦୂର୍ଯ୍ୟୋଧନ
ପ୍ରବେଶିଲେ ଯାଇଁ ଯହିଁଛନ୍ତି ଭଗବାନ ।
ଦେଖିଲା ନିଦ୍ରାରେ ଶୋଇଛନ୍ତି ନରହରି
ପାଞ୍ଚିଲା ବସିବା କେଉଁସ୍ଥାନେ ବିଜେକରି ।
ବସିଲେ ଗୋବିନ୍ଦ ସୀମସ୍ଥାନେ ହୋଇସଜ
ଉଠିଲା ବେଳେ ଦେଖିବେ ପ୍ରଭୁ ଦେବରାଜ ।
ଏରୂପେ ପାଞ୍ଚିଣ ରାଜା କୃଷ୍ଣ ସୀମସ୍ଥାନେ
ମନ୍ତ୍ରୀକି ଘେନି ବସିଲା ତହିଁ ଏକମନେ ।
ଶୁଣହେ ନାରଦ ଏହି ଭାରତ ଆଖ୍ୟାନ
ଏଗ୍ରନ୍ଥରେ ପାଞ୍ଚଗ୍ରନ୍ଥ ସମ୍ପୂର୍ଣ୍ଣରେ ଶୁଣ ।
ଦ୍ୱାରକାକୁ ଦୂର୍ଯ୍ୟୋଧନ ଯିବାକଥା ଶୁଣି ।
ବିଦୂର କହିଲେ ଯୁଧିଷ୍ଠିଙ୍କି ତହୁଁ ପୁଣି ।
ବୋଇଲେକ ଆରେ ବାପ ଶୁଣ ଧର୍ମନାନ
ତୁମ୍ଭର ଦୂଃଖ ଦେଖି ନ ସରେ ମୋର ଦିନ
ଶ୍ରୀକୃଷ୍ଣଙ୍କ ପଛେ ପଛେ ଉଠି କୁରୁମଣି
ଦ୍ୱାରକାପୁରକୁ ଚଳିଗଲା ସେହିକ୍ଷଣି ।
ମୁଖେ ଓପ୍ରୋଧ କି ପୃଷ୍ଟେ ଓପ୍ରୋଧଟି କହ
ଏ କଥାକୁ ମନେ ଘେନି ବେଗେ ଚଳିଯାଅ ।
ବଳରାମଙ୍କୁ କହନ୍ତେ ରାଜା ଯାଇ ଖଚ
ତୁମ୍ଭେ ପଛେ ଗଲେ କଥା ହେବ ସବୁ ମିଛ
ଏହାଶୁଣି ଧର୍ମରାଜ ସହଦେବେ ପୁଚ୍ଛି
ବୋଇଲେ ଦ୍ୱାରକା କିମ୍ପା ଗଲା ଅନ୍ଧବସ୍ତି ।
ଶୁଣିକରି ସହଦେବ ହସ୍ତ ଦେଲେ ଚାହିଁ
ବୋଇଲେ ଯାଉଛୁ କୃଷ୍ଣ ଆଣିବାର ପାଇଁ ।
ଭାରତ ସମର କଥା ନିଶ୍ଚେ ଦେବ ଜାଣ
ଯାଉଛି ନିମନ୍ତି ତାଙ୍କୁ ଆଣି କୁରୁରାଣ ।
ବୁଝିଲେ ଅଟନ୍ତି ବଳରାମ ତାଙ୍କ ସହି
କେତେବେଳେହେଁ ଆମ୍ଭଙ୍କୁ କୃଷ୍ଣ ନ ଛାଡ଼ଇ
ଏହାଶୁଣି ଧର୍ମରାଜା ଅର୍ଜ୍ଜୁନକୁ ଡାକି
କହିଲେ ହୃଦର କଥା ଶ୍ରୀକୃଷ୍ଣ କତିକି ।
ବୋଲିବ ଶୁଣିମା ଆହେ ପ୍ରଭୁ ନାରାୟଣ
ତୁମ୍ଭ ଆଜ୍ଞାରେ ମୁଁ ଜନ୍ମିଅଛି ସଂସାରେଣ ।
ତୁମ୍ଭଙ୍କୁ ଯେ ପାଞ୍ଚଗୋଟି ଭାଇଅଛୁ ସେବି
ଆଜ୍ଞାର କଥା କାହାକୁ ଆଉ ଜଣାଇବି ।
ଆପଣଙ୍କ ପରେ ବିଷ୍ଣୁ ଥାନ୍ତୋ ଯେବେ ଜାଣ
ତେବେ ଗୁହାରି କରନ୍ତୁ ତାକୁ ଅନୁକ୍ଷଣ ।
ବଳରାମଙ୍କ ବୋଲେ କି ଆମ୍ଭଙ୍କୁ ଛାଡ଼ିବ
ଯାଅ ଅର୍ଜ୍ଜୁନ ଏକଥା ଶ୍ରୀକୃଷ୍ଣେ କହିବ ।

ଏହାଶୁଣି ଦିବ୍ୟବେଶ ଧରି ଫାଲଗୁନି
ଚଳିଲେ ଦ୍ୱାରକାପୁରେ ରାଜା ଆଜ୍ଞାଘେନି ।
ପାଦୁକା ମନ୍ତ୍ର ବଳରେ ହୋଇଲେ ପ୍ରବେଶ
ସେ ପାଦେ ଶରଣ ବିପ୍ର ପୀତାମ୍ବର ଦାଶ ।
ଜାତିରେ ବ୍ରାହ୍ମଣ ମୁହିଁ ଅଟେ କୁଳଶ୍ରେଷ୍ଠ
ପିତା ମୋ ବାଲୁଙ୍କେଶ୍ୱର ଲକ୍ଷ୍ମୀଧର ଚାଟ ।
ଋଷିକୁଲ୍ୟା ନଦୀତଟେ ଅଟେ ମଠବୃତ୍ତି
ଜଗନ୍ନାଥଙ୍କ ସେବାରେ ଲାଗିଅଛି ନିତି ।
ଯେତେକ ଭୋଜନ ତହିଁ ଖଞ୍ଜିଛନ୍ତି ପ୍ରଭୁ
ଯେତେକ ମଣୋହି ଲାଗି କରାଅଛି ସବୁ ।
ଯୁଧିଷ୍ଠି ଆଜ୍ଞାଘେନିଣ ଗଲେ ସେ ଅର୍ଜୁନ
ଦ୍ୱାରକାପୁରେ ଭେଟିଲେ ପ୍ରଭୁ ଭଗବାନ ।
ଦେଖିଲେ ବସିଛି ସୀମସ୍ଥାନେ କୁରୁପତି
କେତେବେଳେ ସେ ବଡ଼ିମା ପଣ ନ ଛାଡ଼ନ୍ତି
ପାର୍ଥବୋଲେ ମୁଁ ବସିଛି ଯେବେପାଦତଳେ
ଉଠିଲାକ୍ଷଣି ସେ ମୋତେ ଧରିନେବେକୋଳେ
ବୁଝିଲେ ଦୁର୍ଯ୍ୟୋଧନର ହେବେ ପଛଭାଗ
ମୋମୁଖକୁ ଶ୍ରୀମୁଖରେ ଦେଖିବେସେ ଆଗ
ଏତେକଦୁର୍ଯ୍ୟୋଧନ ନବୁଝେ କେତେବେଳେ
ମୁହିଁ ବଡ଼ ଅଟେ ବୋଲି ବସେ ମଥାତଳେ
ଏଥୁଅନ୍ତେ ଆନବାଣୀ ଶୁଣ ଜନ୍ମେଜୟେ
କହିଲା ଚାର ଯାଇଣ ବଳରାମ ଠାଏ ।
ବୋଇଲା ଶୁଣିମା ସାବଧାନେ ସଙ୍କର୍ଷଣ
ବସିଛି ମାନଗୋବିନ୍ଦ କୃଷ୍ଣ ଛାମୁରେଣ ।
ସତ୍ୟଭାମାଙ୍କର ପୁରେ କୃଷ୍ଣ ପାଶେ ବସି
ମନ ବିରସରେ ବସିଅଛି କୁରୁବଂଶୀ ।
ଏରୂପରେ ଚାରିମୁଖୁ ଶୁଣି କାମପାଳେ
ତତକ୍ଷଣେ ଚଳିଗଲେ ଶୁକ୍ରବତୀ ଆଳେ ।
ଆସନ୍ତେ ସେ ବଳରାମ ଜାଣିଲେ ଅଚ୍ୟୁତ
ଉଠଣ ବସନ୍ତେ ଆଗ ଦେଖିଲେକ ପାର୍ଥ ।
ସଖା ଭେଟିଲେ ବୋଲିଣ ଧଇଲେ କୋଳରେ
ବୋଇଲେ ଆସିଲ ଏଥେ କହ କିମର୍ଥରେ ।
ଠାକୁରେ କଲେକି ଦୟା ତୁମ୍ଭେକଲ ସ୍ନେହ
ବୋଇଲେକ ବଳରାମ ପଛେ ଆଗ ଚାହଁ ।
ଶୁଣି ସେ ପଛକୁ ଚାହିଁଦ୍ୟନ୍ତେ ଭଗବାନ
ଦେଖିଲେ ମନ୍ତ୍ରୀକି ଘେନିବସେ ଦୁର୍ଯ୍ୟୋଧନ
ଶ୍ରୀକୃଷ୍ଣ ବୋଇଲେ ରାଜା କିମ୍ପାକଲ ବିଜେ
ଅଶୁଦ୍ଧ ପୁରକୁ ମୋର ଆସିଲ କି କାର୍ଯ୍ୟେ ।
ଅଧେମ ଅପବିତ୍ରଟି ଅଟେ ମୋର ପୁର
ତୁମ୍ଭେ ପୁଣି ଶୁଦ୍ଧିମନ୍ତ ସଂସ୍ୟାରରେ ସାର ।

ମାତୁଳ ବଧ କରିଛୁ ଆମ୍ଭେ ସତ୍ୟ ଜାଣ
କି ରୂପେ ମୋତେ ଏବେ କରିବ ସମ୍ଭାଷଣ ।
ଗୌଡ଼ ବାଉଡ଼ ହାଉଡ଼ ଜାତି ଅଟେ ମୋର
ଅଜାତି ପୁରକୁ କେହ୍ନେ ଆସ ନୃପବର ।
ସଂସାରେ ତୁମ୍ଭେ ହୋଇଛ ସିନା ମହାଜ୍ଞାନୀ
ଆମ୍ଭକୁ ଆମ୍ଭଡ଼ା କରିପାରେ ନୃପମଣି ।
କ୍ଷଣକରେ ଜ୍ଞାନୀଙ୍କି ଯେ ମାୟା କରିପାର
ତୁମ୍ଭ ସମାନେ ଆମ୍ଭେ କି ହେବୁ ନୃପବର ।
ଏହାଶୁଣି ଦୁର୍ଯ୍ୟୋଧନ ମନେକରି ଭ୍ରାନ୍ତି
ବୋଇଲା ଝିଙ୍ଗାସ ଆଉ ନକର ଶ୍ରୀପତି ।
ବୋଇଲେ ଶ୍ରୀ ବଳରାମ ଶୁଣ ଚକ୍ରଧର
କିମ୍ପାଇଁ ରାଜାଙ୍କୁ ତୁମ୍ଭେ ଝିଙ୍ଗାସ ଯେ କର
ବୁଝିଲେ ଲକ୍ଷେ ରାଜାଙ୍କ ପରେ ଶିରୋମଣି
ମୂର୍ଦ୍ଧନା ଅଭିଷେକୀ ଏ ଆମ୍ଭ ବନ୍ଧୁ ପୁଣି ।
ହସ୍ତେ ପଦ୍ମ ପାଦେ ପଦ୍ମ ଅଛି ଦେଖଯାର
ଏଡ଼େହେଁ ପୂଜ୍ୟ ପଶିଲେ ଆସି ଆମ୍ଭଘର ।
ତୁମ୍ଭ ତାଙ୍କରହୋଇଛି ଯେବେବୋଲାବୋଲି
ଘରେ ପଶିଲେ ଥାଏ କି ଆଉ କଥାକାଲି ।
ଯେତେହେଁଦୋଷଥିଲେ ସେକଥା ନଘେନିବ
ଅଧିକ ଆଦର କରି ତାଙ୍କୁ ସଙ୍ଖୋଳିବ ।
ଅନେକ ଦୋଷ କରିବ ଶରଣ ଯେ ପଶେ
ତାହାଙ୍କୁ ନକଲେ ଦୟା ଅଧର୍ମ ପ୍ରକାଶେ ।
ପ୍ରତ୍ୟକ୍ଷେ ଭକ୍ତବତ୍ସଳ ତୁମ୍ଭେ ନାରାୟଣ
ସେ ଯେବେ ପଶିଲା ଦୋଷକରି ଘରେ ଜାଣ
ତାର ହୃଦେ ଯେବେ କୋପ ଟିକିଏ ଥାଆନ୍ତା
ହସ୍ତିନାପୁରକୁ ଛାଡ଼ି କାହିଁକି ଆସନ୍ତା ।
ସୁଜନ ଜନ ପାରନ୍ତି ସିନାଲୋକ ଚିହ୍ନି
ଯେ ଯେଡ଼େଯୋଗ୍ୟମାନନ୍ତି ତାଙ୍କୁ ହୃଦେଘେନି
ଦୋଷକୁ ଅର୍ଜି ପଶିବ ଯେବେ ଘରେ ଆସି
ତାଙ୍କୁ ନିରାଶ ଜାଣ ନକର ବ୍ରହ୍ମରାଶି ।
ନିର୍ବଳ ସାମନ୍ତରଟି ଭୃତ୍ୟ କିଛି ନୋହେ
ବଳବନ୍ତ ସାମନ୍ତର ଭୃତ୍ୟ ଗାଢ଼େ କହେ ।
ଏରୂପରେ ବୋଲି ରାମ ରାଜା ମୁଖ ଚାହିଁ
ବୋଇଲେ କାହିଁକି ବିଜେକଲ କୁରୁସାଇଁ ।
ମାନଗୋବିନ୍ଦ ଯେ ବୋଲେ ଶୁଣ ବଳରାମ
ପାଣ୍ଡବଙ୍କର ଆମ୍ଭର ଲାଗିବ ସଂଗ୍ରାମ ।
ଶ୍ରୀମହାଭାରତ ଯୁଦ୍ଧ କୁରୁକ୍ଷେତ୍ରେ ହେବ
ତୁମ୍ଭଙ୍କୁ ନିମନ୍ତ୍ରି ମୁହିଁ ନେବି ବଳଦେବ ।
ତୁମ୍ଭ ବେନି ଭାଇଙ୍କି ଯେ ବରଣ କରିବି ।
ବ୍ରହ୍ମାଣ୍ଡ କରତା-ଲାଗି ସମସ୍ତ ଜିଣିବି ।

ଏରୂପେ କହି ନିମନ୍ତ୍ରି ତାଙ୍କୁ କୁରୁରାଣ
ମଡନ ହୋଇ ବସିଲା ଟିକେ ଦୂର୍ଯ୍ୟୋଧନ ।
କୃଷ୍ଣ ବୋଇଲେକ ତେବେ ଶୁଣ କୁରୁରାଜ
ଅର୍ଜୁନ ଆସିବା କଥା ପୁଚ୍ଛିବା ଯେ ଆଜ ।
ବୋଇଲେ ପାର୍ଥକୁ ତୁମ୍ଭେ ଆସିଛ କିମ୍ପାଇ
ଏରୂପେ ବୋଲି ଶ୍ରୀକୃଷ୍ଣ ପାର୍ଥ ମୁଖ ଚାହିଁ ।
ବିବସ୍ତ୍ର ବୋଲେ ତୁମ୍ଭେ ତ ଅଟ ଅନ୍ତର୍ଯ୍ୟାମୀ
କହୁଅଛି ଛାମୁରେ ଶ୍ରୀପାଦପଦ୍ମେ ନମି ।
ଯୁଧିଷ୍ଠି ଶ୍ରୀମୁଖେ ମୋତେ ଛନ୍ତି ଯାହାକହି
ବୋଇଲେ ନିମନ୍ତ୍ରିଆଣ ରାମକୃଷ୍ଣେ ଯାଇ ।
ଶୁଣିକରି ଜଗନ୍ନାଥ ହେଲେ ମନ ହୃଷ୍ଟ
ବୋଇଲେ ପଡ଼ିଲା କେତେବଡ଼ କଥା ଘାଟ ।
ଏରୂପେ ପାଞ୍ଚ ଶ୍ରୀହରି ବଳରାମେ ଚାହିଁ
ବୋଇଲେ ଫେଡ଼ିବେ ଦୁଇକଥା ହଳସାଇଁ ।
ଆମ୍ଭଙ୍କୁ ତ ଦୂର୍ଯ୍ୟୋଧନ ପାର୍ଥ ଦୁହେଁ ବରି
ଏଥକୁ କହନ୍ତୁ ନ୍ୟାୟଦେବ ହଳଧାରୀ ।
ଅଟନ୍ତି ଯେ ପ୍ରଭୁ ଦୁଇକୁଳଙ୍କୁ ଯେ ସରି
ଯାହା ବୋଲିବେ କରିବା ତାହା ଧ୍ରୁବକରି ।
ଏହାଶୁଣି ବଳରାମ ବୋଇଲେ ବଚନ
ଯାବତ ନ୍ୟାୟରେ ତୁହି ଥାଉ ଜନାର୍ଦ୍ଦନ ।
ମୋତେ ସାକ୍ଷୀକଲ ଯେବେ କହିବଇଁ ପଦେ
ବୁଝିଲେ ତ ଦୂର୍ଯ୍ୟୋଧନ ଆସିଅଛି ଆଦ୍ୟେ ।
ତୁମ୍ଭ ଆମ୍ଭଙ୍କୁ ବରଣ ଦେଲା ଆଗକରି
ବସିଅଛି କୁରୁରାଜା ନେବାକୁ ସେ ଧରି ।
ଆଗ ଯେଣୁ ନିମନ୍ତ୍ରିଲା ତାର ସଙ୍ଗେ ଯିବ
ଆମ୍ଭଙ୍କୁ ଦିଶିଲା ଏହି ନ୍ୟାୟ ବାସୁଦେବ ।
କୃଷ୍ଣ ବୋଇଲେ ଶୁଣିମା ହେଉ ଶଙ୍କର୍ଷଣ
ଯଥାର୍ଥ କରିଣ ନ୍ୟାୟ କହୁଛି ମୁଁ ଶୁଣ ।
ଅଚେତା ହୋଇ ନିଦ୍ରା ଯେ ଯାଇଥିଲି ମୁହିଁ
ଚାହାନ୍ତେ ଆଗେ ଦେଖିଲି ଯୁଧିଷ୍ଠିଙ୍କ ଭାଇ ।
ପାର୍ଥକୁ ଦେଖିଲି ଏକା ଅନ୍ୟେ ନାହିଁ ଦେଖି
ତୁମ୍ଭଙ୍କୁ କହିଲେ ମିଥ୍ୟା ଫୁଟିଯିବ ଆଖି ।
ନୋହିଲେତ ଜଡ଼ାକାଲ ଛୋଟାଟେରାହେବି
ତୁମ୍ଭଙ୍କୁ କହିଲେ ମିଥ୍ୟା ନସହେ ପୃଥିବୀ ।
କୃଷ୍ଣର ନିୟମାମାନ ଶୁଣି କୁରୁପତି
ବୋଇଲେକ ଶୁଣ ଆହେ ବଳଭଦ୍ର ମୂର୍ତ୍ତି ।
ଜଗନ୍ନାଥଙ୍କର ଦୟା କେବେ ମୋତେନାହିଁ
ସବୁବେଳେ ପାଣ୍ଡବଙ୍କୁ ହୋଇଥାଏ ସହି ।
ଅସମୟକାଳେ ଆସି ତୁମ୍ଭଙ୍କୁ ଭେଟିଲି
ଗୋବିନ୍ଦଙ୍କ ମାୟାରେତ ପଶି ନପାରିଲି ।

ବଳରାମ ବୋଇଲେ ଯେ ଶୁଣ ନାରାୟଣ
କୁରୁକ୍ଷେତ୍ରକୁ ନଯିବା ଦୁହେଁ ତେବେ ଜାଣ ।
କୃଷ୍ଣବୋଇଲେ ଶୁଣିବା ତେବେ ହଳସାଇଁ
ବୁଝିଲେ ବହୁତ ହତ୍ୟା କରିଅଛି ମୁହିଁ ।
ଆଦ୍ୟରେ ମୂରାସୁର ଦୈତ୍ୟ ଅଛି ମାରି
ହିରଣ୍ୟ ରାବଣ ଶିଶୁପାଳ ଆଦିକରି ।
ଏରୁପରେ ମୁଁ ମାରିଛି କେତେ ଦୈତ୍ୟବଳ
ତୁମ୍ଭ ଛାମୁରେ କହୁଛି ଶୁଣ କାମପାଳ ।
ଭାରତ ଶୁଣିଲେ କେତେଲୋକଯେ ତରନ୍ତି
ସେମାନଙ୍କୁ ପୂଣ୍ୟଶ୍ଳୋକ ନିସ୍ତାର କରନ୍ତି ।
ପୂରାଣ ଶୁଣିଲେ ଦେଖିଅଛି ଏଡ଼େ ପୂଣ୍ୟ
ଦେଖିଲା ଲୋକର କି ନ ହେବ କୁହ ଜ୍ଞାନ
ଏ ଗ୍ରନ୍ଥ ଶୁଣିଲେ ନିଶ୍ଚେ ଖଣ୍ଡଇ ଯେ କ୍ଳେଶ
ଶୁଣ ହେ ନାରଦ ଏହି ପୁରାଣର ରସ ।
ମହାଗ୍ରନ୍ଥ ଅଟଇ ଏ ଭାରତ ଆଖ୍ୟାନ
ଜନ୍ମେଜୟଙ୍କୁ କହନ୍ତି ବଇଶମ୍ପାୟନ ।
ଶ୍ରୀକୃଷ୍ଣ ବୋଇଲେ ସ୍ୱାମୀ ଶୁଣ ବଳଦେବ
ସମରକୁ ଦେଖୁଥିବ ଏହି ଆଜ୍ଞା ହେବ ।
ଅର୍ଜୁନ ରଥେ ସାରଥି ହୋଇ ରହିଥିବି
ହସ୍ତରେ ମୁଁ ଧନୁଶର କେବେ ନ ଧରିବି ।
ସତ୍ୟ ମୁଁ କହିଲି ଜାଣ ଯୁଦ୍ଧ ନ କରିବି
ଧନୁଶର ବାଣ କିଛି ହସ୍ତେ ନ ଧରିବି ।
ଆପଣଙ୍କ ଆଗେ ମିଥ୍ୟା କହେ ଯେବେ ମୁହିଁ
ଶ୍ରୀ ନିରଞ୍ଜନ ଥାଳିରେ ଦେବି ବିଷ ନେଇ ।
ଏରୂପେ ବୋଲିଣ ବଳରାମ ପଦ୍ମପାଦେ
ନିୟମ କରିଣ କଥା କହିଲେ ଗୋବିନ୍ଦେ ।
ଶ୍ରୀକୃଷ୍ଣଙ୍କ ସତ୍ୟବାଣୀ ଶୁଣି ସଙ୍କର୍ଷଣ
ବୋଇଲେ କହିବା ତେବେହରିତୋତେଶୁଣ
ଭାରତଯୁଦ୍ଧେ ଧରିବୁ ଯେବେ ଧନୁଶର
ମୂର୍ଦ୍ଧନା ଫାଟିଣ ପ୍ରାଣଯିବ ନିଶ୍ଚେତୋର
କହିଲୁ ଏଡ଼େ ନିୟମ କରି ଯେବେ ମୋତେ
ଭାରତଯୁଦ୍ଧ ଦେଖିବା ରହି ଦିନାକେତେ ।
ଆବର କଥାଏ ମଧ ଶୁଣ କୁରୁରାଣ
ଯୁଦ୍ଧରେ କୃଷ୍ଣ ଧରିବ ଯେବେ ଧନୁତୂଣ ।
ଅବଶ୍ୟ ଚିନ୍ତା ତୁ ମୋତେ କରିବୁ ନୃବର
ଗଲେ ଶିର ଛେଦିବଇଁ ଯୁଧିଷ୍ଠିରଙ୍କର ।
ଶ୍ରୀକୃଷ୍ଣ ପାଣ୍ଡବ ଆଦି ପକାଇବି ହାଣି
ସତ୍ୟବାକ୍ୟ କହିଲଇଁ ଥାଅ ଏହା ଶୁଣି
ଶୁଣିକରି ଦୂର୍ଯ୍ୟୋଧନ ହେଲା ମନେ ତୋଷ
ବୋଲେ ପାଣ୍ଡବଙ୍କୁ ଏବେ କରିବି ବିନାଶ ।

ସଂଗ୍ରାମେ ଶ୍ରୀକୃଷ୍ଣ ଯେବେ ନ ଧରିବେ ଶର
ଆବର ପାଣ୍ଡବଙ୍କୁ ମୋନାହିଁ କେବେଡ଼ର ।
ସହସ୍ରେ ପାଣ୍ଡବ ହେଲେ ମାରିବଇଁ ମୁହିଁ
ଶ୍ରୀମହାଲକ୍ଷ୍ମୀଙ୍କି ଆଗ ମାଗିଣ ନେବଇଁ ।
କମଳା ନ ଥିବାରୁଟି ହୋଇଛି ମୁଁ ଦୁଃଖୀ
ମାଗିଲେ ସୁଦୟା ଅବା କରିବେ ପଦ୍ମାକ୍ଷୀ
ଏହିରୂପେ ମନେ ମନେ ପାଞ୍ଚି କୁରୁରାଣ
ବୋଇଲା ଲକ୍ଷ୍ମୀଙ୍କି ଦିଅ ଦେବ ନାରାୟଣ ।
ଲକ୍ଷ୍ମୀଙ୍କି ଘେନିଣ ପ୍ରଭୁ ଆସିଲେ ସେ ଦିନୁ
ମୁହିଁ ଚାହିଁଲେ ଅନ୍ଧାର ଦିଶେ ମୋତେ ଭାନୁ
ଏହା ଶୁଣି ନାରାୟଣ ମନେ ବଡ଼ ହସି
ବୋଇଲେ ରାଜାକୁନିଶ୍ଚେ ବାଧିଲାଣି ଆସି ।
ଶିର ନୁଆଁଇଣ ପୁଣ ପଶେ ଆସି ଘରେ
ଦେଲେପୁଣି କ୍ଷମାଶୀଳ ବୋଲିବେଟି ନରେ
ନୋହିଲେକ କ୍ରୋଧଜାଣି ନମାଗେକେଜନ
ମାଗିଲେ ଯେହୁ ନଦିଏ ମୂର୍ଖେ ତାଙ୍କୁ ଗଣ ।
ମାଗିବାର କଥାଗୋଟି ନିରସ ନୁହେଁ କି
ସୁକୃତବନ୍ତ ଲୋକେ ଯେ ଦ୍ୟନ୍ତିହସ୍ତଟେକି ।
ମାଗିଲେ ଯେ ନଦିଏ ସେ ପ୍ରାଣୀ ଅଟେହୀନ
କେଡ଼େ ଶାନ୍ତ ହୋଇକରିମାଗେ ଦୁର୍ଯ୍ୟୋଧନ
ଲକ୍ଷେ ରାଜାର ଯେହୁଟି ଅଟେ ଶିରୋମଣି
ନୁଆଁଇଣ ଯେବେ ଶିର ମାଗିଲା ସେ ପୁଣି
ଏରୂପେ ପାଞ୍ଚିଣ ପ୍ରଭୁ ସତ୍ୟଭାମା ପୁରେ
ଲକ୍ଷ୍ମୀଙ୍କି ଅଣାଇଦେଲେ ରାଜାଙ୍କରଠାରେ
ପାଇ ଦୁର୍ଯ୍ୟୋଧନ ରାଜା ସେ ଶକୁନି ମନ୍ତ୍ରୀ
ଦେଖିକରି କମଳାଙ୍କୁ କଲେ ଯେତେ ସ୍ତୁତି
ତାହାଙ୍କର ସ୍ତୁତି ଶୁଣି ତୋଷ ଚକ୍ରପାଣି
ବୋଇଲେ ରାଜା ସଙ୍ଗରେ ଯାତୁ କମଳିନୀ
ସ୍ୱାମୀର ବୋଲରେ ଲକ୍ଷ୍ମୀ ହୋଇଲେଆନନ୍ଦ
ବିଜୟ କରିଲେ ଯାଇ ଦୁର୍ଯ୍ୟୋଧନ କନ୍ଧ ।
ଶୁଣ ଶୁଣ ନାରଦ ହେ ଭାରତ ଆଖ୍ୟାନ
ଜନ୍ମେଜୟକୁ କହନ୍ତି ବଇଶମ୍ପାୟନ ।
ଚାଲନ୍ତେ ଲକ୍ଷ୍ମୀକି କନ୍ଧେ ବହି କୁରୁମଣି
ବୃଦ୍ଧ ଲୋକର ପ୍ରାୟ ନ ପାରେ ବହି ପୁଣି
ଚାଲନ୍ତେ ନିର୍ବଳ ଲୋକପରି କୁରୁନାନେ
ଦେଖିଣ ଶକୁନିମନ୍ତ୍ରୀ ହସେ ମନେ ମନେ ।
ରାଜାବୋଇଲେ ମାମୁଁନପାରେ କନ୍ଧେବୋହି
ଶ୍ରୀଲକ୍ଷ୍ମୀଙ୍କୁ ଫିଙ୍ଗିଦେବି ତଳେ ପଡୁଯାଇଁ ।
ଶକୁନି ବୋଇଲେ ରାଜା ଶିରେ ତେବେବହ
ଅଚିନ୍ତାରେ ଯିବା ଚାଲ ଧରି ଯେଣ୍ଣା ଦେହ

ଶୁଣି କୁରୁରାଜା ଲକ୍ଷ୍ମୀ ଶିରପରେ ବହି
ତତକ୍ଷଣେ ମିଳିଲା ସେ ଅଯୋଧ୍ୟାରେ ଯାଇ
ଅର୍ଜୁନେ ବୋଲେ ଶୁଣିମା ସ୍ୱାମୀ ଜଗନ୍ନାଥେ
ଲକ୍ଷ୍ମୀଙ୍କୁ ଯେ ଛାଡ଼ିଦେଲେ ଲାଗେଭ୍ରାନ୍ତି ମୋତେ
ଲକ୍ଷ୍ମୀଥିବା ଠାବରେ ଯେ ଗୋବିନ୍ଦ ଥାଆନ୍ତି
ଗୋବିନ୍ଦ ଥିବା ଠାବରେ ଧରମ ରହନ୍ତି ।
ଧର୍ମ ରହିଥିବାଠାରେ ରହନ୍ତି ଯେ ସତ୍ୟ
ସତ୍ୟ ରହିବାସ୍ଥାନରେ ଦୟାରହେ ନିତ୍ୟ ।
ଦୟାବନ୍ତ ଲୋକଟିଙ୍କୁ କ୍ଳେଶ ନ ପଡ଼ଇ
କ୍ଳେଶ ନଥିବା ସ୍ଥାନରେ ବିପଦ ନଥାଇ ।
ବିପତ୍ତି ଥିଲେ ମରନ୍ତା ନିଶ୍ଚେ କୁରୁନାଥ
କୃଷ୍ଣ ବୋଇଲେ ତହିଁ ନଭାଳ ବୀର ପାର୍ଥ ।
ରାଜାଙ୍କର ଶିରଗତ ହେବେ କମଳିନୀ
ତେଣୁଟି ବାଟ ନ ଚାଲିପାରେ ରଘୁମଣି ।
ଦେଖ ହୋ କମଳା ମୋର ହୃଦେ ଛନ୍ତିବସି
ତୋତେ ବୋଲି ଏହା କହିଲଇ ପଣ୍ଡୁ ଶିଷି
ଶୁଣି ମନେ ମନେ ତୁଷ୍ଟ ହୋଇଲେ ଅର୍ଜୁନ
ଗରୁଡ଼ ପିଠିରେ ବିଜେ କଲେ ଭଗବାନ ।
ବସିଲେ ଶ୍ରୀହରି କୋଳେ ଯାଇଁ ବୀର ପାର୍ଥ
ହରି ଅର୍ଜୁନ ମିଳିଲେ ଯାଇ ଇନ୍ଦ୍ରପ୍ରସ୍ଥ ।
ଗରୁଡ଼ ପିଠିରୁ ବେଗେ ଉଠି ଭାବଗ୍ରାହୀ
ଯୁଧିଷ୍ଠିଙ୍କ ପାଦତଳେ ପ୍ରଣମିଲେ ଯାଇ ।
ଦେଖି ଯୁଧିଷ୍ଠିର ରାଜା ହେଲେ ମହାଖୁସି
କୃଷ୍ଣଙ୍କୁ ଆଣ ବୋଲିଣ ନକୁଳେ ସେ ପେଷି
ମାଦ୍ରୀର ପୁତ୍ର ଯାଇଣ କୃଷ୍ଣପାଦ ଧରି
ଆସ୍ଥାନରେ ବସାଇଲେ ଆଣି ନରହରି ।
ଯାବତ କୁଶଳ କଥା ପୁଚ୍ଛି ଧର୍ମସୁତ
ସମସ୍ତ କୁଶଳବୋଲି କହିଲେ ଅଚ୍ୟୁତ ।
ଯୁଦ୍ଧକୁ ଆସନ୍ତୁ ବୋଲି ବୋଲେ କୁରୁସାଇଁ
ନୋହିଲେ ପାଣ୍ଡବଙ୍କୁ ମୁଁ ଗ୍ରାମ ଦେବିନାହିଁ ।
ତୁମ୍ଭ ଆଜ୍ଞାରେ ମଧ୍ୟସ୍ଥ ହୋଇକରି ଗଲି
ସେଠାରେ ଉତ୍ତମଲୋକ ଜଣେ ନ ଦେଖିଲି
କେବଳ ବିଦୁର ଭୀଷ୍ମ ଦ୍ରୋଣ ଏଥେ ତହିଁ
ଅଛନ୍ତି ଏହି ତିନିହେଁ ଶୁଦ୍ଧିବନ୍ତ ହୋଇ ।
ଏହାଙ୍କଲାଗି ହସ୍ତିନା ପୁର ଅଛି ରହି
ନୋହିଲେ ଭାଜନ୍ତା ତଳିତଳାନ୍ତଯେହୋଇ ।
ଗ୍ରାମ ଗୋଟିକେ ଗୋଟିଏ ଜାଣ ଭଲଥିଲେ
ତାହାର ଲାଗି ଧରମ ଉଦେ ହୁଏ ଭଲେ ।
ସୁବିଜ୍ଞ ଲୋକ ଯଦ୍ୟପି ଗ୍ରାମେ ଜଣେ ଥାଇ
ତାହାଙ୍କ ଲାଗି ପୃଥ୍ୱୀ କେବେ ନ ବୁଡଇ ।

କହିଲେକେତେହେଁ ରୂପବୋଧି ମୋତେ ପୁଣ
ତାହାଙ୍କ ବାକ୍ୟରେ ଶାନ୍ତହେଲୁ ଆମ୍ଭେଜାଣ
ଏଡ଼େହେଁ ପବିତ୍ର ଅଟେ ଖୁଡୁତା ତୁମ୍ଭର
ତାହାକୁବୋଲନ୍ତି ଲୋକେ ସଂସାରେବିଦୁର
କହିଲେକେତେପ୍ରକାର ବୋଧିମତେ ଆସି
ଶୁଣ କୌନ୍ତେୟ କହନ୍ତି ପ୍ରଭୁ ବ୍ରହ୍ମରାଶି ।
ହସ୍ତିନା ସଭାରେ ମୁହିଁ ପାଇଲଇଁ ଲଜ୍ୟା
ଆସିକରି ଦୁଷ୍ଟମୁଖେ କଲେ କେତେ କଜ୍ୟା ।
ବିଦୂର କହନ୍ତି ଯେ ନ ଶୁଣେ ଅନ୍ଧଶିଷ୍ୟ
ଆମ୍ଭର ବଚନେ ପୁଣି କଲା ବହୁ ରୋଷ ।
ସଭାରେ ମାତାକୁ ତବ ବହୁ ଝିଙ୍ଗାସିଲା
ଋଷି ଚଳିବେ ସଭାରେ ଯାହା ବୋଲୁଥିଲା ।
ଅତ୍ୟନ୍ତ ଶାନ୍ତ ପୁରୁଷ ହେତୁ ଆମ୍ଭେ ପୁଣି
ହୋଇଲୁଯେ ଶାନ୍ତ ଭୀଷ୍ମ ଦ୍ରୋଣକଥାଘେନି
କ୍ରୋଧକୁ ସଂହରି ପୁଣି ହ୍ୱନ୍ତେ ଯାଇ ଭେଟ
ଧାଇଁଲେମାରିବାକୁ ସେ ଦେଖି ମୋତେନଷ୍ଟ
ଡରନ୍ତୁ ବୋଲି ଧରିଲୁ ଚକ୍ର ଆମ୍ଭେ କରେ
ଘୁଞ୍ଚି ପଳାଇ ଲୁଚିଲେ କାହିଁ କୁରୁବୀରେ ।
ସେଠାରୁ ଲୁଚି ଆମ୍ଭେ ଯେ ଗଲୁ ଦ୍ୱାରାବତୀ
ଶୁଣି ଯୁଧିଷ୍ଠିର ଦେବ ହେଲେ କୋପମୂର୍ତ୍ତି ।
ବୋଇଲେ କୃଷ୍ଣଙ୍କ କେଡ଼େ ଦେଲେକଜଞ୍ଜାଳ
ପେଷିଲେ ଆନ ଦୂତକୁ ପୁରନ୍ତା ତା କାଳ ।
ଯୁଦ୍ଧକୁ ସଜ ହେଲାଣି ଯେବେ କୁରୁରାଣ
ଆମ୍ଭର ସେହିଁ କଥାଟି ହେଲାଣି ପ୍ରମାଣ ।
ଉଠରେ ଭୀମନକୁଳ ବୀର ସହଦେବ
ଶ୍ରୀକୃଷ୍ଣ ଅପମାନ କେ ସହିପାରେ ଧ୍ରୁବ ।
ଯୁଧିଷ୍ଠିର ବୋଲୁ ଭୀମ ଉଠିଲା ଝଟତି
କରେ ଗଦାବର ଧରି ବୁଲାଏ ଚୌକତି ।
ପାର୍ଥ ଧଇଲେ ଗାଣ୍ଡିବ ନକୁଳ ଯେ କୁନ୍ତ
ଉଠିଲେ ଶସ୍ତ୍ର ଧରିଣ ମାଦ୍ରୀ ଦେବୀ ସୁତ ।
ଯୁଧିଷ୍ଠିଙ୍କ କୋପ ଦେଖି ଧୌମ୍ୟପୁରୋହିତେ
ବୋଇଲେ ଦୁର୍ଯ୍ୟୋଧନକୁ ପୁଛ ଏହିମତେ ।
ବିଧାତା ଲେଖିଛି ଯା ସେ କଥା ସିନା ହେବ
ମାୟାରେ ପଡ଼ି ବହିଛି ରାଜା ଅହଂଭାବ ।
ଏମନ୍ତ ବୋଲି ସେ ଧୌମ୍ୟପ୍ରୋହିତ ଚଳନ୍ତେ
ଶୁଣ ହେ ନାରଦ ଆନରସ ଏଥୁଅନ୍ତେ ।
ଶକୁନି ମନ୍ତ୍ରିକି ରାଜା ବେଗେ ଡାକିଆଣ
ବୋଇଲା ବରୁଣାବନ୍ତେ ଯାଅ ବେଗେ ପୁଣ
ଯୁଧିଷ୍ଠିର ପାଶେ ଯାଇ ଖବର ମୋ କହ
ଆସନ୍ତୁ ସମର କରି ପଣ୍ଡୁ ପାଞ୍ଚପୁଅ ।
ଆମ୍ଭେ ଅଟୁ ଶତଭାଇ ସେହୁ ପାଞ୍ଚଭାଇ
କରିବା ଧର୍ମ ସମର ମିଳି ଏକ ହୋଇ ।
ଶୁଣିକରି ଶକୁନିଯେ ଚଳିଲା ତକ୍ଷଣେ
ଯୁଧିଷ୍ଠିର ଛାମୁରେ ଯେ ବସେ ବେହରଣେ
ଏହାଦେଖି ସହଦେବ ମନେ ବଡ଼ ହସି
ବୋଇଲେ କାହିଁକି ମାମୁଁ ବିଜେ କଲ ଆସି
ମାମୁଁଙ୍କୁ ବହୁ କାଳୁ ନଥିଲୁ ଆମ୍ଭେ ଦେଖି
ତୁମ୍ଭର ପ୍ରାୟ ସଂସାରେ ନାହିଁ କେହୁ ସାକ୍ଷୀ
ଯୁଧିଷ୍ଠିର ଆଜ୍ଞାକଲେ ଶୁଣ ସହଦେବେ
ମଧ୍ୟସ୍ଥ ପଣରେ ମାମୁଁ ଆସିଛନ୍ତି ଏବେ ।
ଶୁଣିଣ ଶକୁନି ମନ୍ତ୍ରୀ ହସେ ମନେ ଭାବି
ବୋଲେ ମିଥ୍ୟାକହି କେତେକାଳ ମୁଁ ବଞ୍ଚିବି
ତୁମ୍ଭ ଛାମୁକୁ ପେଷିଲା ମୋତେ ଅନ୍ଧ ସୁତ
ବୋଇଲା ଯୁଦ୍ଧେ ଆସନ୍ତୁ ବେଗେ ପଞ୍ଚଭ୍ରାତ ।
ଯୁଦ୍ଧକରି ନ ପାରିଲେ ପୁଣି ବନେ ଯାନ୍ତୁ
ମୋର ଅନ୍ତରେ ଲେଉଟି ପୁଣି ରାଜାହୋନ୍ତୁ
କହନ୍ତି ଶକୁନି ବାକ୍ୟ ଶୁଣି ଧର୍ମରାୟ
ବୋଇଲେ କରିଛି କେତେତୀର୍ଥ ମୋରଦେହ
ଗଣ୍ଡକୀ ଗୟା ଆବର ଗଙ୍ଗା ଗୋଦାବରୀ
ସରଯୁ ସରସ୍ୱତୀ ଯେ ସାବିତ୍ରୀକି ହେରି ।
ଏ ବିଧିରେ କୋଟି ତୀର୍ଥ କରିଛି ମୁଁ ଜାଣ
ଆମ୍ଭର ପ୍ରାୟ ବୁଲି ସେଯାଉ କୁରୁରାଣ ।
ଏରୂପେ କହନ୍ତେ ମାମୁଁ ଆଗେ ଧର୍ମସୁତ
ଏଥି ଉତ୍ତାରୁ ବେଳ ଯେ ହେଲାଆସି ଅସ୍ତ ।
ଶ୍ରୀହରି ଶକୁନି ସହଦେବ ମନ୍ତ୍ରୀବର
ଏକାନ୍ତେ ବସି ତିନିହେଁ କରିଲେ ବିଚାର ।
ଶକୁନି ବୋଇଲା ପ୍ରଭୁ ଶୁଣ ଚକ୍ରପାଣି
କି ରୂପେ ଦୁଇକୁଳରେ ହେବ ଯୁଦ୍ଧ ପୁଣି ।
କେଡ଼େହେଁ ସଙ୍କଟମୋତେ ପଡ଼େଆସି ଏବେ
ତେଣୁକରି ଆପଣଙ୍କୁ ପୁଚ୍ଛେ ବାସୁଦେବେ ।
ଶ୍ରୀହରି ବୋଇଲେ ଏହା ନୁହେଁ ଆମ୍ଭ ହିତେ
ସଭାରେ ପଡ଼ିଲେ ଯାହା ତୁମ୍ଭେଜାଣ କେତେ
ଯୁଧିଷ୍ଠିର ସାକ୍ଷାତରେ ଅଟେ ଧର୍ମମୂର୍ତ୍ତି
ତାହାଙ୍କର କୋପ ଏବେ କରିବକେ ଶାନ୍ତି
ଶକୁନି ବୋଲେ ପ୍ରଭୁଙ୍କ କଥା ଫିଟିଗଲେ
କରିବି ମୁଁ ରଣସଜ୍ଜା ଆପଣ କହିଲେ ।
ଏ ପୃଥ୍ୱୀକି ରଖିବାକୁ ଜନ୍ମିଛ ମାଧବ
ଯୁଧିଷ୍ଠି ଭୀମାର୍ଜ୍ଜୁନ ନକୁଳ ସହଦେବେ ।
ବୁଝିଲେ ଯୁଧିଷ୍ଠିରଙ୍କ ତୁମ୍ଭ ଆତ୍ମା ଗୋଟି
ବୈକୁଣ୍ଠେ ଆଣି ରଖିଲେ ତାଙ୍କୁ ପରମେଷ୍ଠୀ

ଆମ୍ଭେ ମଧ ବୈକୁଣ୍ଠରେ ଅଟୁ ଜାଣ ପାତ୍ର
ଭାରା ନାଶନେ ଆସିଛୁ ଏଥେ ଧରି ଗାତ୍ର ।
ଏ ମହୀର ଭାରା ତୁମ୍ଭେ ନ କଲେ ଉଶ୍ୱାସ
କୁରୁ ପାଣ୍ଡବ ରକ୍ଷଣେ କର ସାମଞ୍ଜସ୍ୟ ।
ହରି ବୋଇଲେ କହିବା ତୋତେ ତେବେ ଶୁଣ
ଆସ କଳିଯୁଗ ହେଉଅଛି ଏବେ ଜାଣ ।
କେମ୍ଭେ ପାଣ୍ଡବେ କରିବେ କହ ରାଜ୍ୟଭୋଗ
ସେ କଥା ମନରେ ପାଞ୍ଚ ବିଚାର ତୁ ଆଗ ।
ମନ୍ତ୍ରୀ ବୋଇଲେ ଶୁଣିମା ସ୍ୱାମୀ ନରହରି
ପଥର ଘରେ ମୋ ବଂଶ ଆସିଅଛି ମାରି ।
ମନ ମଧେ ମୋର ତାହା ଅଛଇଟି ଜାଣ
ମାଗଇ ତାହାରବଂଶ ମାରିବି ମୁଁ ପୁଣ ।
କୁରୁକ୍ଷେତ୍ରେ ପଡ଼ାକୁଟି ବାନ୍ଧିବା ଯେ କାଳେ
ସେଠାରେ ସାକ୍ଷୀତୁମ୍ଭେ ଯେହେବ ଆଦିମୂଳେ
ପାଣ୍ଡବେ ପୂର୍ବ ଭାଗକୁ ପାଇବେ ଯେସନ
କାଲି ପ୍ରଭାତରୁ ତୁମ୍ଭେ କରିବ ତେସନ ।
ମରିବେଟି ଯେଉଁମାନେ ଯାହାହାତେ ଯେହୁ
ସେହିକଥା କହିଦେବି ଶୁଣ ମହାବାହୁ ।
ଶିଖଣ୍ଡିକି ଦେଖି ଭୀଷ୍ମ ଗମିବେ ଯୁଦ୍ଧରୁ
ଧୃଷ୍ଟଦ୍ୟୁମ୍ନ ହାତେ ନାଶହେବେ ଦ୍ରୋଣଗୁରୁ
ଶକଟବ୍ୟୁହେ ମରିବେ ଜାଣ ଅଭିମନ୍ୟୁ
ମରିବ ସାତ୍ୟକି ହାତେ ଭୁରିଶ୍ରବା ସୁନ୍ନ ।
ଧନଞ୍ଜୟ ହସ୍ତେ କର୍ଣ୍ଣ ଲଭିଣ ମରଣ
ମରିବେ ଯୁଧିଷ୍ଠି ହାତେ ଶଲ୍ୟ ନୃପରାଣ ।
ମରିବେ ଭୀମ ହସ୍ତରେ ଗାନ୍ଧାରୀର ପୁଅ
ଏରୂପେ ହୋଇବ କୁରୁବଂଶ ଜାଣ କ୍ଷୟ ।
ସହଦେବଙ୍କ ହସ୍ତରେ ମରିଛି ମୁଁ ପୁଣି
ଏହିରୂପେ କହି ମନ୍ତ୍ରୀ ଚଳିଲା ସେକ୍ଷଣି ।
ହସ୍ତିନା ପୁରରେ ଯାଇ ହୋଇଲା ପ୍ରବେଶ
କଳିକାଳକୁ ଚିନ୍ତା ଯେ କଲେ ଜଗଦୀଶ
ତକ୍ଷଣେ କଳି ଗୋବିନ୍ଦ ପାଦପଦ୍ମେ ଆସି ।
ପୁଚ୍ଛିଲେ ଚିନ୍ତିଲ କାହିଁପାଇଁ ବ୍ରହ୍ମରାଶି ।
ଶ୍ରୀକୃଷ୍ଣ ବୋଇଲେ ତୁମ୍ଭେ ଶୁଣ କଳିଯୁଗ
କୁରୁ ପାଣ୍ଡବେ ଜୀଇଁଲେ କାହିଁ ତୋରରାଗ ।
ଏମାନେ ମରିଲେ ସିନା ତୁମ୍ଭ ଭୋଗ ହ୍ୱନ୍ତା
ଦ୍ୱାପର ଯାଇଣ କଳିଯୁଗ ହିଁ ବୋଲନ୍ତା ।
କଳିକାଳ ବୋଇଲେ ଯେ ଶୁଣ ନାରାୟଣ
ଯାହା ବୋଲିବ କରିବୁ ତାହାଆମ୍ଭେ ଜାଣ ।
ଶ୍ରୀହରି ବୋଇଲେ ତୁମ୍ଭେ ଶୁଣ କଳିଯୁଗ
ଯୁଧିଷ୍ଠି କରନ୍ତୁ ଦିନାକେତେ ରାଜ୍ୟଭୋଗ ।
କହୁଛି ତୁମ୍ଭେ ହେବ ଯେ ବେନିଗୁଳା କାଠି
ଯାଅରେ କୁରୁକ୍ଷେତ୍ରକୁ ଏଥୁ ବେଗେ ଉଠି ।
ଯେସନେ ପାଇବେ ଧର୍ମରାଜ ପୂର୍ବଭାଗ
ସେ ରୂପରେ ଜଗି ତୁମ୍ଭେକର କାର୍ଯ୍ୟବେଗ
ଶ୍ରୀହରିଙ୍କ ଆଜ୍ଞାଘେନି ଗଲେ କଳିକାଳ
ରହିଲେ ଗୁଳା ହୋଇଣ ଯାଇଣ ତତ୍କାଳ ।
ମାର୍ଗଶୀର ଶୁକ୍ଳପକ୍ଷ ତିଥି ତ୍ରୟୋଦଶୀ
ରୋହିଣୀ ନକ୍ଷତ୍ର ଭୃଗୁବାର ବୃଷରାଶି ।
ସେହିଦିନ ରାତ୍ରଅନ୍ତେ ଉଠିଲେ କୌରବେ ।
ବଜାଇ ଯୁଦ୍ଧର ବାଦ୍ୟଭଙ୍ଗୀ ଠାବେ ଠାବେ
ମାନଗୋବିନ୍ଦ ରାଜନ ବାହାରିଲେ ଆଗେ
ତାହାଙ୍କ ସଙ୍ଗରେ ସୈନ୍ୟ ଚଳିଲେଚୌଦିଗେ
ପନ୍ଦର ମେବଛ ସୈନ୍ୟ ରାଜା ସଙ୍ଗେ ଜାଣ
ପଞ୍ଚ ଅରବୁଦ ପୁଣି ଛନ୍ତି ଯୋଦ୍ଧାଗଣ ।
ଭୀଷ୍ମ ଦ୍ରୋଣ କର୍ଣ୍ଣ ଶଲ୍ୟ ସୋମଦତ୍ତ ଆଦି
ଏକଲକ୍ଷ ପଟଛତ୍ର ଉଡ଼େ ଶୂନ୍ୟ ଭେଦି ।
ପାଣ୍ଡବଙ୍କ ସଙ୍ଗେ ଯାନ୍ତି ପ୍ରଭୁ ନରହରି
ସାତ୍ୟକି ସହିତେ ବୀର ଛନ୍ତି ବିଜେ କରି ।
ଶ୍ରୀକୁରୁକ୍ଷେତ୍ର ସ୍ଥାନରେ ଯାଇ ପ୍ରବେଶିଲେ
ପୂର୍ବଭାଗ ଭୀମସେନ ଆବୋରି ରହିଲେ ।
ଦୂଃଶାସନ ବୋଇଲାକ ଶୁଣ ଭୀମସେନ
ପୂର୍ବଭାଗ କେମ୍ଭେ ଭୋଗ କରିବ ହେ ପୁଣ
ଶକୁନି କହେ କଳି ନ କରି ପକା ଗୁଳା
ତା ବାକ୍ୟ ଶୁଣି ହସନ୍ତି ପ୍ରଭୁ ନନ୍ଦବଳା ।
ବୋଇଲେ ଗୁଳା କାହାକୁ କିଏ ନେବ ଜାଣ
ପକାଇବା ଲୋକଟିକୁ ବେଗେ ଡାକି ଆଣ ।
ଶକୁନି ବୋଲେ କରିବା ଜଣେ ମଧ ପାତ୍ର
ତାହାଙ୍କୁ ରଖିବା ଖଣ୍ଡେଦୂରେ କରି ଗୁପ୍ତ ।
ରଖିବା ଯୁଧିଷ୍ଠି ଦୁର୍ଯ୍ୟୋଧନ କରି ମେଳା
ଚିହ୍ନାଇ ହସ୍ତେ ତାଙ୍କର ଦେବ ନେଇ ଗୁଳା
ଯାହା ଭାଗେ ପଡ଼ିବ ଯା ଗୁଳା ଜାଣ ହରି
ସେ ଭାଗେ ରହି ଆସିବ ଯେହୁ ଯୁଦ୍ଧ କରି ।
ଶୁଣିଣ ବୋଇଲେ ଆଛା ଆଛା ନାରାୟଣ
ଉତ୍ତମ ଜଣେ ଏଠାକୁ ତେବେ ବେଗେ ଆଣ
ଶ୍ରୀକୃଷ୍ଣ ମୁଖୁଁ ଶୁଣିଣ ଦୁର୍ଯ୍ୟୋଧନ ରାଜା
ବିଦୁର ମୁଖକୁ ଚାହିଁ ବୋଲେ ବେଗେଯାଯା
ଅନ୍ତର ହୋଇ କ୍ରୋଶେକ ଦୂରେ ଯାଇଥିବ
ଡାକିଲାକ୍ଷଣି ଆସିଣ ପ୍ରବେଶ ହୋଇବ ।
ବିଦୂର ଅନ୍ତର ହ୍ୱନ୍ତେ ପୁଚ୍ଛେ ଦୁର୍ଯ୍ୟୋଧନ
ବୋଇଲାକ ଗୁଳା କିସ ଦେବା ଭଗବାନ ।

କୃଷ୍ଣ ବୋଇଲେ ପୃଥ୍ୱୀକି ରାଜା ଚାହଁ ଉଠି
ଉଠିକରି ଚାହାନ୍ତେ ସେ ଦେଖେ ବେନିକାଠି ।
ତହୁଁ ମହାରାଜ ବଡ଼ ଆନନ୍ଦିତ ହେଲା
ବୋଇଲେ ଏ ରତ୍ନକାଠି ସଜାଡ଼ି କେଥିଲା ।
ଏ ରୂପେ ବୋଲି ଧରନ୍ତେ ରାଜା ବଡ଼ ଖଣ୍ଡ
କୃଷ୍ଣ ବୋଇଲେ କି ଲୋଭ ଛାଡ଼ିନାହିଁ ପିଣ୍ଡ
ଲୋଭରୁ ସିନା ପ୍ରାଣୀଏ ଅଳ୍ପେ ଯାନ୍ତି ମରି
ଲୋଭରୁ ସାହସ କରୁଥାନ୍ତି ନରନାରୀ ।
ସୁବିଜ୍ଞ ସୁପଣ୍ଡିତ ସୁଜନ ଯେତେ ଜନ
ଧନକୁ ଆଶା ସେହୁ ନକରେ ଯେବେମନ ।
କେବଳ ମାତ୍ର କରିବା ପାଇଁ ପ୍ରାଣ ରକ୍ଷା
ଧରି ସଉରଭ ପାତ୍ର ଭୁଞ୍ଜେ ମାଗି ଭିକ୍ଷା ।
ଲୋଭରେ ଧରନ୍ତି ବଡ଼ ଖଣ୍ଡ ଦୂର୍ଯ୍ୟୋଧନ
ବୁଝିବା, ବୋଲି ପାଞ୍ଚିଲେ ପ୍ରଭୁ ଭଗବାନ ।
ଧରନ୍ତେ ସେ ବଡ଼ କାଠି ଖଣ୍ଡ କୁରୁବୀର
ଧଇଲେ ସାନ ଖଣ୍ଡିକ ଧର୍ମ ନୃପବର ।
କାଠିକି ଯେ ଚିହ୍ନାଚିହ୍ନି ହେଲେ ବେନିରାଜା
ଶ୍ରୀକୃଷ୍ଣ କରେ ଦେଲେ ନ କରି ମନେଲଜ୍ଜା ।
ଆସ ବିଦୂର ଡାକିଲେ ଲଜ୍ଜା ଲକ୍ଷ୍ମୀସାଇଁ
ସୁବର୍ଣ୍ଣର ବେନିକାଠି ଦେଲେ ହସ୍ତେ ନେଇ ।
ଧର୍ମକୁ ସୁମରି କରେ ଧଇଲେ ବିଦୂର
ପାଞ୍ଚିଲେ ଏ ବଡ଼କାଠି ଅଟେ ଯୁଧିଷ୍ଠିର ।
କାଠଗୋଟି ସାନ ଅଟେ ଦୁର୍ଯ୍ୟୋଧନ ପରା
ଏରୂପେ ପାଞ୍ଚି ବିଦୂର ହେଲେ ବଡ଼ତୋରା ।
ଜାଣିଲେ ବିଦୂର ମନକଥା ଦେବରାୟେ
ବୋଇଲେ ପକାନ୍ତୁ ପଶା କରି ପଛ ନ୍ୟାୟେ
ଏହିରୂପେ ମନେ ପାଞ୍ଚୁ ପାଞ୍ଚୁ ନରହରି
ପୂର୍ବପାଖେ ବଡ଼କାଠି ପକାଇଲେ ଧରି ।
ପଶ୍ଚିମରେ ସାନକାଠି ଖଣ୍ଡ ପକାଇଲେ
ଦେଖି କଉରବେ ମନେ ଶ୍ରଦ୍ଧାବନ୍ତ ହେଲେ ।
ପାଣ୍ଡବେ ଚିନ୍ତା କରିଣ ରହନ୍ତେ ଦୁଃଖିତେ
ନକର ନ କର ଚିନ୍ତା ଡାକିଲେ ଅଚ୍ୟୁତେ
ବୋଇଲେକ ଧର୍ମଙ୍କର ଅଟେ ଆଦ୍ୟ ଗୁଳା
ଏ କଥା ଚିହ୍ନି ନପାରି ହୁଅମନେ ଭୋଳା ।
ମାପନ୍ତେ ଶକୁନି ବୋଲି ହସ୍ତେତାରଦେଲେ
ବେନିଗୁଳା ଛୁଇଁପ୍ରଭୁ ମନେ ବିଚାରିଲେ ।
ବୋଇଲେ ଛୋଟ ହୋଇତ ଯାଉ ପୂର୍ବକାଠି
କାହାକୁଟି ନୋହୁଜଣା ମୋର ମନଗୋଟି ।
ଏରୂପେ ପାଞ୍ଚି ଶକୁନି ମନ୍ତ୍ରୀ ଆଣିଦେଲା
ମାପନ୍ତେ ପୂର୍ବ ଖଣ୍ଡିକ ଷଡ଼ାଙ୍ଗୁଳି ହେଲା ।

ପଶ୍ଚିମଖଣ୍ଡ ଦ୍ୱାଦଶ ଅଙ୍ଗୁଳିର କାଠି
ଦେଖିକରି ଚମତ୍କାର ହେଲା ଧାର୍ତ୍ତରାଷ୍ଟ୍ରି ।
ଶ୍ରୀହରିଯେ ଚିତ୍ରକୁଟ ମାୟା ଯେଣୁ କଲେ
କେହି ନ ଜାଣେ ଶକୁନିମନ୍ତ୍ରୀ ଜାଣେଭଲେ ।
ପଶ୍ଚିମ କାଠି ଯାଇଣ ପୂର୍ବେ ଉଦେହେଲା
ପୂର୍ବର କାଠି ପଶ୍ଚିମେ ଯାଇ ପ୍ରକାଶିଲା ।
ଜୟ ଜୟ ଶବ୍ଦ କରି ପାଣ୍ଡବେ ଉଠିଲେ
ସନ୍ତୋଷ ଚିତ୍ତରେ ପୂର୍ବଭାଗକୁ ଚଳିଲେ ।
ଯୁଧିଷ୍ଠି ବୋଲେ ଜଣା ନଗଲା ମଧ୍ୟ ସ୍ଥାନ
ଶୁଣି ସତ୍ୟ ଏ ପାଞ୍ଚିଲେ ମନେ ଭଗବାନ ।
ବାମ ଅଙ୍ଗୁଳି ନଖରେ ଭୂମି ଦେଲେ ଚିରି
ଦୁଇପକ୍ଷର ମଧ୍ୟ ଯେ ହେଲା ବସୁନ୍ଧରୀ ।
ନଖରେ ଚିରନ୍ତେ ଏକ ନଦୀ ଗଲା ହୋଇ
ଶୁଣ ଜନ୍ମେଜୟ ବଇଶମ୍ପାୟନ କହି ।
ଏଥିଅନନ୍ତରେ ବାଣୀ ଶୁଣ ହେ ନାରଦ
ସପ୍ତମ ସାଗର ଏ ନୃସିଂହଗ୍ରନ୍ଥ ପଦ ।
ବଇଶମ୍ପାୟନ ଋଷି ଜନ୍ମେଜୟ ଆଗେ
ଶ୍ରୀମହାଭାରତ କହୁଛନ୍ତି ପଦମାର୍ଗେ ।
ଏ ଗ୍ରନ୍ଥ ପଞ୍ଚପୁରାଣ ଫଳ ପ୍ରାଣୀ ଭବେ
ନାନାଦି ପାପଥିଲେ ଯେ ଖଣ୍ଡନ୍ତି ମାଧବେ ।
ଯାବତ ରିଷ୍ଟ ଖଣ୍ଡନ ହୋଇଯାଏ ତାର
ଶ୍ରୀମହାଭାରତ ଶୁଣି ପାପ କ୍ଷୟ କର ।
ଦ୍ୱାପର ଯୁଗରେ ମହାଭାରତ ସମର
ହେଲା କୁରୁକ୍ଷେତ୍ରେ ପଞ୍ଚକଟକ ସମର ।
ପାଣ୍ଡବେ କୌରବଙ୍କର ଯୁଦ୍ଧ ମହାଘୋର
ଗରବ ଦହି ବିବାଦ କଲେ ବେନିକୁଳ ।
ପାଣ୍ଡବଙ୍କଠାରେ ହିଂସା କଲା ଦୂର୍ଯ୍ୟୋଧନ
ପ୍ରମାଦ ପଡ଼ିବ ବୋଲି ନ କଲା ଯେ ଜ୍ଞାନ ।
ଆପେ ହିଂସା କରିବାରୁ ଆଗେ ପାଇ କ୍ଷୟ
ଏ କଥା ଅଟଇ ସତ୍ୟ ଶୁଣ ଜନ୍ମେଜୟ ।
ପରକୁ ପ୍ରମାଦ ଯେହୁ ଚିନ୍ତେ ଅନୁକ୍ଷଣେ
ସେହି ବିପତ୍ତିଯାକକୁ ଦେହେ ଲୋଡ଼ିଆଣେ ।
ହିଂସ୍ରକ ଲୋକକୁ ନାଶକଲେ ଦୋଷନାହିଁ
ଏ କଥା ପୁରାଣେ ଋଷିମାନେ ଛନ୍ତି କହି ।
ପରେ ପାପ ଚିନ୍ତି କେତେ ଗଲେଣି ତ ମରି
ଏକଥା ପ୍ରାଣୀ କେବେ ନ ପାରେ ହେତୁକରି
ପୂର୍ବର କରମେ ଯାହା ଅର୍ଜିଥାଇ ପ୍ରାଣୀ
ସେ ବୁଦ୍ଧି ତାହାକୁ ଦେଇଥାନ୍ତି ଚକ୍ରପାଣି ।
ଅଦୃଷ୍ଟେ ଲେଖି ଆଣିଛି ଯାହା କୁରୁସାଇଁ ।
ବଢ଼ିମାପଣ ତାହାର କେବେ ନ ଛାଡ଼ଇ ।

ଯେତେବେଳେ ଦୂର୍ଯ୍ୟୋଧନ ଥିଲା ଜନ୍ମହୋଇ
ତେତେବେଳେ ପୃଥ୍ୱୀଯାକ ରଖିଥିଲା କାହିଁ ।
ଏବେ ମଲେ କି ପୃଥ୍ୱୀକି ସଙ୍ଗେଯିବ ଘେନି
ଲୋଭରେ ପଡ଼ି ମାତ୍ର ନପାରେ ଏହା ଜାଣି ।
ଏ ଦେହ କ୍ଷଣଭଙ୍ଗୁର ବୋଲି ନ ଜାଣଇ
ସମଦରଶୀ ନୁହଇ ଏହି କୁରୁସାଇଁ ।
ତୁଚ୍ଛାକୁ ବୋଲୁ ଅଛଇ ଅଟେ ମୋର ରାଜ୍ୟ
ଚକ୍ରବର୍ତ୍ତୀ ପଣେ ମୁହିଁ ଭୁଞ୍ଜିବି ଐଶ୍ୱର୍ଯ୍ୟ ।
କାହିଁପାଇଁ ପାଣ୍ଡବଙ୍କୁ ଦେବି ଭୂମିବୃତ୍ତି
ଶତେ ଭାଇଯାକ ଘେନି ମାରିବି ବିକୋତି ।
ପାଣ୍ଡବ ପାଞ୍ଚବୀରେ କି ଅନ୍ଧପ୍ରାୟ ହେବେ
ଶକୁନି ମନ୍ତ୍ରୀ ଯଦ୍ୟପି କୁଶଳରେ ଥିବେ ।
କୁଟେ ମରାଇବ ତାଙ୍କୁ ନାନା ଯତ୍ନ କରି
ଏଠାରେ ପାଣ୍ଡବେ ଆଉ ଯିବେ କି ଉବୁରି
ନୀଳ ଭୁଜବାଣ ଦୁଇ କର୍ଣ୍ଣ ହାତେ ଥିଲେ
ପାଣ୍ଡବେ କି ବର୍ତ୍ତି ଆଉ ଯିବେ ଯୁଦ୍ଧକଲେ
ଆବର ଯୋଦ୍ଧାମାନେଟି ଛନ୍ତିଯେତେ ମୋର
ଭୁରିଶ୍ରବା ଭୀଷ୍ମ ଦ୍ରୋଣ କର୍ଣ୍ଣ ଶଲ୍ୟ ବୀର ।
ଅଶ୍ୱତ୍ଥାମା କୃତବ୍ରହ୍ମା ଜୟଦ୍ରଥ ଆଦି
ବାହ୍ଲିକ ଯେ ଅଲମ୍ଭୁଷ ହଳାୟୁଧ ଯୋଧି ।
ବିକର୍ଣ୍ଣ ମହାକର୍ଣ୍ଣ ଯେ ସୋମଦତ୍ତ ଘେନି
ଆବର ଯେତେକ ପୁଣି ଅଛନ୍ତି ସଇନି ।
ଏହାଙ୍କୁ ଘେନିଣ ମୁହିଁ ଯୁଦ୍ଧ କରି ଯିବି
ଆଜି ସେ ପାଣ୍ଡବଙ୍କର ପ୍ରତିଜ୍ଞା ବୁଝିବି ।
ଏରୁପେ ବିଚାରି ମନେ ରାଜା ଦୂର୍ଯ୍ୟୋଧନ
ଭୀଷ୍ମ ଦ୍ରୋଣ କର୍ଣ୍ଣକୁ ସେ ପାଶେ ଡକାଇଣ
ବୋଇଲା ଚାଲ ହେ ଯିବା ସମର ଭୂମିକି
କୃପ ଅଶ୍ୱତ୍ଥାମା ଆଦି ଛନ୍ତି ଯେତେ ବାକି ।
ଭୂରିଶ୍ରବା ଜୟଦ୍ରଥ ଆଉ ସୋମଦତ୍ତ
ଯେ ଯାହା ଅସ୍ତ୍ର ଧରିଣ ଚାଲ ଚଢ଼ି ରଥ ।
ପଦାତି ସଇନବଳ ଆଉ ଅଛ ଯେତେ
ଚଳନ୍ତୁ ରାଜାଗଣଙ୍କ ସହ ଯେଝାମତେ
ନୃପତି ଆଜ୍ଞା ପାଇଣ ସର୍ବ ସେନାପତି
ଯେ ଯାହାର ସୈନ୍ୟ ଘେନି ଯୁଦ୍ଧେଚଳିଯାନ୍ତି
ଏଗାର କ୍ଷଉଣୀ ବଳ ଘେନି କୁରୁରାଣ
ଆବର ଯେ ଅଠାଣୋଇ ସଂଗେ ଭାଇମାନ
ଯାଇଣ ରଣ ସ୍ଥାନରେ ହୋଇଲେ ପ୍ରବେଶ
କଡ଼ା ମର୍ଦ୍ଦଳ ଘୁମୁରା ବାଜେ ବିଜିଘୋଷ ।
ଆବର ଶଙ୍ଖ ମହୁରୀ ବାଜେ କରତାଳି
ବାଦ୍ୟନାଦ ଘାତେ ପୃଥ୍ୱୀ ପଡ଼ଇ ଉଛୁଳି ।

ଯେ ଯାହାର ଅନୁରୂପେ ପ୍ରତିଜ୍ଞାକୁ କରି
ଏକୁ ଆରେକ ଚଢ଼ିଲେ ଯାନ ଆଗୁ ସରି
କେ ବୋଲେ ଧରଧରକେବୋଲେ ମାରମାର
ଏହିରୂପେ ପ୍ରତିଜ୍ଞା ଯେ କରନ୍ତି ଅପାର ।
ଏରୂପେ ଆସନ୍ତେ ସମରକୁ କୁରୁରାୟ ।
ଏଥୁଅନ୍ତେ ଆନବାଣୀ ଶୁଣ ଜନ୍ମେଜୟ ।
ଜୟନ୍ତା ନଗରରେ ଯେ ଅଛନ୍ତି ପାଣ୍ଡବେ
ଯୁଧିଷ୍ଠି ଭୀମାର୍ଜ୍ଜୁନ ନକୁଳ ସହଦେବେ ।
ପାଳିଣ ପୁତ୍ରଙ୍କୁ ରହିଛନ୍ତି ଦେବୀ କୁନ୍ତୀ
ଏଥୁଅନନ୍ତରେ ଆସି ମିଳିଲେ ଶ୍ରୀପତି ।
କୁରୁକ୍ଷେତ୍ରରେ ସମର ହେବ ବୋଲି ଜାଣି
ମିଳିଲେ ଦ୍ୱାରକାପୁରୁ ଆସି ଚକ୍ରପାଣି ।
ନନ୍ଦିଘୋଷ ରଥେ ବସି ସାତ୍ୟକିକୁ ଧରି
ଜୟନ୍ତାପୁରେ ମିଳିଲେ ଆସି ନରହରି ।
ଦେଖିଲେ ଦାଣ୍ଡଦ୍ୱାରରୁ ଯୁଧିଷ୍ଠି ରାଜନ
ରଥରୁ ଉଠି ବିଜୟେ ପ୍ରଭୁ ଭଗବାନ ।
ସାତ୍ୟକିକୁ ଧରି ଯୁଧିଷ୍ଠିର ପାଶେ ମିଳି
ଚରଣତଳରେ ପଡ଼ି କଲେ ନିଉଛାଳି ।
ଏହା ଦେଖି ଧର୍ମରାୟ ଉଠିଲେ ତକ୍ଷଣେ
ତୋଳିଣ ଧଇଲେ ବେନି ଭୁଜେ ଆଦିମୂଳେ
ଦ୍ୱାରକା କୁଶଳ ପୁଚ୍ଛାକଲେ ଧର୍ମସୁତ
ସକଳ ମଙ୍ଗଳ ବୋଲି କହିଲେ ଅଚ୍ୟୁତ ।
ଅର୍ଜ୍ଜୁନାଦି ଚାରିଭାଇ କଲେ ନମସ୍କାର
କଲ୍ୟାଣ ବାଞ୍ଛା ତାହାଙ୍କୁ କଲେଦାମୋଦର
ବୋଇଲେ ଯଶଶିରୀ ଯେ ପ୍ରାପ୍ତ ହେଉ ବାବୁ
ମରନ୍ତୁ ସେ କଉରବେ ଜିଣି ରାଜ୍ୟ ସବୁ ।
ଏରୂପେ କଲ୍ୟାଣ ଯହୁଁ କଲେ ବାସୁଦେବ
ପାଞ୍ଚିଲେ ଯୁଧିଷ୍ଠି ମନେ ମରିବେ କୌରବ
ତାହାଙ୍କଠାରେ ହରିର ହୁଅଇ ନିର୍ଦ୍ଦୟ
ନିଶ୍ଚୟ ବଂଶ ଆମ୍ଭର ହେଲା ଆସି କ୍ଷୟ
ପୁଣି ହିଁ ବୋଲନ୍ତି ମନେ ପାଞ୍ଚ ଧର୍ମ ଶିଷ୍ୟ
ଯାହା ଯେ ଭିଆଣ କରିଛନ୍ତି ଜଗଦୀଶ ।
ସେ କଥା ଆନ କରି ନ ପାରେ କେଉଁ ନର
ଯାହା ସେ କରମେ ଲେଖିଛନ୍ତି ବେଦବର
ଏରୂପେ ବିଚାରି ମନେ ମନେ କୁନ୍ତଭଟ୍ଟ ।
କୃଷ୍ଣଙ୍କୁ ସଙ୍ଗରେ ଘେନି ଗଲେ ଗଙ୍ଗାତଟ ।
ସ୍ନାନ ସନ୍ଧ୍ୟା ପୂଜା ଭୋଜନାଦି ନୀତି ସାରି
ଜୟନ୍ତପୁରେ ମିଳିଲେ ଆସି ନରହରି ।
ଭୋଜନ ନିର୍ବା କରିଲେ ପାଣ୍ଡବଙ୍କ ମାୟେ
ବୋଇଲେ ସେ ମଣୋହିରେ ବସଦେବରାୟେ

ହେଉ ବୋଲିଣ ଆସନେ ବସିଲେ ସମସ୍ତେ
ସାତ୍ୟକି ଶ୍ରୀକୃଷ୍ଣ ଦୁଇ ପଣ୍ଡୁ ପାଞ୍ଚସୁତେ ।
ଅନେକ ପ୍ରକାର ଖାଦ୍ୟ ପରଷନ୍ତି କୁନ୍ତୀ
ଶ୍ରୀକୃଷ୍ଣଙ୍କୁ ଘେନି ଭୁଞ୍ଜି ବସିଲେ ତଡ଼ତି ।
ଛତୁଆ ଅଟକାଳି ଯେ ଆଉ ସରପୁଳି
ତୋଷେ ଭୁଞ୍ଜିଲେ ସାତ୍ୟକି ପ୍ରଭୁବନମାଳୀ
ଆବର ମଣୋହି ସାରି ଉଠିଲେ ପାଣ୍ଡବ
ଶ୍ରୀମୁଖ ପଖାଳି ପାଦ ଧୋଇ ବାସୁଦେବ ।
ଝୀନ ବସନରେ ନିଜ ନିଜ ମୁଖ ପୋଛି
ବିଡ଼ିଆ ଲାଗି ହୋଇଲେ ପାଣ୍ଡବ ଶ୍ରୀବତ୍ସି ।
ସୁବର୍ଣ୍ଣ କଠାଉ ଚଢ଼ି ବିଜେ କରି ଗଲେ
ଚନ୍ଦ୍ରଶାଳାପୁରେ ବସି ଶକଟା ଖେଳିଲେ ।
ଆନନ୍ଦ ବିନୋଦ କରି ବଞ୍ଚିଲେ ସେଦିନ
ନିଶାରେ ମଣୋହି କରି କଲେକ ଶୟନ ।
ପ୍ରଭାତରୁ ଉଠି ପୁଣି ସ୍ନାନବିଧି ସାରି
ଏଥୁଅନ୍ତେ କଥା ଶୁଣ ହୋଇଲା ଯେପରି ।
ପାଞ୍ଚଟି ପାଣ୍ଡବଗଣ ଘେନି ଭାବଗ୍ରାହୀ
ଯୁଦ୍ଧକୁ ଯିବା ବୋଲିଣ ହେଲେ କୁହାକୁହି ।
ବୋଇଲେ ଯେ ଯାହା ଯାନ ଚଢ଼ି ସଜହୁଅ
ଜାଣିବା କେହ୍ନେ ଜିଣିବ ଆଜି ଅନ୍ଧ ପୁଅ ।
ସଭାରେ ପ୍ରତିଜ୍ଞା କରିଅଛି କୁରୁମଣି
ସେ କଥା ବୁଝିବା ଆଜ ଜଣାଯିବ ପୁଣି ।
କି ରୂପରେ ଯୁଦ୍ଧ କରି ଜିଣିବେ ସେ ଆଜ
ଏ ରୂପେ ବୋଲି ହସିଲେ ପ୍ରଭୁ ଦେବରାଜ ।
ବୁଝିବା ବୋଲିଣ ପାଶେ ଧର୍ମନାମେ ଡାକି
ବୋଇଲେ କହହେ ଏବେ ଯୁଦ୍ଧ କରିବାକି ।
ଶୁଣି ମଉନେ ବସିଲେ ଧର୍ମଦେବ ସୁତ
ବଚନ ନ କହି କିଛି ହେଲେ ସ୍ତମ୍ଭୀଭୂତ ।
ନିଷ୍ପାପ ପୁରୁଷ ସେହୁ ହୃଦେ କୋପ ନାହିଁ
ଡରାଉଥିଲେ ବାହାର ମନେ ସିନା କହି ।
ସତେ କି ସମର ହେବ ବୋଲି ନ ଜାଣନ୍ତି
ବାହାର ମନେ ଡରାଇ ସିନା କହୁଥାନ୍ତି ।
ଯୁଧିଷ୍ଠି ବୋଲେହରି ନ ପାରେ ଏହା କରି
ସୋଦରେ ସୋଦରେକେହ୍ନେ ହେବୁମରାମରି
ଏକ ବୀର୍ଯ୍ୟରୁ ହୋଇଛୁଁ ଆମ୍ଭେ ପୁଣି ଜାତ
ସେହି ବଡ଼ଭାଇ ଆମ୍ଭେ ସାନଭାଇ ସୁତ ।
ପଣ୍ଡୁ ଧୃତରାଷ୍ଟ୍ର ଏକ ଅଟନ୍ତି ସେ ପୁଣି
କି ରୂପରେ ଏକ ଘରେ ହେବୁ ହଣାହଣି ।
ନୋହୁଏ ରାଜ୍ୟ ଦେଶ ମୋ ନୋହୁରାଜଶିରୀ
ବନରେ ପଶିବୁ ପଛେ ଭିକ୍ଷା ମାଗି କରି ।
ଅନ୍ଧରାଜା ଯେ ମୋହର ହେବ ପ୍ରାଣେହତ
କୁଶଳେ ଥାଆନ୍ତୁ ଗାନ୍ଧାରୀର ଶତେ ପୁତ୍ର ।
ଯିବି ମୁଁ ବନେ ଭୁଞ୍ଜିବି ପଛେ ପତ୍ରପାଣି
ସେହିକଥା ଶୁଣି ଭୀମ ଉଠି ଶିର ଝୁଣି ।
ବୋଇଲା କଥାଏ ମୋର ଶୁଣ ଆଦିକନ୍ଦ
ଠାକୁର କହନ୍ତି ଯେବେ ଅଟେ ସବୁ ମନ୍ଦ ।
ପ୍ରଥମ ବନବାସେ ଯେ ଗଲୁଁ ପାଞ୍ଚଭାଇ
ଜତୁର ଘରରୁ ଗଲୁଗଙ୍ଗା ପାରିହୋଇ ।
ପାଇଲୁ କଉରବଙ୍କ ଫଳୁ ଯେତେ ଦୁଃଖ
ସେ ଥିଲେ ଦୁଃଖ କି ମୁହିଁ କରିବି ପଦ୍ମାକ୍ଷ ।
ଏ ଅର୍ଜ୍ଜୁନ କନ୍ଧେ ହରି ଗୋବିନ୍ଦର ମୃଣି
ଗୋଟିଏ ଚକ୍ରଭାର ମୁଁ ବହିଥାଏ ପୁଣି ।
ସୌରଭ ପାତ୍ର ଯେ ଧରିଥାନ୍ତି ଧର୍ମ କରେ
ଆପେ ବୁଲନ୍ତି ବ୍ରାହ୍ମଣପଣେ ଦ୍ୱାରେ ଦ୍ୱାରେ
ଏ ରୂପରେ ଦିନ ବଞ୍ଚି ବାରବର୍ଷ ଗଲା
ଦ୍ୱିତୀୟ ବନବାସ ମୁଁ କିରିବି କି ଭଲା ।
ହାତରେ ସୁଖେ ଖେଳରେ ବସି ପଶାଖେଳ
ହାରି ସକଳେ ବୁଲିଲୁ ଆମ୍ଭେ ବନମାଳ ।
ଜେଢୁତା ଭାଇ ଏ ଦେଲେ ଧନଯାକ ଖାଇ
ଆମ୍ଭଙ୍କୁ ଯେ ବସାଇଲେ ସଭାତଳେ ନେଇ
ଦ୍ରୌପଦୀର ଦକ୍ଷଭୁଜ ଟାଣି ଦୁଃଶାସନ
ଆଣି ସଭା ମଧ୍ୟେ ପୁଣି କଲା ବିବସନ ।
ପାଇଲେ ଆପଣାପତ୍ନୀ ହୋଇ ଦୁଃଖ ଯେତେ
ଏହାଙ୍କର ଦେହ ବୋଲି ସହିଅଛି କେତେ ।
କେଶ ମୁକୁଳା କରିଣ ଛନ୍ତି ଯାଜ୍ଞସେନୀ
ମୋର ଦେହ ସହୁନାହିଁ ଆହେ ଚକ୍ରପାଣି ।
ବାରବରଷ ପୁଣି ଯେ କଲୁ ବନବାସ
ବିରାଟ ରାଜ୍ୟେ ରହିଲୁ ଯାଇ ତେରମାସ ।
ସେ ସ୍ଥାନର ଦୁଃଖ କିସ କହିବି ମୁଁ ଭଲା
ଦ୍ରୌପଦୀର ରୂପ ଦେଖି କୀଚକ ମରିଲା ।
ଯୁଧିଷ୍ଠିର ପରା ପ୍ରଭୁ ଧର୍ମ ମନେ ପାଞ୍ଚି
କୁନ୍ତଭଟ ନାମ ଧରି ରହିଲେ ସେ ଲୁଚି ।
ଏବେ ସେହି କଥା ମାନ ସବୁ ପାସୋରିଲେ
ଜେଢୁତା ପୁଅ ଭାଇଙ୍କ ଗୁଣ ଦେଖାଇଲେ ।
ଜାଣନ୍ତି ପେଟ ପୋଷିବା କଥା ଏକ ଛନ୍ଦ
ତେଣୁ ସେ ଭ୍ରମିବା କଥା ଅଟଇ ଆନନ୍ଦ ।
ବୁଝିଲେ ଋଷିମାନେ କି ଜଟିଳ ନୁହନ୍ତି
ନାନାଦି କଥା କହିଣ ପ୍ରାଣୀଙ୍କି ଜଟାନ୍ତି ।
ସେହି ଋଷିମାନଙ୍କୁ ଏ ସଙ୍ଗ ପ୍ରାୟ ମଣି
ଶୁଣିକରି ଅଟ ଜଟ କରନ୍ତି ସେ ଆଣି ।

ତେଣୁଟି ଠାକୁରଙ୍କର ହୋଏ ଏଡ଼େ ଆଣ୍ଠ
ଫଳ ମୂଳରେ ପୂରାଉଥାନ୍ତି ସଦା ପେଟ ।
କେ ହେଲେ କାହିଁ ଜାଣିବେ କହ ଗୁରୁକଥା
ବନରେ ବୁଲି ଖରାରେ ପୋଡେ ମୋରମଥା ।
ଲେଉଟି ସେହି ଦୁଃଖକୁ ଆଣନ୍ତି ଏ ଆଜି
ଏଡ଼େ ହେଁ ରାଜ୍ୟକୁ ପୁଣି କିମ୍ବା ଯିବେ ତେଜି
କିମ୍ବା ଠାକୁରଙ୍କୁ ପୁଚ୍ଛୁଅଛ ଆହେ ସ୍ୱାମୀ
ମୁଁ ଆଉ କେବେଜାଣ ନ ଯାଅ ବନଭୂମି ।
ବେଗେ ସଜକର ନନ୍ଦିଘୋଷ ନରହରି
ମାରିବେଇଁ କୁରୁବଳ ହସ୍ତେ ଗଦାଧରି ।
ଭୀମର ପ୍ରତିଜ୍ଞାମାନ ଶୁଣି ଜଗନ୍ନାଥ
ଆନନ୍ଦରେ ଶଙ୍ଖଧ୍ୱନି କଲେ ଚଢ଼ିରଥ ।
କୃଷ୍ଣଙ୍କର ଶଙ୍ଖଧ୍ୱନି ଶୁଣି ପାଣ୍ଡୁବଳ
ଯେଝା ବାହନ ଚଢ଼ିଣ ହେଲେ ଏକମେଳ ।
ଯୁଧିଷ୍ଠି ଭୀମ ନକୁଳ ବୀର ସହଦେବ
ଚଢ଼ି ଯେ ଯାହାର ଯାନ ଗଲେ ପାଞ୍ଚ ଶୁଭ ।
ଆରୋହି ଉତ୍ତର ଶଙ୍ଖ ଶ୍ୱେତ ରଥେ ରଥେ
ବିରାଟ ଦ୍ରୁପଦ ଧୃଷ୍ଟଦ୍ୟୁମ୍ନ ଆଦିଯେତେ ।
ଶ୍ରୀଖଣ୍ଡୀ କାଶୀ ରାଜନ ଧୃତକେତୁ ବୀର
କୋନ୍ତଭୋଜକୁ ଘେନିଣ ସର୍ବ ନୃପବର ।
ଏଥୁ ଅନନ୍ତରେ ସ୍ୱାମୀ କୃଷ୍ଣ ସାଜି ରଥ
ବସିଲେ ନନ୍ଦିଘୋଷରେ ଧରି ପାର୍ଥ ହସ୍ତ ।
ସୁବର୍ଣ୍ଣ ସିଂହାସନରେ ବସିଲେ ଦ୍ୱିଜଣ
ଆଗରେ ଶ୍ରୀଜଗନ୍ନାଥ ପଛରେ ଅର୍ଜ୍ଜୁନ ।
ସଧୀରେ ଶୂନ୍ୟରେ ଗମି ଆସେ ଥରଗୋଟି
ଦେଖିଲେ ତା ଭୀଷ୍ମ ଦ୍ରୋଣ ଆଉ ଧାର୍ତ୍ତରାଷ୍ଟ୍ରି
ପାଞ୍ଚିଲେ ପାଣ୍ଡବେ ଏବେ ଯୁଦ୍ଧକୁ ଆସିଲେ
ଅର୍ଜ୍ଜୁନ ରଥେ ସାରଥି ଶ୍ରୀହରି ହୋଇଲେ ।
ଧନ୍ୟରେ ପାଣ୍ଡବବୋଲି ଗାଙ୍ଗେୟ ବୋଇଲେ
କୃଷ୍ଣଙ୍କୁ ରଥରେ ନେଇ ସାରଥି ସେ କଲେ ।
କେଡେ ହେଁ ସୁଦୟା ତାଙ୍କୁ କରିଛନ୍ତି ହରି
ଗାନ୍ଧାରୀ ପୁତ୍ରଙ୍କ ସରିଗଲା ଏବେ ଶିରୀ ।
ଏ ରୂପେ ପାଞ୍ଚନ୍ତେ ମନେ ମନେ ଗଙ୍ଗାସୁତ
ତତକ୍ଷଣେ ନନ୍ଦିଘୋଷ ହୋଇ ଭୂମିଗତ ।
ସମର ଭୂମିରେ ରଥ ହୋଇଲା ପ୍ରବେଶ
ନୃସିଂହ ଶରଣ ବିପ୍ର ପୀତାମ୍ବର ଦାଶ ।
ସପ୍ତମ ରତ୍ନାକର ଏ ନୃସିଂହ ପୁରାଣ
ନାରଦ ଆଗେ କହନ୍ତି ଚତୁର ଆନନ ।
ବଇଶମ୍ପାୟନ ଋଷି ଜନ୍ମେ ଜୟ ଆଗେ
କହନ୍ତି ମହାଭାରତ ବାଣୀ ପଦମାର୍ଗେ ।

ଧୃତରାଷ୍ଟ୍ର କଥା ଆହେ ଜନ୍ମେଜୟ ଶୁଣ
ହସ୍ତେ ପୋଥି ଧରି ବ୍ୟାସ ମିଳିଲେ ଆସିଣ ।
ବୁଝିଲେ ଅନ୍ଧରାଜା କି ନୋହେ ଧୃତରାଷ୍ଟ୍ର
ରାଜାଙ୍କୁ ଜଣାଇ ବ୍ୟାସେ ପଢ଼ିଲେ ସେ ପାଠ ।
ଶୁଣିକରି ଅନ୍ଧରାଜା ଆସନ ପାରିଲେ
କଲ୍ୟାଣ କରିଣ ମୁନି ବେଦପାଠ କଲେ ।
ଅନ୍ଧ ବୋଇଲେ ହେ ପିତା ଗମନ କି ଅର୍ଥେ
ବ୍ୟାସ ବୋଇଲେ ଆସିଛୁ ତୁମ୍ଭର କୃତାର୍ଥେ ।
ତୁମ୍ଭେ ଯେ ପାଞ୍ଚୁଥାଅ ମୁଁ ହେଲି କେଡ଼େ ଅନ୍ଧ
କି ରୂପେ କୃତାର୍ଥ ମୋତେ କରିବେ ଗୋବିନ୍ଦ ।
ବଧିରେ କି ଅନ୍ଧ ଜଡ଼ ବଧିର ଯେ ଲୋକ
ପୂର୍ବରେ ପାତକ କରି ଥାଆନ୍ତି ଅନେକ ।
ଯେ ପ୍ରାଣୀ ପୂର୍ବରେ ପାଞ୍ଚ ପାପ କରିଥାଇ
ତାହାଙ୍କୁଟି କୁଷ୍ଠବ୍ୟାଧି ନିଶ୍ଚେ ଘୋଟେ ଯାଇ
ପୂର୍ବରେ କୋଟି ପାପ ଯେ ପ୍ରାଣୀଥାଏ କରି
ତାହାଙ୍କୁଟି ପେଟବ୍ୟଥା ହୁଏ ମଞ୍ଚପୁରୀ ।
ପୂର୍ବରେ ଦେବାଦୟା ସେ ପ୍ରାଣୀଥାଏ ଭାଙ୍ଗି
ଜନମିଲେ ସଂସାରେ ସେ ହୁଏ ଚିରରୋଗୀ
ପୂର୍ବ ପାପରୁ ଯାବତ ରୋଗ ସିନା ଆସେ
ଏ ରୂପେ ବସି ପାଞ୍ଚ ତୁ ରଜନୀ ଦିବସେ ।
ତେଣୁ ଆସିଅଛୁ ତୋତେ ଯିବୁ ମୋକ୍ଷ କରି
ଦେଖିଲେ ମହାଭାରତ ଯୁଦ୍ଧ ଯିବ ତରି ।
ଦେଖ ଦିବ୍ୟଚକ୍ଷୁ ଦେଇଅଛି ତୋତେ ବାବୁ
ଦେଖିଲେ ମୋକ୍ଷ ହୋଇଣ ସ୍ୱର୍ଗେ ଜାଣଯିବୁ ।
ଏହା ଶୁଣି ଅନ୍ଧରାଜା ବୋଲେ ଶୁଣ ତାତ
ଦେଖିଲେ ମରିବି ସିନା ହୋଇ ବିରକତ ।
ଏକାବଂଶେ କାହିଁ ହୋଇଅଛି ହଣାହଣି
ଏକଥା ପୁରାଣରେ ନ ଥିଲି କାହିଁ ଶୁଣି ।
ହେଲାଣି ବରଷ ମୋତେ ସସ୍ରଯାକେ ଭୋଗ
ଏତେକ ଯେ କଳିଯୁଗ ହେଲା ଆସି ଆଗ ।
ମରିବା କାଳକୁ ଆଉ କିମ୍ବା ଦେବ ଆଖି
ଅଧିକ ଝୁରିବ ସିନା ବଂଶ ମୃତ୍ୟୁ ଦେଖି ।
ଏ ରୂପେ ସନ୍ତାପିତ ହୋଇଣ ମହାରାଜା
ବ୍ୟାସଙ୍କ ଚରଣେ ଉଠି କଲା ଦିବ୍ୟପୂଜା ।
ବ୍ୟାସ ବୋଇଲେରେ ବାପଶୁଣ ଅନ୍ଧସୁତ
ପ୍ରଥମୁଁ ତୋହର ପୁତ୍ର ଦ୍ୱନ୍ଦ କଲେ ଜାତ ।
ପାଣ୍ଡବଙ୍କ ଦୂତ ହୋଇ ଆସିଲେ ଶ୍ରୀହରି
ସଭାରେ ଲଜ୍ଜା ପାଇ ସେ ଗଲେ ଅପସରି ।
ଶ୍ରୀକୃଷ୍ଣ ଯେ ଲଗାଇଲେ ଯାଇ କଳିମାର୍ଗ
ମରିବେ ତୋହର ପୁତ୍ରେ ଘେନି ବନ୍ଧୁବର୍ଗ ।

ପାଣ୍ଡବେ କଉରବେ ଯେ ହେଲେ ମରାମରି
ପାଣ୍ଡବେ ଜିଣିବେ ତୋର ସୁତେ ଯିବେ ହାରି
ଆମ୍ଭର କହିବା କଥା ନିଶ୍ଚେ ହେଲା ସତ୍ୟ
ଆବର କଥାକୁ ମଧ ଶୁଣ ଅନ୍ଧସୁତ ।
ତିନି ପ୍ରକାରେ ଯେ ଗୁଣ ଅଛି କୁରୁକ୍ଷେତ୍ରେ
ଦେଖିବ ଶୁଣିବ ତୀର୍ଥ କରି ଅହୋରାତ୍ରେ ।
ଶ୍ରୀକୁରୁକ୍ଷେତ୍ର ମହିମା ଅଟେ ଅଗୋଚର
ଏଥିରୁ କଥାଏ କର ହେବୁ ଯେବେ ପାର ।
ବ୍ୟାସଙ୍କର ବାକ୍ୟ ଶୁଣି ବୋଲେ କୁରୁସାଇଁ
ଶୁଣିବି କେବଳ ପିତା ଦେଖିବି ଯେ ନାହିଁ ।
ବୁଝିଲେତ ଦୁଇକୁଳ ଅଟନ୍ତି ମୋ ବଂଶ
ଦେଖିବି ବୋଲି ତା ଲାଗୁଅଛି ମୋତେ ବିଷ
ବ୍ରାହ୍ମଣ ଯେ ଗୁରୁ ପିତା ପୁତ୍ର ହଣାହଣି
ଦେଖିଲେ ଶୋକେ ମରିବି ସିନା ମୁହିଁ ପୁଣି ।
ଏହି ପାପକଥା ମୁହିଁ ନେତ୍ରେ ନ ଦେଖିବି
କହିଲେ ଯାବତ ମୁହିଁ କର୍ଣ୍ଣେ ଶୁଣୁଥିବି ।
ବ୍ୟାସ ବୋଇଲେକ ଆଛା ଶୁଣ କୁରୁରାୟେ
ଉତ୍ତମ ଜଣେକ ରଖି ଯାଉଛୁଁ ତୋ ଠାଏଁ ।
ଗାଲବ ପୁତ୍ର ସଞ୍ଜୟ ମନ୍ତ୍ରୀ ପରା ତୋର
ତାକୁ ଦିବ୍ୟଚକ୍ଷୁ ଦେଉଅଛୁଁ ଆମ୍ଭେ ବର ।
ତୋହର ଘେନି ବର ମୁଁ ଦେଲି ତାକୁ ସବୁ
ଶ୍ରୀମହାଭାରତ ଏହି କହିଲେ ଶୁଣିବୁ ।
ଶ୍ରୀ କୁରୁକ୍ଷେତ୍ର ମଧ୍ୟରେ ହେବ ଯେତେ ଯୁଦ୍ଧ
ସେଠାର କଥା ଶୁଣିଣ ହୋଇବୁ ତୁ ବୋଧ ।
ଯାବତ କଥା କହିବ ତୋତେ ସେହି ଆଣି
ଦିବ୍ୟ କର୍ଣ୍ଣରେ ଭାରତ କଥା ଯିବୁ ଶୁଣି ।
ଯେତେକ ଲୋକ ପଡ଼ିବେ ସେହି ରଣ ମଧ୍ୟେ
କେବା ଉବୁରି ରହିବେ ତହୁଁ ଅପ୍ରମାଦେ ।
ଆଲୋକ୍ୟ ସମର ତହିଁ ହେବ ମହାଘୋର
ମରିବେଟି ଭଲମନ୍ଦ ବହୁ ପାପୀନର ।
ନିର୍ମଳ ଧର୍ମ ଉଦୟ ହେବ ଯେଉଁ କତି
ସେହି ଏକା ଯଶ ଲଭି ଜିଣିବ ଏ ପୃଥ୍ୱୀ ।
କୃଷ୍ଣ ଯେ ଦୁଇକୁଳକୁ କରୁଛନ୍ତି ମେଳ
ଜିଣିବ କେହୁ ହାରିବ କାର କେତେ ବଳ ।
ଏହି ଘେନି ଦିବ୍ୟଚକ୍ଷୁ ଦେଲି ତୋତେ ବାବୁ
ବୁଝାଇ ଧୃତରାଷ୍ଟ୍ରଙ୍କୁ ସବୁ କହିଥିବୁ ।
ସଂକ୍ଷେପି ସମସ୍ତ କଥା ପ୍ରକାଶିବୁ ଆଣି
ବସ ଏହି କର୍ଣ୍ଣପଥେ ସବୁଥିବୁ ଶୁଣି ।
ଏ ରୂପରେ ସଞ୍ଜୟଙ୍କୁ ଦେଇ ଦିବ୍ୟଚକ୍ଷୁ
ଚଳିଗଲେ ବେଦବ୍ୟାସ ଧୃତରାଷ୍ଟ୍ର ପାଖୁ ।

ଏଥୁ ଅନନ୍ତରେ ଶୁଣ ଆହେ ମୁନିବର
ସପ୍ତମ ସାଗର ମହିମା ଏ ଅଗୋଚର ।
ପାଞ୍ଚପୁରାଣର ଫଳ ଏଥୁଁ ଜାଣ ମିଳେ
ଯାବତ ପୁଣ୍ୟ ବାଞ୍ଛାକୁ ଲଭିବ ତତ୍କାଳେ ।
ଭାରତ ରାମାୟଣ ଶ୍ରୀଭାଗବତ ବାଣୀ
ଏହି ଗ୍ରନ୍ଥ ଶୁଣିଥିଲେ ସବୁ ଯିବ ଜାଣି ।
ସବୁ ପୁରାଣର ପୁଣ୍ୟ ଲଭିବ ଏ ଗ୍ରନ୍ଥେ
ତାହାଙ୍କୁ ମୋକ୍ଷ କରିବେ ନିଶ୍ଚେ ଜଗନ୍ନାଥେ ।
ଜନ୍ମେଜୟ ରାଜା ଆଗେ ବଇଶମ୍ପାୟନ
କହନ୍ତି ବିଶଦ କରି ଭାରତ ଆଖ୍ୟାନ ।
କହିଣ ଧୃତରାଷ୍ଟ୍ରଙ୍କୁ ଯାନ୍ତେ ବ୍ୟାସମୁନି
ସେହିଠାରୁ ଅନ୍ଧରାଜା ପୁଚ୍ଛେବାକ୍ୟ ପୁଣି ।
ସଞ୍ଜୟ ବୋଇଲେ ତେବେ ବୁଝ କୁରୁପତି
ଏ ଗ୍ରନ୍ଥ ଶୁଣିଲେ ପାପ ହୁଏ ବିନଶ୍ୟତି ।
ଶ୍ରୀମହାଭାରତ ଭୀଷ୍ମପର୍ବ ଠାରୁ ଶୁଣ
ପାଣ୍ଡବେ କଉରବେ ଯେ କଲେ ଯୁଦ୍ଧଜାଣ ।
ଯହୁଁ ରାଜା କହେ କହ କୁରୁକ୍ଷେତ୍ର ଯୁଦ୍ଧ
ପୁତୁରା ପୁତ୍ର ମୋ କିରୂପେ କଲେ ବାଦ ।
ମୋହର ପୁତ୍ର ପ୍ରଭୃତି ପଣ୍ଡୁ ପୁତ୍ରମାନେ
କେଉଁରୂପେ କଲେ ଯୁଦ୍ଧ କୁରୁକ୍ଷେତ୍ରସ୍ଥାନେ ।
ଯୁଦ୍ଧରେ ଉଚ୍ଛନ୍ନ ହୋଇଗଲେ କହ କେତେ
ଏହିକଥା ସଂଖ୍ୟାକରି କହ ମନ୍ତ୍ରୀ ମୋତେ ।
ପାଣ୍ଡବ ସଇନ କେତେ ଆମ୍ଭ ସୈନ୍ୟ କେତେ
ଏ କଥା ନିଶ୍ଚୟ ଶୁଣି ଯିବଇଁ ପରତେ ।
ଶୁଣିଲେ ମୁଖରୁ ତୋର ପ୍ରତେ ଯିବି ମୁହିଁ
ଭୂତ ଭବିଷ୍ୟତ କଥା ଜାଣ ଏବେ ତୁହି ।
ଶୁଣିକରି ଅନ୍ଧମୁଖୁ ସେ ସଞ୍ଜୟ ମନ୍ତ୍ରୀ
ବ୍ୟାସଙ୍କର ପ୍ରସାଦରୁ ସକଳ କହନ୍ତି ।
ସଞ୍ଜୟ ବୋଇଲେ ରାଜା ଶୁଣ କୁରୁପତି
ଏ ଗ୍ରନ୍ଥ ଶୁଣି ସଂସାରୁ ଲୋକେ ହେବେ ମୁକ୍ତି
ଶ୍ରୀମହାଭାରତ ଭୀଷ୍ମ ପର୍ବ କଥା ଶୁଣ
ପାଣ୍ଡବ କୌରବଙ୍କର ଲାଗେ ଯୁଦ୍ଧ ଜାଣ ।
ବେନିଭାଗ କରି ବାଣ୍ଟି ନେଲେ କୁରୁକ୍ଷେତ୍ର
ପୂର୍ବଭାଗେ ପାଣ୍ଡବେ ସେ ପଶ୍ଚିମେ ତୋ ପୁତ୍ର
ଏ ଜମ୍ବୁଦ୍ୱୀପରୁ ପୁଣି ଗଲେ ଲକ୍ଷେରାଜା
ଡକାଇ ଆଣି ବାଣ୍ଟିଲେ ତାଙ୍କୁ କରି ଖଞ୍ଜା ।
ସେହିକଥା ଶୁଣି ରାଜା ମନେ ହେଲେ ତୋଷ
ବୋଇଲେ ତ କୁରୁକ୍ଷେତ୍ର ଅଟେ ପୁଣ୍ୟଦେଶ
ଆବର ତ ନନ୍ଦିଘୋଷ ଅଛି କୁରୁକ୍ଷେତ୍ରେ
ସାରଥି ହୋଇଣ ରଥ ବାହାନ୍ତି ଅଚ୍ୟୁତେ ।

ଅର୍ଜୁନ ରଥି ହୋଇଣ ରଥେ ଅଛି ବସି
ସାରଥି ହୋଇ ବାହାନ୍ତି ରଥ ବ୍ରହ୍ମରାଶି ।
ଶ୍ରୀକୁରୁକ୍ଷେତ୍ର ମଧ୍ୟରେ ଛନ୍ତି କେତେ ଜନ
ଶ୍ରୀକୃଷ୍ଣଙ୍କ ଦେହେ ଯାଇ ହେବେ ସବୁ ଲୀନ ।
ଏ ରୂପରେ ପାଞ୍ଚ ମନେ ସକଳ ନୃପତି
ବାଣ୍ଟିଣ ରହିଲେ କୁରୁକ୍ଷେତ୍ର ଦୁଇକତି ।
ସତୁରି ସହସ୍ର ରାଜା ଦୁର୍ଯ୍ୟୋଧନ ଆଢ଼େ
ତିନିଶସସ୍ର ରାଜା ତାଙ୍କ ଭାଗେ ପଡ଼େ ।
ଏ ରୂପରେ ଲକ୍ଷେ ରାଜା ହେଲେ ବେନିଭାଗ
ବ୍ୟାସଙ୍କ ପ୍ରସାଦୁ ମୁହିଁ କହୁଛି ତୋ ଆଗ ।
ଦୁର୍ଯ୍ୟୋଧନର ଏଗାର ଅକ୍ଷୌହିଣୀ ବଳ
ଆବର ଯେ ପାରିଦଣ୍ଡ ଛନ୍ତି ଅନର୍ଗଳ ।
ଶ୍ରୀକୁରୁକ୍ଷେତ୍ର ସ୍ଥାନରେ ହେବେ ସର୍ବେ ଏକ
ପଦାତି ଆବର ରଥି ଛନ୍ତି କେତେ ଲୋକ ।
ପାଣ୍ଡବଙ୍କ ସୈନ୍ୟବଳ ଶୁଣ କୁରୁମଣି
ଯୁଧିଷ୍ଠିର ରାଜାପାଶେ ଛନ୍ତି ଚକ୍ରପାଣି ।
ତିରିଶ ସହସ୍ର ଯାଏ ଯେତେ ନୃପସାଇଁ
ମିଳିଲେ କୁରୁକ୍ଷେତ୍ରର ପୂର୍ବଭାଗେ ଯାଇଁ ।
ନନ୍ଦିଘୋଷ ରଥେ ବସିଅଛି ବୀର ପାର୍ଥ
ସାରଥି ପଣରେ ରଥ ବାହାନ୍ତି ଅଚ୍ୟୁତ ।
ନକୁଳ ଭୀମସେନ ଯେ ଆଉ ସହଦେବ
ସମରରେ ପଶି ଯୁଦ୍ଧ କରିବେ ଏ ଧ୍ରୁବ ।
ପୃଥିବୀ ପ୍ରଳୟ କାଳେ ଯେହ୍ନେ ସିନ୍ଧୁପାଣି
ଦିଶନ୍ତି ସେ ରୂପେ କୁରୁ ପାଣ୍ଡବ ସଇନି ।
ଘୋଟକ ସ୍ୟନ୍ଦନ ଗଜ ପଦାତି ଅପାର
ଶବଦ କୋଳାହଳରେ ଶୁଭେ ମହାଘୋର ।
ପଦାତିକ ରଥି ଯେତେ ଆଉ ମହାବୀର
ଅନେକ ମହାମଲ୍ଲ ଯେ ଛନ୍ତି ନୃପବର ।
ସମରେ ପଶିଅଛନ୍ତି ତୋର ଶହେପୁଅ
ଅରିଷ୍ଟି ଉତ୍ପାତ କରୁଛନ୍ତି ଅପ୍ରମେୟ ।
ମରିଲେ ମଲ୍ଲମାନେ ଯେ ପୃଥ୍ୱୀ ହେବ ସଲ
ତେଣୁ ସମରରେ ପଶିଛନ୍ତି ଉତ୍ଫୁଲ ।
କୁରୁକ୍ଷେତ୍ରର ମଧ୍ୟରେ ଛନ୍ତି ଯେତେ ଜନ
ସମସ୍ତେ ସଭା କରିଣ ବିଚାରିଲେ ପୁଣ ।
ବୋଇଲେକ ଏଥେଆମ୍ଭେ ଅଛୁଁ ଯେତେଲୋକ
ସମରେ ନିୟମ କରି ଛୁଇଁ ଧନୁଯାକ ।
ସକଳ କଥାରେ ଆମ୍ଭେ ହୋଇଥିବା ପ୍ରୀତି
ଯୁଦ୍ଧରେ ପଶିଲେ ହାଣି ପକାଇବା କ୍ଷତ୍ରୀ ।
ଆଉ ଏକ କଥା ମଧ ସତ୍ୟ କରିଥିବା
ବିରଥି ହେଲେ ସମରେ ଜାଣ ନ ମରିବା ।
ଉଲଗ୍ନେ ଅସମ୍ଭାଳରେ ପଳାଏ ଯେ ପ୍ରାଣୀ
ତାହାକୁ ଯେ ନ ମାରିବା ସର୍ବେ ଥାଅ ଶୁଣି ।
ନିସତ ହୋଇଣ ଯେହୁ ରହିବ ରଣରେ
ତାହାକୁଟି ନ ମାରିବା ଅଧର୍ମ ବେଭାରେ ।
ସମର ସରିଲେ ସର୍ବେ ଏକତ୍ର ହୋଇବା
ଯେ ଯାହାର ଭାଇବନ୍ଧୁ ବୋଲି ଚିହ୍ନୁଥିବା ।
ହସିବା ବସିବା ପୁଣ କଥାବାର୍ତ୍ତା ହୋଇ
ହୃଦୟରୁ ଛାଡ଼ିଦେବା କୁଟ ହିଂସା ଦୁଇ ।
ଶକଟା ପଶା ଖେଳିବା ସୁଖେ ତହୁଁ ବସି
କୁଟୁମ୍ବରୁ ଅଧିକରେ ସର୍ବେ ଥିବା ମିଶି ।
ଏହିରୂପେ କହୁଁ ଭୃଗୁବୀର ପରବେଶି
ସେହିଦିନ ଭଲଯୋଗ ହ୍ୱନ୍ତେ ଦିବାନିଶି ।
ପ୍ରଭାତ କାଳରେ ପୁଣି ସୂର୍ଯ୍ୟୋଦୟ ହୋନ୍ତେ
ବସିଲେ ଯେ ଭୀଷ୍ମ ଦ୍ରୋଣ ସନ୍ଧ୍ୟାକରି ହସ୍ତେ
ଆଦିତ୍ୟ ଦେବତାଙ୍କୁ ଯେ କଲେ ନମସ୍କାର
ବୋଇଲେ ପାଣ୍ଡବେ ଯୁଦ୍ଧେ ଜିଣନ୍ତୁ ଆମ୍ଭର ।
ଏମନ୍ତ ବୋଲିଣ ତହିଁ କଲ୍ୟାଣ ବାଞ୍ଛିଲେ
ଶୁଣ ଆହେ ଧୃତରାଷ୍ଟ୍ର ସଞ୍ଜୟ କହିଲେ ।
ଉତ୍ତମ ଚକ୍ଷୁରେ ଏହା ଦେଖିଲି ମୁଁ ସବୁ
ଗୁପତ ଆଶିଷ ଏହି ଅଟେ ଜାଣିଥିବୁ ।
ବ୍ୟାସଙ୍କ ପ୍ରସାଦୁ ଏହା ଜ୍ଞାତ ହେଲି ପୁଣ
ଏଥୁଅନନ୍ତରେ ରାଜା ଯୁଦ୍ଧ କଥା ଶୁଣ ।
ଶ୍ରୀଭୀଷ୍ମ ମହାରଥି ଯେ ହେଲେ ପରବେଶ
ଦେଖିଲେକ କୁରୁକ୍ଷେତ୍ର ସାଗର ସଦୃଶ ।
ଆଦିତ୍ୟ ରଶ୍ମି ପରାୟେ ଦିଶେ ବେନିକୁଳ
ରହିଅଛନ୍ତି ରାଉତ ଆଉ ଅଶ୍ୱବଳ ।
ପ୍ରଥମରେ ସେନାପତି ଭୀଷ୍ମ ହେଲେ ଜାଣ
ରଥକୁ ଅଷ୍ଟରତ୍ନେ ସେ ମଣ୍ଡିଲେକ ପୁଣ ।
ସେ ରଥପରେ ଉଡ଼ାଇ ଚିରାଳ ବହୁତ
ବିବିଧ କୁସୁମମାଳ ଲମ୍ବ ଅପ୍ରମିତ ।
ଦରପଣ ବାଡ଼ମାନ ଲମ୍ବେ ପନ୍ତି ପନ୍ତି
ଆବର ଚାରିପାଶରେ ଲମ୍ବେ ଗଜମୋତି ।
ରଥର ଚାରିକୋଣରେ ସ୍ୱର୍ଣ୍ଣମୟ ଖମ୍ବ
ନୀଳାର ପଥର ଲାଗିଅଛି ହୋଇ ଦମ୍ଭ ।
ଶ୍ରେଣୀରେ ସେ ବତା କାଣ୍ଡ ସ୍ୱର୍ଣ୍ଣପାଟି ପୁଣ
ଚାରିପାକୁଶରେ ରତ୍ନ ହୋଇଛି ନିର୍ମାଣ ।
ଧ୍ୱଜ ପତାକାମାନ ଯେ ଉଡ଼େ ଗଗନରେ
ସନ୍ଦ୍ୟନକୁ ଘେନି ଅଶ୍ୱ ଉଡ଼ନ୍ତି ଶୂନ୍ୟରେ ।
ଭାଗ୍ୟବର ବୋଲିକରି ଅଟଇ ସାରଥି
କରେ ଧରି ଧନୁଶର ଗାଙ୍ଗେୟ ଆସନ୍ତି ।

ସମର ଭୂମିକି ଦେଖି ହୁଅନ୍ତି ଉତଫୁଲ୍ଲ
ବୋଲନ୍ତି ଏହି ଲୋକଟି ହେଲେ ମୃତ୍ୟୁ ତୁଲ୍ୟ
ଆବର ଯେ ଦ୍ରୋଣ ଗୁରୁ ବିଜେ ଦିବ୍ୟରଥେ
ଆସିଣ ମିଳିଲେ ଅଶ୍ୱତ୍ଥାମା କୁରୁକ୍ଷେତ୍ରେ ।
ଶଲ୍ୟ କର୍ଣ୍ଣ କୃପାଚାର୍ଯ୍ୟ ଆଉ ଭୁରିଶ୍ରବା
ବିକର୍ଣ୍ଣ ଶ୍ରୀ ଜୟଦ୍ରଥ ଯେ ବାହ୍ଲିକ ବାବା ।
ଆବର ଯେ ଅଲମ୍ବୁଷ ହଳାୟୁଧ ସାଥେ
ରାଜାଙ୍କ ସଙ୍ଗରେ ଚାଲିଛନ୍ତି ଯେଝାମତେ ।
ରଥି ମହାରଥି ବଳ ଚତୁରଙ୍ଗ ସୈନ୍ୟ
ଶୁଣ ଜନ୍ମେଜୟ କହେ ବଇଶମ୍ପାୟନ ।
କୁରୁକ୍ଷେତ୍ର ମଧ୍ୟେ ଯାଇ ଉଲକାପାତ ହୋନ୍ତି
ଦୁଇବଳ ପଦାଘାତେ କମ୍ପେ ବସୁମତୀ ।
ସଞ୍ଜୟ ମନ୍ତ୍ରୀ କହନ୍ତି ଶୁଣ ଧୃତରାଷ୍ଟ୍ର
ଅଛନ୍ତି ଭୀଷ୍ମ ଦ୍ରୋଣ ଯେ ଆଉ ତୁମ୍ଭ ଥାଟ ।
ଏକଗୋଟି ଚକ୍ରବ୍ୟୂହ ରଚିଛନ୍ତି ତହିଁ
ଭୀଷ୍ମ ଦ୍ରୋଣ ପ୍ରାୟ କ୍ଷତ୍ରୀ ବ୍ରହ୍ମାଣ୍ଡରେ ନାହିଁ ।
ତର୍ଜନ୍ତି ଗର୍ଜନ୍ତି ସେହୁ ନାଚନ୍ତି ଡିଅନ୍ତି
ଦେଖିଣ ଯୁଧିଷ୍ଠିରଙ୍କୁ ଲାଗେ ମନେ ଭ୍ରାନ୍ତି ।
ଧର୍ମ ବୋଇଲେ ବାବୁରେ ଶୁଣ ଧନଞ୍ଜୟ
ଦିଶେ ମୋତେ କୁରୁକ୍ଷେତ୍ର ସାଗର ପରାୟ ।
ଆମ୍ଭର ସଇନ୍ୟଯାକ ଅଳ୍ପ ଦିଶେ ଜାଣ
ଏଥକୁ ତାତପର୍ଯ୍ୟରେ କରିବଟି ରଣ ।
ମୁଁ ହେଲେ ଯୁଦ୍ଧକୁ ନାହିଁ କରୁଥିଲି କେତେ
ଭୀମର ଲାଗି ସିନା ତ ଗୋଳ ହେଲା ଏତେ
ବୁଝିଲେ ଆମ୍ଭର ସୈନ୍ୟ ସାତକ୍ଷୌଣୀଜାଣ
ଏଥକୁ କେବଳ ସାହା ତୋତେ ଭଗବାନ ।
ଆର୍ଣ୍ଣିଣ ନିରାଟ କରି ପାରିବ କି ଯୁଝି
ନୋହିଲେ ଯେ ଚାଲି ଘୁଞ୍ଚିଯିବା ରାଜ୍ୟତେଜି
ରଥି ମହାରଥି ଘେନି ଚତୁରଙ୍ଗ ସୈନ୍ୟ
ଖଞ୍ଜିଣ ନିଘଞ୍ଚେ ବ୍ୟୁହ କର ହୋ ଅର୍ଜୁନ ।
ଯେମନ୍ତେଜିଣି ତୋତେ ନପାରେ କୁରୁପତି
ମହତ ରଥି ଆମ୍ଭର କର ଯୁଦ୍ଧ ବୃତ୍ତି ।
ପାଞ୍ଚକରି ଚକ୍ରବ୍ୟୂହ କଲେ ଭୀଷ୍ମ ଦ୍ରୋଣେ
ବଜ୍ରବ୍ୟୂହକୁ ତୁହିରେ ପରକାଶ ରଣେ ।
ଆମ୍ଭ ଥାଟରେ ଭେଦି ନ ପାରେ ଯେଉଁମତେ
ଏ ରୂପେ କହନ୍ତେ ପାର୍ଥ ବିଚାରନ୍ତି ଚିତ୍ତେ ।
ହାତୀ ରଥ ଅଶ୍ୱ ସୈନ୍ୟ ପାଦାଦି ଖଞ୍ଜିଲେ
ବଜ୍ରବ୍ୟୂହ ରଚିକରି ସୈନ୍ୟ ଆବୋରିଲେ ।
ରଥର ପଛରେ ହସ୍ତୀ ହସ୍ତୀ ପଛେ ରଥ
ଆବର ପଦାତି ବଳ ଛନ୍ତି ଚଉକତି ।

ରଖିଲେ ବଜ୍ରହୁଁ ଆଣ୍ଟ କରି ପାଞ୍ଚଘାଟ
ରହିଲେକ ନିର୍ଭୟରେ ପାଣ୍ଡବଙ୍କ ଥାଟ ।
ଆପଣେ ହରି ଅର୍ଜୁନ ବିଜେ ନନ୍ଦିଘୋଷେ
ଅପୂର୍ବ ଦ୍ରବ୍ୟ ମଣ୍ଡିଣ ଅଛନ୍ତି ଚୌପାଶେ ।
ମାଘମାସରେ ଯେସନ ପ୍ରଭାକର ପ୍ରଭା
ପ୍ରକାଶ ଉଦୟକାଳେ ଦିଶେ ଦିବ୍ୟଶୋଭା ।
ଦିଶଇ ତେସନ ପ୍ରାୟ ନନ୍ଦିଘୋଷ ରଥ
ସେହି ରଥେ ରଥିପଣେ ବସିଅଛି ପାର୍ଥ ।
ତ୍ରେତାଯୁଗେ ମଲ୍ଲ ଯେଉଁ ବୀର ହନୁମାନ
କପୀନ୍ଦ୍ର ପଦକୁ ତାର ମହିମା ହିଁ ଟାଣ ।
ଶ୍ରୀହରିଙ୍କ ଆଜ୍ଞା ପାଇ ରଥେ ଅଛି ବସି
ପ୍ରଳୟ ଜଳେ କି ସେହି ନୌକାପ୍ରାୟ ଦିଶି ।
ଯେ ଯାହାର ସୈନ୍ୟ ଘେନି ସକଳ ନୃପତି
ବିଚିତ୍ର ରଥ ଚଢ଼ିଣ ପାର୍ଶ୍ୱେ ରଖିଛନ୍ତି ।
ପ୍ରଳୟ ନୌକା ପରାୟ ପାର୍ଥ ରଥ ଗୋଟି
କ୍ଷଣକରେ ମନକଲେ ଆକାଶରେ ଘୋଟି ।
ଏଥୁ ଉତ୍ତାରେ ପୁଣ ସେ କୌରବଙ୍କ ଥାଟ
ଦେଖି ଶଙ୍କା କଲେ ମନେ ଧର୍ମ ଦେବଚାଟ ।
ବୋଇଲେ ଶୁଣରେ ଭାଇ ବୀରବର ପାର୍ଥ
ଭୀଷ୍ମ ରଥି ଯେ ସମର କରିବେ ବହୁତ ।
ଦେଖି ସେହି ଧନୁଶର ଧରିଛନ୍ତି ହସ୍ତେ
ସୂର୍ଯ୍ୟପ୍ରାୟ ଦିଶୁଛନ୍ତି ଗଙ୍ଗା ସୁତ ମୋତେ ।
ଏହାଙ୍କ ଆଗରେ ରହି ଯୁଝିବଟି ଯେହୁ
ତାହାଙ୍କୁ ଧନ୍ୟ କହିବା ସେହି ମହାବାହୁ ।
ସମରେ ତାହାଙ୍କୁ ଯେବେ ପାରିବୁଟି ଜିଣି
ତେବେ ଯେ ଭୋଗ କରିବା ପୃଥିବୀକି ପୁଣି ।
ଯାଜ୍ଞସେନୀର ସେ କଷ୍ଟ ହେବ ତେବେ ପାର
ନ ବାନ୍ଧି କେଶ ସେ ଅଛି ହେଲା ବର୍ଷ ତେର ।
ନୋହିଲେ ବନକୁ ଯିବୁ ଆମ୍ଭେ ପାଞ୍ଚଭାଇ
ସୁଖେଣ ପୃଥିବୀ ଭୋଗ କରୁ କୁରୁସାଇଁ ।
ଯୁଧିଷ୍ଠିରଙ୍କ ମୁଖରୁ ଏ ରୂପରେ ପାର୍ଥ
ଶୁଣି ବୋଇଲା ଶୁଣହେ ସ୍ୱାମୀ ଧର୍ମସୁତ ।
କିମ୍ପା ଏଡେ ପ୍ରଭୁ ହୋଇ ହେଉଛ ବିକଳ
ନିରାକୁଳ ତୁମ୍ଭ ମନ ଅହିଂସା ନିର୍ମଳ ।
ନିର୍ଲୋଭୀ ନିଷ୍କପଟୀ ଯେ ନିର୍ମାୟା ପୁରୁଷ
କେତେବେଳେ ନକୁହ ଯେ ତୁମ୍ଭେ ମିଥ୍ୟା ଭାଷ
ଅଭବ୍ୟ ଲୋକ ପାଶେ ନବସ କେତେବେଳେ
ତୁମ୍ଭର ଧର୍ମରୁ ଆମ୍ଭେ ଜିଣିବୁ ତତ୍କାଳେ ।
ଆମ୍ଭକୁ ସାହା ଅଟନ୍ତି ପ୍ରଭୁ ଚକ୍ରପାଣି
ଏଥକୁ ଚିନ୍ତା କିଛି ନ କର ଧର୍ମ ପୁଣି ।

ଆମ୍ଭଙ୍କୁ ଶ୍ରୀକୃଷ୍ଣ ଜଗିଛନ୍ତି ଯୁଦ୍ଧେ ରହି
ସହସ୍ର ଭୀଷ୍ମଙ୍କୁ ରଣେ ଜିଣିବଇଁ ମୁହିଁ ।
ସହସ୍ରେ ଦ୍ରୋଣ ପଶିଲେ ଆସି ଏହି ଯୁଦ୍ଧେ
ସମରେ ଜିଣିବି ମୁହିଁ ଗୋବିନ୍ଦ ପ୍ରସାଦେ ।
ଏ ରୂପରେ ପ୍ରତିଜ୍ଞା ଯେ କରନ୍ତେ ଅର୍ଜୁନ
ଶୁଣିଣ ହସି ବସିଲେ ତହିଁ ଧର୍ମନାନ ।
ଏଥୁ ଉତ୍ତାରେ ପୁଣ ସେ ପାଣ୍ଡବ ସଇନି
କୁରୁକ୍ଷେତ୍ରରେ ମିଳିଲେ ଯାଇ ଥାଟଘେନି ।
ଶ୍ରୀନନ୍ଦିଘୋଷ ରଥରେ ପାର୍ଥ ମହାରଥି
ଶ୍ରୀବାସୁଦେବ ହୋଇଣ ଅଛନ୍ତି ସାରଥି ।
ରଥଧ୍ୱଜରେ ବସିଣ ଅଛି ହନୁମାନ
ଦେଖିଲେ ଦୂରରୁ ତାହା କୌରବ ସଇନ୍ୟ ।
ଭୟଥାଇ ଥରହର ହୁନ୍ତି ଯେଝାଠାଏ
କଦଳୀପତ୍ର ଯେସନେ କମ୍ପେ ମହାବାୟେ ।
ଦୁର୍ଗାଙ୍କୁ ସୁମରି ଧନୁ ଧଇଲେ କିରୀଟୀ
ଟଙ୍କାର ଶବଦ କଲେ ନେଇ ଗୁଣଗୋଟି ।
ବୃଦ୍ଧ ଅଙ୍ଗୁଳିରେ ହୀରା କଷଣ ସେ ମାଡ଼ି
କନ୍ଧରେ ଯଜ୍ଞୋପବୀତ ଯତ୍ନେ ଅଛି ପଡ଼ି ।
ମଥାର ଉପରେ କେଶ ବାନ୍ଧି ଠେକଜୁଡ଼ା
ଝୀନବାସ କରିଛନ୍ତି କଟିରେ ଦୋଷଡ଼ା ।
ଦିଶଇ ଲଲାଟେ ଶୋଭା ଗୋରଚନା ଚିତା
କଣ୍ଠେ ଚାପସରି ଶୋହେ ସୁବର୍ଣ୍ଣ ମୁକୁତା ।
ବେନି ବାହୁରେ ବାହୁଟି ମୁକ୍ତା ଯୋଡ଼ି ଯୋଡ଼ି
ହୀରାର କଙ୍କଣ ନୀଳା ରତ୍ନେ ଅଛି ଜଡ଼ି ।
ଦଶ ଅଙ୍ଗୁଳିରେ ମୁଦି ନବରତ୍ନେ ସାଜେ
ପୟରେ ତୋଡ଼ରରୁମୁଝୁମୁ ବେନି ବାଜେ ।
ଝଟକି ଦିଶଇ କଟିତଟେ ଚାପସରି
ସୁବର୍ଣ୍ଣ ସୂତାରେ ଖଞ୍ଜିଛନ୍ତି ଯତ୍ନ କରି ।
ଅକ୍ଷୟତୂଣୀରେ ବେନି କନ୍ଧେ ଛନ୍ତି ବସି
ଶ୍ୟାମଳ ବରନ ରୂପ ହରି ପ୍ରାୟ ଦିଶି ।
ବାମହସ୍ତରେ ଗାଣ୍ଡୀବ ଦକ୍ଷିଣରେ ଶର
ବୀରବେଶରେ ବିଜୟ ଶୋହେ ତିନିପୁର ।
ଭାଦ୍ରବମାସେ ପ୍ରକାଶ ହୋଏ ଯେହ୍ନେ ସୂର୍ଯ୍ୟ
ସେହି ରୂପରେ ଦିଶଇ ଗାଣ୍ଡୀବର ତେଜ ।
ଦ୍ୱିଭାଗ କରିଲେ ସିନ୍ଧୁ ଦିଶେ ଯେଉଁଭାବେ
ଦିଶନ୍ତି ସେହି ମାର୍ଗରେ ପାଣ୍ଡବ କୌରବେ ।
ଏ ରୂପେ ମନ୍ତ୍ରୀ ମୁଖରୁ ଶୁଣି ଧୃତରାଷ୍ଟ୍ର
ବୋଇଲା ଏ ମାର୍ଗେ ଯେବେ ଦିଶେ ବେନିଥାଟ
ଭୋ ମନ୍ତ୍ରୀ କଥାଏ ଆଉ ପୁଛିବଇଁ ମୁହିଁ
ଅଦୃଶ୍ୟ କଥା ସକଳ କହୁ ଯେତେ ତୁହି ।
ଏ ଦୁଇକୁଳ ସଇନ୍ୟ ହୋଇ ଡକାଡ଼କି
ମୁରାଟେ ରହିଅଛନ୍ତି ଶସ୍ତ୍ରମାନ ଟେକି ।
ପ୍ରଥମେ ବିକୃତ କହ ଉପୁଜିଲା କିସ
ଆଗହୁଁ ଯୁଦ୍ଧରେ କେହୁ ହେଲା ଅମରିଷ ।
ଧୃତରାଷ୍ଟ୍ରଙ୍କ ମୁଖରୁ ଏହି ବାକ୍ୟ ଶୁଣି
କହେ ସେ ସଞ୍ଜୟ ମନ୍ତ୍ରୀ ଶୁଣ ନୃପମଣି ।
ମୋତେ ଯେ ପୁଛିଲ ପୁଅ ପୁତୁରାଙ୍କ କଳି
ସେହି କଥା ସାବଧାନେ ଶୁଣ ନୃପଶାଳି ।
କହିବା ଯେ ବୁଝ ଆଗେ ଯୁଧିଷ୍ଠିଙ୍କ କଥା
ଧର୍ମଙ୍କ ପୁତ୍ର ଧାର୍ମିକ ସେହି ମହାଜ୍ଞାତା ।
ତୋହର ତନୟଙ୍କର ମୂର୍ଖପଣ ଦେଖି
କରରୁ ଧନୁ ଛାଡ଼ିଣ କହିଲେ ପୃଥ୍ୱୀକି ।
ଯୋଡ଼ିକରି ବେନିକର ହୃଦପଦ୍ମେ ଥୋଇ
କୁରୁବଳଙ୍କ ଥାଟରେ ପଶିଲେ ଝସାଇ ।
କୁରୁବଳଙ୍କ ଆକୁଳ ମନ ଦେଖିକରି
ଧାଇଁଲେ ଯେ ଚାରିଭାଇ କୃଷ୍ଣ ସଙ୍ଗେ ଧରି ।
ଯୁଧିଷ୍ଠିରଙ୍କୁ ଗୋଡ଼ାଇଛନ୍ତି ପାଞ୍ଚଜଣ
ହେ ଠାକୁରେ ବୋଲି ଡ଼ାକଦ୍ୟନ୍ତି ନାରାୟଣ ।
ଯୁଧିଷ୍ଠି ପଳାନ୍ତି ବୋଲି ଚାହିଁ ମୂର୍ଖ ଲୋକ
କରନ୍ତି ଦେଖିଣ ହାସ୍ୟ ସେ କୌରବଯାକ ।
ଏଥୁ ଅନନ୍ତରେ ପୁଣି ଯୁଧିଷ୍ଠିର ରାୟେ
ପ୍ରଣାମ କରିଲେ ଯାଇଁ ଗାଙ୍ଗେୟଙ୍କ ପାୟେ ।
ତୃତୀୟ ଥର ପର୍ଯ୍ୟନ୍ତେ କରି ନମସ୍କାର
କହନ୍ତି ସେ ଦୁଃଖ ସୁଖ ଭୀଷ୍ମଙ୍କ ଆଗର ।
ଭୋ ପିତା ତୁମ୍ଭେ ଆମ୍ଭର ବଂଶେ ଅଟ ଇଷ୍ଟ
ସମରେ ଆସିଲ ଏବେ ହୋଇ ମହାରୁଷ୍ଟ ।
ଆବର ଲକ୍ଷେ ରାଜନ ଛନ୍ତି ଯୁଦ୍ଧେ ରହି
ତୁମ୍ଭର ସମରକୁ ସେ ଛନ୍ତି ବାଟ ଚାହିଁ ।
ଯୁଧିଷ୍ଠିଙ୍କ ପୁଛିବାର କାର୍ପଣ୍ୟକୁ ଦେଖି
ଭୀଷ୍ମ ବୋଇଲେ ଆମ୍ଭଙ୍କୁ ଜିଣି ହୁଅ ସୁଖୀ ।
ପଞ୍ଚରାଜ୍ୟେ ରାଜା ହୋଇ କର ବଇଭୋଗ
ସମରେ ସବୁଙ୍କୁ ଜିଣି ଉଦେ ହୁଅ ବେଗ ।
ଯୁଧିଷ୍ଠି ବୋଇଲେ ସ୍ୱାମୀ ଶୁଣ ପିତାମହ
ତୁମ୍ଭଙ୍କୁ ସମରେ ଜିଣି ପାରିବେ କେ କହ ।
ଏହା ଶୁଣି ଗଙ୍ଗାସୁତ ଅନ୍ତମନେ ହସି
ବୋଇଲେ କହିବା ତୋତେ ଶୁଣ ଧର୍ମଶିଷି ।
ତୁମ୍ଭେ ବେନିକୁଳ ଅଟ ପ୍ରତ୍ୟକ୍ଷ ମୋ ବଂଶ
ଅନ୍ଧରାଜ ପୁତ୍ର ବୁଦ୍ଧି ବୁଝିଲେ ରାଜସ ।
ତୁମ୍ଭଙ୍କୁ ରାଜଭାଗ ନ ଦେଇ ଜାଣ କିଛି
ରାଜସ ଗୁଣେ ମରୁଛି ମୂର୍ଖ ଅନ୍ଧ ବସି ।

ଯେ କରେ ଅଧର୍ମ ତାର ପୁଣ୍ୟ ହୁଏ କ୍ଷୟ
ତୁ କିମ୍ପା ଭାବନା ମନେ କର ଧର୍ମରାୟ ।
କେବଳ ତାହାର ମୁହିଁ ଅନ୍ନେ ହେଲି ବଶ
ଯାହାର ଅନ୍ନ ଭୁଞ୍ଜିବ ତାର କରି ଯଶ ।
ସେହୁ ଯେଣୁ ପୋଷି ମୋତେ ଅଛି ଅନ୍ନଦେଇ
ତେଣୁ ମୁହିଁ ଧନୁଶର ଧରିଛି ତା ପାଇଁ ।
ଦଶଦିନ ଯାଏ ଆମ୍ଭେ କରିବୁ ସମର
ଯେବେ ତୁ ଛଡ଼ାଇ ଧନୁ ପାରୁ ହସ୍ତୁଁ ମୋର ।
ତେବେ ଯେ ପାଇବୁ ରଣେ ଯଶ ପୁତ୍ରମଣି
ତଥାପି ସାହା ଅଛନ୍ତି ତୋତେ ଚକ୍ରପାଣି ।
ସେ ପ୍ରଭୁ ଜାଣନ୍ତି ଏକା ମୋର ମୃତ୍ୟୁ ଭେଦ
ଏଥକୁ ଭୟ କିଛି ନ କର ତୋର ହୃଦ ।
ଅଶେଷ ବ୍ରହ୍ମାଣ୍ଡ କରିପାରନ୍ତି ଯେ ଆନ
ସେ ପ୍ରଭୁ ଥାଆନ୍ତେ ତୋତେ ଅଛି କେ ସମାନ
ଆମ୍ଭର ବଂଶ ବୋଲିଣ କହିଲୁ ଯା ମୋତେ
ସାତ ଗୋଟି ଜନ୍ମ ବଂଶ ଲେଖି ସୁପଣ୍ଡିତେ ।
ଯେ ରୂପରେ ହୋଏ ଲେଖା ଶୁଣ ପଣ୍ଡୁଶିଷ
ଆପଣା ଜନମଠାରୁ ଲେଖି ସାତବଂଶ ।
ସାତ ପୁରୁଷ ପର୍ଯ୍ୟନ୍ତେ ପାପେ ହୋଇ ଲୋଡ଼ା
ସେଠାରୁ ଅଜଣା ହୋନ୍ତେ ହୁଏ ବଂଶଛଡ଼ା ।
ନିମିତ୍ତ କାର୍ଯ୍ୟ କଲେ ଯେ ଲୋଡ଼ି ନ ଆଣନ୍ତି
ସେ ବଂଶଯାକ ଅଜଣା ତହୁଁ ହୋଇଯାନ୍ତି ।
ସାତଗୋଟି ଜନ୍ମଯାଏ ବଂଶ ଜଣାଯାଇ
ସାତ ଜନ୍ମଗଲେ ଏକ ପାଦେ ନ ମିଳଇ ।
ଯୁଧିଷ୍ଠି ବୋଇଲେ ସ୍ୱାମୀ ଶୁଣ ପିତାମହ
କେଉଁ ପୁରୁଷ ଲେଖିବ ବୁଝି ତାହା କହ ।
ଭୀଷ୍ମ ବୋଇଲେରେ ବାପ ଶୁଣ ଧର୍ମମଣି
ସପ୍ତ ଜନମର ବଂଶ କହୁଥାଇ ପୁଣି ।
ଆପଣାଠାରୁ ଯେ ଚାରି ପୁରୁଷଙ୍କ ଯାଏ
ଉପରଦିଗୁ ଲେଖିବ ବୁଝି ବେଦମୟେ ।
ତଳଦିଗରୁ ଗଣିବ ପୁଣି ତିନି ଜନ୍ମ
ଏରୂପେ ସପ୍ତଜନ୍ମକୁ ଲେଖିଲେ ଜାଣିମ ।
ଗାଙ୍ଗେୟର ମୁଖରୁ ଯେ ଏହି ବାକ୍ୟଶୁଣି
ପାଞ୍ଚିଲେ ସତ୍ୟ ଏକଥା ବୋଲି ଧର୍ମମଣି ।
ଭୀଷ୍ମଙ୍କୁ ନମଣି ତହୁଁ ଗଲେ ଧର୍ମରାୟେ
ଦ୍ରୋଣ ଗୁରୁଙ୍କର ପାଶେ ପ୍ରବେଶ ସେ ହୋଏ
କର ଦୁଇ ଯୋଡ଼ିଣ ସେ ଆଗେ ଉଭାହେଲେ
ଗୁରୁଙ୍କ ଚରଣେ ଯାଇ ନମସ୍କାର କଲେ ।
ଦେଖିଣ ଧଇଲେ ଦ୍ରୋଣଗୁରୁ କରେ ତୋଳି
କଲ୍ୟାଣ ବାଞ୍ଛା କରିଣ ଦେଲେ ପାଦଧୂଳି ।
ବୋଇଲେ ଆମ୍ଭଙ୍କୁ ଜିଣି ରାଜ୍ୟେ ହୁଅ ରାଜା
ପୃଥିବୀ ଭୋଗ କରିଣ ପାଳ ଜନପ୍ରଜା ।
ହସ୍ତିନା କଟକ ଯାକ ସୁଖେ କର ଭୋଗ
ମରନ୍ତୁ ଏ କଉରବେ କରି ରଣଯୋଗ୍ୟ ।
ଯୁଧିଷ୍ଠି ବୋଇଲେ ଯେବେ ଏପରି ହୋଇବ
ଅଖଡ଼େ ଆମ୍ଭର ବଂଶ ବିଅର୍ଥେ ମରିବ ।
ତୁମ୍ଭପ୍ରାୟ ପୁରୁଷ କି ସଂସାରେ ମିଳଇ
ତୁମ୍ଭଙ୍କୁ ମାରିବା ପାଇଁ ହସ୍ତ କି ଟେକଇ ।
ତୁମ୍ଭପରି ଗୁରୁ ପୁଣି ଆମ୍ଭପରି ଶିଷ୍ୟ
କିମ୍ପାଇଁ ବିଧାତା ଏତେ କଲା ଅମରିଷ ।
ତୁମ୍ଭଙ୍କୁ ଯୁଦ୍ଧେ ଆମ୍ଭେ କି ହେବୁ ସମସରି
ଯାହାକୁ ଦେଇଅଛନ୍ତି ଶସ୍ତ୍ର ପର୍ଶୁଧାରୀ ।
ଶୁଣିଣ ଦ୍ରୋଣଗୁରୁ ଯେ ହେଲେ ମନେ ତୋଷ
ବୋଇଲେକ ସବୁଠାରେ ଉପୁଜୁ ତୋ ଯଶ ।
ଶ୍ରୀଧର୍ମ ପୁରୁଷ ଅଟୁ ତୁ ହୋ ଯୁଧିଷ୍ଠିର
ଅଚିନ୍ତେ ଏ ପଞ୍ଚ କଟକ ତୁ ଭୋଗକର ।
ଯୁଧିଷ୍ଠି ବୋଲେ ସମରେ ତୁମ୍ଭେ ଥିଲେ ରହି
କି ରୂପେ ଭୋଗ କରିବୁ ଆମ୍ଭେ କହ ମହୀ ।
ଦ୍ରୋଣ ବୋଇଲେ ଶୁଣରେ ବାପ ଯୁଧିଷ୍ଠିର
ଆମ୍ଭ ହସ୍ତରୁ ଛଡାଇ ଧନୁ ଯେବେ ପାର ।
ତେବେ ତୁମ୍ଭେ ଜିଣି ମୋତେ ପାରିବ ସମରେ
ନୋହିଲେ କେ ସମସରି ନାହିଁ ତିନିପୁରେ ।
ଶୁଣିକରି ସ୍ତମ୍ଭୀଭୂତ ହେଲେ ଧର୍ମ ବସି
ଦ୍ରୋଣ ବୋଇଲେ ବାପ ନ ଭାଳ ମନେ କିଛି
କାହିଁକି ଭୟ କରୁଛ ଧର୍ମ ନୃପମଣି
ଏଥକୁ ଉପାୟ କରିବେ ଶ୍ରୀଚକ୍ରପାଣି ।
ଯାହାର କି ସାହାପକ୍ଷ ଅଟନ୍ତି ଶ୍ରୀହରି
ତାହାକୁ ଅରିଷ୍ଟ ଛାର ପାରିବ କି କରି ।
ସଚରାଚର ପୃଥ୍ୱୀ ଯେ କରିପାରେ ଆନ
ସେ ପ୍ରଭୁ ଛେଦି ପାରନ୍ତି ଏକା ଦୁଃଖମାନ ।
ମହା ପ୍ରଳୟ କାଳେ ସେ ହ୍ୱନ୍ତି ତିନିପୁରୀ
ମାର୍କଣ୍ଡ ଋଷିଙ୍କୁ ତହିଁ ରଖିଛନ୍ତି ହରି ।
ସତ୍ୟବ୍ରତ ରାଜାକୁ ଯେ ପ୍ରଳୟେ ତାରିଲେ
ଗଲା ପ୍ରଳୟରେ ସେହି ବଳିବି ରଖିଲେ ।
ବ୍ୟାସ ଋଷିଙ୍କ ଗର୍ଭରେ ପୁଣି ଶତେ କଳ୍ପ
ତାହାଙ୍କୁ ରଖିଲେ ଦେଖାଇଣ ବ୍ରହ୍ମରୂପ ।
ଏ କିସ ସମର ଭାର ଅଟଇ କିଞ୍ଚିତ
ଏଥକୁ ଶଙ୍କା ନ କର ମନେ ଧର୍ମସୁତ ।
ଏ ରୂପେ ଦ୍ରୋଣ କହନ୍ତେ ପୁଣି ମନବୋଧି
ମେଲାଣି ମାଗି ଚଳିଲେ ତାଙ୍କୁ ଧର୍ମନିଧି ।

ଆପଣା ଥାଟ ମଧରେ ପ୍ରବେଶିଲେ ଯାଇ
ଦେଖିଣ ତୋଷ ହୋଇଲେ ଆନ ଚାରିଭାଇ
ଆନନ୍ଦେ ଚଢ଼ିଲେ ପାଞ୍ଚଭାଇ ନିଜ ରଥ
ନନ୍ଦିଘୋଷେ ବିଜେକଲେ କୃଷ୍ଣ ବୀରପାର୍ଥ ।
ଯେ ଯାହା ଶସ୍ତ୍ର କାଢିଣ ଧରି ଧନୁ ତୂଣ
କହଇ ସଞ୍ଜୟ ମନ୍ତ୍ରୀ ଶୁଣ କୁରୁରାଣ ।
ପାଣ୍ଡବ ପାଞ୍ଚଙ୍କ ରଥ ଦେଖି ତୋର ପୁତ୍ର
ଦ୍ରୋଣକୁ ସେ ପଚାରଇ ଦେଖି ବେନିନେତ୍ର ।
ବୋଲଇ ମାରିବି ଏବେ ପାଣ୍ଡବଙ୍କୁ ଜାଣ
ତୁମ୍ଭଙ୍କୁ କହୁଛି ପୁଣ ଆହେ ଗୁରୁ ଦ୍ରୋଣ ।
ଦ୍ରୁପଦ ମହାରାଜା ଯେ ତୁମ୍ଭ ମିତ୍ର ପରା
ଆସନ୍ତି ଯୁଦ୍ଧକୁ ଦେଖ ହୋଇକେଡ଼େ ତ୍ୱରା ।
ଶିଖଣ୍ଡୀ ବୋଲିଣ ଜଣେ ନପୁଂସକ ସେହୁ
କି ବୋଲି ଯୁଦ୍ଧକୁ ଧାଇଁଅଛି ଜାଣ କେହୁ ।
ଆବର ଅଛଇ ଧୃଷ୍ଟଦ୍ୟୁମ୍ନ ବୋଲି ଜଣେ
ଯୁଦ୍ଧ କରିବାକୁ ଆସିଅଛି ବନ୍ଧୁପଣେ ।
କୃଷ୍ଣଙ୍କର ସାନଭାଇ ସାତ୍ୟକିଟି ଯେହୁ
ଯୋଦ୍ଧାପଣକୁ ସମାନ ଅଟେ କିନ୍ତୁ ସେହୁ ।
ଆବର ଅଛଇ କାଶୀରାଜା ଅବା ଜଣେ
ସମରେ କରି ପାରଇ କିଛି ପଶି ରଣେ ।
ଧୃଷ୍ଟକେତନ ବୋଲି ଯେ ଅଟଇ ନରେଶ
ସମରେ ପଶିଲେ କିଛି ହେବ ରଣଯଶ ।
ଆବର ଯେ ସୁଧାଜିତ ବୋଲି ଅଛି ସେହି
ତାକୁ ସମର ଥୋକାଏ ଆସେ ଜାଣିଥାଇ ।
ନୃପତି ଯେ କୁନ୍ତଭୋଜ ଆବର ସମର
ବୁଝିଲେ ଏ ରୂପେ ରାଜା ଅଛି କେତେ ତାର ।
ଆବର ଯୋଦ୍ଧା ଅଛଇ ଜଣେ ଅଭିମନ୍ୟୁ
ଅର୍ଜ୍ଜୁନ ସମାନ ପାରେ ସେହି ଧରି ଧନୁ ।
ଏରୂପେ ଯୋଦ୍ଧା ତାଙ୍କର ଥିବେ କେତେଜଣ
ଆମ୍ଭର ଯୋଦ୍ଧା କହିବା କେତେ ଦ୍ରୋଣଶୁଣ
ପ୍ରଥମୁଁ ହୋଇଛୁ ଶତେ ଭାଇ ଆମ୍ଭେ ସଜ
ସତୁରି ସହସ୍ର ରାଜାଛନ୍ତି ଆମ୍ଭ ରାଜ୍ୟ ।
ତୁମ୍ଭ ପ୍ରାୟ କ୍ଷତ୍ରୀ କାହିଁ ଅଛି ଗୁରୁ ଦ୍ରୋଣ
ସାଧିଚ ଯାବତ ଧନୁବିଦ୍ୟା ତୁମ୍ଭେ ପୁଣ ।
ଭୀଷ୍ମଙ୍କ ପ୍ରାୟେ କ୍ଷତ୍ରିୟ ନାହିଁ ତିନିପୁରୀ
ପୂର୍ବେ ପର୍ଶୁରାମ ତାଙ୍କୁ ଯାଇଛନ୍ତି ହାରି ।
କର୍ଣ୍ଣର ତ କ୍ଷତ୍ରିପଣ ତୁମ୍ଭେ ସବୁ ଜାଣ
ଇନ୍ଦ୍ରଦେବତା ହେଲେହେଁ ହାରିବ ତକ୍ଷଣ ।
ଶଲ୍ୟଙ୍କର କ୍ଷତ୍ରିପଣ କହି ନୋହେ ପୁଣି
ବୃଦ୍ଧକାଳେ ପୃଥିବୀ କି ହେଲେ ପାରେ ଜିଣି ।
ତୁମ୍ଭ ପୁତ୍ର ହସ୍ତରେ ତ ଥିଲେ ଧନୁଶର
ଡରେ ସଂଗ୍ରାମକୁ ଛାଡ଼ିଯିବେ ତିନିପୁର ।
କୃପାଚାର୍ଯ୍ୟଙ୍କର କଥା ଅଛନ୍ତି ତ ଜାଣି
ସ୍ୱର୍ଗ ମର୍ତ୍ତ୍ୟ ପାତାଳକୁ ପାରନ୍ତି ସେ ଜିଣି ।
ଆବର ଅଟନ୍ତି କୁଳବୃଦ୍ଧ ଭୁରିଶ୍ରବା
ତାହାଙ୍କ କ୍ଷତ୍ରିପଣ କେ କହିପାରେ ଅବା ।
ଜୟଦ୍ରାଥ ସୋମଦତ୍ତ ଅଳମ୍ବୁଷ ଆଦି
ଏମାନେ ତ ମହାକ୍ଷତ୍ରି ରଣେ ମଲଯୋଦ୍ଧି ।
ଆବର ଅଛନ୍ତି ଏହିପରି କେତେ ଯୋଦ୍ଧା
କରିବେ ପାଣ୍ଡବ ସୈନ୍ୟବଳ ସବୁ ପଦା ।
ସବୁ ବୀର କରେ ଶର ଧନୁମାନ ଧରି
ଯୁଝିବେ ତ ମୋହପାଇଁ ପ୍ରତିଜ୍ଞା ସେ କରି ।
ପ୍ରାଣୀକୁ ଭୟଭୀତି ନକର ମନେ କେହି
ଯହିଁ ସେନାପତି ଭୀଷ୍ମ ମହାରଥି ହୋଇ ।
ଗାଙ୍ଗେୟ ଘେନିଣ ସୈନ୍ୟଛନ୍ତି ତୁମ୍ଭେ ଦେଖ
କେବଳ ଭୀମ ତାହାଙ୍କ ଥାଟେ ଅଛି ରକ୍ଷ ।
ଶୁଣ ଆହେ ଦ୍ରୋଣଗୁରୁ ମୋହର ବଚନ
ଅଛନ୍ତି ବହୁଳେ କେତେ ମୋର ଥାଟ ସୈନ୍ୟ
ଆପଣତ ବ୍ୟୁହଦ୍ୱାରେ ଏକା ଜଗିଥିବ
ଭୀଷ୍ମଙ୍କ ସମାନେ ଧନୁଧରି ଆମଞ୍ଚିବ ।
ଦୁର୍ଯ୍ୟୋଧନର ଏ ବାକ୍ୟଶୁଣି ଦ୍ରୋଣ ରଥ
ଲୋମ ଟାଙ୍କୁରାଇ ଚଳାଇଲେ ଅଶ୍ୱ ହାତୀ ।
ରଡ଼ିଘାତେ କମ୍ପାଇଣ ଦେଲେ ବସୁନ୍ଧରୀ
ବଜାନ୍ତି ଶଙ୍ଖ କାହାଳୀ ଘଣ୍ଟା ଭେରୀତୁରୀ ।
ଟମକ ନିଶାଣ ଢୋଲ ଦମା ଘିଡ଼ିଘିଡ଼ି
ଦମାଲୁ ମର୍ଦ୍ଦଳ ଦୁଲୁ ଦୁଲୁ ଯୋଡ଼ି ଯୋଡ଼ି ।
ଶୁଣିଣ ସେ ରାଜାମାନେ ହେଲେ ମନତୋଷ
ବୋଇଲେ ଚମକାଅ ଯେ ଯାହା ବାଦ୍ୟଘୋଷ
ଏଥିଉତ୍ତାରେ ଉଠିଲେ ପ୍ରଭୁ ଜନାର୍ଦ୍ଦନ
କୁରୁବଳଙ୍କର ବାଦ୍ୟ ଶୁଣି ବେନି କର୍ଣ୍ଣ ।
ରଥ ସଜକରି ଚାରି ଅଶ୍ୱଦେଲେ ଯୋଚି
ସେ ଅଶ୍ୱଙ୍କ ନାମ ଶୁଣ ପରୀକ୍ଷର ବସି ।
ଗୋକ୍ଷୀର ଶଙ୍ଖ ଶ୍ୱେତ ଶ୍ରୀ କାମପାଳ ଚାରି
ଏ ଚାରି ଅଶ୍ୱ ଯୋଚିଲେ ରଥେ ନେଇ ହରି ।
ସେ ରଥେ ବସିଲେ ଯାଇ ଶ୍ରୀକୃଷ୍ଣ ଅର୍ଜ୍ଜୁନ
ବଇଶମ୍ପାୟନ କହେ ଶୁଣ କୁରୁରାଣ ।
ଅର୍ଜ୍ଜୁନ ବୋଲେ ଶୁଣିମା ସ୍ୱାମୀ ପଦ୍ମମୁଖ
ଆମ୍ଭ ଥାଟରେ ବଜାଅ ବେଗେ ଏବେ ଶଙ୍ଖ ।
ଶୁଣି ପାଞ୍ଚଜନ୍ୟ ଶଙ୍ଖ ପ୍ରଭୁ କରେ ଧରି
ବଜାନ୍ତି ଶତ୍ରୁ ମର୍ଦ୍ଦଳ ନାଦ ଉଚ୍ଚ କରି ।

ଶୁଭିଲା ସେ ପାଞ୍ଚଜନ୍ୟ ସବୁ ଶବ୍ଦଜିଣି
ଶତ୍ରୁଙ୍କୁ ସେ କୁନ୍ତ ତରିଗଲେ ଭକ୍ତେ ଶୁଣି ।
ଜ୍ଞାନୀଙ୍କି ଶୁଭେ ପ୍ରତ୍ୟକ୍ଷେ ଶବ୍ଦ ଜ୍ଞାନ ଯୋଗ
ପାତକୀ ଜନେ ଶୁଣିଣ ହୋଇଲେ ମୋକ୍ଷାଙ୍ଗ
ବୈଦିକ ଲୋକଙ୍କୁ ଶୁଭିଲା ସେ ବେଦମୟ
କୁରୁସୈନ୍ୟଙ୍କୁ ଶୁଭିଲା କାଳଚକ୍ର ପ୍ରାୟ ।
ପାର୍ଥଙ୍କୁ ଯେ ଦେବଦତ୍ତ ଶଙ୍ଖ ଦେଲେ ହରି
ବୋଇଲେ ବଜା ମରନ୍ତୁ ମୁର୍ଖେ ବେଗେ ଡରି
ଶୁଣିଣ ସେ ବୀର ପାର୍ଥ ଧରି ଦେବଦତ୍ତ
ବଜାନ୍ତେ ମୂର୍ଖଙ୍କୁ ଭୟ ଲାଗେ ଅଲୋକିତ ।
ବାଇଲେ ପୌଣ୍ଡ୍ରକ ଶଙ୍ଖ ଗୋଟି ଭୀମସେନ
କମ୍ପିଲେକ ସ୍ୱର୍ଗମର୍ତ୍ତ୍ୟ ପାତାଳର ଜନ ।
ଯୁଧିଷ୍ଠି ଦେବ ଅନନ୍ତ ନାମେ ଧରି ଶଂଖ
ଚୁମ୍ୱିଲେ କୋମଳନାଦେ ବ୍ରହ୍ମେ ଟେକିମୁଖ ।
ତ୍ରୈଲୋକ୍ୟମୋହିଲା ସେହି ଶଂଖର ଯେ ବାଣୀ
ନକୁଳ ସୁଘୋଷ ଶଂଖ ବଜାଇଲେ ଆଣି ।
ମଣିପୁଷ୍ପ ଶଂଖ ସହଦେବ ଯେ ବଜାଇ
ବିରାଟ ଦ୍ରୁପଦ ଦୁହେଁ ଶଂଖ ଘେନି ବାଇ ।
ଦ୍ରୌପଦୀ ପାଞ୍ଚକୁମରେ ଶୁଭଦ୍ରା ନନ୍ଦନ
ଶଂଖମାନ ବଜାଇଣ ଗଲେ ଧରି ସୈନ୍ୟ ।
ଶିଖଣ୍ଡୀ କାଶୀରାଜା ଯେ ସାତ୍ୟକି ସହିତେ
ବଜାଇଣ ଶଂଖ ସଙ୍ଗେ ଆସିଲେ ସମସ୍ତେ ।
ପାଣ୍ଡବଙ୍କ ସୈନ୍ୟଯାକ ଥିଲେ ଯେତେ ପୂରି
ବାଇଲେ ସମସ୍ତେ କରେ ଶଂଖମାନ ଧରି ।
ସିନ୍ଧୁ ଗର୍ଜନ ପ୍ରାୟେକ ଶୁଭିଲା ଶବଦ
ଭୀମସେନ ଧରି ପୁଣି ବାଏ ସିଂହନାଦ ।
ସବୁଙ୍କର ଶଂଖନାଦ ହୋଇଥିଲା ଏକ
ଏକା ଭୀମସେନ ନାଦେ କମ୍ପିଲା ତ୍ରିଲୋକ ।
କମ୍ପିଲା ମଞ୍ଚପାତାଳପୁର ଗଲା କମ୍ପି
କମ୍ପିଲା ସ୍ୱର୍ଗ ବ୍ରହ୍ମାଣ୍ଡଯାକ ଗଲାବ୍ୟାପି ।
ଦୁଇକୁଳ ସୈନ୍ୟ ପଡ଼ିଗଲେ ମୋହଯାଇ
ଉଠିଲେ ଦଣ୍ଡକେ ସର୍ବେ ପୁଣି ଚେତା ପାଇ ।
ଶୁଣ ହେ ନାରଦ ଭୀମର ଏ ସିଂହରଡ଼ି
ଧୃତରାଷ୍ଟ୍ରଙ୍କୁ ସଞ୍ଜୟ କହେ ଅର୍ଥ ଫେଡ଼ି ।
ଜନ୍ମେଜୟଙ୍କୁ କହନ୍ତି ବଇଶମ୍ପାୟନ
ସପ୍ତମ ସାଗର ବାଣୀ ନୃସିଂହ ପୁରାଣ ।
ଷଡ଼ସମ୍ବାଦରେ ଅଛି ଏ ପୁରାଣ ହୋଇ
ସଙ୍କଟରେ ଶୁଣିଲେ ସୁପୁତ୍ର ଜନମଇ ।
ପଞ୍ଚପୁରାଣ ଫଳ ଏ ଗ୍ରନ୍ଥେ ଅଛି ପୂରି
ଶୁଣିଲା ଲୋକମାନେ ଯେ ପାପୁ ଯିବେ ତରି

ପନ୍ଦର ସସ୍ର ଅଟଇ ଏ ଗ୍ରନ୍ଥର ଶ୍ଳୋକ
ଶ୍ରୀନୃସିଂହ ପୁରାଣ ଏ ଅଟଇ ଅଲୋକ୍ୟ ।
ଶୁଣ ଆହେ ଅନ୍ଧରାଜା ସଞ୍ଜୟ ଯେ କହେ
ଭୀମ ସିଂହନାଦେ ପଡ଼ିଗଲେ ତୋର ପୋଏ
ଆବର ସୈନ୍ୟଯାକର ଗଲା ସଜ ଭାଜି
ପତାକା ଛିଡ଼ି କାହାର ଗଲା ଅଶ୍ୱ ହଜି ।
ଚିରାଳ ଛିଡ଼ି ପଡ଼ିଲା କାର ଧନୁ ଖସି
ଚମକି ପଡ଼ିଣ କେହୁ ଭୂମିପରେ ବସି ।
ଚୁକୁ ଦମ ଦମ ବଥାଏ କା ନାସାପୁଟ
କାର ଫରହର କାର ଶୁଖେ ତାଳୁ କଣ୍ଠ ।
ଝିମିଝିମି ହୋଇ ଥରନ୍ତେ କା ରଥଗୋଟି
ମୁଖ ମାଡ଼ିଣ ପଡ଼ନ୍ତେ ଭାଜିଲା କା କଟି ।
ଟମକ ମାରିଣ ରହିଲା କେ ସ୍ଥିର ହୋଇ
ହାବୋଡ଼ି ହୋଇଣ ରହିଲା କେ ମୋହଯାଇ
ଥର ଥର ହୋଇଣ କେ ପଡ଼ିଲା ନିମଜ୍ଜି
ଧନୁଧରୁ ଧରୁ ପଡ଼ିଲା କେ ବାହୁ ଭାଜି ।
ଛିଡ଼ନ୍ତେ କା ରଥ ରହିଲା ସେ ହୋଇ ଉଭା
ବେକେ ପଡ଼ନ୍ତେ ଫିଟିଲା କାର ଫୁଲ ଗଭା ।
ଦୁର୍ଯ୍ୟୋଧନ ରାଜାତୁଲେ ଯେତେ ଭାଇ ଥିଲେ
ବାତୁଳ ଲୋକର ପ୍ରାୟ ବିହ୍ୱଳ ହୋଇଲେ ।
ଆବର ଯେ ଭୀଷ୍ମ ଦ୍ରୋଣ କୃପାଚାର୍ଯ୍ୟ ଥିଲେ
ଆଦ୍ୟରୁ ଚମକି ପଛେ ନିଷ୍କମ୍ପ ହୋଇଲେ ।
ଏ ରୂପେ ପଡ଼ିଲେ ବେନିସୈନ୍ୟ ମୋହଯାଇ
ମୋହର ପରେ ଉଠିଲେ ପୁଣ ଚେତାପାଇ ।
ଭୀମଙ୍କୁ ସମସ୍ତେ ଜାଣ ଧନ୍ୟ ଧନ୍ୟ କଲେ
ଧନ୍ୟ ଆହେ ବୃକୋଦର ବୋଲି ପ୍ରଶଂସିଲେ
ଯେତେ ରଥିମାନେ ଥିଲୁ ଏଠାରେ ଯେ ଆମ୍ଭେ
ତୋର ସିଂହନାଦେ ଢଳି ପଡ଼ିଲେକ ସର୍ବେ ।
ବାଜିଲା ଅର୍ବୁଦେ ଶଂଖ ପୁଣି ଥାଟଯାକେ
ତହିଁରେ ନିଷ୍କର୍ମ ହୋଇ ବସିଥିଲୁ ଥୋକେ ।
ଏ ରୂପେ ଦାନ ତୋହର ଅଟେ ସିଂହଧ୍ୱନି
କମ୍ପିଲା ପାତାଳ ସ୍ୱର୍ଗ ମଞ୍ଚପୁର ତିନି ।
ଏ ରୂପେ ପ୍ରଶଂସା କରି ହୋନ୍ତେ କୁହାକୁହି ।
ରହିଲେ ଯେ ଯାହାଧନୁ ଧରି ଉଭା ହୋଇ
ଅର୍ଜୁନ ବୋଲେ ଶୁଣିମା ପ୍ରଭୁ ଚଉବାହା
ସମର ଭୂମିକି ମୋର ରଥ ବେଗେ ବାହା ।
ଶୁଣିଣ ଶ୍ରୀଜଗନ୍ନାଥ ଅର୍ଜୁନର ବାଣୀ
ଚାଲିଲେ ରଣଭୂମିକୁ ରଥ ଚକ୍ର ପାଣି ।
ରଖିଲେ ଦୁଇବଳର ମଧ୍ୟେ ରଥ ନେଇ
ପାର୍ଥଙ୍କୁ କହନ୍ତି ତିଆରିଣ ଭାବଗ୍ରାହୀ ।

ବୋଇଲେ ଦୁର୍ଯ୍ୟୋଧନର ଦେଖ ବଡପଣ
ତୁମ୍ଭଙ୍କୁ ମାରିବ ବୋଲି ଧରେ ଧନୁତୂଣ ।
ସାମାନ୍ୟ ଭରସା କରୁଛି କି କୁରୁସାଇଁ
ଏକାକୀ ଭୁଞ୍ଜିବ ବୋଲି ବିଚାରୁଛି ମହୀ ।
ସେ ଏକାକୀ ବାପବୀର୍ଯ୍ୟ ଅଛି ଜନ୍ମ ହୋଇ
ତେବେ ସେ କରନ୍ତା ଭାଗ ସବୁ ଏକା ଥାଇ ।
ଆବର କି ଭାଇଯାକ ଯିବେ ଯୋଗୀ ହୋଇ
ବୁଝିଲେ ତ ଭାଇ ଭାଗ ଅର୍ଦ୍ଧେକ ଯୋଗାଇ ।
ତୁମ୍ଭ ବାପ ତାହା ବାପ ଏକା ବାପ ପୁଅ
ଏଣୁକରି ଅର୍ଦ୍ଧରାଜ୍ୟ ବାଣ୍ଟି ଘେନିଯାଅ ।
ଏକା ଗୋଟିଏ ପୁଅକି ଅଟେ ସେହୁ ମଞ୍ଚେ
ତୁମ୍ଭଙ୍କୁ ମାରି ପୃଥିବୀ ଖାଇବାକୁ ପାଞ୍ଚେ ।
ତାହା ବାପର ଯେ ଭାଗ ଖାଇ କୁରୁଶିଷ୍ୟ
ତୁମର ବାପା ଭାଗରେ ଅଟେ ସେହୁ କିସ ।
ବୁଝିଲେ ଭାଇଙ୍କ ଭାଗ ସଂସାରେ ତ ଅଛି
ଏ କଥା ନ ବୁଝି କିମ୍ପା ମରେ ଅନ୍ଧବସି ।
ଦେଖ ଏକାହାର ସୈନ୍ୟଛନ୍ତି କେତେ ମହୀ
ତାହାକୁ ଜିଣି ପାରିବୁ ପାର୍ଥ କିହୋ ତୁହି ।
ଶୁଣି ଧନଞ୍ଜୟ ଧଇଲେକ ଧନୁ କରେ
ଚାହିଁଲେକ ସ୍ଥିରକରି ସମର ଭୂମିରେ ।
ଦେଖିଲେ ଅଛନ୍ତି ଆଗ ଭୀଷ୍ମ ଦ୍ରୋଣ କର୍ଣ୍ଣ
ନିଜ କୁଟୁମ୍ବ ପୁତ୍ରାଦି ବନ୍ଧୁ ସହିତେଣ ।
ଶତେଭାଇଘେନି ଦୁର୍ଯ୍ୟୋଧନ ରାଜା ମୂଳେ
ଆବର ଅଛନ୍ତି ରହିସର୍ବ ମହୀପାଳେ ।
ଶଲ୍ୟ ସୋମଦତ୍ତ ଭୂରିଶ୍ରବା ଅଶ୍ୱତ୍ଥାମା
ଅଛନ୍ତି ବାହ୍ଲିକ ଜୟଦ୍ରଥ କୃପବ୍ରହ୍ମା ।
ଆବର ଅଳମ୍ବୁଷ ଯେ କୁମାର ଲକ୍ଷ୍ମଣ
ଭଗଦତ୍ତ ମୂଳେ ଶକୁନି ଯେ ଦୁଃଶାସନ ।
ଏହାଙ୍କୁ ଦେଖିଣ କୋପ ଛାଡ଼ି ଫାଲ୍‌ଗୁନି
ହୃଦୟରେ ସ୍ନେହ ଘେନି ରହିଲାକ ତୁନି ।
ତକ୍ଷଣେ ଛାଡ଼ିଲା କ୍ରୋଧ ଅଙ୍ଗୁ ବୀର ପାର୍ଥ
ବୋଲେ ଅଖଡେ କରିବି ବଂଶ କେମ୍ନେ ହତ ।
କେ ମୋର ମାତୁଳ କେହୁ ଅଟେ ମୋର ଭାଇ
ଆବର ଅଛନ୍ତି ଅଜା ଗୁରୁ ଉଭାହୋଇ ।
କେ ମୋହର ପୁତୁରା କେ ମୋର ଅଟେ ପୁତ୍ର
କେ ମୋହର ଅଟେ ସଖା କେ ମୋହର ମିତ୍ର
ଆପଣା ବନ୍ଧୁ କୁଟୁମ୍ବ ବଂଶ ନାଶ କରି
କିଏ ଏ ସଂସାରୁ ବହିନେବ ବସୁନ୍ଧରୀ ।
ଆବର ଅଛନ୍ତି ଯେତେ ଲୋକ ଏଥେ ଜାଣ
ଦେଖିଲେ ସବୁଦେହେ ଅଛନ୍ତି ନାରାୟଣ ।
ପାପିଷ୍ଠ ଲୋକେ କରନ୍ତି ସିନା ବଂଶକ୍ଷୟ
ଏ କଥା ମୋହର ହାତେ ନୁହେଁ ଦେବରାୟ ।
କୁଳର କଣ୍ଟକ ପୁତ୍ର ବଂଶେ ଜନମିଲେ
ସେହି ଜାଣ ବଂଶକ୍ଷୟ କରେ ମୂର୍ଖ ହେଲେ ।
ପ୍ରତ୍ୟକ୍ଷେ ଏ ଭୀଷ୍ମ ଦ୍ରୋଣ ଛନ୍ତି ବିଜେକରି
ଏହାଙ୍କୁ ହସ୍ତ ଟେକି କି ରୁପେ ଯିବି ମାରି ।
ଦ୍ରୋଣ ପରା ଗୁରୁଙ୍କୁ ମୁଁ ମାରିବି କି ଆଗ
ମଲେ ସଂସାରୁ ତରିବି ଯାଇ ନର୍କ ଭୋଗ ।
ପ୍ରତ୍ୟକ୍ଷ ଭୀଷ୍ମ ମୋହର ଅଟେ ଅଜାଗୁରୁ
ତାହାଙ୍କୁ କେମ୍ନେ ମାରିବି ଯୁଦ୍ଧ ସେ ନ କରୁ ।
ଆବର ପ୍ରବେଶିଛନ୍ତି କେତେ ନୃପବର
ଦେଖିବାର ଲୋକଆସି ଅଛନ୍ତି ଅପାର ।
ନୋହୁ ଏ ରାଜ୍ୟ ପଛକେ ନୋହୁ ଏ ସମ୍ପଦ
କରି ନ ପାରିବି ମୁହିଁ ୟାଙ୍କୁ ପ୍ରାଣେ ବଧ ।
ଆବର ଗୁରୁ ବ୍ରାହ୍ମଣ ଛନ୍ତି ଯେତେ ପୂରି
ଏହାଙ୍କୁ ମାରିଣ ଭୋଗ ଭୁଞ୍ଜିବି କି ଶିରୀ ।
ପୋଡୁ ଏ ପୃଥିବୀ ମୋହ ପୋଡୁ କର୍ମମୋର
ବଂଶନାଶକରି ରହିବି ମୁଁ କେତେକାଳ ।
ବଂଶକୁ ବିନାଶ କଲେ ଲାଗେ ଯେଡ଼େ ଦୋଷ
କୋଟିଜନମ ପର୍ଯ୍ୟନ୍ତେ ନର୍କେ ତାକୁ ବାସ ।
ବନ୍ଧୁବର୍ଗଙ୍କୁ ଯେ ନର ସୁହୃଦେ ମାରଇ
ଗଙ୍ଗାରେ ଦେଲେ ଝାସ ସେ ତେବେ ଗତିପାଇ
ଅଦୋଷୀ ଜନ ପକାଏ ବ୍ୟର୍ଥେ ଯେହୁ ମାରି
ଘୁଷୁରି ହୋଇ ଜନ୍ମଇ ସେହୁ ଲକ୍ଷ ଚାରି ।
ପିତାମାତାଙ୍କୁ ଦିଅନ୍ତି ଦଣ୍ଡ ଯେତେଲୋକ
ଭଲ ଭାବେ ତାହାଙ୍କୁ ନ ମିଳେ ଅନ୍ନବସ୍ତ୍ର ।
ଭିଣୋଇ ନାଶ କଲେ ଯେ ହୁଏ ନର୍କଗତି
କୁଟୁମ୍ବ ନାଶ କଲେ ନ ମିଳଇ ସନ୍ତତି ।
ପୁତ୍ର ନାଶକଲେ ଜନ୍ମଇ ସେ ହୋଇ ଅନ୍ଧ
ମାତୁଳକୁ ନାଶକଲେ ହୁଅଇ ପ୍ରମାଦ ।
ଭ୍ରାତାକୁ ନାଶିଲେ ଉପୁଜଇ ଗଳଗଣ୍ଡ
ମଲେ ଜୋକ ହୋଇ ପିଅର ସେ ରକ୍ତକୁଣ୍ଡ ।
ମାଇଲେ ଶ୍ୱଶୁରକୁ ଯେ ଅପୁତ୍ରିକ ହୋଇ
ଆନ ଦ୍ରୋହ କଲେ ସେହି ନର୍କଗତି ପାଇ ।
ନ ବୁଝିଣ ଦୋଷ ଯେହୁ ପ୍ରାଣୀ ମାରେ ଆଗ
ଚୌଷଠି ରୋଗରୁ ରୋଗ ସେହୁକରେ ଭୋଗ
ଏପରି ବିଚାରି ମନେ ମନେ ଫାଲଗୁନି
ତଳେ ଥୋଇ ଧନୁ ବସିଲେକ ହୋଇ ତୁନି ।
ପୁଣି ଛାମୁରେ କହଇ ଉଠି ବୀର ପାର୍ଥ
ବୋଇଲା ସାବଧାନେ ହୋ ଶୁଣ ଜଗନ୍ନାଥ ।

ଯୁଦ୍ଧକୁ ଆସିଅଛନ୍ତି ଯେତେ ବନ୍ଧୁଜନ
ଏହାଙ୍କୁ ମାରିବାକୁ ନ ବଳେ ମୋର ମନ ।
କାହାକୁ ମାରିବାକୁ ନ ଚଳେ ମୋର ଶସ୍ତ୍ର
ସମସ୍ତେ ଅଟନ୍ତି ଭାଇବନ୍ଧୁ କୁଳଗୋତ୍ର ।
ମନ ନ ବଳଇ କାହାକୁ ଯେ ମାରିବାକୁ
ଲାଗୁଛି ବିକଳ ମୋତେ ଦେଖିଣ ତାହାଙ୍କୁ ।
ମାସକ ଜ୍ୱରର ପ୍ରାୟ ଯାଏ ଦେହ ଥରି
ହସ୍ତରୁ ପଡ଼ିଲା ଧନୁ ଖସି ବସୁନ୍ଧରୀ ।
ଅଧର କମ୍ପଇ କଣ୍ଠ ଶୁଖି ନାରାୟଣ
ଲାଗୁଛି ଦେହରୁ ଗଲା ପ୍ରାୟ ପଞ୍ଚପ୍ରାଣ ।
ସନ୍ନିପାତ ହେଲା ନାଡ଼ୀ ଚାଲେ ଯେହ୍ନେ ଛନ୍ଦି
ସେ ରୂପେ ସାହସ ଉଡୁଅଛି ହୋଇ ରୁନ୍ଧି ।
ସ୍ଥିର କରିଣ ରଖି ନପାରେ ମୋର ମନ
ଅନ୍ଧାର ପ୍ରାୟ ଦିଶିଲା ମୋତେ ଆସିଶୂନ୍ୟ ।
ରାଜ୍ୟରେ ମୋହର କାର୍ଯ୍ୟ ନାହିଁ ହେ ଶ୍ରୀବତ୍ସି
କି ରୂପେ ମାରିବି ଗୁରୁଜନ ମନ ମୂର୍ଚ୍ଛି ।
ଆବର କରିବି କେହ୍ନେ ବନ୍ଧୁଜନ ନାଶ
ନୋହୁ ଏ ଭୋଗ ମୋହର ଶୁଣ ଜଗଦୀଶ ।
ପୋଡୁ ଏହି କଥାମାନ କହିବି ବା କେତେ
ନୋହୁଏ ଯଶମୋର ନକରେ କଦାଚିତେ ।
ଯାହାର ପାଇଁ ରଖିବା ଆମ୍ଭେ ପୃଥ୍ୱୀ ଅର୍ଜି
ସେ ଯେବେ ମରିବେ ରଣ ମଧ୍ୟେ ପ୍ରାଣ ତେଜି
ଏ ବଡ଼ପଣ ସମ୍ପଦ ରାଜ୍ୟ ଧନ୍ୟ ଧାନ୍ୟ
ତାହାକେ ଭୋଗକରିବ ଆଉ ଭଗବାନ ।
ଏ ଯେତେ ଖୁଡୁତା ଅଜା ନାତି ବସିଛନ୍ତି
ଏହାଙ୍କୁ ମାରିବାକୁ ନବଳେ ମୋର ମତି ।
ଯେ ଯେବେ ଅଛନ୍ତି ବସି ମାରିବାକୁ ଧାଇଁ
ଆମ୍ଭଙ୍କୁ ମାରି କରନ୍ତୁ ପରେ ଭୋଗ ମହୀ ।
ନୋହୁ ଏ ରାଜ୍ୟଘୋଷ ନକରେ ଏଡେ ପାପ
ଅଦୋଷୀ ଗୁଡାଏ ମାରି ଅର୍ଜିବି କି ତପ ।
ଅନ୍ଧ ରାଜାର ଏ ପୁତ୍ର ଯେବେ ହେଲେ ମନ୍ଦ
ମୁଁ ତାହାଙ୍କ ପ୍ରାୟ କେହ୍ନେ ହେବି ଆଦିକନ୍ଦ ।
ସେ ଅବା ପାପ ପୁଣ୍ୟକୁ ନ ମାନିଲେ କିଛି
ଧାଇଁଲେ କୁଳ ନାଶିବା ପାଇଁ ମନମୂର୍ଚ୍ଛି ।
କୁଳକ୍ଷୟ କଲେ ଲାଗଇଟି ଯେତେ ଦୋଷ
ତାହା କି ଛାମୁରେ କହିବି ମୁଁ ଜଗଦୀଶ ।
କୁଳକୁ କ୍ଷୟ କଲେଟି ଧର୍ମ ନାଶ ଯାଇ
ଧର୍ମ ନାଶକଲେ କାଳ ପ୍ରବେଶ ହୁଅଇ ।
କାଳପ୍ରବେଶ ହେଲେ ହେ ଘୋଟେ ପାପ ଆସି
ପାପରୁ ଦରିଦ୍ର ହୁଅନ୍ତିଟି ବ୍ରହ୍ମରାଶି ।
ଦରିଦ୍ର ହେଲେ ସକଳ ହୋଏ ଜାଣ ଭ୍ରଷ୍ଟ
ସକଳ ଭ୍ରଷ୍ଟ ଗଲେଟି ନାରୀ ହୋଏ ନଷ୍ଟ ।
ନାରୀ ନଷ୍ଟ ଗଲେ ବର୍ଣ୍ଣଶଙ୍କର ହୁଅଇ
ବର୍ଣ୍ଣଶଙ୍କର ପାଣିକି ପିତା ଯେ ନପାଇ ।
ପିତୃଏ ନପାନ୍ତେ ପାଣି ଧର୍ମ ହୋଏ ନାଶ
ଉଦକ ପିଣ୍ଡେ ଯାବତ ହୋଏ ଜାଣଧ୍ୱଂସ ।
ଯାବତ ହୁଅଇ କ୍ରିୟା କର୍ମ ତାର ହୀନ
କ୍ରିୟାହୀନହୋଇଲେ ସେ ହୁଅଇ ଅଜ୍ଞାନ ।
ଅଜ୍ଞାନ ହେଲେ ହୁଅଇ ଜାଣ କୁଳକ୍ଷୟ
ଅଗସ୍ତି ଋଷିଏ କହିଛନ୍ତି ଏହୁ ନ୍ୟାୟ ।
ଆଉ କଥାଏ ଶୁଣିବା ହେଉ ଜଗନ୍ନାଥେ
ଲୋଭରେ ମରନ୍ତି ଜାଣ ରାଜାମାନେ ବ୍ୟର୍ଥେ
ପାତକୀ ଉଦଯୋଗକୁ ସଦାକରେ ଇଚ୍ଛା
ସଂସାରୁ ତରିବାକୁ ନକରେ ମନୋବାଞ୍ଛା ।
ପରର ରାଜ୍ୟକୁ ମାଡ଼ି ବସିବାକୁ ପାଞ୍ଚେ
ପାପେ ପଡ଼ି ଲୋଭେ ଦ୍ରବ୍ୟ ଘରେ ନେଇ ସଞ୍ଚେ
ଅକୀର୍ତ୍ତି କରିବାକୁ ସେ ସଦା ପ୍ରବର୍ତ୍ତନ୍ତି
ଅଳ୍ପକେ ସଂସାର ନାଶଯାଇ କ୍ଷୟ ହୋନ୍ତି ।
ଏ ରୂପେ ଜଣାଇଁ କୃଷ୍ଣ ଆଗେ ବୀର ପାର୍ଥ
ମନେ ବିକଳ ହୋଇ ନଧରେ ଧନୁ ହସ୍ତ ।
ବୋଇଲା ଏକଥା ପ୍ରଭୁ କେବେ ମୋତେ ନୋହୁ
ଆମ୍ଭଙ୍କୁ ମାନଗୋବିନ୍ଦ ମାରି ପଛେ ଯାଉ ।
ଏମାନେ ନୁଅନ୍ତି ଆମ୍ଭ ହସ୍ତେ ବଧ ସେହି
କହୁଁ କହୁଁ ଲୋତକ ଯେ ଗଲା ନେତ୍ରୁ ବହି ।
ଏ ରୂପେ ମନରେ ଚିନ୍ତାକରି ପଣ୍ଡୁ ସୁତ
ହସ୍ତୁ ଧନୁ ଥୋଇଦେଲା ନେଇ ଭୂମିଗତ ।
ଅଧୋଭୁବନକୁ ମୁଖ କରି ଚକ୍ଷୁ ବେନି
ଯୁଦ୍ଧକୁ ମନ ଆଉ ନ କଲା ଫାଲଗୁନି ।
ବାହୁଡ଼ିଯିବା ବୋଲିଣ ମନେ ବିଚାରଇ
ଶ୍ରୀହରିଙ୍କ ଡରେ କଥା କହି ନ ପାରଇ ।
ଶୁଣ ହେ ନାରଦ ଏ ନୃସିଂହ ଗ୍ରନ୍ଥ ବାଣୀ
ସପ୍ତମ ସାଗର ଗ୍ରନ୍ଥ ପ୍ରକାଶିଲି ଆଣି ।
ବଇଶମ୍ପାୟନ ଋଷି ଜନ୍ମେଜୟ ଆଗେ
କହନ୍ତି ନୃସିଂହ ଗ୍ରନ୍ଥ ସୁଧାରସ ମାର୍ଗେ ।
ଧୃତରାଷ୍ଟ୍ରଙ୍କ ଆଗରେ ସଞ୍ଜୟ ଯେ କହି
ଅର୍ଜୁନର ମନକଥା ଜାଣି ଭାବଗ୍ରାହୀ ।
ଭୋ ସୁଜ୍ଞଜନମାନେ ନ ଧର ମୋର ଦୋଷ
ବିପ୍ର ପୀତାମ୍ବର ମୁହିଁ ବାଲୁଙ୍କେଶ ଶିଷ୍ୟ ।
ସଂସାରେ ଯେତେ ଅଛନ୍ତି ସୁଜ୍ଞ ସାଧୁଜନ
ସବୁରି ଅଟଇ ମୁହିଁ କନିଷ୍ଠ ନନ୍ଦନ ।

ଜ୍ୟେଷ୍ଠଭ୍ରାତା ମୋର ବାଣ୍ଟି ଦେଲେ ଯାହା ଭାଗ
ପାଇଛି ସେ ଭାଗ ମୁହିଁ ଶ୍ରେଷ୍ଠ ଜ୍ଞାନଯୋଗ ।
ଏତେକ ଭାଗ ମୁଁ ପାଇଅଛି ସଂସାରେଣ
ବିପ୍ର ପୀତାମ୍ବର ମୁଁ ଯେ ନୃସିଂହ ଶରଣ ।

•

## ଭାଗବତ ଗୀତା

ଏଥୁ ଅନନ୍ତରେ କୁଞ୍ଜଗଳ ଦେଶ ରାୟ
ଧୃତରାଷ୍ଟ୍ର ପୁଚ୍ଛାକଲେ କହ ହେ ସଞ୍ଜୟ ।
ଯୁଦ୍ଧରେ ଧନୁ ଥୋଇଣ ଦେଲା ଅରଜୁନ
ତହିଁକି ଉପାୟ କିସ କଲେ ଭଗବାନ ।
ବିକଳ ହୋଇଣ ବସିଲାକ ବୀର ପାର୍ଥ
କିରୂପେ ବୋଧି କହିଲେ ତାକୁ ଜଗନ୍ନାଥ ।
ସଞ୍ଜୟ ବୋଲେ ଶୁଣିମା ହେଉ କୁରୁମଣି
ନନ୍ଦିଘୋଷେ ବିଜେ କରିଥିଲେ ଚକ୍ରପାଣି ।
ଥୋଇଣ ବସନ୍ତେ ଧନୁଶର ବୀର ପାର୍ଥ
ଦେଖିଣ ବିସ୍ମୟମନା ହେଲେ ଜଗନ୍ନାଥ ।
ରଥ ଉପରକୁ ଯାଇକରି ଭଗବାନ
ଅର୍ଜ୍ଜୁନର ମୁଖ ଚାହିଁ ହସି ଜନାର୍ଦ୍ଦନ ।
ଅଭାବ ହେଲା ବୋଲିଣ ଜାଣି ଜଗନ୍ନାଥ
ଧରିଣ ସେ ବିବସକୁ କଲେ କୋଳାଗ୍ରତ ।
ପୁଚ୍ଛନ୍ତି ଅର୍ଜ୍ଜୁନ ମୁଖ ଚାହିଁ ଭାବଗ୍ରାହୀ
ବୋଇଲେ ତୁ ଧନୁଶର ରଖିଲୁ କିମ୍ପାଇ ।
କାହିଁକି ବିରସ ଏବେ ହେଲୁ ବୀର ପାର୍ଥ
ଦେଖୁଛୁ ଉଭା ହୋଇଛି ଆଗେ କୁରୁନାଥ ।
ମନ ଉସୁକ ନ କରି ବସିଲୁ ଯେ ଜାଣ
ତୁମ୍ଭଙ୍କୁ ନିଶ୍ଚୟ ଜିଣିବଟି କୁରୁରାଣ ।
ଉଠ ହୋ ଅର୍ଜ୍ଜୁନ ବେଗେ ବିଳମ୍ବ ନ କର
ହସ୍ତରେ ଧନୁ ଧରିଣ ଯୁଦ୍ଧ ବେଗେ କର ।
ବିଷମ ଯୁଦ୍ଧକାଳେ ନିଃଶ୍ୱାସ ନୋହେ ମାରି
ବସିଛୁ କିମ୍ପା ବିସ୍ମିତ ତୁହି ହୋଇକରି ।
ଏରୂପେ ସଂସାରେ ନାହିଁ ତୋର ପ୍ରାୟ ଦେଖି
ହାତର ଗୁଡ଼ ପିଠାରେ ନେଇ ଦେଲୁ ରଖି ।
କୃଷ୍ଣର ମୁଖୁ ଏ ରୂପେ ପାର୍ଥ ବାକ୍ୟଶୁଣି
କହେ କରଯୋଡ଼ି କରି ପ୍ରଣମି ସେକ୍ଷଣି ।
ଅର୍ଜ୍ଜୁନ ବୋଇଲେ ପ୍ରଭୁ ଶୁଣିମା ଶ୍ରୀହରି
ଦେଖ ଏହି ଭୀଷ୍ମ ଦ୍ରୋଣ ଛନ୍ତି ବିଜେ କରି ।
କି ରୂପେ ଏହାଙ୍କୁ ବିନ୍ଧିବି ମୁଁ ଆଗ ଶର
କୁଳକୁ ନାଶ କରିଣ ହେଲାଣି କେ ଚିର ।
ସେ ଭୋଗ ଆମ୍ଭେ ପଛେ ଭୁଞ୍ଜୁ ନରହରି
ଆମ୍ଭଙ୍କୁ ମାରି ନିଅନ୍ତୁ ପଛେ ବସୁନ୍ଧରୀ ।
ଏଡ଼େହେଁ ପାପରେ ମୁଁ ନପଶେ କଦାଚିତେ
ଭିକ୍ଷା ମାଗିଣ ବଞ୍ଚିବୁ ପଛେ ପଞ୍ଚଭ୍ରାତେ ।
ବିପ୍ର ଗୋସାଇଁମାନେ ଯେ ରୂପେ ଭିକ୍ଷାମାଗି
ପେଟ ପୋଷନ୍ତି ବିଷ୍ଣୁଙ୍କ ପାଦ ସେବାଲାଗି ।
ବୁଝିଲେତ ବ୍ରାହ୍ମଣର ଭିକ୍ଷା ଅଟେ ମୂଳ
ଭିକ୍ଷାରେ ତ କିଛି ଦୋଷ ନାହିଁ ଆଦିମୂଳ ।
ଭିକ୍ଷାରେ ସେ ବ୍ରାହ୍ମଣର ଅଟେ ଯୋଗ କ୍ଷମ
ଭିକ୍ଷା ମାଗିଲା ବ୍ରାହ୍ମଣ ଅଟେ ନରୋତ୍ତମ ।
ଭିକ୍ଷା ନ ମାଗି ବ୍ରାହ୍ମଣ ବିପ୍ର ନ ବୋଲାଇ
ଦଶକର୍ମେ ଭିକ୍ଷା ମାଗି ମାତାଙ୍କୁ ମାଗଇ ।
ଯେତେ ଧନବନ୍ତ ହେଲେ ମାଗଇ ସେ ଭିକ୍ଷା
ସେଠାରୁ ବ୍ରାହ୍ମଣେ ବହନ୍ତି ଯେ ଚାରିଦୀକ୍ଷା ।
ଭିକ୍ଷା ମାଗିବା ବିପ୍ର ଶ୍ରୀହରି ନାମ ଭଜେ
ତେଣୁ ବିପ୍ରକୁଳ ବୋଇଲେ ହେ ଦ୍ୱିଜରାଜେ ।
ଭିକ୍ଷା ମାଗୁଁ ଯେବେ ବିପ୍ର ଭଜେ ହନୁମାନ
ତେବେ ସେ ବ୍ରାହ୍ମଣ ଚାରିବେଦରେ ଉତ୍ତମ ।
ଯେବଣ ବ୍ରାହ୍ମଣ ଭିକ୍ଷା ନ ମାଗଇ କିଛି
ତା ବେଦ କୃତାର୍ଥ କେବେ ନୁହଇ ଶ୍ରୀବତ୍ସି ।
ଏ ଘେନି ଭିକ୍ଷା ମାଗିବୁ ଆମ୍ଭେ ଚକ୍ରପାଣି
ବଂଶକୁ ମାରିଣ ଶିରୀ ଭୁଞ୍ଜିବୁ କି ଆଣି ।
ବୁଝିଲେକ ଆମ୍ଭପିତା ବ୍ୟାସଋଷି ସୁତ
ସେ ବ୍ୟାସତ ପରାଶର ବୀର୍ଯ୍ୟ ହେଲେ ଜାତ
ବୁଝିଲେ ବ୍ରାହ୍ମଣ ସେହୁ ନୁହନ୍ତି କି କହ
ଏ ଘେନି ଭିକ୍ଷା ମାଗିଣ ରଖିବୁ ଏ ଦେହ ।
ଏ କଥା ଆମ୍ଭଙ୍କୁ ବଡ଼ ସୁଖ ହେବ ହରି
ଏଡ଼େ ହେ ପାପ ଅର୍ଜିଣ ଭୁଞ୍ଜିବୁ କି ଶିରୀ ।
ମନ୍ଦ ଅର୍ଜିଲେ ପାଆନ୍ତି ପ୍ରାଣୀ ଯେତେ ଦୁଃଖ
ସେ କଥା କିସ କହିବି ମୁହିଁ ପଦ୍ମମୁଖ ।
ମନ୍ଦ କଥାଟି ତ ଅଟେ ସ୍ୱାମୀ ବଡ଼ ଦୋଷ
ମନ୍ଦ ଅର୍ଜିଲା ପ୍ରାଣୀଏ ଅନ୍ତେ ଯାନ୍ତିନାଶ ।
ମନ୍ଦ ଯେଣୁ ମୁରାସୁର ଅର୍ଜିଲା ସଂସାରେ
ତାକୁ ମାଇଲେ ଶ୍ରୀହରି ନୃସିଂହାବତାରେ ।
ହିରଣ୍ୟ ରହିଲା ମନ୍ଦ ଅର୍ଜି କେତେକାଳ
ମନ୍ଦକୁ ଅଜାଣ ମଧ ବିଶ୍ରବାର ବାଳ ।
ମନ୍ଦହିଁ ଅର୍ଜିଲା ବାଳି ଭୁଞ୍ଜିଲା କି ଶିରୀ
ଅଳପକେ ମଲା ଜାର ଭ୍ରାତୃବଧୂ ହରି ।
ଆବର ମହିଷାସୁର ମନ୍ଦ ଅର୍ଜି ମଲା
ଦୁର୍ଗାମାତାଙ୍କର ନୀତି ଦେଖି କ୍ଷୟ ଗଲା ।
ମନ୍ଦ ଅର୍ଜିଲାରୁ ପ୍ରଭୁ ଉଗ୍ରସେନ ଶିଷ୍ୟ
ଆପଣ ତ ଶ୍ରୀହସ୍ତରେ ତାକୁ କଲେ ନାଶ ।

ଆବର ମନ୍ଦ ଅର୍ଜିଲା ଜରାସନ୍ଧ ବୀର
ଅଳପକେ ନାଶ ହୋଇଗଲା ତତପର ।
ଏ ଘେନି ମନ୍ଦ ଅର୍ଜିଲା ତେଣୁ ଦୁର୍ଯ୍ୟୋଧନ
ତାହାର ପାପରୁ ସେହୁ ହେବ ବିନାଶନ ।
ତାହାକୁ ଦେଖି ଥରୁଛି ଜାଣ ମୋର କାୟ
କିରୂପେ ସ୍ଥିର କରିବା ମୋତେ ଦେବରାୟ ।
ଏ ରୂପେ ବୋଲିଣ ମୁଣ୍ଡେ ପଣ୍ଡୁରାଜା ଶିଷ୍ୟ
ବସିଲାକ ପାଦ ଧରି ଭଜି ଜଗଦୀଶ ।
ବସନ୍ତେ ଶ୍ରୀ ପଦ୍ମମୁଖ ଚାହିଁ ସବ୍ୟସାଚୀ
ଜାଣିଲେ ଅର୍ଜୁନ ମନଗୋଟି ଶିରୀବସି ।
ଗୋବିନ୍ଦ ବୋଇଲେ ଶୁଣ ସୁଭଦ୍ରାର କାନ୍ତ
ବୁଝିଲେ ତୋ ପ୍ରାୟ କାହିଁ ଅଛି ସୁପଣ୍ଡିତ ।
ଯାବତ ବିଦ୍ୟାଯାକ ତ ପଢ଼ି ଅଛୁ ଶାସ୍ତ୍ରେ
ମିଛେ ମୁହାଁସ କରିଣ ବସୁ କିମ୍ପା ରଥେ ।
ଲୋଭ ମୋହ କରି କିମ୍ପା ବସିଲୁ ତୁ କାନ୍ଦି
ଏଠାରେ ତ ଅପଣ୍ଡିତ ଦିଶିଲା ତୋ ବୁଦ୍ଧି ।
ଯେଉଁ ଲୋକକୁ ସଂସାରେ ବୋଲି ସୁପଣ୍ଡିତ
ତାହା କହିବା ହୋ ଶୁଣ ସୁଭଦ୍ରାର କାନ୍ତ ।
ଗଲା କଥାକୁ ଶୋଚନା କେହି ନକରଇ
ସମ୍ପତ୍ତି ଇଚ୍ଛାକରିଣ ମନେ ନ କଷ୍ଟଇ ।
ଯେତେହେଁ ମିଳିଲେ ମନେ ନକରେ ଆନନ୍ଦ
ବର୍ତ୍ତମାନ ସବୁକଥା ଘେନୁଥାଇ ହୃଦ ।
ସବୁକଥା ସମକରି ଘେନୁଥାଇ ଚିତ୍ତ
ସଂସାର ମଧ୍ୟେ ତାହାଙ୍କୁ ବୋଲି ସୁପଣ୍ଡିତ ।
ଏହି ଭବ ସାଗର ହେ ଅଟେ ମୃତ୍ୟୁପୁର
ଏଥେ ଜନ୍ମ ହେଲେ କେହି ନୁହେଁ ଜାଣ ଚିର ।
ପାଞ୍ଚଶକୋଟି ଯୁଣ ଯେ ଅଟେ ବସୁନ୍ଧରୀ
ଏହା ସବୁ ସର୍ଜନା ଯେ ଅଟଇ ମୋହରି ।
ମୁହିଁ ଯେ ବ୍ରହ୍ମାଣ୍ଡେ ପୁଣ ସମୟେ ଜନମି
ସର୍ବଦା ଦେହ ଧରି କି ବହିପାରେ ଭୂମି ।
ମୁଁ ପୁଣି ମଲେ ଲେଉଟି ହୋଏ ଜାଣ ଜନ୍ମ
ଏଥକୁ ଚିନ୍ତା ତୁହି ହୋ ନକର ଅର୍ଜୁନ ।
ତୁହି ତ କାଳଯାକ ନଥିବୁ ଚିର ହୋଇ
ମଲେ ଲେଉଟି ଜନ୍ମିବୁ ଆସି ପୁଣମହୀ ।
ଯେତେ ରାଜନ ଅଛନ୍ତି ଏ ସଂସାରେ ଜନ୍ମି
ମଲେ ଲେଉଟି ଆସିବେ ପୁଣ ମଞ୍ଚଭୂମି ।
ଆମ୍ଭର କହିବା କଥା ନୁହେଁ କେବେ ମିଛ
ଏହି କଥା ନିଶ୍ଚେଁ ସତ୍ୟଜାଣ ହେ ବିବସ୍ତ ।
ପ୍ରମାଣ କଥାଟି ତୋତେ କହିଲିଇଁ ମୁହିଁ
ଏ ରୂପେ ସଂସାର ଆତଜାତ ହେଉଥାଇ ।

ପଣ୍ଡିତ ଜାଣି କରନ୍ତି ନାହିଁ ଏକା ଶୋକ
ଶୋକ କରୁଥାନ୍ତି ସଦା ବସି ମୂର୍ଖଲୋକ ।
ଅର୍ଜୁନ ବୋଇଲେ ସ୍ୱାମୀ ଶୁଣିମା ଗୋବିନ୍ଦ
କିମ୍ପାଇଁ ପଣ୍ଡିତ ହୃଦେ ନ କରନ୍ତି ଖେଦ ।
ଶ୍ରୀକୃଷ୍ଣ ବୋଇଲେ ତେବେ ଶୁଣ ଧନଞ୍ଜୟ
ତହିଁର ବୃତ୍ତାନ୍ତ ତୋତେ କହିବା ନିଶ୍ଚୟ ।
ବାଳକ ରୂପେ ଆସିଣ ଜନ୍ମହୋଏ ପ୍ରାଣୀ
ବଢ଼ଇ ସେ ଦିନୁଦିନ ବର୍ଷମାସ ଗଣି ।
ସପ୍ତ ବରଷ ପର୍ଯ୍ୟନ୍ତେ ଧରେ ମାତା ସ୍ତନ
ବାଲ୍ୟ ଅବସ୍ଥାରେ ଯାଏ ବାର ବର୍ଷ ପୁଣ ।
ତହିଁ ଉତ୍ତାରୁ ସେ ପୁଣ ଷୋଳବର୍ଷ ହେଲେ
ରସିକହୋଇ ଚାଲଇ ସେହୁ ଗେଲେଗେଲେ ।
କୋଡ଼ିଏ ବର୍ଷେ ଦେହକୁ ସୁନ୍ଦର କରଇ
ଉତ୍ତମ ପିନ୍ଧା ପିନ୍ଧିଣ ସଭାରେ ବସଇ ।
ପଚିଶ ବରଷ ହେଲେ କାମେ ହୋଏ ଘାରି
ସଂସାର କରିବାକୁ ସେ ଲୋଡେ ଯୁବା ସ୍ତିରୀ
ତ୍ରିଂଶବର୍ଷ ହେଲେ ସନ୍ତାନକୁ ଇଚ୍ଛାକରେ
ଚାଳିଶ ବରଷେ ଦ୍ରବ୍ୟ ସଞ୍ଚି ରଖେ ଘରେ ।
ପଚାଶ ବର୍ଷ ହୁଅଇ ଆସି ଯେତେବେଳେ
ପୁରାଣ ଶୁଣିବି ବୋଲି ମନେ ମନେ ଭାଳେ ।
ଷାଠିଏ ବରଷ ହେଲେ ଇନ୍ଦ୍ରିୟ ନିବର୍ତ୍ତେ
ଧର୍ମର ବୀଜ ଅଙ୍କୁରି ଆସେ ତାର ଚିତ୍ତେ ।
ସତୁରି ବରଷ ହେଲେ ଯୁବାକାଳ ଭାବ
ମନକୁ ଛାଡ଼ି ଥୋକାଏ ଦ୍ରବ୍ୟକରେ ଲୋଭ ।
ବିଷୟା ଆଉ କିଛି ହିଁ ନକରି ପାରଇ
ଦିନକୁ ଦିନ ତା ତନୁ ନିର୍ବଳ ହୁଅଇ ।
ଅଶୀବର୍ଷେ ଶିଖିବାକୁ ଇଚ୍ଛେ ବିଦ୍ୟାପାଠ
ବିସ୍ମରଣ ହୁଅଇ ନଦିଶେ ଅର୍ଥବାଟ ।
ମନୁଷ୍ୟ ଦେଖିଲେ ଆଗେ କିଏ ବୋଲି ବୋଲେ
ଚିହ୍ନି ନ ପାରି ଯାଇ ସେ ବସେ ତାଙ୍କ ତୁଲେ ।
ପଞ୍ଚାଶୀବର୍ଷେ ବିହ୍ୱଳ ହୋଇ କଥା କହେ
ଊନବର୍ଷ ହେଲେ ତାର ନେତ୍ରୁ ଲୁହ ବହେ ।
ଯେତେବେଳେ ପଞ୍ଚାଣୋଇ ବର୍ଷ ତାକୁ ହୋଏ
ଚକ୍ଷୁ ତାହାର ଦିଶଇ କୋରଡ ପରାଏ ।
ଶତେ ବରଷ ହେଲେଟି କରେ ସବୁ ପାର୍ଥ
ଶୁଣ ଫାଲଗୁନି କହନ୍ତି ଯେ ଜଗନ୍ନାଥ ।
ବାଲ୍ୟ ଯୁବା ବୃଦ୍ଧ ତିନି ପ୍ରକାରେ ହୁଅନ୍ତି
ତେଣୁ ପଣ୍ଡିତେ ଦେହକୁ ଶୋକ ନ କରନ୍ତି ।
ମନେ ପାଞ୍ଚନ୍ତି ଯେ କାଳ ଗଲା ଯୁବା ଭାବେ
ବସିଲୁ ବୟସ ବୃଦ୍ଧା ହୋଇ ଘରେ ଏବେ ।

ଆବର ଲୋଡ଼ିଲେ ଯୁବା କେବେ ବୃଦ୍ଧ ନୋହି
ଏରୂପେ ଭାବ ଉପୁଜେ ଥିଲେ ଜାଣ ଜୀଇଁ ।
ଏ ଘେନି ସେ ସୁପଣ୍ଡିତେ ମନ ହର୍ଷଭାବେ
ହୃଦୟରେ ନବସାନ୍ତି ଶୋଚନାକୁ କେବେ ।
ଦେହକୁ ଲାଗେ ଯାବତ କ୍ଲେଶ ଶୋକବାଧା
ଆବର ଯାବତ ଦୁଃଖ ସୁଖ ତୃଷା କ୍ଷୁଧା ।
ଶରୀର ମଧ୍ୟେ ଅଛନ୍ତି ଯେତେ ଇନ୍ଦ୍ରିଗଣ
ସେମାନେ କରନ୍ତି ରୋଗ ଶୋକ ଜାତପୁଣ ।
ଯେଣୁ ଆତ୍ମା ଦେହେ ଆତଯାତ ହେଉଥାଇ
ତେଣୁ ଏ ଦେହ ଜାଣ ତ ଅନିତ୍ୟ ଅଟଇ ।
ଏ କଥା ବୁଛି ବିଚାରି କର ପାର୍ଥ ଚିତ୍ତେ
ବିଷୟା ମନୁ ସଂହରି ସବୁ ଦେହଗତେ ।
ଇନ୍ଦ୍ରିୟଗଣରେ ଜାଣ ସର୍ବଲୋକେ ବଶ
ମୋତେ ଯେ ଚିହ୍ନେ ଇନ୍ଦ୍ରିୟକାର୍ଯ୍ୟ ତାର କିସ
ସେ ପୁଣି ଦୁଃଖ ସୁଖକୁ ଘେନେ ସଜକରି
ବୋଲନ୍ତି ମହାପୁରୁଷ ତାଙ୍କୁ ତିନିପୁରୀ ।
କେବଳ ମୋକ୍ଷକୁ ସେହି ଅଟେ ପତିକାର
ଏକଥା ପାର୍ଥ କହିଲୁ ତୋତେ ନିରାଧାର ।
ଅଖିଳ ସଂସାରେ ମୋତେ ଚିହ୍ନନ୍ତି ଯେ ଜନ
ବ୍ରହ୍ମାଣ୍ଡଯାକ ଘେନନ୍ତି ତାଙ୍କୁ ବିଷ୍ଣୁ ସମ ।
ସକଳ ଧର୍ମ କରନ୍ତି ଯେତେ ଯେତେ ପ୍ରାଣୀ
ସଜନଜନଙ୍କ ସଙ୍ଗେ ତାହାକୁ ଯେ ଗଣି ।
ଆଉ କଥାଏ କହିବା ପାର୍ଥ ଶୁଣ ତୋତେ
ମୁଁ ଯାକୁ କହିବି ଚିହ୍ନିବାକୁ ହୃଦଗତେ ।
ଅକ୍ଷୟ ନିରାକାରଟି ଯେଉଁ ବ୍ରହ୍ମ ଅଟେ
ଜଗତଯାକ ବ୍ୟାପିଣ ଅଛି ସର୍ବଘଟେ ।
ଅବିନାଶ ଅକ୍ଷୟ ସେ ରୂପ ଯୋଗେଶ୍ୱର
ତାହାକୁ ସଂସାରେ ନାହିଁ ଚିହ୍ନିବାକୁ ନର ।
ସେହି ପୁଣି ଦେହ ଅନ୍ତେ ବ୍ରହ୍ମେ ପଶେ ଯାଇଁ
ଏ ଦେହ ଅନିତ୍ୟ ସେହି ଦେହ ନିତ୍ୟ କହି ।
ଦେହ ରହିଲେ ଏ ଜୀବ ମରେ ନିର୍ଶ୍ଚେ ଜାଣ
ଜୀବର ନିୟମ ଯାହା ଏବେ ପାର୍ଥ ଶୁଣ ।
ଜନ୍ମ ମରଣ ଏ ଦୁଇ ଅଟେ ବେନିପଥ
ଜୀବର ନିୟମ ନୀତି ସାଧନ ଏ ଅର୍ଥ ।
ତୁମ୍ଭେ ଯେଣୁ ପୁଛିଲ ମୁଁ କହିଲି ଯେ ଏହା
ସ୍ଥିରହୋଇ ବସି ଏବେ ଗାଣ୍ଡୀବକୁ ବାହା ।
ଏ କଥା କ୍ଷତ୍ରିୟଙ୍କର ଅଟେ ଅବିହିତ
ତୁହି ତ ମହାକ୍ଷତ୍ରୀ ହୋ ଅଟୁ ପଣ୍ଡୁ ସୁତ ।
କ୍ଷତ୍ରି ହୋଇଣ ଯୁଦ୍ଧକୁ ଜାଣ ଯେବେ ଡରେ
ସ୍ତିରୀ ଯେବେ କପଟରେ ସ୍ୱାମୀକି ସଂହାରେ
ରାଜା ହୋଇଣ ପରଜା ଯେବେ ନ ପାଳଇ
ପଦାର୍ଥ ଅର୍ଜି ଅଦାତାପଣ ଯେବେ ବହି ।
ଦେବତା ହୋଇ ନର୍କରେ ଲୋକେ ଯେବେ ଦୟା
ପିଅର ହୋଇ ପୁତ୍ରକୁ କରେ ଯେବେ ମାୟା ।
ସୁନ୍ଦରୀ ସ୍ତ୍ରୀ ହୋଇ ଯେବେ ହୁଏ ପରଭୋଗୀ
ଇନ୍ଦ୍ରିୟକୁ ନିଗ୍ରହ ନ ପାରେ ଯେବେ ଯୋଗୀ ।
ଦାତା ହୋଇଣ ସାତ୍ତ୍ୱିକେ ଯେବେ ନ ଦିଅଇ
ତଥାପି ଦେଇଲୋକରେ ଯେବେ କହିହୋଇ
ପଣ୍ଡିତ ହୋଇ ନୁହଇ ଯେବେ ଜ୍ଞାନବନ୍ତ
ବ୍ରହ୍ମକୁ ନଚିହ୍ନି ତେବେ କହେ ଜ୍ଞାନତତ୍ତ୍ୱ
ସେ ପ୍ରାଣୀ ଆତ୍ମାସୂତ୍ରର ଭେଦ ନ ଜାଣଇ
ବୋଲଇ ସଂସାରେ ମୋହ ପ୍ରାୟ କେହି ନାହିଁ ।
ଏ ରୂପେ ଅଟନ୍ତି ଯେତେ ଅସାର୍ଥକ ଲୋକ
ସେମାନଙ୍କୁ ଏ ସଂସାରେ ବୋଲି ଅବିବେକ
ତୁହି ମହାବିଜ୍ଞ କ୍ଷତ୍ରିକୁଳ ଚୂଡ଼ାମଣି
ଅଯୋଗ୍ୟଙ୍କ ପ୍ରାୟକଥା କହିଲୁ ଯେ ଆଣି ।
ଆତ୍ମା ନାଶିବାକୁ ଲୋକ ବ୍ରହ୍ମାଣ୍ଡରେ ନାହିଁ
ଏହା ନଚିହ୍ନି ବଡ଼ିମାପଣ ହୃଦେ ବହି ।
ତୁ ଏବେ କାହିଁକି ଧନୁ ନ ଧରୁ ବିବସ୍ତ
ଆତ୍ମାର ଜନମ ମୃତ୍ୟୁ ତଥ୍ୟ ଅଟେ ମିଛ ।
ଶସ୍ତ୍ରରେ ହାଣିଲେ କେବେ ନହୁଏ ସେ ନାଶ
ସେ କିମ୍ପା ମରଣ ପାଇଁ ହୃଦେ କରେ ପ୍ରାସ ।
ଶସ୍ତ୍ରେ ହାଣିଲେ ଶରୀର ଜାଣ ନାଶ ଯାଇ
ଏ ଆତ୍ମାର କ୍ଷୟବୃଦ୍ଧି କେବେ ତାର ନୋହି ।
ଏ ଘେନି ଏ ଆତ୍ମା ପୁଣି ନୁହେଁ କେବେ ନାଶ
ସେ କିମ୍ପା କରିବ ମନେ ମରଣକୁ ତ୍ରାସ ।
ଜାଣିଲେ ତ କ୍ଷୟବୃଦ୍ଧି କେବେ ତାର ନୋହି
ପିଣ୍ଡକୁ ତ ହାଣୁଥିଲେ ସେହି ନାଶ ଯାଇ ।
ତହିଁକି କଥାଏ କହିଦେବା ଉପଲକ୍ଷ୍ୟ
ଆତ୍ମାକୁ ଯେ ରୂପେ ଦେହ ଜାଣ ପ୍ରତିକକ୍ଷ ।
ଚିରା ବସନ ଖଣ୍ଡିଏ ଯେହ୍ନେ ପିନ୍ଧିଥାଇ
ନବୀନ ପାଇଲେ ତାହା ଯେରୂପେ ଫିଙ୍ଗଇ ।
ଛିଣ୍ଡା ବସନକୁ ଯେହ୍ନେ ନ କରେ ସୁଆଗ
ସେ ରୂପେ ଦେହ ଆତ୍ମାକୁ ଅଟେ ବଇଭୋଗ
ଛିଣ୍ଡାବସନପରାୟ ଦେହ ପରିଗୁଣ
ଏ ଦେହ ଗଲେ ଏ ଆତ୍ମା ଲୋଡ଼ଇ ନୂତନ ।
ଆତ୍ମାକୁ ହାଣିଲେ ଜାଣ ଶସ୍ତ୍ର ନ କାଟଇ
ଅନଳେ ପୋଡ଼ିଲେ ସେହି ଦଗଧ ନୁହଇ ।
ପବନ ଉଡ଼ାଇଲେ ନ ଯାଏ କେବେ ଉଡ଼ି
ଜଳରେ ବୁଡ଼ାଇଲେ ନ ଯାଏ କେବେ ବୁଡ଼ି ।

ଛେଦିଲେ ନ ଛିଡ଼େ ବଢ଼ାଇଲେ ସେନ ବଢ଼େ
ତପ୍ତରେ ସେ ନ ତାତଇ ତା ମହିମା ଏଡେ ।
ଅବ୍ୟକତ ଅନାମୟ ଅଟଇ ସେ ଜାଣ
କହିଲେ ପୁଣି କେହୁ ନ ଯାନ୍ତି ପ୍ରତେ ପୁଣ ।
ଯେବଣ ଅଜ୍ଞାନୀ ଜନେ ଥାନ୍ତି ମୂଢ଼ପଣେ
ଏ କଥା ସତ୍ୟବୋଲି ନ ଚିହ୍ନେ ଅକାରଣେ ।
ସବୁକାଳେ ହୋଇଥାଏ ଯାର ଆତ୍ମସିଦ୍ଧ
ସଂସାର ଆତ୍ମାକୁ କେ ନପାରେ କରି ବଧ ।
ଏ ଶରୀର ମାତ୍ର ମୃତ୍ୟୁ ଲଭେ ଅନୁବ୍ରତେ
ଏଥକୁ ପାର୍ଥ କରୁଛୁ ଚିନ୍ତା ତୁହି କେତେ ।
ଯୁଦ୍ଧ ଯେ କ୍ଷତ୍ରିୟଙ୍କର ଅଟେ ଏକାମୂଳ
ଯୁଦ୍ଧକୁ ଡରଇ ଏକା ହୀନ କ୍ଷତ୍ରିକୁଳ ।
ମୃତ୍ୟୁ ଛାରକୁ ବସିଛୁ ଡରି କୁରୁକ୍ଷେତ୍ରେ
କରୁଛୁ ଭୟ ଲୋତକ ଢାଳି କେତେ ନେତ୍ରେ ।
ଯୁଦ୍ଧ ଯେ କ୍ଷତ୍ରିଙ୍କର ଅଟେ ମୂଳ ଏକା
ଯୁଦ୍ଧକୁ ଡରିବା କ୍ଷତ୍ରି ସ୍ତିରୀସଙ୍ଗେ ଲେଖା ।
ଯୁଦ୍ଧକୁ ଡରି ପଳାନ୍ତି ଜାଣ ଯେହୁ ଦେଖି
କ୍ଷତ୍ରିୟ କୁଳକୁ ସେହି ଅଟେ ନିରିମାକ୍ଷୀ ।
ଯୁଦ୍ଧେ ଯେ ମରଇ ଲଭେ ସେହୁ ଗଙ୍ଗାସ୍ନାନ
ତତ୍କାଳେ ମୋକ୍ଷହୋଇ ସେ ବିଷ୍ଣୁ ଅଙ୍ଗେଲୀନ
ଯୁଦ୍ଧରେ ସେ ମହାକ୍ଷତ୍ରୀ ଲଭେ ସ୍ୱର୍ଗଆଳ
ଶ୍ରୀମୁଖ ବଚନ ମୋର ଶୁଣ ପଣ୍ଡୁଆଳ ।
ଅନ୍ୟ ମରଣେ କ୍ଷତ୍ରିକି ନାହିଁ ଜାଣ ଧର୍ମ
ସୁଭାଗ୍ୟ ଥିଲେ ପଡଇ ରଣେ କ୍ଷତ୍ରି ଜାଣ ।
ଏକେ କୁରୁକ୍ଷେତ୍ରେ ମିଳିଛନ୍ତି ଦୁଇଥାଟ
ଏଥିରେ ମଲେ ସ୍ୱର୍ଗକୁ ଅଛି ପୁଣି ବାଟ ।
ଯୁଦ୍ଧ ନ କଲେ ମହତ ଯିବ ଏଥୁ ହଜି
ନ ପାଇବ ଯଶ ଧର୍ମ ବ୍ୟର୍ଥେ ହେବ ଗଞ୍ଜି ।
ଶୁଣିଲେ ଦେହକୁ ନିନ୍ଦା ଉପୁଜିବ କେତେ
ମରଣୁ ତ ଲଜ୍ଜା ହେବ ବଡ଼ ଜାଣ ତୋତେ ।
ଲୋକଙ୍କର ମୁଖେ ନିନ୍ଦା ପାନ୍ତି ଯେତେ ଜନ
ମରଣୁ ଅଧିକ ସେହି ଅଟେ ଅରଜୁନ ।
ବୋଲିବେଟି ମୂର୍ଖ ଲୋକେ ଯାହା ପଦେପଦେ
ପଛନ୍ତେ ସହି ପାରିବୁ ତାହା କି ହୋ ହୃଦେ ।
ଯେବଣ ରଥିଏ ଡରୁଥିଲେ ତୋତେ ଦେଖି
ସେମାନେ ହସିବେ ତାଙ୍କ ମହିମାକୁ ଟେକି ।
ତୋର ପରାକ୍ରମ ସବୁ ଯିବ ନାଶ ହୋଇ
ସେବେଳେ ଘରେ ପଶିବୁ ଶିର ତୁ ନୁଆଇଁ ।
ସକଳେ କହିବେ ଆଣ୍ଟେ ତୋତେ ଜଣେ ଜଣେ
କୁରୁବଳ ଦେଖି ଡରେ ପଳାଇବ କେଣେ ।

ଯେବଣ ଲୋକ ତୁମ୍ଭଙ୍କୁ ନ ପାରନ୍ତି କହି
ସେମାନେ ହସିବେ ଏବେ ନାକେ ହସ୍ତଦେଇ
ଶତ୍ରୁଏ କହିବେ ତୋତେ ହସି ଯେଉଁବାଣୀ
ସମର୍ଥ ପଣ ଯିବଟି ତୋର ନିନ୍ଦା ଶୁଣି ।
ସେଥିରୁ ଲଘୁଅଛି କି ପୁଣ ଆଉ କଥା
ମରିବା ପଛେ ନିନ୍ଦାକୁ ନ ଶୁଣିବା ବୃଥା ।
ହାରିବା ଜାଣିବା ଦୁଇ କ୍ଷତ୍ରୀ ବୃତ୍ତି ସିନା
ବସିବା ସ୍ୱର୍ଗରେ ଯାଇଁ ଯୁଦ୍ଧେ ହେଲେ ହଣା ।
ବୈକୁଣ୍ଠପୁରେ ମିଳଇ ତାକୁ ଦିବ୍ୟସ୍ଥାନ
ଜିଣିଲେ ପୃଥିବୀ ଭୋଗ କରଇ ସେ ଜାଣ ।
ଏଥକୁ ଡର କିମ୍ପାଇଁ ହୋଇଲା ତୋ ଚିତ୍ତେ
ଯୁଦ୍ଧକୁ ଗାଣ୍ଡୀବ ଧରି ଚଳ ବେଗେ ହସ୍ତେ ।
ଦୁଃଖ ସୁଖ ଦୁଇ କଥା ଏକ ବୋଲି ଜାଣ
ରଣେ ଅପମାନ କଥା ମନରେ ନ ଘେନ ।
ଏ ସଂଖ୍ୟା ଯୋଗକହିଲୁ ତୋତେ ଧର୍ମ ନ୍ୟାୟ
ଏହା ଜାଣିଲେ ପାପ ନଲାଗେ ତୋର ଦେହ
ଏ କର୍ମଯୋଗ ଫଳରେ ଫଳ ନିଶ୍ଚେ ପାଇ
ଆବର ତ ଉଦଯୋଗ କଲେ ନ ଫଳଇ ।
ଏହି କର୍ମ ଫଳ ଗୋଟି ଅଟେ ନିଶ୍ଚେ ସତ୍ୟ
କହନ୍ତି ସେ ଚକ୍ରପାଣି ଶୁଣ ପଣ୍ଡୁସୁତ ।
ଆବର ଯେ କର୍ମପାକେ ଉପୁଜେ ବୈଗୁଣ୍ୟ
ଅତି କାଷ୍ଠା କଲେ ପୁଣି ହୁଏ କିଛି ଜାଣ ।
ମନ ବଇଗୁଣ କଲେ ହୁଅଇ ନିଷ୍ଫଳ
କାଳେ ସେ ବିନାଶ ଯାଏ ହୋଇଣ ସମୂଳ ।
ନିର୍ମଳ କର୍ମେ ବହୁତ ହୁଏ ଧର୍ମ ଦୟା
ଉଦ୍‌ଯୋଗ କଲେ ଏହାର ପ୍ରଭୁର ସୁଦୟା ।
ତେବେ ସେ କରମ ସବୁ ହୁଅଇ ବିନାଶ
ଶ୍ରୀହରିଙ୍କି ଆଶ୍ରେ କଲେ କର୍ମେ ଅଛି କିସ ।
କୁବୁଦ୍ଧି ଶରୀରେ ଜାଣ ନ କରିବେ ଭ୍ରମ
ଉଦ୍‌ଯୋଗ କରି ପ୍ରଭୁରେ ଦେବ ସମର୍ପଣ ।
ମୂର୍ଖ ଲୋକଙ୍କର କଥା କହିବା ହୋ ଏବେ
ଆଗକୁ ଯେ ସୁଖ ଶ୍ରଦ୍ଧା ମିଳେ ସବୁଠାବେ ।
ପଛେ ଦୁଃଖ ହେବ ବୋଲି ସେହୁ ନ ଜାଣଇ
ଏକଥା ନ ଜାଣି ମୂର୍ଖ ଅଜ୍ଞାନେ ଭ୍ରମଇ ।
ଆବର ଯେ ବେଦବାକ୍ୟ କହିବା ଯେ ଶୁଣ
କାମନା କର୍ମ କରିଣ ଫଳ ଲୋଡେ ଜାଣ ।
ଯେ କଥା ପାଞ୍ଚି ବିଚାରି ଥିବ ମନୋରଥେ
କାଳେ ସେ ଫଳ ଦିଅନ୍ତି ତାକୁ ଜଗନ୍ନାଥେ ।
ମୂଳ ଲାଗିଲେ କାହାକୁ ମୂଳ ନମିଳେ କି
ସେ ରୂପେ ସଂସାରେ ଫଳ ମିଳଇ କର୍ମୀକି ।

ବିଷ୍ଣୁଙ୍କଠାରେ ସମର୍ପି ଦିଅନ୍ତି ଯେ କର୍ମ
ତାହାଙ୍କୁ ମିଳଇ କୋଟି କୋଟି ପୁଣ୍ୟ ଧର୍ମ ।
ବିଷ୍ଣୁଙ୍କର ଅର୍ଥେ କର୍ମ ପ୍ରୀତି ଯେ କରଇ
ମୂଳ ଲାଗିଲା ପ୍ରାୟ ସେ କର୍ମଫଳ ପାଇ ।
କେତେ ପ୍ରକାର ପାଞ୍ଚଇ ହୃଦେ ସେହୁ ବୁଦ୍ଧି
ଆଗତ ସୁଖକୁ ଦେହେ ଘେନେ ନିରବଧି ।
ଏ ଘେନି କରଇ ସ୍ୱର୍ଗେ ପୁଣ୍ୟ ଆଗ ଭୋଗ
ଜନ୍ମ ମରଣ ଏ ଦୁଇ କଥା ଥାଇ ଯୋଗ ।
ଯେତେ ହେଁ କର୍ମ କରଇ ସେହୁ ଅବିରତେ
ଯାବତ କଳ୍ପନା କର୍ମ କରଇ ସେ ଯେତେ ।
ବିଷ୍ଣୁର ପ୍ରୀତିଅର୍ଥେ ନକରେ ଯେବେ କର୍ମ
ଆବର କଥାଏ ତୋତେ କହିଥିବା ମମ ।
ବେଦର ବାକ୍ୟ ଯେ ଏହୁ ଶୁଣ ସବ୍ୟସାଚି
ଏ ରୂପେ ପିଣ୍ଡ ଜୀବକୁ ଜାଣ ରହିଅଛି ।
ପିଣ୍ଡର ପ୍ରାୟ ଯେ ବେଦ ଦେବ ପ୍ରାୟ ପିଣ୍ଡ
ବୁଝିଲେ ପିଣ୍ଡ ବ୍ରହ୍ମାଣ୍ଡ ଦୁଇ ଏକଖଣ୍ଡ ।
ବେଦ ଯେ ଶରୀର ନିଷ୍ଟେ ଅଟେ ଜାଣ ଏକ
ଏକଥା ଚିହ୍ନି ପାରନ୍ତି ଏକା ଜ୍ଞାନୀ ଲୋକ ।
ଶରୀର ମଧ୍ୟେ ଯେ ରୂପେ ଆତ୍ମା ଥାଇ ଜାଣ
ସେ ରୂପେ ସେ ବେଦତତ୍ତ୍ୱ ବେଦ ଅଟେ ପ୍ରାଣ
ତ୍ରିଗୁଣେ ବନ୍ଧନ ହୋଇଥାନ୍ତି ଯେତେ ନର
ତାହାକୁ ହିଁ ଦେବତତ୍ତ୍ୱ ଅଟେ ଅଗୋଚର ।
ସେ ଲୋକ ମୋହିତ ହୋଇ କର୍ମ କରୁଥାନ୍ତି
ଲୋକିତ କର୍ମକୁ କରି ଦିନକୁ ବଞ୍ଚନ୍ତି ।
ବୁଝିଲେ ଦେହରେ ଅଛି ସତ୍ତ୍ୱ ରଜ ତମ
ଯେ ଯାହାର ବିଧିମତ ଦେଖାଇ ଯେ କର୍ମ ।
ସାତ୍ତ୍ୱିକ ଲୋକମାନେ ହେ ସତ୍ୟେ ଦିନନ୍ୟନ୍ତି
ଅସତ୍ୟ ଲୋକମାନେ ହେ ତମେ ଭ୍ରମୁଥାନ୍ତି ।
ମୁଁ କାରେ ରାକ୍ଷସମାନେ ନେଉଥାନ୍ତି ଦିନ
ସାତ୍ତ୍ୱିକ ଲୋକ ଜାଣନ୍ତି ସବୁ ପରଂବ୍ରହ୍ମ ।
ମୁଁଯେତେକ କହେତୋତେ ବେଦ ବାକ୍ୟ ସିନା
ଏକଥା ବିଚାର କରିମନେ ଘେନ କିନା ।
ତୁହିତ ତ୍ରିଗୁଣ ମଧ୍ୟୁ ହୋଇଛି ବାହାର ।
ଖୋଜିଲେ ସଂସାରେ ନାହିଁ ତୋରପ୍ରାୟନର
ଦୁଃଖ ସୁଖ ବୋଲି ଜାଣ ଯେଉଁ ଦୁଇମତ
ଧଇର୍ଯ୍ୟ ଧରି ବିଚାର କର ଚିତ୍ତେ ପାର୍ଥ ।
ନ ପାଇଲେ ଦ୍ରବ୍ୟକୁ ଯେ ବଡ଼ କରି ଘେନ
ପାଇଲା ପଦାର୍ଥରେ କି ଅଛି ପ୍ରୟୋଜନ ।
ଆତ୍ମାକୁ ଚିହ୍ନ ଯେବେ ତୁ ବସିବୁ ଏକାନ୍ତେ
ବ୍ରହ୍ମକୁ ଭେଟ ପାଇବୁ ତେବେ ପଣ୍ଡୁ ସୁତେ

ଆଉ କଥାଏ କହିବା ମଧ ତୋତେ ଶୁଣ
ସିଦ୍ଧାନ୍ତ ସିଦ୍ଧ ବିଚାର ଯେହ୍ନେ ଅଟେ ପୁଣ ।
ତହିଁକି ସେ ଦୃଷ୍ଟାନ୍ତର ଦେବା ଉପଲକ୍ଷ୍ୟ
ପୋଖରୀରେ କିଛି ଜଳ ଥାଇ ଯେ ପ୍ରତ୍ୟକ୍ଷ ।
ଏ କଥାକୁ ମନେ ପାଞ୍ଚି ଘେନି ଧନଞ୍ଜୟ
ପଣ୍ଡିତେ ଥାନ୍ତି ରହି ଏ ବୁଦ୍ଧି ଯୋଗମୟ ।
ଅନାମୟ ଜ୍ଞାନକୁ ଲଭଇ ଯେଉଁ ପ୍ରାଣୀ
ଲୋଭକୁ ସେ ଛାଡ଼ିବାରୁ ପାନ୍ତି ସେହିକ୍ଷଣି ।
ଯେତେବେଳେ ବୁଦ୍ଧି ଆସି ହୁଏ ପରାପତ
ତେତେବେଳେ ସୁମରିଣ ଭଜିବୁ ଆତ୍ମନ୍ତ ।
ମନକୁ ସ୍ଥିର କରିଣ ଚଳଚିତ୍ତ ଛାଡ଼
ବୁଦ୍ଧି ସ୍ଥିର ଲୋକଟିକୁ ବୋଲି ଯୋଗାରୁଢ଼
ବ୍ରହ୍ମଜ୍ଞାନ ଯୋଗାଭ୍ୟାସ ଜାଣ ନିତ୍ୟ କଲେ
ତାହାକୁ ଜ୍ଞାନ ପ୍ରାପତ ହୁଏ ସିନା ଭଲେ ।
ଏରୁପେ ଶୁଣିଣ ପାର୍ଥ ମନେ ହୁଏ ଗୁଣି
ପୁଚ୍ଛଇ କର ଯୋଡ଼ିଣ ଆହେ ଚକ୍ରପାଣି ।
ସ୍ଥିରବୁଦ୍ଧି ହୋଇଣ ଯେ ଅଛି ଯେଉଁ ଲୋକ
କେମନ୍ତେ ତାର ଆସନ କହ ପଦ୍ମମୁଖ ।
କେମନ୍ତ ପ୍ରକାରେ ବାଣୀ କହଇ ସେ ପୂଣ
କେସନ୍ତେ ଗମନ ତାର କହ ଭାଗବାନ ।
ଶ୍ରୀହରି ବୋଇଲେ ତେବେ ଶୁଣ ଫାଲଗୁନି
ସ୍ଥିରବୁଦ୍ଧି ଲୋକଙ୍କର ଲକ୍ଷଣ ଏ ପୁଣି ।
ହୃଦରେ ଅଛି ବାଞ୍ଛା ସେ ନ ଭାବଇ କ୍ଷଣେ
ଆତ୍ମଙ୍କୁ ସେ ଭଜୁଥାଇ ପରହଂସ ଧ୍ୟାନେ ।
ଦୁଃଖ ଉପୁଜିଲେ ମନେ ବିରାଗ ନୁହଇ
ସୁଖ ଉପୁଜିଲେ ମନେ ସୁଖୀ କେବେ ନୋହି
ଆବର କପଟ ହିଂସା କ୍ରୋଧମିଛ ଯେତେ
ସଦାଶାନ୍ତ ହୋଇଣ ରଖଇ ହୃଦଗତେ ।
ପାରିବା ନପାରିବା ଏ ଦୁଇ ଘେନେ ଏକ
ସବୁକଥା ସମଭାବେ ଘେନେ ସୁବିବେକ ।
ଯେ ଜାଣ ଜ୍ଞାନକୁ ଚିହ୍ନି ଆତ୍ମାକରେ ସ୍ଥିର
ସୁବୁଦ୍ଧି ସୁପଣ୍ଡିତ ସେ ଅଟେ ଜ୍ଞାନସାର ।
ଆଉ କଥାଏ କହିବା ଦେଇ ଉପଲକ୍ଷ୍ୟ
ଅଭବ୍ୟ ଲୋକଙ୍କ କଥା ଶୁଣ ହେ ବିଭକ୍ଷ ।
କଚ୍ଛପ ଯେସନେ ଖେଳ ଭିତରେଟି ଥାଇ
ପଦାକୁ ବଦନ କାଢ଼ି ଲେଉଟି ପଶଇ ।
ସେ ଜନଟି ସେହି ରୂପେ ଇନ୍ଦ୍ରିଗଣ ବୋଲେ
ହୃଦବୁ ବିଷୟା କାଢ଼ି କରେ ମନ ହେଲେ ।
ପଞ୍ଚଇନ୍ଦ୍ରିୟ ଗଣଙ୍କ ଭୋଗାଭୋଗ ଯେତେ
ନ ମିଳିଲେ କ୍ଷୀଣ କରିଣ ସେ ଦେହଗତେ ।

ମନରେ ଦୁଃଖ କରିଣ ହୁଅଇ ଆରତ
ଆସ ଯାଅ ହୋଇଥାନ୍ତି ହୋଇ ଅଶକତ ।
ତାଙ୍କର ଯେବେ ଶ୍ରଦ୍ଧାରେ ହେବ ମନଯୁକ୍ତ
ସବୁ କଥାକୁ ଥାଇ ସେ କରଇ ଆଗତ ।
ସେ ଇନ୍ଦ୍ରିଗଣ ରଖି ସେ ପାରଇ ଓଟାରି
ଆଣିବ ତା ଝିଙ୍କି ଜ୍ଞାନ ଅଙ୍କୁଶରେ ଧରି ।
ତେବେ ସେ ଇନ୍ଦ୍ରିଗଣ ନ ଯାନ୍ତି ବଳିଆଇ
ଶୁଣ ଧନଞ୍ଜୟ କହନ୍ତି ଯେ ଭାବଗ୍ରାହୀ ।
ଏରୂପେ ଯେ ଇନ୍ଦ୍ରିଗଣ ପରେ ବଶକରି
ବ୍ରହ୍ମାଙ୍କୁ ତେବେ ଚିହ୍ନି ସେ ହୃଦେରଖେଧରି ।
ତାହାକୁଟି ସ୍ଥିରବୁଦ୍ଧି ବୋଲି ଅରଜୁନ
କହିଲି ସୁବୁଦ୍ଧି ସାରକଥା ମନେ ଘେନ ।
ଏ ବାକ୍ୟ ଶୁଣି କହନ୍ତି ଶ୍ରଦ୍ଧା ଯେତେ ନର
ସେହି ପଣ୍ଡିତ ଭକତ ଏ ସଂସାରେ ମୋର
ଇନ୍ଦ୍ରିଗଣ ନ ପାରନ୍ତି ତାକୁ ବଶକରି
ମନକୁ ଅଙ୍କୁଶ କରି ଆଣର ଓଟାରି ।
ଇନ୍ଦ୍ରିୟଗଣଙ୍କୁ ସେହୁ ରଖେ ଏହିରୂପେ
ଶରଣ ପଶଇ ଯାଇ ମୋହର ସମୀପେ ।
ଯାହାର ଇନ୍ଦ୍ରିୟଗଣ ହୁନ୍ତି ଜାଣ ବଶ
ସାକ୍ଷାତେ ବ୍ରହ୍ମଙ୍କୁ ଚିହ୍ନିପାରେ ସେଅବଶ୍ୟ ।
ସେ ଲୋକକୁ ସ୍ଥିରବୁଦ୍ଧି ବୋଲି ଆମ୍ଭେକହୁ
ମନେ ବିଷୟା ତାର ନ ପଶେକେବେ ଆଉ ।
ମନକୁ ବିଷୟ ଉପଭୋଗ ଯେ କରନ୍ତି
ଏ ଘେନି ଇନ୍ଦ୍ରିୟଗଣେ ପରେ କରେ ପ୍ରୀତି ।
କଳ୍ପନା ହେଲେଟି ସରି କ୍ରୋଧ ହୁଏ ଜାତ
କ୍ରୋଧରୁ ହୁଏଟି ମୋହ ଜାଣ ପଣ୍ଡୁସୁତ ।
ମୋହରୁ ସକଳ ଭ୍ରମ ହୁଏ ଉତପନ୍ନ
ଭ୍ରମ ହେଲେଟି ତାହାର ହୁଏ ମତିହୀନ ।
ମତହୀନେ ବୁଦ୍ଧିଜ୍ଞାନ ହୁଏ ସବୁ ନଷ୍ଟ
ନଷ୍ଟରୁ ଯେ ରାଗ ରାଗୁଁ ହିଂସା ହୁଏ ପୃଷ୍ଟ ।
ଏରୂପେ ହୋଇବ ଲୋକ କରଇ କି ଆଉ
ଏହା ସେ ସଂସାରେ ଛାଡ଼ିପାରେ ସାରସେହୁ
ପ୍ରସନ୍ନ ମୁଖ ତାହାର ସଦାକାଳେ ହୋଇ
ପ୍ରସନ୍ନରୁ ଭୟ ଦୁଃଖ ସବୁ ପାସୋରଇ ।
ଏ ରୁପେ କଲେ ସୁବୁଦ୍ଧି ହୁଏ ତାର ତାତ
ତୁ ଏବେ ସ୍ଥିର ବୁଦ୍ଧି ହୋ କର ପଣ୍ଡୁସୁତ ।
ଇନ୍ଦ୍ରିୟଗଣକୁ ବଶ ନ କରେ ଯେ ପୁଣି
ପ୍ରସନ୍ନ କେବେ ନୁହନ୍ତି ତାକୁ ଚକ୍ରପାଣି ।
ଆତ୍ମାରେ ସେ ଲୋକମାନଙ୍କର କାହିଁ ଭାବ
ଆତ୍ମାକୁ ଚିହ୍ନିବା ଲୋକ ସ୍ୱୟଂ ବାସୁଦେବ ।

ଆତ୍ମାଟି ପରଂବ୍ରହ୍ମ ଆତ୍ମା ନାରାୟଣ
ଆତ୍ମାକୁ ଚିହ୍ନି କେହି ନପାରେ ଶରୀରେଣ ।
ଆତ୍ମାକୁ ନ ଜାଣିଲେଟି ଶାନ୍ତି କାହୁଁ ହେବ
ଶାନ୍ତ ନୋହିବା ଲୋକଙ୍କୁ ପଶୁରେ ଦେଖିବ ।
ଶାନ୍ତ ନୋହିବା ଲୋକଙ୍କୁ କାହିଁ ନାହିଁ ପୂଜା
ଶାନ୍ତ ହୋଇବା ଲୋକଟି ମନୁଷ୍ୟରେ ରାଜା
ଆତ୍ମାରେ ସେ ଗତାଗତ ପୁଣି ଉଦେ ଅସ୍ତ
ଆତ୍ମା ଆସ ଯା ମାର୍ଗକୁ ସେ ଚିହ୍ନିପାରେ ତ ।
ଜାଣିବ ସେ ଲୋକମାନେ ସାକ୍ଷାତେ ବ୍ରାହ୍ମଣ୍ୟ
ତାହାର ବାକ୍ୟ ବୁଝିଲେ ସବୁ ବ୍ରହ୍ମଜ୍ଞାନ ।
ନୁହନ୍ତି ଯାହାର ଇନ୍ଦ୍ରିଗଣେ ଜାଣ ବଶ
ମାୟା ବିଷୟରେ ପଡ଼ି ଭ୍ରମେ ସେ ଅବଶ୍ୟ ।
ଇନ୍ଦ୍ରିୟଗଣଙ୍କୁ ଘେନି ଖେଳେ ଥାଏ ମାତି
ସବୁ ବିଷୟ ହୃଦରୁ କରେ ଉତପତ୍ତି ।
ଯେ ରୁପେ ବତାସ ବଳେ ଜଳେ ବୁଡ଼େନାବ
ଭାସଇ ଅନ୍ତରୀକ୍ଷେ ନ ପାଇ କୂଳେ ଠାବ ।
ସେ ପ୍ରାଣୀଏ ତଥା ହୁନ୍ତି ମାୟାରେ ବନ୍ଧନ
ଶୁଣ ଧନଞ୍ଜୟ କହନ୍ତି ଯେ ଭଗବାନ ।
ଯେ ଜାଣିପାରନ୍ତି ବଶକରି ଇନ୍ଦ୍ରିୟକୁ
ନିର୍ମଳ କରି ପାରଇ ସେ ଚିହ୍ନି ବ୍ରହ୍ମକୁ ।
ତାହାର ପ୍ରତିଜ୍ଞା ଲୋପ ଏପରି ଯେ ହୁଏ
ଯେତେ କର୍ମକଲେକେବେ ବିଫଳ ସେନୁହେଁ
ଆତ୍ମାର ଭାବ ଗୋଟିକ ଜାଣଇ ସେ ପ୍ରାଣୀ
ଯୋଗୀନ୍ଦ୍ର ତୁଲେ ତାହାକୁ ଲେଖି ପରମାଣି ।
ମୂର୍ଖ ଲୋକଙ୍କୁ ଦିଶଇ ଜ୍ଞାନ ରାତ୍ର ପ୍ରାୟ
ଜ୍ଞାନୀଙ୍କୁ ଦିଶେ ଦିବସ ସେ ଆଲୋକମୟ ।
ସେ ଲୋକମାନେ ସୁଖେଣ ତହିଁ ବିହରନ୍ତି
ସୂର୍ଯ୍ୟର ଜ୍ୟୋତି ପରାୟ ଜ୍ଞାନ ପ୍ରକାଶନ୍ତି ।
ତମକୁ ସଂସାର ମାୟା କେବେ ନ ଛାଡ଼ଇ
ଯେ ରୁପେ ସୂର୍ଯ୍ୟଙ୍କୁ ମେଘଛାୟା ଘୋଟିଥାଇ
ମୂଢ଼କୁ ଯେ ସେହିରୂପେ ଦିଶେ ଅନ୍ଧକାର
ଗମି ନ ପାରି ତହିଁ ନ ପଶେ ମନ ତାର ।
ଆଉ କଥାଏ କହିବା ଶୁଣ ଏବେ ପାର୍ଥ
ବୁଝିଲେ ସମୁଦ୍ର ପୂରିଅଛି ଅପ୍ରମିତ ।
ନାରୀମାନଙ୍କ ପାଣି ଯେ ଯାଉଅଛି ଚଳି
ସମୁଦ୍ରେ ପଶିଲେ ସେହୁ ପଡ଼େକି ଉଛୁଳି ।
ନ ଗଲେ କେବେ ଶୁଖି କି ଯାଏ ରତ୍ନାକର
କାଢ଼ିଲେ କି କେବେ ଊଣା ହୁଏ ସମୁଦ୍ରର ।
ଆସୁଥିଲେ କାହିଁକି ଆସୁଛି ନ ବୋଲଇ
ଗଲେହେଁ ଊଣା ହୋଇଲା ବୋଲି ନଜାଣଇ

ଏହି ଉପଲକ୍ଷ୍ୟ ଚିହ୍ନିପାରନ୍ତି ଯେ ପ୍ରାଣୀ
ତାହାକୁ ସଂସାରେ ବୋଲ ଜ୍ଞାନୀ ଚୂଡ଼ାମଣି ।
କାମନା ତେଜି ନିଶ୍ଚଳ ଭାବେ ଯେହୁ ଥାନ୍ତି
ଅହଂ ଛାଡ଼ିବା ଲୋକଙ୍କୁ ଜାଣ ବୋଲିଶାନ୍ତି ।
ସମସ୍ତେ ତ କାମନାରୁ ହୁଅନ୍ତେ ପ୍ରକାଶ
ସେ ପ୍ରାଣୀଏ ଶାନ୍ତନୋହି କ୍ରୋଧେ ଯାନ୍ତି ନାଶ
ଯେହୁ ପ୍ରାଣୀ କାମନାରେ ସଦା ପ୍ରବର୍ତ୍ତଇ
ଅନୁକ୍ଷଣେ ବାଞ୍ଛା କଥା ମନେ କଳ୍ପିଥାଇ ।
ସେ ଲୋକର ମନଶାନ୍ତି କେବେ ନୁହେଁ ଜାଣ
ଏକଥା ସତ୍ୟ କହିଲୁ ତୋତେ ଆମ୍ଭେପୁଣ
ଏ କଥା ତୁ ଭଲ କରି ବୁଝ ପ୍ରଶ୍ନ ସୁତ
ଅଳ୍ପ କରିଣ କହିଲି ତୋତେ ଜ୍ଞାନତତ୍ତ୍ୱ ।
ଏ ଜ୍ଞାନ ଜାଣିହେବୁ ତୁ ମାୟାଭବୁ ପାର
ମରଣ କାଳକୁ ହେବ ତୋ ସଖା ସୋଦର
ଏ ଯେଉଁ ଜ୍ଞାନ ସଂସାର ଯାକେ ଅଟେ ଗୁପ୍ତ
ଜାଣିବା ଲୋକ ଅଟନ୍ତି ଜାଣ ବିଷ୍ଣୁଭକ୍ତ ।
ମରଣ କାଳେ ଜାଣ ନଲାଗେ ଯମଦଣ୍ଡ
ଏ ଜ୍ଞାନ ଜାଣିବା ଲୋକହୋଏ ମୋକ୍ଷପିଣ୍ଡ ।
ଶ୍ରୀନୃସିଂହ ପୁରାଣ ଏ ସପ୍ତମ ସାଗର
ନାରଦ ଗୋସାଇଁଙ୍କର ଆଗେ ବେଦବର ।
ବୋଲନ୍ତି ଯେ ସାବଧାନେ ଶୁଣହେ ନାରଦ
ଶ୍ରୀବ୍ରହ୍ମଜ୍ଞାନ ମହିମା ଅପୂର୍ବ ସମ୍ବାଦ ।
ଅର୍ଜ୍ଜୁନଙ୍କୁ ବୁଝାଇଣ କହନ୍ତି ମୋହନ
ଶ୍ରୀମହାଭାରତ ପୂଣ୍ୟ କୁରୁକ୍ଷେତ୍ର ସ୍ଥାନ ।
ଜନ୍ମେଜୟ ରାଜାକୁ ଯେ କଥାଯାକ ଆଣି
କହନ୍ତି ବୈଶମ୍ପାୟନ ଋଷି ଶାସ୍ତ୍ର ବାଣୀ ।
ସଞ୍ଜୟମନ୍ତ୍ରୀ ଯେ ଅନ୍ଧରାଜା ଆଗେ କହେ
ହରି ଅର୍ଜ୍ଜୁନ ସମ୍ବାଦ ଅଟେ ଜ୍ଞାନମୟେ ।
ଆହେ ବୁଧଜନେ ମୋର ନଘେନିବ ଦୋଷ
କିଞ୍ଚିତ କର୍ମକୁ ମୋତେ ହେଲା ସର୍ବ ଦୃଶ୍ୟ
ଜନ୍ମରୁ ମୂର୍ଖ ମୁହିଁ ନ ଜାଣଇ ଅକ୍ଷର
ଏବେ ହେ ପଣ୍ଡିତ ବୁଦ୍ଧି ହେବ କି ମୋହର
ଜୟ ତୁ ଶାରଳା ମାଗୋ ବିଷ୍ଣୁ ପାଟରାଣୀ
ପ୍ରସନ୍ନ ହୋଇ କହିବା ହେଉ ବୋସାମଣି ।
ପଣ୍ଡିତ ସଭାରେ ନାହିଁ ମୁହିଁ ଦିନେ ବସି
ଶାରଳା କୃପାରୁ ମୁହିଁ ଲେଖୁଛି ଭରସି ।
ରାତ୍ରଅର୍ଦ୍ଧେ ମୋତେ ଆଜ୍ଞାଦେଲେ ଆସିମାତ
ବୋଇଲେ କର ନୃସିଂହପୁରାଣ ତୁ ଗୀତ ।
ଏ ଆଜ୍ଞାକୁ ଶିରେ ଘେନି ବାନ୍ଧୁଛି ମୁଁ ପଦ
ଏ ପୁରାଣ ପଦ ଅର୍ଥ ଜାଣନ୍ତି ଗୋବିନ୍ଦ ।

ମୁଁ ତାହା ଲେଖିବି ବୋଲି କରୁଛି ସାହସ
ଏଥକୁ ସୁପଣ୍ଡିତ ନଘେନ ମୋର ଦୋଷ ।
ଶାରଦା ବୋଇଲେ ତୁହି ଲେଖ ଆଗ ଗ୍ରନ୍ଥ
ବୁଝିବେ ନିନ୍ଦିବା ଲୋକ କଥା ଜଗନ୍ନାଥ ।
ବାଦ ଛିଦ୍ର କଥାନିକି ଅଟେ ଏ ପୁରାଣ
ଶୁଣିଲେ ସମସ୍ତ ଜନେ ହେବେ ନିସ୍ତାରଣ ।
ଭକତ ଜନଙ୍କର ଏ ଅଟେ ଗ୍ରନ୍ଥବାଣୀ
ଶ୍ରୀମୁଖେ କହନ୍ତି ଅର୍ଜ୍ଜୁନକୁ ଚକ୍ରପାଣି ।
ସେ ଅର୍ଥ ନ ଜାଣି ମୁହିଁ କଲଇଁ ପ୍ରକାଶ
ଏଥକୁ ସୁପଣ୍ଡିତେ ନ ଘେନ ମୋର ଦୋଷ
ତୁମ୍ଭର ଶ୍ରୀ ଚରଣରେ କୋଟି ନମସ୍କାର
ମୂର୍ଖମାନଙ୍କୁ ବହୁତ ଅଟେ ମୋର ଡର ।
ତାହାଙ୍କୁ ଦେଖିଲେ ଯାଏ ତକ୍ଷଣେ ମୁଁ ଉଠି
ସାଧୁଜନଙ୍କ ସେବାରେ ସଦାଥାଏ ଖଟି ।
କେଅବା ବୋଲିବେ ପଦ ନଗଲା ଏଠାରେ
ତେଣୁ ମୁଁ ଲେଖୁଛି ଭୟ କରି ସଂଶୟରେ ।
ମୋହର ନୁହେଁ ବୁଦ୍ଧି ଏ ପଦ କରିବାକୁ
ଶାରଦାଆଜ୍ଞାରେ ମାତ୍ର ଲେଖେ ସଂସାରକୁ
ସେଦେବୀର ପାଦତଳେ ସଦାମୋର ସେବା
କିପ୍ର ପୀତାମ୍ବରକୁ ଯେ ଗତି ମୁକ୍ତି ଦେବା ।
ଏଥୁ ଉତ୍ତାରେ ନୃସିଂହ ଗ୍ରନ୍ଥବାଣୀ ପୁଣି
ପାର୍ଥକୁ କହନ୍ତି ଯେତେ ଜ୍ଞାନ ଚକ୍ରପାଣି ।
ସେ କଥାମାନ ସଞ୍ଜୟ ମନ୍ତ୍ରୀ ସବୁ ନେଇ
କହନ୍ତି ଅନ୍ଧରାଜନ ଆଗେ ଅର୍ଥ ଫେଇ ।
କହନ୍ତି ହେ ସାବଧାନେ ଶୁଣ ଧୃତରାଷ୍ଟ୍ର
ଏ ଗ୍ରନ୍ଥ ଶୁଣିବା ଲୋକ ଲଭେ ମୋକ୍ଷ ବାଟ
ଶ୍ରୀକୁରୁକ୍ଷେତ୍ରରେ ଅଛି ନନ୍ଦିଘୋଷ ରଥ
ତହିଁରେ ଧନୁକୁ ଥୋଇ ବସି ବୀରପାର୍ଥ ।
ଶ୍ରୀମୁଖେ ଚାହିଁଣି ପୁଣି ବୀର ଚୂଡ଼ାମଣି
ବୋଇଲା ସଞ୍ଜୟମୋତେ ଲାଗେ ଚକ୍ରପାଣି
ତୁମ୍ଭେତ ବୋଇଲ ଭଲ ଅଟେ ସ୍ଥିର ବୁଦ୍ଧି
ହିଂସାରେ କିମ୍ପା ପୋଷୁଛ ମୋତେଦୟାନିଧି
କର୍ମର ଦଣ୍ଡ କହିଲ ଲଗା ପୁଣି ଦ୍ୱନ୍ଦ
ଜ୍ଞାନ ଥୋକାଏ କହିଣ ଭ୍ରମାଉଛ ହୃଦ ।
ଏ ପୁଣି ମିଶିବ ସମଭାବେ ଯେଉଁ ରୂପେ
ଏ ଦୁଇ ସମାନ ବୁଝିଲେତ ବ୍ରହ୍ମଆଶେ ।
ଏ ଦୁଇ କଥା କହିଲ ମୋତେ ଭାବଗ୍ରାହୀ
ଏଥୁ ଯେ ଭଲ ହେବ ସେ କଥା ଦିଅ କହି ।
ଏ ରୂପେ ବୋଲି ପାର୍ଥ ଶ୍ରୀ ପାଦପଦ୍ମ ଧରି
ବୋଇଲା ଶୁଣିଲେ ତବ ମୁଖୁଁ ଯିବି ତରି ।

ଶୁଣିଣ ବୋଇଲେ ଆଛା ବୋଲି ଜଗନ୍ନାଥ
ଜ୍ଞାନୀକି ସିନା କହି ଏ ଜ୍ଞାନଯୋଗ ପଥ ।
ସଂସାର ଲୋକ ଜାଣିବେ କାହୁଁ ଜ୍ଞାନଯୋଗ
କର୍ମକାଣ୍ଡକୁ ଘେନନ୍ତି ସେହୁ କରି ସ୍ୱର୍ଗ ।
ସଂସାର ଲୋକଙ୍କର କର୍ମ ଏକା ମୂଳ
ଆଉ କଥାଏ କହିବା ଶୁଣ ପଣ୍ଡୁବାଳ ।
ଜ୍ଞାନର ମାର୍ଗ କିଛି ନ ଜାଣେ ଲୋକ ପୁଣି
କର୍ମକୁ ଛାଡ଼ି ମିଛେ ସେ ହେଉଥାନ୍ତି ଟାଣି ।
ଏମନ୍ତ ଲୋକକୁ ଅଛି ସୁଗତି ବା କାହିଁ
ଜ୍ଞାନକୁ ଉଦେ କଲେ ସେ ମୁକ୍ତି ଭଜେଯାଇଁ ।
ସୁଜ୍ଞାନୀ ଭକ୍ତଲୋକର କର୍ମେ ନୋହେ ଆନ
କର୍ମକୁ ତେଜ୍ୟା କରିଣ ଭଜେ ଭଗବାନ ।
ଏ ଦେହେ ପ୍ରକୃତିଗଣ ହୋନ୍ତି ଆତଯାତ
ପ୍ରକୃତି ବଳେ ସେ କର୍ମ କରେ ଅପ୍ରମିତ ।
ମାୟାଚାରୀଙ୍କର ଗୁଣ କହିବା ହୋ ଶୁଣ
ଇନ୍ଦ୍ରିକି ନିରୋଧିଥାନ୍ତି ସେହି ବାକ୍ୟେ ପୁଣ ।
ଦେହ ଭିତରେ ପ୍ରକୃତି ସହ ମନେ ଧରି
ବୁଲାଇ ଦ୍ରବ୍ୟ ହରାଇ ପୁର ନରନାରୀ ।
ଜନ୍ତୁଙ୍କୁ ମାରୁଥାଇ ସେ ବହି ହିଂସାଦମ୍ଭ
ଖାଆନ୍ତି ଲୋକଙ୍କୁ ଭଣ୍ଡି ହୋଇ ମତ୍ତଗର୍ବ ।
ମୁକାର ଭାବ ବହିଣପରକୁ ନାଶନ୍ତି
ବଡ଼ିମା ପଣରେ ମାତିକରି ପାରେ ରତି ।
ଏମନ୍ତ ଲୋକ ସୁଗତି କେଭେ ଲଭଇ କି
ଉତ୍ତମ ଲୋକର କଥା କହିବା ଏଣିକି ।
ମନରେ ପାଞ୍ଚ ଇନ୍ଦ୍ରିୟ ରଖେ ବଶକରି
ହିଂସା କପଟ ମାୟା ଏ ଗର୍ବ ପରିହରି ।
ଗୋବିନ୍ଦ ନାମଗୋଟି ସେ ଭଜୁଥାଏ ନିତି
ନରସିଂହ ନାରାୟଣ ଶ୍ରୀହରି ଶ୍ରୀପତି ।
ଶ୍ରୀରାଧା ଶ୍ରୀଧର ରାମ କୃଷ୍ଣ ଜନାର୍ଦ୍ଦନ
ମୁକୁନ୍ଦ ମାଧବ ମଧୁରିପୁ ଭଗବାନ ।
ନରହରି ଦଇତ୍ୟାରି ଗୋବିନ୍ଦ ମୂରାରି
ଶରଣ ପଞ୍ଜର ପ୍ରଭୁ ଶଙ୍ଖ ଚକ୍ରଧାରୀ ।
ଅଚ୍ୟୁତ ଅନାଦି ଆଦିକନ୍ଦ ପରଂବ୍ରହ୍ମ
ପତିତପାବନ ପଦ୍ମନେତ୍ର କୃଷ୍ଣ ଶ୍ୟାମ ।
କେଶବ କମଳାକାନ୍ତ କୃପାସିନ୍ଧୁ ପ୍ରଭୁ
ବାସୁଦେବ ନାମ ମୁଖେ ଉଚ୍ଚାରିଣ ଭଜୁ ।
ଏ ରୂପେ ମୁଖେ ଭଜିଣ କଟାଇଲେ କାଳ
ଏହି ସଂସାରେ ସୁବୁଦ୍ଧି ଜ୍ଞାନୀ ସାଧୁଶୀଳ
ଲୋକିତ କର୍ମେ କର୍ମକୁ ଚାହିଁ କରୁଥାନ୍ତି
ଯେ ଯାହାର ଜାତିଧର୍ମ କେଭେ ନ ଛାଡ଼ନ୍ତି ।

ଏଣୁ ଏ ଦେହ କହିଣ କର୍ମକୁ ଯେ ଡରେ
ନ ଜାଣିଣ ବ୍ରହ୍ମଜ୍ଞାନ ବ୍ୟର୍ଥେ ଭ୍ରମି ମରେ ।
କର୍ମଟି ଯେ ତରିବାର ଅଟେ ବିଧିମତ
କର୍ମକୁ ନ କଲା ଲୋକ ଅଟେ ଅପଣ୍ଡିତ ।
କର୍ମକଲେ ବିଷ୍ଣୁଠାରେ ନେଇ ସମର୍ପିବ
ସାର୍ଥକ ଜୀବନତାକୁ ବୋଲି ହୋ ପାର୍ଥିବ ।
ମୁହିଁ କରୁଅଛି ବୋଲି ବୋଲଇ ଯେ ତୁଣ୍ଡେ
ବୋଇଲେ ଲାଗେ ସେଦୋଷ ନିଜଦେହମୁଣ୍ଡେ
ବିଷ୍ଣୁଙ୍କୁ ସମର୍ପି କର୍ମ ସେହୁ କରୁଥାଇ ।
ତାହାକୁ ସାତ୍ତ୍ୱିକ ବୋଲି ମୁଖେ ପ୍ରଭୁ କହି
ଆଉ କଥାଏ କହିବା ଶୁଣ ତୋତେ ପାର୍ଥ
ଜୀବକୁ ମାରି ପକାନ୍ତି ଜାଣ ଯେହୁ ବ୍ୟର୍ଥ ।
କୋଟିଏ ଜନ୍ମଯାଏ ସେ ହୋଏ ପଶୁଜନ୍ତୁ
କେବଳ ଯଜ୍ଞେ ଲେଖିଛି ଜୀବର ଯେ ମୃତ୍ୟୁ
ମାରିବ ଜନ୍ତୁ ବାରୁଣୀ ମନ୍ତ୍ର ଯେବେ ପଢ଼ି
ତେବେ ଭୁଞ୍ଜିଲେଯେମା ସେଦେହୁଦୋଷଛାଡ଼ି
ବାରୁଣୀମନ୍ତ୍ର ଯାହାକୁ ବୋଲି ତାହା ଜାଣ
ସାକ୍ଷାତେ ସେ ବ୍ରହ୍ମରୂପ ଅଟେ ଜନ୍ତୁ ପୁଣ ।
ସେ ମନ୍ତ୍ରକୁ ଧ୍ୟାନକରି ଭୁଞ୍ଜେ ଯେବେ ମାଂସ
ତେବେ ତା ଅଙ୍ଗରୁ ପାପଛାଡ଼େ ପଣ୍ଡୁଶିଷ୍ୟ ।
ବ୍ୟର୍ଥେଜୀବ ମାରି ଖାନ୍ତି ଜାଣ ଯେଉଁଲୋକେ
ଜୀବନ ଅନ୍ତେ ପଡ଼ନ୍ତି ଯାଇଁ କୁମ୍ଭୀପାକେ ।
ବୁଝିଲେ ଜୀବକୁ ମାରି କରନ୍ତି ଯେ ଗ୍ରାସ
ମନ୍ତ୍ର ବିହୁନେ ନୁହଇ ଶୁଦ୍ଧ ସେହୁ ମାଂସ ।
କେବଳ କରିବ ଯଜ୍ଞେ ବଧ ଏକା ଜନ୍ତୁ
ଅଦୋଷେ ମାରିଲେ ତାଙ୍କୁ ଲାଗେ ଅଳ୍ପମୃତ୍ୟୁ
ବେଦବିଧିମାର୍ଗେ କରୁଥିବ ଜନ୍ତୁ ବଧ
ପାଇଲେ ସେ ବିନାଦୋଷେ ଲାଗେ ଅପରାଧ
ଅଖିଡ଼େ ଜୀବକୁ ଯେହୁ କରଇ ବିନାଶ
ମାରିବା ଲୋକଙ୍କୁ ଲାଗେ ଜାଣ ବଡ଼ ଦୋଷ
ପୃଥ୍ୱୀ ସର୍ଜନା ଯେ କାଳେକଲେ ପରମେଷ୍ଠୀ
ଯାହାର ମୂଳେନିଯୋଗୀଯାହାଦେଲେ ବାଣ୍ଟି
ଉଚ୍ଚ ନୀଚ ମଧ୍ୟେ ଜ୍ୟେଷ୍ଠ କନିଷ୍ଠ ଯେ କଲେ
ଯେଯହିଁ ଯୋଗ୍ୟତାକୁ ସେଭାବେଖଞ୍ଜି ଦେଲେ
ଦେବତା ବ୍ରାହ୍ମଣ ଗୁରୁସୃଜିଲେ ସଂସାରେ
ବୋଇଲେ ଯେ ଯାହା ଇଷ୍ଟ ପୂଜାକର ନରେ
ଦୟା ତୁମ୍ଭଙ୍କୁ କରନ୍ତୁ ସେହୁ ସର୍ବକାଳେ
ସେବାରେଟି ନକରିବ ଚୋରିକେତେବେଳେ
ଏରୂପେ ବୋଲି ରଖିଲେ ଧାତା ସୃଜି ଜନ
ବେଦ ବ୍ରାହ୍ମଣ ବୈଷ୍ଣବ ଗୁରୁ ସାଧୁଜନ ।

ଏହା ଯେ କରେ ତାହାକୁ ନାହିଁ ପୂଜା ଭୟେ
ଗୋବିନ୍ଦ ଦୟା କରନ୍ତି ତାକୁ ସର୍ବଦାଏ ।
ସେବାରେ ଯେ ପ୍ରଭୁଙ୍କର ନାହିଁ କିଛି ମାୟା
ସୁଖେଣ ଭୋଗ ଭୁଞ୍ଜିଣ କଭେ ବିଷ୍ଣୁକାୟା ।
ଦେବତା ମୁଖେ ଯେ ଚରୁ ଦେଇକରେ ଗ୍ରାସ
ସେ ଲୋକଟି ଜାଣ ଅଟେ ଶ୍ରୀକୃଷ୍ଣର ଦାସ ।
ଆଦ୍ୟରୁ ଆଗ ଦେବତାଆଗେ ଦ୍ରବ୍ୟ ଦେବ
ନୋହିଲେ ବିପ୍ରେ ଭୋଜନ ଆଗେ କରାଇବ
ଦେବତା ବ୍ରାହ୍ମଣଙ୍କୁ ନଦେଇ ଯେହୁ ଖାଇ
ସେ ମହାପାପୀ ନରକେ ଜାଣ ପଡ଼େ ଯାଇ ।
ଆବର ଅନ୍ନରୁ ପ୍ରାଣୀମାନେ ହୋନ୍ତି ଜନ୍ମ
ସେ ଅନ୍ନ ପୁଣି ହୋଇଲା ଚରୁ ଉତପନ୍ନ ।
ସେହି ଚରୁ ହେଲା ପୁଣି ଯଜ୍ଞକର୍ମୁଜାତ
କହନ୍ତି ଯେ ଭଗବାନ ଶୁଣ ଭଦ୍ର କାନ୍ତ ।
ଯେ ଯଜ୍ଞକର୍ମରୁ ଜାତ ହେଲା ସ୍ୱାୟମ୍ଭୁବ
ବେଦରୁ ପ୍ରକାଶ କର୍ମ ହୋଇଲା ସମ୍ଭବ ।
ଅଣ ଅକ୍ଷର ଯେ ଶୁଣି ବେଦୁ ହେଲା ଜନ୍ମ
ସେହି ବୋଇଲାକ ଏକ ଅଣାକାର ବ୍ରହ୍ମ ।
ପଞ୍ଚାଶ ଯୋଜନ କାୟା ସେ ବ୍ରହ୍ମର ହେଲା
ସେ କାୟା ଭିତରେ ସଂସାରକୁ ପ୍ରକାଶିଲା ।
ସେ ବ୍ରହ୍ମକାୟା ଅଛି ଯେ ହୋଇ ଏକାକାର
ଶ୍ରୀମାୟା ଚକ୍ର ଯେ ଜ୍ୟୋତିଶ୍ଚକ୍ର ସୁଷୁମ୍ନାର ।
ମୁର୍ଦ୍ଧନାଚକ୍ର ଭୂଗୋଳଚକ୍ର ଆଦି ଘେନି
ଶ୍ରୀ ବ୍ରହ୍ମରେ ପ୍ରକାଶିଛି ଜାଣପୁର ତିନି ।
ଚକ୍ରକୁ ଭେଦକରି ଶ୍ରୀ ଅଣାକାର ହରି
ସଂସାରେ ପୁରି ଅଛନ୍ତି ଜୀବରୂପ ଧରି !
ଯେବଣ ଜନ ନଘେନେ ଏହା ମନ ଧାନେ
ଜୀବନ ଥାଉ ହୁଅନ୍ତି ଲେଖା ପଶୁଜନେ ।
କେବଳ ମାତ୍ରକ ଜନ୍ମ ହୁଏ ଦେହ ବହି
ଇନ୍ଦ୍ରିୟଗଣକୁ ବୋଧି ରଖି ନପାରଇ ।
ସବୁରି ଦେହେ ଖଞ୍ଜିଛି ଦେଖ ଦଶଦ୍ୱାର
ସେ ଦଶଦ୍ୱାରେ ଇନ୍ଦ୍ରିୟ ହୋଇ ଅବତାର ।
ସେ ଇନ୍ଦ୍ରିୟଙ୍କର ନାମ ଶୁଣ ଧନଞ୍ଜୟେ
ନୟନ ନାସା ଶ୍ରବଣ ଜିହ୍ୱା ମାଂସ ହୁଏ ।
ପାଦପାଣି ଉପାସ୍ଥି ଯେ ଅସ୍ଥି ବସା ଘେନି
ଶରୀର ନାଶ କରନ୍ତି ଏହୁ ପୂର ତିନି ।
ଏହାର ଉପରେ ରାଜାଅଟେ ମନ ଜାଣ
ସୁଜନେ ଚିନ୍ତି କାଟନ୍ତି କାଳକୁ ଯେ ପୁଣ ।
ସୁଜନମାନଙ୍କର ଯେ ଅଟେ କେଡ଼େ ବୁଦ୍ଧି
ମନେ ଓଟାରି ରଖନ୍ତି ଜ୍ଞାନେ ତାକୁ ବାନ୍ଧି ।

ଉତ୍ତମ ସୁଖେ ଭଜନ୍ତି ବସି ହୃଦଆତ୍ମା
ସଂସାରେ ବୋଲନ୍ତି ତାଙ୍କୁ ସମସ୍ତେ ମହାତ୍ମା
ଯେତେହେଁ ସେକଲା କର୍ମଫଳ ଆଶାନାହିଁ
ପରମପଦ ଧାତାର ବସଇ ସେ ଯାଇ ।
ଆବର କଥାଏ ମଧ ଶୁଣ ପଣ୍ଡୁସୁତ
ଗାର୍ଗ କଉଶିକ ମୁନି ଆବର ପୌଲସ୍ତ୍ୟ ।
ଜନକ ସନକ ଶକ୍ତିସୁତପରାଶର
ଅଙ୍ଗିରା ଭାର୍ଗବ ଋଷି ବ୍ୟାସ ମୁନିବର ।
ମୃକୁଣ୍ଡ ମାର୍କଣ୍ଡ ବିଭାଣ୍ଡକ ଋଷ୍ୟଶୃଙ୍ଗ
ଅଠାଶୀ ସହସ୍ର ଯାଏ ଯେତେ ଋଷିବର୍ଗ ।
ଏରପେ ସଂସାରରେ ଯେ ଛନ୍ତି ଋଷିମାନେ
ଯାବତ କର୍ମ ରଖିଲେ ଆଣି ତ୍ରିଭୁବନେ ।
ସେ କର୍ମମାନଙ୍କୁ ଯେବେ ବେଗେଣ ବିଚାରି
କରନ୍ତି ଭଜନ ଜପ ତପ ତିନି ପୂରୀ ।
ବୁଝିଲେ ତୁ ଧନଞ୍ଜୟ ଅଟୁ ଜ୍ଞାନବନ୍ତ
ତୋର ଆତ୍ମାକୁ ହୋ ତୁହି ଚିହ୍ନ ପଣ୍ଡୁସୁତ ।
ଯେବଣ ଆତ୍ମାଟି ପୂରିଅଛି ବ୍ରହ୍ମାଣ୍ଡରେ
ତାକୁ ଚିହ୍ନିପାରିଲେ ତୁ ତରିବୁ ଲୋକରେ
ଲୋକାଚାର ପାଇଁ କର୍ମକର ଧନଞ୍ଜୟ
କର୍ମ ନକଲେ ତୁ କୁଳ ଧର୍ମକୁ ହେ ଭୟ ।
ତୁ ଯେବେ ତୋହର କର୍ମ ଛାଡ଼ିବୁ ଅର୍ଜ୍ଜୁନ
ସଂସାରେଛାଡ଼ିବେ ତୋତେ ଚାହିଁ ସର୍ବଜନ
କର୍ମ ନ କରିବେ ବ୍ରହ୍ମକୁ ହିଁ ନ ଜାଣିବେ
ଉଭୟ ଲୋକରୁ ସଂଶୟରେ ନାଶ ଯିବେ ।
ତୋହର କର୍ମ କାର୍ଯ୍ୟରେ ନାହିଁ ଯେବେମନ
ତୁ ତେବେ କର ସଂସାର ଲୋକଙ୍କର ଧର୍ମ ।
ବଡ଼ଲୋକମାନେ ଯେବେ ଅକର୍ମେ ଚଳନ୍ତି
ତା ଦେଖି ସାନ ତାହାଙ୍କ କଥାରେ ଗମନ୍ତି
ଏ କଥାକୁ ବଡ଼ କରି ଚଳିଯାନ୍ତେ ଶ୍ରେଷ୍ଠେ
ନପାରି ସାନେ ମରନ୍ତି ଯାଇଁ ଅର୍ଦ୍ଧବାଟେ ।
ବଡ଼ଲୋକଙ୍କୁ ସବୁହିଁ ଜାଣ ଯାଇ ପାର
ନ ପାରିଣ ସାନଲୋକ ହୋନ୍ତି ନାରଖାର ।
ବନଲୋକଙ୍କ ମହିମା କଥା ଯେତେ ଅବା
ତହିଁକି ଯେ ଦୃଷ୍ଟାନ୍ତର କଥା କହିଥିବା ।
ଆକାଶରେ ଚନ୍ଦ୍ର ସୂର୍ଯ୍ୟ ଶୂନ୍ୟେ ଯାଉଥାନ୍ତି
ଅଖଣ୍ଡେ କରି ଭୂମିରେ ପଡ଼େ ଜ୍ୟୋତି ନିତି ।
ଶୁଦ୍ଧ ଅଶୁଦ୍ଧ ଯେ ଭୂମି କୀଟୁଁ ବ୍ରହ୍ମଯାଏ
ସଂସ୍କାର ଯେ ଅସଂସ୍କାର ଯେତେସ୍ଥାନ ଥାଏ
ପ୍ରତିଷ୍ଠା ଯେ ଅପ୍ରତିଷ୍ଠା ଯେତେ ଦ୍ରବ୍ୟ କହି
ଚନ୍ଦ୍ର ସୂର୍ଯ୍ୟଙ୍କର ଜ୍ୟୋତି ସମାନେ ପଡ଼ଇ ।

ସେ ଦୁହେଁ ପାଞ୍ଚନ୍ତି ଭଲ ମନ୍ଦ କିଏ ବୋଲି
କିରଣ ପକାନ୍ତି ସବୁ ଦେହେ ଚାଲି ଚାଲି ।
ଚଣ୍ଡାଳରୁ ବ୍ରହ୍ମଯାଏ ସଂସାରେ ଯେ ଭୂମି
ପଡ଼ଇ ସବୁରି ଦେହେ ଚନ୍ଦ୍ର ସୂର୍ଯ୍ୟରଶ୍ମି ।
ବଡ଼ଲୋକଙ୍କର କଥା ଏସନକୁ ଜାଣ
ମରିବେ ସାନମାନେ ତା କରି ଆଚରଣ ।
ଚନ୍ଦ୍ର ଆଦିତ୍ୟଙ୍କୁ ଲାଗୁଛି କି କେଉଁ ଦୋଷ
ଏକଥା କହିଲୁ ତୋର ଆଗେ ପଣ୍ଡୁଶିଷ୍ୟ ।
ଏ ସଂସାରେ ବଡ଼ଲୋକ କରନ୍ତି ଯେ କର୍ମ
ତହିଁକି ଚାହିଁ କରନ୍ତି ସାନେ ହୋଇ ଭ୍ରମ ।
ତହିଁକି ଅଳ୍ପାୟୁ ହୁଅନ୍ତି ଯେ ଅଳ୍ପଦିନେ
କହନ୍ତି ଯେ ଭଗବାନ ପାର୍ଥ ସନ୍ନିଧାନେ ।
ତେଣୁ ସେ ବଡ଼ଲୋକ ନଯାନ୍ତି ଅମାର୍ଗରେ
ଗଲେହେଁ କିଛିଦୋଷ ନଲାଗେ ତାଙ୍କଠାରେ
ବଡ଼ ଲୋକଙ୍କର କର୍ମ ଦେଖି ସାନ ଜନେ
ବୋଲନ୍ତି ନୋହିଲେ ଭଲ ଗଲେ କିଏମାନେ
ବୋଲନ୍ତି ବଡ଼ଙ୍କ ମାର୍ଗେ ଯିବା ଆମ୍ଭେଆସ
ଏରୂପେ ବୋଲି କରନ୍ତି ସ୍ୱାନ ଧର୍ମ ନାଶ ।
ବଡ଼ଲୋକଙ୍କୁ ନ ଲାଗେ ଯେବେ ଦୋଷ ଜାଣ
କରନ୍ତି ସାନମାନେ ଏକଥା ପାଞ୍ଚି ପୁଣ ।
ଏ ଘେନି ସାନେ ଅକର୍ମେ ନ ଯିବାର ପାଇଁ
ଗମନ କରନ୍ତି ବନେ ଡର ଡର ହୋଇ ।
ତେଣୁ ସେହି ସାନମାନେ କରନ୍ତି ବିଚାର
ବୋଲନ୍ତି ନ ଚାଲ ଏଥେ କର କୁଳାଚାର ।
ଏଣୁ ବଡ଼ ଲୋକେ କରନ୍ତି ସେ କୁଳଧର୍ମ
ସାନଲୋକଙ୍କ ପାଇଁ ନଛାଡ଼େ କେବେ କର୍ମ ।
ସାନବୋଲନ୍ତି ହୋ ତେବେ ପାରିବାକିଆମ୍ଭେ
ବ୍ରହ୍ମାଏ ଅର୍ଜିଅଛନ୍ତି ଜାଣ ଯାହା ପୂର୍ବେ ।
ସେ କଥା ସିନା ଅଟଇ ବଡ଼ ପରମାର୍ଥ
ଅନ୍ୟାୟ କଲା ଲୋକ ତ ମରନ୍ତି ଯେ ବ୍ୟର୍ଥ
ପଥକୁ ଛୁଡ଼ି ଚାଲିବ ଯେବେ ଅମଡ଼ାଟି
କଣ୍ଟକ ଖୁଞ୍ଚି ବାଜିଣ ପାଦ ଯିବ ଫୁଟି ।
ଚରଣରେ ପୀଡ଼ାଦେଲେ ଶରୀର ଅଶକ୍ତ
ଏ ଘେନି କରିଛି ବଡ଼ଲୋକେ କର୍ମ କୃତ୍ୟ ।
ତୁ ଏବେ ତୋହର କର୍ମ କର ଧନଞ୍ଜୟ
ମନର ସଞ୍ଚୟ କଥା ନଧର ତୋ କାୟ ।
ଏବେ ତୁ କ୍ଷତ୍ରିୟକର୍ମ ତୋର ବେଗେ କର
ଉଭୟ କୁଳମଧ୍ୟରୁ ହେଉ ଲଜ୍ଜା ଦୂର ।
ଅଶେଷ ବ୍ରହ୍ମାଣ୍ଡେ ଦେଖ ମୁହିଁ ଅଛି ପୁରି
ମୁଁ ପୁଣି କରୁଛି କେତେ କର୍ମ ଦେହ ଧରି ।

ତଥାପି କରଇ କର୍ମ ଲୋକ ଆଚାରକୁ
ସଂସାର ଲୋକଙ୍କୁ କରି କରାଇ କର୍ମକୁ ।
ତଥାପି ସଂସାରେ ଯେବେ ନକରିବ କର୍ମ
ପୃଥିବୀରେ ଲୋକମାନେ କରିବେ ସେଧର୍ମ
ବୋଲିବେ ସେ ଏଡ଼େପ୍ରଭୁ ହୋଇଜଗନ୍ନାଥ
କର୍ମକୁ ଡରି ଧର୍ମକୁ କଲେ ଦେଖ ବ୍ୟର୍ଥ ।
କାହିଁକି କର୍ମ କରିବେ ଆଉ ସର୍ବଜନେ
ଗଲେଣି କି ଡରି କର୍ମ କଲା ଲୋକମାନେ ।
ଏମନ୍ତ ବୋଲିଣ ଲୋକେ କର୍ମ ନକରିବେ
ବ୍ରହ୍ମକୁ ସେ ନ ଚିହ୍ନିଣ ବିଫଳେ ମରିବେ ।
ବ୍ରହ୍ମକୁ ଯେ ନଚିହ୍ନିବେ କର୍ମ ନକରିବେ
ଦୁଇକୁଳରୁ ସେ ଭ୍ରମି ହୋଇ ମରୁଥିବେ ।
ତୁ ମଧ ମନରେ ଏହା ପାଞ୍ଚୁଥିବୁ ହୃଦେ
ବୋଲିବୁ ସଂସାର କର୍ମ କଲେ ଆଦିକନ୍ଦେ ।
ନକଲା ଲୋକ ତ ମଲା ପ୍ରଭୁର କି ଗଲା
ଏମନ୍ତ ବୋଲି ତୁ ପାଞ୍ଚୁଥିବୁ ପରା ଭଲା ।
ମୁହିଁ ଯେ ଦୁଷ୍ଟଗଣଙ୍କୁ ସଂହାରୁଛି କେତେ
କି ବୋଲିବୁ କି ଅକର୍ମ କଲାବେଗେମୋତେ
ମୁଁ ଯେବେ ଦୁଷ୍ଟଗଣଙ୍କୁ ସଂହାରିବି ନାହିଁ
ସଂସାରେ ବର୍ତ୍ତିବେ ଜନ ଜନ୍ତୁ ଆଉ ନାହିଁ ।
ମୂର୍ଖାଦି ଲୋକେ କରନ୍ତି କର୍ମ ଦେଖାଶିଖା
ଫଳକୁ ଆଶା କରନ୍ତି କର୍ମ କରି ଏକା ।
ସୁଜ୍ଞାନୀ ଜନମାନେ ଯେ କରନ୍ତି ସେ କର୍ମ
ଫଳବାଞ୍ଛା କରି କେବେ ନୁହନ୍ତି ସେ ଭ୍ରମ ।
ତୁ ଶୁଣି ବୋଲିବୁ ମୋର କର୍ମେ ନାହିଁ ଇଚ୍ଛା
ଭୋ ପ୍ରଭୁ କହ ମୋତେ ସୁଜ୍ଞାନ ବ୍ରହ୍ମଦୀକ୍ଷା
ତହିଁକି କଥାଏ ତୋତେ କହି ଦୃଷ୍ଟାନ୍ତର
ମୂର୍ଖ କଥା ଶୁଣି ବୁଦ୍ଧି ଯେରୂପେ ତାହାର ।
ଜ୍ଞାନକୁ ସାଧିବ ବୋଲି କର୍ମ ଛାଡ଼ିଦ୍ୟନ୍ତି
ଜ୍ଞାନ ନଜାଣି ସଂସାରେ ଭ୍ରମି ହେଉଥାନ୍ତି ।
ଯୋଡ଼ିଏ ନାବେ ଯେସନେ ଦେଇ ଦୁଇପାଦ
ସେ ବୁଡ଼ିଗଲେ କହନ୍ତି ରଖ ଆଦିକନ୍ଦ ।
ଏମନ୍ତ ଲୋକ ଆତ୍ମାକି ଲେଖି ଜ୍ଞାନମତେ
ଏ ଘେନି ଶୁଣ ବୁଝାଉଅଛି ପାର୍ଥ ତୋତେ ।
ତରିବେ ଯେବଣ ପ୍ରାଣୀ ଯେଉଁ କର୍ମ କରି
ସେ କଥା ଶୁଣ ମନରେ ପାର୍ଥ ତୋରଧରି ।
ଅର୍ଜୁନ ବୋଲେ ପୁଚ୍ଛିବି ତେବେ ଏକବାଣୀ
ସଂସାରୁ ମୋକ୍ଷ ହେବି ଶ୍ରୀମୁଖୁଁ ଥିଲେ ଶୁଣି ।
ମୂର୍ଖ ଲୋକମାନେ କରନ୍ତି ଯେ ଯେତେକର୍ମ
ଜ୍ଞାନୀ ଆସ୍ୟ ତାହିଁ ଜ୍ଞାନୀ କରନ୍ତି ଯେ ଧର୍ମ ।

ଏ ଦୁଇଜଣରୁ ଅଟେ ସଂସାରେ କେ ବଡ଼
ଭୋ ପ୍ରଭୁ କହି ସଂଶୟ ମୋର୍ ବେଗେ ଫେଡ଼
ଶ୍ରୀହରି ବୋଇଲେ ତେବେ ଶୁଣ ଫାଲଗୁନି
ବୁଝିଲି ତୁହି ସଂସାରେ ଅଟୁ ବଡ଼ ଜ୍ଞାନୀ ।
ସେ କଥା ଭଲ କରିଣ ଶୁଣ ହୃଦଗତେ
ଯେ ପ୍ରାଣୀ ହିଂସା କରିଣ ମରେ ଅନୁବ୍ରତେ ।
ତେବେ ପ୍ରକୃତି ବଳେ ହେଁ କରେ କର୍ମମାନ
ମୁହିଁ କରୁଛି ବୋଲି ସେ କହେ ପ୍ରତିଦିନ ।
ଏରୂପେ ଅଟଇ ମୂଢ଼ ଲୋକଙ୍କର ବାଣୀ
ସାଧୁଲୋକଙ୍କର କଥା କହିବା ତା ଶୁଣି ।
ଏଥକୁ ଜ୍ଞାନୀଜନ ନକରଇ ସୁଆଗ
ପାଞ୍ଚ ଇନ୍ଦ୍ରିୟଗଣ ନକରେ ସବୁ ଭୋଗ ।
ବୋଲଇ ଏଥେ ମୋହର କାର୍ଯ୍ୟ ନାହିଁକିଛି
ବୁଝିଲେ ସକଳ ସିନା ଇନ୍ଦ୍ରିୟଗଣେ ଭକ୍ଷି ।
ଏରୂପେ ପାଞ୍ଚ ଜ୍ଞାନୀ ନକରେ କାହିଁ ଆଶା
ସବୁ କଥାରେ ଘେନଇ ସମେ ଦୁଇଭାଷା ।
ତୁ ଏବେ ମୋହର ବାକ୍ୟକର ପଣ୍ଡୁସୁତ
ଉଠିଣ ତୁ ବେଗେ ଧନୁ ଧରି ବେନିହସ୍ତ ।
ତୁମ୍ଭଙ୍କୁ ଦେଇଛି ଯେତେ ଦୁଃଖ କୁରୁନାଥ
ବନସ୍ତେ ବୁଲି ମାଗିଲି ଘେନି ଭିକ୍ଷାପାତ୍ର ।
ଏବେ ପୁଣି ରାଜ୍ୟେ ଆସି ହୋଇଲ ପ୍ରବେଶ
ମଧ୍ୟସ୍ଥପଣେ ପେଶିଲେ ମୋତେ ରାଜାପାଶ
ମୁଁ ଯେତେମତେ ମାଗିଲି କଲା ସବୁ ନାହିଁ
ବୋଇଲେ ବିନାଯୁଦ୍ଧେ ନଦେବି ତାଙ୍କୁ ମହୀ ।
ଅତି କ୍ରୋଧେ ନିଶ ମୋଡ଼ି ହୋଇକରି ତମୀ
ବୋଇଲା କୃଷ୍ଣ କାହିଁକି କହ ଦେବି ଭୂମି ।
ବୋଇଲେ ଅନ୍ଧ ପଣ୍ଡୁର ଅଟଇ ତ ଭାଇ
ମୋ ବାପା ଜ୍ୟେଷ୍ଠ ଯେ ପଣ୍ଡୁ କନିଷ୍ଠଅଟଇ ।
ବୁଝିଲେକ ରାଜକୁଳେ ଜ୍ୟେଷ୍ଠ ପାଏ ଶାଢ଼ୀ
ମଥାରେ ଶାଢ଼ୀ ବାନ୍ଧିଣ ବସେ ରାଜ୍ୟମାଡ଼ି ।
ତଥାପିତ ଧୃତରାଷ୍ଟ୍ର ଅଟେ ଜାଣ ଜ୍ୟେଷ୍ଠ
ପଣ୍ଡୁ ସାନଭାଇ ହେଲେ କୁଳକୁ ଯେ ଶ୍ରେଷ୍ଠ ।
ବୁଝିଲେ ପଣ୍ଡୁର ପୁତ୍ର ଗୋଟିଏ ତ ନାହିଁ
ଜାରଜାତକା ଅଟନ୍ତି ସିନା ପାଞ୍ଚଭାଇ ।
ପାଞ୍ଚଭାଇ ପାଞ୍ଚଗୋଟି ବାପଙ୍କର ପୁଅ
କେଉଁ କଥାରେ ଦେବଇଁ ତାଙ୍କୁ ଭୂମି କହ ।
ତୁମ୍ଭ ପରାୟେ ପୁରୁଷ ଅଛ ଯେଣୁ ଆସି
ଅନ୍ୟ କେହି ଆସିଥିଲେ ପକାନ୍ତି ମୁଁ ନାଶି ।
ଯାଅ ହେ କୃଷ୍ଣ ଯୁଧିଷ୍ଠି ଆଗେ ଏବେ କହ
ସୂଚୀର ଅଗ୍ରେ ଭୂମି ନଦେବି ଜାଣିଥାଅ ।
ପାରିଲେ ଆସି କରନ୍ତୁ ମୋର ସଙ୍ଗେ ରଣ
ଜିଣିଲେ ରାଜ୍ୟେ ପଛେ ହୁଅନ୍ତୁ ନୃପରାଣ ।
ନିରାଶ ଶୁଣିଣ ତହୁଁ ଆସିଲି ମୁଁ ଚଳି
ତୁହି ରଥେ ଚଢ଼ି ବସିଅଛୁ ଏବେଭାଳି ।
ଦେଖୁଛୁ ଆସି ଅଛନ୍ତି କେତେ ରାଜା ମନ୍ତ୍ରୀ
ସମସ୍ତେ ବୋଲୁଅଛନ୍ତି ଅର୍ଜ୍ଜୁନ ତ କ୍ଷତ୍ରୀ ।
ତୋହର ସମରକୁ ଏ ସର୍ବେଛନ୍ତି ଚାହିଁ
ବୋଲନ୍ତି ରହେ କିମ୍ପାଇଁ ନିସତ ଏ ହୋଇ ।
ମୁଁ ପୁଣି ସାରଥିପଣେ ବାହୁଛି ତୋ ରଥ
ଜାଣୁତ ପାର୍ଥ ମୋ ନାମ ଅଟେ ଜଗନ୍ନାଥ ।
କ୍ଷତ୍ରିୟଙ୍କ ଉପରେ ତୁ ଅଟୁ କ୍ଷତ୍ରୀସାର
ତୋହର ପରାୟେ ଯୋଦ୍ଧା ନାହିଁ ତିନିପୁର ।
କ୍ଷତ୍ରିୟଙ୍କ ଉପରେ ତୁ କ୍ଷତ୍ରୀ ବୀରବର
ରଥିମଧ୍ୟେ ମହାରଥି ଭାରତର ମଲ୍ଲ ।
ତୋ ହସ୍ତେ ଗାଣ୍ଡୀବ ଧନୁ ଅକ୍ଷୟ ତୁ ତୂଣ ।
କପିକେତନ ସାରଥି ତୋର ନାରାୟଣ ।
ଏଥିରେ ତୁ କ୍ଷତ୍ରୀ ହୋଇଅଛୁ ଧନଞ୍ଜୟ
ଘୁଞ୍ଚିଲେ ନିନ୍ଦା କରିବେ ତୋତେ ସର୍ବରାୟ ।
ଏଥକୁ ତୁ ମନେ ପାଞ୍ଚିଉଠ ଫାଲଗୁନି
ଜିଣିଲେ ସର୍ବେ କରିବେ ତୋତେ ଧନି ମନି ।
ରଣେ ଜିଣି ପଞ୍ଚକଟକ ତୁ ଭୋଗକର
ବିଧାତାର ଲେଖନ ଏ ଅଟେ ତହିଁ ସାର ।
କେବଳ କଥାଏ ଏକା ମନେ ନ ଧରିବୁ
ମୁହିଁ କଲି ବୋଲି ମନେ ଗର୍ବ ନ କରିବୁ ।
ଶ୍ରୀମୁଖ ବଚନ ଧରି ପାରିବୁ ତୁ ଯେବେ
ଆନନ୍ଦେ ସମର କର ରଣେ ପଶି ଏବେ ।
ଫଳରେ ଆଶା ଛାଡ଼ିଣ କର କର୍ମ ପାର୍ଥ
ବ୍ରହ୍ମା ନୃସିଂହ ମୁରାରି କଷ୍ଣ ଜଗନ୍ନାଥ ।
ଏ ମୋ ବାକ୍ୟ ଶୁଣି ହାସ୍ୟ କରନ୍ତିଟି ଯେହୁ
ଜ୍ଞାନଭ୍ରଷ୍ଟ ହୋଇ ଜାଣ ମରନ୍ତିଟି ସେହୁ ।
ସେ ଲୋକ ଏ ସଂସାରେଟି ଅଟେ ମହାନଷ୍ଟ
କର୍ମାଣି ଲୋକ କେବେ ନପାଇ ଜ୍ଞାନଭେଟ ।
ଆଉ କଥାଏ କହିବା ଶୁଣ ପାର୍ଥ ତୋତେ
ତୁ ବା ବୋଲିବୁ ଅଛନ୍ତି ପ୍ରଭୁ ଜଗନ୍ନାଥେ ।
ଅଶେଷ ବ୍ରହ୍ମାଣ୍ଡକର୍ତ୍ତା ଅଟ ଚକ୍ରପାଣି
ଏରୂପେ କଥା କହିଲ କିମ୍ପା ମୋତେ ଆଣି ।
ସଂସାର ମଧ୍ୟେ ଏରୁପେ ଅଛି ଯେବେ ଭାବ
କର୍ମକୁ କରି କଳ୍ପନା ଯେହୁ ନକରିବ ।
ଏମନ୍ତ କର୍ମ କରିଣ ତରିବେ ଯେ ଲୋକ
କାହିଁକି ନକରିବ ସେ କରି କର୍ମଯାକ ।

ଏମନ୍ତ ବୋଲି ପାଞ୍ଚୁବୁ ଅବା ତୋର ମନ
ତହିଁକି କଥାଏ କହିଦେବା ପଣ୍ଡୁନାନ ।
ପ୍ରକୃତିଗଣେଜ୍ଞାନୀଙ୍କି ସିନା ବଶ କରି
କରନ୍ତୁ ଭୋଗ ସେ ପଞ୍ଚଭୂତ ଆତ୍ମାଧରି ।
ସେଠାରେ ଇନ୍ଦ୍ରିକିଯେବେ ରୋଧିପାରେ ଜ୍ଞାନୀ
ଆନନ୍ଦ ମୋକ୍ଷ ହୋଇଣ ତରେ ଦେହଘେନି
ଆବର କଥାଏ ଶୁଣ ଭୟ ଉଦବେଗ
ହରଷ ଯେ ଅମରକ୍ଷ ଅଟେ ଦେହଭାବ ।
ସୁଜ୍ଞାନୀ ଜନଙ୍କୁ ଏହି ଅଟେ ଜାଣ ବିଷ
ଆନକୁ ଯେ ନପେକ୍ଷିବ ଏହାଙ୍କର ଶାପ ।
ବେଭାର ବିଧିମତରେ ଚଳାଇବ ନିତି
ମିଶିଲେ ନିନ୍ଦା ତାହାକୁ ହୁଏ ଅପଖ୍ୟାତି ।
ଦୁଇକୁଳରୁ ବାହାର ହୋଇ ଯେହୁ ରହେ
କହନ୍ତି ଶ୍ରୀଜଗନ୍ନାଥ ଶୁଣ ଧନଞ୍ଜୟେ ।
ଆବର ଶୂଦ୍ର କରଇ ଯେବେ ବିପ୍ରକର୍ମ
ଏକଥା ନୁହଇ ଭଲ ବୁଡ଼େ କୁଳଧର୍ମ ।
ଆପଣାର ଜାତି କର୍ମ କରେ କୁଳାଚାର
ମହତ ବେଭାର ଦୁଇ ରଖେ ଯେହୁ ନର ।
ସେ କଥା ଶୁଣି ବସିଲା ପାର୍ଥ କରଯୋଡ଼ି
ସଂଶୟ ପାଇ ମନରେ ପୁଚ୍ଛେ ପାୟେ ପଡ଼ି ।
ବୋଲେ କଥାଏ ଶୁଣିମା ପ୍ରଭୁ ପଦ୍ମ କଳ୍ପ
ମନେ ନଥାଇ ଅର୍ଜିବ ପ୍ରାଣୀ ଯେବେ ପାପ ।
ସେ ପାପକୁ ଦେହଯାକେ କରେକେହ୍ନେ ଭୋଗ
ଏ କଥା ଶୁଣିମା ପ୍ରଭୁ କହ ମୋତେ ଆଗ ।
ଅର୍ଜୁନ ବାକ୍ୟ ଶୁଣିଣ ହସି ଜଗନ୍ନାଥ
ବୋଇଲେ କହିବା ତେବେ ଶୁଣ ବୀରପାର୍ଥ ।
ଏ ରଜଗୁଣ ଯାହାର ହୃଦେ ରହିଥାଇ
ଏଥିରୁ ଜାତ ହୋଏଟି କାମ କ୍ରୋଧ ଦୁଇ ।
ସେ କାମ କ୍ରୋଧରୁ ଜାତହୁଏ ଲୋଭମୋହ
ଏମାନ ନାଶ କରନ୍ତି ଜାଣ ପ୍ରାଣୀ ଦେହ ।
ଦେହ ବିହୁନରେ ବୁଦ୍ଧି ନାଶହୁଏ ଜାଣ
ଶୁଣ ଆହେ ପଣ୍ଡୁସୁତ ହୋଇ ଏକମନ ।
ଯେ ରୁପେ ଘୋଡ଼ାଇ ରଖେ ଅନଳକୁ ଧୂମ
ପ୍ରକୃତିଗଣେ କରନ୍ତି ଯେହ୍ନେ ଜ୍ଞାନ ଭ୍ରମ ।
ଦର୍ପଣ କଳଙ୍କରେ ନଦିଶେ ଯେହ୍ନେ ମୁଖ
ପ୍ରକୃତିଗଣେ ଘୋଡ଼ାନ୍ତି ଯେହ୍ନେ ଜ୍ଞାନଯାକ ।
ଗର୍ଭ ଭିତରେ ବାଳକ ଯେହ୍ନେଥାଇ ପଡ଼ି ।
ଜ୍ଞାନକୁ ପ୍ରକୃତି ଜ୍ଞାନ ସେହିରୁପେ ବେଢ଼ି ।
ପ୍ରକୃତି ମନକୁ ଆଦି ଅହଙ୍କାର ଯେତେ
ଏହୁ ଘୋଡ଼ାଇ ରଖନ୍ତି ଜ୍ଞାନ ଅନୁବ୍ରତେ ।

ଆପଣା ଶରୀରେ ଆସି ଲଗାନ୍ତିଟି ମୋହ
ଏଣୁ ଜ୍ଞାନର ଆୟତ୍ତ ନୋହେ ଜାଣ ଦେହ ।
ମୋହର ବୋଲ କରିଣ ସାଧୁ ଇନ୍ଦ୍ରିଗଣ
ଇନ୍ଦ୍ରିୟକୁ ସାଧିଲେ ତୋ କାମ ହେବ କ୍ଷୀଣ
କାମନା ସାଧିଲେ ହୋଏ ଆତ୍ମାଟି ଭଜନ
ଆତ୍ମା ଭଜନ ହେଲେଟି ନିର୍ମଳ ସୁଜ୍ଞାନ ।
ଏ ଦେହ ଭିତରେ ଅଛି ଦଶ ଇନ୍ଦ୍ରିଗଣ
ସେମାନେ ବୋଲନ୍ତି ଆମ୍ଭେ ସର୍ବସରି ଜାଣ ।
ପଚିଶ ପ୍ରକୃତିଗଣ ପରେ ଆମ୍ଭ ମୂଳ
ମନଟି ବୋଲଇ ମୁହିଁ ଅଟେ ନୃପଶୀଳ ।
ମନର ଉପରେ ବୁଦ୍ଧି ବୋଲେ ମୁହିଁ ବଡ଼
ଅହଙ୍କାର ବୋଲେ ସର୍ବ ଉପରେ ମୁଁ ଗାଢ଼ ।
ଏ ଦେହ ଧାରଣା ମନ ଜାଣନ୍ତି ଯେ ଜନ
ବୁଦ୍ଧିରେ ଘେନନ୍ତି ଶ୍ରେଷ୍ଠ କରି ଆତ୍ମଜ୍ଞାନ ।
ଆତ୍ମଜ୍ଞାନକୁ ଯେ ଲୟେ କରେ ବୀର ପାର୍ଥ
ଦେହକୁ କରନ୍ତି ଇନ୍ଦ୍ରି ଅଇରି ଅନର୍ଥ ।
କାମନା କ୍ରୋଧକୁ ଆଉ ଲୋଭକୁ ମୋହକୁ
ଏହାକୁ ମାରିଣ ବେଗେ ସମ୍ଭାଳ ଦେହକୁ ।
ଏରୂପେ କହନ୍ତି ଅର୍ଜୁନକୁ ନାରାୟଣ
ଶୁଣହୋ ନାରଦ ଏହି ନୃସିଂହ ପୂରାଣ ।
ସମସ୍ତ ସାଗରେ ଏହୁ ଅଟେ ଜ୍ଞାନବାଣୀ
କହନ୍ତି ସଞ୍ଜୟ ପୁଣି ଧୃତରାଷ୍ଟ୍ର ଶୁଣି ।
ଜନ୍ମେଜୟକୁ କହନ୍ତି ବଇଶମ୍ପାୟନ
ନିର୍ମଳ ହରି ଚରିତ ଅଟେ ବ୍ରହ୍ମଜ୍ଞାନ ।
ସପତମ ରତ୍ନାକର ଶ୍ରୀନୃସିଂହ ରସ
ଶାରଦା ଆଜ୍ଞାରୁ ମୋତେ ହୁଏ ପଦ ଦୃଶ୍ୟ ।
ଜୟ ଜୟ ଶାରଦା ଗୋ ବିଷ୍ଣୁ ମନୋହାରି
ସପ୍ତମ ସାଗର କଲେ ଏଥୁ ସେବି ପାରି ।
କି ରୂପେ ପୁରାଣ କରି ଲେଖିବି ଏ ଗ୍ରନ୍ଥ
ଅର୍ଜୁନ ଆଗେ କହନ୍ତି ଯାହା ଜଗନ୍ନାଥ ।
କୃଷ୍ଣଙ୍କୁ ଅର୍ଜୁନ ପୁଚ୍ଛାକଲେ ଜ୍ଞାନବାଣୀ
ସେକଥା ଗୋଚରମୋତେ କର ଗୋସାମଣି
ଷାଠିଏ ଲକ୍ଷ ଗ୍ରନ୍ଥ ଏ ଜ୍ଞାନ ଅର୍ଥ ବାଛି
ରଖିଲେ ସଂସାରେ ଆଣି ପରାଶର ବଚ୍ଛି ।
ଶ୍ରୀମୁଖ ବଚନ ଏହୁ ଅଟେ ଜ୍ଞାନତତ୍ତ୍ୱ
ତାହା ମୁହିଁ ମାନି ମାତ୍ର କରୁଛି ପ୍ରାକୃତ ।
ପଞ୍ଚପୁରାଣ ଶୁଣିମା ପୁଣ୍ୟ ଏଥୁ ପାଇ
ଭାରତ ଭାଗବତ ଶ୍ରୀରାମାୟଣ କହି ।
ପଞ୍ଚକଟକ ମଧ୍ୟେ ଶ୍ରୀ କୁରୁକ୍ଷେତ୍ର ସ୍ଥାନ
ଅର୍ଜୁନ ଆଗେ କହନ୍ତି ବସି ଭଗବାନ ।

ସେ କଥା ସଞ୍ଜୟ ମନ୍ତ୍ରୀ ଧୃତରାଷ୍ଟ୍ର ଆଗେ
ବଖାଣ କରୁଅଛନ୍ତି ବ୍ୟାସ ଅନୁରାଗେ ।
ବୋଲନ୍ତି ଅନ୍ଧରାଜନ ଶୁଣ ମନ୍ତ୍ରୀବର
ଏଥିଉତ୍ତାରେ କହିଲେ କିସ ଚକ୍ରଧର ।
ଶ୍ରୀହରି ମୁଖୁ ଅର୍ଜ୍ଜୁନ ଶୁଣି କଲେ କିସ
ଏକଥା ଅମୃତପ୍ରାୟେ ଲାଗେ ମୋତେ ରସ ।
ସଞ୍ଜୟ ବୋଇଲେ ତେବେ ଶୁଣ ସୋମବଂଶ
ଅର୍ଜ୍ଜୁନ ଆଗେ କହନ୍ତି ଯାହା ହୃଷୀକେଶ ।
ବୋଲନ୍ତି ଯେ ସାବଧାନେ ବୁଝ ବ୍ରହ୍ମଜ୍ଞାନ
ଶୁଣିଲେ ତରିବେ ତୋତେ ଘେନି ସର୍ବଜନ ।
ପୂର୍ବକାଳରେ ପଚାରିଥିଲେ ମୋତେ ସୂର୍ଯ୍ୟ
ସେ ଜ୍ଞାନଯାକ ମୁଁ ଯାହା କହିଥିଲି ବୁଝ ।
ବିନୟ ହୋଇ ପୁଚ୍ଛିଲେ ମୋତେ ଦିନମଣି
କହିଲି ତାଙ୍କୁ ସନ୍ତୋଷ ହେଲେ ସେହି ଶୁଣି ।
ସେ ଶୁଣି ହୃଦରେ ତାହା ଧରି ନପାରିଲେ
ଡକାଇଣ ସ୍ୱୟଂ ପ୍ରଭୁ ମନୁଙ୍କୁ କହିଲେ ।
ସେ ମନୁ କହିଲେ ଯାଇଁ ଇକ୍ଷ୍ୱାକୁଙ୍କ ଆଗେ
ଇକ୍ଷ୍ୱାକୁ କହିଲେ କବିଙ୍କି ଯେ ଅନୁରାଗେ ।
ସେ କବି ତେଣୁ ଶୁଣିଲେ ସେହି ବ୍ରହ୍ମଜ୍ଞାନ
ତେଣୁ ଜାଣିଲେ ସେ ଜ୍ଞାନ ଥୋକେ ମହାଜନ
ଅଠାଶୀ ସହସ୍ରଯାଏ ଛନ୍ତି ଯେତେ ଋଷି
ସେମାନେ ବୁଝିଲେ କିଛି କିଛି ଜ୍ଞାନ ବସି ।
ମଧ ଭୁବନରେ କେହି ନଜାଣନ୍ତି ଜନ
ସମୟେ ରହିଲା ଗୁପ୍ତ ହୋଇ ବ୍ରହ୍ମଜ୍ଞାନ ।
ତେଣୁସିନା ମର୍ତ୍ତ୍ୟଲୋକ ମାୟା ଭ୍ରମ ହୋଇ
ଜ୍ଞାନକୁ ଗୋଚର କରି ନଜାଣନ୍ତି କେହି ।
ଏବେ ମୁଁ କହୁଛି ସେହି ଜ୍ଞାନ ତୋତେପାର୍ଥ
ତୁହି ଯେଣୁ ଅଟୁ ମୋର ଭକ୍ତ ମନୋରଥ ।
ତୁ ଯେଣୁ ମୋହର ସଖା ଅଟୁ ଧନଞ୍ଜୟେ
ତେଣୁ ମୁହିଁ ଜ୍ଞାନଯାକ କହୁଛି ତୋ ଠାଏଁ ।
ତୋହର ପ୍ରାୟ ସଂସାରେମୋର ଭକ୍ତନାହିଁ
ତେଣୁଟି କହୁଛି ତୋତେ ଏତେ ଜ୍ଞାନ ମୁହିଁ ।
ତୁହି ଯେବେ ବ୍ରହ୍ମଜ୍ଞାନ ପଚାରୁଛୁ ମୋତେ
ଆନ ନପାରେ କହିଏ ସଂସାରେ ତୋତେ ।
ଶ୍ରୀକୃଷ୍ଣ ମୁଖୁ ଏମନ୍ତ ବାକ୍ୟ ପାର୍ଥ ଶୁଣି
ପୁଚ୍ଛଇ ପାଦରେ ପଡ଼ି ବୀର ଚୂଡ଼ାମଣି ।
ଭୋ ପ୍ରଭୁ ନିର୍ମଳ କରି ମୋତେ ଜ୍ଞାନ କହ
ଆଦିତ୍ୟ କଥାରେ ମୋତେ ଲାଗିଲା ସନ୍ଦେହ
ସୂର୍ଯ୍ୟ କାହିଁପାଇଁ ଅଛନ୍ତି ତ ଭୂଗୋଳରେ
ଭ୍ରମନ୍ତି ଆସନେ ବସି ଶୂନ୍ୟ ମଣ୍ଡଳରେ ।
ବିଶ୍ରମିବାକୁ ତାହାଙ୍କୁ ଅବସର ନାହିଁ
କିରୂପେ ବସି କହିଲ ତାଙ୍କୁ ଜ୍ଞାନ ଯାଇଁ ।
କୃଷ୍ଣବୋଇଲେ କହିବାତୋତେତେବେତାହା
ବେଦର ତତ୍ତ୍ୱ ଅଟେ ଏ ସୁଭଦ୍ରାର ନାହା ।
ସବୁରି ଶରୀରେ ଅଛି ଯେଉଁ ଚକ୍ଷୁ ଦୁଇ
ଗୋଟିଏ ଚନ୍ଦ୍ର ଗୋଟିଏ ସୂର୍ଯ୍ୟ ଜାଣ କହି ।
ସେ ଚନ୍ଦ୍ର ସୂର୍ଯ୍ୟଙ୍କ ହୃଦେ ମୁହିଁ ଆତ୍ମା ଜାଣ
ସେ କଥା କହିବା ତୋତେ ଭଲକରି ଶୁଣ ।
ଅଟୁ ବ୍ରହ୍ମଯାଏ ଅଛି ମୁଁ ସବୁରି ଦେହେ
ଏକଥା ଚିହ୍ନିକେହି ନପାରେ ମାୟାମୋହେ ।
ସେ ସୂର୍ଯ୍ୟଙ୍କୁଭେଟିବାକୁ ମୋତେ କେତେଦୂର
ପୃଥ୍ୱୀଲୋକକୁ ସିନା ସେ ଅଟେ ଅଗୋଚର ।
ଡୋଳାରେ ଗୋଚର ଥାଇ ତାକୁ ନ ଦିଶନ୍ତି
ଅଚିହ୍ନା ଲୋକଙ୍କ ଛଡ଼ା ଲକ୍ଷେଯୁଣ ଯାନ୍ତି ।
ମୁଁ ସବୁରି ଦେହେ ଡୋଳାଗୋଚରରେ ଅଛି
ଏ କଥାକୁ ଭଲକରି ଶୁଣ ପଣ୍ଡୁବଂଶି ।
ବହୁତ ପ୍ରକାରେ ମୁହିଁ ହୋଇଅଛି ଜାତ
ସେ କଥା କହିବା ମଧ ଶୁଣ ପଣ୍ଡୁସୁତ ।
ଦେବତାଙ୍କୁ କରି ଆଦି ଜୀବ ଜନ୍ତୁଯାଏ
ସବୁରି କଥାକୁ ମୁହିଁ ଜାଣେ ଧନଞ୍ଜୟେ ।
ତୁହି ତ ପୃଥ୍ୱୀରେ ଆସି ହେଲୁ କେତେ ଜନ୍ମ
ସେ କଥା ମୋତେ ଯେ ଜଣାଶୁଣା ପଣ୍ଡୁ ନାନ
ତୋତେତ ତୋହର ଜନ୍ମଗୋଚରଯେ ନାହିଁ
ମୋହର ଜନ୍ମ ଜାଣିବୁ ପାର୍ଥ କେହ୍ନେ ତୁହି ।
ତୁ ବା ବୋଲିବୁ ସଂସାରେ ଅଛି ପାପପୂଣ୍ୟ
ଶ୍ରୀହରିଙ୍କି କାହିଁପାଇଁ ଲାଗିବ ଏମାନ ।
ବୁଝିଲେ ଜନ୍ମିଲେ କିମ୍ପା କରି ରବିତଳେ
ଏରୂପେ ତୁହି ପାଞ୍ଚିବୁ ଅବା ମନଭୋଳେ ।
ସେ କଥା କହିବା ତୋର ଆଗେ ମଧ ପାର୍ଥ
ନିର୍ମଳ ମନେ ତାହା ତୁ ଶୁଣ ପଣ୍ଡୁସୁତ ।
ଏହି ପାପ ପୁଣ୍ୟ ଦୁହେଁ ମୋହଠାରୁ ଜାତ
ବୁଝିଲେ ତ ଆପେ ମୁହିଁ ହୋଇଛି ନିର୍ମିତ ।
ସତ୍ୟରେ ସଂସାରେ ମୁହିଁ କରେ ଆତଯାତ
ତହିଁକି ଅଧମ ଜାଣ ପାଞ୍ଚେ ଅପଣ୍ଡିତ ।
ଅଜ୍ଞାନେ ଦାନବ ମୂଢ଼ ଯେତେ ଦୁଷ୍ଟଜନ
ଅସତ୍ୟ ହିଂସ୍ରକ ଅହଙ୍କାର ଅପ୍ରଚ୍ଛନ୍ନ ।
ଏମାନେ ଜନ୍ମ ଧର୍ମକୁ ଜାଣ ବିନାଶନ୍ତି
ଯାବତ ଅନ୍ୟାୟ କରି ସଂସାରେ ବର୍ତ୍ତନ୍ତି ।
ପରିତ୍ରାଣାୟସାଧୂନଂବିନାଶାୟଚ ଦୁଷ୍କୃତାଂ
ଧର୍ମସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ

ଏଣୁକରି ସାଧୁଙ୍କର ପରିତ୍ରାଣ ଅର୍ଥେ
ଦୁଷ୍କୃତ ନିବାରିବାକୁ ଜନ୍ମେ ଆସିମର୍ତ୍ତ୍ୟେ ।
ଦଶଗୋଟି ଅବତାର ଧରି ଯୁଗେ ଯୁଗେ
ସାଧୁଙ୍କୁ ଯେ ପରିତ୍ରାଣ କରି ଯୋଗମାର୍ଗେ ।
ମୂର୍ଖଲୋକ ଘେନନ୍ତି ଯେ ଏହା ଭିନ୍ନ ଭିନ୍ନ
ଅସତ୍ୟ ହିଂସ୍ରକ ଅହଙ୍କାରେ ଅପ୍ରଛନ୍ନ ।
ଏମାନେ ଜନ୍ମି ଧର୍ମକୁ ଜାଣ ବିନାଶନ୍ତି
ଯାବତ ଅନ୍ୟାୟ କରି ସଂସାରେ ବର୍ତ୍ତନ୍ତି ।
ବହୁତ ଅଧର୍ମେ ହୁଅନ୍ତି ସେ ଆତଯାତ
ସୁଜନ ନାଶି ଧରନ୍ତି ମନେ ଦୁଷ୍ଟମତ ।
ସାଧୁ ସନ୍ଥଙ୍କୁ ଦଣ୍ଡନ୍ତି ମର୍ଜିମାୟା ଲୋଭେ
ଏରୂପେଖୋଜିଲେ ଗ୍ରାମେଅନେକଯେହେବେ
ତେଣୁ ମୁହିଁ ସାଧୁଙ୍କର ପରିତ୍ରାଣ ଅର୍ଥେ
ଦୁଷ୍କୃତ ବିନାଶିବାକୁ ଜନ୍ମେ ଆସି ମର୍ତ୍ତ୍ୟେ ।
ଦଶଗୋଟି ଅବତାର ଧରି ଯୁଗେ ଯୁଗେ
ସାଧୁଙ୍କୁ ଯେ ପରିତ୍ରାଣ କରେ ଯୋଗମାର୍ଗେ
ମୂର୍ଖାଦି ଲୋକେ ଘେନନ୍ତି ଏହା କରି ଆନ
ବ୍ରହ୍ମଜ୍ଞାନକୁ କେହି ନଚିହ୍ନେ ଦେଇ ମନ ।
ବୋଲନ୍ତି ଯେ କର୍ମ ଏକା ଅଟେ ଆତ୍ମମୂଳେ
ନିର୍ମିତ କରଇ ବିଷ୍ଣୁ ଜନ୍ମି ରବିତଳେ ।
ମୁଁ ଯେଉଁ କର୍ମ କରେ ନଜାଣେ ମୂଢ଼ ପ୍ରାଣୀ
ଯେ ଜାଣେ କହିବା ତାର କଥା ଥାଅ ଶୁଣି ।
ସୁବୁଦ୍ଧି ସତ୍ୟ ପଣ୍ଡିତ ସାଧୁ ଯେତେ ନର
ସେମାନେ ତ ମୋତେ ଚିହ୍ନି ପାରନ୍ତି ତତ୍ପର ।
ହୃଦରୁ ହିଂସା କପଟ ମାୟା କୋପ ତେଜି
ନିଷ୍କାମ ଭକ୍ତିରେ ମୋତେ ସଦାଥାଇ ଭଜି ।
ଏଣୁ ସେ ଭକ୍ତକୁ ମୁଁ ନକରେ କେଭେ ଭିନ୍ନ
ଦେହାନ୍ତରେ ନେଇ କରେ ଶ୍ରୀଅଙ୍ଗରେ ଲୀନ
ତୁ ବା ବୋଲିବୁ ସାତ୍ତ୍ୱିକ ଆଉ ଅସାତ୍ତ୍ୱିକ
କାହିଁକି ଭିନ୍ନ କଲା ହେ ପ୍ରଭୁ ଦୁଇଯାକ ।
ସେ କିବା ଲୋକକୁ ପ୍ରଭୁ ବହୁ ଦୟାକଲେ
ନସେବିବା ଲୋକଯାକ ପାପେ ନିୟୋଜିଲେ
ଏରୂପେ ବୋଲି ପାଞ୍ଚୁ ଅବା ସବ୍ୟସାଚୀ
ତହିଁକି କଥାଏ ତୋତେ କହିବା ଯେ କିଛି ।
ଯେବଣ ଲୋକ ମନରେ ଜାଣ ଯାହା ପାଞ୍ଚେ
ସେ କଥା କାଳେ ପ୍ରାପତ ହୁଏ ତାକୁ ମଞ୍ଚେ ।
ସୁଜ୍ଞାନୀ ଜନଙ୍କରେଟି ବ୍ରହ୍ମ ଏକା ମୂଳ
ମୂର୍ଖ ଲୋକମାନେ ଘେନନ୍ତି ଯେ କର୍ମଫଳ ।
ଏଣୁ ସେ ବ୍ରହ୍ମକୁ ଜାଣ ପାଏ କର୍ମହୀନ
ଏକଥା ଅଟଇ ସତ୍ୟ ଜାଣ ଅରଜୁନ ।

ତୁ ଅବା ବୋଲିବୁ ଆନ ଦେବସେବାକଲେ
ସୁଦୟା କରିଣ ଫଳ ଦିଅନ୍ତି ସେ ଭଲେ ।
ସଂସାରେ ଦେବଙ୍କୁ ଆଜ ଅଛି ସିନା ମୁହିଁ
ସେମାନେ ଯେଦେବେ ବରସଦା ସିଦ୍ଧିନୋହି
ତାହାଙ୍କର ଦେବା ବର କାର୍ଯ୍ୟେ ଆସଇକି
କରକା ବୃଷ୍ଟି ପୃଥ୍ୱୀର ମଧ୍ୟେ ରହଇ କି ।
ସେ ଯେହ୍ନେ କ୍ଷଣକ ମଧ୍ୟେ ଜଳରେ ମିଶଇ
ଏ ରୂପେ ଆନ ଦେବତା ବର ଜାଣ ହୋଇ ।
ପାଣି ଫୋଟକାର ପ୍ରାୟ ତାକୁ ଦେଲା ବର
ସେ ଦେଲା ବର ନୁହଇ ମୋକ୍ଷ କଳେବର ।
ସବୁ ଦେବତା ଉପରେ ଅଟେ ମୁହିଁ ରାଜା
ମୋତେ ନସେବି ଯେଆନ ଦେବୀକରେପୂଜା
ସଜୀବ ଦେବତା ମୁହିଁ ଅଟେ ସର୍ବ ଦେହେ
ମୋତେ ନଚିହ୍ନି ଜନ୍ତୁଙ୍କୁ ପ୍ରାଣୀ ମାରି ଖାଏ
ମୋ ରୂପ ନଚିହ୍ନି ଆନ ଦେବେ ପୂଜା ମାନି
ସେହିଟି ନିଦାଘ ମୂର୍ଖ ଅଟେ ଫାଲଗୁନି ।
ବ୍ରହ୍ମରୁ ଆସି ପୁରୁଷ ଅଙ୍ଗେ ଜୀବ ମିଶେ
ରଜ ବୀର୍ଯ୍ୟ ସଙ୍ଗେ ମିଶି ମାତାଗର୍ଭୁ ଖସେ ।
ପ୍ରକୃତିବଳେ ଏହା ନପାରେ ଚିହ୍ନି ଜନ
ବୀର୍ଯ୍ୟ ନପଡ଼ି କି କେହୁ ଅଛି ହୋଇ ଜନ୍ମ ।
ଆତ୍ମା ଗୋଟି ସର୍ବଠାରେ ପୂରି ପ୍ରକାଶିଛି
ରଜସ୍ରାବ ହୋଇ ବୀର୍ଯ୍ୟକୁ ଯେ ଆବୋରିଛି
ଆତ୍ମାର ତହିଁ କିଛି ନଥାଏ ପ୍ରୟୋଜନ
ରତି ସଙ୍ଗମର କାଳେ ବୀର୍ଯ୍ୟେ ମିଶି ବ୍ରହ୍ମ ।
ବ୍ରହ୍ମପୁରୁଷ ବୋଲାଇ ଯେଉଁ ଜଗଦୀଶ
ଅବ୍ୟକ୍ତ ବ୍ରହ୍ମ ନୁହନ୍ତି ସେହୁ କେବେ ନାଶ ।
ତହିଁରେ ଲଗାନ୍ତି ଲୟ ଜ୍ଞାନୀ ଲୋକମାନେ
ଦୁର୍ଜ୍ଜୟ କଥା ଚିତ୍ତେ ନନ୍ୟନ୍ତି ସର୍ବଦିନେ ।
ସେ ଜନଙ୍କର ଗୋବିନ୍ଦ ପାଦତଳେ ଲୟେ
ଅକ୍ଷୟ ବ୍ରହ୍ମକୁ ନିତ୍ୟେ କରନ୍ତି ସେ ଧ୍ୟାୟେ ।
ତୁ ବା ବୋଲିବୁ ଜ୍ଞାନୀଙ୍କି ସିନା ଦୟା କଲ
ମୂଢ଼ଙ୍କୁ ମୋକ୍ଷ ନ କରି ପାପେ ନିୟୋଜିଲ ।
ତହିଁକି କଥାଏ ଶୁଣ କହୁଛି ମୁଁ ତୋତେ
ଚାରିଜାତିକି ଯେ ଶ୍ରେଷ୍ଠ କଲୁ ବେଦମତେ ।
ଯେବଣ ଜାତି ଜାଣଟି ଯେ କର୍ମକୁ ଯୋଗ୍ୟ
ମୁହିଁ ସିନା ବାଣ୍ଟିସବୁ କରାଇବି ଭୋଗ ।
ମୁହିଁ ଦେଖାଇ ଦେଇଛି ତାଙ୍କୁ ଯେଉଁ ବାଟ
ନପାଳି ତାଲୋକେ ନିନ୍ଦେ ସେହି କୁରୁଶ୍ରେଷ୍ଠ
କର୍ତ୍ତା ଅକର୍ତ୍ତା ବୋଲିଣ ଅଟଇ ଯେ ଦୁଇ
ସେ କଥାହିଁ ମାନସକୁ କେବେ ନ ଆସଇ ।

ମାୟାରୂପ ହୋଇ ମୂଢ଼ ଲୋକେ ଦିଏ ଫଳ
ଭକ୍ତକୁ ସିଦ୍ଧି ଦିଶଇ ମୁହିଁ ଆଦିମୂଳ ।
ଦୁଷ୍ଟକୁ ସଂହାର କରି ପୃଥ୍ୱୀ ପାଳୁଥାଇ
ଅଟିହିଁ ଯତ୍ନ କରିଣ ସଦବୁଦ୍ଧି ଦେଲ ।
ଏ ଘେନି ଅର୍ଜ୍ଜୁନ ମୋର ନାହିଁ ପାପ ପୁଣ୍ୟ
ନ ଥିଲେ ମନଦୃଢ଼ ନ ଫଳେ ଗଙ୍ଗାସ୍ନାନ ।
ଗଙ୍ଗାରେ ସ୍ନାନ କରେ ଯେସର୍ବେ ତରିଯାନ୍ତି
କୁଟିଳ ଲୋକହିଁ ଏକାକେବେ ନୋହେମୁକ୍ତି ।
ନିର୍ମଳ ହୋଇଣ କର୍ମ କଲେ ହୋଏ ପୁଣ
ଏ କଥା ସତ୍ୟ କହିଲୁ ନିଶ୍ଚେ ଅରଜୁନ ।
ପୂର୍ବକାଳରେସେବିଲେ ମୋତେ ଲୋକଯେତେ
ମାଘ ପୁଣି ମୋକ୍ଷପ୍ରଦ ଘେନିଗଲେ କେତେ ।
ସଂସାରେ କର୍ମ କଲେଯେ କାମନା ଘେନନ୍ତି
ତାହାଙ୍କ ପ୍ରାୟ ତୁହି କି ହେବୁ ସୁତ କୁନ୍ତି ।
ସୁକର୍ମ କୁମର୍ମ ବୋଲି ଅଟେ ଦୁଇ କର୍ମ
ଘେନନ୍ତି ସୁଜନଜନେ ମନୋବାଞ୍ଛା ଧର୍ମ ।
କହିବା ତୋତେ ସୁଲଭ ଯେଉଁ ମୋକ୍ଷବାଣୀ
ଶୁଣିଲେ ମୋକ୍ଷ ହୋଇବୁ ବୀରଚୁଡ଼ାମଣି ।
ତୁ ଏବେ ତ ଜାଣିନାହୁଁ ଶୁଣ ଭଲ କରି
ଅପାର ମହିମା ତୋର ଅଛି ଏଥେ ପୂରି ।
କରିବେ ଯେତେ କର୍ମ ଶ୍ରୀକୃଷ୍ଣ ପ୍ରୀତିଅର୍ଥେ
ତାହାକୁ ତାରି ନିଅନ୍ତି ପ୍ରଭୁ ଜଗନ୍ନାଥେ ।
ଆଉ ଯେତେ କର୍ମ ମୂଳ ଲାଗିବାର ପ୍ରାୟେ
ମନରେ ଯାହା ପାଞ୍ଚେ ସେ କଥା ଘେନିଯାଏ
ଶ୍ରୀବିଷ୍ଣୁ ପ୍ରୀତିଅର୍ଥେ ଯେ କର୍ମ କରୁଥାଇ
ତାହାର ସିନ୍ଧୁ ସମାନ ପୂଣ୍ୟ ପ୍ରକାଶଇ ।
ଆପଣାର ଜାତିକର୍ମ କଲେ ନାହିଁ ଭୟେ
ଅନ୍ୟ ଜାତିର ଯେ କର୍ମକଲେ ନାଶଯାଏ ।
ସେ ଯେବେ ପାଞ୍ଚିଣ ମନେ ଅନ୍ୟ କର୍ମକରେ
ବନ୍ଧନ ହେବ ସିନା ସେ ଗଲେ ଅପଥରେ ।
ଏମନ୍ତ ବିଚାର ଯେ ନକରେ ମନେ ଧରି
କରେ ଭଲ ବୋଲି ସ୍ୱଜାତିକି ଯେ ନ ଡରି ।
ଅବଶ୍ୟ ନିନ୍ଦା ଉପୂଜେ ତାକୁ ବ୍ରହ୍ମାଣ୍ଡରେ
ବର୍ଣ୍ଣଶଙ୍କର ହୋଇଣ ରହେ ତ୍ରିଲୋକରେ ।
ଯେଡ଼େ ଉଚ୍ଚ ହେଲେ ସୁଖ୍ୟାତିକି ନ ଛାଡ଼ିବ
ଆପଣା ଜାତିରେ ଥାଇ ମହତ୍ତ୍ୱ ରଖିବ ।
ଏହି ଦୁଇ ମାର୍ଗ ଜାଣ କରନ୍ତି ଯେ ଲୋକ
ତାଙ୍କୁ ଉତ୍ତମ ବୋଲନ୍ତି ଜାଣ ପୃଥ୍ୱୀଯାକ ।
ଅକର୍ମ କଲା ପ୍ରାୟେକ ଦିଶେ ସଂସାରକୁ
ସବୁ କର୍ମ କଲେ ଆବର ଯେ ବେଭାରକୁ ।

ଏମନ୍ତ ପ୍ରାଣୀଙ୍କି ଜାଣ ନ ବୋଲି ଅକର୍ମ
ପଣ୍ଡିତ ଲୋକଙ୍କ ତୁଲେ କରି ତାଙ୍କ ସମ୍ମ ।
କର୍ମ ହିଁ କଲେ କାମନା ହୃଦେ ତାର କାହିଁ
ସେ କର୍ମ ପାପକୁ ଦହ୍ୟ କରେ ଭାବଗ୍ରାହୀ ।
କର୍ମକଲେ ଫଳବାଞ୍ଛା ନକଲେ ସେ ଯେଣୁ
ସର୍ବଦା ଆନନ୍ଦମନ ଅଟେ ତାର ତେଣୁ ।
କର୍ମଦାଣ୍ଡରେ ସର୍ବଦା ଥାଇ ସେହୁ ସେବେ
ମୁଁ କର୍ମ କରୁଛି ବୋଲି ନବୋଲେସେକେବେ
ଏରୂପେ କର୍ମୀଲୋକର ପାପ ଅବା କାହିଁ
ସେ ଲୋକ ଭାବ କହିବା ଶୁଣ ମନଦେଇ ।
ହେବା ନୋହିବା କଥା କି ଅବା ଦୁଃଖସୁଖ
ବରଷ ବିରସ ବେନି କରେ ଘେନି ଏକ ।
ପାଇବା ନ ପାଇବା ଏ ଯେଉଁ କଥା ଦୁଇ
ଏହାକୁ ସମାନ କରି ପଣ୍ଡିତ ଘେନଇଁ ।
ଏରୂପେ ସେ କର୍ମ କଲେ ନୋହେ ବଧଜାଣ
କରଇ ସଂସାରେ କ୍ରୀଡ଼ା ଆନନ୍ଦଭରେଣ ।
ପବିତ୍ର ହେଉ ବା ଅପବିତ୍ର କେହି ହେଉ
ଶ୍ରୀ ବାସୁଦେବଙ୍କୁ ଭଜି ସଦାଥାଇ ଯେହୁ ।
ସେହି ଯେବେ ଅସଙ୍ଗରେ ହେବ ପୁଣ ସଙ୍ଗ
ଶ୍ରୀବିଷ୍ଣୁଙ୍କ କର୍ମେ ଥିଲେ ଭଜେ ଜ୍ଞାନଯୋଗ ।
ଆବର ବାକ୍ୟ କହିବା ପାର୍ଥ ତୋତେ ଶୁଣ
ଦେବପୂଜା ଯଜ୍ଞ ଆଦି କରନ୍ତି ଯେ ଜନ ।
ଥୋକାଏ କରନ୍ତି ଯଜ୍ଞ ଫଳ ବାଞ୍ଛା କରି
ଥୋକେ ବୋଲନ୍ତି ବସିବା ଯାଇଁ ସ୍ୱର୍ଗପୁରୀ ।
ବ୍ରହ୍ମ ଅଗ୍ନି ଦେଇ ଥୋକେ କରନ୍ତି ଯେ ଯଜ୍ଞ
ବସନ୍ତି ଦେବତା ପୂଜାକରି ଥୋକେ ବିଜ୍ଞ ।
ଦେହ ଭିତରେ ଅଛନ୍ତି ଯେତେ ଇନ୍ଦ୍ରିଗଣ
କାହାଙ୍କୁ ନିରୋଧ ଯଜ୍ଞ କରନ୍ତି ସେ ପୁଣ ।
ତୁବା ବୋଲିବୁ ଇନ୍ଦ୍ରିୟମାନେ କହି କେକେ
ସେକଥା ତୋତେକହିବା ଶୁଣବେଦବାକ୍ୟେ
ଶ୍ରବଣ ନୟନ ନାଶା ଦେଲେ କାମଇନ୍ଦ୍ରି
ଉପସ୍ଥ ହେ ପାଦ ପାଣି ବସ୍ତି ଦଶବିଧି ।
ଯେବେ କରେ କର୍ମ ଏହାକୁ ଯେ ବୋଧିଆଗ
ସଂସାର ମଧ୍ୟେ ଦୁର୍ଲ୍ଲଭ ଅଟେ ତାରଯୋଗ ।
ଧାରଣା ସମାଧି ଧ୍ୟାନ ଧୈର୍ଯ୍ୟ ଶମ ଦମ
ନିଗମ ଆଗମ ପ୍ରତ୍ୟାହାର ପ୍ରାଣାୟାମ ।
ଏ ଦଶବିଧି ଯେ ସାଧି ଘେନେ ଯଜ୍ଞସାର
ସୁଜ୍ଞାନୀ ବୋଲି ତାହାକୁ ଆତ୍ମା ସଂଯମର ।
ଅଷ୍ଟାଙ୍ଗଯୋଗ ଅଗ୍ନିରେ କରଇ ଯେ ହୋମ
ପଦାର୍ଥ ଘେନି କରନ୍ତି ଥୋକେ ଯଜ୍ଞକର୍ମ ।

ତପସ୍ୟାକୁ ଆଚରନ୍ତି ଜାଣ ଥୋକେ ଲୋକ
କରନ୍ତି ଅଗ୍ନିରେ ହୋମ ଥୋକେସୁବିବେକ ।
ବେଦ ଅଧ୍ୟୟନ କରି ଥୋକେ ଚିନ୍ତି ଯୋଗ
ଜ୍ଞାନ ସମାଧିରେ ନେଇ ଦ୍ୟନ୍ତି ହବିର୍ଭାଗ ।
ଏରୂପେ ଯୋଗ ବିଧାନ ଅଟେ କର୍ମ ପୁଣ
କହିବା ବିଷମ ଯଜ୍ଞକଥା ଏବେ ଶୁଣ ।
ପ୍ରାଣପବନ ବୋଲିଯେ ଥାଇ ଊର୍ଦ୍ଧ୍ୱଦେଶେ
ଅଧୋପବନ ଅଜ୍ଞାନ ଦ୍ୱାରେ ଯାଇ ବସେ ।
ହୁଅଇଟି ଯେତେବେଳେ ଜୀବ ସମାପତ
ଯୋଜନକେ ବୀଣା ସମାଗମେ ହୃଦୁଁ ବାତ ।
ଯେବେ ସେ ପବନ ଦୁଇ ପାରେ ଏକ କରି
ଏରୂପେ ତତ୍ତ୍ୱକୁ ପରେ ଜ୍ଞାନୀ ଏହା ଧରି ।
ଏରୂପେ ତପସ୍ୟା କଲେ ସର୍ବ ପାପକ୍ଷୟ
ଯଜ୍ଞରୁ ବିଶୁଦ୍ଧ ଅଟେ ଜାଣ ତାର କାୟ ।
ନିଶ୍ଚେ ଲଭନ୍ତି ଯେ ପ୍ରାଣୀମାନେ ବ୍ରହ୍ମଲୋକ
ପାର୍ଥକୁ ଦେଖାଇ କହନ୍ତି ଯେ ପୁଣ୍ୟଶ୍ଳୋକ ।
ସଂସାରେ ଯେ ଯାହା ଜାତି ଧର୍ମ କରୁଥିଲେ
ଇହଲୋକରେ ନିନ୍ଦା ନପାଇ ସେହୁଭଲେ ।
ଯେଯାହା ଜାତିକି ତାହା ଲେଖିଛନ୍ତି ବେଦେ
ସେ କଥା କଲେ ବସନ୍ତି ସେହି ମୋକ୍ଷପଦେ
ସୁଜ୍ଞାନ ଯଜ୍ଞଗୋଟି ଯେ ସବୁଯଜ୍ଞେ ସାର
ସବୁ ଯଜ୍ଞରେ ଅଟଇ ରାଜା ଜ୍ଞାନ ମୋର ।
ତୁବା ବୋଲିବୁ ପାଇବା କେବେ କହ ଜ୍ଞାନ
ତହିଁର ବିଚାର ତେବେ ଶୁଣ ହେ ଅର୍ଜ୍ଜୁନ ।
ଯେବଣ ପ୍ରାଣୀ ପରମହଂସ ଥାଏ ଧ୍ୟାୟି
ସର୍ବଭୂତେ ଆତ୍ମାକୁ ସେ ସମ ଦେଖୁଥାଇ ।
ତାହାକୁ ଅର୍ଜ୍ଜୁନ ଆହୋ ବୋଲି ଆତ୍ମଜ୍ଞାନୀ
ଏ ରୂପେ ସେବିଲେ ଗୁରୁ ବ୍ରହ୍ମଜ୍ଞାନ ଜାଣି ।
ତୁ ଅବା ପାଞ୍ଚବୁ ମୁହିଁ ଅଟେ ନରରୂପୀ
କି ରୂପେ ଭେଳା ବାନ୍ଧିଣ ସିନ୍ଧୁ ଯିବାକ୍ଷେପି ।
ତହିଁକି କହିବା କଥା ଏକ ବୃତ୍ତାନ୍ତର
ଶୁଣିଲେ ତୁ ବୋଧ ଅବା ହୋଇବୁ ତତ୍ପର ।
ପର୍ବତ ସମାନ ଶୁଷ୍କକାଠ କୁଢ଼ାଇବ
ଅଳ୍ପ ଅନଳ ପଡ଼ିଲେ ତାହା ଭସ୍ମ ହେବ ।
ହୃଦରେ ପର୍ବତ ପ୍ରାୟ ପାପ ଯେବେ ଥାଇ
ଜ୍ଞାନ ଅନଳ ବହିର୍ଯ୍ୟ ଜାଣ ସେହୁ ହୋଇ ।
ଏକଥା ଯୋଗୀନ୍ଦ୍ରମାନେ ଥାଇ ଏକା ଚିହ୍ନି
ତୋଳ ଗୋଚରେ ଅଛନ୍ତି ପ୍ରଭୁ ଜାଣ ପୁଣି ।
ଶ୍ରୀଗୁରୁ ନକହିଲେ ନଜାଣେ ପ୍ରାଣୀ ଏହା
କହନ୍ତି ଶ୍ରୀଲକ୍ଷ୍ମୀକାନ୍ତ ଶୁଣ ଭଦ୍ରନାହା ।

ଇନ୍ଦ୍ରିକି ଦମନ କରି ହୃଦେ ରଖିଥିବ
ଶାନ୍ତଶୀଳ ହୋଇଲେଟି ଜ୍ଞାନ ଉଦେହେବ ।
ଶିଷ୍ୟକୁ ଗୁରୁ କହିବ ଯେବେ ନିଶ୍ଚେ ଜ୍ଞାନ
ଯେଯେବେ ସେଠି ଦେବ ନକରି ପ୍ରତେମନ ।
ଇହଲୋକରେ ସୁଗତି ତାକୁ କେବେନାହିଁ
ମୂର୍ଖଟି ଅଟଇ ସେହୁ ଜାଣ ଭଦ୍ରସାଇଁ ।
ଯଜ୍ଞକୁ କରିବ ଯେ ନ ଘେନି ହୃଦେ ଫଳ
ଜ୍ଞାନକୁ ଚିହ୍ନି ଦୁଃଖକୁ ଛେଦି ପଣ୍ଡୁବାଳ ।
ଏମନ୍ତ ଜ୍ଞାନୀ କର୍ମରେ ନୋହି କେବେ ବଧ
ତେଣୁ ମୁଁ କହୁଛି ତୋତେ ବ୍ରହ୍ମଜ୍ଞାନ ଭେଦ ।
ଆବର ଯେଲୋଭ ମୋହ କାମ କ୍ରୋଧ ଆଦି
ମନୁଁ ଏମାନେ ଜନମ ହୁନ୍ତି ହୃଦ ଭେଦି ।
ଏହାଙ୍କୁ ତୁ ଗୁରୁବାକ୍ୟ ଛେଦ ଫାଲଗୁନି
ଛେଦି ପାରିଲେ ତୁ ତେବେହେବୁ ମହାଜ୍ଞାନୀ
ଏ କର୍ମମାନ କାଟିଣ ବ୍ରହ୍ମଜ୍ଞାନ ଧର
ବେଭାର କର୍ମଟି ବେନିବୃତ୍ତିକି ନକର ।
ନୃସିଂହ ପୁରାଣ ଏହି ଯୋଗଜ୍ଞାନ ବାଣୀ
କହିଲୁ ଯେ ସାବଧାନେ ଶୁଣ ଫାଲଗୁନି ।
ସପ୍ତମ ସାଗର ପୂରାଣରେ ମଧ୍ୟେ ସାର
ପନ୍ଦର ସହସ୍ର ଶ୍ଳୋକ ଅଟେ ନିରାଧାର ।
ଶୁଣିଣ ପଞ୍ଚପୂରାଣ ଫଳକୁ ସେ ଭଲେ
ସୁଗତି ଗତି ଦିଅନ୍ତି ତାକୁ ବାସୁଦେବେ ।
ଏହି ପୁରାଣର ଗର୍ଭେ ଯେତେ ଗ୍ରନ୍ଥ ଅଛି
ଶ୍ରୀମୂଖେ କୃଷ୍ଣ କହନ୍ତି ଶୁଣ ସବ୍ୟସାଚୀ ।
ଯେ ପ୍ରାଣୀ ସଙ୍କଳ୍ପ କରି ଏ ଗ୍ରନ୍ଥ ଶୁଣିବେ
ସକଳ ପାପ ନାଶିଣ ବୈକୁଣ୍ଠେ ବସିବେ ।
ଶ୍ରୋତା ବକତା ଶୁଣିବେ ଯେହୁ ଏକମନେ
ସନ୍ତୋଷ ଦେବ ଦକ୍ଷିଣା ଏକା ଗ୍ରନ୍ଥସ୍ଥାନେ ।
ଅପୁତ୍ରିକ ଲୋକର ଯେ ହେବ ପୁତ୍ର ଜାତ
କୃଷ୍ଣର ଶ୍ରୀମୂଖ ବାକ୍ୟ ଅଟେ ଜ୍ଞାନତତ୍ତ୍ୱ ।
ଯେ ରୁପେଟି ତରିଯାଇ କଲେ ଗଙ୍ଗସ୍ନାନ
ଲଭିଲେ ନୃସିଂହଗ୍ରନ୍ଥ ଶୁଣି କେତେ ପୁଣ୍ୟ ।
ସପ୍ତମ ସାଗର ସେହି ଅଟେ ସୁଧାରସ
ଶୁଣ ନାରଦ କହନ୍ତି ଏହା ଲୋକଈଶ ।
ଶ୍ରୀମହାପୁରାଣେ ଲେଖେ ଏ ସିନ୍ଧୁ ପ୍ରମାଣେ
ବ୍ରାହ୍ମଣ ଯେ ପୀତାମ୍ବର ମୂର୍ଖ ମୂଢ଼ପଣେ ।
ଶୁଣି ଜନ୍ମେଜୟ ବଇଶମ୍ପାୟନ ମୁଖୁଁ
କୁରୁକ୍ଷେତ୍ରେ କୃଷ୍ଣ ଯାହା କହନ୍ତି ପାର୍ଥକୁ ।
ଏଥୁ ଅନନ୍ତରେ ଅନ୍ଧ ଧୃତରାଷ୍ଟ୍ରଗଣ
ପୁଚ୍ଛା କରନ୍ତି ସଞ୍ଜୟ ଆଗରେ ସେ ପୁଣ ।

ପାର୍ଥଙ୍କୁ କିସ କହିଲେ କହ ମହାବାହୁ
ଶୁଣିବି ଆଗ କହିବା ମୋତେ ତାହା ହେଉ ।
ସଞ୍ଜୟ ବୋଲେ କହିବାରାୟେ ତେବେ ଶୁଣ
ଅର୍ଜୁନ ଆଗେ କହନ୍ତି ପ୍ରଭୁ ନାରାୟଣ ।
ଶ୍ରୀମୁଖୁ ଶୁଣିଣ ପାର୍ଥ ଯୋଡ଼ି ବେନିକର
ବୋଲେ ପୃଥ୍ୱୀଯାକଙ୍କୁ ଏ ଅଟେ ଅଗୋଚର
ସନ୍ନ୍ୟାସ ଯୋଗ କଥା ଯେ କହିଥିଲ ମୋତେ
ପୁଣି ବୋଇଲେ ସେ କର୍ମକର ବୀରପାର୍ଥେ ।
ଏ ବେନି କଥାରୁ କହ ଅଟେ କେହୁ ସାର
ସେ କଥା କହିବା ମୋତେ ପ୍ରଭୁ ଚକ୍ରଧର ।
ଅର୍ଜୁନ ମୁଖୁ ଏମନ୍ତ ବାକ୍ୟ ପ୍ରଭୁ ଶୁଣି
ବୋଲନ୍ତି ଶୁଣ ପାଣ୍ଡବ କୁଳ ଚୂଡ଼ାମଣି ।
ଏଥର କଥା କହିବା ତୋତେ ଏବେ ଶୁଣ
ଏହୁ ବେନି ଲୋକଙ୍କର ଯେହୁ ଜ୍ଞାନଗୁଣ ।
ତାହା କହିବା ମନରେ ରଖି ତୁହି ହେଜି
କର୍ମଯୋଗୀଙ୍କର ହେତୁ ଜ୍ଞାନେ ଥାଏ ମଜ୍ଜି ।
ତେଣୁ ସେହି କର୍ମଯୋଗୀମାନଙ୍କୁ ହିଁ ପାର୍ଥ
ଦୂଲ୍ଲଭ ଜ୍ଞାନ ହୁଅଇ ତାଙ୍କୁ ପରାପତ ।
ତାର ଦୂଃଖ ସୁଖ ଶୀତ ଆଦି ତପ୍ତମାନ
ଲାଗିଲେ ଶରୀରକୁ ନଘେନେ ପରାଭିନ୍ନ ।
ହେବା ନୋହିବା ଏ ବାଞ୍ଛାମତେ ନପାଞ୍ଚଇ
ଲଗାଇ ଥାନ୍ତି ସେ ବ୍ରହ୍ମଜ୍ଞାନେ ହେତୁଦେଇ ।
କର୍ମକୁ କଲେ ସେହୁ ନଦିଶେ କଲାପ୍ରାୟେ
ବନ୍ଧନ ମୁକ୍ତରୁ ସେହି ଲୋକ ତରିଯାଏ ।
ଏ ସଂସାରେ ଏଣୁ ଜାଣ ମୂର୍ଖ ଲୋକମାନେ
ଏ ଦୁଇ କଥାକୁ ଭିନ୍ନ କରନ୍ତି ତତ୍‌କ୍ଷଣେ ।
ସୁପଣ୍ଡିତ ଜନମାନେ କେଡ଼େ ଭାଗ୍ୟବନ୍ତ
ଏବେନି କଥାକୁ ଜାଣ ଘେନନ୍ତି ସେ ସତ ।
ଏକତ୍ୱ କରି ଘେନନ୍ତି ମନେ ଜାଣ ଯେହୁ
ସଂସାରେ ସୁସାଧୁ ବୋଲି ତାକୁ ଆମ୍ଭେକହୁ ।
ଏ ଘେନି ସେକର୍ମ ତ୍ୟାଗ ସମଯୋଗଯେତେ
ଭିନ୍ନ ହୋଇଣଚଳନ୍ତି ଏହୁ ଏକପଥେ ।
କର୍ମତ୍ୟାଗ କରିବା ହିଁ ଅଟେ ବଡ଼ ଦୁଃଖ
କର୍ମ ଯୋଗହିଁ କରିବ ପରମ ଯେ ସୁଖ ।
ଏ ଦୂଇ ଜାଣିଲା ଜନ ଅଟେ ମହାଜ୍ଞାନୀ
ଦୂଃଖ ସୁଖ ଦେଇ ଯେ ଗମନ୍ତେ ଏକ ଘେନି ।
କର୍ମ ଯୋଗମାନଙ୍କରେ ଯେହୁ ଯୁକ୍ତ ହୁଏ
ସୁପଣ୍ଡିତ ବୋଲି ତାଙ୍କୁ ଜାଣ ଧନଞ୍ଜୟେ ।
ସକଳ ଜୀବଯାକଙ୍କୁ ଘେନେ ଏକ କରି
ଇନ୍ଦ୍ରିୟଗଣଙ୍କୁ ଯେହୁ ପାରେ ଏକାମାରି ।
ଏମନ୍ତ ଲୋକ କରଇ ଯେବେ ନିତ୍ୟକର୍ମ
କର୍ମରେ ବଧ ନୋହି ଯେ ପାଞ୍ଚେ ମନେମନ
ହରିର ତ ଖେଳଘର ଅଟେ ସବୁ ବୋଲେ
ଇନ୍ଦ୍ରିୟ ବିହାର ଭୋଗ ହୁଏ କର୍ମ କଲେ ।
ଏରୂପେ ଏ ବ୍ରହ୍ମଜ୍ଞାନ ଯାହା ହୃଦେ ଭାଷେ
ତାହାରି ସେ କର୍ମସବୁ ଜ୍ଞାନରେ ପ୍ରକାଶେ ।
ଭଲମନ୍ଦକୁ ତ ବୁଝିପାରନ୍ତି ଯେ ପ୍ରାଣୀ
ପଦ୍ମପତ୍ରେ ନୀରପ୍ରାୟ ତାର ଚିତ୍ତ ଜାଣି ।
ପଦ୍ମପତ୍ରରେ ଜଳ ନ ଲାଗେ ଯେହ୍ନେ ଜାଣ
ତାହାର ଯେ ଚିତ୍ତଭିତ୍ତି ସେ ପ୍ରକାରେ ପୁଣ ।
ତେଣୁଟି ତାହାର ମନ ଅଟେ ଅକଳଙ୍କ
ମଲ୍ଲୀଲତାର ଦେହେ ନଲାଗେ ଯେହ୍ନେ ପଙ୍କ
ନଜାଣିବା ଲୋକଙ୍କୁ ଏକଥା ଜଣା ନୋହି
ଜ୍ଞାନୀ ଲୋକଙ୍କୁ ସେ କଥା ଅଜଣା ନୁହଇ ।
ଆଉ କଥାଏ କହିବା ପାର୍ଥ ଶୁଣ ତୋତେ
ମନକୁଷ୍ଠିର ଯେବେନକରେ ଯୋଗୀନିତ୍ୟେ ।
ଇନ୍ଦ୍ରିୟଗଣଙ୍କୁ ବଶ କରି ନପାରନ୍ତି
ଲୋକଆଚାରକୁ ଚାହିଁ କର୍ମେ ହୁଏ ଭକ୍ତି ।
ଲୋକ ପୁଣି କର୍ମ କରିଥାନ୍ତି ଯେତେ ଆଣି
ତାହା ବୁଝାଇ କହିବା ତୋତେ ଫାଲଗୁନି ।
ଜ୍ଞାନୀଜନେ କାହିଁପାଇଁ ମୋକ୍ଷ ହୋଇଥାନ୍ତି
ଆବର କାହିଁକି ମୂଢ଼ଜନେ ନତରନ୍ତି ।
ସେ କଥା ବୁଝାଇ ତୋତେ କହିଦେବାପୁଣ
ସୁଜ୍ଞାନୀଜନର ଫଳେ ନଥାଇଟି ମନ ।
ତେଣୁ ଯେ କର୍ମକଲେ ନଲଭେ ଫଳଶ୍ରୁତି
ଭବ ସାଗରରୁ ତରି ପାଏ ମୋକ୍ଷଗତି ।
ଦେହ ଭିତରେ ଅଛି ଯେ ଦଶଦଶ ଦ୍ୱାର
ତାହାକୁ ଆୟତ୍ତ କରି ପାରନ୍ତି ଯେ ନର ।
କରିବ ଯେ କରାଇବ ଜାଣେ ଦୂଇକଥା
ଯେବେ ସେ ଲଭଇ ମୋକ୍ଷ ଶୁଣ ମହାରଥା
ଆବର କଥାଏ ଅବା ମନେ ଘେନିଥିବୁ
କରିବା ନକରିବା ଏ ଦେହ ସିନା ସବୁ ।
ଆତ୍ମା ନଥିଲେଟି ଦେହେଁ କରାନ୍ତି କେ ପୁଣ
ଏରୂପେ ବିଚାର ଅବା କରିବୁ ତୋ ମନ ।
କହିବା ତହିଁର ଅର୍ଥ ଶୁଣ ସାବଧାନେ
ଯେତେ କଥା ଯାକ ତୁହି ପଚାରୁଛୁ ମନେ ।
ଯେବଣ ଇନ୍ଦ୍ରିୟ ଗଲେ ଯେଉଁ କାର୍ଯ୍ୟଅର୍ଥେ
ସେ କଥାଟି ଦେହେ ଭୋଗ ହୁଏ ଅନୁବ୍ରତେ ।
ଆଶାହିଁ ସେହୁ ସାକ୍ଷାତେ ସେହୁ ବ୍ରହ୍ମଜ୍ୟୋତି
ସେ ପୁଣି ସବୁରି ଦେହେ ବିଷୟା କରନ୍ତି ।

ବିଞ୍ଚଣା ମଧ୍ୟୁ ଯେସନେ ପବନ ବହଇ
ସେରୂପେ ଦେହରେ ଆତ୍ମାଗୁପ୍ତେ ରହିଥାଇ ।
ଦୁଃଖକୁ ସୁଖକୁ ସେହି ଘେନେ କରି ଏକ
ଯୁଗଳ ଘେନିଲେ ତାଙ୍କୁ ଲାଗଇ କଳଙ୍କ ।
ଜ୍ଞାନକୁ ଛାଡ଼ି ଅଜ୍ଞାନମତେ ଯେବେ ଯାଇ
ସେମାନଙ୍କୁ ଏ ସଂସାରଯାକେ ମୂଢ଼ କହି ।
ଅଜ୍ଞାନପଣରୁ ତାର ହୁଏ ହତ ବୁଦ୍ଧି
ସୂର୍ଯ୍ୟକୁ ମେଘ ପକାଏ ଜାଣ ଯେହ୍ନେରୁନ୍ଧି ।
ଜ୍ଞାନୀକି ଦିଶେ ଆନନ୍ଦ ବ୍ରହ୍ମମୟ କାୟେ
ସୂର୍ଯ୍ୟ ପ୍ରାୟ ଜ୍ୟୋତିତାର ପକାଇଣ ଦେହେ
ଏହି ଲୋକଟି ଚିନ୍ତିତ ଜାଣ ବ୍ରହ୍ମରାଶି
ପୃଥ୍ୱୀରେ ନୁହନ୍ତି ପୂନରପି ଜନ୍ମ ଆସି ।
ଜନ୍ମିଲେ ପୁଣି ପଣ୍ଡିତ ବୁଦ୍ଧିକି ସେ ଧରେ
ସବୁ ସମାନ କରିଣ ଘେନେ ସବୁଠାରେ ।
ବିଦ୍ୟାବନ୍ତ ବିପ୍ର ମୂର୍ଖ ଚଣ୍ଡାଳ ଯେ ନର
ସିଂହ ମେଷ ଗାବ ହସ୍ତୀ ଶୃଗାଳ କୁକୁର ।
ଏହାକୁ ସୁପଣ୍ଡିତ ନଘେନେ କେଭେ ଭିନ୍ନ
ଆତ୍ମାକୁ ଏକ କରିଣ ଚିହ୍ନେ ବିଜ୍ଞଜନ ।
ସମଦର୍ଶୀ ପଣେ ଜୀବ ସଜୀବମାନଙ୍କୁ
ଚଣ୍ଡାଳୁ ବ୍ରହ୍ମଯାଏ ସେ ଘେନେ ଏକ ତାଙ୍କୁ ।
ସବୁରି ଆତ୍ମାଯାକକୁ ବ୍ରହ୍ମ ବୋଲି ଚିହ୍ନେ
କେବେହେଁ ଭିନ୍ନଭିନ୍ନନକର ଅନ୍ୟୋଅନ୍ୟେ
ହରଷ ନିରସ ଦୁଇ ଘେନେ ଏକ କରି
ପ୍ରୀତି ଅପ୍ରୀତି କଥାକୁ ଘେନେ ସମସରି ।
ସେ ଲୋକମାନଙ୍କୁ ଜାଣ ବୋଲି ସୁପଣ୍ଡିତ
ସଂସାରେ ଶ୍ରୀମନ୍ତ ବୋଲି ତାଙ୍କୁ ପଣ୍ଡୁସୁତ ।
ପଦାର୍ଥ ଲୁଚାଇ ଥିଲେ ଶ୍ରୀମନ୍ତ ନୁହଇଁ
ଦୟାଧର୍ମ ଥିବାଲୋକେ ଶ୍ରୀମନ୍ତ ହୁଅଇ ।
ଆତ୍ମାକୁ ଧନ କରିଣ ଚିହ୍ନନ୍ତି ଯେ ଲୋକ
ପଦାର୍ଥ ଆଣନ୍ତି କି ସେ ନୁହେଁ କେବେ ଏକ ।
ଯେବଣ ସ୍ଥାନରୁ ଦୁଃଖ ସୁଖ ଜାତ ହୋଇ
ସେ ସ୍ଥାନ ଚିହ୍ନି ପାରନ୍ତି ଏକମାତ୍ର ସେହି ।
ବିଷୟାରେ ସେ ମନ ନପଶେ ତାର କ୍ଷଣେ
ଅକ୍ଷୟ ବ୍ରହ୍ମକୁ ଧନ କରି ପରମାଣେ ।
ମଲା ପୁରୁଷକୁ ଯେହ୍ନେ ଯୁବତୀଏ ଧରି
ମାୟା ଲୋଭରେ ପଡ଼ିଣ କାନ୍ଦି କୋଳକରି ।
ନୋହିଲେ ସୁତୀକ୍ଷଣ ଖଣ୍ଡା ଧରି ବେନିକରେ
ପ୍ରହାର କରଇ ନେଇ ମୃତପିଣ୍ଡ ପରେ ।
ଦୁଇକଥା ଯେହ୍ନେ ନଜାଣଇ ମୃତଶବ
ସେହିରୂପେ ସୁପଣ୍ଡିତ ଲୋକ ଜ୍ଞାନଭାବ ।

ଦେହରେ ଜୀବନ ଥାଉଁ ମୃତ୍ୟୁ ଏହିମତ
କହନ୍ତି ଶ୍ରୀ ଜଗନ୍ନାଥ ଶୁଣ ପଣ୍ଡୁସୁତ ।
ଭଲ ମନ୍ଦକୁ ଦେବ ନକରେ ମନ ଦୁଃଖ
ଭଲ ମନ୍ଦ ଦୁଇ ଦୁଇ ଜାଣ ଅଟେ ଏକ ।
ନିରାଲମ୍ବ ପୁରୁଷକୁ ଚିହ୍ନ ଚକ୍ଷୁ ଡୋଳେ
ବ୍ରହ୍ମାନନ୍ଦ ପୁରୁଷ ସେ ଅଟେ ଆଦିମୂଳେ ।
ଜଗଜ୍ଜୀବନଙ୍କୁ ଲୋଭ ଦେଇ ଦୟାନିଧି
ହରିବେ ଚିହ୍ନି ରଖିଣ ବସେ ଯୋଗ ସାଧି ।
ଆବର ଲୋଭ ମୋହ ନଥାଇ ତାର ମନେ
ତାପଛେ ମୋକ୍ଷ ଗୋଡ଼ାଇଥାଇ ଅନୁକ୍ଷଣେ
ଇନ୍ଦ୍ରିୟପଣକୁ ବଶକରେ ଯେଉଁ ନର
କଳପଣ ବାଞ୍ଛା ଛଳ ଅଛି କାହିଁ ତାର ।
ସବୁକାଳରେଟି ସେହି ଅଟେ ଭକ୍ତିମନ୍ତ
ସବୁ କଥାକୁ ସମାନ ଘେନେ ବୀର ପାର୍ଥ ।
ଜଗନ୍ନାଥ ସ୍ମରି କର୍ମମାନ କରେ ଯେତେ
ଶ୍ରୀଗୋବିନ୍ଦ ମୁଖେ ଭୋଗକରନ୍ତି ତା ନିତ୍ୟେ
ମିତ୍ର ଅଇରୀ ପକ୍ଷ ଏ ଭେଦ କାହିଁ ତାର
ସମାନ ଦେଖଇ ସମସ୍ତଙ୍କୁ ଏକାକାର ।
ଯେବଣ ଜନ ଏ ରୁପେ ବିଜ୍ଞଭାବ ଜାଣେ
ସେହି ଏକା ମୋକ୍ଷକର୍ତ୍ତା ଅଟଇ ସୁଜ୍ଞାନେ ।
ତାହାକୁ ସଂସାରେ ବୋଲି ବିବେକୀ ପଣ୍ଡିତ
ସୁଦୟା ସୁବୁଦ୍ଧି ଜ୍ଞାନଶୀଳ ସାଧୁସନ୍ତ ।
ଆପଣା ଦେହ ନିଜକୁ ଯାର ଅଗୋଚର
ସହସ୍ରେ ଶ୍ରୁତି ପଢ଼ିଲେ ହେବକି ସେ ପାର ।
ଶୁଣ ଫାଲଗୁନି କହନ୍ତି ଯେ ଜଗନ୍ନାଥେ
ଜ୍ଞାନକୁ ପୁରା କରିଣ କହିବା ଯେ ତୋତେ ।
ନୃସିଂହ ପୁରାଣ ସପତମ ଖଣ୍ଡ ବାଣୀ
ନାରଦ ପୁଚ୍ଛନ୍ତି କହନ୍ତି ସେ କୃଶପାଣି ।
ପଦ୍ମକଳ୍ପ ବାଣୀ ଏ ପରମ ଶାସ୍ତ୍ର ଅଟେ
ଏ ଜ୍ଞାନ ନାରଦ ଶୁଣିଛନ୍ତି ମନ ହୃଷ୍ଟେ ।
ସତ୍ୟଯୁଗ ଗ୍ରନ୍ଥ ଏହୁ ଅଟେ ଅଗୋଚର
ଦ୍ୱାପର ଯୁଗେ ପାର୍ଥକୁ କହନ୍ତି ଶ୍ରୀଧର ।
ଯେ ଜ୍ଞାନଯୋଗକୁ ନେଇ ସଞ୍ଜୟ ଯେ ମନ୍ତ୍ରୀ
କହେ ଧୃତରାଷ୍ଟ୍ରଙ୍କୁ ସେ ହୋଇ ବ୍ରହ୍ମଗୋତ୍ରୀ ।
ବଇଶମ୍ପାୟନ ବୋଲି ଯେଉଁ ମହାଋଷି
ଜନ୍ମେଜୟ ରାଜା ଆଗେ କହନ୍ତି ତ ଆସି ।
କୁରୁକ୍ଷେତ୍ର ବୋଲି ଯେଉଁ ସୁତୀର୍ଥ ଅଟଇ
ପଦେହେଁ ଶୁଣିଲେ ଏଥୁ ବୈକୁଣ୍ଠେ ବସଇ ।
ଅଲୋକିତ ଗହନ ଯେ ଏହି ଗ୍ରନ୍ଥବାଣୀ
ତରିବେ ଯେ ସାଧୁଜନେ କଳିଯୁଗେ ଶୁଣି ।

ନାରଦ ଗୋସାଇଁ ଆଗେ ଯାବତ ପୁରାଣ
ବ୍ରହ୍ମା କହିଛନ୍ତି ଏହି ଗୀତ ଶ୍ଳୋକ ଜାଣ ।
ଏହି ଜ୍ଞାନ ଅର୍ଥ ଶୁକ ପରୀକ୍ଷିତ ଆଗେ
କହିଲେ କେବଳ ସବୁ ଫେଡ଼ି ବ୍ରହ୍ମଭାଗେ ।
ମୁଁ ତାହା ଲେଖେ ଅଧମ ମୂଢ଼ ହୀନ ଦୁଃଖୀ
ସବୁ କଥାକୁ ମୋତେ ଶ୍ରୀଜଗନ୍ନାଥ ସାକ୍ଷୀ ।
ଯାହା ମୁଁ ଚିନ୍ତିବି ଯେତେବେଳେ ପଦ୍ମପାଦେ
ସୁଦୟା ବହି କହନ୍ତି ମୋତେ ସଦାନନ୍ଦେ ।
ଜୟ ତୁ ଜୟ ତୁ ଦେବ ନୃସିଂହ ମାଧବ
ଜୟ ତୁ ଜୟ ତୁ ଦେବ କୃଷ୍ଣ ପଦ୍ମ ନାଭ ।
ଜୟ ତୁ ଜୟ ତୁ ଦେବ ସର୍ବଜନ ବନ୍ଧୁ
ଜୟ ତୁ ଜୟ ତୁ ଦେବ ହରି କୃପାସିନ୍ଧୁ ।
ଜୟ ତୁ ଜୟ ତୁ ଦେବ ଅନାମୟ
ମୁହିଁ ଭାବଇ ଶ୍ରୀମୁଖେ ସ୍ୱାମୀ ଆଜ୍ଞା ଦିଅ ।
ଯେଉଁ ନୃସିଂହ ପୁରାଣ ପୁଣ୍ୟମୟ ବାଣୀ
ତାହା ମୁଁ ଲେଖେ ଖୋଜିଣ ଚାରିବେଦୁ ଆଣି
ଅବୟ ନିରାକାରହିଁ ଯେଉଁ ବ୍ରହ୍ମଦେହି
ଅଛନ୍ତି ଷାଠିଏ ଲକ୍ଷ ଗ୍ରନ୍ଥ ବ୍ୟାସେ କହି ।
ତହୁଁ ପୁରାଣ କହିବ କିଛି ପ୍ରଭୁ ମୋତେ
ପ୍ରାକୃତବନ୍ଧେ ଲେଖିବି ତାହା ଜନହିତେ ।
ତୁମ୍ଭର ଶ୍ରୀମୁଖ ଆଜ୍ଞା ସୁଧାରସ ବାଣୀ
ଲେଖଇ ଅଜ୍ଞାନ ପଣେ ସାଧୁମୁଖୁଁ ଶୁଣି ।
ଯେବଣ ଜ୍ଞାନ ଶୁଣିଣ ପାର୍ଥହିନ୍ତି ତୋଷ
ସେ ପାଦେ ଶରଣ ବିପ୍ର ପୀତାମ୍ବର ଦାସ ।
ଏଥିଉତାରୁ ସଞ୍ଜୟ ମନ୍ତ୍ରୀ ପୁଣି କହେ
ଶ୍ରୀହରି ମୁଖୁଁ ଶୁଣନ୍ତି ଯାହା ଧନଞ୍ଜୟେ ।
ଅର୍ଜୁନ ବୋଲେ ଶୁଣିମା ସ୍ୱାମୀ ଜଗନ୍ନାଥେ
କହିବାକ ଆଗ ଗୃହଧର୍ମ କଥା ମୋତେ ।
ତରିବେ କେବଣ ଧର୍ମ କଲେ ଭବୁ ପ୍ରାଣୀ
ପୃଥିବୀରେ ସବୁ ସର୍ଜିଛନ୍ତି ଧାତା ଆଣି ।
ଶ୍ରୀହରି ବୋଇଲେ ତେବେ ଶୁଣ ଧନଞ୍ଜୟ
ଗୃହଧର୍ମର ଏ କଥା ଅଟେ ଅପ୍ରମେୟ ।
କରନ୍ତି ଯେବଣ ସାଧୁମାନେ ଗୃହଧର୍ମ
ସଂସାରେ ଥାଆନ୍ତି କରି ବିହିତ ଯେ କର୍ମ ।
ସେମାନେ ବୋଲନ୍ତି ପୃଥ୍ୱୀମଧ୍ୟେ ମହାଜନ
ଶୁଣ ଫାଲଗୁନି କହନ୍ତି ସେ ଭଗବାନ ।
ଯେପ୍ରାଣୀ ଯାବତ କର୍ମ ଦୃଢ଼େ ରହି କରେ
ଫଳ ପୁଣ୍ୟ ବାଞ୍ଛା କିଛିମନେ ନବିଚାରେ ।
ଫଳକୁ ତ ନ ଘେନିଲେ ଯୋଗୀନ୍ଦ୍ରଟି ସେହି
ଏମନ୍ତ ଲୋକକୁ ପାର୍ଥ ସାଧୁ ବୋଲି କହି ।

ଫଳକୁ ଆଶା କରିଣ ଘେନେ ଯେଉଁଜନ
ସେ କର୍ମରେ ଫଳ ନୋହେ ଶୁଣହେ ଅର୍ଜୁନ ।
ଯେବଣ ଲୋକର ମନ ଦୃଢ଼େ ଜ୍ଞାନଯୋଗେ
ଦିନକୁ ଦିନ ତା ଶ୍ରଦ୍ଧା ହୁଏ ଜ୍ଞାନମାର୍ଗେ ।
ତାହାକୁ ମିଳଇ ଯେବେ ଜ୍ଞାନଯୋଗ ଆସି
ସେହି ହେତୁରୁଟି ସେହୁ ବ୍ରହ୍ମେ ଯାଏ ମିଶି ।
ହରଷେ ମୁଁ ଶ୍ରଦ୍ଧା ସଙ୍କଳପ ଆଦି ଯେତେ
ଏହାକୁ ତେଜିଣ ଜ୍ଞାନେ ମଜ୍ଜେ ଏକଚିତ୍ତେ ।
ଆବର ଦେହେ ଅଛନ୍ତି ଯେତେ ଇନ୍ଦ୍ରିଗଣ
ଏହାଙ୍କୁ ଜିଣି ପାରନ୍ତି ଏକା ସାଧୁଜନ ।
ଏମନ୍ତ ଲୋକକୁ ବୋଲି ଜାଣ ଯୋଗାରୁଢ଼
ପରମ ଆତ୍ମାରେ ରଚେ ଜୀବଆତ୍ମା ଗୋଡ଼
ଜୀବର କଥାର ସନ୍ଧି ଜାଣଇ ଯେ ଭଲେ
ଆପଣା ଆତ୍ମାଟି ଚିହ୍ନି ଘେନେ ସମତୁଲେ ।
ଅବିଦ୍ୟା ମାର୍ଗ ଜାଣନ୍ତି ଜାଣି ଯେତେ ଜନ
ଲୋଭରେ ବଇରୀ ପକ୍ଷ ହିନ୍ତି ପ୍ରତିଦିନ ।
ଆତ୍ମାକୁ ଚିହ୍ନିଲା ଲୋକ ଜ୍ଞାନେ ହୋଏସାର
ଷଡ଼ରତୁକୁ ଘେନଇଁ କରି ଏକାକାର ।
ଏରୂପେ ମନେ ତାହାର ହୁଏଯେତେବେଳେ
ଏକାନ୍ତେ ବିଶ୍ରାମ କରି ଭଜେ ନିଶାକାଳେ ।
ନିର୍ମଳ ନିର୍ଜନ ସ୍ଥାନେ ଏକାନ୍ତେ ରହିବ
ଅତିହିଁ ହୀନ ଅତିହିଁ ନୀଚେ ନ ବସିବ ।
ତହିଁରେ କରିବ କୁଶଶଯ୍ୟା ଲଗ୍ନ ଚିହ୍ନି
ନୋହିଲେ ବ୍ୟାଘ୍ରର ଛାଲ ପକାଇବ ଆଣି ।
ସେ ଛାଲ ନଥିଲେ କୃଷ୍ଣାଜିନ ବିଛାଇବ
ତହିଁ ଉପରେ ଶୁକଳ ବସ୍ତ୍ର ପାଡ଼ିଦେବ ।
ଏରୂପେ ବସିବ ଶଯ୍ୟା କରି ଚକା ମାଡ଼ି
ନିଶ୍ଚୟ ବସିବ ଜାଣ ପଦ୍ମାସନ ଭିଡ଼ି ।
ନାସିକା ଯେ ମେରୁ କଣ୍ଠ ଶିର ସଳଖିବ
ପଦ୍ମାସନେ ବସି ମଳଦ୍ୱାରକୁ ରୋଧିବ ।
ଆପଣା ନେତ୍ରରେ ହେତୁ ଦ୍ୱାରେ ଥିବ ଚାହିଁ
ଦେଖିବ ଆତ୍ମାକୁ ସେ ଯେ ଉଦେଅସ୍ତ ହୋଇ
ଆତ୍ମା ପବନକୁ ଚାଳି ପାରଇ ଯେ ଦେଖି
ତାଠାରୁ ଜଗତେ ନାହିଁ ଜ୍ଞାନବନ୍ତ ସୁଖୀ ।
ପରମହଂସକୁ ଚିହ୍ନିକରି ତତକାଳେ
ତାହାକୁ ତ ରକ୍ଷାକରି ନ୍ୟନ୍ତି ଆଦିମୁଳେ ।
ଅତି ଆହାର ପାନ ନକରେ କରି ଶ୍ରଦ୍ଧା
ଅତି ନିରାହାରେ ରହିଲେ ଯେ ହୋଏ ବାଧା
ଅତିହିଁ ନିଦ୍ରା ଅତିହିଁ ଉଜାଗର ହୋଏ
ସେକମାନଙ୍କୁ ଯୋଗ ଜାଣ ଅପ୍ରାପତ ହୁଏ ।

ଜ୍ଞାନକୁ ସାଧିବାଠାରେ ନୋହିବ ବିରତ
ବିରକ୍ତ ହେଲେ ଯୋଗଟି ହୁଏ ଅପ୍ରାପତ ।
ଏ ପ୍ରକାରେ କାଣ୍ଡ ଯେବେ ଚଳାଇଣ ଥିବ
ସେ ଲୋକର ହୃଦୁ ଜ୍ଞାନ କେବେ ନଛାଡ଼ିବ ।
ଏଥକୁ ଯେ ଉପଲକ୍ଷ୍ୟ ଶୁଣ ଧନଞ୍ଜୟେ
ସମୁଦ୍ର ଜଳ ଲହରୀ ଯେହ୍ନେ ମାରୁଥାଏ ।
ତହିଁରେ କେଡ଼େ ସୁସ୍ଥିରେ ଚଳେ ନାବମଙ୍ଗ
ସେ ରୂପେ ଯେ ଚିତ୍ତ ସ୍ଥିର କରିଥିବ ପୁଙ୍ଗ ।
ନଦୀରେ ବାହିତ କାହିଁ ହୋଇଲେ ଲଙ୍ଗର
ସେ ଯେହ୍ନେ ସ୍ଥିର ହୋଇଣ ବସେ ଭୂମିତଳ ।
ପବନ ନିବର୍ତ୍ତ ସ୍ଥାନେ ଜଳେ ଯେହ୍ନେ ଦୀପ
ସେ ରୂପେ ରଖିବ ମନ ସ୍ଥିର କରି ଗୋପ୍ୟ ।
ଆତ୍ମକୁ ଚିହ୍ନି ଯେ ଗୃହ ଧର୍ମ କରୁଥିବେ
ଆନନ୍ଦ ଭାବର କଥା ତେବେ ନଛାଡ଼ିବେ ।
ଏତେ ପ୍ରକାରେଟି ଲୟ ସୂତ୍ର ଆଚରିଲେ
ତାହାକୁଟି ଯୋଗ ଜାଣ ପ୍ରାପ୍ତ ହୁଏ ଭଲେ ।
ଏହି ରୂପେ ଦିବ୍ୟସ୍ଥାନ ପାଇଥାଇ ପ୍ରାଣୀ
ଆଉ ସ୍ଥାନକୁ ଚିତ୍ତ ନକରେ ଏବେ ପୁଣି ।
ଏହିରୂପେ ସ୍ଥିରକୁ ତ ଯାର ହେବ ମନ
ରହିବ ମନକୁ ସ୍ଥିର କରି ଅନୁଧ୍ୟାନ ।
କୁଟୁମ୍ବର ଦୁଃଖ ସୁଖ ଦୁଇ ଏକ କରି
ମନରେ କେବେ ତାହା ନଥିବ ହୃଦେ ଧରି ।
ତୁ ଅବା କଥାଏ ପାଞ୍ଚୁଥିବୁ ହୃଦଗତେ
ମନକୁ ଆୟତ୍ତ କରି ପାରିବ କେ ନିତ୍ୟେ ।
ପବନୁ ଅଧିକ ମନ ଚଞ୍ଚଳିତ ହୋଇ
ତାହାକୁ ନିଶ୍ଚୟ କରି ପାରିବ କେ ଥୋଇ ।
ଶ୍ରୀହରି ବୋଇଲେ ତୁ ହୋ ଶୁଣ ଧନଞ୍ଜୟ
ମନକୁ ପାଇଲେ ବୋଧି ସବୁ ହୋଏ ଜୟ ।
ଅଳପ ଅଳପ କରି ନିତି ସାଧୁଥିଲେ
ତେବେ ସେ ସାଧନା ତାର ସାଧି ହୁଏ ଭଲେ
ନୋହିଲା ବୋଲି ଏହା ନବୋଲି କଦାଚିତ
କାଳେହେଁ ପ୍ରାପତ ତାକୁ ହେବ ଜ୍ଞାନତତ୍ତ୍ୱ ।
ମନକୁ ଚଞ୍ଚଳ କଲେ ନୁହେଁ ଜ୍ଞାନ ଉଦେ
ନିଶ୍ଚିନ୍ତେ ବୋଲି ସାଧନ କରି ଏହା ହୃଦେ ।
ମନକୁ କରିବ ଯେତେବେଳେ ଶାନ୍ତି ଜାଣ
ଅଳ୍ପ ଅଳ୍ପ କରି ଛାଡ଼ିବ ସେ ରଜୋଗୁଣ ।
ସନ୍ୟାସ ଭାବ ପରମ ସୁଖର ଯେ ହେତୁ
ପ୍ରାପତ ହୁଏ ଏ ଜ୍ଞାନ ଘେନିଲେ ଏ ହେତୁ ।
ସେ ଲୋକର ବେନିକଥା ଜାଣ ପଣ୍ଡୁସୁତ
ବୋଲନ୍ତି ଆତ୍ମାରେ ମୋର ପୂରିଛି ଜଗତ ।
ଜଗତ ମଧ୍ୟରେ ପୁଣ ଯାଉଛି ମୁଁ ପଶି
ଏମନ୍ତ ବୋଲି ବିଚାର କରେ ଅହର୍ନିଶି ।
ବୋଲଇ ଜଗତଯାକ ପୂରିଛନ୍ତି ହରି
ହରିର ଗର୍ଭେ ଜଗତଯାକ ଅଛି ପୂରି ।
ମୋହର ସମାନ ଅଟେ,ଯେ ସଂସାର ନର
ବୁଝିଲେ ମହାଭକ୍ତ ସେ ଲୋକ ଅଟେମୋର
ମୋତେ ସେ ଜାଣନ୍ତି ପ୍ରଭୁଛନ୍ତି ସର୍ବଭୂତେ
ଅଭେଦେ ଅଛନ୍ତି ପୂରି ପରଂହଂସ ମତେ ।
ଏମନ୍ତ ଲୋକଙ୍କ ଆତ୍ମା ହୃଦେ ଥାଉଁ ଥାଉଁ
ହରିଙ୍କି ହୃଦରେ ରଖେ ମୃତ୍ୟୁଆଗ ନୋହୁ ।
ପରମ ଯୋଗୀଙ୍କ ପଦେ ରଖେ ମୃତ୍ୟୁ ତାଙ୍କୁ
ପରମ ଦୁଃଖ ଦେଖିଣ ବିକଳ ହେଲାକୁ ।
ଏମନ୍ତ ଶୁଣିଣ ପାର୍ଥ ଯୋଡ଼ି ବେନିକର
ବୋଇଲା ପ୍ରଭୁ ଲାଗିଲା ମୋତେ ଅଗୋଚର
ପବନ ଦେବତାଙ୍କୁ ମୁଁ ହସ୍ତେ ମୁଠାକରି
ବୋଲଇ ପାରିବି ଏହା ମୁହିଁ କେହ୍ନେ ଧରି ।
ମନ ତ ଚଞ୍ଚଳ ଅହୋରାତ୍ର ଭ୍ରମୁଥାଏ
ଏ ମନ କେହ୍ନେ ରଖିବି ମୁହିଁ ଦେବରାୟେ ।
ଶ୍ରୀକୃଷ୍ଣ ବୋଇଲେ ତେବେ କହିବା ତା ଶୁଣ
ପୁଚ୍ଛିବା କଥା କି ତୋର ନୋହେ ଅପ୍ରମାଣ ।
ନିଶ୍ଚଳ ଭାବକୁ ଜାଣି ବଇରାଗ୍ୟ ବୋଲି
କାମନା କାଟି ଆକର୍ଷି ମନ ଧରେ ପେଲି ।
ମନକୁ ଯେବେ ଆୟତ ଜାଣ ନକରିବ
ସେ ପ୍ରାଣୀ କି ରୂପେ ଯୋଗମାର୍ଗେ ପ୍ରବେଶିବ ।
ମନକୁ ପାରିବ ସ୍ଥିର କରି ଯେବେ ନର
ତେବେ ସେ ସାଧି ପାରଇ ଯୋଗ ତତପର ।
ପୁଣିହିଁ କର ଯୋଡ଼ିଣ ପୁଚ୍ଛେ ଧନଞ୍ଜୟ
ଆବର ଗୋଟିଏ କଥା କହ ଦେବରାୟ ।
ଯେବଣ ଜନମାନେ ଏ ଯୋଗ ସାଧିବାକୁ
ଲୋକାୟିତ ମାର୍ଗେ ଚାହିଁ କରଇ ମନକୁ ।
ଏହି ମନ ସବୁକାଳେ ଚଳଇ ନୁହେଁ କି
ମନ ଚଞ୍ଚଳରେ ଯୋଗ କେବେହେଁ ଘଟେ କି
ନୋହିଲେ ଏ ରୂପ କର୍ମ ସେହି କରୁ କରୁ
ଜୀବନ ଛାଡିବ ଯିବ ଅବା ହୃଦୟରୁ ।
ବିଷ୍ଣୁର କର୍ମ କଲାର ଯେତେ ଯେତେ କୃତ୍ୟ
ସେ ଫଳ ତେବେ ତାହାଙ୍କୁ ନୋହିଲା ପ୍ରାପତ ।
ବ୍ୟର୍ଥ ହୋଇଗଲା କର୍ମ କରିବାର ତାର
ଶୂନ୍ୟମେଘ ପ୍ରାୟ ହୋଇଲା ତ ନାରଖାର ।
ଶୂନ୍ୟରୁ ତ ମେଘ ଖଣ୍ଡ ଆସେ ଯେହ୍ନେ ଖସି
ଭୂମିରେ କି କେତେବେଳେ ପାରେ ସେ ବରଷି

ସ୍ୱର୍ଗେ ନ ପଶିଲା ଭୂମିରେ ସେ ନମିଶିଲା
ସେ ମେଘ ଗୋଟିକ ବ୍ୟର୍ଥେ ଶୂନ୍ୟେ କ୍ଷୟ ଗଲା
ସେହି ପ୍ରକାରେ ଦିଶିଲା ସିନା ତାର କର୍ମ
ସେହି ଲୋକ ନାଶଗଲେ ହେଲା କେଉଁ ଧର୍ମ
ଏ ସନ୍ଧି ଫେଡ଼ି କହିବ କହ କହୁ ମୋତେ
ଶୁଣିଲେ ମୁଁ ତବ ମୁଖୁଁ ଯିବି ସିନା ପ୍ରତେ ।
ଏ ରୂପେ ପ୍ରଭୁଙ୍କୁ ଚାହିଁ ପୁଚ୍ଛନ୍ତି ସେ ପାର୍ଥ
ସେ କଥା ଶୁଣି ହସିଲେ ପ୍ରଭୁ ଜଗନ୍ନାଥ ।
କହନ୍ତି ଅର୍ଜ୍ଜୁନ ମୁଖ ଚାହିଁ ବାସୁଦେବ
ବୋଲନ୍ତି କରିବା କର୍ମ କିମ୍ପା ନାଶଯିବ ।
ସେ ଯେବେ ଉତ୍ତମ ଜ୍ଞାନମାର୍ଗେ ଚଳିଥିବ
ତାହାର କାହିଁକି ଭକ୍ତିପଣ ନାଶଯିବ ।
ସେ ଉଦ୍‌ଯୋଗ ଲଭିବ ତାର ପୁଣ୍ୟଫଳ
ହସିବେ ସ୍ୱର୍ଗେ କହିଲେ ପ୍ରଭୁ ଆଦିମୂଳ ।
ପଶ୍ଚାନ୍ତେ ଯାକୁ ଶ୍ରୀମନ୍ତ ଘରେ ରଖେ ନେଇ
ଦିଅଇ ଜନମ କରି ଭଲ ହେବାପାଇଁ ।
ନୋହିଲେ ଜ୍ଞାନୀ ପୁରୁଷ ଘରେ ତାକୁ ଆଣି
ଏହାର ବୀର୍ଯ୍ୟରେ ଜନ୍ମ କରାଏ ସେ ଭୂମି ।
ଏକଥା ଦୁର୍ଲ୍ଲଭ ଅଟେ ସଂସାରକୁ ସତ
ଦୁଇ ସ୍ଥାନରେ ତାକୁ ମୁଁ କରେ ଆତଯାତ ।
ଏ ରୂପେ ସାଧନା ଯୋଗବାରି ଯେବେ ହୋଇ
ତେବେ ମୁହିଁ ଭଲଘରେ ଜନ୍ମ ତାକୁ ଦେଇ ।
ପୂର୍ବର ବାସନା ଧରି ଆସିଥାଇ ସଙ୍ଗେ
ଜ୍ଞାନରେ ନିର୍ଗୁଣ ସେହୁ ହୁଏ ସ୍ୱପ୍ନ ଅଙ୍ଗେ ।
ସେ ଯେଉଁ କଥାକୁ ବାଞ୍ଛା କରେ ହୃଦଗତେ
ତହିଁକି ଗୋଡ଼ାଇ କର୍ମ କରି ଅନୁବ୍ରତେ ।
ଏ ରୂପେ ପୁଣ୍ୟ ଯେତେକ ପାଞ୍ଚଇ ମନକୁ
ଅବଶ୍ୟ ପ୍ରାପତ ତାହା ହୁଏ କାଳେ ତାକୁ ।
ତହିଁକି ସେ ଲୟକରି ସ୍ନେହ କରିଥିଲେ
ତାର ବାସନା ତାହାକୁ ଦିଏ ଜାଣ ଭଲେ ।
ଏହି ରୂପେ ଯୋଗ ସାଧ କରେ ଯେଉଁ ନର
ଜନ୍ମେ ଜନ୍ମେ ତାକୁ ତାହା ମିଳଇ ତତ୍ପର ।
ଏ ରୂପେ ପୁଣି ତାହାର କେତେ ଜନ୍ମଅନ୍ତେ
ଅକ୍ଷୟ ଭକ୍ତି ଯୋଗ ସେ ଲଭଇ ସାକ୍ଷାତେ ।
ଆଉ କଥାଏ କହିବା ପାର୍ଥ ତୋତେ ପୁଣ
ପୃଥ୍ୱୀରେ ଅଛି ଚୌଷଠି ଗୋଟି ପୁଣ୍ୟଜ୍ଞାନ ।
ସେ ଜ୍ଞାନମାନ ସାଧନା କର୍ମ ଅଛି ଯେତେ
କହିବା ତା ଭିନ୍ନେଭିନ୍ନେ ଶୁଣ ପଣ୍ଡୁ ସୁତେ ।
କେବଣହିଁ ଯୋଗୀବାସ କରେ ବୃକ୍ଷମୂଳେ
କେବଣହିଁ ଯୋଗୀ ପତ୍ର ବିକଳେହିଁ ଗିଳେ ।
କେବଣହିଁ ଯୋଗୀ ଗ୍ରାସକରେ ନାନା ଫଳ
କେବଣହିଁ ଯୋଗୀ ଗ୍ରାସକରେ କନ୍ଦମୂଳ ।
କେବଣହିଁ ଯୋଗୀ ଜାଣ ବନେ କରେ ବାସ
କେବଣହିଁ ଯୋଗୀ ନାରୀକେଳ କରେ ଗ୍ରାସ
କେବଣହିଁ ଯୋଗୀ ଝରଜଳେ ଦିନହରେ
କେବଣହିଁ ଯୋଗୀ ବଞ୍ଚେ ପବନ ଆହାରେ ।
କେବଣହିଁ ଯୋଗୀ ନିତ୍ୟ କରେ ଧୂମ୍ରପାନ
କେବଣହିଁ ଯୋଗୀ ପାନ କରେ ହୁତାଶନ ।
କେବଣହିଁ ଯୋଗୀ ବସେ ବୃକ୍ଷ ଅଗ୍ରେ ଯାଇ
କେବଣହିଁ ଯୋଗୀ ପାଦପଦ୍ମ ଭଜୁଥାଇ ।
କେବଣହିଁ ଯୋଗୀ ସାଧେ ନତ କରି ଶିର
କେବଣହିଁ ଯୋଗୀ ସାଧେ ପଢି ବେଦସାର ।
କେବଣହିଁ ଯୋଗୀ ଯୋଗ ସାଧେ ଭିକ୍ଷାକରି
କେବଣହିଁ ଯୋଗୀ ଯୋଗ ସାଧେ ଦଣ୍ଡଧରି
କେବଣହିଁ ଯୋଗୀ ସାଧେ କଉପୀନ ପିନ୍ଧି
କେବଣହିଁ ଯୋଗୀ ଜୀବ ପରମକୁ ଭେଦି ।
କେବଣହିଁ ଯୋଗୀ ଜୀବ ପରମକୁ ଜପି
କେବଣହିଁ ଯୋଗୀ ବ୍ରହ୍ମ ରନ୍ଧ୍ରେ ମନ ସ୍ଥାପି ।
କେବଣହିଁ ଯୋଗୀ ଜ୍ଞାନତତ୍ତ୍ୱ କରେ କର୍ମ
କେବଣହିଁ ଯୋଗୀ ଭଜେ କେବଳ ମୋ ନାମ
କେବଣହିଁ ଯୋଗୀ ଭଜେ ସାଧି ବ୍ରହ୍ମଜ୍ଞାନ
କେବଣହିଁ ଯୋଗୀ ଭଜେ ନିତ୍ୟ ପରଂବ୍ରହ୍ମ ।
କେବଣହିଁ ଯୋଗୀ ଭ୍ରମେ ନାନା ତୀର୍ଥ କରି
କେବଣହିଁ ଯୋଗୀ ବୁଲେ ଶ୍ରୀକୃଷ୍ଣ ସୁମରି ।
କେବଣହିଁ ଯୋଗୀ ଭସ୍ମ ହୁଏ ବିଲେପନ
କେବଣହିଁ ଯୋଗୀ କ୍ଷେତ୍ରେ କରଇ ଗମନ ।
କେବଣହିଁ ଯୋଗୀ ହୁଏ ପୁଣ ବ୍ରହ୍ମଚାରୀ
କେବଣହିଁ ଯୋଗୀ କର୍ମ ପିନ୍ଧି ଭଜେ ହରି ।
କେବଣହିଁ ଯୋଗୀ ଭଜେ ନିରାହାରେ ବସି
କେବଣହିଁ ଯୋଗୀ ନୃତ୍ୟ ଗୀତେ ଥାଏ ରସି
କେବଣହିଁ ଯୋଗୀ ସାଧେ ପଶି ହିମଜଳେ
କେବଣହିଁ ଯୋଗୀ ପଞ୍ଚଅଗ୍ନି ସ୍ଥାପେ ତଳେ ।
କେବଣହିଁ ଯୋଗୀ ବର୍ଷେ ମାସେ ଉପବାସୀ
କେବଣହିଁ ଯୋଗୀ ଯୋଗ ସାଧେପୟଗ୍ରାସୀ
କେବଣହିଁ ଯୋଗୀ ରହେ ଦେବଆଳେ ଯାଇଁ
କେବଣହିଁ ଯୋଗୀ ବସେ ସୂର୍ଯ୍ୟଦେବଧ୍ୟାୟି ।
କେବଣହିଁ ଯୋଗୀ ସାଧେ ଭଜି ପଦ୍ମମୁଖ
କେବଣହିଁ ଯୋଗୀ ନିଦ୍ରା ଆଦିମଣେ ଦୁଃଖ ।
କେବଣହିଁ ଯୋଗୀ ସାଧେ ବସି ଗିରିପରେ
କେବଣହିଁ ଯୋଗୀ ଜପେ ବସି ନଦୀତୀରେ

କେବଣହିଁ ଯୋଗୀ ମାଥେ ବାନ୍ଧି ଜଟାଭାର
କେବଣହିଁ ଯୋଗୀ କେଶେ ମଣ୍ଡିକଳେବର ।
କେବଣହିଁ ଯୋଗୀ ଭଜେ ତୁଳସୀର ମୂଳେ
କେବଣହିଁ ଯୋଗୀ ଭଜେ ରୁଦ୍ରାକ୍ଷର ଫଳେ ।
କେବଣହିଁ ଯୋଗୀ ଗୀତ ପଢ଼େ ନିତ୍ୟ ବସି
କେବଣହିଁ ଯୋଗୀ ମନ୍ତ୍ର ପଢ଼େ ଅହର୍ନିଶି ।
କେବଣହିଁ ଯୋଗୀ ପୂଜା ଧ୍ୟାନେ ସମାଯୁକ୍ତ
କେବଣହିଁ ଯୋଗୀ ଲୟ କରେ ମହାମନ୍ତ୍ର ।
କେବଣହିଁ ଯୋଗୀ କହେ ସମାଧି ନିଶ୍ଚଳ
କେବଣହିଁ ଯୋଗୀ କରେ ପ୍ରାଣାୟାମ ବଳ ।
କେବଣହିଁ ଯୋଗୀ ସାଧକରେ ଯୋଗଲଗ୍ନ
କେବଣହିଁ ଯୋଗୀ ଭଜେ ବେଦତତ୍ତ୍ୱ ଚିହ୍ନ ।
କେବଣହିଁ ଯୋଗୀ ସାଧେ କରି ଜଳଗ୍ରାସ
କେବଣହିଁ ଯୋଗୀ ଧରେ ବ୍ରହ୍ମଚର୍ଯ୍ୟ ବେଶ ।
କେବଣହିଁ ଯୋଗୀ କରେ ଭକ୍ତି ନିଷ୍ଠାପର
କେବଣହିଁ ଯୋଗୀ ଲକ୍ଷ୍ୟକରେ ଲକ୍ଷ୍ୟବାର
କେବଣହିଁ ଯୋଗୀ ସାଧେ ଗୁରୁ ପଦ୍ମ ପାଦ
କେବଣହିଁ ଯୋଗୀ ସାଧେ ପରମ ଯେ ପଦ
କେବଣହିଁ ଯୋଗୀ ଭିକ୍ଷାମାଗେ ପଢିବେଦ
କେବଣହିଁ ଯୋଗୀ ଜାଣେ ବ୍ରହ୍ମଜ୍ଞାନ ଭେଦ ।
କେବଣହିଁ ଯୋଗୀ ପିତା ମାତାଠାରେ ଭକ୍ତି
କେବଣହିଁ ଯୋଗୀ ଗୃହ ଧର୍ମେ ସଦାବର୍ତ୍ତି ।
କେବଣହିଁ ଯୋଗୀ ଦ୍ୱାରା ପୁତ୍ରେ ସଂଯୋଜିତ
କେବଣହିଁ ଯୋଗୀ ସମଦର୍ଶୀ ଅହୋରାତ୍ର ।
ଏତେ ପ୍ରକାରେ ଚୌଷଠିଖଣ୍ଡ ଅଟେ ଜ୍ଞାନ
ଶୁଣନ୍ତି ଅର୍ଜ୍ଜୁନ କହନ୍ତି ଯେ ଭଗବାନ ।
ସାବଧାନେ ଶୁଣ ତୁ ହୋ ଋଷି ବ୍ୟାସନାତି
ସଂସାରେ ଅନ୍ୟର ନାହିଁ ତୋର ପ୍ରାୟ ଭକ୍ତି ।
ଏହିରୂପେ ଜପତପ କରନ୍ତି ଯେ ଜନ
ମନୁଷ୍ୟର୍ ଶ୍ରେଷ୍ଠ ଅଟେ ଗୃହଧର୍ମ ପୁଣ ।
ଗୃହସ୍ଥ ଧର୍ମେ ବିହିତ କର୍ମ ଯେହୁ କରି
ସେ କର୍ମ ଗୋଟିକୁ ପାର୍ଥ କେହି ନୁହେଁ ସରି ।
ବ୍ରାହ୍ମଣ ଅଟନ୍ତି ସର୍ବ ବର୍ଣ୍ଣଙ୍କର ଗୁରୁ
ଅଟନ୍ତି ମହାପବିତ୍ରବନ୍ତ ସବୁଠାରୁ ।
ବ୍ରାହ୍ମଣମାନେ ଶ୍ରୀମୁଖୁ ହେଲେ ମୋର ଜାତ
କହନ୍ତି ଶ୍ରୀଜନାର୍ଦ୍ଦନ ଶୁଣ ପଣ୍ଡୁସୁତ ।
ବ୍ରାହ୍ମଣର ପାଦଧୂଳି ଘେନନ୍ତି ଯେ ନିତି
କୋଟିଏ ଜନ୍ମର ପାପ ଖଣ୍ଡନ କରନ୍ତି ।
ଦେବଭାବ ବୋଲିକରି ଯେବଣ ଯାଦବ
ତାହାର ପୁତ୍ରଟି ଜାଣ ଅଟଇ ଉଦ୍ଧବ ।
ବ୍ରାହ୍ମଣର ପାଦଧୂଳି ଘେନି ଅହୋରାତ୍ର
ପାଇଲାକ ଆତ୍ମମୁଖୁଁ ଶୁଣି ଜ୍ଞାନସୂତ୍ର ।
ରତ୍ନପାଦୁକାକୁ ଧରି ବଦରିକା ଗଲା
ମହାବ୍ରାହ୍ମଣ୍ୟ ହୋଇ ସେ ଯୋଗୀନ୍ଦ୍ର ହୋଇଲା
ବୁଝିଲେତ ବିପ୍ରକୁ ସେ ଅଟେ ବ୍ରହ୍ମଋଷି
ଦାନରେ ସେ ଦକ୍ଷହୋଇ ପାରେ ପେଟ ପୋଷି
ବେଦର ବାକ୍ୟ ପାଳିଣ ନଚାଲନ୍ତେ ଦାଣ୍ଡେ
ତେଣୁ ହୃଦେ କ୍ଳେଶ ପାଇ ବୁଲନ୍ତି ବ୍ରହ୍ମାଣ୍ଡେ ।
ବ୍ରାହ୍ମଣ ବିଷୟ ଏକା ବ୍ରାହ୍ମଣ ହିଁ ଜାଣେ
କେବଳ ସତ୍ୟରେ ଥିଲେ ତରନ୍ତି ଆପଣେ ।
ସବୁ ଜାତିଠାରୁ ଶ୍ରେଷ୍ଠ ବ୍ରାହ୍ମଣ ଯେ ଅଟେ
ନିଜ ଆତ୍ମା ଉଦ୍ଧାରି ନ ପାରେ ସର୍ବଘଟେ ।
ବ୍ରାହ୍ମଣ ସେ ସର୍ବମାନ୍ୟ ପୃଥ୍ୱୀଯାକେ ହୋଇ
ଆପଣା ଆତ୍ମା ଉଦ୍ଧାର କରି ନପାରଇ ।
ଶୁଣ ଫାଲଗୁନି କହନ୍ତି ଯେ ଜଗନ୍ନାଥେ
ଆହୁରି ଜ୍ଞାନ କହିବି କିଛି ପୁଣ ତୋତେ ।
ନୃସିଂହ ପୁରାଣର ଏ ସୁଧାରସ ବାଣୀ
କହନ୍ତି ନାରଦ ଗୋସାଇଁକି କୁଶପାଣି ।
ଶୁଣିକରି ନାରଦ ଯେ ଯୋଡ଼ି କରପତ୍ର
ବୋଇଲେ ପବିତ୍ର ହେଲା ତୁମ୍ଭ ଯୋଗୁଁ ଗାତ୍ର
ଯେବଣ ଜ୍ଞାନ ଅଟଇ ସଂସାରକୁ ବଣା
ସେ ଜ୍ଞାନ ପୃଥ୍ୱୀରେ ହେବ ସମସ୍ତଙ୍କୁ ଜଣା ।
ବ୍ରହ୍ମା ବୋଇଲେ କହିବା ଆହେ ତେବେ ଶୁଣ
ପାର୍ଥକୁ ଦ୍ୱାପରେ କହିଲେ ଯେ ନାରାୟଣ ।
ଯାବତ ଜ୍ଞାନ କହିଲେ ଫେଡ଼ି ଦେବରାୟ
ସେ ଜ୍ଞାନ ଶୁଣିଣ ତୋଷ ହେଲେ ଧନଞ୍ଜୟ ।
ଦେଖିଲେ ବ୍ରହ୍ମାଣ୍ଡଯାକେ ସେହି ଜ୍ଞାନ ଆଣି
ସେଠାରୁ କଳିଯୁଗର ମାନ୍ୟ ହେବ ପୁଣି ।
ନାରଦ ଶୁଣିଣ ତାହା ମନେ ହେଲେ ତୋଷ
ବୋଇଲେ କହ ଶୁଣିବା ତେବେ ଜ୍ଞାନରସ ।
ବ୍ରହ୍ମା ବୋଇଲେ କହିଲେ ଯାହା ନାରାୟଣ
ସେ କଥା ସଭାରେ ବସି ଏବେ ସର୍ବେ ଶୁଣ ।
ବ୍ୟାସ ମହାଋଷି ଯେଣୁ ପଶି ବିଷ୍ଣୁ ଗର୍ଭେ
ଯାବତ ଶାସ୍ତ୍ର ରଖିଲେ ଆଣି ଠାବେ ଠାବେ ।
ଅଟଇ ଯେବଣ ଅଣାକାର ବ୍ରହ୍ମଜ୍ଞାନ
ତାହାଙ୍କ ତହୁଁ ହୋଇଲେ ଆଗେ ଉତପତ୍ନ ।
ଆକାର ଉକାରାକ୍ଷର ହୋଇଲେ ଉତ୍ପତ୍ତି
ମକାରସୂତ୍ରେ ଗୁନ୍ଥିଲେ ତାହା ଜଗଜ୍ୟୋତି ।
ଏ ରୂପେ ଅଟେ ନୃସିଂହ ଗ୍ରନ୍ଥର ସେ ବାଣୀ
ଆନ ଶସ୍ତ୍ର କ୍ଷୀର ଅଟେ ଏହୁ ଘୃତ ପୁଣି ।

ଜଗନ୍ନାଥଙ୍କ ଶ୍ରୀମୁଖୁଁ ହେଲା ଏ ପ୍ରକାଶ
ସେ ପାଦେ ଶରଣ ବିପ୍ର ପୀତାମ୍ବର ଦାସ ।
ଶୁଣ ଆହେ ଧୃତରାଷ୍ଟ୍ର ଏ ଉତ୍ତାରେ ବାଣୀ
ପାର୍ଥଙ୍କୁ କହନ୍ତି ଯାହା ପ୍ରଭୁ ଚକ୍ରପାଣି ।
ବୁଝାନ୍ତି ଅର୍ଜ୍ଜୁନ ଆଗେ ବସି ଏକମନେ
ବୋଲନ୍ତି କହିବା ପାର୍ଥ ଶୁଣ ସାବଧାନେ ।
ଚାରି ପ୍ରକାରେ ଅଟଇ ମୋର ଜ୍ଞାନତତ୍ତ୍ୱ
ପଢ଼ିବ ଶୁଣିବ ଯେହୁ ଶୁଣାଇବ ନିତ୍ୟ ।
ଏରୂପେ ଏ ଚାରିକଥା ଅଟେ ଜ୍ଞାନସିଦ୍ଧି
ଏହା ଯେ କରିବ ସେହି ତରିବ ଭବାବ୍ଧି ।
ଏ ଭବ ମହାପ୍ରଳୟ ତୁଲ୍ୟ ଅନ୍ଧକାର
ଏ ଚାରି ଲୋକ ଯେ ବରିଯାନ୍ତି ଆତ୍ମପୁର ।
ତୁ ଯେଉଁ ବିଚାର ପାର୍ଥ କରୁ ହୃଦଗତେ
ସନ୍ଧିଗ୍ଧେ ମନରେ ବସି ପଚାରୁଛୁ କେତେ ।
ବୋଲୁଛୁ ଏ ବ୍ରହ୍ମାଣ୍ଡରେ ଛନ୍ତି ଯେତେଲୋକ
ସମସ୍ତେ କି ତୁମ୍ଭ ଭକ୍ତ ହେବେ ପୁଣ୍ୟଶ୍ଳୋକ ।
ଏ ରୂପେ କି କେଉଁ ଲୋକ ଅଛି ଭାବଗ୍ରାହୀ
କହିଲେ ତାହା ଶୁଣିବି ମୁହିଁ ମନଦେଇ ।
ଶ୍ରୀହରି ବୋଇଲେ ତୁମ୍ଭେ ଶୁଣ ପଣ୍ଡୁସୁତ
ଖୋଜିଲେ ପୃଥ୍ୱୀରେ ମୋର ଛନ୍ତି କେତେ ଭକ୍ତ
ସେ କଥାକୁ ସାବଧାନେ କହିବୀ ହୋ ଶୁଣ
ମୋତେ ଯେ ଚିହ୍ନେ ମୋ ଠାରୁ ବଡ଼ ସେହୁ ଜାଣ
ସଂସାର ନିର୍ବାହ ହୋଏ ଆଠପାଦେ ପୁଣି
ସେ କଥା ମଧ କହିବା ତୋତେ ଥାଅ ଶୁଣି ।
ପୃଥ୍ୱୀ ପବନ ଆକାଶ ଜଳ ହୁତାଶନ
ମନ ବୁଦ୍ଧି ଅହଙ୍କାର ଏହୁ ଆଠ ଜାଣ ।
ଏ ଆଠ କଥାରେ ହୋଏ ଏ ବ୍ରହ୍ମାଣ୍ଡଜାତ
ଏଥିରୁ ବିଲଗ୍ନ ଅଟେ ମୋର ହୃଦଗତ ।
ଶ୍ରୀଅଙ୍ଗଯାକ ମୋହର ଅଟେ ମହାବ୍ରହ୍ମ
ସେ ବ୍ରହ୍ମ ଅଙ୍ଗରୁ କୋଟି ବ୍ରହ୍ମାଣ୍ଡର ଜନ୍ମ ।
ସଂସାର ଜୀବ ଜନ୍ମ ନପାରେ କେହି ଲେଖି
ସ୍ଥାବର କୀଟ ପତଙ୍ଗ ଯେତେ ପଶୁ ପକ୍ଷୀ ।
ଏ ରୂପେ ପ୍ରକାଶ ହୋଏ ଜାଣ ଚାରିଖାନି
ଗୋବିନ୍ଦର ଖେଳଘର ଅଟେ ଫାଲଗୁନି ।
ଏ ରୂପେ ଜୀବର ଜନ୍ମ କରୁଛି ମୁଁ କେତେ
ତପ୍ୟର କରିଣ କ୍ଷୟ କରେ ପୁଣ୍ୟ ନିତ୍ୟେ ।
ଏ ଆଦି ଚଉଦ ଲୋକ ଯେତେ ଜୀବଜନ୍ତୁ
ମୋହର ଅଙ୍ଗରୁ ଜନ୍ମ ହୁଅନ୍ତି ସର୍ବେ ମୃତ୍ୟୁ ।
ମୋର ଅଙ୍ଗୁ ଜନ୍ମ ମୋର ଦେହେ ହୋନ୍ତି ଲୀନ
କେବେ ଏକଥା ଚିହ୍ନି ନପାରେ ମୂଢ଼ଜନ ।

ବୁଝିଲେ ତ ପଞ୍ଚଭୂତ ଅଟେ ମୁହିଁ ଏକା
ପ୍ରକାଶେ ଯାହାର ଯେଉଁ ଗୁଣ କିଣା ବିକା ।
ପୃଥ୍ୱୀର ଯେତେକ ଗୁଣ ଅଟେ ଜାଣ ମୁହିଁ
ଅଗ୍ନିର ଯେ ତେଜମାନ ମୁହିଁ ପ୍ରକାଶଇ ।
ପବନ ପ୍ରଖର ଗନ୍ଧବାସ କୋମଳଟି
ଜଳର ମଧ୍ୟେ ଅଟଇ ଶୀତଳ ମୁହିଁଟି ।
ଆକାଶ ସ୍ୱରଶ ରସ ଏହା ମୁହିଁ ଜାଣି
ଆଦିତ୍ୟ ଚନ୍ଦ୍ରମା ମୁହିଁ ଏକା ଅଟେ ପୁଣି ।
ତପୀମାନଙ୍କର ଜପ ଅଟେ ଜ୍ଞାନ ଟିକା
ମୁହିଁ ସବୁରି ହୃଦରେ ଅଟେ ଜୀବ ଏକା ।
ଭାଗବତ ଆଦି ସବୁ ଶାସ୍ତ୍ର ମୁଁ ଜାଣିବ
ଯେମନ୍ତ ପ୍ରକାରେ ଯେହୁ ହୋଇଲେ ଉଭବ ।
ଯେମନ୍ତ ଜନ୍ମିଲେ ସେହୁ ଶୁଣ ଭଦ୍ରାକାନ୍ତ
ସତ୍ତ୍ୱ ଗୁଣରୁ ଜନମ ହେଲେ ସତ ଶାନ୍ତ ।
ଇନ୍ଦ୍ରିୟ ଦମନ ସତ ନିର୍ମଳ ସୁମତି
ଯେବଣ ପ୍ରକାରେ ଯହିଁ ହେଲେ ଉତପତ୍ତି ।
ରାଜସ ଗୁଣର କଥା କହିବା ହୋ ଶୁଣ
ଆରମ୍ଭ ଦମ୍ଭ ମୁଁ କାର ଆଦି ତେଜ ଗୁଣ ।
ତମ ଗୁଣରୁ ଜନମ ହେଲେ ପୁଣ ଯେତେ
ସାବଧାନେ ଶୁଣ ତାହା କହିବା ହୋ ତୋତେ
କାୟା ଲୋଭମୋହ ତମ ବ୍ୟାପ୍ତି ଅହଙ୍କାର
ତାମସ ଗୁଣରୁ ଜନ୍ମ ହେଲେ ତତପର ।
ଯାବତ ଲୋକ ତ୍ରିଗୁଣେ ହୋଇଛନ୍ତି ଜାତ
ଦେଖାନ୍ତି ମାୟାରେ ପଡ଼ି ଯେଝା କରାମତ ।
ଆବର କହିବା ଗୁପ୍ତକଥା ଶୁଣ ତୋତେ
ଏ ତିନିଗୁଣୁ ବାହାର ହୁଏ ଜାଣ ନିତ୍ୟେ ।
ଏକଥା ନିଶ୍ଚୟ ବୋଲି ମୁଖେ ନ ଜାଣନ୍ତି
ତୁ ଅବା ମିଥ୍ୟା ପାଞ୍ଚୁବୁ ମନେ ପାଇ ଭ୍ରାନ୍ତି ।
ଏ ମୋହର ଯେବେ ଜାଣ ଅଟେ ମାୟାପାଶ
ଏହାକୁ ପାରିଲେ ଛେଦି ଲଭିବ ମୋ ଯଶ ।
ଛେଦି ନପାରିଲେ ହୁଅନ୍ତି ମୋ ମାୟାରେ ବଶା
ସେ କାହୁଁ ତରେ ଏ ଭବସିନ୍ଧୁ ଅକଳଣା ।
ଯେବଣ ମାନବ ସବୁକାଳେ ମୋତେ ସେବେ
ମନରେ ସେ ଅନୁବ୍ରତେ ଭଜେ ବାସୁଦେବେ ।
ସେ ଲୋକ ମୋର ମାୟାରୁ ଜାଣ ତରିଯାଇ
ଏ ଭବଜଳେ ପ୍ରମାଦ ତାକୁ ନ ପଡ଼ଇ ।
ତୁ ଅବା କଥାଏ ଆଉ ପାଞ୍ଚୁବୁ ହୋ ପାର୍ଥ
ଜାଣିବା ଲୋକ ଭଜିବ ସିନା ଜଗନ୍ନାଥ ।
ଅଜଣା ଲୋକ ଭଜିବ ଆଉ କେବେ କାହୁଁ
ଏ ଦୁଇକଥା କହିବା ମୋତେ ମହାବାହୁ ।

ତୁମ୍ଭର ଏ ମାୟାରୁ ତ ସମସ୍ତେ ଉତ୍ପତ୍ତି
ତୁମ୍ଭଙ୍କୁ କହ ସେମାନେ କିମ୍ପା ନ ଚିହ୍ନନ୍ତି ।
ଏ ରୂପେ ମନେ ପାଞ୍ଚିବୁ ଅବା ବୀର ତୁହି
ତହିଁକି କଥାଏ ପାର୍ଥ କହେ ଶୁଣ ମୁହିଁ ।
ପାପିଷ୍ଠ ମୂର୍ଖ ଯେବଣ ଲୋକ ମନ୍ଦ ଅଟେ
ସେ ମୋର ମାୟାରେ ପଡି ଭ୍ରମେ ନାନାକୁଟେ
ଅସୁରଙ୍କଠାରୁ ସେହି ଦ୍ୱିଗୁଣ ବଳଇ
ଶୁଣ ହରିଭାବ ବିଷପ୍ରାୟ ଯେ ମଣଇ ।
ଏ ରୂପେ ପାପୀ ସଂସାରେ ହୁଅନ୍ତି ଯେତେଜନ୍ତୁ
ସେମାନେ ଜାଣିବେ କାହୁଁ ଆତ୍ମ ଗୁଣକର୍ମ ।
ଆଉ କଥାଏ କହିବା ପାର୍ଥ ଶୁଣ ତୋତେ
ଚାରି ପ୍ରକାରେ ଭଜନ୍ତି ଲୋକେ ଜାଣ ମୋତେ
ଦେହଦୁଃଖ ହେଲେ ମୋତେ ଆତଙ୍କରେ ଡାକେ
ମନସୁଖରେ ଥିଲେ ନଭଜେ ପୁଣ୍ୟଶ୍ଳୋକେ
ଦାରା ସୁତ ପଦାର୍ଥରେ ମୋହ ହେଉଥାଇ
ମୋହବନ୍ଧେ ପଡ଼ିଣ ସେ ମୋତେ ନଭଜଇ ।
କେ ଅବା ଶ୍ରଦ୍ଧା ଚିତ୍ତରେ ଭଜେ ମୋର ନାମ
କେ ମୋତେ ଭଜି ଲୋଡ଼ଇ ସ୍ୱର୍ଗମର୍ତ୍ତ୍ୟଧାମ
ଯେ ମୋତେ ଚିହ୍ନିଣ ଭଜେ ସେ ମୋ ଅଟେ ଭକ୍ତ
ଏ ରୂପେ ଏ ଚାରିକଥା ଶୁଣ ପଣ୍ଡୁସୁତ ।
ଏ ଚାରିମାର୍ଗେ ଭଜନ୍ତି ମୋତେ ଯେତେଜନ
ତହିଁରୁ ଯେ ଭଲ ତାହା କହିବା ହେ ପୁଣ ।
ଯେହୁମୋତେ ଜ୍ଞାନବଳେ ରଖେ ଧ୍ୟାନକରି
ସକଳ ସମର୍ପି ମୋତେ ଭଜେ ନରହରି ।
ସେ ମୋହର ଅଟେ ଜାଣ ଭକ୍ତ ପ୍ରିୟ ଅତି
ମୁହିଁ ଯେ ତାହାର ଭାବ ଘେନି କରେ ଗତି ।
ଏମନ୍ତ ବୋଲିଣ ହରି ପାର୍ଥମୁଖ ଚାହିଁ
ବୋଇଲେ ଏଥିରେ ଦ୍ୱିଧା ମନ କରୁ ତୁହି ।
ବୋଲିବୁ କୃତାର୍ଥ କରି ଜଣକୁ ତ ଦେଲ
ଏ ତ୍ରିଲୋକର ଆଉ କେବେ କରୁ ଭଲ ।
ଏ ରୂପେ ବିଚାର ଅବା କରିବୁ ଗୋ ମନେ
ତହିଁକି କଥାଏ କହିଦେବା ଶୁଣ କର୍ଣ୍ଣେ ।
କାର୍ଯ୍ୟ ପାଇବାଯାଏ ସେ ତିନି ଲୋକଜାଣ
ଭଜନ୍ତି ମନରେ ସୁଖ ପାଞ୍ଚି ନାରାୟଣ ।
ସୁଖପାଇଲେ କେବେ ନକରେ ମନେଲୋଡ଼ା
ତେଣୁ ସେହି ମୂର୍ଖେ ଜାଣ ଜ୍ଞାନେ ହୋନ୍ତି ଛଡ଼ା
ଯେ ମୋତେ ଚିହ୍ନି ବସେ ଯେ ମୋର ଅଟେ ଆତ୍ମା
ଶୁଣ ଆହେ କୁନ୍ତୀସୁତ ତାହାର ମହିମା ।
ସମସ୍ତେ ଦିଶନ୍ତି ତାଙ୍କୁ ବାସୁଦେବ ପ୍ରାୟେ
ସବୁକାଳେ ସେହି ଲୀନ ହୋଏ ମୋର ଦେହେ

ଏମନ୍ତ ଭାବେ ପ୍ରତ୍ୟକ୍ଷେ ମୋର ଭକ୍ତ ଜାଣ
ଏ ତିନିଲୋକ ମାତ୍ରକ କାମେ ଭ୍ରମ ପୁଣ ।
ମନର ସେ ସୁଖ ଭାବ ଘେନି ଯେଝାମତେ
ଫଳକୁ ବାଞ୍ଛା କରିଣ ଜପନ୍ତି ନିରତେ ।
ନାନାଦି ଦେବ ପୂଜନ୍ତି ଯାଇଁ ଦେହ ବଳେ
ବୋଲନ୍ତି କାରଣ ଏଥେ ପାଇବା ତତ୍କାଳେ ।
ଏ ରୂପେ ମନରେ ପାଞ୍ଚି ବସି ଚକାମାଡ଼ି
ଦେବୀଙ୍କୁ ପୂଜନ୍ତି ଚଣ୍ଡୀ ପୁରାଣକୁ ପଢ଼ି ।
ରକତ ଚନ୍ଦନକାଠ କରି କରମାଳା
ଦେବୀ ପୂଜନ୍ତି କରିଣ ମୋତେ ଅସଙ୍ଖୋଳା
ବୋଲନ୍ତି ତତ୍କାଳେ ବର ଦେବେ ଯାଚିଆଗ
ଠାକୁରାଣୀଙ୍କି ପୂଜିଲେ ଦେବ ଦିବ୍ୟଭୋଗ ।
ବୁଝିଲେ ସବୁ ଦେବୀଙ୍କ ହୃଦେ ଥାଇ ମୁହିଁ
ମୁଁ ଥାଇ ତହିଁ ବୋଲି ନପାରେ ଚିହ୍ନିକେହି ।
ବିଷ୍ଣୁର ପୂଜା ଲକ୍ଷ୍ମୀର ପୂଜା ବ୍ରତ ଯେତେ
ଭାଳନ୍ତି ଧର୍ମଦେବତା ପୂଜି ଅନୁବ୍ରତେ ।
ଶ୍ରୀବଳଭଦ୍ରଙ୍କୁ ପୂଜା ବାରଣ ଦିଅନ୍ତି
ସେମାନେ ମଲେ ନର୍କରେ ଯାଇ ପଡ଼ିଥାନ୍ତି ।
ସବୁ ଦେବତା ଉପରେ ଅଟେ ମୁହିଁ ରାଜା
ମୋତେ ନପୂଜି ଦେବତା କରେ ପୁଣ ପୂଜା ।
ତାହାଙ୍କ ଆଶା ଭଗ୍ନ ନକରେ ଜାଣ ମୁହିଁ
ଦେବତା ହୃଦେ ପଶିଣ ଅଳ୍ପବର ଦେଇ ।
ଶୁଣ ଭଦ୍ରାକାନ୍ତ କହନ୍ତି ଯେ ନାରାୟଣ
ସବୁ ଯେ କଲି ମୋତେ ନଚିହ୍ନେ ମୂଢ଼ଜନ ।
ଯେ ଯେଉଁ ରୂପେ ଭଜେ ସେ ରୂପ ଅଟେ ମୁହିଁ
ନ ଜାଣିଣ ମୋତେ ଅନ୍ୟ ଦେବ ପୂଜୁଥାଇ ।
ମୁଁ ସିନା ଦେବତାଯାକ ସ୍ଥାପିଅଛି ପୂର୍ବୁ
ବୁଝିଲେ ମୁଁ ତାଙ୍କ ପିତାମାତା ଅଟେ ସବୁ ।
ମନେ ବାଞ୍ଛିଲା ଫଳ ସେ ତେଣୁ ଜାଣ ପାଏ
ତୁ ଅବା କଥାଏ ପାଞ୍ଚିବୁ ହେ ଧନଞ୍ଜୟେ ।
ବୋଲିବୁ ସବୁରି ମନ ତୁମ୍ଭେ ଚିହ୍ନି ଜାଣ
ସେହି ଅବା ହେଲା ମୋକ୍ଷ ଭକତ ଭାବେଣ
ଆବର ତିନିଲୋକତ ତୁମ୍ଭ କଲା ମୂର୍ତ୍ତି
ଦେବତାଙ୍କୁ ଭଜି ଭଜି ଫଳ ଭୁଞ୍ଜୁଥାନ୍ତି ।
ଏଥି ଭଲମନ୍ଦ ମୋତେ ବୋଲିବୁ ତୁ କହ
ସେକଥା କହିବା ମଧ ଶୁଣ ପଣ୍ଡୁ ପୁଅ ।
ଯେବଣ ଭକ୍ତ ମୋହର ବ୍ରହ୍ମଜ୍ଞାନ ଜାଣେ
ରାତ୍ରଦିବସ ବସିଣ ଭଜେ ଅନୁକ୍ଷଣେ ।
ଏମନ୍ତ ଲୋକଙ୍କୁ ମୁହିଁ ଦିଅଇ ସୁଫଳ
ଅଚିନ୍ତେ ଜ୍ଞାନ ପାଇ ସେ ଲଭେ ଆଦିମୂଳ ।

ମୋ ନିମିତ୍ତ ଦେବତାଙ୍କୁ କରନ୍ତି ଯେ ଲୟେ
ତାହାର ଯେ ଫଳ ଊଣା ହୁଏ ଧନଞ୍ଜୟେ ।
ତୁ ଯେ ବୋଲିବୁ ଗୋବିନ୍ଦ ନାମ ସେହୁ ଛାଡ଼ି
ତୁମ୍ଭଙ୍କୁ ନପୂଜି ଆନ ଦେବେ ପୂଜେ ଲୋଡ଼ି ।
ଏଥିରେ ସେ ସନ୍ଧିକଥା କହିବା ହେ ବୀର
ମୁର୍ଖଲୋକଟି ଭାବ ନଜାଣଇ ମୋହର ।
କେତେ ଦେବତା ସଂସାରେ କରେ ମୁହିଁ ଏକ
ତାହାଙ୍କ ସଙ୍ଗେ କରନ୍ତି ମୂଢ଼େ ମୋତେ ଲେଖ
ବୋଲନ୍ତି ଦେବେ ପୂଜୁଛୁ ଜାଣ ଆମ୍ଭେ ନିତି
ତାହାଙ୍କ ସଙ୍ଗେ ଅଟନ୍ତି ସରି ଶିରୀପତି ।
ହରିଙ୍କି ଭଜିଲେ ଜାଣ ହୁଅଇ ଯେ ଭକ୍ତି
ଆନ୍ନ ଦେବତା ଦିଅନ୍ତି ଫଳ ସେହିମତି ।
ଏମନ୍ତ ବୋଲି ପାରନ୍ତି ମଞ୍ଚେ ମୂଢ଼ ନରେ
ଆମ୍ଭଙ୍କୁ କହନ୍ତି ସମ ଅନ୍ୟ ଦେବତାରେ ।
ଏଣୁ ସେହି ଦେବତାଙ୍କୁ ଭଜନ୍ତି ଯେ ମୂର୍ଖେ
ମୁହିଁ ସେ ଦେବତା ଦେହେ ବସିଥାଇ ସୁଖେ ।
ଦେବତା ମଥାରେ ବସିଛନ୍ତି ବୋଲି ହରି
ଏକଥା ନଜାଣି ମୂଢ଼େ ଫଳ ବାଞ୍ଛାକରି ।
ଅକ୍ଷୟ ବ୍ରହ୍ମ ଅଟଇ ମୁହିଁ ଅଣାକାର
ଏ କଥାକୁ ନ ଚିନ୍ତନ୍ତି ଅଜ୍ଞ ମୂର୍ଖ ନର ।
ମୋତେ ହେଁ ସେ ନ ଚିହ୍ନନ୍ତି ଜ୍ଞାନ ନ ଜାଣନ୍ତି
ସେ କିସ ଜାଣିବେ ମୋର ସୋହଂଲୀଳା ଗତି
ସବୁରି ମନକୁ ମୁହିଁ ଜାଣେ ପଣ୍ଡୁଶିଷ୍ୟ
ତିନି କଥାରେ ଅଟଇ ମୋର ଭାବରସ ।
ସେ ତିନି କଥାର ନାମ ଶୁଣ ହେ ଅର୍ଜ୍ଜୁନ
ଭୂତ ଭବିଷ୍ୟ ଆବର ଜାଣ ବର୍ତ୍ତମାନ ।
ଗଲା କଥାମାନଙ୍କୁ ଯେ ଭୂତ ବୋଲି କହି
ଆସିବା କଥାଯାକ ଯେ ଭବିଷ୍ୟ ବୋଲାଇ ।
ଦେଖିବାର କଥାଯାକ ବୋଲି ବର୍ତ୍ତମାନ
ଶୁଣ କୁନ୍ତୀସୁତ କହନ୍ତି ଯେ ଭଗବାନ ।
ଏ ରୂପେ ଏ ତିନିକାଳ ନିତ୍ୟ ଭୋଗ ହୋଇ
ଭବିଷ୍ୟ କଥା କାହାକୁ ଏକା ଜଣା ନାହିଁ ।
ସକଳ ପ୍ରାଣୀଙ୍କ ହୃଦମଧ୍ୟେ ମୁହିଁ ବସି
ସବୁରି ମନକଥା ମୁଁ ଜାଣେ ଅହର୍ନିଶି ।
ଏ ରୂପେ ମୁଁ ପ୍ରାଣୀଙ୍କର ଥାଇ ହୃଦଗତେ
ସବୁମୁହିଁ ଦେଖୁଥାଇ ନଜାଣେ କେ ମୋତେ
ପ୍ରାଣୀମାନଙ୍କର ହିଂସା ଉଦ୍‌ବେଗ ଅମର୍ଷ
ଏମାନେ କରନ୍ତି ତାଙ୍କ ହୃଦେ ଜାଣ ବାସ ।
କପଟ ତାପସଭାବ ହିଂସାମୟ ଘେନି
କାମରେ ମୋହ ହୋଇ ନପାରେ ମୋତେ ଚିହ୍ନି
ପୃଥିବୀରେ ମୂଢ଼ ବୋଲି ସେମାନଙ୍କୁ ଜାଣ
ତାହାର ମନରେ ଜ୍ଞାନକେବେ ନୋହେ ପୁଣ
ପବିତ୍ରବନ୍ତ ପ୍ରାଣୀର ମନ ସଦା ତୃପ୍ତି
ଜୀବ ପରମ ଚିହ୍ନି ସେ ମୋତେ ଭଜେ ନିତି ।
ପରମହଂସକୁ ଚିହ୍ନି ପାପ କ୍ଷୟ କରେ
ଜନ୍ମ ମରଣ ଏ ଦୁଇ କଥାରୁ ସେ ତରେ ।
ଶ୍ରୀବ୍ରହ୍ମ ପୁରୁଷକୁ ତ ଲଭିବ ସେ ଜାଣ
ଲେଉଟି ଜନମି ହୋଏ ସେ ମହା ବ୍ରହ୍ମଣ୍ୟ ।
ଶ୍ରୀବ୍ରହ୍ମ ବିଦ୍ୟା ମୋର ଯେ ଜାଣେ ନିଷ୍ପାପର
ସେଜାଣେ ଏକାମୋତେ ମୁଁ ଜାଣେ ତାକୁ ବୀର
ଜ୍ଞାନକୁହିଁ ନିଷ୍ପାପର ଜାଣନ୍ତି ଯେ ଜନ
ସେ ଜାଣେ ମୋତେ ପାର୍ଥ ମୁଁ ଜାଣେ ତାର ମନ
ମରଣ କାଳରେ ମୋର ନାମ ସୁମରିଲେ
ସେ ଲୋକମୋହର ଦେହେ ଲୀନ ହୁଏ ଭଲେ
ଅର୍ଜ୍ଜୁନ ଆଗେ କହନ୍ତି ପ୍ରଭୁ ଜ୍ଞାନବାଣୀ
ଧୃତରାଷ୍ଟ୍ର ଆଗେ ତାହା ସଞ୍ଜୟ ବଖାଣି ।
ସପ୍ତମ ଖଣ୍ଡ ଯେ ଏହୁ ନୃସିଂହ ପୁରାଣ
କହନ୍ତି ନାରଦ ଋଷି ଆଗେ ବ୍ରହ୍ମା ପୁଣ ।
ସେ ଜ୍ଞାନଯାକ ଅର୍ଜ୍ଜୁନ ଆଗେ ଆଣି ହରି
କହନ୍ତି ସେ ବ୍ରହ୍ମବିଦ୍ୟା ଶ୍ରୀମୁଖେ ଓଁକାରି ।
ଜନ୍ମେଜୟ ରାଜାଙ୍କୁ ଶ୍ରୀ ବଇଶମ୍ପାୟନ
କହନ୍ତି ପ୍ରଚ୍ଛନ କରି ଜ୍ଞାନେ ଦେଇ ମନ ।
ସବୁ ପୁରାଣ କଥାଏ ଗ୍ରନ୍ଥେ ଅଛୁ ପୁରି
ଶୁଣିମା ଲୋକ ସଂସାରୁ ଜାଣ ଯିବେ ତରି ।
କୋଟିତୀର୍ଥେ ସ୍ନାନକଲେ ହେବ ଯେତେ ପୁଣ୍ୟ
ଶୁଣି ଏ ପୁରାଣ ବିଷ୍ଣୁଠାରେ ହେବ ଲୀନ ।
ବୃଷଳୀ ପାପ ଗୋହତ୍ୟା ସ୍ତିରୀହତ୍ୟା ଯାଏ
ଶୁଣିଲେ ବ୍ରହ୍ମାଣ୍ଡ ହତ୍ୟା ଆଦି ଯିବ କ୍ଷୟେ ।
ଗୋଘ୍ନ କୃତଘ୍ନ ବାଳକ ହତ୍ୟା କରିଥିଲେ
ଏ ପାପ ନ ଲାଗଇ ଏ ପୁରାଣ ଶୁଣିଲେ ।
ନୃସିଂହ ପୁରାଣ ଏହା ବ୍ରହ୍ମବିଦ୍ୟା ଅର୍ଥ
ପାର୍ଥର ଆଗେ କହନ୍ତି ଦେବ ଜଗନ୍ନାଥ ।
ସେ ପ୍ରଭୁ ଜଗନ୍ନାଥଙ୍କ ଚରଣେ ମୋ ସେବା
ବିପ୍ର ପୀତାମ୍ବରକୁ ଯେ ବଇକୁଣ୍ଠ ଦେବା ।
ଏଥିଉତ୍ତାରେ ଯେ ଧୃତରାଷ୍ଟ୍ରଙ୍କର ଆଗେ
ଗାଲବ ପୁତ୍ର କହନ୍ତି ଯାହା ବ୍ରହ୍ମଭାଗେ ।
ସଞ୍ଜୟ ବୋଇଲେ ରାଜା ଶୁଣ କୁରୁମଣି
ଅର୍ଜ୍ଜୁନ ଆଗେ କହନ୍ତି ଯାହା ଚକ୍ରପାଣି ।
ଶ୍ରୀବ୍ରହ୍ମଜ୍ଞାନ ଅର୍ଥ ଏ ଜାଣ ପଦ ପଦ
ଅର୍ଜ୍ଜୁନ ଆଗେ କହନ୍ତି ଏହା ଶ୍ରୀଗୋବିନ୍ଦ ।

ଶ୍ରୀମୁଖୁ ଶୁଣି ଲେଉଟି ପାର୍ଥ ପୁଚ୍ଛେ ବାଣୀ
ବୋଲେ ସଂଶୟ ଲାଗିଲା ମୋତେ ଚକ୍ରପାଣି
ଆହୁରି କଥାଏ ତେବେ ପୁଚ୍ଛିବି ଗୋବିନ୍ଦ
କହିବା ଯେ ଆଧାତ୍ମିକ ମୋତେ କଥାଭେଦ
ଅଧିଭୂତ ବୋଲି ଦେବ କାହାକୁଟି କହୁ
ଅଧି ଦଇବତ କିଏ କହ ମହାବାହୁ ।
ଅଧି ଯଜ୍ଞ ବୋଲି ପୁଣି ବୋଲନ୍ତି କାହାକୁ
ଏ ଚାରିକଥା ଫେଡ଼ିଣ କହିବା ଆମ୍ଭଙ୍କୁ ।
ମରଣ କାଳ ପ୍ରବେଶ ଆସି ହେବ ଯାର
କି ରୂପେ କାହିଁ ତୁମ୍ଭଙ୍କୁ ଚିହ୍ନିବ ସେ ନର ।
ଭୋ ପ୍ରଭୁ ଆଗ ମୋତେ ଏ କଥା ଦିଅ କହି
ଶୁଣିଣ ତମ ମୁଖରୁ ପ୍ରତେ ଯିବିମୁହିଁ ।
ଅର୍ଜ୍ଜୁନ ବାକ୍ୟେ ବୋଲନ୍ତି ପ୍ରଭୁ ଜଗନ୍ନାଥ
ଗୋଟିଏ ଗୋଟିଏ ଶୁଣ କହିବା ତ ପାର୍ଥ ।
ଯେବଣ ପ୍ରଭୁ ସେହୁ ନଯାଇ କେବେ ନାଶ
ଅଟନ୍ତି ଶ୍ରୀନିରାକାର ବ୍ରହ୍ମ ଜଗଦୀଶ ।
ଅବିନାଶୀ ପୁରୁଷ ଯେ ନିତ୍ୟ ଭାବଗ୍ରାହୀ
ଜୀବ ଆତ୍ମାକୁ ସାକ୍ଷାତେ ଜାଣ ବ୍ରହ୍ମ କହି ।
ତାଙ୍କୁ ଆଧାତ୍ମିକ ଆତ୍ମା ବୋଲି ପଣ୍ଡୁସୁତ
ସେ ଏକ ଜୀବ ହୋଇଣ ଅଲୋକିତେ ଜାତ
ଏ ଦେହରେ ଅନୁକ୍ଷଣେ କରଇ ସେ ବାସ
ଅଧିଭୂତ ବୋଲି ତାକୁ ଶୁଣ ପଣ୍ଡୁ ଶିଷ୍ୟ ।
ସବୁ କଥାକୁ କରାଇ ଯେହୁ ଉଦଯୋଗ
ଅଟଇ ଜାଣ ସେ ଅଧିଦେଇବତ ମାର୍ଗ ।
ଯୋଗଧାରୀମାନେ ମୃତ୍ୟୁ ସମୟରେ ଜାଣ
ମୋତେ ସ୍ମରଣ କରିଣ ଛାଡ଼ନ୍ତି ଯେ ପ୍ରାଣ ।
ତାହାକୁଟି ଅଧିଯଜ୍ଞ ବୋଲି ପାର୍ଥ କହି
ଯେ ଜାଣେ ମୋର ଭାବ ମୁଁ ତାଙ୍କୁ ଦେଖା ଦେଇ
ଏଥିରେ ସଂଶୟ କିଛି ନାହିଁ ପଣ୍ଡୁସୁତ
ଆବର ବାକ୍ୟ କହିବା ଶୁଣ ତୁ ସିଦ୍ଧାନ୍ତ ।
ମରଣବେଳେ ଯହିଁରେ ହେତୁ ଯାଏ ପଶି
ସେହିରୂପେ ଧରିଣ ସେ ଜନ୍ମ ହୁଏ ଆସି ।
ଏଣୁକରି ପାର୍ଥ କହୁଅଛି ଜାଣ ତୋତେ
ସବୁବେଳେ ସ୍ମରଣ ତୁ କରୁଥିବୁ ମୋତେ ।
ତୋର ମନବୁଦ୍ଧି ମୋହଠାରେ ଯେବେ ଦେବୁ
ସ୍ଥିରଭାବେ ଲୟ ଲଗାଇଣ ରଖିଥିବୁ ।
ତରିବୁ ନିଶ୍ଚୟ ପାର୍ଥ ସଂଶୟ ନକର
ସଂଗ୍ରାମ କରିଣ ଏବେ ଶତ୍ରୁକୁ ତୋ ମାର ।
ତୁ ଅବା ବୋଲିବୁ ମନ ଅଟେ ମୋ ଚଞ୍ଚଳ
ନିଶ୍ଚଳ କରି ରଖିଣ କେହ୍ନେ ଆଦିମୂଳ ।
ଏ ରୂପେ ମନରେ ପାର୍ଥ ପାଞ୍ଚିବୁ ତୁ ଅବା
ତହିଁର ମାର୍ଗ ଶୁଣ ତୋ ଆଗେ କହିଦେବା ।
ଏ ଜ୍ଞାନ ଅଭ୍ୟାସ କରେ ଯେହୁ ସଦାବେଳେ
ବ୍ରହ୍ମ ପୁରୁଷକୁ ସେହୁ ଭେଟଇ ତତ୍କାଳେ ।
ସେ ପ୍ରଭୁର ମହିମା ଯେ ଏମନ୍ତଟି ଅଟେ
ସର୍ବଦା ସିଦ୍ଧ ସ୍ୱରୂପ ମୂର୍ତ୍ତିରୂପେ ଘଟେ ।
ସମସ୍ତେ ଜୀବଙ୍କର ସେ ଅଟେ ମହାମୋକ୍ଷ
ପ୍ରାଣୀମାନଙ୍କୁ ଉଦ୍ଧାରି ପାରନ୍ତି ପ୍ରତ୍ୟକ୍ଷ ।
ସୂର୍ଯ୍ୟରୁ ଶତେକ ଗୁଣ ଅଟେ ତେଜ ତାର
ସକଳ ଅବିଦ୍ୟା ବନ୍ଧୁ ଅଟଇ ଯାହାର ।
ଏମନ୍ତ ପ୍ରଭୁଙ୍କୁ ଲୋକେ ମରଣର କାଳେ
ଏକଦୃଷ୍ଟି ଲୟକରି ଚାହେଁ ବେନିଡୋଳେ ।
ମନକୁ ନିଶ୍ଚଳ କରି ସମଗ୍ର ଜପିବ
ଭ୍ରୂଲତା ମଧ୍ୟେ ପ୍ରାଣକୁ ନେଇ ସଞ୍ଚରିବ ।
ଏମନ୍ତ ଲୋକର ପ୍ରାଣ ବ୍ରହ୍ମେ ଯାଇ ମିଶେ
ଏକଥା ନିଷ୍ଠେ କହିଲୁ ପାର୍ଥ ତୋହ ପାଶେ ।
ଯେବଣ ପ୍ରଭୁର ରୂପ ଅଟେ ବେଦତତ୍ତ୍ୱ
ସେ ପୁରୁଷ କହଇ ଯେ କର୍ଣ୍ଣେ ଦେଇ ମନ୍ତ୍ର ।
ସେ ମନ୍ତ୍ର ତତ୍ତ୍ୱରେ ଯେହୁ ହେତୁ ରଖିଥିବ
ମରଣେ ଆନନ୍ଦେ ଯାଇ ଶରଣ ପଶିବ ।
ବ୍ରହ୍ମଚାରୀମାନେ ବସି ମୋହର ରୂପକୁ
ଲଭନ୍ତି ଧ୍ୟାନକରି ସେ ଅକ୍ଷୟ ପଦକୁ ।
ଏବେ ମୁହିଁ ଜ୍ଞାନସଂଖ୍ୟା କରି ମୁଖାଗ୍ରତ
କହିବି ଶୁଣ ତୁ ତାହା ଭଦ୍ରାଦେବୀ କାନ୍ତ ।
ଏ ଦେହ ଭିତରେ ଅଛି ଯେଉଁ ଦଶଦ୍ୱାର
ମନ ସଞ୍ଜମ କରିଣ ନିରୋଧି ତା ଧର ।
କାଉଁରୀ ନଗ୍ର ଯେ ଦଶଦ୍ୱାର ପରେ ଅଛି
ଗୋଲକ ହାଟ ଗୋଟାଏ ସେଠାରେ ବସିଛି
ପ୍ରାଣକୁ ମୁର୍ଦ୍ଧନା ପରେ ପୁରାଇ ରଖିବ
ଏ କଥାରେ ଲୟକରି ମୋତେ ଯେ ଭଜିବ ।
ଏକାକ୍ଷର ବ୍ରହ୍ମେ ହେତୁ ରଖିବ ସେ ନେଇ
ଭଜିବ ସେ ବ୍ରହ୍ମହେତୁ ରଖି ଭାବଗ୍ରାହୀ ।
ପରମଗତି ଲଭଇ ଯାଇ ସେହୁ ପ୍ରାଣୀ
ଶୁଣ ଧନଞ୍ଜୟ କହନ୍ତି ଯେ ଚକ୍ରପାଣି ।
ବିଷ୍ଣୁ ଭକତର ନାହିଁ କାହାକୁ ବା ଡର
ସଂସାର ଲୋକଯାଏ ଯେ ହୁଅନ୍ତି ଅକ୍ରାମର ।
ମୋତେ ଚିହ୍ନିଣ ହେ ପାର୍ଥ ଭଜେ ଯେହୁ ନିତ୍ୟେ
ତାହାକୁ ଦୟା ମୋହର ଏହି ଅନୁବ୍ରତେ ।
ସେ ଲୋକମାନଙ୍କୁ କରେ ମୁଁ ସୁଗତି ଦାନ
ସେ ଦେହେ ପରମ ଗତି ଲଭେ ସେହୁ ଜନ ।

ଆହୁରି କଥାଏ ମନ ମଧ୍ୟେ ବାଞ୍ଛାକରି
ଥୋକେ ଲୋକ ବସନ୍ତି ସେ ବ୍ରହ୍ମ ଅନୁସରି ।
ପୁଣି ସେହି ମୃତ୍ୟୁପରେ ଆସି ନରଲୋକେ
ଜନ୍ମଲାଭ ଆସି କରେ କର୍ମର ବିପାକେ ।
ଲେଉଟି କଳ୍ପନା କଥା ତାର ଆସି ପଡ଼ି
ଲଭଇ ସଂସାର ଜନ୍ମ ବାହୁଡ଼ି ବାହୁଡ଼ି ।
ଏ କଥାକୁ ଲଭକରି ମନେ ତୋର ଘେନ
ମୋ ପାଦେ ଶରଣ ପଶି ଅଙ୍ଗେ ହୁଅ ଲୀନ ।
ମୋ ଦେହରେ ଲୀନ ହେଲେ ଜନମ ନୋହିବୁ
କେବେ ହେଁ ସଂସାର ଚକ୍ରେ ଯାଇ ନ ପଡ଼ିବୁ ।
ମୁହିଁ ବ୍ରହ୍ମାଙ୍କ ପୃଥ୍ୱୀରେ ଜାଣ କଲି ଜାତ
ସେ କଥା ମଧ୍ୟ କହିବା ଶୁଣ ପଣ୍ଡୁସୁତ ।
ପଳାଇ ମୁଁ ସଂହାରଣ ରାତ୍ର ଦିବାଭାଗେ
ଏକଥା ଅଭ୍ୟାସ ଯୋଗେ ରହି ଚାରିଯୁଗେ ।
ବ୍ରହ୍ମାକୁ ଯେ ଦିବାରାତ୍ର ହୁଏ ଯେତେ ଜାଣ
ସେ କଥାହିଁ ପରିମାଣି କହିବା ଯେ ଶୁଣ ।
ଦଇବୀ ଯୁଗରେ ପାର୍ଥ ହେଲେ ସହସ୍ରେ ଯୁଗ
ବ୍ରହ୍ମାଙ୍କୁ ହୁଏ ଗୋଟିଏ ଦିନ ଜାଣ ଭୋଗ ।
ପୁଣି ହିଁ ଆସି ହୋଇଲେ ରାତ୍ର ପରବେଶ
ଲେଉଟି ସହସ୍ର ଯୁଗେ ହୁଏ କାଳ ଶେଷ ।
ଲେଉଟି ଯେ ଅହୋରାତ୍ର ଦିନେ ଭୋଗ ଯାଇ
ପୃଥିବୀ ସର୍ଜନା ଏକଦିନ କରୁଥାଇ ।
ଶୁଣ ଭଦ୍ରାକାନ୍ତ କହନ୍ତି ଯେ ନାରାୟଣ
ରାତ୍ରକୁ ପ୍ରଳୟ କରି ନିଦ୍ରାଯାଏ ପୁଣ ।
ଏ ରୂପେ ସର୍ଜେ ସଂସାରେ ସବୁ ବେଦବର
ଗତ ଆଗତ ଏ ଆଦି ବିବିଧ ପ୍ରକାର ।
ଏ ରୂପେ ସଂସାରେ ଚାରିଖାନି ଜନ୍ତୁଥାନ୍ତି
ପୁଣି ହିଁ କେତେକ କାଳେ ବିନାଶ ପାଆନ୍ତି ।
ଅବିନାଶି ପ୍ରଭୁ ଏକ ଜାଣ ଜଗଦୀଶ
ତାକୁ ଯେ ଚିହ୍ନେ ସାକ୍ଷାତେ ସେହି ବେଦବ୍ୟାସ
ସେ ଲୋକମାନେ ଅଟନ୍ତି ଜାଣ ଭକ୍ତ ମୋର
ତାହାଙ୍କୁ ପ୍ରଳୟ ଅଟେ କିଞ୍ଚିତ ପ୍ରକାର ।
ପରମ ଅକ୍ଷୟ ମୋକ୍ଷ ଜ୍ଞାନ ଗତି ପାଇ
ସେ ଗଲେ ମୋ ପୁରୁ ବାହୁଡ଼ିଣ ନ ଆସଇ ।
ବାହୁଡ଼ିଣ ଯେଉଁ ଲୋକ ଆସେ ତହୁଁ ପୁଣ
ସେ କଥା କହିବା ତୋତେ ଭଲକରି ଶୁଣ ।
ଦକ୍ଷିଣାୟନ ଅଟଇ ଯେଉଁ ଷଡ଼ମାସ
କକଡ଼ାଠାରୁ ତୁ ଧନୁ ଯାଏ ଲେଖି ବସ ।
ଏ ମାସମାନଙ୍କେ ଯେତେ ଲୋକ ଯାନ୍ତି ମରି
କର୍ମଆଦି ଯୋଗପଥେ ତାଙ୍କୁ ଲେଖାକରି ।

ମଞ୍ଚରେ ଦେହ ଛାଡ଼ିଣ ସ୍ୱର୍ଗେ ଯାନ୍ତି ଚଳି
ସେଠାରେ ସେ ସ୍ୱର୍ଗଭୋଗ କରନ୍ତିଟି ମିଳି ।
ବାହୁଡ଼ି ସେ ମଞ୍ଚପୁରେ ହୁଅନ୍ତି ଜନମ
ଶୁଣ ଫାଲଗୁନି କହନ୍ତି ଯେ ପରଂବ୍ରହ୍ମ ।
ନାନା ତୀର୍ଥ କରି ପୁଣ୍ୟ ନାନାବ୍ରତ କରି
ଲେଉଟି ସ୍ଥାନକୁ ଆସନ୍ତି ସେ ଦେହ ଧରି ।
ଯେତେକ ଲୋକ ବସନ୍ତି ମୋର ସ୍ଥାନେ ଯାଇ
ତାହାଙ୍କ କଥା ତୁ ଶୁଣ ଭୀମ ସାନଭାଇ ।
ମକରୁ ମିଥୁନ ଯାଏ ଯେଉଁ ଷଡ଼ମାସ
ସେ ଷଡ଼ମାସ କଥା ତୁ ଶୁଣ ପଣ୍ଡୁଶିଷ୍ୟ ।
ଉତ୍ତରାୟଣ ଅଟେ ଏ ଷଡ଼ମାସ ଦିନ
ଏ ତିନିକାଳେ ପ୍ରକାଶେ ଅଗ୍ନିଜ୍ୟୋତି ପୂର୍ଣ୍ଣ ।
ତହିଁରେ ମରନ୍ତି ଯେତେ ଭକତ ମୋହର
ଏ ସଂସାରକୁ ଆଉ ନ ଫେରନ୍ତି ସେ ନର ।
ଏ ଶ୍ରୀକୁରୁକ୍ଷେତ୍ର ସଦା ଯେଉଁ ପୁଣ୍ୟ ସ୍ଥାନ
ପାର୍ଥକୁ କହନ୍ତି ବ୍ରହ୍ମଜ୍ଞାନ ଭଗବାନ ।
ଧୃତରାଷ୍ଟ୍ରଙ୍କୁ ସଞ୍ଜୟ ମନ୍ତ୍ରୀ ତାହା କହେ
ହରି ଅର୍ଜୁନ ବାକ୍ୟ ଏ ଅଟେ ଜ୍ଞାନମୟେ ।
ପରୀକ୍ଷ ରାଜପୁତ୍ର ଶ୍ରୀଜନ୍ମେଜୟ ରାଜା
ବଇଶମ୍ପାୟନଙ୍କର କରି ପାଦପୂଜା ।
ସେ ଗ୍ରନ୍ଥର ଅର୍ଥଯାକ ଋଷିଙ୍କୁ ପଚାରି
କହନ୍ତି ସେ ବଇଶମ୍ପାୟନ ତପଚାରୀ ।
ତାହା ପିତାମହମାନଙ୍କର କଥାଯାକ
ପ୍ରଚ୍ଛିନ୍ନ କରି କହନ୍ତି ସବୁ ଋଷି ବାକ୍ୟ ।
ନୃସିଂହ ପୁରାଣ ସପତମ ଖଣ୍ଡ ଅର୍ଥ
ବିପ୍ର ପୀତାମ୍ୱରକୁ ଯେ ରଖ ଜଗନ୍ନାଥ ।
ଶୁଣ ଆହେ ଜନ୍ମେଜୟ ଏ ଉତ୍ତାରେ ବାଣୀ
କହନ୍ତି ଶ୍ରୀକୃଷ୍ଣ ଯାହା ଅର୍ଜୁନକୁ ପୁଣି ।
ଅନ୍ଧରାଜାଙ୍କୁ ସଞ୍ଜୟ ମନ୍ତ୍ରୀ ତାହା କହେ
ହରି ଅର୍ଜୁନଙ୍କ ବାକ୍ୟ ନୀତି ଜ୍ଞାନମୟେ ।
ଶ୍ରୀକୁରୁକ୍ଷେତ୍ରେ ସ୍ଥାନେ ଯେ ନନ୍ଦିଘୋଷ ରଥେ
ଆନନ୍ଦେ ବସି କହନ୍ତି ପ୍ରଭୁ ଜଗନ୍ନାଥେ ।
କପିକେତନ ବାନା ଯେ ଉଡେ ଫରଫର
ଆକାଶେ ପ୍ରକାଶେ ଯେହ୍ନେ ପ୍ରଭା ଦିବାକର
ନନ୍ଦିଘୋଷ ରଥେ ବିଜେ ପାର୍ଥ ଭାବଗ୍ରାହୀ
ନୃସିଂହ ଛାମୁରେ ଯେହ୍ନେ ପ୍ରହଲାଦ ରହି ।
ହର୍ଷେ ପାର୍ଥକୁ କହନ୍ତି ଜ୍ଞାନ ଦାମୋଦର
ବୋଲନ୍ତି ଜ୍ଞାନ ଶୁଣିଣ ପୁରା ତୋ ଉଦର ।
ଗୁପତଜ୍ଞାନକୁ ଯେବେ ନିଷ୍ଠେ କେ ଶୁଣି
ଏ ଭବସାଗର ତେବେ ତରଇ ସେ ପ୍ରାଣୀ ।

ଭୋ ପାର୍ଥ କହିବା ସେହି କଥାଶୁଣ ତୋତେ
ଏ ଜ୍ଞାନ ଶୁଣିବ ଏକା ଗୁରୁ ମୁଖାଗ୍ରତେ ।
ଯେବଣ ଜ୍ଞାନ ପାଇ ସୁବୁଦ୍ଧି ସାଧୁଜନେ
ସଂସାର ସିନ୍ଧୁ ତରନ୍ତି ନଦୀନାବେ ଯେହ୍ନେ ।
ତୋରେରେ କହିବା ସେହି ଜ୍ଞାନ ପଣ୍ଡୁସୁତ
ଏହାକୁ ହେତୁ କରିଣ ରଖ ହୃଦଗତ ।
ପୃଥ୍ୱୀରେ ଯେତେ ପୁରାଣ ବିଦ୍ୟା ଅଛି ହୋଇ
ତାଙ୍କପରେ ରାଜା ବ୍ରହ୍ମଜ୍ଞାନକୁ ଯେ କହି ।
ଆବର ସଂସାରେ ଅଛି ଯେତେ ବିଦ୍ୟାଯାକ
ଶ୍ରୀଚଣ୍ଡୀ ପାଷାଣ୍ଡ ବିଦ୍ୟା ମହାଖଳା ଶ୍ଳୋକ
ସ୍ତମ୍ଭନ ମୋହନ ମରଣ ଯେ ଉଚ୍ଚାଟନ
ଧରଣ ଧାରଣ ଲୋପ୍ୟ ଗାରେଢ଼ି ବଖାଣ ।
ଏ ରୂପେ ଛନ୍ତି ଭବିଷ୍ୟଶାସ୍ତ୍ର ଜାଣ ଯେତେ
ସବୁରି ଉପରେ ରାଜା ଅଟେ ଜ୍ଞାନ ନିତ୍ୟେ ।
ପଦେ ପଢ଼ିଲେ ପବିତ୍ର ଯିବ ନିଶ୍ଚେଁ ହୋଇ
ପୁରାଣ ପଢ଼ି ପରମଗତି ନିଶ୍ଚେ ପାଇ ।
ଭଜି ପାରିଲେ ତତ୍କାଳେ ହୁଏ କାର୍ଯ୍ୟସିଦ୍ଧ
ଶୁଣ ପଣ୍ଡୁସୁତ କହନ୍ତି ଯେ ଚକ୍ରାୟୁଧ ।
ଏହି ବଡ଼ ଧର୍ମକଥା ଅଟେ ସଂସାରକୁ
ଆନରେ ନାହିଁତ ଗତି ପ୍ରାଣୀ ତରିବାକୁ ।
ବ୍ରହ୍ମଜ୍ଞାନର ମହିମା ଅଟେ ବଡ କଥା
ଜାଣିଲେ ଝଗଡ଼ା ହେବ କାହିଁକି ଯେ ବୃଥା ।
ଆମ୍ଭ କହିବା କଥା ଯେ ପ୍ରାଣୀ ନଶୁଣଇ
ସତ ଏ ବୋଲି ମନରେ ପ୍ରତ୍ୟେ ନ କରଇ ।
ମୁର୍ଖ ମହାମୂର୍ଖ ସେହୁ ଅଟେ ସବୁକାଳେ
କହନ୍ତି ସେ ପଦ୍ମମୁଖ ଶୁଣ ପଣ୍ଡୁବାଳେ ।
ସେ ମୁଢ ସେହୁ ପାଇବ ଏହା ଅବା କାହିଁ
ସଂସାରଯାକେ ଅବୋଧ ଅଟେ ବଡ଼ ସେହି ।
ମଞ୍ଚମଣ୍ଡଳରେ ଜନ୍ମ ମୃତ୍ୟୁ ଲଭିଥାଇ
ଅଜ୍ଞାନପଣେ କେବେହେଁ ମୋତେ ନ ଜାଣଇ
ମୁହିଁ ତ ସର୍ଜ୍ଜନା କରୁଅଛି ତିନିପୁର
ସ୍ୱର୍ଗ ମଞ୍ଚ ପାତାଳରେ ସୁରାସୁର ନର ।
ଏ ତିନିପୁର ଯାକରେ ପୂର୍ବୁ ପ୍ରାଣୀମାନ
ମୁହିଁ ସେ ସଂସାରେ କରିଅଛି ବଡ଼ସାନ ।
ବୁଝିଲେ ମୋହର ଦେହ ସର୍ବ ଜୀବମାନେ
ଲାଗିଣ ଥାଆନ୍ତି ଦେହେ ଜଳବିନ୍ଦୁ ଯେହ୍ନେ ।
ମୁଁ ପୁଣି ଲାଗି କାହିଁ ନ ଥାଇ ପଣ୍ଡୁସୁତ
ସୂକ୍ଷ୍ମରେଣୁ ପରମାଣେ ହୋଇଲେ ଲକ୍ଷିତ ।
ତୁ ଅବା ବୋଲିବୁ ସେହୁ ତୁମ୍ଭଙ୍କୁ ଲାଗିଲେ
କି ରୂପେ ଅଲଗା ତୁମ୍ଭେ ହେଲ ତାଙ୍କୁ ଭଲେ ।

ତହିଁକି ଯେ ଉପଲକ୍ଷ୍ୟ ଦେବା ଶୁଣ ତୁହି
ମୋହରି ଦେହକୁ ଲାଗିଛନ୍ତି ସବୁଦେହୀ ।
ଯେହ୍ନେ ଜଳରୁ ଉପୁଜେ ଜାଣ ବିନ୍ଦୁମାନ
ମୁହିଁ ସଂସାରେ କରିଛି ଜାଣ ବଡ଼ସାନ ।
ତୋର ଦହନୁ ଯାବତ ଜୀବମାନ ଜାତ
ଲାଗି ରହିଥାନ୍ତି ଜାଣ ଜଳବିନ୍ଦୁ ବତ ।
ତହିଁକି କଥାଏ କହି ଦେବା ଦୃଷ୍ଟାନ୍ତର
ବଢନ୍ତି ମୋହର ଦେହେ ଲାଗି ସବୁ ନର ।
ଯେମନ୍ତେ ଜଳରୁ ପ୍ରକାଶଇ ବିନ୍ଦୁ ଫୁଟି
ଜଳଲାଗି ଫାଟିଯାଏ ତାର କାୟା ଗୋଟି ।
ଜଳରେ ଲାଗିଥାଏ ସେ ଜଳୁଁ ନୁହେଁ ଭିନ୍ନ
କହନ୍ତି ଶ୍ରୀମୁଖେ ହରି ଶୁଣ ପଣ୍ଡୁନାନ ।
ମୁହିଁ ଲାଗିଛି ସଂସାରେ ତାଙ୍କୁ ଜଳପ୍ରାୟେ
ଯେ ରୂପେ ଜଳରୁ ଫୁଟି ବିନ୍ଦୁକ୍ଷୟ ଯାଏ ।
ମୋ ଯୋଗମାୟା ମହିମା ଅଟେ ଅଗୋଚର
ତହିଁକି କଥାଏ ଲକ୍ଷ୍ୟ କହିବା ହେ ବୀର ।
ଗଗନେ ରବି ହୁଅନ୍ତି ଜାଣ ଯେହ୍ନେ ଉଦେ
ସଂସାରଯାକ ବ୍ୟାପି ନଲାଗେ କାର ହୃଦେ ।
ତାହାଙ୍କ କିରଣଯାକ ପଡେ ସବୁଠାରେ
ସେ ରୂପେ ଅଛଇଁ ମୁହିଁ ପ୍ରାଣୀ ହୃଦୟରେ ।
ସେ ମୃତ୍ୟୁ ହୋଏ ତୋହର ହୋଏଲୟ ସୃଷ୍ଟି
ତାହାର ପ୍ରକୃତିଗଣ ନାଶ ହୁଅନ୍ତିଟି ।
ପୁଣି ସେ ପ୍ରାଣୀଙ୍କି ଜାତକରେ ଯେତେବେଳେ
କର୍ମକୁ ସଙ୍ଗେ ଘେନିଣ ଜନ୍ମେ ତତକାଳେ ।
ପୁଣି ହିଁ ପ୍ରକୃତିଗଣ ଘେନି ପ୍ରାଣୀମାନେ
ମୃତ୍ୟୁ ହେଲାରୁ ଜନ୍ମଇ ସେହୁ କେତେଦିନେ ।
ମୋହର ହୃଦରେ ତାଙ୍କୁ ଥୋଇଥାଏ ଆଣି
ଲେଉଟି ପକାଇ ଦିଏ ରଜ ବୀର୍ଯ୍ୟେ ପୁଣି ।
ଉତ୍ତମ ଲୋକଙ୍କୁ ନେଇ ଭଲସ୍ଥାନେ ଖଞ୍ଜେ
ଶୁଣ ଧନଞ୍ଜୟ ସେ କହନ୍ତି ଦେବରାଜେ ।
ପାତକୀ ଲୋକ ସେ ପାପୀ ଘରେ ଯାଇ ଜନ୍ମେ
ମୁର୍ଖ ମୁଢ଼ପଣେ ଚଉରାଶି ଯୋନି ଭ୍ରମେ ।
ଏ ରୂପେ ସଂସାର ଯାକ ହୋନ୍ତି ଆତଯାତ
ଜନ୍ମିଲେ ଥରେ ଲେଉଟି ପୁଣି ଜନ୍ମେ ଶତ ।
ଜନ୍ମିଲେ ସେ ମରୁଥାଇ ମଲେ ଜନ୍ମୁଥାନ୍ତି
କହନ୍ତି ଯେ ଦେବରାୟେ ଶୁଣ ଭଦ୍ରାପତି ।
ଚଣ୍ଡାଳୁଁ ବ୍ରାହ୍ମଣଯାଏ ଜାତି ଲୋଡା ନାହିଁ
ଉପୁଜଇ ରଜବୀର୍ଯ୍ୟ ଭାଗ୍ୟ ତାର ଚାହିଁ ।
ତୁ ଅବା ବୋଲିବୁ ପ୍ରଭୁ ସବୁକଥା କହ
କର୍ମ ଅକର୍ମ ଶୁଣିଣ ଲାଗଇ ସନ୍ଦେହ ।

ଯେତେହେ କଥା କହିଲେ ମୋତେ ଦାମୋଦର
ତୁମ୍ଭ ସର୍ଜନା ଅଟଇ ଏ ସମସ୍ତ ନର ।
ଏ ରୂପେ ପାଞ୍ଚ ବୋଲିବୁ ଅବା ତୁହି ମୋତେ
ସେ କର୍ମ ଯାକ କହିବା ପାର୍ଥ ଶୁଣ ତୋତେ ।
ମୁଁ ଯେତେ କର୍ମ କରଇ ହୋଇ ଉଦାସୀନେ
କଲେ ବାଞ୍ଛା ଫଳହୋଇ ମୋହର ଯେସନେ
ଉଦାସୀ ଭାବେ ମୁଁ କରୁଥାଇ ଯେତେ କର୍ମ
ଉଦାସୀ ଭାବର ଦୋଷ ନୋହେ ଅଙ୍ଗେଜନ୍ମ
କେବଳ କରାଉଥାଇ ଉଦଯୋଗୀ ମୁହିଁ
ପ୍ରକୃତି ବଳୁଁ ଭିଆଣ ପୁଣି ହେଉଥାଇ ।
ତଥାପି ମୋହର ମାୟା ଦର୍ପଣର ମତ
ଇନ୍ଦ୍ରଜାଲ ପ୍ରାୟ ଉତପତ୍ତି ହୋଏ ନିତ୍ୟ ।
ସର୍ଜନା କରଇ ମୁହିଁ କ୍ଷୟକରେ ନାହିଁ
ଏ ମୋର ମାୟାସଂସାରେ କେହି ନଜାଣଇ
ଏ ରୂପେ ମୁଁ ଜୀବଯାକ ଜାତ କରୁଥାଇ
ଚିତ୍ର ପ୍ରତିମା ପ୍ରାୟେକ ପ୍ରାଣୀ ରୂପହେଇ ।
ନାନା ଯୋନିରେ ହୁଅଇ ଯାଇଁ ଆତଯାତ
ମଲେଣ ଜନ୍ମନ୍ତି ସେହୁ ହୋଇଣ ଆୟତ୍ତ ।
ସକଳ ଜନ ମଧ୍ୟରେ ମୂର୍ଖ ମୂଢ଼ଜନେ
ମନୁଷ୍ୟ ବୋଲି ବିଚାରୁଥାନ୍ତି ମୋତେ ମନେ
ପରମ ଧାତା ମୋତେ ନପାରେ ଚିହ୍ନି କେହି
ବୋଲନ୍ତି ଶ୍ରୀଜଗନ୍ନାଥ ଆମ୍ଭ ପ୍ରାଣ ଦେହୀ ।
ଏ ରୂପେ ବୋଲଇ ଆପେ ଆପେ ବଡ ମୁହିଁ
ମୁଁ କାର ପଣକୁ ବହି ଆପେ ନାଶ ଯାଇ ।
ମନେ ନଭଜି କୁମାର୍ଗେ ପ୍ରାଣୀ ହୋଇ ଗଞ୍ଜି
ମରନ୍ତି ଆଉ ଦେବତାମାନେ ଯାଇଁ ପୂଜି ।
ବୋଲନ୍ତି ପୂଜିବା ଯେବେ ଦେବତାଙ୍କୁ ନିତି
ବେଗେ ବର ଦେଇ ସେହୁ କରିବେ ମୁକତି ।
ଏମନ୍ତ ବିଚାରି ମୂଢ଼େ ମନେ ଆଶାକରି
ଲୋଭରେ ପଡ଼ିଣ ଫଳ ହୃଦେଥାନ୍ତି ଭରି ।
ଏମନ୍ତ ଲୋକର କେବେ ନୋହେ ବ୍ରହ୍ମଜ୍ଞାନ
କଳ୍ପନା କଳାରୁ ହୋଏ ସର୍ବ ବିନାଶନ ।
ହୃଦରେ ଲୋଭ କରିଣ ସର୍ବ ମୋହ ଘେନି
ଅସୁରପ୍ରାୟ ହୋଇ ନପାରେ ଆମ୍ଭ ଚିହ୍ନି ।
ଏମନ୍ତ ଲୋକ ମନୁଷ୍ୟପ୍ରାୟେ ମୋତେ ଘେନେ
ଚିହ୍ନି ନ ପାରଇ ମୋର ଲୀଳା କଥାମାନେ ।
ସେ ଅଟେ ପବିତ୍ର ସାଧୁ ସିଦ୍ଧ ପୁଣ୍ୟଜନ
ଦେବତା ପ୍ରାୟ ପ୍ରକୃତି ଯାର ବିଦ୍ୟମାନ ।
ମୋହର କ୍ରୀଡ଼ାର ଭାବ ଜାଣଇ ସେ ଲୋକ
ଜ୍ଞାନ ସମ୍ପାଦନ କରି ଭଜେ ପୁଣ୍ୟ ଶ୍ଳୋକ ।
ବୋଲଇ ସବୁ ଲୋକଙ୍କ ଉପରେଟି ଜାଣ
ଅବ୍ୟୟ ଅକ୍ଷୟ ନରସିଂହ ନାରାୟଣ ।
ଏମନ୍ତ ବିଚାରି ମନେ କରେ ମୋତେ ଲୟେ
ପଢ଼ିଣ ମୋହର ନାମ ଭଜେ ତାର ଦେହେ ।
ମୋହର ରୂପ ଦେଖିବା ସଦା ସେବା କରେ
ଗଦଗଦ ହୋଇ ମୁଖେ ବୋଲେ ହରେ ହରେ
ମୋର ଭକତି ଅମୃତ ପ୍ରାୟ ତାକୁ ଦିଶେ
ଅନେକ ରୂପରେ ସେବାକରେ ମନତୋଷେ
ତିନିପ୍ରକାରେ କରନ୍ତି ଲୋକେ ମୋତେ ସେବା
ସେ ତିନି କଥା ବୁଝାଇ ତୋତେ କହିଦେବା ।
ଜ୍ଞାନକୁ ଅନୁସରଣ ଥୋକେ ଲୋକ ମୋତେ
ବୋଲନ୍ତି ଶ୍ରୀହରି ପୁରିଛନ୍ତି ହୃଦଗତେ ।
ଜ୍ଞାନ ନଚିହ୍ନି କରନ୍ତି ମୋତେ ତପ ନିତ୍ୟ
ଶୁଣ ପଣ୍ଡୁସୁତ କହନ୍ତି ଯେ ଜଗନ୍ନାଥ ।
ଥୋକାଏ ଲୋକ ଘେନନ୍ତି ପୁଣ ଏକ ହରି
ଜପନ୍ତି ବିଷ୍ଣୁରେ ବଶ ହୋଇ ମାଳା ଧରି ।
ଥୋକାଏ ଲୋକସେବକ ପଣେ ମୋତେ ସେବି
ସେବାରେ ମୋ ଥାନ୍ତି ଶ୍ରୀପାଦପଦ୍ମ ଭାବି ।
ଆଉ କଥାଏ କହିବା ପାର୍ଥ ତୋତେ ଶୁଣ
ପଞ୍ଚ ଯଜ୍ଞ କର୍ମ ଅଟନ୍ତି ସେ ନାରାୟଣ ।
ସେ ଯେତେ ଯଜ୍ଞ କଲେ ହେଁ ଅଟେ ସବୁମୁହିଁ
ଶୁଣ ଧନଞ୍ଜୟ କହନ୍ତି ଯେ ଲକ୍ଷ୍ମୀସାଇଁ ।
ପିତୃଗଣଙ୍କୁ ବାଢ଼ନ୍ତି ଯା ଯା ପୃଥ୍ୱୀଯାକେ
ତାହା ମୁହିଁ ଗ୍ରାସ କରେ ଜାଣ ତ୍ରଇଲୋକ୍ୟ ।
ମୋହର ବିନୁ କରିବ କେହୁ ଆନ ଭୋଗ
ମନ୍ତ୍ରେ ଦେବାର ଆହୁତି ହେଲା ହବିର୍ଭାଗ ।
ଅଗ୍ନିର ରୂପରେ ମୁହିଁ କରେ ତାହା ଗ୍ରାସ
ମୋର ଭୁଞ୍ଜିବା କାହାକୁ ନୋହେ ଜାଣ ଦୃଶ୍ୟ
ଯାବତ ହୋମେ ଅଟଇ ମୁହିଁ ଏକା ମୂଳ
ମୁହିଁ ସିନା ହୋମକର୍ତ୍ତା ଅଟେ ଆଦିମୂଳ ।
ମୁହିଁ ସିନା ପୃଥ୍ୱୀଯାକେ ଅଟେ ପିତା ମାତା
ମୁହିଁ ସିନା ଅଟେ ବିହି ମୁହିଁ ସର୍ବକର୍ତ୍ତା ।
ମୁହିଁ ସିନା ବିଶ୍ୱଜନ ପାଳନ୍ତାହିଁ ଜାଣ
ମୁହିଁ ଯେ ଦେବ ଆଦିର କର୍ତ୍ତା ନାରାୟଣ ।
ମୁହିଁ ବେଦର ଅଟଇ ଜାଣ ମହାତତ୍ତ୍ୱ
ମୁହିଁ କରେ ମହାମନ୍ତ୍ର ବେଦତତ୍ତ୍ୱ ଜାତ ।
ସବୁରି ଗୋତ୍ର ପ୍ରବର ମୁହିଁ ଏକା ଅଟେ
ଗୋତ୍ରକୁ ପଢ଼ିଣ ପିଣ୍ଡ ଦ୍ୟନ୍ତି ସର୍ବଘଟେ ।
ଗୋତ୍ର ସଂକଳ୍ପ ବିନା କି ହେବ ବିଭା ଜାଣ
ଗୋତ୍ରହିଁ ଏକ କେବଳ ଅଟେ ପିତୃଗଣ ।

ମୁଁ ସବୁରି ପ୍ରଭୁ ମୁହିଁ ସବୁଙ୍କର କର୍ତ୍ତା
ମୁହିଁ ଜନନୀ ସବୁରି ଅଟେ ପିତାମାତା ।
ମୁହିଁ ଭକ୍ଷକ ଶୋଷକ ଜାଣ ମୁହିଁ ଅଟେ
ମୁହିଁଟି ପ୍ରଳୟ ସ୍ଥିତି କରେ ସର୍ବଘଟେ ।
ଅଚଳ ଭୂମିରେ ଜାଣ ପକାନ୍ତି ଯେ ବୀଜ
ତାହା ମୁଁ ଆଦିତ୍ୟ ରୂପେ ତାପେ ଦେଇ ତେଜ
ଉପରେ ଜଳବୃଷ୍ଟି ମୁଁ କରେ ଯେବେ ଜାଣ
ବରଷୁଥିବା ପୁରୁଷ ଅଟେ ମୁହିଁ ପୁଣ ।
ମୁଁ ମନେ ପାଞ୍ଚି ବରଷୁଥିଲେ ଜଳ ଯେତେ
ଏକଥା ମୁହିଁ ବୋଲି ନଜାଣେ କେହିଚିତ୍ତେ ।
ମୁହିଁ ସେ ଅଦୃଶ୍ୟ ଦୃଶ୍ୟ ଅଟଇ ଜାଗ୍ରତ
ମୁହିଁ ସେ ଅଟଇ ବିଷ ଆବର ଅମୃତ ।
ଏମନ୍ତ ପ୍ରକାରେ ମୋର ଯାବତ ଭିଆଣ
ଆଉ ଯେ ସିଦ୍ଧାନ୍ତ କଥା କହିବା ତା ପୁଣ ।
ଆବର ଯଜ୍ଞରେ ମୁହିଁ ଧରେ ସୋମପାନ
ତିନିବେଦେ କହି ଏକା ଛନ୍ତି ଭଗବାନ ।
ଯଜ୍ଞ କଲା ଲୋକ ଭୋଗ ଭୁଞ୍ଜେ ସ୍ୱର୍ଗପଥ
ପୁଣ୍ୟ ସରିଲେ ମଞ୍ଚରେ ଆସି ହୋଏ ଜାତ ।
ପୁଣ୍ୟ ଫଳ ପାଞ୍ଚି କଳପନାମାନ କଲେ
ଆଚରିଣ ଯାଗଯଜ୍ଞ ଚଳେ ସ୍ୱର୍ଗପୁରେ ।
ଏ ରୂପେ କଳ୍ପନାମାନ କରନ୍ତି ଯେ ଲୋଡ଼ି
ହୁଅଇ ଯେ ଆତଯାତ ଜ୍ଞାନମାର୍ଗେ ଏଡ଼ି ।
ନିର୍ମଳ ଚିତ୍ତ କରି ଯେ ଭଜେ ପଦ୍ମ ନେତ୍ରେ
ଯଜ୍ଞକରତା ଅଟଇ ମୁହିଁ ଅଗ୍ନିହୋତ୍ରେ ।
ଇହ ପରଲୋକେ ସେହି ଭୁଞ୍ଜେ ଦିବ୍ୟଭୋଗ
ଏ ବେନି କଥା ମୋହର ଅଟେ ଏକମାର୍ଗ ।
ତାହାକୁ ଦିଅଇ ଭୋଗ ମୁହିଁ ବେନିଠାରେ
କେବେ ହେଁ ସଂଶୟ ମୋର ନାହିଁ ଏବିଚାରେ
ଆବର ବାକ୍ୟ ମୋହର ଶୁଣ ଭଦ୍ରକାନ୍ତ
ତୁ ଅବା ବୋଲିବୁ ଯଜ୍ଞ କଲା କେହୁ ତ୍ୟକ୍ତ ।
ଏତେ ବିଧିରେ ସେବକ ସେହୁ ଭୃତ୍ୟ ହେଲା
ଭଜିବା ଲୋକ ତୁମ୍ଭ ଭୃତ୍ୟର ଭୃତ୍ୟ ହେଲା ।
ଏ ଦୁଇ ଲୋକ ତୁମ୍ଭର ଭୃତ୍ୟ ହେଲା ସରି
ଏଥିର ସଂଶୟ ଫେଡ଼ି ଦେବା ଦେବ ହରି ।
ଯଜ୍ଞକଲା ଲୋକ ପୁଣି ଜନ୍ମି ମୃତ୍ୟୁଭାବେ
ତୁମ୍ଭଙ୍କୁ ଭଜିବା ଲୋକ ଜନ୍ମି ମୃତ୍ୟୁଭାବେ ।
ଏ ରୂପେ ବାଞ୍ଛା କରିବୁ ଅବା ତୋର ଚିତ୍ତେ
ସେ କଥା ମଧ କହିବା ଶୁଣ ପଣ୍ଡୁସୁତେ ।
ଯେବଣ ଲୋକ କରନ୍ତି ଯାଗଯଜ୍ଞ ଜାଣ
ଯେ ଯାଗ କାରଣଯାକ ମୋର ଅଟେ ପୁଣ ।

ସେମାନେ ଦେବବାକ୍ୟର ବିଧିକଥା ଜାଣି
କରନ୍ତି ଯାଗରେ ପୂଜା ଦେବତାଙ୍କୁ ଆଣି ।
ମୁଁ ସବୁଯାଗର ପରେ ଅଟେ ଭୋଗକର୍ତ୍ତା
ଏକଥା ନଜାଣନ୍ତି ସେ ହୋଇ ଏଡେ ଜ୍ଞାତା ।
ସବୁ ଦେବତାଙ୍କ ପରେ ଅଟେ ମୁହିଁ ରାଜା
ମୋତେ ନଚିହ୍ନି କରନ୍ତି ଜାଣ ଦିଅଁ ପୂଜା ।
ମୋତେ ନଚିହ୍ନି ଦିଅନ୍ତି ଯେବେ ହବିର୍ଭାଗ
ସେ ପୁଣ୍ୟର ଫଳଯାଗ ହୁଏ ଜାଣ ବେଗ ।
ମୋତେ ସ୍ଥାପନା କରିଣ ଦେବପୂଜା କଲେ
ତେବେ ସେହି ପୁଣ୍ୟଫଳ ସିଦ୍ଧି ହୁଏ ଭଲେ ।
ମୁହିଁ ସେହି ଦେବତାର ଅଟେ ନିଜ ଧାମ
ଏକଥା ନଚିହ୍ନି କରେ ବେଦବିଧି କର୍ମ ।
ଯେଉଁ ଦେବତାଙ୍କୁ ଯେଉଁରୂପେ ଭକ୍ତିଭରେ
ଯେଣୁ ଆତଯାତ ହେଉଥାଇ ସେ ସଂସାରେ
ଦେବତାମାନଙ୍କରଟି ଯେତେ ପରାକ୍ରମ
ଶକ୍ୟକୁ ଚାହିଁ ଦିଅନ୍ତି ସେହୁ ଫଳପୁଣ୍ୟ ।
ମୋହର ଘେନି ଅଟନ୍ତି ଦେବ ସ୍ୱର୍ଗ ଭୋଗୀ
ମୋହର ଭଣ୍ଡାରୁ ନେଇ ବର ଦ୍ୟନ୍ତି ମାଗି ।
ତହିଁରୁ ମାଗିବେ କୋଚା ଦ୍ୟନ୍ତି ଟିକେ ଟିକେ
ଏ କଥାକୁ ନଚିହ୍ନନ୍ତି ମଞ୍ଚପୁର ଲୋକେ ।
ପିତୃଗଣଙ୍କର ଭକ୍ତ ହୁଅନ୍ତି ଯେ ଜନ
ଶକ୍ୟକୁ ଚାହିଁ ଦିଅନ୍ତି ଯେତେ ପିଣ୍ଡଦାନ ।
ତାହାଙ୍କ ଭକ୍ତି ତାହାଙ୍କୁ କରେ ଭକ୍ତ ପାର୍ଥ
ଏ କଥା ଜାଣିଣ ଲୋକେ ନଜାଣନ୍ତି ଅର୍ଥ ।
ନରମାନଙ୍କର ଭକ୍ତ ହୁଅନ୍ତି ଯେ ଜନ
ତାହାର ଶକ୍ୟକୁ ଚାହିଁ ଦିଅଇ ମୁଁ ଧନ ।
ତାହାର ପାଦରେ ଭକ୍ତ ଦ୍ୟନ୍ତି ଜାଣ ଯେତେ
ଦିଅଇ ଚନ୍ଦନ ଫୁଲପାଣି ଶକ୍ୟମତେ ।
ଏ ରୂପେ ମୋ ଭକ୍ତ ଦେଲେ ମୁହିଁପାଏ ଜାଣ
ଆଉ କଥା ଅର୍ଜୁନ ହୋ କହୁଅଛି ଶୁଣ ।
ପ୍ରକାଶୁଥିବ ତୋ କର୍ମେ ଶୁଭ ଜାଣ ଯେତେ
ମୋତେ ସମର୍ପି କରିବୁ ତାହା ଭୋଗ ନିତ୍ୟେ
ସକଳ ଘଟରେ ମୋତେ ଦେଖିଥିବ ନିତ୍ୟ
ଶ୍ରୀଅଙ୍ଗରେ ମୋର ଲୀନ ହେବୁ ପଣ୍ଡୁସୁତ ।
ସର୍ବଭୂତରେ ସମ ମୁଁ ଅଟେ ପୂର୍ଣ୍ଣାନନ୍ଦ
ଅଇରି ମିତ୍ର ବୋଲି ମୋ ନାହିଁ ଭେଦାଭେଦ
ଯେ ମୋତେ ଭଜଇ ନିତ୍ୟେ ମୋର ପାଦଧ୍ୟାୟି
ତାହାର ହୃଦରେ ବିଜେ କରିଥାଏ ମୁହିଁ ।
ତୁ ମୋହର ଶରୀରରେ ସଦା ଥାଉ ଜାଣ
ଏ କଥା ବାସ୍ତବ ଜାଣ ଅଟଇ ପ୍ରମାଣ ।

ଆବର ଲୌକିତ କର୍ମ କରଇ ବାହାରେ
ହୃଦରେ ଚିନ୍ତି ମୋତେ ଯେ ଥାଏ ନିରନ୍ତରେ ।
ଏମନ୍ତ ଲୋକକୁ ପାର୍ଥ ସୁଜନ ଯେ କହି
ହୃଦୟରେ ଶାନ୍ତି ପୁଣ ସଦା ତାର ଥାଇ ।
ଶୁଣ ଧନଞ୍ଜୟ ହରି କହନ୍ତି ଶ୍ରୀମୁଖେ
ଭକ୍ତକୁ ପଡ଼ିଲେ କ୍ଳେଶ ମୁହିଁ ଜାଣ ରଖେ ।
ସହସ୍ର ଭୁଜେ ଧରିଣ ସସ୍ରେ ଚକ୍ରାୟୁଧ
ଚାରି ପାଶୁରେ ଥାଇ ରଖେ ଭକ୍ତବୃନ୍ଦ ।
ସର୍ବକାଳେ ଅଟେ ଭକ୍ତ ମୋର ଧନ ପ୍ରାଣ
ସେ କଥା କହିଲି ତୋତେ ପାର୍ଥ ନିଶ୍ଚେ ଜାଣ ।
ଭକତ ଯେଣେ ଯାଇ ମୁଁ ତା ସଙ୍ଗରେ ଥାଇ
ଆନନ୍ଦେ ସଂସାରେ ମୋତେ ଘେନିବୁଲେ ଯାଇ ।
ଚଣ୍ଡାଳ ଘରେ ସେ ପଛେ ହୋଇଥିବ ଜନ୍ମ
ମହାକ୍ଷତ୍ରୀ ବୈଶ୍ୟ ଶୂଦ୍ର ଯେତେ କୁଳବର୍ଣ୍ଣ ।
ମୋତେ ଯେ ଭଜଇ ସେହୁ ଲଭେ ନିଶ୍ଚେଁ ଗତି
ଅକ୍ଷୟ ପଦ ପାଇଣ ବଇକୁଣ୍ଠେ ସ୍ଥିତି ।
ସ୍ମୃତି ବେଦବିଦ୍ୟା ପଢ଼ି ବିପ୍ରମାନେ ଯେତେ
ଗରିଷ୍ଠରାଜା କ୍ଷତ୍ରୀଙ୍କ ଅଛନ୍ତି ସେ ମର୍ତ୍ତ୍ୟେ ।
ଆବର ଯେ ଧନବନ୍ତ ଜନ ଯେତେ କହି
ଏହାଙ୍କ ହୃଦେ ମୋହର ଭକ୍ତି ଯେବେ ନାହିଁ ।
ଏମାନେ ପାଇବେ କାହିଁ ମୋର ଭକ୍ତିଲେଶ
କହୁଅଛି ବୁଝାଇ ତା ଶୁଣ ପଣ୍ଡୁ ଶିଷ୍ୟ ।
ଅନିତ୍ୟ ସଂସାର ଏହି ଅଟେ ମାୟାଘୋର
ଏଥିରେ ଥାଇ ସୁଖେ ଯେ ଭକ୍ତିକରେ ମୋର
ମୋହର ପାଦରେ ମନଦେଇ ଭଜୁଥିବୁ
ମୋ ନାମ ପାରିଲେ ଭଜି ଶୀଘ୍ରେ ତରିଯିବୁ ।
ମୋ ନାମ ଯେ ଅନୁବ୍ରତେ ପାରେ ଜପକରି
ସଂସ୍କାର କି ଅସଂସ୍କାର ମନେ ନ ବିଚାରି ।
ଜିହ୍ୱାରେ ଅନୁକ୍ଷଣେ ମୋ ନାମ ଭଜୁଥିବୁ
ତୋତେ ହିଁ ପଡ଼ିଲେ ଦଣ୍ଡ ମୋତେ ପଚାରିବୁ
ଶଉଚେ ଅଶଉଚେ ମୋ ନାମ ହେତୁକରି
ନ ଶୁଣୁ କେହି ପଛକେ ପଢ଼ିବୁ ବିଚାରି ।
କେବଳ ଦୋଗଧା ଏକା ନକରିବୁ ମନେ
ଏକଥା ଧ୍ରୁବ କହିଲୁ ତୋତେ ପଣ୍ଡୁନାନେ ।
ଜାଗ୍ରତ କାଳଯାକ ମୋ ନାମ ଭଜୁଥିବୁ
ଏ ରୂପେ କଲେ ତୁ ଭକ୍ତି ସଂସାରୁ ତରିବୁ ।

ମୁଁ ଯାହା କହିଲି ତାହା ତତ୍ତ୍ୱକରି ଘେନ
ରାଜନ ଗୁପ୍ତବିଦ୍ୟା ଏ ଅଟେ ବ୍ରହ୍ମଜ୍ଞାନ ।
ସପ୍ତମସାଗର ଏହି ଜ୍ଞାନମାର୍ଗ ଅଟେ
ପଢ଼ିଲେ ମୋକ୍ଷ ହୋଇବ ଶୁଣି କର୍ଣ୍ଣପୁଟେ ।
ବ୍ରହ୍ମଜ୍ଞାନ ବିଦ୍ୟା ଏ ଯେ ସାରସ୍ୱତ ବାଣୀ
ବ୍ରହ୍ମାଙ୍କ ମୁଖୁ ନାରଦ ଅଛନ୍ତି ଯା ଶୁଣି ।
ସେ ବ୍ରହ୍ମ ବିଦ୍ୟାକୁ ଆଣି ଅରଜୁନ ଆଗେ
ନନ୍ଦିଘୋଷେ ବସି ବିଷ୍ଣୁ କହେ ବ୍ରହ୍ମଭାଗେ ।
କୁରୁକ୍ଷେତ୍ର ମହାତୀର୍ଥ ଅଟେ ପୁଣ୍ୟସ୍ଥାନ
ପ୍ରାଞ୍ଜଳ ଜ୍ଞାନ କହନ୍ତି ପ୍ରଭୁ ଭଗବାନ ।
ସେ ଜ୍ଞାନଯାକୁ ଶୁଣି ସଞ୍ଜୟ ଯେ ମନ୍ତ୍ରୀ
କହନ୍ତି ଯେ ଧୃତରାଷ୍ଟ୍ର ଆଗେ ଜ୍ଞାନ ବୃତ୍ତି ।
ବ୍ୟାସଙ୍କ ପ୍ରସାଦେ ସେହି ଅଟେ ପୁଣ୍ୟବନ୍ତ
ନୋହିଲେ ଏଡ଼େ ଜ୍ଞାନ କି କରିପାରେ ଭୃତ୍ୟ
ପରମ ଭାଗବତ ସେ ପରୀକ୍ଷ ଅଟନ୍ତି
ପ୍ରାଞ୍ଜଳ କରି କହନ୍ତି ତାଙ୍କୁ ଶୁକଯତି ।
ପରୀକ୍ଷ ରାଜାଙ୍କ ପୁତ୍ର ଜନ୍ମେଜୟ ରାଜା
ବଇଶମ୍ପାୟନଙ୍କର କଲେ ପାଦପୂଜା ।
ବୋଇଲେ ମୋ ପିତାମହମାନଙ୍କର ଗତି
ଆଉ କିଛି ଶୁଣିବାକ କହ ଫଳଶ୍ରୁତି ।
ତୁମ୍ଭେ କହନ୍ତେ ପ୍ରଚାର ହେବ ଜ୍ଞାନ ଭୂବି
କଳିଯୁଗରେ ଲେଖିବେ ଏହା ସର୍ବ କବି ।
ପଞ୍ଚପୁରାଣେ ପୁଣ୍ୟ ଏ ଗ୍ରନ୍ଥେ ଅଛି ପୁରି
ଶୁଣିବା ଲୋକେ ସଂସାରୁ ହେଳେ ଯିବେ ତରି
ବିପ୍ର ପୀତାମ୍ବର ଦାସ ଅଟେ ମୁଢ଼ମତି
ଆଦ୍ୟ ଅବତାର ଲୀଳା ଶ୍ରୀନୃସିଂହ କୀର୍ତ୍ତି ।
ସାହସ ପଣେ ଯାଉଛି ମାତ୍ର ଏହା ଲେଖି
ନୃସିଂହପୁରାଣ ଅର୍ଥ ପଦ ପୂର୍ଣ୍ଣେ ଦୁଃଖୀ ।
ଏଥକୁ ସାଧୁଜନେ ନଘେନ ମୋର ଦୋଷ
ବିପ୍ର ପୀତାମ୍ବର ମୁହିଁ ବାଲୁଙ୍କେଶ ଶିଷ୍ୟ ।
ଶ୍ରୀକୁରୁକ୍ଷେତ୍ର ମଣ୍ଡଳେ ନନ୍ଦିଘୋଷ ରଥେ
ପାର୍ଥକୁ ଜ୍ଞାନ କହନ୍ତି ବସି ଜଗନ୍ନାଥେ ।
ଶ୍ରୀହରି ବୋଇଲେ ଆହେ ଶୁଣ ପଣ୍ଡୁସୁତେ
ଆବର ମହିମା ମୋର କହୁ ଶୁଣ ତୋତେ ।
ଜ୍ଞାନ ମହିମା ପ୍ରଚ୍ଛନ୍ନ କରି ଆଗ ଶୁଣ
ସବୁ କଥାରେ କାରେଣି ମୁହିଁ ଅଟେ ଜାଣ ।

ବ୍ରହ୍ମାଦି ଶଙ୍କର ଯାଏ ସର୍ବଋଷି ଆଦି
ସ୍ୱର୍ଗରେ ତେତିଶକୋଟି ଦେବ ଜମ୍ଭଭେଦୀ ।
ପାତାଳେ ଯେ ଅଷ୍ଟକୁଳ ନାମେ ନାଗରାଜ
ଗଣେଶ କାର୍ତ୍ତିକେଶ୍ୱର ଆଉ ବୃଷଧ୍ୱଜ ।
ବରୁଣ ପବନ ଅଗ୍ନି ସର୍ବ ଦିଗପାଳ
ପଞ୍ଚଭୂତକୁ ଆବର ଘେନି ଗିରିମାଳ ।
ଏମାନେ ଯେ ନ ଜାଣନ୍ତି ମୋର ଆଦିଅନ୍ତ
ଉତ୍ପତ୍ତି ସ୍ଥିତି ମୋର ମୁଁ ଜାଣେ ଏକା ସତ୍ୟ ।
ବାଳକ ଯୁବା ବୃଦ୍ଧହିଁ କେବେ ମୁହିଁ ନୁହେଁ
ଜନ୍ମରୁ ଅଛଇ ଦେଖ ଧରି ନିଜ ଦେହେ ।
ଓଁକାର ବ୍ରହ୍ମ ମୋହର ଅଟେ ମାତାପିତା
ଯେ ମୋତେ ଚିହ୍ନେ ସଂସାରେ ସେହୁ ମହାଜ୍ଞାତା
ସମସ୍ତଙ୍କ ଆଗରୁ ମୁଁ ଅଛି ଜନ୍ମ ହୋଇ
ତେଣୁ ସେ ମହିମାକୁ ନ ଜାଣେ ମୋର କେହି
କ୍ଷେବଣ ଲୋକମାନେଟି ନାହାନ୍ତି ମୋ ସ୍ଥାନ
ତାହାଙ୍କୁ ଗୋଚର ନୁହେଁ ମୋର ବ୍ରହ୍ମଜ୍ଞାନ ।
ଅଜନ୍ମା ଅଚ୍ୟୁତ ମୁହିଁ ଅଟେ ପୂର୍ଣ୍ଣାନନ୍ଦ
ଏରୂପେ ଭକ୍ତି ଉଦୟ ଯେଉଁ ଲୋକ ହୃଦ ।
ସୁଜ୍ଞାନୀ ବୋଲି ତାକୁ ମୁଁ ଜାଣି ବୀରପାର୍ଥ
ଜନ୍ମିଲେ ନଛାଡ଼େ ମୋର ସେ ବିଯୋଗପଥ ।
ମୋହର ଯେତେକ କଥା କହିବି ତା ଶୁଣ
ଅଟଇ ସଜନ ସେହି କହେ ସୁବଚନ ।
ଦୁଃଖ ସୁଖକୁ ସମାନ ଭାବେ ଥାଏ ଘେନି
ଉତ୍ପତ୍ତି ସ୍ଥିତିକି ମୋର ପାରଇ ସେ ଚିହ୍ନି ।
ଇନ୍ଦ୍ରିୟମାନଙ୍କୁ ନମି ସନ୍ତୋଷେ ସେ ଥାଇ
ବିପ୍ରଙ୍କୁ ହିଂସା କପଟ ବାଦ ନକରଇ ।
ସମତା ଦୃଷ୍ଟି ସମସ୍ତ ଜୀବଠାରେ କରେ
ମମତା କୋପ ତାର ନଥାଇ ହୃଦୟରେ ।
ପ୍ରାଣୀଙ୍କ ଦେହେଁ ଯେତେକ ଜ୍ଞାନବୁଦ୍ଧି ଅଛି
ଏ ଯୋଗମାନ ତାହାର ଥାଇ ହୃଦେକିଛି ।
ମୋହର ଠହୁଁ ହୋଇଛି ସବୁବୋଲି ଜାତ
ଏମନ୍ତ ବୋଲି ଭଜଇ ମୋତେ ଅନୁବ୍ରତ ।
ସୁବୁଦ୍ଧି ସେ ସୁପଣ୍ଡିତ ବୋଲି ତାକୁ କହି
ମୋତେ ସମର୍ପିଣ ସବୁ ସୁଖେ ବିହରଇ ।
ମୋର ଦେହେ ଚିତ୍ତ ଥୋଇ ବିଷୟା କରଇ
କେ ଅବା ପୁଚ୍ଛିଲେ ତାକୁ ମହିମା ମୋ କହି ।

ମୋହର କଥା ଶୁଣିଣ ପୁଲକେ ଯା ଗାତ୍ର
ତାହାର ପ୍ରାୟେକ ମୋତେ ନାହିଁ ପୁଣ୍ୟ କ୍ଷେତ୍ର
ସନ୍ତୋଷ ଚିତ୍ତେ ମୋହର ମହିମା ଶୁଣଇ
ତାକୁ ସଭା ଯୋଗ୍ୟ ବୋଲି ସୁଭଦ୍ରାର ସାଇଁ
ମୋତେ ପାଇବା ମାର୍ଗତା ଦେହେ ମୁହିଁ ଦିଏ
ଏକଥା ସତ୍ୟ କହିଲି ମୁଁ ଯେ ଧନଞ୍ଜୟେ ।
ଅଜ୍ଞାନ ପଣ ତା ଦେହେ କିଛିଥିଲେ ପୁଣ
ଜ୍ଞାନ ଖଡ଼ଗେ ତାହା ମୁଁ ଛେଦେ ତତକ୍ଷଣ ।
ଏ ରୂପେ ଭକତଙ୍କର ଅଟେ ମୋର ଗୁଣ
ସେ କଥାକୁ ସାବଧାନେ କହିବା ହେ ଶୁଣ ।
ସପ୍ତ ଋଷିଗଣ ଆଉ ଚତୁର୍ଦ୍ଦଶ ମନୁ
ଏହାକୁ ଜନ୍ମ କରିଛି ଜାଣ ମୋର ତନୁ ।
ମୋହର ବିଭୂତି ଅଛି ଏ ସଂସାରେ ଜାଣ
ସ୍ଥାବର ଆଦି ପତଙ୍ଗ କୀଟ ସହିତେଣ ।
ସମସ୍ତ ସ୍ଥାନେ ଥିବାର ମୁହିଁ ସେହୁ ଜାଣି
ନିଶ୍ଚଳ ଯୋଗରେ ବସି ଭଜେ ଚକ୍ରପାଣି ।
ବୋଲେ ପୃଥ୍ୱୀରେ ଛପନ କୋଟି ଅଟେ ଜୀବ
ହରଷେ ଉତ୍ପତ୍ତି ଲୋକେ କରନ୍ତି ତା ସର୍ବ ।
ଏହିରୂପେ ମୋ ବିଭୂତି ଯୋଗ ଜାଣ କରି
ବିଷ୍ଣୁଙ୍କୁ ଭଜେ ନିତି ଯେ କିଛି ନ ବିଚାରି ।
ଶ୍ରୀହରିର ବାକ୍ୟ ଶୁଣି ତୋଷ ଧନଞ୍ଜୟେ
ବୋଲେ କଥାଏ ପୁଚ୍ଛିବି ସ୍ୱାମୀ ଏହିଠାୟେ ।
ନାରଦଙ୍କ ସହିତେଣ ଯେତେ ମହାଋଷି
ବେଦବ୍ୟାସ ଆଦି ଯେତେ କର୍ମବନ୍ତ ମିଶି ।
ଏ ଆଦି ଋଷି ଅଠାଶୀସହସ୍ର ଋଷି ଯାଏ
ମହିମାଯାକ କହନ୍ତି ମିଳି ତୁମ୍ଭଠାଏ ।
ପରମାନନ୍ଦ ପରମ ପୁରୁଷ ହେ ପ୍ରଭୁ
ଏକଥା ସତ୍ୟ ଆବର ଜାଣ ମିଥ୍ୟା ସବୁ ।
ବୁଝିଲେ ତୁମ୍ଭେ ତ ପ୍ରଭୁ ଅକ୍ଷୟ ଅବ୍ୟୟ
ପରମଜ୍ୟୋତି ସଚ୍ଚିଦାନନ୍ଦ ମୂର୍ତ୍ତି ଦେହ ।
ପରମଧାମ ବୋଲନ୍ତି ଜାଣ ସେହି ଲୋକେ
ତୁମ୍ଭେତ କହିଲ ସେହି କଥା ଯଥାଶକ୍ୟେ ।
ଏଣୁ ମୁଁ ମଣିଲି ତୁଇବାକ୍ୟ ସତ୍ୟ ସତ୍ୟ
ଋଷିଙ୍କ ବାକ୍ୟ ନୁହଇ କେବେ ବିଚଳିତ ।
ତେଣୁ ମୁହିଁ ଶୁଣୁଅଛି ଶ୍ରଦ୍ଧା କରି ମନ
ତୁମ୍ଭର ମୁଖୁ ଶୁଣୁଛି ଏବେ ଏହୁ ଜ୍ଞାନ ।

ଚର ଅଚର ଅସୁର ଦେବ ନର ଆଦି
ଏମାନେ ଯେ ନ ଜାଣନ୍ତି ତୁମ୍ଭ ଜ୍ଞାନ ବୁଦ୍ଧି ।
ତୁମ୍ଭଙ୍କୁ ତ ତୁମ୍ଭେ ଏକା ଜାଣ ଚକ୍ରପାଣି
ତୁମ୍ଭର ପୁଣ କର୍ମ କେ କରିପାରେ ଶୁଣି ।
ତୁମ୍ଭର ବିଭୂତି ଯେତେ ତିନିପୁରେ ଅଛି
ସଂସାରଯାକ ସେ ବ୍ୟାପି ହୃଦେ ପ୍ରକାଶିଛି ।
କି ରୂପେ କେଉଁ ସ୍ଥାନରେ କେଉଁ ଦେହଧରି
ପୂରି ରହିଅଛି ମୋତେ କହିବା ତା ହରି ।
ଭୋ ଦେବ ଅନନ୍ତ ଯୋଗେଶ୍ୱର ଭାବଗ୍ରାହୀ
କି ରୂପେ କହ ତୁମ୍ଭେ ତା ଶୁଣୁଥିବି ମୁହିଁ ।
ଭୋ ପ୍ରଭୁ ତାହା ସଂକ୍ଷେପି ବେଗେ ମୋତେ କହ
ମୁଁ ଶୁଣିଥିଲି ଶୁଣିବେ ଲୋକ ଅପ୍ରମେୟ ।
ଏକର ମୁଖୁ ଶୁଣିବେ ତହୁଁ ଜ୍ଞାନୀ ହୋଇ
ଏକଥା ଆଜ୍ଞାକଲେ ଏ ବିଶ୍ୱେଥିବ ରହି ।
ଅର୍ଜ୍ଜୁନ ବାକ୍ୟେ କହନ୍ତି ପ୍ରଭୁ ଜଗନ୍ନାଥ
ବୋଇଲେ କହିବା ଆହୋ ଶୁଣ ବୀରପାର୍ଥ ।
ଏ ମୋର ବିଭୂତି ଜାଣ ତ୍ରିଭୁବନେ ସ୍ଥିତି
ତା ତୋତେ କହିବା ଶୁଣ ସୁଭଦ୍ରାର ପତି ।
ଶୁଣ ଆହେ ଗୁଡ଼ାକେଶ ଏହା ସନ୍ଧି ଅର୍ଥ
ସମସ୍ତ ଘଟର ଆତ୍ମା ଅଟେ ଜଗନ୍ନାଥ ।
ଏ କଥା ଚିହ୍ନିବୁ ଆଗ ସୁଭଦ୍ରାର ବର
ଏ ଏକା ସକଳରୂପେ କରୁଛି ବିହାର ।
ମୋର ଆଦି ମଧ୍ୟ ପ୍ରାନ୍ତ କେହି ଜାଣିଣ ନାହିଁ
ଥୋକାଏ କହିବା ସେହି ତଥ୍ୟ ଶୁଣ ତୁହି ।
ପୃଥ୍ୱୀରେ ଏଣୁ ମୋ ଆଦି ଅନ୍ତ ନାହିଁ ଲେଖା
ଆଗରେ ତୋହର କେବେ କରିବତ ଦେଖା
ପ୍ରଥମେ ଶୁଣ ତୁ ପାର୍ଥ ଦ୍ୱାଦଶ ଭାସ୍କର
ସେହି ନାରାୟଣ ଅଟେ ପରମଈଶ୍ୱର ।
ତାହାଙ୍କ ମଧ୍ୟେ ଆଦିତ୍ୟ ମୁହିଁ ବୋଲି ଜାଣ
ଶୁଣ ପଣ୍ଡୁସୁତ କହନ୍ତି ଯେ ନାରାୟଣ ।
ଆଦିତ୍ୟ ତାରା ଚନ୍ଦ୍ରମା ଅଗ୍ନି ଆଦି ଯେତେ
ଗୌର ଶ୍ୟାମଳ ଲୋହିତ କଳାବର୍ଣ୍ଣ କେତେ
ଆବର ସଂସାରେ ଅଷ୍ଟରତ୍ନ ଅଛି ପୂରି
ଏହାକୁ କେତେ କହିବି ଗଣି ଭିନ୍ନକରି ।
ତାହାଙ୍କ ମଧ୍ୟେ ଅଛଇ ମୁହିଁ ହୋଇ ଜ୍ୟୋତି
କହନ୍ତି ଯେ ଭଗବାନ ଶୁଣ ଭଦ୍ରାପତି ।
ଆବର ଯେ ପବନର ଅଣଚାଶ ନାମ
ସେହି ପବନ ମଧ୍ୟେ ମୁଁ ଅଟେ ପରଂବ୍ରହ୍ମ ।
ନକ୍ଷତ୍ରଗଣ ଯେତେକ ଗଗନେ ଅଛନ୍ତି
ତାହାଙ୍କ ମଧରେ ମୁହିଁ ଅଟେ ନିଶାପତି ।
ବ୍ରହ୍ମାଦି ଶିବ ଯେତେକ ବେଦ ଛନ୍ତି କରି
ସଂସାର ଲେଖାରେ ନବ ବେଦ ଅଛି ପୂରି ।
ସେ ବେଦ ସ୍ଥାନକରେ ମୁହିଁ ଅଟେ ସାମବେଦ
ଶୁଣ ଧନଞ୍ଜୟ କହନ୍ତି ଯେ ପୂର୍ଣ୍ଣାନନ୍ଦ ।
ତେତିଶକୋଟି ଦେବତା ସ୍ୱର୍ଗେ ମୋକ୍ଷପାନ
ତାହାଙ୍କ ମଧରେ ମୁହିଁ ଅଟେ ମଘବାନ ।
ଏ ଶରୀର ମଧ୍ୟେ ଏକାଦଶ ଯେ ଇନ୍ଦ୍ରିୟ
ତାହାଙ୍କ ମଧ୍ୟେ ଅଟଇ ମନ ମୁଁ ନିଶ୍ଚୟ ।
ପ୍ରାଣୀଙ୍କ ହୃଦେ ଅଛଇ ପଚିଶ ପ୍ରକୃତି
ତାହାଙ୍କ ମଧ୍ୟେ ଚେତନା ମୁହିଁଜଗଜ୍ୟୋତି ।
ରୁଦ୍ରର ମଧରେ ଏକାଦଶ ମହାରୁଦ୍ର
ତାହାଙ୍କ ମଧ୍ୟେ ଶଙ୍କର ନାମେ ମୁଁ ପ୍ରସିଦ୍ଧ ।
ଯକ୍ଷଗଣଙ୍କର ମଧ୍ୟେ କୁବେରହିଁ ମୁହିଁ
ଅଷ୍ଟବସୁଙ୍କ ମଧରେ ପାବକ ବୋଲାଇ ।
ବନଗିରିଙ୍କ ମଧ୍ୟେ ମୁଁ ଅଟେ ମେରୁଗିରି
ପୁରୋହିତଗଣ ମଧ୍ୟେ ବୃହସ୍ପତି କରି ।
ସକଳ ସେନାପତି ଯେ ପୃଥ୍ୱୀରେ ଅଛନ୍ତି
ତାହାଙ୍କ ମଧରେ ମୁହିଁ କାର୍ତ୍ତିକେୟ ପତି ।
ପୃଥ୍ୱୀ ମଧରେ ଯେତେକ ନଦୀ ସରୋବର
ତାହାଙ୍କ ମଧ୍ୟେ ଅଟଇ ମୁହିଁ ଯେ ସାଗର ।
ସଂସାର ଯାକେ ଅଛନ୍ତି ଯେତେ ଋଷି ପୁଣ
ତାହାଙ୍କ ମଧ୍ୟେ ଅଟଇ ମୁହିଁ ଭୃଗୁ ଜାଣ ।
ସଂସାରଯାକରେ ଯେତେ ଅଛନ୍ତି ଅକ୍ଷର
ତାହାଙ୍କ ମଧରେ ମୁହିଁ ଅଟଇ ଅକାର ।
ରାଜସୂୟ ଯଜ୍ଞ ଆଦି ଯେତେ ଜପ ତପ
ତାହାଙ୍କ ମଧରେ ମୁହିଁ ଅଟେ ବ୍ରହ୍ମରୂପ ।
ଅଛନ୍ତି ଚଉଦକୋଟି ଯେତେ ଗିରିଗଣ
ତାହାଙ୍କ ମଧରେ ମୁହିଁ ହିମାଚଳ ପୁଣ ।
ପୃଥ୍ୱୀରେ ଯେତେ ଅଛନ୍ତି ଲତା ବନ ବୃକ୍ଷ
ମୁହିଁଟି ଅଶ୍ୱତଥ ତରୁ ଅଟଇ ପ୍ରତ୍ୟକ୍ଷ ।
ଆବର ଅଛନ୍ତି ଯେତେ ଦେବଋଷିଗଣ
ତାହାଙ୍କ ମଧ୍ୟେ ନାରଦଋଷି ମୁହିଁ ପୁଣ ।

ଗନ୍ଧର୍ବ ଅଛନ୍ତି ବାରକୋଟି ସ୍ୱର୍ଗପଦେ
ମୁହିଁ ସିନା ଚିତ୍ରସେନ ଅଟେ ତାଙ୍କ ମଧେ ।
ଯାହାକୁ ଷଡ଼ଯତିଙ୍କ ମଧେ ପରିମାଣି
ମୁହିଁ ସେ କପିଳରଷି ଅଟେ ବିପ୍ରମଣି ।
ଅଷ୍ଟଦିଗପାଳଙ୍କର ଛନ୍ତି ଅଶ୍ୱ ଯେତେ,
ଉଚ୍ଚୈଃଶ୍ରବା ଅଶ୍ୱ ମୁହିଁ ଅଟଇ ନିୟତେ ।
ଅଷ୍ଟଦିଗଗଣ ବସନ୍ତି ଯେ ଅଷ୍ଟଦିଗ
ତାହାଙ୍କର ମଧେ ମୁହିଁ ଐରାବତ ନାଗ ।
ଯେତେ ହେଁ ମନୁଷ୍ୟଗଣ ଅଛନ୍ତି ସଂସାରେ
ତାହାଙ୍କ ମଧରେ ମୁହିଁ ନୃପ ସବୁଠାରେ ।
ବହନ୍ତି ଅନନ୍ତକୋଟି ଅନ୍ତ ନବସୃଷ୍ଟି
ତାହାଙ୍କ ମଧରେ ମୁହିଁ ବ୍ରହ୍ମଶକ୍ତି କୋଟି ।
ଗୋଧନପଲ ଅଛନ୍ତି ଯେତେ ଚରାଚରେ
କାମଧେନୁ ବୋଲାଇଟି ମୁହିଁ ତା ମଧରେ ।
ଆବର ଅଛନ୍ତି ଯେତେ ପ୍ରଜାପତି ସୃଷ୍ଟି
ତାହାଙ୍କ ମଧେ ବିଶ୍ୱତୋମୁଖହିଁ ମୁହିଁଟି ।
ଆବରହିଁ ଅଷ୍ଟକୁଳ ନାଗ ମଧେ ଜାଣ
ମୁହିଁ ବାସୁକି ଅଟଇ ଶୁଣ ପର୍ଶୁନାନ ।
ପାତାଳ ମଞ୍ଚରେ ଯେତେ ଅଛନ୍ତି ତ ନାଗ
ତାହାଙ୍କ ମଧରେ ମୁହିଁ ଅନନ୍ତ ଯେ ନାଗ ।
ଜଳରେ ଅଛନ୍ତି ଯେତେ ଜଳଚର ଜାଣ
ତାହାଙ୍କ ମଧରେ ମୁହିଁ ଅଟଇ ବରୁଣ ।
ଆବର ଯେତେକ ଜାଣ ପିତୃଗଣ ଛନ୍ତି
ତାହାଙ୍କ ମଧେ ଅର୍ଯ୍ୟମା ନାମ ମୋର ଖ୍ୟାତି ।
ପୃଥ୍ୱୀରେ ଗୋତ୍ର ପ୍ରବର ଯେତେ ପୂରିଅଛି
ସେହି ଜାଣ ପିତୃଗଣ ଅଟେ ସବ୍ୟସାଚୀ ।
ଯେ ଯାହା ଗୋତ୍ର ସେ ଏକା ପିତୃଗଣ ମୁହିଁ
ଗୋତ୍ରହିଁ ଏକା ଅଛନ୍ତି ପୂର୍ବସରି ହୋଇ ।
ଆବର ପ୍ରମାଦ କାଳଦଣ୍ଡ ଯେତେ ଅଛି
ମୁହିଁଟି ବୋଲଇ କାଳଦଣ୍ଡ ସବ୍ୟସାଚି ।
ସଂସାରେ ଛନ୍ତି ରାକ୍ଷସ ନାମା ଯେ କ୍ରବ୍ୟାଦ
ତାହାଙ୍କ ମଧେ ଅଟଇ ମୁହିଁ ପ୍ରହଲାଦ ।
ଅଣିମାଦିରେ ପ୍ରମାଦକର ଜାଣ ଯେତେ
ମୁଁ ତାହା ଚିତ୍ତ ବୋଧ କରଇ ହୃଦଗତେ ।
ଶୁକର ହରିଣ ବ୍ୟାଘ୍ର ଯେତେ ବନଚର
ତାହାଙ୍କ ମଧରେ ମୁହିଁ ଅଟେ ସିଂହବର ।

ପୃଥ୍ୱୀରେ ଯେତେ ପତଙ୍ଗ ପକ୍ଷୀ ରହିଛନ୍ତି
ଏହାଙ୍କ ମଧେ ଅଟଇ ମୁଁ ଗରୁଡ଼ ଯତି ।
ଅଣଚାଶ ପବନର ମଧେ ଜାଣ ମୁହିଁ
ସବୁ ନାସାରେ ବହଇ ବତାସ ଯେ ହୋଇ ।
ଚାରି ଯୁଗରେ ଅଛନ୍ତି ଯେତେ କ୍ଷତ୍ରିବର
ତାହାଙ୍କ ମଧେ ମୁହିଁ ଶ୍ରୀରାମ ଅବତାର ।
ମତ୍ସ୍ୟ କଚ୍ଛପ ମର୍କଟ ଆଦି ଜାଣ ଯେତେ
ମଗର ନାମ ମୋହର ଶୁଣ ପଣ୍ଡୁସୁତେ ।
ଗୋଦାବରୀ ଗୟା ଆଦି କୋଟି ତୀର୍ଥ ନଦୀ
ଏହାଙ୍କ ମଧେ ମୁଁ ଗଙ୍ଗାନାମରେ ପ୍ରସିଦ୍ଧି ।
ଚଉଦ ଭୁବନେ ମୋର ଛନ୍ତି ଯେତେଜନ
ସମସ୍ତେ ବସି କରନ୍ତି ମୋର ଯୋଗଧ୍ୟାନ ।
ଆବର ସଂସାରେ ଯେତେ ବେଦଶାସ୍ତ୍ର ଅଛି
ତହିଁରେ ମୁଁ ପୁଣ୍ୟ ଆତ୍ମା ଅଟେ ସବ୍ୟସାଚି ।
ପ୍ରତିବାଦ କନ୍ଦଳ ସେ ଚଳ ହିଂସାଗୋଳ
ଏହାଙ୍କ ମଧରେ ମୁହିଁ ଅଟେ ଦ୍ୟୁତଖେଳ ।
ସକଳ ଶାସ୍ତ୍ର ଚୌବିଂଶ ଅକ୍ଷର ଯେ କହି
ମୁହିଁ ଓଁ କାର ଅକ୍ଷର ତାଙ୍କ ମଧେ ହୋଇ ।
କୋମଳ ଅଧୀର ଉଚ୍ଚ ନୀଚ ଦୋଷ ଭାଷା
ଏହାଙ୍କ ମଧରେ ମୁହିଁ ଅଟେ ଜାଣ ହିଂସା ।
ଉତ୍ପତ୍ତି ସ୍ଥିତି ପ୍ରଳୟ ଏହି ତିନିକାଳ
ତହିଁରେ ମୁହିଁ ଅଟଇ କ୍ଷମା ଆଦି ମୂଳ ।
ସୁବାକ୍ୟ ପ୍ରତିବଚନ କୀର୍ତ୍ତି ମଧେ ମୁହିଁ
ସୁମୂର୍ତ୍ତି ବୋଲିଣ ନାମ ମୁହିଁ ଯେ ବୋଲାଇ ।
ଦାମ୍ଭିକ ବଡ଼ିମାପଣ ଧୈର୍ଯ୍ୟ ମେଧା ଯେତେ
ତାହାଙ୍କ ମଧରେ କ୍ଷମାଶୀଳ ଅଟେ ନିତ୍ୟେ ।
ସକଳ ବେଦରେ କାଣ୍ଡ ଅଛି ଯେତେ ଜାଣ
ଶ୍ରୀବୃହଦ୍ ସମାବେଦ ଅଟଇ ମୁଁ ପୁଣ
ସମସ୍ତ ଅକ୍ଷର ରୁକ୍ଷ ଛନ୍ଦ ଯାକ ମଧେ
ମୁହିଁ ଗାୟତ୍ରୀ ଅଟଇ ଜାଣ ମନ୍ତ୍ର ପଦେ ।
ଦ୍ୱାଦଶ ମାସ ମଧରେ ଯେଉଁ ମାସ ସାର
ମୁହିଁ ସିନା ଆଦ୍ୟମାସ ଅଟେ ମାର୍ଗଶିର ।
ଯେଉଁ ଷଡ଼ରତୁ ହୋଏ ବାରମାସ ଭୋଗ
ତାହାଙ୍କ ମଧେ ବସନ୍ତ ରତୁ ମୁହିଁ ଆଗ ।
ଯାବତ ଖେଳ ଶକଟା ପଶା ଜୁଆ ଯେତେ
ଏଥିରେ ଯେ ହାରଜିଣା ମୁହିଁ ଏକା ନିତ୍ୟେ ।

ଜଙ୍ଗମ କୀଟ ପତଙ୍ଗ ଆଦି ଦେହଧାରୀ
ଏହାଙ୍କ ମଧ୍ୟେ ଅଟଇ ମୁହିଁ ତେଜ ବାରି ।
ପାତାଳ ସ୍ୱର୍ଗେ ମର୍ତ୍ତେ ଯେ ପାରେ ଯେତେଜିଣି
ଏହାଙ୍କୁ ମୁଁ ହାରଜିଣ କରେ ବଳ ଜାଣି ।
କେ ଅବା କରଇ ଉଦଯୋଗ କେତେ ଠାରେଁ
ଫଳିବା ଉଦ୍ୟୋଗ ମୁଁ ଅଟେ ଏ ସଂସାରେ ।
ବଳିଷ୍ଠ ହୋଇ ସଂସାରେ ଯେତେ ଲୋକଅଛି
ତାଙ୍କ ବଳରେ ବଳ ମୁଁ ଅଟେ ସବ୍ୟସାଚି ।
ଯାବତ ଯେ ସାତବଂଶ ମଧ୍ୟେ ଜାଣ ମୁହିଁ
ବସୁଦେବର ପୁତ୍ର ମୁଁ ବୃଷ୍ଣି ବଂଶ ଗ୍ରାହୀ ।
ଯାବତ ଯୋଦ୍ଧା କ୍ଷତ୍ରିୟ ଧନୁର୍ଦ୍ଧର ମଧ୍ୟେ
ମୁଁ ଅଟେ ଅର୍ଜ୍ଜୁନ ବୀର ଜାଣ ଏହି ଯୁଦ୍ଧେ ।
ଋଷିଗଣ ଯେତେକ ଏ ସଂସାରେ ଅଛନ୍ତି
ମୁଁ ତହିଁରେ ବ୍ୟାସଋଷି ଶୁଣ ହୋ ସୁଗତି ।
ବୋଲନ୍ତି ଯେତେକ କବି ପଦ ଲେଖିବାରୁ
ଏହାଙ୍କ ମଧ୍ୟେ ବୋଲାଏ ମୁହିଁ ଶୁକ୍ରଗୁରୁ ।
ନିତ୍ୟାଚାର କରି ଯେତେ ହୋଇଛନ୍ତି ପୂତ
ତାହାଙ୍କ ମଧ୍ୟେ ମୁଁ ତତ୍ତ୍ୱଜ୍ଞାନ ନାମେ ଖ୍ୟାତ ।
ଚଉର୍ଯ୍ୟ କପଟ ଲଘୁ କଷ୍ଟ ଯେତେ କହି
ତହିଁ ମାୟାବୀ ସଂସାର ଯାକେ ଜାଣ ମୁହିଁ ।
ତପ ଜପ ତୀର୍ଥ ଆଦି ନାନା ଯଜ୍ଞମାନ
ଏହାଙ୍କ ମଧ୍ୟରେ ମୁହିଁ ଅଟେ ବ୍ରହ୍ମଜ୍ଞାନ ।
କୀଟୁଁ ବ୍ରହ୍ମଯାଏ ଜୀବ ଯେତେକ ଅଛନ୍ତି
ତାହାଙ୍କ ଦେହେ ମୁଁ ବୀର୍ଯ୍ୟ କରେ ଉତପତ୍ତି ।
ମୁହିଁ ଯେ ବୀର୍ଯ୍ୟ ରୂପରେ ମାତାଗର୍ଭେ ପଡ଼େ
ସଂସାର ଜୀବ ରୂପରେ ଜନ୍ମିଣ ମୁଁ ବଢ଼େ ।
କଟୁତିକ୍ତ ମଧୁକଷା ଲବଣ ଆମ୍ଳିଳ
ଏ ରସଙ୍କ ମଧ୍ୟେ ମୁହିଁ ଭୂମିରସ ମୂଳ ।
ଭୂମିରସକୁ ଜାଣ ନପାରେ କେହି ଚିହ୍ନି
କହନ୍ତି ଯେ ଭଗବାନ ଶୁଣ ଫାଲଗୁନି ।
ଭୂମିରୁ ଯାବତ ରସ ଦ୍ରବ୍ୟ ହୁଏ ଜାତ
ଏଣୁ ସେହି ଭୂମି ଏକା ମୁହିଁ ଅଟେ ସତ୍ୟ ।
ଚଉଦଭୁବନ ଆଦି ସ୍ୱର୍ଗ ପୁର ଯାଏ
ସମସ୍ତଠାରେ ପୂରିଛି ମୁହିଁ ଧନଞ୍ଜୟେ ।
କହିବି ସବୁ ବିଭୂତିଯୋଗେ ତୋତେ ମୋର
ମୋହର ମହିମା ଜାଣ ଅଟେ ଅଗୋଚର ।

ପଞ୍ଚାଶକୋଟି ବସୁଧା ପୁଣି ପୃଥ୍ୱୀଯାକେ
ପୂରି ରହିଅଛି ମୁହିଁ ପରଂବ୍ରହ୍ମ ବାକ୍ୟେ ।
ବିସ୍ତାର କରି କହିବା ଆଜ ତୋତେ ସବୁ
ସଞ୍ଚୟ କରି ତୁ ପାର୍ଥ ହୃଦେ ରଖିଥିବୁ ।
ଦେଖିବୁ ଶ୍ରୀମନ୍ତ ସୁପଣ୍ଡିତ ଯହିଁ ଯେବେ
କହିବୁ ମୋର ବିଭୂତି ଯୋଗ ତାଙ୍କୁ ତେବେ ।
ଆବର ମହିମା ମୋର ଭାଗବତେ ପୁଣି
ଉଦ୍ଧବ ଶୁଣିବ ତାକୁ କହିବି ଯେ ଆଣି ।
ମୋହର ସେ ବିଶ୍ୱରୂପ ତାକୁ ଦେଖାଇବି
ପାଦୁକା ଦେଇ ବଦ୍ରିକା ତାକୁ ପଠାଇବି ।
ଶୁଣିଣ ଅର୍ଜ୍ଜୁନ ଏହା ହେଲା ମନେ ତୋଷ
ସେ ପାଦେ ଶରଣ ବିପ୍ର ପୀତାମ୍ବର ଦାସ ।
ଶ୍ରୀନୃସିଂହ ଗ୍ରନ୍ଥ ଲେଖି କରିବା ଯେ ପୂରା
ଏଥକୁ କୃପା କରିବ ମୋତେ ବସୁନ୍ଧରା ।
ପଞ୍ଚାଶକୋଟି ଯୋଜନ ଯେଉଁ ବସୁନ୍ଧରୀ
ବସନ୍ତି ସମସ୍ତେ ତାର ପରେ ବିଜେକରି ।
ତାର ଉପରେ ବସନ୍ତି ପୁଣି ପଞ୍ଚଭୂତ
ସକଳ ଦେବତା ଆଦି ଇନ୍ଦ୍ର ଦଇବତ ।
ଆବର ଜୀବଯାକ ତା ଉପରେ ଅଛନ୍ତି
ମୁହିଁ ପୁଣି ତାଙ୍କ ସଙ୍ଗେ ଅଟେ ଜାଣ ମୂର୍ତ୍ତି ।
ମୋ ତହୁଁ ବସୁଧା ଯେବେ ବଡ଼ ହୋଇଥାନ୍ତା
ତେବେ ମୁଁ ଗୁହାରି କଲେ ଶୁଣନ୍ତା ମୋ କଥା
ଏଡ଼େ ଯେ ପୃଥ୍ୱୀଥାଇ ନଗଲା ମୋର ଦୁଃଖ
ଦୀନ ଦୁଃଖୀ ପ୍ରାୟେ ମୁହିଁ ବୁଲେ ପୃଥ୍ୱୀଯାକ ।
ଏଡ଼େକ ପୃଥ୍ୱୀକି ଏହୁ ଅଟେ କେଡେ କଥା
କେବଳ ରହିଛି ମାତ୍ର ଘରକରି ବୃଥା ।
କେବଳ ରହିଛି ମଠ ବାନ୍ଧି ଘରକରି
ଏତେମାତ୍ର ଦୟା କରି ଅଛି ବସୁନ୍ଧରୀ ।
ସେ ବସୁମତୀର ଆଜ୍ଞା ପ୍ରମାଣେ ହୁଁ ସୁଖେ
ପୃଥ୍ୱୀରେ ବସି ନୃସିଂହ ଗ୍ରନ୍ଥ ମୁହିଁ ଲେଖେ ।
**ସପ୍ତମସାଗର ଏହି ନୃସିଂହ ପୁରାଣ**
**ବସୁମତୀ କହିବାରୁ ଲେଖଇ ମୁଁ ଜାଣ ।**
ସକଳ ଲୋକଙ୍କୁ ଯେଣୁ ଅଛନ୍ତି ସେ ବହି
ମୋହର ଏପୃଥ୍ୱୀ ବୋଲି ସର୍ବେ ହୁନ୍ତି କହି ।
ବୁଝିଲେ ସଂସାରଯାକେ କାହାକୁ ତୁ ନୋହୁ
ସବୁ ଜୀବକୁ ସମାନ ଭାବେ ବହିଥାଉ ।

ଦ୍ୱିପାଦେ ଭୂମି ଦେଇଛ ମାତ୍ର ମାତ ମୋତେ
ସେ ଦ୍ୱିପାଦ ହରି କେ ନ ପାରଇ ଜଗତେ ।
ତଥାପି ଯେବେ ଉଠାଇ ବଡ଼ପଣେ ଦେବ
ସେ ବେନି ପାଦ ହରି ନପାରେ ବ୍ରହ୍ମା ଶିବ ।
ଏଠାରେ ଉଠିଗଲେ ହେଁ ସେଠାରେ ସେ ପାଇ
ସେ ବେନି ପାଦଭୂମିକୁ ନପାରେ କେ ନେଇ
କୀଟରୁ ଯେ ବ୍ରହ୍ମଯାଏ ସବୁ ବେନିପାଦ
ଏହା ନଜାଣି ଲଗାନ୍ତି ଲୋକେ ବୃଥା ବାଦ ।
ଭୋମାତା ବସୁଧା ଦୟା ସଭିଙ୍କି ଯେ କଲୁ
ମୋହର ଦୁଃଖେ ଏକା ନ ନିବାରି ପାରିଲୁ ।
ନକଲୁ ତିଳାର୍ଦ୍ଧେ ହେଲେ ମାତ ମୋତେ ଦୟା
ଦୀନ ଦୁଃଖୀପଣେ ଭୋଗକଲା ମୋର କାୟା
କେବଳ ଦ୍ୱିପାଦ ଭୂମି ଖଣ୍ଡକ ମୋ ଅଛି
ସେ ଦୁଇପାଦ ଭୂମିକେ ହରି ନ ପାରୁଛି ।
ସୁପଣ୍ଡିତ ସଭାରେ ମୁଁ ନାହିଁ ଦିନେ ବସି
ସାହସ ପଣେ ଲେଖୁଛି ମାତ୍ର ଅର୍ଥ ଘୋଷି ।
ମୂର୍ଖଙ୍କଠାରୁ ଅଟଇ ମୁହିଁ ବଡ଼ ମୂର୍ଖ
କେବଳ କୃପା କରନ୍ତି ମୋତେ ପଦ୍ମମୁଖ ।
ଯାଉ ବା ନଯାଉ ପଦ ଲେଖଇ ମୁଁ ମାତ୍ର
ନୃସିଂହ ପୁରାଣ ଅଟେ ଏ ପରମ ଶାସ୍ତ୍ର ।
ଷଡ଼ ସମ୍ବାଦେ ଯେ ଏହୁ ପୁରାଣେ ପ୍ରକାଶ
ସେ ପାଦେ ଶରଣ ବିପ୍ର ପୀତାମ୍ବର ଦାଶ ।
ସଞ୍ଜୟ ବୋଇଲେ ଶୁଣ ଗାନ୍ଧାରୀର ସାଇଁ
ଏ ରୂପେ କହନ୍ତି ଅର୍ଜ୍ଜୁନକୁ ଭାବଗ୍ରାହୀ ।
ଶୁଣି ମନେ ତୋଷ ହେଲେ ଯୁଧିଷ୍ଠିର ଭ୍ରାତ
ବୋଲେ କହିବି ଶୁଣିବା ହେଉ ଜଗନ୍ନାଥ ।
କହିବା ହେଉ ବିଭୂତି ଯୋଗ ପ୍ରଭୁ ମୋତେ
ମାନବେ ତରିବେ ଏହା ଶୁଣି ଅପ୍ରମିତେ ।
ତୁମ୍ଭ ବିଭୂତି ବ୍ରହ୍ମାଣ୍ଡେ ଅଛି ଯେତେ ପୂରି
ସେ ବିଭୂତି କିରୂପେ ମୁଁ ଦେଖିବି ହେ ହରି ।
ତେବେ ହେଁ କହିବି ସିନା ଉଦ୍ଧବଙ୍କୁ ଯାଇ
ନନ୍ଦିଘୋଷରେ ଦେଖିବି ଆଗେ ତେବେ ମୁହିଁ
ଏ ରୂପ ଯେ ଦେଖିବାକୁ ବଳିଲା ମୋ ମନ
ଦେଖାଅ ବେଗେ ଦେଖିବି ତାହା ଭଗବାନ ।
ଅର୍ଜ୍ଜୁନ ମୁଖୁ ଏମନ୍ତ ବାକ୍ୟ ପ୍ରଭୁ ଶୁଣି
କହନ୍ତି ମନରେ ଶ୍ରଦ୍ଧା ବହି ଚକ୍ରପାଣି ।

ବୋଲନ୍ତି ହେ ବିଭୁତିକୁ ଦେଖ ବେଗେ ତୁହି
ସଂସାର ଯାକରେ ଦେଖି ନାହାନ୍ତି ଯେ କେହି
ଦେଖିବୁ ବୋଲି ଯଦ୍ୟପି ବଳିଲା ତୋ ମନ
ନିର୍ଭୟ ହୋଇ ବସିଣ ଦେଖ ଅରଜୁନ ।
ଦେଖ ଆହୋ ପାର୍ଥ ଆଗ ମୋର ବିଶ୍ୱମୂର୍ତ୍ତି
ସହସ୍ର କୋଟି ପରମଞ୍ଜାନ ଯାଏ ଜ୍ୟୋତି ।
ନାନାଦି ପ୍ରକାରେ ମୋର ଦେଖ ବିଶ୍ୱରୂପ
ତା ମଧ୍ୟେ ଦେଖ ଆଦିତ୍ୟ ଜ୍ୟୋତିର ସ୍ୱରୂପ
ବସୁଧାମାନଙ୍କୁ ଦେଖ ଏହି ଭିତରେଣ
ବ୍ରହ୍ମା ରୁଦ୍ର ଚନ୍ଦ୍ର ମହେଶ୍ୱର ସୁରଗଣ ।
ଅଶ୍ୱିନୀକୁମାର ଅଗ୍ନି ପବନ କୁବେର
ନାଶକର ଆଦି ଦେଖ ନେତ୍ରେ ସବୁ ତୋର ।
ଆବର ପୂର୍ବକାଳେ ତୁ ଯାହା ଦେଖିନାହୁଁ
ତାହା ଦେଖ ବଖାଣିଲେ ପୁଣି ମହାବାହୁ ।
ପୃଥ୍ୱୀରେ ଆଶ୍ଚର୍ଯ୍ୟ କଥାମାନ ଯେତେ ଅଛି
ନୟନ ପୂରାଇ ତାହା ଦେଖ ସବ୍ୟସାଚି ।
ସ୍ଥାବର ଜଙ୍ଗମ ଯେତେ ସଂସାରରେ ଅଛି
କହିବି କୀଟ ପତଙ୍ଗ ଆଦି କେତେ ବାଛି ।
ଏ ମୋହର ମହିମାର ରସଭାବ ଦେଖ
ଏକତ୍ୱ ହୋଇଣ ରହିଛନ୍ତି କେତେ ଲୋକ ।
ନକ୍ଷତ୍ର ବାର କରଣ ତିଥି ଯୋଗ ଆଦି
ଏମାନେ ଝଟକ ଦିଶୁଛନ୍ତି ହୃଦେ ଭେଦି ।
ଆବର ଯେତେ ଅଛନ୍ତି ଦେଖିବୁ ହୋ ପାର୍ଥ
କହନ୍ତି ଯେ ନନ୍ଦିଘୋଷେ ବସି ଜଗନ୍ନାଥ ।
ଚର୍ମ ନେତ୍ରେ ନୋହିବତ ତୋତେ କିଛିଜଣା
ମୃଗତୃଷ୍ଣା ଜଳପ୍ରାୟ ଛନ୍ତି ଅକଳନା ।
ତେଣୁ ଏ ଦିବ୍ୟଚକ୍ଷୁକୁ ଦେଲି ତୋତେ ନିଅ
ପ୍ରସନ୍ନ ହୋଇଣ ଦେଲି ଘେନ ପଣ୍ଡୁ ପୁଅ ।
ସଞ୍ଜୟ ମନ୍ତ୍ରୀ କହଇ ଅନ୍ଧରାଜେ ଚାହିଁ
ପାର୍ଥକୁ ଯେ ଦିବ୍ୟଚକ୍ଷୁ ଦେଲେ ଭାବଗ୍ରାହୀ ।
ପରମ ଦୟାଳୁ ସେ ଯେ ମହା ଯୋଗେଶ୍ୱର
ଭକ୍ତଜନଙ୍କଠାରେ ଦୟା ଅଗୋଚର ।
ସେ ପ୍ରଭୁ ପରମେଶ୍ୱର ନିଜ ରୂପ ଆଣି
ପାର୍ଥକୁ ଦେଖାନ୍ତି ଦୟାକରି ଚକ୍ରପାଣି ।
ଏରୂପେ ଦିଶେ ନିର୍ବାଣ ରୂପ ଜ୍ୟୋତିର୍ମୟ
ତାହା ମୁଁ କହିବି ତୋତେ ଶୁଣ ଅନ୍ଧରାୟ ।

ସେ ପ୍ରଭୁ ଦେହେ ଅନେକ ଦିଶେ ନାସାକର୍ଣ୍ଣ
ଅନେକ ରୂପ ହୋଇଣ ଦିଶେ ଜ୍ୟୋତିବର୍ଣ୍ଣ ।
ଅନେକ ଯେ ଅବତାର ଦିଶେ ପ୍ରଭୁକାୟେ
ଦେଖିଣ ଚକିତମନା ହେଲେ ଧନଞ୍ଜୟେ ।
ଅନେକ କାଞ୍ଚନ ପ୍ରଭୁ ହୋଇ ବିଭୁଷଣ
ଅନେକ ଯେ ଅଲଙ୍କାର ଅଙ୍ଗରେ ଭୁଷଣ ।
ଅନେକ ଆୟୁଧ ପ୍ରଭୁ ହସ୍ତେ ଶୋଭାପାନ୍ତି
ଅନେକ ଭୁଜେ ଉଭାରି ଧରି ରହିଛନ୍ତି ।
ଅନେକ ଯେ ଦିବ୍ୟବେଶ ବହୁ ଦିବ୍ୟମାଳ
ଅନେକ ଭୁଷଣ ହୋଇଛନ୍ତି ଆଦିମୂଳ ।
ଅନେକ ଦିବ୍ୟଚନ୍ଦନ ଗନ୍ଧ ଚତୁଃସମ
ଅନେକ ଶରୀରେ ଲେପି ଦିଶନ୍ତି ଶୋଭନ ।
ଅନନ୍ତ ସେ ଦିବ୍ୟରୂପ ଅନନ୍ତ ସେ ମୂର୍ତ୍ତି
ଅନନ୍ତ ରୂପ ଦିଶନ୍ତି ଭିନ୍ନ ଭିନ୍ନ ଜ୍ୟୋତି ।
ସହସ୍ରେ କିରଣ ସୂର୍ଯ୍ୟ ଯେହ୍ନେ ଏକାବେଳେ
ଉଦୟେ ହୁଅନ୍ତେ ଜ୍ୟୋତି ଦିଶଇ ତତ୍କାଳେ ।
ସେହି ପ୍ରକାରେ ଦିଶଇ ତେଜ ଶୂନ୍ୟଘୋଟି
ପରମେଶ୍ୱର ଶରୀରେ ଦିବ୍ୟରୂପ ଗୋଟି ।
ଜଗତଯାକ ଦିଶନ୍ତି ପୂରି ଦେବହରି
ପାର୍ଥକୁ ଦିଶଇ ଭିନ୍ନ ଭିନ୍ନ ରୂପ ବାରି ।
ଆନନ୍ଦଭାବେ ଆଶ୍ଚର୍ଯ୍ୟ ହୋଇ ପାର୍ଥ ମନ
ପୁଲକ ହୋଇ ଶରୀରୁ ଫୁଲେ ଲୋକମାନ ।
ଚକିତେ ବସି କରଇ ହୃଦ ଛନ୍ନ ଛନ୍ନ
ନୟନ ଯୁଗଳକୁ ସେ କରେ ଥନ ଥନ ।
ବିନୟ ଭାବରେ ପାର୍ଥ ହୋଇ କୃତାଞ୍ଜଳି
ପୁଣିହିଁ ସେ କୃଷ୍ଣପାଦେ ପଡେ ଲଟଗାଳି ।
ସଞ୍ଜୟ ବୋଲଇ ରାଜା ଶୁଣ ଧୃତରାଷ୍ଟ୍ର
ଅର୍ଜ୍ଜୁନ ପୁଣି ପୁଚ୍ଛଇ ହୋଇ ମନେ ହୃଷ୍ଟ ।
ବୋଲଇ ତୁମ୍ଭ ମହିମା ଅତି ଅଗୋଚର
ଦେଖିଲି ଦିଶଇ ପରି ଦେହେ ଚରାଚର ।
ପ୍ରଥମେ ଦେଖିଲି ମୁହିଁ ଚତୁର୍ମୁଖ ବ୍ରହ୍ମା
ପଦ୍ମାସନେ ବସିଛନ୍ତି ସେହି ମହାତମା ।
ଆବର ଯେ ଋଷିଗଣ ଛନ୍ତି ଚାରିପାଖେ
ତେତିଶକୋଟି ଗନ୍ଧର୍ବ ଆଦି ଦେବଲୋକେ ।
କିରୂପେ କେ ଅଛି ପୁଣି ନ ପାରେ ମୁଁ ଚିହ୍ନି
ଅଛନ୍ତି ତ ମହେଶ୍ୱର ଶିବଗଣ ଘେନି ।

ଦିଶନ୍ତି ତ ବିଶ୍ୱେଶ୍ୱର ପ୍ରାୟେ ସର୍ବ ଜ୍ଞାନୀ
ବିଶ୍ୱରୂପର ମହିମା ତୁମ୍ଭର ଯେ ଧ୍ୱନି ।
ବହୁତ ଶରୀର ଦିଶେ ବହୁବର୍ଗ ତୋର
ବହୁତ ରୂପ ଦିଶଇ ସର୍ବ ଅଗୋଚର ।
ବହୁତ ନାସା ଆବର ଦିଶେ ବହୁନେତ୍ର
ବହୁତ ଦିଶଇ କର୍ଣ୍ଣ ଦିଶେ ବହୁଗାତ୍ର ।
କିରୀଟ କୁଣ୍ଡଳ ମୁକୁଟ ଯେ ରତ୍ନହାର
ମାଣିକ୍ୟ ପଦକ ହୀରା ନୀଳା ଅଗୋଚର ।
ଶଙ୍ଖ ଚକ୍ର ଗଦା ପଦ୍ମ ସାତ୍ତ୍ୱିକାଦି ଯାଏ
ଶାରଙ୍ଗ କୌମୁଦୀ ଗଦା ବିଭୂଷଣ କାୟେ ।
ପ୍ରଳୟ ଅଗ୍ନି ପରାୟ ଦିଶେ ତେଜମାନ
ତାହା ମୁହିଁ ଦେଖି ଭୟ କରୁଛି ମୋ ମନ ।
କୋଟିଏକ ଚନ୍ଦ୍ର ସୂର୍ଯ୍ୟ ଦିଶେ ଯେହ୍ନେକାୟେ
ସେ ରୂପ ମୋତେ ଦିଶୁଛ ପ୍ରଭୁ ବ୍ରହ୍ମମୟେ ।
ମୁହିଁ ଯେ ପାଞ୍ଚଇ ମନେ ବ୍ରହ୍ମରୂପ କେହୁ
କେବଣ ସ୍ଥାନରେ ଭେଟ ପାଇବି ତା ଆଉ ।
ତୁମ୍ଭେ ଏକବ୍ରହ୍ମ ସ୍ୱରୂପ ଯେ ଦିଶ ମୋତେ
ଏବେ ମୁଁ ଦେଖିଲି ବହୁରୂପ ନେତ୍ରଗତେ ।
ତୁମ୍ଭେ ସେହି ହେତୁ କର୍ତ୍ତା କାରଣ ପୁରୁଷ
ତୁମ୍ଭ ବାହାରେ ଆନ ନ ଦିଶେ ଜଗଦୀଶ ।
ସୁସାଧୁଜନଙ୍କ ରକ୍ଷାକର୍ତ୍ତା ତୁମ୍ଭେ ପ୍ରଭୁ
ପରମ ପୁରୁଷ ନିତ୍ୟ ନିରାମୟ ସବୁ ।
ଭୋ ନାରାୟଣ ତୁମ୍ଭର ଦିଶେ ଚକ୍ଷୁ ଦୁଇ
ପୃଥ୍ୱୀରେ ଉଦୟ କିବା ଚନ୍ଦ୍ର ସୂର୍ଯ୍ୟ ହୋଇ ।
ଶ୍ରୀମୁଖ ବାକ୍ୟ ତୁମ୍ଭର ଅଟେ ସୁଧାରସ
ପୃଥିବୀ ବ୍ୟାପି ଦିଶଇ ଆହେ ଜଗଦୀଶ ।
ଆକାଶ ପାତାଳ ମଞ୍ଚ ଆଦି ଦଶଦିଶେ
ତୁମ୍ଭର ରୂପ ବ୍ରହ୍ମାଣ୍ଡେ ପୂରି ପରକାଶେ ।
ଭୋ ଜଗନ୍ନାଥ ଅନନ୍ତ ରୂପ ତୁମ୍ଭ ଜ୍ୟୋତି
ଅନନ୍ତ ବାହୁକୁ ଅନ୍ତ କରିବ କେ ମୂର୍ତ୍ତି ।
ଏ ତୁମ୍ଭର ବିଶ୍ୱରୂପ ଦେଖି ଜନଲୋକେ
ଆଶ୍ଚର୍ଯ୍ୟ ହୋଇ କରନ୍ତି ମନେ ଭୟ ଶୋକେ
ହୁଅନ୍ତି ତ କୃତ୍ୟ କୃତ୍ୟ ଦେଖି ଦେବଗଣେ
ଆତଙ୍କେ ବସିଣ ଭଜୁଛନ୍ତି ପଦ୍ମାସନେ ।
ତୁମ୍ଭର ରୂପକୁ ଚାହିଁ ହୋଇ କୃତାଞ୍ଜଳି
ସ୍ତୁତି କରୁଛନ୍ତି ଦେବେ କୋଟି କୋଟି ମିଳି ।

ଆବର ବେଦ ବ୍ରହ୍ମାଦି ରାଜରଷି ଯାଏ
ଭଜନ୍ତି ଜୟ ଶବଦ କରି ସବୁଠାଏ ।
ରୁଦ୍ରଗଣେ ଜପୁଛନ୍ତି ନାମ ଗୋବିନ୍ଦର
ପାର୍ବତୀ ହର ଜପନ୍ତି କୋଟି କୋଟି ବାର ।
ଅନେକ ଜପ କରିଣ ସର୍ବ ସୁରଗଣ
କହନ୍ତି ଯେ ଯାଗ ସ୍ତୁତି ସିଦ୍ଧ ସଙ୍ଗତେଣ ।
ଅଶ୍ୱିନୀଗଣ ସହିତେ ଯେତେ ଦେବଦେବୀ
ନକ୍ଷତ୍ର ଦେବଗଣ ଶ୍ରୀବିଶ୍ୱଦେବ ହବି ।
ମରୁତ ଆଦି ଯେ ପିତୃଗଣଙ୍କର ମେଳେ
ଗନ୍ଧର୍ବ କିନ୍ନର ଭଜନ୍ତି ସେ ସ୍ୱର୍ଗଆଳେ ।
ସାଧବ ଯେ ବିଦ୍ୟାଧର ସାଧୁ ଯତିମାନେ
ଗୁହ୍ୟକ ଋଷି ପିଶାଚ ଯକ୍ଷ ଆଦିଜନେ ।
ସମସ୍ତେ ତୁମ୍ଭର ଏହି ରୂପ ଦେଖୁଛନ୍ତି
ଗାନକରି ସ୍ତୁତିଗୋତ୍ର ବନ୍ଦନ କରନ୍ତି ।
ଏସନ ପ୍ରକାରେ ତୁମ୍ଭ ରୂପ ଦେଖିକରି
ହୃଦୟରୁ ଚିନ୍ତା ମୋହ ନ ଗଲା ମୋହରି ।
ଏ ରୂପେ ଦେଖନ୍ତେ ମନ ନ ହୋଇଲା ଶାନ୍ତି
ଧଇର୍ଯ୍ୟ କରିଣ ମୋତେ ରଖ ଶିରୀପତି ।
ଏ ମୁଣ୍ଡମାଳ ବିସ୍ତାର କରି ନାନାମତେ
ଦନ୍ତ ରଗଡ଼ି ଦେଖାନ୍ତି ଭୟମାନ କେତେ ।
ନାନାଦି ଭୟ ଦେଖାଇ ଡରାନ୍ତି ଯେ ଆଣି
ସୃଷ୍ଟି ପ୍ରଳୟେ ବଡ଼ବାନଳ ତେଜ ଜାଣି ।
ଏ ରୂପେ ଭୟ ଦେଖାନ୍ତି ମୋତେ ଆହେହରି
ବାଇପ୍ରାୟ ହୋଇ ମୁଁ ନ ପାରେ ଦିଗ ବାରି ।
କେତେ ହେଁ ଭୟ ଦେଖାଇ ଦେଲଆଣି ମୋତେ
ସନ୍ତୋଷ ମନ ନୋହିଲା ମୋର କଦାଚିତେ
ହେ କୃଷ୍ଣ ଏଥକୁ ମୋର ଫେଡ଼ିବା ସନ୍ଦେହ
ପ୍ରସନ୍ନ ହୋଇ କରିବା ବେଗେ ଅନୁଗ୍ରହ ।
ଆମ୍ଭ ପାଞ୍ଚ ଭାଇ ଅଟୁ ତୁମ୍ଭର ଯେ ଦାସ
ଆମ୍ଭଙ୍କୁ ସୁଦୟା କରି ରଖ ଜଗଦୀଶ ।
ମୋତେ ଏହା ଦେଖି ଶଙ୍କା ଲାଗୁଛିତ ମନେ
ଧୃତରାଷ୍ଟ୍ରଙ୍କର ପୁତ୍ର ଅଟନ୍ତି ଯେମାନେ ।
ଅଛନ୍ତି ତ ଦୁର୍ଯ୍ୟୋଧନ ମୁଳେ ଶତେ ଭ୍ରାତ
ଭୀଷ୍ମ ଦ୍ରୋଣ କୃପ ଶଲ୍ୟ କର୍ଣ୍ଣ ଜୟଦ୍ରଥ ।
ଶକୁନିକି ଆଦି କରି ଯେତେ ରାଜଗଣ
ଏ ଥାଟୟାକେ ଅଟନ୍ତି ସର୍ବେ ମୁଖ୍ୟାବାନ ।

ଏମାନେ ତ ଲକ୍ଷ ଲକ୍ଷ କୋଟି ସମହୋଇ
ଦୀର୍ଘ ନଦୀରେ ଯେସନେଂସ୍ରୋତ ଜଳ ବହି ।
ତହିଁରେ ଧୀବରମାନେ ଜାଲ ଜନ୍ତା ପାତି
କୋଟି କୋଟି ମୀନ ଯାଇ ସେ ଜାଲେ ପଡ଼ନ୍ତି
ସେହି ପରାୟେ ଦିଶଇ ଆପଣଙ୍କ ତୁଣ୍ଡ
ସେ ତୁଣ୍ଡେ ପଶନ୍ତି ଯାଇ ହୋଇ ଏକରୁଣ୍ଡ ।
ଥୋକାଏ ମୁଣ୍ଡ ତାଙ୍କର କୋଟି କୋଟି ହୋଇ
ତୁମ୍ଭ ଦନ୍ତ ସନ୍ଧିରେ ଲାଗିଛି ଦେଖିଲଇଁ ।
ପାଟି ରକଟିକା ଘାତେ ହେଲେଣି ସେ ଚୂର୍ଣ୍ଣ
ଲାଗିଅଛନ୍ତି ତୁମ୍ଭର ଦନ୍ତକୋଣେ ପୁଣ ।
ବଡ଼ିନଦୀ ବାରି ପ୍ରଭା ଯେ ରୂପରେ ଟେକେ
ସମୁଦ୍ରେ ପଶେ ଧସାଇ ଯାଇଁ ସ୍ଥିଥୀଯାକେ ।
ତେସନ ପ୍ରକାରେ ତହିଁ ଦିଶନ୍ତି ରାଜନେ
ତରାଏ ଖସି ଗମନ୍ତି ଯେହ୍ନେ ପୁଣି ଶୂନ୍ୟେ ।
ସେ ରୂପେ ପଶନ୍ତି ତୁମ୍ଭ ମୁଖ ଗର୍ଭଗତେ
ଧସାଇଣ ପଶୁଛନ୍ତି ହୋଇ ଅଲୋକିତେ ।
ରାତ୍ରି କାଳରେ ଯେସନେ ଜଳଇ ଅନଳ
ତା ଦେଖି ପତଙ୍ଗଗଣ ଧାନ୍ତି ଅନ୍ତରାଳ ।
ତେମନ୍ତ ପ୍ରାୟ ସକଳ ଯାଉ ରାଜାଗଣ
ପଶନ୍ତି ସେ ମରିବାକୁ ତୁମ୍ଭ ମୁଖରେଣ ।
ସେମାନେ ତୁମ୍ଭର ମୁଖେ ପଶିଯାନ୍ତି ମରି
ଚୋବାଇଣ ଖଣ୍ଡ ଖଣ୍ଡ କର କରେ ଧରି ।
ଦନ୍ତେ ରଗଡ଼ି ତାହାଙ୍କୁ ତଳେ ପକାଉଛ
କେଡ଼େ ଉଗ୍ରରୂପ ମୁହିଁ ଦେଖିଲି ପ୍ରତ୍ୟକ୍ଷ ।
ମନରେ ଲାଗୁଛି ମୋତେ ପୁଣି କେତେ ଭୀତି
ଭୋ ଦେବ ସୃଷ୍ଟି କର୍ତ୍ତା ତୁ ଅଟୁ ଜଗଜ୍ୟୋତି ।
ଏ ରୂପ ଦେଖି ଲାଗୁଛି ମୋତେ ମହାଭୟ
ମନରେବ୍ୟଥା ପାଇଣ ଥରୁଛି ମୋ କାୟ ।
ପାଦରେ ପ୍ରଣାମ କରି କହନ୍ତି ଯେ ମୁହିଁ
କରିବାକୁ ରକ୍ଷା ମୋତେ କମଳାର ସାଇଁ ।
ଏବେ କହୁଛି ସଂହାର ତୋର ଏହି ରୂପ
ପ୍ରସନ୍ନ ହୁଅ ମୋତେ ମୋ ହୃଦୁଁ ଯାଉ ତାପ ।
ସୁଦୟା କରି କହିବା ହେଉ ପ୍ରଭୁ ମୋତେ
ଏ ରୂପେ କିସ କହିଲେ ଯିବି ମୁହିଁ ପ୍ରତେ ।
ନ କହିଲେ ଦେହ ମୋର ନୁହଇ ଆୟତ୍ତ
ଏତେବୋଲି ଥରହରେ କମ୍ପେ ବୀର ପାର୍ଥ ।

ଅର୍ଜ୍ଜୁନ ଡରିବା ଦେଖି କମଳାର ବର
ବୋଲନ୍ତି ଏଥର ଭୟ କେବେ ତୁ ନ କର ।
ସର୍ବଦା କାଳରେ ତୁହି ଅଟୁ ମୋର ସଖା
ତୋତେ ଦେଖିଣ ଦୁଷ୍ଟଙ୍କୁ ସଂହାରେ ମୁଁ ଏକା
ଯେବଣ କଥାକୁ ବଢ଼ାଉଛି ଏହି କାୟେ
ସେ କଥା କହିବା ତୋତେ ଶୁଣ ଧନଞ୍ଜୟେ ।
ଏ କୁରୁକ୍ଷେତ୍ରେ ଅଛନ୍ତି ଜାଣ ଯେତେ ଲୋକ
ସବୁଙ୍କୁ କ୍ଷୟ କରିବି ମୁହିଁ ଜାଣ ଏକ ।
ଏକେବେଳେ ଧରିଛି ମୁଁ ସଂହାରଣ କେତୁ
ଏଥେ ତୁ ନକର ଭୟ ବ୍ରହ୍ମେ ରଖ ହେତୁ ।
ଏ କୁରୁକ୍ଷେତ୍ରେ ଅଛନ୍ତି ଦେଖ ଯେତେ ପୁରି
ଏହାଙ୍କୁ କେବେ ତୁହି ନ ପାରୁ ରଣେ ମାରି ।
ଏମାନେ ଥିଲା ପ୍ରାୟେକ ମଣୁଛୁ ହୋ ତୁହି
ତୋ ମନ ଭୟଯାକ ନ ଜାଣେ କିହୋ ମୁହିଁ ।
ଯେବଣ ମହାମୁରତି ଦେଖିଲୁ ତୁ ମୋର
ଏ ରୂପେ ନାଶ ଯିବେଟି ସର୍ବ କୁରୁବୀର ।
ବେଭାରେ ତାଙ୍କୁ ଦେଲେଣି ଆଗୁ ମୁହିଁ ମାରି
ତୁ ନ ମାଇଲେ ଏରୂପେ ଯିବେ ଜାଣ ମରି ।
ଏବେ ହୋ ଉଠିଣ ବେଗେ ସମର ତୁ କର
ଯଶ ଶିରୀ ବର୍ଦ୍ଧିତ ଯେ ହେବ ଜାଣ ତୋର ।
ଶତ୍ରୁ ମାରି ପୃଥ୍ୱୀ ଭୋଗ କର ବେଗେ ପାର୍ଥ
ମୋ ବାକ୍ୟ କର କହନ୍ତି ପ୍ରଭୁ ଜଗନ୍ନାଥ ।
କାଳରୂପ ଧରିଣ ମୁଁ ଯାବତ କ୍ଷତ୍ରୀଙ୍କୁ
ଆଗହୁଁ ପ୍ରାଣ ଶୋଷିଣ ଦେଖିଲି ଏହାଙ୍କୁ ।
କେବଳ ଯେ ଲୋକମାନେ ଜାଣିବା ନିମନ୍ତେ
ବୋଲିବେ ଅର୍ଜ୍ଜୁନ ଆସି ରଣ କଲା ଯେତେ ।
ଭୀଷ୍ମ ଦ୍ରୋଣ କୃପାଚାର୍ଯ୍ୟ ବୀର ଜୟଦ୍ରଥ
କ୍ଷତ୍ରୀ ଆଦି ଯେତେ ଆସିଛନ୍ତି ସମରଥ ।
ଆଗହୁଁ ଏହାଙ୍କୁ ମାରି ଦେଲିଣି ବାସବି
କେବଳ ମଲେ ମୁଁ ଯଶ ତୋତେ ଏକା ଦେବି
କିଛି ଆଉ ନ ପାଞ୍ଚ ତୁ କର ଏହା ବେଗେ
ନିଶ୍ଚେ ପାଇବୁ ଯଶ ତୁ ରହି ରଣରଙ୍ଗେ ।
ଏମନ୍ତ ପ୍ରକାରେ ଯହୁଁ ଶୁଣିଲା ଅର୍ଜ୍ଜୁନ
ବୋଇଲା ସବୁ ତୁମ୍ଭର ଦେବ ଏ ଭିଆଣ ।
ସଂସାର ରଚନା ତୁମ୍ଭେ କରିଛ ପୃଥ୍ୱୀରେ
ତୁମ୍ଭେ ସିନା ଭିଆଇଛ ଏହି ବ୍ରହ୍ମାଣ୍ଡରେ ।

ବ୍ରହ୍ମାଣ୍ଡକୁ କଲ ଜାତ ତୁମ୍ଭେ ଏକ ବ୍ରହ୍ମା
ଉତ୍ପତିସ୍ଥିତି ତୁମ୍ଭର ଅଟେ ସବୁ ସିନା ।
ଏଥକୁ ଯେ ତୁମ୍ଭେ କର୍ତ୍ତା ତୁମ୍ଭେ ଏକା ମୂଳ
ଦେବତା ଆଦି ସବୁରି ଅଟେ ଧର୍ମକାଳ ।
ତୁମ୍ଭେ ଯେ ସର୍ବଦା କାଳେ ପୁରାଣ ପୁରୁଷ
ତୁମ୍ଭେ ଆଦି ଅନାଦି ଅବ୍ୟୟ ଅବିନାଶ ।
ସଂସାରେ ଯେ ଲୋକେ ବିଷ୍ଣୁ ପାରନ୍ତିଟି ଚିହ୍ନି
ତାହାଙ୍କୁ ତୁମ୍ଭେ ପ୍ରତ୍ୟକ୍ଷେ ଅଟ ଅନ୍ତର୍ଯ୍ୟାମୀ ।
ପରଂବ୍ରହ୍ମ ସ୍ୱରୂପ ଯେ ତୁମ୍ଭେ ଦେବରାଜ
ବରୁଣ ଯମ ପବନ ଅଗ୍ନି ଚନ୍ଦ୍ର ସୂର୍ଯ୍ୟ ।
ତୁମ୍ଭେ ବାସବ ତୁମ୍ଭେ ଯେ ଏକା ନଇରତ
ତୁମ୍ଭେ ବ୍ରହ୍ମା ତୁମ୍ଭେ ଶିବ ଅଟ ଲକ୍ଷ୍ମୀକାନ୍ତ ।
ତୁମ୍ଭେ ଯେ ଏକା ମୋହର ଅଟ ତାତ ମାତ
ତୁମ୍ଭଙ୍କୁ ସ୍ୱାମୀ ମୋ କୋଟି କୋଟି ଦଣ୍ଡବତ ।
ଜୟ ଜୟ ଗୋବିନ୍ଦ ହେ ପ୍ରଭୁ ଦାମୋଦର
ତୁମ୍ଭ ଆଗକୁ କରେ ମୁଁ କୋଟି ନମସ୍କାର ।
ପଛଭାଗକୁ କରେ ମୁଁ କୋଟି ଦଣ୍ଡବତ
ଆଉ କଥା ମାନଙ୍କୁ ନ ପାରେ ପଣ୍ଡୁସୁତ ।
ତୁମ୍ଭ ଦକ୍ଷିଣ ଭାଗକୁ ନମେ ଲକ୍ଷଥର
ଉତ୍ତର ଦିଗକୁ କରେ କୋଟି ନମସ୍କାର ।
ଭୋ ଦେବ କିଛି ମୁହିଁ ନ ଜାଣେ କ୍ଷୁଦ୍ରଜନ
ନମସ୍ତେ ଭୋ ଦେବ ପରମେଶ ଭଗବାନ ।
ବୁଝିଲେ ବିବେକ ପଣ ସଂସାରେ ମୋ ନାହିଁ
ଦୋଷ ଅର୍ଜିଲେ କିଛି ନ ଘେନ ଭାବଗ୍ରାହୀ ।
ମୁଁ ମୂଢ଼ ତୁମ୍ଭଙ୍କୁ ଭାବେ ସୁଆଗ ଯେ କରି
ସଖା ପଣରେ ଯେ ହେଳା କରେ ନ ବିଚାରି
ଭାଷାରେ ହୁଡ଼ିଣ କେବେ ଡାକିଥିବ ଦେବ
ହେ କୃଷ୍ଣ ଗୋବିନ୍ଦ ଜଗନ୍ନାଥ ବାସୁଦେବ ।
କେଶବ ଶ୍ରୀ ଜନାର୍ଦ୍ଦନ ହରି ବନମାଳୀ
ଦାମୋଦର ଦାଶରଥି ବାମନ ତ୍ରିବଳୀ ।
ଆହେ ଲକ୍ଷ୍ମୀପତିଆହେ ବସୁଦେବ ପୁତ୍ର
ଆହେ ଶାରଦାବଲ୍ଲଭ ଆହେ ପଦ୍ମନେତ୍ର ।
ଆହେ ନୃସିଂହ ଆହେ ଶ୍ରୀକମଳା ରମଣ
ମୁରାରି ମଧୁସୂଦନ ଆହେ ନାରାୟଣ ।
ଆହେ ଚକ୍ରପାଣି ଆହେ ମୁକୁନ୍ଦ ଶ୍ରୀପତି
ଏହି ଭାବରେ ଯେ ଡାକୁଥାଇ ମୁହିଁ ନିତି ।

ହାସ୍ୟ ପରିହାସ୍ୟ ମାଗେ ଅମାଗେ ହେ ଦେବ
ଡାକଇ ଯେ ଆପଣଙ୍କୁ ଆହେ ବାସୁଦେବ ।
ଏରୂପେ ପ୍ରଭୁଙ୍କୁ ହେଳା କରି ଡାକୁଥାଇ
ସେ କଥା କ୍ଷମା କରିବା ଆହେ ଭାବଗ୍ରାହୀ ।
ସ୍ଥାବର ଜଙ୍ଗମ କୀଟ ପତଙ୍ଗ ଯେ ଜନ
ସବୁରି ତୁ ମାତା ପିତା ଆହେ ଭଗବାନ ।
ଆପଣ ସିନା ସୃଜିଛ ଏହି ତିନିପୁର
ତେଣୁ ଆପଣ ଶ୍ରୀଗୁରୁ ଅଟନ୍ତି ମୋହର ।
ତୁମ୍ଭ ସମାନ ପୃଥ୍ୱୀରେ ମୋର କେହି ନାହିଁ
ଏ ଭବସାଗରୁ ମୋତେ କର ପ୍ରଭୁ ତ୍ରାହି ।
ଯେଉଁ ରୂପେ ପିତାମାତା ସାଜିଥାନ୍ତି ପୁତ୍ର
ସେହି ପୁତ୍ର ଦୋଷକରି ବୁଲେ ଅହୋରାତ୍ର ।
ସେ ରୂପେ ଅଟେ ତୁମ୍ଭର ମୁହିଁ ଚକ୍ରପାଣି
ଆପଣ କହିଲେ ତୋଷ ହେବି ତାହାଶୁଣି ।
ସଖାଙ୍କୁ ସଖା ଯେସନେ କରିଥାଇ ପ୍ରାଣ
ଭୋ ସଖା ଦୋଷକଲେ ନ ଘେନ ଅହଂଗୁଣ
ସଖା ସଖାକୁ ଧାଆନ୍ତି ପ୍ରାଣ ଯେହ୍ନେ ଦେଇ
ସେ ରୂପେ ମୋର ଦୋଷ ନଘେନ ଭାବଗ୍ରାହୀ
ହେ ପ୍ରଭୁ ବାଳକାଳୁଁ ଯେ କଲ ମୋତେ ସଖା
ଏ ରୂପ ହିଁ ପୂର୍ବକାଳେ ମୋତେ ତ ନଦେଖା ।
ଏ ରୂପ ଦେଖି କରୁଛି ମୁହିଁ କେଡ଼େ ଭୟ
ଏଥକୁ ଦୟା କରିବା ଜାଣି ଦେବରାୟ ।
ବିଶ୍ୱରୂପର ବିସ୍ତାର ଦେଖି ଦୀର୍ଘସ୍ଥଳୀ
କେତେ ଯୋଜନ ହେ ନ ପାରିଲି ତା କଳି ।
ଭୋ ପ୍ରଭୁ ତୁମ୍ଭର ଏହି ନାସା ବେନି ପୁଡ଼ା
ବେନିଲକ୍ଷ ଯୋଜନ ସେ ଦିଶେ ମୋତେ ଛଡ଼ା
ଆବର ହେ ଅପ୍ରମାଣ ବେନିସସ୍ର ବାହୁ
ପାଦପଦ୍ମ ତଳିପା ନ ପାରେ କଳି କେହୁ ।
ଭୋଦେବ ଏ ରୂପେ କରିବାକ ସଂହରଣ
ପୂର୍ବ ରୂପ ଧର ଦେଖିବି ହେ ନାରାୟଣ ।
ଭୋଦେବ ଚତୁର୍ଭୁଜେ ଶ୍ରୀ ଶଙ୍ଖ ଚକ୍ର ଗଦା
ସୁଦର୍ଶନ ଚକ୍ରପରେ କାର ନାହିଁ ହୃଦା ।
ଭୋଦେବ ସହସ୍ର ବାହୁ ସସ୍ରେମୁଖ ଜ୍ୟୋତି
ବିଶ୍ୱରୂପ ତେଜି ଏବେ ଧର ନିଜ ମୂର୍ତ୍ତି ।
ଏ ରୂପେ ଅର୍ଜୁନ ମୁଖୁ ଶୁଣି ଦେବହରି
ଦ୍ରୁହସିତ ହୋଇ ପ୍ରଭୁ ହସନ୍ତି ମୁରାରି ।

ହରି ବୋଇଲେ ଅନନ୍ତ ରୂପ ମୋର ଯେଣୁ
ସୁସଖା ଭାବରେ ତୋତେ ଦେଖାଇଲି ତେଣୁ
ଏରୂପେ ମୋର ନାହାନ୍ତି ପୂର୍ବେ ଦେଖିକେହି
ତୋତେ ବୋଲିଣ ଏରୂପ ଦେଖାଇଲି ମୁହିଁ ।
ଆବର ଉଦ୍ଧବକୁ ଏ ରୂପ ଦେଖାଇବି
ତୁ ଆଗ ଦେଖିଲୁ ପଛେ ଦେଖିବ ସେ ଭାବି ।
ଯେବଣ ଲୋକ ବେଦକୁ କରନ୍ତି ପଠନ
ଆବର ତୀର୍ଥ ଯୋଗାଦି ବ୍ରତ କର୍ମମାନ ।
ବହୁତ ଯେ ଦାନ କରେ କରେ ବହୁ ଜପ
ବହୁତ ପ୍ରକାର ଯେବା କରେ ଉଗ୍ର ତପ ।
ଏମାନେ କେହି ରୂପକୁ ନାହାନ୍ତି ମୋ ଦେଖି
ତୋତେ ବୋଲି ଦେଖାଇଲି ମୋର ପଦ୍ମ ଆଖି
ଏଥକୁ ଭୟ କିଛି ନ କର ଅରଜୁନ
ତରିବୁ ଆଉ କେବେ ତୁ ନୋହିବୁ ଉପୃନ୍ନ ।
ତୁହି ହେ ଅଟୁ ପାଣ୍ଡବ ବୀର ଚୂଡ଼ାମଣି
ଶିବିରେ ଥାଅ ରହି ନକର ଶଙ୍କା ପୁଣି ।
ପୂର୍ବରୁପ ଏବେ ମୋର ଦେଖ ଧନଞ୍ଜୟ
କହେ ବଇଶମ୍ପାୟନ ଶୁଣ ଜନ୍ମେଜୟ ।
ଏରୂପେ ସଞ୍ଜୟ ଧୃତରାଷ୍ଟ୍ର ଆଗେ କହେ
ଅର୍ଜୁନେ ବୁଝାନ୍ତି ମୋତେ ଯୋଗ ଦେବରାୟେ
ପୂର୍ବରଯେ ନିଜରୂପ ଧରି ନାରାୟଣ
ଅର୍ଜୁନର ଭୟଯାକ ଛଡ଼ାଇଲେ ପୁଣ ।
ବିଶ୍ୱରୂପକୁ ଶ୍ରୀଅଙ୍ଗୁ ନେଲେ ପୁଣି କାଢ଼ି
ପୂର୍ବର ଯେ ନିଜରୂପ ଧଇଲେ ବାହୁଡ଼ି ।
ଉଭାହେଲେ ଶଙ୍ଖ ଚକ୍ର ଗଦା ପଦ୍ମ ଧରି
ଦେଖିଣ ହସିଲେ ଧନଞ୍ଜୟ ସ୍ତୁତିକରି ।
ବୋଇଲେ ଦେଖିଲି ନେତ୍ରେ ଆସି ସ୍ୱାମୀ ଏବେ
ଭେଟ ପାଇଲି ବ୍ରହ୍ମାଣ୍ଡ କର୍ତ୍ତା ବାସୁଦେବ ।
ହୃଦୟରେ ଭୟମାନ ଥିଲା ମୋର ଯେତେ
ସେ ସମସ୍ତ କ୍ଷୟଗଲା ତୁମ୍ଭ କୃପା ହୋନ୍ତେ ।
କେବଣ ଜନ୍ମେ ମୁଁ ତପ ଥିଲି କେତେ କରି
ତେଣୁ ଦେଖିଲି ନୃସିଂହ ପ୍ରଭୁ ନରହରି ।
କି ଅବା ମୁଁ ସବୁଶାସ୍ତ୍ରେ ନିର୍ଜିତା ହେଲାକୁ
ଦେଖିଲି ତୋ ବିଶ୍ୱରୂପ ଭବୁ ତରିବାକୁ ।
ଅର୍ଜୁନ ମୁଖୁଁ ଏ ରୂପେ ସ୍ତୁତିବାଣୀ ଶୁଣି
ଦରହସିତେ କହନ୍ତି ପ୍ରଭୁ ଚକ୍ରପାଣି ।

ବୋଲନ୍ତି କି ବିଶ୍ୱରୂପ ଦେଖିଲୁ ହୋ ପାର୍ଥ
ସାଧୁ ଲୋକଙ୍କୁ ଦେଖାନ୍ତି ଏହା ଜଗନ୍ନାଥ ।
ଚଉଦଭୁବନେ ମୋର ଯେତେ ଲୋକଛନ୍ତି
ଆଜିଯାଏ ଏହା ନେତ୍ରେ କେଦେଖି ନାହାନ୍ତି ।
ତୋତେ ବୋଲି ଦେଖାଇଣ ଦେଲୁ ତାହା ଜାଣ
ଆବର ପଢ଼ନ୍ତି ବେଦ ଯେତେ ବିପ୍ରଗଣ ।
ନାନାଦି ଜପତପ ଯେ ତୀର୍ଥ ବ୍ରତ କରି
ଏମାନ କଲେ ଦେଖି ନପାରେ କେବେହରି ।
ତୁ ଯେବେ ଭକ୍ତିଭାବେ ନଥାନ୍ତୁ ମୋତେ ସେବି
କେତେ ହେଁ ପୁଣ୍ୟକଲେ ନ ପାନ୍ତୁ ବିଷ୍ଣୁଭାବି ।
ମୋଠାରେ ଦୃଢ଼ଭକ୍ତି କରନ୍ତି ଯେଉଁଜନ
ସେ ମୋତେ ପାରଇ ଚିହ୍ନି ଜାଣ ଅରଜୁନ ।
ଆନନ୍ଦେ ବ୍ରହ୍ମକୁ ଦେଖଇ ଯେ ଜ୍ଞାନମାର୍ଗେ
ସେ ପ୍ରାଣୀ ଲୀନ ହୁଅଇ ଶେଷେ ମୋର ଅଙ୍ଗେ
ତୁ ଏବେ ମୋହର ଭାବ ହୃଦଗତେ କରି
ସ୍ୱକର୍ମ କର ହସ୍ତରେ ଏବେ ଧନୁ ଧରି ।
ଆନନ୍ଦ ଚିତ୍ତରେ ତୁହି ସମସ୍ତ ସଂହର
ମୋ ବ୍ରହ୍ମ ରୂପକୁ ଚିହ୍ନି ହୃଦଗତେ ଧର ।
ପ୍ରାଣୀମାନଙ୍କର ସମଦରଶୀ ଯେ ହୋଇ
କପଟ ବାଦ ହିଂସା ଯେ ମନେ ନ କରଇ ।
ସେ ପ୍ରାଣୀ ମୋହର ପ୍ରାୟ ଅଟେ ମାନ୍ୟବର
ଶ୍ରୀମୁଖ ବଚନ ତୋତେ କହିଲୁ ଯେ ସାର ।
ବିଶ୍ୱରୂପକୁ ମୋହର ଦେଖିଲୁ ତୁ ଏକ
ସଂସାରଯାକେ ନାହାନ୍ତି ଦେଖିକେହି ଲୋକ
ନୃସିଂହପୁରାଣ ଏହି ଅଟେ ବ୍ରହ୍ମଜ୍ଞାନ
ସୁଜ୍ଞାନୀ ଭାବ ଧରିଣ ଶୁଣିବେ ଯେ ଜନ ।
ସେ ପ୍ରାଣୀମାନେ ମୋହର ହୃଦୟ ଶଙ୍ଖାଳି
ଶୁଣ ଆହେ ପାର୍ଥ କହୁଛନ୍ତି ବନମାଳୀ ।
ସୁଗତି ଲଭି ସେହୁ ମୋ ପୁରେ ପ୍ରକାଶନ୍ତି
ଆବର ବାକ୍ୟ ମୋହର ଶୁଣ ବ୍ୟାସନାତି ।
ଦାମ୍ଭିକ ଦୁଷ୍ଟହନ୍ତକ ଯେତେକ କୁଜ୍ଞାନୀ
ପରସ୍ତିରୀ ପରଦାରା ହରେ ଶୂଦ୍ରଯୋନି ।
ଏମାନଙ୍କୁ ଅଗୋଚର ଅଟେ ମୁଁ ଅର୍ଜ୍ଜୁନ
ମୋତେ ଯେ ନ ଭଜେ ତାର ନରକେ ପତନ
ଶୁଣ ନାରଦ ନୃସିଂହ ଗ୍ରନ୍ଥର ଏ ବାଣୀ
ସବୁ ଗ୍ରନ୍ଥ ପିଣ୍ଡ ଏହି ଅଟେ ଆତ୍ମା ପୁଣି ।
ଯେତେକ ଗ୍ରନ୍ଥ ବ୍ରହ୍ମାଣ୍ଡ ମଧ୍ୟେ ଅଛି ପୂରି
ଏ ଗ୍ରନ୍ଥ ବୁଝିଲେ ଆତ୍ମା ବୁଝ ସବୁଙ୍କରି ।
ସର୍ବେ ଅଟନ୍ତି ପିଣ୍ଡ ଏ ଅଟେ ଆତ୍ମା ଜାଣ
ଆତ୍ମାଗୋଟି ପ୍ରାଣ ଅଟେ ପ୍ରାଣ ନାରାୟଣ ।
ନାରଦ ବୋଇଲେ ସ୍ୱାମୀ ଶୁଣ ପରମେଷ୍ଠୀ
କେଡେ ପବିତ୍ର ଅଟେ ଏ ନୃସିଂହ ଗ୍ରନ୍ଥଟି ।
ମୋହର ଦେହରେ କ୍ଲେଶ ଯେତେ ଜାଣ ଥିଲା
ଶୁଣିବା ମାତ୍ରକେ ଆସି ସବୁ କ୍ଷୟଗଲା ।
ବ୍ରହ୍ମା ବୋଇଲେ ନାରଦ ଏ କଥା ପ୍ରମାଣ
ଶୁଣିଲେ ତରିବେ ଶ୍ରୋତା ବକ୍ତା ବେନିଜନ ।
ତୁମ୍ଭେ ଶୁଣିଲ ପୁରାଣ ମୁହିଁ କହିଲଇଁ
ଦୁହେଁ ମୋକ୍ଷହୋଇ ବିଷ୍ଣୁଙ୍କୁ ଯେ ପାଇଲଇଁ ।
କୋଟିଏ ତୀର୍ଥର ଫଳ ଲଭିବଇଁ ଦୁହେଁ
ସଂସାରେ ଶୁଣିଲେ ଲୋକେ ତରିବେସବିହେ
କୋଟିଏ ରାଜୁସିଯାଗ କଲା ଫଳ ଯେତେ
ଏ ଗ୍ରନ୍ଥ ଶୁଣିବା ଲୋକ ଭଲେ ଫଳ କେତେ ।
ଶୁଣିଣ ନାରଦ ରଷି ହେଲେ ମନେ ତୋଷ
ବୋଇଲେ କହ ଶୁଣିବା ଏବେ ଗ୍ରନ୍ଥ ରସ ।
ବ୍ରହ୍ମା ବୋଇଲେ କହିବା ତେବେ ଆହେ ଶୁଣ
ଅର୍ଜ୍ଜୁନ ଆଗେ କହନ୍ତି ଯାହା ନାରାୟଣ ।
ମନରେ ଯେ ମହାପ୍ରଭୁ କଥା ଏକ ପାଞ୍ଚି
ବୋଇଲେ ଏଥିର ଅର୍ଥ ଶୁଣ ସବ୍ୟସାଚି ।
ଶ୍ରୀମୁଖ ବଚନ ଏହି ଅଟେ ବଡ଼ ପଦ
ଏ ଅର୍ଥ ବୁଝି ସେବ ତୁ ଏକା ପଦ୍ମପାଦ ।
ମଣ୍ଡୁକୀ ମାଡିଛି ଝୁମୁକି କଠାଉ ଶୃଗାଳ
ହୋଇଛି ରାଜା କଲିକତରା ଯେ କରତ ।
ହୋଇଛି ହସ୍ତୀକି କରେ ପରଜା ବଳଦ
ବାପୁଡ଼ା ଘର ଛାଉଅଛି ଦୂବକରି ରୁଅବତ ।
ଦଣ୍ଡିକେରି ମାଛ ଗଣ୍ଡି ଭିଡୁ ଅଛି ବଗ ଧରିଅଛି
ଛତା । ଏଣ୍ଡୁଅ କାନରେ ସୁନା ମଲିକଢ଼ି ।
ଶୁଣିଣ ନାରଦ ରଷି ହେଲେ ମନେ ତୋଷ
ବୋଇଲେ କହ ଶୁଣିବା ଏବେ ଗ୍ରନ୍ଥ ରସ ।
ବ୍ରହ୍ମା ବୋଇଲେ କହିବା ତେବେ ଆହେ ଶୁଣ
ଅର୍ଜ୍ଜୁନ ଆଗେ କହନ୍ତି ଯାହା ନାରାୟଣ ।
ମନରେ ଯେ ମହାପ୍ରଭୁ କଥା ଏକ ପାଞ୍ଚି
ବୋଇଲେ ଏଥିର ଅର୍ଥ ଶୁଣ ସବ୍ୟସାଚି ।
ଶ୍ରୀମୁଖ ବଚନ ଏହି ଅଟେ ବଡ଼ ପଦ
ଏ ଅର୍ଥ ବୁଝି ସେବ ତୁ ଏକା ପଦ୍ମପାଦ ।
ମଣ୍ଡୁକୀ ମାଡିଛି ଝୁମୁକି କଠାଉ ଶୃଗାଳ
ହୋଇଛି ରାଜା କଲିକତରା ଯେ କରତ ।

ହୋଇଛି ହସ୍ତୀକି କରେ ପରଜା ବଳଦ
ବାପୁଡ଼ା ଘର ଛାଉଅଛି ଦୂବ୍ବକରି ବୁଅବତ ।
ଦଣ୍ଡିକେରି ମାଛ ଗଣି ଭିଡୁ ଅଛି ବଗ ଧରିଅଛି
ଛତା । ଏଣ୍ଡୁଅ କାନରେ ସୁନା ମଲକଢି
ନେଉଳ ନାକରେ ଗୁଣା । ମୂଷା ଶୋଇଅଛି
ରତ୍ନପଲଙ୍କରେ ମଞ୍ଜାରିଧରେ ବିଞ୍ଚଣା । ବ୍ୟାଘ୍ର
ଖାଉ ଅଛି ପାଚିଲା କଦଳୀ ଘୁଷୁରି ଖାଉଛି ପାନ
ବଣ ବିରାଡ଼ି ଯେ ବଇଷ୍ଣବ ହୋଇ ସଭାରେ
କହୁଛି ଜ୍ଞାନ । ମାତା ଖାଙ୍କେରିଙ୍କ ପୁତ୍ର ଯେ
ଭଣ୍ଡାରି କାଖେ ଯାକି ଅଛି ଖଲି । ପୁତ୍ରକୁ
ହୋଇଛି ଅଠର ବରଷ ମାତା ଜନ୍ମ ଅଛି କାଲି
ବିରାଡିକି ଜର କରିଛି ଅପର ମୂଷା ଗଲା
ବୈଦ୍ୟପଣେ । ସାଧୁଘରେ ସେ ବ୍ୟାଘ୍ରକରି
ଶାଣ ଛେଳି ରଖିଅଛି ବଣେ । ପିମ୍ପୁଡିବାପୁଡ଼ା
ବିଭା ହୋଇଗଲା ଗଗନେ ଉଡ଼ଇ ଧୂଳି
ବିଲର କଙ୍କଡ଼ା ମୃଦଙ୍ଗ ବଜାଏ ବେଙ୍ଗ ଦିଏ
ହୁଳହୁଳି । ହଳ ବୁଲୁଥିଲା ହଳିଆ ନ ଥିଲା
ଇଚ୍ଛାରେ ହେଉଛି ଚାପି । ପୁଅ ମଲେ ବୋହୂ
ବିଧବା ନୁହଇ ଏ କଥା ବଡ଼ ସନ୍ଦେଶ
ଢ଼ିଙ୍କିକି କରିଛି ପିଉଶେଳକ୍ଷମ କୁଲାକୁ କରିଛି
ଜର । ଚାଲୁଣି ବାପୁଡ଼ା ମାଆଘର ଗଲା
ଛାଞ୍ଚୁଣି ଜଗିଛି ଘର । ପଥରକୁକଲା ସନ୍ନିପାତ
ଜ୍ୱର ପାଣିକି କଲା ପିଆସ । ଅଗ୍ନିବାପୁଡ଼ାକୁ
ଶୀତ କରୁଅଛି ଶୁଣ ଆହେ ପଣ୍ଡୁଶିଷ
ଶ୍ରୀନୃସିଂହ ପୁରାଣ ଏ ବ୍ରହ୍ମଜ୍ଞାନ ସନ୍ଧି
ଏଜ୍ଞାନ ପାରନ୍ତି ଏକା ସୁଜ୍ଞଜନେ ଭେଦି ।
ବିପ୍ର ପୀତାମ୍ବର କାଶ ମୂର୍ଖ ନରାଧମ
ଲେଖେ ବାତୁଳ ପ୍ରାୟ ନ ଚିହ୍ନି ପରଂବ୍ରହ୍ମ ।
ଜୟ ତୁ ଶାରଦା ମାଗୋ ବିଷ୍ଣୁ ପାଟରାଣୀ
ସଂସାରଯାକରେ ପୂରି ପ୍ରକାଶିଛୁ ପୁଣି ।
ଲିହନ୍ତା ବିହନ୍ତା ଅଟୁ ପାଳନ୍ତା ଗୋ ତୁହି
ଅକର୍ମର କର୍ମଦାତ୍ରୀ ସବୁ ଗୁଣଗ୍ରାହୀ ।
ଦୁଃଖୀ ଜନମାନଙ୍କର ଦୁଃଖ ନିବାରନ୍ତା
ଦରିଦ୍ର ବନ୍ଧୁ ମୋକ୍ଷ ତୁ ଅଟୁ ମୋକ୍ଷ ଦାତା ।
ପ୍ରକାଶୁ ତୁ ସର୍ବ ମୁଖେ ସୁଧାମୟ ବାଣୀ
ତେଣୁ ବେଦ ବିଦ୍ୟା ବିପ୍ରେ ପଢ଼ନ୍ତି ଯେ ଶୁଣି
ପଢ଼ିଣ ମୁକ୍ତି ଲଭନ୍ତି ଟେକି ବେଦସ୍ୱର
ସେ ବିପ୍ରଙ୍କ ପଦ୍ମପାଦେ ସଦା ସେବାମୋର
ହେ ସାଧୁଜନେ ଏହା ନ ଥିଲା ମୋର ମନେ
ରାତ୍ରେ ଶାରଦା କହିଲେ ମୋତେ ସୁବଚନେ ।

ଭକ୍ତିଭଣ୍ଡାରକୁ ମୋତେ ଦେଲେ ମାତାଫେଇ
ଦେବୀଙ୍କ କୃପାରୁ ଲେଖେ ଭରସା ମୁଁ ପାଇ ।
ସାମ ବେଦରେ ଥିବାରୁ ଏହି ଗ୍ରନ୍ଥ ବାଣୀ
ଆପେ ବ୍ୟାସରଷି ତାହା ପ୍ରକାଶିଲେ ଆଣି ।
ନୃସିଂହ ପୁରାଣ ଷଡ଼ସମ୍ବାଦ ଏ ସାର
ଲେଖେ ଋଷିକୁଲ୍ୟା ତୀରେ ବିପ୍ର ପୀତାମ୍ବର
ଶାରଦାର ଆଜ୍ଞା ପାଇ ଗଲି ମାତ୍ର ଲେଖି
ବିପ୍ରେ ଆଶୀର୍ବାଦ କରିବାକ ମୋତେ ଦେଖି
ଏଠାରୁ ଲେଖିବି ତୀର୍ଥ ଆଉ ଯେତେ ବାଣୀ
ସେ କଥା ପୁରାଣେ କହିଦେବା ଗୋସାମଣି
ବଇଶମ୍ପାୟନ ଋଷି ଜନ୍ମେଜୟ ଆଗେ
କହନ୍ତି ନୃସିଂହ ପୁରାଣ ଏ ବ୍ରହ୍ମଭାଗେ ।
ହରିଙ୍କି ଅର୍ଜ୍ଜୁନ ପୁଛେ ଯେତେ ଜ୍ଞାନ ଭାବ
ଜନ୍ମେଜୟଙ୍କୁ କହନ୍ତି ତାହା ଋଷି ସର୍ବ ।
ବୋଲନ୍ତି ହେ ସାବଧାନେ ଶୁଣିବା ନୃମଣି
କହେ ଅନ୍ଧରାଜା ଆଗେ ସଞ୍ଜୟ ଯେ ପୁଣି ।
ବିଶ୍ୱରୂପକୁ ଦେଖନ୍ତେ ପ୍ରଭୁ ହୃଷୀକେଶ
ଅର୍ଜ୍ଜୁନ ବୋଇଲେ ତାହା ଦେଖି ମନତୋଷ ।
ସନ୍ତୋଷ ହୋଇ ପାର୍ଥ ଶ୍ରୀପଦ୍ମ ପାଦେ ପଡ଼ି
ଅନେକ ଭକ୍ତି କରିଣ କହେ କରଯୋଡ଼ି ।
ବୋଲଇ ଦେଖିଲ ପ୍ରଭୁ ବିଶ୍ୱରୂପ ଯାହା
କୋଟି ଜନ୍ମ ପାପ ଗଲା ମୋର ଲକ୍ଷ୍ମୀନାହା ।
ଆବର ଦେଖିଲଇଁ ଯେ ବ୍ରହ୍ମଜ୍ଞାନ ଯୋଗ
ଏବେ ଶୁଣିବି କହିବା ହେଉ ଭକ୍ତିମାର୍ଗ ।
ଗୃହୀଙ୍କର ଧର୍ମେ ହୋଏ ଯେତେ ମାର୍ଗପନ୍ଥା
ନିଶ୍ଚୟମନା ହୋଇଣ କହିବା ସେ କଥା ।
ଏମନ୍ତ ପ୍ରକାରେ ଜାଣ ଯେଉଁ ବେନି ସେବା
ସେ କଥା ଶୁଣିବି ଯେ ଶ୍ରୀମୁଖେ ଆଜ୍ଞା ଦେବା
ଯେବଣ ଲୋକ ଗୃହରେ ସେବେ ଆପଣଙ୍କୁ
ଆଶ୍ରୟ କରି ଗୋବିନ୍ଦ ପଦ୍ମଚରଣକୁ ।
ପୁଣିହିଁ ଯେବଣ ଲୋକ ଭାବରେ ନିଶ୍ଚୟେ
ଅକ୍ଷୟ ବ୍ରହ୍ମକୁ ଚାହିଁ କରେ ହୃଦେ ଲୟେ ।
ଏ ବେନି ଲୋକ ମଧରେ ଅଟେ ଶ୍ରେଷ୍ଠ କେହୁ
ସେ କଥା କହ ଶୁଣିବା ଆଗ ମହାବାହୁ ।
ଆପଣଙ୍କ ମୁଖୁ ଶୁଣି ହେବି ବଡ଼ ତୋଷ
ଅର୍ଜ୍ଜୁନ ପୁଚ୍ଛନ୍ତେ ହସିଲେକ ପୀତବାସ ।
ବୋଇଲେ କର ତୁ ହେତୁ କହିବି ଏ ଘାନ୍ତି
ଯେବଣ ଲୋକ ଚରଣ ମୋର ସେବି ନିତି ।
ତାହାର ମନେ ପ୍ରକାଶେ ଜାଣ ଯେତେ ଜ୍ଞାନ
ମୋ ନାମ ସଭାରେ ବସି କରଇ କୀର୍ତ୍ତନ ।

ହରଷ ବିରସ ଦୁଃଖ ସୁଖ ଯେତେ ପଡ଼େ
ସେ କଥା ଘେନି ମନେ ମୋ ନାମ ଏକାପଡ଼େ
ଉତ୍ତମ ଭକ୍ତ ମୋହର ଅଟେ ଜାଣ ସେହୁ
କଥାଏ ମଧ କହିବା ତୋତେ ପୁଣ ଆଉ ।
ଶୁଣ ହୋ ଫାଲଗୁନି ମୋ ରୂପ ଅନାମୟ
ସଂସାରଯାକେ ଯେ ପୂରି ରହିଛି ମୋ ଦେହ
ନିରୋଧି ଇନ୍ଦ୍ରିୟଗଣ ଆତ୍ମା ଧାନ କଲେ
ସବୁ ଆତ୍ମା ଏକ ବୋଲି ଘେନି ସମତୁଲେ ।
କାହାକୁ ହିଂସା ବାଦ ନ କରି କଦାଚିତେ
ପରମପଦ ଲଭନ୍ତି ଯେହୁ ହୃଦଗତେ ।
ଅବ୍ୟକ୍ତ ବ୍ରହ୍ମକୁ ଯେହୁ ଚିହ୍ନେ ହେତୁକରି
ଭଜନ୍ତି ମୋ ନାମ ଅନୁକ୍ଷଣେ ହୃଦେଧରି ।
ଏ ବଡ ଦୁର୍ଲ୍ଲଭ ଜାଣ ଅଟେ ବୀର ପାର୍ଥ
କ୍ଳେଶ ପଡ଼ିଲେ ରଖନ୍ତି ତାକୁ ଜଗନ୍ନାଥ ।
ଏ କଥା କହିଲି ତୋତେ ସତ୍ୟ ଅଟେ ଜାଣ
ଆଉ କଥାଏ କହିବା ମଧ ତୋତେ ପୁଣ ।
ଯେବଣ ପ୍ରାଣୀ କରିବ ନିତ୍ୟେ କର୍ମ ଶୁଣି
ମୋତେ ତାହା ସମର୍ପିଣ ଭଜେ ଚକ୍ରପାଣି ।
ତାହାକୁ ଜାଣ କରଇ ନିତ୍ୟେ ମୁହିଁ ଦୟା
ସାଧୁରେ ଲେଖା ହୁଏ ନ ଲାଗେ ତାକୁ ମାୟା
ତୁ ଏବେ ଚଞ୍ଚଳ ଜାଣ ନ କର ତୋ ବୁଦ୍ଧି
ସୁଖେ ରହିଥିବୁ ହୃଦେ ଭଜି ଦୟାନିଧି ।
ତତକାଳେ ଆସି ମୋ ଶ୍ରୀଅଙ୍ଗେ ହେବୁ ଲୀନ
ଏଥକୁ ଭୟ କିଛି ନ କର ଅରଜୁନ ।
ମନକୁ ସ୍ଥିର କରି ନ ପାରୁ ରଖି ଯେବେ
ଅଣ ଅଭ୍ୟାସେ ପ୍ରାପତ ନୋହେ ଜ୍ଞାନକେବେ
ଅଳପ ଅଳପ କରି ତାହା ସାଧୁଥିଲେ
ମୋର କହିବାର ଜ୍ଞାନ ମିଳେ ତାକୁ ଭଲେ ।
ତୁ ଅବା ବୋଲିବୁ ଅଟେ ମୁଁ ମନୁଷ୍ୟ ମାତ୍ର
କିରୂପ ଧରିବ ଏହା କହ ପଦ୍ମ ନେତ୍ର ।
ତହିଁକି କଥାଏ କହିବି ମୁଁ ଶୁଣ ତୋତେ
ଯେତେ କର୍ମ କରିବୁ ତୁ ସମର୍ପିବୁ ମୋତେ ।
ମୋ ପାଦପଦ୍ମରେ ନିତ୍ୟେ ମନ ଦେଇଥିବୁ
ପ୍ରତ୍ୟକ୍ଷେ କହୁଛି ତୋତେ ମୋକ୍ଷ ହୋଇଯିବୁ
ଏହି ବିଚାର ଯେବେ ନ ପାରୁ ମନେ ଧରି
ତହିଁକି କହିବା ବୁଦ୍ଧି ବସ ହେତୁକରି ।
ଏ ବଡ ବିଶ୍ୱାସ କଥା ଅଟେ ବ୍ରହ୍ମାଣ୍ଡରେ
କର୍ମ କଲେ ହିଂସା ଏକା ନଥିବ ମନରେ ।
ମୁଁ କାର ପଣରେ କର୍ମେ ନ କରିବୁ ଇଚ୍ଛା
ମୁହିଁ ଯେ କରୁଛି ବୋଲି ନକରିବୁ ବାଞ୍ଛା ।

ମୁଁ ପଦଗୋଟି ହୃଦରେ କେବେ ନ କରିବୁ
ମୋଠାରେ ତୁ ଅନୁକ୍ଷଣେ ଶରଣ ପଶିବୁ ।
ଏ ରୂପେ ମନ କଲେଟି ଜ୍ଞାନ ହୋଏ ଶ୍ରେଷ୍ଠ
ଜ୍ଞାନରୁ ଧାନ ଅଟଇ ଜାଣ ବଡ଼ ଆଷ୍ଟ ।
ଧାନରୁ ଶ୍ରେଷ୍ଠ ଅଟଇ ଜାଣ ତ୍ୟାଗ ଗୁଣ
ତ୍ୟାଗରୁ ଶ୍ରେଷ୍ଠ ଅଟଇ କର୍ମ ଫଳ ଶୂନ୍ୟ ।
ଫଳ ତ୍ୟାଗ କଲେ ଭବସିନ୍ଧୁ ନିଶ୍ଚେ ତରେ
ତକ୍ଷଣ ମୋକ୍ଷ ହୋଇଣ ଆସେ ମୋରପୁରେ
ଏମନ୍ତ ଲୋକକୁ ମୁହିଁ ଦୟା ଭାବ କରେ
ମଇତ୍ର କରି ତାହାକୁ ରଖେ ସଙ୍ଗତରେ ।
କେବେହେଁ ଅପର ଚିନ୍ତା କରୁଥାଇ ମୋତେ
କେବଳ ସର୍ବଦା ଚିନ୍ତା କରୁଥାଇ ମୋତେ ।
ମୋ ପାଦ ଧାନ କରିଣ ବସେ କରି ଲୟ
ମନ ରଖିଥିବ ସଞ୍ଚବାର ଧନ ପ୍ରାୟ ।
ଏରୂପେ ଭକ୍ତି ଯେବଣ ଲୋକ ଜାଣ କରି
ମୋର ପାଦେ ଥାଇ ମଜ୍ଜି ଧାନ ଅନୁସରି ।
ଶ୍ରୀବ୍ରହ୍ମପୁରୁଷ ବୋଲି ଯେବଣ ପୁରୁଷ
ତାହାକୁ ପାରିଲେ ଚିହ୍ନି ଭବେ ଭୟ କିସ ।
ଆଉ କଥାଏ କହିବା ଥାଅ ତୁହି ଶୁଣି
ଏପରି ଭକ୍ତ ମୋହର ଅଟେ ଗୁଣମଣି ।
ମନରେ ନକରି ଭୟ ନୋହି ଉଦବେଗ
ମିଳିଲେ ପଦାର୍ଥ କରେ ହରଷକୁ ତ୍ୟାଗ ।
ହେଲେ ବୋଲେ ଆଛା ନୋହିଲେ ତ କରେ ଆଛା ।
ସମଦରଶି ଭାବରେ ଘେନେ ସମଇଚ୍ଛା ।
ଭୟ ଉଦବେଗ ଆଉ ହରଷ ଅମର୍ଷ
ଏ ଚାରିକଥାରେ ମୋର ଭକ୍ତନୋହେ ବଶ ।
ପ୍ରାଣକୁ କେବଳ ସେହି କରିଥାନ୍ତି ରକ୍ଷା
ଧନକୁ ଆସକ୍ତି ନୋହି କରେ ସ୍ତୋକଭିକ୍ଷା ।
ପଣ୍ଡିତଭାବେ ଥାଇ ସେ ସମେ ସବୁ ଘେନେ
ଭୂତ ଆଉ ଭବିଷ୍ୟତ ଶୁଣ ବର୍ତ୍ତମାନେ ।
ସୁଚିତ୍ତେ ସେ ହୋଇଥାଇ ଗର୍ବକର୍ମ ତ୍ୟାଗୀ
ନାଶଇ କ୍ଳେଶମାନ ମୋ ପାଦପଦ୍ମେ ଲାଗି ।
ସେହି ମୋର ସବୁକାଳେ ଅଟେ ନିଜ ଦାସ
ଜନ୍ମିଲେ ସେବା ନଛାଡେ ଥାଏ ମୋର ପାଶ
ମୁହିଁ ସେଜାଣେ ତାହାକୁ ମୋର ବୋଲି କରି
ସେ ମୋତେ ଜାଣଇ ମୋର ପ୍ରଭୁ ନରହରି ।
ଶୁଭ ଅଶୁଭ ଦିହିଁଙ୍କି ଘେନେକରି ସମ
ଶୁଣ ଫାଲଗୁନି କହନ୍ତି ଯେ ପରଂବ୍ରହ୍ମ ।
ଶତ୍ରୁ ମିତ୍ର ଦୁହିଁଙ୍କି ସେ ଘେନେ ସମ କରି
ମଣଇଁ ମନେ ବ୍ରହ୍ମାଣ୍ଡଯାକ ଏକା ହରି ।

କେଅବା କରେ ନିନ୍ଦା କେକରେ ଅବାସ୍ତୁତି
ଏ ଦୁଇ ସମକରିଣ ଘେନେ ଦିବାରାତି ।
ଏରୂପେ ବ୍ରହ୍ମାଣ୍ଡଯାକ ଯାର ଭାବ ହୋଏ
ତାହାକୁ ସାଧୁ ବୋଲିଣ ଘେନେ ସବୁଠାଏ ।
ଯାହା ଯେତେବେଳେ ଦ୍ରବ୍ୟ ମିଳଇ ତାହାଙ୍କୁ
ସନ୍ତୋଷମନେ ପୋଷନ୍ତି ଦେଇ କୁଟୁମ୍ବକୁ ।
ଯହିଁ ଥିଲେ ତହିଁ ଶ୍ରଦ୍ଧା ଭାବରେ ଯେ ଥାଇ
ଆପଣା ପ୍ରାୟ ଦେହକୁ ଦେଖେ ଶ୍ରଦ୍ଧା ବହି ।
ଏ ରୂପେଟି ସ୍ଥିରମତି ଯେଉଁ ଲୋକଙ୍କର
ସେମୋର ଭକ୍ତ କହିଲୁ ତୋତେ ଏହି ସାର ।
ଏଧର୍ମ ମାର୍ଗ ମୋହର ଅଟେ ସୁଧାପାନ
ପଢ଼ନ୍ତି ଶୁଣନ୍ତି ଏକା ଏହା ସାଧୁଜନ ।
ତରୁଣ କାଳରେ ଜ୍ଞାନ ଜାଣି ଯେ ନ ଥାଇ
ତଥାପି ଗୃହ କର୍ମକୁ କରେ ପୁଣି ସେହି ।
ସେ ଦେହରେ ସାଧୁ ସଙ୍ଗମିଳେ ଯେବେ ତାକୁ
ଏ ଜ୍ଞାନ ପାଳିଲେ ସେହି ତରେ ସଂସାରକୁ ।
ଶ୍ରୀମୁଖ ବଚନ ମୋର ଅଟେ ନିରାଧାର
ମୋ କଥା ପାଳିଲେ ପ୍ରାଣୀ ଭବୁ ହୁଏ ପାର ।
ଅଟନ୍ତିଟି ଶ୍ରଦ୍ଧା ଯୁକ୍ତ ଯେଉଁ ପ୍ରାଣୀମାନେ
ଏକଥା ଶୁଣିବା ପାଇଁ ଆସେ ପ୍ରତିଦିନେ ।
ମୁଖେ ଭଜନ୍ତି ପରମାନନ୍ଦ ଭଗବାନ
ମୋହର ଅଟେ କେବଳ ସେହୁ ଭକ୍ତଜନ ।
ଏରୂପେ ହରଷମନ ନାରାୟଣ ହୋଇ
ଅର୍ଜ୍ଜୁନ ଆଗେ କହନ୍ତି ସବୁ ମନ ଦେଇ ।
ବୋଲନ୍ତି ଏଥୁ ଅଟଇ ଭକ୍ତି ଜ୍ଞାନସାର
ସବୁ ପୁରାଣେ ଫଳ ଏ ଗ୍ରନ୍ଥେ ଅଛି ମୋର ।
ନୃସିଂହ ପୁରାଣ ଗ୍ରନ୍ଥ ସୁଧା କର ପାନ
ନାରଦ ଆଗେ କହନ୍ତି ଚତୁର ଆନନ ।
ସବୁ ଶାସ୍ତ୍ର ପିଣ୍ଡ ଅଟେ ଏହି ଗ୍ରନ୍ଥି ଆତ୍ମା
ଶୁଣ ନାରଦ କହନ୍ତି ପୁଣି ଦେବବ୍ରହ୍ମା ।
ଜଗନ୍ନାଥ ସ୍ୱାମୀ ସିନା ଦୟା ମୋତେ କଲେ
ପ୍ରାଣୀଏ ତରିବାକୁ ଶ୍ରୀମୁଖେ ଆଜ୍ଞା ଦେଲେ
ସଂସାରେ ଗୁପ୍ତ ହୋଇଣ ଥିଲା ବ୍ରହ୍ମବିଦ୍ୟା
ପ୍ରାଞ୍ଜଳ କରି କହିଲା ଥୋକେ ଗ୍ରନ୍ଥ ସିଦ୍ଧା ।
ନୃସିଂହ ପୁରାଣେ ଅଟେ ସବୁଙ୍କରି ଶିରୀ
ତେଣୁ ମୁଁ ଲେଖିଲି ତହୁଁ ଥୋକେ ପଦକରି ।
ଏଣୁ ଏ ନୃସିଂହ ଗ୍ରନ୍ଥ ଅଟେ ସୁଧାରସ
ସେ ପାଦେ ଶରଣ ବିପ୍ର ପୀତାମ୍ବର ଦାଶ ।
ଶ୍ରୀକୁରୁକ୍ଷେତ୍ର ମଧରେ ନନ୍ଦିଘୋଷ ରଥେ
ବସି ବୁଝାଇ କହନ୍ତି ପ୍ରଭୁ ପଦ୍ମନେତ୍ରେ ।

ଅର୍ଜ୍ଜୁନ ଆଗେ କହନ୍ତି ଯାହା ଚକ୍ରପାଣି
ସେ କଥାଯାକ ସଞ୍ଜୟ ମନ୍ତ୍ରୀ କହେ ପୁଣି ।
ଧୃତରାଷ୍ଟ୍ରଙ୍କୁ ପ୍ରାଞ୍ଜଳ କରି ପ୍ରକାଶନ୍ତି
ଶୁଣ ଆହେ ମୁନିବର ଫିଟୁ ମନଭ୍ରାନ୍ତି ।
ଆଉ ଏଣିକି କହିବେ ହରି ଏବେ ଯାହା
ସେ କଥା ତୁ ସାବଧାନେ ଶୁଣ କୁରୁନାହା ।
ଏ କଥାଯାକ ଶୁଣୁଛି ଜନ୍ମେଜୟ ନୃପ
ବଇଶମ୍ପାୟନ ଋଷି କହନ୍ତି ସ୍ୱରୂପ ।
ଜନମେଜୟଙ୍କଠାରୁ ନାହିଁ ଶ୍ରୋତା ଆଉ
ଅଟନ୍ତି ପରୀକ୍ଷ ରାଜା ପୁତ୍ର ଜାଣ ସେହୁ ।
ସରିଲା ଏ ରାଜାଠାରୁ ଶ୍ରୋତା ପୃଥ୍ୱୀଯାକେ
ପିତାମହ କହନ୍ତି ଯେ ନାରଦ ସମ୍ମୁଖେ ।
ଏ ରାଜା କୀର୍ତ୍ତି ସଂସାରେ ଜାଣ ଯାହା କଲେ
ଉପରୁ କୋଟି ପୁରୁଷଯାଏ ତରିଗଲେ ।
ତଳରୁ କୋଟିଏ ଯାଏ ତରିବେ ଏଠାରୁ
ଏ ରୂପେ ପରାଣ ଋଷି ମୁଖୁଁ ଶୁଣିବାରୁ ।
ଏ ରୂପେ ଶୁଣିବେ ଏହି ଗ୍ରନ୍ଥ ଯେହୁ ଲୋକ
ତାହାର ତରିବେ ଏହି ରୂପେ ବଂଶଯାକ ।
ପାଞ୍ଚ ପୁରାଣ ପୁଣ୍ୟ ଏ ଗ୍ରନ୍ଥେ ଯେଣୁ ଅଛି
ଶୁଣେ ପ୍ରାଞ୍ଜଳ କରିଣ ପରୀକ୍ଷିତ ବସି ।
ଭାଗ୍ୟକୁ ବିଜେ କଲେ ଶ୍ରୀବଇଶମ୍ପାୟନ
କହିଲେ ଆଣି ଯାବତ ଗ୍ରନ୍ଥ ଅର୍ଥମାନ ।
ନୃସିଂହପୁରାଣ ଗ୍ରନ୍ଥ ନାରଦଙ୍କ ଆଗେ
ପ୍ରାଞ୍ଜଳ କରି କହିଲେ ବ୍ରହ୍ମା ବ୍ରହ୍ମଭାଗେ ।
ବିଧାତା ବୋଇଲେ ତୁହୋ ଜ୍ଞାନଯାକେ ଜାଣ
ପାର୍ଥକୁ କହିବେ ଦ୍ୱାରପରେ ନାରାୟଣ ।
ଅର୍ଜ୍ଜୁନ ଶୁଣନ୍ତେ ଦେବ ଏ ପୁରାଣ ସିଦ୍ଧି
ଜନମେଜୟଙ୍କଠାରୁ ସରେ ଶ୍ରୋତାବିଧି ।
କଳିଯୁଗରେ ଲେଖିବେ ସବୁ କବିମାନେ
ପାର୍ଥ ଶୁଣିବାର ଜ୍ଞାନ ବୁଝି ସର୍ବଜନେ ।
ସଞ୍ଜୟ ବୋଇଲେ ଆହେ ଶୁଣ ଅନ୍ଧନୃପ
ଅର୍ଜ୍ଜୁନ ଆଗେ କହିବେ ହରି ଆଉ ଅଳ୍ପ ।
ଲେଉଟି ପୁଚ୍ଛିଲେ ପାର୍ଥ କେଉଁ ମାର୍ଗ ବାଣୀ
ସେ କଥା ତୁ ସାବଧାନେ ଶୁଣ ନୃପମଣି ।
ଅର୍ଜ୍ଜୁନ ବୋଲେ ପୁଚ୍ଛିବି ସ୍ୱାମୀ ଆଉବାକ୍ୟେ
ପ୍ରକୃତିଗଣ ଅଟନ୍ତି ଦେହେ କୁହ କେ କେ ।
ପ୍ରକୃତିଗଣଙ୍କ ମଧେ ପୁରୁଷଟି କେହୁ
କାହାକୁଟି କ୍ଷେତ୍ର ବୋଲି କହ ମହାବାହୁ ।
ଯେତ୍ରସ୍ଥାନ କାହାକୁ ଯେ ବୋଲିଟି ହୋ କରି
ଏ କଥା ଫେଡ଼ି କହିବା ମୋତେ ଦୁଇଚାରି ।

ଶ୍ରୀହରି ବୋଇଲେ ତେବେ ଶୁଣ ଧନଞ୍ଜୟ
ମନକୁ ଦୃଢ଼ କରିଣ ବୁଝ ଜ୍ଞାନମୟ ।
କ୍ଷେତ୍ର କ୍ଷେତ୍ରଜ୍ଞ ବୋଲିଣ ଯେବଣ ସେ ଦୁଇ
ସେ ବେନି କଥାଟି ପାର୍ଥ ଏ ଦେହକୁ କହି ।
ଏଥିର ସନ୍ଧି କହିବା ପୁଣ ତୋତେ ଶୁଣ
ଆପଣାର ଦେହ ଗୋଟି କ୍ଷେତ୍ର ଅଟେ ପୁଣ ।
ମୋହର ଦେହ ବୋଲି ଯେ ପ୍ରାଣୀ ବୋଲୁଥାଇ
ପଶୁଜନ୍ମରେ ସେ ପ୍ରାଣୀ ଜାଣ ଲେଖାହୋଇ
କୁଜ୍ଞାନୀ କୁପୁରୁଷ ଯେ କ୍ଷେତ୍ର ତାର ଦେହ
କହନ୍ତି ଶ୍ରୀଭଗବାନ ଶୁଣ ପଣ୍ଡୁ ପୁଅ ।
ଦେହକୁ ଯେ କ୍ଷେତ୍ର ବୋଲି ଚିହ୍ନେ ତିନିପୁରୀ
ତାହାକୁ ସଂସାରେ ଜ୍ଞାନୀ ବୋଲି ଲେଖାକରି
ଏମନ୍ତ ପ୍ରକାରେ ଯେହୁ କରେ ସୁବିଚାର
କ୍ଷେତ୍ରଜ୍ଞ ବୋଲି ଘେନିବ ତାକୁ ଲୋକସାର ।
ଏଥି ସଂଶୟ ପାର୍ଥ ନ ଘେନ କେବେ ପୁଣ
ଦେହ ଆତ୍ମାକୁ ହିଁ ନକରେ ଭିନ୍ନ ଭିନ୍ନ ।
ଏ ରୂପେ ଚିହ୍ନି ଯେ ପାରେ ତାକୁ ଜ୍ଞାନୀ କହି
କ୍ଷେତ୍ର କ୍ଷେତ୍ରଜ୍ଞ ଦୁଇକି ପରେ ଚିହ୍ନେ ସେହି ।
ଏ ଦୁଇ କଥାର ସନ୍ଧି କହିବା ହେ ଶୁଣ
ବେଦର ଯେ ବାକ୍ୟମାନ ଘୋଷି ଋଷିଗଣ ।
ନିର୍ଣ୍ଣୟ ବୁଝି ବିଚାରି ଯାହା ପୁଣି କଲେ
ଦେହକୁ କ୍ଷେତ୍ର କରିଣ ବ୍ରହ୍ମାଣ୍ଡେ ସର୍ଜିଲେ ।
ଯେ ଯାହାର ଦେହଜାଣ ତାକୁ ଅଟେ କ୍ଷେତ୍ର
ଶୁଣ ଧନଞ୍ଜୟ କହନ୍ତି ଯେ ପଦ୍ମନେତ୍ର ।
ପ୍ରକୃତିଗଣ ଥାଆନ୍ତି କ୍ଷେତ୍ରେ ବାସ କରି
ସେ କଥା କହିବା ଶୁଣ ଏବେ ନାମ ଧରି ।
ପ୍ରଥମେ ଏ ପଞ୍ଚଭୂତେ ହୋଇଲେ ପ୍ରକାଶ
ପୃଥିବୀ ଜଳ ଅନଳ ପବନ ଆକାଶ ।
ଏଥିରେ ପ୍ରକୃତିଗଣ ବିହରନ୍ତି ପୁଣି
ଶ୍ରବଣ ଯେ ନେତ୍ର ନାସା ଜିହ୍ୱା ଚର୍ମ ଗଣି ।
ପାୟୁପ୍ରସ୍ଥ ପାଦପାଣି ଅଛି ଦଶ ଜାଣ
ଅହଂକାର ବୁଦ୍ଧି ଆଉ ସତ୍ତ୍ୱରଜ ତମ ।
ଯେତେ ଏ ପ୍ରକୃତି ସବୁ ଇନ୍ଦ୍ରିୟଙ୍କ ମତ
ବିହରେ ପୁରୁଷ ପଞ୍ଚସ୍ଥାନେ ପଞ୍ଚତତ୍ତ୍ୱ ।
ମୁଁ ଯାହା କହୁଛି ତୋତେ ଉଲ୍ଲାସ ବଦନେ
ଉତ୍ତମ କରିଣ ଏହା ବୁଝ ପଣ୍ଡୁନାନେ ।
ବିହରୁଥାଇ ସ୍ୱଇଚ୍ଛା ଭାବ ଘେନି ନିତ୍ୟେ
କଳ୍ପନା ଧଇର୍ଯ୍ୟ ବାଞ୍ଛା ଘେନି ଯେଝା ଚିତ୍ତେ ।
ଏତେକ ଗୁଣ ଘେନିଣ ପ୍ରକାଶନ୍ତି ଦେହ
ଶୁଣ ଆହେ ସାବଧାନେ ପଣ୍ଡୁରାଜା ପୁଅ ।

ଏତେକ ଲକ୍ଷଣ ସର୍ବେଛନ୍ତି ଦେହ ଧରି
କେବେ ଆତ୍ମାକୁ ପ୍ରଶଂସା ଜାଣ ଯେ ନ କରି
ଆବର କଥାଏ ମଧ ଶୁଣ ହେ ପାର୍ଥିବ
ପ୍ରାଣୀକି ପ୍ରମାଦ ଅନାୟାସେ ନ ଚିନ୍ତିବ ।
ସତ୍ୟ ଧର୍ମ ଦୟା ଭକ୍ତି ରଖିବ ହୃଦରେ
ଉତ୍ତମ ପଥରେ ଗମୁଥିବ ନିତ୍ୟାଚାରେ ।
ଗୁରୁଙ୍କୁ ଦେଖିଲା କ୍ଷଣି ଆସନୁ ଉଠିବ
ପାଦତଳେ ପଡ଼ିକିଛି ଦକ୍ଷିଣା ଯେ ଦେବ ।
ମନକୁ ରଖିବ ଶୁଚିମନ୍ତେ ଧୀର କରି
ନିଶ୍ଚଳ ଭାବ ଇନ୍ଦ୍ରିୟମାନଙ୍କରେ ଧରି ।
କାମ ଲୋଭ ମୋହ ମଦ ଆବର ମତ୍ସର
ତାମସ କ୍ରୋଧ ଛାଡ଼ିଣ ହେବ ଶାନ୍ତ ଧୀର ।
ଏ ମଞ୍ଚପୁରେ ଯଦ୍ୟପି ହୋଇବ ଜନମ
ଏ ଦେହ ଅବଶ୍ୟ ମୃତ୍ୟୁ ପାଇବଟି ଜାଣ ।
ପୁଣି ଦେହକୁ ଲାଗୁଛି ପୀଡ଼ା ବ୍ୟାଧି ରୋଗ
ଶରୀର ବୃଦ୍ଧି ହେଲେଟି ଉପୁଜେ ଅଭାଗ୍ୟ ।
ଏ କଥା ସବୁ ଦେହକୁ ଲାଗୁଛି ଜାଣିବ
ମନରେ ଚିହ୍ନିଣ ଏକା ସନ୍ତୋଷ ହୋଇବ ।
ପଦାର୍ଥ ଦ୍ରବ୍ୟାଦି ଦାରା ସୁତମାନଙ୍କରେ
ଏଥିରେ ଆସକ୍ତକେବେ ନୋହିବ ମନରେ ।
ପ୍ରାପ୍ତ ଅପ୍ରାପ୍ତ ଅନିଷ୍ଟ ଇଷ୍ଟ ଯେ ଇତ୍ୟାଦି
ଏ ରୂପେ ହୋଇ ଧରିବ ଚିତ୍ତେ ସମବୁଦ୍ଧି ।
ପ୍ରାଣୀମାନଙ୍କର ହିତ ଅଣହିତ ଜାଣି
ଅନ୍ତର୍ଯ୍ୟାମୀ ପ୍ରାୟ ହୋଇଥିବ ହୃଦେ ମଣି ।
ସବୁ ଦେହେ ହରି ପୁରିଅଛନ୍ତି ବୋଲିବ
ବିଶୁଦ୍ଧ ଚିତ୍ତେ ଗୋବିନ୍ଦ ବସି ଭଜୁଥିବ ।
ଏକାନ୍ତେ ନିର୍ମଳ ସ୍ଥାନେ ବସି ଶୁଦ୍ଧ ହୋଇ
ଭକ୍ତି ଅର୍ଜିବ ନିଶ୍ଚଳ ମନେ ଥିବ ରହି ।
ମନ୍ଦବୁଦ୍ଧି ଲୋକ ଯେତେ ସଂସାରେ ଦେଖିବ
ସେ ପ୍ରାଣୀମାନଙ୍କ ପାଶେ କେଭେଁ ନ ବସିବ
ସମାନ ବୁଦ୍ଧି କରିଣ ଜାଣି ଆତ୍ମାଜ୍ଞାନ
କହିଲି ସୁଖେ ତୁ ଶୁଣ ଜ୍ଞାନର ଏ ଗୁଣ ।
ଏରୂପେ ସାଧନା ଯେଉଁ ପ୍ରାଣୀ ହୃଦେ ଅଛି
ସେହି ଅଟେ ମହାଜ୍ଞାନୀ ଶୁଣ ସବ୍ୟସାଚି ।
ଏତେଠାରୁ ବାହାରି ଯେ ଅନ୍ୟ ବୁଦ୍ଧିଘେନେ
ତାହାକୁ ଯେ ମହାମୂର୍ଖ ବୋଲି ହେ ଅର୍ଜ୍ଜୁନେ ।
ଆବର ବାକ୍ୟ କହିବା ଅଛି ତୋତେ ଶୁଣ
ଜାଣିବେ ସେ ଜ୍ଞାନେ ହୋଏ ପବିତ୍ରପୁରାଣ ।
କହିବା ଆହୁରି ଯେତେ ଶୁଣି ହେତୁ କର
ବୁଝିଲେ ତୁ ହେତୁ ଦେଇ ଭବୁ ହେବୁପାର ।

ମୁହିଁ ତ ବ୍ୟାପିଣ ଅଛି ବ୍ରହ୍ମାଣ୍ଡଯାକରେ
ସ୍ୱର୍ଗ ମର୍ତ୍ତ୍ୟ ପାତାଳେ ଯେ ଅଛି ତିନିପୁରେ ।
ସେ ରୂପେ ଦେଖିଲୁ ତୁହି ମୋର କଳେବର
କହିବା ତା ତୋତେ ଶୁଣ ସୁଭଦ୍ରାର ବର ।
ସର୍ବତ୍ର ଦିଶେ ତାହାକୁ ନିଜ ଆତ୍ମା ପ୍ରାୟେ
ଚକ୍ଷୁ ମୁଖ ନାସା କର୍ଣ୍ଣ ହସ୍ତ ପାଦଯାଏ ।
ଶରୀରେ ଯେତେ ଏସବୁ ଗୁଣ ଆଦିକରି
ଅଳଙ୍କରାରେ ଭୂଷଣ ହୋଇ ଦିଶେ ପୁରି ।
ଶରୀର ଶୁଦ୍ଧସ୍ଫଟିକ ଶୁକ୍ଳାମ୍ବର ଦିଶେ
କେଶରୀ ରୂପ ପରାୟ ଶରୀର ପ୍ରକାଶେ ।
ଦଶଦିଗ ଆଦିକରି ବାହାର ଭିତରେ
ନିରାଳମ୍ବ ହରି ପୂରିଛନ୍ତି ସବୁଠାରେ ।
ଅଛିଦ୍ର ପରମାନନ୍ଦ ପୁରୁଷ ଶ୍ରୀହରି
ସମସ୍ତ ସ୍ଥାନରେ ବ୍ୟାପିଛନ୍ତି ବିଜେକରି ।
ଇନ୍ଦ୍ରିୟମାନେ ତାହାର ତ୍ରିଗୁଣେ ଜଡ଼ିତ
ସେ ଇନ୍ଦ୍ରିୟ ଗୁଣରୁ ସେ ଅଟେ ବିବର୍ଜିତ ।
ଅଲଗା ଥାଇ କାହିଁରେ ସେହି ନ ମିଶଇ
ସବୁରେ ଲାଗିଛି ନ ଲାଗିଲା ପ୍ରାୟ ହୋଇ ।
ସବୁ ଦେହେ ଲାଗିଅଛି କାହାକୁ ନ ଦିଶେ
କହନ୍ତି ଯେ ଜଗନ୍ନାଥ ଶୁଣ ପଣ୍ଡୁ ଶିଷ୍ୟେ ।
ଯାବତ ଜୀବ ବଞ୍ଚନ୍ତି ଜାଣ ତାକୁ ଲାଗି
ଜଳରେ ବିନ୍ଦୁ ପ୍ରକାଶି ଯାଏ ଯେହ୍ନେ ଭାଙ୍ଗି ।
ତପତ ଶାଳିଅନ୍ନକୁ ଥୋଇ ଦେଲାକ୍ଷଣି
ତକ୍ସାଳେ ଶୀତଳ ହୁଏ ଯଥା ଯେହ୍ନୁ ପୁଣି ।
ଅଗ୍ନିର ଭିତରୁ ଦ୍ରବ୍ୟ କାଢି ଥୋଇଦେଲେ
ପବନ ଲାଗି ଶୀତଳ ହୁଏ ସେ ତକ୍ସାଳେ ।
ନିର୍ଗୁଣ ସେ ନିରାମୟ ଯେଉଁ ବିଷ୍ଣୁକାୟ
ଯାହାକୁ କରନ୍ତି ବସି ଋଷିଗଣ ଲୟ ।
ବସନ୍ତି ଯାହାକୁ ଯୋଗୀଜନେ ଧ୍ୟାନକରି
ସେପ୍ରାଣୀ ବାହାରେ ଭିତରେ ମୁଁ ଥାଇ ପୁରି ।
ଶ୍ରୀମୁଖ ବଚନ ଏହି ଅଟେ ନିରାଧାର
ମୂର୍ଖକୁ ସଂସାରେ ମୁହିଁଅଟେ ଅଗୋଚର ।
ଅନ୍ଧକୁ ଯେଉଁ ରୂପେ ନ ଦିଶେ ଚନ୍ଦ୍ର ସୂର୍ଯ୍ୟ
ମୂର୍ଖଟି ସେହି ରୂପେ ନ ଚିହ୍ନେ ଚତୁର୍ଭୁଜ ।
ବାହାରେ ଭିତରେ ପ୍ରଭୁ ପୁରିଛନ୍ତି ରହି
ଅଜଣା ଲୋକକୁ ଶାନ୍ତି ଅନ୍ଧ ପ୍ରାୟ ହୋଇ ।
ଲକ୍ଷେକ ଯୁଣେ ଯେସନ ସୂର୍ଯ୍ୟ ଉଦେ ହୁନ୍ତି
ଅଜଣା ଲୋକକୁ ପ୍ରଭୁ ତଥା ନ ଦିଶନ୍ତି ।
ସବୁକାଳରେ ସେ ପ୍ରଭୁ ଭକତଜନଙ୍କୁ
ନିକଟରେ ଦିଶୁଥାନ୍ତି ନେତ୍ରଲାଗି ତାକୁ ।

ଚୈତନ୍ୟଦ୍ୱାରେ ଦେଖିବ ଚିହ୍ନ ଯୋଗଧ୍ୟାନେ
ଜୀବ ପରମକୁ ଚିହ୍ନି ଯେ ଭିନ୍ନେ ଭିନ୍ନେ ।
ଜୀବ ଆଉ ପରମର ଦେଖି ଯୁଗଳକୁ
ଚଳନ୍ତି ଲଗ୍ନ ଘେନି ସେ ଆତ୍ମା କୁଶଳକୁ ।
ପ୍ରାଣୀମାନଙ୍କର ଜନ୍ମକର୍ତ୍ତା ଅଟେ ସେହି
କର୍ମର ଅନୁସାରେ ସେ ପଶେ ଦେହେ ବହି ।
ବୁଝିଲେ ଅଟନ୍ତି ସବୁ କର୍ତ୍ତା ଭଗବାନ
ସବୁର ଦେହେ ପ୍ରକାଶିଛନ୍ତି ନିରଞ୍ଜନ ।
ବେଦ ବେଦାନ୍ତ ଶାସ୍ତ୍ରାଦି ପୁରାଣ ଯେ ଅଛି
ତହିଁରେ ଶୁଣିବେ ହେଲେ ମନେ କି ଚିହ୍ନିଛି ।
ପୂଜୁଛନ୍ତି ଶୁଣୁଛନ୍ତି ଗାଉଛନ୍ତି ମୁଖେ
କହିଦେଲା ଠାରେ ଚିହ୍ନି ନାହୁଁ ଆତ୍ମା ସୁଖେ ।
ଏହିଟି ଏହିଟି ବୋଲି ଚିହ୍ନାଇଲେ ଆଣି
ଅନୁଭବି ନ ଥିଲେ ନପାରେ କେହୁ ଜାଣି ।
ସବୁର ଦୃଷ୍ଟିଗୋଚର ବିଜେ କରିଛନ୍ତି
ସେହି ଏକବୋଲି କେହି ଚିହ୍ନି ନ ପାରନ୍ତି ।
ଅଗମ୍ୟ ଆକାଶ ପ୍ରାୟ ଦିଶେ ପରିପୂର୍ଣ୍ଣ
ଅଚିହ୍ନା ଲୋକକୁ ଦିଶେ ଅଦେହ ଅବର୍ଣ୍ଣ ।
ଯେବଣହିଁ ଲୋକଙ୍କର ଅଟେ ଜ୍ଞାନଦୃଷ୍ଟି
ପ୍ରକାଶି ତାହାର ଆଗ ଦିଶେ ବ୍ରହ୍ମସୃଷ୍ଟି ।
ଏରୂପେ ଅଟଇ କ୍ଷେତ୍ର କ୍ଷେତ୍ରଜ୍ଞ ମହିମା
ଏ ଜ୍ଞାନ ସଂକ୍ଷେପି ମନେ ଧ୍ୟାନରେ ଜାଣିବା ।
ଏ ରୂପେ ଜ୍ଞାନ ପ୍ରକାଶ କରୁଥା ତୁ ଜାଣି
ଏ ରୂପେ ମହିମା ମୋର ଜାଣନ୍ତି ଯେ ପ୍ରାଣୀ
ସେମାନେ ମୋର ଭକତ ଅଟନ୍ତି ଜଗତେ
ଆଉ କଥାଏ କହିବା ଶୁଣ ମଧ୍ୟ ତୋତେ ।
ଯାହାକୁ ବିଷ୍ଣୁ ବୋଲି ସେ ଅଟେ ପରଂବ୍ରହ୍ମ
ସେ ବ୍ରହ୍ମପୁରୁଷ ସାର ପ୍ରକୃତିରୁ ଜନ୍ମ ।
ଇନ୍ଦ୍ରିୟ ବିକାରୁ ହୁଏ ଏ ସମସ୍ତ ଜାତ
ପ୍ରକୃତିଙ୍କ ସକାଶରୁ ପ୍ରକାଶେ ଯାବତ ।
ଏଣୁ ସେ ଦେହକୁ ଅଛି ଅନେକ ବିକାର
ଦୁଃଖ ସୁଖ ଦୁଇ ଜାଣ ଅନେକ ପ୍ରକାର ।
ଦେହରୁ ପ୍ରକୃତିଗଣ ଅଟେ ମହାବଳ
ଦେବାକୁ ନଦେବାକୁ ସେ ଅଟେ ଜାଣ ମୂଳ ।
ଦୁଃଖସୁଖ ଦୁଇ ସେ ନ ଲାଗେ ପୁରୁଷଙ୍କୁ
ପ୍ରକୃତିରେ ବଶ ସର୍ବେ ହୁଅନ୍ତି ମନକୁ ।
ପୃଥ୍ୱୀରେ ପୁରୁଷ ଏ ରୂପରେ ଜନ୍ମିଥାଏ
ଭଲ ମନ୍ଦ ଦୁଇ ଧରି ଶରୀରକୁ ବହେ ।
ସତ୍ତ୍ୱ ରଜ ତମ ତିନିଗୁଣେ ହୁଏ ବଶ
କର୍ମ ଅନୁସାରେ ଫଳ ଭୁଞ୍ଜଇ ଅବଶ୍ୟ ।

ମାତା ରଜ ପିତା ବୀର୍ଯ୍ୟ ଯୁକ୍ତ ସମୟରେ
କେଉଁ କର୍ମ ଆସି ଧାତା ଲେଖେ ଲଲାଟରେ
ଭଲଯୋଗେ ଜନ୍ମିଲେ ଏ କରେ ଭୋଗପୃଥ୍ୱୀ
ମହାଶାନ୍ତଶୀଳ ହୋଇ ହୁଏ ପରମାର୍ଥୀ ।
ଭିକ୍ଷାଷୀ ଯେ ଦୁଃଖୀ ଲୋକ ଦରିଦ୍ର ପ୍ରବାସୀ
ବୈଷ୍ଣବ ବ୍ରାହ୍ମଣ ପାଦେ ସେବେ ଅହର୍ନିଶି ।
ମହାକ୍ଷମାଶୀଳ ହୋଇ ବିଷ୍ଣୁରେ ସୁପ୍ରୀତି
ସଂସାରେ ଯେ ଦେହ ଅନ୍ତେ ମୋକ୍ଷ ପ୍ରାପ୍ତି ହୋନ୍ତି
ଶୁଭାଶୁଭ କର୍ମ ଯେବେ ନୁହେଁ କାର ପୁଣ
ଶୁଣ ଧନଞ୍ଜୟ କହନ୍ତି ଯେ ନାରାୟଣ ।
ତଥାପି ସେହି ଦେହରେ ଜ୍ଞାନ ପ୍ରକାଶିଲେ
ଆବିଷ୍ଟ ହୋଇ ଗୁରୁଙ୍କୁ ସେବେ ଯେବେଭଲେ
ପରମ ପୁରୁଷକୁ ସେ ଦେଖେ ମନେ ଭାବି
କହନ୍ତି ଶ୍ରୀଜଗନ୍ନାଥ ଶୁଣ ହେ ବାସବି ।
ସେ ରୂପେ ମନରେ ରଖି ସଂସାର ଯେ ରତେ
ଗୁଣମାନଙ୍କର ଭୋଗ ମନରେ ନ ପାଞ୍ଚେ ।
ବ୍ରହ୍ମ ଇନ୍ଦ୍ର ଶିବ ଅଗ୍ନି ସମସ୍ତ ଶରୀରେ
ଅନ୍ତର୍ଯ୍ୟାମୀରୂପେ ବସିଅଛି ସବୁଠାରେ ।
ପ୍ରକୃତି ପୁରୁଷ ଦୁଇ ଘେନି ବେନି ପୁଣ
ଭଲମନ୍ଦକୁ ସଂସାରେ ଘେନି ହୋନ୍ତି ଜନ୍ମ ।
ଥୋକାଏ ଲୋକେ ଆପଣା ହେତୁ ମନେ ଘେନି
ଆତ୍ମାକୁ ଦେଖନ୍ତି ମନ ଧ୍ୟାନ ହୃଦେ ଚିହ୍ନି ।
ପ୍ରକୃତି ପୁରୁଷ ଥୋକାଏକ ଲୋକମାନେ
ଭିନ୍ନ ନ ହୁଅନ୍ତି ବୋଲି ବିଚାରନ୍ତି ମନେ ।
ଥୋକାଏକ ପ୍ରାଣୀମାନେ ଆତ୍ମା ପୁରୁଷକୁ
ନିଜ ହୃଦୁଁ ଆପେ ଚିହ୍ନିପାରେ ଜଗତକୁ ।
ଥୋକାଏ ପ୍ରାଣୀ ତାହା ନ ଜାଣିପାରେ କିଛି
ଜାଣିବା ଲୋକମାନଙ୍କୁ ଗୁରୁପ୍ରାୟେ ପୁଛି ।
ଶୁଣିବା ମାତ୍ରକେ ତତ୍ତ୍ୱ ପାର ଯେବେ ଚିହ୍ନି
ତେବେଟି ତାକୁ ସଂସାରେ ବୋଲି ମହାଜ୍ଞାନୀ
ସେ ଜ୍ଞାନଯୋଗରୁ ସେହି ଭବୁ ଯାଏ ତରି
ଆଉ କଥାଏ କହିବା ଶୁଣ ହେତୁକରି ।
ଦେହକୁ ଯେ କ୍ଷେତ୍ରବୋଲି ଜାଣ ଭଦ୍ରସାଇଁ
ଆତ୍ମାଥିବା ସକାଶରୁ କ୍ଷେତ୍ର ଯେ ବୋଲାଇ ।
ଏ ଦୁଇ ମଧ୍ୟରେ ହୁଏ ସଂସାରରେ ଜନ୍ମ
କୀଟରୁ ପତଙ୍ଗ ଯାଏ ସ୍ଥାବର ଜଙ୍ଗମ ।
ସମସ୍ତ ଦେହରେ ଜାତ ହୁଏ ଜାଣ ଆତ୍ମା
ସବୁକାଳେ ସେହି ପୁଣି ଅକ୍ଷୟ ମହାତ୍ମା ।
ଏ ଦେହଗୋଟି ଅବଶ୍ୟ କାଳେ ନାଶଯାଇ
ବ୍ରହ୍ମାଦି ସହିତେ ଯେତେ ଛନ୍ତି ଦେହ ବହି ।

ଏରୂପେ ଚିହ୍ନି ପାରଇ ସେହୁ ମୋତେ ଜାଣ
ମୁଁ ତାକୁପାରେ ଚିହ୍ନି ସେ ମୋର ଆତ୍ମା ପୁଣ
ବ୍ରହ୍ମା ଶିବ ହରି ଛନ୍ତି ସମସ୍ତଙ୍କ ଅଙ୍ଗେ
ଆତ୍ମାର ସଙ୍ଗେ ଖେଳନ୍ତି ବସି ନାନାରଙ୍ଗେ ।
ଏରୂପେ ପାଞ୍ଚ ଘେନଇ ସମ ସେହୁ ସର୍ବ
ସେ ପ୍ରାଣୀ ତରଇ କହନ୍ତି ଯେ ବାସୁଦେବ ।
ପ୍ରକୃତିଙ୍କ ବଳ କହିଲେ ଯେ ନ ସରଇ
ଜ୍ଞାନୀ ଚିହ୍ନି ତାକୁ ଓଟାରିଣ ରଖୁ ଥାଇ ।
ହୃଦୟରେ କରେ ଦୟା ସର୍ବ ଜୀବଠାରେ
ମନରେ ତୀର୍ଥଯାକକୁ ପଢ଼ି ସ୍ନାନ କରେ ।
ବୋଲେ ଆତ୍ମା ଏଥି କି ପ୍ରୟୋଜନ ଅଛି
ଆତ୍ମାର ପରମବ୍ରହ୍ମ କର୍ତ୍ତା ଶିରୀବସି ।
ଏମନ୍ତ ପ୍ରାଣୀ ଯେ ସର୍ବଜନ ମଧ୍ୟେ ସାର
ମୂର୍ଖର କଥା କହିବା ଶୁଣ ଏବେ ବୀର ।
ଯେବଣ ମୂର୍ଖେ ପ୍ରକୃତି ଅଜ୍ଞାନ ବଶରେ
ପୁଣ୍ୟକୁ କରିଣ ପାପ କରେ ଲୋକାଚାରେ ।
ପରାକ୍ରମ ବଳ କ୍ରମେ ଧୈର୍ଯ୍ୟ ଦମ୍ଭ ଘେନି
ପ୍ରକୃତିବଶେ ପଡ଼ି ନ ପାରେ ମୋତେ ଚିହ୍ନି ।
ଏଥିରେ ବିଚାର ଏକା ଜ୍ଞାନୀକୁ ଯେ ଜଣା
ବୋଲନ୍ତି ଆତ୍ମାକୁ ଚିହ୍ନି ମରନ୍ତି ସେ ସିନା ।
ପ୍ରଳୟକାଳେ ସବୁ ଶ୍ରୀ ବାସୁଦେବ ଦେହେ
ସକଳେ ମରି ପଶନ୍ତି କୀଟୁଁ ବ୍ରହ୍ମଯାଏ ।
ସୃଷ୍ଟି ଯେକାଳେ କରନ୍ତି ପ୍ରଭୁ ପୁଣି ଜାତ
ଯେ ଯାହାର ମୂର୍ତ୍ତି ଧରି ହୁଅନ୍ତି ସମ୍ଭୁତ ।
ଶରୀର ଧରିଣ ଆତ୍ମା ପ୍ରକାଶ ହୁଅଇ
ପ୍ରକୃତିଗଣେ ଗୋଡ଼ାଇ ଥାନ୍ତି ସର୍ବେ ରହି ।
ତ୍ରିଗୁଣେ ନିର୍ମାଣ ହୋଇଅଛି ସବୁ କାୟା
ସର୍ବ ଭିଆଣ ଅନାଦିନାଥର ଏ ମାୟା ।
ତେଣୁ ଏହି ଆତ୍ମା ଅଟେ ବିଶୁଦ୍ଧ ନିର୍ମାଣ
ପ୍ରକୃତି ଦେହୁ ବିଲଗ୍ନ ଅଟେ ଆତ୍ମା ଜାଣ ।
ତ୍ରିଗୁଣରଜ୍ଜୁରେ ବନ୍ଧାନୁହେଁ କେତେବେଳେ
ରବି ଉଦୟ କରିଣ ଯେ ରୂପେ ପ୍ରବଳେ ।
ଜଗତଯାକ ବ୍ୟାପିଣ ରଶ୍ମି ପ୍ରକାଶଇ
ସେ କେଡ଼େ ଦେହେ ତାହାର ଲାଗିଣ ନଥାଇ
ଏରୂପେ ଆତ୍ମା ବିହାର ଜାଣ ଦେହେ କରେ
ବିଲଗ୍ନେ ଥାଏ ରହିଣ ଆଦିତ୍ୟ ପ୍ରକାରେ ।
ଏତେ ପ୍ରକାରେ ଆତ୍ମାର ଜାଣ ପରିଗୁଣ
ପ୍ରାଣୀଙ୍କ ଦେହେ ଥାଇ ନ ଲାଗେ କାହିଁଗୁଣ ।
ସକଳ ଘଟେ ହୋଇଛି ଜାଣ ପରକାଶ
ଦେହରୁ ବିଲଗ ଭାବେ ଆତ୍ମା କରେ ବାସ ।

ଏସବୁ ଜ୍ଞାନୀଙ୍କି ଜଣାଯାଏ ଜ୍ଞାନବଶେ
ଜ୍ଞାନଦୃଷ୍ଟିକି ଦର୍ପଣ ଛାୟା ପ୍ରାୟ ଦିଶେ ।
ଦଶଇନ୍ଦ୍ରି ପଞ୍ଚଭୂତ ପଚିଶ ପ୍ରକୃତି
ଦେହରେ ପୁରି ଆତ୍ମାକୁ ଏହି ବେଢ଼ିଥାନ୍ତି ।
ଏହାକୁ ଚିହ୍ନି ପାରନ୍ତି ଏକା ସୁପଣ୍ଡିତେ
ପରମଗତି ଦିଅନ୍ତି ତାଙ୍କୁ ଜଗନ୍ନାଥେ ।
ଏରୂପେ ଯେ ବ୍ରହ୍ମଜ୍ଞାନ କହେ ଦେବରାୟେ
ସୁଜ୍ଞାନୀଜନଙ୍କ ସନ୍ଧି ଶୁଣ ଧନଞ୍ଜୟେ ।
ସବୁରି ଦେହ ସବୁଙ୍କୁ ଅଟେ କ୍ଷେତ୍ର ପୁଣି
ତରିବେ ଭଗତଗଣେ ଶ୍ରବଣରେ ଶୁଣି ।
ନୃସିଂହ ପୁରାଣ ସପ୍ତମ ଖଣ୍ଡର ବ୍ୟବସ୍ଥା
ଶୁଣନ୍ତି ବ୍ରାହ୍ମଣ ମୁଖୁଁ ନାରଦ ହେ ଜ୍ଞାତା ।
ଅଷ୍ଟାଦଶ ପୁରାଣରେ ଯେତେ ଅର୍ଥସାର
କହନ୍ତି ସବୁରି ସାର ବାଛି ବେଦବର ।
ଭାଗବତ ଭାରତ ଶ୍ରୀଗୀତା ରାମାୟଣ
ଏହା ଶୁଣିଲେ ଶୁଣିଲା ପ୍ରାୟ ସବୁ ଜାଣ ।
ନାରଦ ବୋଲେ କହିଲ ପିତା ମୋତେ ଯାହା
କିରୂପେ ସଂସାରେ ହେବ ପ୍ରାଞ୍ଜଳଟି ଏହା ।
ବ୍ରହ୍ମାଏ ବୋଇଲେ ଯୁଗ ଦ୍ୱାପରର ଅନ୍ତେ
ଯୁଦ୍ଧରେ ଲାଗିବେ କୁରୁସୁତେ ପଣ୍ଡୁ ସୁତେ ।
ଆପଣା ବଂଶ ମାରିବି କେହ୍ନେ ବୋଲି ପାଞ୍ଚି
ବସିବ ହସ୍ତରୁ ଧନୁ ଛାଡ଼ି ସବ୍ୟସାଚି ।
ଶ୍ରୀକୃଷ୍ଣ ଯେ ନନ୍ଦିଘୋଷେ କରିଥିବେ ବିଜେ
ଏ ଗ୍ରନ୍ଥ ତାହାଙ୍କୁ କହିଦେବେ ଦେବରାଜେ ।
ଶ୍ରୀ ବ୍ରହ୍ମଜ୍ଞାନ ଅର୍ଜୁନ ଶୁଣି ହେବ ବୋଧ
ପଶିଣ କୁରୁକ୍ଷେତ୍ରରେ କରିବ ସେ ଯୁଦ୍ଧ ।
ସଞ୍ଜୟ କହିବ ଏହା ଧୃତରାଷ୍ଟ୍ର ଆଗେ
ପ୍ରାଞ୍ଜଳ କରି କହିବ ଏହା ବ୍ରହ୍ମ ଭାଗେ ।
ପରୀକ୍ଷ ରାଜାଙ୍କ ପୁତ୍ର ଜନ୍ମେଜୟ ରାଜା
ବଇଶମ୍ପାୟନଙ୍କର କରିବେକ ପୂଜା ।
ସେହି ରାଜା ପିତାମହମାନଙ୍କର କୀର୍ତ୍ତି
ପ୍ରାଞ୍ଜଳ କରି ଶୁଣିବେ ସବୁ ଶାସ୍ତ୍ରବୃତ୍ତି ।
ସେହି ଶାସ୍ତ୍ର କଳିଯୁଗେ ବୁଝି ସୁପଣ୍ଡିତେ
ପୁରାଣମାନ ବାନ୍ଧିଣ ରଖିବେ ଜଗତେ ।
ଶୁଣିଣ ନାରଦ ଋଷି ହୋଇଲେ ସନ୍ତୋଷ
ସେ ପାଦେ ଶରଣ ବିପ୍ର ପୀତାମ୍ବର ଦାସ ।
ହେ ସୁଜନଜନେ ସାଧୁ ସୁପଣ୍ଡିତେ ଶୁଣ
ତୁମ୍ଭ ଭଜନ ଶ୍ରବଣେ ପଶେ ମୁଁ ଶରଣ ।
ଅକଳିତ ସାଗର ମୁଁ ପଶିଲି ନ ଜାଣି
କରିବେ ଏଥିରୁ ପାରି ମୋତେ ଗୋସାମଣି ।

ହେଲା ନହେଲା ଭାଷା ନଘେନ ମୋର ଦୋଷ
ଜଗନ୍ନାଥ ଶରଣ ମୁଁ ପୀତାମ୍ବର ଦାସ ।
ଏବେ ଏଣିକି କହିବେ ଯାହା ଚକ୍ରପାଣି
ଶୁଣନ୍ତୁ ସୁଜନ ହିଁତେ ଭଦ୍ରାକାନ୍ତ ପୁଣି ।
କ୍ଷେତ୍ର କ୍ଷେତ୍ରଜ୍ଞଙ୍କର ବିଧି ବିଧାନଟି ଯେତେ
ବୁଝାଇ ପାର୍ଥକୁ କହନ୍ତି ଯେ ଲକ୍ଷ୍ମୀକାନ୍ତେ ।
ବୋଲନ୍ତି ଅଛି ଆଉ ଉତ୍ତମ ଜ୍ଞାନ ଶୁଣ
ଭଲକରି ବୁଝି ପାର୍ଥ କହିବା ତ୍ରିଗୁଣ ।
ସତ୍ତ୍ୱରଜ ତମ ସବୁ ଅଛନ୍ତି ଏ ଦେହେ
ଯାହାର ଯେମନ୍ତ ଗୁଣ ଶୁଣ ଧନଞ୍ଜୟେ ।
ଏରୂପେ କହି ହସନ୍ତି ପ୍ରଭୁ ଭାବଗ୍ରାହୀ
ଫେଡ଼ିଣ କହନ୍ତି ଅର୍ଜୁନକୁ ଶ୍ରଦ୍ଧା ବହି ।
ଶୁଣ ସୁଭଦ୍ରାକାନ୍ତ ଶ୍ରୀମୁଖ ଦିବ୍ୟ ଜ୍ଞାନ
କହିବୁ ଯାହା ଉତ୍ତମ କହି ତାହା ଘେନ ।
ସପ୍ତମ ଋଷି ଯାହାକୁ ହୃଦେ ଲୟ କରି
ପରମଗତି ପାଇଲେ ହେତୁ ହୃଦେ ଧରି ।
ଜ୍ଞାନକୁ ଆଶ୍ରା କରିଣ ରଖିଲେ ହୃଦ୍‌ଗତେ
ତେଣୁ ଚିହ୍ନି ପାରନ୍ତି ସେ ଋଷିମାନେ ମୋତେ
ପ୍ରଳୟକାଳେ ହୋଇଲେ ଜାଣ ସୃଷ୍ଟିକ୍ଷୟେ
ବ୍ରହ୍ମା ଯୋଗନିଦ୍ରା ସପ୍ତମକୁ ଯାଏ ହୋଏ ।
ଏମନ୍ତ ପ୍ରଳୟରେ ଶ୍ରୀବ୍ରହ୍ମବେତ୍ତା ବନେ
କ୍ଲେଶ ନଘେନିଣ ହୃଦେବସନ୍ତି ମୋଧ୍ୟାନେ ।
ପୁଣି ସମୟେକ ସୃଷ୍ଟିକରେ ବିଧାତାଏ
ଏମାନେ ଜନମି ନୋହିଥାନ୍ତି ଯୋଗଦେହେ
ବିଧାତାମାନ ସଂସାରେ ଲୋକେ ବୋଲିଯାକୁ
ମୁଁ ସିନା ନାଭିରୁ ଆଣି ଜାତ କଲି ତାଙ୍କୁ ।
ମୋ ନାଭିକମଳୁଁ ବ୍ରହ୍ମା ହୋଇଲେ ଉତ୍ପତ୍ତି
ତେଣୁ ସିନା କରଇ ଯେ ଜୀବ ଉତପତ୍ତି ।
ସେହି ପଦ୍ମଯୋନି ଅଟେ ସାବିତ୍ରୀର କାନ୍ତ
ସେ ପଦ୍ମଯୋନି ମହିମା କହିବା ହୋ ପାର୍ଥେ ।
ପ୍ରକୃତିମାତାର ତହୁଁ ହେଲେ ଜାତ ଜାଣ
ମୁହିଁ ବୀର୍ଯ୍ୟଦାତା ଅଟେ ତହିଁରେଟି ପୁଣ ।
ମୁହିଁ ଅନାଦି ନାଥ ଯେ ଆଦିମାତା ଜାଣ
ସମସ୍ତ ପ୍ରକୃତି ଅଙ୍ଗେ ହେଲେ ଆସି ଜନ୍ମ ।
ପ୍ରଥମ ଜନ୍ମ ହୋଇଲେ ସତ୍ତ୍ୱ ରଜ ତମ
ଏହି ତିନି ଗୁଣ କଥା ମନଦେଇ ଶୁଣ ।
ଆତ୍ମାରେ ଭେଦନ୍ତି ଦେଖାଇଣ ଯେଝାଗୁଣ
କେହି କାହାକୁ ନୁହନ୍ତି ସେହି ଅବିଗୁଣ ।
ଯେବଣ ଗୁଣରୁ ଯେହୁ ହୋଇଲେ ଉତ୍ପତ୍ତି
ସେ କଥା ତୁ ସାବଧାନେ ଶୁଣ ଭଦ୍ରାପତି ।

ସତ୍ତ୍ୱ ଗୁଣରୁ ସମ୍ଭୁତ ହେଲେ ଶାନ୍ତ ଦୟା
କହେ କୋମଳ ବାକ୍ୟ ନରଖି ହୃଦେମାୟା ।
ସୁସଙ୍ଗ ସୁଖ ସୁବୁଦ୍ଧି ଜ୍ଞାନ ସତ୍ୟ ମନ
ନିର୍ବନ୍ଧ କରଇ ଅନ୍ୟ ଅନ୍ୟ କଥାମାନ ।
ଏରୂପେ ସାତ୍ତ୍ୱିକ କଥା ହୋଏ ଲୋକେ ଜାତ
ରାଜସ ଲୋକର କଥା ଶୁଣ ପଣ୍ଡୁସୁତ ।
ରାଜସ ଗୁଣୀଲୋକ ତ ଅଟେ ବଡ ରୋଗୀ
ରାଗରୁ ଯେ କ୍ରୋଧଜାତ ହୋଇଥାଇ ବେଗି
ଯାହାକୁ ସେ ହସି ହସି କହିବଟି ପୁଣ
ସେ ହସଯାକ ପ୍ରମାଦ ଅଟେ ତାର ଜାଣ ।
ତମ ଗୁଣର କହିବା ଏବେ ସାର ବାଣୀ
ଅଳପକେ କ୍ରୋଧହୁଏ ସଭାରେ ସେକ୍ଷଣି ।
ତାର ଅଙ୍ଗେ ଜନ୍ମେ ହିଂସା ପ୍ରମାଦଯେ କ୍ଳେଶ
କପଟୀଲୋଭୀ ହୋଇଣ ଲୋକ କରେ ନାଶ
ସତ ରଜ ତମର ଏ ରୂପେ ଅଟେ ଗୁଣ
ଯାହାର ଯେମନ୍ତ ଭାଗ କହିବା ତା ଶୁଣ ।
ସାତ୍ତ୍ୱିକ ଲୋକର ଗୁଣ ଉତ୍ତମ ଦୁର୍ଲ୍ଲଭ
ଆନନ୍ଦ ଯେ ସୁଖ ଶ୍ରଦ୍ଧା ହର୍ଷ ପ୍ରେମଭାବ ।
କହିବା ରଜ ଗୁଣର କଥା ଏବେ ଶୁଣ
ଯେତେ କଥାରେ ଉପୁଜେ ଶ୍ରଦ୍ଧା ତାର ପୁଣ ।
ସମ୍ପଦ ସନ୍ତାନ ଧନ ଜନ ସୁଖ ଘର
ଏହି କଳପନାମାନ କରେ ହୃଦେ ତାର ।
ଦେବ ବ୍ରାହ୍ମଣଙ୍କୁ ଦାନ ଦକ୍ଷିଣା ସେ ଦେଇ
ମୁହିଁ କେତେ ଦିଏ ବୋଲି ଲୋକେ ହୁଏ କହି
ତମ ଗୁଣର ଯେ କଥା କହିବା ତା ଶୁଣ
ପ୍ରକାଶେ ଦୁର୍ଦ୍ଦଣ୍ଡ ଲୋଭ କ୍ରୋଧ ହିଂସା ଗୁଣ ।
ଏ ରୂପେ ଯେତେ କୁବୁଦ୍ଧି କର୍ମ କଥାମାନ
ଜ୍ଞାନକୁ କରିଣ ଓହାଡ଼ ସେ ସର୍ବଜନ ।
ଏବେ ତ୍ରିଗୁଣରେ ଯେଉଁ ରୂପେ ଥାଏ ମନ
ସେକଥାକୁ ସାବଧାନେ ଶୁଣ ଅରଜୁନ ।
ସାତ୍ତ୍ୱିକ ଲୋକର ମନେ ସଦା ଶାନ୍ତଭାବ
ନିର୍ମଳ ଶଉଚ ତପ ସୁଦୟା ଜାଣିବ ।
ରଜୋଗୁଣୀ ମନ ପ୍ରକାଶଇ ଯେତେଠାରେ
କାମନା କଳ୍ପନା ବାଞ୍ଛାକରେ ଭୋଗାଦିରେ ।
ତମଗୁଣୀର ଯେ ମନ କହିବା ତା ଶୁଣ
ତାମସିକ ଆତ୍ମାଘାତୀ ଅନ୍ୟେ ନାଶେ ପୁଣ ।
ଭାବମାନଙ୍କୁ କହିବା ତାହାଙ୍କର ଏବେ
ତାହା ଭଲ କରି ବୁଝ ତୁ ନିର୍ମଳ ଭାବେ ।
ସାତ୍ତ୍ୱିକ ଲୋକ ସକଳ ଜୀବେ ଦୟାକରେ
ପ୍ରକାଶଇ ଜ୍ଞାନ ତାର ଧର୍ମ ବିଷୟରେ ।

କରେ ତୀର୍ଥ ବ୍ରତ ତରପଣ ପୂଜାମାନ
ଦେବତା ବ୍ରାହ୍ମଣପାଦେ ସେବେ ପ୍ରତିଦିନ ।
ଏମନ୍ତ ସ୍ୱଭାବ ଗୁଣ ଯାର ହୃଦେ ଦେଖି
ତାହାକୁଟି ସତ୍ୟବନ୍ତ ଏ ସଂସାରେ ଲେଖି ।
ରଜଗୁଣର ସକଳ କର୍ମ ଭାବ କରେ
ସର୍ବଦା କଳ୍ପନା ବାଞ୍ଛା ତାର ହୃଦୟରେ ।
ଅଶାନ୍ତି ଭାବ ସର୍ବଦା ଦେଖିବ ଯାହାକୁ
ରାଜସିକ ଗୁଣୀ ବୋଲି ଚିହ୍ନିବ ତାହାକୁ ।
ତମର ଭାବ କହିବା ଶୁଣ ପଣ୍ଡୁ ଶିଷ୍ୟେ
ଜ୍ଞାନପଣ ବହି ବାଦକରି ଆଗେ ବସେ ।
ଏ ତିନିଲୋକର ମୃତ୍ୟୁ କହିବା ହେ ଶୁଣ
ଯାହାଙ୍କର ଯେଉଁ ଗତି ମଲେ ହୁଏ ପୁଣ ।
ମରନ୍ତି ସାତ୍ତ୍ୱିକ ଲୋକମାନେ ଜାଣ ଯେବେ
ସତ ଆଶ୍ରେ କରି ପ୍ରାଣ ଛାଡ଼ନ୍ତିଟି ତେବେ ।
ଏ ସଂସାରେ ଦେବତାଏ ସବୁଙ୍କରି ପ୍ରଭୁ
ସତ୍ତ୍ୱଗୁଣୀ ମଲେ ମିଶି ଦେବଗଣେ ସବୁ ।
ଆବର ମରନ୍ତି ରଜଗୁଣୀ ଯେତେବେଳେ
ମାନବ ଯୋନିରେ ଜନ୍ମ ହୁଅନ୍ତି ତତ୍କାଳେ ।
ପତିତ ଚାଣ୍ଡାଳ ଅବା ବ୍ରାହ୍ମଣ ଯେ ହୋଏ
କାମ କଳ୍ପନା କରିଣ ପ୍ରାଣ ପୋଷୁଥାଏ ।
ଆବର ଯେ ତମ ଗୁଣୀ ମରେ ଯେବେ ଜାଣ
ପଶୁ ଯୋନିରେ ଜନ୍ମ ଯେ ହୁଏ ଯାଇ ପୁଣ ।
ନୀଚ ଲୋକରେ ଗଣିତା ହୁଅଇ ସେ ଯାଇ
ସ୍ୱର୍ଗ ମର୍ତ୍ତ୍ୟରେ ତାହାକୁ ବାସ ନ ମିଳଇ ।
ଏ ତିନିଗୁଣରେ ଏବେ ଦେବା ଫଳ କହି
ସେ କଥା ତୁ ଭଲେ ଶୁଣ ଭଦ୍ରାଦେବୀ ସ୍ୱାଇଁ ।
ସାତ୍ତ୍ୱିକ ଲୋକ ସୁକର୍ମ କରିବାକୁ ବାଞ୍ଛା
ଯାବତ ପୂଣ୍ୟାଦି ଫଳ ଭୁଞ୍ଜେ ସ୍ୱର୍ଗ ଇଚ୍ଛା ।
କହିବା ରଜ ଗୁଣର ଭୋଗ ଫଳ ଶୁଣ
ବିଫଳ ତା ଭୋଗଯାକ ଭୁଞ୍ଜେ ଆଗ ପୁଣ ।
ତମଗୁଣୀ ଲୋକ ଜାଣ ଯେଉଁ ଫଳ ଭୁଞ୍ଜେ
ଭୁଞ୍ଜଇ ଅଜ୍ଞାନ ପାପଫଳ ମୁଖକଞ୍ଜେ ।
ଏ ତିନି ଗୁଣୀଙ୍କ ମନ କହିବା ହୋ ଶୁଣ
ଯେ ରୁପେ ଉଦୟ ହୋଏ ତାଙ୍କ ମନ ଜାଣ ।
ସାତ୍ତ୍ୱିକ ପଣ ଏମନ୍ତ ଅଟଇ ଯେ ପୁଣ
ଜନ୍ମଇ ଦେହେ ତାହାର ଜ୍ଞାନ ଧର୍ମ ଗୁଣ ।
ରଜଗୁଣୀର ମନ ଯେ ନୁହଇ ଆୟତ୍ତ
କପଟ ଯେ ଲୋଭ ପାପ ଅର୍ଜ୍ଜେ ଅପ୍ରମିତ ।
ତମଗୁଣୀର କ୍ରୋଧରେ ଥାଏ ବଡ଼ ସ୍ନେହ
ଜନ୍ମେ ପ୍ରମାଦ ଅଜ୍ଞାନ ପାପ କାମ ମୋହ ।

ଏମାନେ ଗଲେ ବସନ୍ତି ଜାଣ ଯେଉଁଠାବେ
ସେକଥା କହିବା ଶୁଣ ସାବଧାନେ ଏବେ ।
ସାତ୍ତ୍ୱିକ ନର ଯାଇଣ ବସେ ସ୍ୱର୍ଗପୁରେ
ଦେବଙ୍କ ସାଙ୍ଗରେ ଯାଇ ବସେ ଭକ୍ତ ଦ୍ୱାରେ
ଆବରଯେ ରଜଗୁଣୀ ମରେ ଯେତେବେଳେ
ମର୍ତ୍ତ୍ୟଭୁବନେ ଯାଇଣ ଜନ୍ମେ ରବିତଳେ ।
ଶ୍ୱାନ ଚାଣ୍ଡାଳ ବାନର କୃମୀ କେବା ହୋଏ
ସୁଭାଗ୍ୟ ଥିଲେ ମାନବ ଦେହ ଅବା ପାଏ ।
ତମଗୁଣୀର ଯେ ମୃତ୍ୟୁ କହିବା ହୋ ଶୁଣ
ମଲେ ପାତାଳ ପୁରରେ ଜନ୍ମଇ ତା ପ୍ରାଣ ।
ଏ ତିନି ଗୁଣରେ ସବୁ ଶରୀର ନିର୍ମାଣ
ଏଥିରେ ବିଲଗ ଥାଇ ଆତ୍ମାଗୋଟି ଜାଣ ।
ଏମନ୍ତ ବିଚାର ପୁଣି ଜାଣନ୍ତି ଯେ ଲୋକେ
ସେ ମୋହର ମହାଭକ୍ତ ଅଟେ ପ୍ରାଣୀଯାକେ
ଏଣୁ ଜନ୍ମ ମୃତ୍ୟୁ ଜରା ଆଦି ଦୂଃଖ ଯେତେ
ଏ ଲାଗେ କ୍ଳେଶ ତାହାକୁ କହିଲି ମୁଁ ତୋତେ
ଗୁଣାତ୍ରୀତ ଭାବ ଘେନି ଯେଉଁ ଲୋକ ଥାଇ
ତାହାକୁ ଜନ୍ମ ମୃତ୍ୟୁ ଏ ଦୂଃଖ ନ ଲାଗଇ ।
ଏ ତିନି ଗୁଣ ଅନ୍ତର ଅଟେ ଯେଉଁ ଜନ
ସେହି ଏ ସଂସାରେ ଲେଖା ଅଟେ ବିଦ୍ୟମାନ
ହରିଙ୍କ ମୁଖୁ ଏମନ୍ତ ଆଜ୍ଞା ପୁଣ ପାଇ
ଅର୍ଜ୍ଜୁନ ବୋଲେ ଶୁଣିମା ପ୍ରଭୁ ଭାବଗ୍ରାହୀ ।
ଯେଉଁ ଲୋକର ସ୍ୱାମୀ ନ ଥାଇ ତିନିଗୁଣ
କେବଣ ପ୍ରକାରେ ଚିହ୍ନ ବହନ୍ତି ସେ ପୁଣ ।
ତାକୁ କି ରୂପେ ଚିହ୍ନିବି କହ ହୃଦେ ମୁହିଁ
ଅଜ୍ଞାନ ଅଟଇ ମନ ସିନା ମୋର ଦେହୀ ।
ସୁଦୟା ତୁମ୍ଭର ଯେବେ ଅଛି ମୋହଠାରେ
ସେକଥା କହ ଶୁଣିବି ବାରେ ଶ୍ରୀମୁଖରେ ।
ଅର୍ଜ୍ଜୁନର ପୁଚ୍ଛିବାର ଜାଣି ଭାବଗ୍ରାହୀ
ବୋଇଲେ ତୁ ସାବଧାନେ ଶୁଣ ଭଦ୍ରାସାଇଁ ।
ପରମ ବୋଲି ଅଟଇ ସେ ସାତ୍ତ୍ୱିକଗଣ
ଯାବତ ପ୍ରକାଶଇ ସେ ରଜୋଗୁଣମାନ ।
ତାମସ କ୍ରୋଧ ମୋହକୁ ତମଗୁଣୀ କହି
ଏ ତିନିଗୁଣ ବର୍ଜିତ ଅଟେ ଯାର ଦେହୀ ।
ସେଲୋକର ମନ ପୁଣି ଶୁଣ ଧନଞ୍ଜୟେ
ନୋହିବାକଥାକୁ ବିମୁଖ ସେକେଭେନୋହେ
ମିଳିଲେ ବୋଲଇ ଆଚ୍ଛା ନ ମିଳିଲେ ଆଚ୍ଛା
କୌଣସି କଥାକୁ ସେ ନ କରେ ମନବାଞ୍ଛା ।
ଏଣୁ ଏ ତ୍ରିଗୁଣ ରଜ୍ଜୁ ଅଟଇ ବାହାର
ତିଳେହେଁ ଯେ ନ ଟଳଇ ବଚନ ତାହାର ।
ପାଞ୍ଚଇ ତ୍ରିଗୁଣରେ କି ପ୍ରୟୋଜନ ଅଛି
ଶାନ୍ତଶୀଳକୁ ପୁଣି ନ ପାରେ କେବେ ମୂର୍ଚ୍ଛି ।
ସବୁ ଦୂଃଖକୁ ମଣଇ ସେହୁ କରି ସମ
ପର ଆପଣା ଘେନଇଁ ଦୂଇ ଏକ ଧର୍ମ ।
ପ୍ରିୟ ଅପ୍ରିୟ ଏ ବେନି ଆଉ ନିନ୍ଦା ସ୍ତୁତି
ଦୋଷ ଗୁଣ ଆଦିକରି ଅପ୍ରୀତି ଅକୀର୍ତ୍ତି ।
ଅଇରି ମିତ୍ର ଏ ଆଦି ଯେତେ ଭଲ ମନ୍ଦ
ଏ ସବୁ ସମ ଘେନିଣ ଭଜେ ପଦ୍ମପାଦ ।
ବଡ଼ିମା ଆବର ଦମ୍ଭ ଦୁର୍ବୁଦ୍ଧି ଯା ନାହିଁ
ଗୁଣରୁ ଅତୀତ ଅଟେ ସେ ସୁଭଦ୍ରାସାଇଁ ।
ମୋହର ଭାବ ଗୋଟିକ ଜାଣି ସେନିତ୍ୟେ
ଦାସ ପଣରେ ସେବି ସେ ତାଇ ଅନୁବ୍ରତେ ।
ସେହି ସେ ଭକ୍ତ ମୋହର ଜାଣେ ବ୍ରହ୍ମ ଚିହ୍ନି
ଶ୍ରୀମୁଖ ବଚନ ମୋର ଶୁଣ ଫାଲଗୁନି ।
ଅମୃତ ପ୍ରାୟ ଅବ୍ୟୟ ମୋର ନିଜ ସ୍ଥାନ
ମୋକ୍ଷକୁ ମାଳ ଅଟଇ ମୋର ବ୍ରହ୍ମଜ୍ଞାନ ।
ଆନନ୍ଦ ସ୍ୱରୂପ ସଦାଶ୍ରୟ ବ୍ରହ୍ମଦେହୀ
ଅନନ୍ତ ମୂର୍ତ୍ତି ଅଛିଦ୍ରେ ଅଛି ସେହୁ ରହି ।
ପ୍ରାଣ ପ୍ରଣାୟ କାଳରେ ମୋର ଭକ୍ତଜନ
ତ୍ରିଗୁଣକୁ ଅତିକ୍ରମି ବ୍ରହ୍ମେ ହୁଏ ଲୀନ ।
ବ୍ରହ୍ମା ମୁଖୁ ନାରଦ ଏ ଗ୍ରନ୍ଥ ଶୁଣିବାରୁ
ଏହି ଜ୍ଞାନ ଗୁପ୍ତେ ଥିଲା ସତ୍ୟ ଯୁଗଠାରୁ ।
ଦ୍ୱାପର ଯୁଗେ ଅର୍ଜ୍ଜୁନ ପୁଣି ପଚାରନ୍ତେ
ପ୍ରାଞ୍ଜଳ ହେବ ଏ ଜ୍ଞାନ କୃଷ୍ଣ ମୁଖାଗ୍ରତେ ।
ଶ୍ରୀନନ୍ଦିଘୋଷେ ବସି ଶ୍ରୀକୃଷ୍ଣ ମହାପ୍ରଭୁ
କହନ୍ତି ଶ୍ରୀକୁରୁକ୍ଷେତ୍ରେ ସ୍ଥାନେ ଜାଣ ସବୁ ।
ଧୃତରାଷ୍ଟ୍ରଙ୍କ ଆଗରେ ସଞ୍ଜୟ କହଇ
ଶ୍ରୀକୃଷ୍ଣର ଜ୍ଞାନଯାକ ହୃଦୟରେ ନେଇ ।
ଶୁଣନ୍ତି ପରୀକ୍ଷ ପୁତ୍ର ଜନ୍ମେଜୟ ରାଜା
ବଇଶମ୍ପାୟନଙ୍କର କରି ପାଦପୂଜା ।
ସେଠାରୁ ସଂସାର ହେଲା ଗ୍ରନ୍ଥଯାକ ଉଦେ
ଏକ୍ଷଣି କହିବା ଯାହା ଅଛି ଚାରିବେଦେ ।
ସଞ୍ଜୟ ବୋଇଲେ ରାଜା ଶୁଣ ଅନ୍ଧରାୟ
ହରିର ମହିମା ଶୁଣି ପାପ କର କ୍ଷୟ ।
ଶ୍ରୀନନ୍ଦିଘୋଷ ରଥରେ ବିଜେ ଚକ୍ରପାଣି
ବସିଛି ଧ୍ୱଜ ଉପରେ କପିକୁଳମଣି ।
ଆଗରେ କଳ୍ପାନ୍ତକ୍ଷୟକାରୀ ଚାରି ବାଜୀ
ବସିଛି ପାଣ୍ଡବ ଚୂଡ଼ାମଣି ରଥ ମଝି ।
ସେ ରଥେ ହରି ଅର୍ଜ୍ଜୁନ ମୂଖକୁ ଅନାଇଁ
କହନ୍ତି ଶରୀର ଭାବଯାକ ଭାବଗ୍ରାହୀ ।

ଅତି ଭାଗ୍ୟେ ମିଳେ ମାନବର କଳେବର
ଗୋବିନ୍ଦ କୃପାରୁ ସେହି ଅଟେ ବଳୀୟାର ।
ବୁଝିଲେ ଅନିତ୍ୟ ଏ ସଂସାର ବିଡ଼ମ୍ବନ
ଭବସାଗର ବୋଲି ଯା ନାମ ଅଟେ ପୂଣ ।
ଏଥିରେଟି ପ୍ରାଣୀମାନେ ଭଲା ଦେହ ବହି
ଆକାର ଅଶ୍ୱତ୍ଥ ବୃକ୍ଷପ୍ରାୟ ଜାଣ କହି ।
କାଲିକି ନ ରହେ ବୋଲି ନାମ ତା ଅଶ୍ୱତ୍ଥ
କେ ଆଜିକାଲି ମରନ୍ତି ଜାଣ ସବୁ ବ୍ୟର୍ଥ ।
ଭୂମିରେ ସ୍ଥାବର ହୋଇଛନ୍ତି ଯେତେ ବୃକ୍ଷ
ତାହାଙ୍କ ମୂଳ ତଳକୁ ଅଛି ସବୁ ଦେଖ ।
ସେ ବୃକ୍ଷେ ପ୍ରକାଶ ଯେତେ ଡାଳସାନ ବଡ଼
ବିସ୍ତାରି ଉପରେ ବଢ଼େ ସବୁରି ଶିକଡ଼ ।
ସେ ବୃକ୍ଷର ମୂଳେ ନେଇଦେବ ଯେତେଜଳ
ତେତେ ସେ ପଲ୍ଲବୁ ଥାଇ ବୃକ୍ଷ ପତ୍ର ଡାଳ ।
କହିବା ଶୁଣ ଉଲଟ ବୃକ୍ଷର ସେ କଥା
ଅଶ୍ୱତ୍ଥ ସ୍ଥାବର ପ୍ରାୟ ଅଟେ କେଶ ମଥା
ତଳକୁ କର ପଲ୍ଲବ ରହିଥାଇ ଲମ୍ୱି
ପାଉଥିଲେ ଶିଖେ ରସ ଏ ବୃକ୍ଷ ପଲ୍ଲବି ।
ଏ ବୃକ୍ଷ ବିହାର କରେ ଯେଉଁ ଆତ୍ମା ରାମ
ସେହି ନାମ ଗୋଟିଜାଣ ଅଟେ ପରଂବ୍ରହ୍ମ ।
ପିଣ୍ଡଧାରୀ ହୋଇ ଜୀବ ଛନ୍ତି ଜାଣ ଯେତେ
ସ୍ଥାବର ଜଙ୍ଗମ କୀଟ ପତଙ୍ଗ ସହିତେ ।
ବସନ୍ତି ଏ ସର୍ବଘଟେ ହୋଇ ନାରାୟଣ
ପ୍ରତ୍ୟକ୍ଷ ସେ ଆଦିମୂଳ ଅଟେ ସଂସାରେଣ ।
ଆବର ସଂସାରେ ଯେତେ ହର ବ୍ରହ୍ମାଛନ୍ତି
ସେ ଆଦିମୂଳ ହୋଇଣ ଡାଳେ ପ୍ରକାଶନ୍ତି ।
ସେ ବୃକ୍ଷ ଯାବତ ଡାଳ ଜାଣି ଶାସ୍ତ୍ରମାନେ
ପତ୍ର କଳିକା ପଲ୍ଲବେ ତହିଁ ଅବିଚ୍ଛିନ୍ନେ ।
ଏମନ୍ତ ପ୍ରକାରେ ଚିହ୍ନି ପାରିବ ଯେ ମୋତେ
ବେଦ ବେଦାନ୍ତବେତ୍ତା ସେଅଟଇ ଜଗତେ ।
ଏରୁପେ ଅଟେ ଅଶ୍ୱତ୍ଥ ସେହି ତରୁବର
ତଳକୁ ଡାଳ ତା କେଭେ ନୁହଇ ଉପର ।
ସୁକୃତ ଦୁଷ୍କୃତ ବୃକ୍ଷର ସେ ଫଳ ଜାଣ
ଯେବଣ ଡାଳେ ଏ ଲମ୍ୱି ଥାଆନ୍ତିଟି ପୁଣ ।
ସେ ଡାଳମାନ କହିବା ଶୁଣ କୁନ୍ତୀସୁତେ
ଶୁଣିବା ମାତ୍ରେ ଭଜିବୁ ଏକ ଦୃଢ଼ବ୍ରତେ ।
ସତ୍ତ୍ୱ ରଜତମ ଅଟେ ଏହି ତିନି ଡାଳ
ଏ ତିନି ଡାଳ ବୃକ୍ଷକୁ ଅଟେ ଏକା ମୂଳ ।
ଆବର ଦେହେ ଯେତେକ ବିଷୟ ନିଶ୍ଚୟ
ବୃକ୍ଷରେ ପଲ୍ଲବୁଥାନ୍ତି ଶୁଣ ଧନଞ୍ଜୟ ।
ତହିଁର ଚେଷ୍ଟା ପ୍ରକୃତିଗଣେ ଛନ୍ତି ଯେତେ
ବୃକ୍ଷରେ ପଲ୍ଲବି ବଢୁଥାନ୍ତି ସେହି ନିତ୍ୟେ ।
ସେ ତରୁବର ବାସନା ଭୋଗ ସକାଶରୁ
ସେ ବୃକ୍ଷର ପୁଷ୍ପଫୁଟି ଫଳଇ ଶୂନ୍ୟରୁ ।
ଏରୂପେ ଅଟଇ ସେହି ବୃକ୍ଷର ବିଧାନ
କେବେ ଆୟତ ନୁହଇ ଏହି ବୃକ୍ଷ ଜାଣ ।
ତେଣୁ ଏ ବୃକ୍ଷଅଶ୍ୱତ୍ଥନୁହେଁ କେତେବେଳେ
ବହିଲା ଅଶ୍ୱତ୍ଥ ବୋଲି ନାମ ରବିତଳେ ।
ବୃକ୍ଷକୁ କେବଳ ଜ୍ଞାନ ଗୋଟି ଅଟେ ଦୃଢ଼
ଯେ ପାରେ କମାଇ ଏହା ସେହି ଏକା ବଡ଼ ।
ଏ ବୃକ୍ଷ ମୂଳ ପାଣି କେ କରିପାରେ ଅନ୍ତ
ନ ପାରଇ କହି କେହି ତାର ଆଦି ଅନ୍ତ ।
ସେ ବୃକ୍ଷମୂଳେ ଜାଣ ସଂଲଗ୍ନ କିଛି ନାହିଁ
ବ୍ରହ୍ମକୁ ଆଣ୍ଟ କରଇ ପୁଣି ତାର ଦେହୀ ।
ସେ ଯେବେ ସୁସଙ୍ଗେବସି ମୋ ଭାବକଳରେ
ଅକ୍ରାମର ହୋଇ ରହିଥାଏ ନିରନ୍ତରେ ।
ନୋହିଲେ କାଳଗଣ ଯେ ଶସ୍ତ୍ର କରେ ଧରି
ଦିଅନ୍ତି ତା ମୂଳକାଟି ନିପାତ ଯେ କରି ।
ଛିଡ଼ିଲାମାତ୍ରେ ସେ ବୃକ୍ଷ ତଳେ ଯାଇଁ ପଡ଼େ
ସେ ବୃକ୍ଷ ଉଡାଡ଼ଯାକ ହଜେ କେଉଁ ଆଡ଼େ ।
ତଥାପି ଯେବେ ତାହାର ଜ୍ଞାନେ ଥାଇ ମନ
ଉହାଡ଼ ହଜିଲେ ଲଭେ ସେହି ବିଷ୍ଣୁସ୍ଥାନ ।
ବିଷ୍ଣୁଙ୍କର ପୂର ଯେବେ ପାଏ ଯୋଗବଳେ
ବାହୁଡ଼ି ନ ଆସି ସେହି ରହେ ବିଷ୍ଣୁ ଆଳେ ।
ଜାଣିବା ଲୋକର ଜାଣ ଏସନକ ଗତି
ବିହାର କରେ ପରମାନନ୍ଦ ଭାବେ ନିତି ।
ଏ ବୃକ୍ଷ ଗୋଟି ସଂସାରେ ବଡ଼ ବିଡ଼ମ୍ବନ
କହିଲେ ନ ସରେ ତାର ସିହାଣ ଯେ ପଣ ।
ଯେବଣ ଲୋକର ଜାଣ ଜ୍ଞାନ ମନ ଥାଇ
ସେହି ସେ କିଣଇ ମୋତେ ଶୁଣ ଭଦ୍ରାସାଇଁ ।
ଏରୂପେ ଅଟେ ପରମ ପୁରୁଷର କାୟା
ଶରଣ ପଶିଲେ ତହିଁ ତୁଟେ ଭବମାୟା ।
କାମ କ୍ରୋଧ ଲୋଭ ମୋହ ହିଂସା ଅଧିକାର
ଏମାନେ ଅଟନ୍ତି ଯେଉଁ ବୃକ୍ଷ ମୂଳ ଚେର ।
ଦୁଃଖ ସୁଖ ଏ ଦୁହିଁଙ୍କି ପାରେ ନାଶି ଯେହୁ
ନିର୍ମୋହ ନିରାମୟ ସେ ସ୍ଥାନ ପାଏ ସେହୁ ।
ଯେବଣ ସ୍ଥାନକୁ ନ ଲାଗେ କିଛି ତେଜ
ଜ୍ୟୋତ୍ସ୍ନା ନ ପଡ଼ଇ ପୁଣି ଅଗ୍ନି ଚନ୍ଦ୍ର ସୂର୍ଯ୍ୟ ।
ସେଠାକୁ ଗଲେ ବାହୁଡ଼ି ଆଉ ନ ଆସଇ
ସେହିସେ ମୋହର ଧାମ ବୋଲିତୋତେ କହି

ଜୀବକୁ ଆତ୍ମା ବୋଲିଣ ଯେହ୍ନେ ଚିହ୍ନିପାରେ
ମୁହିଁ ସିନା ବସିଥାଇ ସକଳ ଶରୀରେ ।
ପ୍ରାଣୀଙ୍କ ହୃଦେ ବିହାର କରୁଥାଇ ମୁହିଁ
ଜପିବେ ଚେତନାଦ୍ୱାରେ ପଣ୍ଡିତଯେ ଯାଇ ।
ଯାହାକୁ ମନ ବୋଲି ସେ ଅଟେ ବିଡ଼ମ୍ବନ
ପ୍ରକୃତିଯାକ ମୋହରେ ପଡ଼ଇ ତକ୍ଷଣ ।
ଏ ଦଶ ଇନ୍ଦ୍ରିୟମାନ ମନ ବୋଲେ ଥାନ୍ତି
ଯହିଁକି ପେଶିବେ ସେ ଠାବକୁ ଚଳିଯାନ୍ତି ।
ବିଦ୍ୟା ଅବିଦ୍ୟା ସଂସାରଯାକେ ଯେତେଥାନ୍ତି
ବୃକ୍ଷଟି ଗଲେ ମନକୁ ଜୀବନ ଘେନନ୍ତି
ବର୍ଷ ପୂରିଲେ ବସନ୍ତ ଋତୁ ଯେହ୍ନେ ହୋଏ
ପବନ ସେ ଋତୁ ପୁଷ୍ପବାସ ଘେନିଯାଏ ।
ପୁଣି ସରୋବର ବନ୍ଧେ ଯେବେ ପଡ଼ିଥାଇ
ସେ ବନ୍ଧ ଭାଜିଲେ ଜଳ ଯେହ୍ନେ ବହିଯାଇ ।
ସହସ୍ରେ କିରଣ ଧରି ରବି ଯେହ୍ନେ ଚଳେ
ମେରୁଉହାଡ଼ ହେଲେନଦିଶେକେତେବେଳେ
ପବନ ସୁଗନ୍ଧ ଗନ୍ଧବାସ ଏକା ଜାଣେ
ସେ ରୂପେ ମନ ଚଳଇ ଘେନି ଇନ୍ଦ୍ରିଗଣେ ।
ଏମନ୍ତ ଯେ ଏକାଦଶ ଇନ୍ଦ୍ରିଗଣ ଘେନି
ପିଣ୍ଡରେ ବିହରୁଥାଇ ଜୀବ ଆତ୍ମା ପୁଣି ।
ସର୍ବାଙ୍ଗ ଶରୀର ଗୋଟି ଇନ୍ଦ୍ରିୟଯେ କହି
ଦଶଦ୍ୱାର ଦଶ ଇନ୍ଦ୍ରିୟରେ ଲେଖା ହୋଇ ।
ଏରୂପେ ଏ ଏକାଦଶ ଇନ୍ଦ୍ରିୟ ପ୍ରମାଣ
ଶୁଣ ଫାଲଗୁନି କହନ୍ତି ଯେ ନାରାୟଣ ।
ଏ ଦଶଇନ୍ଦ୍ରି ବିଷୟା ବିଧି ଜାତ ଯେତେ
ଜୀବଟି ଭୋଗ ତାହା ନକରେ ଜାଣ ନିତ୍ୟେ
ଦେହର ଏତେ ଗୁଣ ନ ଜାଣି ମୂର୍ଖ ଲୋକେ
ମାୟା ସଂସାରେ ଭ୍ରମନ୍ତି ପଡ଼ି ଅବିବେକେ ।
ବିଜ୍ଞମାନେ ଜାଣ ଏହି କଥା ହେତୁ କରି
ମୋତେ ଜାଣନ୍ତି ଜଗତମୟ ଦେବହରି ।
ବୋଲନ୍ତି ଦେହରେ ପୂରିଛନ୍ତି ଯେଉଁ ଆତ୍ମା
ସେହି ସିନା ନାରାୟଣ ପୁରୁଷ ମହାତ୍ମା ।
ସବୁରି ଦେହେ ଭିଆଣ ବସି କରୁଥାନ୍ତି
ସେ ଦେହରେ ଭୋଗଯାକ ଆପେ ବିଳସନ୍ତି
ଏରୂପେ ଚିହ୍ନିଲା ଲୋକ ତରଇ ସଂସାରୁ
ଜ୍ଞାନକୁ ପାରଇ ନେଇ ଭକ୍ତି ଭଣ୍ଡାରରୁ ।
ସକଳଜୀବରେ ସମ ଘେନି ହୋଇ ଶାନ୍ତି
ବୋଲଇ ଏ ପିଣ୍ଡେ ଆତ୍ମା ଦର୍ପଣର ଜ୍ୟୋତି
ଏଣୁ ପିଣ୍ଡକୁ ରଖନ୍ତି ଜ୍ଞାନୀ କରି ନିର୍ଣ୍ଣେ
ଆତ୍ମାର ସଙ୍ଗରେ କ୍ରୀଡ଼ା କରଇ ସେ ତୂର୍ଣ୍ଣେ ।

ମୋକ୍ଷକାରଣେସଂସାରେ ଅଛି ଯେତେବିଦ୍ୟା
ତହିଁ ଅଜ୍ଞାନୀ ଲୋକ ନକରେ କେବେ ଶ୍ରଦ୍ଧା ।
ବୋଲଇ ଆତ୍ମାର ଦେହେ ଅଛି ଯେଉଁ ଜୀବ
ପିଣ୍ଡରୁ ଭିନ୍ନ ହୁଅଇ କି ସେ ଜ୍ଞାନଭାବ ।
ଏରୂପେ ପାଞ୍ଚ ସଂସାରେ ଯେତେ ମୂଢ଼ଜନ
କରନ୍ତି ମୋର ଏ ପିଣ୍ଡ ବୋଲି କର୍ମମାନ ।
ଆବର କଥାଏ ପାର୍ଥ କହିଥିବା ତୋତେ
କହିବା ସପ୍ତ ବରଷ ମାର୍ଗ ବୁଝଯେତେ ।
ସବୁ ଜୀବମାନଙ୍କୁ ଯେ ପୃଥ୍ୱୀ ଅଛି ବହି
ସ୍ଥାବର ଜଙ୍ଗମ କୀଟ ପତଙ୍ଗ ଯେ କହି ।
ଏମାନେ ପୃଥ୍ୱୀ ପାରିବେ ବହି କିହୋ ଦିନେ
ମୋହର ତ୍ରିଗୁଣ ଲାଗିଅଛି ସର୍ବଜନେ ।
ତ୍ରିଗୁଣରେ ମୁହିଁ ଖଞ୍ଜିଅଛି ସର୍ବଦେହୀ
ସମସ୍ତେ ଭୁଲିଅଛନ୍ତି ମୋହ ଯନ୍ତ୍ରେ ରହି ।
ଅଗ୍ନିର ତେଜ ପ୍ରଚଣ୍ଡ ଜାଣ ଦାବାନଳ
ତହିଁରେ ଲାଗିଛି ମୋର ତ୍ରିଗୁଣେ ପ୍ରବଳ ।
ଜଳର ଶୀତଳେ ମୁହିଁ ଅଟେ ଜାଣ ରସ
ପବନହିଁ ଶୀତ ମୁହିଁ ଅଟେ ଜଗଦୀଶ ।
ବୁଝିଲେ ତ୍ରିଗୁଣ ଦାତା ଅଟେ ଏକା ମୁହିଁ
ମୋ ବିନୁ ସଂସାରେ କର୍ତ୍ତା ଅନ୍ୟକେହି ନାହିଁ
ଜ୍ଞାନର କାରଣ କାଳେ ତେଜ ମୋ ପ୍ରକାଶ
ଅଜ୍ଞାନାନ୍ଧକାରକୁ ଯେ କରଇ ମୁଁ ନାଶ ।
ନିଶାରେ ଯେ ଚନ୍ଦ୍ର ପୁରି ଉଦେ ବିଧିମତେ
ପୃଥ୍ୱୀରେ ସବୁ ଔଷଧି ଦ୍ରବ୍ୟ ଜୀବ ଯେତେ ।
ସର୍ବ ରସକୁ ପୁଷ୍ଟ ସେ ତରୁ କରୁଥାଇ
ସେହି ମୋ ତ୍ରିଗୁଣ ଅଟେ ଶୁଣ ଭଦ୍ରାସାଇଁ ।
ଆବର କଥାଏ ଶୁଣ କହୁଛି ମୁଁ ଆପେ
ପ୍ରାଣୀଙ୍କ ଜଠରେ ମୁହିଁ ଅଛି ଅଗ୍ନିରୂପେ ।
ଶରୀର ମଧ୍ୟରେ ପଞ୍ଚ ପବନହିଁ ଜାଣ
ପ୍ରାଣ ଅପାନ ଉଦାନ ବ୍ୟାନ ଯେ ସମାନ ।
ଏ ପଞ୍ଚପ୍ରାଣ ଶରୀରେ ଥାନ୍ତି ସଦାବସି
ଚାରି ପ୍ରକାରେ ଭୋଜନମାନ ପୁଣି ଗ୍ରାସି ।
ରନ୍ଧନ ଶୁଖିଲା କଞ୍ଚା ଜଳ ଭୋଜ୍ୟ ଚାରି
ତାହା ମୁଁ ଜଠରେ ଥାଏ ଦିଏ ପାକ କରି ।
ଜୀବରୂପେ ଥାଇ ମୁହିଁ ପ୍ରାଣୀ ହୃଦଗତେ
ଇଚ୍ଛାରେ ବସି ବିହାର କରଇଯେନିତ୍ୟେ ।
ମୋତେ ଚିହ୍ନିବାକୁ ନାହିଁ ସଂସାରରେ ଜନ
ମୁହିଁ ମୋତେ ଚିହ୍ନି ଭଜୁଥାଇ ପ୍ରତିଦିନ ।
ମୁହିଁ ଅଜ୍ଞାନୀ ହୋଇଣ ପାଶୋରଇ ମୋତେ
ମୋହର ସୁଖେ ହୁଅଇ ମୁହିଁ ଜ୍ଞାନୀ ନିତ୍ୟେ ।

ଏ ତିନିପୁରେ ଅଛନ୍ତି ଯେତେ ଦେବଦେବୀ
ମୋତେ ତ ନଭଜି ଦେହ ଧରିବ କେ ଭୁବି
ସଂସାର ଲୋକେ ଦେବତା କହନ୍ତି ଯାହାକୁ
ମୁଁ ସିନା ସ୍ଥାପନା କରିଅଛି ଭାବନାକୁ ।
ସେ ଦେବଦେବୀଙ୍କ ହୃଦେ ବସି ରହିଥାଇ
ମୋ ବିନୁ ଦେବ ସଂସାରେ ଆଉଅଛି କାହିଁ ।
ଏରୂପେ ଅଟଇ ମୂହିଁ ଦିଓଟି ପ୍ରକାର
ଏକଥାକୁ ଚିହ୍ନିଜାଣେ ସୁବୁଦ୍ଧି ସାଧୂନର ।
ଅଜୟ ଜୟ ହୋଇଣ ଅଛି ଦୁଇକଥା
ଶୁଣ ଅର୍ଜ୍ଜୁନ କହନ୍ତି ଜଗତର କର୍ତ୍ତା ।
ଆତ୍ମା ଗୋଟି ସର୍ବକାଳେ ଅଟେ ବ୍ରହ୍ମମୟେ
ଯେ ମରେ ସେ ବ୍ରହ୍ମ ହୃଦୟରେ ଯାଇଁରହେ ।
ଆତ୍ମାହିଁ ଅକ୍ଷୟ ବ୍ରହ୍ମ ପିଣ୍ଡ ଗଲାକ୍ଷଣି
ବ୍ରହ୍ମଦେହେ ମିଶି କହନ୍ତି ଯେ ଚକ୍ରପାଣି ।
ଏମନ୍ତ ବ୍ରହ୍ମକୁ ଚିହ୍ନିପାରେ ଯେହୁ ଅଙ୍ଗେ
ସେମାନେ ସଂସାରେ ରହିଥାନ୍ତି ଚାରିଯୁଗେ
ଶ୍ରୀବ୍ରହ୍ମପୁରୁଷ ଅଟେ ପୂରାଣ ପୁରୁଷ
କୋଟି ବ୍ରହ୍ମାଣ୍ଡ ପ୍ରକାଶେ କେହ୍ନେହୃଷୀକେଶ
ସେ ବ୍ରହ୍ମ ପୁରାଣ ଜାତ ଚୌଦ ପୂରଯାକେ
ତିଳେମାତ୍ର ଛଡ଼ାନାହିଁ ଘୋଟିଛି ତ୍ରିଲୋକେ ।
ପୂରି ରହିଥାନ୍ତି ପ୍ରାଣୀମାନଙ୍କର ଦେହେ
ଏକଥା ଗୋଚର କରି ନପାରେ ଯେ କିଏ ।
ଅକ୍ଷୟ କ୍ଷୟ ପୁରୁଷ ଏହି ଦୁଇମତ
ପିଣ୍ଡ ହୁଏ କ୍ଷୟ ଆତ୍ମା ଅକ୍ଷୟ ସତତ ।
ବେଦରେ କଲେ ଅକ୍ଷୟ ଅଟେ ପରଂବ୍ରହ୍ମ
ତେଣୁ ସେ ପୁରୁଷ ନାମ ଶ୍ରୀପୁରୁଷୋତ୍ତମ ।
ଯେବଣପ୍ରାଣୀ ବ୍ରହ୍ମାଣ୍ଡେ ମୋତେ ପାରେଜାଣି
ସେ ବୋଲେ ସଂସାରେ ଏକା ପ୍ରଭୁ ଚକ୍ରପାଣି
ମୋହର ମହିମା ସେହିଭାବେ ଅନୁକ୍ଷଣେ
ତାହାଙ୍କୁ ମୁଁ ପରିତ୍ରାଣ କରେ ଜ୍ଞାନୀପଣେ ।
କହନ୍ତି ଶ୍ରୀଜଗନ୍ନାଥ ପ୍ରଭୁ ତୋଷଚିତ୍ତେ
ଅର୍ଜ୍ଜୁନ ମୁଖକୁ ଚାହିଁ ନନ୍ଦିଘୋଷ ରଥେ ।
ତୁ ମୋର ସଖା ପାଣ୍ଡବକୁଳ ଚୂଡ଼ାମଣି
ତେଣୁକରି ବ୍ରହ୍ମଜ୍ଞାନ କହୁଛି ମୁଁ ପୁଣି ।
ଯେ ଜନ ଅଟେ ସୁଜନ ସାଧୁ ଦୟାବନ୍ତ
ଏ ବ୍ରହ୍ମଜ୍ଞାନ ମୋହର ଜାଣେ ମହାଭକ୍ତ ।
ଶ୍ରୀଗୁରୁ କୃପାରୁ ମୋର ଜ୍ଞାନ ପାରେ ଜାଣି
ତେଣୁ କୃତାର୍ଥ କରନ୍ତି ତାକୁ ଚକ୍ରପାଣି ।
ଏ ଗ୍ରନ୍ଥହିଁ ଚାରିବେଦ ଅଟେ ସାରସ୍ୱତ
ଯେବଣ ଜନଟି ଚିହ୍ନି ପାରନ୍ତି ଏ ତତ୍ତ୍ୱ ।
ଶୁଣିବେ ଜାଣିବେ ନିତ୍ୟେ ପଢ଼ିବେ ସେ ବସି
ଭକ୍ତି ବଳରୁ ତାରିବେ ତାକୁ ବ୍ରହ୍ମରାଶି ।
ନୃସିଂହ ପୂରାଣ ସପତମ ଖଣ୍ଡ ବାଣୀ
କହନ୍ତି ଯେ ନାରଦଙ୍କ ଆଗେ କୁଶପାଣି ।
ସେ ଜ୍ଞାନଯାକ ଆଣି ଶ୍ରୀକୃଷ୍ଣ ମହାପ୍ରଭୁ
କହନ୍ତି ଦ୍ୱାପରଯୁଗେ ପାର୍ଥ ଆଗେ ସବୁ ।
ସଞ୍ଜୟ ତାହାକୁ ନେଇ ଧୃତରାଷ୍ଟ୍ର ଆଗେ
ପ୍ରଚ୍ଛନ୍ନ କରି କହନ୍ତି ବ୍ୟାସ ଅନୁରାଗେ ।
ପରୀକ୍ଷରାଜ ପୁତ୍ର ଶ୍ରୀଜନ୍ମେଜୟ ରାଜା
ବଇଶମ୍ପାୟନଙ୍କର କରି ପାଦପୂଜା ।
ତାଙ୍କ ପିତାମହଙ୍କର ଯେଉଁ କୀର୍ତ୍ତିମାନ
ପଚାରି ବୁଝନ୍ତି ବହି ଅତି ହୃଷ୍ଟମନ ।
ଶୁଣ ହେ ସୁଜନ ଜନ ଏହି ଗ୍ରନ୍ଥ ରସ
ଷଡ଼ ସମ୍ବାଦରେ ଏହି ହୋଇଛି ପ୍ରକାଶ ।
ତାହା ମୁଁ ବଖାଣ କରେ କେବଳ ପ୍ରାକୃତେ
ସାଧୁ ମୁଖୁ ଶୁଣି ଲେଖିଅଛି ଜନହିତେ ।
ପରଂ ବ୍ରହ୍ମୀ ମୂର୍ତ୍ତି ଶାରଦା ଯେ ପଦ୍ମନେତ୍ରୀ
ପରମାନନ୍ଦଙ୍କ ପ୍ରିୟା ଶୁଭ ପୂଣ୍ୟଗୋତ୍ରୀ ।
ଜ୍ଞାନୀଙ୍କି ଦିଶୁଛି ଦୃଷ୍ଟିରେ ସେ ଥିଲା ପ୍ରାୟ
ମୂଖ ଲକ୍ଷେ ଯୁଣେ ନ ଦିଶେ ଅନ୍ଧମୟ ।
ଶାରଦା ଆଜ୍ଞାରେ ନିଶାରେ ମୁଁ ବର ପାଇ
ସେ ଯାହା କହନ୍ତି ତାହା ଲେଖେ ମନଦେଇ ।
ଭୋ ସୁଜ୍ଞଜନମାନେ ନଘେନ ମୋର ଦୋଷ
ନୃସିଂହ ଶରଣ ମୂହିଁ ପୀତାମ୍ବର ଦାଶ ।
ଏଥୁ ଉତ୍ତାରେ ଯେ ପୂଣି ପାଣ୍ଡବ ଅର୍ଜ୍ଜୁନ
ପୁଚ୍ଛଇ ସେ ନନ୍ଦିଘୋଷେ ବସି ବ୍ରହ୍ମଜ୍ଞାନ ।
କୃଷ୍ଣବୋଇଲେ ଯେ ହେପାର୍ଥ ଶୁଣଗ୍ରନ୍ଥସିଦ୍ଧି
ଆବର କହିବା ତୋତେ ସତ୍ୟଧର୍ମ ବିଧି ।
ଯେବଣ ଜ୍ଞାନ ସଂସାରେ ଶୁଣି ସାଧୂଜନେ
ଭଜନ୍ତି ମହାଯୋଗୀନ୍ଦ୍ର ହୋଇମୋତେଧ୍ୟାନେ
ବିଶୁଦ୍ଧ ଜ୍ଞାନ ଏବେ କି ପୁଣ ହେତୁକରି
ଯାହା କହିବା ନିର୍ମଳ ଚିତ୍ତେ ତାହା ଧରି ।
ଚିତ୍ତରେ ଅଛଇ ଦେଖ ଦଶ ଇନ୍ଦ୍ରିମନ
ତାହାକୁ ସଂସାରେ ରଖି ପାରିବ କେ ଜନ ।
ତହିଁର ବାର୍ତ୍ତା କହିବା ଶୁଣ ପାର୍ଥ ତୋତେ
ପ୍ରାଣୀଙ୍କଠାରେ ଚିନ୍ତା ନ ଥିବ କଦାଚିତ୍ତେ ।
ଅମାୟା ଅକ୍ରୋଧ ହେବ ଯେ ଅଚଳ ମତି
ସୁସାଧୁ ସୁଶୀଳ କ୍ଷମା ଦୟା ମହାଶାନ୍ତି ।
ପ୍ରାଣୀ ହିଂସାକରି କୁଭାଷା ଯେ ନ ବୋଲିବ
ଲୋଭ ଦୂରକରି କୋମଳରେ ବୋଲୁଥିବ ।

ମଧୁର ବାକ୍ୟ କହିଣ ପ୍ରାଣୀ ଥିବ ପାଳି
କହିବ କୋମଳ କରି ଧୈର୍ଯ୍ୟ ଗୁଣ ଭାଳି ।
ସୁବୁଦ୍ଧି ସ୍ୱଚ୍ଛ ହୋଇବ ହେସି ସାଧୁପଣେ
ଅତିହିଁ ମାନୀ ନୋହିବ ଥିବ ସାଧୁଗୁଣେ ।
ଆପଣାର ମନେ ଶାନ୍ତଭାବେ ରହିଥିବ
ସେ ଲୋକର ଗୁଣ ବୁଝି ତୋଷ କରାଇବ ।
ଏମନ୍ତ ରୂପେଟି ଥିବ ଯେଉଁଲୋକ ଜାଣ
ତାହାକୁଟି ସାଧୁ ବୋଲି ଲେଖି ସଂସାରେଣ ।
ଦୈବବନ୍ତ ଲୋକଟିର ଅଟେ ଏହି ବୁଦ୍ଧି
ଶୁଣିମା ଏବେ ଅସୁର ଲୋକଙ୍କର ବିଧି ।
ପୃଥ୍ୱୀରେ ଜନମି ଯେହୁ ଦୁଷ୍ଟଭାବ ବହେ
ତାହାଙ୍କ ରାକ୍ଷସ ବୋଲି ବୋଲନ୍ତି ସଭିଏଁ ।
ସେ ଲୋକଙ୍କ ଗୁଣମାନ କହିବା ହୋ ଶୁଣ
ମନକୁ ନିଶ୍ଚଳ କର ସୁଭଦ୍ରାର ପ୍ରାଣ ।
ପରଶୁ ଖଡ଼ଗ ପ୍ରାୟେ କହେ ତୀକ୍ଷ୍ଣ ଭାଷା
ନିର୍ଦ୍ଦୟ ସେ ନିରପେକ୍ଷ ହୋଇକରେ ହିଂସା ।
ଅସୁର ଲୋକର ଅଟେ ଏହିରୂପେ ମତି
ଦରିଦ୍ର ଲୋକଙ୍କୁ ତା ନ ଥାଇ ଦୟା ପ୍ରୀତି ।
ଅସୁର ଲୋକର ଅଟେ ଏରୁପେ ସମ୍ପଦ
ଏ ଲୋକମାନଙ୍କ ଦ୍ରବ୍ୟ ଅଟଇ ଅଖାଦ୍ୟ ।
କେବଳ ଯେ ଦୟାବନ୍ତ ଦାନୀଲୋକ ଧନ୍ୟ
ଦୈବୀ ସମ୍ପଦେ ଅଟଇ ସେହୁ ମୋକ୍ଷବାନ ।
ଏକଥା କହିଲି ନିଶ୍ଚେ ତୋତେ ତୋଷଚିତ୍ତେ
ମନରେ ଦ୍ୱିଧା କିଛି ନକର କଦାଚିତ୍ତେ ।
ଅନେକ ଧର୍ମ ଅର୍ଜନ୍ତି ଦେହେ ଯେତେ ନର
କାଳେ ପ୍ରାପତ ତାହାଙ୍କୁ ଦିଏ ଦିବ୍ୟପୁର ।
ଏଣୁ ମୁଁ କହୁଛି ଯେତେ କଥା ଆଣି ତୋତେ
ମୋ ନାମ ଭଜ ବଞ୍ଚିବୁ ଏକା ଅନୁବ୍ରତେ ।
ବନରେ ବୁଲି ପାଇଛ ତୁମ୍ଭେ କେତେ ଦୁଃଖ
ତୁମ୍ଭଙ୍କୁ ଯେବେ ଦେବଇଁ ମୂହିଁ ସ୍ୱର୍ଗସୁଖ ।
ପୃଥ୍ୱୀରେ କରନ୍ତି ଦେବଭୋଗ ଦେବଲୋକ
ବିଷ୍ଣୁ ଅଂଶୀ ଲୋକ ଭୁଞ୍ଜନ୍ତି ଯେ ପୃଥ୍ୱୀଯାକ ।
ଏମନ୍ତ ଯେ ଦୁଇମତେ ହୁଏ ପୃଥ୍ୱୀଭୋଗ
ତୁମ୍ଭଙ୍କୁ ଏବେ ଦେବଇଁ ମୂହିଁ ତିନି ସ୍ୱର୍ଗ ।
ପାତାଳେ ତୁମ୍ଭର ନାମ ସ୍ୱର୍ଗେ ତୁମ୍ଭ ନାମ
ମର୍ତ୍ତ୍ୟମଣ୍ଡଳେ ହୋଇବ ତୁମ୍ଭେ ବିଷ୍ଣୁ ସମ ।
ଦାତବ୍ୟ ଅଂଶେ ଥିଲେ ଏରୂପେ ମିଳେଭୋଗ
ଏ ଭୋଗମାନ ଅଟଇ ଜାଣ ଦେବଯୋଗ ।
ଅସୁର ସୃଷ୍ଟିରଭୋଗ ଅଟେଯେବେ ବାଗେ
ସେ କଥା କହିବା ଶୁଣ ପାର୍ଥ ତୋର ଆଗେ ।

ଅସୁରୀ ସମ୍ପଦ ଗୋଟି ଅର୍ଜନ୍ତି ଯେ ଜନ
ପାପ ଯେ ଆଚରନ୍ତି ନ ରଖି ଧର୍ମେ ମନ ।
ଦିନକ ଭିତରେ ପାପ ଲକ୍ଷେ ଅର୍ଜିପାରେ
ମନେ ଶୁଦ୍ଧିମନ୍ତ ନୋହେ ସେହିଲୋକାମ୍ଭାରେ
ଆମ୍ଭର କର୍ମ କିଛିହିଁ ସେହୁ ନ କରଇ
ଅନୀତି ଅନେକ ଅପ୍ରଶଂସା ଆଚରଇ ।
ବୋଇଲେ ପୃଥ୍ୱୀରେ ମୁହିଁ ଅଟେ ଏକା ପ୍ରଭୁ
ସଂସାରଯାକରେ ମୂହିଁ ଅଟେ ଏକା ସବୁ ।
ମନୁଷ୍ୟ ହୋଇ ପୃଥ୍ୱୀରେ ଜାଣ ଯେତେଛନ୍ତି
ସ୍ତିରୀ ପୁରୁଷଯାକ ମୁଁ ଅଟେ ନରପତି ।
ସଂସାରଯାକେ ଈଶ୍ୱର ସିନା ମୁହିଁ ଅଟେ
ମୋଠାରୁ ବଡ଼ ହୋଇକେ ନାହିଁ ସର୍ବଘଟେ ।
ଏରୂପେ ବୋଲିକାମନାକେତେ ସେହିକରେ
ପ୍ରାଣୀଙ୍କି ହିଂସା କରିଣ ବଡ଼ପଣେ ମାରେ ।
କ୍ଷଣଭଙ୍ଗୁର ଏ ଦେହ ବୋଲି ନ ପାଞ୍ଚଇ
ଅଜ୍ଞକେ ବୁଦ୍ଧି ହିଂସାରେ ପଡ଼ିମରୁ ଥାଇ ।
ଅଜ୍ଞକେ ତାପସ ହୋଇ ଉଠେ ତତପରେ
ଅଦୋଷ ସୁଜନ ଲୋକଯାକୁକ୍ରୋଧ କରେ ।
ଅନେକ ଦୂଷଣ ଦିଏ ସେହି ଲୋକ ଯାକୁ
ବିନାଶ କରିଣ କର୍ମେ ଚଳେ ନରକକୁ ।
ନୀରସ ଲୋକହିଁ ଯେବେ ବଡ଼ପଣ ପାଇ
ତହିଁରୁ ବିଶେଷ ହେଲେ ନୃପତି ବୋଲାଇ ।
ନୃପତି ହେଲେ ସେ ଇନ୍ଦ୍ରପଣ ମନେକରେ
ଯାବତ ଅବିଚାର ସେ ପାଞ୍ଚଇ ହୃଦରେ ।
ଆତ୍ମା ପାଷାଣ ହୋଇଣ ବହେ ବଡ଼ପଣ
ଦିନକରେ ଲକ୍ଷେ ପାପ ପାଞ୍ଚେ ବିଡ଼ମ୍ବନ ।
ଅତିହିଁ ଅନାଚାର ସେ କରେ ମୂଢ଼ପଣେ
ବିଷ୍ଣୁଙ୍କୁ ଛାଡ଼ିଣ ଅନ୍ୟ ଦେବ ପୂଜି ଜାଣେ ।
ଅଶୁଦ୍ଧି ପ୍ରକାରେ ଅଟେ କେଉଁ କର୍ମମାନ
ସେ କଥାକୁ ଆଚରଣ କରେ ସର୍ବଦିନ ।
ଅନିତ୍ୟ ପାପ ଯେତେକ ସଂସାରେ ପ୍ରସିଦ୍ଧ
ସେ ପାପ ପ୍ରବେଶ ହୋଇ କରେ ଜନ୍ତୁବଧ ।
ଅଶୁଦ୍ଧ ସ୍ଥାନକୁ ଯାଇଦୁଃଖ ଭୋଗ ଭୁଞ୍ଜି
ପାପରେ ଘାଣ୍ଟି ହୋଇଣ ମରେ ଦେହଗଞ୍ଜି ।
ବୋଲେ ଏ କର୍ମେବହୁତ ହେଲା ମୋର ଫଳ
ଉତ୍ତମ ଭୋଗମାନ ଯେ ମିଳିଲା ତତ୍କାଳ ।
ପାଞ୍ଚଇ ସବୁଦିନେ କି ଜୀଇଥିବା ଆମ୍ଭେ
ମଲେ ପାଇବା ଏ ଭୋଗମାନ ଆଉ କେବେ
ଏହା ବିଚାରିଣ ପାପ କ୍ଷଣେ କ୍ଷଣେ କରେ
ଲୋଭରେ ଘାଣ୍ଟି ହୋଇଣ ମରଇ ସଂସାରେ ।

ପ୍ରାଣୀ ହିଂସା କରି ଅନ୍ୟୋଅନ୍ୟେ କଥାକରି
ପାପରେ ଧନ ଅର୍ଜିଣ ଭୁଞ୍ଜେ ଭୋଗଶିରୀ ।
ଲୋକରେ ଅକାର୍ଯ୍ୟ କରେ ବହୁ ଦୁଃଖଦେଇ
ଅର୍ଜିଲା ଦ୍ରବ୍ୟ ବୋଲିଣ ମନେ ଶ୍ରଦ୍ଧା ବହି ।
କେତେମୁହିଁ ଅର୍ଜୁଅଛି ବିଚାରଇ ଚିତ୍ତେ
ବୋଲେ କାଲିକି ଅର୍ଜିବି ଧନ ପୁଣିକେତେ ।
ଏରୂପେ ଯେ କେତେ ପୁଣିହେବ ଧନମୋର
କିରୁପେ ରଖିବି ଗୋପ୍ୟକରି ନେଇ ଘର ।
ଥୋଇବାପାଇଁ ସେ ଚିନ୍ତା କରେ ଅନୁବ୍ରତେ
କୋଠାରୀ କରି ରଖଇ ନେଇ ତହିଁ ଗୁପ୍ତେ ।
ଆଉ ପାଞ୍ଚଇ ମିଳିଲେ ଆଜ ଶତ୍ରୁ ମୋର
ବାନ୍ଧିଣ ନେଇ ରଖିବି ତାକୁ ବନ୍ଦୀଘର ।
ସାଧହିଁ ହେଲେ ରଖିବି ତାକୁ ମୋର କରି
ଅସାଧହିଁ ହେଲେ ପଠାଇ ଦେବି ତାକୁ ମାରି
ମୁଁ ସିନା ପୃଥ୍ୱୀଯାକରେ ଅଟେ ରାଜେଶ୍ୱର
ବୁଝିଲେ ବ୍ରାହ୍ମଣଯାକେ ମୁହିଁ ନୃପବର ।
ମୁହିଁ ସବୁ ଭୋଗ କରଇ ଯେ ରବିତଳେ
ମୋ ପରା କେ ଭାଗ୍ୟବନ୍ତ ନାହିଁ ଭୂମଣ୍ଡଳେ
ମୁଁ ସିନା ପୃଥ୍ୱୀଯାକରେ ଅଟେ ବଡ଼ଲୋକ
ବୁଝିଲେ ମୋହରି ପ୍ରାୟ ନାହିଁ କେ ସାର୍ଥକ ।
ମୁହିଁ ଅଟେ ଗୁଣବନ୍ତ ଏ ସଂସାରେ ଏକ
ଖୋଜିଲେ ସଂସାରେ ନାହିଁ ମୋସମାନ ଲୋକ
ମୁହିଁ ସେ ଅନାଦି ସିଦ୍ଧ ଅଟେ ପୃଥ୍ୱୀଯାକେ
ମୋପରା କେ ବଳୀୟାର ନାହିଁ ତିନିଲୋକେ
ମୋହର ଆଜ୍ଞାହିଁ ଏକା ତୀକ୍ଷଣ ପଶୁ ପ୍ରାୟ
ବ୍ରହ୍ମଶକ୍ତି ପ୍ରାୟ ମୋର ବାକ୍ୟ କରେ ଜୟ ।
ମୁହିଁ ସେ ଭୋଗ ଭୁଞ୍ଜାଇ ଏକଜନ ଯାକୁ
ମୋର ଯଶ ଶୁଭୁଅଛି ସସ୍ରେ ଯୋଜନକୁ ।
ମୁଁ ସିନା ପୃଥିବୀଯାକେ ପାଳେ ଜନପ୍ରଜା
ମୋହର ପ୍ରାୟ ନ୍ୟାୟ ନକରେ ଆନ ରାଜା ।
ଏମନ୍ତେ ଆନନ୍ଦ ହୋଇ ମନେ ପାଞ୍ଚୁଥାଇ
ଅଜ୍ଞାନ ପଣ କହିଲେ ତାର ନ ସରଇ ।
ଏହି ପ୍ରକାରେ ସଂସାର ଲୋଭେ ଜାଣ ପଡ଼ି
ଲୋକଙ୍କୁ ମାରଇ କ୍ରୋଧହୋଇ ବ୍ୟର୍ଥେ ହୁଡ଼ି
ସଂସାର କର୍ମର କେତେ କରଇ କଳ୍ପନା
ନପାରି ଆଶାକୁ ମାରି ମରେ ହୋଇ ବଣା ।
ଏ ଲୋକମାନଙ୍କ ଅଟେ ଏ ଆସୁରୀ କର୍ମ
କ୍ରୋଧରେ ଜଡ଼ିତ ହୋଇ ହୁଏ ମତିଭ୍ରମ ।
ଲୋକମାନଙ୍କୁ ସଂସାରେ କହେ ବଡ଼ ଆମେ
ଆପଣା ଇଚ୍ଛାରେ ଟେକି ହୁଏ ଲୋକସର୍ବେ ।

ଧନରେ ସେ ବଡ଼ପଣ ଗର୍ବେ ବଡ଼ପଣ
ବୋଲଇ ମୋତେ କେ କରିଅଛି ସଂସାରେଣ
ଆପେଆପେ ଟେକିହୋଇକହେ ସବୁବାକ୍ୟେ
ଆପଣାର ବଡ଼ପଣ ଖ୍ୟାତକରେ ଲୋକେ ।
ଯାଗକଲି ଏ ବଡ଼ିମାପଣ ଆପେ ଧରେ
ମୁଁକାର ପଣ ବହିଲି କଲେ ଲୋକଠାରେ ।
ସଂସାରେ ଗରିଷ୍ଠ କଥା କଲି ମୁହିଁ ଜାଣ
ସେହି କଥାମାନଙ୍କରେ ବହି ବଡ଼ପଣ ।
କାମନା ଆବର ଲୋଭ ମୋହହିଂସା ଯେତେ
ଏଥିରେ ପ୍ରବର୍ତ୍ତି ସେହି ମରେ ଅନୁବ୍ରତେ ।
ଆବର ଯେ ବାକ୍ୟ ଏକ ଶୁଣ ପଣ୍ଡୁପୁଅ
ତୁ ବା ବୋଲିବୁ ସବୁରି ଦେହେ ପ୍ରଭୁଥାଅ ।
କାହିଁକି ପ୍ରାଣୀମାନଙ୍କୁ ସାନବଡ଼ କର
ଦୁର୍ଲ୍ଲଭ ବୁଦ୍ଧି ପାଇଁ କୁବୁଦ୍ଧି ହୋନ୍ତି ନର ।
ଏମନ୍ତ ବୋଲି ବୋଲିବୁ ଅବା ତୁହୋ ପାର୍ଥ
ତହିଁକି ଗୁଣ କହୁଛୁ ଆମ୍ଭେ ଜଗନ୍ନାଥ ।
ସବୁରି ଦେହରେ ଆମ୍ଭେ ଜୀବରୂପେ ଥାଉଁ
ଯେ ଯାହା ଗୁଣ ବୁଝିଣ ସର୍ବ ଚିହ୍ନିଦେଉଁ ।
ଯେ ଯାହା କରଇ ତାହା ଦେଖୁଥାଇଁ ବସି
ଇନ୍ଦ୍ରିୟଗଣଙ୍କ ବଳେ କରେ ଅହର୍ନିଶି ।
ସେ ଲୋକମାନଙ୍କୁ ଜାଣ ବୋଲି ଅସୁରାଦି
ନିଶ୍ଚେ ସେ ଜୀବକୁ ପାଦେ ପକାଏ ମୁଁ ରୁନ୍ଧି ।
ଅସୁର ଯୋନିରେ ତାକୁ ଜନ୍ମକଲେ ନେଇ
ଶୁଣ ଧନଞ୍ଜୟ କହନ୍ତି ଯେ ଭାବଗ୍ରାହୀ ।
ବିପ୍ର କି ଅବା ଚଣ୍ଡାଳ ଅଟେ ପଶୁ ହୀନ
ତାହାର ବୀର୍ଯ୍ୟେ କରାଏ ନେଇ ତାକୁ ଜନ୍ମ ।
ଜନ୍ମ ହୋଇ ସେହି ପୁଣି ପୂର୍ବପାପ କରେ
ନାନାଦି ପାପ ଅରଜି ଲେଉଟି ସେ ମରେ ।
ପୂର୍ଣି ହିଁ ମରେ ହୁଅଇ ସେ ଅସୁର ଜନ୍ମ
ଲେଉଟି କର୍ମ କରଇ ହୋଇ ମତିଭ୍ରମ ।
ପୁନଶ୍ଚ ଅଧର୍ମ କରି ଲଭେ ସେହୁ ଫଳ
କହନ୍ତି ଶ୍ରୀଜଗନାଥ ଶୁଣ ପଣ୍ଡୁବାଳ ।
ସେ ଯେ ସୁହୃଦେ ତରଇ ଜାଣ ହିଂସାଭାବ
ଅସୁର ଯୋନିରେ ଜନ୍ମ ଲଭଇ ଯେ ଧ୍ରୁବ
ଜନମିଲେ ପୁନରପି ସେ ଶରୀର ପାଏ
କହନ୍ତି ଶ୍ରୀଜଗନ୍ନାଥ ଶୁଣ ଧନଞ୍ଜୟେ ।
ମୁଁ ଯା କହିଲି ଅସୁର ଜାତିର ଲକ୍ଷଣ
ଏକଥା ବିଚାର କରି କର୍ଣ୍ଣରେ ତୁ ଶୁଣ ।
ଆବର ଯେ କାମକ୍ରୋଧ ଅଟେ ଲୋଭଯେତେ
ଏମାନ ତେଜି ପାରନ୍ତି ଏକା ସୁପଣ୍ଡିତେ ।

ନିର୍ବେଦ ଧର୍ମକୁ ଆଶ୍ରା ଏମାନେ ଯେ କରି
ଉତ୍ତମକୁଳେ ଜନ୍ମନ୍ତି ଦିବ୍ୟ ତନୁଧରି ।
ତ୍ରିଗୁଣ ନିରୋଧ କରିପାରେ ଯେଉଁ ଜନ
ବଳେହେଁ ଆସି ପ୍ରାପତ ହୋଏ ତାକୁ ଜ୍ଞାନ ।
ଏ ଜ୍ଞାନ ବଳରୁ ତାକୁ ମିଳେ ଯଶଶିରୀ
ଶ୍ରୀମନ୍ତ ଲୋକକୁ ପ୍ରାପ୍ତ ହୁଅଇ ଯେ ହରି ।
ଯେବଣ ଲୋକହିଁ ବେଦ ଶାସ୍ତ୍ର ବିଧି ଛାଡ଼ି
ନାନାଦି ଅକର୍ମେ ବଢ଼େ ପରମ୍ପରା ଏଡ଼ି ।
ସେକର୍ମେ ବଶାହୋଇଣ ମନେ ନାନାମତେ
ସୁଗତି ତାକୁ ପ୍ରାପତ ନୁହେଁ କଦାଚିତେ ।
ନରଲୋକରେ ବହୁତ ହୁଏ ତାକୁ ନିନ୍ଦା
ପରଲୋକେ ହେଲେ ନର୍କକୁଣ୍ଡେ ହୁଏବନ୍ଧା ।
ଏହି ଲୋକକୁ ମୋକ୍ଷ ନମିଳେ କଦାଚିତେ
କହନ୍ତି ଶ୍ରୀନାରାୟଣ ଶୁଣ ପଣ୍ଡୁସୁତେ ।
ଶାସ୍ତ୍ର ବିଧିମତେ ତୁହି ବେଗେ କର୍ମକର
କହିଲି ସତ୍ୟ ମୁଁ ତୋତେ ସୁଭଦ୍ରାର ବର ।
ଯେ କର୍ମ କଲେ ସଂସାରେ ପାଇବେକ ପୂଜା
ସ୍ୱକର୍ମମାନ ଛାଡ଼ିଣ ଅନ୍ୟକର୍ମେ ନଯା ।
ତେଣୁକରି ଏତେକଥା ବୁଝାଉଛି ତୋତେ
ତୋହର ପ୍ରାୟଭକ୍ତ ନମିଳେ ଜାଣ ମୋତେ ।
ଶ୍ରୀମୁଖ ବଚନ ମୋର ଶୁଣ ଧନଞ୍ଜୟ
ତେଣୁ ମୁଁ ଯାବତ ଅର୍ଥ କହିଲି ତୋ ଠାଏ ।
ତୁ ଅବା ବୋଲିବୁ ଏହା ପାରିବି କି କରି
ସେକଥା କହିବା ତୋତେ ଶୁଣ ଧନୁର୍ଦ୍ଧାରୀ ।
ଯେବଣ ପ୍ରାଣୀ ସତକୁ ଜାଣ ଆଶ୍ରାକରେ
ଦଇବୀ ସମ୍ପଦ ସେହି ଭୁଞ୍ଜଇ ସଂସାରେ ।
ଏରୂପେ ଅର୍ଜ୍ଜୁନକୁ ଶ୍ରୀନନ୍ଦିଘୋଷ ରଥେ
ଯାବତ ଜ୍ଞାନ କହନ୍ତି ପ୍ରଭୁ ଜଗନ୍ନାଥେ ।
ଏ ଜ୍ଞାନ ଅଟଇ ସାଧୁଜନଙ୍କର ମୂଳ
ନୃସିଂହ ପୂରାଣ ଏହି ଅଗାଧ ସଲିଳ ।
ଏ ଗ୍ରନ୍ଥ ଗୋଟି କେବଳ ବୁଝି ସାଧୁଜନେ
ଶୁଣିଲେ ଜୀବରେ ଦୟା କରିବେ ବା ମନେ ।
ଭୋ ସୁଜ୍ଞଜନେ ମୋହର ଅଟେ ବୁଦ୍ଧି ତୁଚ୍ଛ
ଭୟରେ ଲେଖୁଛି ମୂହିଁ ବୋଲିବ ବା ମିଛ ।
ମୋତେ ଏ ପୂରାଣ କିଛି ଗୋଚରଯେ ନାହିଁ
ଶ୍ରୀବେଦବ୍ୟାସ ପଢ଼ିବେ ହେଲେ ଅର୍ଥ ଗାଇ
ଗଣେଶ ହେଲେ ହୃଦରେ ଦଣ୍ଡେ ବିଚାରିବେ
ଆଉ ଲୋକଙ୍କୁ କିରୂପେ ଏହା ଜଣା ହେବେ
ଶାରଦା ଆଜ୍ଞାରେ ଶ୍ରୀନୃସିଂହ ଶାଳଗ୍ରାମ
କଣ୍ଠରେ ଲମ୍ବାଇ ଲେଖେ ହୋଇ ମତିଭ୍ରମ ।

ଶାରଦା ମାତା ଅଟନ୍ତି ବିଷ୍ଣୁ ପାଟରାଣୀ
ଲେଖୁଛି ପୂରାଣ ମୁଁ ଶ୍ରୀମୁଖ ଆଜ୍ଞା ଶୁଣି ।
ଶାରାଦାମାତା ସୁଦୟାକଲେ ମୋତେ ଦେଖ
ବୋଇଲେ ଗ୍ରନ୍ଥକୁ ପୂଜାକରି ବେଗେ ଲେଖ
ତେଣୁ ଏ ପଦ ଥୋକାଏହୁଏ ମୋତେଦୃଶ୍ୟ
ଏଣିକି ଯାହା ଅଛଇ କହିବି ପ୍ରକାଶ ।
ଶ୍ରୀଶାରଦା ମାତାଙ୍କର ଚରଣେ ମୋ ସେବା
ବିପ୍ର ପୀତାମ୍ବରକୁ ଯେ ଗତି ମୁକ୍ତି ଦେବା ।
ଏଥିଉତ୍ତାରୁ ଅର୍ଜ୍ଜୁନ କଲେ ପୁଣି ପୁଚ୍ଛା
ଆପଣ କହ ତ୍ରିଗୁଣ ବାଣୀର ଯେ ଦୀକ୍ଷା ।
ବୋଇଲେ କହ ତ୍ରିଗୁଣ ତତ୍ତ୍ୱରଯେ ବାଣୀ
ଶୁଣିଲେ ହୃଦୁ ଦୂରିତ ଯିବ ମୋର ପୁଣି ।
ଏଥିର ସନ୍ଦେହ ଫେଡ଼ି କହ ଭାବଗ୍ରାହୀ
ଶ୍ରୀମୁଖ ବାକ୍ୟେ କୃତାର୍ଥ ଯିବି ମୂହିଁ ହୋଇ ।
ଏରୂପେ ପୁଚ୍ଛିଣ କରଯୋଡ଼ି ଧନଞ୍ଜୟେ
ବୋଇଲେ ପୁଚ୍ଛିବି ଆଉ ପାଦେ ପଦ୍ମପାୟେ ।
ଥୋକାଏ ଲୋକ ଭୋ ସ୍ୱାମୀ ଶାସ୍ତ୍ରବିଧି ଛାଡ଼ି
କରନ୍ତି ଯେ ଲୋକାଚାର କର୍ମ ଆଗବଢ଼ି ।
ଆଦ୍ୟରୁ ଯେ ବିଧି ସର୍ବ ଅଛି ଯେତେ ମାର୍ଗ
ସେ ଧର୍ମ ତ୍ୟାଗ କରନ୍ତିକିମ୍ବା ଲୋକବର୍ଗ ।
ସତ୍ତ୍ୱ ରଜ ତମ ଏହି ତିନି କଥାଯାକ
ଏ ତିନିଙ୍କି ଛାଡ଼ି କେହି ନାହାନ୍ତି ଯେ ଲୋକ ।
ଅର୍ଜ୍ଜୁନ ମୁଖୁ ଏମନ୍ତ ବାକ୍ୟ ପ୍ରଭୁ ଶୁଣି
ବୋଲନ୍ତି ହୃଦୁ ଏ ଶଙ୍କା ଛାଡ଼ିନାହିଁ ପୁଣି ।
କହନ୍ତି କେତେ ମାର୍ଗେଣ ରଖି ନାହିଁ ମନେ
କହନ୍ତି ଏ ତିନିଗୁଣ ବିଧି ଏବେ ଯତ୍ନେ ।
ଶୁଣ ଆହେ ପାର୍ଥ ଏବେ ତ୍ରିଗୁଣ ଲକ୍ଷଣ
ସତ୍ତ୍ୱରଜ ତମର ଯେ ମହିମା ତା ଶୁଣ ।
ସାତ୍ତ୍ୱିକ ଲୋକର କଥା କହିବା ଯେ ତୋତେ
ସତ୍ୟବାକ୍ୟ କହି କାଳ କାଟନ୍ତି ସେ ନିତ୍ୟେ ।
ଦେବତା ବ୍ରାହ୍ମଣ ପୂଜାକରି ଆଣିଗୃହେ
ଅମୃତ ଭୋଜନମାନ ଦିଏ ଅତି ସ୍ନେହେ ।
କପଟ ଯେ ଲୋଭ ହିଂସା କାମକ୍ରୋଧ ଆଦି
ଏମାନ ତ୍ୟାଗ କରିଣ ପୂଜେ ଦୟାନିଧି ।
ରଜଗୁଣୀର ଯେ କଥା କହିବା ହୋ ଶୁଣ
ପୂଜନ୍ତି ଚାମଣ୍ଡା ଚଣ୍ଡୀ ଭୂତ ପ୍ରେତ ଜାଣ ।
ଦାମ୍ଭିକ ପଣେ ମୁଁ କାର ପଦ ବହିଥାନ୍ତି
ବଡ଼ପଣେ ବ୍ରାହ୍ମଣକୁ ଦାନ ସେ ଦିଅନ୍ତି ।
ତାମସିକ ଲୋକ କଥା କହିବା ହୋ ଶୁଣ
ପୂଜନ୍ତି ସେହି ପିଶାଚୀ ଆଉ ଯୋଗିଗଣ ।

ଏ ରୂପେ ଏ ତିନିଜଣଙ୍କର ପୂଜାବିଧି
ଅର୍ଜୁନ ଆଗେ କହନ୍ତି ବସି ଦୟାନିଧି ।
ଆଉ ଥୋକାଏ କହିବା ମଧ୍ୟ ତୋତେ ଶୁଣ
ପାଷାଣ୍ଡ ହୋଇ ବଢ଼ନ୍ତି ଯେତେ ସଂସାରେଣ
କାମନା ମନେ ପାଞ୍ଚନ୍ତି ତ୍ୟଜି ତୀର୍ଥ ଜପ
ଶାସ୍ତ୍ରକୁ ନିନ୍ଦା କରନ୍ତି ଅର୍ଜନ୍ତି ଯେ ପାପ ।
ହିଂସା ହୃଦୟରେ ବହି ସଦାକାଳେ ଥାନ୍ତି
ଲୋକ ନିନ୍ଦାକୁ ଡରିଣ ବ୍ରତ ଆଚରନ୍ତି ।
ପଞ୍ଚଭୂତରେ ନିର୍ମାଣ ଅଟେ ଜାଣ ଦେହୀ
ସେ ପଞ୍ଚଭୂତେ ବିଶ୍ରାମ କରିଥାଇ ମୁହିଁ ।
ଅନ୍ତର୍ଗତରେ ଥାଇ ମୁଁ ତାର ମନହୃଷ୍ଟେ
ମୋତେ ସେ କ୍ଳେଶ ଦିଅନ୍ତି ପୁଣି ଜାଣନଷ୍ଟେ
ଆତ୍ମାକୁ କଦର୍ଯ୍ୟ କରି ବ୍ରତେ ହୋନ୍ତି ଘାଣ୍ଟି
ଆତ୍ମା କୁଶଳ କଲେ କି ବିଷ୍ଣୁପାରେ ଭେଟି ।
ଆତ୍ମାକୁ କୁଶଳ କଲେ ସର୍ବ କାର୍ଯ୍ୟ ସିଦ୍ଧି
ତେବେ ତରଇ ସେ ପ୍ରାଣୀ ସଂସାର ଜଳଧି ।
କର୍ମ କଲା ଲୋକ ଦେହ କଦର୍ଯ୍ୟକୁ ପାଇ
କଳ୍ପନା କର୍ମରେ ମୋର କେବେ ସୁଖନାହିଁ ।
ତାହାଙ୍କୁ ଅର୍ଜୁନ ନାହିଁ ଏ ସଂସାରେ ପାର
ଅସୁର ପ୍ରକୃତିରେ ଯେ ଲେଖା ସେହି ନର ।
ତିନିଗୁଣର ଭୋଜନ କଥା ଏବେ ଗୁଣ
ତିନି ପ୍ରକାରେ କହୁଛି ସବୁ ସଂସାରେଣ ।
ଏ ତିନି ଗୁଣରେ ଯେତେ ଦାନ ଯଜ୍ଞ ତପ
ଭିନ୍ନ ଭିନ୍ନ କରି ସବୁ କହିବା ଭୂମିପ ।
ଏଥି ପୁଣ ଭେଦାଭେଦ ଅଟେ ଜାଣ ଯାହା
କହିବା ତା ଭିନ୍ନ ଭିନ୍ନ କରି ଭଦ୍ରାନାହା ।
କହିବା ସାତ୍ତ୍ୱିକ ଲୋକ କଥା ଆଗ ଶୁଣ
ଆୟୁଷ ପ୍ରାକର୍ମ ବଳେ ଅଟେ ଦୀର୍ଘ ଜାଣ ।
ଆରୋଗ୍ୟ ଦେହକୋମଳକହେସେହି ବାକ୍ୟ
ସୁଜନ ସାଧୁ ଦାତାଙ୍କ ପ୍ରୀତି ସର୍ବଲୋକ ।
ସଂସାରେ ଉତ୍ତମ ଦ୍ରବ୍ୟ ଷଡ଼ରସ ଯେତେ
ସାତ୍ତ୍ୱିକ ପ୍ରାଣୀମାନଙ୍କ ଆହାର ଏ ନିତ୍ୟେ ।
ରାଜସ ଲୋକ ଭୋଜନ କଥା ଶୁଣି ପୁଣି
ଅଲଣା ଯେ ଦରସିଝା ଭୁଞ୍ଜେ ସ୍ୱାଦୁ ମଣି ।
ଆମ୍ଳିଳ ଲବଣ କଷା ତିକ୍ତ କଟୁ ଦ୍ରବ୍ୟ
ତପ୍ତମହ ତୀକ୍ଷ୍ଣ ଦୁଃଖ ସୁଖ ଆଦି ସର୍ବ ।
ଏ ଆଦି ଯେତେ ସଂସାରଯାକେ ଦ୍ରବ୍ୟ ଅଛି
ରାଜସ ଲୋକେ ଭୁଞ୍ଜନ୍ତି ତାହା ବାଛି ବାଛି ।
ତମୋଗୁଣ ଲୋକଭୁଞ୍ଜି ବାର ଦ୍ରବ୍ୟଯେତେ
ପଚରା ପୁଯ ବାସି ବା ଭକ୍ଷେ ଅନୁବ୍ରତେ ।
ଅଶୁଭ ଦ୍ରବ୍ୟ ଅଖାଦ୍ୟ ଯେତେ ଦ୍ରବ୍ୟମାନ
ନାନାଦି ବିକାର ଦ୍ରବ୍ୟ ଭୁଞ୍ଜେ ପ୍ରତିଦିନ ।
ଏ ଦ୍ରବ୍ୟମାନ ଭୋଜନ ସେହି ନିତି କରେ
ତମୋଗୁଣୀର ଯେ ଭୋଗଅଟେ ଏ ସଂସାରେ
ଏ ତିନି ଗୁଣୀର ଯଜ୍ଞ କହିବା ଯେ ଏବେ
ଶୁଣ ସୁଭଦ୍ରାସାଇଁ ଶ୍ରୀମୁଖେ କହୁ ଆମ୍ଭେ ।
ଶ୍ରୀବିଷ୍ଣୁଙ୍କୁ ପ୍ରୀତି ଅର୍ଥେ ସାତ୍ତ୍ୱିକ ଯେ ଜନେ
ସନ୍ତୋଷ ଚିତ୍ତେ କରନ୍ତି ଯାଗଯଜ୍ଞ ମନେ ।
ସନ୍ତୋଷ ଚିତ୍ତେଯାହାକୁ ଯାହାଦେଲେଦ୍ୟନ୍ତି
ଶ୍ରୀବିଷ୍ଣୁ ପାଦେ ସେବି ସେ କର୍ମ କରୁଥାନ୍ତି ।
କୋମଳ ମଧୁର କରି କହଇ ବଚନ
ସୁବିଜ୍ଞ ଭାବରେ ଯାଇ ସେବେ ବିପ୍ରଜନ ।
ଏମନ୍ତ ଲୋକ ଯଜ୍ଞକୁ ସାତ୍ତ୍ୱିକ ଯେ କହି
ପ୍ରଭୁଙ୍କୁ ସେ ମନେ ମନେ ମୁଖେ ଭଜୁଥାଇ ।
ଶ୍ରୀ ଯଜ୍ଞବିଧି କଲେ ଯେ ହୁଏ ଯେତେ ପୂଣ୍ୟ
ତହିଁର ସଙ୍ଗତେ ଲେଖା ହୁଅନ୍ତି ଯେ ଜନ ।
ଶୁଣିବା ଏବେ ରାଜନ ଲୋକ ଯଜ୍ଞ ବାଣୀ
କହନ୍ତି ଦାମ୍ଭିକପଣେ କଥା ହୋଇ ଟାଣି ।
କର୍ମ ହିଁ କଲେ କରଇ ବାଞ୍ଛାଅନୁବ୍ରତେ
ସଙ୍କଳ୍ପ କଳ୍ପନା କରି ଘେନନ୍ତି ସୁଚିତ୍ତେ ।
ଏମନ୍ତ ମନେ ପାଞ୍ଚି ଯେ କରେ କର୍ମମାନ
ସେହି ରଜୋଗୁଣୀ ଅଟେ ଜାଣ ହୋଅର୍ଜୁନ ।
ତମୋଗୁଣୀର କହିବା ଏବେ ଯଜ୍ଞ ଶୁଣ
ମୁଁକାର ଗୁଣରେ କରୁଥାଇ କର୍ମ ପୂଣ ।
ଅଦେଶରେ ଅକାଳରେ ଅପାତ୍ରରେ ସେହି
କରେ ଦାନ ଧର୍ମ ଅଶଉଚ ଭାବେ ରହି ।
ହୃଦରେ କପଟ ବହି କର୍ମରେ ଉଦ୍‌ଯୋଗୀ
ଶ୍ରଦ୍ଧା ବହିଣ ଦକ୍ଷିଣା ଦେଲେ ଦିଏ ଫିଙ୍ଗି ।
ଏମନ୍ତ ଯଜ୍ଞ କରଇ ଯେଉଁ ଲୋକ ଜାଣ
ତମୋଗୁଣୀରେତ ଲେଖା ହୁଅନ୍ତି ସେ ଜନ
ସାତ୍ତ୍ୱିକ ଲୋକଟି ଜାଣ ହୃଦେ ଦୟାବହି
କହେ ସୁବଚନ ବୁଦ୍ଧି ଚିତ୍ତେ ପ୍ରକାଶଇ ।
ମନରେ ଶ୍ରଦ୍ଧା ବହିଣ ସେ ସନ୍ତୋଷ ଚିତ୍ତେ
ଦେବତା ବ୍ରାହ୍ମଣ ସେବାକରେ ଅନୁବ୍ରତେ ।
ଶ୍ରୀଗୁରୁ ସୁଜନ ଜନ ବିଷ୍ଣୁଭକ୍ତ ଦେଖି
ସମଦରଶୀ ଭାବେ ସେ ମନେ ହୋଏ ସୁଖୀ
ସମସ୍ତଙ୍କ କଥା ସମ ଘେନେ ମନେ ମନେ
ନିର୍ବିକଳ୍ପରେ ସେ ପୂଜାକରେ ଅନୁଦିନେ ।
ହୃଦେ ଅହଙ୍କାର ହିଂସା ବୁଝି ନ ଧରଇ
ଉଦାସଭାବେ ପରମ ଭାବ ଘେନି ଥାଇ ।

ଶତ୍ରୁହେଲେ ପାଞ୍ଚଇ ଏ ଘଟେ କୃଷ୍ଣନାମ
ସତ୍ୟ ଆଚାରେ ରହିଣ କରେ ନାନାକର୍ମ ।
ପରର ହିତେ ବହୁତ କାର୍ଯ୍ୟ କରୁଥାଇ
ଏ କଥାମାନଙ୍କେ ତାର ସଦା ଦିନ ଯାଇ ।
ତାହାକୁ ସୁଜନ ସାଧୁ ବୋଲି ଏ ସଂସାରେ
କାମନା ବାଞ୍ଛା ତାର ନଥାଇ ହୃଦୟରେ ।
ଏ ରୂପେ ଯେବଣ ଲୋକ ଏ ସଂସାରେ ଥାଇ
ପରହିତେ ଜପତପ ଆଦିକରେ ଯାଇ ।
ସଂସାରେ ସାତ୍ତ୍ୱିକଲୋକ ଏହ୍ନେ ଅଟେଜାଣ
ରାଜସ ଲୋକର କଥା କହିବା ହୋ ଶୁଣ ।
ଦାମ୍ଭିକ ଗରବ ବଡ଼ପଣ ନମ୍ରନୋହି
ମୁଁ ସବୁ କରୁଛି ବୋଲି ମୁଁକାର ବହଇ ।
ଲୋକକୁ ଯେ କହି କହି କରେ ତମମାନ
ମନରେ କଳ୍ପନା କରି ଲୋଡ଼ଇ ସେ ପୂଣ୍ୟ ।
ଏରୁପେ ମନରେ ପାଞ୍ଚି କଲେ ଯେଉଁ ତପ
ସେ ରାଜସ ତପକରେ ଅଭିମନ୍ୟୁ ବାପ ।
ତମୋଗୁଣୀର ଯେ ତପ କହିବା ତା ଶୁଣ
ପରକୁ ଅନେକ ପୀଡ଼ା ବାଧାକରେ ଜାଣ ।
ତର୍କ ପାଷାଣ୍ଡ ବହୁତ କଥା ଦିଶେ ତାକୁ
ତାହାର ଇଙ୍ଗିତ ଭଙ୍ଗି ନ ଆସେ ଲୋକଙ୍କୁ ।
ଋଷିଙ୍କି ହେଲେହେଁ ଚାଳି ପାରିବ କଥାକେ
ଦେଖିଲେ ଲୋକଙ୍କ କଷ୍ଟ ହସେ ଆଡ଼ବାଙ୍କେ
ପ୍ରାଣୀଙ୍କି ହିଂସା ବହିଣ ସର୍ବ କର୍ମ କରେ
ତାମସ ଗୁଣଟି ଏହୁ ଅଟଇ ସଂସାରେ ।
ଏ ଘେନି ବହୁତ ପାପ ଅର୍ଜଇ ସେ ଜାଣ
ଯେତେ କର୍ମକରେ ସବୁହୋଏ ଅକାରଣ ।
ସାତ୍ତ୍ୱିକ ମହିମା ଏବେ କହିବାକୁ ତୋତେ
ସାତ୍ତ୍ୱିକ ଲୋକ ଯେ ଦାନ ଦିଏ ଶୁଦ୍ଧଚିତ୍ତେ ।
ଅଶରଣ ଲୋକ ଡାକଦିଏ ଆଣି ଦାନ
ହୃଦୟରେ ଦୟାବହି କରଇ ସମ୍ମାନ ।
ସାତ୍ତ୍ୱିକ ଲୋକ ବୋଲିଣ ଏହାକୁ ଯେ କହି
ଶୁଣ ଫାଲଗୁନୀ କହନ୍ତି ଯେ ଭାବଗ୍ରାହୀ ।
ରାଜସ ଲୋକଟି ଦାନ ଦିଏ ଜାଣ ଯେତେ
ନାନାଦି ଫଳ ମନରେ ପାଉଥାଇ ନିତ୍ୟେ ।
ରାଜସ ଲୋକର କଥା ଏରୁପେଟି ଜାଣ
ତମୋଗୁଣୀର ଯେ ଦାନ କହିବା ତା ଶୁଣ ।
ସ୍ୱଦେଶ ସୁପାତ୍ର ପୁଣ୍ୟକାଳ ନ ଚିହ୍ନଇ
ଛଳରେ ଲୋକକୁ ଦାନ ଯାଚି ଦେଉଥାଇ ।
ଲୋକଙ୍କୁବୋଲେ ଦେଉଛି ଦାନ ଯେବେ ସେହି
ତାହାଙ୍କୁ ଦ୍ୱିଗୁଣ କରି ଦେବି ତେବେ ମୁହିଁ ।

ଏରୂପେ ପାଞ୍ଚି ଦିଅଇ ସେହୁ ତେତେ ଦାନ
ତମଗୁଣ ଲୋକ ବୋଲି ଜାଣିବୁ ଅର୍ଜ୍ଜୁନ ।
ଏରୁପେ ଦେଲା ଦାନ ତ ଅଟେ ଅନର୍ଥକ
ଲୋକର ହୁଅଇ ନିନ୍ଦା ଧର୍ମ ଅସାର୍ଥକ ।
ଅଶୁଦ୍ଧ ମନ ହୋଇଣ ଦିଏ ଯେବେ ଦାନ
ସେ ଦାନ ହିଁ ଅସାର୍ଥକ ଜାଣ ଅରଜୁନ ।
ଏ ଦାନ ବିଫଳ ତାର କହିଲି ଯେ ମୂହିଁ
ଇହଲୋକ ପରଲୋକେ ମୋକ୍ଷ ତାକୁନାହିଁ ।
ଏକଥା କହିଲି ତୋତେ ଜାଣ ଅଟେ ସତ୍ୟ
କହନ୍ତି ଶ୍ରୀଜଗନ୍ନାଥ ଶୁଣ ଭଦ୍ରାକ୍ରାନ୍ତ ।
ଆବର ଯେ ଉପଲକ୍ଷ୍ୟ କହିବା ତା ଶୁଣ
ଶ୍ରୀମୁଖ ବଚନ ମୋର ଅଟଇ ପ୍ରମାଣ ।
ତାମସ ଗୁଣରେ ଦାନ ଦିଅନ୍ତି ଯେମାନେ
ତାହାଙ୍କର କଥା ଏବେ ଶୁଣ ସାବଧାନେ ।
ପୂର୍ବକାଳେ ଥିଲେ ମଧୂକୈଟଭ ଅସୁର
ମହିଷା ଶୁମ୍ଭ ନିଶୁମ୍ଭ ମୁଣ୍ଡ ମୁଣ୍ଡବୀର ।
ହିରଣ୍ୟକଶିପୁ ବିରୋଚନ ହିରଣ୍ୟାକ୍ଷ
ନାରକା ଯେ ଜରାସନ୍ଧ ମୟ ବିରୁପାକ୍ଷ ।
ଚାଣୁର କଂସ କେଶି ଯେ ବୃତ୍ର ସୁର ଆଦି
ଏରୂପେ କେତେ ଦଇତ୍ୟ ସଂସାରେ ପ୍ରସିଦ୍ଧି ।
ଅକାଳରେ ଅଦେଶରେ ଏ ଦିଅନ୍ତି ଦାନ
ଅକାଳେ ଦାନ କେବେହେଁ ନୁହଇ ପ୍ରଚ୍ଛିନ୍ନ ।
ଏମାନେ ଅଟନ୍ତି ଜାଣ ଦେଶକାଳ ଦାନୀ
ସାତ୍ତ୍ୱିକ ଲୋକର ଦାନ ଶୁଣ ଫାଲଗୁନୀ ।
ନହୁଷ ମାନ୍ଧାତା ପୁରୁରବା ସତ୍ୟବ୍ରତ
ସୌଭରି ଯେ ଯୁବନାଶ୍ୱ ହରିଶ୍ଚନ୍ଦ୍ର ଖ୍ୟାତ ।
ଖଟ୍ୱାଙ୍ଗ ବଳି ବେଣୁ ଯେ ଜାନୁଘଣ୍ଟ ରାମ
ଶିବଦାତା ବର୍ଣ୍ଣଦାତା ଜୀମୁତବାହନ ।
ସାତ୍ତ୍ୱିକ ଦାନୀ ଅଟନ୍ତି ଜ୍ଞାନେ ଥାଏ ହୃଦ
ଶୁଣ ଭଦ୍ରାକାନ୍ତ କହନ୍ତି ଯେ ଆଦିକନ୍ଦ ।
ପରମଶାସ୍ତ୍ର ନୃସିଂହ ପୁରାଣର ବାଣୀ
ନାରଦ ପୃଚ୍ଛନ୍ତି କହନ୍ତି ଯେ କୃଶପାଣି ।
ସେ ଜ୍ଞାନର ଅର୍ଥଯାକ ଶୁକମୂନି ମୁଖୁ
ପକ୍ଷେ ତରିଲେ ଶୁଣି ଯେ ମୃତ୍ୟୁ ସମୟକୁ ।
ଅର୍ଜ୍ଜୁନ ଆଗେ ଯେ ଜ୍ଞାନ ଅର୍ଥଯାକ ପ୍ରଭୁ
କହନ୍ତି ଯେ ନନ୍ଦିଘୋଷ କୁରୁକ୍ଷେତ୍ରେ ସବୁ ।
ହରି ଅର୍ଜ୍ଜୁନ ସମ୍ବାଦ ସ୍ୱାଦୁରସ ବାଣୀ
ଧୃତରାଷ୍ଟ୍ର ଆଗେ କହେ ସଞ୍ଜୟ ଯେ ପୁଣି ।
ଜନ୍ମେଜୟଙ୍କ ଆଗେ ଶ୍ରୀବଇଶମ୍ପାୟନ
କହନ୍ତି ଯାବତ ତୀର୍ଥ ବ୍ରତ ଶାସ୍ତ୍ର ଜ୍ଞାନ ।

ସାକ୍ଷାତେ ବ୍ୟାସ ସଞ୍ଜୟ ଆଗେ ଜାଣ କହି
ପ୍ରକାଶ କରିଗଲେ ସେ ଦିବ୍ୟଚକ୍ଷୁ ଦେଇ ।
ଏଡ଼େ ପୁରୁଷମାନେ ଏ ଗ୍ରନ୍ଥ ଛନ୍ତି କହି
ଏହା ଯେ ନିନ୍ଦିବ ଜାଣିବେ ତା ଭାବଗ୍ରାହୀ ।
ସକଳ ଗ୍ରନ୍ଥ ମଧ୍ୟେ ଏ ଅଟେ ସାରସ୍ୱତ
ଶୁଣିବା ଗୁଣିବା ଲୋକମାନେ ହେବେ ମୁକ୍ତ ।
ସଂକଳ୍ପ କରିଣ ଏହା ପୁତ୍ରବାଞ୍ଛା କଲେ
ତତ୍କାଳେ ମିଳିବ ତାକୁ ପୁତ୍ରଦାନ ଭଲେ ।
ଯଶ ଆୟୁଷ ଶିରୀ ଯା ପାଞ୍ଚିବେ ସେ ମନେ
ବର୍ଦ୍ଧିତ କରିବେ ତାର ସବୁ ଜନାର୍ଦ୍ଦନେ ।
ଧନ୍ୟ ମହିମା ପ୍ରଭୁ କମଳା ଦେବୀ କାନ୍ତ
ତାଙ୍କ ଶ୍ରୀମୁଖ ବାଣୀ ଏ ଅଟେ ମହାଗ୍ରନ୍ଥ ।
ପଢ଼ିଲେ ସଂସାର ଲୋକେ ହେବେ ମହାଜ୍ଞାନୀ
ନିଶ୍ଚେ ଯିବେ ତରି ପାରିବେ ସେ ପଦ ଚିହ୍ନି ।
ଶ୍ରୀଶାରଦା ମାତାଙ୍କର ପାଦପଦ୍ମ ଗତେ
ବ୍ରାହ୍ମଣ ଶ୍ରୀ ପୀତାମ୍ବର ଭଜଇ ଯେ ନିତ୍ୟେ ।
ଏଥିଉତ୍ତାରେ ଯେ ପୁଣ ସେ ସଞ୍ଜୟ ମନ୍ତ୍ରୀ
ବୋଇଲେ ଶୁଣ ହେ ରାଜା ହସ୍ତିନା ନୃପତି ।
ଶ୍ରୀହରି ମୁଖୁ ତ୍ରିଗୁଣେ କର୍ମପାର୍ଥ ଶୁଣି
ତ୍ୟାଗ ସନ୍ୟାସ ଲକ୍ଷଣ ପୂଚ୍ଛେ ପୁଣି ପୁଣି ।
ଅର୍ଜ୍ଜୁନ ବୋଲେ ଶୁଣିମା ପ୍ରଭୁ ନାରାୟଣ
କଥାଏ ପୁଚ୍ଛିବି ତୋତେ କହିବାକ ପୁଣ ।
ସନ୍ନ୍ୟାସ ବୋଲିବାର ଅଟଇ ଯେଉଁ କଥା
ତ୍ୟାଗ କରିବାର କଥା କହ ଜଗଜ୍ଜିତା ।
ଏ ବେନି ଭାବରେ ସେବା କେବଣଯେ ରୀତି
କହିବାକ ଭିନ୍ନ ଭିନ୍ନ କରି ଜଗଜ୍ୟୋତି ।
ତୁମ୍ଭର ମୁଖୁ ଶୁଣିବି ଯେବେ ଭଗବାନ
ତେବେ ଯେ ତୋଷହୋଇବ ମୋର ପଞ୍ଚମନ
ଅର୍ଜ୍ଜୁନ ମୁଖୁ ଏମନ୍ତ ବାଣୀ ପ୍ରଭୁ ଶୁଣି
ବୋଲନ୍ତି ଯେ ସାବଧାନେ ହେ ଗାଣ୍ଡିବପାଣି
ଶାସ୍ତ୍ରକୁ ଚାହିଁଣ ଜାଣ ଯେତେ କର୍ମକରି
କାମନା ବାଞ୍ଛ ମନରେ ଯେବେ ନ ବିଚାରି ।
ତାକୁ ସଂସାରେ ଯୋଗୀନ୍ଦ୍ର ବୋଲି ଜାଣକହି
ସନ୍ନ୍ୟାସୀର ଗୁଣଧର୍ମ ଅଟେ ଜାଣ ସେହି ।
ସକଳ ତ୍ୟାଗ କରିବୁ ଯେଉଁ ମାର୍ଗେ ବିଧି
ହୃଦୟରେ ହେତୁକରି ଶୁଣ ମନଭେଦି ।
ଦେବତାଙ୍କ ଶିବଆଳେ ଦାନ ପୂଣ୍ୟ କଲେ
ଏଥିରେ ତ୍ୟାଗିଲେ ଫଳତ୍ୟାଗୀତାକୁ ବୋଲେ
ଏକଥା ଜାଣନ୍ତି ସାଧୁ ପଣ୍ଡିତେ ଯେ ଜନେ
ହୃଦେ ବିଚାର କରନ୍ତି ସଦା ମନେ ମନେ ।

କର୍ମକୁ ଯେ ହରୁଥିବା ଫଳ ଛାଡ଼ିଦେବା
ଏକଥା ଦୁହିଁଙ୍କୁ ତେଜି ନିଷ୍କାମ ହୋଇବା ।
ଥୋକେ ସନ୍ନ୍ୟାସ ପଣ୍ଡିତପଣେ ଆପେ ପୁଣି
ହୃଦୟରେ ଏହା ପାଞ୍ଚି ଘେନନ୍ତି ତକ୍ଷଣି ।
ବୋଲୁଛ ପୃଥ୍ୱୀରେ ଯେତେ କଲୁ ଯଜ୍ଞତପ
ଏକର୍ମ ସଂସାରେ ଅଟେ ସବୁ ବହୁରୂପ ।
ଏଥୁ ଆମ୍ଭର ହୋଇବ ଯେତେ ଫଳ ଜାଣ
ସେ ମନବାଞ୍ଛା କେଭେ ନକରେ ହୃଦେପୁଣ ।
ଏ ଦୁଇ କଥାରେ ଯେହୁ ଏହୁ ପୁଣ୍ୟମୟ
ସେକଥା କହିବା ତୋତେ ଶୁଣ ଧନଞ୍ଜୟ ।
ତ୍ୟାଗୀର କଥା ଅଟଇ ଜାଣ ତିନିଗୁଣ
ସେ ତିନିଙ୍କ ବାଣୀ ଏବେ କହିବା ହେ ଶୁଣ ।
ସତ୍ତ୍ୱ ରଜ ତମକୁ ଏ ତ୍ରିଗୁଣ ଯେ କହି
ତାହାଙ୍କର ଭାବ ଅଟେ ଭଲ ମନ୍ଦ ଦୁଇ ।
ଯେ ପାଞ୍ଚରେ ଜପ ତପ ଯଜ୍ଞ କରୁଥିବ
ବିଧି ବିଧାନ କଲେ ଯେ ଭଲ ବୋଲାଇବ ।
ଏ କର୍ମ ହିଁ କରୁଥିଲେ ପବିତ୍ର ଯେ ଅଙ୍ଗ
ଏମନ୍ତ ପାଞ୍ଚିଣ କର୍ମ କରେ ବିଧିମାର୍ଗ ।
କର୍ମକୁ କଲେ ଫଳକୁ ଏକା ନ ବାଞ୍ଛିବ
ଫଳକୁ ଯେ ନ ଲୋଡ଼ିବ ସଂସାରୁ ତରିବ ।
ଏ କଥାମାନ ହିଁ ମଧ୍ୟେ ଅଟେ ସନମତ
ଶୁଣ ଧନଞ୍ଜୟ କହନ୍ତି ଯେ ଲକ୍ଷ୍ମୀକାନ୍ତ ।
ଆଉ ଏବେ ଶୁଣ ତ୍ରିଗୁଣର ବିଧିସାର
ଯେ ରୂପେ କରିବ ତ୍ୟାଗ ଶୁଣ ସେ ବିଚାର ।
ସାତ୍ତ୍ୱିକ ମନର ତ୍ୟାଗ କହିବାହେ ତୋତେ
କର୍ମକୁ ଫଳ ଫଳେ ନ ଘେନ କଦାଚିତେ ।
ଏହୁ ଲୋକକୁ ସଂସାରେ ଜାଣ ସର୍ବଜନେ
ସାତ୍ତ୍ୱିକ ତ୍ୟାଗ ବୋଲିଣ କହନ୍ତି ବଚନେ ।
ସେହିପ୍ରାଣୀକୁ ସଂସାରେ ବୋଲି ସାଧୁଶୀଳ
ରାଜସିକ ତାମସିକ ଶୁଣ ପଣ୍ଡୁବାଳ ।
ରଜୋଗୁଣଟି ତ୍ୟାଗ ନକରେ କିଛି କର୍ମ
ବୋଲଇ ଦେହକୁ କର୍ମ କଲେ ସିନା ଶ୍ରମ ।
ଏରୂପେ ବୋଲି ସେ କର୍ମ କେଭେ ନକରଇ
ରାଜସତ୍ୟାଗୀ ବୋଲିବୁ ତାକୁ ପାର୍ଥ ତୁହି ।
ତମୋଗୁଣଟି ଯେତେକ କର୍ମ ତ୍ୟାଗ କରେ
ତାହାର ଗୁଣ କହୁଛି ବୁଝ ଯଥାର୍ଥରେ ।
ଯେବଣ ବିଧିମତେ ଯେ କର୍ମ କରୁଥାଇ
ପୁଣି ହିଁ କିଛି ଦିନେ ସେ କଥା ଛାଡ଼ିଦେଇ ।
ମନରେ ପାଞ୍ଚି ଲୁଚାଏ ଆସେ କର୍ମ କରି
କିମ୍ପାଇଁ ରହିବ ବନ୍ଦିହୋଇ ଦିନସାରି ।

ଏ କିସ କର୍ମ ବୋଲି ସେ କର୍ମ ନକରଇ
ନକଲେ ଆତ୍ମର ଜୀବ ବିନାଶ କି ହୋଇ ।
ତାମସ ତ୍ୟାଗ ଲୋକର ରୂପ ସେହୁ ଜାଣ
ଶୁଣ କୁନ୍ତୀସୁତ କହନ୍ତି ସେ ନାରାୟଣ ।
ଯେଉଁ କର୍ମକରି ଆସୁଛନ୍ତି ସର୍ବକାଳେ
କିମ୍ପାଇଁଛାଡ଼ିବ ତାହାହେଲେ କାହାବୋଲେ
ଯେ ଯାହାରଶକ୍ତି ଘେନି କର୍ମ କରୁଥିବ
ସେହି ଫଳ ବାଞ୍ଛା ଆଉ ମନେ ନ ଧରିବ ।
ତାହାକୁ ସଂସାରେ ଜାଣବୋଲି ମହାଯୋଗୀ
ସତ୍ୟବଚନ ମୋର କେ ପାରେ ଜାଣଭାଗିଁ ।
କରନ୍ତି କେବଣ ଲୋକମାନେ କର୍ମ ପୁଣ
ଫଳକୁ ତ୍ୟାଗିବାକଥା କହିବା ହୋ ଶୁଣ ।
ଦୁଃଖହିଁ ଅଛି ସୁଖହିଁ ଅଛି ତହିଁ ଜାଣ
ନିଶ୍ଚଳ ଭାବ ଯେ ଅଛି ତିନି ପ୍ରକାରେଣ ।
ଯେ ଜନ କର୍ମ କରିଣ ଫଳ ତ୍ୟାଗ କରେ
କେବେହେଁ ଦୁଃଖ ତାକୁ ନଥାଇ ଶାସ୍ତ୍ରଗୀରେ
ଏହି ତ୍ୟାଗୀକୁ ସଂସାରଯାକେ ଯଶମାନି
ଆଉ କଥାଏ କହିବା ଶୁଣ ଫାଲଗୁନୀ ।
ସବୁରି ଶରୀରେ ଅଛି ଯେଉଁ ପଞ୍ଚପ୍ରାଣ
ଦେହକୁ ଯେ ଅଳଙ୍କାର ଅଟନ୍ତି ସେ ଜାଣ ।
ସେ ପଞ୍ଚପ୍ରାଣର କଥା କହିବା ଯେ ତୋତେ
ପ୍ରାଣାପାନ ବ୍ୟାନ ଦାନ ସମାନ ସମେତେ ।
ଦେହକୁ ଏମାନେ ଅଟନ୍ତି ଯେ ପ୍ରାଣତତ୍ତ୍ୱ
ଏ ପଥ ପବନ ବ୍ୟାପିଛନ୍ତି ଦେହେ ସତ ।
ଶ୍ରୀଅନ୍ତର୍ଯ୍ୟାମୀ ଆତ୍ମାଯେ ଆମ୍ଭେ ଥାଇହୋଇ
ପଞ୍ଚପ୍ରକାରେ ଯେ ହେତୁ ପଞ୍ଚଠାବ ଦେଇ ।
ଏ ପଞ୍ଚପବନ ବେଢ଼ିଥାଏ ତିନିଗୁଣ
ଯେବଣ ଜନ କରେ ଏ ଚିହ୍ନ ଆଚରଣ ।
ଦେହେ ବିହରୁଥାଇ ସେ ପଞ୍ଚପବନଟି
ଅଟନ୍ତି ଏ ପଞ୍ଚେ ତ୍ରିଗୁଣରେ ହେତୁ ଗୋଟି ।
ଆଉ କଥାଏ ଯେ ପାର୍ଥ ଏଥି ମଧ୍ୟେ ଅଛି
କହିବା ତହିଁର ଭାବ ଶୁଣ ସବ୍ୟସାଚି ।
ଯେବଣ ଲୋକ ବୋଲଇ ପବନ ହିଁ ମୂଳ
ଆତ୍ମାକୁ ଚିହ୍ନି ନପାରି ଜ୍ଞାନୀଙ୍କୁ ହେ ଗୋଳ ।
ଆତ୍ମା ଯେ ଜୀବ ପ୍ରତ୍ୟେକ୍ଷ ଅଟେ ନାରାୟଣ
ପବନ ଯା ଆସ ହୁଏ ବିଷ୍ଣୁ ଅଙ୍ଗୁ ଜାଣ ।
ପବନ ଦ୍ୱାରୀ ହୋଇଣ ସବୁ ନାମେ ଜାଗେ
ଅଚିହ୍ନା ଲୋକ ପବନ ଘେନେ ଜ୍ଞାନମାର୍ଗେ ।
ଅଗ୍ନିର ଭିତରୁ ଧୂମ ବାହାରେ ଯେ ରୂପେ
ଆତ୍ମା ବାୟୁ ଜାଣ ପ୍ରକାଶଇ ସେହିରୂପେ ।

ଆତ୍ମା ଏ ଦେହରେ ରାଜା ପବନ ଯେ ଦ୍ୱାରୀ
ଆତ୍ମା ଦେହୁଗଲେ ଯାଏ ପବନ ବାହାରି ।
ଆତ୍ମା ଗଲେ ପବନ ଯେ ରହିବ କିପରି
ବୁଝିଲେ ପିଣ୍ଡ ବ୍ରହ୍ମାଣ୍ଡ ଅଟେ ଏକାସରି ।
ସଂସାରେ ଯେ ରହେ ପଞ୍ଚ ପବନ ହିଁ ମୂଳ
ଆତ୍ମା ପୁରୁଷ ଦେଖିଛି କରି କେହୁ ଠୁଳ ।
ମୂର୍ଖ ଚଣ୍ଡାଳ ଲୋକ ଯେ ନାମ ନ ମାନନ୍ତି
ଭୂଗୋଳଟୀକା ମୁଁ ପଢ଼ି ଜାଣେ ବୋଲୁଥାନ୍ତି
କାହାରିକୁ ଆତ୍ମା ଥିବା ସ୍ଥାନ ଜଣା ନାହିଁ
ଆତ୍ମାଥିବାରୁ ପବନ ସିନା ବହୁଥାଇ ।
ଆତ୍ମାର ଭେଦସୂତ୍ର ନଜାଣେ ଯେଉଁ ପ୍ରାଣୀ
ମୂଢ଼ରେ ଗଣା କରନ୍ତି ଲୋକେ ତାକୁ ଆଣି ।
ଆମ୍ଭେ ନାରାୟଣ ଆତ୍ମା ସବୁରି ଯେ ଏକା
ବସିଛି ଶିକୁଳି ବନ୍ଧେ ଭିଡ଼ି ମାଡ଼ି ଚକା ।
ମୋ ଚକା ଉତ୍ପତ୍ତି ସ୍ଥାନ କେହୁ ନ ଜାଣଇ
ମୋହର ଉତ୍ପତ୍ତି ମୁହିଁ ଏହା ଜାଣିଥାଇ ।
ଏ ସଂସାରେ ସୁପଣ୍ଡିତ ଅଛନ୍ତି ଯେ ନର
ନ ଲାଗଇ ତାହାକୁ ତ୍ରିଗୁଣ ଅହଙ୍କାର ।
ସେହି ଲୋକ୍କ ଭଲମନ୍ଦ ସମାନରେ ଘେନେ
ବିଷୟାରେ ଥାଇ ଗୋବିନ୍ଦଙ୍କୁ ଚିନ୍ତି ମନେ ।
ସେ ପୁଣି ପଢ଼ନ୍ତି ଲଉଡ଼ିକି ଯେତେ କର୍ମେ
ବ୍ରହ୍ମ କ୍ଷତ୍ରୀ ବୈଶ୍ୟ ଶୂଦ୍ର ଆଦି ଜାତିଧର୍ମେ ।
କ୍ଷତ୍ରିୟର ପୁତ୍ର ହେଲେ କ୍ଷତ୍ରୀଧର୍ମ କରି
ସମରେ ପଶିଲେ ଦିଏ କ୍ଷତ୍ରିୟଙ୍କୁ ମାରି ।
ଲୋକାୟତେ ଥାଇ ଯେହୁ ରଣେ ପଶି ମରେ
ମାରିବାପାପ ତାକୁ ନଲାଗେ ସଂସାରରେ ।
ସେ ଲୋକମାନେ ନୁହନ୍ତି ଜାଣ ପାପେ ବଧି
ତ୍ରିଗୁଣ ଜ୍ଞାନେ ସେ ଜ୍ଞାତ ଅଟଇ ପ୍ରସିଦ୍ଧି ।
କଲାର କର୍ମ କଥା ନ ଲାଗେ କେଭେ ତାକୁ
ଯେ ପାରେ ଚିହ୍ନି ଜ୍ଞାନେ ଶ୍ରୀବ୍ରହ୍ମପୁରୁଷଙ୍କୁ ।
ସୁଜ୍ଞାନ କର୍ମକର୍ତ୍ତା ଏରୂପେ ତିନି ଗୁଣ
ବେଦରୁ ବାହାରି ସେହି ନୁହେ କେଭେଜାଣ ।
ଏସନ ପ୍ରକାରେ ଜାଣ ଅଟେ ତିନି ତିନି
ତେଣୁ ସେ ଏହା ଜାଣଇ ଏକଭାବ ଘେନି ।
ସକଳ ଲୋକକୁ ସେହୁ ଘେନେ କରି ଏକ
ସଂସାର ଲୋକ ବୋଲନ୍ତି ତାକୁ ବିଜ୍ଞଲୋକ ।
ସାତ୍ତ୍ୱିକ ଲୋକଙ୍କ ସଙ୍ଗେ ଲେଖି ତାକୁ ଜାଣ
କହିବା ଏବେ ସେ ରଜୋଗୁଣ କଥା ଶୁଣ ।
ଚଳନ୍ତି ରାଜସ ଲୋକମାନେ ବଡ଼ପଣେ
ସ୍ଥାବର ଜଙ୍ଗମ କୀଟ ପତଙ୍ଗାଦି ତୃଣେ ।

ସକଳ ଘଟ ପଦ୍ମରେ ବିଜେ ନରହରି
ଘେନନ୍ତି ସେ କଥା ମୂଢ଼ଲୋକେ ଭିନ୍ନ କରି ।
ଏହି ଲୋକକୁ ରାଜସ ବୋଲି ଜାଣ କହି
ତମଗୁଣୀର ଯେ କଥା ଶୁଣ ଏବେ ତୁହି ।
ଯେବଣ ପ୍ରାଣୀ ଅଜ୍ଞକେ କରେ ଅହଂକାର
କ୍ରୋଧ ତମରେ କହଇ ବଚନ ମୁଁକାର ।
ତମ ବୁଦ୍ଧିରେ ସେ ସବୁକର୍ମ କରୁଥାଇ
ସଂସାରେ ନଥିବା କଥା ତତ୍‌କ୍ଷଣେ କରଇ ।
ତାମସିକର ଏରୁପ ଗୁଣ ଅଟେ ଜାଣ
କହିବା ଏ ତିନିଗୁଣ ଫଳ ଏବେ ଶୁଣ ।
ସାତ୍ତ୍ୱିକ ଲୋକ ଉଦାସ ଭାବକୁ ଯେ ବହି
ମନେ ଆନନ୍ଦ ହୋଇଣ କର୍ମ କରୁଥାଇ ।
କର୍ମ ହିଁ କରେ ଫଳ ନବାଞ୍ଛେ କେଉମନେ
କଲେ ଯଥାଶକ୍ୟେ ମୋତେ ସମର୍ପଇ ଧ୍ୟାନେ
ଏମନ୍ତ ବୁଦ୍ଧି ଲୋକହିଁ ସଂସାରରେ ସାର
ଶୁଣ ଧନଞ୍ଜୟ କହନ୍ତି ଯେ ଦାମୋଦର ।
ରଜସ ଲୋକରକର୍ମ କହିବା ହୋ ଶୁଣ
କର୍ମ ସେ କରଇ ଯେତେ ସବୁ ଅହଂଗୁଣ ।
କର୍ମକୁ କଲେ ଆଗକୁ ଫଳ ବାଞ୍ଛା କରେ
ଏହାକୁ ରାଜସ ବୋଲି ଜାଣିବ ସଂସାରେ ।
ତାମସିକର ଯେ କର୍ମ କହିବା ତା କଥା
ଶୁଣ ଆହେ କୁନ୍ତୀସୁତ କହିବା ସେ ପନ୍ଥା ।
ମଥା ବିଚାର କିଛି ନକରେ ମହତକୁ
ଯାବତ ମନ୍ଦ ଅର୍ଜଣ ଆଣେ ଶକତିକୁ ।
ଭଲ ମନ୍ଦର ବିଚାର ଯେହ୍ନୁ ନ କରଇ
ହୃଦରୁ ବଡ଼ିମାପଣ କେବେ ନ ଛାଡ଼ଇ ।
ଅଭବ୍ୟପଣ ବହିଣ ଲୋକେ କରେ ହିଂସା
ହୃଦରେ ବହୁତ ପାଞ୍ଚି କାମନାର ଆଶା ।
ରଜୋଗୁଣୀଏ ଏରୁପ ଅଟେ ଜାଣକର୍ମ
ଦେଲେ ବୋଲଇ କରୁଛି ମୁହିଁ କେତେଧର୍ମ ।
ତାମସିକର କହିବା ଶୁଣ ଏବେ ଭାବ
ଏଥିରୁ ବଳି ତାହାର ଅଟେ ବଡ଼ ଗର୍ବ ।
ମୂର୍ଖ ବୁଦ୍ଧିରେ ଆମ୍ଭର କରେ ନାନା କର୍ମ
ଅଣ ଅବଧାନେ କୋପ ବହେ ଦୂରାତମ ।
ଶୁଣିଲେ ଜବାବ ତାର ଲାଗେ ବିଷପ୍ରାୟେ
ମନ ଦୁଃଖ କରି ସଭାମଧ୍ୟେ ବସିଥାଏ ।
ଏ ତିନିଗୁଣର ବୁଦ୍ଧି କହିବା ହୋ ଶୁଣ
ସାତ୍ତ୍ୱିକ ବୁଦ୍ଧି ପ୍ରତ୍ୟକ୍ଷେ ଅଟେ ବିଷ୍ଣୁ ସମ ।
ଧର୍ମ ଅର୍ଥ କାମ ମୋକ୍ଷ ଏ ଚାରି ପ୍ରକାର
ଏଥି କଳ୍ପନା ବାଞ୍ଛାନଥାଇ କେବେ ତାର ।

ସାତ୍ତ୍ୱିକର ଏହି ରୂପେ ଅଟେ ମନ ବୁଦ୍ଧି
ରାଜସର କଥା ଏବେ ଶୁଣ ଲକ୍ଷ୍ୟଭେଦି ।
ଏ ଧର୍ମ କର୍ମକୁ ଭୟ ନକର ଯେ କଦା
ଅକାର୍ଯ୍ୟ କଥାଯାକ ଯେ କରଇ ସର୍ବଦା ।
ଧର୍ମକଥାକୁ ବୋଲଇ ଅଟେ ଏ ଅଧର୍ମ
ମନ୍ଦକଥାକୁ ବୋଲଇ ଅଟେ ଏ ଉତ୍ତମ ।
ତାମସ ଲୋକର ପୁଣି ଏସନକ ମତି
ଏ ତିନିଗୁଣର ଏବେ କହିବା ଯେ ଧୃତି ।
ସାତ୍ତ୍ୱିକ ପ୍ରାଣୀ ଇନ୍ଦ୍ରିୟଗଣଙ୍କ ବିକାରେ
ମୀନକୁ ଓଟାରି ରଖଇ ସେ ନିଷ୍ପାପରେ ।
କ୍ଷୁଧାତୃଷା ନିଦ୍ରାରେ ସେ ଆତୁର ଯେ ନୁହେଁ
ସାତ୍ତ୍ୱିକଜନ ଏରୂପେ ମନେ ଧୃତି ହୁଏ ।
ରାଜସ ଜନର ଧୃତି ଶୁଣ ସବ୍ୟସାଚୀ
ଭୋଜନ ସ୍ୱପନ ମାୟା ନଛାଡ଼ଇ କିଛି ।
ଏ ତିନିଲୋକର ସୁଖ କହିବା ହେ ଶୁଣ
ଋଷିମାନେ ଯାହା ଲେଖିଅଛନ୍ତି ପୁରାଣେ ।
ଯେବଣ ଅଭ୍ୟାସ ଜାଣ କହନ୍ତି ଯେ କୀର୍ତ୍ତି
ଆନନ୍ଦ ଭାବ ଉପୁଜେ ନାନାବିଧ ପ୍ରୀତି ।
ମନରେ ଦୁଃଖ ତାହାର କେବେ ନ ପାଞ୍ଚଇ
ଦେଖିଲେ ସେ ମନ୍ଦକଥା ବିଷପ୍ରାୟ ହୋଇ ।
ସାତ୍ତ୍ୱିକ ଲୋକର ବୁଦ୍ଧି ଏ ରୂପେଟି ଜାଣ
ରାଜସ ଲୋକର କଥା କହିବା ହୋ ଶୁଣ ।
ଇନ୍ଦ୍ରିୟଗୁଣରୁ ମାୟା ଜନ୍ମେ ତାର ଗାତ୍ରେ
ଯାବତ ଅନ୍ୟାୟ କଥା କରେ ଅହୋରାତ୍ରେ ।
ରାଜସ ଲୋକର ଅଟେ ଏରୂପେ ଯେ ଗତି
ତାମସ ଲୋକର ଶୁଣ କହିବାକ ଭିତ୍ତି ।
ଭଲକଥା ବୋଲି ପାଞ୍ଚି କରେ ଯାହାଆଗେ
ପଛେ ସେହି ମନ୍ଦ ହୋଇ ଜନ୍ମେ ମହାରାଗେ
ସେ ରାଗୁଁ ଜାତ ହୁଅଇ ପୁଣି ପରମାଦ
ପ୍ରମାଦୁ ଅଜ୍ଞାନ ଜନ୍ମେ ଅଜ୍ଞାନରୁ ମନ୍ଦ ।
ମନରୁ ଆଳସ୍ୟ ନିଦ୍ରା ଆଳସ୍ୟରୁ ବଢ଼େ
ନିଦ୍ରାରୁ ଭ୍ରମି ହୋଇଣ ବୁଲେ ଚାରିଆଡ଼େ ।
ତାମସିକର ଏରୂପେ ଜାଣ ଗୁଣ କହି
କହନ୍ତି ଶ୍ରୀଜଗନ୍ନାଥ ଶୁଣ ଭଦ୍ରାସାଇଁ ।
ସତ୍ତ୍ୱ ରଜ ତମର ଏ ରୂପେ ତିନିଗୁଣ
ସ୍ୱର୍ଗ ମଞ୍ଚ ପାତାଳରେ ସବୁ ଲାଗେ ପୁଣ ।
ଏହା ଯେହ୍ନୁ ଜ୍ଞାନଶରେ କରିପାରେ ନାଶ
ସେ ଜନ ସର୍ବଦା ମୋର ଅଟେ ନିଜ ଦାସ ।
ମୋହର ଅଙ୍ଗରୁ ଜନ୍ମ ଚାରିଜାତି ଜାଣ
ସେ ଚାରି ଜାତିର ନାମ କହିବା ହୋ ଶୁଣ ।

ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଆଉ ଶୂଦ୍ରଜାତି
ଏହି ଚାରିଜାତି ମୋର ଅଙ୍ଗୁ ଉତପତି ।
ଶାସ୍ତ୍ର ପ୍ରମାଣେ କହିଛି ଯାହା ଚାରିବେଦେ
ସେ ଚାରିଜାତିର କର୍ମ କହିବା ଯେ ଆଦ୍ୟେ ।
ପ୍ରଥମେ ବ୍ରାହ୍ମଣ କର୍ମ ଯେଉଁ ବିଧିଭାବ
ଯଜନ ଯାଜନ ଦାନ ଘେନି ଦାନ ଦେବ ।
ଇନ୍ଦ୍ରିୟଗଣଙ୍କୁ ବଢ଼ିହେବ ଶାନ୍ତଶୀଳ
ବେଦକୁ ଯେ ପଢ଼ାଇବ ପଢିବେ ତତ୍କାଳ ।
ଶୁଚି ଦୟାମନ୍ତ ହେବ ସେହି ସତ୍ୟବାକ୍ୟ
ଜ୍ଞାନକୁ ଯେ ଚିହ୍ନିଥିବ ନୋହି ଅବିବେକ ।
ଧଇର୍ଯ୍ୟବନ୍ତ ଆବର ହେବ କ୍ଷମାଶୀଳ
ଦ୍ୱାଦଶ ଲକ୍ଷଣ କର୍ମ ବ୍ରାହ୍ମଣର ମୂଳ ।
ଏବେ ହୋ ଶୁଣ କ୍ଷତ୍ରିୟ ଧର୍ମର ଯେ ଭାବ
ଯୁଦ୍ଧକାଳେ ପଛକୁ ସେ କେବେ ନ ଘୁଞ୍ଚିବ ।
ତେଜ ଧୈର୍ଯ୍ୟବନ୍ତ ହେବ କରି ପ୍ରଭୁପଣ
ଦେବ ବ୍ରାହ୍ମଣ ସେବିବ ଦେବ ଧନ ଦାନ ।
ଲୋକଙ୍କୁ ବିନା କାର୍ଯ୍ୟରେ ନ କହିବ କିଛି
ପାଳିବ ସେ ପ୍ରଜାକୁଳ ଜାଣ ସବ୍ୟସାଚି ।
ବୈଶ୍ୟର କର୍ମ ଶୁଣିମା ଏବେ ମନଦେଇ
କରିବ ସେ କୃଷିକର୍ମ ଲୋକେ ଦୟାବହି ।
ବେପାର ବାଣିଜ୍ୟ କରି ସତ୍ୟେ ନେବଦ୍ଦିନ
ଏ ରୂପେ ଯେ ବୈଶ୍ୟକର୍ମ ଶୁଣ ଅରଜୁନ ।
ଶୂଦ୍ରର କେବଳ ସେବାକର୍ମ ବିପ୍ରପାଦ
ଏ ରୂପେ ଏ ଚାରି ଜାତି ଧର୍ମ କର୍ମପଦ ।
ଆଉ କହିବା ସଂସାରେ ଶୁଣ ଯେତେ ଜାତି
ବଞ୍ଚିବ ହେ ଯାହା କୁଳଧର୍ମ ଦିବାରାତି ।
ତାହାକୁ ସଂସାରେ କେ ନ କରିପାରେ ନିନ୍ଦା
ବୋଲନ୍ତି ତା କୁଳଧର୍ମ ଅଛି ଏ ସର୍ବଦା ।
ବୋଲନ୍ତି ସର୍ବେ ଏ ଭଲା ଜାତିଧର୍ମ କଲା
କି ଦୋଷ ତାର ଦରିଦ୍ର ସିନା ସେହିହେଲା ।
ଏ ରୂପରେ କୁଳଧର୍ମ ସହଜେ ସେ କରେ
ସମସ୍ତେ ଯେ ଧନ୍ୟ ତାକୁ କହନ୍ତି ସଂସାରେ ।
ଏଣୁ ଯେଝା ଜାତି ଧର୍ମ ମାର୍ଗେ ରହିଥିଲେ
ତାହାକୁ ନିନ୍ଦା କେହୁ ନପାରେ କରି ଭଲେ ।
ଯେ ଯାହା ଜାତିକୁ ଜାଣ ଅଟଇଟି ବଡ଼
ଶୁଣ ଧନଞ୍ଜୟ କହନ୍ତି ଯେ ଯୋଗାରୁଢ଼ ।
ଏହି ପ୍ରକାରେ ଜାଣ ଯେ ଯାହା ଜାତିକର୍ମ
ଭବୁ ତରିବ ପାରିଲେ ସିନା ଜାତିଧର୍ମ ।
ଯେବଣ ପ୍ରାଣୀ ଆପଣା କର୍ମଦାଣ୍ଡେ ଥାଇ
ବିଷ୍ଣୁର ଭଜନ କଥା କେଭେ ନ ଛାଡ଼ଇ ।

ସେ କଥା କହିବାତୋତେ ଶୁଣ ଧନଞ୍ଜୟେ
ମନରେ ଭ୍ରାନ୍ତି କିଛିନକର ତୋର ଦେହେ ।
ଆପଣା ଜାତିରେ ଥାଇ ଯେଉଁ ପ୍ରାଣୀମାନେ
ସ୍ୱଧର୍ମରେ ପାଳୁଥିବେ କେବଳ ସଦଜ୍ଞାନେ ।
ଜଗତରେ ପରିପୂର୍ଣ୍ଣ ଯେଉଁ ଭଗବାନ
ସକଳ ଘଟେ ଅଛନ୍ତି ପ୍ରଭୁ ଜନାର୍ଦ୍ଦନ ।
ଏରୂପେ ପାଞ୍ଚଣ ଧର୍ମ କରେ ଯେତେ ଆଣି
ଅର୍ଚ୍ଚନା ସେ କରୁଥାଇ ପ୍ରଭୁ ଚକ୍ରପାଣି ।
ଶ୍ରୀହରିର ପଦ୍ମପାଦେ ଶରଣ ସେ ଗଲେ
ସକଳ ସିଦ୍ଧ ତାହାକୁ ମିଳେ ମନ କଲେ ।
ଯେବଣ ପ୍ରାଣୀ ଆପଣ ଜାତି ଧର୍ମ ଛାଡ଼ି
ପଶଇ ଶ୍ରେଷ୍ଠ ବୋଲିଣ ପରଜାତି ଲୋଡ଼ି ।
ତହିଁ ଉଦୟ ହୋଇଣ ଅର୍ଜି ଯେତେ ଧନ
ସାଧୁ ହେଲେହେଁଟି ସେହୁ ଅଟେ ଜାତିହୀନ ।
ଆପଣା ଜାତିର ଧର୍ମେ ସଦା ଯେହୁ ଥାଇ
କୁଳଶ୍ରେଷ୍ଠ ବୋଲିତାକୁ ଏ ସଂସାରେ କହି ।
ଏ ଘେନି ଯେ ଯାହାର ସ୍ୱଜାତି କର୍ମମାନ
ନ ଛାଡ଼ିବା ଲୋକକୁ କରନ୍ତି ସର୍ବେ ଧନ୍ୟ ।
ଏଣୁ ଯେ ଅକର୍ମମାନ ଏ ସଂସାରେ କରେ
ଯାବତ ଦୋଷ ପ୍ରକାଶେ ଆସି ତା ଉପରେ ।
ଯେଉଁରୂପେ ଅନଳକୁ ଧୂମ୍ରଥାଏ ଢ଼ାଙ୍କି
ସେହିରୂପେ ଦୋଷ ବେଢ଼ିଅଛଇ ପ୍ରାଣୀଙ୍କି ।
ଏଥକୁ କଥାଏ ପୁଣି କହିବା ହୋ ପାର୍ଥ
ନିର୍ମଳ ମନେ ସେବିବୁ ପ୍ରଭୁ ଜଗନ୍ନାଥ ।
ଶରୀରେ ନ ବହିବୁ ତୁ ହିଂସା ରାଗ ଜାଣ
ତ୍ୟାଗିବୁ ସର୍ବଦା ତୁହି ବିଷୟାଦି ଗୁଣ ।
ଆନନ୍ଦ ମନ ହୋଇବୁ ବସି ଶୁଦ୍ଧସ୍ଥାନେ
ବଞ୍ଚିବୁ ଅଳ୍ପ ଆହାର କରି ସବୁ ଦିନେ ।
ଯେତେ ପ୍ରୀତିଠାରେ ତେତେ କରି ସମ୍ଭାଷଣ
ମିତ୍ରଭାବେ ସ୍ନେହ ବହି କହିବୁ ବଚନ ।
ତାହା ସେହି ଗୁରୁଦୀକ୍ଷା ଦେବେ ହୃଦଗତେ
ତହିଁରେ ମନ ଦେଇଣ ଭଜିବୁ ନିରତେ ।
ସଂସାରେ ଜୀବଯାକକୁ ଦୟାଭାବ କରି
ଶରୀରେ ବଇରାଗ ନ ଥିବ କେଭେ ଧରି ।
ରାଗ ହିଂସା ଅହଙ୍କାର ନୀଚ ପରିଚର୍ଯ୍ୟା
ଲୋଭମୋହ କାମନାଦି କରିବ ସେ ତେଜ୍ୟା
ସନାତନ ଗତି ଏହି ଅଟେ ଲୋକମାର୍ଗ
ସେହି ଲୋକକୁ ବୋଲି ସେ ପରଂବ୍ରହ୍ମ ଅଙ୍ଗ ।
ଗତକୁ ଶୋଚନା ନାହିଁ ଆଗତକୁ ବାଞ୍ଛା
ଯେଉଁ ଜନର ନାହିଁ ଏ ଦୁଇକଥା ଇଚ୍ଛା ।

ହୃଦୟରେ ଦୁଃଖସୁଖ ସମାନ ଯେ କରେ
ସବୁକଥା ସମକରି ଘେନଇ ମନରେ ।
ସବୁବେଳେ ସୁଖ ଦୁଃଖେ ପ୍ରସନ୍ନ ବଦନ
ସେ ମୋହର ଅଟେ ଭକ୍ତ ଶୁଣ ଅରଜୁନ ।
ମୁଁ ଯେଡ଼େ ପୁରୁଷ ତାର ନାହିଁ ପରିମାଣ
ମୋହର ଭକ୍ତ ଜାଣଇ ଏକା ମୋର ଗୁଣ ।
ଏହିଯେ ଏକ ଠାକୁର ବୋଲି ମୋତେ ଜାଣି
ଯେଣୁ ମୁହିଁ ହୃଦେ ଲୀନ କରେ ତାକୁ ଆଣି ।
ଯେତେକ କର୍ମଧର୍ମ ସେ କରିଦେହେ ତାର
ସବୁକର୍ମ ସମର୍ପଇ ଚରଣେ ମୋହର ।
ସେ ଲୋକମାନଙ୍କୁ ଜାଣି ସାତ୍ତ୍ୱିକ ବୋଲିବୁ
ମନରେ ଯାହାପାଞ୍ଚେ ସେ ମିଳେ ଆସିସବୁ ।
ଏଣୁ ହେ ଅର୍ଜୁନ ତୁହି କର୍ମମୂଳ ତେଜ
ସବୁ ତ୍ୟାଗକରି ମୋର ପାଦପଦ୍ମେ ଭଜ ।
ଏହି ଯୋଗ ଘେନି ମୋତେ ଆଶ୍ରୟ ତୁ କର
ମନରେ ଫଳର ଆଶା କେବେହେଁ ନ ଧର ।
ସକଳ କର୍ମକୁ ତ୍ୟଜ୍ୟା କର ଧନଞ୍ଜୟ
ମୋ ପାଦେ ଶରଣ ପଶି ମନୁଁ ଛାଡ଼ ଭୟ ।
ପାପକୁ ଡରି କରିଛୁ ମନେ ଯେବେ ଶଙ୍କା
ସବୁ ପାପରୁ ଯେ ମୋକ୍ଷ କରଇ ମୁଁ ଏକା ।
ମନରେ ଭୟ ତୋହର ନକରି ବାସବୀ
ପାପରୁ ତାରି ତୋତେ ମୁଁ ଅବଶ୍ୟ ରଖିବି ।
ବେଭାରେ ଚଳେ ସଂସାରେ ଯେତେ କର୍ମମୟ
ସବୁ କରିଥିବୁ ମନେ ହୋଇଣ ନିର୍ଭୟ ।
ତୋତେକିଛି ବାଧାନାହିଁ ମୋହର ପ୍ରସାଦେ
ତରିବୁ ସର୍ବ ଦୁଃଖ ତୁ ନିଶ୍ଚେ ଅପ୍ରମାଦେ ।
ମୁଁ କରୁଅଛି ବୋଲି ମୁଁକାର ନ କରିବୁ
ପାଇବୁ ନିତ୍ୟ ସୁଖମୋ ବୋଲେଯେବେଥିବୁ
ତୋହର ଦେହେ ତୁହି ନ ବୁଝି ନ ବିଚାରୁ
ମନରେ ଶଙ୍କା କିମ୍ପାଇ ଅର୍ଜୁନ ତୁ ଧରୁ ।
ତୋହର ପ୍ରକୃତିକି ତୁ ଧରି ଜ୍ଞାନବଳେ
ହେତୁକୁ ରଖି ମୋଠାରେ ବଞ୍ଚାଇ ତତ୍କାଳେ ।
ଯୁଦ୍ଧକୁ ଯେ ଉଦ୍‌ଯୋଗ କଲୁ ଆସି ଏଥେ
ଆମ୍ଭେ ବସି ଅଛୁ ଏହି ନନ୍ଦିଘୋଷ ରଥେ ।
କାଳେହେଁହାସ୍ୟକରିବେ ଜନେ ତୋତେ ଦେଖି
ପୁଣିହିଁ ଜ୍ଞାନ କହିଲୁ ତୋତେ ପାଶେ ରଖି ।
ପାଳିବୁ ଯେବେ ମୋହର ବାକ୍ୟଗୋଟି ତୁହି
ତୋହର କ୍ଷତ୍ରିୟ କର୍ମ କରିବୁ ତୁ ଯାଇଁ ।
ଈଶ୍ୱର ପୁରୁଷ ନିଜେ ଅନନ୍ତ ରୁପରେ
ବିଜେ କରିଛନ୍ତି ସବୁ ପ୍ରାଣୀଙ୍କ ଦେହରେ ।

ଶ୍ରୀଜଗନ୍ନାଥ ପ୍ରଭୁଙ୍କ ଭାବ ଅପ୍ରମିତ
ତାହାଙ୍କ ମାୟାରେ ଭୁଲିଅଛି ପଞ୍ଚଭୂତ ।
ଏମନ୍ତ ପ୍ରକାରେ ଯେଉଁ ଈଶ୍ୱର ରଚନା
ସେ ପ୍ରଭୁଟି କୃପାକଲେ ତୁଟେ ଦୁର୍ବାସନା ।
ଭଜିବୁ ମୋ ନାମ ହୃଦେ ଧରି ପଣ୍ଡୁଶିଷି
ବୋଲିବୁ ତୁ ରାମକୃଷ୍ଣ ମୁଖେ ଅହର୍ନିଶି ।
ଏ ରୂପେ ଯେ ମୋର ନାମ ନିତି ଭଜୁଥାଇ
ତାହାର କରି ସେ ମୋତେ ଜିଣି ଘେନିଯାଇ
ତୁ ଅଟୁ ଯେଣୁ ମୋହର ସଖା ସହୋଦର
ତେଣୁ ଯେ ଆମ୍ଭେକହିଲୁ ତୋତେ ଜ୍ଞାନସାର
ଅନେକ ପ୍ରିୟଭାବ ଯେ ଶୁଣାଉଛୁ ତୋତେ
ଶ୍ରୀମୁଖ ବଚନ ମୋର ରଖ ହୃଦଗତେ ।
ଯେଣେହେ ଗଲେଭଜିବୁମୋତେ ମନେମନେ
ତତ୍ତ୍ୱକୁ ଏହା ତୁ ଧରିଥିବୁ ସର୍ବଦିନେ ।
ଭଜିବୁ ନିର୍ମଳ ଶୁଦ୍ଧଚିତ୍ତେ ମୋତେ ନିତ୍ୟ
ଭକ୍ତରେ ଲେଖା ହୋଇବୁ ତୁହିକୁନ୍ତୀସୁତ ।
ସର୍ବଦା ମୋତେ ଭଜନ ଯେବେ କରୁଥିବୁ
ଅନ୍ୟ ଦେବତା କେବେହେଁ ସେବାନକରିବୁ ।
ଶ୍ରୀହରି ପାଦେ କରିବୁ ନିତି ନମସ୍କାର
ଆନ ଦେବଙ୍କୁ କେବେ ନ ନୁଆଇଁବୁ ଶିର ।
ଦୃଢ଼କରି ଭଜନ୍ତି ମୋ ପାଦେ ଯେତେ ଜନ
କାହିଁକି ସେବା କରିବୁ ଆନ ଦେବମାନ ।
ଯେତେ ମୁଁ କହୁଛି ସତ୍ୟଅଟେ ମୋର ବାଣୀ
ନକର ମନରେ ଶଙ୍କା ହେ ଗାଣ୍ଡିବ ପାଣି ।
ତୁ ମୋହର ପ୍ରିୟତମସଖା ବୋଲି ତୋତେ
କହୁଛି ନିଜର ଶୁଣ ତୁ ନିର୍ମଳ ଚିତ୍ତେ ।
ଭୋପାର୍ଥ ମୁଁ ଉର୍ଦ୍ଧ୍ୱବାହୁହୋଇ ତୋହଆଗେ
କହିଲି ଯେତେ କଥା ନ ଘେନ ଆନ ମାର୍ଗେ ।
ଏବେ ମୁଁ କହୁଛି ତୋତେ ସର୍ବକର୍ମ ଛାଡ଼ି
ମୋତେ ତୁହି କରସେବା କାମନାକୁ ଏଡ଼ି ।
ଯେତେ କହୁଅଛି ସର୍ବଶାସ୍ତ୍ର ତତ୍ତ୍ୱ ଆଣି
ଏ କଥାକୁ ହେଜି ବୁଝି ରଖ ହୃଦେ ପୁଣି ।
ଯେତେଲୋକ ଦୃଢ଼ବ୍ରହ୍ମ ଅଟନ୍ତି ସଂସାରେ
ମୋତେ ସେବାକରିରଖନ୍ତି ଯେହୃଦୟରେ ।
ଯେବଣ ଲୋକଅଟଇ ମୃତ ଅନାଚାରୀ
ଅଭ୍ୟବ ପିଶୁନ ଅବିଶ୍ୱାସୀ ଦେହଧାରୀ ।
ଏ ମହାବ୍ରହ୍ମଜ୍ଞାନ ସେ ଲୋକଙ୍କର ଆଗେ
କେବେ ନକହିବୁ ତାଙ୍କୁ ରହି ଜଡ଼ମାର୍ଗେ ।
ଯେ ମୋହର ଭକତଟି ଅଟେ ପୁଣ୍ୟଦେହୀ
କହିବୁ ସେ ଲୋକଙ୍କର ଆଗେ ଜ୍ଞାନଫେଇ ।

ସେ ମୋହର ମହାପ୍ରିୟ ଜାଣେ ମୋରଭକ୍ତି
ତୁ ମୋକ୍ଷ ହୋଇବୁ ତାଙ୍କୁଦେବୁ ମୋକ୍ଷଗତି ।
ସେ ମୋହର ଭକ୍ତ ବୋଲି ଜାଣ ହୃଦଗତେ
ତାହାର ଆଗେ କହିବୁ ଜ୍ଞାନ ଜାଣ ନିତ୍ୟେ ।
ସେ ଜନଠାରେ ମୋଥାଇ ଅତ୍ୟନ୍ତଯେପ୍ରୀତି
ତାହାର ତହୁଁ ମୁହିଁ ନ ଯାଏ ଅନ୍ୟଗତି ।
ପାଷାଣ୍ଡ କପଟୀ ମୂର୍ଖ ଅଜ୍ଞାନର ଆଗେ
କହିଲେ ମୂର୍ଦ୍ଧନା ଫାଟିଯିବ ଚାରିଯୁଗେ ।
ଏବେହେଁ ତୋରମୋହରକଥା ହେଲା ଯେତେ
ସୁଜ୍ଞାନୀ ସୁଧର୍ମ ଆଦି ବାଣୀ ନାନା ମତେ ।
ସୁଜନ ବୁଦ୍ଧିରେ ଏହା ଯେ ପ୍ରାଣୀ ପଢ଼ିବ
ହୃଦରେ କଳଙ୍କ ତାର କେଭେ ନରିହବ ।
ଆପେ ମୁହିଁ ସୁପ୍ରସନ୍ନ ହୋଇଥାଇ ହୃଦେ
ଯେଯାହା ପୂଜାକଲେ ମୁଁ ଭୁଞ୍ଜେତାହାଆଗେ
ନୋହିଲେଟି ଯେଉଁ ଲୋକ ବସି ଶ୍ରଦ୍ଧାମନେ
ଏ ଗ୍ରନ୍ଥ ବୁଝିବେ ସଙ୍କଳ୍ପରେ ପ୍ରତିଦିନେ ।
ସ୍ୱର୍ଗରେ ବସିଅଛନ୍ତି ଯାଈ ଯେତେପ୍ରାଣୀ
ସେଲୋକ ସଙ୍ଗରେ ଲେଖାହୋଇବେସେ ପୁଣି
ଦେହ ଅନ୍ତେ ବସିବେ ଯେ ଯାଇଁ ସ୍ୱର୍ଗପୁର
ଉତ୍ତମଜନ୍ମ ଖଞ୍ଜିବେ ତାକୁ ଦାମୋଦର ।
ଏ ଜ୍ଞାନଯାକ ମୋହର ଶୁଣିଛୁ ହେ ପାର୍ଥ
ମୁଁ ମଧ କହିଣ ତୋତେ ହୋଇଲି କୃତାର୍ଥ ।
ଯେଉଁ ମାୟାମୋର ଥିଲା ଏ ତୋରସବୁରେ
ତାହା ଛେଦନ କଲି ଏ ଜ୍ଞାନ କହିବାରେ ।
ଶ୍ରୀହରିର ମୁଖୁ ପାର୍ଥ ଏ ବଚନ ଶୁଣି
ପଡ଼ିଲାକ ପାଦତଳେ ସେ ଗାଣ୍ଡିବ ପାଣି ।
ଆଗରେ ଉଭା ହୋଇଲା ଯୋଡ଼ି ବେନିକର
ବୋଇଲେ ଶ୍ରୀମୁଖୁ ଶୁଣି ହେଲି ଭବୁଁପାର ।
ଏବେଯେ ହୃଦେ ମୋହର ପଶିଲା ଚୈତନ୍ୟ
ସୁଦୟା କରିଣ ମୋତେ ରଖ ଭଗବାନ ।
ତୁମ୍ଭର ଏ ଆଜ୍ଞାଗୋଟି ପର୍ଶୁ ତୀକ୍ଷ୍ଣ ଖଣ୍ଡା
ତାହା ମୁଁ ଏବେ ଶୁଣିଣ ହେଲି ମନେ ଥଣ୍ଡା ।
ଏରୂପେ ବୋଲିଣ ପାର୍ଥ ହେଲା କୃତ୍ୟକୃତ୍ୟ
ଗାଲବର ନନ୍ଦନ ଯେ ସଞ୍ଜୟ ପଣ୍ଡିତ ।
ହରି ଅର୍ଜ୍ଜୁନଙ୍କ ବାଣୀ ଧୃତରାଷ୍ଟ ଆଗେ
ସଂଶୟ ଫେଡ଼ି କହନ୍ତି ସବୁ ବ୍ରହ୍ମଭାଗେ ।
ବୋଲେ ଅର୍ଜ୍ଜୁନ ଶୁଣିଲଯେବେ ଜ୍ଞାନବାଣୀ
ସେକଥାଯାକ କହିଲି ମୁହିଁ ତୋତେ ଆଣି ।
ଶରୀରକୁ ପୂଲକାଇ ସେ ଗାଣ୍ଡିବଧର
ମନରେ ଶୋକ ବହିଲା ଶୁଣି ଜ୍ଞାନସାର ।

ପରାଶରଙ୍କର ପୁତ୍ର ଦୟା ଯହୁଁ କଲେ
ତାହାଙ୍କପ୍ରସାଦେ ଦୃଶ୍ୟ ହୁଏ ମୋତେଭଲେ
ତୋହର ପୁତୁରା ଆଗେ କହିଲେ ଯେ ହରି
ପୃଥ୍ୱୀର ଲୋକେ ସଂସାରୁ ଯିବେ ପୁଣି ତରି ।
ପରମତୋଷ ହୋଇଣ ସ୍ମରି ପ୍ରଭୁଗୁଣ
ଆନନ୍ଦ ହୋଇଲା ଜ୍ଞାନ ଶୁଣି ପାର୍ଥ ଜାଣ ।
ଯେବଣ ଶ୍ରୀ ପ୍ରଭୁଙ୍କର ଅଶେଷ ସ୍ୱରୂପ
ସେ ରୂପ ଦେଖିଲାମାତ୍ରେ ହୃତ ଗଲା ପାପ ।
ଏ ପୂରାଣ ଗୋଟି ଶୁଣିବ ଯେ ପ୍ରତିଦିନେ
ଶ୍ରୀମନ୍ତ ହେବଟି ସେହି ଗୋବିନ୍ଦ ପ୍ରସନ୍ନେ ।
ତଥାପି ସର୍ବଦା ପଢ଼ି ନପାରିଲେ ମୁଖେ
ଶୁଣିବ କାର୍ତ୍ତିକ ମାଘ ଆବର ବୈଶାଖେ ।
ଷଡ଼ ଜୟନ୍ତୀରେ ବସି ପଢ଼ିବେ ଯେ ନରେ
ଗଙ୍ଗାସ୍ନାନ ଫଳ ସେହି ଲଭିବେ ତତ୍କାଳେ ।
ସଙ୍କରାନ୍ତି ଅମାବାସ୍ୟା ଆଉ ଏକାଦଶୀ
ଏ ଦିନମାନଙ୍କେ ପଢ଼ିବେ ଯେ ଅହର୍ନିଶି ।
ବିଷ୍ଣୁ ହୃଦୟରେ ଆସି ହେବ ସେହୁ ଲୀନ
ଆବର ଯେ ଫଳଶ୍ରୁତି କହିବା ତା ଶୁଣ ।
ପଢ଼ିଲେ ଚାରିବେଦକୁ ହୁଏ ଫଳ ଯେତେ
ନିତି ପଢ଼ିଲେ ଏ ଗ୍ରନ୍ଥ ଲଭେ ପୁଣ୍ୟତେତେ ।
ଏକଥା ନିଷ୍ଠେ ପାର୍ଥ ଶ୍ରୀମୁଖୁ ମୋର ଶୁଣି
ଆବର ପାପୀ ଅଛନ୍ତି ଏ ସଂସାରେ ଜାଣି ।
ତାହାଙ୍କ ନାମମାନ ଯେ କହିବାକୁ ତୋତେ
ସେମାନେ ନିତ୍ୟେ ଶୁଣିବେବସିଯେବେଗ୍ରନ୍ଥେ
ଅପୁତ୍ରିକ ଅଦାତାଯେ ପିଶୁନ ଆବର
ଅଯୋଗ୍ୟ ଅଧର୍ମ ମୂର୍ଖ ମୂଢ଼ ଦୂରାଚାର ।
ବ୍ରାହ୍ମଣ ଦାନରୁ ବୃତ୍ତି ହରନ୍ତି ଯେ ଜନ
ଭାଙ୍ଗଇ ଯେ ପରକୀର୍ତ୍ତି ଗୋପଥ ଶ୍ମଶାନ ।
ପରକୁ ଯେ ଖଚ ମିଛ କହେ ଅନୁବ୍ରତେ
ଲୋକଙ୍କୁ ହିଂସା କରିଣ ବଞ୍ଚେ ଦିନ ନିତ୍ୟେ ।
ଗୋହତ୍ୟା ବ୍ରହ୍ମହତ୍ୟା ସ୍ତ୍ରୀହତ୍ୟା ଏହି ଆଦି
ଜାତିରେ ଶ୍ରେଷ୍ଠ ହୋଇଣ ଭକ୍ଷେ ସୁରା ଯଦି ।
ବେଦକୁ ନିନ୍ଦା କରିଣ ଶାସ୍ତ୍ର ନିନ୍ଦାକରେ
ଏ ଗ୍ରନ୍ଥ ବସି ଶୁଣିଲେ ତରଇ ତତ୍ପରେ ।
ସଂକଳ୍ପ କରି ଶୁଣିବେ ଜାଣ ଯେତେ ଜନ
ମନରେ ଯାହା ବାଞ୍ଛିବେ ଲଭିବେ ସେପୁଣ୍ୟ
ଶକ୍ୟକୁ ଚାହିଁ ଦକ୍ଷିଣା କିଛି ତାକୁ ଦେବ
ଅବଶ୍ୟ ତାହାକୁ ଗତି ଦେବେ ବାସୁଦେବ ।
ହରି ଅର୍ଜ୍ଜୁନ ସମ୍ବାଦ ଅନ୍ଧ ଆଗେ ନେଇ
ପ୍ରଚ୍ଛିନ୍ନ କରି ସଞ୍ଜୟ ମନ୍ତ୍ରୀ ସବୁ କହି ।

ବୋଇଲେଯେଅଦାତବ୍ୟହୋଇଲେତୋପୁଏ
ତେଣୁ ଅଧର୍ମ ତାହାଙ୍କୁ ନୋହିବ ଯେ ଜୟେ ।
ସପକ୍ଷ ଯେଣୁ ସେ ନାରାୟଣ ପାଣ୍ଡବଙ୍କୁ
ତେଣୁ ଯଶ ଉଦେ ହୋଇଅଛି ଜାଣ ତାଙ୍କୁ ।
ତେଣୁ ସେ ଯଶ ତାଙ୍କର କହି ନ ସରଇ
ଶୁଣ ଧୃତରାଷ୍ଟ୍ର ମନ୍ତ୍ରୀ ସଞ୍ଜୟ ଯେ କହି ।
ନୃସିଂହ ପୁରାଣ ଶାସ୍ତ୍ର ପରମ ଏ ବାଣୀ
ସଂସାରୁ ତରହେ ନରେ ସମ୍ପୂର୍ଣ୍ଣରେ ଶୁଣି ।
ଶ୍ରୀମୁଖୁଁ ଶୁଣି ଅର୍ଜ୍ଜୁନ ହେଲେ ଯାଇଁ ବୋଧ
ଧଇଲେ ଧନୁ କରିବେ ବୋଲି ମହାଯୁଦ୍ଧ ।
ଜଗନ୍ନାଥଙ୍କ ଶ୍ରୀପଦେ ଉଠି ପ୍ରଣମିଲେ
ଗାଣ୍ଡିବ ଧନୁ ଧରିଣ ଆଗେ ଉଭା ହେଲେ ।
ରଘୁନାଥ ମୂର୍ତ୍ତି ଟୀର କମାଣର ପ୍ରାୟ
ନିଶରେ ହସ୍ତ ଭରିଣ ଉଠି ଧନଞ୍ଜୟ ।
ନନ୍ଦିଘୋଷର ସାରଥି ପଣେ ହରି ରହି
ଚାରି ଅଶ୍ୱଙ୍କର ବାଗ ଧରି ଭାବଗ୍ରାହୀ ।
ଏକେ କୁରୁକ୍ଷେତ୍ରେ ଦ୍ୱିତୀୟରେ ନନ୍ଦିଘୋଷ
ତୃତୀୟରେ ପାର୍ଥ ରଥି ଚତୁର୍ଥେ ରମେଶ ।
ପଞ୍ଚମେ ଶ୍ରୀ ହନୁମାନ କପିଧ୍ୱଜ ବାନା
ଷଷ୍ଠରେ ଯେ ଚାରିଅଶ୍ୱ ପ୍ରଳୟ ଧାରଣା ।
ସପ୍ତମ ସାଗର ଅଟେ କୁରୁକ୍ଷେତ୍ର ସ୍ଥାନ
ତହିଁରେ ଯେ ରଥ ସାଜିଛନ୍ତି ଭଗବାନ ।
ଉତ୍ତରେ ଗଙ୍ଗା ଦକ୍ଷିଣେ ଯମୁନା ଯେ ନଦୀ
ପଞ୍ଚକଟକ ମଧରେ ଭାରତ ପ୍ରସିଦ୍ଧି ।
ଏ ରୂପେ ସେ କୁରୁକ୍ଷେତ୍ର ମହିମା ଅପାର
ତହିଁରେ ମଲେ ସ୍ୱର୍ଗରେ ବସନ୍ତି ଯେ ନର ।
ତହିଁରେ ଶ୍ରୀଜଗନ୍ନାଥ ଛନ୍ତି ବିଜେ କରି
ଶ୍ରୀମୁଖ ଦେଖି ସଂସାରୁ ନରେ ଯିବେ ତରି ।
ଲେଖେ ମୁଁ ଶାରଦା ପୁତ୍ର ହୋଇଣ ଜନମ
ତେଣୁ ସେହିମାତା ମୋତେହୋଇଲେ ପ୍ରସନ୍ନ
ତେଣୁ ସେଦେବୀର ମୋତେ ହୋଇଲାକରୁଣା
ତେଣୁ ଏ ଗ୍ରନ୍ଥ ଲେଖଇ ମୁଁ ହୋଇଣ ବଣା ।
ସେଦେବୀର ଚରଣକୁ ନିତ୍ୟେ ମୋର ଆଶ
ଶରଣ ଗଲି ମୁଁ ବିପ୍ର ପୀତାମ୍ବର ଦାଶ ।

•

## ଭାରତଯୁଦ୍ଧ

ଏଠାରୁ କହୁଛି ଏବେ ଆନ ଯେ ଆଖ୍ୟାନ
ଶୁଣି ସାଧୁଜନେ ହାସ୍ୟ ନ କରିବ ପୁଣ ।
ସୁଚି ପ୍ରମାଣେ ଲେଖିବି ମୁହିଁ ପଦବାଛି
ଶ୍ରୀ ମହାଭାରତ ଯୁଦ୍ଧ ପୁରାଣେ ଯା ଅଛି ।
ଗାଣ୍ଡିବ ଧନୁ ଧରିଣ ଅର୍ଜ୍ଜୁନ ଉଠିଲେ
ଭୀଷ୍ମଙ୍କ ସଙ୍ଗତେ ଦଶଦିନ ଯୁଦ୍ଧ କଲେ ।
ସେ କୁରୁକ୍ଷେତ୍ରରେ ମଲେ ଅନେକ ଯେ ଜନ
ଦିନକେ ଲେଖା ହୁଅନ୍ତି ଦଶସସ୍ର ସୈନ୍ୟ ।
ଯୁଦ୍ଧରେ ଯେ ଶିଖଣ୍ଡୀକି ଦେଖି ଭୀଷ୍ମ ରଥୀ
କାମଶରେ ମୋହ ହୋଇ ମଲେ ମାଡ଼ିପୃଥ୍ୱୀ
ଭେଦିଲାରୁ ମେରୁ ଶିଖଣ୍ଡୀର ଶର ପଡ଼ି
ଶରୀରରେ ବିଷ୍ଣୁ ଜ୍ୱର ପଡ଼ିଲାକ ମାଡ଼ି ।
ଶରଶଯ୍ୟାରେ ଶୁତିଲେ ଭୀଷ୍ମ ପୁଣି ଯାଇ
ଶୁଣ ଜନ୍ମେଜୟ ବଇଶମ୍ପାୟନ କହି ।
ପୁଣି ପାଞ୍ଚଦିନ ଯୁଝିଲେକ ଦ୍ରୋଣଗୁରୁ
ହୋଇଲେ ସେ ସେନାପତି ସମରେସେଠାରୁ
କୁଟେ ସେ ଶଙ୍କଟ ବ୍ୟୂହ ରଚନା ଯେକଲେ
ବ୍ୟୂହେ ପୂରାଇଣ ଅଭିମନ୍ୟୁକୁ ମାଇଲେ ।
ଅନେକ ଯୁଦ୍ଧ କରିଣ ମାରି କ୍ଷତ୍ରିଗଣ
ଶୁଣ ଆହେ ଜନ୍ମେଜୟ ଦ୍ରୋଣ ପୂତ୍ର ପୁଣ ।
ଅଶ୍ୱଥାମା ବୋଲି ଏକଥିଲା ପାଟହସ୍ତୀ
ଯୁଦ୍ଧରେ ସେ ମଲା ବୋଲିରଣେହେଲାଖ୍ୟାତି
ସେ ହସ୍ତୀକି ଭୀମସେନ ମାରି ଫିଙ୍ଗିଦେଲେ
ପଞ୍ଚକଟକକୁ ଡେଇଁ ଯମୁନା ଜିଣିଲେ ।
ଅଶ୍ୱଥାମା ମଲା ବୋଲି ଶବ୍ଦ ଶୁଭିଯାନ୍ତେ
ସେ କଥା ଶୁଣିଲେ ଦ୍ରୋଣ ସର୍ବ ମୁଖାଗ୍ରତେ ।
ପୂତ୍ର ମୃତ୍ୟୁ ଶୁଣି ଦ୍ରୋଣ କଲେ ହାହାକାର
ଶୋକକଲେ ଭୂମିରେ ସେ ଥୋଇ ଧନୁଶର
ଦ୍ରୋଣଙ୍କୁ ଦେଖିଣ ଧୃଷ୍ଟଦ୍ୟୁମ୍ନ ଗଲେ ଧାଇଁ
ଦେଖିଲେକ ଶୂନ୍ୟହସ୍ତେ ଦ୍ରୋଣଛନ୍ତି ରହି ।
ତତକ୍ଷଣେ ଧୃଷ୍ଟଦ୍ୟୁମ୍ନ ଧନୁଶର ଧରି
ଦ୍ରୋଣଙ୍କର ବେକ ଛେଦି ପକାଇଲେ ମାରି ।
ଏ ରୂପେ ପଡ଼ିଲେ ରଣ ମଧେ ଦ୍ରୋଣଗୁରୁ
କୁରୁବଂଶରେ ମରୁଡ଼ି ଶୁଣ ଏହିଠାରୁ ।
ଦୂର୍ଯ୍ୟୋଧନ ରାଜାର ଯେ ଅଠାଣୋଇ ଭାଇ
ସବୁଙ୍କୁ ମାରି ଗଦାରେ ଦେଲା ଭୀମ ଶ୍ୱାଇ ।
ଦୂଃଶାସନର ଉପାଡ଼ି ନେଲା ବେନି ଭୁଜ
ଶୂନ୍ୟେ ଫିଙ୍ଗିଦିଅନ୍ତେ ତା ଦେଖି ଦେବରାଜ ।
ନନ୍ଦିଘୋଷ ରଥେ ବସି ଶଙ୍ଖ ଶବ୍ଦ କଲେ
ଏଥଉତ୍ତାରେ କହିବା ଶୁଣ ତାହା ଭଲେ ।
ଅଢ଼େଇଦିନେ ରାଧେୟ କଲେ ପୁଣି ଯୁଦ୍ଧ
କାଳସର୍ପ ଶାପରେ ସେ ହେଲେ ଜାଣ ବଧ
ଅର୍ଦ୍ଧଦିବସ ସମର ଶଲ୍ୟ ପୁଣି କଲେ
ଯୁଧିଷ୍ଠିଙ୍କ ଦାଢ଼ି ଝିଙ୍କି ଶାପେ ଜଳିଗଲେ ।

ଅଠର ଦିନର ଅନ୍ତେ ହେଲା ମହାଯୁଦ୍ଧ
ଲକ୍ଷ୍ମଣ କୁମର ହେଲା ରଣେ ପ୍ରାଣେ ବଧ ।
ଶକୁନି ସହିତେ ଗଲେ ସମସ୍ତେ ଯେ ମରି
ଏଥୁ ଅନନ୍ତରେ ଶୁଣ ଆହେ ଦଣ୍ଡଧାରୀ ।
ପ୍ରଭାତରୁ ଦୁର୍ଯ୍ୟୋଧନ ପଳାଇଣ ଗଲା
ବ୍ୟାସ ସରୋବରେ ଯାଇଁ ପ୍ରବେଶ ହୋଇଲା
ଲୁଚିଣ ରହନ୍ତେ ତହୁଁ ପଛଘୁଞ୍ଚା ଦେଇ
ସେଠାକୁ ଗଲେ ଶ୍ରୀକୃଷ୍ଣ ଘେନି ପାଞ୍ଚଭାଇ ।
ବ୍ୟାସ ସରୋବରେ କେହି ପଶି ନ ପାରିଲେ
ପଦାରେ ଥାଇ ଉପାୟମାନ କୃଷ୍ଣ କଲେ ।
ବୋଇଲେକ ସିଂହାସନ ଦିଅ ଭୀମସେନ
ତକ୍ଷାଳେ ଆପେ ମିଳିବ ଆସି ଦୁର୍ଯ୍ୟୋଧନ ।
ତିନିନାଦେ ତୋହର ନ ଆସନ୍ତେ ସେ ଉଠି
ରଡ଼ିଦେବା ଲୋକର ଯେ ମୂର୍ଦ୍ଧା ଯିବ ଫାଟି ।
ଭୀମସେନ ବୋଇଲା ଏ ଲୁଚିଲା କାହିଁକି
ଆଜ୍ଞାଦେଲେ ଜଳେ ପାଶି ଆଣିବଇଁ ଝିଙ୍କି ।
କୃଷ୍ଣ ବୋଇଲେ ଭୀମ ଏ ଜଳ ବଡ଼ ଦୋଷୀ
ଏ ଜଳକୁ ସ୍ଥାପି ଯାଇଛନ୍ତି ବ୍ୟାସ ଋଷି ।
ଶତ୍ରୁକୁ ଯେ ଏହି ଜଳ ଅଟେ ବଡ଼ ଦୋଷ
ଶରଣ ଲୋକକୁ ଅଟେ ଏ ଅମୃତ ରସ ।
ଶୁଣିଣ ସେ ଭୀମସେନ ଉଠିଲା ତକ୍ଷାଳେ
ବାଦ୍ୟ ବାଜନ୍ତେ କମ୍ପିଲେ ନାଦେ ଦିଗପାଳେ
ପୁଣିହିଁ ନାଦ ଟେକିଣ ଛାଡ଼େ ସିଂହରଡ଼ି
କମ୍ପେ ଦୁର୍ଯ୍ୟୋଧନ ଦେଲା ଆସନକୁ ଛାଡ଼ି ।
ହସ୍ତରେ ନିଶ ମୋଡ଼ିଣ ପାଞ୍ଚେ ଅନ୍ଧବସି
ବୋଲେ ମୁହିଁ କେଡ଼େ କ୍ଷତ୍ରୀ ରହିବି କି ଲୁଚି ।
ପନ୍ନଗ ନାରାୟଣଟି ଅଟେ ମୋର ନାମ
ଦେବାର୍ଚ୍ଚନେ ବସେ ଯହିଁ ଲକ୍ଷେ ଶାଳଗ୍ରାମ ।
ହସ୍ତେ ପଦ୍ମପାଦେ ପଦ୍ମ ଅଛି ମୋର ପୁଣି
ପାଷାଣେ ମୁଁ କର ଦେଲେ ସ୍ୱର୍ଣ୍ଣ ସେହିକ୍ଷଣି ।
ମାନଗୋବିନ୍ଦ ଯେ ମୁହିଁ ହସ୍ତିନା ନୃପତି
ପଞ୍ଚକଟକଯାକେ ମୁଁ ଏକା ଚକ୍ରବର୍ତ୍ତୀ ।
ଏକ ପତ୍ନୀ ମୋର ଅଟେ ଭାନୁମତୀ ରାଣୀ
ସାତଦିନେ ବରଷେ ହୋଏ ଦିନ ଗଣି ।
ଲକ୍ଷେ ରାଜାପରେ ମୁହିଁ ମୂର୍ଦ୍ଧା ଅଭିଷେକୀ
ଏଡ଼େ ରାଜା ହୋଇ ମୁହିଁ ଲୁଚିବି କାହିଁକି ।
ଏ ଛାର ଭୀମା ପଡୁଛି ଆସି ମୋତେ ବୋବି
ଗଲେ ନିଶ୍ଚେ ନିଷ୍ପାଣ୍ଡବା ଆଜି କରିଦେବି ।
ରାଜାର ଏ କଥାଯାକ ଶୁଣି କମଳିନୀ
କୋମଳ ବାକ୍ୟେ କହନ୍ତି ବୋଧେ ଠାକୁରାଣୀ ।

ଲକ୍ଷ୍ମୀ ବୋଇଲେ ରାଜା ତୁ ଶୁଣ କୁରୁସାଇଁ
ଘଡ଼ିଏ ସହିଲେ ଆଉ ନ ମରିବୁ ତୁହି ।
ରହିବି ବ୍ରହ୍ମାପ୍ରଳୟ ଯାଏ ଦେହଧରି
ଏ କଥା ନିଶ୍ଚୟ ସତ୍ୟ ଜାଣ ଦଣ୍ଡଧାରୀ ।
ଲକ୍ଷ୍ମୀର ବାକ୍ୟ ଗୋଟି ଶୁଣି କୁରୁସାଇଁ
ବୋଲେ କମଳା ଏଠାରୁ ବେଗେ ଯା ତୁ ତହିଁ
ମହତ୍ୱ ବୁଡ଼ାଇ ଆମ୍ଭେ ପ୍ରାଣ ପୋଷିବା କି
ସବୁକଥା ଯାଉ ଥିବା ମହତକୁ ରଖି ।
ମହତ୍ୱ ବୁଡ଼ାଇ ଯେହୁ ହୁଏ ନାରଖାର
ତାହାଙ୍କ ଜୀବନ ଅଟେ କେତେକ ମାତର ।
ସଂସାରେ ମହତ୍ୱ ଛାଡ଼ି ରହନ୍ତି ଯେ ଲୋକ
ତାହାକୁ ବୋଲନ୍ତି ପୃଥ୍ୱୀଯାକ ଅଲାକୁକ ।
ଆମ୍ଭେ ଅଟୁଁ କେଡ଼େ ରାଜା ମୂର୍ଦ୍ଧା ଅଭିଷେକୀ
ଏ ଛାର କଥାକୁ ଡରି ଲୁଚି ରହିବା କି ।
ତୁ ଏବେ କମଳା ଗୋ ନକର ମୋତେ ନାହିଁ
ପଳା ଏଥୁ ବେଗେ ଆଗେ କିଛି ଯେ ନ କହି ।
ଅତିହିଁ ମାନେ ଯେ ମାନଗୋବିନ୍ଦ ମୋ ନାମ
କେତେ ମାଗିଲେ ଯେ ଭୂମି ନ ଦେଲି ମୁଁ ଜାଣ
ଖଣ୍ଡିଏ ଗ୍ରାମ ମାଗିଲେ ତାହା ମୁଁ ନ ଦେଲି
ପ୍ରାଣହିଁ ପଛେ ଯାଉ ନ ଦେଇ ଘଉଡ଼ିଲି ।
କାପୁରୁଷ ସିନା ଯାଇ ଲୁଚି କରେ ବାସ
ପରରେ ଅଡୁଆ ହୋଇ ବଢ଼େ ଦଶଦିଶ ।
ବୁଝିଲେ ତ ପୃଥ୍ୱୀଯାକ ତାକୁ ନ ଥିଲା କି
କୁମାର୍ଗ ଲୋକକୁ ବୁଦ୍ଧି କେବେ ଛାଡ଼ଇ କି ।
ଆବର ପଶନ୍ତି କୁପୁରୁଷେ ଯାଇ ଗୋଟି
ଗୋଟି ଶବଦ ବହିଣ ହୁଏ ପେଷା ନିତି ।
କୁଟୁମ୍ବଯାକ ଛାଡ଼ିଣ ରହେ ପର ଘରେ
ତାହାର ଜୀବନ ଧିକ ଅଟଇ ସଂସାରେ ।
ଶ୍ୱଶୁର ଘରେ ଜ୍ୱାଇଁରହେ ଯେବେ ଯାଇ
ଦିନକୁ ଦିନ ଆଦର ତାର ଊଣା ହୋଇ ।
କି ରୂପେ ଖସିବି ବୋଲି ହୁଏ ଛଟପଟ
କତରା ଖଣ୍ଡେ ଧରିଣ ଖୋଜେ ଦାଣ୍ଡ ବାଟ ।
ଆପଣା ରାଜ୍ୟ ଛାଡ଼ିଣ ଯେଉଁ ଦଣ୍ଡଧାରୀ
ପର ରାଜ୍ୟରେ ଶରଣ ପଶେ ଯାଇ ଡ଼ରି ।
ତାହାର ଜୀବନ ଗୋଟି ଅଟେ ଜାଣ ଧିକ
ବୁଝିଲେ ତ ପଞ୍ଚରାଜ୍ୟ ମୋର ସୁନାଟକ ।
ମନର ଦୁଃଖେ ପଳାଇ ସିନା ଆସିଥିଲି
ଦୁଇଥର ଦେଲା ରଡ଼ି ସହି ନ ପାରିଲି ।
ଅଭବ୍ୟ ଲୋକ ଲକ୍ଷେକ ବର୍ଷ ଜୀଇଥିଲେ
ଭୋଗଯୋଗ୍ୟକୁ ଲେଖାନକରେ ତାକୁଭଲେ ।

ଏ ରୂପେ ବୋଲିଣ ରାଜା ହସ୍ତେ ନିଶ ମୋଡ଼ି
କେରେକେରେ ତୁହିବୋଲି ଧାଏଁ ଦାନ୍ତଭିଡ଼ି ।
ଭୀମସେନ ବୋଲେ ଭାଇ ଲୁଚିଥିଲ କାହିଁ
ସବୁଙ୍କୁ ଦେଲି ମାରି ତୁ ଏକା ଅଛୁ ରହି ।
ମରଣ ଛାରକୁ ଡରି କିମ୍ପା ପଳାଇଲୁ
ମୃତ୍ୟୁ ମୁଣ୍ଡେ ମାଡ଼ି ବସିଅଛି ନ ଜାଣିଲୁ ।
ପ୍ରାଣୀକି ଅଛଟକେ ଯେରୂପେ ମୃତ୍ୟୁ ହୋଇ
ତହିଁକି କହୁଛି ଦୁଇଚାରି ଶୁଣ ତୁହି ।
ଦେହ ଚିକ୍କଣ କରି ସଭାରେ ଥାଏ ବସି
ଶୂନ୍ୟରୁ ଚଢ଼କ ଗୋଟି ପଡ଼େ ମୁଣ୍ଡେ ଖସି ।
କିବା କାହାକୁ କିରୂପେ ମୋର ଘଡ଼ଘଡ଼ି
ବାଜନ୍ତେ ମୃଣ୍ଡ ଫାଟିଣ ତଳେ ପଡ଼େ ମରି ।
କେହି ଅବା ସର୍ପାଘାତେ ପ୍ରାଣ ବିସର୍ଜଇ
କେଅବା ବ୍ୟାଘ୍ରର ମୁଖେ ପଡ଼ି ମରିଯାଇ ।
ଅନ୍ନଭୁଞ୍ଜୁ ତୋଟିରେ ଯେଲାଗି କେବାମରେ
କେହି ଅବା ଝୁଣ୍ଟି ପଡ଼ି ମରଇ ତପ୍ତରେ ।
ଏରୂପେ ସବୁରି ମୃଣ୍ଡେ ମୃତ୍ୟୁ ଜାଣ ଅଛି
ଏହା ନଚିହ୍ନିଣ ପ୍ରାଣୀ ମନେ ମନ୍ଦ ପାଞ୍ଚି ।
ମୃତ୍ୟୁକୁ ଏଡ଼ି ପିଣ୍ଡ ନ ପାରେ କେହି ରଖି
ତୁହି ମଲେ ଭାନୁମତୀ ରାଣ୍ଡ ହୋଇବ କି ।
ଦୁର୍ବଳ କାର୍ଯ୍ୟ କରିବୁ ତୋର ଆମ୍ଭେ ଜାଣ
ଏ କଥା ସତ୍ୟ କହିଲୁ ତୋତେ କୁରୁରାଣ ।
ନୃପତି ବୋଇଲା ଶୁଣରେ ପବନ ପୁଅ
କାହାକୁ କରିଛ ରାଜା ତୁମ୍ଭ ଥାଟେ କହ ।
ମୁହିଁ ଅଟେ ମହାରାଜା ନୃପ ଶିରୋମଣି
ରାଜା ସଙ୍ଗେ ରାଜା ସିନା ହେବ ହଣାହଣି ।
ଶୁଣିଣ କୃଷ୍ଣକୁ ହେଲା ଭୀମସେନ ଚାହିଁ
ଭୀମ ଚାହିଁବାର ଦେଖି ଜାଣି ଭାବଗ୍ରାହୀ ।
ତହିଁକି କଥାଏ ପାଞ୍ଚି କହିଲେ ମୋହନ
ବୋଇଲେ ଆମ୍ଭର ରାଜା ଅଟେଭୀମସେନ
ଶ୍ରୀକୃଷ୍ଣଙ୍କ ମୁଖୁ ଶୁଣି ଦୁର୍ଯ୍ୟୋଧନ ରାଜା
ବୋଇଲା ଭଲ ଲଗାଇଅଛି ବିଷ୍ଣୁ କଜ୍ୟା ।
ସଂସାରେ ନ ଥିବା କଥା କି ବୋଲି କହୁଛ
ଏଥକୁ କଥାଏ ମୁହିଁ କହିବି ତା ପାଞ୍ଚ ।
ବୋଲଇ ତୁମ୍ଭର ରାଜା ଅଟେଯେବେ ସେହୁ
ଏବେ ପ୍ରମାଣ କର ଏ କଥା ବୁଝାଯାଉ ।
ଯୁଧିଷ୍ଠି ଶ୍ରୀକୃଷ୍ଣ ଆଦି ଏଥେ ଯେତେ ଅଛ
ପ୍ରମାଣ କଲେ ପ୍ରତ୍ୟୟ ଯିବି ମୁଁ ଶ୍ରୀବତ୍ସ ।
ରାଜାର କଥାର ମାର୍ଗ ଜାଣି ଚକ୍ରପାଣି
ଧର୍ମକୁ ଯେ ଚିନ୍ତାକରି ବସିଲେ ସେକ୍ଷଣି ।
ତାହା ଜାଣି ଧର୍ମ ରାଜା ତକ୍ଷଣେ ଆସିଲେ
ଭୀମର ମଥାରେ ଆସିକରି ବିଜେ କଲେ ।
ଶଙ୍ଖ ଚକ୍ର ଗଦା ପଦ୍ମ ଧାରୀ ରୂପ ଧରି
ବୃକୋଦର ମଥାରେ ସେ ଆସି ବିଜେକରି ।
କାହାକୁ ହିଁ ଜଣାନାହିଁ ଦିଶେ ଯୁଧିଷ୍ଠିଙ୍କୁ
ସ୍ୱରୂପ ଯାକ ତାହାର ଦିଶେ ଆସି ତାଙ୍କୁ ।
ଦେଖିଣ ଯୁଧିଷ୍ଠିଦେବ କଲେ ନିଉଛାଳି
ଚରଣେ ଅର୍ଘ୍ୟ ଦେଇଣ ଚାମର ସେ ଢ଼ାଳି ।
ଯେରୂପେ ଲକ୍ଷ୍ମଣ ଭ୍ରତ ରାମଙ୍କୁ ପୂଜନ୍ତି
ସେରୂପେ ସେ ପୂଜା କଲେ ବ୍ୟାସରଷି ନାତି
ଧର୍ମରାଜ କଥା ନାହିଁ କାହାକୁ ଯେ ଜଣା
ସବୁ ଏକା ଜଗନ୍ନାଥ ଭିଆଣ ହିଁ ସିନା ।
ଏରୂପେ ପୂଜା ସାରିଣ ଯୁଧିଷ୍ଠିର ରାୟ
ଧର୍ମକୁ ସେ ସେବାକଲେ ମନୁ ଛାଡ଼ି ଭୟ ।
ଭୀମଙ୍କ ପାଦେ ଶୁତିଲେ ଧର୍ମ କରଯୋଡ଼ି
ଶ୍ରୀକୃଷ୍ଣ ଶୁତିରେ ଯୁଧିଷ୍ଠିଙ୍କ ପାୟେ ପଡ଼ି ।
ଶ୍ରୀକୃଷ୍ଣଙ୍କ ପାଦତଳେ ଅର୍ଜ୍ଜୁନ ପ୍ରଣମି
ନମିଲେ ନକୁଳ ସହଦେବ ଅନ୍ତର୍ଯ୍ୟାମୀ ।
ଦେଖି ରାଜା ଦୁର୍ଯ୍ୟୋଧନ ହେଲା ଚମତ୍କାର
ବୋଇଲା କେଡ଼େ କଥାଏ କଲା ଯୁଧିଷ୍ଠିର ।
ଏଡ଼େ ପୁରୁଷ ଏ କଲା ସାନକୁ ଯେ ମାନ୍ୟ
ଜାଣିବେ ଏଥର ଦୋଷ ଯେତେ ଭଗବାନ ।
ସେ ଅବା ମରିବ କି ମୁଁ ଅବା ଯିବି ମରି
ଧାତା ସୃଜିବା କଥା କେପାରେ ଆନକରି ।
ଏଥର ବିହି ମୋତେ ନପାରେ କେବେରଖି
ଆସ ଆରେଭୀମ ବୋଲି ଡ଼ାକେ ବାହୁଟେକି
ବୋଇଲା ଦେଖ ମୋ ହସ୍ତେ ନାହିଁ ଧନୁଶର
କରିବା ଯେ ମାଲଯୁଦ୍ଧ ଆସ ବୃକୋଦର ।
ଭାଇମାନଙ୍କୁ କହିଣ ଆପେ ଉଠି ଆସ
ଏକ ମୁଥ ମାରି ତୋତେ କରିବି ବିନାଶ ।
ଶୁଣିଣ ଯେ ମନେ ମନେ ହସି ଭୀମସେନ
ବୋଇଲା ଦେଲୁଣି ମୃଣ୍ଡପଞ୍ଚକ ଯେ ଦାନ ।
ଶୁଣି ମନେ ମନେ ହସିଲାକ କୁରୁସାଇଁ
ବୋଇଲା ଦେଇଛି ଅଧେ ଅଯୋଧ୍ୟାରୁ ମୁହିଁ ।
ବ୍ରାହ୍ମଣମାନଙ୍କୁ ଡାକି ସବୁ ଦାନ ଦେଲି
ରାତ୍ରଅର୍ଦ୍ଧରୁ ଉଠିଣ ପଳାଇ ଅଇଲି ।
ଶୁଣିଣ ଉଠିଲା ଭୀମସେନ ଗଦା ଥୋଇ
ବୋଇଲା ମୁଁ ଲୋଡୁଥିଲି ଏ କଥାରେ ଭାଇ ।
ଏରୁପେ ବୋଲିଣ ଭୀମ ଆଗେ ଉଭା ହେଲା
ବେନି ବାହୁ ବିସ୍ତାରିଣ ରାଜା ହିଁ ଧାଇଁଲା ।

ଭୀମସେନକୁ ଧରି କଚାଡ଼ି ମାଡ଼ି ବସି
ମଲୁରେ ପାଣ୍ଡବ ବୋଲି ଧଇଲା ଆକର୍ଷି ।
ବୋଇଲା କି ହେତୁ ତୁ ଘେନିଲୁ ଦଣ୍ଡବତ
ତେଣୁ ଅଳ୍ପାୟୁଷ ହେଲୁରେ ପବନ ସୁତ ।
କନିଷ୍ଠ ହୋଇ ଜ୍ୟେଷ୍ଠରେ ଓଳଗି ତୁ ଘେନି
ତେଣୁ ତୋର ଅଳପକେ ହେଲା ଆୟୁହାନି ।
କ୍ଷଣେହେଁ ବଞ୍ଚାଇ ଦୋଷ ନ ପାରିଲୁ ଭାଇ
ଏରୂପେ ବୋଲିଣ ହୃଦେ ଘୋରମୂଥ ଦେଇ ।
ସେ ମୁଥ ବାଜନ୍ତେ ଭୀମ ଓଲଟାଇ ଦେଲା
ମଲୁଆରେ ଅନ୍ଧପୁଅ ବୋଲି କୋପକଲା ।
ଶିର କେଶ ଝିଙ୍କି କଚାଡ଼ିଣ ଦେଲା ମାଡ଼ି
ବସିଲାକ ବୁକୁପରେ ଚକାସନ ମାଡ଼ି ।
ମଲୁରେ ଗାନ୍ଧାର ପୁଅ ବୋଲିଣ ଡାକିଲା
ଚାପୋଡ଼ା ଗୋଟିଏନେଇ ଗାଲରେ ମାଇଲା
ବିଶ୍ୱରୂପ ହୋଇ ଛାଡ଼ିଲାକ ଘୋର ରଡ଼ି
ଶୂନ୍ୟରୁ ଶବଦ ଯେହ୍ନେ ପଡ଼େ ଘଡ଼ଘଡ଼ି ।
ଭୂମିରୁ ଦୁହେଁ ଉଠିଣ ଘୋର ଯୁଦ୍ଧ କଲେ
ପିଟିବା ମାତ୍ରକେ ବୃକ୍ଷ ଗୁଣ୍ଡା ହୋଇଗଲେ ।
ଧରାଧରି ମରାମରି ପିଟାପିଟି ହୋନ୍ତେ
ଉଡ଼ିଲା ଭୂମିର ଧୂଳି ଆକାଶ ପର୍ଯ୍ୟନ୍ତେ ।
ଶତେକ ସିଂହର ବଳ ଧରେ ଭୀମସେନ
ଦୁର୍ଯ୍ୟୋଧନର ଉପରେ ମାଡ଼ିବସେ ପୁଣ ।
ନୃସିଂହ ସ୍ୱରୂପ ପ୍ରାୟ ରୂପ ପ୍ରକାଶିଲା ।
ବୁକୁରେ ଚଢ଼ି ଅନେକ ତାକୁ ଦୁଃଖ ଦେଲା
ଦେଖିଣ ଶ୍ରୀଜଗନ୍ନାଥ ଭୀମେ ଦେଲେ ଚାହିଁ
ବୋଇଲେ ଗଦା ନାହୁଁ କି ହସ୍ତେ ଧରି ତୁହି
ବୁଝିଲେ ତ କ୍ଷତ୍ରୀ ଲୋକ ଅସ୍ତ୍ର ନ ଛାଡ଼ନ୍ତି ।
ଯେଣେହେଁ ଗଲେ ହସ୍ତରେ ଖଣ୍ଡେ ଧରିଥାନ୍ତି
ତୋ ପରା କ୍ଷତ୍ରୀ ହୋଇଣ ପାଶୋରି ଯାଦେଲୁ
ଶୂନ୍ୟ ହସ୍ତରେ ସମର ଯାଇ କିମ୍ପା କଲୁ
ଏହା ଶୁଣି ଭୀମସେନ ଗଦା ଧରି କରେ
ବାତଚକ୍ରେ ବୁଲାଇଣ ପିଟେ କୋପଭରେ ।
ବୋଇଲା ଏ ମରଣ ଯେ ଅଟେ ଅପମୃତ୍ୟୁ
ଜାଣୁ ଜାଣୁ ମରାମରି ହେଲେ ରଖି ହେତୁ ।
ଅତର୍ଚ୍ଛ ମରଣ ହୁଏ ଅଟଇ ଜଗତେ
କୃଷ୍ଣ ନ ମାନିବା ଲୋକ ପଡ଼େ ଅପଘାତେ ।
ଏରୂପେ ବୋଲିଣ ଭୀମ ଗଦା ଧରି କରେ
ପିଟିଲା ନେଇ ରାଜାର ଆଧାର ଚକ୍ରରେ ।
ବାଜନ୍ତେ ସେ ଗଦାବର ହେଲା ବେନିଫାଳ
ଜାନୁ ଭାଙ୍ଗିଗଲା ରାଜା ହୋଇଲା ବିକଳ ।
ବସିଲା ଭୂମି ଉପରେ ହୋଇ ଜାନୁଭଗ୍ନ
ରଣରେ ଜୟ କରିଣ ଆସେ ଭୀମସେନ ।
ଶ୍ରୀକୃଷ୍ଣ ବୋଇଲେ ଧନ୍ୟ ଅଟୁ ବୃକୋଦର
ଏଠାରୁ ସରିଲା କୁରୁବଂଶ ଯୁଦ୍ଧ ତୋର ।
କଥାଏ ପୁଚ୍ଛିବା ଚାଲ ରାଜାକୁ ଯେ ଯାଇ
ବୋଲିବେ କିସ ଶୁଣିବା ତାହା ମନଦେଇ ।
ଏ ରୂପେ ବୋଲି ରାଜାର ଛାମୁକୁ ସେଗଲେ
କି କଲୁ ହୋ ଦୁର୍ଯ୍ୟୋଧନ ବୋଲି ପଚାରିଲେ
ଯେବେଣ ଦିନେମାଗିଲୁ ଆମ୍ଭେ ପଡ଼ା ତୋତେ
ଖଣ୍ଡିଏ ହେଲେ ଗ୍ରାମ ନ ଦେଲୁ କଦାଚିତେ ।
ଜନନୀ ଗର୍ଭୁ ଦ୍ରବ୍ୟ କି ଆଣିଥିଲୁ ତୁହି
ଗଲାବେଳେ ତହିଁକି କି ନେଲୁ କେତେ ବହି ।
ପାମର ମୂଢ଼ ମୂର୍ଖ ନ ପାରେ ଏହା ଚିହ୍ନି
ଲୋଭରେ ସେ ମରୁଥାଇ ପଦାର୍ଥକୁ ଘେନି ।
ନବୋଲେ ବିଷ୍ଣୁର କୋଠଭଣ୍ଡାର ଏ ସିନା
ନକରେ ଆତ୍ମାକୁ ମୋକ୍ଷ ଧରିକରି ନାନା ।
ମୋହର ବୋଲିଣ ସବୁ ଆବୋରି ସେଥାଇ
ଗଲାବେଳେ ତହିଁ ଚେନାଏ ଯେ ନନିଅଇ ।
ଶ୍ରୀକୃଷ୍ଣ ମୁଖୁଁ ଏମନ୍ତ ବାକ୍ୟ ରାଜା ଶୁଣି
ବୋଇଲା କହିବା କେବେ ଶୁଣ ଚକ୍ରପାଣି ।
ଦୁର୍ଯ୍ୟୋଧନ ବୋଇଲା ହେ ଶୁଣ ଭଗବାନ
ଏସବୁ ଯନ୍ତ୍ରଯାକ ତୁ କଲୁ ଉତପନ୍ନ ।
ତୋର ଭିଆଣ ଏସବୁ ଅଟେ ଜଗନ୍ନାଥ
ଅନନ୍ତ ପଢ଼ିହାରୀ ତୁ ହେଲୁ ଚଢ଼ି ରଥ ।
ସେହି ଠାବରୁ କପଟ କୂଟ ଜାତ କଲୁ
ଏକା ବଂଶରେ ସମର କରି ଆମ୍ଭେ ମଲୁ ।
ଯନ୍ତ୍ରରେ କରିଛ ସବୁ ଯନ୍ତ୍ର ସବୁ ତନ୍ତ୍ର
ଯନ୍ତ୍ରୀ ଜନ୍ମିଅଛୁ ମଧୁସୂଦନ ଯେ ତନ୍ତ୍ର ।
ପ୍ରକାଶେ ତୋହର ଗୁଣ ଯନ୍ତ୍ର ସବୁ ପୂଣ
ନୁହେଁ କିଏ ଏକା ଶବ୍ଦ ବାକ୍ୟ ଭିନ୍ନ ଭିନ୍ନ ।
ବୁଝିଲେ ଯନ୍ତ୍ର ତୋର ଏକା ଶୁଭେ ନାଦ
ସବୁ ହିଂସ୍ର ଯନ୍ତ୍ର ତୋର ହେ ପରମାନନ୍ଦ ।
ଏଣୁ ଦୋଷ ଗୁଣ ବେନି ପ୍ରକାରେ ଯେଅଛି
ପଢ଼ା ମାଗିଲେ ଆପଣ ଯାଇ ଶିରୀବସ୍ତି ।
ମୋ ହୃଦେ ପୁଣି ତୁ ଥାଇ କଲୁ ନାହିଁ ନାହିଁ
ମାଡ଼ ଖାଇଲେ ତା ହୃଦେ ଥାଇ ଭାବଗ୍ରାହୀ ।
ମୋ ହୃଦେ ଥାଇ ଲଭିଲୁ ଜାଣ ଏବେ ମୃତ୍ୟୁ
ସର୍ବ ଆତ୍ମାରେ ଲଗାଇଅଛି ଏହି ହେତୁ ।
ଶୁଣିଣ ବୋଇଲେ ଜଗନ୍ନାଥ ଆଚ୍ଛା ଆଚ୍ଛା
ଦେହକୁ କାଟିବାରୁ କି କଲୁ ଏହି ବାଞ୍ଛା ।

ଏବେଯେବେବୋଲୁଛୁ ଜୀଆଇଁ ତୋତେଦେବା
ଏଥକୁ ବିରୋଧ କିଛି ମନେ ନ ଧରିବା ।
ଶୁଣିଣ ଦୁର୍ଯ୍ୟୋଧନ ଶ୍ରୀକୃଷ୍ଣ ମୁଖ ଚାହିଁ
ବୋଇଲା ପଦେକହିବା ତୋତେ ଭାବଗ୍ରାହୀ
ଜଳରୁ ତ ଆଜିଯାଏ ଯେତେ ଗଲି କରି
ଲେଉଁଟି ଜୀଇଁଲେ ଥିବି ସେ କଥାରେ ମରି ।
ତେତେକ ଭୋଗକରି ମୁଁ ଆସି ଆଜଯାଏ
ଜୀଇଲେତ ପାପେ ଘାଣ୍ଟି ହେବି ଅପ୍ରମେୟେ
ମଲେଣି ସର୍ବେ ରହିବି କରି ମୁହିଁ କିସ
ଆଶୀର୍ବାଦ କରି ଚଳ ଆହେ ଜଗଦୀଶ ।
ଯେ ରୂପେ ମୁଁ ମୋକ୍ଷହେବି ସେ କଥାଟିକର
ଏତେ ଦିନରେ କରୁଛି ତୋତେ ନମସ୍କାର ।
କୃଷ୍ଣବୋଇଲେ ବୈକୁଣ୍ଠ ତୋତେ ଲାଭହେଉ
ଯେତେକରିଛୁ ଦୋଷ ସେସବୁ କ୍ଷୟ ଯାଉ ।
ନିଷ୍ପାପ ହୋଇ ବୈକୁଣ୍ଠପୁରେ ବସ ଯାଇ
ଏରୂପେ ଆଜ୍ଞାଦେଇଣ ଗଲେ ଭାବଗ୍ରାହୀ ।
ପାଣ୍ଡବଙ୍କୁ ସଙ୍ଗେ ଘେନି ବିଜେ ନାରାୟଣ
ମିଳିଲେ ଯାଇଣ ଇନ୍ଦ୍ରପ୍ରସ୍ଥେ ତତକ୍ଷଣ ।
ଦ୍ରୌପଦୀ କୁନ୍ତୀ ଆଦି ଏ ରଥେ ବିଜେ କଲେ
ଧୃଷ୍ଟଦ୍ୟୁମନଙ୍କୁ ସିଂହଦ୍ୱାରେ ଜଗାଇଲେ ।
ବୋଇଲେ ଗୃହେ ଅଛନ୍ତି ପାଣ୍ଡବଙ୍କ ପୋଏ
ଏହାଙ୍କୁ ରଖିବୁ ଆମ୍ଭ ଆଗମନଯାଏ ।
ଶୁଣିଣ ଦ୍ରୁପଦ ପୁତ୍ର ରହେ ଗୃହ ଜଗି
ଦ୍ୱାରକାପୁରେ ମିଳିଲେ ଯାଇଁ କୃଷ୍ଣ ବେଗି ।
ଶ୍ରୀଚନ୍ଦ୍ରଶାଳା ପୁରରେ ଯାଇଁ ବିଜେ କଲେ
ଭୋଜନସାରି ମାନଗୋବିନ୍ଦ କଥା ହେଲେ ।
ଏଥୁ ଅନନ୍ତରେ ବାଣୀ ଶୁଣ ଜନ୍ମେଜୟେ
ଦ୍ରୋଣଗୁରୁ ପୁତ୍ର କଥା କହିବା ଥୋକାଏ ।
ତୀର୍ଥକୁ ସେ ଅଶ୍ୱଥାମା ଚଳି ଯାଉଥିଲା
ଆସି ତତକାଳେ କୁରୁରାଜାକୁ ଭେଟିଲା ।
ବୋଇଲା କିହୋ ରାଜା ଏରୂପେ ଅଛୁ ପଡ଼ି
ନ ଦେଲୁ ମୋରେ କିମ୍ପାଇଁ ସେନାପତିଶାଢ଼ୀ
କେତେରୂପେ ମୁଁ ବୁଝାଇ କହିଲି ଯେତେକ
ସେ କଥା ନ କରି ଏବେ ମଲୁ ତୁ ବିଅର୍ଥ ।
ଏବେ ଆଜ୍ଞାଦେଲେ ପଞ୍ଚପାଣ୍ଡବଙ୍କୁ ମାରି
ଦେଖିବ ଆଣିବି ମୁଣ୍ଡମାନ ଦଣ୍ଡଧାରୀ ।
ଅନଘ ମୁକୁଟମଣି ଶିରେ ମୋର ବାନ୍ଧି
ମୁହୂର୍ତ୍ତମାତ୍ରେ ଯାଇଣ ଦେବି ଶିରଛେଦି ।
ଅଶ୍ୱଥାମାର ବଚନ ଶୁଣି କୁରୁରାଜେ
ବୋଲେ ମୁକୁଟ ବାନ୍ଧିବି ଆଉ କେଉଁ ଲାଜେ ।

ଲକ୍ଷ୍ମଣ କୁମାର ଆଦି ଗଲେ ସବୁ ମରି
ଯୁଦ୍ଧେ ମଧ ଜାନୁଭଗ୍ନ ହୋଇଛି ମୋହରି ।
ଏଥିରେ ମୁକୁଟ ମୁହିଁ ବାନ୍ଧିବି କି ଲାଜେ
ଶ୍ୱେତଦୁବ ଶିରେବାନ୍ଧି କର ବେଗେ ବିଜେ ।
ଶୁଣିଣ ସେ ଅଶ୍ୱଥାମା ରାଜା ଆଜ୍ଞା ପାଇ
ଇନ୍ଦ୍ରପ୍ରସ୍ଥକୁ ତକ୍ଷଣେ ଗଲା ବେଗେ ଧାଇଁ ।
ଦେଖିଲା ଧୃଷ୍ଟଦ୍ୟୁମନ ଦ୍ୱାରେ ଅଛି ବସି
ପାଞ୍ଚିଲା ପିତାର ଶତ୍ରୁ ବୋଲି ଦ୍ରୋଣଶିଷି ।
ତତକ୍ଷଣେ ଶିରଝୁଣି ଦେଲା ମୁଣ୍ଡ ହାଣି
ଭିତରପୁରେ ପଶିଲା ଯାଇ ଗୁରୁ ଦ୍ରୋଣି ।
ଦେଖିଲା ପାଞ୍ଚାଳୀ ପୁତ୍ରେ ଛନ୍ତି ନିଦ୍ରା ଯାଇ
ପାଣ୍ଡବେ ଏମାନେ ବୋଲି ବିଚାରିଲା ତହିଁ ।
ସେ ପାଞ୍ଚ ପୁତ୍ରଯାକର ଦେଲା ଶିର ଛେଦି
ପାଣ୍ଡବେ ମଲେତ ହେଲା ମୋର କାର୍ଯ୍ୟସିଦ୍ଧି
ଧନୁରେ ଖଞ୍ଜିଣ ମୁଣ୍ଡ ନେଲା ଭାରକରି
ଦୁର୍ଯ୍ୟୋଧନକୁ ଭେଟିଲା ଯାଇଁ ବ୍ରହ୍ମଚାରୀ ।
ପାଞ୍ଚଗୋଟି ମୁଣ୍ଡ ନେଇ ଆଗେଦେଲା ଥୋଇ
ଦେଖେ ଦୁର୍ଯ୍ୟୋଧନ ବସି ଶ୍ରଦ୍ଧାବନ୍ତ ହୋଇ ।
ବୋଲଇ ଆସିଲୁ ଅଳ୍ପକ୍ଷଣେ କାର୍ଯ୍ୟକରି
ତୋହର ପ୍ରାୟ କ୍ଷତ୍ରୀ ନ ମିଳେ ତିନିପୁରୀ ।
ଏରୁପେ ବୋଲିଣ ରାଜା ହସ୍ତେ ଶ୍ରଦ୍ଧାମନେ
ପାଞ୍ଚଗୋଟି ମୁଣ୍ଡ ନେଇ ଧଇଲା ଯତନେ ।
ଲେଉଟ ପାଉଟ କରି ଦେଖି ନୃପବର
ନୁହନ୍ତି ପାଣ୍ଡବ ବୋଲି ଚିହ୍ନିଲା ତତ୍ପର ।
ବୋଇଲାରେ କେଡ଼େକର୍ମ କଲୁ ଗୁରୁଦ୍ରୋଣି
ଆଣିଲୁ ପାଞ୍ଚାଳୀ କୁମାରଙ୍କୁ ବ୍ୟର୍ଥେ ହାଣି ।
ଜୀବନ ତୋହର ଧିକ ହେଉ ବିପ୍ରବର
ବାଳପୁତ୍ରଙ୍କୁ ତୁ ମାରି ଆଣିଲୁ ମୋହର ।
ଏଣେ ତ ବଂଶ ଅଛି ମୁଁ ବୋଲି ଜାଣିଥିଲି
ପୋଢୁ ତୋର କ୍ଷତ୍ରିପଣ ଏତେକେ ଚିହ୍ନିଲି ।
ଉତ୍ତମ କ୍ରମର ପ୍ରାୟ ପ୍ରତିଜ୍ଞା ଯେ କଲୁ
କିବୋଲି ବାଳକ ମାରି ମୋଠାକୁ ଆଣିଲୁ ।
ତୋହର ପ୍ରାୟ ସମର କରି ଲକ୍ଷେ ଗଲେ
ପାଣ୍ଡବେ ମରନ୍ତେ କି ଶ୍ରୀକୃଷ୍ଣ ଜୀଇଁଥିଲେ ।
ତୋଠାରୁତ ଅଲାଜୁକ ଏ ସଂସାରେ ନାହିଁ
ମୁକୁଟ ମାଗିଥିଲ କି ପାଗବନ୍ଧା ପାଇଁ ।
ଯାଅ ଯାଅ ଚଣ୍ଡାଳରେ ମୋ ପାଖରୁ ଘୁଞ୍ଚ
ତୋର ମୁଖ ଚାହିଁବାକୁ ବିମୁଖ ଲାଗୁଛି ।
ଶୁଣି ବୀର ଅଶ୍ୱଥାମା ମନେ କୋପ ବହି
ବୋଇଲା ଯାଉଛି ପାଣ୍ଡବଙ୍କୁ ମାରିବଇଁ ।

ଯହିଁ ଥିଲେ ଖୋଜଣ ମୁଁ ମାରିବି ଏ ଧାପେ
ମୁଁ ଏହି ଝିଙ୍ଗାସ ଶୁଣି ରହିବି କିରୂପେ ।
ପାଣ୍ଡବେ ଦ୍ୱାରକାପୁରେ ଛନ୍ତି ସିନା ରହି
କ୍ଷଣକେ ମାରି ଯିବି ମୁଁ ରାଜାଙ୍କୁ ଯେ କହି ।
ଏରୂପେ ପାଞ୍ଚଣ ଦ୍ରୋଣି ଦ୍ୱାରକା ଚଳିଲା
କାଂଶିକା ଶର ଧରିଣ ମନ୍ତ୍ରି ଛାଡ଼ିଦେଲା ।
ବୋଇଲା ତୁ ପାଣ୍ଡବଙ୍କୁ ମାରି ବେଗେ ଆସ
ରାଜା ଛାମୁରେ କହିଣ ଯିବୁ ନିଜ ଦେଶ ।
ଶୁଣିଣ ଶର ପଶିଲା ଯାଇଁ ଦ୍ୱାରକାରେ
ପଞ୍ଚୁପାଣ୍ଡବଙ୍କୁ ଖୋଜଇ ସେ ଘରେ ଘରେ ।
ଜାଣିଲେ ଶ୍ରୀକୃଷ୍ଣ ପ୍ରଭୁ ତାହା ତତକ୍ଷଣ
ବ୍ରହ୍ମଶରକୁ ଆସିଣ କଲେ ନିମନ୍ତ୍ରଣ ।
ବୋଇଲେପାଣ୍ଡବେ ଆମ୍ଭେଥାନ୍ତେ ମରିବେକି
ଆପଣ ତ ସେହି କଥାଗୋଟି ନ ଜାଣ କି ।
କାଂଶିକା ବୋଲେ ଶୁଣିବା ପ୍ରଭୁ ନାରାୟଣ
କାହିଁକି ପେଶିଲାମୋତେ ଅଶ୍ୱଥାମା ଜାଣ ।
ପାଞ୍ଚାଳୀ କୁମାରଯାକ ମାରି ଘେନିଗଲା
ମାନଗୋବିନ୍ଦର ଆଗେ ନେଇ ମୁଣ୍ଡଦେଲା ।
ପୁତ୍ରଙ୍କୁ ଦେଖି କେତେହେଁ କଲା ରାଜା ଶୋକ
ବୋଇଲାରେ ଅଶ୍ୱଥାମା ଜୀବନ ତୋ ଧିକ ।
ତେଣୁସେକୋପେ ପେଶିଲାଜାଣ ପ୍ରଭୁମୋତେ
ଅଣବାହୁଡ଼ା ମୁହିଁ ନ ଯାଇ କଦାଚିତେ ।
କାହାକୁ ହେଲେ ଜଣେ ଶ୍ରୀମୁଖେ ଦିଅ କହି
ଅବଶ୍ୟ ମାରି ତାହାକୁ ଯିବି ଜାଣ ମୁହିଁ ।
ଶୁଣିକରି ଶ୍ରୀକୃଷ୍ଣ ଯେ ଯାଞ୍ଚନ୍ତି ହୃଦ୍‌ଗତେ
ବୋଲନ୍ତି ଅଟନ୍ତି ଆତ୍ମା ମୋର ପଞ୍ଚଭ୍ରାତେ ।
ସେ ମଲେ ସଂସାରେ ମୁହିଁ କ୍ଷଣେ ରହେନାହିଁ
ମୁଁ ଗଲେ ସଙ୍ଗେ ମୋହର ଯିବେ ପାଞ୍ଚଭାଇ
ତାହାଙ୍କ ବଂଶରୁ ତେବେ ମାରି ଜଣେ ଯାଅ
ଉତ୍ତରା ଗର୍ଭରେ ଅଛି ଅଭିମନ୍ୟୁ ପୁଅ ।
ମୂର୍ଦ୍ଧା ଅଭିଷେକୀ ହେବ ଜାଣ ସେହି ପୁତ୍ର
ତାହାକୁ ମାରିଣ ବେଗେ ଚଳ ମହାଅସ୍ତ୍ର ।
ଶୁଣିଣ କାଂଶିକା ଶର ଉତ୍ତରାର ଗର୍ଭେ
ପୁତ୍ରକୁ ମାଇଲା କହନ୍ତେ ସେ ପଦ୍ମନାଭେ ।
ପୁତ୍ରକୁ ମାରିଣ ଶର ଦ୍ୱାରକାକୁ ଯାଇ
ବ୍ୟାସସରୋବରେ କୁରୁପତି ଆଗେ କହି ।
ଶୁଣିଣ ସେ ଦୁର୍ଯ୍ୟୋଧନ ମନେ ମନେ ଭାଳି
ଅଶ୍ୱଥାମାକୁ ଚାହିଁଣ ଦେଲା କେତେ ଗାଳି ।

ବୋଇଲା ତୁ କେଉଁ କର୍ମ କଲୁ ଅଶ୍ୱଥାମା
ଆହା ମୋ କୁମାର ବୋଲି ଉସର୍ଗିଲା ଆତ୍ମା ।
ଆଧାର ଚକ୍ରଠାରୁ ଲଲାଟ ଚକ୍ରଯାଏ
ଚକ୍ରକୁ ଚକ୍ର ଭେଦି ନିର୍ମଳ କଲା କାୟେ ।
ହାକୃଷ୍ଣ ବୋଲିଣ ରାଜା ପ୍ରାଣ ଦେଲା ଛାଡ଼ି
ବୈକୁଣ୍ଠରେ କଲା ବିଜେ ପଦ୍ମାସନ ଭିଡ଼ି ।
ଗୋବିନ୍ଦଙ୍କ ପଦ୍ମପାଦେ ଯାଇଁ ସେବା କଲା
ଶୁଣ ଆହ ଜନ୍ମେଜୟ ଗର୍ଭେ ପୁତ୍ର ମଲା ।
କାଂଶିକା ଶର ଦହିଣ ଗଲା ଯେତେବେଳେ
ପାଣ୍ଡବେ ରୋଦନ କଲେ ବସି ତତକାଳେ ।
ଦ୍ରୌପଦୀ ଆଦି ସୁଭଦ୍ରା କୁନ୍ତୀ ସହିତେଣ
ପୁତ୍ର ଗୁଣଗୁଣୀ କାନ୍ଦନ୍ତି ଯେ ଜଣ ଜଣ ।
ଉତ୍ତରାବାଳୀର ପୁତ୍ର ମୃତ୍ୟୁ କଥା ଶୁଣି
କାନ୍ଦଇ ଭୂମିରେ ଗଡ଼ି ଭଦ୍ରା ଠାକୁରାଣୀ ।
ଶ୍ରୀକୃଷ୍ଣ ଚରଣେ ପଡ଼ି ମୁଣ୍ଡ କୋଡ଼ି ହୋନ୍ତି
ଏ ଭିଆଣ କଲୁବୋଲି କୃଷ୍ଣେ ନିନ୍ଦାଦ୍ୟନ୍ତି ।
ବୋଲନ୍ତି ବ୍ରହ୍ମାଣ୍ଡକର୍ତ୍ତା କୃଷ୍ଣ ସିନା ହରି
କେତେ କପଟେ ପାଳୁଛି ପୃଥ୍ୱୀ ଦେହଧରି ।
ବଡ଼ଲୋକଙ୍କୁ କରନ୍ତି ସିନା ସର୍ବେ ନିନ୍ଦା
କାହିଁକି ଜନ୍ମ କରି ମୋ ବଂଶ କଲା ପଦା ।
ସାକ୍ଷାତରେ ବ୍ରହ୍ମଶର କୃଷ୍ଣେ କହି ଗଲା
ସେ କଥା ଶୁଣି ନାତିକି ମୋର ମରାଇଲା ।
ଏଡ଼େ ମାୟାବୀ ହୋଇ ଶ୍ରୀକୃଷ୍ଣ ଜନ୍ମିଥିଲା
କୁରୁ ପାଣ୍ଡବଙ୍କ କୂଳ ନାଶ କରାଇଲା ।
ବୁଲୁଛି ଆଉ ପାଞ୍ଚଟା ବୃଦ୍ଧ ସଙ୍ଗେ ଧରି
ବଂଶତ ଗଲା ଛାଡ଼ି କି ହେବ ଜୀଇଁକରି ।
ଗର୍ଭସ୍ଥ ପୁତ୍ରକୁ ଯେବେ ମୋର ତୁ ସଂହାରୁ
ଆଉ ତେବେ କେ ମାନିବେ ତୋତେ ଏହିଠାରୁ
ଶୁଣିଣ ଶ୍ରୀକୃଷ୍ଣ ପ୍ରଭୁ ମନେ ବଡ଼ ହସି
ପୁତ୍ରଙ୍କୁ ଭୂମିରୁ ତୋଳିଧରି ବ୍ରହ୍ମରାଶି ।
ବୋଇଲେ ମୋହର ଜନ୍ମ ମୁହିଁ ଜାଣେ ଏକା
ଗଲାଣି ଅଠର କାଠି କୋଟିଯୁଗ ଲେଖା ।
ଆପେ ଆପେ ମୁଁ ହୋଇଛି ପୁଣ ଆପେ ଆଜ
ମୋହର ଜନ୍ମ ମୁହିଁ ନ ପାରେ କହି ଆଜ ।
ବ୍ରହ୍ମ ପ୍ରଳୟ ହେଲେ ମୋ ରୂପ ନୋହେ କ୍ଷୟ
ସକଳ ଆତ୍ମା ପଶନ୍ତି ଆସି ମୋର ଦେହ ।
ମୋହର ଅଙ୍ଗୁ ଜନ୍ମ ଶ୍ରୀ ଦଶ ଅବତାର
ଲୀଳା ସରିଲେ ରହନ୍ତି ଆସିଅଙ୍ଗେ ମୋର ।

ମୁଁ ଯେବେ ସଂସାରେ ବିଷ୍ଣୁହୋଇ ପାଏପୂଜା
ତେବେ ଏ ପୁତ୍ର ସଂସାରେ ଜୀଇଁ ହେବ ରାଜା
ମୁହିଁ ଯେବେ ସର୍ବଘଟେ ଆତ୍ମାରୂପେ ଥିବି
ତେବେ ଏହି ପୁତ୍ର ଉଠି ହେବ ଚିରଜୀବୀ ।
ମୁହିଁ ଯେବେ ସୃଷ୍ଟିକର୍ତ୍ତା ଅଟେ ସଂସାରକୁ
ତେବେ ଏହି ପୁତ୍ର ଜୀଇଁ ପାଳିବ ପୃଥ୍ୱୀକୁ ।
ମୁଁ ଯେବେ ଅଟଇ ନର ନାରାୟଣ ମୂର୍ତ୍ତି
ସର୍ବ ଜୀବରେ ପ୍ରକାଶି ଥାନ୍ତି ବ୍ରହ୍ମଜ୍ୟୋତି ।
ଏହି ଯେବେ ରହିଥାଏ ବିପ୍ର ଜିହ୍ୱାଗ୍ରତେ
ଏହାଙ୍କ ମୁଖେ ମୁଁ ଯେବେ ଭୁଞ୍ଜେ ଅନୁବ୍ରତେ ।
ତେବେ ଏ ବାଳକ ଗୋଟି ଜୀବପ୍ରାପ୍ତ ହେଉ
ମୋହର ଆଜ୍ଞାଗୋଟିକ ଅନ୍ୟଥା ଯେନୋହୁ
ପୁଣି ମୁଁ ପରଧର୍ମକୁ ଯେବେ ନିନ୍ଦିଥିବି
ପରପୀଡ଼କ ହୋଇଣ ପ୍ରାଣୀଙ୍କୁ ଦଣ୍ଡିବି ।
ତେବେ ମୋର ଆଜ୍ଞା ଗୋଟି ହେବ କବଳିତ
କୃଷ୍ଣ ବୋଲି କିମାନିବେ ମୋତେ ଆଉଭକ୍ତ ।
ମୁହିଁ ଯେବେ ସୁବିଧାରେ ଥିବି ସଦାକାଳେ
ତେବେ ଏହି ପୁତ୍ର ଉଠି ଚାଲୁ ଭୂମଣ୍ଡଳେ ।
ମୁଁ ଯେବେ ପର ହିତରେ ସଂସାରରେ ଥିବି
ତେବେ ଏହି ପୁତ୍ର ଉଠୁ ବସୁ ବିଷ୍ଣୁ ଭାବି ।
ମୁହିଁ ଯେବେ ପର ସ୍ତିରୀ ନଥିବିଟି ହରି
ତେବେ ଏ କୁମର ଉଠି ବସୁ ଧନୁ ଧରି ।
ମୁହିଁ ଯେବେ ଦୟା କରିଥିବି ପୃଥ୍ୱୀଯାକ
ତେବେ ଏ ଜୀବନ ପାଇ ଉଠୁ ମୁହୂର୍ତ୍ତକ ।
ସଂସାରେ କରଇ ଯେହୁ ବାସ୍ତରୀ ଉପାସ
ବିଷ୍ଣୁର ସମାନ ସେହୁ ଅଟେ ସୁପୁରୁଷ ।
ଏହୁ କଥା ଯେବେ ସତ୍ୟ ଅଟେ ଭୂମଣ୍ଡଳେ
ତେବେ ଏ କୁମର ଉଠି ବସିବ ତତ୍କାଳେ ।
ମୁହିଁ ଯେବେ ଜଗନ୍ନାଥ ଭକ୍ତ ଉଦ୍ଧାରଣ
ତେବେ ଏ କୁମର ଉଠି ବସିବ ତକ୍ଷଣ ।
ମୁହିଁ ଯେବେ ପୃଥ୍ୱୀଯାକୁ ଅଟେ ଦୀନବନ୍ଧୁ
ତେବେ ରଖିବେ ଏ କୁମରକୁ କୃପାସିନ୍ଧୁ ।
ଯେବେ ମୋରନାମ ଗୋଟି ଆର୍ତ୍ତତ୍ରାଣ ଅଟେ
ଏ ପୁତ୍ର ଜୀଇଁ ଉଠିବ ତେବେ ମନହୃଷ୍ଟେ ।
ମୁଁ ଯେବେ ପରଦୁଃଖ ନପାରେ କେବେ ସହି
ତେବେ ପୁତ୍ର ଦେହେ ଆତ୍ମା ପଶିବଟି ଯାଇଁ ।
ମୁଁ ଯେବେ ଅଟଇ ସବୁ ଆତ୍ମା ପୃଥ୍ୱୀଯାକେ
ସେସବୁ ଆତ୍ମାରୁ ଆସି ପଶୁ ଟିକେ ଟିକେ ।

ଏରୂପେ ବୋଲିଣ ପ୍ରଭୁ ପୁତ୍ର କର୍ଣ୍ଣଦ୍ୱାରେ
ଜୀବନ୍ୟାସ ମନ୍ତ୍ର ପଢ଼ିଲେକ ଫୁଙ୍କି ଥରେ ।
ଆତ୍ମା ସୂତ୍ରସ୍ଥାନେ ଦେଲେ ଆତ୍ମାକୁ ଯେଥୋଇ
ଶିକୁଳିଛନ୍ଦେ ଯେରୂପେ ଗଣ୍ଠି ଭିଡ଼ି ଦେଇ ।
ଉଠରେ ବାଳକବତ୍ସ ବୋଲି ଆଜ୍ଞା ଦ୍ୟନ୍ତେ
ତତକ୍ଷଣେ ପୁତ୍ର ଉଠି ବସେ ମୂର୍ତ୍ତିମନ୍ତେ ।
ଶ୍ରୀକୃଷ୍ଣଙ୍କ କଣ୍ଠେ ଲମ୍ବି ତଳେ ଉଭା ହେଲା
ବାଳକ ନାଚିଲା ପ୍ରାୟ ପାଦ ପ୍ରକାଶିଲା ।
ପୁତ୍ରକୁ କୋଳରେ ଧରି ବସି ପଙ୍କଜାକ୍ଷ
ବୋଇଲେ ପରୀକ୍ଷ ନାମଦେଲି ମୁଁ ପ୍ରତ୍ୟକ୍ଷ ।
ଯେବେ ମୁଁ ପ୍ରଣାମକରି ଜୀବ ତୋତେ ଦେଲି
ତୋ ନାମ ପରୀକ୍ଷ ତେଣୁ କରି ପ୍ରକାଶିଲି ।
ଏରୂପେ ବୋଲି ଶୁକ୍ରକୁ କୃଷ୍ଣ ଘେନିଗଲେ
ଯୁଧିଷ୍ଠିଦେବଙ୍କ କୋଳେ ନେଇ ସମର୍ପିଲେ ।
ପଞ୍ଚପାଣ୍ଡବେ ଦେଖିଣ ହେଲେ ବଡ଼ ତୋଷ
ବୋଇଲେ ଏଠାରୁ ଉଦେ ହେଲା ସୋମବଂଶ
ଦ୍ରୌପଦୀ କୁନ୍ତୀ ସୁଭଦ୍ରା ଆଦି ଦେବୀ ଦେଖି
ସମସ୍ତେ ରୋଦନ ଛେଦି ମନେ ହେଲେ ସୁଖୀ
ପୁତ୍ର ଜୀଅନ୍ତେ ମାତାର ଜାଣ ପ୍ରାଣ ଗଲା
ଉତ୍ତରାବାଳୀ ଭୂମିରେ ଢ଼ଳିପଡ଼ି ମଲା ।
ଉତ୍ତରାବାଳୀର ମୃତ୍ୟୁ ଦେଖିଣ ସୁଭଦ୍ରେ
ପରୀକ୍ଷିତକୁ ପାଳନା କଲେ ଗୃହ ମଧ୍ୟେ ।
ଏଥିଉତ୍ତାରୁ ଯେ ବାଣୀ ଶୁଣ ଜନ୍ମେଜୟ
ସାରିଲେ ଦୁର୍ବଳ କାର୍ଯ୍ୟ ଯୁଧିଷ୍ଠିର ରାୟ ।
କୃଷ୍ଣ ବୋଇଲେ ହସ୍ତିନା ନଗ୍ରେ ଚାଲ ଯିବ
ଏତେ କହିଣ ରଥରେ ବସିଲେ ମାଧବ ।
ସବୁଙ୍କୁ ସଙ୍ଗେ ଘେନିଣ ଗଲେ ଇନ୍ଦ୍ରପ୍ରସ୍ଥେ
ପରୀକ୍ଷିତଙ୍କୁ ସୁଭଦ୍ରା ଧରି ଚାଲେ ସାଥେ ।
ଇନ୍ଦ୍ରପ୍ରସ୍ଥରେ ଯାଇଣ ହେଲେ ପରବେଶ
ସେ ସ୍ଥାନକୁ ଶୁଦ୍ଧକରି ଗଲେ ଜଗଦୀଶ ।
ସେଠାରୁ ସବୁଙ୍କୁ ମହାପ୍ରଭୁ ସଙ୍ଗେ ଘେନି
ହସ୍ତିନାରେ ବିଜେକଲେ କରି ଶଙ୍ଖଧ୍ୱନି ।
ସେଠାବରେ ଦେଖି ବିଦୁରକୁ ପାଞ୍ଚଭାଇ
ପ୍ରଣାମମାନ ଚରଣ ତଳେ କଲେ ଯାଇ ।
ବିଦୁର ବୋଲେ ପୃଥ୍ୱୀରେ ହୁଅ ବାବୁ ରାଜା
ପରୀକ୍ଷେ ଶାଢ଼ୀ ବାନ୍ଧିଣ କରିବା ଯେ ପୂଜା ।
ଯୁଧିଷ୍ଠି ବୋଇଲେ ତାତ ତୁମ୍ଭ ସୁକଲ୍ୟାଣେ
ସବୁ କଥା ଜାଣିଗଲିଣି ତ ବିଜ୍ଞପଣେ ।

ଶ୍ରୀକୃଷ୍ଣ ହସ୍ତେ ପରୀକ୍ଷ ଶିରେ ଶାଢ଼ୀ ଦେବା
ଏକଥା ଆଗେ କରାଅ ବେଗେ ତୁମ୍ଭେ ନିର୍ଭା ।
ଶୁଣିଣ ବିଦୁର ମନ ହେଲା ବଡ଼ ତୋଷ
ଶ୍ରୀକୃଷ୍ଣ ଛାମୁରେ କହି କଲେ ରାଜବେଶ ।
ଆପଣେ ଯୁଧିଷ୍ଠିର ଶ୍ରୀହସ୍ତେ ଧରି ଶାଢ଼ୀ
ଶ୍ରୀକୃଷ୍ଣ କରେ ଦେଇଣ ମଥାରେ ଯେ ଭିଡ଼ି ।
ବସିଲେକ ସିଂହାସନେ ପରୀକ୍ଷିତ ରାଜା
ଲକ୍ଷେକ ନୃପତି ଆସି କଲେ ପାଦପୂଜା ।
ମୂର୍ଦ୍ଧନା ଅଭିଷେକୀ ଯେ ହେଲେ ପରୀକ୍ଷିତ
ବାଜଇ ଶଙ୍ଖ କାହାଳୀ ଦମ ଅପ୍ରମିତ ।
ଏରୂପେ ରାଜା ହୋଇଲେ ସୁଭଦ୍ରାର ନାତି
ଲକ୍ଷେକ ବ୍ରାହ୍ମଣ ପୂଜା କଲେ ନିତି ନିତି ।
ଏରୂପେ ହସ୍ତିନାପୁରେ ଉତ୍ସବ ଯେ କଲେ
ଦେବତାମାନେ କୁସୁମ ଶିରେ ବରଷିଲେ ।
ତହିଁଉତ୍ତାରୁ ଭୋଜନ କଲେ ଖନ୍ଦାଶାଳେ
ପରୀକ୍ଷଙ୍କୁ ଘେନି ବସିଲେକ ଆଦିମୂଳେ ।
ପାଣ୍ଡବ ପାଞ୍ଚଭାଇ ଯେ ବିଦୂର ସହିତେ
ସୁଖେ ମଣୋହି ସାରିଲେ ବସି ଯେଝାମତେ
କୃଷ୍ଣ ବୋଇଲେ ଗାନ୍ଧାରୀ ପାଶେ ଚାଲଯିବା
ତାହାଙ୍କୁ ବୋଧିଣ ଧୃତରାଷ୍ଟ୍ରେ ସଙ୍ଖୁଳିବା ।
ଏ ରୂପେ କହିଣ ପ୍ରଭୁ ପାଣ୍ଡବଙ୍କୁ ଘେନି
ମିଳିଲେ ଗାନ୍ଧାରୀ ପାଶେ କରି ଶଙ୍ଖଧ୍ୱନି ।
ଶ୍ରୀକୃଷ୍ଣ ଆସିଲେ ବୋଲି ଦୁର୍ଯ୍ୟୋଧନ ମାତା
ଜାଣିଣ ସେ ଅଧୋମୁଖେ ବସି କଲେ ଚିନ୍ତା ।
ଶ୍ରୀକୃଷ୍ଣ ବୋଇଲେ ମାଗୋ ଯୁଧିଷ୍ଠି ଅଇଲେ
ଭୀମ ଅରଜୁନ ମଧ ପ୍ରଣାମ ବିହିଲେ ।
ଗାନ୍ଧାରୀ ବୋଲେ ଶ୍ରୀକୃଷ୍ଣ କହିବି କି ଆଉ
ଯୁଧିଷ୍ଠି ଆସିଲା ଯେବେ ରାଜା ଏବେ ହେଉ
ମୋତେ ତ ପାଣ୍ଡବେ ଦେଲେ ଅପୁତ୍ରିକ କରି
ଏବେ ସେ ରାଜା ହୋଇଣ ଭୁଞ୍ଜନ୍ତୁ ଯେ ଶିରୀ
ଆମ୍ଭଙ୍କୁ ପ୍ରାପତ ଏବେ ହେଲା ମୃତ୍ୟୁଯୋଗ
ଏଥର ଉପାୟ କୃଷ୍ଣ କହ ମୋତେ ଆଗ ।
କୃଷ୍ଣ ବୋଇଲେ କଥାଏ ମାଗୋ ଶୁଣିବ କି
ବିଚାରେ ପାଣ୍ଡବେ ତୁମ୍ଭ ପୁତ୍ର ନୁହନ୍ତି କି ।
ପୁଅ କି ପୁତୁରା କିଏ ବୁଝିଲେ ତ ଏକ
ସଂସାରରେ ଏ କଥା ନ ଘେନେ ଅବିବେକ ।
ପାଞ୍ଚପାଣ୍ଡବେ ଅର୍ଜିବେ ଯେତେ ଯଶଶିରୀ
ଅନ୍ଧପଟଳ ଖୋଲିଣ ଦେଖ ଭଲକରି ।
ପୁଅ କେ ପୁତୁରା ବେନି ଏକ ଆତ୍ମା ସେଟି
ଏ କଥାକୁ ନ ମାନଇ ମୂର୍ଖଜନେ ସେଟି ।
ତାହାଙ୍କର ଯଶ ଶିରୀ ତୁମ୍ଭର ନୁହେଁ କି
ଏ କଥା ନ ପାଞ୍ଚି ଚିନ୍ତା କରୁଛ କାହିଁକି ।
ଗାନ୍ଧାରୀ ବୋଇଲେ ତେବେ ଭୀମ ଆସିଫେଡ଼
ଅପର ଲୋକ ମୋତେ ନ ପାରେଛୁଇଁ କେହୁ
ଆପଣାର ଗୋତ୍ରଲୋକ ବଂଶକୁ ପ୍ରସିଦ୍ଧି
ଏ କଥା ବୁଝିଣ କୃପାକର ଦୟାନିଧି ।
ଗାନ୍ଧାରୀର ମନକଥା ଜାଣି ପରଂବ୍ରହ୍ମ
ବୋଇଲେ ସନ୍ଦେହ ଏବେ ପଡ଼ିଲା କି କର୍ମ ।
ସହଦେବଙ୍କୁ ପୁଚ୍ଛିଲେ ଦେବ ଭାବଗ୍ରାହୀ
ବୋଇଲେ ଗାନ୍ଧାରୀ କଥା କହ ମନ୍ତ୍ରୀ ତୁହି ।
ଶୁଣି ମନ୍ତ୍ରୀବର ଯୋଡ଼ିଲା ଯେ କରପତ୍ର
ବୋଲେ ଫେଡ଼ିବା ଲୋକର ଜଳିଯିବ ଗାତ୍ର
କୃଷ୍ଣ ବୋଇଲେ ଏମନ୍ତ ତେବେ କରିଦେବା
ଅନ୍ଧପଟଳ ଦୁର୍ଦ୍ଦକ୍ଷ ହସ୍ତେ ଫିଟାଇବା ।
ବୋଇଲେ ଶତ୍ରୁର ଶେଷ ଋଣ ଶେଷ ଯେତେ
ବ୍ୟାଧିର ଶେଷ ଆଦି ନ ରଖି କଦାଚିତେ ।
ଏମାନେ ଥିଲେ କାଳରେ ପ୍ରବଳ ହୁଅନ୍ତି
ଏହାଙ୍କୁ ବେଳରୁ ଥିବ କରି ବିନଶ୍ୟତି ।
ଶୁଣିଣ ଯେ ସହଦେବ ବୋଲେ ସତ୍ୟ ସତ୍ୟ
ଏ କଥା ନ ଜାଣୁ କେହି ହେଉ ସେହି ଗୁପ୍ତ ।
ହେଉ ବୋଲିଣ ଦୁର୍ଦ୍ଦକ୍ଷ ପାଶେ ପ୍ରଭୁ ଯାଇ
ମାତାର ଅନ୍ଧପଟଳ ଦିଅ ବେଗେ ଫେଇ ।
ଚକ୍ଷୁକୁ ନିର୍ମଳ କରି ସଂସାରକୁ ଦେଖୁ
ପୁତୁରାମାନଙ୍କୁ ପୁତ୍ରପ୍ରାୟ ପାଳି ରଖୁ ।
ଦୁର୍ଦ୍ଦକ୍ଷ ବୋଇଲା ପ୍ରଭୁ ଏ କଥା ସ୍ୱରୂପ
ଦେହକୁ ଏ ଚକ୍ଷୁ ସିନା ଅଟେ କୁଳଦୀପ ।
ଆମ୍ଭର ଥାଆନ୍ତେ ଦଣ୍ଡ ମାତା ପାଇବେ କି
ବୁଝିଲେ ସର୍ବ ଦେହକୁ ସୁଖ ଅଟେ ଆଖି ।
ଆଖିରୁ ସଂସାରେ ନାହିଁ ବଡ଼ ହୋଇ ଦ୍ରବ୍ୟ
ଆଖିରେ ଦେଖିଲେ ବୋଧହୁଏ ଆତ୍ମା ସର୍ବ ।
ଏ ରୁପେ ବୋଲି ମାତାର ପାଶେ ପୁତ୍ର ଯାଇ
ଫେଡ଼ନ୍ତେ ଆଖି ଦୁଇରେ ଗାନ୍ଧାରୀ ଯେ ତହିଁ
ଚାହିଁବା ମାତ୍ରେ ଦୁର୍ଦ୍ଦକ୍ଷ ଗଲା ଜାଣ ଜଳି
ଭୀମ ମଲା ବୋଲି ଭାଳି କାନ୍ଦେ ଲୁହଗାଳି ।
ଆହା ମାରୁତି ବୋଲିଣ କରନ୍ତି ରୋଦନ
ଜାଣିଲେ ଠକାଇ କାନ୍ଦେ ବୋଲି ଭଗବାନ ।

ବୋଇଲେ ଶୁଣ ଗାନ୍ଧାରସେନର ଯେ ଝିଅ
ନୁହଇ ସେ ଭୀମସେନ ତୁମ୍ଭ ସାନପୁଅ ।
ଭାରତ ଯୁଦ୍ଧଠାରୁ ସେ ପଳାଇଣ ଗଲା
ଯୁଧିଷ୍ଠିର ପାଦତଳେ ଶରଣ ପଶିଲା ।
ଦୁର୍ଦ୍ଧକ୍ଷ ବୋଲିବା ପୁତ୍ର ଅଟେ ଜାଣ ଏହି
ଭାରତଯୁଦ୍ଧେ ବଞ୍ଚିଲା ଏକ ଜାଣ ସେହି ।
ତୁମ୍ଭରି କର୍ମରେ ଧାତା ଏହା ଥିଲା ଲେଖି
ନ ଜାଣିଣ ମୂର୍ଖଲୋକେ ହୁଅନ୍ତି ହୃଦେ ଦୁଃଖୀ ।
କାହାକୁ ସଂସାରେ ଲକ୍ଷେ ପୁତ୍ର ନ ଅଣ୍ଟଇ
ଅଦୃଷ୍ଟେ ନ ଥିଲେ ଲକ୍ଷେ ଅର୍ଜି ପକ୍ଷେ ପାଇ ।
ଗାନ୍ଧାରୀ ବୋଇଲେ କୃଷ୍ଣ ଏ ସର୍ଜନାତୋର
ତୋତେ ଯେହ୍ନ ନମାନେସେହୁଏ ନାରଖାର ।
ଶ୍ରୀକୃଷ୍ଣ ବୋଇଲେ ମାଗୋ ପଦ୍ମିନୀ ସ୍ତ୍ରୀ ତୁହି
ମହାବାକ୍ୟେ ବସିବ ତୋ ନାମ ଆଗ ହୋଇ
ତୋ ନାମ ଘେନି ସଂସାରୁ ସ୍ୱାମୀ ଯିବ ତରି
ବିପ୍ରେ ପଢ଼ିବେ ଶ୍ରୀମହାବାକ୍ୟ ନାମ ଧରି ।
ଗାନ୍ଧାରୀ ମାତା ଶୁଣିଣ ମନେ ହେଲେ ତୋଷ
ତହୁଁ ପାଣ୍ଡବଙ୍କୁ ଘେନିଗଲେ ଜଗଦୀଶ ।
ଧୃତରାଷ୍ଟ୍ରଙ୍କର ପାଶେ ମିଳିଲେକ ଯାଇ
ଅନ୍ଧରାଜା ପାଦତଳେ ପଡ଼ି ପାଞ୍ଚଭାଇ ।
ବୋଇଲେକ ଧୃତରାଷ୍ଟ୍ର ଅଟେ ତୁମ୍ଭେକେ କେ
କୃଷ୍ଣ ବୋଇଲେ ତୁମ୍ଭର ପୁତୁରା ପଞ୍ଚକେ ।
ଯୁଧିଷ୍ଠି ଭୀମ ନକୁଳ ପାର୍ଥ ସହଦେବ
ତାହାଙ୍କୁ ସଙ୍ଗତେ ଘେନି ଆସିଛୁଁ ମାଧବ ।
ଯୁଧିଷ୍ଠି ବୋଇଲେ ତାତ ତୁମ୍ଭ ସୁକୃତରୁ
ଭାରତ ଯୁଦ୍ଧୁଁ ବଞ୍ଚିଣ ଦରଶନ କରୁ ।
ଶ୍ରୀକୃଷ୍ଣ କୃପାରୁ ଆମ୍ଭେ ବଞ୍ଚି ପାଞ୍ଚ ଭାଇ
ତୁମ୍ଭଙ୍କୁ ଦର୍ଶନ କଲୁ ଆସି ଆଗ ହୋଇ ।
ଶୁଣିଣ ସେ ଅନ୍ଧରାଜା ମନେ ବହି କ୍ରୋଧ
ବୋଇଲା ପୁତ୍ରଙ୍କୁ ମୋର କଲ ସବୁ ବଧ ।
ଯୁଧିଷ୍ଠିର ବୋଇଲେ ଯେ ନାହିଁ ଆମ୍ଭ ଦୋଷ
ଶକୁନି ମନ୍ତ୍ରୀ ତୁମ୍ଭର କଲା ସବୁ ନାଶ ।
ସୋଦରେ ସୋଦରେ ଭେଦ କରାଇଲେ ଆଣି
ମୋ କଥାଟି ଯେବେ ମିଛ ପୁଚ୍ଛ ଚକ୍ରପାଣି ।
ଅନ୍ଧ ବୋଇଲା ତୁମ୍ଭର କୃଷ୍ଣ ଅଟେ ଘଟ
ତଥାପି ଗଲାଣି ସବୁ ଆମ୍ଭର ତ ନଷ୍ଟ ।
ବୁଝିଲେ ମୋ ପୁତ୍ରଯାକ ସବୁ ଗଲେ ମରି
ଭୀମକୁ ବେଳେ ବସିବି ଦିଅ କୋଳକରି ।

ଯୁଧିଷ୍ଠି ବୋଇଲେ ତାତ ଯେବେକଲେ ଶ୍ରଦ୍ଧା
ବସରେ ଭୀମ ତାଙ୍କୁ ନ ଲାଗୁ ପୁତ୍ରବାଧା ।
ଜାଣିଲେ ଶ୍ରୀକୃଷ୍ଣ ମହାପ୍ରଭୁ ଅନ୍ଧ ମନ
ସହଦେବଙ୍କୁ ପୁଚ୍ଛିଲେ ଠାରି ଭଗବାନ ।
ବୋଇଲେ କହ ହେ ମନ୍ତ୍ରୀ ଏ କଥାର ମୂଳ
କାହିଁକି ଲୋଡ଼େ ଭୀମକୁ ଅନ୍ଧ କରି କୋଳ ।
ଶୁଣି ମାଧବର ଦେଲା କରକୁ ଯେ ଚାହିଁ
ଅନ୍ଧର ମନକଥା ଶ୍ରୀକୃଷ୍ଣ ଆଗେ କହି ।
ବୋଲେ ଅନ୍ଧକଥା ଶୁଣ କହିବା ଭୋପ୍ରଭୁ
ସହସ୍ରେ ସିଂହର ବଳ ଧରିଅଛୁ ଗର୍ଭୁ ।
ଧଇଲେ ସେ ଚୂର୍ଣ୍ଣକରି ଦେବ କୋଳେଯାକି
ଏଣୁ ଭୀମସେନକୁ ସେ ଲୋଡ଼ଇ ତହିଁକି ।
ଶ୍ରୀକୃଷ୍ଣ ବୋଇଲେ ତେବେ ଏମନ୍ତ କରିବା
ଆଖଡ଼ାଶାଳୁଁ ଲୁହାର ଭୀମ ଅଣାଇବା ।
ଗୋଚରନକରି ତାର କୋଳେ ଦେବାଥୋଇ
ହେଉ ବୋଲିଣ ରହିଲା ମନ୍ତ୍ରୀ ତୁନି ହୋଇ ।
ଶୁଣ ଆହେ ଜନ୍ମେଜୟ ଏ ଉତ୍ତାରେ ବାଣୀ
ଲୁହାର ଭୀମକୁ ପ୍ରଭୁ ଘେନିଗଲେ ପୁଣି ।
ଅନ୍ଧାରଜାର କୋଳରେ ନେଇଥୋଇଦ୍ୟନ୍ତେ
ଭିଡ଼ିଲା ସେ ବେନିବାହୁ ବିସ୍ତାରି ହୃଦଗତେ ।
ଚନ୍ଦନ ଘୋରିଲା ପ୍ରାୟ ଦେହ ହସ୍ତେ ଘୋରି
ମଲୁ ଆରେ ଭୀମସେନ କାନ୍ଦେ ଶୋକ କରି
ଶତେକ ପୁତ୍ରଙ୍କୁ ଯେଣୁ ମାଇଲୁ ତୁ ମୋର
ସେହି ପାପରୁ ଯେ ମରିଗଲୁ ବୃକେ ଦର ।
ଶୁଣିଣ ଯେ ଭୀମସେନ ହସେ ଟଂହ ଟହ
ବୋଲ କାହାକୁ ମାରିଣ କାନ୍ଦ ଏବେ କହ ।
ଏହି ସକାଶରୁ ଅନ୍ଧ ହୋଇଅଛୁ ବସି
ଆପଣା ବୋଲିଣ ଜୀଇଁଅଛୁ ପ୍ରାଣ ପୋଷି ।
ପ୍ରଭାତରୁ ଅପୁତ୍ରିକ ଲୋକ ଯେହ୍ନ ଦେଖେ
ତାହାର ସୁକୃତ ନାଶ ହୁଏ ତିନିପକ୍ଷେ ।
ରହିଅଛୁ ବୃଦ୍ଧକାଳ ପ୍ରାୟ ଦେହ ବହି
ତୁହି ବୋଲୁଅଛୁଁ ଜାଣ ବଂଶଯାକ ଖାଇ ।
ତୋହର ବୟସ ପ୍ରାୟ ସଂସାରେ ଯେ ଥାନ୍ତି
ଯାବତ ଦାନ ଦେଇଣ ସର୍ବେ ତୀର୍ଥ ଯାନ୍ତି ।
ସମଦର୍ଶୀ ହୋଇ ଦୟା କରନ୍ତି ଜୀବରେ
ପୂଜନ୍ତି ବିପ୍ରେ ମାୟା ନ ରଖି ହୃଦୟରେ ।
ବୁଝିଲେ କପଟୀ ପରପୀଡ଼କ ତୁ ଅଟୁ
ଏରୂପେ ନୋହିଲେ ଲୁହାଭୀମ ତୁ କି ବାଟୁ ।

ଲକ୍ଷେ ଗୋବ୍ରହତ୍ୟା ଯେବେ ପ୍ରାଣୀ କରିଥାଇ
ସେ ଜାଣ ସଂସାରେ ଅନ୍ଧ ହୋଇ ଉପୁଜଇ ।
ଏଣୁ ଅଟୁ ଅପୁତ୍ରିକ ଆବର ତୁ ଅନ୍ଧ
ଯୁଧିଷ୍ଠି ବୋଲି ସେବନ୍ତି ତୋର ପଦ୍ମପାଦ ।
ଅପୁତ୍ରିକ ଲୋକଙ୍କୁ ଯେ ଛୁଇଁ ଅଟକେ
ବିଷ୍ଣୁଙ୍କୁ ଭଜିଲେ ସିନା ତରନ୍ତି ସେ ଲୋକେ ।
ଯୁଧିଷ୍ଠି ବୋଇଲେ ବାପ ଶୁଣ ମୋର ଭୀମ
ପିତା ଦେବତା ଏ ବେନି ଅଟନ୍ତି ଯେ ସମ ।
ଏହାକୁ ନିନ୍ଦିଲେ ବାବୁ ସାଧୁଜନେ ଶୁଣି
ମୁଖରେ ତାହାକୁ ଲେଖା କରନ୍ତି ଯେ ପୁଣି ।
ସାକ୍ଷାତେ ପିତା ତୁଲ୍ୟ ସେ ଅଟନ୍ତି ଆମ୍ଭର
ପିତାଙ୍କୁ ନିନ୍ଦା ଏବେ ନ କର ବୃକୋଦର ।
ଦେଢ଼ୁତା ପିତା ଖୁଡ଼ୁତା ମାତା ଆଦିଯେତେ
ଆପଣାର ପିତା ପ୍ରାୟ ସମାନ ଏ ନିତ୍ୟେ ।
ଶୁଣିଣ ରହିଲା ଭୀମସେନ ତୁନିହୋଇ
ମିଳିଲେ ଗାନ୍ଧାରୀ ପାଶେ ଧୃତରାଷ୍ଟ୍ର ଯାଇଁ ।
ବୋଲେ ସଖିରେ କହିବା ଶୁଣ କଥାଟିଏ
ତୀର୍ଥକୁ ଏବେ ମିଶିଣ ଯିବା ଚାଲ ଦୁହେଁ ।
ଭୀମର ଝିଙ୍ଗାସ ଏବେ ନ ପାରିବା ସହି
ମରିବା ବନସ୍ତେ ପଶି ଫଳ ମୂଳ ଖାଇ ।
ଭୀମର ଏ ଭାଷା ଶୁଣି ରକ୍ତ ଗଲା ଶୁଖି
ବିଷ ଖାଇଣ ମାରିବା ଚାଲ ପଛେ ସଖି ।
ନୋହିଲେ ଯେ ତୀର୍ଥବାସୀ ହୋଇ ବନେଥିବା
ଧାତା କରିବ ଯାହା ସେ କଥା ବିଳସିବା ।
ଗାନ୍ଧାରୀ ବୋଇଲେ ସ୍ୱାମୀ କର ଅନୁକୂଳ
ତୁମ୍ଭଙ୍କୁ ଛାଡ଼ି ରହିବି ମୁହିଁ କେତେକାଳ ।
ପତି ଅନ୍ତେ ପତ୍ନୀଯେବେ ରହେ ଦେହଧରି
ସ୍ତିରୀକୁଳକୁଟି ସେହି ଅଟେ ହତଶିରୀ ।
ଯେବେ ବିଧବା ହୋଇଣ ସ୍ତିରୀ ରହିଥିବ
ବ୍ରହ୍ମଚାରିଣୀ ପରାୟେ କର୍ମ ଆଚରିବ ।
ହଳଦୀ ତଇଳ ବୋଲି ନୋହିବ ସେ ଅଙ୍ଗେ
କରିବ ବାସ୍ତରୀ ଉପବାସ ବେଦମାର୍ଗେ ।
ଦନ୍ତ ଦିଶିଲେ ପଦାରେ ଅନ୍ତ ପଡ଼େ ବୃଥା
ପର ପୁରୁଷକୁ ହସି ନ କହିବ କଥା ।
ସ୍ତିରୀଙ୍କ ସଙ୍ଗରେ ସଙ୍ଗ ନୋହିବ କେବକୁ
ଆପଣା ଗୃହଛିଦ୍ର ନ କହିବ କାହାକୁ ।
କୁଟୁମ୍ବଯାକର ମନ ଘେନି ଘରେ ଥିବ
କୋମଳ ବାକ୍ୟ କହିଣ ବାକ୍ୟ ପ୍ରକାଶିବ ।
ଅଳପ ଆହାରେ ମନ ତୃପ୍ତ ଥିବ କରି
ବିଷ୍ଣୁଙ୍କୁ ସେବୁଣଥିବ ଯେହ୍ନେ ବ୍ରହ୍ମଚାରୀ ।
ବିଧବା ସ୍ତିରୀ ଜାଣ ଏରୂପେ ଯେବେ ଥିବ
ତେବେ ସେ ମୋକ୍ଷ ହୋଇଣ ବୈକୁଣ୍ଠକୁ ଯିବ
ଶୁଣିଣ ତା ଧୃତରାଷ୍ଟ୍ର ବୋଲେ ଆଛା ଆଛା
ତୀର୍ଥକୁ ତେବେ ଚାଲ ଗୋ କରି ମନୋବାଞ୍ଛା
ପତି ବାକ୍ୟ ଶୁଣି ହେଲା ଗାନ୍ଧାରୀ ସେ ସଜ
ପାଞ୍ଚିଲେ ଆଉ ରହିଲେ ନାହିଁ ଭଲକାର୍ଯ୍ୟ ।
କୋଇନ୍ତା ଦେଖି ବୋଇଲେ ଆମ୍ଭେ ମଧଯିବା
ହେଲାଣି ତ ବୃଦ୍ଧକାଳ କାହିଁକି ଯେ ଥିବା ।
କର୍ଣ୍ଣକୁ ତ ଶୁଭୁନାହିଁ କେତେ ଡାକୁଥିଲେ
ଚକ୍ଷୁକୁ ତ ଦିଶୁନାହିଁ ଯେଣେହେଁ ଚାହିଁଲେ ।
ମୁଖରୁ ଦଶନପନ୍ତି ଗଲେ ସବୁ ଝଡ଼ି
ବୟସ ବପୁ ଦେହରୁ ଗଲାଣି ତ ଛାଡ଼ି ।
ଚାଲିବାର କର୍ମଯାକ ହେଲାଣି ତ ଊଣା
ଲୋକଙ୍କୁ ଚିହ୍ନି ନପାରି ଡାକେ ହୋଇ ବଣା ।
ଶରୀରୁ ଗଲାଣି ଚର୍ମଯାକ କାତି ଛାଡ଼ି
ବସିଲେ ନ ପାରୁଁ ଉଠିଗଲା ଅଣ୍ଟା ପଡ଼ି ।
ଏକାଳେ ନ କରି ତୀର୍ଥ ହରି ନ ଭଜିଲେ
ଅମୋକ୍ଷ ହୁଏ ସିନା ଏ ଜଞ୍ଜାଳରେ ଥିଲେ ।
ଏରୂପେ ପାଞ୍ଚିଣ କୁନ୍ତୀ ଗଲେ ତାଙ୍କ ସଙ୍ଗେ
ବିଦୂର ସଞ୍ଜୟ ମିଶି ଚଳିଲେ ସେ ମାର୍ଗେ ।
ସର୍ବେ ଅରଣ୍ୟେ ପଶିଣ କଲେ ଯାଇ ସଭା
ତାହାଙ୍କର ମୃତ୍ୟୁ ଶୁଣ କହିବାରେ ବାବା ।
ସେ ବନ ମଧରେ ଜାଣ ଶବରେକ ଥିଲା
ମୃଗକୁ ମାରିବ ବୋଲି ବନ ପୋଡ଼ିଦେଲା ।
ଚାରିଦିଗରୁ ଆସିଲା ଜଳି ହୁତାଶନ
ବିନ୍‌କରେ ପୋଡ଼ିଗଲା ସେହି ଘୋରବନ ।
ଗାନ୍ଧାରୀ କୁନ୍ତୀ ସଞ୍ଜୟ ବିଦୂର ଏ ଆଦି
ଅଗ୍ନିରେ ଦାହା ହୋଇଣ ବଇକୁଣ୍ଠ ଭେଦି ।
ବିଷ୍ଣୁଙ୍କର ପଦ୍ମପାଦେ ହେଲେ ଯାଇ ଲୀନ
ଶ୍ରୀ ଦେବଦେବୀ ଅଟନ୍ତି ଏହୁ ପାଞ୍ଚଜଣ ।
ଶୁଣ ଆହେ ଜନ୍ମେଜୟ ଏ ଉତ୍ତାରୁ ବାଣୀ
ପାଣ୍ଡବେ ରୋଦନ କଲେ ସ୍ନାନ କଲେ ଶୁଣି ।
ଦ୍ୱାଦଶ ଦିନରେ ଶୁଦ୍ଧ ହେଲେ ଧର୍ମରାୟ
ଯେରୂପେ ବେଦରେ ଲେଖିଛନ୍ତି ଧର୍ମରାୟ ।
ଦୁର୍ବଳ କାର୍ଯ୍ୟ ସାରି ଶ୍ରୀକୃଷ୍ଣ ପୂଜା କଲେ
ମେଲାଣି ମାଗଣ ହରି ଦ୍ୱାରକାକୁ ଗଲେ ।

ଶ୍ରୀକୃଷ୍ଣ ଆସନ୍ତେ ବ୍ରହ୍ମ ଖବର ଯେ ପାଇ
ତକ୍ଷଣେ ମିଳିଲେ ପିତା ଦ୍ୱାରକାରେ ଯାଇ ।
ବ୍ରହ୍ମାଙ୍କୁ ଦେଖିଣ କୃଷ୍ଣ କଲେ ନମସ୍କାର
ବୋଇଲେ ବିଜେ କଲକି ଆସି ବେଦବର ।
ବ୍ରହ୍ମା ବୋଇଲେ କହିବା ଶୁଣ ଚକ୍ରପାଣି
ଆଜୁ ସରିଲା ତବ ଶ୍ରୀକୃଷ୍ଣ ଲୀଳା ପୁଣି ।
ବ୍ରହ୍ମାଣ୍ଡରେ ତୁମ୍ଭ କୀର୍ତ୍ତିଯାକ ଗଲା ରହି
ବୈକୁଣ୍ଠରେ ବିଜେ ଏବେ କର ଭାବଗ୍ରାହୀ ।
ଶୁଣିଣ ବୋଇଲେ ଜଗନ୍ନାଥେ ଆଛା ଆଛା
ଶ୍ରୀଏକାଦଶୀ ଯାଏ କରିବା ଦିନବାଞ୍ଛା ।
ଆଷାଢ଼ମାସ ଶୁକ୍ଳ ଶ୍ରୀ ଏକାଦଶୀ ଦିନ
ଜାରାଶବରର ବାଣେ ତେଜିବା ଯେ ପ୍ରାଣ ।
ସେଠାରୁ ଉତ୍ତରାୟଣ କାଳ ସରିଯିବ
ସେଠାରୁ ହରିଶୟନ ବୋଲି ଲେଖା ହେବ ।
ଚଉଦ ଦିନ ଅଛଇ ଆଉ ଦେହ ଧରି
ବଇକୁଣ୍ଠ ଯିବୁ ଆମ୍ଭେ ବଂଶଯାକ ମାରି ।
ବୁଝି ବେଦବର ଚଳିଗଲେ ନିଜପୁର
ଶୁଣ ଆହେ ଜନ୍ମେଜୟ କହେ ମୁନିବର ।
ଏଥିଉତ୍ତାରୁ କୋକୁଆ କୃଷ୍ଣ ଜାତ କଲେ
ଆସିଲାକ ଭୟମାଡ଼ି ଲୋକଯାକ ମଲେ ।
ଯାଦବ ବଂଶ କୋକୁଆ ଭୟେ ମଲେ ପୁଣି
ସନ୍ତରା ବଣରେ ପୂଣି ହେଲେ ହଣାହଣି ।
ଏରୂପେ ବଡ଼ଠାକୁରେ ଉପଦ୍ରବ ଦେଖି
ବଇକୁଣ୍ଠେ ବିଜେକଲେ ସପ୍ତଫଣା ଡାକି ।
ଶ୍ରୀକୃଷ୍ଣ ଭଗିନୀ ପୁଣ ଧାତା ସଙ୍ଗେ ଯାଇ
ବସିଲେକ ନୀଳାଚଳେ ନିଜରୂପ ବହି ।
ଶ୍ରୀଜଗନ୍ନାଥଙ୍କ ପତ୍ନୀ ଅଟେ ପାଟବଂଶୀ
ରହିବେ ନିତ୍ୟସ୍ଥଳରେ ସ୍ୱରୂପ ପ୍ରକାଶି ।
ଶ୍ରୀକୃଷ୍ଣଙ୍କର ପୁତ୍ର ଯେ ଷାଠିସସ୍ର ଯାଏ
ସନ୍ତରା ବଣରେ ପଶି ହେଲେ ସବୁ କ୍ଷୟେ ।
ପ୍ରଦ୍ୟୁମ୍ନ କୁମର ଶିର ଚକ୍ରେ ହାଣିଦେଲେ
ବରୁଣ ପୁରକୁ କୃଷ୍ଣ ଶୀଘ୍ର ଚଳିକଲେ ।
ଦେଖିଣ ବରୁଣ ରାଜା କୃଷ୍ଣେ ପୂଜାକରି
ବୋଇଲେ କି ଅର୍ଥେ ବିଜେକଲ ନରହରି ।
ଶ୍ରୀକୃଷ୍ଣ ବୋଇଲେ ଶୁଣ ହେ ବରୁଣ ରାଜା
ବୈକୁଣ୍ଠେ ଯିବାକୁ ଆମ୍ଭେ କଲୁ ସବୁ ତେଜ୍ୟା ।
ଆମ୍ଭେ ଯେ ଥିଲୁ ତୋହର ନଗ୍ରେ ବାସକରି
ଏବେ ସେ ଦ୍ୱାରକାପୁର ହେଲା ଶତଶିରୀ ।
ତୁ ଏବେ ଯା ତୋର ନଗ୍ର ବସ ବେଗେମାଡ଼ି
କେବଳ ନିବାସ ମୋର ଦେଇଥିବୁ ଛାଡ଼ି ।
ସଂସାର ଭକ୍ତେ ଦର୍ଶନ ଆସି କରୁଥିବେ
ବ୍ରହ୍ମ ପ୍ରଳୟ ହେଲେ ମୋ ବାସ ନ ବୁଡ଼ିବେ ।
ସେହି ନିବାସେ ପ୍ରଳୟକାଳେ ମୂହିଁ ଯାଇଁ
ବିହାର ଯେ କରୁଥିବି ଏକବ୍ରହ୍ମ ହୋଇ ।
ଏମନ୍ତ କହି ଶ୍ରୀକୃଷ୍ଣ ଯାନ୍ତେ ପାଦ କାଢ଼ି
ତକ୍ଷଣେ ଦ୍ୱାରକାପୁର ଜଳେ ଗଲା ବୁଡ଼ି ।
କୃଷ୍ଣର ଆସନ ଖଣ୍ଡ ଯେବଣ ନିବାସ
ସେ ପୀଠ ଛାଡ଼ି ଦ୍ୱାରକା ଜଳେ ଗଲା ନାଶ ।
ଶୁଣ ଜନ୍ମେଜୟ କୃଷ୍ଣ ମହିମା ଯେ ପୁଣି
ଦ୍ୱାରକା ନାଶ କରିଣ ଗଲେ ଚକ୍ରପାଣି ।
ନୈମିଷ ଅରଣ୍ୟେ ଯାଇ ହୋଇଲେ ପ୍ରବେଶ
ମିଳିଲେ ଅଶ୍ୱତ୍ଥ ବୃକ୍ଷମୂଳେ ପୀତବାସ ।
ଆଉଜି ବସିଲେ ପ୍ରଭୁ ବ୍ରହ୍ମେ ଚିତ୍ତଦେଇ
ଆଣ୍ଠୁର ଉପରେ ପାଦ ଥୋଇ ଭାବଗ୍ରାହୀ ।
ଏଥିଉତ୍ତାରେ ଯେ ଜାରା ଶବର ଆସିଲା
ମୃଗ ମାରିବି ବୋଲି ସେ ବନରେ ପଶିଲା ।
ଖଣ୍ଡେଦୂରୁ ଦେଲା ବୃକ୍ଷମୂଳକୁ ସେ ଚାହିଁ
ମୃଗକର୍ଣ୍ଣ ପ୍ରାୟ ଦିଶେ କୃଷ୍ଣ ପାଦ ଦୁଇ ।
ଦିଶଇ ମୃଗର କର୍ଣ୍ଣପ୍ରାୟ କୃଷ୍ଣ ପାଦ
ମାରିବି ଏହାକୁ ବୋଲି ବିଚାରି ନିଷାଦ ।
ଧନୁରେ ଶର ଯୋଚିଣ ବିନ୍ଧନ୍ତେ ତକ୍ଷଣ
ବାଜିଲା କନିଷ୍ଠ ଅଙ୍ଗୁଷ୍ଠିରେ ଯାଇ ବାଣ ।
ଶର ବାଜନ୍ତେ ଶ୍ରୀକୃଷ୍ଣ ହେଲେ ଅଚେତନ
ବଳୀବେଲାଳକୁ ପ୍ରଭୁ କଲେ ଧନ୍ୟ ଧନ୍ୟ ।
ବୋଇଲେ ସେ ଶର ମୂନେ ପାଦନଖକୋଣେ
ସିନ୍ଦୂର ଲଗାଇ ଟୀକା ଦେଇଗଲା କ୍ଷଣେ ।
ସେ କଥାମାନ ଫଳିଲା ଏବେ ଦେଖିଲଇଁ
ବଳୀବେଲାଳକୁ ପ୍ରଶଂସିଲେ ଭାବଗ୍ରାହୀ ।
ଏଥିଉତ୍ତାରେ ସେ ଜରା ବେଗେ ଧାଇଁଗଲା
ଶ୍ରୀକୃଷ୍ଣଙ୍କ ପାଦେ ନମି ବହୁ ସ୍ତୁତି କଲା ।
ବୋଇଲା ପ୍ରଭୁର ପାଦେ କଲି କେତେ ଦ୍ରୋହ
ଗୋବିନ୍ଦ ବୋଲି ମୁଁ ଚିହ୍ନିନାହିଁ ବିଷ୍ଣୁ ଦେହ ।
ଶ୍ରୀକୃଷ୍ଣ ବୋଇଲେ ଜାରା କଥାଏ ମୋ ଶୁଣ
ଅର୍ଜୁନ ଆଗରେ ଯାଇଁ କହ ମୋର ଗୁଣ ।
ତାହାକୁ ଦେଖିଲାକ୍ଷଣି ବୈକୁଣ୍ଠେ ଯିବଇଁ
ଶୁଣିଣ ମିଳିଲା ଇନ୍ଦ୍ରପ୍ରସ୍ଥେ ଜାରା ଯାଇଁ ।

ଶ୍ରୀକୃଷ୍ଣଙ୍କ ମୃତ୍ୟୁକଥା ପାଣ୍ଡବଙ୍କ ଆଗେ
କହିବାକୁ ସେହିକ୍ଷଣି ଚଳିଗଲା ବେଗେ ।
ଯୁଧିଷ୍ଠି ବୋଇଲେ ବେଗେ ଅର୍ଜୁନରେ ଯାଅ
କୃଷ୍ଣର କଥା ଆମ୍ଭଙ୍କୁ ବୁଝିଆସି କହ ।
ଗଲେ ଗୋବିନ୍ଦକୁ ଏକା ଛୁଇଁବୁ ତୁ ନାହିଁ
ଛୁଇଁ ଲାକ୍ଷଣି ନିର୍ବଳ ଯିବୁ ନିଶ୍ଚେ ହୋଇ ।
ଶୁଣିଣ ଅର୍ଜୁନ ଚଳିଗଲା ବାହୁବଳେ
ଶ୍ରୀକୃଷ୍ଣ ଛାମୁରେ ଯାଇ ମିଳିଲା ତତ୍କାଳେ ।
ଶ୍ରୀକୃଷ୍ଣ ବୋଇଲେ ଶୁଣ ହେ ସୁଭଦ୍ରାସାଇଁ
ଉଠାଇଣ କୋଳେ ମୋତେ ଧରବେଗେତୁହି
ଅର୍ଜୁନ ବୋଲେ କହୁଛି ଶୁଣ ଆପଣଙ୍କୁ
ଠାକୁରେ ଯେ ମନା କରିଛନ୍ତି ଛୁଇଁବାକୁ ।
ଅଷ୍ଟାଙ୍ଗ ମଳୁ ଧରିବ ଯେବେ କୋଳେ ବସି
ଦେହରେ ରୋଗ ପ୍ରବେଶ ହୋଏ ତାର ଆସି
ଅଳ୍ପକେ ବଳ ଶରୀରୁ ତାର କ୍ଷୀଣ ହୁଏ
ଶ୍ରୀକୃଷ୍ଣ ବୋଇଲେ ତେବେ ଶୁଣ ଧନଞ୍ଜୟେ
ଆଉ କଥାଏକହିବା ତୋତେ ତେବେ କର
ବଢ଼ାଇଦିଅ ଗାଣ୍ଡିବଧନୁ ବେଳେ ତୋର ।
ଛୁଇଁଲେ ସେ ଧନୁକୁ ମୁଁ ଭବୁ ହେବି ପାରି
କପଟ ଥିଲେ ଏ ପ୍ରାଣ ଯିବଟି ବାହାରି ।
ବୁଝିଲେ ତୋରପ୍ରାୟ ନମିଳେ ସଖାମୋତେ
ତାଆତ୍ମା ମୋ ଆତ୍ମାଆଦି ଆଉ ଆତ୍ମାଯେତେ
ସବୁରି ଆତ୍ମାଟି ମୁହିଁ ଅଟେ ଧନଞ୍ଜୟ
ଏଥକୁ ମନେ ଶଙ୍କା ନ ଧର ତୋର କାୟ ।
ଆମ୍ଭେ ହେଗଲେ ସଂସାରେ ତୁମ୍ଭେ ରହିବକି
ମୃତ୍ୟୁ କେବେ ଛାଡ଼ିବକି ମୁହୂର୍ତ୍ତେ ପ୍ରାଣୀଙ୍କି ।
ଯେ ମରେ ଜାଣ ପ୍ରଳୟ ବୋଲି ତାକୁ କହି
ଜୀବ ପ୍ରଳୟ ସଂସାରେ ଅଟେ ଏକା ଏହି ।
କୃଷ୍ଣର ବାକ୍ୟ ଶୁଣିଣ ସୁଭଦ୍ରାର ସାଇଁ
ତକ୍ଷଣେ ଧନୁ ଟେକିଣ କୃଷ୍ଣେ ଦେଲା ଛୁଇଁ ।
ଗାଣ୍ଡୀବ ଧନୁ ଗୋଟିକୁ ଛୁଇଁ ଭଗବାନ
ନିଜ କଳାକୁ ଘେନିଣ ଚଳିଲେ ତକ୍ଷଣ ।
ଶ୍ରୀକୃଷ୍ଣ ଯେ କଳେବର ଛାଡ଼ି ଚଳିଯାନ୍ତେ
ରୋଦନ କରି ପଡ଼ିଲା ପାର୍ଥେ ଭୂମିଗତେ ।
ତହୁଁ ମିଳିଲେ ଅର୍ଜୁନ ପାଶେ ବ୍ୟାସଋଷି
ବୋଇଲେ ଶୋକ ଆଉ ନକର ପଣ୍ଡୁଶିଷି ।
କୃଷ୍ଣଙ୍କୁ ସମୁଦ୍ରେ ମେଲି ଇନ୍ଦ୍ରପ୍ରସ୍ଥେ ଯାଅ
ଗୋବିନ୍ଦ ଗଲେବୋଲି ତୁ ଯୁଧିଷ୍ଠିଙ୍କୁ କହ ।
ଏ ରୂପେ କହିଣ ବ୍ୟାସ ହେଲେ ଅନ୍ତର୍ଦ୍ଧାନ
କୃଷ୍ଣଙ୍କୁ ସଂସ୍କାର କରି ଚଳିଲେ ଅର୍ଜୁନ ।
ଗାଣ୍ଡୀବ ଧନୁଗୋଟି ନପାରେ ବୀର ଟେକି
ମଥାରେ ବୋହିଚାଲଇ ପାଦେପାଦେ ଝାଙ୍କି
ଇନ୍ଦ୍ରପ୍ରସ୍ଥରେ ମିଳିଲା ଯୁଧିଷ୍ଠିଙ୍କ ପାଶ
ବୋଇଲେବିଯୋଗ ହୋଇଗଲେ ହୃଷିକେଶ
ଶୁଣି ବିସ୍ମିତ ହୋଇଲେ ମନେ ଧର୍ମବସି
ବୋଇଲେ ତ ସତ୍ୟଗୋଟି ସବୁଙ୍କୁ ଲାଗିଛି ।
ମୃତ୍ୟୁ ନ ହୋଇଣ କାହିଁ କେଉଁଲୋକ ଏଥି
ମର୍ତ୍ତ୍ୟପୁରେ ବୋଲି ନାମ ବହେ ଏହି ପୃଥ୍ୱୀ ।
ଶ୍ରୀବିଷ୍ଣୁ ଯେ ହର ବ୍ରହ୍ମା ଦେବ ଆଦି ଯେତେ
କାହାରିକୁ ମୃତ୍ୟୁ ଛାଡ଼ିନାହିଁ ଏ ଜଗତେ ।
କେ ଅବା ମରେଆଜି କେ ଅବା ମରେ କାଲି
କୀଟୁ ବ୍ରହ୍ମାଯାଏ ଲାଗିଛନ୍ତି ମୃତ୍ୟୁ ବୋଲି ।
ଆମ୍ଭେ ହେ ମଧ ହୋଇବା ଏବେସ୍ୱର୍ଗଗାମୀ
ଦେଖିଲି ବିଷ୍ଣୁର ଲୀଳାଯାକ ମର୍ତ୍ତ୍ୟେ ଜନ୍ମି ।
ଏ ରୂପେ ବୋଲି ହୋଇଲେ ଧର୍ମ ମହାଶାନ୍ତି
ସହସ୍ରେ ବରଷ ରହି କଲେ ରାଜନୀତି ।
କହୁ କହୁ କଳିଯୁଗ ପ୍ରବେଶ ହୁଅନ୍ତେ
ବୋଇଲେ ଆମ୍ଭେ ଆଉ ନରହୁ କଦାଚିତେ ।
ଏରୂପେ ପାଞ୍ଚଣ ଧର୍ମ ଭାଇ ସଙ୍ଗେ ବସି
ବୋଇଲେ ଆସ ହୋଇବ ଏବେ ସ୍ୱର୍ଗବାସୀ
ଶୁଣି ଅର୍ଜୁନ ନକୁଳ ଭୀମ ସହଦେବେ
ଦ୍ରୌପଦୀ ବୋଇଲେ ମୁହିଁ ଯିବି ମଧ ଏବେ ।
ଶୁଣି ଧର୍ମରାୟ ବୋଇଲେକ ଆଛା ଆଛା
ଚାଲ ଗୋ ସ୍ୱର୍ଗେ ବସିବା ଯାଇଁ ମନଇଚ୍ଛା ।
ଏ ରୂପେ ବୋଲିପରୀକ୍ଷ ପାଶେ ଧର୍ମ ଯାଇ
କହିଲେ ଯାବତ ସନ୍ଧି ରାଜନୀତି ଫେଇ ।
ବୋଇଲେ ଆମ୍ଭେ ହେଉଛୁ ଏବେ ସ୍ୱର୍ଗବାସୀ
ଏ ପଞ୍ଚକଟକେ ରାଜା ହୋଇଥାଅ ଆସି ।
ଶୁଣିଣ ପରୀକ୍ଷ ରାଜା ଯୋଡ଼ି ବେନିକର
ବୋଇଲେ ତୁମ୍ଭର ମୁହିଁ ଅଟେ ପରିଚାର ।
ବହୁତ କଲ୍ୟାଣ ବାଞ୍ଛା ଧର୍ମରାୟ କଲେ
ଚାରିପାଣ୍ଡବେ ଯାଇଣ ସ୍ନେହେ ଚୁମ୍ବଦେଲେ
ନାତିକି ଦ୍ରୌପଦୀ ସୁକଲ୍ୟାଣ ବାଞ୍ଛାକରି
ଯୁଧିଷ୍ଠି ପାଦେ ନମିଣ ଗଲେ ହିମଗିରି ।
ଧର୍ମର ପଛେଯେ ଭୀମ ଭୀମ ପଛେ ପାର୍ଥ
ପାର୍ଥ ପଛେ ପଛେ ହେଲେ ନକୁଳ ଯେ ସାର୍ଥ

ନକୁଳ ପଛେ ମନ୍ତ୍ରୀ ତା ପଛେ ଯାଜ୍ଞସେନୀ
ଚାଲନ୍ତି ହିମଗିରିରେ ଯୁଧିଷ୍ଠିଙ୍କି ଘେନି ।
ଏମନ୍ତେ ସେ ଖଣ୍ଡେଦୂର ଯାନ୍ତେ ପଥମାଡ଼ି
ଦ୍ରୌପଦୀ ଦେବୀର ଦେହ ହିମେ ଗଲା ଜଡ଼ି
ଜାଡ଼ରେ ଥରି ପଡ଼ନ୍ତି ଝୁଣ୍ଟି ଭୂମିତଳେ
ଦେଖି ସହଦେବ ଟେକି ଧଇଲେକ କୋଳେ
ବୋଇଲେ ଗୋ ଯାଜ୍ଞସେନୀଗଲୁ ବ୍ୟର୍ଥେମାରି
ତୋହର ସମାନେ ନାହିଁ ଏ ବ୍ରହ୍ମାଣ୍ଡେ ସ୍ତିରୀ ।
ଲକ୍ଷ୍ମୀଙ୍କି ତୁ ଶତେ ଗୁଣେ ନିନ୍ଦୁ ଚାରୁହାସୀ
ବିଅର୍ଥେ ତୁ ମରିଗଲୁ ଧର୍ମ ସଙ୍ଗେ ଆସି ।
ଯୁଧିଷ୍ଠିର ବୋଇଲେ ହେ ଶୁଣ ସହଦେବ
ତାହାଙ୍କୁ ଛାଡ଼ିଣ ଆସ ସ୍ୱର୍ଗ ଯେବେ ଯିବ ।
ବଡ଼ କର୍କଶୀ ଅଟଇ ଜାଣ ଯାଜ୍ଞସେନୀ
ତାହାଲାଗି ଦୂଃଖ ମନ ହେଲା ଆୟୁହାନି ।
ରହିଲା କେଶ ମୁକୁଳା କରି କେତେଦିନ
ଅରଣ୍ୟେ ତ ତାର ଲାଗି ମଲା ଦୂଃଶାସନ ।
ଏଡ଼େ ସତ୍ୟବାଦୀ ନାହିଁ ଏ ସଂସାରେ ସ୍ତିରୀ
ଆସରେ ମନ୍ତ୍ରୀବର ତୁ ତାକୁ ତେଜ୍ୟାକରି ।
ଶୁଣିଣ ସେ ସହଦେବ ଆଜ୍ଞାମାତ୍ରେ ଉଠି
ଖଣ୍ଡେଦୂର ଯାନ୍ତେ ତଳେ ପଡ଼ିଲାକ ଝୁଣ୍ଟି ।
ଦେଖିଣ ନକୁଳ ଶୋକ ଅନେକ ଯେ କଲା
ଯୁଧିଷ୍ଠି ବୋଇଲେ ତାର ସୁଖେ ସେହୁ ମଲା ।
ତୁ ଏବେ ଆସରେ ବେଗେ ସ୍ୱର୍ଗ ଯିବା ଉଠି
ବସିବା ବାସବ ଦେବତାଙ୍କୁ ସ୍ୱର୍ଗେ ଭେଟି ।
ଶୁଣିଣ ନକୁଳ ଧାଇଁଗଲା ତଡ଼ବଡ଼ି
ହିମରେ ଜଡ଼ିଯାଇଣ ତଳେ ଝୁଣ୍ଟିପଡ଼ି ।
ପଡ଼ିବା ମାତ୍ରକେ କଲା ପ୍ରାଣ ବିସର୍ଜନ
ତାହା ଦେଖି କୋଳକରି ଧରିଲା ଅର୍ଜ୍ଜୁନ ।
ଆହା ଭାଇ ବୋଲି ଶୋକ କରନ୍ତେ ସେ ବସି
ଯୁଧିଷ୍ଠି ତାହାକୁ ଦେଖି ମନେ ବଡ଼ ହସି ।
ଧର୍ମ ବୋଇଲେ କହିବା ପାର୍ଥ ତୋତେ ଶୁଣ
ବଡ଼ ଗହନ ଅଟଇ ସ୍ୱର୍ଗବାଟ ଜାଣ ।
ସହସ୍ରେ ଯୋଜନ ଏବେ ଆସିଲଇଁ ଗମି
ଚୌରାଶି ଯୋଜନ ଆଉ ଅଛି ସ୍ୱର୍ଗ ଭୂମି ।
ରୋଦନ କରିବାକୁ ତ ଅଛି କାଳ କାହିଁ
ପହରେ ଚାଲ ବସିବା ସ୍ୱର୍ଗେ ଆମ୍ଭେ ଯାଇଁ ।
ଯାହାର ଧର୍ମ ଥିବ ସେ ଯିବ ଏଥୁ ତରି
ବେଗେ ଉଠିଆସ ବାବୁ ମୋର ବୋଲକରି

ଶୁଣି ଫାଲଗୁନି ଯୁଧିଷ୍ଠିର ବୋଲ କଲା
ହିମରେ ସେ ଚାଲି ଚାଲି ସପ୍ତକୋଶ ଗଲା ।
ଜାଡ଼ରେ ସେ ଜଡ଼ିଯାଇ ପଡ଼ିଲାକ ଢଳି
ଦେଖି ଭୀମସେନ ତାକୁ ଧଇଲାକ ଟୋଳି ।
ଅର୍ଜ୍ଜୁନର ଗୁଣଯାକ ବାହୁନଇ ବସି
ଚାହିଁ ଯୁଧିଷ୍ଠିର ଦେବ ମନେ ଅଳ୍ପ ହସି ।
ବୋଇଲେ କାହିଁକି ଭୀମସେନ କାନ୍ଦୁ ଏତେ
ବହନ ତୁ ଆସ ଉଠିଯିବା ଭଡ଼ା କେତେ ।
ବୁଝିଲେ ତ ବିଧାତାର ଆୟୁ ଗଲେ ପୂରି
ସେ ତ ରହି ନ ପାରଇ ପୁଣି ଦେହଧରି ।
କୀଟୁଁ ବ୍ରହ୍ମାଯାଏ ଜନମିଲେ ସବୁ ମରେ
ଏ କଥା ତ ବିହି ଛନ୍ଦିଅଛନ୍ତି ସଂସାରେ ।
ତୁହି ପୁଣି ଏତେ ଶୋକ କରୁଅଛୁ ବସି
ତୁ ମଲାଦିନ କାନ୍ଦିବ କହ କେହୁ ଆସି ।
ତାହାକୁ ଛାଡ଼ି ବହନ ଏବେ ଉଠି ଆସ
ମଲାଲୋକକୁ କାନ୍ଦିଲେ ହେବ ଆଉ କିସ ।
ଶୁଣିଣ ସେ ଭୀମସେନ ଉଠିଲା ତତ୍କାଳେ
ହିମଜାଡ଼େ ଚାଲି ଧାଇଁଅଛି ବାହୁବଳେ ।
ଯିବାକୁ ଅଛଇ ଆଉ ସ୍ୱର୍ଗ ବାର ଯୁଣ
ଚାଲିଛି ଦଉଡ଼ି ଭୀମ ଯୁଧିଷ୍ଠି ପଛେଣ ।
ତା ଚାଲିବା ଦେଖି କଲେ ଯୁଧିଷ୍ଠିର ଶଙ୍କା
ବୋଇଲେ ଗଲେ ଏହୁ ନରଖେ ସ୍ୱର୍ଗ ଏକା ।
ସ୍ୱଦେ ଧରିଣ ଏହୁ ଗଲେ ଆମ୍ଭ ସଙ୍ଗ
ବ୍ରହ୍ମାଣ୍ଡ ରଖିବ ବସିଲେ କି ଯାଇ ସ୍ୱର୍ଗ ।
ଏଥକୁ ଉପାୟ କରି ଆମ୍ଭେ କହିଦେବା
ଜାଡ଼ରେ ଏ ସଡ଼ିପଡୁ ଭାଙ୍ଗି କଟୀଗ୍ରୀବା ।
ଏରୂପେ ମନରେ ପାଞ୍ଚି ଯୁଧିଷ୍ଠିର ରାୟ
ବୋଇଲେ ଫେରାଇ ଚାଲ ବାମ ଅଙ୍ଗକାୟ ।
ଉହୁଁ ଭୀମସେନ ଯୁଧିଷ୍ଠିର ଆଜ୍ଞା ପାଇ
ଚାଲିଲେ ସେ ଖଣ୍ଡେଦୂର ବାମଅଙ୍ଗ ଦେଇ ।
ଏମନ୍ତ ଆଜ୍ଞା ପାଇଣ ଯାନ୍ତେ ଖଣ୍ଡେଦୂର
ଜାଡ଼େ ସଡ଼ିଯାଇ ପଡ଼ିଗଲା ବୃକୋଦର ।
ଦେଖି ଯୁଧିଷ୍ଠିର ମନେ ଆନନ୍ଦ ହୋଇଲେ
ବ୍ରହ୍ମରେ ସେ ଚିତ୍ତ ରଖି ସ୍ୱର୍ଗେ ବିଜେକଲେ ।
ଯୁଧିଷ୍ଠି ଆସିଲେ ବୋଲି ଇନ୍ଦ୍ର ଦେବତାଏ
ସ୍ୱର୍ଗପୁରେ ପୁଷ୍ପବୃଷ୍ଟି କଲେ ଅପ୍ରମେୟ ।
ଦ୍ରୌପଦୀଙ୍କୁ ସଙ୍ଗେ ଘେନି ଆଉ ଚାରିଭାଇ
ସୁଧର୍ମା ସଭାରେ ବସିଛନ୍ତି ଆଗେ ଯାଇ ।

ହସ୍ତେ ଅର୍ଘ୍ୟସ୍ଥାଳୀ ଘେନି ଶଚିଦେବୀ ମାଥେ
ବନ୍ଦାଣ କଲେ ଯୁଧିଷ୍ଠି ଦେବୀଙ୍କ ଅଗ୍ରତେ ।
ରତ୍ନଆସନେ ବାସବ ନେଇ ବସାଇଲେ
ଦ୍ରୌପଦୀ ଆଦି ସବୁଙ୍କୁ ଯତ୍ନେ ପୂଜା କଲେ ।
ଶୁଣିଣ ସେ ଜନ୍ମେଜୟ ମନେହେଲେ ତୋଷ
ସେ ପାଦେ ଶରଣ ବିପ୍ର ପୀତାମ୍ବର ଦାଶ ।



## ଫଳଶ୍ରୁତି

ଶ୍ରୀ ନୃସିଂହ ପୁରାଣର ଏ ପରମବାଣୀ
ଶାରଦା ମାତାଙ୍କ କୃପାବଳୁ କଲି ଆଣି ।
ବଇଶମ୍ପାୟନ ଋଷି ଜନ୍ମେଜୟ ଆଗେ
ପିତାମହଙ୍କର କୀର୍ତ୍ତି ଭଣେ ଶାସ୍ତ୍ରମାର୍ଗେ ।
ଶୁଣି ଜନ୍ମେଜୟ ମନେ ଆନନ୍ଦିତ ହେଲେ
ଋଷିଙ୍କ ଚରଣେ ନମି ପାଦ ସେବା କଲେ ।
ବୋଇଲେକ ଆଜ୍ଞା ଦେଲେ ଦକ୍ଷିଣା ମୁଁ ଦେବି
ନ ଦେଲେ ଆୟୁଷ ହାନି ହୋଇଣ ମରିବି ।
ପୁରାଣ ଶୁଣି ଦକ୍ଷିଣା କିଛି ଯେ ନ ଦିଏ
ମଲେ ସେହି କୃକଳାସ ହୋଇ ଜନ୍ମହୁଏ ।
ଋଷି ବୋଇଲେ ଭୋ ରାଜା ତୁମ୍ଭ ମନଇଚ୍ଛା
ଦେଲେ ତ ଲଭିବ କୋଟି ତୀର୍ଥ ଫଳବାଞ୍ଛା ।
ଦେବା ଲୋକର ଧର୍ମ କେ ପାରେ ମୁଖେ କହି
ଧର୍ମକୁ ବଳି ପୃଥ୍ୱୀରେ ଆଉ କିଛି ନାହିଁ ।
ତୁମ୍ଭେ ଯେ ଦକ୍ଷିଣା ଦେଲେ କାର୍ଯ୍ୟହେବସିଦ୍ଧି
ସକଳ କାଳକୁ ରହିଯିବ କଥା ସନ୍ଧି ।
ଶୁଣି ଜନ୍ମେଜୟ ବଡ଼ ଆନନ୍ଦିତ ହେଲେ
ହୀରାର କୁଣ୍ଡଳ ନେଇ ଋଷି କର୍ଣ୍ଣେ ଦେଲେ ।
ସୁବର୍ଣ୍ଣର କଣ୍ଠିମାଳ ଗଳେ ଦେଲେ ଖଞ୍ଜି
ଅଙ୍ଗୁଳିଯାକ ମୁଦ୍ରିକା ଦେଲେ ପୁଞ୍ଜି ପୁଞ୍ଜି ।
ଅଷ୍ଟରତ୍ନ ମାଳ ନେଇ ହୃଦେ ଲମ୍ବାଇଲେ
ଅଣ୍ଟାରେ ଯେ ସୁନା ସୁତା ଘାଗୁଡ଼ି ଖଞ୍ଜିଲେ ।
ଲକ୍ଷେ ଅଷ୍ଟରତ୍ନ ଥୋଇଦେଲେ ପାଶେ ନେଇ
ଋଷିଙ୍କି ଦକ୍ଷିଣା ଦେଲେ ନିର୍ମଳ ସେହୋଇ ।
ଝୀନ ପଟନୀ ପାଟେକ ନେଇ ସମର୍ପିଲେ
ସୁବର୍ଣ୍ଣ ତାଟିଆ ଥାଳି କଂସା ଗଡୁଦେଲେ ।
ଗୋଷ୍ଠରୁ ଦୁହାଁଳ ଗାଈ ଦେଲେ ଲକ୍ଷେବାଛି
ମଇଁଷି ଲକ୍ଷେକ ଦେଲେ ଆନନ୍ଦର ଯାଚି ।
ଋଷିଙ୍କ ଘରେ ଯେତେକ ପୁତ୍ର ପୁତ୍ରୀ ଥିଲେ
ସୁବର୍ଣ୍ଣର ଅଳଙ୍କାର ଯାଚି ତାଙ୍କୁ ଦେଲେ ।

ଉତ୍ତମ ହୋଇଣ ଥିଲେ ଯେତେ ଗଜ ବାଜି
ଦକ୍ଷିଣା ଦେଲେ କରିଣ ଋଷି ଆଗେ ସାଜି ।
ଧନଯୋଗେ ଧନଦ୍ରବ୍ୟ ଦେଲେକେତେନେଇ
ସର୍ବାଙ୍ଗ ଚନ୍ଦନ ବୋଳିଦେଲେ ଆପେ ଯାଇ
ପୁଣିହିଁ ଅନେକ ରତ୍ନ ଦେଲେ ନୃପବର
ଛାମୁରେ ଉଭା ହୋଇଣ କଲେ ନମସ୍କାର ।
ବୋଇଲେ ଭୋମୁନି ମତେ ଦୟାକରି ଥାଅ
ସନ୍ତୋଷ ହୋଇଣ ମନେ ଆଶୀର୍ବାଦ ଦିଅ
ରାଜାର ବିନୟ ଦେଖି ହସି ମୁନିବର ।
ବୋଇଲେ ଯେ ମନବାଞ୍ଛା ସିଦ୍ଧହେଉ ତୋର
ଏରୂପେ ବୋଲି ସେ ଋଷି ଆନନ୍ଦିତ ହେଲେ
ଅନେକ ଶ୍ରଦ୍ଧା ବହିଣ କଲ୍ୟାଣ ବାଞ୍ଛିଲେ
ଆବର ତା ଶୁଣୁଥିଲେ ସଭାରେ ଯେ ଲୋକ
ସେ ସର୍ବେଦକ୍ଷିଣା ଦେଲେ ଯାରଯେତେଶକ୍ୟ
ଆବର ରାଉତ ପାତ୍ରମନ୍ତ୍ରୀ ରଥୀ ଯେତେ ।
ଏମାନେ ଦକ୍ଷିଣା ଦେଲେ ଯାଚି ଶ୍ରଦ୍ଧାଚିତ୍ତେ
ପଧାନୀ କରଣ ସେଠ ବିଶୋଇ ନାୟକ ।
ଏମାନେ ଦକ୍ଷିଣାଦେଲେ ଯାର ଯେତେଶକ୍ୟ
ପରଜା ପାଟକ ଆଦି ଯେତେ ମହାଜନ
ଆପଣାର ଅନୁରୂପେ ଦେଲେ ସର୍ବେ ଦାନ ।
ନଗ୍ର ପୁର ଶ୍ରେଷ୍ଠ ଦଳବେହେରାଙ୍କ ଯାଏ
ପୂରାଣ ଦକ୍ଷିଣା କିଛି ଦେଲେ ସେ ଯେ ଝାଏ
ମନ ସନ୍ତୋଷ ପଦାର୍ଥମାନ ଆଣି ଦେଲେ
ଗ୍ରନ୍ଥ ପଢ଼ାଙ୍କୁ ଦେଇଣ ପ୍ରଣାମ କରିଲେ ।
କେ ଅବା ପଦକେ ବସି ଶୁଣିଥିଲା ବେଳେ
କେ ଅବା ପଦେ ଅଧେ ବା ଦିନେଶୁଣୁଥିଲେ
ସେହୁ ଦକ୍ଷିଣା ମନକୁ କିଛି ଦେଲେ ଆଣି
ଏହି ପ୍ରକାରେ ଦକ୍ଷିଣା ସର୍ବେ ଦେଲେ ପୁଣି ।
ଦକ୍ଷିଣା ପୂର୍ଣ୍ଣ କରିଣ ଦ୍ୟନ୍ତେ ସଭାଯାକେ
ପର୍ବତ ସମାନେ କୁଢ଼ ହେଲା ପୃଥ୍ୱୀଯାକେ ।
ଦକ୍ଷିଣା ପାଇଣ ବଇଶମ୍ପାୟନ ଋଷି
ମଙ୍ଗଳ ଶୁଭ ବାଞ୍ଛା ଯେ କଲେ ତହିଁ ବସି ।
ବୋଲନ୍ତି ଯେ ଗୋପ ଲକ୍ଷ୍ମୀ ଭୁଞ୍ଜ ସର୍ବଜନେ
ଶରୀରାନ୍ତେ ଯାଇ ବସ ବଇକୁଣ୍ଠ ସ୍ଥାନେ ।
ଲେଉଟି ଜନ୍ମ ହେଲେ ଉତ୍ତମ ଭୋଗକର
ଏ କଥା ଯେ ଅସ୍ତୁ ହେଉ ସବୁ ପ୍ରାଣୀଙ୍କର ।
ସଂକଳ୍ପ କରି ପୁରାଣ ଯେହୁ ଶୁଣୁଥିବ
ଯାହା ସେହି ମନାସିବ ତା ନିଶ୍ଚେ ପାଇବ ।

କୋଟି ତୀର୍ଥର ଯେ ଫଳ ଲଭିବ ସେ ଜନ
ପୌରାଣିକଙ୍କୁ ସନ୍ତୋଷେ ଦେବ ପୁଣି ଦାନ ।
ନାନା ଦୁଃଖ ସହି ଯେହୁ ଗ୍ରନ୍ଥ ଲେଖିଥିବ
ମନ ପୂର୍ଣ୍ଣକରି ତାଙ୍କୁ ଦକ୍ଷିଣା ଯେ ଦେବ ।
ତାହାଙ୍କର ଦୁଃଖ ଯେହ୍ନେ ଅଟେ ଗର୍ଭଧାରୀ
ସହଇ ଲେଖକ ସେହିରୂପେ ଦୁଃଖ ଭାରୀ ।
ତାହାଙ୍କୁ କେବେହେଁ ମନେ ନକରିବ ଊଣା
ଦେଇଥିବ ତାଙ୍କୁ ମନ କରିଣ ଖୁଲଣା ।
ତାକୁ ଦେଇଥିବା ଫଳ ଅବଶ୍ୟ ଲଭଇ
ଗୋଟିଏ ଗୋଦାନ ଫଳ ଦେଲାଜନ ପାଇ ।
ଅନେକ ଯେ ଯାଗ ଯଜ୍ଞ ଗଙ୍ଗାସ୍ନାନ କଲେ
ଜାଣ ଯେବେ ଗୟାତୀର୍ଥେ ସ୍ନାନକରି ଭଲେ
ନାନା କୋଟିତୀର୍ଥେ ଯେଉଁରୂପେ ଫଳ ପାଏ
ପାଇଥିଲେ ସେ ଲେଖକ ତୀର୍ଥ ପ୍ରାୟ ହୁଏ ।
ପୂରାଣ ଲେଖାଇ ତାଙ୍କୁ ଦକ୍ଷିଣା ନ ଦେଲେ
ସକଳ ଧର୍ମ ବିନାଶ ହୁଏ ତାର ଭଲେ ।
ଦକ୍ଷିଣା ଦେଲେଟି ଯାଇ ରାଜସୂୟ ଧର୍ମ
ଶୁଣ ଜନ୍ମେଜୟ କହନ୍ତି ଯେ ଋଷି ବ୍ରହ୍ମ ।
ମନକୁ ବୋଧ କରିଣ ଦକ୍ଷିଣା ନ ଦେଲେ
ବିଷ୍ଣୁଙ୍କ ଦେହରେ ଲୀନ ନ ହୁଅଇ ଭଲେ ।
ଏ କଥା ନିଷ୍ଟେ ଅଟଇ ଶୁଣ ସାଧୁଜନେ
କହିଣ ଚଳିଗଲେ ଶ୍ରୀବଇଶମ୍ପାୟନେ ।
ଶୁଣି ଜନ୍ମେଜୟ ରାଜା ହେଲେ ମନତୋଷ
ସେ ପାଦେ ଶରଣ ବିପ୍ର ପୀତାମ୍ବର ଦାଶ ।
ଶ୍ରୀନୃସିଂହ ପୁରାଣ ଏ ଅଟେ ଗ୍ରନ୍ଥ ସାର
ସପ୍ତମ ସାଗର କହିଲେ ଯେ ବେଦବର ।
ବ୍ରହ୍ମା ଯେ କହିବା ପାଇଁ କେବଳ ସମର୍ଥ
ପନ୍ଦର ସହସ୍ର ଶ୍ଳୋକ ଅଟଇ ଏ ଗ୍ରନ୍ଥ ।
ନାରଦ ଋଷି ଶୁଣିଲେ ଏହା ପୁରା କରି
ବ୍ରହ୍ମାଙ୍କୁ ଦକ୍ଷିଣା କିଛି ଦେଲେ ତପଚାରୀ ।
ବୋଇଲେ କହିଲ ମୋତେ ଏ ଗ୍ରନ୍ଥ ଯେଆଣି
ଦକ୍ଷିଣା ନ ଦେଲେ ମୋକ୍ଷ ନୋହିବ ସେ ପୁଣି
ସଂକଳ୍ପେ ପୁରାଣ ଶୁଣି ନ ଦଲେ ଦକ୍ଷିଣା
ଜନ୍ମଜନ୍ମାନ୍ତରେ ସେହୁ ହୁଏ କାଲ କଣା ।
ନୋହିଲେ ସଂସାରେ ଜଡ଼ହୋଇ ଜନ୍ମୁଥାଇ
ଏହା ପୁରାଣେ ଅଛନ୍ତି ସୁପଣ୍ଡିତେ କହି ।
ଶୁଣିଣ ବୋଇଲେ ବେଦବର ଆଛା ଆଛା
ସନ୍ତୋଷେ ଦିଅ ଦକ୍ଷିଣା ଯାହା ତୁମ୍ଭ ଇଚ୍ଛା ।
ଶୁଣିଣ ନାରଦ ଋଷି ହସ୍ତେ ମାଳଧରି
ବ୍ରହ୍ମାଙ୍କ କଣ୍ଠେ ଲମ୍ଭାଇ ଦେଲେ ତପଚାରୀ ।
ସର୍ବାଙ୍ଗେ ଚନ୍ଦନ ବୋଳିପାଦେ ଅର୍ଘ୍ୟଦେଲେ
ଥାଳିରେ ଯେ ଅଷ୍ଟରତ୍ନ ଧରି ଠିଆହେଲେ ।
ବସନ କୁଣ୍ଡଳ ଅଳଙ୍କାର ଆଗେ ଥୋଇ
ବ୍ରହ୍ମାଙ୍କ ପାଦରେ ନମି ଶ୍ରଦ୍ଧାବାନ ହୋଇ ।
ବୋଲଇ ପୁରାଣ ଶୁଣି ଭବୁ ହେଲି ପାର
ସଂସାରେ ସର୍ବେ ଶୁଣିବେ ଏହିଠାରୁ ନର ।
ଦକ୍ଷିଣା କିଛି ଛାମୁରେ ଦେଇ ଏବେଯିବି
ବୋଲିବା ସଂସାରେ ଗ୍ରନ୍ଥଯାକ ଶୁଣାଇବି ।
ଶୁଣିଣ ସକଳ ଲୋକେ ହେବେ ମୋକ୍ଷଗତି
ପୂରାଣ ଶୁଣି ଲଭିବେ ଜନ ଗତି ମୁକ୍ତି ।
ପୁରାଣ ଶୁଣି ଦକ୍ଷିଣା ଯେହୁ ନ ଦେବଟି
ପଶୁର ତୁଲ୍ୟ ସଂସାରେ ତାଙ୍କୁ ଦେଖିବଟି ।
ଶୁଣିଣ ସେ ବେଦବର ମନେ ହେଲେ ତୋଷ
ବ୍ରାହ୍ମଣ ସ୍ୱେ ପୀତାମ୍ବର ଭଜେ ପୀତବାସ ।
ନୃସିଂହ ପୁରାଣ ଏହି ବିଷ୍ଣୁ ଆତ୍ମା ଅଟେ
ଶ୍ରୀନୃସିଂହ ଯେଣୁ ବସିଛନ୍ତି ସର୍ବଘଟେ ।
ଆଉ ପୁରାଣ ଅଟଇ ଯେତେ ବିଷ୍ଣୁପଦ
ନୃସିଂହ ପୁରାଣ ଏକା ଅଟେ ବ୍ରହ୍ମବୋଧ ।
ଯାବତ ପୁଣ୍ୟଯାକ ଏ ଗ୍ରନ୍ଥେ ଅଛି ପୂରି
ଶୁଣିଣ ତୋଷ ହେଲେ ନାରଦ ତପଚାରୀ ।
ଦକ୍ଷିଣା ଯେତେକ ପାଇଥିଲେ ବେଦବର
ବ୍ରାହ୍ମଣଙ୍କୁ ତାହା ନେଇ ଦେଲେ ତତପର ।
ବିପ୍ର ଗୋସାଇଁମାନେ ବ୍ରହ୍ମାଙ୍କ ପାଦେ ନମି
ଦକ୍ଷିଣମାନ ପାଇଣ ଗଲେ ଯେଝା ଭୂମି ।
ବ୍ରହ୍ମା ତହୁଁ ଆଶୀର୍ବାଦ କରି ନାରଦଙ୍କୁ
ମେଲାଣି ହୋଇଣ ଚଳିଗଲେ ମନ୍ଦିରକୁ ।
ନାରଦ ଚଳିଲେ ମନ ପବନ ଯେ ଦଣ୍ଡେ
ଶ୍ରୀହରି ବୋଲି ଶବଦ ଉଚ୍ଚାରିଲେ ତୁଣ୍ଡେ ।
ସେଠାରୁ ଜନେ ପୁଣି ବୋଇଲେ ହରିବୋଲ
ହରି ବୋଲିବାକୁ କେ ଘେନିବ ଗୁରୁତୁଲ୍ୟ ।
ଶ୍ରୀହରି ରାମ କୃଷ୍ଣ ଯେବଣ ତିନି ନାମ
ଏହା ଯେ ନଶୁଣେ ପବିତ୍ର ତା ନୁହେଁ କର୍ଣ୍ଣ ।
ଆଦ୍ୟରେ ହରିନାମ ଶ୍ରୀ ମହାମନ୍ତ୍ର ବସେ
ପଶ୍ଚାତେ ଶ୍ରୀରାମ କୃଷ୍ଣ ମନ୍ତ୍ର ପରକାଶେ ।
ଏହି ମନ୍ତ୍ରଗୋଟି ଯେତେ ଗୁରୁ ମୁଖୁଁ ଶୁଣି
ତେବେସେମୋକ୍ଷ ହୋଇ ସଂସାରୁତରେପ୍ରାଣୀ
ଛପନ କୋଟି ଜୀବ ସଂସାରେ ଯେତେ ଛନ୍ତି
ସବୁରି ଆତ୍ମା ନୃସିଂହ ପ୍ରଭୁ ପଦ୍ମାପତି ।
ସେ ନୃସିଂହ ପଦ୍ମପାଦେ ସର୍ବଦାମୋ ସେବା
ବିପ୍ର ପୀତାମ୍ବରଙ୍କୁ ସଂସାରୁ ଉଦ୍ଧରିବା ।
ସପ୍ତମ ସାଗର ଏଥେ ହୋଇଲା ସମାପ୍ତ
ପୀତାମ୍ବରଙ୍କୁ ଉଦ୍ଧର ଆହେ ପଦ୍ମନେତ୍ର ।

**ସପ୍ତମ ସାଗର ସମାପ୍ତ**

K.J.P. PRINTING WORKS, CUTTACK-2